ଗଳ୍ପ ସମାହାର (ଦ୍ୱିତୀୟ ଭାଗ)
ଚନ୍ଦ୍ରଶେଖର ରଥ

ପ୍ରକାଶକ : ସ୍ୱସ୍ତିକ, ଶୈଳଶ୍ରୀ ବିହାର, ଭୁବନେଶ୍ୱର
ବିତରକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ, ଭୁବନେଶ୍ୱର
ପ୍ରଚ୍ଛଦ: ଅଶୋକ ମହାନ୍ତି
ମୁଦ୍ରଣ : ତୁତୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର
ପ୍ରଥମ ପ୍ରକାଶ : ୨୦୧୪
ମୂଲ୍ୟ : ୬୦୦.୦୦

GALPA SAMAHARA (II PART)
by Chandrasekhar Rath
Published by **Swastik, Sailashree Vihar, BBSR**
**Marketing by : Paschima Publications, Bhubaneswar**
Price . 600.00

Email: paschima1990@yahoo.com
visit-www.odishaestore.com
www.odikart.com

## ସୂଚୀପତ୍ର

# ଅନେକ ବନ୍ୟା ପରେ

## ବନ୍ୟା ପରେ

"ସେଇଠୁ କ'ଣ ହେଲା କହୁନ ! – ଏମିତି ଲାଜଉଚ କ'ଣ ମ' ମଉସା ! ଅନ୍ଧାର ରାତିରେ ପବନ ବୋହିଲା । ପାଣି ମାଡିଆସିଲା । ତମେ ଦେଖୁ ଦେଖୁ ତମ ଘର ଭିତରେ ଅଣ୍ଟେ ପାଣି, ସେଇଠୁ... ?"

ବେଲବୁଡ ଖରାରେ ଲୋକଟି ଅନେଇଥାଏ ଭୂଇଁକୁ । କାଦୁଆ କାଦୁଆ ମଳିଛିଆ ଦେହ । ସରୁ ମୁହଁଟିଏ । କିଛି ଦାଢି । ହାତରେ ମୁହଁରେ ଆଞ୍ଚୁଡା ଦାଗ । ଶୁଖିଲା ଓଠ ବୁଜି ସେ ବସିଥାଏ । ସବୁ ନୀରବ ।

"ଚାଲ, ତପନବାବୁ ! ଏଇଠି ସମୟ ନଷ୍ଟକରି କିଛି ଲାଭ ନାହିଁ । ଏଇଟା ଜାଣିଶୁଣି ବେଲି କାଢୁଚି । ଆଜି ସକାଳୁ ଆମେ ତାକୁ ସେ ଉପୁଡି ପଡିଥିବା ଗଛ ଡାଳରୁ ରକ୍ଷାକଲୁ । ଆଣି ନାଆରେ ବସେଇଲୁ । ବହୁ ଚେଷ୍ଟାକଲୁ । ସେ କିଛି ଖାଇଲା ନାହିଁ । ଏଯାଏଁ ଆମ ପିଲାଏ ନୟାନ୍ତ ହୋଇସାରିଲେଣି । ୟା ପିଛା ଲାଗନ୍ତୁ ନାହିଁ – ଉଠନ୍ତୁ ! ସେ ଛତୁଆ ପୁଡିଆଟା ତା' ପାଖେ ଥୋଇଦେଇ ଚାଲରେ ପିଲେ ଯିବା ! ଆଉ ଶହ ଶହ ଲୋକ ମିଳିବେ । ତପନବାବୁ ସେଇଠି ରେକର୍ଡ କରିନେବେ । ଶଳା, ବେଲି କାଢୁଚି । ଭୋକରେ ପେଟ ଜଳିଲେ ତା' ମନକୁ ଶୁଖିଲା ଛତୁଆ ପାଣି ମାଗିବନି !"

"ଆମେ କିନ୍ତୁ ସାର୍, ବଟର୍ ନ ହେଲେ ଖାଲି ସିଝା ଅଣ୍ଡା ସାଙ୍ଗରେ ଆଉ ରୁଟି ଖାଇପାରିବୁନାହିଁ ।"

"ତୁମେ ଆଗ ଚାଲୁନ ! ଏଇଠୁ କାହିଁକି ଏମିତି ଅତର୍ଛ ହଉଛ ? ଆଜି ଢେର୍ ଜିନିଷ ପାର୍ଶଲରେ ଆସି ପହଞ୍ଚିଛି । ଭଲ ଛେନା ଆଉ କେକ୍ ଆସିଛି । ଗୋଟାଏ ପେଟି ପୂରା ବଟର୍ ଆସିଛି !"

ସ୍ୱେଚ୍ଛାସେବୀ କଳରୋଳ କରିଉଠିଲେ । ତପନ ଶୋଭନ ରାୟ ତାଙ୍କ ଯନ୍ତ୍ରପାତି ଟେକି ଉଠିଲେ । ସେଇ ଆଇଁଷଆ ମାରୁଥିବା ଛୋଟ ପଡିଆଟି ଉପରେ ସେମିତି ଏକୁଟିଆ ସେ ବସିରହିଥାଏ । ଛତୁଆ ପୁଡିଆଟିଏ ସେମିତି ଥୁଆ ହୋଇଥାଏ । ସୂର୍ଯ୍ୟ ସେମିତି ବୁଡିଯାଉଥାଏ ।

ତମ୍ବୁ ଭିତରେ ଦାମି ଧୂପକାଠିର ଗନ୍ଧ । ବାହାରେ ଯେମିତି ଉଦ୍ଭଟ ପଚାପାଣି ଜମି ପଡିଛି, ତା' ନହେଲେ ବଞ୍ଚିବା କଷ୍ଟ । ମଡା ଦେଖି ଦେଖି, କାନ୍ଦ ଶୁଣି ଶୁଣ, ମନ ମାନ୍ଦା ଧରିଯାଉଥାଏ । ସେଥିପାଇଁ ରେକର୍ଡରୁ କିଛି ହାଲ୍କା ଗୀତ ବାଜୁଥାଏ ତମ୍ବୁରେ ।

ତପନବାବୁ କିନ୍ତୁ ପରଦା ଟେକି ପଶିବା ପୂର୍ବରୁ ଆଉ ଥରେ ପଛକୁ ଏବଂ ପଡିଆରେ

ବସିଥିବା ସେ ଲୋକଟିକୁ ଅନେଇଲେ । ଅଭିଜ୍ଞ ନାମ୍‌ଜାଦା ମଣିଷ । ମାଲ୍ ଚିହ୍ନିବାରେ ସେ କେବେ ଭୁଲ କରନ୍ତି ନାହିଁ । ତାଙ୍କୁ ଲାଗିଲା ଯେ ସେ ଲୋକଟା ପାଖରେ ଢେର୍ ଜିନିଷ ଅଛି । 'ଆଚ୍ଛା ଦେଖିବା' ଢଙ୍ଗରେ ସେ ତମ୍ବୁ ଭିତରକୁ ହାଇମାରି ପଶିଗଲେ ।

"ଆଚ୍ଛା, ତପନବାବୁ! ଆମ ପିଲାଏ ଗୋଟିଏ ଆଲୋଚନା ପ୍ରସ୍ତୁତ କରିଛନ୍ତି । କିଛି ଗୀତ ବାଦ୍ୟ ବି ଶିଖିଛନ୍ତି । ସେ ସବୁ କେମିତି ଟିକିଏ ରେକର୍ଡ ହୁଅନ୍ତା ।"

"ନିଶ୍ଚୟ, ନିଶ୍ଚୟ । କାହିଁକି ନ ହବ ?"

ଏଇଭଳି ଆସ୍ତେ ସନ୍ଧ୍ୟା ନଇଁଆସିଲା । ତା'ପରେ ଅନ୍ଧାର କାକର ଦୁର୍ଗନ୍ଧ ରାତି । ଖୁବ୍ ଦୂରରେ କିଛି କିଛି କାନ୍ଦ, ହସ, ପାଟିତୁଣ୍ଡ । ଆହୁରି ଦୂରରେ ବିଲୁଆ ଡାକ । ଚବର ଚବର ଚାଲି ମଣିଷଙ୍କର, ପଶୁଙ୍କର ।

ତପନ ରାୟ ପଦାକୁ ବାହାରିଲେ । ଦୁଇମୁଣାରେ ହାତ ରଖି, କିଛି ସମୟ ଚାହିଁ ରହିଲେ । ଅନ୍ଧାର । ହୁ ହୁ ପବନ । ମଝିରେ ମଝିରେ ଗନ୍ଧ । ତମ୍ବୁ ଭିତରୁ ସେ ଟର୍ଚ୍ଚ ଲାଇଟ୍ ଧରି ବାହାରିଆସୁଥିଲେ । ପୁଣି ନଇଁପଡି ରେକର୍ଡ ଯନ୍ତ୍ରଟି ବା ହାତରେ ଉଠେଇ ଚାଲିଲେ ।

ଅନ୍ଧାର ଲଉଡି ପରି ସରୁ ଆଲୁଅଟିଏ ଦରାଣ୍ଡିଲା ଏକତ ସେକତ । ତା' ଦେହରେ କିଛି ବାଜିଲା ନାହିଁ । ତପନ ରାୟ ଆଗେଇଲେ । ଛୋଟ ପୁଡିଆଟି ଖାଲି । ଛତୁଆ ପୁଡିଆଟି ମଧ ନାହିଁ । ...ଉପର ହୁଡାରେ ସେଇଟା ବୋଧହୁଏ ପିଲା ନିମ୍ବଗଛଟାଏ ! ତା' ମୂଳେ ସେଇଟା କ'ଣ ? ଖୁବ୍ ପାଖକୁ ଯାଇ ତପନ ରାୟ ଆଲୁଅ ଟିପିଲେ । ସେଇ ମଣିଷଟି ଛତୁଆ ପାଟିକୁ ପକାଉଥାଏ ।

ପଛ ମୁଣାରୁ କାଗଜ ପୁଡିଆଟିଏ କାଢି ସେ କହିଲେ, "ଦେଖି, ମଉସା, ଏ ମିଠା ଦି'ଟା ପାଟିକି ପକେଇଲ !"

ମିଠାଗୁଡାକ ଏତେ କଅଁଳ ବୋଲି ଜାଣିଥିଲେ ସେ ଏମିତି କାମୁଡି ନଥାନ୍ତା । ଫଳରେ କିଛି ସନ୍ଦେଶ ଗୁଣ୍ଡ ଲାଖି ରହିଲା ଦାଢିରେ, ଆଉ କିଛି ଗୁଣ୍ଡ ଝଡିପଡିଲା ଭୂଇଁ ଉପରକୁ ।

"ଆଉ ଖାଅ, ମଉସା ! ଆଉ ନିଅ !! ଏସବୁ ତୁମ ପାଇଁ ଆଣିଛି ପରା ! ତୁମେ ପରା କାଲିଠୁ କିଛି ଖାଇନ ! – ଆଚ୍ଛା, ଅଣ୍ଡା ଖାଇବ, ସିଝା ଅଣ୍ଡା ? – ଲହୁଣୀ, ରୁଟି, ଜାମ୍ ? ? ଏଁ ? ? ଆଣିଦେବ ?"

ସେ ମୁଣ୍ଡ ହଲାଇ ନାହିଁ କଲା !

"ତା'ହେଲେ ଭଲ ପାଣି ଆଣି ଦଉଚି ପିଇବାକୁ!" ସେ ଚାହିଁଲା ଅନ୍ଧାର ଭିତରେ ଛାଇଟାକୁ! – "ତମେ କିଏ ବାବୁ ?" ତପନ ରାୟ ଚମକିପଡିଲେ । ଗଛଟା କଥା କହିଲା କି ଆଉ ! "ମୁଁ ? ମୁଁ – ଏଇ ଆସିଛି, ଏଠି କ'ଣ ସବୁ ହେଲା ଦେଖି ଶୁଣି ଯିବାପାଇଁ । ...ଏମିତି ତ' ସମସ୍ତେ ଜାଣିଲେଣି ଯେ ରାତିରେ ପାଣି ମାଡିଆସିଲା । ମଣିଷ, ଗାଈ, ଗୋରୁ ଗାଁଗଣ୍ଡା ଭାସିଗଲେ । ଯେଉଁମାନେ ବର୍ତ୍ତିଗଲେ ତାଙ୍କୁ ପଚାରିଲେ ସିନା କହିବେ କେମିତି କ'ଣ ହେଲା ! ମୁଁ ଏଇ ସାଙ୍ଗେ ସାଙ୍ଗେ ତୁମ ପାଇଁ ପାଣି ନେଇଆସୁଛି ।"

ବାଁ ପାପୁଲି ଟେକି ସେ ବାରଣ କଲା । ଆଙ୍ଗୁଠିରେ ଦେଖେଇଲା ହୁଡା ତଳକୁ । କହିଲା, "ପିଇଚି" । ...ହୁଡା ତଳେ ଟର୍ଚ୍ଚ ଆଲୁଅରେ ଦିଶିଲା ବୁଦାମୂଳ ଅନ୍ଧାରରେ ଚବଚବିଆ ପାଣି । ଠିକ୍ ଅଛି, ତାଙ୍କର କ'ଣ କହିବାର ଅଛି ।

ତପନ ରାୟ ଚକାପକେଇ ବସିଗଲେ । ସଜାଡି ନେଲେ ରେକର୍ଡ ଯନ୍ତ୍ର ।

"ଆଚ୍ଛା, ମଉସା ତମ ନା କ'ଣ ?"

"ମୋ ନା ? ମୋ ନା ସାଖୀ ସାସମଲ ।"

"ଘର...ଏଇ... ?"

"ମାଣିକପୁର ।"

"କ'ଣ ହେଲା ସେଦିନ ? କେମିତି ବଢି ପାଣି ଆସିଲା ? ତମ ଘରେ ଆଉ ଆଉ ସବୁ କିଏ ଥିଲେ ? ସେମାନେ ଏବେ କାହାନ୍ତି ?..."

ସାଖୀର ମୁହଁଟି କୁଞ୍ଚୁ କୁଞ୍ଚୁ ହୋଇ ଚିପୁଡି ହୋଇଗଲା ପରି ଦିଶିଲା । ସବୁ ଚୁପ୍ । ତପନ ରାୟ ଆଲୁଅ ଲିଭେଇଦେଲେ । ଯନ୍ତ୍ରଟିକୁ ବନ୍ଦକରି ଅପେକ୍ଷା କଲେ । ନହେଲେ ଏତେଗୁଡାଏ ମେଲା; ସେଥିରେ ଭର୍ତ୍ତି ହୋଇଗଲେ ଭାରି ଅଡୁଆ ଲାଗିବ ଶୁଣିଲାବାଲାଙ୍କୁ ।

ଦୋହରାଇଲା ପରି କହିଲେ, "ଅନ୍ଧାର ରାତିରେ ପବନ ବହିଲା । ପାଣି ମାଡି ଆସିଲା ।"...ଯନ୍ତ୍ର ଚିପିଲେ ତପନ ରାୟ ।

"ହି, ବାବୁ ପାଣି ମାଡି ଆସିଲା ।"

"ଆଚ୍ଛା, ଆଚ୍ଛା...ସେଇଠୁ...କ'ଣ ହେଲା..."

"ମୋର ବାପ ପାଟି କଲା... । ...ପୁଅ ରଡିଲା । ...ଆଉ ତା'ର ମା' ତାକୁ ଧରି ଅନ୍ଧାରରେ ଡାକ ପକେଇଲା...ମତେ ମିଛ ପରି ଲାଗୁଥାଏ । ...ମୁଁ ଅନ୍ଧାରରେ ଠିଆହେଲି । ପାଣି ଅଣ୍ଟାଏ... । ମୋ ବାପ ମୋ ଡାହାଣ ହାତ ଧରି ଓହଳିଲା । ମାଇପ ଧରିଲା ଆର ହାତ । କାଲୁ ଚଢିଗଲା ବେକ-ମୁଣ୍ଡାକୁ । ...'ପଦାକୁ ବାହାରିଯିବା ସାଖୀ ! ନଇଲେ ଚାଳ ମଡେଇ ହେଇ ପଡିବ' ...କହିଲା ବାପ । ...ଏଇ ସନ ନୂଆ ଗୁଅ ବଦଳି କରିଥିଲା । ନୂଆ ନଡା ଛପର କରିଥିଲି । ...ଭୁସ୍ କିନା ଛାତ ଟେକିନେଲା ପବନ । ଦାଣ୍ଡ ପାଖ କାନ୍ଥ ମଡେଇହୋଇ ପଡିଲା । ...ଆମେ ଏକାଠି ପେଲି ହେଇ ବାହାରି ଆସିଲୁ । ...ଆସିଲୁ କ'ଣ, ସୁଅରେ ପଡିଗଲୁ । ...ସୁଅ ନ ଥିଲେ..."

ଚୁପ୍ ରହିଗଲା ସାଖୀ ସାସମଲ । ଯନ୍ତ୍ରଟିକୁ ଆସ୍ତେ ବନ୍ଦକରିଦେଇ ତପନ ରାୟ ଅପେକ୍ଷା କଲେ ସେ ସୁଅରୁ ଉଠିବା ପର୍ଯ୍ୟନ୍ତ ।

ହଠାତ୍ ଚମକିଲାପରି ସେ କହିଲା, "ମୁଁ ଆଉ କ'ଣ କରିବି – ପାଣି ବୁଡେଇ ଦେଲା । ଭୂଇଁ ଛାଡିଗଲା । ହାତଟା ଛଡେଇ ଆଣିଲି । ହାବୁକା ମାରି ଆଉ ଥରେ ଅଣ୍ଡାଳିଲି । ତାକୁ ପାଇଲି ନାହିଁ । ବାପକୁ ସୁଅ ଭିଡିନେଇଥିଲା । ପାଣି ଆହୁରି ବଢିଲା । ସମସ୍ତେ ବୁଡିଗଲୁ । ମୋ ସ୍ତ୍ରୀ ଓହଳି ଧରିଥାଏ । ଛଟପଟ ହେଲୁ ସମସ୍ତେ । ମୋ ହାତରୁ କେମିତି ଜାବ ଛାଡିଦେଲା । ମୁଁ ଉପରକୁ

ଦୁଇହାତ ପିଟି ଉହୁଙ୍କି ଆସିଲି । ପହଁରିଲି ପ୍ରାଣମୂର୍ଚ୍ଛା । ପାଣି ତଳକୁ ମାଡି ଦେଉଥାଏ । ମୁଁ ଉହିଁଙ୍କି ଉଠୁଥାଏ । ତଡି ନଉଥାଏ, ମୁଁ ଭିଡିହଉଥାଏ । ଗୋଟେ ଗଛ ଦିହରେ ଯାଇ ହାବୁଡିଲି । ସେଇଟା ମୁନ୍ଦୁରା ଗୁଡେଇ ହେଲାପରି ତଡିହେଉଥାଏ । ତା'ର ଡାଳରୁ ଡାଳକୁ ମୁଁ ଓଟାରି ହେଉଥାଏ । ଗୋଟେ ଡାଳ ନେଇ ତଳେ ମାଡିଦେଲା । ବଡ କଷ୍ଟରେ ଗଳି ଆସିଲି ପାଣି ଉପରକୁ । କେତେବେଳକେ...ସେ ଗଛ ଅଳ୍ପ ଥୟ ହେଲା । ମୁଁ ସେଇ ଗୋଟାଏ ଡାଳରେ ଦୋହଲୁଥାଏ । ସେଇଠି ମୋର ମନେପଡିଲା ଯେ ମୋ କାନ୍ଧ ଉପରେ 'କାଳୁ' ନାଇଁ । ସେ ପିଲାଟା ଛଟପଟ ଭିତରେ କେତେବେଳେ ଖସିଯାଇଚି ! ସମସ୍ତେ ତା' ଭିତରେ ଖସିଯାଇଛନ୍ତି । ସମସ୍ତେ ଭାସି ଯାଇଛନ୍ତି ।..."

ତପନ ରାୟ ରେକର୍ଡ ବନ୍ଦ କଲେ । ଆଲୁଅ ଟିପିଲେ । ସାଖୀ ସାସମଲ ମୁଦାହୋଇ ବସିଥାଏ । ନିଜ ଗୋଡଯୋଡିକୁ କୁଣ୍ଢେଇ, ଆଣ୍ଠୁ ଉପରେ ଆଖିବୁଜି ବସିଥାଏ ସେ ଏକାକୀ ମଣିଷଟି ।

ତପନ ରାୟଙ୍କୁ କଥା କହିବାକୁ ଡରମାଡିଲା । ବନ୍ୟାରେ ଉପୁଡି ପଡିଥିବା ଗଛଟିକୁ କଥା କୁହାଯାଏ ନାହିଁ – କହି ହୁଏ ନାହିଁ ।

ସେ ଅପେକ୍ଷା କଲେ । ସେଇ ଅବସରରେ କିନ୍ତୁ ଭାବିଗଲେ ଅନେକ କଥା । ପତ୍ରିକାରେ ତା' ଆରଦିନ ବଡ ବଡ ଅକ୍ଷରରେ ବାହାରିଯିବ, 'ବନ୍ୟାରେ ସବୁ ହରେଇଥିବା ଏକାକୀ ମଣିଷ' – 'ବନ୍ୟାରୁ ବର୍ତ୍ତି ଆସିଥିବା ମଣିଷର ମର୍ମନ୍ତୁଦ କାହାଣୀ' ଇତ୍ୟାଦି । ଚହଳ ପଡିଯିବ ରାଜଧାନୀରେ, ସହରମାନଙ୍କରେ । ପତ୍ରିକାରେ ଫଟ ମଧ ବାହାରିଥିବ ଏଇ ଦରବୁଢା ମଣିଷର । ଏମିତି ଲଥାଣ୍ଡୁମୁଣ୍ଡ ହେଇ ଆଖିବୁଜି ବସିଥିବା ଚିତ୍ର ତା'ପରେ ଆଲୋଚନା ସଭା ! ବନ୍ୟାପାଣି ! ସେଇଠି ତା' ନିଜ ତୁଣ୍ଡରେ ତା'ର କାହାଣୀ ଶୁଣେଇଦିଆଯିବ ।

ଟେରିଫିକ୍ !! ଜମିଯିବ ଜିନିଷଟା !!

ତପନ ରାୟ ହଠାତ୍ ଅଭ୍ୟାସରେ କହି ପକାଇଲେ, "ଆଚ୍ଛା, ତା'ହେଲେ ଆପଣଙ୍କୁ ଅଶେଷ ଧନ୍ୟବାଦ ।" 'ମୋ' ତରଫୁ, ଅନ୍ୟମାନଙ୍କ ତରଫରୁ' ...ଇତ୍ୟାଦି ଧାରାବାହିକ କଥା ବାହାରି ଆସୁଥିଲା – ତାକୁ ଯଥାସମୟରେ ରୋକିନେଲେ ତପନ ରାୟ । କହିଲେ, "ତା'ହେଲେ ସାଖୀ ମଉସା ! ତମେ ମୋ ସାଙ୍ଗରେ ଆମ ତମ୍ବୁ ଭିତରକୁ ଆସ । ସକାଳୁ ତୁମ ପାଇଁ ବ୍ୟବସ୍ଥା କରିଦେବା ।" – 'ଗଛମୂଳେ ଆଉ କିଛି ଘଣ୍ଟାଏ ଯଦି ବସିରହିଯାଏ ତେବେ ବିଶେଷ କ୍ଷତି କ'ଣ ?' ଚିନ୍ତା କରୁଥିଲା ଭଳି ତାଙ୍କ ସ୍ୱର ।

କିନ୍ତୁ ବିନା ପ୍ରତିବାଦରେ ସାଖୀ ସାସମଲ ଆଦେଶ ପାଇଲା ଭଙ୍ଗୀରେ ଉଠି ଠିଆହେଲା । ତପନ ରାୟ ଇତସ୍ତତଃ କଲେ । ଯନ୍ତ୍ରଟି କାନ୍ଧରେ ଝୁଲାଇ ଟର୍ଚ୍ଚ ଟିପିଲେ । – "ଯିବା ତା'ହେଲେ ମଉସା, ନା' କ'ଣ କହୁଚ ?" ସେ ଆଶା କରୁଥିଲେ ଯେ ସାଖୀ ସାସମଲ ଯିବାକୁ ମନାକରିଦେଉ । ସେ ତ ପୁଣି ପାଣି ପିଇବାକୁ ମନାକରିଦେଇଛି !

କିନ୍ତୁ ସାଖୀ ନୀରବରେ ଆଗରୁ ଗୋଡ କାଢିଲା । ତପନ ରାୟ ଅଗତ୍ୟା ତା' ସାଙ୍ଗରେ

ତମ୍ବୁ ଆଡକୁ ଚାଲିଲେ । ବାଟରେ କଥାବାର୍ତ୍ତା ପ୍ରାୟ ନାହିଁ ।

ତାଙ୍କ ନିଜ ତମ୍ବୁରେ ଦୁଇ ଚାରିଖଣ୍ଡ ପାର୍ଶଲ ଅଖା ଉପରେ ସାଖୀ ମଉସାଙ୍କ ପାଇଁ ସୁବିଧା କରିଦେଇ ତପନ ରାୟ ନିଶ୍ଚିନ୍ତ ଆରାମ ଚୌକୀରେ ବସି ଖଟ ଉପରେ ଗୋଡ ଲମ୍ବେଇଦେଲେ । ଛୋଟ ଟେବୁଲ ଉପରେ ଭାରି ସୁନ୍ଦରିଆ ବୋତଲଟିଏ ଆଉ ପାତଳ ଝିଲ୍ ଝିଲ୍ ଗ୍ଲାସ୍‌ଟିଏ ଥୁଆହେଲା । ଟାଇପ୍ ଯନ୍ତ୍ରଟିଏ ବାହାରିଲା । ନିରୋଳାରେ ତପନ ରାୟ ବ୍ୟବସାୟରେ ମନଦେଲେ ।

ତା' ଆରଦିନ ବହୁତ ଯୁକ୍ତିତର୍କ ପରେ ସ୍ଥିର ହେଲା ଯେ ସାଖୀ ସାସମଲଙ୍କୁ ଦିନ ଭିତରେ ଦୁଇଟି ଛତୁ ପୁଡିଆ ଛଡା ଆଉ କିଛି ଦିଆଯିବ ନାହିଁ । ଅନ୍ୟାନ୍ୟ ଅପରିଚିତ ଖାଦ୍ୟ ଖାଇଲେ ସେ ଅସୁସ୍ଥ ହେବାର ଆଶଙ୍କା କରାଗଲା । ସେହିପରି ଖୋଲା ପବନରେ ସବୁବେଳେ ମେଲା ଦେହରେ ରହି ଆସିଥିବାରୁ ତାଙ୍କୁ ଅଯଥା ଲୁଗାପଟା ଘୋଡେଇବା ନିରାପଦ ନୁହେ ବୋଲି ବିଚ୍ରା କରାଗଲା । ତା'ର ହିତ ଦୃଷ୍ଟିରୁ ସମସ୍ତେ ତାଙ୍କୁ ଚାରିଆଡୁ ବେଢିଗଲେ । କାରଣ ଆସ୍ତେ ଆସ୍ତେ ସାଖୀ ସାସମଲ, ଗହୀର ସମୁଦ୍ରରୁ ଧରାହୋଇ ଆସିଥିବା ବିଚିତ୍ର ମାଛଟିଏ ପରି ବହୁ ଲୋକଙ୍କ କୌତୂହଳ ଜାଗ୍ରତ କଲା । ତପନ ରାୟଙ୍କର ଲେଖା ପଢି ଶହ ଶହ ଲୋକ ସେମାନଙ୍କ ବୈଠକଖାନାମାନଙ୍କରେ ଅଶ୍ରୁମୋଚନ କଲେ । ଅଯାଚିତ ଭାବରେ ନୂଆ ଜାମା, କମ୍ବଳ, କ୍ଷୀର, ରୁଟି, ନାନା ଜାତି ମାଂସ ପାର୍ଶଲ ଯୋଗେ ତପନ ରାୟଙ୍କ ମାର୍ଫତ ସାଖୀ ସାସମଲ ପାଖରେ ପହଞ୍ଚିବାକୁ ଲାଗିଲା ।

ସାତଦିନ ଭିତରେ ତପନ ରାୟଙ୍କ ଦପ୍ତରରୁ ଶହ ଶହ ଧନ୍ୟବାଦ ଚିଠି ପଠାଗଲା । ସାଖୀ-ସାହାଯ୍ୟ-ପାଣ୍ଠିର ସାଧାରଣ ସମ୍ପାଦକ ଶ୍ରୀ ତପନ ଶୋଭନ ରାୟ ରାଜଧାନୀରୁ ତାଙ୍କର ଦରକାରୀ ପୋଷାକପତ୍ର ମଗେଇ ନେଇ ସାରିଥିଲେ ବିଶିଷ୍ଟ ବିଶିଷ୍ଟ ଲୋକଙ୍କୁ ସ୍ୱାଗତ ଜଣାଇବାକୁ । ତମ୍ବୁ ଭିତରେ ଏବଂ ବାହାରେ ଦିଶିଲା ଭଳି ଅନେକ ମଇଳା । ସାଖୀ ମୁଣ୍ଡରେ ତେଲ ନାହିଁ । ଘୋଡେଇ ହେବାକୁ କନା ନାହିଁ । ଆଖି ତଳେ ଲୁହ ଶୁଖି ରହିଥାଏ । ତପନ ରାୟଙ୍କ ଆଖି ପତାରେ ବି ଲୁହ । ତାଙ୍କ ମୁହଁରେ ଚାରି ପାଞ୍ଚ ଦିନର ଦାଢି । ସମସ୍ତଙ୍କ ଆଖିରୁ ଲୁହ ଝରିଛି । ସମସ୍ତଙ୍କ ମୁହଁରେ କିଛି କିଛି ରୁଢ । ମଝିରେ ଆଖି ଶୁଖି ଆସିଲେ କେମିତି ଗୋଟାଏ ଉତ୍କଟ ଧୂଆଁ ଉଠୁଛି – ସମସ୍ତଙ୍କ ଆଖି ପୁଣି ଜକେଇଯାଉଛି ।

ଖବର ପହଞ୍ଚିଲା ଯେ ତିନିଟା ବଡ ଗାଡି ରାଜରାସ୍ତାରୁ ତଳକୁ ମୋହିଁଲେ । ତପନ ରାୟ ତତ୍ପର ହୋଇଗଲେ । ରୁମାଲରେ ଆଖି ମନ୍ଥି ନେଲେ । ସାଖୀ ମଉସାଙ୍କୁ ପରିଚିତ ଭଙ୍ଗୀରେ ବସେଇଦେଲେ । ତିନି ଚାରିଜଣ ସ୍ୱେଚ୍ଛାସେବୀ ବ୍ୟସ୍ତ ହୋଇ ଭିତର ତମ୍ବୁରୁ ଯାହା ଆଣିଲେ, ପୁଣି ତାକୁ ବୋହି ନେବାକୁ ଲାଗିଲେ । ପ୍ରଚୁର ଧୂଳି ଉଡେଇ ତିନୋଟି ବଡ ବଡ ବିଦେଶୀ ଗାଡି ଆସି ଅଟକିଗଲା । ପ୍ରଥମରୁ ଓହ୍ଲେଇଲେ ତିନୋଟି ମୋଟୀ ମହିଳା । ସିଲ୍‌କ ଶାଢୀ, ଚମପଟା ମୁଣ୍ଡ – ପ୍ରସ୍ତ ପ୍ରସ୍ତ ଚର୍ବିର କଣ୍ଢେଇ ଗୁଡିଏ । ଦ୍ୱିତୀୟଟିରୁ ଓହ୍ଲେଇଲେ ଗୋଛାଏ ସଫା ସଫା ମଣିଷ – ଟୋପିପିନ୍ଧା, ଚଷମାପିନ୍ଧା, ସୁଟ୍‌ପିନ୍ଧା କିମ୍ବା ଖଦଡପିନ୍ଧା । ତୃତୀୟରୁ ବଡ ବଡ ଫଟ

ଉଠେଇବାର ଯନ୍ତ୍ର ଧରି ଆଉ ଗୋଛାଏ ମଣିଷ – ସାନ ବଡ ପାର୍ଶଲ କିଛି । ତପନ ରାୟ ଥରେ ସେଆଡେ ଚହିଁଦେଇ ଏକ ଲୟରେ ଟାଇପ୍ କରି ଲାଗିଥାନ୍ତି । ତାଙ୍କ ତମ୍ବୁ ପାଖରେ ସମସ୍ତେ ଆସି ଠିଆହେବା ପରେ ମଧ ତାଙ୍କ ଧ୍ୟାନଭଙ୍ଗ ହେଉନଥାଏ ।

"ଓ, ଦେଖୋ, ୱ୍ହ୍ ଆଦମି ବୈଠା ହେ ।"

"ହାଁ, ହାଁ, ୱହି !! – ସଖିଆ ସସମଲିଆ !!"

ଚୁ' ଚୁ' ଶବ୍ଦ ଚାରିଆଡୁ ଶୁଣି ଆସ୍ତେ ତପନ ରାୟ ମୁହଁ ଟେକି ସେମାନଙ୍କୁ ଚାହିଁଲେ ଏବଂ ବିଶୁଦ୍ଧ ଇଂରାଜୀରେ...ପଚାରିଲେ ସେମାନେ କ'ଣ ଚାହାନ୍ତି । ତା'ପରେ ଲୋକ ଘେରିଗଲେ । ଫଟଉଠାଳି ସର୍ ସର୍ ଚଳନ୍ତି ଫଟ ଟାଣି ଚାଲିଲେ । ମୋଟୀ ମୋଟୀ ମାଇକିନିଆମାନେ ବାରମ୍ବାର ଆଖି ପୋଛିଲେ – ରୁମାଲ ଦେହରୁ ଲୁହ ମହକିଗଲା । ମୋଟା ମୋଟା ମଣିଷମାନେ ଥାକମାରି ପାର୍ଶଲ ରଖେଇଲେ । ତପନ ରାୟଙ୍କ ଗୁଡିଆ କାନ୍ଦୁରା–ମୁହାଁ ସେଚ୍ଛାସେବୀମାନେ ଗମ୍ଭୀର ଭାବରେ ସବୁ ପାର୍ଶଲର ଦାୟିତ୍ୱ ନେଲେ ।

ସବୁଠାରୁ ମୋଟୀ ମାଇକିନିଆଟିର ହାତରେ କିଏ ଜଣେ ଗୋଟିଏ ଅତି ସୁନ୍ଦର ରୂପା 'ଝରି' ଧରେଇଦେଲା । ପ୍ରସ୍ତାବ ହେଲା ଯେ ସାଖୀ ସାସମଲ ଆଞ୍ଜୁଳା କରି ବସିବ ଓ ତା' ଆଞ୍ଜୁଳାରେ 'ଝରି'ରୁ ଢଳାହେବ ପାୟସ ବା ରାବିଡି ବା ସେପରି କିଛି । ସେତିକିବେଳେ ଚଳନ୍ତି–ଫଟ ଉଠିବ ।

ତପନ ରାୟ ଖୁବ୍ ତତ୍‌ପର – ଖୁବ୍ ଆଗ୍ରହୀ । ସାସମଲ ପଛରେ କେବଳ ସେ ହିଁ ଠିଆହେବ । ସାସମଲର ରକ୍ଷାକର୍ତ୍ତା । ମଲା ବାଘ ଉପରେ ପାଦ ମଡେଇ ନଳୀ ହାତରେ ଅଳ୍ପ ହସୁଥିବା ପ୍ରବୀଣ ଶିକାରୀ । "ଆଞ୍ଜୁଳା କର ମଉସା ! ଏ ଆସିଛନ୍ତି ବଡ ସହରରୁ କୋଟିପତିମାନେ । ତୁମ ଦୁଃଖ ସହି ନପାରି ଆସିଛନ୍ତି । ଶ୍ରୀମତୀ କୁର୍ତ୍ତାବାଲା – ଶହ ଶହ ଶିଳ୍ପ ଅନୁଷ୍ଠାନର ମାଲିକାଣୀ । ନାରୀ ନେତ୍ରୀ କୁମାରୀ ସୁଶୀଲା ବେନ୍ – ବିଦେଶୀ ପାଣ୍ଠିରେ ଉଦ୍‌ବାସ୍ତୁ ମାଇକିନିଆଙ୍କ ପାଇଁ ଅସଂଖ୍ୟ ଆଶ୍ରମ ଚଳାନ୍ତି ! ଆଉ ସେ ହେଉଛନ୍ତି ମିସେସ୍ ଚକ୍ରବର୍ତ୍ତୀ – କିଏ ତାଙ୍କୁ ନଜାଣେ ! ସେ ବା' କାହାକୁ ନ ଜାଣନ୍ତି ! – ଆଚ୍ଛା, ରେଡି..."

ପଛରୁ ନଇଁପଡି ତପନ ରାୟ ମଉସାର ଆଞ୍ଜୁଳାକୁ ସଜାଡି ଦେଲେ । ଶ୍ରୀମତୀ କୁର୍ତ୍ତାବାଲା କ୍ୟାମେରା ଆଡକୁ ଚାହିଁ ଝରି ଟେକିଲେ । ହାତରେ ଥାକେ ସୁନା କଙ୍କଣ ପଛକୁ ଚମଡା ମୁଣା ଓହଳି ରହିଲା । ସର୍ ସର୍ ଫଟ ଉଠା ଚାଲିଲା ।

ସାଖୀ ଚାହିଁଲା ଝରି ମୁହଁକୁ । ଟୋପାଏ ହେଲେ ଝରୁ ନଥାଏ ତା' ଶୂନ୍ୟ ଆଞ୍ଜୁଳାକୁ । ସେ ମୁହଁ ଟେକି ମହକୁଥିବା ମାଇକିନିଆକୁ ଚାହିଁଲା । ସମସ୍ତଙ୍କୁ ଥରେ ଚାହିଁଗଲା । ତା' ଆଞ୍ଜୁଳା ଫିଟିଗଲା ।

ସମସ୍ତେ ହା ହା କରି ଉଠିଲେ । ସାଖୀ ଉଦ୍ଧୁକି ହେଲା ଠିଆହେବାକୁ । ଫୋଟଉଠାଳି ଯନ୍ତ୍ର ବନ୍ଦକରି ପାଟିକଲା – ଆବେ ସବ୍ ବିଗାଡ୍ ଦିଆ । ତରବର ହୋଇ ଭୟରେ ଘୁଞ୍ଚି ଆସିଲେ ଶ୍ରୀମତୀ କୁର୍ତ୍ତାବାଲା । ସମସ୍ତେ ଘୁଞ୍ଚିଗଲେ ଭୟରେ । ତପନ ରାୟ ସାଖୀ ସାସମଲର କାନ୍ଧ ଉପରେ

ମାଡି ବସିଲେ । କାଳେ କ'ଣ କହିଦେବ ବୋଲି ତା' ମୁହଁରେ ହାତଟିଏ ଚପି ଧରିଲେ । ସାଖୀ ନିଃଶ୍ୱାସ ପାଇଁ ଛଟପଟ ହେଲା ।

ବାହାରେ ପାଟିତୁଣ୍ଡ ହେଲା । ସେଚ୍ଛାସେବୀ ଦୁଇଜଣ ଭିତରକୁ ଦଉଡିଆସିଲେ । ତପନ ରାୟ ଚପା ଗଳାରେ କହିଲେ, "ସମ୍ଭାଳ ଏଇଟାକୁ । ଘୁଷୁବ ନାହିଁ କି ବୋଲିବ ନାହିଁ ।" – ସାଖୀକୁ ଠେଇଁ ଚକଟି ସେ ତମ୍ବୁ ବାହାରକୁ ଆସି ଗୋଟାଏ ପାଟିକଲେ "ତୁନିପଡନ୍ତୁ ।"

ସମସ୍ତେ ତାଙ୍କୁ ଚାହିଁଲେ । ସେ ଚିକ୍କଣ ହସ ଭିତରୁ କହିଲେ, "ଅସହ୍ୟ ଦୁଃଖର ଆଘାତରେ ସାଖୀ ସାସମଲର ଏମିତି ମଝିରେ ମଝିରେ ପାଗଳାମି ଦେଖା ଦେଉଛି । ଆପଣମାନେ ଆଦୌ ବ୍ୟସ୍ତ ହେବେ ନାହିଁ । ଆମେ ତା'ର ସବୁପ୍ରକାର ତତ୍ତ୍ୱାବଧାନ ନେଉଛୁ ।"

ମାଈକିନିଆ ମରଦମାନଙ୍କ ଗୋଠଟିକୁ ଆସ୍ତେ ଗାଡିଆଡକୁ ଅଡେଇ ନେଇଗଲେ ତପନ ଶୋଭନ ରାୟ । ସମସ୍ତଙ୍କର ପ୍ରଶ୍ନର ଉତ୍ତର ଦେଇ ଦେଇ, ସମସ୍ତଙ୍କୁ ଖୁସି କରି କରି, ହସରେ ମହୁ ବର୍ଷି ବର୍ଷି ବିଦାୟ ଦେଲେ । ଶ୍ରୀମତୀ କୁର୍ତ୍ତାବାଲା ଚମଡା ମୁଣା ଫିଟାଇଲାବେଳେ ଥରେ ଫଟ ଉଠାଳିକୁ ଚାହିଁଦେଲେ । ସେ ବୁଝିଗଲା । କାନ୍ଧ ଉପରେ ଥୋଇଲା ଯନ୍ତ୍ର । ଶ୍ରୀମତୀ ହଜାରେ ଟଙ୍କିଆ ଦଶଟି ନୋଟ୍ ଗଣିଲେ । ସର୍ ସର୍ ଫଟ ଉଠିଲା । ତପନ ରାୟଙ୍କୁ ବଢେଇଦେଲେ । ଫଟ ଉଠିଲା । ସମସ୍ତେ ତାଙ୍କ ପିଠି ଆଉଁସି କରମର୍ଦ୍ଦନ କରି କେତେ କେତେ ପ୍ରଶଂସା କଲେ । ଗାଡିଗୁଡିକ ମୁହଁ ବୁଲେଇ ଧୂଳି ରାସ୍ତାରେ ବାହୁଡିଗଲେ । ମୁଣାରେ କିଛି ସମୟ ହାତ ପୂରେଇ ଚାହିଁରହିଲେ ତପନ ରାୟ, ଧୂଳି ଭିତରେ ଲିଭିଯାଉଥିବା ବିଦେଶୀ ଗାଡିଗୁଡିକୁ ।

ତମ୍ବୁ ସାମନାରେ ଖଣ୍ଡେ ଚୌକିରେ ବସିପଡି ସେ ଚାହିଁଲେ ସାଖୀ ସାସମଲକୁ । କହିଲେ, "ଶୁଣ୍ ସାଖୀଆ, ତୁ ଯଦି ଠିକଣାରେ ଏଣିକି କାମ ନ କରୁ ତେବେ ଜାଣି ରଖିଥା, ମୁଁ କିଛି ଛାଡିବା ଲୋକ ନୁହେଁ! ତୁ ଶଳା, ଏଠି ପାଣି ଘେରରେ ମରୁଥିଲୁ । ତତେ ଦୁଇଓଳି ଖାଇବାକୁ ଦେଲାରୁ ବାହାନା ବାହାରୁଚି ? ବୁଝି ଖବରଦାର । ରାତି ପାହିଲେ ଆମେ ସହରକୁ ଯିବା । ସେଇଠି ବହୁତ କଥା ହବ । ଯଦି ବୋଲ ନ ମାନିଚୁ ତେବେ ସହରୀ ପଙ୍କ ଭିତରେ ପୋତି ମାଟି ମଡେଇଦେବି !"

ସାମ୍ନାରେ ଚାରିଜଣ ସେଚ୍ଛାସେବୀଙ୍କୁ ଦେଖି ଭୂରୁ କୁଞ୍ଚେଇ ପଚାରିଲେ, 'ଶେଖର ସାମନ୍ତ କାହିଁ ?' ପଛରୁ ଶୁଭିଲା, 'ଏଇଠି ।' – ସେ ଚମକିଲା ପରି ବୁଲି ଚାହିଁଲେ, 'ସାମ୍ନାକୁ ଆସ ଆଉ ଶୁଣ !' –

ମୁଣାରୁ ଶହେଟଙ୍କିଆ ନୋଟ କାଢି କହିଲେ – ଆଜି ଯାହା ମିଳିଲା ତୁମେ ସବୁ ବାଣ୍ଟି ନେଇଯାଅ । ପାଞ୍ଚଟି ନୋଟ୍ ଥିଲା ତାଙ୍କ ହାତରେ । ସେ ଖଣ୍ଡିଏ ଖଣ୍ଡିଏ ସମସ୍ତଙ୍କୁ ବଢେଇଦେଲେ ।

ଶେଖର ସାମନ୍ତ ହାତ ବଢେଇବାରେ ସାମାନ୍ୟ ଡେରିକଲା । ତପନ ରାୟ ତା' ଆଖିକୁ ଚାହିଁଲେ କଟମଟ – "କ'ଣ ସାମନ୍ତ ! କଲେଜରେ ପାଠ ପଢୁଚ ପରା ! ଏମାନେ ସିନା ବାରବୁଲା । ତୁମର କ'ଣ ଲୋଭ ହବା ଉଚିତ୍ ? ତୁମ ସାଙ୍ଗ ସମସ୍ତେ ଫେରିଗଲେ, ତୁମେ ପରା ରହିଛ ସେବା କରିବାକୁ ! ଏତେ ଅସନ୍ତୋଷ କାହିଁକି ? ହେଇ, ମୁଁ ତ ଗୋଟିଏ ପଇସା ନେଲି ନାହିଁ !" ସେଚ୍ଛାସେବୀ

ଘୁଞ୍ଚିଗଲେ ।

ଗୀତ ବାଜିଲା । ଧୂପ ଲାଗିଲା । ଖିଆପିଆ ଚାଲିଲା । ତପନ ରାୟ ଦ୍ୱିତୀୟ ବୋତଲର ଠିପି ଖୋଲିଲେ । ହୋ ହୋ ହସ ଭିତରେ କହିଲେ, "ଯେତେ ସବୁ ଭାରି ଭାରି ପାର୍ଶଲ, ତୁମେ ଉଠେଇପାରୁନାହଁ; ସେ ଶାଳା ସାଖିଆକୁ ଲଗେଇଦିଅ ! ତା' ନାରେ ସବୁ ପାର୍ଶଲ ଆସିଛି ପରା...ଛେନା, ବଟର, ଅଣ୍ଡା । ସେ ଶଳା ବୋହିବ ନାହିଁ ତ କ'ଣ ଆମେ ବୋହିବା ?" ଗୋଟାଏ ତୁହା ହସ ପରେ – "ଆଉ ଶୁଣ, ଏଗୁଡାକ ବିକ୍ରି କଲେ ସିନା ଏ ବଳଦ ପାଇଁ କୁଣ୍ଡା କିଣାହବ – ନହେଲେ ଛତୁଆ ଖର୍ଚ୍ଚ କୋଉଠୁ ଆସିବ ?" ତୁହାକୁ ତୁହା ହସ ଉତୁରି ପଡୁଥାଏ । ଜଣେ ପ୍ଲେଟ୍ ଚାଟି ଦେଇ ଉଠିଲା ଆଉ ଯୋଡାଏ ମାଂସ ଟିଣ ଫିଟେଇବାକୁ ।

ବାହାରୁ ତମ୍ବୁ ଭିତରଟା ଦିଶୁ ନଥିଲା । ସେ ଭିତରକୁ ପଶୁ ପଶୁ କୁହାଟିଲା – "ଧାଇଁ ଆସ, ଧାଇଁ ଆସ ।"

ସମସ୍ତେ ଖପ୍ ଖାପ୍ ଡେଇଁ ଦୌଡିଆସିଲେ । ପଛରେ ତପନ ରାୟଙ୍କ ହାତରେ କଳା ଘୁମର ମେଘ ରଙ୍ଗର ପିସ୍ତଲଟିଏ ।

"ସାଖୀ ସାସମଲ କାହିଁ – କାହିଁ ସାଖୀ ?"

"ସେ ଖସିପଳେଇଲା ।"

"ଅସମ୍ଭବ ! – ସେ ଏଇଠି ଥିବ ! – ସେ ଟୋକା କାହିଁ ?"

ଶେଖର ସାମନ୍ତ ତମ୍ବୁ ପାଖରୁ ଆସି ସାମନା ଆଲୁଅରେ ଠିଆହେଲା । ତପନ ରାୟ ଝପଟିଗଲେ ତା' ଉପରକୁ । – "ତୁଇ ତାକୁ ଫିଟେଇ ଦେଇଚୁ । ବତା, ସେ କାହିଁ ?"

ଶେଖର ବିନା କାରଣରେ ଖିଲ୍ ଖିଲ୍ ହସିଦେଲା ।

ତପନ ରାୟ ଫିକ୍‌କିନା ହସିଦେଇ ବାଁ ହାତରେ ତା' ପିଠି ଥାପୁଡେଇ କହିଲେ, "ଆଚ୍ଛା ତା'ହେଲେ ତୁ ଥଟ୍ଟା କରୁଛୁ ? ମଜା ଦେଖିବାକୁ ତାକୁ କୋଉଠି ଲୁଚେଇ ଦେଇଛୁ ? ମୋ ସୁନାଭାଇଟା ପରା – ତାକୁ ନେଇ ଏମିତି ଖେଳିଲେ ଆମେ ସମସ୍ତେ ବୁଡିଯିବା । ସାଖୀ ସାସମଲ ମୋ ଜୀବନ, ମୋର ସର୍ବସ୍ୱ, ମୋର ଧନ୍ଦା !"

ଖୁବ୍ ପରିଷ୍କାର କଡା ସ୍ୱର ଶେଖରର – "ମୁଁ ଜାଣିନାହିଁ ।"

"ଏଁ ? କ'ଣ କହିଲୁ ?" – ତାକୁ ଗୋଟାଏ ଧକ୍‌କାରେ ପେଲିଦେଇ ତପନ ରାୟ ଅନ୍ଧାର ଭିତରକୁ ଖେପଗଲେ । ହାତରେ ଟର୍ଚ୍ଚ ଧରି ଜଣେ ଦୌଡି ଆସିଲା । ଚାରିଆଡେ ଲାଇଟ୍ ମାରି ମାରି ଦେଖିଗଲେ ଶିକାରୀମାନେ । ଆଖପାଖରେ ଲୁଚିବାକୁ ଥାନ ନାହିଁ । ଗଲା କୁଆଡେ ?

ତପନ ରାୟ ଚହଟି ଆସିଲେ ତମ୍ବୁ ଭିତରକୁ । – "ବେ' ଟୋକା, କହୁଚୁ ନା' ଦେଖିବୁ ! ଯଦି ମୋତେ ଚିହ୍ନୁ, ସେଥିପାଇଁ ବେଶି ବେଳ ଲାଗିବ ନାହିଁ । ଗୋଟିଏ ଗ୍ରେଟରେ ଶୁଆଇ ଦେବି । ମୋ ପାଟିରୁ ଆହାର ଛଡେଇନେଲେ ମୁଁ କାହାକୁ ଛାଡେନାହିଁ । ତୁ ଭଲରେ ଭଲରେ ବତେଇ ଦେ', ତତେ ଏଇଲାଗେ ହଜାରେ ଟଙ୍କା ଇନାମ୍ ଦେବି ! – ଏଇ, ନେ ।" ତପନ ରାୟ ଖଣ୍ଡେ

ହଜାରେଟଙ୍କିଆ ନୋଟ୍ ବା ହାତରେ ଟାଣିଆଣି ଟେକି ଧରିଲେ ।

"ମୁଁ ଆଦୌ ଜାଣିନାହିଁ ସେ କୁଆଡେ ଗଲା । ମୁଁ କିନ୍ତୁ ଖୁସି ଯେ ମୋ ସାଖୀ ମଉସା ତୁମ ହାତରୁ ଖସିଗଲା । ମୁଁ କାଲି ସାରା ସହରରେ ତୁମ କଥା ଖୋଲିଦେବି ।"

ନୋଟ୍‌ଟିକୁ ଲୋଚାକୋଚା କରି ମୁଣାରେ ଭର୍ତ୍ତି କରିଦେଲେ ତପନ ରାୟ । ଦାନ୍ତସନ୍ଧାରୁ କହିଲେ, "ନିମକହାରାମ୍! ସେ ସୁବିଧା ତୁ କାହୁଁ ପାଇବୁ ? କାଲି ତୋ ଫଟୋ ତଳେ ଆମ୍ବଳିର ଗଳ୍ପ ବାହାରିଯିବ ସବୁ ପତ୍ରିକାରେ – କେମିତି ପାଣି ଘେର ଭିତରକୁ ସମସ୍ତେ ମନାକଲାବେଳେ ତୁ ଡେଇଁଲୁ ଏବଂ ଫେରିଲୁ ନାହିଁ । ଏଇଠି ଗଳିକରି ତତେ ନଈ କାଦୁଅରେ ପୋତିଦେବାକୁ ବେଳ ଲାଗିବ ନାହିଁ । ମାତ୍ର ମିନିଟିଏ ଡେଲି । କହ କୋଉଠି ଛାଡିଲୁ ସାଖୀ ସାସମଲକୁ ? ମୁଁ ବିଦେଶୀ ଦାତାମାନଙ୍କୁ କାଲି କେମିତି ମୁହଁ ଦେଖେଇବି ! ବତା ବେ ଚଞ୍ଚଳ । ଗର୍ଜିଲେ ତପନ ରାୟ ।"

ଚମକିଗଲା ସେ ଖଣ୍ଡମଣ୍ଡଳ ଗୋଟାଏ ଆବାଜରେ । ଖୋଜାଳିମାନେ ଦୌଡିଆସି ଧକେଇଲେ । ଦୂରରେ ବିଲୁଆ ପଶିଗଲେ ପାଣିରେ...ଚବର ଚବର...ଆହୁରି ଦୂରରେ କ'ଣ ସବୁ ଥମିଗଲା !

ଏ ଟୋକାକୁ ନଈ କାଦୁଅରେ ପୋତିଦେଇ ଆସ !...

ରାତି ସାରା ପାଣି କାଦୁଅରେ ନାନା ଜାତି ଶବ୍ଦ । ତମ୍ବୁରେ ଟଙ୍କା ପଇସା ଗଣାଗଣି, ଖିଆପିଆ, ହସଖୁସି, ପାଟିତୁଣ୍ଡ । ସକାଳ ପାହିଲେ ତମ୍ବୁ ଟେକାହେବ । ପ୍ରଚୁର ହେବ କେମିତି ଦୁଃଖରେ ଆତୁର ହୋଇ ସାଖୀ ସାସମଲ କାହାକୁ ଖୋଜି ଖୋଜି ନଈରେ ପଶିଗଲା । ...ତା' ଦୁଃଖରେ ବିହ୍ୱଳ ହୋଇ କଲେଜର ପ୍ରତିଭାବାନ ଛାତ୍ର ଶେଖର ସାମନ୍ତ କେମିତି ତାକୁ ବଞ୍ଚେଇବାକୁ ପାଣିରେ ଝାସଦେଲା ଏବଂ ଫେରିଲା ନାହିଁ । ...କେମିତି ତପନ ଶୋଭନ ରାୟ ଏବଂ ସହକର୍ମୀମାନେ ପ୍ରାଣମୂର୍ଚ୍ଛା ପ୍ରଯତ୍ନ କଲେ ଏବଂ କରୁଛନ୍ତି ଉଭୟଙ୍କ ଶବ ଉଦ୍ଧାର ପାଇଁ ।...

ସୂର୍ଯ୍ୟ ଉଇଁଆସୁଥାଏ । ଆଲୁଅରେ ପ୍ରଥମ ପ୍ରହର । ଗୋଟିଏ ଜିପ୍ ଗାଡିରୁ ଓହ୍ଲାଇଲେ ଜଣେ ପ୍ରତିଦ୍ୱନ୍ଦୀ ସାମ୍ବାଦିକ । ତପନ ରାୟଙ୍କ ଭୂରୁ କୁଞ୍ଚେଇଗଲା । ଓହ୍ଲେଇଲେ ଦୁଇଜଣ ପୋଲିସ ଅଫିସର । ଖପ୍‌ଖାପ୍ ଡେଇଁଲେ ଚାରୋଟି ବନ୍ଧୁକଧାରୀ ଏବଂ ଶେଷରେ ଜିଭ ଲହ ଲହ କରି ଗୋଟିଏ କାଳିଆ କସରା କୁକୁର । ତପନ ରାୟଙ୍କ ପଛପଟେ କନକନ ହେଲେ ତାଙ୍କ ଗୁଡିଆ ସହକର୍ମୀ ଚାରୋଟି ।

"ତପନ ଶୋଭନ ରାୟ ଆପଣ ?"

"ଆଜ୍ଞା !"

"ଆମକୁ ଆମ ବନ୍ଧୁ ବାଟଭାଙ୍ଗି ଏଇଆଡେ ବୁଲେଇ ନେଇଆସିଲେ । ସାଖୀ ସାସମଲକୁ ଟିକିଏ ଦେଖିଥାନ୍ତେ ।"

"କ'ଣ ଆଉ କହିବି ସାର୍ ! ଆମ ଭାଗ୍ୟ ଖରାପ । ଏତେ ପରିଶ୍ରମ କରି ବୃଥା ହୋଇଗଲା । ଆମ ହାତଗୋଡରୁ ଦେଖନ୍ତୁ । କାଲି ରାତିଠୁ ସାଖୀ ପାଗଳ ଭଳି ଧାଇଁଲା । କହିଲା, ମୋ ବାପ

ପାଖକୁ ଯିବି, ମୋ ପୁଅ...ମୋ ମାଇପ । ଆମେ ଯେତେ ଚେଷ୍ଟା କଲୁ ସେ ସମ୍ଭଳା ଗଲା ନାହିଁ । ପଶିଗଲା ସୁଅ ଭିତରେ ।...ସବୁଠୁ ଟ୍ରାଜେଡି ହେଲା ସାର୍ – ଆମର ସେ ଟୋକା ଶେଖର ସାମନ୍ତ... ।"

ମୁହଁ ଘୋଡେଇ ସାମାନ୍ୟ କାନ୍ଦିଲେ ତପନ ରାୟ ।

"କ'ଣ ହେଲା ?"

"ସେ ବି ସାର୍ ପାଣିରେ ପଶିଗଲା, ଆଉ ଫେରିଲା ନାହିଁ । ଏ କାହାଣୀ ଅମର ହୋଇ ରହିବ ସବୁଦିନ ପାଇଁ, ମୁଁ ହଲପ୍ କରି କହୁଛି..."

ହଠାତ୍ ସମସ୍ତେ ଚାହିଁଲେ ତମ୍ବୁ କଡରେ ଠିଆହୋଇଥିବା କାଦୁଅ ମଳିଛୁଆ ଏକ-ବସ୍ତ୍ରୀ ଲୋକଟିକୁ ।

ସାମ୍ବାଦିକ କହିଲେ, "ଏଇ ତ ସାକ୍ଷୀ ସାସମଲ !"

"ଏଁ!" ...କହି ଡେଇଁଲେ ତପନ ରାୟ । ଭେଁ ଭେଁ ରଡିଲେ – "ମୋ ମଉସା, ତମେ କୋଉଠି ଥିଲ ? ତୁମକୁ ଖୋଜି ମୋ' ଭାଇ ମରିଗଲା ।" ସାକ୍ଷୀ ସାସମଲ ସେମିତି ଠିଆହୋଇଥାଏ । ଚାହିଁଥାଏ ତମ୍ବୁ ସାମନାରେ ଘୋଡେଇ ହୋଇ ପାରୁ ନ ଥିବା ଚବକାଏ ରକ୍ତକୁ ।

ସମସ୍ତେ ଚାହିଁଲେ ସେଇଆଡେ । 'ସେଇଟା କ'ଣ ରକ୍ତ ?' କହି ଅଫିସର ଆଗେଇଗଲେ ।

"ହେଁ, ହେଁ, ହେଁ ସାର୍ – କାଲି, ସାର୍ ଟାୟାର୍ଡ ହୋଇ ଗୋଟେ କୁକୁଡା କାଟିଥିଲୁ ସାର୍, ସେଇଟା...ସେଇଟା !" ପୁଣି ନିଜ ପଛକୁ ଚାହିଁ "ଆବେ ଦେଖୁଚ କ'ଣ ? ମଉସାକୁ ନେଇ ତାଙ୍କ ବ୍ୟବସ୍ଥା କର, ସାହେବମାନଙ୍କ ପାଇଁ ଚା ପାଣି ବ୍ୟବସ୍ଥା କର !"

"କିଛି ପ୍ରୟୋଜନ ନାହିଁ!" ସମସ୍ତେ କାଠି ପରି ଟାଣିହୋଇଗଲେ ।

ସାମ୍ବାଦିକ ପଚାରିଲେ, "କ'ଣ ମଉସା, ତୁମ ନାଁ ସାକ୍ଷୀ ସାସମଲ ?"

"ହଁ !"

"ପିତାଙ୍କ ନାଁ ?"

"ଅନାଦି ।"

"ଅନାଦି ସାସମଲ ! ଆଚ୍ଛା ତୁମେ କ'ଣ ଦେଖିଛ ?"

"ସବୁ ଦେଖିଛ !"

ତପନ ରାୟ ଖପ୍‌କିନା ସାମ୍ବାଦିକଙ୍କ ହାତ ଧରି ଟାଣିନେଇଗଲେ ।

"ତୁମେ ସମସ୍ତେ ଚୁପ୍ ରହିବାକୁ କେତେ ଦାମ୍ ପଡିବ ? ପଚାଶ ହଜାର ?...ଅଶୀ ହଜାର ? ?...ଲକ୍ଷେ ? ? ?..."

ଅଫିସରମାନେ କାନ ଟେରିଲେ । କୁକୁର କାନ ଟେରିଲା । ସାମ୍ବାଦିକ ମୁଣ୍ଡ ତଳକୁ କରି ଠିଆହେଲେ ।

ସାକ୍ଷୀ ସାସମଲ ଚାହିଁରହିଲା କାଦୁଆ ନଈ ଉପରେ ଢଳଢଳ ଦୁର୍ବଳ ସୂର୍ଯ୍ୟକୁ । □

# କେତା

ତଳୁ ଠିଆହୋଇ ଅନାଇଲେ ଜଣାପଡେ ସତେ ଯେମିତି ସେଇଟା ରୋଡ ନୁହେଁ – ଦି'ପହରର ପ୍ରଚଣ୍ଡ ସୂର୍ଯ୍ୟଦେହରୁ ତରଳି ବୋହିଆସୁଥିବା ନିର୍ମମ ଲାଭାର ଗୋଟିଏ ସ୍ରୋତ। ସହର ଉପାନ୍ତ ସେ ରାସ୍ତାଟାରେ ସାଧାରଣତଃ ଖୁବ୍ କ୍ୱଚିତ ଲୋକ ଯାତାୟାତ କରନ୍ତି। ବୈଶାଖୀ ଦ୍ୱିପ୍ରହରବେଳେ ଇସ୍ପାତ୍‌ର ପଟାଟାଏ ପରି ସେଇଟା ଆକାଶକୁ ତେରିହୋଇ ବାମ୍ଫ ଛାଡୁଚାଏ। ତଳୁ ସେ ଶିଖଯାଏ ଉଠିଯିବ, ଏମିତି ସାହସ କାହାର ? ତଥାପି ଜିପ୍‌ଟାଏ ବା ପୁରୁଣା 'ଭାନ୍' ଖଣ୍ଡେ ଭୋକ ଆତୁରିଆ, କାରଖାନା ଫେରନ୍ତା, ଯୋଡାଏ ପୁଞ୍ଜାଏ କାଳିଆଲୋକଙ୍କୁ ନେଇ ସେବାଟେ ଗାଁ ଗାଁ ଗର୍ଜି ଉଠିଯାଏ। ଇଞ୍ଜିନ୍‌ଟା ପ୍ରତିବାଦ କରେ। ତାକୁ ସେତେବେଳେ ଶୁଣୁଚି କିଏ ? ବରଂ ତା' ତୋଟି ଉପରେ ଗୋଇଠି ମଡେଇ ତାକୁ ତଡିନେଇ ସେମାନେ ଗ୍ଭଲିଯାନ୍ତି। ସେଇଟା ଇଞ୍ଜିନ୍‌ଟାଏ ବୋଲି ସିନା !

ରୋଡଟାକୁ ଘେରି ଦିଗ୍‌ବଳୟଯାଏଁ ସେ ଅଞ୍ଚଳରେ ସଜୀବ କିଛି ନାହିଁ। ସମସ୍ତ କାନ୍ତାର କେବଳ ନିସ୍ତବ୍‌ଧ ନୀରବ, ଜଳିଯାଉଥିବା ଗୋଟାଏ ଗୁଗୁଡିଆ ମରୁଭୂମି। ରୋଡକୁ ଲାଗି ନିଷ୍ପନ୍ଦ ସରଳ ଗୁଡିଏ ତାରଖମ୍ବ ଏବଂ ସେମାନଙ୍କର ବାଙ୍ଗରା ବାଙ୍ଗରା ଥୁଣ୍ଟା ଗୁଡିଏ ଛାଇ !

ହଠାତ୍ ଗୋଟିଏ ଖୁଣ୍ଟମୂଳେ ସଜୀବ ହୋଇ ସେଦିନ ସେ ଛାଇଟି ଚହଲିଗଲା। ୯୩୨ ନମ୍ବର ଖୁଣ୍ଟଟି ରୋଡ ଉଠାଣିର ଆରମ୍ଭରେ ଦୁଃଖିତ ସନ୍ତ୍ରୀଟିଏ। ତା' ମୂଳେ ଯୋଡିଏ ଆଣ୍ଠୁ ଉପରେ ଥୋଡିଟିକୁ ଥୋଇ କେତା ଅନାଇଥାଏ ରୋଡର ସେ ଫଣାତଳୁ ବୋହିଯାଉଥିବା ଝିଲିମିଲି ସମ୍ଭାବନା ଭିତରକୁ। ସେତେବେଳକୁ ତା'ର ପାଣିପିଆ ବେଳ ହୋଇଆସିଲାଣି – ତଥାପି ଖଣ୍ଡେ ମଧ ରିକ୍‌ସାର ଦେଖାନାହିଁ।

କେତା ଦିନକୁ ଦୁଇଥର ପାଣି ପିଏ। 'ଦୁଇଦିନରେ ଥରେ ଖାଏ ପିନ୍ଧେ ଖଣ୍ଡେ ଅତି ବଡ ହାଫ୍‌ପ୍ୟାଣ୍ଟ। ଝାଳ ଓ ଧୂଳିରେ ତା' ରଙ୍ଗ ମଣିଷ ରଙ୍ଗପରି। କେତାକୁ ଅନେକେ ବାଙ୍ଗରା ବୋଲି ଡାକନ୍ତି। ବଙ୍କା ଗୋଡ ଯୋଡାକ ଉପରେ ତା' ଉଚ୍ଚତା ଜମାରୁ ତିନିଫୁଟ ଅଧେ। କେତାକୁ

ବେଡା ବୋଲି ଡାକିଦେଲେ ମଧ୍ୟ ସେ ଉପରକୁ । ଚାହିଁ ହସିଦିଏ । ମଣିଷ ମୁହଁଟିଏ ଦେଖିବାକୁ ହେଲେ ତାକୁ ସବୁବେଳେ ଉପରକୁ ଅନାଇବାକୁ ପଡେ । ସେତେବେଳେ ତା' ବେକର ଶିରଯାକ ଧନୁ-ଗୁଣ ପରି ଟାଣିଯାଆନ୍ତି । ତା' ଚୋଟିର ଗଢଣଟି ମଧ୍ୟ ବେଢଙ୍ଗିଆ । ସେ କଥା କହିପାରେ ନାହିଁ; କେବଳ ଠାରେ । ତା' ଆଖିଯୋଡିକ ନୁଆଣିଆ ଓ ସବୁଠୁ ନୁଆଣିଆ ତା' କପାଳ । ତା'ର ସମଗ୍ର ଚେହେରା ସତେ ବା ତଳକୁ ଟାଣିହୋଇ ରହିଛି । ରାଶିଚକ୍ରର ସବୁଯାକ ଗ୍ରହ ଯେମିତି ତା' ଦେମତ ଶିରାପ୍ରଶିରାରେ ଓହଳି ରହିଛନ୍ତି – ତାକୁ କେମିତି ଭୂଇଁରେ ପୋତିପକେଇ ତା' ଉପରେ ବାଲିକୁଢ ମଡେଇଦେବେ । ମେରୁ ଶୃଙ୍ଗପରି କେଡା କିନ୍ତୁ ତା' ଭୂତୁରୁ ମୁଣ୍ଡ ଟେକିଦେଇ ଗୋଡ ଫରକଟେଇ ଠିଆହୋଇ ରହେ । ସୂର୍ଯ୍ୟ ନଇଁଆସିଲେ କେଜାଣି ବା ଏ ପୃଥିବୀଟା ଚକା କଖାରୁଟାଏ ପରି ଲୋତରା ହୋଇ ଶିଝିଯିବ, କିନ୍ତୁ ତା'ର ହାତୁଆ କାଳିଆ ଡେମ୍ଫଟା ପରି କେଡା ସେମିତି ମଥା ଟେକି ରହିବ ଶେଷ ପର୍ଯ୍ୟନ୍ତ ।'

ପାଣି ପିଇବାକୁ ଢେର୍ ବାଟ! – ହେ, ଯାଇଁ ସେ ଶେଷ ତା'ର – ଖମ୍ବଟା ପାରିହେଲେ ପଞ୍ଜାବୀ ହୋଟେଲ । ସେଠିକି ଗଲେ ତା' ମାଲିକ କଳା ରସହାଣ୍ଡି ଦି'ଖଣ୍ଡ ଆଡକୁ ଆଙ୍ଗୁଠି ଦେଖେଇଦିଏ । ହାଣ୍ଡି ପାଖରେ ଦଶ ପନ୍ଦରଖଣ୍ଡ ହାଡଗଦା, ଛିଣ୍ଡା-ରୁଟି ଏବଂ ଡାଲି ଲେସିହୋଇଥିବା ପ୍ଲେଟ୍! କେଡା ଦେଖେ, ହୁଏତ ବୁଝେ, ମୁହଁ ଟେକି ହସିଲା ପରି ଦିଶେ । ସେସବୁ ଧୁଆଧୋଇ କରି ଥୋଇଦେଲେ ପେଟେ କାକାର ପାଣି ସେ ପିଏ । ଓଦା ହାତଟା ସାରା ମୁହଁ ଉପରେ ବୁଲେଇ ଦେଇ ସେ ପୁଣି ସେଇ ଦୂରନ୍ତ ଉଦ୍ଧତ ଫଣାଟାକୁ ଚାହେଁ – ପିଚୁ ରାସ୍ତାର ସେ ଦୁର୍ଜୟ ଗଡାଣିଟା । ହଲି ଝୁଲି ସେ ପ୍ରଚଣ୍ଡ ଖରାରେ କେଡା ତା' ଶତ୍ରୁକୁ ଜଳିବାକୁ, ତା' ମଥାରେ ତା' ଫରକଟିଆ ଗୋଡଯୋଡାକ ଲଦିବାକୁ ଆଗେଇଯାଏ ।

ପଞ୍ଜାବୀ ମାଲିକ ଦିନେ ଦିନେ ମସଲାମିଶା ପାନ ଖାଇଥିଲେ ତାକୁ ପଛରୁ ଡାକି ପାଞ୍ଚ ପଇସିଟାଏ ପକେଇଦିଏ । କେଡା ହସେ । କିଛି ବୁଝିପାରେନାହିଁ – ଯେମିତି ସେ ହାଡର ଗଦାଗୁଡାକୁ ଅନେଇ କିଛି ବୁଝିପାରେ ନାହିଁ । ବେଳେ ବେଳେ ସେଥିରୁ ପୁଳାଏ ପାଟିରେ ପକେଇ ତାକୁ ଶୋଷିବାକୁ ମନ ହୋଇଯାଏ; କିନ୍ତୁ ସେ ତାକୁ ଛାଟିଦିଏ ଗୋଟାଏ ଗୁମଝରା କୁକୁର ମୁହଁକୁ । ପାଞ୍ଚ ପଇସିଟାଏ ଏପାଖ ସେପାଖ ଲେଉଟାଇ ସେ କ'ଣ ଗୋଟାଏ ଖୋଜିଲା ପରି ଦେଖେ ଏବଂ ତାକୁ ତା' ପେଣ୍ଟ ମୁଣାର ଅତଳ ଗାତରେ ଗଳେଇପକାଏ । ତଳପର୍ଯ୍ୟନ୍ତ ତା' ବାଙ୍ଗୁରା ହାତ ପାଏନାହିଁ । ସେ ଖାଲି ଅନୁଭବ କରେ ଯେ ପଇସାଟା ଯାଇ ଠିକ୍ ଥାନେ ଥମିଯାଇଥିବ ।

ପାଣିପିଆ ବେଳ ହେଇଗଲାଣି, ଅଥଚ ଖଣ୍ଡେ ରିକ୍ସାର ଦେଖାନାଇଁ । କେଡା ଶେଷରେ ଦୋ-ଦୋପାଞ୍ଚ ହୋଇ ଠିଆହେଇଚି, ହଠାତ୍ ସେ ଦୂରରେ ମୋଡ ବୁଲି ଖଣ୍ଡେ ତିନିଚକିଆ ଦିଶିଗଲା । କେଡା ତା'ର ଖମ୍ବମୂଳରୁ ଖପ୍‌କିନା ଡେଇଁ ଆସି ଗାମୁଛାଟା ଅଣ୍ଟାରେ ଜୋର୍‌ରେ ଭିଡିଦେଲା । ସିଧାସଳଖ ରାସ୍ତା; କିନ୍ତୁ ରିକ୍ସାଟା ଆସୁନାହିଁ କାହିଁକି ? ଏତେ ବିଳମ୍ବତ ହୁଏନାହିଁ ।

ଗଡାଣି ପାହାଡ ତଳେ ଆସି ପହଞ୍ଚିଲା ବେଳକୁ ରିକ୍ସାବାଲାର ପାଟି ଆଁ ହେଇଯାଇଥାଏ ।

ମୁଣ୍ଡରେ ଶିରାସବୁ ଟଣକି ରହିଥାଏ । କେତା ଖପର ଖପର ଡେଇଁ ରିକ୍ସା ପଛରେ ଲଗେଇଦେଲା ହାତ । ରିକ୍ସା ଉପରେ ଡାଲି ଉଛୁଳେଇ ଯୋଡାଏ ମଜବୁତ୍ ମାରଓ୍ୱାଡି ଖରା ଝାଞ୍ଜିରେ ହାଲିଆ ଦିଶିଗଲେଣି । ସେଥିରୁ ଗୋଟାଏ ତା' ମୁଣ୍ଡାରୁ ରେଶମୀ ରୁମାଲ କାଢି ଥରକୁଥର ମୁହଁ ପୋଛି ପକଉଥାଏ ।

କେତା ପାଇଁ ରିକ୍ସାର ତାତିଲା ଚକଚକିଆ ପିଠି, ଗୋଟାଏ ନାଲିଆ ନମ୍ବର ଆଉ ଦୁଇ ଆଡେ ଅମଙ୍ଗ ଅମାନିଆ କୁନ୍ଥେଇ ବିନ୍ଥେଇ ହେଉଥିବା ଯୋଡାଏ ଚକ । ସେ ଲଗେଇ ଦେଇଥାଏ ରିକ୍ସା ଦେହରେ ତା' ଝାମ୍ପୁରା ମୁଣ୍ଡ ଆଉ ଦୁଇଟା ଲେଡା । ଭୂଇଁକୁ ତାତିଲା ତରଳ ଟାର୍ ଉପରେ ଡିହମାରି ସେ ରିକ୍ସାକୁ ଡଳୁ ଠେଲୁଥାଏ । ଆଗକୁ ନଇଁପଡି ତା'ର ସବୁ ଦମ୍ ଲଗେଇ ଟାଣୁଥାଏ ରିକ୍ସାବାଲା । ରିକ୍ସାରେ ବୋଝେଇ ସବାରୀ ପଥର ଚକି ପରି ନିଷ୍ପନ୍ଦ ମାଡିବସିଥାନ୍ତି । ଚଢାଣିର ଅଧେ ବାକିଥାଏ । କେତା ଆଉ ଘୁଞ୍ଚେଇ ପାରୁନାହିଁ । ସେ ବି ଧଇଁସଇଁ ହେଇଗଲାଣି ସେତେବେଳକୁ । ରିକ୍ସା ଖଣ୍ଡ ଆଉ ମୋଟେ ଘୁଞ୍ଚୁବ ନାହିଁ ନା କ'ଣ – ପୁଞ୍ଜାଏ ବଡିଖୁଣ୍ଟ ଏକାଠି ହେଇ ଠିଆହେଇଗଲେ ଯେମିତି ତାଙ୍କୁ ଠେଲିବା ସମ୍ଭବ ନୁହେ, ସେଇଭଳି କେତା ତା'ର ଆଉ ଟିକକ ଦମ ଲଗେଇଦେଲା । ତା' ଅଣାୟତ୍ତରେ ଗୋଟାଏ ବିକଟାଳ ଚିତ୍କାର ଶୁଭିଲା । ରିକ୍ସାଟା ଚମକି ପଡିଲା । ରିକ୍ସାବାଲା ସବାରୀ ସମେତ ଚମକି ଘୁଞ୍ଚିଗଲେ ଆଗକୁ ।

ଆଉ ପାଞ୍ଚ ହାତ !

କେତା ତଳ ଓଠଟାକୁ କାମୁଡି ପେଲିନେଲା ଏକାଥରେ ଗରିହାତ ତିନିପା । ହାଃ...ଉଃ...ଘୁଞ୍ଚିଲା...ଘୁଞ୍ଚିଲା ।

ଆଉ ମାତ୍ର ଚକେ! କେ କଟ୍‌କଟ୍ ଡାକୁଥାଏ ରିକ୍ସାର ଗଣ୍ଠି – କେତାର ଅଣ୍ଟା – ରିକ୍ସାବାଲାର ପଞ୍ଜରା ।

ଆଉ ମାତ୍ର ଚକେ । ସାରା ସୂର୍ଯ୍ୟଟାର ବାମ୍ଫ ଆସି କେତା ଭିତରେ ରୁନ୍ଧି ହୋଇଯାଇଥାଏ । ସେ ଆଖି ବୁଜି ଦେଖୁଥାଏ ଯେ ଗୁଡାଏ ତାରା ରକ୍ତର ସମୁଦ୍ରରେ ପହଁରୁଛନ୍ତି । କଠଉ ଫାଳି ପରି ତା'ର ପାଦ ପାପୁଲା ଲାଖିଯାଉଥାଏ । ତାତିଲା ତାରୁ ଉପରେ । ଚଟ୍ ଚଟ୍ ହୋଇ ରିକ୍ସାର ଚକ ଫିଟୁଥାଏ ତାରୁର କାଦୁଅ ଭିତରୁ । ସେ ତା' ଫୁଙ୍ଗୁଳା ପିଠିରେ ଗୁଡାଏ ତାତିଲା ଛୁଞ୍ଚି ଫୋଡିହେବାର ଅନୁଭବ କରୁଥାଏ । ଉଁ...ହୁଁପ୍...ଅ...

ଏଇଠି ମଟର୍‌ଗାଡିର ଇଞ୍ଜିନ୍ ମଧ କୁନ୍ଥାଏ । ଧନୁ ପରି ତା' ଅଣ୍ଟା ବୋଧହୁଏ ବାଙ୍କିଯାଏ । ଗୁଡାଏ ତେଲ ଶୋଷି ସେ ଦାନବ ଭିଡି ନେଇଯାଏ ଗୋଟାଏ ଜିପ୍ ବା ଗୋଟାଏ ଭାନ୍ ।

ପୁଣି ଶୁଭିଲା ଗୋଟାଏ ବିକଟାଳ ଚିତ୍କାର । ଚମକିଗଲା ରିକ୍ସା । ଆଗ ଚକ ଓଲଟିଗଲା ଉଠାଣିର ଶିଖ ଡେଇଁ ଆରପାରିକୁ । କେତା ରୋଧିଦେଲା ତା' ନିଃଶ୍ୱାସକୁ । ତା' ବୁକୁ ଭିତରେ ରୁନ୍ଧିହୋଇଗଲା ବସ୍ତା ବସ୍ତା ପଥରଗୁଣ୍ଡ ।

ଆଉ ମାତ୍ର ଚକେ !

ସାରା ସଂସାରଟା ସେତେବେଳେ ଗୋଟାଏ ନିବୁଜ ନିରନ୍ଧ୍ର ଅନ୍ଧାରର ବୋଝ ! କେତା ପହଁରୁଥାଏ ସାତ ତାଳ ଶୂନ୍ୟରେ । ଦଶ ଦିଗ ଗୁନ୍ଧି ଫୁଲି ରହିଥାଏ ତା'ର ବିରାଟ ରୂପ । ତା' ହାତରେ ସେ ଆଟେଇଦେଇ ଯାଉଥାଏ ଗୁଡାଏ ଅମାନିଆଁ ସୂର୍ଯ୍ୟ ଆଉ ତାରା ।

ହଠାତ୍ ସେ ସାଙ୍କୁଡ଼ିଗଲା । ତାରାମଣ୍ଡଳଯାଏ ପ୍ରସାରିତ ହୋଇଥିବା ତା' ହାତ ଯୋଡାକ ଅସହାୟ ହୋଇ, ଥୁଣ୍ଟା ବାଙ୍ଗରା ହୋଇ ଝୁଲିପଡ଼ିଲେ । ତା'ର ଗୋଟିଏ ପ୍ରଶ୍ୱାସରେ ଭୁସ୍ କରି ଚାଲିଗଲା ଲକ୍ଷ ଲକ୍ଷ ଟନ୍ ଓଜନର ତା'ର ପ୍ରସାରିତ କାୟା । ରଙ୍ଗ ଟହଟହ ଆଖି ଆଗରେ ତା'ର ସେଇ ରିକ୍ସାଟାର ଦାଉ ଦାଉ ଟୋଲା ପିଠି ଓ ଦି'ଟା ଉଦ୍‌ଗ୍ରୀବ ଚକ !

ପାଞ୍ଚ ହାତିଆ ଶୀର୍ଣ୍ଣ ରିକ୍ସାବାଲା ଓ ସାଢ଼େତିନିଫୁଟିଆ କେତା ଠିଆହେଲେ ମୁହାମୁହିଁ । ଦୁହିଁଙ୍କ ବୁକୁ ଦାଉଁ ଦାଉଁ । କଥା କହିବାକୁ ତର ନାହିଁ; ପ୍ରୟୋଜନ ନାହିଁ । ତା'ର ପାଉଁସିଆ ଟାଆଁସା ହାତପାପୁଲିରୁ ଥୋପିପଡୁଥିବା ଝାଳରେ ଓଦା ସରସର ପାଞ୍ଚପଇସିଟିଏ କେତାର ପାପୁଲି ଉପରେ ଥୋଇଦେଇ ମୁହ ଫେରେଇନେଲା, କେତାର ଖାଉନ୍ଦ–ସେଇ ରିକ୍ସାବାଲା । ପାଞ୍ଚପଇସିଟିର ନିଛକ ଝାଳ ଗୁଡାକୁ ମୁଣ୍ଡରେ ପୋଛୁ ପୋଛୁ କେତା ତା' ଖାଉନ୍ଦ ମୁହଁକୁ ଚାହିଁ ସେମିତି ହସିଥିଲା; କିନ୍ତୁ ପାନ ଚୋବେଇ ଚୋବେଇ ତା' ଆଡକୁ ସେମିତି ପାଞ୍ଚ ପଇସିଟାକୁ ଯେତେବେଳେ ପଞ୍ଜାବୀ ଫିଙ୍ଗି ଦେଇଥିଲା, ସେ କିଛି ବୁଝିପାରିନଥିଲା ।

ୟା'ପରେ କେତା ପାଣି ପିଇବାକୁ ସେତକ ବାଟ ଫେରିବା କଥା । ସେ କିନ୍ତୁ ଓହ୍ଲେଇ ଆସି ଠିଆହେଲା ୯୩୨ ନମ୍ବର ଖୁଣ୍ଟ ପାଖରେ । ତା' ହାଲିଆ ଭାଙ୍ଗୁ ନଥାଏ । ଆଖି ପତା ମଟେଇ ହୋଇ ଆସୁଥାଏ । ଏତିକିବେଳେ ତାକୁ ଶୁଭିଲା ଟାଇଁ ଟାଇଁ – ରିକ୍ସାର ହେଣ୍ଡଲ ଉପରେ ଲୁହା ବାଡେଇବାର ଶବ୍ଦ ! ଗଡାଣି ଶିଖରେ ଓହ୍ଲେଇ ଆସୁଥିବା ଚିଲପରି ରିକ୍ସା ଖଣ୍ଡେ ଦିଶୁଥାଏ । ସେଭଳି ଓହ୍ଲାଉଥିବା ରିକ୍ସାଗୁଡ଼ିକୁ କେତା ବଡ ନିଷ୍ପୃହ ଆଖିରେ ଅନାଏ । ରିକ୍ସାବାଲାଗୁଡ଼ିକ ସେ ଗଡାଣିଆ ଉପରେ ହାଲୁକା ହୋଇ ବସିଯାନ୍ତି । ତାକୁ ହୁଏତ ଲାଗେ ଯେ ସେମାନେ ବ୍ୟୋମଯାନ ଚଢ଼ିଛନ୍ତି । ଆଃ...ପରିଶ୍ରମ ନକରି ଏମିତି କ'ଣ ରିକ୍ସାଟା ସବୁବେଳେ ଗଡିଯାନ୍ତା ନାହିଁ – ହୁଏତ ଭାବନ୍ତି ସେମାନେ । ସମସ୍ତଙ୍କୁ କେତା ଚିହ୍ନେ । ସମସ୍ତଙ୍କ ରିକ୍ସାକୁ ମଧ ଚିହ୍ନେ । ସେ ଜାଣେ କାହା ଚକ ବଙ୍କା, କାହା ଚକ ନଡବଡ, କାହା ଦଣ୍ଡାରେ ଘୁଙ୍ଗୁର ବନ୍ଧା ହେଇଚି, କାହା ହେଣ୍ଡଲରେ ନକଲି ପ୍ଲାଷ୍ଟିକ୍‌ର ଫୁଲ; କିନ୍ତୁ ଗଡିଗଲାବେଳେ କେହି କେବେ ୯୩୨ ନମ୍ବର ଖୁଣ୍ଟତଳେ ଏ ବାଙ୍ଗରା ମଣିଷଟିକୁ ଅନେଇ ଦିଏନାହିଁ ।

ରିକ୍ସା ଗଡି ଆସିଲା । କେତା ଦେଖୁଥାଏ ତା'ର ସାଇଁ ସାଇଁ ଗଡିଯାଉଥିବା ଚକଗୁଡାକୁ । ଏତିକିବେଳେ ସେ ଅନେଇଦେଲା ଟିକିଏ ଉପରକୁ । ସେଇ ପାଞ୍ଚହାତିଆ ଶୀର୍ଣ୍ଣ ରିକ୍ସାବାଲା ତାକୁ ଚାହିଁ ହସୁଥିଲା । ବହୁ ଚୁଡାମଣା ଓ ପ୍ରଗାଢ ଘନିଷ୍ଠତାର ସେ ହସଟିକକ । କେତାର ବୁକୁ ଭିତର କେମିତି ଗୋଟାଏ ଫୁଲିଉଠିଲାପରି ଲାଗିଲା । ତଣ୍ଟି ପାଖରେ ଆସି ଲାଖିଗଲା କ'ଣ ଗୁଡାଏ । ଗଳି ଆସିଲେ ସେଗୁଡାକ ଲୁହ ହୋଇ ବୋହିଯିବ ।

ରିକ୍ସାବାଲା ହାତଠାରି, ମୁଣ୍ଡ ଝାଙ୍କି କ'ଣ ସବୁ ଠାରିଲା । ଜଣାଗଲା ଯେ ସବାରୀକୁ ଛାଡି ସେ ସେଇଲାଗେ ଫେରିବ – କେତା ପାଖକୁ ଫେରିବ । କେତା ମଧ୍ୟ ସେଇଆ ବୁଝିଗଲା । ଅଣ୍ଟାରେ ହାତଦେଇ ସେ ଖରାରେ ଠିଆହୋଇ ରହିଲା ୯୩୨ ନମ୍ବର ବତିଖୁଣ୍ଟର ଖର୍ବ ଛାଇ ତଳେ । ଅନେଇଁ ରହିଲା ଅପସରି ଯାଉଥିବା ସେ ରିକ୍ସାଟାକୁ । ମୁହୂର୍ତ୍ତକ ପାଇଁ ହୁଏତ ତା' ମନ ଉପରଦେଇ ଡେଣା ମେଲେଇ ପହଁରିଗଲା ଗୋଟାଏ ଅଭିଜାତ ସପ୍ନର ରାଜହଂସ – 'ଏହିଭଳି ଏ ରିକ୍ସାରେ ବସି ଓହ୍ଲେଇ ଆସିଲେ କେମିତି ଲାଗନ୍ତା ?' ପର ମୁହୂର୍ତ୍ତରେ ଖରା ଝାଞ୍ଜିରେ ଜଳିଗଲା ସେ ସୁକୁମାର ସପ୍ନର ଡେଣା । ତୃଷ୍ଣାରେ ଫାଟି ବୁଣି ବିସ୍ଥ ହୋଇଗଲା ତା'ର ମୋଲାଏମ୍ ଅବୟବ । କେତା ଚାହିଁଲା ତା' ଆଗକୁ ଏବଂ ପଛକୁ । ଚାହିଁଲା ଦିଗନ୍ତକୁ । ଉପରେ ସୂର୍ଯ୍ୟକୁ ଓ ତଳେ ସେଇ ଉଦ୍ଧତ ରାସ୍ତାଟାକୁ । ସବୁ ନିଷ୍ପନ୍ଦ – ମଣିଷର ଲୋଭ ପରି, ତା'ର ନିସ୍ତବ୍ଧ ଜିଘାଂସା ପରି ।

ଶୋଷ ! କେତାର ତଣ୍ଟିଠାରୁ ତଳିପାଯାଏଁ ଗୋଟାଏ ଶୁଖିଲା ବାଲିକୁଢ ପରି ଆର୍ତ୍ତନାଦ କଲା । ଖଡିପରି ଶୁଖିଗଲା ତା'ର ଜିଭ ଗୋଟାଯାକ । କେମିତି ସେ ସେଇଠୁ ପଞ୍ଜାବୀ ହୋଟେଲରେ ପହଞ୍ଚିଯାଆନ୍ତା; କିନ୍ତୁ ସେ ରିକ୍ସାବାଲା କହିଛି ଫେରିବ ବୋଲି । ସେ କ'ଣ ସବାରୀ ବୋଝେଇ ରିକ୍ସାକୁ ଏ ଉପରକୁ ଏକୁଟିଆ ଭିଡି ନେଇପାରିବ ? ଏ ରିକ୍ସାବାଲା ତ ଆଉ କାହାଭଳି ନୁହେଁ! ସେ ପରା କେତାକୁ ଖୋଦ୍ ଆପଣାର ବୋଲି ହସିଦିଏ ! ତା' କଥା ନିଆରା ।

ମୁଣ୍ଡରୁ ଟୋପା ଟୋପା ଝାଳ ଖସିଆସିଲା ତା'ର ନୁଆଣିଆ କପାଳ ଉପର ଦେଇ । ଗୋଟାଏ ଝାଳର ଧାର ତା' ଓଠ ଭିତରକୁ ଥୋପିପଡିଲା । ତାତିଲା ଲୁହା ଖଡିକା ଉପରେ ପାଣି ଟୋପାଏ ପଡିଲା ପରି ତା' ଜିଭ ଝିମ୍‌ଝିମ୍ କରିଗଲା । ସେ ସୋତକିନେଲା ଝାଳର ଲୁଣିଆ ସୁଅଟାକୁ । ଅଧେ ଜିଭକୁ ଜୀଅ ଫେରିଆସିଲା; ଜିଭ ମୂଳ ପର୍ଯ୍ୟନ୍ତ କିନ୍ତୁ ପହଞ୍ଚି ପାରିଲାନାହିଁ । ମରୁଭୂମି ମଝିରେ ଆତ୍ମହତ୍ୟା କଲା ଅସହାୟ ଝରଣାଟିଏ ।

ନା, ଆଉ ନୁହେଁ । ତାକୁ ଯିବାକୁ ହେବ । ପଞ୍ଜାବୀ ହୋଟେଲଟା ଖୁବ୍ ଦୂର । ସେଇଠି ପହଞ୍ଚିଗଲେ ମଧ୍ୟ ପାଣିହାଣ୍ଡିଟା ଆହୁରି ଦୂର । ସେଇଠି କେତାର ବାଟ ଜଗିବସିଥିବେ କଳା କଳୀ ଗସହାଣ୍ଡି । ହାତଗଦା ବୋଝେଇ ହୋଇଥିବା ପ୍ଲେଟ୍‌ର କୁଢ ରଙ୍ଗ ରଙ୍ଗ ମାଟି ଘୁମା ଭିତରେ ନିର୍ମଳ କାକର ପାଣି ମୁନ୍ଦାକ ପାଇଁ କେତାର ଅନ୍ତରାତ୍ମା ଚିହିଁକିଉଠିଲା । ସେ ଅନେଇଲା ତଳଆଡେ ।

କିଛି ନାହିଁ । କେବଳ ଖରାରେ ଝିଲିମିଲି ରାସ୍ତାର ଶେଷ ଢାଲୁଟା କାହିଁ କେଉଁ ଦୂରରେ ବାଷ୍ପ ହୋଇଯାଇଛି ହଠାତ୍ । ଗୋଟାଏ ଛାଇ ଡେଇଁଆସିଲା ରୋଡ ଉପରୁ । ରିକ୍ସାଟାଏ ? ନା, ଖଣ୍ଡେ ଜିପ୍ । ଘାଇଁ ଘାଇଁ ହୋଇ ସେ ଗାଡିଖଣ୍ଡ ମାଡିଆସିଲା । କେଜାଣି କାହିଁକି ୯୩୨ ନମ୍ବର ଖୁଣ୍ଟ ପାଖରେ ଆଉଜି ଆସି ଥମିଗଲା । ଆଗକୁ ସେ ଉଠାଣି ଦେଖି ଶଙ୍କିଗଲା କି ଆଉ ! କେତାର ହସ ଶୁଖିଲା ଜିଭ ଉପରେ ପାରି ହୋଇ ମୁହଁ ଉପରକୁ ଉତୁରି ଆସି ପାରିଲାନାହିଁ । ସେ କିନ୍ତୁ ମନେ ମନେ ଟିକିଏ ହସିଲା । ପାରିବ ନାହିଁ ବୋଧହୁଏ ଇଞ୍ଜିନ୍‌ଟା । ତେବେ କେତା କ'ଣ ତାକୁ

ପଛରୁ ଠେଲି ନେଇପାରିବ ?

ଇଞ୍ଜିନ୍ ଘାଉଁ ଘାଉଁ ଗର୍ଜୁଥାଏ । ଗାଡି ଭିତରୁ ଉଠିପଡି ଗୋଟାଏ ମସିଆ ଲୋକ ଆଗକୁ ଚାଲିଆସିଲା । ସେଇଠି ଓହଳିଥିବା ଗୋଟିଏ କନାମୁଣାକୁ ଟେକି ତା' ପାଟିରେ ଅଜାଡିଦେଇଗଲା ଛଳଛଳ ଗୁଡାଏ ପାଣି । ତା'ର ଝାଲୁଆ ରୁଢିଆ ଥୋଡ ଉପରକୁ ଉଛୁଳି ବୋହିଆସୁଥାଏ ପାଣି । ତା' ବୁକୁ, ବୁକୁ ଉପର ଜାମା ଓଦା ହୋଇଯାଉଥାଏ । କେତା ତା' ଅଜାଣତରେ ଖୁଣ୍ଟି ଆଢୁଆଳରୁ ଚାଟି ପକାଉଥାଏ ତା' ଶୁଖିଲା ଓଠ । ଆଚ୍ଛା, କେତାକୁ ସେମିତି ମୁନ୍ଦେ ପାଣି ସେ ଇଡି ଦିଅନ୍ତା ନାହିଁ ? ତା' କେମିତି ହେବ ? କେତା କ'ଣ ତା'ର ଡେକ୍‌ଚି, ପ୍ଲେଟ୍ ମାଜିଦେଇଛି ? ତଥାପି ପାଣି ମୁନ୍ଦେ ତ – ସେ ଗାଡିଚଢାଳି ସେମିତି ମାଗଣା ଦେଇପାରନ୍ତା ନାହିଁ ।

ଖେଁକିନା ହସି ପକେଇଲା କେତା । 'ମାଗଣା' – ସେଇଟା ପୁଣି କ'ଣ ? କେତା ମନକୁ କଥାଟା ମୋଟେ ପାଇଲାନାହିଁ । ତା'ର ସେ ଖିଙ୍କାରିଲା ପରି ହସରୁ ଅଧେ ସେ ଗାଡିଚାଳକ ଶୁଣିଲା । ଲେଉଟିପଡି ଥରେ ଚାହିଁଲା କିଏ ବୋଲି । ତା'ପରେ ଗୋଟାଏ ଧକ୍‌କାରେ ପେଲିନେଲା ଗାଡିଟାକୁ । ୯୩୩ ନମ୍ବର ଖୁଣ୍ଟ ପାଖରେ ଗାଡିର ଇଞ୍ଜିନ୍ ଭିନ୍ନ ସ୍ୱରରେ ଟିକିଏ ଗର୍ଜିଲା । ଆଖିପିଛୁଡାକେ ୯୩୪ ନମ୍ବର ପାରିହୋଇ ବୁଡିଗଲା ପାହାଡର ଆର ପାଖେ ।

ଓଃ ! କେତାର ବୁକୁ ଶୁଖିଆସିଲା । ସେ ଆଉ ବୋଧେ ସମ୍ଭାଳି ପାରିବ ନାହିଁ । ସେଦିନ ଶୋଷଟା ତାକୁ କାବୁ କରିଦେବ ଯେମିତି । ଯେଉଁ ଗ୍ରହଗୁଡାକ ତା' ଶିରା-ପ୍ରଶିରାରେ ଓହଳି ତାକୁ ତଳକୁ ଭିଡି ରଖିଛନ୍ତି, ସେମାନେ ଆଉରି ଜୋର ଲଗେଇ ଦେଲେ । ତା' ଆଣ୍ଠୁ ଟିକିଏ ନିଜୋର୍ ଜଣାଗଲା । ତା' ଭିତରର ମେରୁ ପଥରଟା କିନ୍ତୁ ମୋଟେ ଟର୍କିଲା ନାହିଁ ।

ହୋ ହୋ, ହେ ହେ ହସିଉଠିଲା କେତା । ସାତଦିନ ପାଣି ନ ପିଇଲେ ଭଲା ଏ ମାତଖିଆ ପଥୁରିଆ ମଣିଷଟାର କିଛି କ'ଣ ହେବ ?

ଏତେ ବଡ ଆକାଶଟାରେ ମେଘ ଟିକିଏ ଫୁଟୁ ନାହିଁ । ଏତେ ବଡ ପୃଥିବୀରେ ଗାରେ ସାଗୁଆ ପତ୍ର କେଉଁଠି ଗଜେଇ ଆସୁନାହିଁ । ଏତେ ପାହାଡ ପର୍ବତର ପେଟ ଭିତରୁ ଧାରେ ଝରଣା ନଇଁଆସୁନାହିଁ ଏ ନିଆଁ ଭିତରକୁ !

ବଡି ଖୁଣ୍ଟରୁ ତାତିଲା ଧାସ ପିଟୁଥାଏ । ତା'ର ବାଙ୍ଗୁରା ଛାଇ କେତାକୁ ସୁଦ୍ଧା ନଅଣ୍ଟ ହୋଇଗଲା । କେତା ସେମିତି ଠିଆହୋଇ ରହିଲା ତା' ମଣିଷ ରଙ୍ଗର ଅତି ବଡ ଗୋଟାଏ ହାଫ୍‌ପେଣ୍ଟ ଭିତରେ । ଅଣ୍ଟାରେ ଖଣ୍ଡେ ଗାମୁଛାକୁ ଖୁବ୍ ଜୋର୍‌ରେ ଭିଡିଦେଲା । ଆଉ କଟମଟ ଅନେଇଁଲା ସେଇ ଝିଲ୍‌ମିଲ୍ ଦିଗ୍‌ବଳୟକୁ । ମୁନ୍ଦେ ପାଣି । ଆଉ ବୋଧହୁଏ ପଞ୍ଜାବୀ ହୋଟେଲ ପର୍ଯ୍ୟନ୍ତ ଚାଲିଯାଇ ହେବନାହିଁ ।

'ଚୁପ୍ ! ପାଣି ପିଇବା କେବଠୁ ଏମିତି ଅଭ୍ୟାସ ହୋଇଗଲାଣି ? ତୁ ତ ମା'ଠୁ କ୍ଷୀର ଖାଇନୁ । ବାପଠୁ ସ୍ନେହ ପାଇନୁ – ତୋର ପୁଣି ଅଭ୍ୟାସ କାହୁଁ ଆସିଲା ? ଗଛଗୁଡାକ ପୁଣି ତ ପାଣି ନ ପାଇ ସ୍ଥିର ହୋଇ ରହୁଛନ୍ତି । ଗୋରୁ ସେମିତି ଠିଆହୋଇ ଶୋଷରେ ଟଳୁଛି ।'

ଶୋଷ! ସାରା ସମୁଦ୍ରକୁ ଗଣ୍ଡୂଷରେ ପିଇଦେଲା ପରି ଶୋଷ।

'ଆବେ ଯା! ତୋ ଶୋଷକୁ ମାର୍ ଗୋଲି। ପାଣି ନାହିଁ। କୋଉ ବୋପାକୁ ଗୁହାରିବୁ ଯା।' କେତା ଅନେଇଲା ଆକାଶକୁ। ତା'ର ନୁଆଣିଆ ଆଖି ଆହୁରି ନଇଁଆସିଲା। ସାରା ଆକାଶ ତାତି ରହିଥାଏ। ରହିଁ ହେଉ ନଥାଏ ତୃଷାର୍ତ୍ତ ଆକାଶର ଅସୀମତାକୁ! କେତା ପୁଣି ହସିପକେଇଲା। କ'ଣ ବୁଝିଲା କେଜାଣି ନିଃଶ୍ୱାସଟିଏ ମାରି ଆଖି ନୁଆଇଁଆଣିଲା ଧରିତ୍ରୀକୁ।

ରୋଡର ସେ ଉଦ୍ଧତ ଫଣାଟା ତାକୁ ଦିଶିଗଲା ଭାରି ଆପଣାର। ସେ ଆଉ ତା'ର ଶତ୍ରୁ ନୁହେଁ, ଯାହା ସାଙ୍ଗରେ ମୁକାବିଲା କରିବାକୁ ସେ ଅଣ୍ଟାରେ ଗାମୁଛା ଭିଡି ଠିଆହେଉଥିଲା। ସେ ତାକୁ ଖୋଲାକ ଯୋଗେଇଦେଉଛି। ତା' ଜୀବନର ବ୍ୟର୍ଥତା ଗୋଟାଏ ନୂତନ ମୂଲ୍ୟର ବ୍ୟଞ୍ଜନାରେ ତୂଳୀ ବୁଲେଇ ଦେଇଛି। ସେଇଟା ତା' ପାଇଁ ଖତିଆନ୍ ଭୂଇଁ – ତା' ଜୀବନର ସବୁ ଫସଲର କିଆରି – ଭାବିଲା କେତା। ଏଇଟା ମତେ ଏ ମାଟି ଦେଇଚି। ଆଉ ଏ ଖରା ମୋର ଦୋସ୍ତ୍। ଅନ୍ୟର ହିମ୍ମତକୁ ନେଲାବେଳେ ମତେ ପିଠିରେ ଚାବୁକ୍ ମାରି ହିମ୍ମତ ଯୋଗେଇଦେଉଛି। ବାଃ! ଏଇଟା ମୋ ସାମ୍ରାଜ୍ୟ, ମୁଁ ରାଜା। ମୁଁ ଆଉ କାହାଠାରୁ ଊଣା ନୁହେ।

କେତାର ଆଖି ଲାଗି ରହିଛି ଉଠାଣିର ଶୀର୍ଷରେ ୯୩୪ ନମ୍ବର ଖୁଣ୍ଟ ପାଖକୁ। ତାକୁ ବୋଧହେଲା ତା' ପାଖରେ ଖଣ୍ଡେ ମେଘର ଛାଇ ଭାସି ଯାଉ ଯାଉ ରହିଗଲା। ଖୁବ୍ ନରମ, ଖୁବ୍ କାକର ଗୋଟାଏ ଛାଇ। ସେ ଲେଉଟି ଚାହିଁଲା ବେଳକୁ ଝଣ୍ କରି ରିକ୍ସା ଘଣ୍ଟି ବାଡେଇ ତାକୁ ସେମିତି ହସିଲା ମୁହଁରେ ଚାହିଁ ରହିଲା। ତା'ର ପାଞ୍ଚହାତିଆ ଦୋସ୍ତ। କେତା ଭୁଲିଗଲା ତା'ର ଶୋଷକୁ। ଭୁଲିଗଲା ତା'ର ଅଭିମାନ। ତା'ର ଆତ୍ମା ପାଖୁଡାମେଲି ମୁକୁଳିଗଲା। ମୁହଁରେ କିନ୍ତୁ ସେଇ ଟିକକ ବିକୃତ ହସ!

ରିକ୍ସାବାଲାର ଗାଡିରେ ସବାରୀ କାହିଁ? ସେ ହାତଠାରି କେତାକୁ ଡାକୁଛି ତା' ଗାଡିରେ ବସିବାକୁ? କେତା କୁରୁଳି ଉଠିଲା। ବିଭୋର ହୋଇ ମୁଣ୍ଡ ଝାଙ୍କିଲା। ଅନୁନୟରେ ସୂଚେଇଦେଲା ଯେ ସେ ସେଥିରେ ବସିବା ଲାଏକ୍ ନୁହେଁ। ଏତିକିରେ ସେ ତା' ଦୋସ୍ତ୍ ପାଖକୁ ଲାଗି ଆସିଥିଲା। ଉଭୟଙ୍କ ଆଖିରେ ଅଜସ୍ର ଭାଷା।

ବରଂ ଖାଲି ରିକ୍ସାଟାକୁ ତଳୁ ପେଲିବ – ତା' ଦୋସ୍ତ ତାକୁ ଉପରୁ ଭିଡିବ। ପିଲାଏ ଖେଳିଲା ପରି ଅନାୟାସରେ ସେମାନେ ଟେଳି ନେଇଯିବେ ସେ ରିକ୍ସାଟିକୁ ଗଡାଣିର ଶୀର୍ଷ ପର୍ଯ୍ୟନ୍ତ। ରିକ୍ସାବାଲା ବୁଝିଗଲା। ମଙ୍ଗିଗଲା।

ଗୋଟାଏ ନିଃଶ୍ୱାସରେ ରିକ୍ସାଟାକୁ ସେମାନେ ଦଉଡେଇ ନେଇଗଲେ ଉପରକୁ। ଶିଖ ଉପରେ ହାଲିଆରେ ହସି ହସି ଦୁହେଁ ଦୁହିଁଙ୍କୁ ଅନେଇଲେ କିଛି ସମୟ। ଆକାଶରେ ଧୂଆଁ ମେଞ୍ଚାଏ ପରି କାହୁଁ ଆସି ଚେନାଏ ମେଘ ପହଁରିଗଲା।

୯୩୪ ନମ୍ବର ଖୁଣ୍ଟମୂଳେ ପ୍ରଥମଥର ପାଇଁ କେତା ଦେଖିଲା ଖୁବ୍ ପ୍ରଶସ୍ତ ଗୋଟାଏ ମନ୍ଦା ଚକୁଣ୍ଡା। ତା' ଉପରେ ହଳଦିଆ ଶାଗୁଆ ରଙ୍ଗର ଅନେକ କଅଁଳିଆ ପତ୍ର।

ରିକ୍ସାବାଲା ପୁଣି କେତାକୁ ରିକ୍ସା ଉପରେ ବସିବାକୁ ଠାରିଲା । ତା' ବାଙ୍କୁରା ବାଙ୍କୁରା ହାତ ଧରି ଡାକିଲା । କହିଲା – "ଆସୁନୁ! ଆ' ମ', ଯା ଉପରେ ବସ୍!!"

ଗଦିଟାକୁ ଦୁଇ ଥାପୁଡା ମାରି ଝାଡିଦେଲା – ସତେ ବା କେତା ତା'ର ଲକ୍ଷେଟଙ୍କିଆ ସବାରୀ । ରିକ୍ସା ଖଣ୍ଡ ତଳମୁହାଁ ହୋଇ ଥୁଆହୋଇଥାଏ । ବସି ଛାଡିଦେଲେ ପକ୍ଷିରାଜ ଉଡିଯିବ କାହିଁ କେଉଁ ରାଜ୍ୟକୁ!

ହେଇ ଦୂରରେ ପଞ୍ଜାବୀ ହୋଟେଲ୍ । କଳା ରସହାଣ୍ଡି, ଅଇଁଠା ପ୍ଲେଟ୍ । ରଙ୍ଗ ରଙ୍ଗ ମାଟି ଘୁମାରେ କାକର ପାଣି । କେତାକୁ ଶୋଷ ପୁଣି ଘାରିଆସିଲା । ମୁଣ୍ଡ ନଇଁଗଲା କେତାର । ହାତଯୋଡିକ ଓହଳିପଡିଲେ ।

ପୁଣି ହାତ ଧରି ରିକ୍ସାବାଲା ତାକୁ ଚାହିଁ ହସିଲା । କେତା ଭୁଲିଗଲା ତା' ଦୁରନ୍ତ ଶୋଷ । ନାଚିଗଲା ତା' ବାଙ୍ଗରା ଗୋଡ ଫରକଟେଇ ପିଲାଙ୍କ ପରି । ତା'ପରେ –

କେତା ବସିଗଲା ସେଇ ନାଲି ନରମ ସିଂହାସନରେ । ତା' ଉପରେ ଛତି ଟେକି ଧରିଲା ଆକାଶ । ତା' ପାଦତଳେ ଗାଲିଚା ବିଛେଇ ଦେଲା ପୃଥିବୀ । କେତା ଲୁଚେଇ ଲୁଚେଇ ଗଦି ଉପରେ ହାତ ମାରି ନେଉଥାଏ । ଟିକିଏ ଚିପିନେଉଥାଏ । ତା' ବୁକୁ ଧଡପଡ । ମୁହଁ ତଳକୁ । ଜାକିଜୁକି ହେଇ, ଟେକି ହେଇ ସେ ବସିଥାଏ । ରିକ୍ସାବାଲା ହୋ ହୋ ହେ ହେ ହସିଉଠିଲା । ଥରେ ତଳକୁ ଲଇଁ କେତା ମୁହଁକୁ ଚାହିଁ ଟାପରାକଲା ଭଙ୍ଗୀରେ କହିଲା – 'ହେଏ...'

ତା' ଉତ୍ତାରୁ ଧଡାସ୍ କିନା ବସି ଗଡାଣିକୁ ଛାଡିଦେଲା ରିକ୍ସା !

ରିକ୍ସା ଉଡିଲା ଆକାଶରେ । ଗୁଡାଏ ପବନ କେତା ଭିତରକୁ ପଶିଯିବାଠାରୁ ସେ ଆକ୍ତା ହେଇଗଲା । ତାକୁ ଲାଗିଲା ଯେ, ସେ ହେଇଗଲା ଗୋଟାଏ ରଙ୍ଗିନ୍ ବେଲୁନ୍ – ଉଶ୍ୱାସରେ ପବନରେ ଉଡି ଚାଲିଯିବ । ତା' କଲିଜା ଉଠି ଆସି ତଣ୍ଟି ପାଖରେ ଧକ୍ ଧକ୍ ହେବାର ସେ ଅନୁଭବ କଲା ।

୯୩୩ ଖୁଣ୍ଟି ସାଇଁକିନା ପାରିହେଇଗଲା ।

ରିକ୍ସା ମିଶିଗଲା ପବନରେ ତା'ର ଛୋଟ ଛୋଟ ଦୁଇଟି ବାଙ୍ଗରା ହାତ ମେଲେଇ । କେତା ରିକ୍ସାର ବାହାକୁ ଜାବୁଡି ଧରିଥାଏ । ନିଃଶ୍ୱାସ ରୋଧି ବସିଥାଏ ପ୍ରବଳ ବେଗରେ ଗଡିଯାଉଥିବା ଯାନ ଉପରେ । ତାକୁ ଡରମାଡିଲା । ଭାରି ଅସୁସ୍ଥ ଲାଗିଲା । ତାକୁ ବିନା କାରଣରେ ହଗ ମାଡିଲା । ଏମିତି ହଟହଟା ହବାକୁ କ'ଣ ଲୋକେ ରିକ୍ସା ଚଢୁଚନ୍ତି ? ଏମିତି ସର୍ ସର୍ ଖସିଯିବା ଅପେକ୍ଷା ତାତିଲା ଭୂଇଁ ଉପରେ ପାହୁଣ୍ଡ ପକେଇ ପାଦ ଥାପି ଥାପି ଚାଲିବା ବରଂ ଶହେ ଗୁଣ ଭଲ !

ଟିକିଏ ଉଶ୍ୱାସରେ ସେ ଅନେଇଲା ଦୁଇ ଆଡକୁ, ଆଗକୁ । କାହୁଁ ଗୋଟାଏ ଅପୂର୍ବ ଉଲ୍ଲାସ ତା' ଭିତରେ ପୁରିଗଲା । ତା' ଭିତରଯାକ ସଲସଲ ଲାଗିଲା । ସେ ଚିଲଛୁଆ ପରି କୁରୁଳି ଉଠିଲା ।

ପିଲାଟିଏ ପରି ରିକ୍ସାବାଲା ବି ସେମିତି କୁରୁଳି ଉଠିଲା ତାକୁ ଅନୁସରଣ କରି । ଟେକି

ନେଲା ତା' ଗୋଡ ଯୋଡାକ ହେଣ୍ଡଲ୍ ଉପରକୁ ।

କିଛି ନ ବୁଝି କେତା ଟେକିନେଲା ତା' ଗୋଡ ଯୋଡିକ ସିଟ୍ ଉପରକୁ । ଏମିତି ଗଡିଯାଉଥିବା ରିକ୍ସା ଉପରେ ଯୋଡିଏ ମୋଷ୍ଟା ମଣିଷ ପବନର ସୁଅ କାଟି ଆଗେଇଗଲେ, ପଛରେ ପଡି ରହିଲା ୯୩୨ ନମ୍ବର ବତିଖୁଣ୍ଟ । ତଥାପି ବେଗର ଊଣା ନାହିଁ । ଆସ୍ତେ ଆସ୍ତେ ସୂର୍ଯ୍ୟ ତାରା ଯେ ଯାହାର ସ୍ଥାନ ଆବୋରିଗଲେ । ବତିଖୁଣ୍ଟ ସବୁ ଜୀଅନ୍ତା ସାପପରି ପହଁରି ନଯାଏ ସ୍ଥିର ହୋଇଆସିଲେ । ନଇଁ ଆସିଲା ରିକ୍ସାବାଲାର ଗୋଡ ଯୋଡିକ ତଳକୁ । କେତାର ଗୋଡ ମଧ ନଇଁ ଆସିଲା ତଳକୁ ।

ରିକ୍ସା ଆସି ଏକାଥରକେ ଠିଆହେଲା ପଞ୍ଜାବୀ ହୋଟେଲ୍ ସାମ୍ନାରେ । ହୋଟେଲ ମାଲିକ ପ୍ରଥମେ ରିକ୍ସା ଉପରକୁ ଚାହିଁ ଆଖି ଖୋସିଦେଲା । ସେ ଆଉ କିଛି କହିପାରିଲା ନାହିଁ । ଭେଳିକି ଲାଗିଲା ପରି ଆବାକାବା ହେଇ ଅନେଇଲା । ପାଷ୍ଟହାତିଆ ଆସ୍ତେ ରିକ୍ସା ଛାଡି ଠିଆହେଲା । କେତା କିନ୍ତୁ ତା' ହାତ ଗୋଡ ଓସାରି ସେମିତି ଶୂନ୍ୟକୁ ଚାହିଁ ବସିଥାଏ । ତା' ମୁହଁରେ ସେମିତି ବିସ୍ମୟ ଲାଗି ରହିଥାଏ । ରିକ୍ସାବାଲା ଉଭୟଙ୍କୁ ଟିକିଏ ଚାହିଁନେଲା ।

ଚମକେଇଲା ପରି ପାଟିକଲା, "ହେ, କିଏ ଅଛ ଖାନା ଦିଅ ।"

ତା' ଅଣ୍ଟା ପାଖରୁ ଝାଳରେ ଓଦାହୋଇ ମୋଡା ହୋଇଥିବା ନୋଟ ଫିଟେଇ ସେ ଚାହିଁଲା ଚାରିଆଡକୁ । ତା'ପରେ କେତାକୁ ଓହ୍ଲେଇ ନେଇ ଦୁହେଁ ବସିଗଲେ ଗୋଟିଏ ବେଞ୍ଚ ଉପରେ ।

ରାସ୍ତା କଡର ଛୋଟ ହୋଟେଲଟିରେ ମାତ୍ର ଗୋଟିଏ ପିଲା । ସେ କଅଣ ଭାବିଲା କେଜାଣି ମୋଟେ କାନେଇଲା ନାହିଁ । ସେମିତି କରଛଡା ଦେଇ ଭିତରକୁ ଚାଲିଗଲା । ମାଲିକ କିଛି ସମୟ ପରେ ଘଟଣା ପୂରା ବୁଝିଗଲା ବୋଧହୁଏ । ଗଳା ଝାଡି ବସିଗଲା ।

ଖୁବ୍ କଡା, ନିର୍ମମ ସ୍ୱରରେ କହିଲା – ଖାନା ନେହିଁ ହେ ।

ରିକ୍ସାବାଲାର ଆଖିକୁ କାହୁଁ ଗୋଟାଏ ନିଆଁ ଦହକି ଆସିଲା । ସେ ମୁଠାଏ ନୋଟ୍‌କୁ ଟେବୁଲ୍ ଉପରେ ଟିକିଏ ଜୋର୍‌ରେ କଚିଦେଇ କହିଲା, 'ଏ ପଇସା ନେଇ ଆମକୁ ଖାଇବାକୁ ଦିଅ!'

'ନେହିଁ, ଖାନା ନେହିଁ ମିଲେଗା ।' – ଆସିଲା ଉତ୍ତର । ହୋଟେଲ ମାଲିକ ମାଲିକାନା ସ୍ୱରରେ ପୁଣି କହିଲା, 'ହେ କେତା, ତୁ କ୍ୟା ଉଧର ବୈଠା ହେ ? ନିଶା ଖାୟା ହେ କ୍ୟା ? ତୁ ଚଲ୍ ବର୍ତନ ସାଫ କରେଗା । ଆଜ୍ ତେରା ଖାନେକା ଦିନ୍ ନେହିଁ ହେ ।'

କେତାକୁ ଶୁଭିଲା ଗୋଟାଏ ଚଡକ ପଡିଲା ପରି । ସେଇଟା କିନ୍ତୁ ରିକ୍ସାବାଲାର ଚିତ୍କାର । ସେ ଟେବୁଲ ବାଡେଇ, ଦାନ୍ତ ଜଡମଡ କରି ଉହୁଁକି ଉଠିଲା । ତା' ଆଖିରୁ ନିଆଁ ଝୁଲ ଖସିପଡୁଥାଏ । ସେ ଚିର୍‌ଚିରେଇ ଉଠିଲା, 'ତୁ ଭାତ ବିକି ପେଟ ପୋଷୁଚୁ । ଯେ ପଇସା ଦବ ତୁ ତାକୁ ଅଲବତ୍ ଖାନା ଦେବୁ ।'

ମାଲିକ କିଛି ନକହି ଫୋନ୍ ଉଠେଇଲା । କ'ଣ ସବୁ ଗାଜୁରୁ ଗାଜୁରୁ କହିଲାଗିଥାଏ ।

ଆଉ ରିକ୍ସାବାଲା ? ଯେ ଏତେ ସୁନ୍ଦର ହସି ଜାଣେ, ସେ ପୁଣି ଏମିତି ରାଗିପାରେ ? ଗୋଟା ଗୋଟା ଚୌକି ଛେଚି ଗୁଣ୍ଡ କରିପକାଉଥାଏ । କେତା ଛାନିଆହୋଇ ଆଡେଇ ହୋଇ ଠିଆହୋଇଥାଏ । ଶେଷକୁ ଗୋଟାଏ ଦଣ୍ଡା ଧରି ରିକ୍ସାବାଲା ଖେପିଗଲା ହୋଟେଲ ମାଲିକଆଡକୁ । ତା' ପାଟିରୁ ଫେଣ ବାହାରୁଥାଏ । ଏତିକିବେଳେ ଗୋଟାଏ ଜିପ୍ ଆସି ଠିଆହୋଇଗଲା । ପୋଲିସ୍ ଓହ୍ଲେଇ ଆସିଲେ । ରିକ୍ସାବାଲାର ଦୁଇ ହାତ ଭିଡିନେଇ ତାକୁ ବେଡି ଫିନ୍ଧେଇଦେଲେ । ସେ ପାଟିକଲା, ଛାଟିପିଟି ହେଲା – ଭିଡିହେଲା ସେ ମାଲିକକୁ ମାରିବାକୁ । ପାଟି ତୁଣ୍ଡ, ବିଧା ଗୋଇଠା, ଗାଳି ଟକରାଳ ଭିତରେ କେତା ଆଖିରେ ପତା ନ ପକେଇ ଚାହିଁରହିଥାଏ ।

ଗୋଟାଏ ଅପରିଚିତ ଗହଳି ଭିତରୁ କେତାକୁ ଶୁଭୁଥାଏ – 'ମୁଁ ଅଲବତ୍ ତତେ ଏଠି ଦିନେ ଖୁଆଇବି । ତୁ ଏ ଶଳାର ବର୍ତ୍ତନ ମାଜିବୁ ନାଇଁ – ଦେଖି, ତତେ ତୋ ଭାଇ ରାଣ ।'

ତା'ପରେ ଜିପ୍‌ର ଘାଉଁ ଘାଉଁ । ଆଉ ଗୋଟାଏ ଧକ୍କା ।

କୁଢେଇ ହୋଇ ପଡିଲା କେତା ଭୂଇଁ ଉପରେ । ଉଠି ପୁଣି ଠିଆହେଲା ।

ତା' ଉପରକୁ ଘୋଡେଇଲା ପରି ଉଭାରି ରହିଥାଏ ହୋଟେଲ ମାଲିକ । ସେ ଆଙ୍ଗୁଠି ଦେଖେଇ ଆଦେଶ ଦେଉଥାଏ ଯାଇ ବର୍ତ୍ତନ ସଫାକରିବାକୁ । ସେ ବୋଧହୁଏ ପାଣି ପିଇବାକୁ ମଧ କହୁଥାଏ ।

କେତା ପରିଚିତ ଭୂଇଁ ଉପରେ ଚାରିଆଡକୁ ଚାହିଁ ଟିକିଏ ହସିପକେଇଲା । ତାକୁ ଅଜସ୍ର ଶୋଷ ।



# ପଡୋଶୀ

କାହିଁକି ଜଣେ ଘୋର ଦୁର୍ଦ୍ଦିନରେ ବର୍ଷା ବତାସି ନ ମାନି ତା'ର ରୋଗିଣା ପିଲାଙ୍କୁ ପଟାଖଟ, ବେତଚୌକି, ଅଖା ଏବଂ କିରାସିନ୍ ଟିଣ ଇତ୍ୟାଦି ସହିତ ଗୋଟିଏ ଭଡା ଟ୍ରକ୍‌ରେ ବୋଝେଇ କରି ପାଞ୍ଚଶ ମାଇଲ୍ ଦିନରାତି ଯାତ୍ରା କରିବ, ଏହା ମୁଁ ଏଯାଏ ବୁଝିନାହିଁ; କିନ୍ତୁ ଏତିକି ବୁଝିଛି ଯେ ଏମିତି ଯିବାକୁ ହୁଏ । ଊଣା ଅଧିକ ସମସ୍ତେ ଯାଇଛନ୍ତି । ଯେଉଁମାନେ ଯାଇନାହାନ୍ତି, ତାଙ୍କର ଯିବା ଉଚିତ ଥିଲା । ବହୁ ଉଚିତ କାର୍ଯ୍ୟ ହୋଇ ନ ପାରିଲା ଭଳି ତାଙ୍କର ମଧ ଯିବା ହୋଇନାହିଁ । ଆମେ କିନ୍ତୁ ଏଥିପାଇଁ ଜନ୍ମ ଲଭିଛୁ । ବାରମ୍ବାର ଆମକୁ ଏପରି ଘୋଷାରିବାଦ୍ୱାରା ଦୁର୍ଗମ ଅଞ୍ଚଳକୁ ବାଟ ଫିଟିଛି । ଆମ ଜରିଆରେ ଅଦ୍ଭୁତ ଉପାଦେୟ ତଥ୍ୟମାନ ମଧ ପ୍ରମାଣିତ ହୋଇପାରିଛି; ଯଥା – ଅମୁକ ଅଞ୍ଚଳର ପାଣିଘେର ଭିତରେ ଔଷଧ ଏବଂ ଡାକ୍ତରଙ୍କ ଅଭାବ ହେତୁ ରୋଗଗ୍ରସ୍ତ ଶିଶୁମାନଙ୍କୁ ଅଗତ୍ୟା ମରିବାକୁ ହୁଏ । ସମୁକ ପାହାଡିଆ ନଦୀର କଲ୍‌ଭର୍ଟ ଉପରେ ରାତିରେ ଗଲାବେଳେ ଟ୍ରକ୍ ଲେଉଟିପଡି ସର୍ବସ୍ୱ ଭାସିଗଲେ ସୁଦ୍ଧା, ପାଣି ଉପରକୁ ଦିଶୁଥିବା ଚକକୁ ଆଶ୍ରୟ କରି ରାତି ବିତେଇବାକୁ ହୁଏ । ଦୁଇ ମାସରେ ଥରେ ଲେଖା ସ୍କୁଲ ବଦଳ କରିବାଦ୍ୱାରା ପିଲାଏ ଚୁତଙ୍ଗ ହୋଇଯାଆନ୍ତି । କୋରାପୁଟର ନଡାଘର ଅପେକ୍ଷା ମୟୂରଭଞ୍ଜର ଟାଇଲ୍ ଘରଗୁଡିକ ଭଡାରେ ଟିକିଏ ଶସ୍ତା ଇତ୍ୟାଦି । ସେହିପରି ଗୋଟିଏ ଯାତ୍ରା ଶେଷରେ ଆମେ ଆସି ଏ ଘରେ ପହଞ୍ଚିଛୁ ।

ଘର ଛାତ ଉପରେ ଗୋଟାଏ ବିରାଟ ବଡବୃକ୍ଷ ଶାଖା ବିଛେ ହୋଇ ରହିଛି । ଦିନେ ହୁଏତ ଘର ସାମ୍ନାକୁ ଓହଳିପଡିବ ଏବଂ ଆସ୍ତେ ଏ ଘରଟିକୁ ଟୋଳିନେବ; କିନ୍ତୁ ଅହୋ ଭାଗ୍ୟ, ଏଠି ପହଞ୍ଚୁ ପହଞ୍ଚୁ ଖଣ୍ଡେ ଘର ଆଗେ ମିଳିଗଲା । ଆମେ ଯେତେବେଳେ ଆସି ଏଠି ପହଞ୍ଚିଲୁ ବର୍ଷା ଛେଚୁଥାଏ । ରାତି ସେତେବେଳକୁ ନଅଟା । ପିଲାଏ ଶୋଇଯାଇଥାନ୍ତି । ଆଗରେ ପଛରେ କିଟ୍‌କିଟ୍ ଅନ୍ଧାର । ଆକାଶରେ ଗୁମୁଗୁମୁ ମେଘ । ଭାରି ଅସହାୟ ଅବସ୍ଥା ।

ଏତିକିବେଳେ ଆଲୁଅଟିଏ ଦିଶୁଥିଲା – ବୋଧହୁଏ ଲଣ୍ଠନ ଆଲୁଅ । ତାକୁ ଦେଖି ଟ୍ରକ୍

ଆଲୁଅ ପୁଣି ଜାଳିଦେଲୁ । କିଛି ସମୟ ପରେ କାଳିଆ ହୋଇ ଛୋଟିଆ ମଣିଷଟିଏ ଆସି ଠିଆହେଲା । ଗୋଟିଏ ହାତରେ ଛତା, ଆର ହାତରେ ଲଣ୍ଠନ । ଆଣ୍ଠୁ ଉପରକୁ ଲୁଗା ଟେକିନେଇଛି । ଫୁଙ୍ଗୁଳା ଦେହ । ମୁଁ କବାଟ ଫିଟେଇବା ମାତ୍ରେ ସେ ଉପରକୁ ଚାହିଁଲା । ଛତାରୁ ଝର ଝର ପାଣି ନିଗିଡିଯାଉଥାଏ । ମୁଁ ପଚାରିଲି, "ଆଚ୍ଛା, ଏଠି କୃଷ୍ଣଚନ୍ଦ୍ର ସାହୁଙ୍କର ଭଡାଘର କୋଉଠି କହିପାରିବ ?" ସେ ଟିକିଏ ହସିଲା ବୋଧହୁଏ । "ଆପଣ ପରା ଘର ଆଗରେ ଅଛନ୍ତି ।" ହେଇପରା ଘର କହି ବାଆଡକୁ ଲଣ୍ଠନଧରା ହାତଟି ଟେକିଦେଲା ।

"ଓଃ, ଅନ୍ଧାରରେ ବାଉଳି ହେବାକୁ ମଣିଷ ବଞ୍ଚିଗଲା ।"

"ଆଚ୍ଛା, ଟିକିଏ ବାଟ ଦେଖାଇ ଦେଇପାରିବ ?"

"ମୁଁ ତ ସେଇଥିପାଇଁ ଆସିଛି ।"

"ଆଚ୍ଛା !"

"ଆସନ୍ତୁ" – କହି ସେ ଆଗେଇଗଲା ।

ଆମ ଆଗକୁ ଟ୍ରକ୍ ଆଲୁଅରେ ଦିଶିଲା ଅସଂଖ୍ୟ ଖମ୍ବ ପରି ବଟଗଛ ଓହଳ । ସେଇ ବାଟ ଦେଇ ଶଗଡଗୁଳା ଉପରକୁ ଟ୍ରକ୍ ନଇଁଲା । ଚାରିଆଡେ ଝପ୍ ଝପ୍ ବର୍ଷା । ଗୋଟିଏ ପାଞ୍ଚଫୁଟିଆ ପାଚେରି ମଧ୍ୟରେ କାଳିଆ ସରୁ କବାଟଟିଏ ଦରମେଲା କରି ଛତା ଧରି ସେ ଲୋକଟି ଠିଆ ହୋଇଥାଏ ।

ଗାଡି ରହିଲା ।

ପିଲାଙ୍କୁ ହଲା ଝୁଲା କରି ଚେଙ୍ଗା କଲୁ । "ହେଇ ଉଠରେ ପିଲେ, ଆମ ନୂଆ ଘର ଆସିଗଲା ।" ଇଞ୍ଜିନ୍ ବନ୍ଦ ହେଲା, ଲାଇଟ୍ ଲିଭିଲା । ସେ ଲଣ୍ଠନଟି ବ୍ୟତୀତ ଆଉ କେଉଁଆଡେ ଟୋପାଏ ବୋଲି ଆଲୁଅ ଦିଶୁନଥାଏ । ସେ ରାଜ୍ୟରେ ବର୍ଷା ସେମିତି କାଟୁଥାଏ । ଟ୍ରକ୍ ଉପରୁ ଖୋପାମାରି ଡେଇଁପଡିଲି । "ତୁମେ ବସିଥାଅ, ମୁଁ ଦେଖୁଛି ।" ଦୁଆରବନ୍ଧ ଉପରେ ସେ ଲୋକଟି ସାଙ୍ଗରେ ଲେସିହେଲାପରି ମୁଁ ଦୌଡିଯାଇ ଠିଆହେଲି । ତା'ପରେ ତା'ର ସେଇ ସାନ ଛତା ତଳେ ଖାଲି ମୁଣ୍ଡଟିକୁ ଗଳେଇ ଦେଇ ପାଦେ ପାଣିରେ ଗୁଗୁଡି ଅଗଣା ପାରିହୋଇ ପିଣ୍ଡା ପାହାଚ ଉଠିଗଲି ।

ମନ୍ଦ ନୁହେଁ । ଭଡାଟିଆ ଆଉ କୋଉଦିନ ଘର ବାଛି ଶିଖିଲେ । ଏଇଟା ମିଳିଗଲା – ଭାଗ୍ୟର କଥା ।

ପଚାରିଲି – "ଏଇଟା କ'ଣ ଶୋଇବା ଘର ?"

"ଆପଣ କେମିତି ଚାହିଁବେ ।"

ମନ୍ଦ କ'ଣ । ଅବଶ୍ୟ ଦୁଇଶ ଟଙ୍କା ଭଡା, କିନ୍ତୁ କ'ଣ ଆଉ ଚାରା ଅଛି ? କୋଉ କାଳେ ଶସ୍ତାରେ ସିନା ମିଳୁଥିଲା – ଏବେ ଆଉ ନାହିଁ । ଛାଡ...

"ଆଚ୍ଛା, ତୁମ ନାଁ କ'ଣ ?"

"ସାଧୁ – ସାଧୁ ବେହେରା ।"

"ବାଃ, ବଢ଼ିଆ ନାଆଁ ତ ।"

"ଟ୍ରକ୍‌ରେ କ'ଣ ସବୁ ଭାରି ଜିନିଷ ଅଛି କି ଆଜ୍ଞା ?" – ଖୁବ୍ ଆପଣାର । କ'ଣ ମତଲବ କେଜାଣି !

"ଭାରି ଆଉ କଅଣ ?...ଖଟ ତିନିଖଣ୍ଡ, ଚଉରି ପାଞ୍ଚଖଣ୍ଡ ବାକ୍ସ, ଖଣ୍ଡେ ସାଇକଲ । ସିଲେଇ ମେସିନ୍ – ଆଉ ଏମିତି ପେଷଣା, ଶିଳ, ଘୋରଣା..."

"ବାଆସ୍, ଏତିକି ତ !" – ମାନେ ? ଆମର ଆଉ କିଛି ନାହିଁ ନା କ'ଣ !

"ଏତିକିରେ କ'ଣ ଟ୍ରକ୍ ଭର୍ତ୍ତି ହୋଇଥାନ୍ତା – ସୋଫା, ଗଦି, ଷ୍ଟିଲ୍ ଜିନିଷ, କାଚ ଜିନିଷ, ବହିପତ୍ର ଆଉ କେତେ କଅଣ ।"

"ଏ ବର୍ଷା ଦେଖୁନାହାନ୍ତି – ଏଥିରେ କଅଣ କିଛି କରିହେବ ? ଖାଲି ଆପଣଙ୍କର ଯାହା ନ ହେଲେ ନ ଚଳେ – ଚଉଳନ୍ତୁ ମୁଁ ଓହ୍ଲେଇ ନେଇଆଣୁଛି ।"

"ଅଜଣା ଅଶୁଣା ଲୋକ । ନୂଆ ଜାଗା । ବର୍ଷା ରାତି । ନିଛାଟିଆ ଘର ।"

"ଇଠି ଆଜ୍ଞା ଜମା ଚୋରି ହେବନାହିଁ । ତଥାପି ଆପଣଙ୍କର ଗହଣା, ଶାଢ଼ୀ, ଘଣ୍ଟା ଆଦି ଯାହା ଦାମିକା ଜିନିଷ ଅଛି ନେଇଆସିବା ଭଲ ।"

"ସେଇଟା ମୁଁ ନିଜେ ନେଇଆସିବି ।"

"କାହିଁକି ଆଜ୍ଞା ? ଆପଣ କାହିଁକି ଓଦା ହେବେ ମୁଁ ଥାଉ ଥାଉ ? ଆମ ଖାଉନ୍ଦ ଶୁଣିଲେ ମତେ ଆଉ ରଖିବେ ?"

"ଆଚ୍ଛା, ଘର ମାଲିକଟି ତ ଭାରି ବଢ଼ିଆ ଜଣାପଡୁଛନ୍ତି ।"

"ଝରକା ଆଡେ ବିଜୁଳି ଚମକିଗଲା । ଭୟଙ୍କର ବର୍ଷା । ହଠାତ୍ ଅସହାୟ ଲାଗିଲା ।"

ଏଇଟା ବୋଧହୁଏ ଡକାୟତିପାଇଁ ଜାଲ ବିଛେଇ ରଖାହୋଇଛି । ହତ୍ୟା ବି ହୋଇଯାଇପାରେ । ଦେହ ଶୀତେଇ ଗଲା ।

ଲଣ୍ଠନ ଆଲୁଅରେ ଲୋକଟା ଦାନ୍ତ ଦେଖେଇ ହସୁଥାଏ ।

"ଆପଣଙ୍କ ପାଇଁ ଓ ପିଲାପିଲିଙ୍କ ପାଇଁ ଖାଇବାକୁ ପଠେଇଦେଇଛନ୍ତି । ମୁଁ ସେ ରନ୍ଧାଘରେ ଥୋଇଦେଇଛି । ଛତା ଦି'ଖଣ୍ଡ ମଧ ସେଇଠି ଅଛି, କାଳେ ଲୋଡା ହେବ । ପିଲଙ୍କୁ ଘରକୁ ନେଇଆସି ଆପଣ ଖାଇନିଅନ୍ତୁ; ମୁଁ ଡ୍ରାଇଭରକୁ ପଚାରି ଜିନିଷ ଓହ୍ଲେଇ ଆଣୁଚି ।"

ଖାଇବାକୁ – ଆମାପାଇଁ ଖାଇବାକୁ କିଏ କାହିଁକି ପଠାଇବ ? ତା'ହେଲେ ତ ଆଉ କିଛି ସନ୍ଦେହ ନାହିଁ । ସେଥିରେ ନିଶ୍ଚୟ କିଛି ମିଶେଇ ଦିଆହେଇଥିବ । ଖାଇଲା ମାତ୍ରେ ବଉଁଶଯାକ ସେଇଠି ଲୋଟିପଡିବୁ । ତା'ପରେ...

"ନା, ଆମେ କାହିଁକି କାହାର ଖାଇବାକୁ ଯିବୁ ? ସେସବୁ ତୁମେ ଫେରେଇ ନେଇପାର । ଆମେ ଆମ ବ୍ୟବସ୍ଥା କରିବୁ ।"

ସେ ଲୋକଟା ସେମିତି ହସି ହସି ଠିଆହୋଇଥାଏ । କଅଣ ଭାବୁଥାଏ କେଜାଣି ?

"ଆପଣ କଅଣ ଏ ବର୍ଷାରେ ଚୁଲି ଲଗେଇ ରାନ୍ଧିବେ ନା କଅଣ ? ନା, ଏଠିକି ଆସି ଭୋକେ ଶୋଇବେ ? ଆସନ୍ତୁ ରନ୍ଧାଘରକୁ । ଯଦି ମନ ନପାଇଲା ତେବେ କାଠ ପାଣି ଯୋଗାଡ କରିବା ।"

ଲଣ୍ଠନ ଧରି ସେ ବୁଲି ଚାଲିଗଲା ରନ୍ଧାଘରକୁ ।

ପାତଳ ହେଲେ ମଧ୍ୟ ଖୁବ୍ ଟାଣୁଆ, ଖୁବ୍ ଚଞ୍ଚଳିଆ ମଣିଷ ଖଣ୍ଡେ । ବାତ ଡେଇଁ ପଳେଇବା ଭଳି ବୟସ ଅଛି, ଯଦି ଅଭ୍ୟାସ ଥାଏ ।

ରନ୍ଧାଘରଟି କାଠିମୁଠିଆ ହୋଇ ଛୋଟିଆ ବଖରାଟିଏ । ବେଶ୍ ପରିଷ୍କାର । ଘର ମଝିରେ ଦୁଇଟି ଟିଫିନ୍ କେରିଅର୍ ଡବା । କାନ୍ଥ ପାଖକୁ ନୂଆ ସୁରେଇରେ ପାଣି । ତା' ଉପରେ ଗୋଟିଏ ନିର୍ମଳ କାଚ ଗ୍ଲାସ୍ ।

ଅସମ୍ଭବ, ଏଇଟା ରୀତିମତ ଷଡଯନ୍ତ୍ର ! ଆଗରୁ ସବୁ ଯୋଗାଡ କରିଛି – ଜାଲରେ କେବଳ ଚଢେଇ ପଡିବା କଥା । ଆଜି ରାତିରେ ଆଉ ନିଷ୍କୃତି ନାହିଁ । ତଣ୍ଟି ଶୁଖିଗଲା ଭଳି ଲାଗିଲା ।

ସାଧୁ ବେହେରା ବସିପଡି ଡବା ଖୋଲିଦେଲା । ଚମତ୍କାର ପରଟା; ପରଜଣଆରେ ମହକୁଥିବା ଡାଲମା ଏବଂ ଚାରିଟି ସିଝା ଅଣ୍ଡା ।

ଆଶ୍ଚର୍ଯ୍ୟ ! ଏମାନେ କ'ଣ ଆମ ରୁଚି ମଧ୍ୟ ଆଗରୁ ଲକ୍ଷ୍ୟ କରିସାରିଛନ୍ତି ।

"ଆଚ୍ଛା ସାଧୁ, ମୋତେ ସବୁ ଖୋଲି ନ କହିଲେ ଚଳିବ ନାହିଁ । ଠିକ୍ ଠିକ୍ ବତା, ତୁ କିଏ । ବୁଝି ଖବରଦାର, ମୋ ପାଖରେ ବନ୍ଧୁକ ଅଛି, ଆଉ ଅସଲ୍ ନେପାଳୀ ଖୁରକି ମଧ ଅଛି । ତା'ର ଗୋଟାଏ ଚୋଟରେ ଏ ଝରକା ରଡ୍ ଛିଡିଯିବ, ଅଥଚ ଦାଢ ନଇଁବ ନାହିଁ ।"

ତଳେ ବସି ସାଧୁ ବଲ୍ ବଲ୍ କରି ଚାହିଁଲା କେବଳ । ମୁହଁରେ ସେମିତି ଅଳ୍ପ ଟିକିଏ ହସ । "ବାବୁ ବନ୍ଧୁକ ଆଣିଛ ? ତା'ହେଲେ ତ ଆମ ଦୁଃଖ ଗଲା । ଏଠି ଭାଲୁ ଏମିତି ମାତିଛନ୍ତି ଯେ କାହିଁରେ କ'ଣ । ଗୋଟେ ଦି'ଟା ଲାଛିଦେଲେ ପଳେଇବେ ।"

ଖୁବ୍ ପାକଳ ଜଣାପଡୁଛି । ଆଦୌ ଚମକୁନି କାହିଁକି ?

ଏତିକିବେଳେ ଧପ୍‌ଧପ୍ ପାଦଶବ୍ଦ ଘର ଭିତରକୁ ପଶିଆସିଲା । ମୋ ଗଣ୍ଠି ହୁଗୁଳିଗଲା । ହେଇ ବୋଧହୁଏ କଥା ସରିଗଲା ନା' କ'ଣ; କିନ୍ତୁ ଘର ଭିତରକୁ ପସିଆସିଲେ ବାବୁନା ଓ ବୁଲି – ପଛେ ପଛେ ତାଙ୍କ ମା । ସମସ୍ତେ ଓଦା । ଆଣ୍ଠୁରେ ହାତଦେଇ ସେ ଅନେଇଲା ସେ ଡବା ଉପରକୁ । 'ବଢିଆ ଅଣ୍ଡା ସିଝା ହୋଇଛି, ମୁଁ ସେଥିରୁ ଦୁଇଟା ଖାଇବି ।' ତାଙ୍କ ମା' ରନ୍ଧାଘରକୁ ଚାହିଁ ଖୁସି ହୋଇଗଲେ; କହିଲେ, 'ତାହେଲେ ସମସ୍ତେ ବସି ଆଗ ଖାଇନିଅ; ତା'ପରେ ଦେଖିବା ।' ସାଧୁ ବେହେରା ଖୁସିରେ ଅନେଇଛି ପିଲାଙ୍କୁ ଓ ତାଙ୍କ ମା'ଙ୍କୁ; ମୋତେ କିନ୍ତୁ ଲାଗିଲା ସେ ବୋଧହୁଏ ସୁନାଚୁଡି ଏବଂ କଙ୍କଣକୁ କଣେଇ କଣେଇ ଚାହିଁଥିଲା । ମୁଁ ହୁଏତ ପାଟି କରି ମନାକରିଥାଆନ୍ତି; କିନ୍ତୁ ପାରିଲି ନାହିଁ । ସ୍ତ୍ରୀ କହିଲେ, "କ'ଣ ବୋକାଙ୍କ ପରି ଅନେଇଛ ? ତୁମପାଇଁ

ଆଉ ବେଳ ଆସୁଛି କି ?"

ସାଧୁ ବେହେରା ମୋ ଆଡେ ଚାହିଁ ହସିଲା । 'କ୍ୟୌଁ ବଚ୍ଚା ଅବ୍ କାହା ଯାଏଗା' ଭଳି ତା' କୁଞ୍ଚ କୁଞ୍ଚ ଆଖିର ହସ ।

ଆଜି ଆଉ ରକ୍ଷା ନାହିଁ । କଥା ଖୋଲିଦେଲେ ବିଭ୍ରାଟ । ସମସ୍ତେ ଯଦି ଜାଣିଯାଆନ୍ତି ଯେ ୟେ ଡକେଇତଙ୍କ ଆଡ୍‌ଡା, ତେବେ ଅବସ୍ଥା ସମ୍ଭାଳିବା ସମ୍ଭବ ନୁହେଁ । 'ଠିକ୍ ଅଛି, ତେବେ ମୋ ପାଇଁ ରଖିଦେଇଥାଅ, ମୁଁ ଏବେ ଖାଇବି ନାହିଁ ।' ବାବୁନା ସିଝା ଅଣ୍ଡାଟାକୁ ବାଲୁ ବାଲୁ ଖାଇଲାଗିଥାଏ, ବୁଲି ଡାଲମାକୁ ଚିପରେ ଚାଟୁଥାଏ । ସ୍ତ୍ରୀ ପରଟା ଟେକି କହିଲେ, "ଏଯାଏ ଉଷୁମ ରହିଛି, ତାଜା ପରଟା । ଠିଆ ଠିଆ ଦିଖଣ୍ଡ ଖାଇଦେଇ ଯାହା କରିବ କରୁଥାଅ । ପଛକୁ କାକର ହୋଇଯିବ ।"

"ନା, ମୁଁ ଏବେ ଖାଇବି ନାହିଁ । ଚାଲ ସାଧୁ ଜିନିଷ କାଢିବା ।"

ସେ କଣ୍ଢେଇ ଭଳି ଖଟ୍‌କିନା ଉଠି ଠିଆହେଲା । ବିଜୁଳି ପରି ତା'ର ଗତିବିଧି । ଶଳା ନିଶ୍ଚେ ଖଣ୍ଡେ ହେଇଥିବ । ଦେଖିବା ବେ । ମୁଁ ବି ତ ପୋଖତ ସାତ ଘାଟ ପାଣିପିଆ ଅଛି । କେତେ କେତେ ବିପତ୍ତି ପାରି ହୋଇଯାଇଛି । କେତେ ରାଜ୍ୟ ବୁଲିଲିଣି । ଆହୁରି ବୁଲିବି । ତୁ ମୋତେ କ'ଣ ଦେଖେଇବୁ ?

ଛତା ଧରି ଦୁହେଁ ଓହ୍ଲେଇଗଲୁ ଅଗଣାକୁ ଏବଂ ବାହାରକୁ ।

"ହୋ ରାଜିନ୍ଦର୍ !"

"ଜୀ..."

ପଞ୍ଜାବୀ ଡ୍ରାଇଭରର ବୟସ ଚାଳିଶ । ଖୁବ୍ ଟକଟା । ମୋର ବଳ ଆହୁରି ଚଢିଗଲା । ଯଦି ଦଳକଯାକ ଛକି ରହିଥାନ୍ତି ତେବେ ବି ତାଙ୍କୁ ମୁକାବିଲା କରିହେବ । ସିଟ୍ ପଛଆଡୁ ବନ୍ଧୁକଟା ଉଠେଇଲି ଏବଂ ପାଞ୍ଚ ସେଲିଆ ଶିକାରୀଲାଇଟ୍ ବାହାରକରି ଟିପିବା ମାତ୍ରେ ଦେଖିଲି ସାଧୁ ବେହେରା ଛତାଧରି ସେମିତି ବର୍ଷାରେ ଟ୍ରକ୍‌କୁ ଲାଗି ଠିଆହୋଇଛି ।

"କ'ଣ ଜିନିଷ ଯିବ ?"

ମୁଁ ଚମକିଲି – କିନ୍ତୁ ଭାରି ସରଳ ଅବୋଧ ପ୍ରଶ୍ନଟିଏ । ମୁଁ ତାକୁ ଡାକିଲି – 'ଶୁଣ୍, ଏଠିକି ଆ' । ସାଧୁ ପାଖେଇ ଆସିଲା । କାଳିଆ ପକ୍ଷୀ ପରି ଛୋଟ ମଣିଷଟିଏ । "ଏଇ ଘର ମାଲିକ କ'ଣ ଏଇ ପାଖରେ ଥାଆନ୍ତି ? ସେ ଆମ ପାଇଁ ଏତେ କଷ୍ଟ କରି ରାନ୍ଧିବାଢି ପଠେଇଦେଇଛନ୍ତି – ତାଙ୍କୁ ଟିକିଏ ଧନ୍ୟବାଦ ଜଣେଇଆସନ୍ତେ – ସର୍ଦ୍ଦାରକୁ ମଧ ଥରେ ଦେଖିନିଅନ୍ତେ ଏବଂ ଜଣେଇ ଦିଅନ୍ତେ ଯେ ବିନା ଲଢେଇରେ କିଛି ମିଳିବ ନାହିଁ – ତୁମ ଖାଉନ୍ଦ ନାଁ କ'ଣ ?" ସାଧୁ ହସିଲା । "ତାଙ୍କ ନାଁ ସତେ କ'ଣ – ମୁଁ ତ ଏଯାଏଁ ଜାଣିନାହିଁ । ତାଙ୍କୁ କେହି ନା ଧରି ଡାକିବାର ବି ଶୁଣିନାହିଁ ।"

"ଆଚ୍ଛା, ତୁମେ ଏ ଘର କଣ୍ଟ୍ର କେମିତି ରଖିଛ ?"

"ଏ ଘର ମାଲିକ ହେଲା କୃଷ୍ଣ ସାହୁ ଶୁଣି । ତା' ଘର ଗାଁ ଆରପାରି । ସେ ଆମ ଖାଉନ୍ଦଙ୍କ

ପାଖରେ କଣ୍ଟ୍ର ସମର୍ପି ଦେଇଗଲା । ସେ ମୋତେ ଦେଲେ ଆସି ଆପଣଙ୍କ ତଦାରଖ କରିବାକୁ ।" – ଖୁବ୍ ପରିଷ୍କାର, ଛନ୍ଦକପଟ ନାହିଁ । ଗୋଳିଆମିଶା ନାହିଁ ।

"ଆଚ୍ଛା, ଏବେ ତୁମ ଖାଉନ୍ଦଙ୍କ ଦେଖା ମିଳିବ ?"

ସାଧୁ ପୁଣି ହସିଲା । "ତାଙ୍କ ଦେଖା ଆଜ୍ଞା ଆମେ ପାଇବା କଷ୍ଟ । ଏତେ ରାତିରେ ସେ କ'ଣ ମିଳିବେ ।"

"ଘରଟା କୁଆଡେ କହିଲ ?"

ସାଧୁ ବେହେରାର ଆଙ୍ଗୁଳି ଆଡକୁ ମୁଁ ଟର୍ଚ୍ଚ ମାରିଲି । କେବଳ ଦେଖାଗଲା ବର୍ଷାଧାର । କିଛି ନାହିଁ । ଛାଡ, ଦେଖାଯିବ ।

"ଆଚ୍ଛା ତା'ହେଲେ ସାଧୁ ତୁମେ ଯାଅ । ତମର ରହିବା ଦରକାର ନାହିଁ ।"

ମୁହଁ ବୁଲାଇ ଡ୍ରାଇଭରକୁ ଚାହିଁଲି । ତା' କାନ ପାଖରେ କହିଲି, "ୟେ ଡାକୁଓଁ କା ଆଡ୍ଡା – ମାଲୁମ୍ ପଡତା ହୈ । ହୋସିଆର୍ ରହନା ପଡେଗା ।"

ହୋ...ହୋ...ହୋ ।

ପଞ୍ଜାବୀ ହସରେ ଭୂଇଁ ଦୁଲୁକିଲା । ବାଃ, ଏଇ ହେଲା ଆତ୍ମବିଶ୍ୱାସ । – ଟିକେମାତ୍ର ଭୟ ନାହିଁ । ବୁକୁ ଉପରେ ଚାପୁଡା ମାରି ନିଶ ମୋଡିବାର ଏ ହସ । 'ତୁ ସି ଫିକର୍ ମତ୍‌କର । ବାଗିଶ୍ ଥମନେ ଦୋ, ଫିର୍ ଦେଖେଙ୍ଗେ ।' ତା'ରି କଥାରେ ମୁଁ ଗାଡିରୁ ଓହ୍ଲେଇଲି, ଘରେ ପଶିଲି, ପଛକୁ ଚାହିଁଲି ନାହିଁ । ରାଜିନ୍ଦର ଅଛି ସବୁ କଥାକୁ ।

ରନ୍ଧାଘରେ ପିଲାଏ ଖିଆପିଆ ସାରି ବସିଥାଆନ୍ତି । ପ୍ରଥମେ ସେମାନଙ୍କ ଆଖିକୁ ନିଘା କଲି । ପେଜୁଆ ଦିଶୁନଥାଏ । ମୁହଁରୁ ଫେଣ ବାହାରୁ ନଥାଏ । କୌଣସି ବିକ୍ରିୟା ଲକ୍ଷ୍ୟ କଲିନାହିଁ । ତା'ହେଲେ ଏଇଟା ଉଚ୍ଚୋଟ । ଖାଇଦେଲେ ବିଶ୍ୱାସ ବଢିଯିବ !!

ସ୍ତ୍ରୀ କହିଲେ, "ତମେ କାଇଁକି ଏମିତି ଦହଗଞ୍ଜ ହେଉଛ ? ଖାଇପକାଅ । ସକାଳୁ ଦେଖିବା ! ଟ୍ରକ୍‌ରେ ତ ଡ୍ରାଇଭର୍ ଶୋଇବ । ଆସ, ଖାଇପକାଅ ।" ଭାବିଲି – ହଉ, ଏବେ ଡକେଇତଙ୍କଠାରୁ ଦି'ଖଣ୍ଡ ପରଟା ପାଇଗଲେ କିଏ କାହାର ! କାନ୍ଥରେ ବନ୍ଧୁକ ଡେରି ବସିଗଲି । ତିନିଖଣ୍ଡ ପରଟା ଏବଂ ସେ ଦିବ୍ୟ ଡାଲମା ଭୋକବେଳେ ଦୁଇ ମିନିଟ୍‌ରେ କାହିଁ ଉଡିଗଲେ । ସେ ବଡିଆ କାଚଗ୍ଲାସ୍‌ଟିରେ ପାଣି ପିଇ ଡକେଇତମାନଙ୍କର ରୁଚିକୁ ମଧ୍ୟ ତାରିଫ୍ କଲି ।

ହଉ, ଆଜି ରାତିରେ ତୁମ ସଙ୍ଗେ ମୁକାବିଲା !! ଦେଖାଯାଏଗା !

ସେଇଠୁ ଉଠି ଶୋଇବା ଘରଆଡେ ଢୋଳଉଥିବା ପିଲା ଦୁଇଟାଙ୍କୁ ନେଇ ବାହାରିଲୁ । ଘର ଝଟାଝଟି ହେଇ ପରିଷ୍କାର । ଆଗରୁ ଜାଣି ଦି'ଖଣ୍ଡ ସଅପ ଥୁଆ ହୋଇଥିଲା । ତାକୁ ପକେଇବାର ଦଶ ମିନିଟ୍ ପରେ ପିଲାଏ ଏବଂ ତାଙ୍କ ମାଆ ନିଶ୍ଚିନ୍ତରେ ଶୋଇଗଲେ । ବାହାରେ ପୂର୍ବଭଳି ବର୍ଷା । ମୋ ଆଖିକି ନିଦ ନାହିଁ । ମନ ଛାନିଆ ।

ସାଧୁ ବୋଧହୁଏ ଶୋଇଗଲା – ବେଖାତିର୍ ।

ସବୁ ଟାଟିକବାଟ ବନ୍ଦ କରିଦେଲା ପରେ ଝରକା ପାଖେ ଆସି ଠିଆହେଲି । ଚହିଁଲି ବାହାର ବର୍ଷାକୁ...ସେମାନେ ବୋଧେ ପାଞ୍ଚ ଜଣ କିମ୍ବା ସାତଜଣ ହେଇ ଆସିବେ । କଳାମୁଖା କଳାଡ୍ରେସ୍ । ହାତରେ ଲୁହାଛଡ, ଛୁରୀ, ହୁଏତ ବନ୍ଧୁକ । କି ବିପତ୍ତି ସତେ ଆସି ପହଞ୍ଚିଲା ! କ'ଣ ବା ଆମେ କାହାର କରିଥିଲୁ ? ଆମକୁ କାହିଁକି ଏମାନେ ଲୁଟିନେବେ ?

ଟାଙ୍କ ଆଗେ ଆଗେ ବାଟ କଢେଇ ଆଣୁଥିବ ସାଧୁ ବେହେରା । ସେମାନେ ଛପି ଛପି ପାଖେଇ ଆସୁଥିବେ । ଧେତ୍, ସେମାନେ କ'ଣ ପାଟିଓ୍ୱେର ହେଇଚନ୍ତି । ସେମାନେ ଗୋଟାଏ ଜିପ୍‌ରେ ଆସି ଧଡାସ୍‌କିନା ରହିବେ । ବନ୍ଧକର ଆବାଜ କରି ଧାଇଁଯିବେ ଟ୍ରକ୍ ପାଖକୁ । ରାଜେନ୍ଦ୍ର ମୁଣ୍ଡ ଉପରକୁ ଛୁରୀ ଟେକି ଜଣେ ହୁକୁମ୍ କରିବ, 'ବେ ଶୁଅର୍ କା ବଚ୍ଚା, ଗାଡି ଚଲା' – ଏବଂ ଗାଡି ଚାଲିବ; ତା'ର କ'ଣ ଥାଏ ? ସାମାନ ମୋର । ଟ୍ରକ୍‌ଟା ତା' ମାଲିକର । ଶାଲା, ନିମକ୍ ହାରାମ୍ ! ! ଏଣେ ହୁଏତ ସାଧୁ ବେହେରା ପାଚେରି ଡେଇଁ ବାଡିକବାଟ ଫିଟେଇଦେବ । ସେମାନେ ଆସି କବାଟ ବାଡେଇବେ । ପିଲାଏ ଚମକି ଉଠିପଡିବେ । ପତ୍ନୀ ବାଉଳି ହେବେ । ଜଣେ ସେଥିରୁ ଝରକାପାଖେ ଛପ୍‌କିନା ବନ୍ଧୁକ ଟେକି ଧରିବ – 'ଖୋଲବେ, ଖୋଲୁଛୁ ନା ତୋ ପିଲାଙ୍କୁ ଉଡେଇଦେବି !' ପ୍ରବଳ ଧକ୍‌କାରେ କବାଟ ଭାଙ୍ଗିପଡିବ । ପାଟିତୁଣ୍ଡ ଧସ୍ତାଧସ୍ତିରେ ମୋ ମୁଣ୍ଡରେ ଛୁରୀ ମାରିଦେବେ ! ଲାଇଟ୍ ମାରି ଦେଖିନେବେ – 'କିଛି ଆଣିନାହିଁ ଶଳା' ! ଲାଇଟ୍ ବାବନା ବୋଉ ମୁହଁରେ ମୁହୂର୍ତ୍ତେ ରହିଯିବ – 'ଉଠାବେ ଯାକୁ !' ଖପ୍‌କିନା ପାଟିରେ ବିଣ୍ଡାମାଡି ଛଟଛଟ ମାଛ ଭଳି ତାକୁ ଟେକିନେବେ । ପିଲା ଦି'ଟାଙ୍କୁ କଚ୍‌କାଚ୍ ଗୋଇଠା ମାରି ଆଡେଇଦେବେ । ମୁଁ କେବଳ ଛଟ୍‌ଛଟ୍ ହେବି । ଅଖଡରେ ଲାତ ବାଜିଯାଇଥିବାରୁ ପିଲାଏ କାନ୍ଦି ନପାରି କୁନ୍ଥେଇବେ । କିଛି ଧପ୍‌ଧପ୍ ପାଦଶବ୍ଦ ପରେ ଜିପ୍ ଚାଲିଯିବ । ବାହାରେ ଏମିତି ନୀରବ ବର୍ଷା ! ଏମିତି ଅନ୍ଧାର ! !

କପାଳରୁ ଝାଳ ନିଗିଡ ଆସିଲା । ଟର୍ଚ୍ଚ ମାରିଲି । କେହି କୁଆଡେ ନାହିଁ । ହଠାତ୍ ଚବ୍ ଚବ୍ ଶୁଭିଲା । ମଝି ଶିରା ହାତ ଶୀତେଇଗଲା । ବନ୍ଧୁକ ହାତରେ ଉଠାଇ ମୁଁ ଅପେକ୍ଷା କଲି ।

ଚୁପ୍‌କିନା ଝରକା ପାଖରେ କିଏ ଠିଆହୋଇଗଲା । 'ଆଓ' କିନା ମୋ' ପାଟିରୁ ରଡିଟାଏ ବାହାରିଗଲା । ଟର୍ଚ୍ଚ ଆଲୁଅରେ ସାଧୁ ବେହେରା ନିଧଡକ ଠିଆହେଲା ହସିଲା ।

"ତମେ କାହିଁକି ଶୋଇନାହ କି ବାବୁ ? ମୁଁ ପରା ଜଗିଛି !"

"ତୁ କାହିଁକି ଏଠି ଅଛୁବ୍‌ବେ ? ତୋର କ'ଣ ମତଲବ ?"

ସେ ପୁଣି ହସିଲା । "ତମେ ସହରିଆ ବାବୁ ଭାରି ଡରକୁଳା । ଏମିତି କାହିଁକି ଚମକୁଛ ? ଏମିତିଆ ଅଭାଷିଆ କଥା କହୁଛ ?" ସ୍ୱର ଖୁବ୍ ନରମ, ଅତି ଆପଣାର । ଏତେ ଟିକେ ବୋଲି ହଲ୍‌ଚଲ୍ ନାହିଁ ।

ବନ୍ଧୁକ ନଇଁଲା । ବୁକୁ ଧଡ ଧଡ ଥମିଲା । ଓଠ ଚଟିଲି; କିନ୍ତୁ ତଣ୍ଟି ପର୍ଯ୍ୟନ୍ତ ଶୁଖିଯାଇଥିଲା...ଏଁ ତମେ ଆମକୁ ଜଗିଛ ? ରାତିସାରା ଏମିତି ଜଗିଥିବ ?...କାହିଁକି ? ତମର ଆଉ କୋଉଠି ଲୋକ ଲୁଚିନାହାନ୍ତି ତ ? ବଡା ସାଧୁ ବେହେରା, ତୁ କ'ଣ ତୁଚ୍ଛାରେ ମୋତେ

ଏମିତିଆ ଭଲପାଇଗଲୁ ? କିଏ କହିଲା ବୋଲି ବର୍ଷାରାତିରେ ଆଣ୍ଠୁଏ ପାଣିରେ ପହରା ଦେଲୁ ? – ତୋ'ର କ'ଣ କିଛି ମତଲବ୍ ନାହିଁ ? ତୋ ମାଲିକର କିଛି ମତଲବ୍ ନାହିଁ ? ?

"ତମେ ଖାଇଲଣି ନା ବାବୁ ! ହାଲିଆ ହେଇଆସିଛ, ଟିକେ ଗଡିପଡ । ନିଦ ନମାଡିଲେ ରହିଁଥାଅ ପଛେ, ଏଠି କେତେବେଳ ଏମିତି ଠିଆହେବ ?" – ସେ କିନ୍ତୁ ଆଣ୍ଠୁଏ ପାଣିରେ ଠିଆହୋଇଥାଏ ଏବଂ ହସୁଥାଏ । ହାତରେ ତା'ର ଛୋଟିଆ ହାଲୁକା ଛତାଟିଏ । ଏତେ ନରମା ମଣିଷ କ'ଣ ଡକେଇତ ହୋଇପାରେ ?

ମୋ ନିଶ୍ୱାସରେ ଗୋଟାଏ ବୋଝ ଓହ୍ଲେଇଗଲା । ଟର୍ଚ୍ଚଟାକୁ ତଳେ ଥୋଇ ସଅପ ଉପରେ ବସିଗଲି ।

ଆସ୍ତେ ରାତିଆଡୁ ନିସ୍ତବ୍ଧ ହୋଇଆସିଲା । ଆଖି ପଡିଆସିଲା । ଚମକି ଚମକି ରହିଁଦେଉଥାଏ ମଝିରେ ମଝିରେ । ଆଖି ବୁଜିଲେ କେତେ ଯେ ବିକଟାଳ ରୂପ – ମେଲେଇଲେ ସାଧୁ ବେହେରା ହସୁଛି, ବର୍ଷାରେ । ଏମିତି ପାହାଚ ପାହାଚ ହେଇ ମୁଁ ଗଭୀରକୁ ବୁଡିଗଲି । ଶୋଇଗଲି ।

ସାଙ୍ଗେ ସାଙ୍ଗେ ଚମକିଉଠିଲା ପରି ଲାଗିଲା; କିନ୍ତୁ ସେତେବେଳକୁ ଆଲୁଅ ହେଇଗଲାଣି । ଧଡପଡ ଉଠି ବସିଲି । ଦେଖିଲି ସ୍ତ୍ରୀ ଗୋଡରେ ବୁଲିକୁ କାନି ଘୋଡେଇ ଧରିଛନ୍ତି । ବାବୁନା ପେଟେଇ ଶୋଇଛି । "ଝିଅଟାକୁ ଜର, ଖଇ ଫୁଟିଯାଉଛି ହେ । ପାଟି ଠକ୍ ଠକ୍ ହେଉଛି । ଡାକିଲେ ଶୁଣୁନାହିଁ । ଖାଲି କୁନ୍ଥୁଉଛି ।"

ହଠାତ୍ ବାହାରପାଣି ମାଡିଲା । ଏଁ! ଏ ପୁଣି କ'ଣ ? କୁନି ଦେହରେ ହାତ ମାରିଲି । ଜର ଶହେ ପାଞ୍ଚରୁ କମ୍ ନୁହେଁ । ଝରକା ପାଖକୁ ଉଠିଗଲି । ମନେ ମନେ କାହାକୁ ଖୋଜୁଥିଲି ହୁଏତ; କିନ୍ତୁ ହଠାତ୍ କଲିଜାଟା ଖସିଗଲା । ଟ୍ରକ୍ ନାହିଁ । ହାଉଳି ଖାଇ ମୁଁ ବୁଲିପଡିଲି । କ'ଣ କରିବି ? କୁଆଡେ ଯିବି ? ବାଟ ପାଉନାହିଁ !! ଝରକା ପାଖରେ ଚାରିଜଣ ଲୋକ ଠେକା ଭିଡି ଠିଆ ହୋଇଗଲେ ।

"ଦାଣ୍ଡ କବାଟ ଫିଟେଇଦିଅ ବାବୁ, ସାମାନ ଓହ୍ଲେଇବୁ ।"

ମୁଁ ପଟିରେ ପୁଣି ଲଥ୍ କିନା ବସିପଡିଲି । ଡରକୁଳା କାଉଳିଆ ଦୁର୍ବଳିଆ କାହାଁକା !! ଗୋଟାଏ ଲମ୍ବା ନିଃଶ୍ୱାସ ପରେ କବାଟ ଫିଟେଇଲି । ଡ୍ରାଇଭର ପିକା ଟାଣୁଥାଏ । ଏ ଚାରିଜଣ ଅଣ୍ଟା ଭିଡି ରହିଥାନ୍ତି । ଦୁଆରମୁହଁରେ ଟ୍ରକ୍ ।

"ଲାଜେଇ ଲାଜେଇ ପଚାରିଲି, ସାଧୁ ବେହେରା କାହାନ୍ତି ?" ସେମାନେ ପରସ୍ପର ମୁହଁକୁ ରହାଁରହିଁ ହେଲେ କେବଳ ।

ଜଣଏ ପଚାରିଲା, "ସାଧୁ ବେହେରା କିଏ ?"

ମୁଁ ଏତେଟାମାନ ଆଖିରେ ରହିଁଲି । ପାଟି ଓହଳିପଡିଲା ।

"ମାନେ ?"

"ଓ, ପହରାବାଲା କଥା କହୁଛ ? ସେ ପରା ପାହାନ୍ତିଆରୁ ଆମମାନଙ୍କୁ ଲଗେଇ ବାହାରିଗଲା ।"

"କୁଆଡେ ବାହାରିଗଲା ? କାହିଁକି ବାହାରିଗଲା ?"

ପଛରୁ ପତ୍ନୀ କହିଲେ, "ଝିଅ ଏ ଝରକା ପାଖରେ ବାନ୍ତି କଲା ତ' – ମୁଁ ତାକୁ କାଖ କରି ଠିଆହେଇଥିଲି । ସେ ଲୋକଟି ଆସି ପଚାରିଲା – 'କ'ଣ ହେଲା କି ମା ?' ମୁଁ କହିଲି – ଝିଅଟାକୁ ଜର ହେଲା, ଏଠି ଡାକ୍ତର ମିଳିବେ ? ସେ କିଛି ନକହି ଚାଲିଗଲା – ଡାକ୍ତର ଡାକି ଯାଇଥିବ ।"

ମୋ ମୁହଁ ରଙ୍ଗା ପଡିଗଲା ।

ମୋର ପୂର୍ଣ୍ଣ ବିଶ୍ୱାସ ଆସିଗଲା ଯେ ସେ ଅବଶ୍ୟ ଡାକ୍ତର ପଠାଇବେ । ସାଧୁ ବେହେରାର ମାଲିକ ଏମିତି ସେମିତି ଲୋକ ନୁହନ୍ତି । ସେ କିଏ ?

"ଆଜ୍ଞା, ବଡ ବଡ ସାମାନ ଆଗ ଓହ୍ଲେଇବା ?"

ଲାଗିଲା ବୁହାବୁହି । କେତେ ବା କାମ – ପ୍ରାୟ ସାତଟା ତିରିଶ ବେଳକୁ ଡ୍ରାଇଭର ଝାଡିହୋଇ ବସିଲା ପଇସା ନେଲେ ଯିବ । ଏ ଚାରିଜଣ ଗାମୁଛାରେ ଦେହ ଝଡାଝଡି ହୋଇ ଠିଆହେଲେ, ମୂଲ ନେବେ ।

ଏତିକିବେଳେ ଗୋଟିଏ ଚମତ୍କାର ଫିଆଟ ଗାଡି ଆସି ଟ୍ରକ୍ ସେପାଖେ ଠିଆ ହେଲା । ମୁଁ ତରବରରେ ରାତିରେ ଦରଶୁଖିଲା ଜାମା ଗଳେଇ ଚାହିଁଲା । ହାତରେ ଷ୍ଟେଥେସ୍‌କୋପ୍ ନେଇ ଗାଧୁଆପାଧୁଆ ଜଣେ ପରିଷ୍କାର ଡାକ୍ତର ଓହ୍ଲେଇଆସିଲେ ।

"ଆଜ୍ଞା ନମସ୍କାର ! ଆପଣଙ୍କ ଝିଅର ଦେହ କେମିତି ?"

ମୋ ଆଖିରେ ଆଉ ଲୁହ ସମ୍ଭଳା ନଯାଏ ।

"ଆପଣ...ମାନେ,...ଆପଣ ?"...ମୁଁ ଥଙ୍କେଇଲି । "ମୁଁ ଥାଏ ଏଇଠୁ ପନ୍ଦର ମାଇଲ ଦୂରରେ । ଏ ଡ୍ରାଇଭର ଯାଇ ସକାଳୁ ହଠାତ୍ ପହଞ୍ଚିଲା । ମୁଁ ୟାଙ୍କୁ ଚିହ୍ନେ । ୟାଙ୍କୁ ନାହିଁ କରିବା ସମ୍ଭବ ନୁହେଁ ।" – ହସି ହସି ଡ୍ରାଇଭରକୁ ସେ ଚାହିଁଲେ । ଚମତ୍କାର ମଣିଷଟିଏ ସେ ଡ୍ରାଇଭର୍ । ସେ ବି କି ସୁନ୍ଦର ମିଠା ହସ ହସିପାରେ ! "ୟାଙ୍କ ମାଲିକେ ସକାଳ ଟ୍ରେନ୍‌ରେ କୁଆଡେ ଗଲେ । ଷ୍ଟେସନରୁ ୟାଙ୍କୁ କହିଦେଇଗଲେ ମୋତେ ଆଣି ଆପଣଙ୍କ ଘରେ ପହଞ୍ଚେଇବାକୁ ।"

ମୋ ଦେହ ଠକ୍ ଠକ୍ ହୋଇ ଥରିଲା ।

"କିଏ, କିଏ ସେ ମାଲିକ...ସେ ସାଧୁ ବେହେରା କାହିଁ ?" ଡ୍ରାଇଭର ମୁରୁକି ମାରି ଚାହିଁଲା ।

ଡାକ୍ତର ମୋ ପିଠିରେ ହାତ ଦେଇ ଘରଆଡିକି ମୁହେଁଇଲେ । କହିଲେ – "ଆପଣ ବଳେ ଜାଣିଯିବେ ନାହିଁ – ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ଚାଲନ୍ତୁ ଝିଅକୁ ଦେଖିବା ।" ଡାକ୍ତର ଔଷଧ ଆଣି ଆସିଥିଲେ । ପଇସା ନେଲେନାହିଁ । ହସି ହସି ନମସ୍କାର କରି ବିଦାୟନେଲେ । ମୁଁ ସେଇ ନମସ୍କାର ଅଞ୍ଜୁଳାକୁ ନେଇ ମୁହଁ ଘୋଡେଇପକେଇଲି ।

□

# ଅସବର୍ଣ୍ଣ

ନେଟି ସିଂ ସେଦିନ ମୋତେ ଆସି ଭାରି ଚୁପ୍‌ଚୁପ୍‌ରେ କହିଥିଲା ଯେ, ବୁଢାଖମାରୀ ରାସ୍ତା ମୋଡ ଉପରକୁ ସେ ନୂଆ ଜାମୁଗଛଟାରେ ବହୁ ହରଡ ଚଢେଇ ଆସି ବସିଛନ୍ତି । ସେଥିରୁ ଦଶ ପଚିଶ୍ ପଟକେଇ ଆଣିଲେ ବେଶ୍ ଚାରିଦିନ ଭାତ ଖର୍ଚ୍ଚ ଉଠିଯିବ । ନୂଆ କାନ୍ଦୁଲ ଛୁଇଁ ସବୁ ଚଣା ଧରି ଆସିଲାଣି । ଶୀତ ଗହକି ଆସିଲାବେଳକୁ ହରଡ ଚଢେଇର ସୁପ୍‌ସୁପିଆ ଭଜାଟା ଉଦ୍ଲେଇ ଉଷୁମ୍ ସାଙ୍ଗକୁ ବଢିଆ ପାଗ ଦବ । ତା' ପାଇଁ ଗରାକ ବି ଅନେକ... ମୁଁ ଆଉ କିଛି ନ ଭାବି ତା'ର ପୁରୁଣା ଟୋପିଦାର୍ ବନ୍ଧୁକ ଛର୍ରା ଖର୍ଚ୍ଚ ଯୋଗାଇ ଦେଇଥିଲି ।

ନେଟି ସିଂ ପେଶାଦାର ଶିକାରୀ । ତା'ର ମଳି କୋଟଟ ଖାକି ହାଫ୍‌ପେଣ୍ଟ ସାଙ୍ଗକୁ ବହୁପ୍ରକାର ମୁଣା ଥିବା ଖଣ୍ଡେ ବୁସ୍‌ସାର୍ଟ ଆମ ସମସ୍ତଙ୍କ ପାଇଁ ଅନେକ ଦିନର ପରିଚିତ ଜିନିଷ । ତା'ର ଠିଆ ଠିଆ ଚମାଳିଆ ବାଳ ଓ ଦି'ଚାରିଟା ଛାମୁଦାନ୍ତ ଥିବା ମୁହଁରେ ଖଣ୍ଡେ ବିଡି ଆମେ କେଉଁ କାଳୁ ଦେଖି ଆସୁଛୁ, ତା' ମନେନାହିଁ । ସେ କେତେଥର ଆମ ପିଣ୍ଡାରେ କୁଟୁରା ମାଂସ ଭାଗପକେଇଛି । କେତେବେଳେ ବା ପିଲାଙ୍କ ଆଳରେ ଦେଇଯାଇଚି ମାହାଳିଆ ମାଂସ ଭାବେ ବା ହଂସରାଳିଟାଏ । କେବେ କେମିତି ପୁଣି ପଇସା ନେଇ ଝିଙ୍କକାଠି ଗୋଛାଏ, ଗୟଳ ଶିଙ୍ଗଟାଏ, ନହେଲେ ବାରହା ବାଳ କେରାଏ ଦେଇଯାଇଛି ।

ନେଟି ସିଂ ଆମ ବାପାଙ୍କୁ ଆଲିଖେଳ ଶିଖେଇଚି, ଘୁଡି ଉଡେଇବା ଶିଖେଇଚି । କାଚ ଗୁଣ୍ଡ ବେଲ ଅଠାର ଘୋଟଦିଆ, ଛୁରୀପରି ଦାଢ, ଲୁହା ତାରପରି ଟାଆଁସା ସୂତା ନଟିଆରେ ଗୁଡେଇ ତା'ର ରାବଣ ମାର୍କା ପତାଙ୍ଗିରେ ସେ ବହୁ ପ୍ରତିଦ୍ୱନ୍ଦ୍ୱୀଙ୍କୁ କଟିସରେ ଜିଣିଚି । ସେ ସମୟର ଅନେକ ତରୁଣଙ୍କର ଈର୍ଷାର ନାୟକ ନେଟି ସିଂ କିନ୍ତୁ ଜୀବନରେ କିଛି ହୋଇପାରିନାହିଁ । ଅମାନିଆ ବଣ ଲଇଟାଏ ପରି ଗୁଡାଏ କାନକୋଳି କଣ୍ଟାରେ ଲଟେଇହୋଇ, ବହୁ ବୁଦାରେ ଛନ୍ଦିହୋଇ ମାଟି କାମୁଡି ପଡିଛି । ପଇସାବାଲା ଯୁବକଙ୍କ ଦାନ୍ତସନ୍ଧାରୁ ଓଟାରି ଆଣି ସେ କମଳା ବିବିକୁ ନିଜର କରିବାକୁ ଚେଷ୍ଟାକରିଛି, କିନ୍ତୁ ନଜିରା ତାକୁ ଖୁବ୍ ନିଶା ଖୁଆଇଚି, ଆଶା ବେହେରା ପାଇଁ

ସେ ତିନିମାସ ଜେଲ୍ ଭୋଗିଛି । ଖୁବ୍ ଗରମ ବେଳାରେ ସେ କିସାନ ଅଗ୍ରୱାଲାର ମୁଣ୍ଡ ଫଟେଇ ତା' ଘରୁ ମୋତି ସାହୁକୁ ଆଣି ପାଖରେ ରଖିଛି । ...କିନ୍ତୁ ହରେଇଛି ସମସ୍ତଙ୍କୁ । ମୋତି ତା' ପାଖରେ ପାଞ୍ଚବର୍ଷ ରହି ତାକୁ ଦେଇଛି ଅଜସ୍ର ଗାଳି ଓ ତିନିଟି ଛୁଆ, ପାଇଛି ଅଜସ୍ର ମାଡ, ଆଉ ଖିଆଲୀ ନେତି ସିଂର ନିଶା ଜରଜର କିଛି ଓଠଧରା ସୁଆଗ । ମୋତି ଦିନେ ହଠାତ୍ ମରିଯିବା ପରେ ନେତି ସିଂ ଝିମି ଖାଇଯାଇଚି । ଭୋକବିକଳରେ ସେ ଖଣ୍ଡେ ଟୋପିଦାର ବନ୍ଧୁକରେ ତା' ପରିବାରଟାକୁ ପାଳିଆଣିଛି ।

ସେ ନିସା ଖାଏ । ଆଇଁଷ ନ ହେଲେ ଭାତ ଖାଏନା । ତା' ପିଲାଏ ଅନାବନା ଗଛପରି ବଢ଼ିଛନ୍ତି, ଅନାବନା ଶାଗ ଖାଇଛନ୍ତି । ବାପ ହୋସ୍‌ରେ ଥିଲେ ତା' ହାତରେ ଖୁବ୍ ଭାତ ମାଉଁସ ବି ଖାଇଛନ୍ତି । ବଡପୁଅ 'ପହଲି' ଏବେ ବାଲିମେଳା ଜଙ୍ଗଲ କଣ୍ଟ୍ରାକ୍ଟର ପାଖରେ କ୍ଳିନର କାମ କରେ । ବାପଠୁ ସେ ଏବକୁ କୋଡିଏ ବର୍ଷ ହେଲା ଅଲଗା । ସାନପୁଅ 'ଫତୁ' ମଦଭାଟିରେ ଜଣକ ଉପରେ ଛୁରୀ ଚଳେଇଦେଇ ଫେରାର ହେବାର ମଧ ଦଶବର୍ଷ ହେଇଗଲା । ଝିଅ 'କୁମ'କୁ ତା' ଅଣ୍ଡିରା ବାଡେଇ ମାରିଦେଲା । ଗୋଟିଏ ନାତି ପାଞ୍ଚବର୍ଷର, ଆଉ ଗୋଟିଏ ନାତୁଣୀ ଋରିବର୍ଷର, ଆସି ଅଜା ପାଖରେ ଆଦରି ଯାଇଚନ୍ତି । ନେତି ସିଂର ପରିବାର କହିଲେ ଏଇ ଦୁଇଟି ଛୁଆ, ଆଉ କିଛି ସ୍ମୃତି ।

ସେଦିନ ନେତି ସିଂ ଛର୍‌ରା ଖର୍ଚ୍ଚ ମୁଣାରେ ପୂରେଇ ଟିକିଏ ଆନମନା ହେଇ ଠିଆହେଲା । ତା'ର ବହୁ ପାଣି-ପବନ-ଖିଆ କାଠଛେଲା ପରି ମୁହଁରେ ଅଳ୍ପ ଟିକିଏ ହସ ଲାଗିଲାପରି ଦିଶିଲା ।

"କଣ ନେତି କକା (ଆମ ବାପାଙ୍କ ବାଲ୍ୟବନ୍ଧୁ ହିସାବରେ) – ଆଉ କ'ଣ ଖବର ?"

ମନ ହେଲେ ନେତି ସିଂ ବହୁ ବହୁ କଥା କହେ – ଶାଳବଣୀର ବାଘ କଥା, ଝରଣାପାଲିର କାନ୍ଦୁରା ଭାଲୁ କଥା – ପ୍ରତ୍ୟେକ ପଶୁପକ୍ଷୀଙ୍କର ଆଖିରେ ଦେଖିବା କଥା । ମୁଁ ସେଇଆ ଆଶାକରି କଥା ଉଖୁରେଇଲି ।

"ଆଜି ବହୁଦିନ ଉତ୍ତାରୁ ବାଲୁ ସାଙ୍ଗେ ଦେଖାହେଇଗଲା ।" ମୋ ମୁହଁରେ ପଋରିଲା ଭଙ୍ଗୀ ଦେଖି ସେ ଟିକିଏ ହସିଦେଲା । କେମିତି ଅଲାଜୁକ ହସଟିଏ, ଅନେକ ଦିନରୁ ପେଡି ସାଇତା ହେଇଥିବା ଲୋଋକୋଋ ପାଟକନା ପରି ।

ହଠାତ୍ ମୋର ସବୁ ମନେପଡିଗଲା, ବହୁବାର ଶୁଣିବା କଥା ତ ! ଓ – ବାଲୁ ତା'ହେଲେ ସେଇ – ସ୍କୁଲକୁ ଯିବା ବାଟରେ ଯାହାକୁ ସାଙ୍ଗରେ ଧରି ନେତି ସିଂ ବରଗଛ ଡାଳ ଉପରେ ସାରା ଦି'ପହର ବିତେଇଦେଉଥିଲା ।

"ଆଚ୍ଛା, ଆଚ୍ଛା ! କେମିତି ଦେଖାହୋଇଗଲା ? ସେ ଏବେ କେଉଁଠି ଅଛନ୍ତି ?" (ବାପାଙ୍କ ସମବୟସୀ ହେତୁ ମାନନୀୟ) ।

"ସେ ବହୁ ରାଜ୍ୟ ବୁଲିଆସିଲାଣି । ରାନ୍ଧୁଣିଆ କାମ କରି ବହୁ ବାବୁଙ୍କ ପାଖରେ ରହିଛି । ସୁନ୍ଦରଗଡର ଗୋଟେ ଟିପୁଟି କଥା କହୁଥିଲା ଯେ ସେଇଟା ମନେପଡିଗଲା ।"

କାନ୍ଥକୁ ଆଉଜି ବସିଗଲା ନେଟି ସିଂ । ବସିଲେ ସେ କେତେବେଳେ ପାଣ୍ଡିଆ ପକାଏ ନାହିଁ – ସେମିତି ଟିପେଇ ବସେ । ଖଣ୍ଡେ ବିଡ଼ି ଲଗେଇ ଆରମ୍ଭ କଲା –

"କଥା କ'ଣ ବଇଲେ, ସେ ଲୋକଟା ପିଲା । ବଅସ ତିରିଶଟା ହେଲେ ପିଲା ନୁହଁ ତ ଆଉ କ'ଣ ? ବିଭା ହବାକୁ ସେ ରାଜି ହଉନାଇଁ । ଭାରି ମର୍ଦାନୀ ମଣିଷ କଡେ ହୋଇଥିବ । ଆମ ବାଲୁ ଯାଇ ତା'ରି ପାଖରେ ଜୁଟିଲା ରାନ୍ଧୁଣିଆ ହେଇ । ବାବୁର ଅନେକ ମାଇକିନିଆ ସାଙ୍ଗ ଭିତରୁ କାହାକୁ ହେଲେ ବାଲୁ ସହିପାରେ ନାହିଁ । ତା'ର ସେ ସଉତୁଣିଆ ସଭାବ ଏପର୍ଯ୍ୟନ୍ତ ମଧ କଟିଲା ନାହିଁ ।"

ମୁଁ ଟିକିଏ ହସିଲି । ନେଟି ସିଂ ଆଉ କଳେ ଧୂଆଁ ପାଟିରେ ପୂରେଇ ଆଖି କଣରୁ ମୁଚୁକି ମାରିଲା ।

"ବାଲୁଟାକୁ ତମେ ସବୁ କେହି ବୁଝିପାରିବ ନାହିଁ । ମଣିଷଟାର ମନ ଗହନ ଭେଦିଯିବାକୁ ବାଲୁ ଓସ୍ତାଦ୍ । ଦିନଯୋଡାକ ଭିତରେ ସେ ତୁମକୁ କଳିଦେବ । ତା'ପରେ ଆଉ କିଛି ଚିନ୍ତା ନାହିଁ । ଯେତେବେଳେ ଯାହା ମନ କରିବ, ବାଲୁ ତା' ଆଗରୁ ଜାଣି ରେଡିକରି ରଖିଥିବ । ଗାଈଗୋରୁ ଜୀବଜନ୍ତୁଙ୍କ ମନ ମଧ ସେ ବୁଝେ । କେତେଦିନ ଗୋଟାଏ ବିଲେଇ ପୋଷିଥିଲା ବାଲୁ...ସେଇଟା ସାଙ୍ଗରେ ସେ କଥାବାର୍ତ୍ତା କରିପାରୁଥିଲା; ମାତ୍ର ତାକୁ ସାପ ଦଂଶିଦେଲା । ସେଇଦିନୁ ବାଲୁ ଆଉ ଜନ୍ତୁ ପାଳିଲା ନାହିଁ । ...ଦିନକର କଥା । ସୁନ୍ଦରଗଡର ସେ ବାବୁ ତାକୁ ଦେଇଥାଏ ଟଙ୍କା ବଜାର ସଉଦା ଆଣିବାକୁ । ବାଲୁ ଆଣି ପହଞ୍ଚେଇଲା କ'ଣ ଜାଣ ? ହଳେ ଠେକୁଆ – ଅଣ୍ଡିରାଟାଏ, ମାଈଟାଏ । ଦି'ଟାଯାକ ଧୋବ । ଭାରି କୁନୁମୁନିଆ ଜୀବନ ଏ ଠେକୁଆଗୁଡା । ହାତ ଉଠିବ ନାଇଁ ମାରିଦବାକୁ । ସେ ବାବୁ ଜଣକ ବି ଭାରି ବଢ଼ିଆଲୋକ । ଗୋଟାକୁ ଡାକିଲା 'କୁନ୍' ଓ ଆରଟାକୁ 'ମୁନ୍' । କିଛିଦିନ ସେ ଯୋଡିକର ବାପ ହେଲା ସେ ବାବୁ, ଆଉ ମା' ଆମ ବାଲୁ । ଦୁହେଁ ମିଶି ସେ ଠେକୁଆଯୋଡିକୁ ଫୁଲପରି ଟୋଳି ଧରିଥାନ୍ତି । କୁନ୍-ମୁନ୍‌କୁ ପାଖରେ ନ ଥୋଇଲେ ବାବୁ ଭାତ ଖାଏ ନାହିଁ । ବାଲୁକୁ ଆଉ ସୃଷ୍ଟି ଦିଶେ ନାହିଁ । ସେ ନିଜକୁ ଭୁଲିଯାଇ ତିନିଜଣଙ୍କ ସେବାରେ ଲାଗିଥାଏ, ତେଣିକି ଯାହା ହବାକଥା ହେଲା ।... ମୁନ୍‌ର ଛୁଆ ହେବ । ବାଲୁକୁ ମହା ହଇରାଣ ପଡିଗଲା । ବାବୁକୁ ଏତେ ଲାଜ କଥା ପାଟି ଫିଟେଇ କହେ କେମିତି ? ତଥାପି ନ କହିଲେ ନ ଚଳେ ଭାବି କହିଦେଲା, ଅଧେ ଠାରରେ ଅଧେ ମୁହଁ ଘୋଡେଇ । ବାଲୁ ସେମିତି ଲାଜ କରୁଥିଲାବେଳେ ହିଁ ସମସ୍ତଙ୍କୁ କାବୁ କରେ ।"

"ସେ ବାବୁ ଜଣକ ଯାଇ ଦେଖିଲାବେଳକୁ ମୁନ୍ ଗଡି ଗଡି କୁନ୍ଥଉଛି । ବାବୁକୁ ଏ ସବୁ ନୂଆ । ଆବାକାବା ହେଇ କିଛି ସମୟ ରହିଁଲା । ବହୁ ଧାଁ ଦଉଡ କରି ଗାଁରୁ ଜାଣିବା ଶୁଣିବ ଲୋକଙ୍କୁ ଏକାଠି କଲା । ତଥାପି ମୁନ୍ ଜନ୍ମ କରିନାପାରି ମରିଗଲା । ବାବୁଟା କୁଆଡେ 'ଭୋ' କିନା କାନ୍ଦିପକାଇଲା । ବାହୁନି ବାହୁନି ବୋବାଳି ଛାଡିଥିବ ବାଲୁ – ସେ କଥା ସେ ମତେ କହିବାକୁ ଲାଜେଇଲା । କହିଲା ନାଇଁ, ଆଉ କହିଲା ନାଇଁ କେମିତି କୁନ୍ ଏକା ଲୟରେ ମୁଟ୍‌ଟାକୁ ଅନେଇ

ରହିଥିବ – ଆସ୍ତେ ଆସ୍ତେ କେମିତି ଝୁରି ଝୁରି କଣ୍ଟା ହେଇଯାଇଥିବ । ସେ ସିନା କହିଲା ନାହିଁ, ମୁଁ କିନ୍ତୁ ଜାଣେ ।"

"ତା'ପରେ ଯାହାହେଲା ସେଇଟା ନିହାତି ହବା କଥା । କୁନ୍ ସବୁବେଳେ ହେଜା ବୁଡେଇ ବସିରହିଲା । ଆଉ ସତେଜ ରହି ପାରିଲା ନାହିଁ । ତାକୁ ଦିନେ କୁକୁର ଝାମ୍ପି ନେଲା । ବାବୁ ତିନିଦିନ ଉପାସ ରହିଲା । ବାଲୁ ସେ ଘରୁ କାମ ଛାଡି ଚାଲିଆସିଲା । ବାବୁ ମଧ ବଦଳି ହୋଇ ସେଉଠୁ ବାହାରିଗଲା –"

ଏମିତି ହଠାତ୍ କଥାଟାକୁ ହାଣିଲା ପରି ସାରିଦେଲାବେଳେ ମୁଁ ଅନେଇ ଥାଏ ନେତି ସିଂ ମୁହଁକୁ । ସେ ମୋଟଉପରେ ଦିଶୁଥାଏ ସତେ ବା ତା' ଭିତରଟା ଗୋଳମାଳିଆ ଧରିଯାଉଚି । ଗୋଟାଏ ବିଜ୍‌ବିଜିଆ ଚିତ୍ର ଦେଖିଲେ ଆମ ମୁହଁରେ ଯେପରି କ'ଣ କେମିତି ଗୋଟାଏ ଆଭାସ ଆସି ପୁଣି ଆସିପାରେନାହିଁ – ଗୁଡାଏ ଚିହ୍ନା ଚିହ୍ନା ରଙ୍ଗ, ଖୁବ୍ ଆପଣାର, ଖୁବ୍ ପାଖପଡିଶାର ରଙ୍ଗ ନେଇ ଯେମିତି ଚିତ୍ରଟି ପର୍ଦ୍ଦା ଦେହରୁ ବୁକୁ ଆଡକୁ ପହଁରି ଆସେ । ତା'ର ପ୍ରତିଟି ଢେଉ ଚିହ୍ନା, ପ୍ରତିଟି ମୋଡ ପରିଚିତ; କିନ୍ତୁ ସବୁ ମିଶିଗଲେ ସତେ ବା ଗୋଟାଏ ତରା – ରାତିର ଝଙ୍କାଳିଆ ଜଟିଆ ବରଗଛ, ଯେଉଁଥିରେ ବାରିହୁଏନାହିଁ ଛାଇ କିଏ, ଡାଳ କିଏ, ପତ୍ର ବା କିଏ । ଦି'ଟି ଠେକୁଆ ତାଙ୍କରି ଠିଆ ଠିଆ କାନ, ନିଝୁମ୍ ଅରଣ୍ୟର ଅବୁଝା ଚାହାଣି ପରି ଦି'ଟା ଲେଖା ଆଖି, ତା' ଦେହକୁ ଲେସିହେଇ ଡିପୁଚି ବାବୁର କାନ୍ଦୁରା ମୁହଁ । ମୁନ୍ ଭିତରେ ମୋତି ବେହେରାର କାରୁଣ୍ୟ, ବାବୁର ଛାତିରେ ତା'ର ଝାପ୍‌ସା ଛାଇ ପରି ମାଇକିନିଆ ସାଙ୍ଗମାନଙ୍କ ଭିତରେ ନେତି ସିଂର ତାରୁଣ୍ୟ । ...ସବା ପଛରେ ବାଲୁର ଗୋଟାଏ ଉଷୁମ-ମଖା, ତେନ୍ତୁଳି ଗଛର ଛାଇପରି ଧୂଆଁଳିଆ ପରଳ । ସବୁ ଚିହ୍ନା – କିନ୍ତୁ ଏକାଠି ଦେଖିଲେ ଯା ଉପରେ ସେ, ତା' ଉପରେ ଯେ – ଏମିତି ମିଶା ଗୋଳିଆ ହେଇ ଗୋଟାଏ ବିଜ୍‌ବିଜିଆ ଛବି । ଏ ଗହଳିଆ ଲୁଇ ଲଟା ଭିତରୁ ଦି'ହଳ ଆଖି କିନ୍ତୁ ଢଳଢଳ ଗୁଞ୍ଜଫଳ ପରି ବାରି ହେଉଛନ୍ତି । କୁନ୍ ଆଉ ମୁନ୍ – ନେତି ସିଂର ନାତି ଆଉ ନାତୁଣୀ । ମା' ଖିଆ ଶଶା ଛୁଆଯୋଡିକ !...

ମୁଁ ଚେଇଁ ଚାହିଁଦେଲାବେଳକୁ ନେତି ସିଂ ଖଣ୍ଡେ ଦୂରରେ ଚାଲିଯାଉଥାଏ । ତା' ମୁଣ୍ଡ ଖୁବ୍ ନୁଆଣିଆ, ପିଠିର କୁଜ ଉପରେ ଆମ୍ବ ଛେଚିଲା ପରି ଚକଡାଏ ଚିରା ।

ନେତି ସିଂ ଆଉ ବୋଧେ ଶିକାର କରିପାରିବନି । ତାକୁ ବଅସ ଅନେକ ।



## ଜନ୍ମାନ୍ତର

କାହାକୁ ନମାନି ଛିଗୁଲେଇ ହେଲାପରି ମୁଚୁକି ମାରି ସେ ନିଆଁ ଲଗେଇ ଦେଲା । ଅର୍ଜୁନା କାହାକୁ କେବେ ଖାତିର୍ କରେନାହିଁ । ଚୁଟିଆ ସଂସ୍କୃତ ପଣ୍ଡିତ କଥାରେ ସେ କାହିଁ ଟିକିଏ ମୂତିବାକୁ ଯାଇଥାନ୍ତା ! 'ଜଳୁଥାଉ ଏଠେଇ ଶଳା ପଣ୍ଡିତ ବୁଢ଼ାର ରଇ – ଆଗେ ଚାଲ ମୁଣ୍ଡିଆ ଚଢ଼ିବା ।' ଗୋଟାଏ ବିଧା ପକେଇଲା ମୋ ପିଠିରେ । 'ଚଢ଼ିପାରିବୁ ନା ନାଇଁବେ ?' – ହେଇ ଚାହାଁ ଉପରକୁ । ସେ ଶିଖ ପର୍ଯ୍ୟନ୍ତ ଯିବା ।

ଗଛମାନଙ୍କର କଙ୍କାଳ ସନ୍ଧାରେ ଶିଖ ଦିଶୁଥାଏ । କାହିଁ କେତେ ବାଟ ।... ଅର୍ଜୁନା ପଛରେ ଡେଇଁ ଡେଇଁ ଆମେ ପଥରରୁ ପଥରକୁ ଚଢ଼ିଗଲୁ । ଧାପେ ଉଠି ନିଃଶ୍ୱାସ ଫୁଲିଗଲା । ଗୋଟାଏ ପଥରର ପଶ୍ଚିମ ପାଖ ଛାଇରେ ବସି ତଳକୁ ଚାହିଁଲୁ । ଆମ୍ବତୋଟା ଭିତର ଡାକବଙ୍ଗଳାରୁ ଧୂଆଁ ଉଠୁଥାଏ । କଖଗ ହାଇସ୍କୁଲର ଜଗତ ବିଖ୍ୟାତ ପିଲାଏ ଖରାଛୁଟି ପୂର୍ବଦିନ ପିକ୍‌ନିକ୍‌ରେ ଆସିଛନ୍ତି । ରାତି ପାହିଲେ ଛୁଟି । ଅର୍ଜୁନା ଦି'ଚାରିଟା ଟେକା ମାରିଲା ତଳକୁ । ଆମେ ସମସ୍ତେ ଟେକା ମାଇଲୁ । ପଥରରେ ଗଛରେ ବାଜି ବାଜି ଟେକାଗୁଡିକ ପକ୍ଷୀପରି ଓହ୍ଲେଇ ଗଲେ । ଝିଂକାରୀ ବୋବେଇଲେ ଏଠି ସେଠି । ଆମେ ପୁଣି ଚଢ଼ିବା ଆରମ୍ଭକଲୁ ଉପରକୁ! ଆମେ ଅର୍ଜୁନା ପିଛା ଧରିଥାଉ । ସେ କୋଉଠି ଉହୁଁକା ମାରୁଥାଏ ତ' କେଉଁଠି ଲଇଁ ପଡୁଥାଏ । କଡେଇ ହେଇ, ଆଡେଇ ହେଇ, ହାମୁଡେଇ, ଲେପଟିପଡି ସେ ଯେତେବେଳେ ଦେଖିଲେ ଆମର ଦି'ପୁରୁଷ ଉପରେ !

ଗୋଟାଏ ବଡ ଉଠାଣି ଚଢ଼ିଯାଇ ସେ ବାହାଦୁରିଆ ତା'ର ଦୁର୍ବଳ ନିପାରିଲା ଅନୁଚରମାନଙ୍କ ଦୟାକରୁଥାଏ! ବହୁ କଷ୍ଟରେ ଦମ୍ ଖଟେଇ ଆମେ ତା' ପାଖରେ ପହଞ୍ଚିଲୁ । ମୁଣାରୁ ବିଡି କାଢି ନିଆଁ ଧରେଇ ଶୁଖିଲା ପତର ଗହଳି ଭିତରକୁ ଜଳନ୍ତା କାଠିଟିକୁ ସେ ପକେଇଦେଲା । ଆମେ ଚାହିଁଥାଉ । ଚଡ ଚଡ ହେଇ ନିଆଁ ଚହଟିଗଲା । ଦିନବେଳେ ନିଆଁଟା ପାଣିଭଳି ଦିଶେ, କାଚ ଭଳି ଝଲ୍‌ଝଲ୍ କରେ । ତା'ର ଆଲୁଅ ନଥାଏ । ଥାଏ ଗୋଟାଏ ଥରିଲା ଥରିଲା ଛାଇ । – ଅର୍ଜୁନା ପାଖରୁ ପତର ସାଉଁଟି ନିଆଁ ଉପରକୁ ପକେଇଲା । ଆମେ ଆଞ୍ଜୁଳା

ଆଞ୍ଜୁଳା ପତ୍ର ବୁଣିଦେଇ ଗଲୁ । ଚଡଚଡ ନିଆଁ ଉଧୁଳିଲା । ଆମେ ଦେଉଁଥାଉ । କୁରୁଳୁ ଥାଉ । ଅର୍ଜୁନା ମଝିରେ ମଝିରେ ବଡପାଟିରେ ହସୁଥାଏ ।

ହଠାତ୍ ତଳୁ ମୋଟା ଧୂଆଁଟାଏ ଉଠିଲା ଭୁସ୍‌ଭୁସ୍ ହେଇ । ଗଣିଆ କହିଲା, 'ହେଇ ଦେଖ ନିଆଁ ।' ଟିକିଏ ଡାହାଣକୁ ଆମେ ଅନେଇଲୁ । ଧପ୍‌ଧପ୍ ନିଆଁର ଶିଖଆ ପିଟି ହେଉଥାଏ ତଳୁ । ଆମ ଧାଡିରେ ଥିବା ବଡ ଗଛରେ ଏଠି ସେଠି ଦିକ୍ ଦିକ୍ ନିଆଁ ଧରିଆସୁଥାଏ । ତଳେ ନଈ ସୁଅ ପରି ସୁ ସୁ, ଧପ୍ ଧପ୍, ଚଡ୍ ଚଡ୍ କରୁଥାଏ ନିଆଁ ।

ଆଉ ଜଣେ କିଏ ଆମ ଭିତରୁ କହିଲା, 'ଏ ଆଡେ ଦେଖ୍ ବେ!' ଟିକିଏ ବାଁକୁ ପାହାଡ ତଳଯାକ ବେଢି ଆସୁଥାଏ ନିଆଁ – ଆମେ ତାକୁ ଆଉ ଅନେଇ ପାରିଲୁ ନାହିଁ! ମୁହଁକୁ ଧାସ ପିଟିଦେଲା ।

ଏତିକିବେଳେ ଅଗଣି ଚମକେଇଲା ପରି ରଡିଛାଡିଲା । ଆମେ ବୁଲିପଡିଲୁ । ପାହାଡର ଉପରଆଡେ କେତେବେଳେ ନିଆଁ ଲାଗିଗଲାଣି ସେଆଡେ ଆମର ନଜର ନାହିଁ । ସମସ୍ତେ ହାଉଳିଖାଇଗଲୁ । ଅର୍ଜୁନା ଖେପାମାରି ଉପରକୁ ଧାଇଁଲା । 'ଦୌଡ ବେ ମୋ ସାଙ୍ଗରେ ।' ଆମେ କିଲକାଲିଆ ଅର୍ଜୁନା ପିଛା ଧରିଲୁ । ସବା ପଛରେ ଅଗଣି । ମୋ ପଛକୁ ବିଧୁ । ତା' ପଛକୁ ସୁବଳ । ସିଧାସଳଖ ଉଠିବାକୁ ବାଟ ନଥାଏ । ପଥର ଦାଢ ଧରି, ଓହଳ ଡାଳ ଧରି, ରୁଗୁଡିଆ ଖସଡା ମାଟି ଉପରେ । ସାଉଁଳିଆ ପଥର ଉପରେ, ଶୁଖିଲା ପତ୍ରରେ ଘୋଡେଇ ହେଇଥିବା ଖାଲ ଭିତରେ ଗୋଡ ପଡି ଖସିଯାଉଥାଏ । ଜୀବନବିକଳରେ ଆମେ ଏକମୁହାଁ ଉଠୁଥାଉ । ମୁଣ୍ଡ ଉପରେ ଗଛ ଶିଖ ହୁତ୍ ହୁତ୍ ହେଇ ଜଳିଯାଉଥାଏ । କାହୁଁ ଗୋଟାଏ ପବନ ପିଟୁଥାଏ ତଳୁ ଉପରକୁ । ଶୁଖିଲା ପତ୍ରକୁ ଧରି ତଳ ନିଆଁ ଚହଟି ଆସୁଥାଏ । ଅଗଣି ଭେଁ ଭେଁ ହେଇ କାନ୍ଦି ପକେଇଲା । ତା' ହାତ ଖଣ୍ଡିଆ ହେଇ କହୁଣି ଯାଏ ରକ୍ତ ଝରି ଯାଉଥାଏ । ଉପରୁ ଅର୍ଜୁନା ଗର୍ଜିଲା; 'କାନ୍ଦୁଚୁ କାଇଁକି ବେ ମାଇଗୁଲିଆ ?'

ହଠାତ୍ ଆଉ ବାଟ ନପାଇ ଅର୍ଜୁନା ବାଉଳି ହେଲା । ମଣିଷେ ଉଞ୍ଚ ଗୋଟାଏ ପଥର ପାଖରେ ମେ ହାବୁଡିଲୁ । ତାକୁ ପାରି ହେଇଗଲେ କିଛି ବାଟ ଚଟାଣ ପଥର – ତା'ପରେ ଶିଖ । ସମସ୍ତଙ୍କ ନିଃଶ୍ୱାସ ତୋଳିହଉଥାଏ । ପାଟି ମେଲା ହେଇ ଓହଳି ପଡିଥାଏ । ଆଖିତଳେ ଟୋପା ଟୋପା ଝାଳ । ଅଗଣି ପାଖେଇ ଆସିଥାଏ । ଖସ୍ ଖସ୍ ହଉଥାଏ । ସକ୍ ସକ୍ ହଉଥାଏ । ତା' ଉପରେ ଧୂଆଁ ମଡେଇ ହେଇ ପଡୁଥାଏ ବାରମ୍ବାର । ଆମେ ତରଚର ଅନେଇ ଲାଗିଥାଉ ପଥରର ଏପଟ ସେପଟ । କୋଉଠି ଟିକିଏ ଗୋଡ ଥୋଇ ଉଠଇଗଲେ ତେଣିକି ଚିନ୍ତା ନାହିଁ । ଏତିକିବେଳେ ଅଗଣି ରଡିଛାଡିଲା ! ସମସ୍ତେ ଚମକି ପଡିଲୁ । ଅର୍ଜୁନା ଦାନ୍ତ କାମୁଡି ଗର୍ଜିଲା – କ'ଣ ବେ ଶଳା ! – ଉତ୍ତର ନାହିଁ । ଆମେ କିଛି ଭାବିବା ପୂର୍ବରୁ ଅର୍ଜୁନା ଖେପା ମାରି ଗଲା ତଳକୁ । ଅଗଣି ଖାପେ ଖସିଯାଇ ଗୋଟାଏ ଗଛରେ ଲାଖିଥାଏ । ଅର୍ଜୁନା ତାକୁ ସେଇଠୁ ଓଟାରି ଉପରକୁ ଉଠିଆସିଲା । ଆମ ପାଖେ ପହଞ୍ଚିଲାବେଳକୁ ସୁବଳ ଉହୁଁକୁ ଥାଏ ପଥର ଉପରକୁ । ବିଧୁ ତା' ଫଡିଆକୁ ତଳୁ

ଟେକୁଥାଏ । ଅର୍ଜୁନାର ପାଟିମେଲା । ତା'ର ବି କଥା କହିବାକୁ ପବନ ନାହିଁ । ସେ ସେମିତି ଧଇଁସଇଁ ହେଇ ସୁବଳର ପାଦକୁ ଧରି ଟେକିଲା । ସୁବଳ ହାତ ବଢେଇଲା ପଥରର ଉପର ମଙ୍ଗକୁ । ସେଇଠି ଟିପ ଜମେଇ, ଉପରକୁ ଟାଣିହେଲା । ମୁଁ ଅଗଣି ପିଠିକୁ ଆଉଁସିଦେଲି । ତା' ହାତ ଗୋଟାଯାକ ରକ୍ତ । ଜାମାଟାଯାକ ଫଟା ଫଟା । ଆଣ୍ଠୁ ଖଣ୍ଡିଆ । ଗୋଡରେ ଅସଂଖ୍ୟ ଆମ୍ବୁଡା ଦାଗ । ମୋ କହୁଣି ଜଳୁଥାଏ । ଆଣ୍ଠୁ ଜଳୁଥାଏ । ...ସୁବଳ ଚଢିଗଲା ଉପରକୁ । ଅର୍ଜୁନା ବିଧୁକୁ ଅଧେବାଟ ଟେକିଦେଲା । ସୁବଳ ଟାଣିଲା – ଅର୍ଜୁନା ପେଲିଲା । ସେ ଉଠିଗଲା ଉପରକୁ । ତା' ହାତ ଠକ୍ ଠକ୍ ଥରୁଥାଏ । ନିଃଶ୍ୱାସ ପାଟିବାଟେ ଫାଇଁ ଫାଇଁ ଫାଟିପଡୁଥାଏ । ଉପରୁ ସୁବଳ, ବିଧୁ ଉଭୟେ ଟାଣିଲେ । ମୁଁ ଆଣ୍ଠୁ ଲଗେଇଲି ପଥରେ ଉପରେ । ଡାହାଣ ହାତରେ ଭିଡିହେଲି । ତଳୁ ଅର୍ଜୁନା ପେଲିଲା । ମୁଁ ବି ଉଠିଗଲି । ଏତିକିବେଳେ ଧପ୍‌ଧପ୍ ହେଇ ନିଆଁଟାଏ ଚହଟି ଆସିଲା । ମୁଁ ବିକଳରେ ଡାକିଲି – 'ଅର୍ଜୁନା ଭାଇ !' – ହାତ ବଢେଇଲି, 'ଉଠିଆ ଅର୍ଜୁନା !' ଅର୍ଜୁନା ଲଇଁଥାଏ । ତା'ପରେ ମୋ ହାତ ବାଜିଲା ଅଚିହ୍ନା ଜିନିଷଟାରେ । ରହିଁଲାବେଳକୁ ହରିଣଛୁଆଟାଏ । ତଳୁ ଅର୍ଜୁନା କହୁଚି ଏଇଟାକୁ ଉଠା ଆଗ । ମୁଁ ଟାଣିଆଣିଲି । ଫୁର୍‌କୁଟିଆ ଗନ୍ଧଉଥାଏ ତା'ର ଦରପୋଡା ରୁମ । ସେ ଉପରକୁ ଆସି ଛାଟିହେଇ ପଳେଇଲା । ଆମେ ତିନିହେଁ ଅର୍ଜୁନାକୁ ଟାଣିଲୁ । ମଝିରେ ମନେହେଲା ଆମେ ତିନିହେଁ ଘୋଷାରି ହୋଇ ତଳକୁ ଖସିଯିବୁ । ଉଭୟ ପକ୍ଷ ନିକିତିରେ ତଉଲି ହେଲାପରି ରହିଗଲୁ । ଅର୍ଜୁନା ଉହୁଙ୍କିଲା । ଆମେ ଝଟକାମାରି ଟାଣିଲୁ । ଉପରକୁ ଆଣ୍ଠୁମାରି ଉଠିଆସିଲାବେଳକୁ ଅର୍ଜୁନା ଜଳୁଥାଏ । ତା' ପିଠି ମୁଣ୍ଡରେ ହାତ ମଳି ନିଆଁ ଲିଭେଇଲୁ । ତା' ଜାମା ଜଳିଯାଇଥାଏ । ମୁଣ୍ଡରୁ ଅଧେବାଳ ଜଳିଯାଇଥାଏ । ତା' ପିଠି ଉପରଯାକ କଳା କଳା ପୋଡାଦାଗ । ସେ ଖପ୍‌କିନା ଠିଆହେଇ ଆମକୁ ପେଲିଦେଲା ଆଗକୁ ଏବଂ ଉପରକୁ – 'ଚଢବେ ଶଳେ, ଉଠିଯାଅ ।'

ଚଟାଣିଆ ପଥର ଉପରକୁ ଟୁମେଇ ଯାଇଥାଏ । ହାତ ପାଦ ଲଗେଇ ହାମୁଡେଇ ଉଠିଗଲୁ ସମସ୍ତେ । ସବା ପଛରେ ଅର୍ଜୁନା ଆସୁଥାଏ । ତା' ପଛରେ ନିଆଁ । ଉପରେ ମୁଣ୍ଡିଆ ଶିଖ । ଉପରେ ପ୍ରଚଣ୍ଡ ଖରା । ଶିଖ ପଥର ଉପରକୁ ଯେ ଯେମିତି ପାରିଲା ଉଠିଗଲା । ସେଇଠି ମେଞ୍ଚା ମେଞ୍ଚା ହେଇ ପଡିଗଲୁ । ସମସ୍ତଙ୍କ ହଂସା ଉଡିଗଲାପରି ଶୋଷ । ଠୋ ଠୋ ଖରା । ତାତିଲା ପଥରମୁଣ୍ଡିଆ । ଜଳନ୍ତା ଦାରୁ ଦ୍ରୁମ ଭିତରେ ପାଞ୍ଚଟି ଶୋଷିଲା ଭୋକିଲା ମଣିଷଛୁଆ । ପାଟି ମେଲେଇ ଆମ କେବଳ ତାତିଲା ପବନ ଶୋଷିଲୁ ।

ଅର୍ଜୁନା ସେ ଟିଖ ଉପରୁ ରହିଁଲା ତଳକୁ । ମୁଣ୍ଡିଆର ଦକ୍ଷିଣ ଦିଗ ସାରା ନିଆଁରେ ଧକ୍ ଧକ୍ । ଧୂଆଁ ନିଆଁର ସମୁଦ୍ର ଗର୍ଜୁଛି । ଭୁସ୍ ଭୁସ୍ ହେଇ କୁଢେଇ ହେଇପଡୁଛି, ଗୋଟା ଗୋଟା ଜଳନ୍ତା ଗଛ । ନିଆଁର ଲଡପଡ ବାଡ ସେପାରି କୋଉଠି କେଜାଣି, ସେ ନିରୋଳା ଡାକବଙ୍ଗଳା । କାକର ଆମ୍ବ ତୋଟା ଆଉ ବାଲ୍‌ଟି ବାଲ୍‌ଟି ଥଣ୍ଡା ପାଣି, ପାଖରେ ଚୁଟିଆ ସଂସ୍କୃତ ପଣ୍ଡିତ । ଅର୍ଜୁନା ଅଣ୍ଟାରେ ହାତ ଦେଇ ରହିଁଲା ନିଆଁର ସମୁଦ୍ରକୁ । ଓହ୍ଲେଇବାର ବାଟ ନାହିଁ ।

ସେ ବୁଲିପଡିଲା । ଅଗଣି ସୁକ୍ ସୁକ୍ ହେଲା । କହିଲା – "ପାଣି ପିଇବି ।" 'ଖେପ୍‌ବେ !!' ଗର୍ଜିଲା ଅର୍ଜୁନା । ସମସ୍ତଙ୍କ ପାଟିରୁ ଅଠା ମରିଯାଇଥିଲା । ସମସ୍ତେ ଅଗଣି ଭଳି କାନ୍ଦିବାକୁ ଋହୁଁଥିଲୁ । ପାଣି ପିଇବାକୁ ବିକଳ ହଉଥିଲୁ । ଅର୍ଜୁନା ଗର୍ଜିରେ ସମସ୍ତଙ୍କ ମଳଦ୍ୱାର ଚମକିଗଲା, ଭୟରେ, ଧକ୍ ଧକ୍ ହେଲା । ଅର୍ଜୁନା ସେମିତି ଦାନ୍ତସନ୍ଧାରୁ ଶୋଧିଲା, "ଏ ଶଳା ମାଇଗୁଲିଆ ଏଠି ମରିବ – ଆମ ସମସ୍ତଙ୍କୁ ତା' ସାଙ୍ଗରେ ମାରିବ !...ଆଉ ପାଣି ମାଗିବୁ ତ' ତୋ ପାଟି ମେଲେଇ ମୁତିଦେବି ।" ଅର୍ଜୁନାର ଫାଳେ ମୁହଁ ନିଆଁରେ ଝଲସି ଯାଇଥାଏ । ବାଳ ଅଧେ ପୋଡିଯାଇଥାଏ । ଦରପୋଡା ଜାମାରେ ସେ ଦିଶୁଥାଏ ରାକ୍ଷସ ପରି । ଅଗଣି ଅକସ୍ମାତ ଟାଣିହେଇଗଲା । ଫଣା ଟେଳିଲାପରି କହିଲା – "ମୁଁ ମାରିବି ନା ତୁ' ମାରିବୁ ? ତୁ' ଏ ନିଆଁ ଲଗେଇଚୁ ! ତୁ' ଆମକୁ ଏଠିକି ଆଣିଚୁ ? ତୁ ! ତୁ !! –" ସେ କାନ୍ଦି ପକେଇଲା । ଅର୍ଜୁନା କିନ୍ତୁ ତାକୁ କଚ୍‌କାଚ୍ ଲାତ ମାରି ଗଡେଇଦେଲା ନାହିଁ ।

ଉତ୍ତର ପାଖ ମୁଣ୍ଡିଆ ତୁଙ୍ଗା ଅତଡା । କାହିଁ କୋଉ ତଳେ 'ଗୁମ୍ଫଖାଇ' ନାଳ । ଅର୍ଜୁନା ଲେଉଟିପଡି କହିଲା – 'ପାଣି ପିଇବ ତ ଆସ' । ଆମେ ତରବର ହୋଇ ତା' ପାଖକୁ ଆସି ଓହଟି ଋହିଁଲୁ । ମୁଣ୍ଡ ଝାଇଁ ମାରିଦେଲା । ପାଦ ତଳ ସିର୍‌ସିରେଇଲା । ଇସ୍, କେଡେ ଖାଲ ! କିନ୍ତୁ କେଡେ କାକର ! ସିଧା ନିଶୁଣିପରି ସଳଖ ହେଇ ରହିଥିବା ପାହାଡର ବୁକୁ ଦେଖେଇ ଅର୍ଜୁନା କହିଲା – "ଏଇ ବାଟେ ଓହ୍ଲେଇବାକୁ ହେବ – ନହେଲେ ଏଇଠି ସିଝି ମରିବାକୁ ହେବ ।" – ଠୋକିନା ଗୋଟାଏ ଗଛ ଫୁଟିଗଲା । ନିଆଁ ଛିଞ୍ଚାଡି ହେଇ ପଡିଲା ଆମ ପାଖରେ । ଘାସ ଗହଳରୁ ଖୁସ୍‌କିନା ସେ ଦରପୋଡା ହରିଣଛୁଆଟି ଉଠିଆସିଲା ଆମ ଆଡେ । ଅର୍ଜୁନା ତାକୁ ଧରି ଟିକିଏ ସାଉଁଳି ଦେଇ ତଳେ ଛାଡିଲା । ଅତଡା ଆଡକୁ ମୁହାଁଇ ଦେଇ କହିଲା – "ଯା' ଓହ୍ଲେଇ ଯା" । ହରିଣଛୁଆ ଘୋଷାରି ହେଲା – ଘୁଞ୍ଚିଲା ନାହିଁ ।...ନିଆଁ ଚହଟି ଆସିଲା ମୁଣ୍ଡିଆ ଉପରକୁ । ଅର୍ଜୁନା କହିଲା – "ଆଉ ବେଳ ନାହିଁ । ସେମିତି ରହି ମରିଥାନ୍ତେ, ନହେଲେ ଏମିତି ଓହ୍ଲେଇ ମରିବା – ଚେଷ୍ଟା ତ କରିବା ବଞ୍ଚିବା ପାଇଁ ! ମୁଁ ସିନା ଏଠିକି ଚଢେଇ ଆଣିଲି, ନିଆଁ ଲଗେଇଦେଲି – ତୁ ଅଗଣି ଏବେ ଆମକୁ ଓହ୍ଲେଇନେ ପାଣିକି !" – ପରିହାସ କଲା ପରି ଶୁଭିଲା । କିନ୍ତୁ ଅଗଣି ସତକୁସତ ଝାଡିଝୁଡି ହେଇ ଆଗେଇଆସିଲା । ଧୀରେ ପାଦ ବଢେଇଲା ଆଗକୁ ଏବଂ ତଳକୁ । ପତର ଘୋଡେଇ ହେଇ ରହିଥିବା ପାହାଡର ଖୋପଗୁଡିକୁ ଗୋଡରେ ଆଡେଇ ଆଗେଇ ଓହ୍ଲେଇଲା ଅଗଣି – ତା' ପଛକୁ ସୁବଳ, ବିଧୁ, ମୁଁ ଏବଂ ସବା ପଛେ ଅର୍ଜୁନା । ସମସ୍ତଙ୍କ ମୁହଁ ପାହାଡଆଡକୁ । ସମସ୍ତଙ୍କ ପଛ ତଳକୁ, ଅତଡା ଖସା ନାଳକୁ । ପାହାଡକୁ କୁଣ୍ଢେଇଲା ପରି, ଲାଖି ରହି, ଝିଟିପିଟି ପରି ଆମେ ଅଗଣି ପଛରେ ଓହ୍ଲେଇଲୁ । ପ୍ରାୟ ପଋଶ ଫୁଟ ପାଖରେ ଟିକିଏ ଠିଆହେବାକୁ ଜାଗା ଦିଶୁଥାଏ । ସେଇଠୁ ପାହାଡର କାନ୍ଥ ଢଙ୍ଗ ଆଉ ନାହିଁ – ଓହ୍ଲେଇ ହବ ।

ଅର୍ଜୁନା ସବା ପଛରେ ମିରିଗଛୁଆଟିକୁ ଅଧା କାଖେଇ ଓହ୍ଲଉଥାଏ । ମୁଁ କାନ୍ଦୁଥାଏ । ସମସ୍ତେ ପ୍ରାୟ କାନ୍ଦୁଥାନ୍ତି । ଟିକିଏ ପାହାଡ ଦିହରୁ ଛାଡିଗଲେ ପିତୁଳା ଖସିଲା ପରି ଖସିପଡିବୁ ।

ଟେକୁଥାଏ । ଅର୍ଜୁନାର ପାଟିମେଲା । ତା'ର ବି କଥା କହିବାକୁ ପବନ ନାହିଁ । ସେ ସେମିତି ଧଇଁସଇଁ ହେଇ ସୁବଳର ପାଦକୁ ଧରି ଟେକିଲା । ସୁବଳ ହାତ ବଢ଼େଇଲା ପଥରର ଉପର ମଙ୍ଗକୁ । ସେଇଠି ଟିପ ଜମେଇ, ଉପରକୁ ଟାଣିହେଲା । ମୁଁ ଅଗଣି ପିଠିକୁ ଆଉଁସିଦେଲି । ତା' ହାତ ଗୋଟାଯାକ ରକ୍ତ । ଜାମାଟାଯାକ ଫଟା ଫଟା । ଆଣ୍ଠୁ ଖଣ୍ଡିଆ । ଗୋଡରେ ଅସଂଖ୍ୟ ଆମ୍ବୁଡା ଦାଗ । ମୋ କହୁଣି ଜଳୁଥାଏ । ଆଣ୍ଠୁ ଜଳୁଥାଏ । ...ସୁବଳ ଚଢ଼ିଗଲା ଉପରକୁ । ଅର୍ଜୁନା ବିଧୁକୁ ଅଧେବାଟ ଟେକିଦେଲା । ସୁବଳ ଟାଣିଲା – ଅର୍ଜୁନା ପେଲିଲା । ସେ ଉଠିଗଲା ଉପରକୁ । ତା' ହାତ ଠକ୍ ଠକ୍ ଥରୁଥାଏ । ନିଃଶ୍ୱାସ ପାଟିବାଟେ ଫାଇଁ ଫାଇଁ ଫାଟିପଡୁଥାଏ । ଉପରୁ ସୁବଳ, ବିଧୁ ଉଭୟେ ଟାଣିଲେ । ମୁଁ ଆଣ୍ଠୁ ଲଗେଇଲି ପଥରେ ଉପରେ । ଡାହାଣ ହାତରେ ଭିଡିହେଲି । ତଳୁ ଅର୍ଜୁନା ପେଲିଲା । ମୁଁ ବି ଉଠିଗଲି । ଏତିକିବେଳେ ଧପ୍‌ଧପ୍ ହେଇ ନିଆଁଟାଏ ଚହଟି ଆସିଲା । ମୁଁ ବିକଳରେ ଡାକିଲି – 'ଅର୍ଜୁନା ଭାଇ !' – ହାତ ବଢ଼େଇଲି, 'ଉଠିଆ ଅର୍ଜୁନା !' ଅର୍ଜୁନା ଲଇଁଥାଏ । ତା'ପରେ ମୋ ହାତ ବାଜିଲା ଅଚିହ୍ନା ଜିନିଷଟାରେ । ଗଡ଼ିଁଲାବେଳକୁ ହରିଣଛୁଆଟାଏ । ତଳୁ ଅର୍ଜୁନା କହୁଚି ଏଇଟାକୁ ଉଠା ଆଗ । ମୁଁ ଟାଣିଆଣିଲି । ଫୁର୍‌କୁଟିଆ ଗନ୍ଧଉଥାଏ ତା'ର ଦଗପୋଡା ରୁମ । ସେ ଉପରକୁ ଆସି ଛାଟିହେଇ ପଳେଇଲା । ଆମେ ତିନିହେଁ ଅର୍ଜୁନାକୁ ଟାଣିଲୁ । ମଝିରେ ମନେହେଲା ଆମେ ତିନିହେଁ ଘୋଷାରି ହୋଇ ତଳକୁ ଖସିଯିବୁ । ଉଭୟ ପକ୍ଷ ନିକିତିରେ ତଉଲି ହେଲାପରି ରହିଗଲୁ । ଅର୍ଜୁନା ଉହୁଙ୍କିଲା । ଆମେ ଝଟକାମାରି ଟାଣିଲୁ । ଉପରକୁ ଆଣ୍ଠୁମାରି ଉଠିଆସିଲାବେଳକୁ ଅର୍ଜୁନା ଜଳୁଥାଏ । ତା' ପିଠି ମୁଣ୍ଡରେ ହାତ ମଳି ନିଆଁ ଲିଭେଇଲୁ । ତା' ଜାମା ଜଳିଯାଇଥାଏ । ମୁଣ୍ଡରୁ ଅଧେବାଳ ଜଳିଯାଇଥାଏ । ତା' ପିଠି ଉପରଯାକ କଳା କଳା ପୋଡାଦାଗ । ସେ ଖପ୍‌କିନା ଠିଆହେଇ ଆମକୁ ପେଲିଦେଲା ଆଗକୁ ଏବଂ ଉପରକୁ – 'ଚଢ଼ବେ ଶଳେ, ଉଠିଯାଅ ।'

ଚଟାଣିଆ ପଥର ଉପରକୁ ଟୁମେଇ ଯାଇଥାଏ । ହାତ ପାଦ ଲଗେଇ ହାମୁଡେଇ ଉଠିଗଲୁ ସମସ୍ତେ । ସବା ପଛରେ ଅର୍ଜୁନା ଆସୁଥାଏ । ତା' ପଛରେ ନିଆଁ । ଉପରେ ମୁଣ୍ଡିଆ ଶିଖ । ଉପରେ ପ୍ରଚଣ୍ଡ ଖରା । ଶିଖ ପଥର ଉପରକୁ ଯେ ଯେମିତି ପାରିଲା ଉଠିଗଲା । ସେଇଠି ମେଞ୍ଚା ମେଞ୍ଚା ହେଇ ପଡିଗଲୁ । ସମସ୍ତଙ୍କ ହଂସା ଉଡିଗଲାପରି ଶୋଷ । ଠୋ ଠୋ ଖରା । ତାତିଲା ପଥରମୁଣ୍ଡିଆ । ଜଳନ୍ତା ଦାରୁ ଦ୍ରୁମ ଭିତରେ ପାଞ୍ଚଟି ଶୋଷିଲା ଭୋକିଲା ମଣିଷଛୁଆ । ପାଟି ମେଲେଇ ଆମ କେବଳ ତାତିଲା ପବନ ଶୋଷିଲୁ ।

ଅର୍ଜୁନା ସେ ଟିଖ ଉପରୁ ଗଡ଼ିଁଲା ତଳକୁ । ମୁଣ୍ଡିଆର ଦକ୍ଷିଣ ଦିଗ ସାରା ନିଆଁରେ ଧକ୍ ଧକ୍ । ଧୂଆଁ ନିଆଁର ସମୁଦ୍ର ଗର୍ଜୁଛି । ଭୁସ୍ ଭୁସ୍ ହେଇ କୁଢ଼େଇ ହେଇପଡୁଛି, ଗୋଟା ଗୋଟା ଜଳନ୍ତା ଗଛ । ନିଆଁର ଲତପତ ବାଡ ସେପାରି କୋଉଠି କେଜାଣି, ସେ ନିରୋଳା ଡାକବଙ୍ଗଳା । କାକର ଆମ୍ବ ତୋଟା ଆଉ ବାଲ୍‌ଟି ବାଲ୍‌ଟି ଥଣ୍ଡା ପାଣି, ପାଖରେ ଚୁଟିଆ ସଂସ୍କୃତ ପଣ୍ଡିତ । ଅର୍ଜୁନା ଅଣ୍ଟାରେ ହାତ ଦେଇ ଗଡ଼ିଁଲା ନିଆଁର ସମୁଦ୍ରକୁ । ଓହ୍ଲେଇବାର ବାଟ ନାହିଁ ।

ସେ ବୁଲିପଡିଲା । ଅଗଣି ସୁକ୍ ସୁକ୍ ହେଲା । କହିଲା – "ପାଣି ପିଇବି ।" 'ଶ୍ୱେପ୍‌ବେ!!' ଗର୍ଜିଲା ଅର୍ଜୁନା । ସମସ୍ତଙ୍କ ପାଟିରୁ ଅଠା ମରିଯାଇଥିଲା । ସମସ୍ତେ ଅଗଣି ଭଳି କାନ୍ଦିବାକୁ ଚାହୁଁଥିଲୁ । ପାଣି ପିଇବାକୁ ବିକଳ ହଉଥିଲୁ । ଅର୍ଜୁନା ରଡିରେ ସମସ୍ତଙ୍କ ମଳଦ୍ୱାର ଚମକିଗଲା, ଭୟରେ, ଧକ୍ ଧକ୍ ହେଲା । ଅର୍ଜୁନା ସେମିତି ଦାନ୍ତସନ୍ଧାରୁ ଶୋଧିଲା, "ଏ ଶଳା ମାଇଗୁଲିଆ ଏଠି ମରିବ – ଆମ ସମସ୍ତଙ୍କୁ ତା' ସାଙ୍ଗରେ ମାରିବ!...ଆଉ ପାଣି ମାଗିବୁ ତ' ତୋ ପାଟି ମେଲେଇ ମୂତିଦେବି ।" ଅର୍ଜୁନାର ଫାଳେ ମୁହଁ ନିଆଁରେ ଝଲସି ଯାଇଥାଏ । ବାଳ ଅଧେ ପୋଡିଯାଇଥାଏ । ଦରପୋଡା ଜାମାରେ ସେ ଦିଶୁଥାଏ ରାକ୍ଷସ ପରି । ଅଗଣି ଅକସ୍ମାତ ଟାଣିହେଇଗଲା । ଫଣା ଟେକିଲାପରି କହିଲା – "ମୁଁ ମାରିବି ନା ତୁ' ମାରିବୁ? ତୁ' ଏ ନିଆଁ ଲଗେଇଚୁ! ତୁ' ଆମକୁ ଏଠିକି ଆଣିଚୁ? ତୁ! ତୁ!! –" ସେ କାନ୍ଦି ପକେଇଲା । ଅର୍ଜୁନା କିନ୍ତୁ ତାକୁ କଚ୍‌କାଚ୍ ଲାତ ମାରି ଗଡେଇଦେଲା ନାହିଁ ।

ଉତ୍ତର ପାଖ ମୁଣ୍ଡିଆ ଚୂଳା ଅତଡା । କାହିଁ କୋଉ ତଳେ 'ଗୁହ୍ମଖାଇ' ନାଳ । ଅର୍ଜୁନା ଲେଉଟିପଡି କହିଲା – 'ପାଣି ପିଇବ ତ ଆସ' । ଆମେ ତରବର ହୋଇ ତା' ପାଖକୁ ଆସି ଓହଟି ଚାହିଁଲୁ । ମୁଣ୍ଡ ଝାଇଁ ମାରିଦେଲା । ପାଦ ତଳ ସିର୍‌ସିରେଇଲା । ଇସ୍, କେତେ ଖାଲ! କିନ୍ତୁ କେତେ କାକର! ସିଧା ନିଶୁଣିପରି ସଳଖ ହେଇ ରହିଥିବା ପାହାଡର ବୁକୁ ଦେଖେଇ ଅର୍ଜୁନା କହିଲା – "ଏଇ ବାଟେ ଓହ୍ଲେଇବାକୁ ହେବ – ନହେଲେ ଏଇଠି ସିଝି ମରିବାକୁ ହେବ ।" – ଠୋକିନା ଗୋଟାଏ ଗଛ ଫୁଟିଗଲା । ନିଆଁ ଛିଟ୍କାତି ହେଇ ପଡିଲା ଆମ ପାଖରେ । ଘାସ ଗହଳରୁ ଖୁସ୍‌କିନା ସେ ଦରପୋଡା ହରିଣଛୁଆଟି ଉଠିଆସିଲା ଆମ ଆଡେ । ଅର୍ଜୁନା ତାକୁ ଧରି ଟିକିଏ ସାଉଁଳି ଦେଇ ତଳେ ଛାଡିଲା । ଅତଡା ଆଡକୁ ମୁହାଁଇ ଦେଇ କହିଲା – "ଯା' ଓହ୍ଲେଇ ଯା" । ହରିଣଛୁଆ ଘୋଷାରି ହେଲା – ଘୁଞ୍ଚିଲା ନାହିଁ ।...ନିଆଁ ଚହଟି ଆସିଲା ମୁଣ୍ଡିଆ ଉପରକୁ । ଅର୍ଜୁନା କହିଲା – "ଆଉ ବେଳ ନାହିଁ । ସେମିତି ରହି ମରିଥାନ୍ତେ, ନହେଲେ ଏମିତି ଓହ୍ଲେଇ ମରିବା – ଚେଷ୍ଟା ତ କରିବା ବଞ୍ଚିବା ପାଇଁ! ମୁଁ ସିନା ଏଠିକି ଚଢେଇ ଆଣିଲି, ନିଆଁ ଲଗେଇଦେଲି – ତୁ ଅଗଣି ଏବେ ଆମକୁ ଓହ୍ଲେଇନେ ପାଣିକି!" – ପରିହାସ କଲା ପରି ଶୁଭିଲା । କିନ୍ତୁ ଅଗଣି ସତକୁସତ ଝାଡିଝୁଡି ହେଇ ଆଗେଇଆସିଲା । ଧୀରେ ପାଦ ବଢେଇଲା ଆଗକୁ ଏବଂ ତଳକୁ । ପଡର ଘୋଡେଇ ହେଇ ରହିଥିବା ପାହାଡର ଖୋପଗୁଡିକୁ ଗୋଡରେ ଆଡେଇ ଆଗେଇ ଓହ୍ଲେଇଲା ଅଗଣି – ତା' ପଛକୁ ସୁବଳ, ବିଧୁ, ମୁଁ ଏବଂ ସବା ପଛେ ଅର୍ଜୁନା । ସମସ୍ତଙ୍କ ମୁହଁ ପାହାଡଆଡକୁ । ସମସ୍ତଙ୍କ ପଛ ତଳକୁ, ଅତଡା ଖସା ନାଳକୁ । ପାହାଡକୁ କୁଣ୍ଢେଇଲା ପରି, ଲାଖି ରହି, ଝିଟିପିଟି ପରି ଆମେ ଅଗଣି ପଛରେ ଓହ୍ଲେଇଲୁ । ପ୍ରାୟ ପଚାଶ ଫୁଟ ପାଖରେ ଟିକିଏ ଠିଆହେବାକୁ ଜାଗା ଦିଶୁଥାଏ । ସେଇଠୁ ପାହାଡର କାନ୍ଥ ଢଙ୍ଗ ଆଉ ନାହିଁ – ଓହ୍ଲେଇ ହବ ।

ଅର୍ଜୁନା ସବା ପଛରେ ମିରିଗଛୁଆଟିକୁ ଅଧା କାଖେଇ ଓହ୍ଲଉଥାଏ । ମୁଁ କାନ୍ଦୁଥାଏ । ସମସ୍ତେ ପ୍ରାୟ କାନ୍ଦୁଥାନ୍ତି । ଟିକିଏ ପାହାଡ ଦିହରୁ ଛାଡିଗଲେ ପିତୁଳା ଖସିଲା ପରି ଖସିପଡିବୁ ।

ଅଗଣୀକି କେମିତି ବାଟ ଦିଶୁଥାଏ କେଜାଣି – ସେ ନିଃଶବ୍ଦରେ ପାହାଡ କାନ୍ଥରେ ଘଷି ହେଇ ହେଇ ପାଦ ଅଣ୍ଡାଳି ଚାଲିଥାଏ । ଆମେ ସେମିତି ତା' ପଛକୁ ତା' ପଛ ଓହ୍ଲଉଥାଉ । ଆମ ମୁଣ୍ଡ ଉପରୁ ଖଣ୍ଡେ ଛୋଟ ଢେଲା ପଥର ଖସିଲା । ଅର୍ଜୁନା ଶୁଣେଇ କହିଲା – "ଉହଁନାଇଁ ବେ ସେଆଡେ ଲେଉଟିପଡିବ । ନିଆଁରୁ ବର୍ତ୍ତିବାକୁ ଜନ୍ତୁମାନେ ଏବେ ଅତଡା ଦାଢରେ ଧାଡି ବାନ୍ଧିଛନ୍ତି । ଉପରକୁ ଉହଁନାହିଁ ଶଳେ, ମରିଯିବ ।"

ପାଦ ସିର୍ ସିର୍ ହେଲା । ବିଛା ଚାଲିଲା ପରି ତଳିପେଟ ଗାଟୁ ଗାଟୁ ହେଲା । ମୁଣ୍ଡ ଘାଉରେଇଗଲା । ତଥାପି ପ୍ରାଣବିକଳରେ ଅଚଳନ୍ତି ଅଙ୍ଗଗୁଡିକୁ ଘୋଷାରିଲୁ । ଅସରନ୍ତି ଓହ୍ଲାଣି । ପାଦଟିଏ ଆଗେଇଲେ ଗୋଟିଏ ନୂଆ ଜନ୍ମ । ଶବ୍ଦରୁ ଜଣାଗଲା ବୋଧେ ଅଗଣି ପିଣ୍ଡି ଛୁଇଁଲା – "ଅଗଣିରେ, ତୁଇ ଜାଣି ମୋ ପ୍ରାଣ! ବଞ୍ଚଥା ଭାଇ, ବଞ୍ଚଥା ।" ମୁଁ ପିଣ୍ଡି ଉପରେ ଗୋଡ ଦେଲାବେଳକୁ ବିଧୁ ପାହାଡ କାନ୍ଥକୁ ପିଠି ଆଉଜେଇ ଢିମା ଢିମା ଆଖିରେ ଉହିଁଛି, ତା' ତଳପାଟି ଠକ୍ ଠକ୍ ଥରୁଛି । ସେ ହାତ ଯୋଡିକୁ ଦିଆଡେ ନାଡ ଓହଳେଇଲା ପରି ଛାଡିଦେଇ ସେମିତି ଠିଆ ଠିଆ ତା' ପେଣ୍ଟର ମୁତି ଦେଉଛି । ତା' ବାଁଗୋଡଯାକ ଓଦା ସରସର । ସୁବଳ ନଥିକିନା ବସିପଡିଛି ।

ମୋ ପଛକୁ ମିରିଗଛୁଆ କାଖେଇ ଓହ୍ଲେଇଲା ଅର୍ଜୁନା । ତା' ଦେହସାରା ଥରୁଥାଏ । ଉପରେ ଖସ୍ ଖସ୍ ଶୁଭିଲା । ସମସ୍ତେ ଉହିଁଲୁ । ପାଳବିଡାପରି ଗୋଟେ ସାପ ଖସିଗଲା... ଶୂନ୍ୟକୁ । ନିଶ୍ୱାସ ରୋଧି ଆମେ ତାକୁ ଉହିଁରହିଲୁ । ସୁ-ସୁ' ପବନରେ କେତେବେଳଯାଏ ଖସୁଥାଏ । ସେଇଟା ଶେଷରେ ଝପାଙ୍କକରି ପଡିଲା ପାଣିରେ ।

ଅର୍ଜୁନା କହିଲା – "ଅଜଗରଟାଏ!" ମୋ ଆଣ୍ଠୁ ହୁଗୁଳିଗଲା । ମୁଁ ବସିପଡିଲି ସେଇଠି । ଅର୍ଜୁନା କାନ୍ଥକୁ ଆଉଜି ନିଜକୁ ସମ୍ଭାଳିନେଲା । ଅଗଣି ସବା ଆଗରେ । ତା' ଆଗରେ ମିରିଗ ଛୁଆ । ଆଉଜା କାନ୍ଥପରି ଗଡାଣିରେ ଜଗି ଡଗି ଚାଲିଛି ମିରିଗଛୁଆ; ତା' ପଛରେ ଅଗଣି । ଆମ ବୁକୁ ଭିତରକୁ ସାହସ ଆସିଗଲା । ଆମେ ଆଡି ବାନ୍ଧିଲୁ । ଗୋଡ ଚିପି ଚିପି, ଫଡିଆ ଘୋଷାରି ଘୋଷାରି ଓହ୍ଲେଇଲୁ । ଗଛଗୁଡିଏ ଭେଟିଲୁ । କାକର ପତ୍ରଗୁଡିଏ ଦେହରେ ସାଉଁଳି ହେଲେ । ନାଳପାଣି ପାଖେଇଆସିଲା । ଆଉ ଏମିତି ଶହେଫୁଟ ଓହ୍ଲେଇଗଲେ ପହଞ୍ଚିଯିବୁ ।

ଆଗେ ଆଗେ ମିରିଗଛୁଆ । ତା' ପଛେ ପଛେ ଅଗଣି । ଦୁହେଁ ଏକାସଙ୍ଗେ ଗବ୍‌କିନା ନାଳକୂଳ କାଦୁଅକୁ ଗଳିପଡିଲେ । ଅଗଣି ବୁଡିଗଲା ଅଣ୍ଟାଯାଏ । ମିରିଗଛୁଆର ଚରୋଟିଯାକ ଗୋଡ ବୁଡିଗଲା । 'ରହ', 'ରହ' କହି ଆଗକୁ ଆଗେଇ ଖସିଆସିଲା ଅର୍ଜୁନା । କାଦୁଅକୁ କୁଦାମାରି ଗୋଟାଏ ଖେପାରେ ଖଣ୍ଡେ ପଥର ଉପରେ ଠିଆ ହେଲା । ହାତ ବଢେଇଲା ଅଗଣିକୁ । "ମୋ ହାତ ଧ–ଆର ହାତରେ ମିରିଗଛୁଆକୁ ଧ ।" – ଉଭୟକୁ ଓଟାରି ଅଣ୍ଟାଏ ପାଣିରେ ଛାଡି ପୁଣି ପଥର ପାଖକୁ ଅର୍ଜୁନା ଆସିଲା । ଆମେ ଜଣ ଜଣ କରି ତେଙ୍ଗ ତା' ହାତଧରି ଯାଇ ପାଣିରେ ଓହ୍ଲେଇଲୁ । ଖଳଖଳ ଛଳଛଳ ପାଣି । ତଳେ ଚିକ୍‌କଣ ବାଲିଗରଡା ଝିଲ୍‌ଝିଲ୍ ବାଲି ।

ଶୋଷ ମରିଗଲା । ଭୟ ଛାଡିଗଲା । ଅର୍ଜୁନା ଆମ ଆଗେ ଆଗେ ମିରିଗଛୁଆକୁ କାନ୍ଧରେ ଧରି ପାରିହେଉଥାଏ । କୁନିମୁନିଆ ମିରିଗର ଆଖିଯୋଡିକ ଭଅଁର ପରି । କାନଯୋଡିକ କଅଁଳ । ସେ କାନ ହଲଉଥାଏ, ଥୋଣି ଘଟୁଥାଏ । ଆଉ କୂଳକୁ ଚଢିଲାବେଳକୁ ଅର୍ଜୁନାର ପିଠିଯାକ ଫୋଟକା ଜଳଜଳ ଦିଶୁଥାଏ । ଦରପୋଡା ଜାମା ଓଦା ଦେହରେ ଲାଖିଯାଇଥାଏ ।

ଦୁମ୍ ଦୁମ୍ ପାତଶବଦ୍ ଶୁଭିଲା । କେହି ଜଣେ କୁହାଟିଲା – 'ହେଇଟି ! ହେଇଟି !' ପାଞ୍ଚମିନିଟ୍ ଭିତରେ ସେମାନେ ଆମକୁ ଘେରିଗଲେ । ହାଉଳିମାରି ପଣ୍ଡିତେ ଗୋଟା ଗୋଟା କରି କୁଣ୍ଢେଇଲେ – "ମୋ ଧନ, ମୋ ଗଣ୍ଠିଧନ !" ଅର୍ଜୁନା କୋଳରେ ମିରିଗଛୁଆଟାକୁ ଦେଖି କିଏ ଗୋଟାଏ କହିଲା, "ଦେଖନ୍ତୁ ସାର୍, ଅର୍ଜୁନା କେମିତି ଛନଛନିଆ ମାଲ୍ ଆଣିଛି, ତାକୁ ପୋଡି ଖାଇବ ବୋଲି ।"

ଅର୍ଜୁନା ମିରିଗଛୁଆକୁ ବୁକୁ ଉପରକୁ ଭିଡିଧରି କଇଁକଇଁ ଏତେ ପାଟିରେ କାନ୍ଦି ପକେଇଲା । ଆମେ ପାଞ୍ଚଜଣ ମା'ଛେଉଣିଆ ମିରିଗଛୁଆର ଭାଇଯାକ ଅସମ୍ଭାଳ କାନ୍ଦିପକେଇଲୁ ।



## ଶୁଭଶଙ୍ଖ

ଭୋଳାନାଥବାବୁ ସମସ୍ତଙ୍କଠାରୁ ଗାଳି ଖାଇ ଖାଇ ଏକରକମ୍ ବଧିରା ହୋଇଗଲେଣି । ସଂସାରଯାକ ଲୋକେ ଯାହା କରନ୍ତି ବା କରିବା ଉଚିତ, ସେ କୁଆଡେ ସେଇ କାର୍ଯ୍ୟଟି କେବେ କରିପାରନ୍ତି ନାହିଁ । ଅପାଣ୍ଡୁକ, ଅଧମ, ଅଲାଜୁକ ଇତ୍ୟାଦି ଯେତେ ଅଭାଷିଆ ଗାଳି ଅଛି ତାଙ୍କ ଧର୍ମପତ୍ନୀ ତାଙ୍କ ଉପରେ ପ୍ରତିଦିନ ଏତେ ପାଟିକରି ବର୍ଷିଦେଇଯାଆନ୍ତି । ପିଲାଏ ବଡ ବଡ ହେଲେଣି, ବୁଝନ୍ତି – ଅଳ୍ପ ଅଳ୍ପ ହସନ୍ତି । ଟିକିଏ ଲାଜେଇଯାଆନ୍ତି । ହୁଏତ ଭାବନ୍ତି ଯେ ପଡିଶାଘର ଟୁନା, ମଣ୍ଟୁ, ବାବୁଲି ଆଦିଙ୍କର ବାପାମାନଙ୍କଭଳି ତାଙ୍କ ବାପା ସେତେ ଚାଲାକ ନୁହନ୍ତି । ନହେଲେ କ'ଣ ସବୁବେଳେ ସ୍କୁଲ ପିଲାଙ୍କ ଭଳି ପ୍ରତିଦିନ ଏମିତି କାନଧରି ଉଠ ବସ ହୁଅନ୍ତେ ଏବଂ ବୋଉ ସେଇ ସ୍କୁଲର 'ବାଟୁଲି-ଦିଦୀ' ଭଳି ତାଙ୍କୁ ଏମିତି ଗାଳି ଦେଇ ହିନସ୍ତା କରୁଥାନ୍ତା ? ଚିଡ୍‌ଚିଡେଇ ସବୁ କଥାରେ ଗାଳିଦେବାକୁ ବାଟୁଲି ଦିଦୀଙ୍କ ସମକକ୍ଷ ଏ ପୃଥିବୀରେ ଆଉ କେହି ନାହିଁ ବୋଲି ପିଲାଙ୍କ ବିଶ୍ୱାସ । କିନ୍ତୁ ଏସବୁ ସତ୍ତ୍ୱେ ବୋଉ ପଡିଶାଘରକୁ ବୁଲିଯାଇଥିଲା ବେଳେ ସେମାନେ ବାପାଙ୍କୁ ଘେରି ବସିଯାଆନ୍ତି । ତାଙ୍କ ଆଖିକୁଣ କୁଞ୍ଚେଇଯାଏ । ମୁହଁ ଉପରେ ହରେକ୍ କିସମ୍‌ର ଫୁଲ ମହକିଉଠନ୍ତି । ମହୁ ଥୋପି ପଡେ କଥାରେ, ହସରେ, ଚାହାଣିରେ ଓ ଭଙ୍ଗୀରେ । ବଢିଆ ବଢିଆ କଥା କହି ସେ ଅଭିନୟ କରନ୍ତି । ପିଲାଏ ହସି ହସି ଲୋଟିଯାଆନ୍ତି ଗାଲିଚା ଉପରେ । ସେମାନଙ୍କ ଧାରଣା ବାପା ଜଣେ ଅଦ୍ଭୁତ ଜୋକର୍ ।

ସେଦିନ ସଞ୍ଜବେଳେ ପିଲାମାନେ ଚମକି ଉଠିଲେ ବୋଉର ପାଟିଶୁଣି – "ଆଚ୍ଛା, ତମେ ଗୋଟାଏ ମଣିଷ ନା ବଣଭାଲୁ ?" ତା'ପରେ ଅତି ରାଗିଯାଇ କାନ୍ଦଣା ଶୁଭିଲା, "ମୁଁ କ'ଣ କରିବି ଏଥିରୁ ଗୋଟେ ଆଡବାୟ ମୂର୍ଖର ହାତ ଧରି କି ମୋ ବୋଉଲୋ...ମରିଗଲେ ଅବା ତରିଯାଆନ୍ତି କି ବୋଉଲୋ । ଏମିତି ମରଦ କାହାର ଅଛି କି ବୋଉଲୋ ! ଆଲ ବୋଇଲେ କାଲ ବୁଝୁଛି କି ବୋଉଲୋ । ଢିଙ୍କି କହିଲେ ମଲ ବୁଝୁଛି କି ବୋଉଲୋ ।" ତା'ପରେ ନାକବାଟେ କ୍ରୋଧ ଅପମାନ ଲୁହ ଶିଂଘାଣିମିଶା ଅସହାୟ କାନ୍ଦଣା..."ହଇହେ, ମୁଁ ତୁମକୁ ପଇସା ଦେଇ ପଠେଇଲି ଏ ଓଳି

ପାଇଁ ମାଛ ପରିବା ଯାହା ପାଇବ ନେଇଆସିବା ପାଇଁ । ତୁମେ ସାତଟଙ୍କା ଦେଇ ଏଥିରୁ ଆଣି ଗୋଟାଏ ଥୋଇଛ ? ମୁଁ ମରିଯାଆନ୍ତି କି ହେଲେ ତ୍ରାହି ପାଇଯାଆନ୍ତି ତୁମ ଦାଉରୁ !" ପିଲେ ଝରକାବାଟେ ଉଙ୍କିମାଇଲେ । ଦେଖିଲେ ଭିତର ପିଣ୍ଡାରେ ବାପା ଠିଆହୋଇଛନ୍ତି – ସବୁ ଅଙ୍କରେ ଫେଲ୍ କରିଥିବା ଅଗଣି ପଧାନ ପରି । ବୋଉ ତଳେ ବସିପଡି ମୁହଁ ଘୋଡାଇ କାନ୍ଦୁଛି । ମଝିରେ ଥୁଆ ହୋଇଛି ଖାଲି ବଜାରମୁଣି ଏବଂ ତା' ପାଖକୁ...ସେଇଟା କ'ଣ ?...ଧୋବ ସରସର ଏତେ ଶଙ୍ଖ !!

ବୋଉ ମୁହଁରୁ ହାତ କାଢି ଖପାଙ୍ଗ କରି ଉଠିପଡିଲା । ଶଙ୍କଠାକୁ ଧରି ତଳେ ନଡିଆ ପିଟିଲା ପରି ଛେଚିଦେଇଗଲା । ଦୈବାତ୍ ଶଙ୍ଖଟା ଭାରି ଟାଣ । ସେଇଟା ମୋଟେ ଭାଙ୍ଗିଲା ନାହିଁ । ବୋଉ ତାକୁ ରାଗରେ ଫୋପାଡିଦେଲା କାନ୍ଥ ଉପରକୁ । "ଆଜି ଯାହା ହେବାର ହୋଇଯିବ । ଆଜି ତୁମର ଦିନେ କି ମୋର ଦିନେ । ଆଜି ପାଣି ଟୋପେ କେହି ପାଇବ ନାହିଁ ଏ ଘରେ । ସିଝେଇ ସିଝେଇ ମୁହଁରେ କୁଢେଇଲାକୁ ଏମିତି ମତଗରବ ?"

ହାଣ୍ଡିଶାଳଆଡକୁ ରାଗରେ ଖଣ୍ଡିଉଡା ଦେଲାଭଳି ଫଁ ଫଁ ହୋଇ ଚାଲିଯାଉଥିବା ଧର୍ମପତ୍ନୀଙ୍କୁ କିଛି ସମୟ ଚାହିଁରହିଲେ ଭୋଳାନାଥବାବୁ । ତା'ପରେ କାନ୍ଥପାଖରୁ ଶଙ୍ଖଟିକୁ ଗୋଟେଇ ଆଣି ତା' ଉପର ହାତରେ ସାଉଁଳି ପୋଛିଦେଲେ । ପିଲାଏ ସନ୍ତର୍ପଣରେ ଆସି ନିଃଶବ୍ଦରେ ଘେରିଗଲେ ବାପାଙ୍କୁ । ଛବି ପଚାରିଲା, "ବାପା, ଏଇଟା କ'ଣ ଫୁଙ୍କିଲେ ବାଜିବ ?" ଅମର ସବୁ ଜାଣିବା ଭଙ୍ଗୀରେ କହିଲା – "ବାଜିବ ନାହିଁ ତ' କ'ଣ ବାପା ତାକୁ ତୁଚ୍ଛାରେ ଆଣିଛନ୍ତି ?" ସାନଝିଅ କୁନି ଏତେଟାମାନ ଆଖି କରି ଖାଲି ଅନେଇଥାଏ ସେ ଶଙ୍ଖଟିକୁ । ସମସ୍ତେ ତାକୁ ଟିପମାରି ଥରେ ଲେଖା ଛୁଇଁ ସାରିଥାଆନ୍ତି । ଭୋଳାନାଥବାବୁ ଥରେ ରନ୍ଧାଶାଳକୁ ଚାହିଁଲେ । ତା'ପରେ ଗୋଟିଏ ନିଃଶ୍ୱାସରେ ମୁହଁ ଉପରୁ ସବୁ ଅସହାୟତା ଓହ୍ଲେଇଗଲା । ସେ ଶଙ୍ଖର ମୁହଁ ଉପରେ ଦୁଇଥର ଟାଇଁ ଟାଇଁ ବାଡେଇଦେଇ ଉପରକୁ ଟେକିଲେ । ନାଚିଉଠିଲେ ଛବି ଆଉ କୁନି । ଭୋଳାନାଥବାବୁ କୁମ୍ଭକ କରି ଆଖି ବନ୍ଦ କରିଦେଲେ । ତାଙ୍କ ଗାଲ ଟୁମେଇଗଲା । ଶଙ୍ଖରୁ ଆଗ ଶୁଭିଲା ଚିପିଲା ପରି ଗୋଟିଏ ଶବ୍ଦ 'ପୁଁ' । ପିଲାଏ ହସିଉଠିଲେ ହୋ ହୋ ହୋଇ । ରନ୍ଧାଶାଳରୁ ଓହ୍ଲାଇ ଆସିଲେ ଶ୍ରୀମତୀ ଶିବାନୀ ଦାସ । ପତିଦେବଙ୍କୁ ଏବଂବିଧ ରୂପରେ ଦେଖି ଗାଲରେ ହାତ ଦେଇ ଆଉଜିପଡିଲେ ସେଇ ଦୁଆରବନ୍ଧକୁ । ସେତେବେଳକୁ ଶଙ୍ଖଧ୍ୱନି ଗୁମୁରି ଉଠିଲାଣି । ପିଲାଏ ହସ ବନ୍ଦକରି କାବାହୋଇ ବାପାଙ୍କ ମୁହଁକୁ ଚାହିଁଥାନ୍ତି । କପାଳର ଶିର ଟାଣି ହୋଇଯାଇଥାଏ । ବେକର ଶିର ଫୁଲିଉଠିଥାଏ । ମୁହଁ ରଙ୍ଗ ଜରଜର ହୋଇ ଫାଟିପଡିଥାଏ ଏବଂ ଘରସାରା, ସାଇପଡିଶା ସବୁ ଗୋଟାଏ ଗହଗହ ନାଦରେ କମ୍ପୁଥାଏ ।

ଭୋଳାନାଥବାବୁ ଧଳା ପାଇଜାମା ପଞ୍ଜାବି ପିନ୍ଧି ଖମ୍ବପରି ଠିଆ ହୋଇଥାନ୍ତି । ବେକରେ କାଳିଆ ମଫ୍‌ଲର୍‌ଟି ଗୁଡେଇ ହୋଇ ଓହଳିଥାଏ । ପବନ ସରିଆସିଲା ବେଳକୁ ଆଉ ଦୁଇ ତିନି ହାବୁକା ଜୋର୍‌ରେ ଦମ୍‌ନେଇ ଫୁଙ୍କିଦେଲେ ଏବଂ ଲଇଁପଡି ଶେଷ କଲେ ଶଙ୍ଖବାଦନ । ମୁହଁ

ଉପରୁ ରକ୍ତ ଓହ୍ଲେଇଗଲା । ଭୋଳାନାଥବାବୁ ନିଃଶବ୍ଦରେ ଗୋଟଏ ଦିଗ୍‌ବିଜୟୀ ହସ ହସି ପିଲାଙ୍କୁ ଚାହିଁଲେ ଏବଂ ସେମିତି ହସି ହସି ହାଣ୍ଡିଶାଳ ଆଡକୁ ଚାହିଁଦେଲେ । ହସଟି ତାଙ୍କ ମୁହଁରେ ଜଳଛବି ପରି ଲାଖିରହିଗଲା । ତାକୁ ଆଉ ଗୋଟିଏ ମୁହୂର୍ତ୍ତର ତଲବ ଦେଇ ଭୋଳାନାଥବାବୁ ବହିଷ୍କାର କରିପାରିଲେ ନାହିଁ । ଧର୍ମପତ୍ନୀ ଖେପିଆସିଲେ । ପିଲାଏ ଅନ୍ତର୍ଦ୍ଧାନ ହୋଇଗଲେ । ଭୋଳାନାଥବାବୁ ସେମିତି ଜଳଛବି ହସଟିକୁ ମୁହଁରେ ପିନ୍ଧି ଛବିବୋଉକୁ ଚାହିଁଥାନ୍ତି ।

"ଅଲାଜୁକ, ଥୋବଡା, ମାଇଗୁଲିଆ କ'ଣ ଗଛରେ ଫଳନ୍ତି ? କୋଉଠି ଥିଲ ଅକୀର୍ତ୍ତିପସରା ଗାଲମାଧବ ! ଛି ଛି ଛି...ତମେ ଏଇଲାଗେ ଏ ଶଙ୍ଖ ଫେରାଇ ମୋ ଟଙ୍କା ଧରି ଆସୁଛ ନା ମୁଁ ଏ ଘରେ ନିଆଁ ଲାଗେଇଦେବି ? ମାସ ଶେଷକୁ ଖାଇବାକୁ ପେଜ ନାହିଁ । କେତେ ଏମିତି ଦରମା ଆଣୁଛ କି ? ସେଥିରେ ତୁମର ଏତେ ବଡ କୁଟୁମ୍ବ ଚଳିବ, ପିଲାଏ ପାଠ ପଢିବେ । ଭାତ ସାଙ୍ଗକୁ ଲାଗୁଆଣି ମାଛ ତିନିତିଅଣ ଭଜା ବଢାହେବ; ଆଉ ଶେଷକୁ ଶଙ୍ଖ ଫୁଙ୍କିହେବ । ...ତମେ ବେଗି ଏଠୁ ୟାକୁ ନେଇ ଯାଉଛ ନା ଏମିତି ଅଲାଜୁକଙ୍କୁ ପରି ହସୁଥିବ ?"

ଭୋଳାନାଥବାବୁ ଥଙ୍ଗେଇଲା ପରି ଖୁବ୍ ଚିକ୍‌କଣ ନରମ ଖୋସାମତିଆ ଗଳାରେ କହିଲେ, "ମୁଁ କ'ଣ ନାଇଁ କରୁଛି ? ହେଲେ ସେ ବେପାରୀ ପୁରୀରୁ ଆସିଥିଲା – ସେ ଫେରିଯିବଣି ନା ?"

"କାଇଁ ଫେରିଯିବଣି ?...ଏଇଲାଗେ ତ ଆଣିଲ । ତୁମକୁ ଏଇ ଖଣ୍ଡ ବିକୁ ବିକୁ କ'ଣ ସେ ଏମିତି ପଳେଇଯିବ !"

ଭୋଳାନାଥବାବୁ ପୁଣି ଚାଟୁକାର ଭଙ୍ଗୀରେ କହିଲେ, "ସେ କଥା କ'ଣ କି...ମୁଁ ତ' ଏଠୁ ବାହାରିଲି ଚାରିଟା ବାଜି ପନ୍ଦର ମିନିଟ୍ ବେଳକୁ । ମାର୍କେଟ୍ ପାଖରେ ଏ ଲୋକ ବସିଥିଲା । କହିଲା, ହେ କପାଳିଆ ବାବୁ, ଭାଗ୍ୟବନ୍ତ ନହେଲେ ଏ ଜିନିଷ କାହାକୁ ମିଳେ । ଏ ଦକ୍ଷିଣାବର୍ତ୍ତ ଶଙ୍ଖ ଖଣ୍ଡକ ନେଇଯାଅ । ଦେଖିବ, ତୁମର କାଲିଠୁ କେମିତି ଭାଗ୍ୟ ଲେଉଟିପଡିବ ।"

"ଦକ୍ଷିଣାବର୍ତ୍ତ ନା ଚୂଲିବର୍ତ୍ତ – ସେ ରଇଜଳା ତ' ୟାକୁ ନେଇ ଭିକ ମାଗି ମରୁଛି; ତମେ ଭାଗିଅବନ୍ତ ତାକୁ ଗୋଟେଇ ଆଣିବନଇ ତ ଆଉ କିଏ ଆଣିବ ? ତମେ ଏବେ ସେତିକିବେଳୁ ଶଙ୍ଖ କିଣି କେଉଁଠି ଯାଇ ଗୁଜି ହୋଇଥିଲ ଶୁଣେ ? ଯାଇ ଯାଇ ତ' ସେଇ ଗୌରୀଶଙ୍କର – ତମର ଆଉ ଗତି କାହିଁ ? ସେ ଭଲା ତୁମରି ଭଳି ଏମିତି ବୋକାମି କେବେ କରିଛନ୍ତି ?"

"ସେ ପରା ଛାଞ୍ଚୁଣି କିଣିଯାଇଥିଲେ; କିନ୍ତୁ ଅଦିନିଆ କସି ଆମ୍ବ ବାଟରେ ପାଇ ଟଙ୍କାରେ ପାଞ୍ଚଟି ନେଇ ଆସିବାରୁ ତାଙ୍କ ଘରେ କଳି ଲାଗିଯାଇଥିଲା – ମୁଁ ଯାଇ ସମାଧାନ କଲି ।"

ଶିବାନୀ ବୋଧହୁଏ ହସିପକେଇଲେ, କିନ୍ତୁ ତା' ସାଙ୍ଗରେ ମିଳେଇ ପୁଣି ରାଗିଗଲେ – "ନହେଲେ କି ସେ ଏତେ ଲୋକ ଭିତରୁ ତମକୁ ବାଛିଥାନ୍ତେ ?...ତମେ ଆଗ ଯିବଟି–ୟାକୁ ଫେରେଇବ । ଏଟା ଦେଖିଲେ ମୋ ହାଡରେ ନିଆଁ ଲାଗିଯାଉଛି ।" ଟଳୁ ମୁଣାଟାକୁ ଗୋଟେଇ ସେ ସ୍ୱାମୀଙ୍କ ହାତରୁ ଶଙ୍ଖଟାକୁ ଛଡେଇନେଲେ । ମୁଣାରେ ଭୁସ୍‌କିନା ତାକୁ ପୂରେଇଦେଇ ଟେକି ଧଇଲେ ଭୋଳାନାଥବାବୁଙ୍କ ନାକସଳଖା – "ଧର ଏ ସମ୍ପତ୍ତି, ଚଞ୍ଚଳ ୟାକୁ ଫେରେଇ ମୋ

ଟଙ୍କା ଆଣ । ନହେଲେ, ହଁ କହିଦେଉଛି, କାନିରେ ଗଣ୍ଠି ପକେଇଲି, ଯଦି ଆଜି ବଉଁଶଯାକ ଓପାସେ ନଶୋଇଛ ମୁଁ ବାସୁଆ ତିଆରି ଝିଅ ନୁହେଁ – ହାଡି ଝିଅ ।"

ଭୋଳାନାଥବାବୁ ଝୋଲାଟି ଧରି ଦାଣ୍ଡପିଣ୍ଡାଆଡେ ନିଃଶବ୍ଦରେ ମୁହେଁଇଲେ । ସେତେବେଳକୁ ବେଶ୍ ଅନ୍ଧାର ହୋଇଗଲାଣି । ରାସ୍ତା ଉପରେ ତାଙ୍କ ଚପଲ ଶବ୍ଦ ଶୁଣି ସେ ଜାଣିଲେ ଯେ କିଛି ଗୋଟାଏ କରିବାକୁ ହେବ ଏବଂ ସେ ସେଇଥିପାଇଁ ବାହାରିଛନ୍ତି ।...ସେ ...ଶଃ...ଗେଣ୍ଡା ବେପାରୀ ତ' ନିଶ୍ଚୟ ପଳେଇବଣି । ଆଚ୍ଛା, ଭୋଳାନାଥ ଦାସ, ତୋର ପରା ଆସି ବାଳ ପାଚିଲାଣି – ପରିବା କିଣିଯିବା ବାଟରେ ତୁ କେମିତି ସାତ ଟଙ୍କା ଦେଇ ଗୋଟାଏ ଶଙ୍ଖ କିଣିଲୁ ? ସେ କ'ଣ ଦିପଦ ସାକୁଲେଇ କହିଦେଲା ବୋଲି ତୁ ତା' ଫାନ୍ଦରେ ପଡିଗଲୁ ? ହଁ, ଏଇଟା ଯଦି ସତକୁ ସତ ଦକ୍ଷିଣାବର୍ତ୍ତ ଶଙ୍ଖ, ପାଖରେ ରଖିଲେ ଯଦି ସତକୁ ସତ ଧନଜନ ଗୋପଲକ୍ଷ୍ମୀ ଫାଟିଫୁଟିଯିବେ; ସେ ବେପାରୀ ତାକୁ ନିଜେ ନ ରଖି କାହିଁକି ବିକିବା ପାଇଁ ମାର୍କେଟ ପାଖ ଫୁଟ୍‌ପାଥରେ ସେମିତି ହିନିମାନିଆ ହୋଇ ବସିଥିଲା ? ବେକୁବ୍ !!

ନିଜ ଉପରେ ବେଳେ ବେଳେ ଭୋଳାନାଥବାବୁ ଏମିତି ଟିକିଏ ବିରକ୍ତ ହୋଇଯାଆନ୍ତି । ଭଳେଇ ଛଳେଇ ସାକୁଲେଇ ତାଙ୍କୁ ପଟିମାରିଦେବା ଯେମିତି ଅନ୍ୟମାନଙ୍କର ଗୋଟାଏ ଅଭ୍ୟାସ ହୋଇଗଲାଣି । ଠକି ହୋଇଗଲା ପରେ ଭୋଳାନାଥ ବାବୁଙ୍କର ଚେତା ପଶେ, ସେତେବେଳକୁ କଥା ଆଉ ଆୟତ୍ତରେ ନଥାଏ । ...ଖୁବ୍ ପିଲାଦିନେ – ସେ ଦି'ପହରେ ଯାଉଛନ୍ତି ଟିଉସନ୍‌କୁ । ହଠାତ୍ ବାଟରେ ଗୋଟାଏ ଲୋକ ଆସି ତାଙ୍କୁ କହିଲା – ତୁମ ମା' କହିଛନ୍ତି ଏ ରୂପା ଖଡୁ ଦେଇଦିଅ; ତମ ପାଇଁ ବଡ ଖଡୁ ତିଆରି କରିଦେବେ । ...ବଡ ଖଡୁର ସପ୍ନରେ ସେ ହାତ ବଢେଇ ଦେଇଥିଲେ । ଲୋକଟିର ଅତି ଆପଣାର କଥା ଶୁଣି ଭୁଲିଯାଇଥିଲେ । କଟକ ଷ୍ଟେସନରେ ସେଦିନ ଲୋକଟି କେତେ ବାହାନାରେ ତା' ଟିକଟ ଖଣ୍ଡି ଖୋଡିଲା । କାନ୍ଦ କାନ୍ଦ ହୋଇ ଭୋଳାନାଥ ବାବୁଙ୍କୁ କହିଲା – ସେ କେମିତି ସଚ୍ଚୋଟ ଆଭିଜାତ ଘରର ପିଲା । ବିନା ଟିକଟରେ ଧରାପଡିଲେ ତା'ର କେତେ ବେଇଜତ୍ ହେବ । ଭୋଳାନାଥବାବୁ ଟିକିଏ ଅପେକ୍ଷା କଲେ, ସେ ତାଙ୍କ ଟିକଟ ନେଇ ବାହାରୁ ଖଣ୍ଡେ ପ୍ଲାଟ୍‌ଫର୍ମ ଟିକଟ୍ ଧରି ଚାଲିଆସିବ । ଭଦ୍ରଲୋକ ବିଚରା ! ତାକୁ ସାହାଯ୍ୟ କରିବାକୁ ଭୋଳାନାଥ ଟିକଟ ଖଣ୍ଡିକ ତା' ହାତକୁ ବଢାଇଦେଲେ । ତେଣିକି ଯାହା ହଟହଟା, କହିଲେ ନସରେ । ସିନେମା ପାଇଁ ସେଦିନ ସେ ସବା ଆଗରେ ଠିଆହୋଇଥାନ୍ତି, ଖିଡିକି ଫିଟିଲେ ପ୍ରଥମେ ସେ ଟିକଟ ଆଣିବେ । ଜଣେ ଅତି ଉତ୍ତମ ଲୋକ, ଖୁବ୍ ଲମ୍ବା ଚଉଡା ଗୋରା ତକ୍‌ତକ୍, ଅଳ୍ପ ହସି ହସି କେତେ ସାକୁଲେଇ ହୋଇ ତାଙ୍କୁ ଇଂରେଜୀରେ ଅନୁରୋଧ କଲେ ତାଙ୍କ ପାଇଁ ସାତଖଣ୍ଡ ଟିକଟ ଆବଶ୍ୟକ । ପଛ ଲୋକଙ୍କ ପାଟି ନଶୁଣି ଭୋଳାନାଥବାବୁ ଫାଷ୍ଟକ୍ଲାସ୍‌ର ସାତଖଣ୍ଡ ଟିକଟ କାଟିନେଲେ । ତା'ପରେ ତାଙ୍କ ନିଜ ସକାଶେ ପାଞ୍ଚଖଣ୍ଡ ପାଇଁ ପଇସା ବଢାଇଲାବେଳକୁ ଭିତରୁ ସେ ଖିଙ୍କାରିହେଲା – ଏଠି ମଉସା କ'ଣ ବେପାର ଧନ୍ଦା ଚଳେଇଛ କି ? ଆଉ ମିଳିବନାହିଁ । ଘୁଞ୍ଚିଯାଅ । ପଛରୁ ଶୁଭିଲା – ଘୁଞ୍ଚିଯାଅ, ହଟିଯାଅ, ନିକଲ୍

ଯାଅ । ଜଣେ ବୋଧହୁଏ ଧକ୍‌କାଏ ପକେଇଲା । କାନ୍ଦୁଣୁ-ମାନ୍ଦୁଣୁ ହୋଇ ସେ ବୁଲି ଚାହିଁଲାବେଳକୁ ସେଇ ଗୋରା ସୁନ୍ଦର ମଣିଷଟିକି ଗାଡିରେ ବସି ଘାଇଁକିନା ଚାଲିଗଲା; ଚିହ୍ନିଲା ସୁଦ୍ଧା ନାହିଁ । ଘରେ ଆସି ଯାହା ସେଦିନ ଶୁଣିବାକୁ ହେଲା ଟାଙ୍କୁ – ଆଉ ମନେପକାଇ ଲାଭ ନାହିଁ ।

ଭୋଳାନାଥବାବୁ ଏମିତି ଏମିତି ଜୀବନ ବିତେଇଛନ୍ତି । ପରୀକ୍ଷାରେ ଅନ୍ୟ ଜଣକୁ ସାହାଯ୍ୟ କରି ନିଜେ ଦଣ୍ଡ ପାଇଛନ୍ତି । ଗାଁରେ ପଡିଶାଘର ବୋହୂ ତା' କରାଟ କୂଅରେ ପକେଇଦେଲା । ଟାଙ୍କ ଘରେ କାନ୍ଦବୋବାଳି ଶୁଣି ଭୋଳାନାଥ ସେଇଠି ଯାଇ ପହଞ୍ଚିଲେ । ସେ ଘର ମାଉସୀ ଟାଙ୍କ ଓଠ ଟେକି ଦେଇ କହିଲେ – ତୁ କ'ଣ ଚାହିଁଲେ କାଢି ଆଣିପାରନ୍ତୁ ନାହିଁ ? ମାଉସୀର ଭେଣିଆ ପୁଅମାନେ ସେମିତି ଚାହିଁ ଠିଆହୋଇଥାନ୍ତି । ଭୋଳାନାଥ କୂଅ ଭିତରକୁ ଓହ୍ଲେଇପଡିଲେ । କଳା ଝିମ୍ ଝିମ୍ ଦୁଇପୁରୁଷ ପାଣି । ସବାତଳେ ଅଣ୍ଟାଏ କାଦୁଅ । କାକର ଯେ ଦେହ କାଲ ମାରିଯିବ । ସେଇଠି ପାଣିକୁଆ ପରି ଦଶ କୋଡିଏ ଥର ବୁଡି ଦେହ କନ୍ଦା ହୋଇଗଲା । ସେ ଭିତରୁ ମୁଠା ମୁଠା କାଦୁଅ ଚିମୁଟି କିଛି ପାଇଲେ ନାହିଁ । ଉଠିଆସି ଘରେ ପହଞ୍ଚି ଗାଳି ଶୁଣିଲେ କାହିଁରେ କ'ଣ । ଶୁଣିଲେ, ଆଠଣିଆ ପିତଳ କରାଟରେ ତିରିଶି ପଇସା ସେ ହାଣ୍ଡିଖାଇ ଲୁଚେଇ ରଖିଥିଲା । ସେଥିପାଇଁ ଟାଙ୍କ ଘରେ ଓଳିଏ ଚୁଟି ଧରାଧରି ହେଲେ । ଭୋଳାନାଥ ପନ୍ଦର ଦିନ ଜର ଭୋଗିଲେ । ଓଲା ଭଗିଆ ଭକୁଆ ମଣିଷଟିକୁ ସମସ୍ତେ ସବୁବେଳେ ବ୍ୟବହାର କରି ନେଇଛନ୍ତି । ଏକାସାଙ୍ଗରେ ସେ ଆଉ ଗୌରୀଶଙ୍କର ଚାକିରି କାଗଜ ପାଇଲେ । ସେଦିନ ଗୌରୀଶଙ୍କରଙ୍କର ଦେହ ବ୍ୟସ୍ତ । ସେ ତିନିଦିନ ପରେ ଯିବା କଥା । ଭୋଳାନାଥ ଭାବିଲେ – ବନ୍ଧୁଟାକୁ ଛାଡି ଚାଲିଗଲେ କ'ଣ ଅଧିକ ହୋଇଯିବ ? ଏଣୁ ରହିଗଲେ । ଗୌରୀଶଙ୍କର କୃତ୍ୟାକୃତ୍ୟ । ଦିଜଣଯାକ ସାଙ୍ଗ ହୋଇ ଗଲେ । ହୋଟେଲରେ ଭୋଳାନାଥ କହିଲେ, ତୁମେ ଆଗ ଅଫିସକୁ ଯାଇ ଅପେକ୍ଷା କରିଥାଅ । ମୁଁ ଟାଟିକବାଟ ଦେଇ ଆସୁଛି । ଫଳ ହେଲା, ଗୌରୀଶଙ୍କର ଏଗାରଟା ପଞ୍ଚାବନରେ ଜଏନିଂ ରିପୋର୍ଟ କରିଦେଲେ ଏବଂ ଭୋଳାନାଥ ବାରଟା ପାଞ୍ଚମିନିଟ୍‌ରେ ଜଏନ୍ କରି ଟାଙ୍କଠାରୁ ଓଳିଏ ପଛେଇଗଲେ ସବୁଦିନ ପାଇଁ । ଫଳ ହେଲା ଗୌରୀଶଙ୍କର ସରକାରୀ ଘରେ ରହିଲେ ଏବଂ ଭୋଳାନାଥ ଅପେକ୍ଷା କଲେ ଅନିର୍ଦ୍ଦିଷ୍ଟ କାଳ ପାଇଁ ।

ଭୋଳାନାଥବାବୁ ଦକ୍ଷିଣାବର୍ତ୍ତ ଶଙ୍ଖଟିକୁ ବଜାର ଝୋଲା ଭିତରେ ଧରି ବଟିଖୁଣ୍ଟରୁ ବଟିଖୁଣ୍ଟ ପର୍ଯ୍ୟନ୍ତ ଚାଲିଥାନ୍ତି ଅନ୍ୟମନସ୍କ ଭାବେ । ସେ ବାଟେ ଖଣ୍ଡେ ଦୁଇଖଣ୍ଡ ଗାଡି, ଗୋଟାଏ ଟ୍ରକ୍ ପାରି ହୋଇ ଚାଲିଗଲେ । କୌଣସି ନିର୍ଦ୍ଦିଷ୍ଟ ଯୋଜନା ଅନୁସାରେ ସେ କେବେହେଲେ କିଛି କରିପାରି ନାହାନ୍ତି । କଥାକୁ କଥା ଭଳି ପରିବା ମିଶେଇ ପାରି ନାହାନ୍ତି । ହେଇ, ତା' ପୂର୍ବଦିନ ମଞ୍ଜା, କୁଜିସାରୁ ଏବଂ ଗୋବର୍ଦ୍ଧନ ଝଟା କିଣି ଫେରିଲା ବେଳକୁ ଟଟକା ଓଉ ଯୋଡାଏ ନେଇ ଯାଇଥିଲେ । ସେଥିରେ ଯୋଉ ଗାଳି ! ! କ'ଣ ବିଗିଡିଯାଏ ସେ ବୁଝି ମଧ ପାରନ୍ତି ନାହିଁ । ସବୁବେଳେ ଶିବାନୀ ଟାଙ୍କୁ ତାଲିକା ଦିଅନ୍ତି ଏବଂ ସବୁବେଳେ ସେ ଟାକୁ ଭୁଲି ଆଉ ବାଗେ ଜିନିଷ ନେଇଯାଆନ୍ତି । ସେଦିନ ସାଇକେଲ୍ ନେଇ ଚଞ୍ଚଳ ରଙ୍ଗ ପିଆଜ କିଛି ଆଣିବା କଥା । ଅଧଘଣ୍ଟାଏ ଭିତରେ ଆର

ସାଇ ଇଂଜିନିୟର୍ ବାବୁ ଘର ବୁଲିଆସିବେ । ପିଆଜି ଛଣା ହେବ । ଆଳୁ କଟା ସରିଛି । ବଜାରରେ ପହଞ୍ଚି ଭୋଳାନାଥବାବୁ ଆଉ ଆଦୌ ମନେପକାଇପାରିଲେ ନାହିଁ । ବହୁ ଚିନ୍ତା କରି, ତୁଚ୍ଛା ହାତରେ ଫେରିଯିବା ଅପେକ୍ଷା ତିନୋଟି କାଗଜିଲେମ୍ବୁ ନେଇ ସେ ବାହୁଡ଼ିଲେ । ଘରେ କୁଣିଆ ପହଞ୍ଚିସାରିଥାନ୍ତି । କାଗଜି ସର୍ବତ୍‌ରେ କାମ ବଢ଼ିଗଲା – ବାକି ମହାଭାରତର ସତର ପର୍ବ ପାଇଁ ତିନିଦିନ ଲାଗିଥିଲା ।

ସେ ଶଙ୍ଖ-ବେପାରୀ ନିଶ୍ଚୟ ଫେରିସାରିବଣି । ସେ କ'ଣ ଏତେବେଳଯାଏଁ ସେଇଠି ବସିଥବ ? ଭୋଳାନାଥବାବୁ ପୁଣି ମୁହେଁଇଲେ ଗୌରୀଶଙ୍କର ବାବୁଙ୍କ ଘରଆଡେ । ତାଙ୍କ ଦାଣ୍ଡଦୁଆର ପାଖରେ ପହଞ୍ଚିଛନ୍ତି ନା ନାହିଁ, ତାଙ୍କ ବନ୍ଧୁଙ୍କ ରଡି ଶୁଣି ରହିଗଲେ । ଯାହା କହ ଗୌରୀଶଙ୍କରର ମୁହଁ ଜୋର୍ ଅଛି । ସେ ଯାହାକୁ ହେଲେ ପାଟିକରି ଝାଡିଦେଇପାରେ । ବନ୍ଧୁ ପ୍ରତି ଭୟ ଭକ୍ତି ସମ୍ମାନରେ ଭୋଳାନାଥବାବୁ କୁରୁଳିଉଠିଲେ । ଏଇ ବନ୍ଧୁ ଯଦି ଚାହେଁ ଶଙ୍ଖଟାକୁ ଘରେ ରଖେଇ ଟଙ୍କା ସାତଟି ଅନ୍ତତଃ କିସ୍ତିକ୍ରମେ ମଞ୍ଜୁର କରେଇନେଇପାରେ ।

ଦାଣ୍ଡପିଣ୍ଡାରେ ଠିଆ ହୋଇ ଭୋଳାନାଥବାବୁ କାନେଇଲେ । ଗୌରୀଶଙ୍କର କହୁଛନ୍ତି, "ଏଇଟା ଯଦି ଖାଣ୍ଟି ବନାରସୀ ନୁହେଁ ବୋଲି କିଏ ପ୍ରମାଣ କରିଦେଲା ତେବେ ମୁଁ ତା' ପାଖେ ବର୍ଷେ ଗୋଲାମୀ ଖଟିବି । କ'ଣ ନା, ଏଇଟା ନକଲି ! ଟଙ୍କା ଦେଢଶରେ ମିଳିଗଲା ବୋଲି ଯାଚିଲା ସୁନା ଭେଣ୍ଡି ?"

"ହଉ ସେଇଟା ବନାରସୀ – ମୁଁ ତାକୁ ରଖିବି ନାହିଁ । ମୋର ପଇସା ନାହିଁ । ନଉ ଯିଏ ନେବା କଥା ।" ବନ୍ଧୁ-ପତ୍ନୀଙ୍କର ଏ ସ୍ୱର ଭୋଳାନାଥବାବୁ ଶୁଣି ନଥିଲେ । ମନେ ମନେ ଉଲୁସି ଉଠିଲେ – ଯାହାହେଉ, ବଡକୁହା ଗୌରୀ ମଧ ପାଇଛି ଚେଙ୍କେ ଲେଖାଁ । ବାଃ..."କଣ ସାଙ୍ଗ, କ'ଣ ଚାଲିଛି !" ବଡପାଟିରେ ଡାକିଲେ, ଭୋଳାନାଥବାବୁ । ଛପକିନା ସବୁ ଥମିଗଲା – ଚୋରେଇ ଖାଉଥିଲା ବେଳେ ଧରାପଡିଗଲେ ତରବର ମୁହଁ ପୋଛି ବାହାରିଆସିଲା ପରି ଗୌରୀଶଙ୍କର ପଦାକୁ ଆସି ଠିଆହେଲେ । ଫାଳକରେ ଫଣ ଫଣ ରାଗ ଓହ୍ଲେଇ ନଥାଏ; ଆଉ ଫାଳକରେ ବନ୍ଧୁଙ୍କୁ ଦେଖି ସ୍ୱାଗତ କରିବାର ସ୍ମିତ ଟିକକ ଆସିବ ବୋଲି ଆସିପାରୁ ନଥାଏ । ଏ ପ୍ରକାର ତିଳ-ତଣ୍ଡୁଳିତ ମୁହଁଟି ତାଙ୍କର ବଡ ଦୟନୀୟ ।

"କଣ ହେଲା କି ପୁଣି; ଫେରିଆସିଲେ ଯେ ?"

"ସେ କଥା ପଛେ କହିବି – ଆଗ ଏଠି କାହିଁକି ଗୋଳ ଶୁଭୁଥିଲା ଶୁଣେ ?" ବନ୍ଧୁର ଅଧିକାରେ ଅଳ୍ପ ହସି ଭୋଳାନାଥବାବୁ ଏତକ ପଚାରିଦେଲେ । କ'ଣ ହୁବ ପାଇଲେ କେଜାଣି, ଗୌରୀଶଙ୍କର ବାବୁ ତାଙ୍କ ହାତଟାକୁ ଖପାଙ୍ଗ୍ କିନା ଧରି ଟାଣି ନେଇଗଲେ ବୈଠକଘରକୁ । ସେଇଠି ଗୋଟାଏ ସୋଫା ଉପରେ ବସେଇଦେଇ ଭିତରକୁ ଝପଟିଯାଇ ଗୋଟାଏ ଶାଢୀ ଆଣି ଭୋଳାନାଥଙ୍କ ଉପରକୁ ପକେଇଦେଲେ ।

"ଆଚ୍ଛା, ତୁମେ ତ' ଏତେ ଅଭିଜ୍ଞତାର ଲୋକ – କହିଲ, ଏଇଟା ଖାଣ୍ଟି ବନାରସୀ ନା

ନକଲି ?" ଭୋଳାନାଥ ବାବୁଙ୍କ ଆଖି ଝଲସିଗଲା । ପାତଳ ସିଲକ୍ ଉପରେ ସେଇ ସୂତାରେ ଏଠିସେଠି ତରଳ ଡିଜାଇନ୍ ଅତି ଚମତ୍କାର । ମୁଲାଏମ୍ ଯେମିତି ଚିକ୍କଣ ସେମିତି । ଆସ୍ତେ ତାକୁ ଏଠିସେଠି ଟିକିଏ ମୁଠେଇନେଲେ ଭୋଳାନାଥବାବୁ । "ଏଇଟା ଖାଣ୍ଟି ସିଲ୍କ, ଏଥିରେ ସନ୍ଦେହ ନାହିଁ ।"

"ଶୁଣିଲ ଶୁଣିଲ, ଭୋଳାନାଥବାବୁ କ'ଣ ମିଛ କହୁଛନ୍ତି ? ତମ ଭାଗ୍ୟରେ ନାହିଁ କୁଆଡୁ ପାଇବ ? ନହେଲା ନାହିଁ । ସେ କଲିକତା ଚାଲି ଯାଇ ନଥିଲେ ମୁଁ ଏଇନା ପଇସା ଫେରସ୍ତ ନେଇ ଆସିଥାଆନ୍ତି । ନହେଲା, କାଲି ଏବେ ଅଫିସ୍ ନେଇଗଲେ ଲୋକେ ୟାକୁ ଝାମ୍ପି ନେବେ ।"

"ହଉ, ଯେ ନେବା କଥା ନଉ, ମୋର ସେ ଜିନିଷ ଦର୍କାର ନାହିଁ ।" ଚୂଡାନ୍ତ ନିଷ୍ପତ୍ତି ନ ନେଇଥିଲେ ଏବଂ ଚୂଡାନ୍ତ ରାଗି ନଥିଲେ ବନ୍ଧୁ-ପତ୍ନୀ ତାଙ୍କୁ ଶୁଭିଲା ଭଳି ଏତେପାଟିରେ କଥା କହି ନ ଥାନ୍ତେ । "ଆଚ୍ଛା, କେତେ ହେଇଥିବ ୟା ଦାମ୍ କହିଲ – ମାନେ କେତେ ଦାମ୍‌ରେ ପାଇଲେ ଜଣେ ଖୁସିରେ ଏଖଣ୍ଡ ଘରକୁ ନେଇଯିବ ?" ଭୋଳାନାଥବାବୁ ଲୁଗାଟିକୁ ଟିକିଏ ଫିଟେଇ ଦେଖିନେଲେ । ପୁଣି ତାକୁ ମୁଠା ମୁଠା କରି ଭାରି ନରମ ଗଳାରେ କହିଲେ, "ଟଙ୍କା ତିନି'ଶକୁ ଏ କନ୍ୟାଦାନ ପରି ହେବ ।"

"ବାଆସ୍ – ଠିକ୍ ଅଛି, ମୁଁ ତୁମକୁ ଏଖଣ୍ଡ ଦେଇଦେଲି । ତୁମେ ଦରମା ପାଇଲେ ବରଂ ମୋତେ ପଇସା ଦେଇଦେବ । ଆଉ କାହାକୁ ଦେବାର କାରଣ କିଛି ନାହିଁ । ତୁମକୁ କହୁଥିଲି ନା ମୁଁ ଗୋଟାଏ ବଢିଆ ଜିନିଷ ପାଇଛି ବୋଲି – ତୁମେ ଆଉ ଯେତେ ପଚାରିଲେ ସୁଦ୍ଧା କଥାଟା ଫିଟାଇ କହୁ ନ ଥିଲି – ସେଇଟା ଏ ବନାରସୀ ଖଣ୍ଡକ ।"

ଭୋଳାନାଥ ବାବୁ ଭାବିଲେ ନିଶ୍ଚୟ ତିନିଶ ହୁଅନ୍ତା । ଯଦି ଦେଢଶ ଟଙ୍କାରେ ମିଳିଛି ତ ଆଉ କିଛି କହିବାର ନାହିଁ । ଭାଗ୍ୟରେ ଥିଲେ ଏମିତି ମିଳେ । ତା'ପରେ ହଠାତ୍ ତାଙ୍କ ହାତ ସେ ଶଙ୍ଖ ଉପରେ ବାଜିଗଲା । ସେ ପ୍ରାୟ ଚମକିପଡିଲେ । ଇସ୍, ଏଇ ତ ସୌଭାଗ୍ୟ ଆରମ୍ଭ ହୋଇଗଲା ।

ସେ ପ୍ରାୟ ଛନ୍ ଛନ୍ ହୋଇ ସିଲ୍କ ଖଣ୍ଡକ ଟାଉ ଟାଉ ଗୋଟାଇପକାଇ ଠିଆ ହୋଇଗଲେ ଏବଂ ଝୋଲା ଖଣ୍ଡ ଧରି ଦୁଆରଆଡେ ଆଗେଇଲେ । ପଛରୁ ଗୌରୀଶଙ୍କର ବାବୁ କହୁଥାନ୍ତି – "ସବୁ ଭାଗ୍ୟ – ସବୁ ଯୋଗ – ଯାହାର ଜିନିଷ ସେ ହେଇ ଆସି ନେଇଗଲା । ଗଲା ଜଞ୍ଜାଳ । କାହିଁକି ଏ ହାରାମି ଘରେ ତୁଚ୍ଛାକୁ କଟକଟ ଲାଗିଥିବ" – ଇତ୍ୟାଦି ।

ଭୋଳାନାଥ ବାବୁ ଅଧେ ଶୁଣି ଅଧେ ନଶୁଣି ଆଗେଇଗଲେ । ଥରଟେ କେବଳ ବୁଲିପଡି ପଚାରିଲେ, "ଆଚ୍ଛା ଦରମା ପାଇଲେ ମୁଁ ସାଙ୍ଗେ ସାଙ୍ଗେ ଦେଇଦେବି । କେତେ ଦେବି କି ?" ଗୌରୀଶଙ୍କର ବାବୁ ଗୋଟାଏ ମୁହୂର୍ତ୍ତ ରହିଗଲେ ନା, କଣ, ତା'ପରେ ଅଳ୍ପ ଚାପାଗଳାରେ କହିଲେ – "ଦୁଇଶହ ।"

"ଉଁ ? ? ଆଚ୍ଛା ! ଆଚ୍ଛା !" କହି ଭୋଳାନାଥ ବାବୁ ରାସ୍ତାକୁ ଉଠିଲେ । କଳା ଛାଇଟିଏ

ତାଙ୍କ ପଛରେ ଗୋଡେଇଯାଉଥାଏ । ଦେଢଶ ପରା ? ମୋତେ କେମିତି ଦୁଇଶ କହିଲେ ?...ଏଁ...ସେମିତି ଶୁଭିଥିବ !...ନା...ନା...ଗୌରୀଶଙ୍କରଟା ବଢିଆ ଲୋକ...ମୋ ବନ୍ଧୁ...ସେ ନ ହେଲେ ସ୍ତ୍ରୀ ପାଖରେ ଭଲେଇ ହେବାପାଇଁ ମିଛରେ ଦେଢଶ କହିଥିବ ବେଶୀ ଶସ୍ତାରେ ଆଣିଚି ବୋଲି । ହେଁ ହେଁ ହୋଇ ହସିଉଠିଲେ ଭୋଳାନାଥବାବୁ ।

ଘରେ ପହଞ୍ଚିଲାବେଳକୁ ପିଲାଏ ପାଠପଢା ଛାଡି ଖୁସ୍‌ଖାସ୍ ହେଲେଣି ଖାଇବାକୁ । ଭୋଳାନାଥବାବୁ ଦାଣ୍ଡଘରେ ଝୋଲାଟିକି ଆସ୍ତେ ଥୋଇଦେଇ ସିଧା ଚାଲିଗଲେ, ରନ୍ଧାଶାଳ ଆଡେ...ସ୍ତ୍ରୀଙ୍କ ଆଗରେ ସେ ଶାଢୀ ଖଣ୍ଡ ଧରି କହିଲେ, "କେମିତି ହେଇଛି ?"

ଶିବାନୀ ସବୁବେଳେ ଶାଢୀ ରଙ୍କୁଣୀ । ହାତରେ ଧରିବା ମାତ୍ରେ ତାଙ୍କ ମୁହଁରୁ ସବୁ ମେଘ ଓହ୍ଲେଇଗଲ । ଫିଟେଇଦେଲାରୁ ଆଖିଯୋଡିକ ଦାଉ ଦାଉ ଜଳିଉଠିଲେ – ମଧ ଆକାଶର ତାରା ପରି ମୁହଁରେ ପଦ୍ମପାଖୁଡା ମୁକୁଳିଗଲା । ସେ ଖପ୍‌କିନା ମୁହଁରେ ଶାଢୀଖଣ୍ଡ ମଡେଇଦେଲେ ମୁହୂର୍ତ୍ତେ ପାଇଁ, ତା'ପରେ ଆଖି ଟୋକି ଚାହିଁଲେ ଭୋଳାନାଥବାବୁଙ୍କୁ ।

ଭୋଳାନାଥ ବାବୁ ପ୍ରାୟ କୋଡିଏ ବର୍ଷ ପରେ ଜୀବନ ସାର୍ଥକ ହେଲାପରି ଅନୁଭବ କଲେ । କୋଡିଏ ବର୍ଷ ପରେ ହଠାତ୍ 'ରୁନି'କୁ ମନେପକାଇ ଲାଜେଇଗଲେ । ରୁନି ପରମା ସୁନ୍ଦରୀ । 'ରୁନି' ତାଙ୍କ ଶାଳୀ । ତାକୁ ଦେଖାଇଦେଇ ଭୋଳାନାଥବାବୁଙ୍କୁ ଶିବାନୀଙ୍କ ସଙ୍ଗେ ବିବାହ କରିଦିଆଯାଇଥିଲା । ସେ କିଛି କହି ନ ଥିଲେ । ସମସ୍ତେ ସେଥିପାଇଁ ତାଙ୍କୁ ପ୍ରଶଂସା ଅଜାଡି ଦେଇଥିଲେ । କେତେ ଭଲ ଲୋକଟିଏ ସତେ ଭୋଳାନାଥବାବୁ !

ହଠାତ୍ ଦାଣ୍ଡଘରୁ ଶଙ୍ଖ ବାଜିଉଠିଲା । ଅମର ଦମ୍ ଲଗେଇ ପିର୍ ପିର୍ କରି ଫୁଙ୍କୁଥାଏ । ଶଙ୍ଖ ଡାକୁଥାଏ କୁନ୍ଥେଇ କୁନ୍ଥେଇ । ଶିବାନୀ କଲ୍ୟାଣୀ ରୂପରେ ଠିଆହୋଇ ଗାଲରେ ବେକରେ ସିଲ୍‌କିଶାଢୀଟିକୁ ଅନୁଭବ କରୁଥାନ୍ତି ।

ଅମର ଫୁଙ୍କି ଫୁଙ୍କି ପଶି ଆସିଲା, ତା' ପଛକୁ ଛବି ଆଉ କୁନି । ଭୋଳାନାଥ ବାବୁ ମୁରବି ଢଙ୍ଗରେ କହିଲେ, "ବାଢ ବାଢ, ଭୋକ କଲାଣି, ଖାଇବା ।"



## ନିରାପତ୍ତା

(୧)

ଏଣିକି ଦିନକୁଦିନ ଭୋଳାନାଥବାବୁଙ୍କ ଉପରୁ ଆସ୍ଥା ହରାଇ ଶିବାନୀ ଦାସ ଏବଂ ପିଲାମାନେ ଗୋଟାଏ ଆପତ୍‌କାଳୀନ ପରିସ୍ଥିତି ଜାରିକରିଛନ୍ତି । ଚର୍ବି ଲାଗିଆସୁଥିବା ଗୋଟିଏ ଖାସି ତଳବସ୍ତିଆଡେ ପଶିଗଲେ ଯେମିତି ଅନବରତ ଦୁଷ୍ଚିନ୍ତାରେ ହାକୁ ହାକୁ ହେବାକୁ ହୁଏ, ଭୋଳାନାଥ ରାସ୍ତାକୁ ଓହ୍ଲେଇଗଲେ ସେଇଭଳି ଭାବନାରେ – ତାଙ୍କ ପରିବାର ପୀଡିତ ହେବାର ଦେଖାଯାଉଛି । ଠାପୁଆ, ଠାଉକିଆ, ବାହାପିଆ, ପକେଟମାର, ଚୋର, ଖଣ୍ଟ, ଠକ, ନେତା, ଉପନେତା, ସ୍ୱେଚ୍ଛାସେବୀ, ଘଣ୍ଟାଆ, ଶଙ୍ଖୁଆ, ମନ୍ଦାରମାଳିଆ, କୀର୍ତ୍ତନିଆ, କୋଡ଼ି କେତେବେଳେ କୁକୁଡାଛୁଆକୁ ଚିଲ ଝାମ୍ପିଲାପରି ତାଙ୍କୁ ଝାମ୍ପିନେବେ, କହିହେବନାହିଁ । ମୁଣାରେ କିଛି ଟଙ୍କା ଏବଂ ବଜାରଝୋଲା ଧରି ଗଲାବେଳେ ବିପଦର ମାତ୍ରା ସବୁଠାରୁ ଅଧିକ । ସେଦିନ ସକାଳେ ପଡିଶାଘର ମୁଖାର୍ଜି ବାବୁ ଦାମ୍ ନଜାଣି ଦୋକାନରୁ ତାଙ୍କ 'ସାଢୁ' ସାଙ୍ଗରେ କିଛି ଜଳଖିଆ ଖାଇସାରିବା ପରେ ପଇସା ଦେଇପାରିଲେ ନାହିଁ ଏବଂ ତାଙ୍କର କଲର୍ ଧରି ଦୋକାନୀ ସାହୁ ତାଙ୍କ ଥୋଣି ସହିତ ଦୁର୍ବ୍ୟବହାର କରିବାକୁ ହାତ ଉଞ୍ଚେଇଥିଲା । ଭୋଳାନାଥବାବୁ ସେଇଠି ଆବିର୍ଭୂତ ହୋଇ ତାଙ୍କର ମାନ ଉଦ୍ଧାର କରିଥିଲେ ନଗଦ ସାତଟଙ୍କା ଦେଇ; ବାକି ଦୁଇଟଙ୍କା ପାଇଁ ଜାମିନ୍ ବନ୍ଧାପଡିଥିଲେ । ଜର୍ସି ଗାଈ ପାଇଁ ଚୋକଡ୍ ବସ୍ତା ମୁଖାର୍ଜିବାବୁ କୁଲି ମୁଣ୍ଡରୁ ଓହ୍ଲାଇଆଣି ଭୋଳାନାଥଙ୍କ ସାଇକଲ୍ କେରିଅର୍‌ରେ ଥୋଇଲେ ଏବଂ କୁଲିର ଅଭଦ୍ର ଗାଳିକୁ ବୁଲିପଡି ବେଖାତିର୍ କଲେ । ଭୋଳାନାଥ ବଜାରରୁ ଘରଯାଏ ଚୋକଡ ବସ୍ତା ଆଣି ମୁଖାର୍ଜି ଓ ତାଙ୍କ 'ସାଢୁ'ଙ୍କୁ ନିରାପଦରେ ସ୍ୱ ସ୍ଥାନରେ ଛାଡିଦେଲେ । ଶିବାନୀ ଦାସ ତାଙ୍କ ଟଙ୍କା ଗଣ୍ଡାକ ବଦ୍‌ଖର୍ଚ୍ଚ ହୋଇଯିବାରୁ ଗୁଡାଏ ଛେଚିକଚି ହେଇ କାନ୍ଦିଥିଲେ ଏବଂ ଯାହା ଆସିଲା ମୁହଁରେ ଅଭାଷିଆ ଗାଳି ବର୍ଷି ଦେଇଗଲେ । ପିଲାଏ କିନ୍ତୁ ଭୟଙ୍କର ଚିଡିଥିଲେ, କାରଣ ଭୋଳାନାଥବାବୁ ସେଦିନ "ଟୁକୁନ୍"ର ବାପା ପାଇଁ ଚୋକଡ ବସ୍ତା ବୋହିଆଣିଥିଲେ ନୌକର ପରି । ଏଡିକି ଓଲା ଭଗିଆ, ବେକୁବ୍ 'ମଫ' ସାରା ଟାଉନ୍‌ରେ ଆଉ ନାହାନ୍ତି ବୋଲି ସେମାନେ ଲାଜରେ ଏବଂ ରାଗରେ କାନ୍ଦ କାନ୍ଦ ହୋଇଯାଇଥିଲେ । ଭଦ୍ରଲୋକଙ୍କୁ ସାଙ୍ଗେ ସାଙ୍ଗେ ଟଙ୍କା ମଗାଯାଏ ନାହିଁ ଏବଂ ଦୋକାନି ବାଟ ଜଗି ବସିଥାଇପାରେ ବୋଲି; ମୁଖାର୍ଜିଙ୍କ ପାଖରୁ ପଇସା ଆସିପାରିଲା ନାହିଁ; କିନ୍ତୁ ମୁଣ୍ଡ କାନ ଆଉଁସି ଜାମିନ୍-ଅସୁଲ ଦୁଇଟି ଟଙ୍କା ସେଇଦିନ ସୂର୍ଯ୍ୟାସ୍ତ ପୂର୍ବରୁ ଭରଣା କରିବାକୁ ହେବ । ଏଥିରେ ରନ୍ଧାବଢା ତ ନହେବା କଥା । ପାଚିଟୁଣ୍ଡରୁ ମୁକୁଳିଯିବା ପାଇଁ ଭୋଳାନାଥ ବାବୁ ଅଧଘଣ୍ଟାଏ

ଆଗରୁ ଅଫିସ ପଳେଇ ଯାଇଥିଲେ । ସେଇଠି ଏକୁଟିଆ ବସି ଭାବିଥିଲେ, କାହିଁକି ଶିବାନୀ ଏଭଳି ଅବୁଝା ହୁଅନ୍ତି, ପିଲାଏ କେମିତି ଫମ୍ପା ଟାଉନିଆ ଢଙ୍ଗ ଧରି ବିଗିଡିଯାଉଛନ୍ତି । ମଣିଷକୁ ମଣିଷ ବିଶ୍ୱାସ କଲେ ଅସୁବିଧାଟା କୋଉଠି !

ସ୍ଥିର ହେଲା ଯେ, ଆଉ ଯାହା ହେବାର ହେଉ ପଛେ, ଭୋଳାନାଥ ବାବୁଙ୍କ ହାତରେ ପଇସା ଦିଆଯିବା ନାହିଁ । ଦାମୀ କଲମଟାକୁ ମଧ ବାକ୍ସରେ ସାଇତି ରଖି ଦିଆଯିବ । ଦେଢଟଙ୍କିଆ ରକେଟ୍ କଲମ –ମୁଦ୍‌ଗର ଭଳି ଜିନିଷ – କ୍ଷୟ ବୃଦ୍ଧି ନାହିଁ, ଚାଲିଗଲେ ଚିନ୍ତାନାହିଁ । ଆସ୍ତେ ଆସ୍ତେ ଭୋଳାନାଥ ବାବୁଙ୍କ ନିରାପତ୍ତା ଦୃଷ୍ଟିରୁ ଏବଂ ପରିବାରର ମଙ୍ଗଳ ପାଇଁ ତାଙ୍କୁ ଟାଙ୍ଗରାମୁଣ୍ଡିଆ ପରି ସଫା କରିଦିଆଗଲା । ଏଣିକି ତାଙ୍କୁ ଶୋଷିବାକୁ କେହି ଜିଭ ଲମ୍ବେଇ ମାଡିଆସିବେ ନାହିଁ । ସତକସତ କିଛିଦିନ ଖୁବ୍ ନିରାପଦରେ କଟି ମଧ ଗଲା । ନଜର ଏଡେଇ ଖୁସ୍‌କିନା ଗଳିଯିବା ଏବଂ ଗଳିଆସିବାରେ ଭୋଳାନାଥ ବାବୁ କିଛି କିଛି ଆମୋଦ ମଧ ପାଇଲେ । ସାଙ୍ଗସୁଖରେ ଗୌରୀଶଙ୍କର, ବୈଦ୍ୟନାଥ, ଶକ୍ତିପ୍ରସାଦ ଆଦି ବାବୁମାନେ ଆବିଷ୍କାର କଲେ ଯେ ଭୋଳାନାଥ ବାବୁ ଲଣ୍ଡା ମାଗୁଣି ପରି ଫକଡ୍‌ରାମ ସାଜିଲେଣି । ତାଙ୍କୁ ଅଦା ଛେଚିଲା ପରି ଛେଚିଲେ ମଧ ଆଉ କାଣି କଉଡିଟିଏ ଖସିବ ନାହିଁ । ସେ ନିଜେ ଆଉ ନିଜ ଉପରେ ଆଗଭଳି ବିଶ୍ୱାସ ରଖିପାରୁନାହାନ୍ତି । ତାଙ୍କୁ ଯେକେହି ଚାହିଁଲେ ପଟିମାରିଦେଇପାରେ, ସାକୁଲେଇ ଚିକଣେଇ ଚନ୍ଦେଇ ଦେଇପାରେ; ସେ ପଛ କଲେ ତାଙ୍କ ଗୋଛି କାଟିଦେଇପାରେ – ଏଭଳି ନାନା ଜାତି ଭୟରେ ସେ ଚମକୁଛନ୍ତି । ଆଗଭଳି ଆଉ ସେମିତି ହୋହା ଫୋପା ନକରି ଜଗିରଖି ପାଟିଚିପି ସେଇବାଟେ ସରୁ ସରୁ ଚାଲାକ ଚିକ୍‌କଣ କଥା କହିବାକୁ ଚେଷ୍ଟା କରୁଛନ୍ତି । ତଥାପି ଗୌରୀଶଙ୍କର କଥାରେ ପଡି ଅଫିସ କାଣ୍ଟିନ୍‌ରେ ଉଧାରି ଖାତାରେ ଦିନେ ନା ଚଢେଇଦେଇଛନ୍ତି । ଦି'ଚାରିଥର ବନ୍ଧୁମାନେ ମିଶି ଅଳ୍ପ କ'ଣ ଟିକିଏ ଖାଇଛନ୍ତି । ସେ ଟାଉଟର କାହାଁକା କହୁଥିଲା ବତିଶ ଟଙ୍କା । ମାସ ଶେଷରେ ସେ ଟା' ଫାଡୁଙ୍ଗା ପାଟି ମେଲେଇ ପଇସା ମାଗିଲେ, ଗୋଟି ଗୋଟି କରି ହିସାବ ମାଗିବେ ବୋଲି ସେ ଜଗିବସିଛନ୍ତି । ଏଣେ କୌଣସି ବାବଦରେ ସରକାର ଦରମାରୁ ସେତକ କାଟିଦେଲେ ବୋଲି ଘରେ ଯାଇ ସଫେଇଦେବାକୁ ମଧ ସ୍ଥିର କରିଛନ୍ତି ।

ଏତେ ପ୍ରକାର ବ୍ୟବସ୍ଥା ସତ୍ତ୍ୱେ ଭୋଳାନାଥବାବୁ ଦିନେ ଅଫିସରୁ ଗଳି ଖସିଆସିଲାବେଳକୁ ହଠାତ୍ ଗୋଟିଏ ସର୍ବୋଦୟ ମୁଣା ହାବୁଡରେ ପଡିଗଲେ । ତାଙ୍କ ବୟସ ଅନ୍ଦାଜ ପଚାଶ । ଚନ୍ଦାମୁଣ୍ଡରେ ଏଠି ସେଠି ଦୁଇ ଚାରିକେରା ମରୁଡି ଫସଲ, ବିରଳ ଦାନ୍ତ ସାଙ୍ଗକୁ କିଛି ବାପୁଜୀ ହସ । ଖଦଡ ଫତେଇ । ଖଦଡ ହାଫ୍‌ପେଣ୍ଟ । ଗାନ୍ଧି ଚପଲ । ବାଁ କାନ୍ଧରୁ ଡାହାଣ ଆଣ୍ଠୁଯାଏଁ ବିରାଟ ମୁଣାର ପରିସର ଭିତରେ ସେମିତ ଗରଜ ପଡିଲେ ଭୋଳାନାଥବାବୁ ନିଜେ କୁଣ୍ଡଳି ବାନ୍ଧି ଲୁଚିଯାଇପାରିବେ ।

"ଆଜି ମୋର ପରମସୌଭାଗ୍ୟ ଭୋଳାନାଥ ବାବୁ, ଆପଣଙ୍କ ଦର୍ଶନ ମିଳିଗଲା । ଭୋଳାନାଥ ଯେ ସ୍ୱୟଂ ମହାଦେବ ! ତାଙ୍କୁ କିଏ ବା ନଜାଣେ ! ଆପଣ ବିଶ୍ୱାସ କରିବେ ନାହିଁ –

ଆପଣଙ୍କୁ ଥରେ ଖାଲି ଦେଖିବାକୁ ମୁଁ ଗତ ଦଶଦିନ ହେବ ଚେଷ୍ଟା କରୁଛି ।"

ବାଁ ତାହାଣେ, ବାଟ ନପାଇ, ଭୋଳାନାଥବାବୁ ଫତୁଆ ଭଳି ପାଟି ଲେସେତି ପରମଭକ୍ତକୁ ଅନେଇଲେ ।

"ଆଚ୍ଛା କାହିଁକି ଆପଣ ମତେ ଖୋଜୁଥିଲେ ?"

ଭାକୁର ଥୋପ ଗିଳିଲା ପରେ କିଛି ସୂତା ଛାଡିଦେବା ଖେଳୁଆଡ ବଡଶୀଧାରୀର ନୀତି । ସେ ବାଟେ ଛାଡିଦେଇ 'ମଣିମା ବିଜେ' ଢଙ୍ଗରେ ହାତ ଆଙ୍ଗୁଳିଟିକୁ ପହରେଇନେଲା ଭୋଳାନାଥବାବୁଙ୍କ ଆଗରେ । ସେ ଦରବୁଜା ଆଖିରେ ଗୋଟିଏ ନରମ ନାଲିଆ ଗାଲିଚା ଉପରେ ପାହୁଣ୍ଡ ମେଲିଦେଲେ । ଟକେ ଚାଖଣ୍ଡେ ପଛରେ ସେ ଲାଗିଯାଇଥାଏ ଭୋଳାନାଥ ବାବୁଙ୍କ ସଙ୍ଗରେ ଏବଂ ବଶୀକରଣ, ଉଚ୍ଚାଟନ, ସମ୍ମୋହନ ଜପୁଥାଏ – "ଆପଣଙ୍କ ଭଳି ଶିକ୍ଷାଦୀକ୍ଷା ପାଇ ଉଚ୍ଚଘରର ଆଭିଜାତ ପିଲା ନହେଲେ କ'ଣ କିଏ ବୁଝିବ ସେବାଧର୍ମ କଣ, ଦାନଧର୍ମ କଣ, ମୌନଧର୍ମ କଣ ! ମୁଁ ଆଜ୍ଞା ଡୋଙ୍ଗରିଆ କନ୍ଧ ମୁଲକରେ ଥାଏ । ସେଇଠି ଭାରତ ସ୍ୱାଧୀନ ହେବା ଆଗରୁ ସେବାରେ ଲାଗିଛି । ମଝିରେ କେବେ ଆଠଦଶବର୍ଷ ଜେଲ୍‌ରେ ପଡିଥିଲି । ସେ ଭିତରେ ବି ଚାଲିଥାଏ ଦେଶସେବା । ଏବେ ସେ ଅଞ୍ଚଳରେ ମରୁଡି । ପାଣି ଟୋପାଏ ନାହିଁ । ଲୋକେ ଟାଙ୍ଗରା ମୁଣ୍ଡିଆ ଉପରେ ଶୋଷରେ ପ୍ରାଣ ଛାଡିଦଉଛନ୍ତି । ମୁଁ ଆସିଛି ଆପଣଙ୍କ ନାଁରେ ସେଠି ଖଣ୍ଡିଏ ପୋଖରୀ ଖୋଳେଇ ସେମାନଙ୍କର ସେବା କରିବି । ଆପଣଙ୍କ କୀର୍ତ୍ତି ଯୁଗ-ଯୁଗକୁ ସେ ମୁଣ୍ଡିଆବାସୀ କନ୍ଧମାନେ ପୁରୁଷାନୁକ୍ରମେ ମନେରଖିବେ । ଏଇଟା କାହାରି ଜଣକର ଆୟତ୍ତ କଥା ନୁହେଁ । ଏ ପୁଣ୍ୟ କାର୍ଯ୍ୟରେ ମୁଠାଏ ଦାନକଲେ ମଧ ଧନ ଆପଣ ! ବହୁତ ଆଶାକରି ମୁଁ ଆସିଛି । ଆପଣଙ୍କର ଯଶ ଚାରିଆଡେ ବ୍ୟାପିଯାଇଛି । ଆପଣ ପରଦୁଃଖ ଦେଖିଲେ ସହିପାରନ୍ତି ନାହିଁ ।"

ଭୋଳାନାଥ ବାବୁଙ୍କ ଭୃରୁ କୁଞ୍ଚେଇଗଲା । ନିଃଶ୍ୱାସଟିଏ ଲମ୍ବିଗଲା ସବୁ ବୁଝିଗଲାପରି । ଓ, ତା'ହେଲେ 'ଚାନ୍ଦା'!! ତାଙ୍କର ହଠାତ୍ ମନେପଡିଗଲା ଯେ ସେ ଅଫିସରୁ ବାହାରିଆସିଲାବେଳେ କିଏ ସବୁ ଦୁଇ ଚାରିଜଣ ତାଙ୍କରି ଆଡେ ଟାକୁ ଗାଳିଦଉଥିଲେ । ତାଙ୍କ ଭିତରେ ଗୌରୀଶଙ୍କର ମଧ ଥିଲା ନା' କ'ଣ ? ହଉ, ଆଜି ଅଣତିରିଶ ତାରିଖରେ ୟାକୁ ନେଇ ଘରକୁ ଯିବା ଆଦୌ ସମ୍ଭବ ନୁହେଁ । ଏ ବି ଛାଡିଲାପରି ଦିଶୁନାହିଁ ! ୟାର ମାସୁଲ ପରି ଗୋଡରେ ଏ ପଚିଶ ମାଇଲ ପର୍ଯ୍ୟନ୍ତ ଚାଲିଯାଇପାରେ । ୟାଠାରୁ ଆଜି ନିଷ୍କୃତି ମିଳିଲାପରି ଦିଶୁନାହିଁ ।

"ଆଚ୍ଛା ! ଆପଣ ଅନ୍ୟମାନଙ୍କଠଉଁ କ'ଣ କିଛି ଚାନ୍ଦା ଆଦାୟ କଲେଣି ?"

"ଇସ୍, ସେ କଥା ଆପଣ ବି ଶେଷକୁ କହିଲେ ! ଚାନ୍ଦା ମୁଁ କଦାପି ନେଇ ନାହିଁ । ମୁଁ ତା'ର ଘୋର ପ୍ରତିବାଦ କରିଆସିଛି । ମୁଁ ଚାହେଁ ଆପଣଙ୍କ ସୁନାମ ପ୍ରଚାର ପାଇଁ କିଛି ଅନୁଦାନ ! କାହିଁ ଅନୁଦାନ, କାହିଁ ଚାନ୍ଦା !"

"ହୁଁ, ହେଲା ଏବେ ଅନୁଦାନ । ଆପଣ ଯାହା କହିଲେ ତ ତା'ର ଅର୍ଥ ହେଲା ସେଇ ଦରମାରୁ କଟୁଥିବା କିଛି ପଇସା ! କାହା କାହା ପାଖରୁ ନେଲେଣି ?"

"ହେଇ ଦେଖନ୍ତୁ!"

ଗୌରୀଶଙ୍କର ପାଞ୍ଚଟଙ୍କା – ତା' ଉପରକୁ ଉପରକୁ ପଚିଶ ଟଙ୍କା ପର୍ଯ୍ୟନ୍ତ ନାଁ ଲେଖାହେଇଚି । ଜଣେ ତା' ଭିତରୁ ଲେଖିଛନ୍ତି ଯେ, "ଏ ଠକ ନୁହନ୍ତି । ଏ ସତ୍ କାର୍ଯ୍ୟରେ ଜନତା ଯଥାସାଧ ସାହାଯ୍ୟ କରିବା ଉଚିତ୍ ।" ଦସ୍ତଖତ ଦେଇଛନ୍ତି ମାଧବାନନ୍ଦ ଗନ୍ତାୟତ୍ । ଇସ୍ ଚମଚଟା 'ମାଧବା' ଶେଷକୁ ପଡିଗଲା ଜାଲରେ! ସେ ଦେଇଛି ପାଞ୍ଚଟଙ୍କା, ଆଉ ବାକି ଲୋକପାଇଁ ବାଟ ସଫାକରି ଲେଖିଦେଇଛି ପଦଟିଏ!

"ଆଚ୍ଛା ଦେଖନ୍ତୁ, ଆପଣଙ୍କୁ ସିଧା କଥା କହିଦେବା ଭଲ । ଆଜି ଅଣତ୍ରିଶ ତାରିଖ । ପାନ ପାଇଁ ପାଞ୍ଚଟି ପଇସା କାଢିବା ମଧ ମୋର ସାଧାତୀତ । ଏଣୁ ବର୍ତ୍ତମାନ କିଛି ସମ୍ଭବ ନୁହେଁ ।"

"ଆରେ, ଭଲ କଥା ଆପଣ କହୁଛନ୍ତି! ଏଇଟା କ'ଣ ମୁଁ ଜାଣିନାହିଁ? ଏମାନେ କ'ଣ କେହି ରୋକଡ ଦେଇଛନ୍ତି? ବଡଭାଗ କେବଳ ରସିଦ୍ ନେଇ ଯାଇଛନ୍ତି, ମୋର ବିଶ୍ୱାସ ଉପରେ । ସେମାନେ ଦରମା ପାଇଲେ ଏକ ଦୁଇ ତାରିଖ ଭିତରେ ଦେଇଦେବେ । ଆପଣଙ୍କୁ ଏଇ ଛାପା ରସିଦ ମୁଁ ବର୍ତ୍ତମାନ ଦେଇଦଉଛି । ଆପଣ ଦେଲେ ବୋଲି ମୁଁ ଧରିନେଲି । ସବୁ ଆଜ୍ଞା ବିଶ୍ୱାସ, ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂରେ ।"

ଫିଟିଯିବାକୁ ଭୋଳନାଥ ଛଟେଇ ପଟେଇ ହେଲେ । ସେ ଆଉ ଦୁଇ ଚାରି ଖେଦା ଶାସ୍ତ୍ର ଆଉଡାଇଲା । ଟାଉ ଟାଉ ଘରମୁହାଁ ଫେରୁଥିବା ଅଫିସ ଅମଲା ଟିକିଏ କଣେଇ ଚାହିଁଦେଇ, ହସିଦେଇ ପଳେଇଲେ । ଜାଣିଦେଲେ ଘଟଣା କ'ଣ । ଭୋଳାନାଥବାବୁଙ୍କର ମନହେଲା, ଯୋଡିଛାଡି ସେଇଠୁ ଧାଇଁ ପଳେଇବେ ।

– ଶଳା ଭଲା ହଇରାଣ ହେଲା ମଣିଷ!

ରସିଦ୍ ବହିକୁ ଚାହିଁ ଲେଖୁଥିବା ଅବସ୍ଥାର ସେ କହିଲା, "ପଚିଶ ଟଙ୍କା ପକଉଚି । ଆପଣ କ'ଣ ଆଉ କାହାପରି ହେଇଚନ୍ତି ଯେ ପାଞ୍ଚଟା ଟଙ୍କା ଏତେବଡ କାର୍ଯ୍ୟକୁ ଦେଇ ମନ ତୃପ୍ତ ରଖିପାରିବେ?"

ବଡପାଟିରେ ପ୍ରତିବାଦ କଲେ ଭୋଳାନାଥ – "ନା, ନା, ମୁଁ କଦାପି ପଚିଶ ଦେବି ନାହିଁ; ଦେଇପାରିବି ନାହିଁ ।"

"ହଉ ତେବେ ଦଶ କାଟିଦେଲି । ଟଙ୍କା ପନ୍ଦରଟି ନ ହେଲେ ମୁଁ ଭବିବି ଯେ ଆପଣ ଚାହୁଁଛନ୍ତି ଡୋଙ୍ଗରିଆ କନ୍ଧମାନେ, ତାଙ୍କ ପିଲା ମାଇପ ଶୋଷରେ ଆଉଟୁ ପାଉଟୁ ହେଇ ମରନ୍ତୁ, ଆଉ ଆପଣମାନେ ଏଇଠି କଳପାଣି, କଳପଙ୍ଖା ଚଲେଇ ଅଏସ କରନ୍ତୁ! ପାପିଷ୍ଠ, ଦୁରାଚାରୀ, ବେଇମାନ ନିମକ୍‌ହାରାମ୍ ଏ ଟାଉନିଆ ଚାକିରିଆଦଳ । ତାଙ୍କ ପାଖରୁ ପଇସାଟିଏ ନେଇ ଏ ପୁଣ୍ୟ କାର୍ଯ୍ୟରେ ଲଗେଇବା ମୋ ଇଚ୍ଛା ନୁହେଁ ।"

ସେ ରାଗରେ ଫଁ ଫଁ...

ଭୋଳାନାଥବାବୁ ଆତୁଆ ଗାଳିମାଡରେ ଚେପା ।

ସେ ବାଙ୍କ ମୋଡି ପୁଣି କହିଲା, "ମୁଁ କ'ଣ ଏ ସମାଜକୁ ଜାଣିନାହିଁ ନା ଆପଣଙ୍କୁ ଚିହ୍ନିନାହିଁ? ଆପଣ ପରା ରାୟସାହେବ ପୀତାମ୍ବର ଦାସଙ୍କ ନାତି! ତାଙ୍କ ଦୁଆରେ ଦଶଘର ହାତୀ ଝୁଲୁଥିବାର ମୁଁ ପିଲାଦିନେ ନିଜେ ଦେଖିଛି। ଆପଣ ଖାଲି ଲୋକଦେଖାଣିଆ ସିନା ଆସି ଚାକିରି କରିଛନ୍ତି, ଏମିତି ପୁଷ୍ଟାଏ ନେଇ ଆପଣ ନିଜ ସେବାରେ ଖଟେଇବା ଭଳି ପାରଙ୍ଗମ – ସେକଥା ମତେ କହିଲେ ହେବ? ହେ ହେ ହେ, ଆପଣ କପଟ କଲେ କ'ଣ ମୁଁ ଆପଣଙ୍କୁ ଛାଡୁଚି!"

ଏଭଳି ପଡି ଉଠି, ଦଳାଚକଟାରେ ଭୋଳାନାଥବାବୁ ନରମି ଯାଇ ମେଞ୍ଚାଟିଏ ହେଇସାରିଲେଣି – "ଆଚ୍ଛା ଦଶଟଙ୍କା ଲେଖିଦିଅନ୍ତୁ!"

"ହଉ, ଆପଣଙ୍କୁ ଅମାନ୍ୟ କରିବାକୁ ମୁଁ କି ଛାର୍। ଦାରିଙ୍କ ହାତରୁ ଦଶପଇସା ପାଇଲେ ମଧ ସେ ଶୁଭ କାର୍ଯ୍ୟରେ ଲାଗିବ। ବାକି ଏ ଲାଞ୍ଚୁଆ ଖଚୁଆଙ୍କ ଶହେଟଙ୍କା ସେଥିକୁ ଯୋଗ୍ୟ ନୁହେଁ!"

ଆଉ ଆଉ କେତେ କଥା ଭିତରେ ସେ ରସିଦ ଖଣ୍ଡ ଚିରି ଭୋଳାନାଥଙ୍କୁ ବଢେଇଦେଲା। ସେ ପ୍ରାୟ ଥରିଲା ଥରିଲା ହାତରେ ତାକୁ ନେଇ ଆଖି ତଳକୁ କରିଦେଲେ।

"ତା'ହେଲେ ପହିଲା ତାରିଖରେ ସନ୍ଧ୍ୟା ସୁଦ୍ଧା ମିଳିଯିବ ତ – ନା ଦୁଇତାରିଖରେ ଘରେ ପହଞ୍ଚିବି? ତଳସାହି ଦେଉଳ ଛକଠୁ ବାଁରେ ଗଲେ, ଡରାଟ ଗଛ ମୁହଁରେ ଥାଏ ଆପଣଙ୍କ ବସା! ମୁଁ ଆସିବି ଆଜ୍ଞା, ଆପଣଙ୍କୁ ଚିନ୍ତା କରିବାକୁ ହେବନାହିଁ।"

ଭୋଳାନାଥ ଦଶଟଙ୍କିଆ ରସିଦ୍ ଖଣ୍ଡ ଯୋଉଠି ଥୋଇଲେ, ସେଇଠି ନିଆଁ ଚେଙ୍ଗିଲା ପରି ଲାଗୁଥାଏ। ଚିରି ଫୋପାଡି ଦେବାକୁ ମନ। କୌଣସି ପ୍ରକାରେ ଲୋଚକୋଚ କରି ମୁଣାରେ ପୁରେଇଦେଇ ଯାଇ ଘରେ ପହଞ୍ଚିଲେ।

ଖୁବ୍ ହସଖୁସି, କଥାକଥାକେ ପିଲାଙ୍କୁ ଗେଲ, ଉପରେ ପଡି ଶିବାନୀଙ୍କ ପ୍ରଶଂସା ଇତ୍ୟାଦି ଆଖିଦୃଶିଆ ହେବାରୁ ସମସ୍ତେ ପରସ୍ପରକୁ ଚାହାଁଚାହିଁହେଲେ। ଶିବାନୀ ଉଡିଗଲା ଚଢେଇର ପର ଗଣିଦେବା ଲୋକ। ଟିକିଏ ଥାପୁଡାଥାପୁଡି କରିଦେବାରୁ ଗୁଲ୍‌କିନା ଗଳିପଡିଲା ଭୋଳାନାଥ ବାବୁଙ୍କ ଗୁମର। – "ଶୁଖିଲା ମୁଣ୍ଡିଆ ଉପରେ, ମଣିଷପିଲା ଶୋଷରେ ମରିଯାଉଛନ୍ତି। ତାଙ୍କ ପାଇଁ ଆମେ କ'ଣ କିଛି କରିବା ନାହିଁ!" ଯଥାସମ୍ଭବ ଆବେଗର ସହିତ ଏତକ କହିଦେଇ ସେ ମୁହଁରୁ ମୁହଁକୁ ଚାହିଁଗଲେ ଗୋଟେ ଦି'ଟା ଭୋଟ ପାଇଁ। ସମସ୍ତେ କାନ୍ଥପରି ନିଶ୍ଚଳ।

ଶିବାନୀ ବିଶି ଆଙ୍ଗୁଠି ଟେକି ରାଣ ପକେଇଲେ, "ସେ ଚାନ୍ଦା ନବାକୁ ଆସିବ ତ'! ଆସୁ ସେ ଗଇଜଳା, ତାକୁ ମୁଁ ଏଇଠି ଏମିତି ପାଣି ପିଆଇ ଛାଡିବି ଯେ ତା' ବୋପାକାଳେ ପିଇ ନ ଥିବ। ସେଥିରୁ ଦଶ କୋଡିଏଟା ଠାପୁଆ ଆଠକାଳି ବାରମାସୀ ଏଇଠି ନଙ୍ଗରପଙ୍ଗର ହଉଚନ୍ତି। ହଜାରେ ରକମର ଫନ୍ଦି କଥାରେ ହଜାରେ ପ୍ରକାର ଚାନ୍ଦା। ମୁଁ କୋଉ ଚୁଲିରେ ତାଙ୍କୁ ପୂରୋଉ ନ ଥିଲି? କାଳ କ'ଣ ହେଲାଣି – ସେଥିରେ କ'ଣ ନା' ମୋ ପିଲାଙ୍କ ପେଟରୁ କାଟି ମୁଁ ଦେବି

ଚନ୍ଦା – ନାଇଁ ?"

"ବାକି ସବୁ ରସିଦ ଖଣ୍ଡିଏ ଲେଖା ଧରି ବସିଚନ୍ତି, ସେମାନେ ତ ଫେରି ଦେବେ ? ଆମଭଳି କିଏ ହେଇଚନ୍ତି ରାଢ ?"

"ଦେଉଥାନ୍ତୁ ଯେ ଦେବାର । ମୁଁ ସେ ଦାତାଷଣ୍ଢମାନଙ୍କୁ ଜାଣିନାଇଁ ? – ତାଙ୍କର ବାର ମୁହଁରେ ପଇସା ଆସୁଚି ଯେମିତି, ବାର ମୁହଁରେ ଖର୍ଚ୍ଚ ହେଉଚି ସେମିତି । ଆମର ତ ଗହମ ଗୋଟି ଗଣିତା – ସେଥିରେ ମୁଁ ଉପରି ଦାନଧର୍ମ କରିପାରିବି ନାହିଁ । ଯିଏ ପାଣି ନ ପାଇ ମରିବା କଥା, ମଲେଣି । ଏ ଟାଉଟର୍ ଏଠି ହାତ ଚିକଣ, ଓଠ ଚିକଣ କରୁଚି । – ମୁଁ ପଇସାଟିଏ ଦେବି ନାହିଁ, ଦେବିନାହିଁ । କିଏ ମୋର କ'ଣ କରୁଚି କରୁ !"

ସ୍ତ୍ରୀଙ୍କ ପ୍ରତାପରେ ଭୋଳାନାଥ ଶଙ୍କିଗଲେ ନିଶ୍ଚୟ । କିନ୍ତୁ ମନେ ମନେ ଗଭୀର ଭାବରେ ଆଶ୍ୱସ୍ତ ମଧ ହେଲେ । ଆସୁ ସେ ଭୁଷଣ୍ଡକାକ ଚନ୍ଦା ପାଇଁ । ଏଥର ଏମିତି ଚେଙ୍ଗା ପାଇଯିବ ଯେ ଏକାଦିନେ ଟାଉନ ଛାଡି ପଳେଇବାକୁ ବାଟ ଅଣ୍ଟିବ ନାହିଁ ।

ପହିଲା ତାରିଖ ଦିନ ଦରମାଗଣ୍ଡାକ ଧରି ଖୁବ୍ ଗହଳିବେଳେ ଭୋଳାନାଥ ଖସି ପଳାଇ ଆସିଲେ ଏକମୁହାଁ ଘରକୁ । ତା' ଆରଦିନ କେମିତି ମୁକାବିଲା ହେବ, ସେଥିପାଇଁ ବାକି ସମସ୍ତେ ପ୍ରସ୍ତୁତ ହେଇଗଲେ । ଭୋଳାନାଥ ବାବୁଙ୍କ ଦାୟିତ୍ୱ ହେଲା ଘର ଭିତରେ ଲୁଚି ରହିଯିବେ । ବାହାରେ ଯେତେ ସିଂହରଡି ଦେଲେ ମଧ ପୋତା ମାରି ରହିଥିବେ; ଆଦୌ ବାହାରିବେ ନାହିଁ । ଶିବାନୀ ନିଜ ଦାଢରେ ସମ୍ଭାଳିବେ ଏବଂ ନିପାତ କରିବେ ଶତ୍ରୁକୁ । ପିଲାଙ୍କୁ ଯେ କେହି ପଚାରିଲେ କହିବେ, "ବାପା ଘରେ ନାହାନ୍ତି । କୁଆଡେ ଯାଇଛନ୍ତି କହିପାରିବୁ ନାହିଁ ।" କିମ୍ବା "କଲିକତା ଯାଇଛନ୍ତି, ଫେରୁ ଫେରୁ ଦଶଦିନ ଲାଗିପାରେ ।" – ଏ ଯୁଗର ଚାଲାକ ପିଲା ସବୁ ପ୍ରସ୍ତୁତ ହେଇଗଲେ ଆତ୍ମରକ୍ଷା ପାଇଁ । ଏମିତି ନ ହେଲେ ଏବେ ଚଳିବା ମଧ ସମ୍ଭବ ନୁହେଁ । ଭୋଳାନାଥବାବୁ ପ୍ରତିବାଦ କରିବାକୁ ସାହସ କଲେ ନାହିଁ; କିନ୍ତୁ ସେ ଭାବୁଥିଲେ ସିଧା ସେ ଚନ୍ଦାବାଲାକୁ କାହିଁକି ନିଜେ କହିଦେବେ ନାହିଁ ଯେ ଚନ୍ଦା ଦେବେନାହିଁ; କିନ୍ତୁ ତାଙ୍କୁ ପରଦା ଡେଇଁ ଯିବାକୁ ଚବିଶ ଘଣ୍ଟା ପାଇଁ ମନା ।

ଏକ ତାରିଖ ରାତି ୧୦ଟା ବାଜିବାକୁ ପନ୍ଦର ମିନିଟ୍ । ପିଲାଏ ଶୋଇବାକୁ ହେଲେଣି । ଭୋଳାନାଥବାବୁ ଅଭୟ ପାଇଲାପରି କହୁଛନ୍ତି, "ସେ ନିଶ୍ଚେ ଟାଉଟରମାନଙ୍କ ନେତା । ଏ ପ୍ରକାର କୁହାଳିଆ ନାହାକ ଯେ ଆଉ କାହାକୁ ପାଟି ଫିଟେଇବାକୁ ଦେବନାହିଁ । ସେ ଅରଣାକୁ କାବୁ କରି ତା' ତୁଣ୍ଡି ବାନ୍ଧିବାକୁ ସମସ୍ତେ ହଟିଗଲେ । ଅଫିସଯାକ ସମସ୍ତଙ୍କୁ ସେ ଟୋପି ଚଢେଇଦେଇଛି ।"

ଏତିକିବେଳେ କବାଟରେ ଶୁଭିଲା ଠକ୍ ଠକ୍ ।

ସମସ୍ତେ ନିସ୍ତବ୍ଧ ହେଇଗଲେ । ଏତେ ରାତିରେ କିଏ ଆସିପାରେ ! ଭୋଳାନାଥବାବୁଙ୍କ ନିସ୍ତେଜ ମାଛ ମୁହଁରୁ ରକ୍ତ ଓହ୍ଲେଇଗଲା । ସର୍ବନାଶ – ସେଇ ଚନ୍ଦାବାଲା ବୋଧହୁଏ ଶୁଙ୍ଘି ଶୁଙ୍ଘି ପହଞ୍ଚିଗଲା ! ଅମର ଉଠିଲା କବାଟ ଫିଟେଇବାକୁ । – "କିଏ !"

"ଭୋଳାନାଥ ବାବୁ ଅଛନ୍ତି ?"

ଗୋଟାଏ କୁଦା ମାରି, ସେ ଯେମିତି ଟିପେଇ ଟିପେଇ ଭିତର ଘରେ ପଶି ଯାଇଛନ୍ତି. ସମସ୍ତେ ଯେ ଯାହା ଅଞ୍ଚଳ ଜଗିବାକୁ ପ୍ରସ୍ତୁତ ହେଇଗଲେ ।

"ନାହାନ୍ତି, କୁଆଡେ ଯାଇଛନ୍ତି ।" କହିଲା ଅମର ।

"ଆମେ ଜାଣିନାହୁଁ ।" ଯାଇ କହିଦେଲା ଛବି ।

ବାହାରୁ ଗୋଟିଏ ଖଣ୍ଡିକାଶ ଶୁଭିଲା – "ଭୋଳାନାଥ ବାବୁ!" ଭିତରକୁ ଶୁଣେଇଲା ପରି ସ୍ୱର ।

ପିଲାଙ୍କୁ ଆଡେଇଦେଇ ଶିବାନୀ ପ୍ରାୟ ସେହିପରି ଚଢା ଗଳାରେ ଖେଙ୍କିଲେ – "କାହିଁକି ?" ଭୋଳାନାଥବାବୁଙ୍କ ବର୍ଣ୍ଣନା ସହିତ ଆଦୌ ଖାପୁ ନ ଥିବା, ମିଟ୍‌ମିଡିଆ, ଧୋକଡା ଟେଙ୍ଗଣାମୁହାଁ ଗୋଟିଏ ଅଧାଡିଆ ଲୋକକୁ ଦେଖି ସେ ଟିକିଏ ଦବିଗଲେ ।

"ଭୋଳାନାଥ ବାବୁ ନାହାନ୍ତି ? ମୁଁ ତାଙ୍କ ଅଫିସରେ କାମ କରେ, ମୋ ନାଁ ମାଧବାନନ୍ଦ ଗନ୍ତାୟତ ।...ଆରେ ହେ, ଭୋଳାନାଥବାବୁ!" ସେତେବେଳେ ସମସ୍ତଙ୍କ ପଛରେ ଭୋଳିବାବୁ ଆସି ଦାନ୍ତ ନେଫେଡେଇ ଠିଆହେଇଥାନ୍ତି ।

"ଆରେ, ଆରେ, ମାଧବବାବୁ, ଆପଣ ଏତେ ରାତିରେ କେମିତି ?"

"ନାଇଁ, ମୋର କାମ କିଛି ନ ଥିଲା । ଏ ଭଦ୍ରଲୋକଙ୍କୁ ସାହାଯ୍ୟ କରିବାକୁ ଆପଣଙ୍କ ଘର ଟିକିଏ ଦେଖେଇ ଦେବାପାଇଁ ଆସିଥିଲି ।" ବାହାର ଗେଟ୍ ଫିଟେଇ ଟାଙ୍ଗରାମୁଣ୍ଡିଆ କେହି ଜଣେ ପଶିଆସିଲେ ।

କେଁକିନା ଶବ୍ଦ କରି ଭୋଳାନାଥବାବୁ ଓଲଟ ପାରାପରି ବୁଲିପଡିଲେ । ମାଧବାନନ୍ଦ ଅଳ୍ପ ହସି ସରୁ ନମସ୍କାରଟିଏ ପରେ କହିଲେ, "ମୁଁ ତା'ହେଲେ ଆସୁଚି" ଏବଂ ଗଳି ଚାଲିଗଲେ ।

ଦମ୍ ଦମ୍ ପାଦ ପକେଇ ପିଣ୍ଡାକୁ ଉଠିଆସିଲା ସର୍ବୋଦୟ ମୁଣ୍ଡା ।

"ଟିକିଏ ଭୋଳାନାଥବାବୁଙ୍କୁ କହିଦେବେ ।"

"କାହିଁକି ?" "ସେ ଘରେ ନାହାନ୍ତି", "ଆମେ ଜାଣିନାହୁଁ", ଏକା ଥରକେ ଶୁଭିଲା । ସେ କୌଣସି ହାବାରେ ପତ୍ରଟିଏ ସୁଦ୍ଧା ନ ହଲେଇ, "ଏଇ ସାମାନ୍ୟ କାମ ଟିକିଏ ଥିଲା – ତାଙ୍କୁ ଟିକିଏ ଡାକିଦେବେ ।"

ଅମର କହିଲା, "ସେ ଘରେ ନାହାନ୍ତି ।"

ଛବି କହିଲା – "ଆମେ ଜାଣିନାହୁଁ ।"

ଖୁବ୍ ଗମ୍ଭୀର ମୁଦ୍ରାରେ ପିଲାଙ୍କୁ ସେ କହିଲେ, "ମିଛ କହିବା ଭଲ ନୁହେଁ । ବାବା ଘରେ ଅଛନ୍ତି । ତୁମେ ଜାଣିଛ ସେ ଅଛନ୍ତି । ଏଠି ଏବେ ଠିଆ ହେଇଥିଲେ ।"

ପିଲେ ଟିକିଏ ଝାଳେଇଗଲେ ।

"ସେ ବର୍ତ୍ତମାନ ଆସିପାରିବେ ନାହିଁ ।" – କହିଲେ ଶିବାନୀ ।

"ହଉ, କେତେବେଳେ ଆସିପାରିବେ ଜାଣିଲେ ଆମେ ଅପେକ୍ଷା କରିବା ।"

"କାହିଁକି ? କ'ଣ କାମ କହୁନାହାନ୍ତି ? ଆମେ ଚାନ୍ଦା ଦେବୁ ନାହିଁ ।"

ଭୋଳାନାଥ ବାବୁ କବାଟ କଣରୁ ଛପ୍‌କିନା ନିଃଶ୍ୱାସଟାକୁ ରୋଧିନେଲେ । ବାପ୍‌ରେ, କେମିତି ଢାଇକିନା ଫାୟାର କରିଦେଲା !

"ଚାନ୍ଦା ଆମେ ନେବୁ ନାହିଁ । ଆମେ କିଛି ଅନୁଦାନ ପାଇବୁ ବୋଲି ଭୋଳାନାଥ ବାବୁଙ୍କ ଦସ୍ତଖତ ସହ ଜବାବ୍ ପାଇଥିଲୁ ।"

"ଆମେ ବୋଇଲେ କିଏ ? ଏଠି ତ ଆପଣ ଜଣେ !"

"ନ ଦେଲେ କୌଣସି ଆପତ୍ତି ନାହିଁ । ଆପଣଙ୍କ ଭଳି ଆହୁରି ଅନେକ ଅଛନ୍ତି, ଯେ ଦେବାପାଇଁ ଆଗ୍ରହୀ । ଜଣକ ଅନୁଦାନ ଉପରେ ସେତେ କିଛି କାମ ଅଟକି ଯାଉନାହିଁ । ହେଲେ ଭଦ୍ରଲୋକଙ୍କ କଥାର ମୂଲ୍ୟ ଗୋଟାଏ ଅଛି ପୁଣି । ଆମେ କଥା ଦେଇଥିଲେ, ଯେତେ ରାତି ହେଲେ ମଧ ନିଶ୍ଚୟ ଘର ପଚାରି ଆସି ପହଞ୍ଚିଯିବୁ । ମୁଁ ଜାଣେ ଭୋଳାନାଥ ବାବୁଙ୍କୁ, ତାଙ୍କ ଖାନ୍‌ଦାନ୍, ତାଙ୍କ ଇଜ୍ଜତ୍ । ଭୋଳାନଥ ବାବୁ କଥାଟାଏ କହିଥିଲେ ସେଇଟା ପଥରରେ ଗାର – ଏଇଟା କିଏ ନ ଜାଣିଛ ?"

କବାଟ କୁଣରେ ନାକ ଟିକିଏ ଉପରକୁ ଟେକି ହେଇଗଲା ।

"ସେ କ'ଣ କଥା ଦେଇଥିଲେ, ସେଥିରେ କିଛି ଯାଏଆସେ ନାହିଁ । ଆମେ ଦେବୁ ନାହିଁ ।"

"ତା' କ'ଣ ମୁଁ କେବେ କହୁଛି ? କିନ୍ତୁ ଘରର ମୁରବି ଥରେ କଥା ଦେଇଥିଲେ ଆମ କାଳରେ ଅନ୍ୟଥା ହେଉ ନଥିଲା । ଦଶରଥଙ୍କ ସତ୍ୟ ପାଳି ରାମଚନ୍ଦ୍ର ବନବାସ କରିଥିଲେ । ଆପଣଙ୍କ କଥା ଶୁଣି ମୁଁ ବାସ୍ତବିକ୍ ଦୁଃଖିତ ହେଲି । ସାମାନ୍ୟ କେତେଟା ଟଙ୍କା ପାଇଁ ଆପଣଙ୍କ ଘରେ ଏମିତି ମତଭେଦ ହୋଇପାରେ, ଏଇଟା ମୋର ଆଶା ନଥିଲା !"

"ଆପଣଙ୍କ ଉପଦେଶ ଶୁଣିବାକୁ ମତେ ବେଳ ନାହିଁ ! ଚାଲରେ ପିଲେ ।" ଭୋଳାନାଥ ବାବୁଙ୍କ ଆଖି ମିଟିମିଟି ହେଇଗଲା, ମୁହଁ ଉପରେ କବାଟ ପଡିବା ପୂର୍ବରୁ ଯେମିତି ହୁଏ ।

"ହଉ ଆପଣ ଟିକିଏ ଡାକିଦିଅନ୍ତୁ ତାଙ୍କୁ । ମୁଁ ଖାଲି ଦର୍ଶନ କରିଦେଇ ଚାଲିଯିବି ।"

"ନା, ସେ ଆସିପାରିବେ ନାହିଁ ପରା ମୁଁ ଥରେ କହିଦେଲି !"

"ଆପଣ କ'ଣ ତାଙ୍କୁ ଏଠି ଏମିତି ବନ୍ଦୀ କରି ରଖିଛନ୍ତି ? କୌଣସି ମରଦ ଏମିତି ମେଣ୍ଢା ହେଇଗଲେ ମତେ ଅନ୍ତତଃ ସମବେଦନା ଜଣାଇବାକୁ ସୁଯୋଗ ଦିଅନ୍ତୁ !" ମୁହଁରେ ଅଳ୍ପ ହସ – ସ୍ୱରରେ ତାଚ୍ଛଲ୍ୟ !

ଏହେଁ... ଏହେଁ... ଗଳା ସଫାକରି ଫଟ୍‌କିନା ବାହାରି ଆସିଲେ ଭୋଳାନାଥବାବୁ ଏବଂ ସେଇ ମୁହୂର୍ତ୍ତରେ ତାଙ୍କୁ ଦେଖି ଧଡାସ୍ କିନା କବାଟ ପକେଇଦେଲେ ଶିବାନୀ ଦାସ ! ବାହାରେ ସର୍ବୋଦୟ ଝୁଲା ପାଟି ମେଲାକରି କିଛି ସମୟ ଅନ୍ଧାରରେ ସେମିତି ରହିଗଲା ।

ହାଣ ମୁହଁରୁ ଛେଳିକୁ ଓଟାରି ଆଣିଲାପରି ଭୋଳାନାଥ ବାବୁ ଉଧୁରି ଆସିଲେ ଘର ଭିତରକୁ ଏବଂ ସେମିତି ଆଉ ଥରେ ଗଳା ସଫାକରି ସମସ୍ତଙ୍କୁ ନୀରବରେ ଚାହିଁ ହସିଦେଲେ ।

# ଅପତ୍ୟ

ବାପୁଗୁଡ଼ିକ ବେକୁବ୍ ବୋଲି ମୁଁ ସେଦିନ ଜାଣିଲି । ନ ହେଲେ ପ୍ରବଳ ଝଡ଼ ଆକାଶରୁ ଓହ୍ଲାଇଛି ନା ନାହିଁ, ସେଥିରୁ ଗୋଟାଏ ଲଣ୍ଠନଟିଏ ଧରି ତା' ବାରବର୍ଷର ବୁଦ୍ଧିଆଳ ପିଲାଟାକୁ ନାଁ ଡାକି ଡାକି ଖୋଜିଥା'ନ୍ତା ? ଝଡ଼ବର୍ଷା ହେଲେ ମଣିଷ ପିଲାଟା ଗଛଭଳି ଉପୁଡ଼ି ପଡ଼ିଲା ପର୍ଯ୍ୟନ୍ତ ତ ମେଲାରେ ଠିଆ ରହନ୍ତା ନାହିଁ? ସେ ଅବଶ୍ୟ ଆଶ୍ରା ଖୋଜି ନିଅନ୍ତା । ପଶୁପକ୍ଷୀ ସମସ୍ତେ ଖୋଜନ୍ତି । ବିପଦବେଳେ ନିଜକୁ ରକ୍ଷା କରିବାର ବୁଦ୍ଧି ଏବଂ ଦାୟିତ୍ୱ ଟିକକ ସମସ୍ତଙ୍କର ଅଛି; କିନ୍ତୁ ଆମ ବାପେ ତାହା ବିଶ୍ୱାସ କରି ନଥିଲେ । ଯଦି ଜଗତ୍‌ପିତା ତାଙ୍କରି ଭଳି ଜଣେ ହୋଇଥିବେ, ତା'ହେଲେ ସେ କେତେ ବର୍ଷାରାତିରେ ହାତରେ ଆଲୁଅଟିଏ ଧରି ପକ୍ଷୀଶାବକଗୁଡ଼ିକୁ ଖୋଜି ବୁଲୁଥିବେ, ଦେଖିବା କଥା । ଆହା ବିଚରା, ଅନେକ ବାଟହୁଡ଼ା ଅବୋଧ ବାଛୁରୀମାନଙ୍କୁ କେମିତି ସେ ଥଇଥାନ କରୁଥିବେ ? ସେ ବୋଧହୁଏ ସବୁଠାରୁ ବଡ଼ ବେକୁବ୍ । ମୁଁ ମୋ ନନାଙ୍କ ଉପରେ ଖୁବ୍ ଚିଡ଼ିଯାଇଥିଲି; କାରଣ ମୁଁ ମୋ ନିଜ ତଦାରଖ ନିଜେ କରିପାରିଲା ଭଳି ବୟସକୁ ଆସିସାରିଥିଲି, ଏ କଥା ସେ ସ୍ୱୀକାର କରି ନ ଥିଲେ । କୁନି ଅବୁଝା ବାଛୁରୀଟିଏ ପରି ମୋତେ ଯେତେବେଳେ ସେ ଘରକୁ ଅଡେଇ ନେଇଥିଲେ, ମୋର ଆତ୍ମସମ୍ମାନରେ ଘୋର ବାଧା ଆସିଥିଲା । ମୁଁ ସେଥିପାଇଁ ତାଙ୍କୁ ଆଦୌ କ୍ଷମା ଦେଇପାରି ନାହିଁ ।

ପ୍ରାୟ ପଚିଶ ବର୍ଷ ପରେ ମୋ ପୁଅଟିକି ଏଇ ଅକ୍ଟୋବର ସତରକୁ ଦଶ ପୁରି ଏଗାର ଚାଲିବ । କାଲି ପ୍ରାୟ ଦି'ପହର ଗୋଟାଏବେଳେ ସେ ଚାଲିଗଲା ତା' ସ୍କୁଲକୁ । ଗଣେଶଙ୍କୁ ପୁଷ୍ପାଞ୍ଜଳି ଦେଇ ଆଠଅଣା ଚାନ୍ଦା ବାବଦକୁ କିଛି ପ୍ରସାଦ ସେବନ ପରେ ଗୋଛା ଗୋଛା ହୋଇ ସବୁ ପିଲା ଫେରିଆସିଲେ । ଦୁଇ ତିନି ଘଣ୍ଟା ଭିତରେ ଫେରିଆସିବା ଉଚିତ୍; କନ୍ତୁ ବୁବୁ ଫେରିଲା ନାହିଁ । ଛୁଟିରେ ବସି ମୁଁ ମୋର ପ୍ରିୟ ଗ୍ରନ୍ଥର ପୁନରାବୃତ୍ତି କରୁଥାଏ । ପଢ଼ିବା ଭିତରେ ମୁଁ ଥରେ ଦୁଇଥର କାନେଇଛି, ସେ ଆସିଲା ନା ନାହିଁ ଜାଣିବାକୁ । ଶ୍ୱେତକେତୁ ଏବଂ ନଚିକେତା ସମ୍ବାଦ ପଢ଼ିଲାବେଳେ ମନ ଛାଡ଼ିଯାଇଛି ପଢ଼ାରୁ । ସେ ଆସିନାହିଁ ବୋଲି ମୋତେ ଜଣାଇବାକୁ କେହି ହୁଏତ ସାହସ କରୁ ନ ଥିଲେ; କିନ୍ତୁ ସେ ବାବାଦ ଗୋଟିଏ ଘନୀଭୂତ ସମସ୍ୟା ଘରର ପବନକୁ ବହଳିଆ କରିସାରିଥିବା ମୁଁ କ୍ରମଶଃ ଅନୁଭବ କଲି । ଅବଶ୍ୟ ଯେ କୌଣସି ସମୟରେ ସେ ଆସିଯାଇପାରେ ବୋଲି ମଧ ତା' ବୋଉ ଏକାଲୟରେ ରୋଡ୍‌କୁ ଚାହିଁବସିଥାଏ । ଶହ ଶହ ଶାଇକେଲ୍, ମଟର, ଟ୍ରକ୍, ସ୍କୁଟର ସାଇଁ ସାଇଁ ସେ ବାଟେ ଚାଲିଥାନ୍ତି । ସେଥିରେ ନଜର ନାହିଁ । ଖାକିପେଣ୍ଟ ଓ ଅଧାହାତର

ଧଳାଶାଟ ପିନ୍ଧା ଗୋଟିଏ କାଳିଆ ସୁନ୍ଦରିଆ ପିଲାକୁ ସେ ଖୋଜିଲାଗିଥାଏ ସେ ଗହଳି ଭିତରେ । ଆଖିରେ ପଲକ ନାହିଁ । ସେଇଠୁ ଶୁଣେଇଲାପରି ଥରେ ଶୁଭିଲା – "ହଇହେ, ଶୁଣୁଛ, ବୁବୁ ଏଯାଏଁ ଆସିଲା ନାହିଁ ଯେ, ସମସ୍ତେ ଆସିସାରିଲେଣି !" – ମୁଁ ହେଳାରେ କଥାଟାକୁ ଆଦୌ ଗୁରୁତ୍ୱ ନ ଦେବା ଭଙ୍ଗୀରେ କହିଲି..."ଆସୁଥିବ" । – ତା'ପରେ ଚେଷ୍ଟାକଲି ପଢ଼ିବାକୁ । ଧେତ୍, ଆଉ କି ହୁଏ । ସେଇ ବୁବୁ ମୁହଁରେ ମୁହଁରେ ଦିଶିଲା । ବେଲକୋନି ପାଖରେ ଯାଆ ଠିଆ ହେଲି । ଦୁଇହଳ ଆଖିରେ ଆମେ ଦୁହେଁ ରାଜରାସ୍ତାର ଶେଷମୁଣ୍ଡାଳି ଯାଏଁ ଛାଣିଗଲୁ । ବୁବୁର ପତ୍ତା ନାହିଁ । – "ମୋ ପିଲା କାହିଁ ଏଯାଏଁ ଆସିଲା ନାହିଁ ? ନୂଆ ସହର । କୁଆଡେ ବାଟବଣା ହେଇ ଗଲା କି ଆଉ ?" – ଗଭୀର ଉଦ୍ବଣ୍ଠା, ଭୟ, କାନ୍ଦ, ଉଦ୍‌ବେଗର ମିଶାମିଶି କାଉଁଳିଆ ସ୍ୱର ।

ମୁଁ ହଠାତ୍ ରାଗିଗଲି । – "କାହିଁକି ପୁତ୍ରମଣିକୁ ଛାଡିଦେଉଥିଲ ଏକୁଟିଆ ? ଏ ଘରେ ଶଳା ଶୂନ୍ୟରୁ ଆଣି ସମସ୍ୟାଟାଏ ଥୋଇଦେବ । ଗୋଟାକୁ ଝୁଣି ଖାଇବାକୁ ମନ । କୁଆଡେ ଯାଇ ମୁଁ ଏବେ ଖୋଜିବି କହିଲ ? ସେ ମକୁନ୍ଦା ଟୋକାକୁ ତା' କାନ କାଟି ହାତରେ ଧରେଇଦେଲେ ଜାଣିପାରିବ ନାହିଁ । ଗୋଟିପଣେ ଓଳିଆମୁହାଁ ମାମୁଁଙ୍କ ଗୁଣ ନେଇ ଜନ୍ମହେଇଛନ୍ତି ଆମ କୁଳଚନ୍ଦ୍ରମା !...ଏଇଠୁ ନାକସିଧା ଗଲେ ସ୍କୁଲ । ଯାଇ ଫେରିଆସିବାକୁ ଯଦି ବାଟ ପାଇବ ନାହିଁ, ମୁଁ କ'ଣ ଗଣ୍ଡିରା ବୋହିଲା ପରି ତାକୁ ପିଠିରେ ଲଦନ କରି ନଉଥିବି ଆଉ ଆଣୁଥିବି ସବୁଦିନ । ଛିଃ, ଶଳା ଅଖଡରେ ମରିଯିବ ପରା ଏ ଘରେ ।"

ଏତକ ଗରଗର ହେବା ଭିତରେ ଲୁଗାପିନ୍ଧା ସରିଥାଏ । ପଛରୁ ହାବେଳୀ ଟୋଡିଲା ଭଳି ଲାଗୁଥାଏ । ଅନ୍ଧାରରେ ଧୁସିହେଇ ବାଟ ନ ପାଇଲାପରି ଲାଗୁଥାଏ । ରାଗ ଫଣ ଫଣ ମୁହଁ ଦାନ୍ତ ପାଟି ଜାବି କୌଣସି ପ୍ରକାରେ ଯୋତା ହଳକ ଘୋଷାରିନେଇ ପିନ୍ଧୁ ପିନ୍ଧୁ ମୁଁ ଘର ସାମ୍ନା ପାରିହୋଇଗଲି । ସ୍କୁଟର୍ ବାହାର କଲାବେଳେ ଅଜଣା ଆତଙ୍କରେ କ'ଣଟାଏ ଭିତରେ ଥରିଯାଉଥାଏ । ଭୟଙ୍କର କ୍ରୋଧରେ ହାତ ଜାବ ପଡିଯାଉଥାଏ । ...ଯିବାକୁ ହେବ ସ୍କୁଲ୍ । ସେଇଠି କେହି ନ ଥିବେ । ସେ ହାରାମି ମାଷ୍ଟ୍ର ଯାଇଁ ପୁରୁଣା ବସ୍ତି ସେପାରି ।...ଯିବାକୁ ହେବ ଥାନା । ସେଠା ବାବୁମାନେ ଆଗ ଆମ ଠିକଣା ଆକଟ କରି ଟିପି ରଖିବେ । ଅଧରାତିରେ ଜେରା କରିବାକୁ ଲୋକ ପଠେଇବେ । ସେ ନିଦରୁ ଉଠେଇ ପଚାରିବ – ପୁଅ ଫେରିଲା ନା ନାହିଁ । ତାକୁ ଶେଯରୁ ଆଣି ଠିଆ କଲେ ପୁଣି ପଚାରିବ – "ଯେ ତ' ସେ ହଜିଲା ପିଲା ନୁହେଁ । ତାକୁ ଶେଯରୁ ଆଣି ଠିଆ କଲେ ପୁଣି ପଚାରିବ – "ଯେ ତ' ସେ ହଜିଲା ପିଲା ନୁହେଁ । ଯେ ଡୋରିଆ ପାଇଜାମା ପିନ୍ଧିଲା କେମିତି ? ୟା'ର ଖାକି ହାଫ୍‌ପେଣ୍ଟ କାହିଁ ? ଏବେ ଦୁହେଁ ଚାଲ ଥାନାକୁ ।" ଓଃ, କ'ଣ ଭାଷା ଅଛି ଏ ଅଶ୍ଳୀଳ କାର୍ଯ୍ୟଟି ଉପରେ ଠିକଣା ଢଙ୍ଗରେ ମନ୍ତବ୍ୟ ଦେବାକୁ ?...ଦାନ୍ତ କଡମଡ କରି ମାରିଲି ଗୋଟାଏ ଲାତ । ସ୍କୁଟର୍ ଡାକିଲା ନାହିଁ । ଆଉ ଚାରି ପାଞ୍ଚ ଲାତ ମାରି ମଧ କୌଣସି ଫଳ ହେଲା ନାହିଁ । ଭୀଷଣ ରାଗିଯାଇ ଢେଙ୍କି କୁଟିବା ନ୍ୟାୟରେ ତାକୁ ଷାଠିଏ ଥର କୁଦିଲି; କିନ୍ତୁ ହାୟ, ମଲା ଜନ୍ତୁଟାଏ ପରି ସ୍କୁଟର୍ ଖଣ୍ଡ ଶୋଇରହିଲା – ଉଁ ଚୁଁ କିଛି ନାହିଁ । ଥକ୍‌କା ହୋଇ

ଘଣ୍ଟାକୁ ଚାହିଁଲି । ପାଞ୍ଚଟା ବାସ୍ତବିକ ଏ ଯାଏଁ ବୁବୁ ନ ଫେରିବା ସାଙ୍ଘାତିକ ବ୍ୟାପାର । କ'ଣ କରିବା ?...ପୁଣି ବା ଗୋଡରେ କୁଦିଲି ଦଶ ପଚିଶ ଥର । କୁନ୍ଥେଇଲା ପରି ଟିକିଏ କ'ଣ ଶୁଭିଲା ଏବଂ ତୁହେଇ ତୁହେଇ ତାଉ ଚଢାଇବାରୁ ଯନ୍ତ୍ର ଶେଷକୁ ଗିବାଲ । – ଶାଳା – । ଏକ୍‌ସିଲେଟରଟାକୁ ଅଯଥା ତେଜି ତାକୁ ଦଣ୍ଡବିଧାନ କଲି । ବସିପଡି ଛାଡିଲି ଅଯଥା ବେଗରେ । ଭିଡ ବେଳ । ରିକ୍‌ସା, ସାଇକେଲ, ଚଲାମଣିଷ, ବୁଲାଗାଈ, ମତାଣିଆ କୁକୁର ଏବଂ ସେଇଭଳି ମତାଣିଆ ଆମ୍ବାସେଡୋର୍, ଫିଏଟ୍ ଆଦିଙ୍କୁ କଟେଇ ଯାଇ ପନ୍ଦର ମିନିଟ୍ ପରେ ପହଞ୍ଚିଲି ପୁତ୍ରମଣିଙ୍କ ବିଦ୍ୟାଳୟରେ । ଦରମେଲା ଗେଟ୍ ବାଟେ ପୁଞ୍ଜାଏ ସାଧାନ ଗାଈ ପଶିଯାଇ ହତା ଭିତରେ ବୁଲୁଥିବାର ଦେଖାଗଲା । ସ୍କୁଲର ଦ୍ୱାରେ ଦ୍ୱାରେ ତାଲା । ତା'ହେଲେ ଅନେକ ବେଳୁ ସମସ୍ତେ ଗଲେଣି ଚାଲି । ତେବେ ?...ଅଣ୍ଟାରୁ ତଳକୁ ହୁଗୁଳିଗଲା । ଓଠ ଶୁଖିଗଲା । ତାଳୁରୁ ତଳିପାଯାଏଁ ଗୋଟିଏ ବାମ୍ଫ ଓହ୍ଲେଇଗଲା ।

ଛକଯାଏଁ ଛୁଟିଗଲି । କାଳେ ସେଇଠି ଦିଗବାଉଳା ଟୋକା ଆଖି ମନ୍ଥି ମନ୍ଥି ଠିଆହୋଇଥିବ । ଏଠି କାହାକୁ ତର ଅଛି ଠିଆହେଇ ତାକୁ ପଚାରିଦେବ, କ'ଣ ହେଲା ବୋଲି ? ଛକ ଉପରେ ବସ ପାଇଁ ଆଟ ଦଶ ଜଣ ଧାଡି ବାନ୍ଧିଥାନ୍ତି । କେହି ସେଥିରୁ ଖାକି ହାପ୍‌ପେଣ୍ଟ ପିନ୍ଧି ନ ଥିଲେ । ମନ ହେଲା ପଚାରିବି । ଫେର୍ କେମିତି କେଜାଣି ଟିକିଏ ଡରିଗଲି । ଏମାନେ କିଛି କହିପାରିବେ ନାହିଁ । ଓଲଟି ଟାହୁଲି କରିପାରନ୍ତି ବା ମୁହଁକୁ ନ ଚାହିଁ ଚଣା ଖାଇପାରନ୍ତି । ଅଭଦ୍ର ଅମଣିଷ ଟାଉନିଆ – ଟାଉଟରିଆ ଶଳେ !...ସେଇଠୁ ସିଧା ଦାବିଦେଲି ଲେଭଲ କ୍ରସିଂ ଆଡିକି । ବାଟ ନ ପାଇ ସେଇଆଡେ ବୋଧହୁଏ ଚାଲିଗଲା । ଲାଇନ୍ ଆରପଟୁ କିଏ ଡହଁକେଇ ଦେଲା, ଆଉ ଏ ଇଡିଅଟ୍ ପଶିଗଲା ଆଖିବୁଜି ଯେତେବେଳେ ଅଣଷାଠି ଅପ୍ ଲାଞ୍ଜପିଟି ମାଡିଆସୁଥିଲା । ଏବଂ...ମୋ ଆଖିରୁ ଆଲୁଅ ଲିଭିଗଲା । ଟାଣିଗଲା ଦେହସାରା କାଠିପରି । ଗୋଟାଏ ରକ୍ତାକ୍ତ ମାଂସପିଣ୍ଡ, ଛିନ୍ନଛତ୍ର ହାଡର ପଞ୍ଜୁରୀ । ପ୍ରବଳ ହିଂସ୍ର ଲୁହାର ହାଉଁ ହାଉଁ ଗର୍ଜନ ଭିତରେ ଅତି କ୍ଷୀଣ ଗୋଟିଏ ବାଳୁତ ଆର୍ତ୍ତନାଦ । ମୁଁ ଜୀବନ ବିକଳରେ ବ୍ରେକ୍ ଦାବିଦେଲି । ସ୍କୁଟରଟା ପ୍ରାୟ ସେଇ ନିରୋଳା ଲେଭଲ୍ କ୍ରସିଂ ପାଖରେ ହିଁ ରହିଗଲା । ତା' ଇଞ୍ଜିନ ଲିଭିଗଲା । ଝାଳ ନିଗିଡିଗଲା ମୋ କପାଳରୁ । ଏଣେତେଣେ ଖୁବ୍ ସନ୍ତର୍ପଣରେ ଚାହିଁଦେଇ ଦେଖିଲି ଘଣ୍ଟାକୁ । ଛ'ଟା ବାଜିବାକୁ ଦଶ ମିନିଟ୍ । ସନ୍ଧ୍ୟା ନଇଁଆସିଲାଣି ।

ପୁଣି ଅଜଣା ଆତଙ୍କରେ ଭିତର ଥରି ଉଠିଲା । ଓହ୍ଲେଇ ପଡି ଷ୍ଟାର୍ଟ ଦେଲି । ଫାଳେ ଲାତରେ ହିଁ ଘାଇଁ କଲା ଗାଡି । ସାବାସ୍ ବେଟା !!...ରେଳଲାଇନ୍ ଆର ପାରି ଡାହାଣେ ମୋଡିଗଲି । ସେ ଅଞ୍ଚଳରେ ନୁଆଁଣିଆ ଘର । ଅନ୍ଧାରିଆ ବସ୍ତି । ନାନା ପ୍ରକାର ଚୋରା କାରବାର ସେଇଠି ହୁଏ । ଦିନବେଳେ ଏକୁଟିଆ ପାଇଲେ ମାଇକିନିଆଙ୍କୁ ସେଠି ଭିଡିନେଇ ଲାପତା କରିଦିଅନ୍ତି । ଟିଣ ଚାଟି ପଛଆଡେ ଛେଳିପୁଟା ଭଜା ସାଙ୍ଗକୁ ଦେଶୀ ମଦ ବିକ୍ରି ହୁଏ । ଡିବି ଆଲୁଅରେ ଜୁଆଖେଳ ହୁଏ । ସେଇଠି ସମସ୍ତେ ଫିସ୍ ଫିସ୍ କଥା କୁହନ୍ତି । ଖାଲି ପାଦରେ

ନିଃଶବ୍ଦରେ ଛପ୍‌ଛପ୍ ଚାଲିଯାଆନ୍ତି । ଗୋଟାଏ ମିନିଟ୍ ଭିତରେ ଛେଳିଟାଏ, କୁକୁଡାଟାଏ ବା ମଣିଷଟାଏ ହତ୍ୟା କରି ହଜମ୍ କରିନିଆ ହୁଏ । ମୋ କଲିଜା ଥରିଲା । ଧର ! ଯଦି ଏଠି ପିଲାଚୋର ଥାଆନ୍ତି । ନିଶ୍ଚୟ ଥିବେ । ଗୋଟାଏ ଗେରୁଆ ପଞ୍ଜାବିପିନ୍ଧା ଦରବୁଢ଼ା ହସି ହସି ବୁବୁକୁ ଡାକିନେଲା କି ଆଉ ! କ'ଣ ଟିକିଏ ଚଟେଇ ଦେଲା କିମ୍ବା ଶୁଙ୍ଘେଇଦେଲା । ଏବେ ହୁଏତ ସେ ଗଞ୍ଜେଇ ଶୋଷି ଯୋଜନା କରୁଥିବ, ଆଜି ରାତାରାତି କେମିତି ତାକୁ ରେଳରେ ଚାଲାଣ କରିଦେବ । ସେଇଠି ଭିକାରି ବ୍ୟବସାୟୀ ବୋଧହୁଏ ଜବରଦସ୍ତି ମୋ ବୁବୁର ବୁକୁ ଉପରେ ମାଡିବସି ତା' ଜିଭ କାଟିଦେବ । ଗୋଟାଏ ଆଖି ଫୁଟେଇଦେବ । ପାଟିରେ କନାବିଣ୍ଡା ମାଡି ଅସହାୟ ବାଳୁତର ଚିତ୍କାରଟିକୁ ନୀରବ କରିଦେବ । ଝାଳ ସରସର କୁନି କୁନି ହାତପାଦଗୁଡିଏ କେବଳ ନୀରବରେ ଛାଟି-ପିଟି ହୋଇ ପ୍ରତିବାଦ କରୁଥିବେ ।...ଧଡାସ୍‌କିନା ଦବେଇଲି ବ୍ରେକ୍ । ସେ ଦରବୁଢା ପିଲାଚୋର ତଣ୍ଟିରେ ଦାବିଦେଲି ମୋ ଗୋଇଠିକୁ । ଭିକାରି ବ୍ୟବସାୟୀର ତଣ୍ଟି ଉପରେ ଦାବିଦେଲି ମୋର ପଞ୍ଝା । ମାଛି ଅନ୍ଧାରରେ ଗୋଟାଏ ଲଙ୍ଗଳା ଟୋକା ବାଟ କାଟି ଧାଇଁଗଲା ମୋ ସାମନାରେ । ନିଆଁଟାଏ ଖସିଗଲା ମୋ ଛାତିରୁ । ଆଖି ବୁଜିହୋଇଗଲା ଛାନିଆଁରେ ।

ସଂବିତ୍ ଫେରିଲା ଚାରିଆଡକୁ ଚାହିଁ । ଆସ୍ତେ ଆଗେଇଲି । ଗୋଟାଏ ମିନିଟ୍‌ରେ ପୁଣି ବିଜୁଳି ଚମକିଲା ମୋ ଭିତରଯାକ । ମୁଁ ଚଉଁ ଚଉଁ ଚମକିଲି । ଆସି ରାତି ହୋଇଗଲା । କ'ଣ କରିବି ? ପାଦରୁ ରକ୍ତ ଶୋଷିହୋଇଗଲା ଉପରକୁ! ବାହାରପାଣି ଦେଖେଇଲା । ଧିମେଇଗଲା ଗାଡି ଅନିଶ୍ଚିତତାର ଧୂଆଁ ଭିତରେ । ଗୋଟାଏ ଭାରି ଜାଲ ମୋ ଚାରିଆଡେ ଘେରିଆସିଲା । ମୁଁ ତାକୁ ଆଡେଇ ପାରିଲି ନାହିଁ । ସନ୍ଧ୍ୟାର ପ୍ରଥମ ଆଲୁଅ ଜାଣିଦେି ଦୁଇଟା ବୋଝେଇ ଟ୍ରକ୍ ଗାଉଁ ଗାଉଁ ହେଇ ପାରିହେଇଗଲେ । ଗୋଟାଏ ଡାହୁକିଆ ଗୋଲି ରେକ୍‌ସା ଟଣ୍ ଟଣ୍ ବାଡେଇ ଚାଲିଗଲା ଖଟି ଆଡିକି...ପ୍ରବଳ ବେଗରେ ମୁଁ ଚିନ୍ତାକରି ଲାଗିଥାଏ । ...ହଠାତ୍ ଦିଶିଲା ଜଗମୋହନ, ମୋ ସାଙ୍ଗ । ସେଇ ଅଞ୍ଚଳରେ ଥାଏ । ତାକୁ କହିଲେ ସେ ହୁଏତ ସାହା ହେବାକୁ ଆଗେଇ ଆସନ୍ତା; କିନ୍ତୁ କାହିଁକି ଆସିବ ? ମୋ ପିଲା ହଜିଛି, ଖୋଜିବି ମୁଁ; ସେ ନୁହେଁ । ତା'ର ମା'ର ସାତ ମାସ ହେଲା ଅଙ୍ଗ ପଡିଯାଇଛି । ଓଷୁଅ ଆଣି ସେବା କରିବ ସିଏ, ମୁଁ ନୁହେଁ । ତୁଣ୍ଡରେ ଆହା, ଚୁ ଚୁ ମୁଁ କରେ । ସେ ବି ଦୁଆରମୁହଁରୁ ସେଭଳି କରିଦେଇପାରେ; ଉପଦେଶ ଦେଇପାରେ । ଏଠି ସମସ୍ତଙ୍କ ଅଭ୍ୟାସ ପ୍ରାୟ ଏଇଭଳି । ହଁ, ତେଇଁ ପଡିଥାନ୍ତା ଫକିରା । ମୋ ପିଲାଦିନ ସାଙ୍ଗ । ତା'ର ପାଣିକି ଡର ନାହିଁ କି ନିଆଁକୁ ଡର ନାହିଁ । ଗାଁ ପୋଖରୀରେ ପାଣି ଚାରିଢୋକ ପିଇ ସାରିଥିଲି । କବ କବ ହେଇ ବୁଡି ଗଲାବେଳକୁ ଫକିଲା ମୋ ଡେଣା ଧରି ପହଁରେଇ ଆଣିଥିଲା । ସେ ଏଠି ଥିଲେ ସାରା ସହର ଖେପି ଯାଇଥାନ୍ତା । ତା'ଦେଇ ପାଠ ହେଲା ନାହିଁ । ସେଇ ଗାଁରେ ଭୋକ ଓପାସରେ ମୂଲ ଲାଗି ପଡିଥିବ ।

ସର୍ଦାର ପଛି ପାରିହେଉଥାଏ । ଅସୁର ପରି ଟ୍ରକ୍‌ମାନ ଘୁମଉଥାନ୍ତି ରାସ୍ତା ଦି'କଡଯାକ । ମର୍ସିଡିଜ୍, ଲିଲାଣ୍ଡ । ବିରାଟ ବିରାଟ ଚକରେ ମେନ୍‌ସଫିଲ୍‌ଡ ଟାୟାର । ଗୋଟାଏ ଆମ୍ବାସୋଡାର

ଗାଡିକୁ ଦଳିଦେଇ ଚାଲିଗଲା ସେଦିନ ଗୋଟାଏ ଟ୍ରକ୍ । ଦଶବର୍ଷର ମଣିଷ ଛୁଆଟାଏ କିବା ଛାର୍ । ...ଧୂଳିଆ ରାସ୍ତା ଉପରେ ମୋତେ ଦିଶିଗଲା ଗୋଟାଏ ଚକତଳେ ଖାକି ହାଫ୍ ପେଣ୍ଟ ପିନ୍ଧା ଦୁଇଟି ଗୋଡ କେବଳ । ବାକିଯାକ ଚକ ସେପଟେ । ଦେହ ଶୀତେଇଗଲା । ମୁଣ୍ଡ ଝାଙ୍କି ମୁଁ ସଚେତ ହେଲି । ...ବିଶ୍ୱରଞ୍ଜନ ମୋ ଛାତ୍ର । ସେ ଏବେ ଏସ୍.ପି. ହେଲାଣି ବୋଲି କିଏ କହୁଥିଲା । ସେ ଏଠି ଥିଲେ ତା'ର ଫଉଜ ଲଗେଇ ଦେଇଥାନ୍ତା । ଘିଡିଘିଡି ବୁଲେଟ୍ ମୋଟର ସାଇକଲ ଉପରେ ଲୁହା ଟୋପିପିନ୍ଧା ଖୋଜାଳି ଗଳିକନ୍ଦି ଛାଣି ଆଣିଥାନ୍ତେ । ମୋତେ ତା' ଅଫିସ୍‌ରେ କପେ ଚା ଦେଇ ସେ ଆଶ୍ୱାସନା ଦେଉଥାନ୍ତା । ପୂର୍ବକଥା ସବୁ ପଚାରୁଥାନ୍ତା । ମୁଁ କେବଳ ହଁ ହାଁ କରି କଣ୍ଟା ଚୌକିରେ ବସିଥାନ୍ତି । ଚାହୁଁଥାନ୍ତି ବାରମ୍ବାର ବାହାରକୁ । ଗୋଟାଏ ମୋଟର ସାଇକେଲ ଫେରନ୍ତା । ସେଥିରେ କେହି ନାହିଁ । ଦୁଇ ନମ୍ବର ଫେରନ୍ତା । ଏମିତି ତିନି ଚାରି ପାଞ୍ଚ ଫେରନ୍ତେ । ବିଶ୍ୱରଞ୍ଜନ ବିରକ୍ତ ହୋଇ ଉଠିଆସନ୍ତା ବାରଣ୍ଡାକୁ ଏବଂ ସେତିକିବେଳେ ଗୋଟାଏ ମୋଟର ସାଇକେଲ୍ ପଛରେ ବୁଲୁକୁ ବସେଇ ଜଣେ ଟୋକା ଅଫିସର ହସି ହସି ଚାହାନ୍ତା । ମୋର ସମସ୍ତ ଆୟୁଷ ମୁଁ ତାକୁ ଅର୍ପି ଦେଇଥାନ୍ତି ।।

ଅନ୍ଧାର ଘନେଇ ଆସିଥାଏ । ନିଘଞ୍ଚ ମେଘ ଘୋଟି ଆସିଥାଏ ଆକାଶକୁ । କାକର ପବନ, ଧୂଳି ଏବଂ ଅତର୍କ୍କ ଛୁଟିଚାଲିଥିବା ସାଇକେଲ ଚଢାଳିଙ୍କୁ ଦେଖିବାକୁ ମୋର ଡର ନ ଥାଏ । ସ୍କୁଟର ଆଲୁଅରେ କିଛି କେବେ ଦିଶେ ନାହିଁ । ମୁଁ ଅନ୍ଧାର ଭିତରେ ଧୁସି ହେଲାଭଳି ଚାଲିଥାଏ । ସେଇଟା କୋଉ ଅଞ୍ଚଳ କହିବା ମୋ ପକ୍ଷେ ସମ୍ଭବ ନ ଥିଲା । ହଠାତ୍ ଲିଭିଗଲା ଆଲୁଅ, ସାରା ସହରରୁ । ଅତି ସୁକୁମାର ଆମର ବିଜୁଳୀ ସରବରାହ । ଟିକିଏ ତେଜା ପବନ ଲାଗିଗଲେ ସେ ଆଖି ବୁଜିଦିଏ । ଦାନ୍ତ କଡମଡ କରି ମୁଁ ରାଗିଗଲି । ଅକଥ୍ୟ ଅଶ୍ଳୀଳ ଗୁଡାଏ ବିଡ୍ ବିଡ୍ ହେଲାବେଳକୁ ସ୍କୁଟର ଖଣ୍ଡ ବନ୍ଦ ହେଇଗଲା । ଓହୋ...ଗର୍ଜି ଉଠିଲି ମୁଁ ଏବଂ ଯଥେଚ୍ଛା ବଜେଇ ଦେଇଗଲି ଗୋଇଠା ଉପରେ ଗୋଇଠା । କ'ଣ ଗୁଡାଏ ଚେପା ଟୋଲା ବୋଧହୁଏ ହେଇଗଲା । ଦାନ୍ତୁଆ ଧାରଟାଏ ବାଜି ହାଣିହୋଇଗଲା ଗୋଡରୁ ଖଣ୍ଡେ । ତା'ପରେ ବର୍ଷା ଆସିଗଲା, ବିଜୁଳି ଆସିଗଲା; କିନ୍ତୁ ଆଲୁଅ ଆସିଲା ନାହିଁ । ସ୍କୁଟରକୁ ଷ୍ଟେଣ୍ଡ ଲଗେଇ ମୁଁ ଷ୍ଟାର୍ଟ ଦେବାକୁ ପ୍ରୟାସ କଲି । ଇଜ୍ଜତ୍‌ଦାର୍ ମାଲିକର ଇଜ୍ଜତ୍‌ଦାର୍ ଗାଡି । ଶାଳା ବାଷ୍ଟାର୍ଡ । ଲାତ ଖାଇ ଆଦୌ ଉଁ କି ଚୁଁ କଲାନାହିଁ । କୁଦି କୁଦି ମୁଁ ନୟାନ୍ତ । ତୋଫାନିଆ ବର୍ଷା ଛେଚୁଥାଏ ବାଁ ଡାହାଣ ବଦଳ କରି ମୁଁ ସେ ମୁର୍ଦାରକୁ ଟିଆଁଉଥାଏ । କୌଣସି ମତେ ଆଉ ଷ୍ଟାର୍ଟ ନେଲାନାହିଁ । ଉଭୟେ ସେତେବେଳକୁ ସରବୁଡ ତିନ୍ତି ସାରିଥାଉ । ମୋର ଇଚ୍ଛା ହେଲା, ସେ ଶଳା ଗାଡି ଉପରେ ପଥର ଆଣି ଛେଚିଦେବାକୁ । ମନହେଲା, ତାକୁ ସେ ଉଚ୍ଚ ଓଭରବ୍ରିଜ୍ ଉପରୁ ପେଲିଦିଅନ୍ତି । ରେଳ ଲାଇନ୍‌ରେ ପଡି ଖଣ୍ଡ ଖଣ୍ଡ ହେଇଯାନ୍ତା ଶଳା । ...ଓଃ, କି ଆଶ୍ୱସ୍ତି ।

ମୁଁ ସ୍କୁଟରକୁ ସେମିତି ଛାଡି ଚାରିଆଡେ ଚାହିଁଲି । କଡ କଡ ହେଇ ବିଜୁଳି କୁଦେଇ ହେଇ ପଡିଲା । ଜାଣିଲି ସେଇଟା 'ରାଉଲି' ସିନେମା ପାଖ ଛକ । ସେଇଠୁ ସହର ଥାନା ଆଉରି ପାଞ୍ଚ

କିଲୋମିଟର ରାସ୍ତା । ମୁଁ ଶୂନ୍ୟକୁ ଚାହିଁ ପାଞ୍ଚଟା ଘୁସି ମାରିଲି ରାଗରେ । ତଳେ ଲାତ ମାରିଲି ଦଶ ପଚିଶ୍ । ପାଣି ଛିଟିକିଲା ମୁହଁ ପର୍ଯ୍ୟନ୍ତ । ମୁଁ ସେମିତି ବର୍ଷାରେ ଠିଆ ହୋଇ ଧୂଆଁ ଛାଡିଲି । କରେ କ'ଣ ? ମୋର ପ୍ରବଳ ଇଚ୍ଛା ହେଲା ଧାଇବାକୁ, 'ବୁବୁ' 'ବୁବୁ' ବୋଲି ଚିତ୍କାର କରି ଧାଇଁବାକୁ ଏବଂ ନିଜେ କୌଣସି ଟ୍ରକ୍ ତଳେ ବା ରେଳ ତଳେ ପଡି ଦି'ଖଣ୍ଡ ହୋଇଯିବାକୁ । ହାତରେ ଖଣ୍ଡେ ଲଣ୍ଠନ ଧରି ସେ ଅନ୍ଧାରରେ ମୁଁ ଖୋଜନ୍ତି ମୋର ହଜିଲା ପୁଅକୁ । କ'ଣ ହେଲା ମୋ ବୁବୁର ? ଏ ତୋଫାନ ବର୍ଷାରେ ସେ କ'ଣ କରୁଥିବ ? ବର୍ଷାପାଣି ମୋତେ ଲୁଣିଆ ଜଣାଗଲା । ଗାଲ ଉପର ଉଷୁମ ଲାଗିଲା । ନାକ ଭିତର ଜଳିଲା ଲୁହରେ । ମୋତେ ଦିଶିଲା ସଫଦରଜଙ୍ଗର ପଛପଟ ନିରୋଳା ରାସ୍ତାରେ ବୁଲି ଚାଲିଛି, ଖଣ୍ଡିଉଡା ଦେଇ କୁରୁଳିଲା ପରି କୁହାଟ ମାରି । ତିନିଶହ ଶାଗୁଣା ଥଣ୍ଟ ମେଲେଇ ଖୋପି ଆସୁଛନ୍ତି ତା' ଆଡିକି । ସେ ଭୟରେ କିଲ୍‌କାଲିଆ ରଡି ଛାଡି ଧାଉଁଛି । କେହି କୁଆଡେ ନାହାନ୍ତି । ରଖ ହରି । ରକ୍ଷାକର ଜନାର୍ଦ୍ଦନ, ଶରଣପଞ୍ଜର ପ୍ରଭୁ । ...ମୁହଁ ପୋଛିଲି । ଆରେ, ଦିଲ୍ଲୀ କଥା କାହିଁକି ମନକୁ ଆସୁଛି ? ପୁଣି ଦିଶିଗଲା ଝଡବତାସରେ ଅନେକ ଗଛ ଟଳି ପଡିଛି । ବଡିଖୁଣ୍ଟ ସବୁ ଶୋଇଯାଇଛନ୍ତି ରାସ୍ତା ଉପରେ । ଗୋଟାଏ ଶୁଖିଲା ଶିପଗଛ ଟଳିପଡିଛି । ଅନ୍ଧାରରେ ତା' ଡାଳରେ ଛନ୍ଦି ହେଉଛନ୍ତି ଶହ ଶହ ଅନ୍ଧ ବାଦୁଡି । ବଡ ବଡ କାଗଜ ଡେଣା ଠପ୍ ଠପ୍ କରି ସେମାନେ ଲାଖିଯାଉଛନ୍ତି ବୁବୁ ଦେହଯାକ । ସେ ଚିତ୍କାର କରୁଛି । ବତାସରେ ହଜିଯାଉଛି ମଣିଷଛୁଆର ବୋବାଳି । ...ମୋ ଗୋଡରେ ଠିଆ ହେବାର ଶକ୍ତି କାହିଁ ଚାଲିଗଲା । ମୁଁ ସେ କାଦୁଅରେ ଲଥ୍‌କିନା ବସିପଡିଲି । ମୁଣ୍ଡ ଉପରେ କୁଢେଇ ହେଉଥାଏ ମୂଷଳ ଧାରା ବର୍ଷା ।

ଏ ବର୍ଷାର ବୁବୁର ବୋଉ ସତେ କ'ଣ କରୁଥିବ ? ବୁବୁ ନାହିଁ । ତାକୁ ଖୋଜିବାକୁ ତା' ବାପ ଯାଇଛି, ଏ ବର୍ଷା ଅନ୍ଧାରରେ । ଅଚିହ୍ନା ସହର । ଅଜଣା ଅପରିଚିତ ମଣିଷ ଘର ପରି ନୀରବ, ପଥର ପରି ନିସ୍ପନ୍ଦ । କିଏ ଶୁଣିବ ତା' କଥା ? ଦୁଇଟି ଝିଅଙ୍କୁ ପାଖରେ ବସେଇ ସେ ହୁଏତ ସଞ୍ଜବଳିତା ନେଇ ବସିଥିବ କାତର ମୃଗୁଣୀ ପରି । ...ମୋତେ ପୁଣି କିଏ ଚେତେଇ ଦେଲା ଯେ ମୁଁ ବୁବୁକୁ ଖୋଜୁଛି । ଏଯାଏ ସେ ଘରକୁ ଫେରିନାହିଁ । ଧଡପଡ ହେଇ ଉଠିଲି । କେଜାଣି କିମିତି ମନେ ପଡିଗଲା ଯେ ତେଲ ହୁଏତ ସରିଗଲାଣି । ରିଜର୍ଭ ନଳୀ ମୋଡିଦେଲି । ଖୁବ୍ ନିଷ୍ପନ୍ଦ ଏବଂ କୌଣସି ଆଶା ନ ରଖି ଷ୍ଟାର୍ଟ ଦେଲି । ମୁହୂର୍ତ୍ତକରେ ଚେଇଁଉଠିଲା ମୋର ପରମ ପ୍ରିୟ, ମୋର ପରମ ମିତ୍ର, ମୋର ଚୈତକ । ବୋଧହୁଏ ତିନି ଚାରି ଜାଗା ଖଣ୍ଡିଆ ହେଇ ଜଳୁଥାଏ । ପେଣ୍ଟ ଚିରିଯାଇଥାଏ । ଡାହାଣ ଜୋତାର ତଳିପା ଛାଡି ଯାଇଥାଏ । ...କିନ୍ତୁ କ୍ୟା ପରବାଏ ? ମୁଁ ରାଣା ପ୍ରତାପ । ମୁଁ ସମ୍ରାଟ୍ । ମୋ ଗାଡି ଚାଲିଲା । ବର୍ଷା ଛାଡିଆସିଲା । ଦପ୍‌କରି ଜଳିଉଠିଲା ଆଲୁଅ । ଥାନାରେ ଯାଇ ରିପୋର୍ଟ କରିବି ନା ସିଧାଯାଇ ଘରେ ବୁଝିନେବି ? କଅଁଳିଆ ପବନରେ ଫୁଟନ୍ତ ଗୋଲାପକଢି ପରି ଆଶା ଦୋହଲିଲା । ଜାଲେ ବୁବୁ ଫେରିଆସିଥିବ । କାହିଁକି ନ ଫେରିବ ? ବିକଟାଳ ଅନ୍ଧାରରେ ଦାନ୍ତ ନଖ ଟେକି ଅତିକାୟ ଜନ୍ତୁ ଭଳି ଯେ ଡରଉଥିଲା, ତା' ଆଗରେ

ନିଧଡକ ମୁଁ ମନକୁ ମନ ଗୋଲାପଟିକୁ ଫୁଟେଇ ଚାଲିଲି ।...ସେ ଅବଶ୍ୟ ଫେରିଥିବ । ଟିକିଏ କ୍ଳାନ୍ତ ନିଶ୍ଚୟ । ଖୁବ୍ ଚାଲି ଚାଲି ତା'ର ବଡ ବଡ ଆଖି ଯୋଡିକ ଟିକିଏ ଖୋଳ ଖୋଳ ଦିଶୁଥିବ । ଝାଳ ଚିକ୍ ଚିକ୍ କରୁଥିବ ତା' କଲି ପାଖରେ । ତା' ବୋଉ କୋଳେଇ ନେଇଥିବ ତାକୁ ଦୁଆରମୁହଁରୁ । ତା' ବଡ ଭଉଣୀ ଦୁଇଜଣ ତାଳିମାରି ଖୁସି ହେଇଯାଇଥିବେ – "ବୁବୁ ଆସିଗଲା", "ବୁବୁ ଆସିଗଲା ।" ମୋତେ ସଂପୂର୍ଣ୍ଣ ଭୁଲିଯାଇଥିବେ । ତାକୁ ଖୁଆଇ ପିଆଇ ସାରିବା ପରେ ତା' ବୋଉ ତାକୁ ତାଗିଦ୍ କହିଥିବ – କେମିତି ତାକୁ ମୁଁ ଖୋଜିବାକୁ ବାହାରିଚି – ବର୍ଷା ବତାସୀ ଅନ୍ଧାରରେ କେତେ ହଇରାଣ ହେଉଚି । ଆହା ବିଚରା ମୁଁ ବର୍ଷାରେ ତିନ୍ତିଛି । ଗୋଡହାତ ଖଣ୍ଡିଆ କରିଚି । ଷାଠିଏ ଥର ମରିଚି । ବାଶଠି ଥର ଆତ୍ମହତ୍ୟା କରିଚି । କିନ୍ତୁ ସେ ବେକୁବ୍ ଟୋକା କାହିଁକି ବେଳ ଥାଇ ଫେରିଲା ନାହିଁ ? କାହିଁକି ଏ ଶଳେ ମତେ ଏମିତି ଘାଣ୍ଟି ଖାଉଛନ୍ତି ? ମୋ ଖଣ୍ଡିଆ ଗୋଡ ରାଉ ରାଉ ଜଳିଲା । ମୋତେ ପ୍ରବଳ ଭୋକ ହେଲା । ବର୍ଷାରେ ତିନ୍ତି ମୁଣ୍ଡ ବଥେଇଲା । ମୁଁ ନିଜକୁ ବୁଝେଇ ସୁଝେଇ ଚାଲିଥାଏ । ମୋ ଆଗରେ ଆତଙ୍କ । ପଛରେ ଭୟ । ବାଁର କ୍ରୋଧ, ଡାହାଣେ କ୍ରନ୍ଦନ । ଭିତରେ ଭୋକ, କ୍ଳାନ୍ତି, କାତରତା, ଅସହାୟ, ଏକାକୀପଣ । ଛନ୍ଦାବନ୍ଧା, ଛଟପଟ, ଆକୁଳ, ବିକଳ ବାପଟିଏ ! ମୁଁ ଆଉ ଥାନାକୁ ଗଲି ନାହିଁ । କାରଣ ସେଠିକି ଯିବାକୁ ମୋର ଭୟଙ୍କର କୁଣ୍ଠା, ଅସମ୍ଭବ ଭୟ । ଡାକ୍ତରଟି ଯେମିତି ନିଜର ଭଳି ଲାଗେ ମୋ କଷ୍ଟ ଶୁଣେ ବୋଲି, ଥାନାବାବୁ କାହିଁକି କେଜାଣି ସେମିତି ଲାଗେ ନାହିଁ । ମୋ ଠାକୁର ଯେତେବେଳେ କାଠ ପଥର ହେଇଯାଏ ସେତେବେଳେ ସେ ନିଷ୍କରୁଣ ନିର୍ମମ ଥାନାବାବୁ – ଆର୍ତ୍ତ ବୋବାଳି ଶୁଣିବାକୁ ତା'ର କାନ ନ ଥାଏ । ଆଉ ଯେତେବେଳେ ସେ ଦିଅଁ ହଜିଲା ଧନ ଆଣି ହାତରେ ଗୁଞ୍ଜି ଦେଉଥାଏ, ନାଡି ଦେଖି ଓଷୁଅ ଇଡି ଦେଉଥାଏ ପାଟିରେ, ମୁଣ୍ଡ ସାଉଁଳିଦିଏ, ସେ ମୋ ଡାକ୍ତର । ମୁଁ ଥାନାକୁ ଯିବିନାହିଁ । ରଖେ ହରି ମାରେ କୋନ୍, ମାରେ ହରି ରଖେ କୋନ୍ ! – ଶାଲା, ଏଇମାନଙ୍କ ବୋଲରେ ଗୋଟାଏ ଟ୍ରକ୍ ଡ୍ରାଇଭର ବା ପିଲାଚୋରର ଇଚ୍ଛାରେ କ'ଣ ଏମିତି କି ସେମିତି ହୋଇଯିବ ? ମୁଁ ଆଉରି ଜୋର୍‌ରେ ଘରମୁହାଁ ଛୁଟିଲି ।

ଆସି ପହଞ୍ଚିଲି ଦୁଆରମୁହଁରେ । ଆପଣମାନେ ମୋତେ ଘେରିଗଲେ । ମୁହୂର୍ତ୍ତକ ପାଇଁ ଫାଶି ପଟା ଉପରେ ନିଃଶ୍ୱାସ ରୋଧିନେଲି – କ'ଣ ହୁକୁମ କରିବେ ଆପଣମାନେ ! ମୋ କଲିଜା ବାହାରିଆସି କାନ୍ଥଘଣ୍ଟା ପରି ଶୂନ୍ୟରେ ଧକ୍ ଧକ୍ ହେଲା । ଅମୃତ ବର୍ଷିଦେଲେ ଆପଣ । – "ଆପଣ କୁଆଡେ ଏମିତି ରହିଗଲେ ? ଆପଣ ଯିବା ପଛେ ପଛେ ବୁବୁ ଆସି ଘରେ ପହଞ୍ଚିଗଲା ।" ମୁଁ ରାଗରେ ଜଳି ହଠିଲି । ଚକ୍ଷିନେଇଗଲି ସ୍କୁଟରକୁ ଗେରେଜ ପର୍ଯ୍ୟନ୍ତ । ସେ ଭିତରେ ତାକୁ ଥୋଇ ଦେଇ ଅନ୍ଧାରରେ ଢାଇକିନା ଗୋଟାଏ ଚଟ୍‌କଣା ପକେଇଲି ମୋ ନିଜ ଗାଲରେ ।

ଶାଲା, ବେକୁବ୍ କାହାଁକା !!

□

## ଘଟ

ଶ୍ୟାମାପ୍ରସନ୍ନ ବାବୁଙ୍କ ପୁରା ନାଁ ଶ୍ୟାମାପ୍ରସନ୍ନ ଛୋଟରାଏ । ବିସ୍ତର ଭଦ୍ରଲୋକ । ମିସେସ୍ ଛୋଟରାଏ ବି ଆହୁରି ନରମ, ଆହୁରି ଭଦ୍ର ।

ଶ୍ୟାମାପ୍ରସନ୍ନ ବାବୁ କିନ୍ତୁ ନାରାୟଣକୁ ପ୍ରଚୁର ଭଲପାଆନ୍ତି । ତାକୁ ଆଗ ଖାଇବାକୁ ନ ଦେଲେ ନିଜେ ଖାଆନ୍ତି ନାହିଁ । ତାକୁ ସଂଧ୍ୟାଯାକ ପାଖରେ ବସାନ୍ତି । ନାରାୟଣ ବି ବିସ୍ତର ଭଦ୍ର । ମୋଟେ ପାଟି ଫିଟାଏ ନାହିଁ । ସେମିତି ବସିଥାଏ । ଶ୍ୟାମାପ୍ରସନ୍ନ ବାବୁଙ୍କ ସିଗାରେଟ୍ ଧୂଆଁ ତାକୁ ଭଲଲାଗେ । ସେଦିନ ମିସେସ୍ ଛୋଟାରଏ କହୁଥିଲେ – ନାରାୟଣ ତା'ହେଲେ ଏଥର ସିଗ୍ରେଟ୍ ଅଭ୍ୟାସ କରୁ – ତା'ର ତ ବାକି ସବୁ ହେଇଗଲାଣି । ରମ୍ ଟିକିଏ ନ ହେଲେ ମାଂସ ରୁଚୁ ନାହିଁ । ଜଳଖିଆରେ କେଲା, କମଳା, ସେଓ । ଭାବୁଛି ଏଣିକି ଯଦି ସେ ସିଗ୍ରେଟ୍ ଫୁଙ୍କେ, ମୁଁ ତା' ପାଇଁ ଖଣ୍ଡେ ନାଇଟ୍ ଗାଉନ୍ ବି କରିଦେବି । ସେ ହେଇଯାଉ ଗୋଟାପଣେ ଭଦ୍ରଲୋକ! ନା' କ'ଣ କହୁଛ ? – ଉଭୟେ ହସିଲେ । ନାରାୟଣ କିନ୍ତୁ ସେମିତି ନିଶ୍ଚଳ ବସିଥାଏ । ନାରାୟଣ ଶ୍ୟାମାପ୍ରସନ୍ନ ବାବୁଙ୍କ କୁକୁର ।

ଏ ନାଁଟି ସକାସେ ଶ୍ୟାମାପ୍ରସନ୍ନ ବାବୁ ସଦାବେଳେ କୈଫିୟତ୍ ଦେବାକୁ ପ୍ରସ୍ତୁତ । ବେଳେବେଳେ ଉପରେ ପଡି ମଧ ବୁଝେଇ ଦିଅନ୍ତି । ...ଝିପିଝିପି ବର୍ଷା ହେଉଥିବା କୌଣସି ଏକ ସଂଧ୍ୟାରେ ସେ ବଙ୍ଗଳାକୁ ଫେରିଥାନ୍ତି । ଏ ବୁଲା କୁକୁରଟିକୁ ବାରଣ୍ଡାରେ ଆବିଷ୍କାର କଲେ । ଯାଙ୍କୁ ଦେଖୁ ଦେଖୁ ସେ ଲାଞ୍ଜ ଟିପି ଗେଲହେଲା, ଗୋଳେି ହେଲା ଦେହରେ – ବହୁ ଆଗରୁ ସତେ ବା ଚିହ୍ନାଚିହ୍ନି ସରିଯାଇଛି । କେମିତି କେଜାଣି ଶ୍ୟାମାପ୍ରସନ୍ନବାବୁ ବି ତାକୁ ତଡିଦେଇ ପାରିଲେ ନାହିଁ । ବେଶ୍ ବଳୁଆ କସରା କୁକୁରଟିଏ, କିନ୍ତୁ ବିଶୁଦ୍ଧ ଦେଶୀ । ମିସେସ୍ ଛୋଟରାଏ ସେତେବେଳେ ନଥା'ନ୍ତି । ତାଲା ଫିଟେଇ ଶ୍ୟାମାପ୍ରସନ୍ନବାବୁ ଘରେ ପଶିଲେ । କୁକୁର ମଧ ବିନା ଦ୍ୱିଧାରେ ଭିତରେ ପଶି ଚାରିଆଡକୁ ଚାହିଁଲା । ଅଳସ ଭାଙ୍ଗିଲା । ଗାଲିଚାରେ ଆଗ ଗୋଡ ଯୋଡିକ ଉପରେ ଥୋମଣି ରଖି ଆଖିମଟକା ମାରିଲା । ଖୁବ୍ ଲମ୍ବା ନିଃଶ୍ୱାସଟିଏ ଛାଡି ଚାହିଁରହିଲା ଝିପିଝିପି ଅନ୍ଧାରକୁ । ଶ୍ୟାମାପ୍ରସନ୍ନବାବୁଙ୍କୁ ଆମୋଦ ଲାଗୁଥାଏ । ଏ କୁକୁର ତା'ହେଲେ ଅନେକ ଆଗରୁ ତାଙ୍କୁ ଜାଣିଛି ନା କ'ଣ ? ଏ ଘରେ ହୁଏତ ତାଙ୍କ ଆଗରୁ ସେ ଥିଲା । ଏ ସାହେବ ବଙ୍ଗଳାଟା ଶହେ ବର୍ଷ ପୁରୁଣା । କେତେ ଲୋକ ଏଠି ରହିଥିବେ । ଏ ବି ବୋଧହୁଏ ଥିଲା । ଲୁଗା ବଦଳକରି ଶ୍ୟାମାପ୍ରସନ୍ନବାବୁ ସୋଫାରେ ବସିଲେ । ଅନ୍ୟମନସ୍କଭାବେ କ'ଣ ଟିକିଏ ପିଉଥାନ୍ତି ଏବଂ ପତ୍ରିକା

ଉପରେ ଆଖି ବୁଲାଉଥାନ୍ତି । ଖୁବ୍ ନିଛାଟିଆ ବଙ୍ଗଳା । ଝରକାପାଖେ ମୋଟା ମୋଟା କ୍ରୋଟନ୍ ପତ୍ର ଉପରେ ଠପ୍ ଠପ୍ ବର୍ଷା । ମଝିରେ ଟାଙ୍କୁ ଲାଗିଲା ଯେ ଆଉ ଜଣେ କିଏ ତାଙ୍କ ପାଖରେ ଅଛି । ସେ ଚାହିଁଲେ । ଗାଲିଚା ଉପରୁ ମୁହଁ ଟେକି ସେ କୁକୁରଟି ଟାଙ୍କୁ ଅନେଇଲା । ତା' ମୁହଁରେ ବାଁପାଖରୁ ଆଲୁଅ ପଡୁଥାଏ । ଶ୍ୟାମାପ୍ରସନ୍ନବାବୁଙ୍କୁ ହସ ମାଡିଲା । କୁକୁରଟା ଦିଶିଲା ମଣିଷ ପରି । ନାକଟି ସାମାନ୍ୟ ଘୁଞ୍ଚେଇଦେଇ ଗାଲ ଯୋଡିକୁ ଅଳ୍ପ ଟୁମେଇଦେଲେ ଏଇଟା ତ' ବେଶ୍ ପରିଚିତ ମୁହଁଟିଏ । ଫିକ୍‌କିନା ମନକୁ ମନ ହସି ଶ୍ୟାମାପ୍ରସନ୍ନବାବୁ ଗ୍ଲାସଟିକୁ ରଖିଦେଲେ । କହିଲେ, "ବେ, ନାରାୟଣ, ତୁ ଏଠି କେମିତି ?" – ଦଶ ବର୍ଷ ତଳେ ଏକୁଟିଆ ମାଳ ଅଞ୍ଚଳରେ ଥିଲାବେଳେ ଅଧାତିଆ ଦେଶିଆ ମଣିଷଟିଏ ତାଙ୍କ ପାଖେ ରହି କାମ କରୁଥିଲା । ସେଇ ନାରାୟଣ । ଅବିକଳ ସେଇ ଚେହେରା । – ନା, ନା, ଶ୍ୟାମାପ୍ରସନ୍ନବାବୁଙ୍କୁ ନିଶା ଧରି ନଥିଲା । ଏତେ ସହଜରେ ତାଙ୍କୁ ନିଶା ଧରେ ନାହିଁ । ନାରାୟଣକୁ ଦେଖି ନ ଚିହ୍ନିବାର ବି ଉପାୟ ନାହିଁ । ତଥାପି ସେ ଥଟ୍ଟା କରି କହିଥିଲେ, "ଆବେ, ତୁଇ ସେଇ ନାରାୟଣ ନା ?" କୁକୁର ଭଦ୍ରଭାବରେ ଅଳ୍ପ ହସି ମୁଣ୍ଡ ତଳକୁ କରିନେଇଥିଲା ।

ସର୍ବପ୍ରଥମେ ମିସେସ୍ ଛୋଟରାଏ ଏ କୈଫିୟତ୍ ଶୁଣି ହସିଥିଲେ, "ବୁଝିଲି, ତୁମଭଳି ଖିଆଲି, ସୃଷ୍ଟିଛଡା ମଣିଷ ଏ ସଂସାରରେ ନ ଥିବେ । ମୁଁ ସେଥିପାଇଁ ତୁମକୁ ଏକୁଟିଆ ଛାଡି କୁଆଡେ ଯାଏନାହିଁ । କେତେବେଳେ ମୁଣ୍ଡକୁ ଯେ କ'ଣ ଯୁଟିଯିବ, କିଏ କହିପାରେ !"

"ତା' ଠିକ୍ । କିନ୍ତୁ ନାରାୟଣକୁ ପାଖରେ ବସେଇ ବସେଇ ମଣିଷ କଲା କିଏ ? କଦଳୀ, କମଳା, କିଏ ଖୁଆଇଲା ?" – ଶ୍ୟାମାପ୍ରସନ୍ନବାବୁଙ୍କ ମୁହଁରେ ଟିକିଲେଇଲାଭଳି ପାତଳ ଟିକିଏ ହସ । ମିସେସ୍ ଛୋଟରାଏ ଚଟ୍‌କିନା ଅଭିଯୋଗ କଲେ, "ଆଚ୍ଛା, ତାକୁ ଆଗ ମଦ ଅଭ୍ୟାସ କରେଇଲା କିଏ ?...କୁକୁରଟାର ଆଦତ୍ ବିଗାଡିଲା କିଏ ?" – ସେମିତି ଟିକିଏ ହସ ।

ଭଦ୍ରଲୋକ ଏଥର ଖୋଲାରେ ହସିପକେଇଲେ । – "ତୁମର ମନେଅଛି ନା ସେଦିନ..."

ସେଦିନ ସଂଧାରେ ବାହାର ପିଣ୍ଡାରେ ଶ୍ୟାମାପ୍ରସନ୍ନବାବୁ ବସିଥାନ୍ତି । ପାଖ ଚୌକିରେ ବସିଥାନ୍ତି ମିସେସ୍ ଛୋଟରାଏ । ନାରାୟଣ ଟିକିଏ ଦୂରକୁ ପେଟେଇ ଶୋଇଥାଏ । ରାନ୍ଧୁଣିଆ ଟୋକା ସିଝା ମାଂସ ଆଣି ଥୋଇଲା । ମାଂସ ରନ୍ଧା ହେଲାବେଳେ ଶ୍ୟାମାପ୍ରସନ୍ନବାବୁ ତାକୁ ତିନି ଚାରି ପର୍ଯ୍ୟାୟରେ ଖାଇବାକୁ ଭଲପାଆନ୍ତି । ସିଝିଲା ପରେ, କଷିଲା ପରେ, ଝୋଳଟା ଜମିଆସିଲାବେଳେ ଏବଂ ଶେଷରେ ରାଗ, ଲୁଣ, ମସଲା ଠିକ୍ ପାଇଛି ନା ନାହିଁ ଜଣେଇଦେଇ ମିସେସ୍‌କୁ ସେ ତଦ୍ୱାରା ଯଥେଷ୍ଟ ସାହାଯ୍ୟ କରନ୍ତି ବୋଲି ତାଙ୍କର ବିଶ୍ୱାସ ।

ଟୋକା ମାଂସ ଆଣି ଥୋଇଦେଇ ଚାଲିଗଲା । ଶ୍ୟାମାପ୍ରସନ୍ନବାବୁ ରମ୍ ପିଉଥାନ୍ତି । ତାଙ୍କର ମନେପଡିଲା ଯେ ବହୁଦିନ ତଳେ ବି ରମ୍ ପିଇଥିଲେ । ଦିନେ କୌଣସି କାରଣରୁ ଗସ୍ତ ବାତିଲ୍ କରି ସେ ଫେରିଆସିଥାନ୍ତି । ଦେଖିଲେ ତାଙ୍କ ନୌକର ନାରାୟଣ ସୋଫା ଉପରେ ଅବିକଳ ତାଙ୍କ ଭଳି ବସିଛି । ସେମିତି ଗୋଟାଏ ଗ୍ଲାସରୁ ରମ୍ ପିଉଛି । ସେତେବେଳକୁ ସେ ଢେର୍

ପିଇସାରିଥାଏ । ତା' ଆଖି ଫାଟିପଡୁଥାଏ । ପ୍ରଥମେ ତ ଯାଙ୍କୁ ଦେଖି ସେ ଠକ୍ ଠକ୍ ଥରିଲା । ଆତଙ୍କ ଲେସିହେଇଗଲା ତା' ଚେହେରା ଉପରେ । ତା'ପରେ ସେ ଟଳମଳ ଠିଆହୋଇ କେମିତି ଗୋଟାଏ ଅଲାଜୁକ ହସରେ ପାଟି ମେଲେଇ ମିଟିମିଟି ଚାହିଁଲା । ଶ୍ୟାମାପ୍ରସନ୍ନବାବୁଙ୍କୁ ଲାଗିଥିଲା ଯେ କୁକୁରଟିଏ ଯେମିତି ତାଙ୍କୁ ଅନେଇଚି !

ସେ ଅନେକ ଦିନ ତଳର କଥା ।

ସେଦିନ ସନ୍ଧ୍ୟାରେ କିନ୍ତୁ ସିଝା ମାଂସ ସାଙ୍ଗେ ରମ୍ ଖାଇଲାବେଳେ ତାଙ୍କ ଆଖିକୁଣ କୁଞ୍ଚେଇଗଲା । ସେ ନାରାୟଣକୁ ଚାହିଁଲେ । ମନେ ମନେ କହିଲେ – ରମ୍ ଖାଇବୁ ? କୁକୁରର କାନ ଠିଆ ହୋଇଗଲା । କୁକୁରମାନଙ୍କ କାନ ସେମିତି ଠିଆ ହୁଏ । ତେବେ ଦେଖାଯାଉ । ଶ୍ୟାମାପ୍ରସନ୍ନବାବୁ ରମ୍ ଥାଳିଆଟିଏ ମଗେଇଲେ । ଦୁଇଖଣ୍ଡ କଣ୍ଟାଥିବା ବଡ ବଡ ଟେଳାମାଂସ ଥୋଇ ଭଲକରି ରମ୍ ଢାଳି ତଳେ ରଖିଦେଲେ । ନାରାୟଣ ଉଠିଆସି ପ୍ରଥମେ ଟିକିଏ ଶୁଙ୍ଘିଲା । ଟିକିଏ ଅଟକକରି ଜିଭ ଅଗରେ ଚାଟିଲା । ତା'ପରେ ଫେରିଗଲା ତା' ଜାଗାକୁ । ମିସେସ୍ ଛୋଟରାଏ ଥଟ୍ଟା କରିଥିଲେ, "ବୁଝିଲ, ତୁମ ମୁଣ୍ଡ ଖରାପ ହେଲାଣି ! ସେଥିପାଇଁ କ'ଣ କୁକୁର ବିଚରା ମଣିଷ ହୋଇଯିବ ନା କ'ଣ ?" ଶ୍ୟାମାପ୍ରସନ୍ନବାବୁ କିଛି ନ କହି କୁକୁରକୁ ଚାହିଁ ରହିଲେ । ତାକୁ ଦେଖେଇ ଦେଖେଇ ରମ୍ ପିଇଲେ । ମନେ ମନେ କହିଲା ଭଳି ଲାଗୁଥାଏ ଯେ, ନାରାୟଣ – ତୁ' ପରା ଲୁଚେଇ ଲୁଚେଇ ମୋର ଅଧେ ରମ୍ ପିଇଚୁ ! ଏଇନେ ଭଦ୍ରଲୋକ ଭଳି ଲାଜଉଚୁ କାଇଁକି ଯେ ! ...ତୋର କ'ଣ କିଛି ମନେ ପଡୁନାହିଁ ? ମିସେସ୍ ହସୁଥାନ୍ତି – "ତାକୁ କ'ଣ ମେସ୍‌ମେରାଇଜ୍ କରୁଚ ନା କ'ଣ ? ଶ୍ୟାମାପ୍ରସନ୍ନ ବାବୁ ଚୁପ୍ । ନାରାୟଣର ଉପରପଟା ଥରେ ଦୁଇଥର ଟେକିହେଇ ଆଖି ଦାଉଦାଉ ଦିଶିଲା । ଭୂଲତା ଦୁଇଟି କୁଞ୍ଚେଇଗଲା । ସେ ଲାଜେଇ ଲାଜେଇ ଉଠିଲା । ପ୍ଲେଟ୍‌ରୁ ଖଣ୍ଡିଏ ମାଂସ ଖାଇଲା । ତା'ପରେ ଦୁଇଗୋଡ ମଝିରେ ପ୍ଲେଟ୍‌ଟି ରଖି ଅତି ଆନନ୍ଦରେ ବେଶ୍ ଚାଟିଚୁଟି ସବୁ ଖାଇଗଲା । ମିସେସ୍ ହସୁଥାନ୍ତି । ଶ୍ୟାମାପ୍ରସନ୍ନ ବାବୁ ନାରାୟଣ ! ଦେଖୁନା ତାକୁ ! ଏତିକିବେଳେ କୁକୁରଟି ତାଙ୍କୁ ଚାହିଁ ପାଟି ଫାଡୁଙ୍ଗା କରି ସେ ଦେଶୀ ଅଲାଜୁକ ପରି ହସିଥିଲା । ଗୋଡ ଟଳମଳ କରି ଶୁଣ୍ଢ ଝୁଲେଇ ଠିଆହେଲା ।" ଏଇ ହେଲା ଶ୍ୟାମାପ୍ରସନ୍ନ ବାବୁଙ୍କର କୁକୁରଟିର କଥା । ମିସେସ୍ ଛୋଟରାଏ ଭାରି ଭଦ୍ର ମଣିଷ । ତାଙ୍କୁ ଲାଗେ ଏସବୁ ଅଧେ ସତ, ଅଧେ ମନଗଢା । କିନ୍ତୁ ସେ ବୁଝିପାରନ୍ତି ନାହିଁ, କାହିଁକି ନାରାୟଣ ଅନ୍ୟ ଦେଶୀ କୁକୁର ଭଳି ଅଯଥା ଭୁକେ ନାହିଁ ? କାହିଁକି ସେ ଏତେ ଅଦ୍ଭୁତ ଭାବରେ ଭଦ୍ର ? ଆଉ ବି ସେ ବୁଝିପାରନ୍ତି ନାହିଁ, କେମିତି ଏ ବୁଲା କୁକୁରଟି ଦେଖୁ ଦେଖୁ ଶ୍ୟାମାପ୍ରସନ୍ନ ବାବୁଙ୍କୁ ଚିହ୍ନା ମାଲିକ ଭଳି ମାନିଗଲା । କୋଉଠୁ ଆସିଲା ସିଏ ? କେମିତି ଆସିଲା ଏବଂ କାହିଁକି ?...ବେଳେବେଳେ ନାରାୟଣ ତାଙ୍କ ପାଦ ପାଖେ ଚେକାମାରି ଶୋଇଥାଏ । ମିସେସ୍ ଛୋଟରାଏ କିଣ ଗୋଟାଏ ବୁଣୁଥାନ୍ତି । କେମିତି ଟିକିଏ ପାଦ ବାଜିଗଲେ ସେ ବରଂ ଚମକିପଡନ୍ତି; କିନ୍ତୁ ନାରାୟଣ ନିଶ୍ଚଳ ଶୋଇ ରହେ – ଆଶ୍ଚର୍ଯ୍ୟ !...ଚଟ୍‌କିନା ଦିନେ ଉଠିପଡିଲା ନାରାୟଣ ! – ପଛେଇ ଯାଇ କ'ଣଟାଏ ଝାମ୍ପିନେଲା ଗାଲିଚା ଉପରୁ –

ମିସେସ୍ ଛୋଟରାଏଙ୍କ ଠିକ୍ ପାଦତଳୁ । ଦେଖିଲାବେଳକୁ ଚାରିଖଣ୍ଡେ ଲମ୍ବର ତେନ୍ତୁଳିଆ ବିଛା ! ସେ ଚମକି ଉଠିପଡିଲେ । ନାରାୟଣ ଗର୍‌ଗର୍ ହୋଇ ତାକୁ ଚାହିଁଲା – ତମେ ବସୁନା ସାଆନ୍ତାଣି ! ମୁଁ ଏ ବଦମାସ୍‌ଟାକୁ ଦେଖିନଉଚି ! ତମେ ଏମିତି କାହିଁକି ଚମକୁଚ ! ତାଙ୍କୁ ସେ କଥାସବୁ ଶୁଣିଲାପରି ଲାଗିଲା । ଶ୍ୟାମାପ୍ରସନ୍ନବାବୁ ସଂଧ୍ୟାରେ ଫେରି ଶୁଣିଲେ । ଆରାମଚୌକିରେ ପାଇଜାମା ପଞ୍ଜାବି ପିନ୍ଧି ମୋଟା ସିଗାର ପିଇଲାବେଳେ କହିଲେ – "ମୁଁ ଜାଣେ ପରା, ନାରାୟଣ ମୋଟେ ଡରେ ନାହିଁ, ବିଶ୍ୱାସରେ ଖିଲାପ କରେ ନାହିଁ । ଜଙ୍ଗଲ ଡାକବଙ୍ଗଳାରେ ଗୋଟାଏ ନାଗସାପକୁ ଫଣା ତଳୁ ଧରିନେଇଥିଲା – ନ ହେଲେ ସେ ତାଙ୍କୁ ପଛଆଡୁ ଚେଟ ମାରିଥାନ୍ତା ! ତାକୁ ସାଙ୍ଗରେ ନେଇ ସେ ଅନେକ ଥର ବିପଦରୁ ମୁକୁଳି ଆସିଛନ୍ତି ।"

କିଛି ସମୟ ସରୁ ସରୁ ଧୂଆଁ ଗାର ପଛଆଡେ ଶ୍ୟାମାପ୍ରସନ୍ନ ବାବୁଙ୍କ ଆଖି ଲୁଚିଗଲା । ମିସେସ୍ ଛୋଟରାଏ ମଧ୍ୟ ଚୁପ୍‌ଚାପ୍ ବସିଥାନ୍ତି । ରମ୍ ଥାଳିଆରୁ କିଛି ରମ୍ ଚାଟିଦେଇ ନାରାୟଣ ଘୁମଉଥାଏ ।

କେତେବେଳେ ପରେ ଶ୍ୟାମାପ୍ରସନ୍ନ ବାବୁ ବାଁ ହାତରେ ଗ୍ଲାସଟି ଉଠାଇ ମୁହଁ ଟେକି ଚାହିଁଲେ । କହିଲେ – "ମୋର ମନେଅଛି, ଦିନେ ସକାଳୁ ସେଠିକା ଡାକବଙ୍ଗଳାରେ ନିଦରୁ ଉଠି ପଦାକୁ ବାହାରିଆସି ଦେଖିଲି ଗୋଟିଏ ଲୋକ ଦୁଆରେ ବସିଚି । କିଛି ନ କହି ମୁଁ କେବଳ ତାକୁ ଚାହିଁ ଠିଆହେଲି, ସେ ମୁଣ୍ଡ ନୁଆଇଁ ନମସ୍କାର କଲା । ମୋତେ ଚାହିଁ ଖୁବ୍ ଅଳ୍ପ ହସି କହିଲା – ଆପଣ ମୋର ସବୁ; ଯାହା କହିବେ ତା' କରିବି ।"

"ତମେ ତାକୁ ଆଗରୁ ଜାଣି ନ ଥିଲ ?"

"ଉହୁଁ !"

"ସେ ତା'ହେଲେ ଠାଉକିଆ ! ତୁମ ପାଖରେ ଖଞ୍ଜି ହେଲେ ଫାଇଦା ମାରିବା ପାଇଁ ଆସି ପହଞ୍ଚିଥିଲା; କିନ୍ତୁ ହୁଏତ ଗରିବ ବିଚରା । ଖାଇବାକୁ ନ ପାଇ ଆସିଥିଲା ପେଟ ପୋଷିବାକୁ ।"

"ଉହୁଁ !"

ଶ୍ୟାମାପ୍ରସନ୍ନବାବୁ ସିଗାର୍ ଟାଣୁଥାନ୍ତି ।

"ସେସବୁ କଥା ନୁହେଁ । ନାରାୟଣର ଜମିବାଡି, ପଇସାପତ୍ରର ଅଭାବ ନ ଥିଲା । ସେ ମୋଟଉପରେ ମୋତେ ଦେଖିଲା ପରେ କ'ଣ ଭାବି ଚାଲିଆସିଲା ମୋ ପାଖକୁ ।"

"ହଅଅ, ତୁମକୁ ଦେଖି ଦେଖି ସେ ପ୍ରେମ କରିପକାଇଲା ନା କ'ଣ ?" ମିସେସ୍ ଛୋଟରାଏ ପରିହାସ କଲେ ।

"ତମେ ସିନା ଏ ଲୋକଟିକୁ ଦେଖି ଦେଖି ଦେହଘଷା କରିସାରିଲଣି; କିନ୍ତୁ ଯାକୁ ଦେଖିବାମାତ୍ରେ ଯେ ଆଉ ଜଣେ ପ୍ରେମ କରିପାରେ, ଏକଥା କ'ଣ ତୁମକୁ ବୁଝାଇବାକୁ ପଡିବ ?"

ଶ୍ୟାମାପ୍ରସନ୍ନ ବାବୁଙ୍କର ଅଭିଜାତ ଚେହେରା ଆଲୁଅରେ ଦାଉଦାଉ କରୁଥାଏ । ତଥାପି ସାଧାରଣ ନାରୀଜନପରି ମିସେସ୍ ଛୋଟରାଏ କହିଚାଲିଲେ, "ହଅଅ, ପ୍ରେମ ନା ଆଉ କିଛି ?"

"ପ୍ରେମ ନ ହେଲା ଏବେ; କିନ୍ତୁ ନାରାୟଣ ଯେ ମୋତେ ଅସମ୍ଭବ ରକମ ଭଲ ପାଉଥିଲା, ଏଥିରେ ସନ୍ଦେହ ନାହିଁ । କାହିଁକି ସେ ହାରାମି ଏମିତି ମୋତେ ଗରିଆଡୁ ଗଟୁଥିଲା, ମୁଁ ଏଯାଏଁ ବୁଝିପାରୁନାହିଁ । ...ଆଉ ଗୋଟେ ବିଚିତ୍ର କଥା ସେ କରିପାରୁଥିଲା । ମୋତେ ଯାହା ଭଲଲାଗେ ସେ ଜାଣିଯାଉଥିଲା । ମୁଁ ଦିନେ ଖଣ୍ଡ ନଡିଆ ପଡିଥିବା ନରମ୍ ପୁଳି ଦୁଇଖଣ୍ଡ ଖାଇସାରିବା ପରେ ଅନୁଭବ କଲି ଯେ ମୁଁ ଆଦୌ ସେ ବିଷୟରେ ତାକୁ ବା ଆଉ କାହାକୁ କହି ନଥିଲି । ମୋତେ କିନ୍ତୁ ପୁଳି ସବୁ ପିଠାଠୁଁ ଅଧିକ ଭଲଲାଗେ । କଲରା ଫାଳଭଜା ଅପେକ୍ଷା ଗୁଣ୍ଡଭଜା ମୋତେ ଭଲଲାଗେ – ସେଇଟା ଆମ ବଂଶର ସମସ୍ତଙ୍କର ରୁଚି, ବାପ-ଦାଦି ଅମଳରୁ ।"

ମିସେସ୍ ଛୋଟରାଏ ମୁଚ୍ ମୁଚ୍ ହସୁଥାନ୍ତି ।

"ତମେ ସିନା ଜାଣିଗଲଣି ବୋଲି ହସୁଛ – କିନ୍ତୁ ବାରବର୍ଷ ତଳେ ଏସବୁ ଜାଣିବାର ଉପାୟ ନ ଥିଲା; କିନ୍ତୁ ନାରାୟଣ ଜାଣିଯାଉଥିଲା । – ତାକୁ ଦିନେ ପଗରିଲି, "ବେ ନାରଣ, ତୁ ଏମିତି ପିଠା କାଇଁକି ତିଆରି କଲୁ ? ତତେ କିଏ କହିଲା କରିବାକୁ ?" ସେ ଡରିଗଲା, କହିଲା – "ନାଇଁ ହଜୁର, ଏଇଟାତ' ଭଲପିଠା – ସେଥିପାଇଁ ବନେଇଦେଲି ।" 'ତତେ ଏଇଟା ଭଲଲାଗେ ?' ମୁଁ ଆଉ କୋଉ ପିଠା ଘରେ ଛୁଏଁ ନାହିଁ । ...ଏମିତି ଏମିତି ବୁଝୁ ବୁଝୁ ମୁଁ ଜାଣିଗଲି ଯେ ତା'ର ରୁଚି ପ୍ରାୟ ମୋର ରୁଚି ଭଳି, ଆମ ବଂଶର ରୁଚି ଭଳି – ଖାଲି ସହର ଚଳଣି, ଆଉ ଗାଁ ଚଳଣିରେ ଏଠିସେଠି ଟିକିଏ ଅଭ୍ୟାସରେ ତଫାତ୍ ।

"ସୁବିଧା ଦେଖି ସେ ତଫାତ୍‌ଟା ବି ସେ କାଟିଦେଉଥିଲା !...ମାନେ ଲୁଚେଇ ଲୁଚେଇ ରମ୍ ଟିକିଏ ପିଇନଉଥିଲା !" ହସିଲେ ମିସେସ୍ ଛୋଟରାଏ ।

ଶ୍ୟାମାପ୍ରସନ୍ନବାବୁ କିନ୍ତୁ ଗମ୍ଭୀର । କହିଲେ, "ଠିକ୍ ତା' ନୁହେଁ, ସେ ବୋଧହୁଏ ମୋତେ ଆହୁରି ଜାଣିବାକୁ ଗହୁଁଥିଲା । ମୋଠୁ ସେ ପ୍ରାୟ ପଚିଶ ତିରିଶ ବର୍ଷ ବଡ । ପ୍ରାୟ ମୋ ବାପାଙ୍କ ବୟସ ସେ ଲୋକଟାର ।"

ହଠାତ୍ ଅଟକିଗଲେ ସେ । କେମିତି ଟିକିଏ ଗରିଆଡ ଟାଣିହେଇଗଲା । ନାରାୟଣ ଗାଲିଚ଼ ଉପରେ ଖୁସ୍ ଖୁସ୍ ହେଲା । ଉଠି ଅଳସ ଭାଙ୍ଗିଲା । ଗହିଁଲା ଉଭୟଙ୍କ ମୁହଁକୁ । ଚୁପ୍‌ଚାପ୍ ଶ୍ୟାମାପ୍ରସନ୍ନ ବାବୁଙ୍କ ଗୋଡ ପାଖରେ ସୋଫାକୁ ଲାଗି ବସିଗଲା । ଜିଭ କାଢି ନାକ ଅଗକୁ ଗଟିନେଲା ।

ମିସେସ୍ ଛୋଟରାଏ ଉଠି ଗଲିଗଲେ ରୋଷେଇ ଆଡେ । ସାମାନ୍ୟ ଗାତି ହୋଇଯାଇଥିଲା ସେତେବେଳକୁ ।

ଶ୍ୟାମାପ୍ରସନ୍ନ ବାବୁ ଖୁବ୍ କ୍ୱଚିତ୍ ତାଙ୍କ ଘରକଥା ସ୍ତ୍ରୀଙ୍କ ଆଗରେ କହିଥାନ୍ତି । ଘରେ ତାଙ୍କର ପ୍ରାୟ ଆଉ କାହା ସହିତ ସମ୍ପର୍କ ନ ଥିବାରୁ ସେ ଅଲଗା ରହିଆସିଛନ୍ତି । ମା' ମରିଗଲା ପରେ ଘରୁ କେବଳ ବାପାଙ୍କ ଫୋଟଟିକୁ ସେ ଆଣିଥିଲେ । ଭାଇମାନଙ୍କ ସାଙ୍ଗେ ଅନ୍ୟ କୌଣସି ବିଷୟରେ ସେ ପାଟି ଫିଟେଇ ନଥିଲେ । ତାଙ୍କୁ ପାଞ୍ଚ ବର୍ଷ ବେଳେ ବାପାଙ୍କର ଦେହାନ୍ତ

ହୋଇଯାଇଥିଲା । ତାଙ୍କୁ ଦେଖିବା ଶ୍ୟାମାପ୍ରସନ୍ନ ବାବୁଙ୍କର ପ୍ରାୟ ମନେ ନାହିଁ । ତାଙ୍କର ଜୋତା ପିନ୍ଧା ପାଦ ମନେପଡେ ଏବଂ ମନେପଡେ ତାଙ୍କର ହସିଲା ପାଟି –

ରୋଷଘରେ ମିସେସ୍ ଛୋଟରାଏ ଆନମନା । ଏଠିସେଠି ମୁହଁ ମାରୁଥାନ୍ତି । ଶ୍ୟାମାପ୍ରସନ୍ନ ବାବୁ ତାଙ୍କ ପୁଅକୁ ଡାକୁଥିଲେ ବାପା ।

ବର୍ଷକ ତଳର ଘା ଫିଟିଗଲା । ମିସେସ୍ ଛୋଟରାଏଙ୍କ ଆଖି ଛଳଛଳ । ଚାରିବର୍ଷ ପୁଅର ସ୍ମୃତି ମେଘପରି ଢାଙ୍କି ଆସିଲା । ସେ ସମ୍ଭାଳିବାକୁ ରାନ୍ଧୁଣିଆ ଟୋକା ଉପରେ ସାମାନ୍ୟ ଜଗିବାକୁ ଚେଷ୍ଟା କଲେ । ଚଞ୍ଚଳ ଟେବୁଲ ସଜେଇବାକୁ କହିଦେଇ ଚାଲିଆସି ଦେଖିଲେ ଶ୍ୟାମାପ୍ରସନ୍ନବାବୁ ସେମିତି ଗୋଡ ଲମ୍ବେଇ ବସିଛନ୍ତି । ଖଣ୍ଡେ ଦୂରରେ ଠିକ୍ ସାମନାରେ ବସିଛି ନାରାୟଣ । ତା' ମୁହଁରେ ଅଲୁଅ ପଡୁଛି ବାଁପଟୁ ।

ଶ୍ୟାମାପ୍ରସନ୍ନବାବୁ ସ୍ତ୍ରୀଙ୍କୁ ପାଖକୁ ଡାକିଲେ । ହାତ ଧରି ପାଖରେ ବସେଇଲେ । କହିଲେ – "ଦେଖ ସେ କୁକୁରକୁ! କେମିତି ମଣିଷ ହସିଲା ପରି ସେ ହସୁଚି – ମୋର ସେ କଣା ନୌକର ଅବିକଳ ଏମିତି ହସୁଥିଲା । ମୁଁ ଖବର ନେଲି । ମୁଁ ଆସିବା ପଛେ ପଛେ ସେ କୁଆଡେ ମରିଗଲା । ...ଆଉ ଏ କୁକୁରକୁ ଠିକ୍ ଦଶବର୍ଷ ପୂରିଗଲା ବୋଲି ସେଦିନ ପଶୁ-ଡାକ୍ତର କହୁଥିଲେ ।"

ମିସେସ୍ ଛୋଟରାଏ ସ୍ୱାମୀଙ୍କ ହାତକୁ ଚାପିଧରି ତାଙ୍କ ମୁହଁକୁ ବାରମ୍ବାର ଚାହୁଁଥାନ୍ତି । କିନ୍ତୁ ଶ୍ୟାମାପ୍ରସନ୍ନବାବୁଙ୍କ ଦୃଷ୍ଟି ନାରାୟଣ ଉପରେ । କୁକୁର କେମିତି ଲାଜେଇଲା ପରି ତା' ନିଜ ବୁକୁ ଚାଟିନେଲା ଦୁଇଥର । ତା'ପରେ ଦାଣ୍ଡଦୁଆରକୁ କାନ ଡେରି ଚାହିଁଲା । ଖାଇବାଘର ଖୁଡ୍‌ଖାଡ ଶବ୍ଦକୁ କାନେଇଲା । ତା'ପରେ ପୁଣି ଶୂନ୍ୟକୁ ଚାହିଁଲା ଭଳି ସ୍ଥିର ହୋଇ ଆଗ ଭଙ୍ଗିରେ ବସିଗଲା ।

ହଠାତ୍ ଚମକିପଡିଲେ ଶ୍ୟାମାପ୍ରସନ୍ନବାବୁ । ଗୋଡଦେଇ ତଳେ ଥୋଇଆଣି ସଳଖିଗଲେ । ସ୍ତ୍ରୀଙ୍କ ହାତକୁ ଚାପିଧରି ଶୁଖିଲା ଫିସ୍ ଫିସ୍ ସ୍ୱରରେ କହିଲେ, "ଏ ହସକୁ ଚିହ୍ନୁଚ ? – ଏଁ ଚିହ୍ନିପାରୁଚ ?" – ସତେ ତ ! କେତେ ଆପଣାର ସେ ମୋଲାୟମ୍ ହସଟି । କେତେ ଘନିଷ୍ଠ ଭାବରେ ପରିଚିତ !

ମିସେସ୍ ଛୋଟରାଏ ମୁହୂର୍ତ୍ତେ କାନେଇଗଲେ । ଶୀତେଇଗଲେ ପତ୍ରଟିଏ ପରି । ଛୋଟରାଏ ଦମ୍ପତି ସ୍ତବ୍ଧ । ବୈଠକଘରଟି ଜଳଛବି ପରି ନିସ୍ପନ୍ଦ ।



# ହୋରି

ଫଗୁଆ ମାହୁନ୍ତ ପାଟହାତୀର ଥୋତପାହାର ଉପରେ ରଙ୍ଗ ବୋଳି ବନକ କରୁଥାଏ । ସାହିର ସବୁ ପିଲା କିଛି ଦୂରରେ ଘେରି ବସିଥାନ୍ତି । ହାତୀ ମଣ୍ଡଣି ସେମାନଙ୍କ ପାଇଁ ଗୋଟାଏ ଉତ୍ସବ । ଗେରୁ ରଙ୍ଗ ସୋରାଏ ବୋଳି ତା' ଉପରେ ଧଳା ଆମ୍ବକଷି ଗୁନ୍ଥିଲାବେଳକୁ ଥୋତପାହାରକୁ ସେ ପିଠି ଉପରକୁ ବୁଲେଇ ଦିଏ; ଲେସି ହୋଇଯାଏ କଞ୍ଚା ରଙ୍ଗ । ଫଗୁଆ ମାଲିକାନା ଢଙ୍ଗରେ ହାତୀକୁ ଗାଳିଦିଏ । ପିଲାଏ ଘୁଞ୍ଚିଯାନ୍ତି ପଛକୁ । ଅନେଇଥାନ୍ତି ହାତୀର ଉଭାରି ରହିଥିବା ପିତ୍ତଳଠାସମରା ଧୋବ-ସରସର ଦାନ୍ତ ହଳକୁ । କିଏ ତା' ଭିତରୁ ଚାହିଁଥାଏ ତା' କଳସ ଉପରେ ସାଲୁବାଲୁ ତେଲ-ଚିକଣିଆ ବାଳକୁ; ବେକ ପାଖର ଧୁତୁ ଧୁତୁ ଚମ ଉପରେ ଧଳା-କଳାର ଟୋପି ଟୋପି ଛିଟକୁ । କିଏ ଦେଖୁଥାଏ ତା'ର ଟେକିହୋଇ ରହିଥିବା ପାହୁଲକୁ । ଯେତେ ଦେଖୁଥିଲେ ସୁଦ୍ଧା ହାତୀ ସରେ ନାହିଁ! ଆହୁରି ଅନେକ ପ୍ରଦେଶ ବାକି ରହିଯାଏ । ଧନି ଓରଫ୍ ଧନେଶ୍ୱର ଚାହିଁଥାଏ ହାତୀର ଛୋଟ ଆଖିଟିକୁ; ବୁଝିପାରେ ନାହିଁ କାହିଁକି ସେଥିରୁ କଜଳ ପରି ଲୁହ ଲମ୍ବି ଆସିଥାଏ । ନାଟୁଆଙ୍କ ଆଖି ଚାରିପଟେ ଲାଞ୍ଜି କାଟି ବଡ ବଡ ଭୁରୁ ଚିତ୍ର କଲାପରି ଫଗୁଆ ଚିତ୍ର କରିଥାଏ । ହେଲେ, ହାତୀର ସତ ଆଖିଟିରୁ ଲୁହ ଝରିବା ହିଁ ଧନିକୁ ଦିଶୁଥାଏ ।

ହାତୀ ଥୟ ହେଲେ ପୁଣି ଚିତ୍ର କରୁ କରୁ ଫଗୁଆ କହିଲା କେମିତି ତା' ଆରଦିନ ରଙ୍ଗଖେଳ ହେବ; କେମିତି ହାଉଦା ଉପରେ ଛତି ଟେକା ହେବ, ପାଟଗଦି ଉପରେ ରାଜା ବିଜେ ହେବେ । ଗଦି ଦୁଇପଟେ ବଡ ବଡ ହଣ୍ଡାମାନଙ୍କରେ ମହ ମହ ବାସୁଥିବା ରଙ୍ଗ ବୋଳା ହୋଇଥିବ । ସବୁ ହଣ୍ଡାରେ ଅଲଗା ଅଲଗା ପିଚକାରି! ଅଲଗା ଅଲଗା ବାସ୍ନା!! ପାତଳ ଚମଡାର ପେଟୁଆ ବୋତଲମାନଙ୍କରୁ ଦିବ୍ୟ ଅତର ସବୁ ସେ ରଙ୍ଗହାଣ୍ଡିରେ ଇଡା ହେବ । କାବୁଲୀମାନେ ପାଞ୍ଚ ହଜାର ଟଙ୍କାର ଅତର ଦେଇସାରିଲେଣି । ସେଥିରୁ ଟୋପାଏ ଦେହରେ ପଡିଥିଲେ ମାସେ କାଳ ଘର ବାସୁଥିବ । ହାତୀ ଉପରେ ଥାଇ ରାଜା ଚାରିଆଡେ ସେଇ ରଙ୍ଗରେ ହୋରି ଖେଳିବେ! ବର୍ଷା ହେବ ରଙ୍ଗ । ମହମହ ଅତରର ବର୍ଷା । ପେଟ ପୂରିଗଲା ପରି ବାସ୍ନା ।

ପିଲାଙ୍କ ପାଟି ପାଣି ପାଣି । ଆଖିରେ ପଲକ ନାହିଁ । ପିଇ ଲାଗିଥାନ୍ତି ଫଗୁଆର କଥା । ରାତି ପାଇଲେ ହୋରି । ଏଥର ଚାରିଟା ରଙ୍ଗ ଗୋଳା ହେବାକୁ ପଣ୍ଡିତ, ପଠାଣ ଆଉ ଗୁମାସ୍ତା ମିଶି ସ୍ଥିର କରିଚନ୍ତି । ସେଥିରୁ ଗୋଟାଏ ତ ନିଶ୍ଚେ ନାଲି – ଜରଜରିଆ ରଙ୍ଗଣି ଫୁଲ ମାର୍ଗେ

ଦାଉଦାଉ ନାଲି । ଦେହରେ ପଡିଲେ ଖଣ୍ଡେ ହାଣିହେଲାପରି ବୋହିଯିବ । ତା' ବାସ୍ନାରେ ଖାଲି ହେନା । ହେନା କହ କି ଯୂଇ କହ, କି ଆଉ କ'ଣ କହ – ସେମିତି ଗୋଟାଏ କଡା, କଡ୍‌କା ବାସ୍ନା ! ତା' ଉତ୍ତାରୁ ଗୋଟାଏ ବାସନ୍ତୀ ରଙ୍ଗ । ଚହଟ ଚୋଫା ହଳଦିଆ । ହଳଦିବସନ୍ତ ଦେଖିଚ ନା ନାହିଁ – ସେମିତି ଫୁର୍ ଫୁର୍, ରାଉ, ରାଉ ରଙ୍ଗ । ସେଥିରେ ମିଶିବ ଖାଲି କେଉଡା ଅତର । କେଉଡା ବୋଇଲେ କିଆ ନ ହେଲେ କେତକୀ । ବର୍ଷି ଦେଲେ ମଗ୍‌ମଗେଇଯିବ କୋଶେ ଆକ୍ରାନ୍ତରେ । ସେଇଠୁ ଆଉ ଦି'ଟା ରଙ୍ଗ ରହିଲା । ...ଧଳା ଆମକଷିଟାଏ ଲେଖୁଥାଏ ଫଗୁଆ । ପିଲାଏ ଚକେଇଥାନ୍ତି ସେଇଠିକି । ଏଣେ କାନ ଡେରି ରଖିଥାନ୍ତି କଥାଆଡେ । ଫଗୁଆ ଟିକିଏ ରହିଯାଇ କହିଲା –

"ରଜାଙ୍କୁ ଭାରି ଶରଧା ଗାଢ ନେଳିରେ ଖେଳିବାକୁ । ସେଥିପାଇଁ ଉଦଭଦଳିଆ ପକ୍ଷୀ ରଙ୍ଗ ଭଳି, ଗୋଟାଏ ଚିକ୍‌କଣ ସଲସଲିଆ ରଙ୍ଗ ତିଆରି ହେଇଚି । ଦେଖିଲେ ମନ ହେବ ପିଇଦେବାକୁ – ତା' ଉପରେ ଶୋଇଯିବାକୁ । ସେ ରଙ୍ଗ ତୁଛା ଚନ୍ଦନ-ଅର୍କ । ଆସିଛି କାହିଁ ମଇଶୁର୍ ରାଜ୍ୟରୁ । ସେଥିରେ ଗାଧୋଇପଡିଲେ ମଣିଷ କ'ଣ, ଏ ଦନ୍ତା ବି ସେଇଠି ଶୋଇପଡିବ । ଗ୍ଭଲିଲେ ଘୁମେଇବ । କି ସେ ରଙ୍ଗ ! କି ବାସ୍ନା ! – ନ ହେଲେ କି ରାଜା ଲାଖି ହେଇଥାନ୍ତା ! !"

ଧନି ଆଉ ସମ୍ଭାଳି ପାରିଲା ନାହିଁ । କହିଲା, "ରଜା ସେଇ ପିଚକାରି ସମସ୍ତଙ୍କ ଉପରକୁ ମାରିବେ ନା ନାହିଁ, ଫଗୁଆ ଦାଦି ?"

ଫଗୁଆ ରଙ୍ଗ ଷଢେଇ ଧରି ଉଠିଲା – "ଆରେ କାଲି ଦାଣ୍ଡଯାକ ବୁଡିଯିବ ରଙ୍ଗରେ ।"

"ଇସ୍" କହି ଶୀତେଇଗଲା ଧନି । ସାତ ବରଷ ପାଇକପୁଅ ଧନେଶ୍ୱର । ତା' ବାପ ବାନାଘର ପାଇକ – ଫଗୁଆ ମାହୁନ୍ତର ପଡିଶା ।

"କିରେ ତୋ ବାପା ଗାଁ ଯାଇଥିଲା – ଫେରିଲାଣି ?"

"ଆଜି ଆସିବ ବୋଲି ମା' କହୁଥିଲା –" । ଫଗୁଆ ଜାଣେ ସେ ଫେରିବ ନାହିଁ । ଦି'ମାସ ପାଇଁ ମୂଲ ଖଟି ଯାଇଛି ବନା – ଘରେ ତା' ମାଇପ, ଆଉ ନ-ପାରିଲା ଝିଅ ପଦୁଆଁ । ଫଗୁଆ ଧନିକୁ ଗ୍ଭହିଁଲା ଟିକିଏ । ବୋତାମ ନ ଥିବା ଅଧା ପେଣ୍ଟ ଖଣ୍ଡିଏ ଅଣ୍ଟା ପାଖରେ ମୋଡି ଖୋସିଦେଇଛି । ଦେହମୁଣ୍ଡ ମଳି ସରସର ।

"ହୋରି ଦେଖିବୁ ଯଦି କାଲି ଦେଉଳ ଛକ ପାଖକୁ ସହଳ ସହଳ ବାହାରିଯିବୁ । ମୁଁ ସେଇଠିକି ହାତୀ ଚଳେଇ ଆଣିବି । କାଲି କେତେ ଜାକ୍‌ଜମକ୍ ଅଛି । ଦରବାର, ଖିଆପିଆ, ରାତିରେ ଭୋଜି, କେତେ କ'ଣ । ହେଲେ ସେସବୁ ତୁମପାଇଁ ନୁହେଁ ।"

ରଙ୍ଗଷଢେଇ ଧରି ଫଗୁଆ ଘରଆଡେ ମୋହିଁଲା । ପିଲାଏ ତା' ପିଛା ଧରିଲେ । ଧନି ସେମିତି ହାତୀ ପାଖରେ ଠିଆରହି ସେମାନଙ୍କୁ ଗ୍ଭହିଁଥାଏ । ତା'ର ମନ ହେଲା ନାହିଁ ଘରକୁ ଫେରିଯିବାକୁ ।

ହୋରିଖେଳ, ପାଟହାତୀ, ରଙ୍ଗ, ବାସ୍ନା, ଖିଆପିଆ କଥାରେ ତା' ମନ ଛନକା ଧରିଥାଏ ।

ସେ ମୁହଁ ଫେରେଇ ପାଟହାତୀକୁ ଅନେଇଁଲା । ରଙ୍ଗ ବନକ ହେଇଯିବାରୁ କେମିତି ଅଚିହ୍ନା ଅଚିହ୍ନା ଲାଗୁଥାଏ ହାତୀ । ତଥାପି ତା'ର ସେ ଜକେଇଲା ପରି ଛୋଟ ଛୋଟ ଆଖି, ଡାହାଣ ପଞ୍ଜରା ପାଖରେ ପୁଯ ପାଣି ବୁହାଉଥିବା ସେ ଘା'କୁ ଧନି ସବୁବେଳେ ଦେଖୁଛି ।

ହାତୀ ଥୋଡପାହାର ଲମ୍ବେଇଲା । ଓଟାରିହେଲା । ବିଡାଏ ନଡା ଖଣ୍ଡେ ଦୂରରେ ପଡିଥାଏ । ଧନି ଦୌଡିଯାଇ ନଡାବିଡାଟିକୁ ଥୋଡପାହାରକୁ ବଢେଇଦେଲା । ଦେହରେ ଗୋଡରେ ଘଷିଦେଇ ପାଟି ଭିତରେ ନଡା ପୂରେଇଲାବେଳେ ଧନି ତା' ମୁହଁକୁ ଚାହିଁଥାଏ । ପାଟହାତୀ ହସିଲା ! ଆଖି କୁଞ୍ଚେଇ ମୁହଁ କୁଞ୍ଚେଇ ଅଳ୍ପ କରି ହସିଦେଲା ।

ଧନି ଆଉ କିଛି ସମୟ ଚାହିଁଲା । ହାତୀଟିର ଧୀରେ ଧୀରେ ନଡାବିଡାଟାକୁ ମାଞ୍ଚୁ ମାଞ୍ଚୁ କରି ଚୋବେଇବା ଶବ୍ଦ ତାକୁ ଶୁଣିବାକୁ ଭଲ ଲାଗୁଥାଏ । ବେଳ ବୁଡି ଆସୁଥାଏ । ବାଟଯାକ ଧୂଳି ଉଧୁଳେଇ ଧନି ଘରେ ଯାଇ ପହଞ୍ଚିଲା ।

ଦୂରରୁ ତାକୁ ଦେଖିଦେଇ ପଦୁଅାଁ ହାତ ଭରାଦେଇ ଏଣ୍ଡୁଅଟିଏ ପରି ଓହ୍ଲେଇଗଲା ପିଣ୍ଡାରୁ । ତା' ଗୋଡ ଯୋଡିକ ଅଣ୍ଟାଠଉଁ ନଡ ନଡ । ପଦୁଁଆ ଘୁଷୁରିଗଲାବେଳେ ସେ ଯୋଡିକ କେବେ ଆଗକୁ ତ' କେବେ ପଛକୁ ରହି ଘୁଷୁରୁଥାନ୍ତି । ପଦୁଅାଁ ଧନିଠଉଁ ଦୁଇ ବର୍ଷ ବଡ । ସେ ସବୁ ଦେଖେ, ଭାରି ବୁଜେ, ଶୁଣେ; କିନ୍ତୁ କଥା କହିପାରେ ନାହିଁ । ଖାଲି ଭଳିକି ଭଳି ଚିତ୍କାର କରେ । କେତେବେଳେ କୁରୁଳେ, କେତେବେଳେ କୁହାଟେ, ଗର୍ଜେ । ସେ ହସି ଦେଲା ପରି ହସେ । ସକ ସକ ହେଇ ଅନ୍ୟ ମାଇକିନିଆ ପିଲାଙ୍କ ପରି କାନ୍ଦେ । କାନ୍ଦିଲାବେଳେ ଧୂଳି ସରସର ଗଣ୍ଠିଆ ହାତଯୋଡିକରେ ମୁହଁକୁ ଘୋଡେଇ ପକାଏ । ହାତ କାଢିଦେଲେ ଲୁହଯାକ କାଦୁଅ । ଦୁଆର ମୁହଁରେ ଗୋଟିଏ ଥୁଣ୍ଟା ଅଶୋକ ଗଛ ଉଧେଇ ନ ପାରି ଗୁଡିଆ ହେଇ ରହିଛି କୋଉକାଳୁ । ତା' ମୂଳରେ ସରୁ ସରୁ ଗୋଛା ଗୋଛା ତାଳପତ୍ର । ମଝିରେ ବେଙ୍କେ ମୋଟ ଥୁଣ୍ଟା ଡାଙ୍ଗ । ସେଇଟା ପଦୁଅାଁର ସାଙ୍ଗ ! ଦୂରରେ ଗାଁ ପିଲା ଖେଳିବାର ଦେଖିଲେ ସେ ତା' ଗଛ ପାଖକୁ ଝପଟିଯାଏ । ପତ୍ରଗୁଡିକୁ ବିଲାଙ୍କିଦିଏ । ମଝି ଡାଙ୍ଗ ଧରି ଉପରକୁ ଉହୁଁକିଯାଏ । ତାକୁ ଝାଙ୍କିଦିଏ, ନିଜେ ଝାଙ୍କି ହୁଏ । ଚିଲ ପରି କୁରୁଳେ । ଆଉ ବେଳେ ବେଳ ଗଛରେ ବସିଥିବା କାଉ, ଚଟିଆ, ଏଣ୍ଡୁଅ ସାଙ୍ଗରେ ଖେଳେ । ତାଙ୍କ ଉପରକୁ ଗୋଡି ଫୋପାଡେ ।

ଧନି ଧାଇଁ ଧାଇଁ ଆସି ପିଣ୍ଡାକୁ ଚଢିଯାଉଥିଲା । ଅଶୋକ ଗଛ ପାଖରୁ ବୁଦା ତାଳ ହଲେଇଲା ପରି ପଦୁଅାଁ ହାତ ହଲେଇଲା । କୁଲୁ କୁଲୁ କୁଟୁରୁ ଶବ୍ଦ କରି ବୋଧେ ଭାଇକୁ କିଛି ତିଆରିଲା । ତାଳି ମାରିଲା । ଧନି ତାକୁ ଘରକୁ ଆସିବାକୁ ଠାରିଦେଇ ଭିତରେ ପଶିଗଲା ।

ମା' ପାଖେ ପହଞ୍ଚିବାକ୍ଷଣି ଆଗ ଗୁଡାଏ ଗାଳି ବର୍ଷା ହୋଇଗଲା – "କୁଆଡେ ଦିନସାରା ଥିଲୁକିରେ ଛତରଖିଆ ବାରବୁଲା, ହାତୀମଙ୍ଗଳ ? ଆଣିବୁଟିଲୋ ଛାଞ୍ଚୁଣୀମୁଣ୍ଡା – ମୁଁ ଆଗ ତା' ପିଠି ଫଟେଇଦିଏ ।" ତା' ଡେଣାକୁ ଧରି ଦୁଇ ଥର ଝାଙ୍କିଲାବେଳେ ପଦୁଅାଁ କାନ୍ଥ ପାଖରୁ ଅନେଇଥାଏ । – "ଦେଖିଲ, ତା' ରୂପ କ'ଣ; ସେ ଦିଶୁଛି କେମିତି ଖରାରେ ସିଝି ସିଝି ତାମ୍ଵତା

ପରି ! ବାପ ରଇଜଳା ତ' ଯାଇ କୁଆଡେ ପେଟବିକଳରେ ପଶିଲା – ଏ ଯୋତାଙ୍କୁ ଧରି ମୁଁ ଯାହା ଦହଗଞ୍ଜ ହଉଚି !"

ମା' ହାତ ଉଠେଇଲା ଧନିକୁ ମାରିବାକୁ । ଧନି ମା' ମୁହଁକୁ ଚାହିଁଲା । ହାତ ନଇଁଗଲା । ..."ଯା, ଗୋଡହାତ ମୁହଁ ଧୋଇପକା । ସେ ପେଣ୍ଟ ଖଣ୍ଡ କାଢି ଥୋଇଦେ; ମୁଁ ତାକୁ କାଚିଦେବି ।... ବାଇଗଣ ପୋଡାରୁ ସୋରାଏ ଅଛି । ବେଲାରେ ପଖାଳ ଅଛି । ଆସି ଗିଳିଦେ । ନ ଖାଇ ନ ଖାଇ ତୁ କ'ଣ ହେଲୁଣି ?"

ଧନି ଭୟରେ ଗୋଟାଆ ପାଦ ଉପରେ ପାଣି ଇଡିଦେଲା ସିନା; କିନ୍ତୁ ଥୟ ଧରି ପାରିଲା ନାହିଁ । ଧାଇଁଆସି କହିଲା – "ମା' ମ, କାଲି ଜାଣିଚୁ ନା' ହୋରିଖେଳ ହେବ ।" ତା'ର ଧୂଳିଛଉଆ ପାଦ ଦେଖି ହାତ ଉଞ୍ଚେଇଲା ମା' – "ତୁ ଆଗ ଗୋଡ ଧୋଉଚୁନା ଦେଖିବୁ ଏଇନେ ହୋରିଖେଳ ?" ତଥାପି ଖାଇଲାବେଳେ ଧନି ସବୁକଥା ଗାଇଗଲା । ପଦୁଅାଁ ଖୁସିହୋଇ ତାଳିମାରୁଥାଏ । ଛେଚି ହେଉଥାଏ ।

"ମା' ମ, ମୁଁ କାଲି ଦେଉଳ ଛକଠେଇଁ ଆଗରୁ ଯାଇ ଠିଆହେଇଥିବି । ଫଗୁଆ ଦାଦି ହାତୀ ପଟୁଆର ଆଣିବ । ମୋ' ଉପରକୁ ନେଳି ରଙ୍ଗର ପିଚକାରି ମାରିଦେଲେ ଖାଲି ଚନ୍ଦନ ପରି ବାସିଯିବ । ତୁ' ତ ମୋ' ପେଣ୍ଟଖଣ୍ଡ ଧୋଇଦେବୁ । ମୁଁ କ'ଣ ଆଉ ପିନ୍ଧିବି ! ଏ କରିଆ ପିନ୍ଧି କ'ଣ ରଙ୍ଗ ଖେଳିଯାଆନ୍ତି ?"

"କାହିଁକି, ଯାଆନ୍ତି ନାହିଁ ? ଯାହାର ଯାହା ଅଛି ନା ! ଏଇନେ ପାଇକପୁଅ ରଙ୍ଗ ଖେଳିବୁ ବୋଲି ପାଟ ବନାତ ଆସିବ ? ତୁ କାହିଁକି ସେ ଗହଳି ଭିତରେ ପଶିବୁ କି ? ସେ ବାବୁଭୟା ଆଖଡା – ତାଙ୍କର ସାରେ ରଙ୍ଗ ହେଲେ ଆଉ ପାଞ୍ଚ ସାର ଅଛି । ତାଙ୍କ ପାଇଁ ସେଇଟା ଖେଳ ! ଆମର ତ' ଖଣ୍ଡେ ରଙ୍ଗ ହେଇଗଲେ ତାକୁ ବଦଳ କରିବାକୁ ନାହିଁ । ତୁ କାଇଁକି ସେ ଗହଳିକୁ ଯିବୁ ?"

ଧନି ପଦୁଅାଁ ସାଙ୍ଗରେ ରାତି ଘଡିଏଯାଏଁ ପିଣ୍ଡାରେ ବସି ସ୍ଥିର କଲା ଯେ ସେଇ କରିଆ ପିନ୍ଧି ତା' ଆରଦିନ ଯିବ । ସେଇଠୁ ମହକୁଥିବା ରଙ୍ଗରେ ଦେହସାରା ଝଲମଲ, ଅତରରେ ଓଦା ସରସର ହେଇ ଫେରିବ । ପଦୁଅାଁ ଖୁସିରେ ଧନି ଦେହରୁ ପୁଳା ପୁଳା ରାମ୍ପି ନେଇ ତା' ମୁହଁରେ ବୋଳିଦେଇଗଲା । ଭାଇକୁ କୁଣ୍ଢେଇ ଗେଲ କଲା – କୁତୁ କୁତୁ କଲା – ଗୁଡାଏ ରାତିଯାଏ ଦୁହିଁଙ୍କୁ ନିଦ ନାହିଁ । ଖୁସୁମୁସ୍ ହଉଥାନ୍ତି । ସକାଳୁ ବାହାରିଲା ବେଳକୁ ମା' କହିଲା, "ଗହଳିରେ ପଶିବୁ ନାହିଁ, ଧନି, ହାତୀ ପାଖରେ ପଶିବୁ ନାହିଁ । ବାବୁଭୟା ପାଖରେ ପଶିବୁ ନାହିଁ, ଚକଟି ଦେବେ ।"

ଧନି ଉଲୁସି ଉଠୁଥାଏ । "ସେଠୁ ଯେତେ ଦୂରରେ ରହିଲେ ସୁଦ୍ଧା ସେମାନେ ଛାଡିବେ ? ରଙ୍ଗ ବର୍ଷି ଦେଇଯିବେ ପରା ! ମୁଁ ଆସୁଛି" – କହି ଡିଅାଁମାରି ବାହାରିପଡିଲା । ପଦୁଅାଁ ଘୁଷୁରିଗଲା ଅଶୋକ ଗଛ ଯାଏଁ ।

ବାଟରେ କାଁ ଭାଁ ଚାଲିଥିବା ଲୋକଙ୍କ ଭିତରୁ କିଏ କହିଲା ଯେ ସମସ୍ତେ ଆଗ ରଜା

ନଅର ବାହାରେ ଦରବାର ମଣ୍ଡପରେ ଗୁଣ୍ଡ ହେବେ । ସେଇଠୁ ରଙ୍ଗ ଖେଳ ଆରମ୍ଭ ହେବ । ଦେଉଳ ଛକଠି ସବୁଆଡୁ ମେଳ ଆସି ଘମାଘୋଟ ରଙ୍ଗ ଖେଳ ହେବ । ବାଇଦ ବାଜିବ । ଲୋକେ ନାଚିବେ, ଗୀତ ବୋଲିବେ !

ଧନି ରଜା ନଅରଆଡେ ଯାଇଚି । ବାହାର ମଣ୍ଡପ ଚାରିଆଡେ ନୁଆଣିଆ ପାଚେରୀରେ ଲମ୍ବ ଲମ୍ବ ଲୁହା ଗୋଜ । ପାଚେରୀକୁ ଲାଗି ଠିଆହେଲେ ଦରବାର ମଣ୍ଡପ ସବୁ ଦିଶେ ।

ସେ ତରତରରେ ଯାଇ ପହଞ୍ଚିଗଲା । ଚାରିଅଂଶିଆ ଲୁହା ଗୋଜରେ ମୁହଁ ଯୋଖି ଅନେଇଲା, ମଣ୍ଡପ ଉପରେ ଧୋବଧାଉଳିଆ କେତେ ଲୋକ ସିଂହଦ୍ୱାର ବାଟେ ଆସି ଧାଡି ଧାଡି ଚୌକିରେ ବସିଯାଉଥାନ୍ତି । ଅଳ୍ପ ଅଳ୍ପ ଗାଜୁରୁ ମାଜୁରୁ କଥା କହି ଅଳ୍ପ ଅଳ୍ପ ହସୁଥାନ୍ତି । ଏଇମାନେ ବୋଧେ ବାବୁଭୟା । ଧନି ସେଇଠୁ ସମସ୍ତଙ୍କୁ ଚାହିଁଥାଏ । ପେଟା, ମୋଟା, ଡେଙ୍ଗା, ଟାଙ୍ଗରାମୁଣ୍ଡିଆ, ପାନଖିଆ, ପାକୁଆପାଟିଆ ଲୋକେ । ସମସ୍ତେ ଗଡୁଆ, ସହରିଆ । କେବେ କେମିତି ସେଭଳି ଜଣେ ଅଧେ ଧନି ଅଭିଆଡୀ ପଡା ଆଡେ ଯାଆନ୍ତି । ସେଇଆଡେ ସବୁଦିନ ସଞ୍ଜ ହେଲେ ଗୋଳ ଶୁଭେ । ଏମାନେ ସବୁଦିନେ ବୋଧେ ହୋରି ଖେଳନ୍ତି ।

ତୂରୀ ବାଜିଲା । ଦରବାର ମଣ୍ଡପରେ ସମସ୍ତେ ଚମକିଲା ପରି ଠିଆ ହୋଇଗଲେ । ସେତେବେଳକୁ ବେଳ ଦି'ଘଡି । ରଜା ବୋଧେ ବିଜେ ହେଲେ । ଧନି ଦେଖିଲା ଗୋଟେ ସୁନା ଚୌକିକୁ ଚାରିଜଣ ପାଗଭିଡା ମଣିଷ କାନ୍ଧେଇ ଆଣୁଛନ୍ତି । ସେଥିରେ ନାଲି ଜର ଜର ଗଦି । ସେମିତି ନାଲି ଜର ଜର ଆଉଜା । ତା'ରି ପାଇଁ ତୂରୀ ଫୁଙ୍କା ହେଉଥିଲା । ଏଇଟା ରଜାଙ୍କ ଚୌକି । ଲୋକ ଆଉରି ଆସୁଥାନ୍ତି । ହସ ଖୁସି ବଢୁଥାଏ । ଥରକୁ ଥର ତୂରୀ ବାଜିଲେ ଆଉ କେତେ କେତେ ଜିନିଷ ଆସୁଥାଏ । ବଡ ବଡ ପରାତରେ କୁଢ କୁଢ ସୁନାରୂପା ଗୋଟାଳିମାନ ଆସିଲା । କ'ଣ ସେସବୁ ? ତା'ପରେ ବଡ ବଡ ହାଣ୍ଡିରେ କ'ଣ ସବୁ ଆସିଲା । ଦରବାର ମଣ୍ଡପ ଭର୍ତ୍ତି ।

ତା'ପରେ ତୂରୀ, ବାଇଦ କେତେ କ'ଣ ଏକା ଥରକେ ବାଜିଲା । ସମସ୍ତେ କୁଣ୍ଢେଇ ପରି ଠିଆହୋଇ ରହିଲେ । କେତେବେଳକେ ସେମାନେ ବସିବାରୁ ଧନି ଦେଖିଲା, ସେ ସୁନା ଚୌକିରେ କିଏ ଜଣେ ବସିଚନ୍ତି । ସେଇ ନିଶ୍ଚେ ରଜା । ମୁହଁ ଚକ ଚକ, ଦେହ ଜକ ଜକ । ଦୁଇଆଡେ ବଡ ବଡ ଆଲଟ ବିଞ୍ଚଣି ଧରି ଲୋକେ ସେବା କରୁଥାନ୍ତି । କେତେ ସରୁ ବାଇଦ ବାଜିଲା । ସଖୀମାନେ ଗୀତ ବୋଲିଲେ । ସେଇଠୁ ସମସ୍ତେ ବାଲୁ ବାଲୁ କ'ଣ ସବୁ ଖାଇଲେ । ନାନା ଜାତି ମିଠେଇ, ଅମାଲୁ – କେତେ ଜାତି ପିଠି ହେଇଥିବ ପରା ! ଗୁଆଘିଅ ବାସ୍ନା, ଆଉ କେତେ କ'ଣ ବାସ୍ନା ଚହଟି ଆସୁଥାଏ ଲୁହା ବାଡ ପର୍ଯ୍ୟନ୍ତ । ସେଇଠୁ ରଜା ଠିଆହେଲେ । ତାଙ୍କ ଆଗରେ ସେ ସୁନା ରୂପା ଗୁଳା ଭର୍ତ୍ତି ହୋଇଥିବା ପରାତ ଥୁଆହେଲା । ସେ ଗୋଟାଏ ଗୋଟାଏ ଧରି ଲୋକଙ୍କ ଉପରକୁ ଫିଙ୍ଗିଲେ । ଦେହରେ ବାଜିଲାମାତ୍ରେ ସେଇଟା ଫାଟିଯାଉଥିଲା । ରଙ୍ଗ ବୋହିଯାଉଥିଲା ତା' ଦେହ ସାରା । ହୋ ହୋ ହୋଇ ସମସ୍ତେ ହସିଲେ । ଏମିତି ସେ ଗୋଟାଳିଯାକ ସମସ୍ତେ

ଫିଙ୍ଗାଫିଙ୍ଗି ହେଲେ – ନାଲି, ହଳଦିଆ, ବାଇଗଣି ରଙ୍ଗରେ ସମସ୍ତେ ଗାଧୋଇଗଲେ । ପାଟିତୁଣ୍ଡ ହସ ଖୁସି ବାଇଦ ବାଜଣାରେ ମଣ୍ଡପ କମ୍ପିଲା ।

ଦୁଇଟା ଲୁହା-ଗୋଜକୁ ଧରି ଧନି ନାଚିଲା, ଡେଇଁଲା, ପାଟିକଲା । ସେଇ ଲୋକମାନେ ସିଂହଦ୍ୱାର ଆଡକୁ ମୁହାଁଇଲେ । ଧନି ଦେଖିଲା ଟକ ଟକ କରି ହାଉଦା, ଆଉ ତଳକୁ ଝୁଲି ରହିଥିବା ପାଟ ଓହଳରେ ପାଟହାତୀ ଜାକଜମକରେ ଠିଆହୋଇଛି । ତା' କାନ୍ଧରେ ପଗଡି ଭିଡି, କୋଟ ପିନ୍ଧି ଫଗୁଆଦାଦି ।

କିଲିକାଲିଆ ହେଇ ଧାଇଁଲା ଧନି । ରାଜରାସ୍ତା ଦୁଇକଡେ ଲୋକ ଗୁନ୍ଥି ହୋଇଯାଇଥାନ୍ତି । ଗଳିଯିବାକୁ ବାଟ ନାହିଁ । ତଥାପି ହାତୀର ମୁକୁଟ-ପିନ୍ଧା ମୁଣ୍ଡ ଦିଶୁଥାଏ । ଫଗୁଆ ଦାଦି ଦିଶୁଥାଏ । ଧନି ପାଟିକରି ଡାକିଲା । ତା' ସ୍ୱର ଘୋଘା ପାଟିତୁଣ୍ଡ ଭେଦି ପାରିଲା ନାହିଁ ।

ରଜା ଗୋଟାଏ ନଳୀ ଉଠେଇ ଟିପିଲେ । ଆରପଟେ ରଙ୍ଗ ବର୍ଷିଗଲା । ବାସନ୍ତୀ ରଙ୍ଗ । ତଳୁ ରଙ୍ଗ ଉଠିଲା ଉପରକୁ – ଚାଲିଲା ହୋ ହୋ ରଙ୍ଗ ଖେଳ । ଧନି ଚାହୁଁଥାଏ – କେମିତି ଗଳିଗଲେ ମଝିକୁ ତା' ଉପରେ ଅତର ବର୍ଷିଯାନ୍ତା । ତାକୁ ସେତେବେଳକୁ ମହ ମହ ବାସିଲାଣି । ହେଲେ ଟୋପେ ସୁଦ୍ଧା ତା' ଦେହରେ ପଡିନାହିଁ ।

ହାତୀ ଝୁଲି ଝୁଲି ଘୁଞ୍ଚିଲା । ଚଉିଆଡୁ ହାତୀ ଉପରେ ରଙ୍ଗର ଫୁଲଝରି । ଧୂଆଁ ଘୋଡେଇ ହୋଇ ଯାଉଥାଏ । ଧନିକୁ ପେଲିଦେଇ ସମସ୍ତେ ଆଗେଇ ଯାଉଥାନ୍ତି । ରାସ୍ତା ଉପରକୁ ଚଢିଲେ ସିନା ଯାହା ହେଲେ ହୁଅନ୍ତା । ଧନି ସେମିତି କଡେ କଡେ ଆଗକୁ ଦୌଡିଲା । ଦାଣ୍ଡ ମଝିରେ ଠିଆହେଇ ଚାହିଁଲା । ଫାଙ୍କ ଦେଖି ଗଳିଗଲା ଖେଳ ଆଡକୁ । ଗୋଟାଏ ପିଚକାରୀ ଆସି ତା'ର ପାଞ୍ଚ ସାତ ହାତ ଆଗକୁ ପଡିଲା । ସରୁ ଛିଟା କିଛି ଉଡିଆସିଲା ପବନରେ ତା' ମୁହଁ ପର୍ଯ୍ୟନ୍ତ । ଆଃ, କି ବାସ୍ନା । ସେ ପେଲି ପଶିଲା – ଆଗକୁ ଆଉ ବାଟ ନାହିଁ । ପିଆଦା ଠେଙ୍ଗା ପକେଇ ଓଗାଳି ଦେଇଛନ୍ତି । ସେ ଗଳିଯାଉଥିଲା । ତା' ବେକକୁ ଧରି ଜଣେ ଓଟାରି ଆଣି ବାହାରକୁ ପେଲିଦେଲା । ସେଥିକୁ ତା'ର ଖାତିର ନାହିଁ । ଯେଉଁଆଡେ ରଙ୍ଗ ପିଚକାରୀ ପଡୁଥାଏ ସେ ସେଇଆଡକୁ ପେଲି ପଶୁଥାଏ । ତାକୁ ବାଟ ମିଳୁ ନଥାଏ । ତା'ରି ପାଖରେ ଚିହ୍ନାଚିହ୍ନି ହୋଇ ଲୋକେ ରଙ୍ଗ ପକାପକି ହେଉଥାନ୍ତି । ସେ ଜାଣିଶୁଣି ତାଙ୍କ ମଝିରେ ପଶିଯାଉଥାଏ । କେହିହେଲେ ଟୋପାଏ ରଙ୍ଗ ତା' ଦେହରେ ପକାଉ ନଥାଏ । ତାକୁ ଦେଖି ସମସ୍ତେ ଆଡେଇ ଦେଉଥାନ୍ତି ।

ପଟୁଆର ଘୁଞ୍ଚିଲା । ଗହଳିରେ ପେଲି ହୋଇ ଧନି ପୁଣି ଓହ୍ଲେଇଗଲା ଉଞ୍ଚ ରାସ୍ତା ତଳକୁ । ସେ ଚଉିଆଡକୁ ଚାହିଁଲା । ନିଜକୁ ଚାହିଁଲା । ତାକୁ ଖରା କାଟିଲା । ଭୋକ କଲା । ହାଲିଆ ଲାଗିଲା । ପଟୁଆର ତାକୁ ପାରି ହୋଇ ଆଗେଇଗଲା । ହାତୀ ପଛରେ ଅଳ୍ପ ଲୋକଙ୍କ ଲାଞ୍ଜି ଛିଡିଗଲା । ଧନି ଦେଖିଲା ରାସ୍ତାଯାକ ରଙ୍ଗ ସରସର । ହାତ ମାରିଲା । ଶୁଖିଲା ରାସ୍ତା ରଙ୍ଗ ଶୋଷି ନେଇଥାଏ । ସେ ଲଇଁପଡି ନାକ ଲଗେଇ ରଙ୍ଗ ଖେଳ ଭୂଇଁକୁ ଶୁଙ୍ଘିଲା । ମହମହ ବାସୁଥାଏ । ମଧୁରିଆ ବାସ୍ନାପାଖରେ ଜିଭ ଲଗେଇଦେଲା । ବାଲି ମାଟି ଥୁ' ଥୁ' କରି ଫିଙ୍ଗି ଉଠିଲା । ଦେଉଳ ଛକ କଥା

ଦାଦି କହିଥିଲା । ସେ ଗଳିରାସ୍ତାରେ ଧାଇଁଲା, ପଟୁଆର ଆଗରୁ ଯାଇ ପହଞ୍ଚିଯିବାକୁ ।

ସେଇଠି ଯାଇ ଦେଖିଲା, ସବୁଆଡୁ ବାଟ ରୁନ୍ଧି ହୋଇଯାଇଛି । ଛକ ମଝିକୁ ଯିବାକୁ ତା'ର ସାଧ ନାହିଁ । ସେଠି ସାହି ପିଲାମାନେ ଗୋଡିଆଗୋଡି ହୋଇ ରଙ୍ଗ ଫିଙ୍ଗୁଥିଲେ । ସେ ସେମାନଙ୍କ ଭିତରକୁ ପଶିଗଲା । ତାଙ୍କ ରଙ୍ଗ ଆଗରେ ଠିଆ ହେଇଗଲା । ଆଖି ବୁଜି ମୁହଁ ଘୋଡେଇଲା । ଏଇ ବୋଧେ ରଙ୍ଗ ମାରିଦେଇଯିବେ । ସେମାନେ କାହାକୁ ଛାଡିବେ ନାହିଁ ।

ସେ ଆଖି ମେଲେଇ ଦେଖିଲା । ସେମାନେ ଘୁଞ୍ଚି ଯାଇଛନ୍ତି । ତା' ଦେହରେ ଟୋପାଏ ରଙ୍ଗ ପଡିନାହିଁ । ଦେଉଳ ଛକରେ ପାଞ୍ଚଟା ରାସ୍ତା ଏକାଠି ମିଶିଛନ୍ତି । ପାଞ୍ଚ ମୁହଁରେ ଲୋକ ଚୁଣ୍ଟି ହେଇଯାଇଛନ୍ତି । ମଝିରେ ଚାଲିଛି ଗୋଳ, ଖେଳ, ରଙ୍ଗବର୍ଷା । ଧୂଆଁ ଉଠୁଛି ଉପରକୁ । ଆଠ ଦଶ ହାତ ଭେଦି ଗଲେ ତା' ଉପରେ କୁଢେଇ ହୁଅନ୍ତା ରଙ୍ଗ । ଯେତେ ଥର ଧନି ମୁଣ୍ଡୁଣ୍ଡେଇ ହେଇଛି, ସେତିକି ଥର କହୁଣୀରେ ତାକୁ ଲୋକେ ଆଡେଇ ଦେଇଛନ୍ତି । ଧନିକୁ କାନ୍ଦମାଡିଲା । ସେ ଏକଡ ସେକଡ ଧାଇଁଲା ଅନେକ ବେଳଯାଏଁ । ହଠାତ୍ ଘୁ'କରି ଗୋଟାଏ ଶବ୍ଦ ହେଲା । ସମସ୍ତେ ଘୁଞ୍ଚିଲେ । ଚକଟି ହୋଇଯିବେ ବୋଲି ସେମାନେ ଧାଇଁଲେ । ଛକ ମଝିରୁ ବୋଧହୁଏ ହାତୀ ଏମାନଙ୍କୁ ସେ ଗଳି ବାଟେ ପେଲି ଆଣୁଥାଏ । ପାଖ ଘର କାନ୍ଥକୁ ଲାଗି ଧନି ରହିଗଲା । କିଛି ଶୁଖିଲା ନିରଙ୍ଗିଆ ଲୋକଙ୍କ ପଛରେ ରଙ୍ଗ ଜରଜର ଖେଳୁଆଡ ଲୋକେ ଆସିଲେ । ଧନି ଜଣକ ଦିହରେ ଲେସି ହୋଇଗଲା । ହାତରେ ତା' ଓଦା ଲୁଗାକୁ ମୁଠା ମୁଠା କରି ପକେଇଲା । ପଛରୁ ଲୋକ ହାବୁକେଇ ଆସିଲେ । ଧନି ଓଦା ହାତ ମୁହଁରେ ଦେହରେ ବୋଳିଦେଇ ପୁଣି ଜଣକ ଦେହରେ ଘଷିହେଲା । ଭିଡ ଭିତରେ ରହିବ ବା କେମିତି ? ପେଲି ହେଇଗଲା କାନ୍ଥ ପାଖକୁ । ଗହଳି ଭାଙ୍ଗିଗଲା । ଛକ ଖାଲି ହୋଇଗଲା । ପାଟହାତୀ ଫେରିଗଲା ରାଜ ରାସ୍ତାରେ । ଖେଳ ସରିଗଲା ।

ଦେଉଳଛକ ମହ ମହ ବାସୁଥାଏ । ରଙ୍ଗରେ ବୁଡିଯାଇଥାଏ ଭୂଇଁ, ପାଖ ଆଖ ଗଛପତ୍ର, କାନ୍ଥ ବାଡ... । ଜଣକ ଦୁଆରେ କୁକୁରଟିଏ ବନ୍ଧା ହୋଇଥାଏ । ତା' ଦେହଯାକ ନାନା ଜାତି ରଙ୍ଗ । ଧନି ଏଠୁ ଟିକିଏ ସେଠୁ ଟିକିଏ ରଙ୍ଗ ମାଖି ହେଲା । କରିଆଟିକୁ ଆଉ କୌଣସି ପ୍ରକାରେ ଓଦା କରିପାରିଲା ନାହିଁ । ମୁଣ୍ଡବାଳ ଓଦା ହୋଇ ରଙ୍ଗଟୋପା ଥୋପିଲା ନାହିଁ ।

ଖରା ଆସି ମୁଣ୍ଡ ଉପରେ । ଧନି ଏକୁଟିଆ ଫେରୁଥାଏ ତାତିଲା ଧୂଳିଆ ରାସ୍ତାରେ ତଳ ସାଇ ଆଡେ । ପିଣ୍ଡା ଉପରୁ ପଦୁଆଁ ଦେଖିଲା ଧନୀ ଫେରୁଛି ରଙ୍ଗ ଖେଳିସାରି । କେତେ ବାସ୍ନା, କେତେ ରଙ୍ଗରେ ବୋଝେଇ ହେଇ ଫେରୁଛି । ସେ ଚିଲପରି କୁରୁଳି ଉଠିଲା । ଘୁଷୁରିଗଲା ତାତିଲା ବାଲି ଉପରେ ଅଶୋକ ଗଛ ପାଖକୁ । ତା'ର ସରୁ ସରୁ ଡାଳ ଉପରେ ଚଢିଗଲା ! ଚଢିଗଲା ମଝି ଡାଙ୍ଗକୁ ଧରି । ଧନି ଆସିଲାରୁ ତା' ବାଟ ଉଗାଳି ତାକୁ କୁଣ୍ଢେଇ ପକେଇଲା । ଦୁହେଁ ପିଣ୍ଡାକୁ ଉଠିଲେ । ଧନି ସେଠି ଥକ୍କାମାରି ବସିପଡିଲା । ପଦୁଆଁ ତା' ରଙ୍ଗିଲା ହାତକୁ ନିଜ ମୁହଁରେ ଘଷିଦେଇଗଲା । ନାକ ପାଖରେ ଶୁଙ୍ଘି ଦେଇ ଭୂରୁ ଟେକିଲା । ଧନି ପଚାରିଲା, 'କ'ଣ ବାସୁଚି' ନା ! ପଦୁଆ ମୁଣ୍ଡ ଲାଡିଲା । ଧନୀ ନିଜେ ଶୁଙ୍ଘିଲା । ବାସ୍ନା ମଉଳି ଯାଇଥିଲା । ତା' ଦେହରେ ଏଠି

ସେଠି ଛୋଟ ଛୋଟ ଟୋପି ଉପରେ ଟିପ ମାରି ପଦୁଆଁ ଖୁସି ହେଇଯାଉଥାଏ । ଧନି ଦେଖିଲା ସତକୁ ସତ ସବୁ ରଙ୍ଗର ଛିଟା ତା' ଉପରେ ପଡିଛି । ବିଭୋର ହୋଇ ଦୁହେଁ ରଙ୍ଗ ଟୋପି ଗଣୁଥାନ୍ତି । ଗାଢ ନେଳି ରଙ୍ଗରୁ ଜମା ତିନି ଟୋପା ପଡିଥାଏ । ସେଥିରେ ରାଜା ଖେଳିବାକୁ ସୁଖ ପାଆନ୍ତି; ସେଇଟା ରଜା ରଙ୍ଗ ପରା...!

କେତେବେଳେ ପରେ ଧନିକୁ ଶୋଷହେଲା । ପଦୁଆଁ ଠାରି କହିଦେଲା ଯେ ସେ ଓଳି ଘରେ ରୋଷେଇ ହେଇନାହିଁ । ମା' ଶୋଇଛି । ଧନି ପେଟରେ ରଟ ରଟ ଭୋକ କାମୁଡିଦେଇଗଲା । ସେ ଆଉ ପାଣି ପିଇବାକୁ ସୁଦ୍ଧା ଉଠିଲା ନାହିଁ । କାନ୍ଥକୁ ଆଉଜି ବସି ରହିଲା । ତା' ଆଖିରୁ ପାଣି ବୋହିଗଲା । କୋହ ଉଠିଲା । ସେ କଇଁ କଇଁ କାନ୍ଦିଲା । ପଦୁଆଁ ତାକୁ ଆଉଁଷିଲା । କାନ୍ଦିଲା । କୁଲୁରୁ କୁଲୁରୁ ଶବ୍ଦ କରି ବୁଝେଇଲା । ପଦୁଆଁ ବୁଝିପାରୁଥିଲା ଯେ ଧନି ଭୋକ ପାଇଁ କାନ୍ଦୁ ନାହିଁ । ଆଉ କ'ଣ ହେଇଚି ? ଶେଷରେ ଧନି ମୁହଁ ଘୋଡେଇ ସକ ସକ ହେଇ କହିଲା – "ମୋ ସାଙ୍ଗରେ କେହି ଖେଳିଲେ ନାହିଁ । ମତେ କେହି ରଙ୍ଗ ପକେଇଲେ ନାହିଁ, କେହି ପକେଇଲେ ନାହିଁ!!" –

ଏତିକିବେଳେ ପାଟ ହାତୀ ଉପରେ ବସି ଫଗୁଆ ଦାଦି ଆମ୍ବତୋଟାଆଡେ ଦିଶିଲା । ଋହୁଁ ଋହୁଁ ହାତୀ ପଲାସି ଆସିଲା ସେଇଆଡେ । ଦୁହେଁ କାନ୍ଦ ଭୁଲି ଋହିଁ ରହିଲେ । ଓଦା ଓଦା ମୁହଁ ଯୋଡିକରେ ପାତଳ ପାତଳ ହସ ବୋଳିହେଇଗଲା । ହାତୀ ଆସି ଠିଆହେଲା ତାଙ୍କ ଦୁଆରେ । ହାତୀ ଉପରେ ପାଟ ଓଢଣି ନାହିଁ । ହାଉଦା ନାହିଁ – ସେ ଯୋଉ ଲଙ୍ଗଳାକୁ ସେଇ ଲଙ୍ଗଳା । ସେ ଧନି ଆଡକୁ ଥୋଡପାହାର ଟେକି ଶୁଙ୍ଘିଲା । ଆଣ୍ଠେଇ ପଡିଲା । ଫଗୁଆ ଦାଦି ଓହ୍ଲେଇ ଆସିଲା ହାତୀ ଉପରୁ । ପଦୁଆଁ ଆଉ ଧନିକୁ ଦୁଇ କାଖରେ ଧରି ହାତୀ ଉପରକୁ ବଳେଇ ନେଲା । "ଗଢିଯା, ଧନି; ମୁଁ ପଦୁଆଁକୁ ନଉଚି!" ନଡିଆକତା ଆଉ ଅଖାର ହାଉଦା ବୈଠି ଉପରକୁ ଧନି ଛଢିଗଲା । ତା' ପଛେ ପଛେ ଫଗୁଆ ଦାଦି ଚଢିଗଲା ପଦୁଆଁକୁ ନେଇ । ନଡିଆକତାର ମୋଟା ବେଢଯାକ ରଙ୍ଗରେ ଓଦା । ବାସ୍ନା ଯେ କାହିଁରେ କ'ଣ । ଫଗୁଆ ଦୁଇଜଣଙ୍କୁ ଏକାଠି ବସେଇଦେଇ, ଗାମୁଛାରୁ ପୁଡାଏ ମିଠେ କାଢି ତାଙ୍କ ମଝିରେ ଥୋଇଦେଲା । କହିଲା, ଖାଅ...

ହାତୀ ଉଠିଲା ସ୍ୱର୍ଗକୁ । ପହଁରିଲା ମେଘରେ । ନାନା ରଙ୍ଗର, ନାନା ବାସ୍ନାର ଧୂଆଁ ଭିତରେ! ଫଗୁଆ ଦାଦି ରଜା!

ଫଗୁଆ ମାହୁନ୍ତର ପିଲାଝିଲା କେହି ନାହାନ୍ତି ।



## ଠାବ

ଆଠ ଫୁଟରେ ଆଠଫୁଟ ଏକମୁହାଁ କୋଠରୀଟି ପାଇଁ ଏ.ଟି.ନାଏକ ଆକାଉଣ୍ଟେଣ୍ଟଙ୍କୁ ବହୁ ପରିଶ୍ରମ କରିବାକୁ ପଡିଥିଲା । ଉପର ମହଲା ସରକାରୀ ଘରେ ପାଇଖାନା ଓ ଗାଧୁଆଘର ମିଶି ସେ ପ୍ରଶସ୍ତ ବଖରା । ଦକ୍ଷିଣମୁହାଁ କବାଟ । ଭଉଁରୀ ପାହାଚ । ଦୁଇ ହାତରେ ହାତେ ବାଲ୍‌କୋନି । ମାସକୁ ଅଶୀ ଟଙ୍କାରେ ଏ ଭଡାଘର । ଏ.ଟି.ନାୟକ ଆଶ୍ୱସ୍ତ ବୋଧକଲା । ସେତେବେଳକୁ ଗୋଟିଏ ଶସ୍ତା ହୋଟେଲରେ ଦିନକୁ ଛ'ଟଙ୍କା ଦରରେ ସେ ଦୁଇମାସ ରହିସାରିଥିଲା ।

ପ୍ରଥମେ ସେ କବାଟରେ ଗୋଟିଏ ଘନ ନୀଳରଙ୍ଗର ପରଦା ଆଣି ଝୁଲେଇଲା । ଗୋଟିଏ କେରଳୀ ପା'ପୋଛ ପକେଇଲା ବାଲ୍‌କନି ଉପରେ । ତା'ପରେ ଘର ଭିତରେ ସେ ଚରିଆଡକୁ ଚାହିଁଲା । ଉତ୍ତରପଟ କାନ୍ଥରୁ ସାତ ଇଞ୍ଚ ଭିତରକୁ କବାଟଟି ଆରଆଡୁ ବନ୍ଦ । ବେଶ୍ ଭଲ କଥା । ସେଇ ଛ'ଫୁଟରେ ତିନି ଫୁଟ ଆକାରର ସାତ ଇଞ୍ଚ ଗହୀର ଜାଗାଟିକୁ ଗୋଟିଏ ଛ'ଟିକିଆ କାନ୍ଥଆଲମାରି କରିଦିଆଯାଇପାରେ । ଗୋଟିଏ ପରଦା ଝୁଲାଇଦେଲେ ଯାବତୀୟ ଘରକରଣାର ଡିବା, କପ୍, ପିଆଲା, ଥାଳି, ଗିନା ଆଦି ଲୁଚିଯାଇପାରେ । ଉପର ଥାକଟିକୁ କିଛି କୁଣ୍ଢେଇ, ଶଙ୍ଖ, ଶାମୁକାରେ ସଜେଇ ଦିଆଯାଇପାରେ । ପକ୍‌କା ପାଇଖାନାଟି ମୋଟ ଉପରେ ପାଇଖାନା ନୁହେଁ – ସେଥିରେ ଗନ୍ଧନାହିଁ; ଏଣୁ ସମସ୍ୟା ନାହିଁ । ତାକୁ ଘୋଡେଇ ଦକ୍ଷିଣ କାନ୍ଥରୁ ସାଢେ ପାଞ୍ଚଫୁଟିଆ ଖଣ୍ଡେ ଖଟ ବେଶ୍ ସୁନ୍ଦର ପଡିପାରିବ । ଛ'ଷଠି ଇଞ୍ଚର ଖଟ ଯେ କୌଣସି ଭାରତୀୟ ପାଇଁ ଯଥେଷ୍ଟ । ଖଟ ଏବଂ କାନ୍ଥଆଲମାରି ମଝିରେ ରୋଷେଇ ସରଞ୍ଜାମ । ଛୋଟିଆ ଜନତା ଷ୍ଟୋଭ୍ । ଦୁଇଟି ଡେକ୍‌ଚି, ଦୁଇଖଣ୍ଡ ଥାଳି ସବୁ ଖଟ ତଳେ ରହିପାରୁଥିବ । ଖଟ ଘୁଞ୍ଚେଇ ନେଲେ ପକ୍‌କା ପାଇଖାନା ପ୍ରସ୍ତୁତ । ବ୍ୟବହାର ପରେ ଖଟ ପୁଣି ଘୁଞ୍ଚିଯିବ । ପାଦଆଡକୁ ରୋଷେଇ ପ୍ରସ୍ତୁତ । ବାକି ଯେଉଁ ଅନେକ ଥାନ ରହିଲା, ସେଇଠି ଦୁଇଟି ଛୋଟ ବେତ ଚୌକି ପଡିପାରେ । ସେଇ ଅନୁପାତରେ ଗୋଟିଏ ଚା ଟେବୁଲ ମଧ ମଝିରେ ରଖାଯାଇପାରେ । ଖଣ୍ଡିଏ ଛୋଟିଆ ଦରି ପଡିଲେ ଆହୁରି ଭଲ । ଉତ୍ତର ପଶ୍ଚିମ କୋଣରେ ଖାପିଲା ଭଳି ଛୋଟ ଯାଉଁଳି ବହି ଆଲମାରିଟିଏ । ଉତ୍ତର କାନ୍ଥରେ ଗୋଟିଏ ବା ଦୁଇଟି ନୂଆ କାଲେଣ୍ଡର । ବାସ୍, ହଁ, ଗୋଟିଏ ନାଁ ପଟା ! ସେଇଟା ବେଲ୍‌କନି କାନ୍ଥରୁ ବାହାରକୁ ବାହାରିଥିବ । ଇଂରେଜୀରେ ଲେଖାଥିବ, "ଏ.ଟି.ନାୟକ,

ଆକାଉଣ୍ଟେଣ୍ଟ !"

ଗାଧୁଆ ଝରି ତଳେ ସେ ଠିଆରହି ଚିନ୍ତାକଲାବେଳେ ତା'ର ନିଃଶ୍ୱାସ କମି ଆସିଥିଲା । ସେ ଧ୍ୟାନରୁ ଉଠିଲା ପରି ହାତ ଗୋଡ ହଲେଇଲା । ବାରମ୍ବାର ନୂଆ ପରିଦା ଏବେ ପା'ପୋଛଟିକୁ ଦେଖି ଦେଖି ସେଇଠି ବସିପଡିଲା । ପ୍ରସ୍ତୁତ କଲା ଗୋଟିଏ ତାଲିକା – ହାତୁଡି ତିନି ଟଙ୍କା, ଇଞ୍ଚିକିଆ କଣ୍ଟା ଦୁଇ ଟଙ୍କା, ଅଧ ଇଞ୍ଚିଆ ସାଇଜ୍ ପଟା (ହଳଦ) ପାଞ୍ଚ ଖଣ୍ଡକୁ ଦଶ ଟଙ୍କା, ଗୋଟିଏ ଷ୍ଟୋଭ୍ ପଚିଶ ଟଙ୍କା, ଖଣ୍ଡେ ଖଟ ଚାଳିଶ ଟଙ୍କା । ଲିଷ୍ଟ୍ ବଢିଚାଲିଲା । ହିସାବରେ ଏ.ଟି.ନାୟକ କେବେ ଭୁଲ୍ କରିନାହିଁ । ଗାର ଟାଣି ଗାଏମୋଟ୍ କଷୁଟିଆ ବେସିନ୍‌କୁ । ଏତେ ଟଙ୍କା ଯୋଗାଡକରିବା ସହଜ ନୁହେଁ । ତେଣିକି, ତାଲିକାକୁ ଚାହିଁ ରହି, ବାଧ ହେଲାଭଳି ଗୋଟିଏ ଗୋଟିଏ ଛକି ପକାଇଲା । ଦରି, ବହି, ଆଲମାରି, ବେତ ଚୌକି ଭଳି ଦାମୀ ବସ୍ତୁଗୁଡିକୁ ନିର୍ମମ ଭାବରେ ତଡିବାକୁ ପଡିଲା । ସେ ଦେଖିଲା ଯେ ଖଣ୍ଡେ ଖଟ ଆଣି ନ ପକେଇଲେ ପାଇଖାନାଟା ଲୁଚୁନାହିଁ; କିନ୍ତୁ ମୁଣ୍ଡ ଉପରକୁ ଚେନ୍ ଝୁଲି ରହିବ ଏବଂ ବେତୁଲି ପରି ସେ ପାଣି ଯନ୍ତ୍ରଟା କେମିତି ଓହଳି ରହିବ କାନ୍ଥ ଦେହରେ । ତାକୁ ଅନ୍ତତଃ ରଙ୍ଗ କରିଦେଲେ ଏତେ ଅସୁନ୍ଦର ଦିଶନ୍ତା ନାହିଁ । ସେ ତାଲିକାରେ ଲେଖିଲା ଆକାଶୀ ଏବଂ ହଳଦିଆ ରଙ୍ଗର ଦୁଇଟି ଛୋଟ ଡିବା – ଦଶଟଙ୍କା । ଗୋଟିଏ ଅଧଇଞ୍ଚ ତୂଳି, ତିନିଟଙ୍କା । ଉପାୟ ନାହିଁ । ଆଖି ପଡିଲା ତା' ମୁଣ୍ଡ ଉପରେ । ଥଣ୍ଟପରି ବାହାରି ରହିଛି ପାଣି ପାଇପ୍ । ଯଦି ସେଇଠୁ ପାଣି କାରବାର ହୁଏ, ତେବେ ଘର ଖଣ୍ଡ ନଷ୍ଟ ହୋଇଯିବ । ଏଣେ ବନ୍ଦକଲେ ଚଳିବ ନାହିଁ । ସେ କିଛି ମଗଜ ଖର୍ଚ୍ଚ କରି ସ୍ଥିର କଲା ଯେ ସେଇଠୁ ଗୋଟିଏ ପଲିଥିନ୍ ପାଇପ୍ ଲଗେଇ କାନ୍ଥ ତଡେ ତଡେ ନେଇଯିବ ଏକାଥରେ ପାଇଖାନା ଉପରକୁ । ସେଇଠି ପାଣି ପଡିଲେ କିଛି ଯାଏ ଆସେ ନାହିଁ । ତା'ହେଲେ ଖଟ ଘୁଞ୍ଚେଇଦେଲେ ସେଇଠି ଗାଦୋଇବା ମଧ ହେଇପାରିବ । ତା' ସକାଶେ ଖଣ୍ଡେ ଦୁଇଫୁଟରେ ଦୁଇଫୁଟ କାଠଜାଲିର ପିଢା ନ ଆଣିଲେ ହେବନାହିଁ । ସେଇଟା ନୁଆଁଣିଆ ହେଲେ ଖଟ ତଳେ ଗଳିଯିବ । – ତାଲିକାରେ ଚଢିଲା ବାର ଫୁଟ ପାଇପ୍, ଛ'ଟଙ୍କା । ଗୋଟିଏ ପିଢା ଆଠଟଙ୍କା ।

ତା' ମୁଣା ଭିତର ଟଙ୍କାତକ ସେ ପୁଣି ଥରେ ଗଣିନେବାକୁ ଚାହିଁଲା । ଟଙ୍କା ପରିବର୍ତ୍ତେ ହାତରେ ପ୍ରଥମେ ପଡିଲା ଖଣ୍ଡେ ଲଫାଫା । ଚିଠି ଦେଇଚି ତା' ସ୍ତ୍ରୀ । ଦୁଇ ମାସରେ ସେଇଟା ଦଶ ନମ୍ବର ଚିଠି । ବିଭା ହେବାର ମାସକ ପରେ ସେ ଚାଲିଆସିଛି ସହରକୁ । ଏଠି ଘର ନାହିଁ କହିଲେ ତାକୁ କେହି ବିଶ୍ୱାସ କରୁନାହାନ୍ତି । ଏତେ ବଡ ସହରରେ ଖଣ୍ଡେ ଘର ଯୋଗାଡ କରି ନ ପାରିବା ତା'ର ଅଯୋଗ୍ୟତା । ଏଠିକି ଆସିଲେ ସିନା ସେ ଜାଣନ୍ତା ଘଟଣା କ'ଣ ! ଯାହାହେଉ ଘର ମିଳିଗଲା । ସେ ଲେଖିଦେଇଛି – ଘରେ ପକ୍‌କା ପାଇଖାନା, କଳପାଣି, ଆଲୁଅ, ଉପରମହଲା ଦକ୍ଷିଣମୁହାଁ...ଇତ୍ୟାଦି !

ଏ.ଟି.ନାଏକ୍ କାନେଇଲା । ବୋଧହୁଏ ସିଡିରେ କେହି ଆସୁଚି । ସକାଳ ଆଠଟାରେ

କିଏ ଆସିପାରେ ? ସେ ଏଠି ରହିବାର ଜାଣିପାରି କ'ଣ ସରକାରୀ ଇନ୍‌ସପେକ୍ଟର ଆସିଗଲା କି ? ତା' ଅଫିସ୍‌ର ଗୋକୁଳି ମହାନ୍ତି ବୋଧେ ମାଡିଆସିଲା । ସେ ବି ସେମିତି ବାବାନା-ଭୂତ ପରି ଆଜିକୁ ଚାରିମାସ କାଳ ବାରଦ୍ୱାର ଶୁଣିପିଣ୍ଡା ହେଲାଣି । ଏବେ ସେଇ ଅଫିସ ଟେବୁଲରେ ଶୋଇଯାଉଛି । ଖାଉଛି ସେଇ ଅଫିସ୍ କେଣ୍ଟିନ୍‌ରୁ । ପାଦଶବ୍ଦ ପାଖେଇ ଆସିଲା । – ସେ ଉଠିଗଲା ବାଲ୍‌କନିକୁ । ଭଉଁରି ପାହାଚରେ ହାତରେ ଝାଡୁ ଧରି ଯେ ଉଠିଆସୁଛି ସେ ନିଶ୍ଚୟ ମେହେନ୍ତାଣୀ । ଏ.ଟି.ନାଏକ୍‌କୁ ଦେଖି ସେ ଚାରି ପାହାଚ ତଳେ ଅଟକିଗଲା । ଚାହିଁଲା ଉପରକୁ ।

ନୂଆ ବାବୁଟିକୁ ଏମିତି କାବା ହେଇ ଚାହିଁବାର ଦେଖି ସେ ଟିକିଏ ହସିଲା । ମିଠା ମିଠା ସ୍ୱରରେ କହିଲା, "ପାଇଖାନା ଧୋଇବାକୁ ଆସିଲି ।" ଏ.ଟି.ନାଏକ ଆକାଉଣ୍ଟେଣ୍ଟ 'ହାଁ' କରି ଚାହିଁ ରହିଲା ଚିରା ପିନ୍ଧିଥିବା ସେ ତରୁଣୀଟିକୁ । ସ୍ୱାସ୍ଥ୍ୟ ଚେହେରା ବେଶ୍ ବଢିଆ ତ ! ଆସୁ, ମନ୍ଦ କ'ଣ – ଭାବିଲା ସେ । କିନ୍ତୁ ପଚାରିଲା ପ୍ରାୟ ବିନୟରେ, "ଆଚ୍ଛା ! ତୁମେ କ'ଣ ସବୁଦିନେ ଆସିବ ?" 'ତମେ' ବୋଲି ଡାକିବାରୁ ତାକୁ ଭାରି କଉତୁକ ଲାଗିଥିବ । ସେ ଛାଞ୍ଚୁଣୀ ଆଢୁଆଳରେ ଟିକିଏ ହସିଦେଲା । କହିଲା, "ମୋ ନାଁ କନକ ! ସବୁଦିନ ନ ଆସିଲେ ଜମାଦାର କାମରୁ କାଢିଦେବ । ଏଇ ଖାତାରେ ବାବୁଘରୁ ଲେଖିନେଲେ ମତେ ମଜୁରି ମିଳେ ।..." ବୁକୁ ଉପରୁ କନା କାଢି ତା'ରି ଭିତରୁ ଖଣ୍ଡେ ଖାତା ବାହାର କଲା । ଏ.ଟି.ନାଏକର ଆଖି ତବ ତବ ! ସେ ବାଲ୍‌କନି ବାଡ ଉପରେ ହାତ ବୁଲେଇନେଲା ବେଳକୁ ଅନୁଭବ କଲା ତା' ସ୍ୱାର ଚିଠି । ଏଇଠି ପରା ସେ ଘର ସଂସାର କରିବ – ସବୁଦିନେ ଏ 'କନକ' ଆସିବ କେମିତି ?

କନକ ଚାହିଁଲା ପରଦାକୁ । ବୋଧହୁଏ ବୁଝିଗଲା – "ଆମର ଲେଖା ହେଇଗଲେ ହେଲା । ମାତ୍ର କଥା କ'ଣ ଲୁଚିବ ? ଏଇଟା ଭଡାରେ ଯୋଉ ବାବୁମାନେ ନଉଚନ୍ତି ସେମାନେ ଆମକୁ ଦରମା ଦିଅନ୍ତି । ନହେଲେ ରିପଟ ହେଇଗଲେ ତାଙ୍କୁ ସରକାର କାଢିଦେବ ।"

ଧେତ୍‌ତେରି, ସେଇ କଥା ତ ! ଏ ଶାଳୀକୁ ଏଇଠୁ ବିଦା ନ କଲେ ରକ୍ଷା ନାହିଁ । "ଆଣିଲ, ସେ ଖାତା ମତେ ଦିଅ ! ତମକୁ ଆଉ କାମ କରିବାକୁ ପଡିବ ନାହିଁ । ଏମିତି ଏ ଭଡାଟିଆ ବାବୁମାନଙ୍କଠୁ କେତେ ଲେଖା ଦରମା ପାଉଛ ?"

ପୁଣି ହସି ହସି ସେ କହିଲା, "ବାବୁଙ୍କର କ'ଣ ପଇସା ଅଭାବ ? ତାଙ୍କ ମନ ହେଲେ ଏମିତି ଦିନକୁ ପାଞ୍ଚଟଙ୍କା ପକେଇଦେବେ । ମାସ ଶେଷକୁ ଫୋପାଡି ଦେବେ ଶହେ !"

"ହେଁ, ହେଁ, ହେଁ, ବୁଝିଲ, ଏ ହେଲା ଛ'ଟଙ୍କା ଘୋଡାକୁ ନ'ଟଙ୍କା ଦାନା । ଘରଭଡା ତ ଅଶୀଏ । ଏବେ ତମେ ପୁଣି ନବ ଶହେ ? – କ'ଣ ନା କାମ କରିବ ନାହିଁ ବୋଲି ?"

"ମୁଁ କ'ଣ ସେ କଥା କହୁଚି ?" – କନକ ତେର୍ଛା ଚାହିଁ ହସିଲା ।

ଏ.ଟି.ନାଏକ କିଛି ସମୟ ଚୁପ୍ ହେଇ ରହିଗଲା । – "ଆଚ୍ଛା, ତୁମେ ଆଜି କାମ କଲ ବୋଲି ମୁଁ ଲେଖିଦେଉଛି, ଏଇ ବକ୍‌ସିସ୍ ନିଅ ଟଙ୍କାଏ – ଯାଅ ।"

ସେ ଓହ୍ଲେଇ ଗଲାବେଳେ ଉପରୁ ପୁଣି କହିଲା – "ଏଇ ଖାତା ଲେଖା ବାବଦରେ ତମକୁ ମାସକୁ ଦଶ ଟଙ୍କାରୁ ଅଧିକ ଦେଇ ପାରିବିନାହିଁ।"

ଉପରକୁ ହସ ଚହଟେଇ କନକ ଉତ୍ତର ଦେଲା, "ହଉ, ସାଇବଙ୍କ ଯାହା ମନ!" ଏ.ଟି.ନାଏକ ଦେଖିଲା ଯେ ସେ ସାମନାର ପ୍ରାୟ ସବୁ ବାଲ୍‌କନିରୁ ଲୋକେ ତାକୁ ଚାହିଁ ରହିଛନ୍ତି। ହଉକିନା ତା'ର ଝାଳଟାଏ ଫିଟିଗଲା। ଯଦି କନକ ମେହେନ୍ତାଣୀ ପରଦା ଟେକି ଘ୍ୟା' ଭିତରକୁ ତା' ପଛେ ପଛେ ପଶି ଆସିଥାନ୍ତା ?...ଥରେ ଅଫିସ୍‌ରେ ଗୋଟିଏ ଶହେ ଟଙ୍କିଆ ନୋଟ ବଳକା ବାହାରୁଥାଏ। ଏ.ଟି.ନାଏକ ତିନିଥର ଗଣିଲାପରେ ସେ ଖଣ୍ଡକ ହାତରେ ଧରି କର୍ କର୍ କରୁଥାଏ। ଆଉ କେହି କୁଆଡେ ନ ଥାନ୍ତି। ତା' ପଛରୁ ଶୁଭିଲା, "କିଓ, ନାଏକ କ'ଣ ହେଲା କି ?" – ଖୋଦ୍ ଡାଇରେକ୍ଟର!! – ଧଡ୍‌ପଡ୍ ଉଠି ନୋଟ୍ ଖଣ୍ଡି ହାତରେ ଧରି ସେ କହିଥିଲା; "ସାର୍, ଶହେ ଟଙ୍କା ଅଧିକା ବାହାରୁଛି।" "ଆଚ୍ଛା, ଆଚ୍ଛା ବାହାରିବ ତ । ମୁଁ ଦେଖୁଥିଲି ତୁମେ କ'ଣ କରିବ! ଗୋଟାକରେ ମୋର ଦସ୍ତଖତ୍ ଦେଇ ମୋ ହାତରୁ ମିଶେଇଥିଲି।" ସମ୍ଭ୍ରମରେ ନୋଟ୍‌ଟିକୁ ବଢେଇ ଦେଇ ସେ ନଥିକିନା ବସିପଡିଥିଲା। ଗୋଟାଏ ବାମ୍ଫୁଆ ଝାଳ ମୁଣ୍ଡଠଉଁ ତଳକୁ ନିଗିଡିଯାଇଥିଲା।

ନାଲି ଜରଜର ମୁହଁରେ ଏ.ଟି.ନାଏକ ପରଦା ଟେକି ଭିତରକୁ ପଶିଆସିଲା। ଘଣ୍ଟାରେ ସେତେବେଳେ ଆଠଟା ପନ୍ଦର। ଦୁଇଟି ବ୍ଲକ୍ ମଝିରେ ସରୁ ମେହେନ୍ତର ରାସ୍ତା। ତିନି ନମ୍ବର ରାଜରାସ୍ତାରେ ପହଞ୍ଚିବାକୁ ତାକୁ ଧାଇଁବାକୁ ପଡିଲା। ନହେଲେ ସାଢେଆଠଟା ବସ୍ ଚାଲିଯିବ। ବସ୍ ଉପରକୁ ଉଠିବାକୁ ତିନୋଟି ପାହାଚ। ଏ.ଟି.ନାଏକ କେବେ ଦ୍ୱିତୀୟ ପାହାଚରେ ଗୋଡ ଦେଇନାହିଁ। ବାଦୁଡି ଭଳି କୌଣସି ପ୍ରକାରେ ଦଶମିନିଟ୍ ଓହଳିଗଲେ ତା' ଯାତ୍ରା ସରିଯାଏ। 'ସୁନାଡଙ୍ଗା' ଲଜିଂରୁ ଭାଇନା ହୋଟେଲକୁ ଯେତିକି ବାଟ, ଏଠୁ ପ୍ରାୟ ସେତିକି। ପଚିଶ୍ ପଇସା ପାଇଁ ଦଶମିନିଟ୍‌ର ରାସ୍ତା।

ଭାଇନା ହୋଟେଲ୍‌ରେ ସବୁ ଟେବୁଲ୍ ଭର୍ତ୍ତି। ରୋଷଶାଳ ଆଡକୁ ଗୋଟିଏ ସିଙ୍ଗଲ ଟେବୁଲରେ ପତ୍ର ଖଣ୍ଡିଏ ପକେଇ ରୋଟି ଡାଲମା ପାଇଁ ତାକୁ ଲାଗିଗଲା ଆଉ ଦଶ ମିନିଟ୍। ସେଇଠୁ ସେ ଲୁଚେଇ ଲୁଚେଇ ଚାହୁଁଥାଏ। କାହାକୁ ଖୋଜୁଥାଏ ନା କଣ। ହଠାତ୍ ଅଧା ଗେଞ୍ଜିପିନ୍ଧା ଅଧାବଇସିଆ ମଣିଷଟି ପିତଳ ବାଲ୍‌ଟିରେ ଡାଲମା ନେଇ ତା' ଆଗରେ ଆସି ଠିଆହେଲା। ପତର ସଜାଡିବା ଢଙ୍ଗରେ ତଳୁ ଏ.ଟି.ନାଏକର ଦଶପଇସିଟିକୁ ନେଲାବେଳେ ତା' ଆଖିରେ ବୁଝାମଣାର ହସ। ତା' ଉତ୍ତାରୁ ଏ.ଟି.ନାଏକର ପ୍ଲେଟ୍ ଆଉ ଆଦୌ ଖାଲି ରହିଲା ନାହିଁ। ରୋଟି ପରଷୁଥିବା ଲୋକଟିକୁ ଏହିଭଳି ପଟେଇବାକୁ ଏ.ଟି.ନାଏକ ସଜ ପାଇନାହିଁ। ନ'ଟା ପନ୍ଦରବେଳକୁ ଟେବୁଲ ପାଖରେ ଆଡଘଷା ଦେଇ ଅନ୍ୟ ଗରାଖ ଆସି ଠିଆ ରହିଗଲେ। ଗଣିଲେ ଏ.ଟି.ନାଏକ ପତରରେ କେତେଖଣ୍ଡ ରୁଟି। ନିଘା କଲେ ସେ ଖାଉଚି କେମିତି। କେତେବେଳେ ସେ ଘୁଞ୍ଚିଲେ

ଅଗଁଠା ଉଠିବା ପୂର୍ବରୁ ଆଉଜଣକ ବସିଯିବ – ଏଇ ଖଞ୍ଜ ଉଣ୍ଡି ସେ ଛେପ ଡୋକୁଥାଏ ! – ଖଣ୍ଡେ ଗୁଟି ଛାଡିଦେଇ ଏ.ଟି.ନାଏକ ଉଠିଗଲା ।...

ତିନୋଟି ବୋଝେଇ ବସ୍ ସେ ଛକଠି ଆଉ ନ ରହି ଚାଲିଗଲେ । ଏ.ଟି.ନାଏକ ଆଉ ଅଣତ୍ରିଶ ଜଣ ପ୍ରାର୍ଥୀଙ୍କ ହାତଟେକା ଚିତ୍କାରକୁ ଖାତିର କଲାଭଳି ଅବସ୍ଥାରେ ସେ ଫାଟିପଡୁଥିବା ବସ୍‌ଗୁଡିକ ନଥିଲେ । ଯାତ୍ରାର ଏଇ ପର୍ଯ୍ୟାୟଟିକୁ ସେ ସବୁବେଳେ ଡରିଆସିଛି । ଅନେକ ରାତିରେ ବସ୍‌କୁ ଦୌଡି ଧରିବା ପାଇଁ ନିଦରୁ ଉଠି ଝାଳେଇଛି । ତାକୁ ଅନେକ ସମୟରେ ଲାଗିଛି ଯେ ଗୋଟିଏ ଦଣ୍ଡାକୁ ଧରି ସେ ଓହଳିଛି ଏବଂ ତାକୁ ଏ ସହରର ବାସିନ୍ଦାମାନେ ବସ୍ ଭିତରେ ଥାଇ ପେଲିଲାଗିଛନ୍ତି । ଏଭଳି ଝୁଲିରହି ସେ ବଞ୍ଚୁଛି ଏଇଠି ।

ଅଫିସରେ ପହଞ୍ଚିଲାବେଳକୁ ବଡବାବୁଙ୍କ ନିଶ ଗରମ । ତାଉ ଯେ କହିଲେ ନ ସରେ । ନାଇଡୁ ପାଖରୁ ସ୍ପେଶାଲ କଡାପାନ ଦି'ଖଣ୍ଡ ଆସ୍ତେ ତାଙ୍କ ବାଁ ହାତ ପାଖରେ ଟେବୁଲରେ ରଖି ସେ ଠିଆହେଲା । ନିଶ ନଇଁଗଲା, ମୁହଁ ନରମିଗଲା । ସେ ଚାହିଁଲେ, ନାଏକକୁ କହିଲେ, "ନେଲ, ଏ ଭଦ୍ରଲୋକଙ୍କୁ ଟିକିଏ ବାହାରକୁ ! ସେ ମୋଟେ କିଛି ବୁଝୁନାହାନ୍ତି । ନିଅ, ଚଞ୍ଚଳ ଯାଅ ! ମୁଁ ଅନ୍ୟ କାମ କରେ ।" ଭଦ୍ରଲୋକଟି ବେଶ୍ ମାଲଦାର । ଏ.ଟି.ନାଏକ ତାଙ୍କୁ ଅଫିସ୍ ପିଣ୍ଡାକୁ ନେଇ ବୁଝିଲା ଯେ ସେ ଆସିଛନ୍ତି ପନ୍ଦର ହଜାର ଟଙ୍କାର ବିଲ୍ ପାଶ୍ କରେଇବେ । ହତଭାଗା ମହାଶୟ ବୁଝିନାହାନ୍ତି କିଛି । ଦିଗ ବାରି ପାରୁନାହାନ୍ତି । ଏ.ଟି.ନାଏକ ଅଳ୍ପ ହସ ଭିତରେ ତାଙ୍କୁ ସୂଚେଇଦେଲା ଯେ ଟଙ୍କା ଦେଢଶରେ ହାତ ଚିକ୍‌କଣ ନହେଲେ, ତାଙ୍କ କାଗଜ ଖସିବ ନାହିଁ ।...

ବଡବାବୁଠାରୁ ସେଥିପାଇଁ ଟିକିଏ ସହଜରେ ଛୁଟି ମିଳିଗଲା । ଏ.ଟି.ନାଏକ ଏଗାରଟା ପରେ ରାସ୍ତାକୁ ବାହାରି ଆସି ପ୍ରଥମେ ବାଉଳା ହୋଇଗଲା । ରାସ୍ତାଘାଟ ଖାଲି । ବସ୍‌ଗୁଡିକ ଖାଲି । ଚାରିଆଡେ ଅନେକ କୋଠା, ଅନେକ ଖରା । ଅନେକ ଦିନ ତଳେ ସ୍କୁଲକୁ ନ ଯାଇ ଏ.ଟି.ନାଏକ ଆଉ ଜଣେ ପାଠଚୋର ସାଙ୍ଗରେ ପ୍ରଥମ ଥର ପାଇଁ ତା' ଗାଁ ଆମ୍ବତୋଟା ଏବଂ ନାଳକୁ ଦ୍ୱିପହର ସମୟରେ ଦେଖିଥିଲା । ବିନା କାରଣରେ ଗୁଡାଏ ଧାଇଁଥିଲା ଏବଂ ଘାସ ଉପରେ ଶୋଇ ଉପରକୁ ଚାହିଁ ବଡପାଟିରେ ହସିଥିଲା । ଏ ରାଜଧାନୀଆ ସହରଟି ସତେ ଏତେ ସୁନ୍ଦର ! – ବସ୍ ଭିତରେ ପାଞ୍ଚଜଣରେ ସେ ଜଣେ । ଦୋକାନରେ ସେ ଅତି ମାନନୀୟ ଏକକ ଗରାଖ । ଜିନିଷ ପାଇଁ ସେଇଠି ସେ ଆଉ ମୂଲଚାଲ କଲାନାହିଁ । ଖଟ କିଣିଲାବେଳେ ଦୋକାନୀ ତାକୁ ଚା ପିଇବାକୁ ବାଧ କଲା । ଲୁହା ଦୋକାନରେ ଦୁଇଶ ଗ୍ରାମ୍ କଣ୍ଟା ସେ ମାଗିପାରିଲା ନାହିଁ । ଅଧକେଜିଏ ଇଞ୍ଚକିଆ କଣ୍ଟା ଅନିର୍ଦ୍ଦିଷ୍ଟ ଭବିଷ୍ୟତର ପ୍ରୟୋଜନ ପାଇଁ ସେ କିଣିନେଲା । ଫଳରେ ଷ୍ଟୋଭଟି ହେଲା ଟିକିଏ ଶସ୍ତା ଏବଂ ଦୁର୍ବଳ । ଗାଧୁଆ ଖଟୁଲିଟି ଏ.ଟି.ନାଏକର ଏକାବନ କେଜି ଓଜନ ପାଇଁ ଯଥେଷ୍ଟ ମନେହେଲା ।

ଏ.ଟି.ନାକେ ମନଦେଇ କାମ କଲେ କେହି ତାକୁ ଖୁଣିଦେଇ ପାରିବେ ନାହିଁ । ରୋଷେଇ

ସରଞ୍ଜାମ ସଜାଡି ସାରି, ସେ ବିଛଣା ଗ୍ଦରଟିକୁ ଗଦିତଳେ ମୋଡି ଦେଇ, ହାଲୁକା ନାସରଙ୍ଗର ଡିସଟେମ୍ପର କରାହୋଇଥିବ ତା'ର ସେ ଆଠଫୁଟରେ ଆଠଫୁଟ ସଂସାରଟିକୁ ଗ୍ହେଁ, ଦୁଇ ପାପୁଲିକୁ ଖୁବ୍ ଖୁସିରେ ଘଷି ନେଲା । ବାଆସ୍ ! ଆଉ କଛି ବାକି ନାହିଁ । ପଲିଥିନ୍ ଟ୍ୟୁବ୍‌ରେ ପାଣି ଆସୁଛି । ଟିପିଦେଲେ ଆଲୁଅ ଜଳୁଛି । ଛିଟ ବିଛଣା ଗ୍ଦର ସହିତ କେଲେଣ୍ଡରର ରଙ୍ଗ ଚମତ୍କାର ଦିଶୁଛି । କୁଣରେ ଗୋଟିଏ କାଠ ଖୋପ ଉପରେ ଶିଙ୍ଗତିଆରି ବଗଟିଏ ମାଛ ଥଣ୍ଟରେ ଧରି ଥୋମଣି ଟେକି ରଖିଛି । ...ତା'ର ପୁରୁଣା ଟ୍ରଙ୍କଟି ଉପରେ ଖଣ୍ଡିଏ ଦରିକୁ ଚଉତି ପକେଇଦେବା ପରେ ଏବଂ ଛିଟକନା ମଡେଇଦେବାରୁ ବସିବାପାଇଁ ସୁନ୍ଦର ଦିବାନ୍ ଖଣ୍ଡିଏ କାନ୍ଥକୁ ଲାଗି ପ୍ରସ୍ତୁତ ହୋଇଯାଇଛି । ଆଉ କ'ଣ ଗ୍ହିଁ ? – ଏ.ଟି.ନାଏକ ଚିଠି ଲେଖିଦେଲା ଯେ, ଆସନ୍ତା ବାର ତାରିଖ ବୁଧବାର, ସକାଳ ଗାଡିରେ ସେ ଅପେକ୍ଷା କରିଥିବ ତା' ସ୍ତ୍ରୀକୁ । ସେଇବାଟେ ତା' ବଡ ଶଳା ସେଦିନ ତା' ଛୁଟି ସାରି ଫେକ୍ଟରୀକୁ ଫେରିବ ବୋଲି ଲେଖିଥିଲା । – ବେଶ୍ ବଢିଆ ଖାପିଲା – ଏ.ଟି.ନାଏକ କେବଳ ଷ୍ଟେସନକୁ ଯାଇ ଗୋଟିଏ ସ୍କୁଟର ରିକ୍‌ସାରେ ତାକୁ ନେଇ ଆସିବା କଥା । – ତା' ଶଳା ଆଉ ଓହ୍ଲେଇବାର କ'ଣ ପ୍ରୟୋଜନ ?

ଏ.ଟି.ନାଏକ ଅଫିସ୍‌ରେ ଦୁଇ ତିନି ଦିନ ଧରି ଖୁବ୍ ପାନ ଖାଇଛି । ଖୁବ୍ ପାନ ଯାଚିଛି । – କଥାକଥାକେ ଫୁର୍‌ଫୁର୍ ହସ । ଦଶ ତାରିଖ ଦିନ ତା' ମୁଣାରୁ ଜଣେ କିଏ ବାହାର କରି ଆଣିଛି ତା' ନାଁ ଲେଖା ହୋଇଥିବା ଚମତ୍କାର ସରୁ ପଟାଟିଏ, ସାଗୁଆନ୍ ରଙ୍ଗ ଉପରେ ଧଳା ଅକ୍ଷର । "ଏ.ଟି.ନାଏକ, ଆକାଉଣ୍ଟେଣ୍ଟ । କ'ଣ ନାଏକବାବୁ, କେବେ ଆପଣଙ୍କ ଘରେ ଗ୍ ଭୋଜି ହବ – କେବେ ନୂଆବୋଉ ଆସୁଛନ୍ତି ?" "ନାଏକବାବୁ ଏବେ ବଡଲୋକ । ତାଙ୍କୁ ଘର ମିଳିଗଲା" – ଇତ୍ୟାଦି ଗୁଡିଏ ସୁଆଦ ସୁଆଦ କଥା ତାକୁ ଭାରି ଖୁସି ଲାଗୁଥାଏ ଶୁଣିବାକୁ । ସେଦିନ ରାତିରେ ଭାଇନା ହୋଟେଲରେ ଡାଲମା ପରଷାଳିକୁ କୋଡିଏ ପଇସା ଦେଇ ଅଳ୍ପ ହସିଦେଲା । ଏ.ଟି.ନାଏକ କହିଲା, 'ଆଉ କାଲି ଦିନଟା ଖାଇଲେ ସେ ଆସିବ ନାହିଁ । ପଅର ଦିନଠୁ ସେ ତା'ର ପରିବାର ଆଣୁଛି ।' ଏ.ଟି.ନାଏକ ସେଦିନ ଶୋଉ ଶୋଉ ରାତି ଅନେକ ।

ଏଗାର ତାରିଖ ସକାଳୁ ତା'ର ଇଚ୍ଛା ହେଲା ଛୁଟି ନେଇ ଯିବାକୁ । ନା, ବରଂ କାଲି ନେଲେ ତା'ର କିଛି ଅର୍ଥ ଅଛି । ସେ କାଠ କାବିନରୁ ଗ୍ ଟିକିଏ ଖାଇ ଆସିବାପରେ ନାଁ ଲେଖା ପଟା ଖଣ୍ଡକ ବାହାର କାନ୍ଥରେ କଣ୍ଟା ମାରିଦେଲା । ଅନ୍ୟ ବାଲ୍‌କନିରୁ କୋଇଲା ଧୂଆଁ ଗୁମୁରୁଥାଏ । କାହୁଁ ଆସି କୁହୁଡିଟାଏ ମାଡିଗଲା । ନୂଆ ଆମ୍ବବଉଳ ଜଳିଯିବ । ଝଡିଯିବ କୁଢ କୁଢ ହୋଇ ଗଛମୂଳେ । ହାତୁଡି ହାତରେ ଧରି ବାହାରକୁ ଗ୍ହିଁଲା ଏ.ଟି.ନାଏକ ଅନ୍ୟମନସ୍କ ହୋଇ । ଗୁମ୍‌ସୁମ୍ ଘର ଭିତରେ ପଶି ବିଡିଟିଏ ଟାଣିଲା । ବାହାରକୁ ଆସି କାହାକୁ ଅପେକ୍ଷା କଲା ଭଳି ବାଲ୍‌କନିରୁ ଗ୍ହିଁଲା ! – ମେହେନ୍ତାଣୀ କନକ କୁହୁଡି ଭିତରୁ ବାହାରି ତା' ଭଉଁରି ପାହାଚ ତଳେ ଠିଆହେଲା, ଉପରକୁ ଗ୍ହିଁ ଦାନ୍ତ କାଢି ହସିଲା ! ଏ.ଟି.ନାଏକ ଖୁବ୍ ଅମାୟିକ ଫୁଲାଣିଆ ହସଟିଏ ଭିତରେ

ଧୂଆଁ ଛାଡିଲା ମୁହଁରୁ ।

"ମାଁ ଆସିଲେଣି କି ବାବୁ ?"

– "ନା–"

"ତା'ହେଲେ ଟିକିଏ ଆଡେଇ ହେଇଗଲେ ମୁଁ ଯାଇ ପାଇଖାନାଟା ଧୋଇ ଦିଅନ୍ତି ।"

କିଛି ବିଳମ୍ବରେ ବିଡିଟିକୁ ପାଟିରେ ଦେଇ ଏ.ଟି.ନାଏକ କହିଲା – 'ଉହୁଁ' । ଅନ୍ୟମନସ୍କଭାବରେ ଭିତରକୁ ପଶିଯାଇ ଖଟ ଉପରେ ଗୁଡାଏ ବେଳ ଗଡେଇ-ତଡେଇ ହେଲା ।

ତିନି ନମ୍ବର ରାଜରାସ୍ତା ଉପରେ ଅନେକ ବେଳୁ ଘାଉଁ ଘାଉଁ ଗାଡି ମଟର ଚାଲିବାର ଶବ୍ଦ ଶୁଭିଲାଣି; କିନ୍ତୁ ତା'ର ସେ ଆଡକୁ ଧ୍ୟାନ ନଥିଲା । ମେହେନ୍ତର ଗଳିବାଟେ ଗୋଟିଏ ବା ଦୁଇଟି ସେକେଣ୍ଡ ପାଇଁ ଶବ୍ଦର ତରଙ୍ଗ ପଶିଆସି ସବୁ ବାଲ୍‌କନିରେ ବାଣ୍ଟି ହେଲାବେଳେ ଏ.ଟି.ନାଏକ ଆକାଉଣ୍ଟେଣ୍ଟ ଭାଗରେ ଯାହା ପଡେ ତାକୁ ସେ ଅତି ସ୍ୱାଭାବିକ ଭାବରେ ଗ୍ରହଣ କରିଥିଲା; କିନ୍ତୁ ଗୋଟିଏ ଗାଡିର ଶବ୍ଦ ଅନେକ ବେଳ ପର୍ଯ୍ୟନ୍ତ ଶୁଭିବାକୁ ଲାଗିଲା । ଖୁବ୍ ଅସ୍ୱାଭାବିକ କଥା ! ବୋଧହୁଏ ଗୋଟିଏ ଜିପ୍ ! ତା'ପରେ ସେ ଶବ୍ଦ ଠପ୍‌କରି ରହିଗଲା – ସେଇଟା ବି ଅସ୍ୱାଭାବିକ । – ଏ.ଟି.ନାଏକ ଆଖି ମୁଦି ବିଛେଇ ହୋଇ ପଡିଥାଏ । ତା'ର ପ୍ରାଣ ଥାଏ ଏ ସଂସାର ସାଙ୍ଗରେ ? ପଟା ଦୋଳିରେ ଆଉ ଗୋଟିଏ ଜାଗା ଖାଲି ରଖି ସେ ଅପେକ୍ଷା କରିଛି । ସେ ଜଣକ ଆସିଗଲେ ଦୋଳି ପହରିବ ଭୂଇଁଫୁଲରୁ ଆକାଶ-ଫୁଲ ପର୍ଯ୍ୟନ୍ତ । କାଲି ସକାଳୁ ଏତିକିବେଳକୁ ସେ ଆସିସାରିଥିବ । ସହର-ଘରଗୁଡିକ ଛୋଟ, କିନ୍ତୁ ସୁନ୍ଦର ! ଏଠି ଚଳିବା ଢଙ୍ଗ ଅଲଗା । ସେ ଯ୍ୟା ମଝିରେ ଠିଆହୋଇ ଚାରିଆଡକୁ ଚାହିଁବ, ହସିବ ! ନୀଡଟି ଲାଗୁଥିବ ଖୁବ୍ ଉଷୁମ, ଖୁବ୍ ନିବିଡ ! ଏ.ଟି.ନାଏକ ମାଛ ଆଣିବ । ମିଠା ଆଣିବ । ଛୁଟି ନେବ । ଅନେକ ନୀରବ ସାନ୍ନିଧ ପରେ ସେ ହୁଏତ ପଚାରିବ – "ଆଜି କାମକୁ ଯିବ ନାହିଁ କି ?" ଏ.ଟି.ନାଏକ ଟିକିଏ ହସିବ, କହିବ – ଏଠୁ ମୁଁ ଆଉ କେବେ କୁଆଡେ ଯିବିନାହିଁ, ତୁ' ଆସିଲୁଣି ପରା ।...

କବାଟରେ ଖଟ୍ ଖଟ୍ ଶବ୍ଦ କରି ସେ ଉଠିବା ପୂର୍ବରୁ ଭିତରକୁ ପଶିଆସିଲେ ଚାରିଜଣ ଅପରିଚିତ ମଣିଷ । ଜଣେ ପଚାରିଲା – "ଆପଣ ଏ.ଟି.ନାଏକ !"

ଆଜ୍ଞା !

– ତା'ପରେ ଆରଲୋକଟି ମୁହଁ ବୁଲେଇ ଅନ୍ୟମାନଙ୍କ ସହିତ କଥାହେଲା ।

"ଏଇଟା ଫ୍ଲାଟ୍ ଘରର ଗେଷ୍ଟରୁମ୍‌କୁ ଲାଗି ପାଇଖାନା ଆଉ ଗାଧୁଆ ଘର ।"

"କାହା ନାଁରେ ଏ ଘର ଅଛି ?"

"ରମେଶବାବୁ – ରମେଶ ଦତ୍ତଙ୍କ ନାଁରେ ବାରବର୍ଷ ହେଲା ଅଛି ।"

"ସେ କିଏ ?"

"ସାର୍ ଆମ ରମେଶ ବାବୁ ମ । ରମେଶ ବାବୁଙ୍କୁ ଜାଣିନାହାନ୍ତି ? ସେ ପରା ଏଇ ଦୁଇ

ମାସ ହେଲା ବାଲେଶ୍ୱର ଯାଇଛନ୍ତି । ସେଇଠି ତାଙ୍କୁ ସରକାରୀ ଘର ମିଳିନାହିଁ । କୌଣସିମତେ ତାଙ୍କର ପୁରୁଣା କୋଠାରେ ଚଳିଯାଉଛନ୍ତି । ଏଇ ତିନିନମ୍ବର ଛକ ପାଖରେ ହଳଦିଆ କୋଠାଟା ତାଙ୍କର ନୁହେଁ ?"

"ଆଚ୍ଛା, ଆଚ୍ଛା, ବୁଝିଲି । ଷ୍ଟେସନ ବଜାରରେ ସେ ବଡ ମନହରି ଦୋକାନଟା..."

"ହଁ ସାର୍, ଠିକ୍ ଧରିଛନ୍ତି ।"

ଏ.ଟି.ନାଏକ ନିଷ୍ପୃହ ଶ୍ରୋତାଟିଏ କେବଳ ।

"ରମେଶ ବାବୁ ତାଙ୍କ ଶଳାକୁ ଏ ଘର ତାଙ୍କ ନାଁରେ ରଖିବାକୁ ଅନୁରୋଧ କରିଛନ୍ତି ।"

ଚାରିଜଣଯାକ ଚାହିଁଲେ ଏ.ଟି.ନାଏକ ମୁହଁକୁ ।

ସାର୍ ଜଣକ ପଚାରିଲେ, "ଏଠି ଆପଣ କେମିତି ଅଛନ୍ତି ? ଆପଣଙ୍କୁ ଅଧଘଣ୍ଟାଏ ଭିତରେ ବାହାରିଯିବାକୁ ହେବ !"

ଆଜ୍ଞା !!

"ସରକାରୀ ବାସଭବନ ଆଇନର ଧାରା ଢେର୍, ଉପଧାରା ତିନ୍ ଏବଂ ମୋବାଇଲ୍ କୋର୍ଟଙ୍କ ସରଜମିନ୍ ଖୋରାକ ଏବଂ ଆଦେଶ ଅନୁସାରେ ଆପଣଙ୍କୁ ଏବଂ ଆପଣଙ୍କ ସମସ୍ତ ଜିନିଷପତ୍ରକୁ ସରକାରଙ୍କ ଏ ଖାସମାହାଲରୁ ବର୍ତ୍ତମାନ ବେଦଖଲ କରାଗଲା !"

ଓଠ ଚାଟି ଏ.ଟି.ନାଏକ କହିଲା, "ଏ ଅଞ୍ଚଳରେ ତ ଆଉ ବହୁତ ଲୋକ ମୋ ଭଳି ଅଶୀ ଟଙ୍କା ଭଡାରେ ପାଇଖାନାମାନଙ୍କରେ ରହୁଛନ୍ତି !"

"ସେ ବିଷୟରେ ଆପଣ କହିବାକୁ ଅଧିକାରୀ ନୁହନ୍ତି । ତାଙ୍କ କଥା ଇଚ୍ଛାକଲେ ସରକାର ସ୍ୱତନ୍ତ୍ର ଭାବରେ ବିଚାର କରିପାରନ୍ତି ।"

"ତା'ହେଲେ; ସାର୍ ମୁଁ ଆଉ ଏଠି ରହିପାରିବି ନାହିଁ ?"

"ନା !"

ଏ.ଟି.ନାଏକ ଚାହିଁଲା ଡିସ୍‌ଟେମ୍ପର କାନ୍ଥରୁ ପରଦା ଲାଗିଥିବା ଆଲମାରି ପର୍ଯ୍ୟନ୍ତ । ହୁକୁମ ହେଲା – 'ହାବିଲଦାର, ଜିନିଷ ବାହାର କର ।'

ଏକାବନ କେଜି ଏ.ଟି.ନାଏକ କ୍ଷୀଣ କଣ୍ଠରେ ଗୁହାରିଲା, "କାଲି ଦିନକ ରହିବାକୁ ଦେବେନାହିଁ, ହଜୁର ଧର୍ମାବତାର !"

ଉତ୍ତରରେ ଭୁସ୍ ଭୁସ୍ ପଶିଆସିଲେ ପିଆଦା । ଭଉଁରି ପାହାଚରେ ପାଦେ ପାଦେ ଓହ୍ଲେଇଗଲା ଏ.ଟି.ନାଏକ । ଅନେକ ଦିନର ସ୍ୱପ୍ନ ଅନେକ ଦିନର ଯୋଜନା, ଗୋଟିଏ ଗୋଟିଏ କୁଟା କାଠି ଖଞ୍ଜି ରଚନା କରିଥିବା ନୀଡଟିକୁ ଭାଙ୍ଗି ଗଳିଉପରେ କୁଢେଇଦେବାକୁ ମାତ୍ର ପନ୍ଦର ମିନିଟ୍ ସମୟ । ଲାଗିଥିବା ସବା ଶେଷରେ ଜଣେ ନାଁ ପଟାଟିକୁ ଉପାଡି ଆଣି ଏ.ଟି.ନାଏକ ହାତରେ ଧରେଇଦେଲା ଏବଂ ଜିପ୍ ପାଖକୁ ଆଗେଇଗଲା ! ଜିପ୍ ଭିତରୁ ଶବ୍ଦ ହେଲା ଇଞ୍ଜିନ୍‌ର,

ସରକାରୀ ମଣିଷମାନଙ୍କର । – ଏବଂ ଜିପ୍ ଚାଲିଗଲା ରାଜରାସ୍ତା ଉପରକୁ ।

ପଟାଖଟ ଉପରେ ଚିନ୍ତିତ ମନରେ ଗୋଟିଏ କୋଣକୁ ବସିଥାଏ ଖୁବ୍ ଛୋଟ ମଣିଷଟିଏ – ଏ.ଟି.ନାଏକ, ଆକାଉଣ୍ଟେଣ୍ଟ । ବାହାରେ କୁହୁଡି । ତା' ଆଖି ଉପରେ ଅନେକ ଧୂଆଁ । ସେ କେତେବେଳ ପରେ ଆଖିମିଟକା ମାରି ଦେଖିଲା ତା' ଆଗରେ କିଛି ଦୂରରେ ତଳେ ବସିଛି କନକ ମେହେନ୍ତାଣୀ ! ଚୁପ୍‌ଚାପ୍ ଗାଲରେ ହାତଦେଇ ବସିଛି !

"ଏଠି ପାଖରେ ଖାଲି ଘର ଅଛି ? – ଭଡାରେ ମିଳିବ ?" ଏ.ଟି.ନାଏକ କୌଣସି ଉତ୍ତରକୁ ଅପେକ୍ଷା କରୁ ନଥିଲା ।

କିନ୍ତୁ କିଛି ସମୟ ପରେ ଥଙ୍ଗେଇ ଥଙ୍ଗେଇ କନକ କହିଲା – "ତମେ ଆମ ସାଇକୁ ଆସିବ ବାବୁ ? – ସେଇଠି ଦୁଇବଖରା ଲିପାପୋଛା ନିର୍ମଳ ଝାଟିଘର । ବାଡିରେ କୂଅ ! ଶାଗମୁଗକୁ ଜାଗା । ଗାଈ ରଖିବାକୁ ଗୁହାଳ ।"

ଏ.ଟି.ନାଏକ ପାଟି ଉପରେ ହାତ ଚାପି ରଖି ଛଳଛଳ ଆଖି ଦୁଇଟିକୁ ନୁଆଇଁନେଲା ।



## ଉତ୍ତରପୁରୁଷ

ସରଜମିନ୍ ତଦନ୍ତରେ ଆସିଥିବା ଦାରୋଗାବାବୁଙ୍କ ଇସାରା ପାଇ ସେମାନେ ବେଣୁଧର ଓଝାଙ୍କୁ ପୁଣି ଥରେ ଟାଣି ବସାଇଦେଲେ ।

"ଆପଣ ମୋ ଉପରେ ଜୁଲୁମ୍ କରୁଛନ୍ତି । ମୋର ବିପତ୍ତିବେଳେ ଆପଣମାନଙ୍କର ଟିକିଏ ହେଲେ ଦୟା ହେବନାହିଁ ? ମୁଁ କୌଣସି ଜେରା ଶୁଣିବାକୁ ଚାହେଁନା । ମୋତେ ଛାଡିଦିଅ । ମୁଁ ଆଉ ବଞ୍ଚିବାକୁ ଚାହେଁନା ।"

ଚିତ୍କାର କରି ବେଣୁଧର ଓଝା ଓଟାରିହେଲେ ଖଟରୁ ଉଠିପଡିବାକୁ । ତାଙ୍କ ମୁହଁରେ ଚାରି ପାଞ୍ଚ ଦିନର ଦରପାଚିଲା ଦାଢି । କପାଳଯାକ ଝାଳ ।

"ଆପଣ ଏଭଳି ଉତ୍ତ୍ୟକ୍ତ ହେଲେ ବାଧ ହୋଇ ଆପଣଙ୍କୁ ଥାନାକୁ ଚାଲାଣ କରିଦେବାକୁ ପଡିବ । ଆମେ ଆସିଛୁ ସରୋଜକାନ୍ତ ଓଝା ଓରଫ୍ ବାବୁଲା; ବୟସ ଏକୋଇଶି, ମୁକାମ ବଳରାମପୁରଙ୍କ ଅପମୃତ୍ୟୁର ତଦନ୍ତ କରିବା ସକାଶେ । ଘଟଣାରୁ ପ୍ରକାଶ ଯେ ଏଇ ଗାଁରୁ ସାତମାଇଲ ଅନ୍ତରରେ ଥିବା ତ୍ରିଶୂଳବନ୍ଧ ମୋଡ ପାଖରେ ଗୁଳିମାଡରେ ସେ ନିହତ ହୋଇଛନ୍ତି । ମୃତ୍ୟୁବେଳକୁ ତାଙ୍କ ପାଖରେ କେବଳ ଆପଣ ହିଁ ଥିଲେ । ଆପଣଙ୍କ ହାତରେ ବନ୍ଧୁକ ଥିବା ସେ ପାଖରେ ଗାଈ ଚରାଉଥିବା ଟୋକା ଦେଖିଛି । ଆପଣ ଡାହାଣ ହାତରେ ବନ୍ଧୁକ ଏବଂ ବାଁ ହାତରେ ତିନୋଟି ମଲା ହରଡ ଚଢେଇର ବେକ ଗୁନ୍ଥି ଓହଳେଇଥିଲେ ବୋଲି ସେ ସାକ୍ଷ୍ୟ ଦେଉଛି । ଆପଣ ଏ ଅପମୃତ୍ୟୁ ବିଷୟରେ ଯାହା ଜାଣନ୍ତି କହନ୍ତୁ ।"

ବେଣୁଧର ଓଝା କେବଳ ହାଁ କରି ଅନେଇ ରହିଲେ । ତାଙ୍କ ତଳପାଟି ଓହଳି ରହିଗଲା ।

ଦାରୋଗାବାବୁ ତାଙ୍କ ନୋଟ୍ ବହି ଉପରେ କଲମ ଠପ୍ ଠପ୍ କରି କହିଲେ – "କହନ୍ତୁ, ଆପଣ ଯାହା ଜାଣିଛନ୍ତି, କହନ୍ତୁ ।"

ଖୁବ୍ ଅସ୍ପଷ୍ଟ ସ୍ୱରରେ ଶୁଭିଲା –

"ଆପଣ କ'ଣ ସନ୍ଦେହ କରୁଛନ୍ତି ଯେ..."

ମୁହଁ ଘୋଡେଇ ପକେଇଲେ ବେଣୁଧର ଓଝା । ଦାରୋଗା ଅପେକ୍ଷା କଲେ । କଲମମୁଣ୍ଡିକୁ ପାଟିରେ କାମୁଡି ସେ ଘଣ୍ଟାକୁ ଦି'ଥର ଚାହିଁନେଲେ । ମୁହଁରୁ ହାତ ଖସେଇ ଆଣି ବେଣୁଧର ବାବୁ

ମଟ ମଟ ଚାହିଁଲେ ।

"ଅସମ୍ଭବ !...ଆପଣଙ୍କର କ'ଣ ପୁଅ ନାହିଁ ଦାରୋଗା ବାବୁ ! ବାବୁଲା ମୋ ପୁଅ, ଗୋଟିଏ ବୋଲି ପୁଅ । ଆପଣ କ'ଣ ବିଶ୍ୱାସ କରିପାରୁଛନ୍ତି ଯେ ମୁଁ କଦାପି... ।" ପୁଣି ମୁହଁ ଘୋଡେଇ ପକେଇଲେ ସେ ।

"ମୁଁ କ'ଣ ସନ୍ଦେହ କରୁଛି ବା ସନ୍ଦେହ କରୁନାହିଁ, ସେଥିରେ ଆପଣଙ୍କର କିଛି ଯାଏ ଆସେ ନାହିଁ । ମୁଁ କେବଳ ଜାଣିବାକୁ ଚାହେଁ – ଆପଣ ଧରିଥିବା ବନ୍ଧୁକ ଗୁଳିରେ ସରୋଜକାନ୍ତ ଓଝାଙ୍କର କିପରି ମୃତ୍ୟୁ ଘଟିଲା ।"

କିଛି ସମୟ ନୀରବରେ ବିତିଗଲା ।

ଖୁବ୍ ଗମ୍ଭୀର ହୋଇ ଦରବୁଜା ଆଖିରେ ବେଣୁଧର ଚାହିଁଲେ ଦାରୋଗାଙ୍କ ମୁହଁକୁ । ତା'ପରେ ଦୁଇଆଣ୍ଠୁ ସନ୍ଧିରେ ହାତଯୋଡିକୁ ଭର୍ତ୍ତିକରି ସେ ଆସ୍ତେ ମୁଣ୍ଡ ନୁଆଇଁନେଲେ ତଳକୁ । ଓଠ ଚାଟି ମନକୁମନ କଥା ହେଲାଭଳି କହିଲେ –

"ଅନେକ ଲେଖାଲେଖି ପରେ ସେ ରାଜିହେଲା ବଡଦିନ ଛୁଟିରେ ଗାଁକୁ ଆସିବାକୁ । ଆସିଲାଦିନୁ ତା'ର ଗୋଟେ ଜିଦ୍ ଚଢେଇ ଶିକାର କରିବ । ତ୍ରିଶୂଳ ବନ୍ଧରେ ହଂସରାଳି ଓହ୍ଲେଇବା ସେ ଜାଣେ; ଏବେ ନୁହେଁ – ପିଲାଦିନୁ ଜାଣେ । କେମିତି ଦଳ ଦଳ ହୋଇ ସେ ପକ୍ଷୀ ସବୁ ପାଣି ଉପରକୁ ଓହ୍ଲେଇ ଆସନ୍ତି – କେମିତି ସେ ଭଙ୍ଗା ହୁଡା ଉପର କଣ୍ଟାଗଛମୂଳେ ଲୁଚିଗଲେ ସେମାନେ ପାଖକୁ ପହଁରି ଆସନ୍ତି – ପରସ୍ପରକୁ ଥଣ୍ଟରେ ଖୁମ୍ପି କଥାବାର୍ତ୍ତା କରନ୍ତି । ସେତିକିବେଳେ ବନ୍ଧୁକର ଘୋଡା ଦବେଇଦେଲେ ଖଇ ଫୁଟିଲାପରି ଉଠିଯାଆନ୍ତି ପାଣି ଉପରୁ; ଆଉ ତିନି ଚାରିଟି କେମିତି ଚିତ୍‌ମାତ୍ ହୋଇ ଭାସୁଥାନ୍ତି – ଏ ସବୁ ସେ ଜାଣିଛି ।"

"ଶିକାର କରିବାକୁ ଟୋକା ବୟସରେ ମନ ହେବା କଥା ।"...

ବେଣୁଧରଙ୍କ ଆଖିରେ ପଲକ ନଇଁଆସିଲା । ସ୍ୱର ଗହରେଇଗଲା ।

ଦାରୋଗା ବାବୁ ଆସ୍ତେ ଗଳା ସଫା କରିନେଲେ । ମନେପକେଇଲା ପରି ଶୁଣେଇଲେ, "ସେଦିନ କ'ଣ ହେଲା ?"

ବେଣୁଧର ଚେଇଁପଡି ଶୀତେଇଗଲେ । ଦାନ୍ତ ଦାବି ଦାରୋଗାଙ୍କ ମୁହଁକୁ ଚାହିଁ ପୁଣି ଆଖି ନୁଆଇଁନେଲେ ।

"ହୁଁ – ସେଦିନ...ସେଇଆ ହେଲା – ଆଉ କ'ଣ ହେବ ? ଖାଇସାରି ସେ ଆଉ ଥୟ ହେଲାନାହିଁ । ମୁଣା ଓ ବନ୍ଧୁକ ଧରି ତା'ର ସେ ନୂଆ ଜଙ୍ଗଲ ଟୋପିଟା ପିନ୍ଧି ବାହାରିପଡିଲା ।"

"ତା'ପରେ... ?"

"ତା'ପରେ ତା' ମା' ମୁଣାରେ ଆଣି ଜଳଖିଆ ପୁଡାଟାଏ ଥୋଇଦେଇ ଦୁଆର ମୁହଁରେ ଠିଆହୋଇ କହିଲା, "ବେଗି ପଳେଇଆସିବ । ଆଜି ବାବୁଲା ଖାଇବ ବୋଲି ରାତିପାଇଁ ଗଳା ଖେଚେଡି କରୁଚି । ହେଙ୍ଗୁ ଅଦା ପକେଇଲେ ବାବୁଲାକୁ ଭାରି ପ୍ରିୟ ।"

ସେ ତା' ମା'କୁ ହସି ହସି ଚାହିଁ କହିଲା, "କାହିଁକି ତୁଚ୍ଛାରେ ହଇରାଣ ହଉଚୁ ? ମୁଁ ଆଗ ଫେରିଆସେ, ତା'ପରେ ଯାହାହେଲେ କରିବା ।"

ତା' ମା' ଶୁଣେଇ ଶୁଣେଇ କହିଲା, "ହେଇ ଦେଖ, ପିଲାକୁ ସାଙ୍ଗରେ ନେଇ ଯାଉଛ – ବୁଝି ଖବରଦାର୍ । ବେଳ ଥାଉ ଥାଉ ଫେରିଆସିବଟି !"

ଦାରୋଗା ପୁଣି ଘଣ୍ଟାକୁ ଚାହିଁ କଲମ କାମୁଡ଼ିଲେ, ଅପେକ୍ଷା କରି କହିଲେ, "ସେଇଠୁ..."

"ସେଇଠୁ ଆମେ ଗଛ ଛାଇଛାଇରେ ଗାଁ ଗୋହୀରି ପାରିହୋଇଗଲୁ । ଗୁଡ଼ିଏ ଗେଣ୍ଡାଳିଆ ଉଷ୍ଣ ପଡ଼ିଆ ଉପରେ ଓହ୍ଲେଇଥାନ୍ତି । ସେ ଟୋକା ଚଙ୍ଗ ଚଙ୍ଗ ହେଇ ଗୁଳି ଫୁଟାଇବାକୁ । ତା' ଢଙ୍ଗରେ ଲାଜିଲା ବି । ଉଲ୍ଲୁ କାହାଁକା ! ଲାଖି ବସେଇଲାବେଳେ ହାତ ଗୋଡ ଲଡବଡ କଲେ କ'ଣ ହୁଏ ? ତା'ର ସେ ଲମ୍ବବାଳ, ସେ ଲମ୍ବ କଲି, ସେ ଲହର ଲପର ପେଣ୍ଟ୍ ଦେଖିଲେ ମୋ ହାତ ଜଳିଯାଏ, ରାଗରେ । ସେଗୁଡାକ ଦେଇ କ'ଣ ହେବ ଭଲା ? ଉଡିଗଲେ ଗେଣ୍ଡାଳିଆଯାକ । ମୋ ମୁହଁକୁ ଚାହିଁ ସେ ଚଗଲା ହସିଦେଲା । କହିଲା – "ଏଥର ତୁମେ ମାର, ନ ହେଲେ ଗୁଳିଯାକ ନଷ୍ଟ ହଉଚି । ଫାୟାର କଲେ ଯଦି ଜନ୍ତୁ ମଲାନାହିଁ, ତେବେ କି ଲାଭ !" ମୁଁ ତା' ହାତରୁ ବନ୍ଧୁକ ଛଡେଇ ନେଇଥିଲି ।

ବେଣୁଧର ଓଝା ନୀରବ, ଆଖିରେ ପଲକ ନାହିଁ ।

ଦାରୋଗାଙ୍କ ନୋଟ୍ ବହି ଉପରେ ପେନ୍‌ସିଲର ଠପ୍ ଠପ୍ ।

"ସେ ନାଳ ପାଖ ଡିମିରି ଉପରେ ଥୋକେ ହରଡି ଆସି ବସିଗଲେ । ବୁଦାରୁ ବୁଦାକୁ, ଗଛରୁ ଗଛକୁ ଛପି ଛପି ମୁଁ ପାଖେଇଲି । ସେ ଡେଇଁ ଡେଇଁ ଆସୁଥାଏ ମୋ ପଛେ ପଛେ । ତିନୋଟି ଚଢେଇ ଝଡିପଡିଲେ । ସେମାନଙ୍କ ଫଡ୍ ଫଡ୍ ହେଉଥିବା ଡେଣାମାନଙ୍କୁ ଏକାଠି କରି ସେ ଆସି ପହଞ୍ଚିଲା । ବନ୍ଧୁକରେ ସେମାନଙ୍କୁ ଓହଳାଇ ଆମେ ଆଗେଇଲୁ...ତ୍ରିଶୂଳ ବନ୍ଧ ଉପରେ ପାଞ୍ଚଶ ବର୍ଷର ପୁରୁଣା ବଟ ଗଛ । ଗର୍ଭ ଜଳିଯାଇଥିବା ଗୋଟାଏ ବିରାଟ ଜାମୁକୋଳି ଗଛ । ତା' ପାଖକୁ ସେଇ ଗହଳିଆ କଣ୍ଟା ବବୁଲ୍ ।...ହଂସରାଳିଙ୍କ ବେଳା ଆଉରି ହେଇ ନଥାଏ ।...ଗୋହୀରି ଖଣ୍ଡ ପାରିହେଇଗଲେ ଛାଇରେ ବିଶ୍ରାମ ନେବାକୁ ଟାଉ ଟାଉ ଚାଲିଥାଉ । ସେ କେଜାଣି କାହିଁକି ମତେ ନୂଆ ଦେଖିଲା ଭଳି ହସି ହସି କହିଲା – "ତମ ଗୋଡଯୋଡାକ ଏମିତି ଆଣ୍ଠୁ ପାଖରୁ କାହିଁକି ଓସାରି ହୋଇଯାଇଚି ? ମୋର ନାହିଁ କି ମା'ଙ୍କର ମଧ ନାହିଁ ?" ମୋତେ କଥାଟା ଅସୁଖ ଲାଗଥିଲା । ମୁଁ ଅଙ୍କ ବୁଲି ତାକୁ ଚାହିଁଦେଲି । ...ଏତିକିବେଳେ ଶଗଡ ଗୁଳା ଉପରେ ଗୋଟେ ଖଣାରେ ମୋ ଗୋଡ ପଡିଗଲା, ମୁଁ ପଡିଗଲି, ଆଉ ସେ ଏମିତି ଚଟ୍‌କରି ବନ୍ଧୁକ ନଳୀଟିକୁ ଧରିନେଲା । ମୁଁ ଧଡପଡ ହୋଇ ଉଠିଲାବେଳକୁ ହଠାତ୍ ବନ୍ଧୁକର ଆବାଜ ହେଲା । ...ଦେଖିଲାବେଳକୁ ସବୁ ସରିଯାଇଛି ।

ଦାରୋଗା ବାବୁ ବାଁ ହାତରେ ମୁହଁଟାକୁ ପୋଛିଦେଇ ନୋଟ୍‌ବହି ଧରି କଲମ ଟେକିଲେ । ପଚାରିଲେ –

"ଆପଣ ଯାହା କହିଲେ ଶୁଣିଲି ଏବଂ ନୋଟ୍ କଲି । ଆପଣ ମୋର କେତୋଟି ପ୍ରଶ୍ନରର ଉତ୍ତର ଦେବେ ।"

ବେଣୁଧର ନବୁଝିଲାଭଳି କେବଳ ଅନେଇଁ ରହିଲେ ।

"ଆପଣ ବନ୍ଧୁକରେ ଭରା ଦେଇ ଉଠି ନଥିଲେ କ'ଣ ବନ୍ଧୁକ ଫୁଟିଥାନ୍ତା ?"

"ନା, ମୁଁ ଘୋଡା ଆଦୌ ଟିପିନାହିଁ, ମୁଁ ଟିପିନାହିଁ...ଅସମ୍ଭବ । ଏଇ ହାତରେ ତାକୁ ଏତେଟିଏ କରିଛି...ଏଇ ହାତରେ ପୁଣି ମୁଁ ବନ୍ଧୁକ ଟିପି ତାକୁ...ନା ନା ।"

"ଆପଣ ମୋ ପ୍ରଶ୍ନର ଉତ୍ତର ଦେବାକୁ ଚେଷ୍ଟାକରନ୍ତୁ । ଘୋଡା ନ ଟିପିଲେ କ'ଣ ବନ୍ଧୁକ ଫୁଟେ ?"

"ନା ।"

"ତେବେ ଆପଣ ଯଦି ଟିପିନାହାନ୍ତି, ତା'ହେଲେ ମୃତ ସରୋଜକାନ୍ତ କ'ଣ ନିଜେ ସେ ଘୋଡାକୁ ଟିପିଛନ୍ତି ?"

"ନା"

"ତେବେ ସେ ବନ୍ଧୁକ ଫୁଟିଲା କେମିତି, କହିପାରିବ ?"

କିଛି ଉତ୍ତର ନାହିଁ ।

"କହନ୍ତୁ ।"

"କ'ଣ କହିବି ?"

"ଆପଣଙ୍କ ହାତରେ ହିଁ ସେ ବନ୍ଧୁକ ଫୁଟିଛି ।"

"ବୋଧହୁଏ ଫୁଟିଛି ।"

"ବୋଧହୁଏ ନୁହେଁ, ନିଶ୍ଚୟ ଫୁଟିଛି ।"

କିଛି ନୀରବତା ।

"କହନ୍ତୁ, ହଁ ନା ନାହିଁ ।"

"ହଁ ।"

"ତା'ହେଲେ, ଆପଣ ନିଜ ଇଚ୍ଛାରେ ବନ୍ଧୁକର ଘୋଡା ଟିପିନାହାନ୍ତି ବୋଲି ପ୍ରମାଣ କ'ଣ ?"

"ଶ୍ୱେପ୍‌ବେ !" – ବେଣୁଧର ଓଝା ଧଡାସ୍ କିନା ଉଠିପଡିଲାବେଳକୁ ଦୁଇଜଣ କନେଷ୍ଟବଲ୍ ତାଙ୍କୁ ପୁଣି ଖଟଉପରେ ବସାଇଦେଲେ ।

"ଶଇତାନ୍, ଗୁଣ୍ଡା, ହାରାମଜାଦା – କୁକ୍‌କୁର ଶାଲା – ନିକଲ୍ ଯା ମୋ ଆଗରୁ । ନହେଲେ ମୁଁ ସମସ୍ତଙ୍କୁ ଗୁଳିମାରି ଉଡେଇଦେବି ।"

ଦାରୋଗାଙ୍କ ସ୍ୱର ଅବିଚଳିତ ।

"ଆପଣ ତିନିବର୍ଷ ତଳେ ବନ୍ଧୁକ ଉଠେଇଥିଲେ ମୃତ ସରୋଜକାନ୍ତକୁ

ଗୁଳିକରିଦେବାକୁ ?"

"ନା, ନା, ନା । – ମିଛୁଆ, ଜୁଆଚ୍ଚୋର, ମଦୁଆକାହାଁକା ।"

"ଆଜ୍ଞା, ହଁ । ତା'ର ସାକ୍ଷ୍ୟ ପ୍ରମାଣ ଅଛି । ସେଦିନ ଦି'ପହର ବେଳେ ସରୋଜକାନ୍ତ ତାଙ୍କ ମା' କୋଡରେ ଶୋଇଯାଇଥିଲେ । ଆପଣ କୌଣସି କାରଣ ନଦେଖାଇ ଭୟଙ୍କର ରାଗିଯାଇଥିଲେ ଏବଂ ବନ୍ଧୁକ ଉଠାଇଥିଲେ ଗୁଳି କରିଦେବାକୁ ।"

ଗୋଟାଏ କଳାଧୂଆଁର ଛାଇ ନଇଁଆସିଲା ବେଣୁଧର ବାବୁଙ୍କର ପ୍ରଖର ରାଗ ଜରଜର ମୁହଁ ଉପରକୁ । ଭୃରୁ କୁଞ୍ଚେଇଗଲା । ଖଟ୍‌କିନା ମୁହଁ ଟେକି ସେ ଚିତ୍କାରକଲେ, "ମୁଁ ଅସ୍ୱୀକାର କରୁଛି । କିଏ କହିଲା ମୁଁ ବନ୍ଧୁକ ଟେକିଥିଲି ଗୁଳିକରିବାକୁ । ଯଦିବା ଘଡ଼ିକଲିରେ ରାଗିଗଲେ ସେମିତି ହୋଇଥାଏ, ମୁଁ କ'ଣ ସତେ ଗୁଳି କରିଥାନ୍ତି ? କିନ୍ତୁ ଏ ସବୁ ମିଛ । କିଏ ଦେଖିଛି ମତେ କହ ।"

"ଏହା ସତ । ସରୋଜକାନ୍ତଙ୍କ ମା' ନିଜେ ଦେଖିଛନ୍ତି ।"

"ଓ, ବୁଝିଲି ।" – ବେଣୁଧର ଓଝାଙ୍କ ସ୍ୱର ଅନେକ ଗହୀରିଆ ।

...ସେଦିନ ଅଶିଣ ସରିଆସୁଥାଏ । ଧୋବ ଫରଫର ହାଲୁକା ବିଦେଶିନୀ ଶୀତଗୁଡ଼ିଏ ଏଠିସେଠି ଛାଇ ଦେଖି ମନ୍ଦା ବାନ୍ଧିଥାନ୍ତି । ଷ୍ଟେସନକୁ ଗଲା ବାଟରେ ଗ୍ୟାଟାର୍ଜିଙ୍କ ପିଣ୍ଡାରେ ମଧୁମାଳତୀର ଗନ୍ଧ ବାରି ସେ ଦ୍ୱିପ୍ରହର ବେଳା ନିରୋଳା ଦେଖି ଉଠିଯାଇଥିଲେ । କବାଟ ଫିଟାଇଲେ ମିଷ୍ଟର ଗ୍ୟାଟାର୍ଜି । ସେଦିନ ଶନିବାର ଛୁଟି ନେଇ ସେ ଘରେ ସହଳ ଖାଇ ପିଇ ସାରିଥିଲେ । ମିସେସ୍ ଗ୍ୟାଟାର୍ଜିଙ୍କ ହାତରୁ ଚିଡ୍ ଚିଡ୍ ହୋଇ କପେ ଚା ପିଇଦେଇ ବେଣୁଧର ବାବୁ ସ୍ଥିରକଲେ ଯେ ଆଉ କଟକ ଯିବେନାହିଁ । ଘରକୁ ସିଧା ଫେରିଆସି ବାଡ଼ି କବାଟ ଫିଟେଇ ସେ ଶୋଇବାଘରକୁ ପଶିଯାଇଥିଲେ ଓ ଭୟଙ୍କର ଉତ୍‌କ୍ଷିପ୍ତ ହୋଇଯାଇଥିଲେ, ବିନା କାରଣରେ, ବାବୁଲା ମା' ଦେହକୁ ଲାଗି ଶୋଇଥିବା ଦେଖି । ଅଭଦ୍ର – ନାଲାଏକ – ସୁଅର୍ କା ବଚ୍ଚା !!

ବେଣୁଧର ଓଝାଙ୍କ ଆଖିରେ ଝଲକାଏ ଅଗ୍ନି ତବତବ ଲୁହ ଉପର ଦେଇ ପହଁରିଲା ।

"ଆଉ ଦିନେ ଆପଣ ସାମାନ୍ୟ ନିସା ଖାଇ ସ୍ତ୍ରୀଙ୍କ ସାଙ୍ଗରେ ଯୁକ୍ତି କରିଥିଲେ ଯେ ମୃତ ସରୋଜକାନ୍ତ ଆପଣଙ୍କ ପୁଅ ନୁହେଁ – ଆପଣ ନିଃସନ୍ତାନ – ଆଉ କାହା ପୁଅଟାଏ, ସେ ମରିଗଲେ ବରଂ ଆପଣ ଅମାନ ଆଉ କଳଙ୍କରୁ ମୁକ୍ତହେବେ । ପ୍ରମାଣ ସ୍ୱରୂପ ଆପଣ ଘରୋଇ ଆଲବମ୍‌ରେ ତା' ଫଟୋଟିକୁ ଫଳକଟା ଛୁରୀରେ ଚିରି ଦେଇଥିଲେ । ସେଇଟା ଏବେ ମଧ୍ୟ ଅଛି ।"

...ମାଧୁରୀ ଦାସକୁ ବେଣୁଧରବାବୁ ପ୍ରେମକରି ବିଭାହୋଇଥିଲେ । ସେ କିନ୍ତୁ ବୁଝିପାରିନଥିଲେ କାହିଁକି ବାବୁଲା ଜନ୍ମ ହେବାପରେ ତାଙ୍କର ଆଉ ସନ୍ତାନ ହେଲାନାହିଁ ଏବଂ ଅନେକ ଦିନ ଧରି ବିଶ୍ୱାସ କରିପାରୁନଥିଲେ କାହିଁକି ବାବୁଲାର ଚେହେରା ଭିତରେ ସେ ନିଜକୁ ଆବିଷ୍କାର କରିପାରୁନାହାନ୍ତି ।

"ଏଇଟା ନିହାତି ସ୍ୱାଭାବିକ କଥା । ସବୁ ପିଲାଙ୍କ ବିଷୟରେ ବାପା ମା'ଙ୍କ ଭିତରେ ଏମିତି

କଳହ ହୁଏ – କାହାର କେତେ ଚେହେରା କିଏ ଉତାରି ଆଣିଛି ଜାଣିବାକୁ ଆଗ୍ରହ ହୁଏ ।"

ଖୁବ୍ ନୁଆଁଣିଆ ସ୍ୱରରେ ବେଣୁଧର ଓଝା ନିଜକୁ ବୁଝାଇବାର ଶୁଣାଗଲା ।

"ଆପଣ ଟିପଚିହ୍ନ ମାରି ରାତିରେ ଥରେ ରସିଦ ତିଆରି କରୁଥିଲାବେଳେ ସରୋଜକାନ୍ତ ହଠାତ୍ ପଶିଆସିଥିଲେ ଏବଂ ଆପଣଙ୍କ ସବୁ ଆଙ୍ଗୁଠିରେ କଳା ଲାଗିଥିବା ଦେଖି ହସିଦେଇଥିଲେ । ଆପଣ ଗୁଲ୍‌ବାଡିରେ ତାଙ୍କୁ ମାରିବାକୁ ଗୋଡେଇଯିବାରୁ ସେ ବାଥ୍‌ରୁମ୍‌ରେ ଆଶ୍ରୟ ନେଇଥିଲେ । ଆପଣ ଝରକାକୁ ବାଡେଇ ଭାଙ୍ଗି ଦେଇଥିଲେ । ଆପଣଙ୍କ ସ୍ତ୍ରୀ ବାଧାଦେବାରୁ ଗୁଲ୍‌ବାଡିରେ ତାଙ୍କୁ ଅପମାନସୂଚକ ଆଘାତ କରିଥିଲେ ଏବଂ ତାଙ୍କ ସତୀତ୍ୱ ଉପରେ ଆକ୍ଷେପମୂଳକ ମନ୍ତବ୍ୟ ପ୍ରକାଶ କରିଥିଲେ ।"

"ସଟ୍ ଅପ୍ ରାସ୍କେଲ୍, ଇଡିଅଟ୍, ସ୍କାଉଣ୍ଡ୍ରେଲ୍! ତୁ ମୋର ପ୍ରାଇଭେଟ୍ ଲାଇଫ୍ କଥା ଜାଣିବାକୁ କିଏବେ ଶାଳା ?"

କନେଷ୍ଟବଲ୍ ତାଙ୍କୁ ଜବରଦସ୍ତ ବସେଇରଖିଲା ।

ସେ ଗୋଟାକର ହାତକୁ ଗାଉଁକିନା କାମୁଡି ପକେଇଲେ । ଢୋ କିନା ଗୋଟାଏ ଚଟକଣା ପକେଇଲା କନେଷ୍ଟବଲ୍ ।

ଦାରୋଗା ଆଉ ଖଣ୍ଡିଏ କାଗଜ ଦେଖିନେଲେ ।

"ଆପଣ ମୃତ ସରୋଜକାନ୍ତଙ୍କୁ ଘୃଣା କରୁଥିଲେ । ସେ ଖାଇଲାବେଳେ ତାଙ୍କ ଖାଇବା ଢଙ୍ଗ ଆପଣଙ୍କୁ ପସନ୍ଦ ହେଉନଥିଲା । ଏକାଠି ବସିଲେ ଆପଣ ଚିଡୁଥିଲେ । ବଡ କଲର୍ ଥିବା ଖଣ୍ଡେ ଜାମା କିଣିଲା ଦିନ ଜବରଦସ୍ତି ଆପଣ ତାଙ୍କୁ ଘରୁ ତଡିଦେବାକୁ ଧମକ ଦେଇଥିଲେ । ...ଆପଣଙ୍କ ସାହିରେ ଜଣେ କହିଥିଲେ ଯେ ସରୋଜକାନ୍ତ ଆପଣଙ୍କଠାରୁ ଆହୁରି ବଡଲୋକ ହେବେ । ଆପଣ ସେଦିନ ଘରେ ନଖାଇ ରାତିଅଧ ପରେ ନିଶା ଖାଇ ଫେରିଥିଲେ ।"

ବେଣୁଧର ଓଝାଙ୍କ ଆଖି ତରାଟି ହୋଇ ରହିଥାଏ । ଓଠ ପାଖରୁ ଲାଳ ନିଗିଡି ଆସିଥାଏ । ତାଙ୍କ ମୁହଁସାରା ହଠାତ୍ କୁଞ୍ଚେଇଗଲା ଏବଂ ସେ ହସି ପକେଇଲେ । ତା'ପରେ ଖୁବ୍ ଜୋର୍‌ରେ ହୋ ହୋ ହେଇ ହସିଉଠିଲେ । ଦାରୋଗା ଅପେକ୍ଷା କରିଥାନ୍ତି ।

"ଆଜ୍ଞା ଦାରୋଗାବାବୁ, ଏକ୍‌ସକ୍ୟୁଜ୍ ମି ! ଆପଣ ତ ମୁଁ ଦେଖୁଛି ଜଣେ ଓ୍ୱଣ୍ଡରଫୁଲ ଲୋକ । ଆପଣ ଏତେ କଥା ଯୋଗାଡକଲେ କେମିତି ? ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି । ଏଇଟା ବାସ୍ତବିକ୍ କ୍ରେଡିଟେବ୍‌ଲ ।"

ତାଙ୍କ କପାଳରେ ଝାଳ ଗଜୁରି ଆସୁଥାଏ, ମେଘ ଜମି ଆସୁଥାଏ ଭୃରୁ ଉପରକୁ ।

"ଆପଣ କିନ୍ତୁ ଯାହା ପ୍ରମାଣ କରିବାକୁ ବସିଛନ୍ତି, ସେଇଟା ଏବ୍‌ସର୍ଡ, ଏକବାରେ ଏବ୍‌ସର୍ଡ –" ହସିବାକୁ ଚେଷ୍ଟାକଲେ । ଖୁବ୍ ଓଜନ ଗୋଟାଏ କ'ଣ ତାଙ୍କ ମୁହଁ ଉପରେ ମଡେଇ ହୋଇପଡିଲା । ସେ ଗମ୍ଭୀର ହୋଇ ଦାରୋଗାଙ୍କୁ ଚାହିଁରହିଲେ ।

"ଆପଣ ଖୁବ୍ ଭିତରେ ସରୋଜକାନ୍ତଙ୍କ ମୃତ୍ୟୁ କାମନା କରୁଥିଲେ; କିନ୍ତୁ ଅନେକ ସ୍ନେହର

ଅଭିନୟ କରିବାକୁ ପଡୁଥିଲା ଆପଣଙ୍କୁ । ସରୋଜକାନ୍ତ ଆପଣଙ୍କ ଆଖିରେ ଜଣେ ପ୍ରତିଦ୍ୱନ୍ଦ୍ୱୀ । ଆପଣ ଜୀବନସାରା ଅନେକ ପ୍ରତିଦ୍ୱନ୍ଦ୍ୱୀଙ୍କୁ ପରାସ୍ତ କରିଆସିଛନ୍ତି । ପରାସ୍ତ କରିବା ଅପେକ୍ଷା ହତ୍ୟା କରିବା ପାଇଁ ଆପଣଙ୍କର ଇଚ୍ଛା ଅନେକ ପରିସ୍ଥିତିରେ ପ୍ରକାଶ ପାଇସାରିଛି । ଅତଏବ..."

ଝଲମଲ ଇସ୍ପାତ୍‌ର ଗୋଟିଏ ବାକ୍ୟ ଦାରୋଗାଙ୍କ ମୁହଁରୁ ନ ବାହାରି ତାଙ୍କ ସ୍ଥିର ଆଖିର କୁଣ୍ଡମାନଙ୍କରେ ଓହଳିରହିଲା । ବେଣୁଧର ଓଝା ସେ ବାକ୍ୟଟିକୁ ପଢିପାରିଲେ ଦାରୋଗାଙ୍କ ଆଖିରେ ଏବଂ ଖସିପଡୁଥିବା ସେଇ ଆକାଶଟିରେ ।

ଖୁବ୍ ନିରୋଳା ରାସ୍ତା । ତ୍ରିଶୂଳବନ୍ଧ ପାଖକୁ କେହି କେବେ ଯାଆନ୍ତି ନାହିଁ । ସେଇଠି ପ୍ରେତାତ୍ମା ଉପଦ୍ରବ କରନ୍ତି ବୋଲି ଲୋକଙ୍କ ବିଶ୍ୱା । ...ବନ୍ଧୁକର ନଳୀଟିକୁ ଦୁଇହାତରେ ନିଜ ତଣ୍ଟି ପାଖରେ ଧରି ରଖି ଯେଉଁ ମୁହଁଟି ତଳକୁ ଚାହୁଁଥିଲା, ତା'ର ନାକ ଆଖି ଭୂରୁ ଉପରେ ଅପରିଚିତର ଛାପ । ତଳେ ପଡିଯାଇ ଯେଉଁ ଅତି ସାଧାରଣ ପ୍ରୌଢ ମୁହଁଟି ଚାହିଁରହିଥିଲା । ସେ ବହୁ ଦିନରୁ ଅପେକ୍ଷା କରିଥିଲା ସେଭଳି ଗୋଟାଏ ମୁହୂର୍ତ୍ତକୁ । ତେଣିକି ଉଠିବା ଆଳରେ ବନ୍ଧୁକର ଘୋଡା ଟିପିଦେବା ଅତି ବଡ ଗୋଟାଏ ଚାନ୍ସ ।

ବେଣୁଧର ଓଝାଙ୍କ ଦୀର୍ଘଶ୍ୱାସରେ ଶୁଭିଲା "ହୁଁ, ତା'ହେଲେ ଆପଣହିଁ ପ୍ରମାଣ କରିଦେଲେ ଯେ ବେଣୁଧର ଓଝା ଜାଣିଶୁଣି ତା' ପୁଅ ସରୋଜକାନ୍ତକୁ ଗୁଳିକରି ମାରିଛି...ନା କ'ଣ ?"

"ବର୍ତ୍ତମାନ ସୁଦ୍ଧା ତ ପ୍ରାୟ ସେଇଆ ଜଣାପଡୁଛି ।"

"ଏଥିରେ ହତ୍ୟାକାରୀର ଲାଭ କ'ଣ ?"

"ଅନେକ ! ଯାହାକୁ ସେ ଘୃଣା କରିଆସିଛି ଏବଂ କୌଣସି ପ୍ରକାରେ ଦୂରେଇପାରିନାହିଁ, ତାକୁ ସେ ଚିରିଦିନ ପାଇଁ ଅପସାରିତ କରିପାରିଛି । ଦୁର୍ଘଟଣାକୁ ଆଳକରି ବହୁ ଲୋକଙ୍କର ସହାନୁଭୂତି ଏବଂ ଆଦର ଲାଭକରିଛି । ସେ ହୁଏତ ଆଶା କରିପାରୁଛି ଯେ ଶ୍ରୀମତୀ ଓଝାଙ୍କ ସମ୍ପୂର୍ଣ୍ଣ ଆନୁଗତ୍ୟ ପାଇବାରେ ଆଉ କିଛି ବାଧା ଏଣିକି ନାହିଁ ।"

"ମନ୍ଦ ନୁହେଁ! ଏତେ ସବୁ ପ୍ରମାଣ କରିବାରେ ତୁମର କ'ଣ ଲାଭ ହେବ ଶୁଣେ ?" ଓଝାଙ୍କ ଓଠ କୋଣରେ ଅଳ୍ପ ଟିକିଏ ହସ ମେଘ ଗହଳିରେ ହଠାତ୍ ଦିଶି ଲିଭିଗଲା । ଦାରୋଗା ସାମାନ୍ୟ ଅଟକିଗଲେ ।

ଗୋଟିଏ ଦୀର୍ଘଶ୍ୱାସର ବ୍ୟବଧାନ ପାରିହୋଇଗଲା ।

"ମୋର ଆଉ ଲାଭ କ'ଣ – କିଛି ନାହିଁ । କର୍ତ୍ତବ୍ୟ କରିବାରେ ଲାଭକ୍ଷତିର ବିଚାର ନାହିଁ ।"

"ତଥାପି ତୁମେ ତ ମୋରି ବୟସର ଜଣେ ବାପ! ଧର ବୁଲା ଯଦି ତୁମର ପୁଅ ହୋଇଥାନ୍ତା ?" ଦାରୋଗାଙ୍କ ମୁହଁ ହଠାତ୍ ନଇଁପଡିଲା । ବର୍ଷନ୍ତ ମେଘପରି ଫଣ ଫଣ ହୋଇ ଉତୁରିପଡିଲା ଏବଂ ଟୋପିଟା ଖସିଗଲା ଅକସ୍ମାତ୍ ।

ବେଣୁଧର ଓଝା ଚମକିପଡିଲେ ନା କ'ଣ!

ଦାରୋଗା ଟୋପିଟି ଗୋଟେଇ ଆଣି ଆଉ ପିନ୍ଧିଲେ ନାହିଁ । ବେଣୁଧର ବାବୁଙ୍କୁ ଥରେ ଚାହିଁଦେଇ ମୁହଁ ଫେରେଇ ବସିରହିଲେ ।

"ଆଚ୍ଛା, ଦାରୋଗା ବାବୁ, ଆପଣଙ୍କୁ କେଉଁଠି ଦେଖିଛି ବୋଲି ମନେହେଉଛି ।"

"ଦେଖିଥିବେ ।"

"ଆପଣଙ୍କର ଘର ?"

"ସେଥିରେ ଆପଣଙ୍କର କ'ଣ ଯାଏଆସେ ?"

"ଓ, ତେର୍ ଯାଏଆସେ । ଆପଣଙ୍କ ଘର ରାଣୀପୁର ନୁହେଁ ?"

ବେଣୁଧର ଓଝାଙ୍କ ଆଖିଯୋଡାକ ଖୁର ପରି ଦାଢୁଆ । ସ୍ୱରରେ ଗୋଟାଏ କେମିତି ଧମକ ।

"ହଁ, ମୋର ଘର ରାଣୀପୁର – କ'ଣ ହେଲା ସେଇଠୁ ?"

"ହେ ହେ ହେ...ସେଇଟା ମୋ ଶ୍ୱଶୁରଘର ଗାଁ ।"

ହଠାତ୍ ଓହଟି ଆସିଲେ ବେଣୁଧର ଓଝା । ଦାନ୍ତ ସନ୍ଧାରୁ ଶୁଭିଲା –

"ଆପଣ ମଣିଧର ସାମନ୍ତରାୟ ?"

ଦାରୋଗା ଉଠି ଠିଆହେଲେ ।

ବେଣୁଧର ଓଝାଙ୍କ ଦୁଇ ଡେଣାରେ ଦୁଇଟି କନେଷ୍ଟବଲ୍ ଓହଳି ରହିଲେ ।

ଦାରୋଗାଙ୍କ ପିଠି ନୀରବରେ ଘୁଞ୍ଚିଗଲା ଦୂରରୁ ଦୂରକୁ ।



# ଅଶ୍ୱାରୋହୀର ଗଳ୍ପ

# ମ୍ୟୁଜିଅମ୍

"ମୁଁ କ'ଣ ନାହିଁ କରୁଚି ଏ ଜୋତା ହଳକ ଭାରି ବଢ଼ିଆ ହେଇଚି ବୋଲି ? ହେଲେ ୟାକୁ ମିଶି ତ' ତା'ର ଏକୋଇଶ ହଳ ହେଲା ! ସେ ଏବେ ୟାକୁ ପିନ୍ଧି କେତେବେଳେ ପୋଜ୍ ଦେଲେ ତୁମେ ଫଟୋ ଉଠେଇବ କେଜାଣି ?" ଯୂଇ-ଫୁଲିଆ ହସ ଭିତରେ ଯଶୋଦା ନିଗମ୍ ମିଠା ମିଠା ଗାଳିଦେଲା ଭଳି ଏତକ କହି ଜୋତାହଳକୁ ସାଉଁଳୁଥାନ୍ତି । ଏମିତି ଟିକିଏ ଉଗ୍ରୁଠେଇ ଫୁଲେଇ ଢଙ୍ଗରେ ପୁଅପାଇଁ ଲୌଲ୍ୟ ପ୍ରକାଶ କରିବା ତାଙ୍କର ଚିରକାଳ ଅଭ୍ୟାସ । ଏତିକିବେଳେ ତାଙ୍କର ବିସ୍ମୃତ ଆଖିଯୋଡିକ ସୁନାର ଯୋଡିଏ ଘିଅଦୀପ ପରି ଭାରି ନରମ ଦେଖାଯାନ୍ତି । ମୁହଁଟି ଛେନା ଆଉ ଦୁଧସର ପରି ଥୋପିପଡେ ।

ବମ୍ବେର ସେ ବିଦେଶୀ ବିଦେଶିନୀମାଙ୍କ ଗହଳି ଭିତରେ ପ୍ରସିଦ୍ଧ ଜୋତାଦୋକାନୀଟି ଜୋତାର ସାଇଜ୍ ପଚାରିଲା । ଉତ୍ତରରେ ସେ ବାହାର କରିଥିଲେ ଗୋଟିଏ ଜରି ଜଡ଼ଉ ହେଇଥିବା ଛୋଟ ଭେଲଭେଟ୍ ମୁଣା ଭିତରୁ ପ୍ଲାଷ୍ଟର୍ ଅଫ୍ ପେରିସ୍‌ର ପାଦଟିଏ । ସମସ୍ତଙ୍କ ଆଖି ସେଇ ପାଦଟି ଉପରେ । ଜୋତାବାଲା ତାକୁ ଦୁଇହାତରେ ଧରି ଚୁମା ମାରିଲା, ବୁକୁ ଉପରେ ଚାପିଧରିଲା । ମାର୍ବଲରେ ତିଆରି ସେ ଝିଅଟି ଆଖିରେ ଗୁଡାଏ ଝଲମଲ ବିସ୍ମୟ ଆବେଗ ନେଇ ତା'ର ଗୋଲାପୀ ପାପୁଲା ପତେଇ ମାଗିଲା । ଧାଈ କୋଳରୁ ନୂଆପୁଅକୁ ଟୋକିନେଲା ଭଳି ପାଦଟିକୁ ଧରି ୟାକୁ ଚାହିଁଲା । ତା'ର ବି ଇଚ୍ଛା ସମସ୍ତଙ୍କ ଆଗରେ ପାଦତଳିଆ ଉପରେ ଚୁମାଟାଏ ମାରିଦେବ । ତାଆଣୀ କାହିଁକା ! ତା'ଠୁ କୌଣସି ପ୍ରକାରେ ଛଡେଇଲାଭଳି ସେ 'କାନାବାବୁ'ର ମଡେଲ୍ ପାଦଟିକୁ ନେଇ ଝୋଲା ଭିତରେ ପୂରେଇ ଦେଇଥିଲେ । ମନେ ମନେ ରାମତାରକ ଜପିଥିଲେ । ଗାଁ ଠାକୁରାଣୀ ଘଣ୍ଟାଶିନୀଙ୍କୁ ରିଷ୍ଟ ଖଣ୍ଡନ ପାଇଁ ଭୋଗ ଯାଚିଥିଲେ । ସେ ଜୋତା ଦୋକାନରେ ସମସ୍ତେ ମିଶି ଶେଷକୁ ଏଇ ହଳକ ବାଛିଲେ । ଦୋକାନ ମାଲିକ ପାଟିତୁଣ୍ଡ ଶୁଣି ଚାଲିଆସିଲା । ସମସ୍ତଙ୍କ କୌତୂହଳ ଏବଂ ଅହେତୁକ ଗୁଡାଏ ଆଦରର ଚାହାଣି ଭିତରେ ପଚାଶବର୍ଷୀୟ ସେତାର୍-ଶିଳ୍ପୀ ନନ୍ଦଲାଲ ନିଗମ୍ ଭାରି ଅସ୍ୱସ୍ତି ବୋଧ କରୁଥାନ୍ତି । ଜୋତା ସାଇଜ୍ ପାଞ୍ଚରୁ ଛ' ଭିତରେ । ଛ'

ସାତହଳ ଦାମୀ ଦାମୀ ଜୋତା ସଜିଲ କରି ବିଦେଶୀ ବଦେଶିନୀମାନେ ମିଠା ମିଠା ସ୍ୱରରେ ଚଢେଇ ଭଳି ଯୁକ୍ତି କରୁଥାନ୍ତି । ବାଛିବା ପାଇଁ ଆଉ ଥରେ କଣ୍ଟିବାକୁ ସମସ୍ତଙ୍କର ନିବେଦନ । ସେ କିନ୍ତୁ ଭାରି ଗମ୍ଭୀର ମୋଟେ ଝୋଲା ଫିଟେଇଲେ ନାହିଁ କି ବାହାର କଲେନାହିଁ । ଏ ଜୋଡାହଳକୁ ଶେଷରେ ଥରେ ଲେଖା ଧରିଲେ । ସେ ଝିଅଟି କୁଣ୍ଢେଇ କାଖେଇ ଗେଲକଲା ପରେ ଯାକୁ ହସି ହସି ବଢେଇ ଦେଲା । ବିନା ଆଡମ୍ବରରେ ପଇସା ବୁଝେଇଦେଇ ସେ ଟାକ୍ସିରେ ଉଠିଥିଲେ ।

ଗତଥର ତାଙ୍କର ଘନିଷ୍ଠ ସାଙ୍ଗ କ୍ଷେତ୍ରମୋହନ – ଶାଳା, ବେଶୀ ଆପଣାପଣ ଦେଖେଇଚି – କହିଲା, ଆରେ କାହିଁକି ଏତେ ପଇସା ନଷ୍ଟ କରୁଚୁ ? ବଢିଲାପିଲା...ମାସ ପାଞ୍ଚଟାକୁ ଏଗୁଡାକ ପୁଣି ଛୋଟ ହେଇଯିବ' । ହଉ, ତୋ ବାପର କ'ଣ ଗଲା ବ୍ବେ, ହାରାମଜାଦା ! ଛୋଟ ହେଇଗଲେ କ'ଣ ପୁଅ ମୋର ଜୋତା ପିନ୍ଧିବନାହିଁ, ଜାମା ପିନ୍ଧିବନାହିଁ ? – ନନ୍ଦଲାଲ ଖାଲି କଟମଟ ଚାହିଁଥିଲେ କ୍ଷେତ୍ରମୋହନକୁ । ଆଉ ପଦେ ଶୁଣିଥିଲେ ସେ ତାକୁ ସେଇ ଜୋତାରେ ବାଡେଇ ପକେଇଥାନ୍ତେ । କ୍ଷେତ୍ରମୋହନ ଭାରି ସମଝଦାର ଲୋକ । ସେ ତାଙ୍କ ଚାହାଣିରେ ସବୁ ବୁଝିଯାଇଥିଲେ – 'ପୁଅକୁ ଫୁଙ୍କିଦେଲେ ଯା ଦେହରେ ଘା' ହେଇଯିବ ।'

ଯଶୋଦାଙ୍କୁ ରାଣୀ ନ କହି ଉପାୟ ନାହିଁ । ସାଇପଡିଶା ସମସ୍ତଙ୍କ ପାଇଁ ତାଙ୍କର ଶ୍ରଦ୍ଧାନାମ ରାଣୀ । ନେଳି ଶାଢୀ ପିନ୍ଧିଲେ ଆଖି ପଡିଯିବ ବୋଲି ମାଉସୀମାନେ କହନ୍ତି । ସୁନେଲୀ ପିନ୍ଧିଲେ କିନ୍ତୁ ସେଇମାନଙ୍କ ଆଖି ଖୋସି ହୋଇଯାଏ । ତୁଛା ଧଳା ସିଫନ୍ ଖଣ୍ଡେ ପିନ୍ଧି ଖୋଷାରେ ରଜନୀଗନ୍ଧା ଦି'ଟା ମାଖିଦେଲେ, ସନ୍ଧ୍ୟା ଆଲୁଅରେ ସେ ଦିଶନ୍ତି ଅପ୍‌ସରା ପରି ।

ବାଟଘରେ ପଶିଗଲେ ସୋଫା ସାଙ୍ଗକୁ ଆଉରି ଗୋଟାଏ କୁନି ସୋଫା ସେଟ୍ । ସାତଟା କାଚ ଆଲମାରିରେ ଅସଂଖ୍ୟ ଖେଳନା । ନୁଆଣିଆଁ ବୁକ୍ କେସ୍ ଭିତରେ ଧାଡି ଧାଡି ମଲାଟ ବନ୍ଧା ଚିତ୍ର ବହି । ଗୋଟାଏ ସ୍ୱତନ୍ତ୍ର ବଇଠି ଉପରେ ନନ୍ଦଲାଲଙ୍କ ପ୍ରସିଦ୍ଧ ସେତାର୍ । ରେଡିଓ ପାଖରେ ସାନ ଗଦିପକା ଚୌକି । ବାହାର ବଗିଚାରେ ବସିବାକୁ ସେଇଭଳି ସୁନ୍ଦର ରାଉରାଉ ରଙ୍ଗର ଛୋଟିଆ ଚେୟାର । ପେଣ୍ଟ, ଜାମା ଓହଳେଇବାକୁ ଛୋଟ ଛୋଟ ପାଞ୍ଚଟା ଠିଆ ଆଲମାରି । ଅନେକ ଡିଜାଇନ୍‌ର ଛୋଟ ଛୋଟ ହରରଙ୍ଗୀ ହେଙ୍ଗର୍ । ଏ ସମଗ୍ର ସାମ୍ରାଜ୍ୟର ଜଣେ ମାତ୍ର ସମ୍ରାଟ – ବାକି ସମସ୍ତେ ହାତୀକୁ ପାଟକନାରେ ପୋଛିବା ପାଇଁ ନିଯୁକ୍ତ ସେବକ । ପନ୍ଦର ମିନିଟ୍‌ରେ ଥରେ ଜାମା ବଦଳ କରିବା ଆଳରେ କୋଳେଇ ନେବାକୁ, ଚାମଚରେ ଟିକିଏ ଫଳରସ, ଟିକିଏ ଦୁଧସର ଖୁଆଇଦେବାକୁ ଦୁଗ୍ଧମ୍ବରା ଗାଭୀପରି ଯଶୋଦା ଛନଛନ ହେଉଥାନ୍ତି । ପାଞ୍ଚଟା ନୌକର, ଦି'ଟା ନାନୀଙ୍କର ସାହସ ନାହିଁ, କାନାବାବୁଙ୍କୁ ମୋଜା ପିନ୍ଧେଇ ଦେବାକୁ । ସେମାନେ ଚାହିଁଥାନ୍ତି କେତେବେଳ ପାଲଟା ଜାମା ଫିଙ୍ଗା ହେଇଗଲେ ପରମ ଯତ୍ନରେ ତାକୁ ପୁଣି ଧୋଇଧାଇ ଇସ୍ତ୍ରୀ କରି ସଜାଡି ରଖିବାପାଇଁ ।

ସେ ବିରାଟ କୋଠାରେ କୋଉଠି ଟିକିଏ ଦାଢ ନାହିଁ, ଗୋଜ ନାହିଁ । ଆଘାତ ଦେବାକୁ କୌଣସି ଆଂସ ନାହିଁ; ସବୁ ଚିକ୍‌କଣ ସାଉଁଳିଆ । ପାହାଚମାନଙ୍କ ଉପରେ ମୋଟା ଗାଲିଚା ।

ଉପର ମହଲାକୁ ଉଠିଗଲେ ବାଡ ଦେହରେ ବନ୍ଧା ଘଣ୍ଟିଗୁଡ଼ିକ ହାତ ବାଜି ଜଳ ତରଙ୍ଗରେ ସରଗମ୍ ତୋଳନ୍ତି । ପ୍ରତି ପ୍ରକୋଷ୍ଠରେ ବଡ ବଡ କାନ୍ଥଘଣ୍ଟାଗୁଡ଼ିକ ବିଭିନ୍ନ ତାରରେ ସୁର୍ ବନ୍ଧା ହୋଇଛନ୍ତି । ବାଜିଲେ ଗୋଟିକ ପରେ ଗୋଟିଏ ପ୍ରାୟ ଦୁଇମିନିଟ୍ ପର୍ଯ୍ୟନ୍ତ ଚମତ୍କାର ମୂର୍ଚ୍ଛନା ସୃଷ୍ଟି ହୁଏ । ସବାଶେଷକୁ ଠିକ୍ ସମୟ କହେ 'କାନାବାବୁ'ର ଜାପାନୀ ଘଣ୍ଟାର ନୀଳ ବର୍ଣ୍ଣର କାଚ ଚଢେଇ । ସେ ଘଣ୍ଟାର ନୀଡଭିତରୁ ଖପ କିନା ବାହାରିଆସି ଅନ୍ୟ ଘଣ୍ଟାମାନଙ୍କ କଥା ଶୁଣେ । ଟିକ୍ ଟିକ୍ ମୁଣ୍ଡଟିକୁ ଲାଡିଦିଏ ଏପାଖ ସେପାଖ । କହେ, "କାନାବାବୁ!" "କାନାବାବୁ!" "କାନାବାବୁ!" ସମସ୍ତେ ଜାଣନ୍ତି ଯେ ତିନିଟା ବାଜିଲା ।

ବୈଠକଘରେ ଆଉ ଗୋଟିଏ ଚମତ୍କାର କାଚ ଆଲମାରି । ମଞ୍ଜ ଚନ୍ଦନ କାଠରେ ହାତୀଦାନ୍ତର ସରୁକାମ । କାଚଗୁଡ଼ିକ ପାଣିପରି । ସେଥିରେ ଆଠଟି ବଡ ବଡ ଆଲବମ୍ । ଚମଡା ବନ୍ଧେଇ । ସୁନା ଧଡି । ଖୋଳରେ ରେଶମୀ କନା ଉପରେ ପଟ୍ଟଚିତ୍ର । ପ୍ରତି ଜନ୍ମଉତ୍ସବରେ ଚନ୍ଦନ ସିନ୍ଦୂର ଦେଇ ଆଲବମ୍‌ଟିକୁ ଶୁଭ ଅନୁକୂଳ କରାଯାଏ । ତେଣିକି ବର୍ଷସାରା 'କାନାବାବୁ'ର ହସଖେଳ, ବସାଉଠା, ମା' ବେକରେ ଓହଳିବାର, ହାମୁଡି ହେଇ ଖଟତଳେ ଗଳି ପଶିବାର, ବାହୁ ଟୋଳି ମୁହଁମୋଡି ଅଝଟ ହେବାର ଅସଂଖ୍ୟ ରଙ୍ଗିନ୍ ଚିତ୍ର । ଆଠ ନମ୍ବର ଆଲବମ୍ ଆଉ ମାସେ ପରେ ପୂରିଯିବ । କାନାବାବୁ ମନହେଲେ ଚରିବର୍ଷର ପୁରୁଣା ଆଲବମ୍ ଫିଟେଇ ଦେଖେ । ରବର କଣ୍ଢେଇ ଭଳି ସେ ସୁନ୍ଦର ପିଲାଟିକୁ ଚିହ୍ନିପାରେନାହିଁ; କିନ୍ତୁ ଖୁବ୍ ଭଲପାଏ । ବିଶ୍ୱାସ କରିପାରେ ନାହିଁ ସେ ନିଜେ ସେଇ ବୋଲି । ମୁଣ୍ଡ ଝାଙ୍କି 'ନାହିଁ ନାହିଁ' କଲାବେଳେ ଫଟ ଉଠିଯାଏ । ସେଇଟା ବି ରହିଯାଏ ଚଳିତ ବର୍ଷର ଆଲବମ୍‌ରେ ।

ସେଇଭଳି ଗୋଟିଏ ଗୋଟିଏ ବର୍ଷର ମୋଜା, ଜାମା, ଜୋତା, ସୁନାମୁଦି, ଚେନ୍ ଖେଳନା, ହାତ-ଘଣ୍ଟା, ସଜାହୋଇ ରହିଛି ପୃଥକ୍ ପୃଥକ୍ ଆଲମାରୀ ମାନଙ୍କରେ; ତେତେ ବଡ କୋଠାର ବିଭିନ୍ନ ପ୍ରକୋଷ୍ଠମାନଙ୍କରେ । ପଦ୍ମ ଫୁଟି ଫୁଟି ଚାଲିଛି । ନୂଆ ଫୁଲ ସାଙ୍ଗରେ ପୁରୁଣା ଫୁଲ ଏକାଠି ପରସ୍ପରର ଶୋଭା ବଢଉଛନ୍ତି । ଯଶୋଦାଙ୍କର ବିସ୍ତୃତ ମାତୃତ୍ୱର ପଦ୍ମ ପୋଖରୀରେ ଆଉରି ସେଭଳି ଶହେ ଫୁଲ ପାଇଁ ଥାନ ରହିଛି । କାନାବାବୁର ଗେଲବସର ଦେହରେ ମାଛିଟିଏ ବସିପାରେ ନାହିଁ । ତା'ର ଆଠବର୍ଷ ପୁରୁଣା କାନ ଟୋପି ଉପରେ ଧୂଳିଟିଏ ଜମିପାରେ ନାହିଁ । ବସୁଧା ପରି ଚେରରୁ ଡାଳ ଯାଏଁ ଗେହ୍ଲା ପୁଅର ଜନ୍ମାବଧି ପ୍ରତିଟି ମୁହୂର୍ତ୍ତକୁ ରସାପ୍ଲୁତ କରି ରଖିଛନ୍ତି ଯଶୋଦା । ଉଷୁମ ଡେଣା ଘୋଡେଇ ରଖିଛନ୍ତି ଚରିଆଡୁ ।

ବଗିଚାରେ ମାଳୀ ପ୍ରତି ଗୋଲାପ ଗଛରୁ କଣ୍ଟା କାଢିଦିଏ । ଜାମୁ ଗଛରୁ ଗଣ୍ଡିମାରି ଚିକ୍‌କଣ କରିଦିଏ । ପାଇପ୍ ଖୋଲି କାନାବାବୁ ଯଦି କୌଣସି ସୁନ୍ଦର ଗଛଟିକୁ ବନ୍ୟାରେ ଭସେଇ ଦିଏ ଏବଂ ଭାସିଗଲାବେଳେ ଡେଇଁ ଡେଇଁ ଖୁସୀ ହୁଏ, 'ରାଜୁମାଳି'ର ଯୁ' ନାହିଁ ତା' ହାତରୁ ପାଇପ୍ ଛଡେଇ ନେବ । ସେ ବି ଅନ୍ୟମାନଙ୍କ ଭଳି ମୁଗ୍ଧ ହୋଇ ଚାହିଁଥାଏ, ସେ ଖିଆଲୀ ରାଜପୁତ୍ରକୁ । ସେଭଳି ଅବସ୍ଥାରେ କେବଳ ଯଶୋଦା ନିଜେ ଓଦା ସରସର ହୋଇ ପୁଅକୁ କୋଳେଇ ପାଇପ୍‌ରୁ

ଛଡେଇ ନିଅନ୍ତି ।

ରଙ୍ଗ ବୋଲି ଚିତ୍ର କରିବାପାଇଁ ଦିନେ ତାଙ୍କ ଦକ୍ଷିଣମୁହାଁ ଝରକାରୁ 'କାନାବାବୁ' ବହୁ ଚେଷ୍ଟାକରି ସୂର୍ଯ୍ୟକୁ ଦେଖିପାରିଲା ନାହିଁ । ନନ୍ଦଲାଲ୍ ସନ୍ଧ୍ୟାସୁଦ୍ଧା ଲୋକ ଲଗେଇ ପୂର୍ବ ପାଖେ ଝରକାଟାଏ ଫିଟେଇ ଦେଲେ । ସେ ଖେଳିଲାବେଳେ ପାଖେ ପାଖେ ଜଗି ରହିଥାନ୍ତି ସମସ୍ତେ । ଧଇଁସଇଁ ହୋଇ ଆସି ଠିଆହୋଇଗଲେ ଯଶୋଦା ବୁଝିପାରନ୍ତିନାହିଁ, ତା' ମୁହଁରୁ ଟୋପି ଟୋପି ଝାଳ ତାଙ୍କ କାନିରେ ପୋଛିଦେବେ ନା ନିଜ ଗାଲ ଘଷି ଶୁଖେଇଦେବେ, ନା ଜିଭ ଲଗେଇ ବାଛୁରୀଟିକୁ ଚାଟିଦେବେ । ନନ୍ଦଲାଲ୍ ସୋଫାରୁ ଉଠି ଠିଆହୋଇଥାନ୍ତି । ଝାଳ ସରସର ଜାମା ଗେଞ୍ଜି ଫୋପାଡି ଦେଲେ ତାକୁ ନିଜେ ଗୋଟେଇ ନେଇଯାନ୍ତି । ନୌକର ଚାକରାଣୀ ତଟସ୍ଥ, ବାଥ୍‌ରୁମ୍‌କୁ ଯିବା ପୂର୍ବରୁ ନନ୍ଦଲାଲ୍ ସେ ଝାଳୁଆ ଜାମାକୁ ନିଜ ମୁହଁରେ ଚାପିଧରିବାର ଅନେକ ଥର ସେମାନେ ଦେଖିଲେଣି ।

"ଯାହା କହ, ପିଲାଟାକୁ ଏମିତି ଗୁଡାଏ ଗେହ୍ଲାକରିବା ଉଚିତ ନୁହେଁ । ଲୋଟିପଡିଲାବେଳେ ସିନା ଚାରାଟାକୁ ରଞ୍ଜାଦେଇ ଟେକି ରଖିବ; ବେଳ ପଡିଲେ ତ' ଫେର୍ ତାକୁ ନିଜ ଗୋଡରେ ଠିଆହେବାକୁ ଛାଡିଦବ ନା ନାହିଁ! ମାଆଲୋ! ଆମେ କ'ଣ ଆଉ ପୁଅ ଜନ୍ମ କରିନାହୁଁ!"

"ସେ ପୁଅକୁ ଥରେ ଆଖି ପୂରେଇ ଦେଖି କହିଲେ ସିନା ହବ! ଏମିତି ରଜାପୁଅକୁ ଭଲା କିଏ କୋଳରୁ ଖସେଇ ତଳେ ଠିଆକରିଦେବାକୁ ମନକରିବ ?"

"କାନାବାବୁ କ'ଣ ଖାଲି ନିଗମ୍ ଘର ପୁଅ! ସେ ଦାଣ୍ଡରେ ଚାଲିଗଲେ କିଏ ଭଲା ତାକୁ ଲେଉଟି ନ ଚାହୁଁଛି ? ସେ ରଙ୍କୁଣୀ ମା'କୁ କେତେଥର କହିଲିଣି ଗୋଟେ ଭାଲିଆ ପିନ୍ଧାଇ ଦବାକୁ...ନାଇଁ, ହେଲାନାଇଁ! ତା' ପୁଅ ବୁକୁରେ କୁଆଡେ ଦାଗ ପଡିଯିବ!!" "ଆରେ ତମେ କେହି ବୁଝିନା! ତାଙ୍କର ତ' ଏଇ ଗୋଟିଏ ବୋଲି ସମ୍ପତ୍ତି । ଏଣେ ଧନ ଫାଟି ଫୁଟି ଯାଉଛି । ଡାକ୍ତର ମା'ର ପେଟ ଚିରି ଏ ପୁଅକୁ ମଞ୍ଜି କାଢିଲାପରି ବାହାର କଲାବେଳେ କହିଲା, "ବାଆସ୍ ଏତିକି! ଆଉ ଏ ଗଛ ଫଳିବନାହିଁ!" "ସେଥିପାଇଁ ପରା ସବୁଦିନ ତାଙ୍କ ଘରେ ଦିଅଁ ଦେବତା ପୂଜା ଚାଲିଥାଏ । କେହି ଗଲେ ତାକୁ ଖୁଆଇ ପିଆଇ ଖାଲି ପୁଅ ପାଇଁ ଆଶୀର୍ବାଦ ସେ ଆଞ୍ଜୁଳି ପତେଇ ମାଗୁଥାଏ । କେମିତି କାନାବାବୁ ସକାଳୁ ଯାଇ ଦିନ ଏଗାରଟାକୁ ଗାଡିରେ ଫେରିଆସୁ – ଏଇଆ ସେ ଠାକୁରଙ୍କୁ ଜଣାଉଥାଏ । ସେଥିପାଇଁ ସେ ଡ୍ରାଇଭରକୁ ଯତ୍ନ ଆଦର କହିଲେ ନସରେ!"

ସାଇପିଲାଙ୍କ ବାଦଶା' କାନାବାବୁ!

ସହରର ସେ ଅଞ୍ଚଳର ନୟନ ପିତୁଳା, ସମସ୍ତଙ୍କର ଗେହ୍ଲା, ଗେଲବସର, ସବୁ ମା'ଙ୍କର ହୃଦୟର ମଣି!

କାନାବାବୁ ସକାଳ ଛ'ଟାରୁ ଉଠେ, ଶୁଏ ରାତି ନଅଟାରେ । ଏ ସମଗ୍ର ସମୟ ତା'ର ଏକଛତ୍ର ଶାସନ । ସମସ୍ତଙ୍କୁ ସେବାସୁଯୋଗ ଦେବାର ଅଫୁରନ୍ତ ଉତ୍ସବ!

X X X X

ସେଦିନ ସକାଳୁ ମାମୁଁ ଆସି ପହଞ୍ଚିଥାନ୍ତି – ଯଶୋଦାଙ୍କ ବଡ ଭାଇ, ଭୂପେନ୍ଦ୍ର କପୁର୍। ଧୁମ୍‌ଧାମ୍ ଭୋଜି-ଭାତର ଆୟୋଜନ। ବୈଠକ ଘରେ କାନାବାବୁକୁ କୋଳରେ ଧରି ବସିଥାନ୍ତି। ଗୋଟାଏ ପାଖରେ ଯଶୋଦା, ଆର ପାଖରେ ନନ୍ଦଲାଲ୍। ଗପ ଚାଲିଥାଏ। କାନାବାବୁ ସମସ୍ତଙ୍କୁ ତାଜୁବ୍ କରୁଥାଏ।

"ଏଇ ଯେ ଚିତ୍ରଟା ନୁହେଁ, ଏଇଟା ହେଲା ତିମିମାଛ। ଯା'ର ମୁହଁ ବାଟେ ଗୋଟେ ଛୋଟ ହାତୀ ଗଳି ଚାଲିଯିବ। ...ଆଚ୍ଛା, ମାମା ବି ତା' ପାଟିରେ ଗଳିଯିବେ, ନା ?"

ହୋ ହୋ ହସିଲେ ମାମା। ହସିଲେ ନନ୍ଦଲାଲ୍। ମା' ସେମିତି ନରମ ଆଖିରେ ଅନେଇଥାନ୍ତି।

"ଆଚ୍ଛା, ମାମାଜି! ମୁଁ ତା' ପାଟିବାଟେ ଗଳିଯାଇ ପାରିବି ?"

ମାମା ପୁଣି ହସିଲେ। ନନ୍ଦଲାଲ୍ କେବଳ ମୁହଁ ଖୋଲି ରଖିଲେ। ମା' ଖପ୍ କିନା ଆସି ଛବି ବହିର ପତ୍ର ଲେଉଟାଇଦେଲେ – "ଦେଖିଲୁ, ଏଇଟା କ'ଣ ? ଏଇଟା ହେଲା ପେଲିକେନ୍ ପକ୍ଷୀ।"

କାନାବାବୁ ମୁହୂର୍ତ୍ତକରେ ବଦଳି ଯାଇ କହିଲା, "ହଁ, ଏଇଟା ଜାଣିଚ ନା' ମାମା – ଯା'ର ଛୁଆଗୁଡାକ ମା'ର ମୁହଁ ଭିତରେ ମୁଣ୍ଡ ଗଳେଇ ତା' ତଣ୍ଟି ପାଖ ଥଳିରୁ ମାଛ ଖାଆନ୍ତି! ଖାଇଲାବେଳେ ମା'ର ରକ୍ତ ବି ଖାଇଯାନ୍ତି! ଭାରି ବାଜେ ପକ୍ଷୀଗୁଡାକ।" ବହି ପକେଇଦେଇ କାନାବାବୁ ଡିଆଁ ମାରି ବାହାରି ଗଲା। ମା' ଉଠୁଥିଲେ ତା' ପଛେ ପଛେ।

ଭାଇ ସାହେବ କହିଲେ, "ଆରେ ବସ୍ ଯୋଶୁ! କୁଆଡେ ଯାଉଚୁ! ଛୁଆକୁ ଏତେ ବେଶି ଜଗିବା ଭଲ ନୁହେଁ!"

ଜଣେ କିଏ ଜଳଖିଆ ଘୋଡଣି ତଳେ ମାମୁଁ ଆଣିଥିବା ମିଠେଇ ପଡିଶା ଘରମାନଙ୍କରେ ବାଣ୍ଟିବାକୁ ନେଇଗଲା।

ମାଳୀ ଗୋଟାଏ କାଳିଆ ବୁଲା ମଇଁଷିକୁ ଗେଟ୍‌ବାଟେ ବାଡେଇ ବାହାର କରିଦେଲା। ଯଶୋଦା ଦୁଆର ମୁହଁକୁ ଝପଟି ଆସି ପାଟିକଲେ, "ଆରେ ରାଜୁ, କାନାବାବୁ କାଇଁ ?" ରାଜୁ ପ୍ରସ୍ତୁତ ଥିଲାଭଳି କହିଲା, "ପିଜୁଳି ଗଛରେ ଚଢିଛନ୍ତି।" ବୁଲିପଡି ଖାଉନ୍ଦାଣୀଙ୍କ ମୁହଁକୁ ଚାହିଁ ହସିଦେଲା। କହିବାକୁ ଚାହୁଁଥିଲା, "ମୁଁ ବଞ୍ଚି ଥାଉ ଥାଉ କ'ଣ କାନାବାବୁ ଦେହରେ କିଏ ଟିପ ମାରିଦେବ!"

ଦିନସାରା ମାମୁଁଙ୍କୁ ନେଇ କାନାବାବୁ ମସ୍‌ଗୁଲ। ଆଉ ସମସ୍ତଙ୍କୁ ପ୍ରାୟ ସେ ଭୁଲିଗଲା ସେଦିନ! ଯଶୋଦା କେଜାଣି କାହିଁକି ସୁଖରେ ଭାଇଙ୍କ ମୁହଁକୁ ଚାହିଁପାରିଲେ ନାହିଁ। ନନ୍ଦଲାଲ୍ ଦି'ପହରେ ତାଙ୍କ ସାଙ୍ଗ କଥା କହୁ କହୁ ଘୁମେଇ ପଡିଲେ।

ମାମୁଁଙ୍କ ପ୍ରକାଣ୍ଡ ନିଶ 'କାନାବାବୁ'ର ଖେଳନା ହୋଇଥାଏ। ଥରେ ନିଶକୁ ଓଟାରିଲାବେଳେ

ମାମୁଁଙ୍କୁ କାଟିଲା ବୋଧହୁଏ । ସେ ଆଖି ତରାଟିଦେଲେ । ନନ୍ଦଲାଲ୍ ଚଟ୍‌କିନା ପାଖରୁ ଥାଇ ଫଟୋଟିଏ ଉଠେଇ ନେଲେ । ହସି ଉଠିଲେ ସମସ୍ତେ । ଘଣ୍ଟା ଭିତରୁ ଉଠି ଆସି ନୀଳଗଙ୍ଗର କାଚ ଚଢେଇ ଡାକିଲା, "କାନାବାବୁ, କାନାବାବୁ" ସମସ୍ତେ ଗଣିଲେ ରାତି ନଅଟା ! ଯଶୋଦା ଥରେ ପଚାରୁଥିଲେ ଦିନର ଚବିଶ ଘଣ୍ଟା କାହିଁକି ଦି'ଭାଗ କରି ଘଣ୍ଟା ବାଜୁଛି ? ଏକା ଥରକେ ଚବିଶ ଥର ଏ ଚଢେଇ ଡାକିଲେ କେତେ ସୁନ୍ଦର ଲାଗନ୍ତା ।

'କାନାବାବୁ' ମଶାରି ଗୋଟେ ପାଖରୁ ଯଶୋଦା ଅନ୍ୟ ପାଖରୁ ନନ୍ଦଲାଲ୍ ଶେଯତଳୁ ଠିକ୍ ମୋଡା ହେଇଚିନା ନାହିଁ ଦେଖିସାରି ଲାଇଟ୍ ଲିଭେଇ ଆସ୍ତେ ଚାଲିଗଲେ ବୈଠକ ଘରକୁ । ମାମୁଁ ସେଇଠି ବସି ହୁକା ଟାଣୁଥାନ୍ତି । ଚମତ୍କାର ମୋଗଲାଇ ହୁକା ନେଇ ଆସିଛନ୍ତି ଘରୁ । ତିନିହେ ବସିଲେ । ଜଣେ କିଏ ଆଣି କଫି ଦେଇଗଲା ।

"ଶୁଣୁଛ ନା, କପୁର ସାହେବ କ'ଣ କହୁଛନ୍ତି ! କାନାବାବୁ କୁଆଡେ ଘରମୁହାଁ ହେଇଯାଉଛି । ସେ ତାକୁ ବାହାରେ ବୁଲେଇ ଆଣିବେ ତିନି ଚାରିଦିନ !"

ଯଶୋଦାଙ୍କ ମୁହଁରେ କିଛି ଭୟ ଓ ଅବିଶ୍ୱାସର ହସ – "ଭାଇସାହେବ ସେମିତି ଥଟ୍ଟା କରନ୍ତି ।"

"ଆରେ ନାଇଁ ନାଇଁ ଯୋଶୁ ! ମୁଁ ତାକୁ ସତରେ ନେବାକୁ ଆସିଛି । ତୁମେ ଦୁଇ ଜଣ ତାକୁ ନେହାତ୍ ବିଗାଡି ସାରିଲେଣି । ଆମର ଗୋଟାଏ ବୋଲି ଭଣଜା ଯଦି ମାଇଚିଆ ହୋଇଗଲା, ଆମେ ଆଉ କୋଉ ସଂସାରରେ କହିବୁ ?"

ଗଦ୍‌ଗଦ୍ ହୋଇ ତାଙ୍କ ଓସାର ବୁକୁ, ବେକ ଏବଂ ନିଶରେ ହସ ଲହଡି ଭାଙ୍ଗିଲା । ନନ୍ଦଲାଲ୍ ମଧ କଫି ଥୋଇଦେଇ ହସିଲେ । ଆସ୍ତେ ହସରୁ ପାଣି ମରି ଆସିଲା । ଠକ୍ ଠକ୍ ହୋଇ ହୁକା ଦେହରେ ହସଟି ବାଜି ଝଡିପଡିଲା ଗୋଡିପରି ।

ସମଗ୍ର ଘରଟି ଚୁପ୍‌ଚାପ୍ ଶୋଇ ଯାଇଥାଏ । ଏଠି ସେଠି ଟିକ୍ ଟିକ୍... ତା'ର ନାଡି କିନ୍ତୁ ଚାଲିଥାଏ ।

"ଆଚ୍ଛା ଭାଇସାହେବ, କୁଆଡେ ତାକୁ ନେଇ ବୁଲେଇବେ ?"

"ଆରେ ଆମେ ତମକୁ କୈଫିୟତ୍ ଦବୁ ନା' କ'ଣ ? ଆମ ଭଣଜାକୁ ଆମେ ଯୁଆଡେ ଚାହିଁବୁ ଘୂରେଇ ଆଣିବୁ ! ତୁମର ଆମ ଉପରେ ଭରସା ନାହିଁ ନା' କ'ଣ ?"

"ନାଇଁ ଭାଇ ସାହେବ, ସେକଥା ସେ କହୁ ନାହାନ୍ତି । ତାଙ୍କର ବି ଏଇଲାଗେ କିଛି ଫୁରସତ୍ ଅଛି । ଚାଲ ସମସ୍ତେ ଘୂରି ଆସିବା । ମୁଁ ବି ଅନେକ ଦିନହେଲା କୁଆଡେ ଯାଇ ପାରିନାହିଁ ।"

ଟେବୁଲରେ ଗୁମ୍ କରି ଗୋଟିଏ ବିଧା ବସିଲା । କିଣ୍ କିଣ୍ ବାଜିଲା କଫି ପିଆଲା । "ବାଃ, ଏଇ ଯେ ଲାଖ୍ ଟଙ୍କାର କଥା ଯୋଶୁ କହିଲା । ତା'ହେଲେ ଦଶ ଦିନ ପ୍ରୋଗ୍ରାମ୍ କରିବା ! କାଲି ରେଡି ହେଇଯାଅ । ସକାଳୁ ଯୋଗାଡ କରିନେବା । ସନ୍ଧ୍ୟା ଫ୍ଲାଇଟ୍‌ରେ ରବାନା । ଏ ସବୁ ତାଲା ମାରିଦିଅ । ତୁମର ଏ ମ୍ୟୁଜିଅମ୍‌ରୁ କିଛି ଚୋରି ହେବାର ନାହିଁ ।" ହୋ ହୋ ହୋଇ ହସିଲେ

ମାମା ସାହେବ !

ଛାତ ଉପରେ ସେଦିନ ଜହ୍ନ । ନନ୍ଦଲାଲ୍‌ଙ୍କ ସେତାର୍‌ର ରେଆଜ୍‌ରେ ସାରା ଆକାଶ ଛନ୍ ଛନ୍ । ପାଖ ପଡିଶା ସମସ୍ତେ ନିସ୍ତବ୍‌ଧ । ଯଶୋଦା ଆସି ଚୁପ୍‌ଚାପ୍ ବସିଥାନ୍ତି । ଅନେକ ବେଳ ପରେ ତାରଗୁଡିକ ଉପରେ ଶୀତଳ ନିଦ ଆସ୍ତେ ନଇଁ ଆସିଲା । ନନ୍ଦଲାଲ ସେତାର୍ ରଖିନେଇ ଯଶୋଦାଙ୍କୁ ଚାହିଁଲେ । ଉଭୟେ ନୀରବ ।

"କାଲି ଆଦୌ କୁଆଡେ ଯିବାକୁ ମନ ହେଉନାହିଁ ।"

"ଠିକ୍ କହିଛ; ମୋର ବି ମନ ନାହିଁ; କିନ୍ତୁ କପୁର୍ ସାହେବ ଖପ୍‌ପା ହେଇଯିବେ । କାନା ମନ କଷ୍ଟ କରିବ ! ସେ କେମିତି ଡେଉଁଥିଲା ବୁଲିଯିବାକୁ ଦେଖିଚ ତ !"

ଯଶୋଦା ଚୁପ୍ ।

ଖୁବ୍ ଦୂରରୁ ଜଳତରଙ୍ଗର ମୋଲାଏମ୍ ଆବାଜ୍ ଶୁଭିଲା । ନୀଳ ପକ୍ଷୀ ଥରେ ମାତ୍ର ଡାକିଲା 'କାନାବାବୁ' – ବିଷଣ୍ଣ ଏକାକୀ ଡାକଟିଏ । ରାତି ଗୋଟାଏ ।

"ଆଜି ସଞ୍ଜବେଳୁ କେଜାଣି କାହିଁକି ମୋତେ ଭାରି ବିରସ ଲାଗୁଛି ଯୋଶୁ ! ଆଜି ସେ ଜୋତା କାନାବାବୁ ପିନ୍ଧି ପାରିଲାନାହିଁ, ଦେଖିଲ ନା ? କାହାରି ମନେ ନାହିଁ । ମାମୁଙ୍କୁ ଦେଖି ସମସ୍ତେ ପାଗଳ ।" ସେ ତାରରେ ଟିପ ମାରି ସାଉଁଳିଲା ଭଳି ଯଶୋଦାଙ୍କ ପାଇଁ ମୃଦୁ ଭର୍ତ୍ସନା – ଭାରି ନରମ ସେ ଗାଳି । ନନ୍ଦଲାଲଙ୍କ ସ୍ୱଭାବସୁଲଭ । ଯଶୋଦାଙ୍କ ଦିହସୁହା ।

ଯଶୋଦା ତଥାପି ନୀରବ ।

"ଆଜି ସଞ୍ଜବେଳେ ମୋର କାହିଁକି ବାରମ୍ବାର ସେ ଅଲକ୍ଷଣୀ ଶିକାର କଥା ମନେପଡୁଛି ।"

"ଉଁ–ଥାଉ !"

ତାଙ୍କୁ ନଶୁଣିଲା ଭଳି ନନ୍ଦଲାଲ କହିଲେ "ଛୁଆ ମିରିଗଟା ଏଡେ ସୁନ୍ଦର ବୋଲି ମୁଁ ଜାଣି ନଥିଲି ଯୋଶୁ ! ତା' ମା'ଟାର ଏଡେ ବଡ ବଡ ଆଖି । ମଣିଷର ଲୁହ ଭଳି ଧାର ଧାର ଏତେ ଲୁହ । ସେ ମୋଟେ ତା' ଛୁଆକୁ ଛାଡି ଘୁଞ୍ଚୁ ନଥାଏ ।"

ଯଶୋଦା ଫୁଲି ଫୁଲି କାନ୍ଦିଉଠିଲେ । "ସେ ମା'ଟାକୁ ତୁମେ କାହିଁକି ଗୁଳି କରି ମାରି ଦେଲ ନାହିଁ ? – କାହିଁକି ?"

ତାଙ୍କ ପିଠି ସାଉଁଳି ଦେଇ ନନ୍ଦଲାଲ୍ ନୀରବରେ କାନ୍ଦିଲେ । ସେ ତାରାରାତିର ଅରଣ୍ୟରୁ ସର୍ଚ୍ଚଲାଇଟ୍ ଆଲୁଅରେ ସେ ମା' ହରିଣୀଟି ତାଙ୍କୁ ପାଣି ଛଳ ଛଳ ଆଖିରେ ଚାହିଁରହିଥାଏ ।

କାଚର ନୀଳପକ୍ଷୀ ଡାକିଲା, 'କାନାବାବୁ, କାନାବାବୁ !'

ରାତି ଦୁଇ ।

"ଆଜି ଶୋଇବ ନାହଁ ଯୋଶୁ ?"

"ନିଦ ନାହିଁ ।"

"ଛାଡ, ଅନ୍ୟ କଥା ହେବା । ମୁଁ ଭାବୁଛି କାନାବାବୁ ବଡ ହେଲେ ବଢିଆ ବଂଶୀ ବଜେଇବ ।"

"ସତେ ନା!"

"ଦିନେ ଚୁପ୍‌ଚୁପ୍ ମୁଁ ଶୁଣୁଥାଏ । ସେ ତା'ର ତୁର୍ ତୁର୍ କରି ଗୀତଟାଏ ବଇଁଶୀରେ ଉଠାଉଥାଏ । ବେଶ୍ ବଢ଼ିଆ!"

"ହ ଅ ଅ! ସଙ୍ଗୀତବାଲାଙ୍କୁ ସବୁଠି ସଙ୍ଗୀତ ଶୁଭେ!"

"ଆରେ ନାଇଁ, ମୁଁ ଆଦୌ ଥଟ୍ଟା କରୁନାହିଁ! ତା'ର ଖାଲି ଝୁଙ୍କ୍ ଉଠିଲେ ହେଲା । ମୁଁ ସବୁ ପ୍ରକାର ବଂଶୀ ପାଇଁ ବରାଦ କରିଆସିଛି । ଏଇ ଆସନ୍ତା ଜନ୍ମଦିନକୁ ଅନୁକୂଳ କରିବା । ବଂଶୀ...ବର୍ଷା...ଆଉ ରାତି ମିଶିଗଲେ, ଦମ୍ଭ ଧରି ରହିବା କଷ୍ଟ । ମୋର ମନେ ଅଛି...'କାନା'ର ଜନ୍ମବର୍ଷ, ଥରେ ରାତିରେ ସେମିତି ରେଡିଓରେ ପାନାଲାଲକୁ ଶୁଣିଛି । ସେ ଦିନର ବର୍ଷା ଆଉ ଭୁଲିବାର ନୁହେଁ । ସେଇ ବଂଶୀ ମୋର ଭିତରେ ବାହାରେ ବାଜିଲା ଗୋଟାଏ ମାସ ପର୍ଯ୍ୟନ୍ତ । ଓଃ! କାନା ବଂଶୀ ବଜେଇଲେ ଭାରି ସୁନ୍ଦର ଦିଶନ୍ତା, ନୁହେଁ?"

ଫଟ୍ କିନା ଚକା ପକେଇ ବସିଗଲେ ନନ୍ଦଲାଲ । "ସେ ଯଦି ପାରିସ୍‌ରେ ବଜାନ୍ତା ନା, ସେଇଠି ଦି'ଘରିଟା ମୂର୍ଚ୍ଛା ହେଇଯାନ୍ତେ । 'କାନା'କୁ କ'ଣ ନ କରନ୍ତେ ସେମାନେ! ତା'ର ପାଦ ପକେଇବାକୁ ଗୋଲାପ ବିଛେଇ ଦିଅନ୍ତେ!"

ନିଜ ଜୀବନରେ ସପ୍ନ, ଅନୁଭୂତି, ସଙ୍ଗୀତ ଆସରର ଚଳଚ୍ଚିତ୍ର ଉପରେ ଅସଂଖ୍ୟ ଇନ୍ଦ୍ରଧନୁର ରଙ୍ଗ ବାରମ୍ବାର ମାଡିଗଲା । ସାତଟା ମହାଦେଶ, ସାତଟା ସମୁଦ୍ରକୁ ବାରମ୍ବାର ପରିକ୍ରମା କରି ବୁଲିଆସିଲା 'କାନାବାବୁ'ର ପୁଷ୍ପକ । ବକ୍ତା ବିଭୋର, ଶ୍ରୋତା ବିଭୋର । ଆକାଶର ଜହ୍ନଆଲୁଅରୁ ଝରୁଥାଏ ସପ୍ନ, ଝରୁଥାଏ ଅଶରୀରୀ ବଂଶୀତାନ!

"ତୁନୀ ପଡିଗଲ କାହିଁକି? କହ! ତା'ପରେ କ'ଣ ହବ? ଦିଲ୍ଲୀ ଦରବାରରେ ରାଷ୍ଟ୍ରପତି କାନାର ମୁଣ୍ଡରେ ପାଗ ବାନ୍ଧିଦେବେ । ତାପରେ... ମୋତେ ଏସବୁ ସପ୍ନପରି ଲାଗୁଛି । ଭାରି ବଢ଼ିଆ । କହୁନା, କହ! ତା'ପରେ..."

ଖୁବ୍ ମିଠା ହସ ଭିତରେ ନନ୍ଦଲାଲ କହିଲେ, "ଆଉ ରାତି ନାହିଁ ଯେ ସପ୍ନ ଦେଖିବ ଯୋଖ୍ସ?"

"ଏଁ??"

"ଏମିତି ଚମକୁଚ କାହିଁକି? ରାତି ପ୍ରାୟ ଘରିଟା ହେଇଗଲା । ଆମେ ଆଉ ଶୋଇବା କ'ଣ?"

ଯଶୋଦା ପୁଣି ଟିକିଏ ଘାଲେଇଗଲେ । ଛାତରେ ଏମିତି ଶୋଇଯିବା ସେମାନଙ୍କ ପାଇଁ କୋଉ ନୂଆ କଥା? ନୀଳ ଚଢେଇ ଡାକିଲା 'କାନାବାବୁ, କାନାବାବୁ, କାନାବାବୁ, କାନାବାବୁ! ସତକୁ ସତ ରାତି ଘରିଟା!'

ତା' ଆରଦିନ ସକାଳଟାରୁ ଗୋଟାଏ ଧୂଆଁଳିଆ ମେଘ । ପିଚ୍ ପିଚ୍ ବର୍ଷା । ଯାହାର ହେଲେ ମିଜାଜ୍ ବିଗିଡିଯିବା କଥା । ରୋକ୍‌ଠୋକ୍ ଗୋଟାଏ ଝକ୍‌ଝୋର ବର୍ଷା ହୋଇଗଲେ ତା'ର

ମାନେ ଅଛି – ବା ଛାଡି ଯାଇ ଠାଇ ଠାଇ ଖରାଟାଏ ପିଟିଦେଲେ ବି ତା'ର ଅର୍ଥ ଅଛି । କପୁର ସାହେବ ପୋଷାକ ପିନ୍ଧାପିନ୍ଧି କରି ନିଶ ଫୁଲେଇ ସେ ମାଇଚିଆ କାନ୍ଦୁରା ବର୍ଷାକୁ ଚାହିଁ ଗାରୁ ଗାରୁ ହେଉଥାନ୍ତି । ସେତେବେଳକୁ କାନାବାବୁ ମଧ ପିନ୍ଧାପିନ୍ଧି କରି ରେଡି । ନୂଆ ଜୋତା ହଳକ ଆସି ପେଁରିଗଲା ଥାକକୁ ।

ଏମିତି ବଢ଼ିଆ ଜୋତା ପାଇଁ ସେମିତି ବଢ଼ିଆ ପାଗ କାହିଁ ?

"ଆଚ୍ଛା, କପୁର୍ ସାହେବ, ଏ ପାଗରେ କେମିତି କୁଆଡେ ଯିବା ?"

ଥପ୍ କିନା ତଳେ ଗୋଡ ବାଡେଇ ନିଶ ହଳକ ପଶ୍ଚାତ୍‌ରୁ ଶୁଭିଲା, "ଆପଣଙ୍କୁ ଚିନ୍ତା କରିବାକୁ ହେବନାହିଁ । ମୁଁ ସବୁ ବନ୍ଦୋବସ୍ତ କରିଦେଉଛି ।"

"ମୁଁ ଆସୁଛି" କହି ମାମା ସାହେବ ଚାଲିଲେ ଗାରେଜ୍‌କୁ । ତାଙ୍କ ଦୁମୁ ଦୁମୁ ଚାଲିରେ ଭୂଇଁ ଦୁଲୁକିଲା, ଘର ଦୁଲୁକିଲା ।

"ମୁଁ ଯିବି ମାମା ସାଙ୍ଗରେ ।"

"ନାଇଁ ନାଇଁ, ବାପା, ଏ ପାଗରେ କୁଆଡେ ଯିବ ?"

"ମୁଁ ତା'ହେଲେ ଆସୁଚି ରହ, ସାଙ୍ଗହେଇ ଯିବା ।" କହିଲେ ଡରକୁଳୀ ମା' ।

'କାନା' ଡିଆଁ ମାରି ଦୌଡିଗଲା । "ନା, ମୁଁ ଏକା ଯିବି । ତମେ ସବୁ ଥାଅ । ମୁଁ ଯିବି ! ମୁଁ ଯିବି !"

ଗାଡି ବର୍ଷା ଚିରି ବାହାରିଗଲା ରାସ୍ତା ଉପରକୁ । ମାମୁଁଙ୍କ ନିଶରୁ ରାଗରେ ଧୂଆଁ ବାହାରୁଥାଏ । ଯଶୋଦାଙ୍କୁ ଭାଇସାହେବ ଦିଶୁଥାନ୍ତି ରାକ୍ଷସ ଭଳି !

କୋଠାଘର ଚାରିପଟେ ଧୂଆଁଳିଆ ମେଘ । ଝିପି ଝିପି ବର୍ଷା । ଦୁଆର ମୁହଁରେ ଦୁଇଟି ଶଙ୍କିତ ଉଦ୍‌ବିଗ୍ନ ମୁହଁ । ବାଡିଆଡୁ, ବଗିଚାରୁ ଓଦା ନିସ୍ତେଜ ଉଦ୍ଭିଦ ପରି ଆଉ ଗୁଡିଏ ମୁହଁ ରାସ୍ତା ଉପରକୁ କଇଁଚ ପରି ଚାହିଁରହିଥାନ୍ତି ।

ମାମୁଁ ଭୂପେନ୍ଦ୍ର କପୁର ଅତି ପ୍ରତାପୀ !

ଭାରି ବଳଶାଳୀ...

ଭାରି ସ୍ନେହୀ...

ବଟଗଛ ପରି ତାଙ୍କର ପ୍ରଶସ୍ତ ଛାଇ ! ସବୁ କଥାକୁ ଆବୋରିଲା ଭଳି ଶାଳଦଣ୍ଡା ଭଳି ତାଙ୍କ ନିଶ ଆଗରେ ଯମ ବି ଶଙ୍କି ଯିବ ।

କିଛି ପରବାଏ ନାହିଁ !

ବିନା କାରଣରେ ଯଶୋଦାଙ୍କ ଆଖିରୁ ଡବ ଡବ ଗୁଡାଏ ଲୁହ ବୋହିଗଲା । ଛେନା, ଦୁଧସର ପରି ମୋଲାଏମ ମଣିଷ ! ସବୁବେଳେ ଏମିତି ନରମିଯାଆନ୍ତି ।

ନନ୍ଦଲାଲଙ୍କ ବୁକୁ ପାଖରେ ପଥର ଚାପିଲା ପରି ଅସୁସ୍ଥ ଲାଗିଲା । ସେ ହସିବାକୁ ଚେଷ୍ଟାକରି ହାରିଗଲେ ।

"ଆରେ ରାଜୁ, ତୁ କାହିଁକି ବର୍ଷାରେ ଠିଆହୋଇ କାନ୍ଦୁଛୁ ?"

"ନାଇଁ ତ' ବାବୁ, ଆଖିରେ ପାଣି ପଡିଗଲା, ପୋଛୁଥିଲି ।"

"ଯାଅ, ଯାଅ ସମସ୍ତେ । ଯେ ଯାହା କାମ କର । ମୁଁ ବରଂ କାନାବାବୁକୁ ଏଇଠି ଅପେକ୍ଷା କରୁଛି ।"

କେହି କୁଆଡେ ଗଲେନାହିଁ । ସେଇ ପାଖେ ପାଖେ ଲଟେଇ ପଟେଇ ହେଇ ଅପେକ୍ଷା କଲେ । ମେଘ ଟେକି ଆସିଲା । ଅନ୍ଧାର ଘୋଟିଆସିଲା ।

ବୈଠକ ଘରେଅନ୍ୟମନସ୍କ ଭାବରେ ନନ୍ଦଲାଲ ସେତାର୍‌ରେ ଟୁଙ୍ଗ୍‌ଟାଙ୍ଗ୍ କଲେ । ଯଶୋଦା ସେଇଭଳି ଆନମନା ହୋଇ ଆଲମାରୀରେ ଆଲବମ୍‌ଗୁଡିକ ସଜାଡିଲେ । ନୂଆ ଜୋତା ଯୋଡିକୁ ଥାକ ସାମ୍‌ନାରେ ସାଜିଦେଲେ । କ'ଣ ମନ ହେଲା କେଜାଣି, ନନ୍ଦଲାଲ୍ ଉଠିଯାଇ ତାଙ୍କ ଭେଲ୍‌ଭେଟ୍ ମୁଣାରୁ ମଡେଲ ପାଦଟିକୁ କାଢି ଜୋତା ଯୋଡିକ ମଝିରେ ଥୋଇଦେଲେ । ଯଶୋଦା କିଛି ନକହି ଚାହିଁଲେ କେବଳ ।

ଚମକିଲା ପରି ନନ୍ଦଲାଲ୍ କହିଲେ, "ସେମିତି ଚାହଁନା ଯୋଶୁ ! ତୁମ ଆଖିଦିଟା ହରିଣୀର ଆଖିପରି ଲୁହରେ ଟଳମଳ କରୁଛି ।"

ଘଣ୍ଟାମାନଙ୍କର ବିଳମ୍ବିତ ସୁର୍‌ଲହର ଶୁଭିଲା । ନୀଳରଙ୍ଗର କାଚ ଚଢେଇ ଡାକିଲା – କାନାବାବୁ ! କାନାବାବୁ ! କାନାବାବୁ ! ଯେ ଯେଉଁଠି ଠିଆ ହୋଇ ଗଣିଲେ, ଦିନ ଏଗାରଟା ।

କାନାବାବୁ ସ୍କୁଲରୁ ଫେରିବା ବେଳ । କାନାବାବୁ ପାହାଚ ପାଖରୁ ଡେଇଁ ଡେଇଁ ଘରେ ପଶିଯିବା ବେଳ । ଏ ଘରେ ଜୋତା, ସେ ଘରେ ମୋଜା, ଜାମା ଫିଙ୍ଗି ଦେଇ, ମା' କୋଳକୁ ଆଉଜି ଦୁଧସର ଖାଇବା ବେଳ ।

ସମସ୍ତେ ସଜାଗ ହୋଇଗଲେ । ସମସ୍ତେ ଧାଡିବାନ୍ଧି ଚାହିଁଲେ ବର୍ଷାଆଡେ, ଫେରନ୍ତି ବାଟଆଡେ । ଅନେକ ଗାଡିଗଲା । ସ୍କୁଲ ଫେରନ୍ତା ଅନେକ ଗାଡି । ଆଜି ତ' କାନାବାବୁର ସ୍କୁଲ ନାହିଁ । ଆଜି ତ' ସେ ମାମା ସାଙ୍ଗରେ ଯାଇଚି ।

କାହିଁକି ଯାଇଚି ?...କୁଆଡେ ଯାଇଚି କାନା ?

ଗୁଡିଏ କଳା ଛତାର ପଟୁଆର ଆସି କୋଠା ସାମନାରେ ଥମିଗଲା ।

ଆରେ, ରାଜୁ କାହିଁକି ହାଁକରି ଅନେଇଚି ? ସେ ମଇଁଷି ଗୁଡାକୁ ତଡି ଦଉନାହିଁ କାହିଁକି ?

ବର୍ଷାରେ ତିନି ତିନି ଗୋଛାକୁ ଗୋଛା ଅଚିହ୍ନା ମାଇକିନାମାନେ କାହିଁକି ଆସି ସେଇଠି ଜମି ରହୁଛନ୍ତି । ବିଷଣ୍ଣ ଗାଈ ଗୁଡିଏ... ସେ କୁକୁରଟା ଉପରକୁ ମୁହଁଟେକି ସେମିତି ଭୁକୁଚି କାହିଁକି ?

ଆରେ, ସେ ଅଲକ୍ଷଣାଟାକୁ ଟେକାମାରି କିଏ ତଡୁନାହିଁ କାହିଁକି ?

ନାଇଁମ, ଏଗୁଡାକ ସବୁ ପାଗଳ !

ଅସମ୍ଭବ ! ...ଟ୍ରକ ?...କାନାବାବୁ ? ଆବୁରୁଜାବୁରୁ କ'ଣ ଗୁଡାଏ ପ୍ରଳାପ କରୁଛନ୍ତି ଏମାନେ ?

"ହେଇ ପରା ମୁଁ ଧରିଛି ଦୁଧସର ଆସିଲେ ଖୁଆଇଦେବି ।"

"ଏଇ ପରା ତା' ସକାଳ ଜାମା, ତା' ଝାଳଗନ୍ଧ ଏଥିରୁ ଯାଇନାହିଁ । ଏ ମୁଲାଏମ୍ ଗନ୍ଧଟାକୁ ମୁଁ ଭାରି ଭଲପାଏ ।"

ଆରେ, ଆରେ, ସେ ପାଚେରୀଟାକୁ ଭାଙ୍ଗିଦେଉଚନ୍ତି ଯେ... ଗେଟ୍ ପାରିହୋଇ ପଶିଆସୁଛନ୍ତି କଳାଛତା ପରି ମଇଁଷିମାନେ ।

ମଇଁଷି ! ମଇଁଷି ! ରାଜୁ, ଏମାନଙ୍କୁ ତଡୁ ନାହୁଁ କାହିଁକି ? ସେ ଓଦା ସରସର ମାଇକିନା, ସେ ଅଧା ଲଙ୍ଗଳା ପିଲାଗୁଡାକୁ ? ଇସ୍, ଗଲା ଗଲା, ବଗିଚାଟାକୁ ଛାଇଗଲେ ସେମାନେ – ମାଡିଆସିଲେ ।

ଦୁଆର ମୁହଁରେ ନୀରବ ଠେଲାପେଲା । ଆଗ ଧାଡିରେ ବଡ ବଡ ଆଖିଗୁଡାକ ଉପରେ ଥାକଥାକ ସଜା ହେଇଥିବା ଆଲମାରୀମାନଙ୍କର ପ୍ରତିଫଳନ । ...ବୈଠକ ଘରେ ଛୋଟ ଚୌକି – ସେ ଛୋଟ ଆଲମାରୀ – ସେ ଛୋଟ ଛୋଟ ଜୋତା, ଧାଡି ଧାଡି ଖେଳନା ।

ଷ୍ଟିଲ୍ ଗିନାଟିରେ ଷ୍ଟିଲ ଚାମଚଟିଏ ପକାଇ ବଡ ବଡ ଲୁହ ଥଲଥଲ ହରିଣୀ ଭଳି ଆଖିରେ ପଥର ପିତୁଳାପରି ଠିଆରହିଛନ୍ତି ଯଶୋଦା !...ମୁହଁ ଉପରେ ଗୋଟିଏ ନେଳିଆ ଜାମା ଦୁଇ ହାତରେ ଚାପିରଖି ଅବୁଝା ଆଖିରେ ଚାହିଁଛନ୍ତି ସେତାର୍ ଶିଳ୍ପୀ ନନ୍ଦଲାଲ୍ ନିଗମ୍ ।

ଏତେବଡ ମ୍ୟୁଜିଅମ୍‌ର ଦୁଇଟି ଜୀବନ୍ତ ବିମୂଢ ନିର୍ବାକ୍ ପ୍ରତିମା !!

ଘଣ୍ଟାର ଲହର ଶୁଭିଲା । ଚଢେଇ ଡାକିଲା – "କାନାବାବୁ, କାନାବାବୁ !" ଚଢେଇ ଡାକିଲା ବାରଥର ।

ହାଉକିନା ଘାଇ ଭାଙ୍ଗିଗଲା କୋଉଠି ମୂକ ମ୍ୟୁଜିଅମ୍‌ର ଭିତରେ ଓ ବାହାରେ ଘୁ ଘୁ ସମୁଦ୍ର । ହାଉ ହାଉ ପବନ ଓ ବର୍ଷା ।



## ତାସ୍‌ଘର

ବର୍ଷାଦିନେ ବର୍ଷା ନହେବ ବୋଲି ତ' କଥା ନାଇଁ; ତେବେ ଏ ଶ୍ରାବଣଧାରା ଥମିଲା ଯାଏ ଯଦି ଘରକୋଣରେ ପଡିରହିବାକୁ ହୁଏ, ତାହାହେଲେ ଦେହଯାକ ଛତୁ ଫୁଟିଯିବ, ଆଣ୍ଠୁ ଗଣ୍ଠିରେ ଜଙ୍କ୍ ଲାଗିଯିବ । ମନଭିତରଯାକ କିଆରି କିଆରି ପାଣି ଜମିଯିବ । ଏଣୁ ଓଦା ଗାଈଭଳି କୁଜକାଢି ପିଣ୍ଡାଉପରୁ ଅସରା ଅସରା ବର୍ଷାକୁ ଜୁଳୁଜୁଳୁ ଅନେଇବା ଅପେକ୍ଷା ଶକ୍ତିଧର ବାବୁ ଆଣ୍ଠୁ ଯାଏଁ ଲୁଙ୍ଗି ଟେକି ଛତା ଧରି ସେଦିନ ମଧ ଘଡିଏ ରାତିରେ ଓହ୍ଲେଇଗଲେ ରାସ୍ତା ଉପରକୁ ।

ଛତା ସାଙ୍ଗକୁ ପାଞ୍ଚସେଲିଆ ଟର୍ଚ୍ଚ ଏବଂ ଆର ହାତରେ ସାଉଁ ସାଉଁ ବାମ୍ଫୋଉଥିବା ଜନତା ପେଟ୍ରୋମାକ୍ସ । କଅଣ ଏମିତି ଗରଜ ପଡିଗଲା, ସବୁ କଥାକୁ ହେଳେଇ ହେଉଥିବା, ଅଳସକୁ ଅୟେସ୍ ମଣୁଥିବା, ହଲିବା ପାଣିକି ଗୋଡଦେବାକୁ ନିହାତି ଅମଙ୍ଗ ଶକ୍ତିଧର ବିଶୋଇଙ୍କୁ ? ଘରେ ପୁଅକୁ ଜର । ସେ ହିଜିହିଜିଆ ଟୋକା ସାରାଦିନ ପାଣିରେ ଖେଳିଚି । ସେଇଥିଲାଗି ସନ୍ଧ୍ୟାକୁ ମୁହଁ କାନ ଫଣଫଣ ହେଇ ଛେଚିହେଲା ସର୍ଦ୍ଦିଆ ଜର । ତାକୁ ଓଷଦ ଦିଆ ସରିଚି । ତାକୁ ଜଗିବସିଲେ କ'ଣ ରୋଗ ଓହ୍ଲେଇ ଯିବ ? ସେ ନିଜେକିଛି ଭୋଗିବ, ଘର ବଉଁଶ କିଛି ସାଧିହେବେ... ତେବେ ଯାଇ ସରିବ ପାଲା ।

ସକାଳୁ ପରିବା ପତ୍ର ସରିଚି... ସରୁ... କିଏ କ'ଣ କରିବ ? ଏ ବର୍ଷାରେ କାହାର ଦିନ ସରୁନି ଯେ ଆସି ଛତାଟେକି ଆମକୁ ବାଇଗଣ, କଞ୍ଚା କଦଳୀ, କଖାରୁ ବିକିବ ? ଆଜି ଓଳିକ ଆଗର ଆଉ ଡାଲିରେ ଘ୍ୟେଇଦେଲେ କ'ଣ ନାକରା ହେଇଯିବ ନାଁ ବରଦେଖା ଭଣ୍ଡୁର ହେଇଯିବ ? ଖାଅ ନହେଲେ ନ ଖାଅ ! ହ୍ୟାପ୍ ଶାଲା ହମ୍ ନେହିଁ ଯାଏଗା । ...ବଡପୁଅ ମାଆକୁ ପାକଳଉଥିଲା ମାଉଁସ ପାଇଁ । ଏ ବର୍ଷା ବତାସୀ ପାଗରେ ହାଣ୍ଡୁଳା ପକାଇଦେଇ ମେଞ୍ଚାଏ ହୋଇ ଠୁକୁ ଠୁକୁ ଥରୁଥିବା କୋଉ ଛେଳି ପିଲାର ଶଙ୍ଖି କାଟିବାକୁ ସେ ମିଆଁ ପୁଅ ଭଲା ମଙ୍ଗିବ ? ତେମେ ଗଣ୍ଡେ ଟଙ୍କାଦେବ ବୋଲି କ'ଣ ସମସ୍ତଙ୍କ ଜୀବନ କିଣିଚ ? ସେ ଭଳି ମାଉଁସ ଖାଇଲେ ଭଲା ତୁମ ଚେତନାରେ ଗୁମ ଉଠିଯିବନି ? – କାକର ପାଣି ଥୋପିବ ନାହିଁ ସେ କେରି କେରି ଗୁମ ଦେହରୁ ?

ଶକ୍ତିଧର ବାବୁ କତାପାନର ପିକଟାକୁ ବାଁପାଖକୁ ପୁଚ୍‌କିଦେଲେ । ଘାସପଟିଆରେ ଜମିଥିବା ପାଣି ଉପରେ କୁଲି ବେଙ୍ଗଟିଏ ଛଳ ଛଳ ହେଇ ଡେଇଁଗଲାପରି ଶୁଭିଲା । ତାତିଲା ପେଟ୍ରୋମାକ୍ସ ଉପରେ ବର୍ଷା ଟୋପା ପଡୁଥାଏ । ଷ୍ଟାଇଁ ଷ୍ଟାଇଁ ଶବ୍ଦକରି ଧୂଆଁ ଉଠିଯାଉଥାଏ ।

ଟପର ଟପର ପାଣି ପଡୁଥାଏ ଛତା ଉପରେ ।

ଅଲୁଅଟି ଏମିତି ଦୂରେଇ ଯାଉଥିଲାବେଳେ ଶ୍ରୀମତୀ ବିଶୋଇ ଦାଣ୍ଡଦୁଆରେ ଠିଆହୋଇ ଦେଖୁଥାନ୍ତି...ନିପାରିଲା, ନିଧୋଡିଆ ମଣିଷଟିଏ! ଲଡୁଆଳ କରିତ୍କର୍ମାମାନଙ୍କ ପରି ହାତୀଟାଏ କି ଛତିଟାଏ ତାଙ୍କ ଦିହାତି ହୋଇନାହିଁ କି ହେବନାହିଁ । ସଂସାର ଚଳେଇବାକୁ ଚାକିରୀଟିଏ । ମାସ ଶେଷକୁ ଦରମାଗଣ୍ଡାକ ମୁଣ୍ଡ । ବାଆସ୍, ଆଉ ତେଣିକି କିଛି ସେ ବୁଝନ୍ତି ନାହିଁ । କୌଣସି କଥାକୁ ନାହିଁ ମଧ କରନ୍ତିନାହିଁ । ତମେ ଯାହା ମନ ତାହାକର; କିନ୍ତୁ ସନ୍ଧ୍ୟାବେଳେ କୁଆଡେ ଯିବା ଆସିବାକୁ ତାଙ୍କୁ କହନାହିଁ । ସେ ଯିବେ ତ' ନାହିଁ; ତା' ଉପରେ ପୁଣି ଖିଜ କିଜ୍ ରାଗରୋଷ ଯେ କହିଲେ ନ ସରେ । ନିଶାଖାଇଲା ମଣିଷର ବେଳା ଗଡିଗଲେ ଯାହାହେବା କଥା! ...ହେଲା ଏବେ, ସେ ତ' ଜୁଆ ଖେଳି ପଇସା ଉଡୋଉ ନାହାନ୍ତି । ନୁରି ସାମନ୍ତପରି ମଦପିଇ ଘରକୁ ଆସି ବାଡଉନାହାନ୍ତି । ସୁନାପରି ମଣିଷ! ସିଗ୍ରେଟ୍ ବି ଖାଆନ୍ତିନାହିଁ । ଖାଲି ରାଜେନ୍ଦ୍ର ବାବୁଙ୍କ ପିଣ୍ଡାରେ ଚରି ବାଜି ତାସ୍ ପିଟିଦେଲେ ତାଙ୍କର ସବୁ ହାଲିଆ କଟିଯାଏ, ସବୁ ରାଗରୋଷ ଖଲାସ ହୋଇଯାଏ । ରାତି କୋଉଦିନ ଏଗାର ତ' ଆଉ କୋଉଦିନ ବାରଟାରେ ସେ ଫେରନ୍ତି । ଭାରି ହାଲୁକା, ଖୁବ୍ ଉଦାର ରାଜାଟିଏ ପରି, ସେତେବେଳେ ସେ କଥା କହନ୍ତି ରସିକ ଭଳି । ଶୁଣନ୍ତି ଭାରି ସରାଗରେ । ତାଙ୍କ ମୁହଁରେ ହସଟି କୋଡିଏ ବର୍ଷ ତଳର ସେ ମଲ୍ଲୀହାର ପରି ପୁଣି ଫୁଟିଯାଏ । ମଥା ଉପରେ ଏଠି ସେଠି ଧଳାଗାର ସତ୍ତ୍ୱେ ସେ ଭାରି ଚମତ୍କାର ଦେଖାଯାନ୍ତି । ପିଲାଏ ସେତେବେଳକୁ ଶୋଇ ସାରିଥାନ୍ତି । ପ୍ରତିମା ବିଶୋଇ ସେଥିପାଇଁ ସ୍ୱାମୀଙ୍କର ଏ ତାସ୍ ନିଶାଟିକୁ ପ୍ରତିବାଦ ନକରି ଦେହସହା କରିନେଲେଣି । ବରଂ ଅଝଟ ସାନପୁଅର ପେଣ୍ଡୁ ଖେଳପରି ଏଇଟା ବି ଭାରି ଅବୋଧ ଏବଂ ସରଳ ଜଣାପଡେ ତାଙ୍କୁ । ପ୍ରତିଦିନ ସନ୍ଧ୍ୟାରେ ସେଥିପାଇଁ ପୁଡାଏ କତାପାନ ତାଙ୍କ ହାତକୁ ବଢେଇଦେଇ ସେ ତାଙ୍କୁ ତାସ୍ ଖେଳିବାକୁ ଛାଡିଦିଅନ୍ତି ।

ଶକ୍ତିଧର ବାବୁ ଦିନେ ତାସ୍ ନ ଖେଳିଲେ ସାତଦିନ ଅସୁସ୍ଥ ହୋଇପଡନ୍ତି । ତାଙ୍କ ନିଃଶ୍ୱାସ କୁଆଡେ ଗୋଳମାଳ ହୋଇଯାଏ, ରକ୍ତଚାପ ବଢିଯାଏ, ନିଦ ହୁଏନାହିଁ, ଝାଡା ପରିଷ୍କାର ହୁଏନାହିଁ । ଘରେ ଝଗଡା । ଅଫିସରେ ଗୋଳମାଳ, ହିସାବ ଭୁଲ୍ ସାରା ସୃଷ୍ଟି ଓଲଟପାଲଟ! କିଏ ଦେଲା ଏତେ ଝିନ୍‌ଝଟ୍! ଘରେ ବରଂ ଜରୁଆ ପିଲାକୁ ସମ୍ଭାଳି ନେଲେ...ହୁଏ । ସେ ତାଙ୍କର ଯାଆନ୍ତୁ ତାସ୍ ଖେଳି ।

ସେଦିନ ଆଲୁଅ ଲିଭିଯାଇଥାଏ । ସେଥିପାଇଁ ପେଟ୍ରୋମାକ୍ସଟାଏ ଧରି ସେ ଚାଲିଲେ ରାଜେନ୍ଦ୍ର ବାବୁଙ୍କ ପିଣ୍ଡାକୁ । ବୁସ୍ ସାର୍ଟର ବୁକୁପାଖ ଦୁଇଟି ମୁଣାରେ ଦୁଇମୁଠା ଦାମୀ ପ୍ଲାଷ୍ଟିକ୍ ତାସ୍ । ଟେକା ହୋଇଥିବା ଲୁଙ୍ଗିର ଅଣ୍ଟିରେ ପାନପୁଡା । ବର୍ଷା ତା'ର ହଉଥାଉ, କିଏ ପଚାରେ ?

ରାଜେନ୍ଦ୍ରବାବୁଙ୍କ ଓଳିରୁ ଝର ଝର ପାଣି ପଡୁଥାଏ । ଝରକା କବାଟ ସବୁ ବନ୍ଦ । ହଅଅଅ...କୋଇ ବାତ୍ ନେହିଁ...ରାଜୁଆ ଶଳା ମୋଟାଲାଙ୍ଗୁଡିଆ, ମଠୁଆ ବଳଦ; କିନ୍ତୁ ତା' ଲାଞ୍ଜ ମୋଡାମୋଡିକରି ଥରେ ଆଣି ବସେଇ ଦେଇ ପାରିଲେ ତେଣିକି ସେ ରାଜାଟାଏ ତ! ଏକ

ନମ୍ବର ଖେଳାଳି । ତାକୁ ପାର୍ଟନର କଲେ କିଏ ଆଉ ସୃଷ୍ଟିରେ ଅଛି ଶକ୍ତିଧର ବାବୁଙ୍କୁ ଜିଣିପାରିବ ? ...ରାଜୁଆ ଦେବୀ ସାଧନା କରେ ତ' – ସେଇଥିପାଇଁ ବାଉନ୍ ପତାଯାକ ତାକୁ ଦୃଶ୍ୟ ହୋଇଯାଏ । ନହେଲେ ସେ ଏମିତି ସର୍ବଜାଣ ଢଙ୍ଗରେ ଖେଳି ପାରନ୍ତା ନାହିଁ ।

କବାଟରେ ଶକ୍ତିଧର ବାବୁ ହାତ ଦଉ ଦଉ ଫିଟିଗଲା । ପିଣ୍ଡାରୁ ପେଟ୍ରୋମାକସ ଆଲୁଅ ଘରେ ଆସି ପଡୁଥାଏ । ତଥାପି ଗୋଟିଏ ମିଞ୍ଜି ମିଞ୍ଜି ଦି'ସେଲିଆ ଟର୍ଚ୍ଚ ଟିପି ରାଜେନ୍ଦ୍ରବାବୁ ଆଗେଇ ଆସିଲେ । ତାଙ୍କ ପଛରେ ସାନବଡ ଗରୋଟି ଫୁଙ୍ଗୁଳା ପିଲା କୁକୁଡାଛୁଆ ପରି ବଡ ବଡ ଆଖି ମେଲାଇ ଅନେଇଲେ । ମଝିଆଁ ଝିଅଟି ନା ମାନୁ – ଶକ୍ତିଧର ମଉସାଙ୍କ ଅତି ପ୍ରିୟ ।

"କିରେ, ଶକ୍ତି କିବେ! ଭାଇ ଆଜି ହଟହଟା ଆଉ କହନା । ଏଇ ଜୁଳୁଜୁଳିଆ ପୋକର ଚୋଟି ଚିପିଧରି ବସିଚି । ଏଇଥିରେ କୌଣସି ପ୍ରକାର ରାନ୍ଧା ଚାଲିଛି ।"

ଶକ୍ତିଧର ବାବୁ ସମଝିଗଲେ ।

"ଆରେ, ଆରେ, ଏ ଗୋଟାଏ କଥା! ନଉନୁ ଏ ଶିକାରୀ ଟର୍ଚ୍ଚ । ଆଇଲୁ ମାନୁ, ନେ ଏଇଟା ।" – କହି ଚିପିଦେଲେ । ହାଉକିନା ଗୋଟାଏ ଆଲୁଅ ଚହଟି ଗଲା । ପରମ ଖୁସିରେ ରାଜେନ୍ଦ୍ରବାବୁ ସେଇଟିକୁ ବଡପୁଅ ହାତରେ ଦେଇ କହିଲେ, "ପକାନା ଦେଖ୍! ଧୀର ନେ!"

ପିଣ୍ଡାକୁ ଆସି କହିଲେ, "ଆବେ, ଏକାଥରେ ଆଲୁଅଟାଏ ଟେକି ଚାଲି ଆସିଚୁ ? ବଢିଆ! ବାକି ଆମ ଶତ୍ରୁପକ୍ଷ ଯୁଦ୍ଧକୁ ରାଜିହେଲେ ସିନା । ସେ କ'ଣ ଏ ପାଗରେ ତାଙ୍କ କୁଣ୍ଡଳି ଫିଟେଇ ଏଣେ ଗଡିବେ ? ତାଙ୍କୁ ଡାକି ଯିବ କିଏ ?"

"ଆବେ, ଡାକିବୁ କ'ଣ ? ଏ ସାରା ଅନ୍ଧାର ମୁଲକରେ ତ' ମୁଁ କେବଳ ଆଲୁଅଟିଏ ଧରିଚି । ପାଣିକାଦୁଅ ପାରିହେଇ ତମରିପାଇଁ ଆସିଚି । ଯଦି ସେ ଅଧମମାନେ ମୋତେ ଦେଖି ନାହାନ୍ତି, ତାଙ୍କ ତ୍ରାଣକର୍ତ୍ତା ଆଲୋକ ଏବଂ ଆନନ୍ଦ ନେଇ ଆସିଗଲେ ବୋଲି ବୁଝିନାହାନ୍ତି, ତେବେ ପଡିଥାନ୍ତୁ ଅନ୍ଧାର ନର୍କରେ ।"

"ଆହେ, କାହାକୁ ନର୍କଗତି ହେଲା ?" ପାଣି ଚବର ଚବର କରି ଛତା ଖଣ୍ଡିଏ ଧରି ଆସି ଉଭାହେଇଗଲେ ଚଇତନ ଚରଣ ଦାସ ।

"ଆର୍ବୁଦେ ବର୍ଷେ ଶଳାଟା ବଞ୍ଚିବ –" ମନକୁ ମନ କହିଲେ ଶକ୍ତିଧର ବାବୁ ।

"ତମେରି କଥା ପଡିଥିଲା । ସୁଦର୍ଶନ ଷଡଙ୍ଗୀ କାହାନ୍ତି ? ଆମେ ଭାବୁଥିଲୁ ଯେ କାଲିକା ମାଡରେ ଆଜି ଆଉ ମୁହଁ ଦେଖାଇବାକୁ ବଳନାହିଁ ।" – କହିଲେ ରାଜେନ୍ଦ୍ରବାବୁ ।

"ମାଡ ନାଁ ଆଉ କ'ଣ ବା ! ହାତରେ ଖେଳ ଲାଗିଲେ ମୂଢମାନେ ମଧ ଆଖିବୁଜି ଜିଣନ୍ତି । କାଲି'ତ ହାଓ୍ୱା ତମରି ଆଡେ । ଯେତେବେଳେ ଦେଖ, ସବୁଯାକ ରଙ୍ଗିଲା ଚଢେଇ ତମରି ଡାଳରେ ବସା ବାନ୍ଧିଚନ୍ତି ।"

"ମଲା, ଆମ ଡାଳକୁ ଆସିବେ ନାହିଁ ତ' କ'ଣ କଟାସ, ଢିଙ୍କିଆ, ଶିଆଳମାନଙ୍କ ମେଳକୁ ଯିବେ ?"

"ହଉ, ଆଜି ଦେଖିବା କେମିତି ରୂପ ବଦଳ ହଉଚି !"

ଏ ତିନିହେଁ ବୈଠକ ଘରେ ପଶିବାର ଅଳ୍ପ ସମୟ ପରେ ଆସିଗଲେ ସୁଦର୍ଶନବାବୁ । ବାଙ୍ଗୁରା କାଠିମୁଠିଆ ମଣିଷ – ଶକ୍ତିଧରବାବୁଙ୍କ ପରି । ହେଲେ ବିଜିବିଜି କଳା । ବୟସରେ ବି କମ୍ । ତାସ୍ ଆଖଡାରେ ତାଙ୍କର ଶ୍ରଦ୍ଧାନାମ 'କଳାପାନ୍ ଟିକା' ।

"ଶକ୍ତିଧରବାବୁଙ୍କୁ ଆଉ ପାରି ହେଲା ନାହିଁ । ଏ ପାଗରେ ଭଲା କିଏ ଘରୁ ଗୋଡ କାଢନ୍ତା ? ମାତ୍ର ଏ ମହାତ୍ମାଙ୍କୁ ତାଙ୍କ ସାଧନାରୁ ଟାଳିବାକୁ କାହାର ଶକ୍ତି ଅଛି ? ପଡିଆରେ ପେଟ୍ରୋମାକ୍ସ ଦେଖି ତ' ମୁଁ ଜାବା ! ଆଚ୍ଛା ଶକ୍ତିଧରବାବୁ ! ଆଜି ଦିନେ ନ ଖେଳିଥିଲେ କ'ଣ ଚଳିନଥାନ୍ତା ?"

"ଆପଣ ଯାଉନାହାନ୍ତି – ଆମେ କଟ୍‌ଥ୍ରୋଟ୍‌ରେ କାମ ଚଳେଇ ଦେବା !"

"ମୁଁ କ'ଣ ତା' କହିଲି ? ମୁଁ ଆପଣଙ୍କୁ ପଚାରୁଚି ନା – ମାନେ ଆପଣ ଆଜି ଦିନଟା ନ ଖେଳି ଚଳିପାରନ୍ତେ ନା ନାହିଁ ?"

"ମୋଟଉପରେ ମୁଁ ଯେହେତୁ ଆସି ସାରିଲିଣି ସେ ପ୍ରଶ୍ନ ଆଉ ଉଠୁଚି କାହୁଁ? ଯଦି ନିହାତି କେବେ ହାତ ଗୋଡ ଅଚଳ ହେଇଯିବ, ବା ଆପଣମାନେ ଇହଲୀଳା ଛାଡି ଚାଲିଯିବେ, ମତେ ବାଧହୋଇ ଅନ୍ୟ ଅଭ୍ୟାସ କରିବାକୁ ପଡିବ । ଏବେ ମଧ ଦିନେ ଦିନେ ମୁଁ ତା' କରେ । ଦି'ଚାରି ଘଣ୍ଟା ଏଇ ବାଉନ ପତ୍ତାଙ୍କ ସଙ୍ଗେ ବିଳାସ କରେ । ସେମାନଙ୍କ ମୁହଁକୁ ମନପୂରେଇ ଥରେ ନ ଦେଖିଲେ, ସେମାନଙ୍କୁ ହାତରେ ଫିଟେଇ କେରି କେରି ନ କଲେ ମତେ ନିଦ ହୁଏନା ।"

ରାଜେନ୍ଦ୍ରବାବୁ ଘର ଭିତରେ କ'ଣ ଟିକେ ଲାଗିଯାଇଥାନ୍ତି । ସେ ଆସି ବସିଗଲେ ଯୁଦ୍ଧ ଆରମ୍ଭ ହୋଇଯିବ । ଶକ୍ତିଧରବାବୁ ନୂଆ ସଲସଲିଆ ତାସ୍ ମୁଠାଟାକୁ ବିଭିନ୍ନ ଭଙ୍ଗୀରେ ସାଉଁଳି ସାଉଁଳି ଗେଲ କରୁଥାନ୍ତି । ଚୈତନ୍ୟବାବୁ ପଚାରିଲେ –

"ଆପଣ କେବେ ତାସ୍ ଖେଳିଶିଖିଲେ ଶକ୍ତିଧରବାବୁ ?"

ସୁଦର୍ଶନବାବୁଙ୍କ ମୁହଁରେ ସାମାନ୍ୟ ଚାପା ହସ !

ଶକ୍ତିଧରବାବୁ ଗମ୍ଭୀର ଭାବରେ ଉତ୍ତରଦେଲେ, "ବୋଧହୁଏ ମା' ପେଟରୁ; କିନ୍ତୁ ପ୍ରଜାପତି ଘଟସୂତ୍ର ପରି ପହିଲି ମୁଲାକାତ୍ ହେଲା ବନାରସରେ । ସେଇଦିନଠାରୁ ଝଡ, ତୋଫାନ୍, ବନ୍ୟା, ମରୁଡିରେ ଏଇମାନେ ମୋର ପରମ ଆଶ୍ରୟ । ଏମାନେ ନ ଥିଲେ ମୁଁ ଆଉ ବଞ୍ଚିପାରିବିନି । ମଲେ ଏମାନଙ୍କୁ ନେଇ ମରିବି ।"

ଆମୋଦରେ ଠୁସ୍ ଠୁସ୍ ହସିଲେ ଅନ୍ୟ ଦୁଇ ବନ୍ଧୁ ।

"ଏଇ ଦେଖୁ ନାହାନ୍ତି", କହିଲେ ଶକ୍ତିଧରବାବୁ, "ମୁଁ ଏ ସମଗ୍ର ସଂସାରକୁ ଏଠି ଆବିଷ୍କାର କରୁଚି । ଦୁକା ଖଣ୍ଡିକ ହେଲା ଦରିଦ୍ର ଦୁଃଖୀଟିଏ । ଦେହଟିଏ, ଆତ୍ମାଟିଏ କୌଣସି ପ୍ରକାରେ ଯୋଖିହେଇ ରହିଚନ୍ତି । ସବୁବେଳେ ଡରି ମରି ଥାଏ । ସମସ୍ତଙ୍କ ପଛରେ ଥାଏ । ତା' ଉପରକୁ କିନ୍ତୁ ପାହାଚ ପାହାଚ-ତଉକା, ଛକା, ନହିଲା, ଦହିଲା ଯାଏ ଏ ସମାଜର ନିପାରିଲା ଗୋଷ୍ଠୀ । ଦୁକା ଠୁଁ ପାଞ୍ଚଗୁଣ ସାମର୍ଥ୍ୟ ଥିଲେ ସୁଦ୍ଧା ଦହିଲାର ବି ଗହମଗୁଡିକ ଗୋଟିଗଣିତା । ଆଙ୍ଗୁଠି

ଅଗରେ ତା'ର ସକଳ ସମ୍ପତ୍ତି ମାପିଦେଇ ହେବ । ତା' ଉପରକୁ କିନ୍ତୁ ମଣି ମାଣିକ୍ୟ ରଙ୍ଗ, ଅନ୍ୟ ପ୍ରକାର ବିଭୂତି । ରାଜାରାଣୀଙ୍କ ଜକ ଜକ ଅଳଙ୍କାର ! ରଜାଗୁଡିକ ଦାଢିଆ ! ରାଣୀଗୁଡିକ ମାଖୁନା ମୁହାଁ । ତାଙ୍କ ସେବାରେ ଥାଇ କିନ୍ତୁ ଜକି ଖଣ୍ଡକର ଟାପିନି କହିଲେ ନ ସରେ । ଜାତିରେ ଗୋଲାମ୍; କିନ୍ତୁ ରାଜାଙ୍କ ଗୋଲାମ୍ ! ସେ ଆସି ତଳ ମହଲାରେ ପଶିବ ନାହିଁ । ଭାରି ଗୁମାନ୍ । ବେଳେବେଳେ ରାଜରାଣୀଙ୍କୁ ମଧ ଗୋଟାଏ ଗୋଟାଏ ଖେଳରେ ସେ ମର୍ଦ୍ଦି ଦେଇପାରେ । ସବୁଠୁଁ ଆଶ୍ଚର୍ଯ୍ୟ ହେଲା ସେ ଟିକାଖଣ୍ଡିକ । ମୂଳ ମଞ୍ଜିଭଳି ସେ ଢଳ ଢଳ ସତ୍ୟ ସରୂପ । ମୁଁ ଆଜ୍ଞା ତାକୁ ପୂଜାକରେ । ବେଶିକରି କଳାପାନ ଟିକାଟା – ସେ ମୋ' ଜଗନ୍ନାଥ !!"

ହୋଃ ହୋଃ ହସିଲେ ସେମାନେ ।

"ଆପଣ ତ' ରୀତିମତ ଗବେଷଣା କରିଛନ୍ତି ! ଇଣ୍ଟରେଷ୍ଟିଂ ! – ହେ ରାଜେନ୍ଦ୍ରବାବୁ, ଆସନ୍ତୁ, ଆସନ୍ତୁ ! ଶକ୍ତିଧରବାବୁ ଆଜି ଗୋଟାଏ ନୂଆ ତଥ୍ୟ ବୁଝାଉଛନ୍ତି, ଶୁଣିବେ ଆସନ୍ତୁ । ଆଉ କ'ଣ ସବୁ ଆପଣ ବୁଝିଛନ୍ତି କହିଲେ ?"

ଶକ୍ତିଧରବାବୁ ସେମିତି ତାସ୍‌ଗୁଡିକ ସାଙ୍ଗରେ ଖେଳୁଥାନ୍ତି ।

"ମୋର କାହିଁକି ମନେହୁଏ ଯେ, ପ୍ରଥମେ ଯେଉଁ ମହାପୁରୁଷ ଯାକୁ ରୂପଦେଲେ ସେ ନିଶ୍ଚୟ ଜଣେ ଋଷି । ଜୀବନର ସୁଖଟିଏ, ଦୁଃଖଟିଏ, ହସଟିଏ, କାନ୍ଦଟିଏ, ତାଙ୍କୁ ଭାଗ ଭାଗ ହେଇ ଦିଶିଗଲା । ଗୋଟାଏ ନାଲି ଓ ଆରଟି କଳା । ପ୍ରଥମେ ସେ ଯୋଡିଏ କଦର ରୂପ କଳ୍ପନା କଲେ । ଗୋଟିକରେ ଡେମ୍ଫ ଲାଗିରହିଲା, ଅନ୍ୟଟିରେ ଲାଗିଲାନାହିଁ ବା ଝଡିଗଲା । କଳାପାନ ଏବଂ ନାଲିପାନ ହେଲେ ତତ୍ତ୍ୱରୂପ । ତା'ପରେ ସୁଖ ଦୁଃଖକୁ ନେଇ ଖେଳିବାକୁ ଯେତେବେଳେ ଚୌହଦି ବନ୍ଧାହେଲା, ସେ ତାକୁ କେବଳ ସାମାନ୍ୟ ବାଗେଇଦେଲେ । ନାଲିପାନର ତଳ ପେଟୁଆ ଅଂଶକୁ କତୁରୀ ଦେବାରୁ ସେ ହେଇଗଲା ଠିକିରି । କାଳିପାନରୁ ଚୂଳକାଡିଦେବାରୁ ହେଇଗଲା ଚିଡିଆ । ନାଲି କଦରେ ଡେମ୍ଫ ଲାଗିଥିଲେ ଠିକିରି ହେବାରେ ଅସୁବିଧା ହେଇଥାନ୍ତା ।"

"ବାଃ, ବାଃ, ବ୍ରାଭୋ ! ଶକ୍ତିଧରବାବୁ, ଏ ତ' ୱଣ୍ଡରଫୁଲ୍ କଥା ଆପଣ କହୁଛନ୍ତି । ଆପଣ ଯା ଉପରେ ଅନେକ ଚିନ୍ତା କରିଛନ୍ତି ନିଶ୍ଚୟ ।"

"ଆରେ, ଚିନ୍ତା କ'ଣ କହୁଚୁ – ଧ୍ୟାନ କହ !" କହିଲେ ଚୈତନ୍ୟବାବୁ, "ନ ହେଲେ ଏ ସବୁ ତତ୍ତ୍ୱ କ'ଣ ତାକୁ ଦୃଶ୍ୟ ହେଇଥାନ୍ତା ?"

କଥାର ଶେଷ ଅଂଶ କିଛି ଶୁଣି ଶୁଣି ରାଜେନ୍ଦ୍ର ବାବୁ ପଶି ଆସି କହିଲେ, "ଆହେ ଧ୍ୟାନ କ'ଣ କହୁଚ, ଶକ୍ତିଭାଇ ! ତାସ୍ ଉପରେ ସମାଧିସ୍ଥ ହୋଇଯାଇପାରେ । ତାକୁ ଜଳ, ସ୍ଥଳ, ଆକାଶ ସବୁ ତାସ୍‌ମୟ ଦେଖାଯାଇପାରେ ।"

ହେଃ ହେଃ ହେଃ ହସିଲେ ସୁଦର୍ଶନ ଷଡଙ୍ଗୀ ।

"ଶକ୍ତିଧରବାବୁ ଖଣ୍ଡେ ପାନ କଳରେ ପୂରେଇ ମୁଠାଏ ତାସ୍‌ଧରି ସଜାଡି ହେଇପଡିଲେ । କହିଲେ, "ତୁ ସିନା ଥଟ୍ଟା କରୁଛୁ ରାଜୁ ! କଥାଟା ସମ୍ପୂର୍ଣ୍ଣ ମିଛ ନୁହେଁ । ଏଇ କେତେଦିନ ହେଲା

ମଣିଷମାନେ ବି ମତେ ଏମିତି ଘରିଘରିଆହେଇ ଦିଶୁଚନ୍ତି !"

ଥଟ୍ଟାରେ ହାତ ଉଞ୍ଚେଇ ରାଜେନ୍ଦ୍ର ବାବୁ କହିଲେ, "ବଜେଇବି ଶଳାକୁ ଯେ, ବେଶି ଜ୍ଞାନ ବଖାଣୁଛି, କାଟ ହେ ସୁଦର୍ଶନ ବାବୁ ।"

ଅଳ୍ପ ଅଳ୍ପ ଅଗଦାନ୍ତରେ ଗୁଆକୁ ଦାନ୍ତେଇ ଶକ୍ତିଧରବାବୁ ତାସ୍ ବାଣ୍ଟୁଥାନ୍ତି । କହିଲେ, "ଉଦାହରଣ ସ୍ୱରୂପ ତୁ ଶଳାଟି ଠିକିରମୁହାଁ । ସବୁଆଡେ ଦାନ୍ଦ ଆଉ ଗୋଜ । କାଟିଦବୁ, ଫୋଡିଦବୁ; କିନ୍ତୁ ଟୋଠି ଲେଶ ସୁଦ୍ଧା କଳା ନାହିଁ । ନାଲିଆ ହେଇଥିବାରୁ ମୁଁ ତତେ ବନ୍ଧୁ କରିନେଇଚି ।"

ହାତକୁ ଖେଳ ଉଠେଇବା ଅବସ୍ଥାରେ ଚୈତନ୍ୟ ବାବୁ ପଚାରିଲେ, "ଆଉ ମୁଁ ?" – "ଏବଂ ମୁଁ ?" ପଚାରିଲେ ସୁଦର୍ଶନ ବାବୁ । ଶକ୍ତିଧରଙ୍କର ଚାହିଁବା ଢଙ୍ଗରୁ ଜଣାଗଲା ସତେ ବା ସେ କହି ପାରନ୍ତେ; କିନ୍ତୁ ରୋକି ନଉଛନ୍ତି ।

ସମସ୍ତେ ମୁଠା ଟେକି ତାସ୍ ଖେଳେଇଲେ । ଶକ୍ତିଧର ବାବୁ ଭାରି ହିମ୍ମତରେ ଡାକିଲେ – "ୱାନ୍ ସ୍ପେଡ ।" ସୁଦର୍ଶନ ଟିକେ ରହି ଡାକିଲେ, "ଟୁ କ୍ଲବ୍ସ୍ ।" ରାଜେନ୍ଦ୍ର ବାବୁ ସିଗ୍ରେଟ୍ ଟାଣି ଧୂଆଁରେ ଛାଡିଦେଲେ, "ପାସ୍" । ସେ ଜାଣନ୍ତି ଯେ ଶକ୍ତିଧର ବାବୁଙ୍କୁ କଳାପାନଟା ସବୁଠୁ ବେଶି ଭଲ ଲାଗେ, ହାତରେ ଖେଳ ଥାଉ ବା ନଥାଉ; କିନ୍ତୁ ସାଂଘାତିକ ଭାବରେ ଭଲ ଲାଗେ "ନୋ ଟ୍ରମ୍ପ" ବା ବେରଙ୍ଗ ଡାକିବାକୁ । ଥରେ ଦେଢମୁଠା ଖେଳ ଧରି ସେ ପାଞ୍ଚ ବେରଙ୍ଗ ହାଙ୍କିଦେଲେ । ସେ ବାକିତକ ଗଧ ପରି ହାରିଲେ, ଚୋର ଚଣ୍ଡାଳଙ୍କ ପରି ଗାଳି ମଧ ଖାଇଲେ । ରାଜେନ୍ଦ୍ର ବାବୁ ହଠାତ୍ ଥୋବଡ ପରି ଅଳ୍ପ ହସିଦେଇ କହିଥିଲେ, "ଜିଣ ହାରତ ଲାଗିଚି ଭାଇ, ଥରେ ଡାକିବି ଡାକିବି ବୋଲି ଡାକି ଦେଲି ଗୋଟାଏ ରଜା ଡାକ ! ଛାଡ ଏ ବାଜିକ । ଏଥର ଦେଖ୍ ମୁଁ କେମିତି ଖେଳୁଚି ।"

ରାତି ଘନେଇ ଆସିଲା । ଖେଳ ବି ଏକପଟିଆ ଜମି ଆସିଲା । ସୁଦର୍ଶନ ଚୈତନ୍ୟ କମ୍ପାନୀ ଦାବି ଦେଇଗଲେ । ସବୁବେଳେ ଶକ୍ତିଧରଙ୍କ ଉପରେ ଗାଳି ବର୍ଷା । ଗୋଟାଏ ମୁଠା ଫୋପାଡି ଦେଇ ରାଜେନ୍ଦ୍ର ବାବୁ ରାଗରେ ଉଠି ଯାଉଥିଲେ – "ଯାବେଃ, ଏମିତି ଶାଳା ମକୁନ୍ଦାକୁ ନେଇ ଖେଳିବା ଯାହା ସେଇଠି କାଠ ଗରିଣ୍ଡାଟାଏ ବସେଇବା ତାହା । କେମିତି ଗୋଟାଏ ବେକୁବ୍ ଭଳି ତାଙ୍କ ହାତକୁ ଖେଳ ଦେଇଦେଲୁ କହିଲୁ ? ଜାଣୁଚୁ, ଆମର ରଙ୍ଗ ନାହିଁ । ଚିଡିଆ ଖେଳିଥିଲେ ବାଡେଇ କରି ମୁଁ ଦି'ମୁଠା ନେଇଥାନ୍ତି । ଗୋଟିଏ ପତା ନାଲି ପାନ ଧରି ସୁକ୍ ସୁକ୍ ହେଇ ଖେଳିଦେଲୁ ? ତୋ ମୁଣ୍ଡ ଆଜି ଠିକ୍ ଅଛି ନା ନାଇଁ ବେ ?"

ଶକ୍ତିଧର ବାବୁ ଗୋଡ ଲମ୍ୱେଇ ଦେଇ ପାନ ଚୋବେଇଲେ । ଖୋସାମତ୍ କରି କହିଲେ, "ଆଚ୍ଛା ଭାଇ, ଏମିତି ରାଗୁଚୁ କାହିଁକି ? କାଲି ଆମେ ଜିଣିଥିଲେ, ଆଜି ସେ ଜିଣୁଚନ୍ତି । ହଁ, ମୁଁ ଜାଣୁଚି ଯେ ମୋର ଭୁଲ୍ ହେଇଗଲା । ମୁଁ ଚିଡିଆ ଖଣ୍ଡକୁ ହାତ ନେଲାବେଳକୁ ନାଲିପାନଟାକୁ କାଢି ପକେଇଦେଲି । ଭାଇ ବିଶ୍ୱାସ କର, ଚିଡିଆଟା ମତେ ସେ ପୁଚୁକାଗାଲିଆ, ଗୋଜମୁଣ୍ଡିଆ

'ବଗ' ସାହୁ ପରି ଦିଶେ । ଆଉ ମୁଁ ତାଙ୍କୁ କେତେ ଘୃଣାକରେ ତୁ ଜାଣୁ! ମତେ ଏ ଶାଳା ଚିଡିଆ ସାଙ୍ଗରେ ତାସ୍ ଖେଳିବାକୁ ପଡୁଥିବା ହେଲା ମୋ' ଜୀବନର ବୃହତ୍ତମ ଦୁଃଖ । ଏ 'ବଗ' ସାହୁ ନଥାଇ ତାସ୍ ଖେଳର ଉଭାବନ ହେଲେ ମୋର ଦୁଷ୍ଚିନ୍ତା କଟିଯାନ୍ତା ।"

ରାଜେନ୍ଦ୍ର ବାବୁ ହସିପକେଇଲେ । କହିଲେ, "ଶଳା ଅଲାଜୁକର କଥା ଶୁଣ ! ବୁଝିଲୁ ଶକ୍ତି, ତୁ ବାୟା ହେବୁ, ନଇଲେ ତୋ ଦିନକାଳ ବୋଧେ ପୂରି ଆସିଲା – ଏମିତି ଦଇବଛଡା କଥା କହୁଚୁ!"

"ଆରେ ରାଜୁବାବୁ, ଆପଣ ଜଣେ ଆର୍ଟିଷ୍ଟ ହୋଇ ଜଣେ ବନ୍ଧୁ ଦାର୍ଶନିକଙ୍କୁ ଅପମାନ ଦେଉଛନ୍ତି ?"

ସ୍ୱରରେ ତାଚ୍ଛଲ୍ୟ ଲକ୍ଷ୍ୟକରି ରାଜେନ୍ଦ୍ର ବାବୁ ଖେଙ୍କି ଉଠିଲେ, "ତମେ ତମ କଥା ସମ୍ଭାଳ ହେ, ଆମ ପାଇଁ ଏତେ ମୁଣ୍ଡ ବଥା କାହିଁକି ?"

"ହଉ ନ ହେଲା ନାଇଁ" – ହସିହସି ଶତ୍ରୁପକ୍ଷ ଚାହାଁଚାହିଁ ହେଲେ ।

ରାତି ବାରଟାରେ ବୋଝପରି ମୁହଁକରି ଶକ୍ତିଧର ବାବୁ ଖେଳରୁ ଉଠିଲେ । ଚଉକା ଛାଡି ପିଣ୍ଡାକୁ ଉଠି ଆସିଲାରୁ ଚାରିଜଣଯାକ ପୁଣି ସେଇ ପୁରୁଣାବନ୍ଧୁ । ହସଖୁସି । ସବୁ ସତ୍ତ୍ୱେ ଚିଡିଆ ସମେତ ବାବନ ପତାକୁ ସଯତ୍ନେ ଉପର ପକେଟରେ ରଖି ଶକ୍ତିଧର ବାବୁ ବୋତାମ ଲଗେଇନେଲେ । ଝିପିଝିପି ବର୍ଷାରେ ଓହ୍ଲେଇଗଲେ ତିନିବନ୍ଧୁ । ପୁଣି କାଲି ମୈଦାନରେ ଦେଖାଦେଖି ହେବାପାଇଁ ସଂକଳ୍ପ ପ୍ରକାଶ କରିବାର ପ୍ରୟୋଜନ ନଥିଲା ।

ଏହିପରି, ଏହିପରି ଶକ୍ତିଧରବାବୁ ଆଜିକୁ ସତେଇଶ ବର୍ଷ ହେଲା ଘରେ, ବାହାରେ, ଦପ୍ତରରେ କେବଳ ତାସ୍‌ହିଁ ଖେଳିଗଲେ । ଘରେ ତାଙ୍କ ପିଲା ଓ ସ୍ତ୍ରୀଙ୍କ ସାଙ୍ଗରେ ଆଉରି ଗୋଟିଏ ପୁରୁଣା ନିଶା ତାଙ୍କୁ ଘାରିଥାଏ । ସେଇଟା ହେଲା ତାଙ୍କର ଭବିଷ୍ୟତ ଘରର ନକ୍‌ସାର ନମୁନା । ଖଣ୍ଡିଏ ଷାଠିଏ ଫୁଟରେ ନବେ ଫୁଟ୍ ସରକାରୀ ଡିହଜମିକୁ ନେଇ ଗତ କୋଡିଏ ବର୍ଷ ହେବ ଅସଂଖ୍ୟ ପ୍ରକାର ଯୋଜନା ।

ଥରେ ଥରେ ଘର ଚାରିପଟେ ନଡିଆ, ପଣସ, ଝାଉଁଗଛ ଧାଡି ଧାଡି ଲାଗିଯାଏ । ସ୍କେଲ୍‌ରେ ମାପି ଚାରା କେତେ ଲାଗିବ, ତା'ର ଗୋଟାଏ ହିସାବ କରାଯାଏ । ଦିନ ଦି'ପହରେ ବିଶୋଇ ପରିବାର ନଡିଆ କାନ୍ଦି ଓହଳିବାର ଦେଖନ୍ତି । ଦକ୍ଷିଣା ପବନରେ ଝାଉଁଗଛ ନକହିବାର ଦେଖନ୍ତି । ଚେର ଉପରେ ଶୋଇ ରହିଥିବା କଣ୍ଟକଜର୍ଜର କୁଣ୍ଢେ ମୋଟ ପଣସକୁ ଶକ୍ତିଧର ବାବୁ ଫିଟେଇବାକୁ ଅଭିନୟ କଲେ ସମସ୍ତଙ୍କୁ ମହମହ ବାସିଯାଏ । ତାଜା ବାଡି ପଣସ ଖୋସା ହାତରେ ଧରି ପିଲାଏ ପାଟି ପାଣି ପାଣି କରି ତାଙ୍କୁ ଚାହିଁ ରହିଥାନ୍ତି, ଆଉ ଦିନେ ଦିନେ ଦାଣଘରୁ ଶୋଇବା ଘରଯାଏ କବାଟ ଏବଂ ଝରକାରେ ପର୍ଦ୍ଦାଲାଗେ । ରଙ୍ଗ ଆଉ ଡିଜାଇନ୍ ପାଇଁ ବାଦାନୁବାଦ ହୁଏ । ବଡଝିଅ କହେ – ବବିଜାତୀୟ ବଡ ବଡ ରସଗୋଲିଆ କନା । ପୁଅ ନବୁଝି କହେ "ମେରୁନ୍" । ସ୍ତ୍ରୀ କହନ୍ତି ସାହୁଘର ପରି ଢେଉଢେଉକା । ଶକ୍ତଧର ସମସ୍ତଙ୍କଠାରୁ ଶୁଣିସାରିଲା ପରେ ଅଳ୍ପ ମୁଚୁକି ମାରି

କହନ୍ତି – "ଦେଖିବା !"

ଘର ଯୋଜନାରେ କେଉଁଠି ସୋଫା, କେଉଁଠି ବେତଚୌକି । ଡାଇନିଂ ଟେବୁଲର ଡିଜାଇନ୍, ରେଫ୍ରିଜରେଟରର ଜାଗା, ବେଡରୁମ୍‌ର ସଜ ଥରକୁ ଥର ବଦଳୁଥାଏ । ସମସ୍ତେ ଚାହାନ୍ତି ସ୍ୱତନ୍ତ୍ର ରୁଚି, ସ୍ୱତନ୍ତ୍ର ଜାଗା, ସ୍ୱତନ୍ତ୍ର ସୁଖସାଚ୍ଛନ୍ଦ୍ୟ । ଯେ ଯେମିତି ପାରିଲା ଘରର ନକ୍‌ସା ବଦଳାଇ ପକାଏ । ଏପରିକି ସାନଝିଅ ତା' ଖଟପାଖକୁ ଗୋଟିଏ କାନ୍ଥ ଟେକି କୁକୁର ଘର ତିଆରିକରି ପକାଏ । ସେଥିରେ 'ବୁଲା ପପି' ରହିବ । କେହି କିନ୍ତୁ ବାପାଙ୍କ ଖାସ୍ ବଖରାକୁ ଛୁଇଁଦିଅନ୍ତି ନାହିଁ । ସେଇଟା ବୈଠକ ନୁହେଁ, ପଢାଘର ନୁହେଁ, ଶୋଇବା ଘର ବି ନୁହେଁ – ସେଇଟା ଗୋଟାଏ ପ୍ରଶସ୍ତ ବଖରା । ସେଇଠି କ'ଣ ରହିବ କେବଳ ବାପା ଜାଣନ୍ତି ।

ଦିନେ କିନ୍ତୁ କହୁ କହୁ କହିଦେଲେ – ସେ ବଖରାର ଚାରିଟା କାନ୍ଥରେ ଚାରିଟା ଛ'ଫୁଟ ଆକାରର କଳାପାନ, ନାଲିପାନ, ଠିକିର ଆଉ ଚିଡିଆର ଟିକାମାନଙ୍କର ଚିତ୍ର କାଚ ବନ୍ଧେଇ ହୋଇ ଝୁଲିବ । ମୋଟା ଗାଲିଚା ଏବଂ ଗୋଲ ତକିଆରେ ସେ ଘର ଗୁମ୍‌ସୁମ୍ ହୋଇ ରହିଥିବ । ସେଠିକି ଡାକିଲେ ଶୁଭୁ ନ ଥିବ । ବୋତାମ୍ ଟିପିଲେ କିନ୍ତୁ ଖାନ୍‌ସାମା ପହଞ୍ଚେଇ ଦେଉଥିବ ଚା', ପାନ ଏବଂ ସରବତ୍ । ବେଳ ପଡିଲେ ଯଦି ରାତି ପାହିଯାଏ, ତେବେ କେହି ସେଇଠି ଯାଇ କବାଟରେ ଖଟ୍ ଖଟ୍ କରିପାରିବେ ନାହିଁ ।

ସେଇଠି କ'ଣ ହେବ ବୋଲି ସାନପୁଅ ପଚାରିଦେଲା । ଶକ୍ତିଧର ଉତ୍ତେଜିତ ଏବଂ ବିଭୋର ହୋଇ କହିଲେ, "ସେଇଠି ପୃଥିବୀର ସର୍ବଶ୍ରେଷ୍ଠ ତାସ୍ ଖେଳ ହେବ । ସେଇଟା ହେବ ପୃଥିବୀର ସର୍ବଶ୍ରେଷ୍ଠ ତାସ୍ ଘର !...ସେ ଆଉ ସେତେବେଳେ ଏମିତି ଗାଲିଖିଆ ଖେଳାଳି ହେଇ ନଥିବେ – ବିଚକ୍ଷଣ, ଅପରାଜେୟ ନେପୋଲିଅନ୍! ସେ ନାଗେଶ୍ୱର ବଜେଇ ତାସ୍ ମୁଠାରୁ ସବୁ ନାଗବଂଶମାନଙ୍କୁ ଗଡେଇ ଆଣି ପାରୁଥିବେ ତାଙ୍କ ହାତମୁଠାକୁ । ଯେତେଥର ସେ ମୟୂରପୁଚ୍ଛପରି ତାସ୍ ଫିଟେଇ ଦେଉଥିବେ, ସେଥିରେ ଟୋପିଟୋପିକିଆ ମାଖରା ତାସ୍ ଖଣ୍ଡେ ବି ନଥିବ । ହାତଭରି ରହିଥିବ ଖାଲି ରଜା, ରାଣୀ ଏବଂ ଟିକାରେ । ଖଣ୍ଡେ ଅଧେ ଗୋଲାମ ଥାଇପାରେ... ନ ହେଲେ ନଚଳେ ବୋଲି । ...ପିଲାଏ ଅଧେ ବୁଝନ୍ତି, ଅଧେ ବୁଝନ୍ତି ନାହିଁ । ଆସ୍ତେ ଆସ୍ତେ ହାତମୁଠାରୁ ରଙ୍ଗ ମଉଳି ଆସେ । ଝାଉଁ, ନଡିଆ, ପଣସ ସବୁ ଅପସରି ଯାଆନ୍ତି । ତାସଘର ଧୂଆଁହୋଇ ଫୁସ୍‌କିନା ଉଡିଯାଏ । ସମସ୍ତେ ଆବିଷ୍କାର କରନ୍ତି କାଗଜ ଉପରେ କୋଠି କୋଠି ଗାର ଟଣାହୋଇଥିବା କୌଣସି ଗୋଟିଏ ପୁରୁଣା ନକ୍‌ସା । ସରକାରୀ ଘରୁ ସରକାରୀ ଘରକୁ ଉଡି ବୁଲୁଥିବା ଚିରପ୍ରବାସୀ ବେଦୁଇନ୍ ପରିବାରଟି କିନ୍ତୁ ଏଭଳି ଏକ ସ୍ୱପ୍ନବିଳାସ ପରେ ଖୁବ୍ ଆତ୍ମବିଶ୍ୱାସରେ ପରସ୍ପରକୁ ଏବଂ ସଂସାରକୁ କିଛି ସମୟ ଚାହିଁରହିଥାଏ ।"

X　　X　　X　　X

ଦିନେ ରାଜେନ୍ଦ୍ର ବାବୁଙ୍କୁ ଜିପ୍ ଭିତରୁ କିଏ ଡାକିଲା, "କ'ଣ ରାଜୁବାବୁ! ଆଉ ସବୁ ଖବର କ'ଣ ?"

ବାଲୁ ଚାହିଁଲାବେଳକୁ ଚୈତନ୍ୟ ବାବୁ ! "ଭାଇ ଆମ କାମ ତ' ସେଇଆ । ମୋତେ ମାସେ ସାତଦିନ ହେଲା ଟୁର୍ ପଡିଯାଇଥିଲା, ଏଇ ଫେରୁଛି । ଆଉ କେମିତି ଖେଳ ଚାଲିଛି ?"

ରାଜେନ୍ଦ୍ର ବାବୁ କିଛି ନ କହି ସାମାନ୍ୟ ଗମ୍ଭୀର ହୋଇ ଠିଆହେଲେ । ଚୈତନ୍ୟବାବୁ ଓହ୍ଲେଇ ଆସିଲେ ଜିପ୍‌ରୁ । ପଚାରିଲେ, "କ'ଣ କଥା ?"

"ନାଇଁ କିଛି ନାଇଁ ଯେ, ଖେଳ ଏଇ ମାସେ ହେଲା ପ୍ରାୟ ହେଉନି ।"

"କାଇଁ ଶକ୍ତିଧର ବାବୁଙ୍କୁ ଆପଣ ବେଶି ଚିଡାଚିଡି କରିଦେଲେ ଜଣାପଡୁଛି ।"

"କେଜାଣି ! ସେ କିନ୍ତୁ ସେଇଦିନୁ ଖଟରେ ପଡିଛି । ହଠାତ୍ ପେଟଭିତରେ କ'ଣ ଗୋଟାଏ ହେମରେଜ୍ ହେଇ ରକ୍ତ ଝାଡୀ ହେଉଚି । ଖୁବ୍ ଦୁର୍ବଳ ହେଇଗଲାଣି । ଟିକେ ବାଟକୁ ଆସିଲେ ବଡ ଡାକ୍ତରଖାନା ନେବାକୁ ବସିଛୁ । ମୁଁ ଏ ଦୁଇଦିନ ହେଲା ଜଞ୍ଜାଳ ଭିତରେ ତାକୁ ଦେଖିଯାଇ ପାରିନି ।"

"ଆରେ, ଆପଣ ବି କ'ଣ ଏମିତି କହୁଛନ୍ତି ମ ! କିଓ, ବାଟକୁ ଆଉ ଆସିବ କ'ଣ ? ମାସେ ପରା ହେଇଗଲା ! ଚାଲନ୍ତୁ ଆଜି ତାଙ୍କୁ ଏଇଠୁ ନେବାକୁ ହେବ ।" ଗାଡିରେ ଚଢିଲାବେଳକୁ କହିଲେ, "ମୁଁ ହେଇ ଦୁଇ ଘଣ୍ଟା ଭିତରେ ବାହାରିବି...ଆପଣ ପ୍ରସ୍ତୁତ ହେଇଥାନ୍ତୁ...ସୁଦର୍ଶନବାବୁଙ୍କୁ ମଧ କହିଦିଅନ୍ତୁ ।"

ଛୋଟ କୋଠରୀଟିରେ ବେତବୁଣେଇ ଉଲୁରିଯାଉଥିବା ଦୁଇଖଣ୍ଡ ଲୁହା ତା'ର ଚୌକି । ଖଣ୍ଡିଏ ପଟାଖଟ ଉପରେ ମଇଳା ବିଛଣା । ଖଟତଳେ କାନ୍ଧିଏ ପଇଡ । ଘନୀଭୂତ ଛାଇଭଳି ଦୁଆର ମୁହଁକୁ ଲାଗି ପାଞ୍ଚ ଛ'ଟି ଲୋକ । ଜିପ୍‌ରୁ ଓହ୍ଲେଇ ତିନିବନ୍ଧୁ ସେଇଠି ଥ'ହୋଇ ଠିଆହୋଇଗଲେ ।

ଶକ୍ତିଧର ଦୁହିଁ ହେଉଛନ୍ତି ପାଗୁପର୍ଯ୍ୟନ୍ତ । ତାଙ୍କ ପିଠି ସାଉଁଳି ଦେଉଛନ୍ତି ତାଙ୍କ ସ୍ତ୍ରୀ । ଆସ୍ତେ ମିଁ ମିଁଇଁଆ ସ୍ୱରରେ ଶୁଭୁଛି – "ଡାକ୍‌ବେ ଡାକ୍, ତୋର ବଳନାହିଁ ?"

ତାଙ୍କ ଆଖି ତରାଟି ରହିଛି । ପଞ୍ଜରା ଥରେଇ ନିଃଶ୍ୱାସ ଚାଲୁଚି ଉଜାଣି ଟେକିଲା ପରି ।

ରାଜେନ୍ଦ୍ରବାବୁ ପାଖ ଲୋକଟିର ମୁହଁକୁ ଚାହିଁଲେ । ବୁଝିଲାପରି ସେ ଆସ୍ତେ ଆସ୍ତେ କହିଲେ, "ଏଇଭଳି ଆଜିକୁ ଦୁଇଦିନ ହେଲା ଏମିତି ବେହୋସ୍ ଅବସ୍ଥାରେ ସେ ଖାଲି ତାସ୍ ଖେଳୁଛନ୍ତି । ଆମେ କେତେ ଚେଷ୍ଟାକଲୁ ଏ ସମୟରେ ଟିକେ ଠାକୁରଙ୍କ ନାମ ସେ ଡାକନ୍ତୁ – ହେଲାନାହିଁ ।"

"ସେ ତ' କେବେହେଲେ ଦେବତା ମନ୍ଦିର ମାଡିନଥିଲେ ।"

ରାଜେନ୍ଦ୍ର ବାବୁ ଏବଂ ତାଙ୍କ ପଛେ ପଛେ ବାକୀ ଦୁଇଜଣ ସମସ୍ତଙ୍କୁ ଆଡେଇ ଭିତରକୁ ପଶିଗଲେ । ତାଙ୍କ ହାତ ଧରିପକେଇ ରାଜୁ ବାବୁ କହିଲେ, "ବେ ଶକ୍ତି, ମତେ ଚାହାଁ – ମୁଁ ରାଜୁ କହୁଛି, ତୋର ପାର୍ଟନର । କାହା ସାଙ୍ଗେ ଏମିତି ଖେଳୁଚୁ ବେ ବେକୁବ୍ ?"

ଶକ୍ତିଧର ସେମିତି ଆଗକୁ କଟମଟ କରି ଚାହିଁଥାନ୍ତି । ଶୁକୁଟା ମୁହଁରେ ଅଳ୍ପ ବିଦ୍ରୂପର ହସ । ରାଜୁବାବୁ ଆଗକୁ ଚାହିଁଲେ । କାନୁରେ ଗୋଟାଏ ଚିତ୍ର । ଗିହାତି କାଗଜର । ତିନିଫର୍ଦ୍ଦ ଥଠା

ଲଗାଇ ତା' ଉପରେ ଗୋଟାଏ କଳା ଥୁଣ୍ଟାଳିଆ ଗଛ କିଏ ବୋଧେ ଆଙ୍କିଛି । ଆରପାଖେ ଚାହିଁଲେ ଗୋଟାଏ ନାଲି ଠିକିରି କଟା ହୋଇଛି ସେହିପରି । ସେ ହଠାତ୍ ବୁଝିଗଲେ । କଳାପାନଟିକାଟାକୁ ଶକ୍ତିଧର ସବୁବେଳେ ଚାହିଁରହିବାକୁ ଭଲପାଉଥିଲା । ଏଇଟା ତା'ହେଲେ ଗଛର ଚିତ୍ର ନୁହଁ – ଗୋଟାଏ ବିରାଟ କଳାପାନ ଟିକା ! ଟିକା ନୁହେଁ – ଏଇ ତ' ତା'ର ଜଗନ୍ନାଥ ।

ଶକ୍ତିଧରବାବୁଙ୍କ କପାଳରେ ଝାଳ ଜମିଆସିଲା । ସେ ପବନ ଶୋଷି ହେଲେ । ସମସ୍ତେ ଛାନିଆ ହେଇ ରଡିଛାଡିଲେ । ଛେଚି ବାଡେଇ ହେଲେ । ରାଜେନ୍ଦ୍ରବାବୁ କିନ୍ତୁ ତାଙ୍କ ହାତଟିକୁ ଚିପି ଧରିଥାନ୍ତି । ଜିତାପଟବେଳେ ଶକ୍ତି ସେମିତି ହସେ ବୋଲି ସେ ଜାଣିଛନ୍ତି । ତା'ପରେ ଭଙ୍ଗାସ୍ୱରରେ ଗୋଟାଏ ବିକଟାଳ ରଡି ଶୁଭିଲା । ଅନ୍ୟମାନେ ଜାଣିଲେ ଯେ ସବୁ ସରିଗଲା । କେବଳ ରାଜେନ୍ଦ୍ର ବାବୁ ବୁଝିଲେ ଯେ ଶକ୍ତି ଡାକିଲା – ଫାଇଭ୍ ନୋ ଟ୍ରମ୍ପ ।

ଆଖିରୁ ବାମ୍ଫ ଗଡିଆସିବାବେଳେ ରାଜେନ୍ଦ୍ରବାବୁ ନଇଁପଡି ଶକ୍ତିଧରଙ୍କର ସ୍ଥିର ଦରହସିଲା ମୁହଁକୁ ଚାହିଁ ବିଡ୍ ବିଡ୍ ହେବାର ଶୁଣାଗଲା, "ଏତେ ଖେଳ ତୋ ମୁଠାରେ କାହୁଁ ପାଇଲୁରେ ଭାଇ ? କିଏ ତୋ ପାର୍ଟନର୍ ଏଥର ?"



## ପାରସ୍ପରିକ

ହାଡିବନ୍ଧୁ ଜେନା ରାତି ଅଧରେ ମଶାଣିରେ ଏକୁଟିଆ ବୁଲିଆସିପାରେ। ଦୁର୍ଦ୍ଧାନ୍ତ ଡକେଇତମାନଙ୍କୁ ହାତାହାତି ମୁକାବିଲା କରିପାରେ। ଜେଲ୍ ଭିତରେ ନିରୋଳା ଫାଶୀକାଠ ପାଖରେ ବିଡି ଟାଣି ନିଧଡକ ରାତି ବିତେଇ ଦେଇପାରେ। ତା'ର ଠିଆ ନିଶର ତୁଳନା ନାହିଁ, ତା' ଷଣ୍ଢ ରଡିର ବି ତୁଳନା ନାହିଁ।

ସେଦିନ କିନ୍ତୁ ଆମରି ବାଡ ଅନ୍ଧାର ଭିତରେ ସେ ହାଉଳି ଖାଇଗଲା ଭୟରେ। ଶିମପତ୍ରିଆ ଖୋର୍ଦ୍ଧା ଲୁଙ୍ଗି, ଆଉ ଖଣ୍ଡେ ହାତବାଲା ଗେଞ୍ଜି ପିନ୍ଧି ସେ କମଳା ପାନବାଲୀ ପାଖକୁ ଯାଉଥିଲା ରସିକପଣରେ। ଛପି ଛପି ଯାଇଥଲା ବାଡିପଟେ। ବିଜୁଳୀ ତାରରେ ହାତ ବାଜିଗଲା ପରି ସେ କବାଟ ଛୁଇଁବା ମାତ୍ରେ ଛିଞ୍ଚାଡି ହୋଇ ଠିଆହେଲା।

"ବେ ହାଡିଆ! ଶଳା ତୋ ଝୁଅ ବଅସ କେତେ ?" କିଏ ଗୋଟାଏ ସେ କାନ୍ଥ ସନ୍ଧି ଭିତରୁ କଡ୍ କଡ୍ ହୋଇ ରଡିଛାଡିଲା। "ଶଳା ଲାଜମାଡୁନାହିଁ, ଚୋରଭଳି ଏଠାକୁ ଗଡିଆସୁଛୁ ? ସେଣେ ଝିଅ ମାଇପକୁ କାହାକୁ ସମର୍ପି ଆସିଛୁ ବେ ଶଳା ?"

ଚିହ୍ନା ସ୍ୱର। ବୋଧହୁଏ ଘନା...ଜୁଆଡି ମଦୁଆ ଚୋର ଡକେଇତଙ୍କ ସାଙ୍ଗ। ଘନା ହାତକଡି ପିନ୍ଧି ଲୁହା କବାଟ ବାଟେ ମୁଣ୍ଡ ନୁଆଁଇ ପଶିଗଲେ, ଜେଲ୍ ଭିତରେ ଇଆଡେ ସିଆଡେ ଚାହିଁ ହାଡିଆକୁ ଖୋଜିପକାଏ। ଯେତେହେଲେ କାଦୁଅ ଚକଟ, ଖଜୁରୀ ଖିଆ, ଆମ୍ବ ଚଟଣିଆ ପିଲାଦିନ ସାଙ୍ଗ... ହଉ ଏବେ ହାଡିଆ ଜେଲ୍ ଓ୍ୱାର୍ଡର! ତା' ମାଟିଆ ପଗଡି, ଖାକି ହାପ୍ ପେଣ୍ଟ, ଖାଲି ପାଦ ଉପରେ ପଟିଭିଡା ଗୋଡକୁ ମାର୍ ଗୁଲି। ମୁହଁ ଉପରକୁ ରାହୁଆ ନିଶ ଆଉ କଟାସପରି ଆଖି। କିଏ ପଚାରେ ଶଳାକୁ! ଘନା ତା'ଠୁ ସବୁବେଳେ ଚାରିବର୍ଷ ବଡ। ତା' ନିଶ ଗଜେଇ ଆସିଲାବେଳକୁ ହାଡିବନ୍ଧୁଟି ମାଠିଆପରି ଭାରି ଚିକ୍‌କଣିଆ ଟୋକାଖଣ୍ଡେ। ସେଇ ମୁହଁ ଆଜିକୁ ତିରିଶ ବର୍ଷ ହେଲା ଦେଖିଆସିଛି। ଯେତେ ଡାକୁମି ମଡେଇଲେ ସୁଦ୍ଧା ଘନା ସେ ଟୋକାର ମୁରବୀ। ଶିଖେଇବାକୁ ବଢେଇବାକୁ, ତିଆରି ଦିପଦ କହିବାକୁ ଘନା ଦାୟୀ!...ଚୁପ୍ ବେ! ଘନା ଚୋର ହେଇଗଲାରୁ କ'ଣଟା ଭାସିଗଲା ? ଘନା କ'ଣ ଚୋରୀ କରି କୋଠା ପିଟିଛି, ନା ପଞ୍ଚାଏ ମାଇପ ପୋଷିଛି, ନା ଗାଡି ଚଢୁଛି ? ଖାଇବାକୁ ନ ପାଇଲେ ସେ ଚୋରୀ କରିବ ନାହିଁ ତ' କ'ଣ କରିବ ? କିଏ ଶଳା ଅଛି ତାକୁ ପୋଷିବ ? ସେଇଟା ତା' ନିପାରିପଣ। ସେ କ'ଣ ସମସ୍ତଙ୍କ ଆଗରେ ହାଡିଆକୁ ଡାକି

ନେଇ ତା' ନାକ ନିଶ ବୁଡେଇଛି ନା ତା' ଦୁଆରେ ଦିନବେଳେ କେବେ ଠିଆହୋଇଛି ?...ସେଦିନ ରାତିରେ ସେ ଦାଢିଆ କଲେଜ ଟୋକା ହାଡିଆକୁ ଛୁରୀ ମାରିଦେଇଥାନ୍ତା ପଛରୁ, ଘନା ମାଡିବସି ତା' ହାତରୁ ଛୁରୀ କାଢିନେଲା । ଟିକିଏ ମାଲ୍‌ପାଣି ପକେଇ ସେ ଫେରୁଥାଏ ଦୋକାନ ପିଣ୍ଡାକୁ । ହାତ ଥୟ ରହିଲାନାହିଁ । ପାପୁଲି ଚିରି ହୋଇଗଲା ଶୁଖୁଆ ପରି ଏମୁଣ୍ଡରୁ ସେମୁଣ୍ଡ ଯାଏଁ...ଏ ଶାଲା ଏବ୍‌କା ଚୋର୍‌ଯାକ କଥା କଥାକେ ଛୁରୀ ନିକାଲି ନେଉଛନ୍ତି । ପାଟି ତୁଣ୍ଡ ମାରପିଟ୍ ଖୁନ୍‌ଖରାବ । ଘନାଭଳି ବୁଜ୍‌ରୁଗ୍ ଚୋରମାନେ ଏମାନଙ୍କ ପାଇଁ ଲାଜରେ ସଢିଗଲେଣି । ଚୋରୀ ଏକ କିସମର ଇମାନ୍‌ଦାରୀ ବୃତ୍ତି । କାହାକୁ ବାଧିବ ନାହିଁ, କେହି ଜାଣିବେନାହିଁ । ଟିକିଏ କ'ଣ ଖୁସ୍‌ମୁସ୍ – ଖୁଟ୍‌ଖାଟ, ତା'ପରେ ଖଲାସ । ଭାରି ହାଲ୍‌କା, ସୂକ୍ଷ୍ମ ଚଲାକି, ହାତସଫେଇ, ପାଦସଫେଇର ପୁରୁଣା ବିଦ୍ୟା ସମସ୍ତେ ସାଧି ପାରିବେନାହିଁ । ସାଧନା ନଥାଇ କିଏ କଳାକାର ହେଲାଣି ? ଡକେଇତଯାକ ହେଲେ ଷଣ୍ଢ । ମୁଷ୍ଟୁଣ୍ଡେଇ ପଶିବେ । ଜୋର୍‌ଜବର୍‌ଦସ୍ତ ଲଢିବେ । ମାରିବେ ମରିବେ । ରାଜା ଡାଷ୍ଟାର ବୃତ୍ତି ସେମାନଙ୍କର । ଲଢୁଆଳ, ଖେଳୁଆଡ, ଛୁରୀ ପିସ୍ତଲର ମାଲିକ । ସେମାନଙ୍କୁ ଘନା ଡରେ; କିନ୍ତୁ ଖାତିରି କରେନାହିଁ । ସେମାନେ କ'ଣ କଳାକାର ! ଏ ନୂଆ ଟୋକାଯାକ ଇୟାଡ ନୁହନ୍ତି କି ସିଆଡ ନୁହନ୍ତି । ହାତସଫେଇ ନାହିଁ । ମାଲ୍ ଉତାରି ପାରୁନାହାନ୍ତି । ପାଦରେ ବହପ ନାହିଁ ଉଡିଯାଇ ଉଭାନ ହେଇ ଯିବାକୁ । ଗଧପରି ବାଡିଆ ଖାଉଛନ୍ତି । ବିଧା କିଲୋ ପଇସେ । ଶଳା କି ହୀନସ୍ତା ସତେ, କି ଲୋକହସା ! ଛୁରୀ ଧରି ପବନକୁ କୋରିଲେ କ'ଣ ଡକେଇତ ହେଇଯିବ ବାପ ! ସେ ବି ବାହାଦୁର୍ ନ ହେଲେ ନୁହେଁ । ଡମ ବାହାରେ ବଳ କାହିଁ, ବୁକୁରେ ଦମ୍ଭ କାହିଁ! ସେମାନଙ୍କ ଦାଢି ଚଷ୍ଟେଇ ଘନା ପଠେଇଛି କୁକୁରିଆ କାମ କରିବାକୁ । କେଉଁଠି ଅର୍ଦ୍ଦଳୀ, କେଉଁଠି ଲସ୍କର, କେଉଁଠି କଲମବେଠିଆ । ସେଠି ଖଟ ମିଛର ବେଭାର କଲେ ଗୁଜୁରାଣ ମେଣ୍ଟିବା କଷ୍ଟ ନୁହେଁ । ଯାଅ ଶଳେ, ଆଲୁଅକୁ, ସହରକୁ, ଦପ୍ତରକୁ ! ଏଠି କାହିଁକି ଆମମାନଙ୍କୁ ଚିହ୍ନା ପକଉଛ ? ହୀନସ୍ତା କରୁଚ ? ଆମ ମାନ ଇଜ୍ଜତ ତଳେ ପକଉଚ ?

ହାଡିଆ ଚେଙ୍ଗାହେଇ ଲଢିଯାଇଥାନ୍ତା; କିନ୍ତୁ ତା'ର ସେ ସମୟକୁ କାଇଲ୍ ବେଳ । ଆଉ ତା'ପରେ ଘନିଆ ସାଙ୍ଗରେ ଲଢିବ କିମିତି ? ଘନିଆ ପରା ହେଇ ସେଦିନ ପୁଳାଏ ଲୁଗା ଆଣି ରାତି ଅଧରେ ଗଳେଇଦେଇ ଗଲା – ଅନ୍ଧାର ଭିତରୁ ପାଟି ଚିପି ଚିପି କହିଲା – ବେ ହାଡିଆ, ମୁଁ ବେ ମୁଁ! ଏମିତି ଚମକୁଚୁ କାହିଁକି ? ସେ ହାଣ୍ଡିଖାଇ ଦକ୍ଷିଣୀ ମାଇକିନିଆ ତା' ସାଇବାଣୀ ମୁଣା ଭିତରେ ପାଟ ଲୁଚେଇଛି ବୋଲି ମୁଁ କ'ଣ ଜାଣିଛି ? ଟଙ୍କା ତିନିଶ ଥିଲା – ନେଲି । ଏ ଦିଖଣ୍ଡ ଅରଖ ନୂଆ । ଝୁଅ ପାଇଁ ରଖିଦେଇଥା ।

ତଥାପି ଗରଗର ହେଇ ଦାନ୍ତ କାମୁଡିଲା – "ତୁ ଶଳା ଘନିଆ ଏମିତି ଛାଇଭଳି ଛକିଲେ ଭଲ ଗତିନାହିଁ ଜାଣିଥା । ଯାହା ହେବାର ହେବ, ଶଳାର ବେକ ମୋଡିଦେବି ।"

କଥାରେ ଜୁ' ନାଇଁ, ଘନିଆ ସେଇ ଅନ୍ଧାରରୁ କଡ୍‌କଡେଇଲା, "ଘରକୁ ଯାଉଚୁ ନା ଦେଖିବୁ, ଏଇନେ ଶଳାର ପୁଟା ଉଲ୍ଲାରୀ ଦେବି । ଶଳାର ଗରମ ଖସିଗଲା ନାଇଁ । ଖପ୍‌କିନା

ଡେଇଁ ଆସି ଘନା ହାତ ଉଁଚେଇଲା । ପଳା ଗରକୁ, ନଇଲେ ମାରିବି ଚଟକଣା ଯେ ଗାଲ ଫଟେଇଦେବି ।"

ହାଡିଆ ବୁଲିପଡି ଆସ୍ତେ ମୁଣ୍ଡପୋତି ଅମଡା ପାରି ହୋଇଗଲା । ବିଡ୍ ବିଡ୍ ହୋଇ ଯେତେ ପାରିଲା ଅଭାଷିଆ ବକୁଥାଏ । ଏଣେ ଘନା ଅନ୍ଧାର ଭିତରେ ଠିଆହୋଇ ମୁଚୁ ମୁଚୁ ହସୁଥାଏ । ହାଡିବନ୍ଧୁ ଜେନା, ଜେଲ ଓ୍ୱାର୍ଡର ଦୁଇ ବଡିଖୁଣ୍ଟ ପାଖରେ ମୁଣ୍ଡ ସଳଖି ଗଲିଲା । ଘନିଆ ପଶିଲା ବାଡି କବାଟ ମେଲେଇ ଭିତରେ – "ଦେଖ୍ କମଳୀ ରାଣ୍ଡି ! ଆଉଦିନେ ଯଦି ତୁ ହାଡିଆକୁ ଆଖିକଲୁ, ଆଉ ସେ କୁଟୁମ୍ବ ଛାଡି ତୋ ପାଖରେ ଶୋଇଲା, ତୋ ତଣ୍ଟି କଣାକରିଦେବି । ହେଇ ଦେଖିଥା ଏଇ ଛୁରୀ ।" ଲଣ୍ଠନ ଆଲୁଅରେ ହୀରାପରି ଝଟକିଲା ହତିଆର । କମଳୀର ଆଖି ତବ ତବ । ଶୁଖିଲା ଆଖି ଯୋଡିକ ମାଛ ପାଟିପରି ମେଲା । କମରପଟିରେ ଛୁରୀ ଖୋସି ଦେଇ ସେଇ ଭିତରୁ ଉଖାରି ଖଣ୍ଡେ କାଗଜ କାଢିଲା ଘନା । ଦଶଟଙ୍କିଆ ନୋଟ୍‌ଟିଏ । ମୁଦା କରି ଫୋପାଡି ଦେଲା କମଳୀ ଉପରକୁ । ସେଇଟା ତା' ବୁକୁରେ ବାଜି ଖସି ପଡିଲା ଶସ୍ତା ଶେଯ ଉପରେ ।

"ନେ ତୋ ବେପାର ବାବଦକୁ ମାଗଣା ।"

ଖପ୍ କିନି ଠିଆହୋଇଗଲା କମଳୀ ପାନ-ବାଲୀ...ନାଗୁଣୀ ପରି ଫଁ ଫଁ । ନୋଟ୍ ଖଣ୍ଡକ ମୁଠାକରି ଛାଟିଦେଲା ଘନା ମୁହଁକୁ – "କାହାକୁ ପଇସା ଦେଖଉଚୁ ବା ରଇଜଳା ? ମୁଁ କାହା ପାଖରୁ ପାହୁଲାଟାଏ ମାଗଣା ଖାଏନାଇଁ । ପଇସା ମାହାଳିଆ ପଡିଚି ଯେବେ ଯାଉନୁ ଗାତପଶା ମହାଦେବ ମନ୍ଦିରକୁ, ସେଇଠି ଫିଙ୍ଗିବୁ ! ମାଇଗୁଲିଆ, ଅଣପୁରୁଷିଆ, ଢମକହା, ଠାପୁଆ – ଏଇଠି ନାଗର ସାଜୁଚୁ କାହିଁକି ?"

ଘନା ଆଖି କୁଞ୍ଚ କୁଞ୍ଚ । ଦାନ୍ତକୁ ଦାନ୍ତ ଭିଡି ସେ କମଳୀକୁ ଶୂନ୍ୟକୁ ଟେକି ଉପରକୁ ଫୋପାଡି ଦେଲା । କବାଟକୁ ଭିତରୁ କିଲିଣି ଲଗେଇ ଗାଉଁ ଗାଉଁ କରି କହିଲା, "କଞ୍ଚାଖାଇ, ସେ କଥା କହୁନୁ, ମୁଁ କି ଜାଣିଛି ତୋ ବେପାର ଏତିକି ସଚା !"

କିଛି ଦିନ ଉତ୍ତାରୁ ଘନା ଅଣ୍ଟାରେ ଦଉଡି, ହାତରେ ବେଡି ପିନ୍ଧି ଜେଲ୍ ଦୁଆରେ ଆସି ପହଞ୍ଚିଲା । ହାଡିଆକୁ, ଦୂରରେ ଜେଲର୍ ସାହେବଙ୍କୁ ସଲାମ୍ ମାରୁଥିବାବେଳେ ଠଉରେଇନେଲା । ହାଡିଆର ଦେହ ଭଲଅଛି । ସେ ଆସି ନୂଆ କଇଦୀ ମେଞ୍ଚାଟିକୁ ତା' ଢଙ୍ଗରେ ଗହିଁ ଠକ୍‌କିନା ରହିଗଲା । ସେଇଟା କ'ଣ ଘନା ? ଏମିତି ଶୁଖିଯାଇଛି କାହିଁକି ? ଶଳାର ପଞ୍ଜରା ଦିଶୁଛି । ଶଙ୍ଖି ଶୁଖି ବେକ ଦୁହିଁ ହେଇଯାଇଛି । ଆଖି ଗରିଆଡେ କଳା ଖୋପ । ସେଇଠି ଠୋପା ଠୋପା ଝାଳ । ଦେହ ସାରା ଧୂଳି । ଶଳା ପିଇ ପିଇ ମରିଯିବ । ସଜ ଦେଖି ଜେଲ୍ ଭିତରେ ହାଡିଆ ପଗରିଲା, "ବେ, ଇମିତି ଝଡିଛୁ କାହିଁକି ? ଖାଇବାକୁ ନାଇଁ ନା ଦିନରାତି ପିଉଛୁ ?" ଘନା ଦାନ୍ତ ନିକୁଟେଇ ହସିଲା – ଠୁଁ ଠୁଁ କାଶିଲା । ଭୃରୁକୁଞ୍ଚି ହାଡିଆ ଓଠ ଗଟିଲା । ପଗରିଲା "ଇମିତି କାଶୁଚୁ କାହିଁକି ? ତୋ ଦିହ ଭଲ ନାଇଁ ?"

ଘନା ଜଙ୍ଘ ଉପରେ ହାତ ପିଠିଆ ଗପୁଡାଟାଏ ମାରି କହିଲା, "ଏ ଶଳା ଅଲକ୍ଷଣା କାଶ

ପାଇଁ ସବୁ ଭଣ୍ଡୁରୁ ହେଇଗଲା । ସିମେଣ୍ଟ କାରଖାନାରେ କାମ କରୁଥିଲି । ଶଳେ ସମସ୍ତେ ଆଦରିଯାଇଥିଲେ । ଏଇ କେତେଦିନ ମତେ ସଞ୍ଜ ହେଲେ ମାତିପଡିଲା ପରି ଲାଗୁଚି । ଗୋଡ ହୁଗୁଳି ଯାଉଚି । ଆଉ ବୋଧେ ରାତିରେ ବେପାର ଚାଲିବ ନାଇଁ । ସବୁ ମାଲ ଖଲାସ କରିଥିଲି । ଗୋଟାଏ ଦଳ ବାହାରେ ଥାନ୍ତି । ଏ ଶଳା କାଶ ଯେତେ ଚିପିଲେ ସୁଦ୍ଧା ଠୁସ୍ ଠୁସ୍ ହେଇ ଖସି ଆସିଲା ।"

ହାତିଆ କିଛି ନକହି ଆଡେଇହେଇଗଲା । ସଞ୍ଜବେଳକୁ ସଞ୍ଜବେଳ ଘନା ଘାଲେଇ ଶୋଇଯାଏ । ହାତିଆ ତା' ଝାଲୁଆ କପାଳରେ ଗୁମୁରେଇଲା ପରି ଉଷ୍ମାଟାଏ ବାରି ଚାଲିଯାଏ । ଘନା ଥାଳିର ଭାତ ଅଧେ ଫୋପଡାହୁଏ । ନଖାଇ ନଖାଇ ସେ ଦୁର୍ବଳ ହେଇ ଆସୁଥାଏ । ହାତିଆ ଦିନେ ଆସି ତା' ହାତରେ ଆଚାର ପୁଳେ ମାଡିଦେଇ ଚାଲିଗଲା । ଘନା ପଛରୁ ଚାହିଁ ରହିଲା ହାତିଆକୁ । ଦିନେ ଜେଲର୍ ସାହେବ ଆଉ ବଡ ଡାକ୍ତରଙ୍କୁ ନେଇ ହାତିଆ ଆସି ପହଞ୍ଚିଲା । ଡାକ୍ତର ସବୁ ଦେଖାଦେଖି କରି କ'ଣ ସବୁ କହିଲେ । ଘନାକୁ ସେଦିନ ଏକଘରିଆ କରିଦିଆଗଲା – ସମସ୍ତଙ୍କଠୁ ଅଲଗା । ଘନା କିଛି ବୁଝିପାରୁ ନଥାଏ । ସେ ଦିନ କିନ୍ତୁ ଘନାର ଫଇସଲା ବି ହେଇଗଲା । ଆଗରୁ ଯାହା ଯାହା ଶୁଣାଣି ହୋଇଥିଲା, ସେଥିରେ ସେ ନିର୍ଦ୍ଦୋଷ ଖଲାସ୍ ହେଇଗଲା । ଜେଲର୍ ସାହେବ ହୁକୁମ୍ କଲେ, "ତେଇଶ ନମ୍ବର କଏଦି ଘନଶ୍ୟାମ ମୁଦୁଲୀ, ପିତା ପଠାଣି ମୁଦୁଲୀକୁ ଖଲାସ କରିଦିଅ । ସେ ଆସି ଏଇଠି କାଗଜ ପତ୍ରରେ ଟିପଚିହ୍ନମାରି ତା'ର ଜବତ୍ ଲୁଗାପଟା ଧରି ବାହାରିଯାଉ ।" ହାତିବଂଧୁ ଜେନା ପରଓ୍ୱାନା ଧରି ନିଶ୍ଚଳ ଠିଆହୋଇଗଲା ।

"କ'ଣ ହାଁକରି ଠିଆହୋଇଗଲ ଜେନେ ? ସନ୍ ସେଟ୍ ପୂର୍ବରୁ କାମ ସାରିଦିଅ, ଯାଅ !"

"ମୋ ଦେହଟା ଭଲ ନାଇଁ ସାର୍ ।"

"ତମର ତ' ରାତି ଡିଉଟି ନାହିଁ – ତମେ ଏଇ କେସ୍‌ଟା ପରେ ଘରକୁ ଯାଉନା । ଆମ ଘରେ ବୀର ସାହୁ କାମ ଚଳେଇଦେବ ।"

'ସାର୍ !' – ହାତିବନ୍ଧୁ କସିକରି ସାଲ୍ୟୁଟ୍ ମାରି ବୁଲିପଡିଲା । ମାଛି ଅନ୍ଧାର ଭିତରକୁ ଟଳି ଟଳି ଘନା ଆଗେଇଗଲା ବେଳେ ପଛକୁ ନ ଚାହିଁ ପଚାରିଲା – "କିରେ ହାତିଆ, ରାଗ କରିଚୁ କି ବେ ଶଳା – ମତେ ଦି ଦିନ ହେଲା କଥା କହୁନାହୁଁ ?"

ବୁଲି ଚାହିଁଲା ବେଳକୁ ପଛରେ ହାତିଆ ନାହିଁ । ଘନା ରାସ୍ତା ଉପର ପୋଲ ଉପରେ ବସି ପନ୍ଦର ଦିନ ତଳର ବିଡିଟେ କାଢି ଟାଣିଲା । ଦିଆସିଲ୍ ମୁଠାଟାକୁ ହଲେଇ ଫିଙ୍ଗିଦେଲା । କାଶୁଥାଏ ମଝିରେ ମଝିରେ । ଭାରି ହାଲିଆ ଲାଗୁଥାଏ ତାକୁ । ଥୋଲାଏ କଫ ଛିଟିଲ କି କ'ଣ – ପାଟିକି ଲାଗିଲା ଲୁଣିଆ । ଝାଳଟାଏ ମୁଣ୍ଡରୁ ବୋହିଗଲା, ଫାଁ ଫାଁ ଲାଗିଲା । ଘନା ଆଉ କଳେ ଧୂଆଁ ଛାଡି ମନକୁ ମନ ହସିଲା – ଏ ଶଳା ଉଞ୍ଚ କାନ୍ଥ ଭିତରେ ଯିଏ ରହିବ ଶଳା ଛେଳି ହୋଇଯିବ । ତା' ଦେହରୁ ବଳ ନିଗିଡି ଯିବ ବସି ବସି । ଆଜି ରାତିରେ ଗରମା ଗରମ୍ କିଛି ବେପାର କରିନେଲେ ସବୁ ଠିକ୍ ହେଇଯିବ । ଘନା ଉଠିଲା ମନର ଜୋର୍‌ରେ । ଗୋଟାଏ ଚଟକଣା ପକାଇଲା ନିଜ

ଗାଲ ଉପରେ – ଶାଲା, ସୁକୁମାରିଆ ହେଇଗଲୁ କି ? ଚାଲ୍ ଶଳା ବଜାରକୁ, ଟଙ୍କା ପାଞ୍ଚଟା ମିଳିଗଲେ ବି ଆଡ୍‌ଡା ଉପରେ ମଞ୍ଜି ପୋତିଦେଲେ ବେହିପୋ ଫଳିଯିବ ରାତିକେ ହଜାରେ ।

ମନକୁମନ ଫିକ୍‌କିନା ହସିଦେଲା ଘନା । ତା'ର ମନେପଡିଗଲା ସେ ହଗୁରା କୁମୁଟି କଥା । ନୂଆ ହେଇ ଚିଡିଆ ଧରା ପଡିଥାଏ । କୁଷୁନିଆ ଶଳା ପୁରୁଣା ମୂଷା, ତାକୁ ପଟେଇପାଟେଇ ଆଣିଥାଏ ଚଖେଇବାକୁ । ସମସ୍ତିଙ୍କୁ ଆଖିମାରି ଦେବାରୁ ଯେ ଯାହା ଥାନ ଆବୋରି ବସିଗଲେ । ପାଞ୍ଚଟି ଲେଖା ଟଙ୍କାରେ ଅନୁକୂଳ ହେଲା । ତାସ ପୁଡାକୁ ମୁଂଡରେ ଲଗେଇ କୁଷୁନିଆ ସାଉଁଳି ସାଉଁଳି ଫେଣ୍ଟିଲା । ସେ ଶଳା ବାଉନ ନାଡି ଚିପି ଜାଣିଦେଲା ଯେ ଉପରେ ଦାନ ଉଣା ପଡିଗଲା । ସମସ୍ତେ ବ୍ରହ୍ମା, ବିଷ୍ଣୁ, ମହେଶ ଉଠେଇ ନିଃଶ୍ୱାସ ଟାଣିଲେ । କୁମୁଟି ତିନିଟା ଟିକା କାଢି ଥୋଇଲା । ତାଳି ମାଡ ହେଲା । ବାବା, ଭାରି କପାଳିଆ କାହୁଁ ଆସିଲା ! ଝାଳ ସରସର ଥରିଲା ଥରିଲା ହାତରେ କୁମୁଟି ଟଙ୍କା ଯାକ ଗୋଟେଇଲା । କୁଷୁନିଆ ଚାହିଁଥାଏ କଟାସ ଭଳି – ଆଖିରେ ଆଉ ଧାରେ ଦାଢ ତେଜିଦେଲେ ନିଆଁ ଲାଗିଯିବ । କୁମୁଟି ପୁଣି ଜିଣିଲା । ଆହୁରି ଜିଣିଲା । ତା' ଆଖି ରଙ୍ଗ ଟହ ଟହ । ସେ ତଳେ କଚି ହେଉଥାଏ, ପଟା ବାଡେଇ ରଡି ଛାଡୁଥାଏ । ତା'ପରେ ଆଖିରେ ଆଖିରେ ଜାଲ ଗୁନ୍ଥା ହୋଇଗଲା । କୁଷୁନିଆ ପୁଣି ଫେଣ୍ଟିଲା । ସେତେବେଳକୁ ଗଦାଏ ଲେଖାଏଁ ନୋଟ । କୁମୁଟି ତିନୋଟି ଦୁକା ଧରି ମୂର୍ଚ୍ଛା ହୋଇଯାଇଥାନ୍ତା, ସମ୍ଭାଳିଗଲା । ତା' ପିଠି ଥାପୁଡେଇ ନେଲା କୁଷୁନିଆ । ନିଶା ଧରିଥାଏ, କୁମୁଟି ଅଣ୍ଟାରୁ ଖସେଇଲା ଥାକ ଥାକ ନୋଟ । ତା' ଭାଗରେ ତୁଚ୍ଛା ଦରିଦ୍ର ଗୋଟାଳି ଗଣା ତାସ ଗଡି ଲାଗିଥାଏ । ଅଧ ରାତି ସରିକି ସେ ଲଣ୍ଡା ହେଇଗଲା । ଲଙ୍ଗଳା ହୋଇ ଝାଡି ଦେଲା ଲୁଗା । ଶଳାର ରୂପା ଅଣ୍ଟାସୂତାଟାକୁ କୁଷୁନିଆ ଆଉ ଗୋଟେ ଦାଉଁରେ ଝାଁପିନେଲା । ଝିମି ଖାଇଗଲା କୁମୁଟି । ମାଲକୁ ହୁରୁଡେଇବାକୁ ଗୁରୁ ମନାକରିଛି । କୁଷୁନିଆ ହାତରୁ ରିକ୍‌ସା ଖର୍ଚ୍ଚକରି ମୁକୁଟିକୁ କାଦୁଅ ମେଞ୍ଚା କରି ବସେଇଦେଲା । ତା' ଉତ୍ତାରୁ ରାତି ସାରା ଶଳା ପାଣି ତେଣ୍ଡା ଓ ଉହବ ଯେ କାହିଁଲେ କଣ ! ଶଳା ହାଡିଆ ମତେ କଥା କହିଲାନାହିଁ । ଶଳାର ମୁଣ୍ଡଟା ବିକା । ଟଙ୍କା ଗଣ୍ଡେ ପାଇଁ ପିତ୍ତ ଚଢିଛି, ମୁଁ ନଜରକୁ ଆସୁନାହିଁ । ଆବେ, ମତେ କ'ଣ ଟଙ୍କା ଦେଖାଉଚୁ ଶଳା ? ମୁଁ ପରା ବାଁହାତରେ ଲକ୍ଷପତି, ଡାହାଣେ ଫକୀର ! ଶଳା ଶଗଡ ଦଣ୍ଡାରେ ଗଡି ଗଡି, ହଡା ତଡି ତଡି ତୁ ଦରମା ମୁଠେଇ ମରିବୁ । ମୁଁ ଦିନ୍ ନିଆଁରେ ପଶିବି, ନିଆଁରୁ ବାହାରିବି । ତୁ' ତୋ କଲମକୁ ହାତେର ମକଚି ବଞ୍ଚୁଛୁ ।

ଶଳା ହୀନଜୀବନିଆ – ମଲେ ମୁଁ ଲକ୍ଷପତି ନ ହେଇ ମରିଯିବି, ବଞ୍ଚିଲେ ଲକ୍ଷପତି ହେବାକୁ ବଞ୍ଚିବି । ଶଳା ମୁଁ ତତେ ପଚାରୁଚି ? ଘନା ଅନ୍ଧାର ଗଳି ମୁଣ୍ଡରେ ଥାଇ ବଜାର ଛକକୁ ଚାହିଁଲା ମାଲ ଠଉରେଇବାକୁ । ଗୋଟିଏ ନୂଆ ଫିଆଟ୍ ଗାଡିରୁ ହଳେ ଓହ୍ଲେଇଲେ । ଦୋକାନୀକୁ ବଢେଇଲେ ଶହେ ଟଙ୍କା ନୋଟ୍ । ମାଲଦାର ବେଟା – ଇଞ୍ଜିନିଅର ଫିଞ୍ଜିନିଅର ହେବ । ଟିକିଏ ଗହଳିକୁ ମିଶିଗଲେ ତା' ଚର୍ବି କାଢି ନେବ । ...ଘନା ଛାଇରୁ ଛାଇକୁ ଘୁଞ୍ଚି ପାଖେଇଲା । ଆଉ ଖଣ୍ଡେ ଦୂର ଥାଏ । ଘନାର ବୁକୁ ଦାଉଁ ଦାଉଁ ହେଲା । ଦେହ ଥରିଲା । ଗୋଟା ଗୋଟା ଝାଳ ଫିଟିଗଲା । ପୁଣି ଉଠିଲା

କାଶ । ସେ ସେଇଠି ବସିପଡିଲା । ଯେଉଁ ଦଲକାଏ ଲୁଣିଆ କଫ ଛିଞ୍ଚିଲା ତାକୁ ତଳେ ପକାଇ ଘନା ବିଡି ଆଲୁଅରେ ଚାହିଁ ଦେଖିଲା ଚେନାଏ ରକ୍ତ । ସେ ପାଟି ପୋଛି ଆଣିଲା । ରକ୍ତ । ତାକୁ ଝିମିଖାଇଗଲା ପରି ଲାଗିଲା । ଅନ୍ଧାର ଦିଶିଲା । ଏତିକିବେଳେ ସଟକୁସଟ ଥପ୍ କିନା ଆଲୁଅ ବି ଲିଭିଗଲା ଚାରିଆଡୁ । ଉଠିଲା ଗୋଟାଏ ଗୋଳ । ଗୋଟାଏ କିମିତି ଚିତ୍କାର । ଧାଁ ଦଉଡି, ଦୁମ୍ ଦୁମ୍ ପାଦ ଶବ୍ଦ । କିଏ ଗୋଟାଏ ତାକୁ ମାଡିବସିଲା ଉପରୁ । ତା' ହାତକୁ ଧରି ମକ୍ଟି ହେଇଗଲା । ତା' ସାମ୍ନାରେ ଥପ୍ କିନା କଣଟାଏ ପଡିଲା । ଏତିକିବେଳେ ଜଳି ଉଠିଲା ଆଲୁଅ ।

"ଖୁନ୍ ହୋଇଗଲା ! ଛୁରୀ ମାରିଦେଲା ! ଧର ଧର, ଗୋଡାଅ ଗୋଡାଅ, ପଳାଅ ।" – ପାଟି ଶୁଭୁଥାଏ ।

ପୋଲିସବାଲା ଧାଇଁଲେ ଏଆଡେ ସେଆଡେ । ନୂଆଗାଡି ଉପରକୁ କାହାକୁ ଟେକିନେଲେ ଲୋକେ । ଟିରଲାଟାଏ ପାଟି କରି କାନ୍ଦିଉଠିଲା । ଘନା ଶୁଣିଲା ତାକୁ ମାଡିବସିଥିବା ଲୋକଟା ଷଣ୍ଢଭଳି ଗର୍ଜୁଛି – ହେ ପୁଲିସବାବୁ ଧାଇଁଆସ, ଏଇ ଚୋର । ଏ ଶଳା ଛୁରୀ ମାରିଦେଇ ଟଙ୍କା ଧରି ପଳଉଥିଲା ।

ଧାଇଁଆସିଲେ ପୋଲିସ । ଧାଇଁଆସିଲେ ଦେଖଣାହାରୀ । ଘନା ଉପରେ ମାଡପଡିଲା ।

ଅଧେ ମାଡ କିନ୍ତୁ ତା' ଉପରେ ହାମୁଡିଥିବା ଲୋକ ଡେଣା ଦେଖାଇ ଆଡ କରିନେଲା ପରି ଲାଗୁଥାଏ ।

ଘନା ଉଠି ଠିଆହେଲା, ଆଉ ସେ ଲୋକଟାକୁ ହାଁକରି ଚାହିଁ ରହିଲା ।

ହାଡିଆ ବାବୁମାନଙ୍କ ଭଳି ପିନ୍ଧିଛି ଖଣ୍ଡେ ପୂରା ପ୍ୟାଣ୍ଟ, ଖଣ୍ଡେ ଅଧା ବୁସ୍ ସାର୍ଟ ।

"ଅନ୍ଧାରରେ ଶଳା ମୂଷା ଭଳି ଗଳିଯାଇଥିଲା ।"

"ଶଳା, ଚୋର ଶାଲା, ମତେ ବଳେଇ ଯିବୁ ?" ଦୁମ୍‌କିନା ମାଡଟାଏ ମାରିଲା ହାଡିଆ । ସେଇଟା ବସିଲା ତଳେ । ସେ ଘନାକୁ ଥରେ ଝାଙ୍କିଦେଲା । ସମସ୍ତେ ବିଧା ଗୋଇଠା କଷିଦେଇଗଲେ । ହାଡିଆ ପାଟିକଲା, "ଏଇଠି ୟାକୁ ଜୀବନରେ ମାରନାହିଁ । ଶଳା ମଲାପରି ହେଇଚି । ଶଳାଟା ମରିଗଲେ ପୁଣି ଅଡୁଆ ।"

ପୋଲିସ୍ କହିଲେ – "ହଇ ହଇ", ଲୋକ ବି କହିଲେ – 'ହଇ ହଇ' । ଘନାର ସରୁ କଚଟି ଉପରେ ଲୁହାକଡି ପିନ୍ଧେଇ ତାକୁ ଚାଲାଣ କରାଗଲା । ଘନାର ପାଦ ପଡିଗଲା ରକ୍ତ ଟୋପାକ ଉପରେ । ତା' ଦେହ ଶୀତେଇଗଲା । ମୁଣ୍ଡ ଭାଁ ଭାଁ ଡାକିଲା ।

ହାଡିଆକୁ ଆଗେ ଆଗେ ସବୁଠୁ ବେଶି ପାଟି କରି କରି ଯିବାର ତାକୁ ଦିଶୁଥାଏ । ତା' ଭିତର ମନ ମରିଯାଇଥାଏ । ଶେଷକୁ ହାଡିଆ ବିଚ୍‌ବଜାରରେ ଛୁରୀ ମାରିଲା ! ଚୋରୀ କଲା ! ନିଜେ ମାରି ଦୋଷ ଘନା ମୁଣ୍ଡରେ ବୋଳିଦେଲା ! ଆକାଶ ଛିଡିପଡିଲା ! ପାହାଡଗୁଡାକ ଧସିଗଲେ ଖଣ୍ଡ ଖଣ୍ଡ ହୋଇ । ଜେଲ ଭିତରେ ଏକୁଟିଆ ଗୋଟାଏ ଅଲଗା ଘରେ ପଡିଥାଏ ଘନା । ଦୁଇଦିନ ହେଲା ତା' ତୁଣ୍ଡରୁ ଉଁ ଶବ୍ଦ ବାହାରି ନାହିଁ । ତା' ଦେହ ଦୋହଲି ଯାଇଛି । ନିଶ୍ୱାସରେ ଧଇଁ

ପେଲୁଛି । ସେ ହାଲିଆ ହେଇ ଚିତ୍‌ମାତ୍ ପଡି ଛାତକୁ ଚାହିଁ ରହିଛି । ତା' ଚାରିଆଡେ ରାତି ଭଉଁରି କାଟି ଆସିଛି । ମାଛି-ଅନ୍ଧାର ସମୟ । କିଏ ଦୁଇଜଣ କଥା ହୋଇ ପାଖେଇ ଆସୁଛନ୍ତି । କ୍ଷୀଣ ଆଲୁଅଟି ପାଖେଇ ଆସୁଥାଏ ।

"ଏହାର ଭାଗ୍ୟ ଭଲ । ନହେଲେ ରାଜଯକ୍ଷ୍ମା ରୋଗକୁ ଏହାର ବଳ କାହିଁ ସମ୍ଭାଳିବାକୁ । ଏଭଳି ପଥ୍ୟ, ଏଭଳି ଓଷୁଧ; ଲକ୍ଷପତି ହେଲେ ସୁଦ୍ଧା ଓହରିଯିବ ।"

"ଜଣେ ଦୈନିକ ଏମିତି ୟାକୁ ଅଣ୍ଡା, ମାଂସ, କ୍ଷୀର, ଅଙ୍ଗୁର ଦିଆଯିବ ?"

"ତିନି ଓଳି ଖଞ୍ଜା । ଏଇ ପରା ଖୋଦ୍ ମଉଡମଣିଙ୍କ ଜୋଇଁପୁଅ ଏଇନେ ।"

"ଏ ଶଳା ତ' ଏଠିକି ଏମିତି ଆସି ନଥିଲେ ବଞ୍ଚି ନଥାନ୍ତା ।"

"ସେ ନା ତା' ବୋପା ! ବଞ୍ଚିବାର ଅନ୍ୟ କୌଣସି ଉପାୟ ଆଉ ନଥିଲା ।" ଘନା ନିଶ୍ୱାସ ରୁନ୍ଧି ଶୁଣୁଥାଏ । ହେ...ତା'ହେଲେ...

ସେମାନେ ପଶି ଆସିଲେ ।

ଟେବୁଲ ଉପରେ ଥୋଇଦେଲେ ପରଟା, କୁକୁଡା ତରକାରି, ଅଣ୍ଡା ଭଜା, ଆଉ ଟେବୁଲ ଉପରେ ତିନିଟା ଦାମୀ ଦାମୀ ଓଷୁଧ ।

ଘନା ଖଟରେ ବସି ଚାହିଁଲା ୟା ମୁହଁକୁ, ତା' ମୁହଁକୁ ।

"ୟାକୁ କିଏ ପଠେଇଲା ? ୟେ କ'ଣ ମୁଁ ଖାଇପାରିବି ! ନଖାଇଲେ ଫିଙ୍ଗାହେବ ସିନା । ତୋଳାଏ ଊଣା ହେଲେ ସେ ହାଡିବନ୍ଧୁ ଜେନା ଠେଙ୍ଗା ଧରି ଜଗିଛି; ଚେବେଇ ଖାଇଯିବ ।"

କିଏ ? –

"ହାଡିବନ୍ଧୁ ଜେନା ସେଇ ସବୁ ଓଜନ ଅନୁସାରେ ସଜକରି ପରା ଏଠିକି ପଠେଇ ଜଗିଛି ।"

ଘନାର ଆଖି ନଇଁଗଲା । ସେ ଓଠ ଚାଟିଲା । ତା' ଲୁହ ଗୁଡାକ ବି ରକ୍ତ ପରି ଲୁଣିଆ ।



# ଚମ୍ପାଘେର

ମନ ହେଲା ଯେ ଆଉ ଭର୍ତ୍ସନା ସହି ନ ପାରି ସେଦିନ ସକାଳୁ ଏ ଦେଶ ସତକୁ ସତ ଚେଇଁଉଠିଲା । ରାସ୍ତା ସାରା ଶହ ଶହ ସାଲୁବାଲୁ ମଣିଷପିଲା । ପାହାନ୍ତା ଅନ୍ଧାରରେ ଶେଯ ଉଷୁମ ଛାଡି ମା'ବାପ କୋଡରୁ ଉଠିଆସି ଏତେ ସଂଖ୍ୟାରେ ବାଳକ ବାଳିକା ଯଦି ସତକୁ ସତ ତପସ୍ୟା ପାଇଁ ହିମାଳୟ ଯାତ୍ରା କରୁଥାନ୍ତି, ତେବେ ଏ ଦେଶର ଭାଗ୍ୟରବି ଆଜି ସକାଳୁ ଉଦୟ ହୋଇଯିବା କଥା ।

ପରମ ବିସ୍ମୟରେ ଭୋଳାନାଥ ବାବୁ ସେ ଅସଂଖ୍ୟ, ଆଣ୍ଠୁଏ ଉଚ୍ଚ ବଚ୍‌କାନିମାନଙ୍କୁ ଦେଖି ଖୁସିଟାଏ ହେଇଗଲେ । ବାଃ, ଏଇମାନେ ଜାଗିଉଠିଲେ ଆଉ କିଛି ଗୋଳମାଳ ରହିବନାହିଁ । ସଫା ହୋଇଯିବ ଯେତେ ସବୁ ଗଦାଗଦା ଅସନା । ଦେଶସାରା ଆଗ ଝାଡୁ ମାରି ଗୋଜମୁହାଁ, ସିଆଣିଆ, ଗୌରୀଶଙ୍କରଗୁଡିକୁ ଏମାନେ ଗଡେଇଦେବେ ସମୁଦ୍ର ଆଡେ । ସେଇ କୁହାଳିଆ ଶଙ୍କରା ବାରକଥା ଯୋଡି ତାଙ୍କୁ ଡରେଇଦେବାରୁ ସିନା ସେ ଏମିତି ଶୀତ ସକାଳେ ଘୋଡଦଉଡି ଲଗେଇଛନ୍ତି । ଶେଷକୁ ଆଙ୍ଗୁଠି ଟେକି ସେ ତାଗିଦା ଦେଇଛି ଯେ ଯଦି ଦିନଟେ ପାହାନ୍ତିଆରେ ସେ ଶେଯରେ ଉଷୁମ କାଢି ଶୋଇଗଲେ, ତେବେ ତାଙ୍କର ଦଶଟି ଦିନର ଆୟୁଷ ଚିତ୍ରଗୁପ୍ତ ପାଞ୍ଜିରୁ ପୋଛିହୋଇଯିବ । ସେ କିନ୍ତୁ ନିଜେ ଘରୁ ଗୋଡ କାଢି ବାହାରୁନାହିଁ । ସେ ଏମିତି ରୋଗ ବାଛି ବାଛି ନେଇଛି ଯେ ତାକୁ ଶୋଇବା ଶେଯ ପାଖରେ ବାଳଧୂପ ବାଡି ପହୁଡ ଭାଙ୍ଗିବାକୁ ସେବକମାନେ ତୂରୀ ଫୁଙ୍କୁଛନ୍ତି । – ଶଳାକୁ ଶ୍ୱାସ ଟେକୁଚି ବୋଲି ତ ! ତା' ମାୟା କିନ୍ତୁ ଦେବତାଙ୍କୁ ଅଗୋଚର । ଏଣେ 'ଭୋଳି'କୁ ଲଗେଇ ଦେଇଛି କାଦୁଅ ଚକଟାରେ ! ହଉ ।

ଦୁମୁଦୁମୁ ଧପାଳି ଯାଉଥାନ୍ତି ଭୋଳାନାଥବାବୁ କାକର କାକର ଅନ୍ଧାର ଭିତରେ । ସେଇ କେବଳ ଚାଲିଥାନ୍ତି ଦକ୍ଷିଣମୁହାଁ; କିନ୍ତୁ ଦଳବଳ ହୋଇ ପାତିପଲ ଛୁଟିଆସୁଥାନ୍ତି ଆର ଆଡୁ । ଖଣ୍ଡେ ଦୂରରୁ ତାଙ୍କୁ ଦେଖି ସେମାନଙ୍କ ଗୁଲୁରୁ ଗୁଲୁରୁ କଥା, ଖିଲିଖିଲି ହସ ଥମିଯାଉଥାଏ । ତାଙ୍କ ପାଖ ଦେଇ ନିଃଶବ୍ଦ ମେଘଟିଏ ପରି ଗୋଛାଏ ପିଲା ପାରିହୋଇଗଲାବେଳେ ଭୋଳାନାଥ ସେମାନଙ୍କୁ ନିଘା କରନ୍ତି । ସମସ୍ତେ ପ୍ରାୟ ଖାଲି ପାଦରେ ଚିରା ଫ୍ରକ୍ ପିନ୍ଧି, ଅଧାପେଣ୍ଟ, କୋତରା ଜାମା ଓହଳେଇ, ନାକ ସୁଡୁସୁଡୁ କରି ଧାଇଁଲା ପରି ଚାଲିଯାଉଥାନ୍ତି ।

କୁଆଡେ ଚାଲିଛନ୍ତି ଏତେ ଛୁଆ ? – ଜଣେ ହେଲେ ବଡ ମଣିଷ ସେମାନଙ୍କ ସାଙ୍ଗରେ ନାହିଁ କାହିଁକି ? ଭୋଳାନାଥବାବୁ ସବୁ ବଡ ମଣିଷଙ୍କର ଏକମାତ୍ର ପ୍ରତିନିଧି ଭଳି ସଳଖିଗଲେ । ଡେଣା ଫୋପାଡି, ଗୋଡ ଛାଟି ନାକ ଟେକିଦେଲେ । କିଏ ସେ କହିଲା ଯେ, ଏ ଦେଶରେ ସବୁ ବୟସ୍କମଣିଷ ଚେତା ହରେଇ ପଡିଛନ୍ତି ? ଜଣେ ଚେଇଁଥିଲେ ତ' କାହିଁରେ କ'ଣ ! ସେଇ ଏ

ଦେଶର ବିବେକ – ସେଇ ଚେତନା !

ପଛରୁ ଖିଲ୍‌ଖିଲ୍ ହସ ଶୁଭିଲା । ବେହିଆ, ଅପର୍ଛନିଆ ଅଲାଜୁକ, ବାନର – ତୁମେ କାହୁଁ ଚିହ୍ନିବ ତୁମର ପୂର୍ବପୁରୁଷଙ୍କୁ ? ସେଇ ଅନ୍ଧାରରେ ଶୁଭିଲା, "ହେଇବ୍‌ବେ ଏଇଟା 'ଅମର'ର ବାପା । ପେଟା ବୁଢା ସକାଳୁ ସିଆଡେ କୁଆଡେ ଧପାଲିଚି ? ସେଆଡେ କ'ଣ ଫୁଲ ମିଳିବ ?" ପୁଣି ଝଙ୍କାଏ ଖିଲିଖିଲି ହସ ।

ଭୋଳାନାଥଙ୍କ ଆଖି ତରାଟି ହୋଇଗଲା । ବୁଦ୍ଧି ଫିଟିଗଲେ, ସେ ଦେଖିଛନ୍ତି ଯେ ଆଖିର ପାଖୁଡା ଓସାରି ହୋଇଯାଏ । କ'ଣ ସେଥିରେ ରହସ୍ୟ ଥିବ କେଜାଣି ! – ଆଛା, ତା'ହେଲେ ଏମାନେ ମୋତେ ଚିହ୍ନିଛନ୍ତି ? – ବୁଲିପଡି ତାଙ୍କୁ ଗୋଡେଇଯିବାକୁ ତାଙ୍କର ଅଧେ ମନ ଡାକିଲା; କିନ୍ତୁ ତାଳଗଛ ପରି ଗୌରୀଶଙ୍କର ବିଶିଆଙ୍ଗୁଠି ଆକାଶରୁ ଅଧେ ଭେଦି ଠିଆହେବାର ତାଙ୍କୁ ଦିଶିଗଲା । ଶୁଭିଗଲା ସହଧର୍ମିଣୀଙ୍କ ସ୍ୱର, "ହାଁ, ବୁଝି ଖବରଦାର ! ଖରା ହେଉ, ବର୍ଷା ହେଉ, ଦିନଟେ ଯଦି ପଡିଆ ପଡିଲା, ମୁଁ ସେଦିନ ତୁମକୁ ନେଇ ଘେରେ ନୁହେଁ ତିନି ଘେରା ବୁଲେଇ ଆଣିବି । ସାତପୁରୁଷୀ, ଅଳସୁଆ ସାଆନ୍ତଙ୍କ ଘରେ ଗୋଡ ଲମ୍ବେଇ ବସି ବସି ବାଗ ରୋଗ ଡାକିଆଣି ପୂରେଇଚ ! ସକାଳେ ଚାଳିଶ୍ ମିନିଟ୍ ନ ଚାଲିଲେ ଏ ଘରେ ଚା ମିଳିବ ନାହିଁ !"

ଛକ ଆଉ ଅଳ୍ପ ବାଟ ରହିଲା । ସେ ସବୁଦିନ ସେଇଠୁ ଫେରନ୍ତି । ଠିକ୍ ସମୟ ହୋଇଯାଏ । ରବିବାର ଦେଖି କେବେ କେମିତି ବାଁରେ ମୋଡିଯାନ୍ତି । ଗୌରୀଶଙ୍କର କମ୍ବଳ ଘୋଡେଇ ହୋଇ ଚା ଶୋଷୁଥାଏ, ସେଇଠି ମନ୍ଦେ ସୋଡକି ଦେଇ ଦିବ୍ୟ ଆରାମ୍ କରି ଘରକୁ ଫେରନ୍ତି ଦୁଇଘଣ୍ଟା ବିଳମ୍ବରେ । ତାଙ୍କ ପାନଖିଆ ଓଠରୁ ସବୁ ଜଣାପଡିଯାଏ । ପ୍ରସ୍ତେ ଦୁହାଙ୍କି ସାରିଲା ପରେ ସାନ ବସ୍ତା ଆକାରର ଖଣ୍ଡିଏ ମୁଣା ଏବଂ ଚାଖଣ୍ଡେ ଲମ୍ବ ତାଲିକାଟିଏ ଆଣି କର୍ତ୍ତ୍ରୀ ଥୋଇଦିଅନ୍ତି । ଆହୁରି ଧୂପେ ଚା'ପାନ ପରେ ସଂସାର-ସେବାରେ ବାହାରିପଡନ୍ତି ଭୋଳାନାଥ ।

ଆଜି କିନ୍ତୁ ଆଉ ପ୍ରକାରେ ଜଣାପଡୁଚି । ବାଳୁତମାନଙ୍କର ଏ ନବଜାଗରଣ ସେ ଆଦୌ ବୁଝିପାରୁନାହାନ୍ତି । କୁଆଡେ ଚାଲିଛନ୍ତି ଏମାନେ ଏତେ ସଂଖ୍ୟାରେ ? ତା'ପରେ ତାଙ୍କୁ ଦିଶିଲା ଯେ ସମସ୍ତେ ପ୍ରାୟ ଝୋଲାଟିଏ, ଡାଲାଟିଏ, ମୁଣିଟିଏ, କୋଥଳିଟିଏ ଧରିଛନ୍ତି । ଜଣେ ଜଣେ ଧରିଛନ୍ତି ଛୋଟ ଛୋଟ ଆଙ୍କୁଡି । ଫିସ୍ ଫିସ୍ କଥା । ଲସର-ପସର ଚାଲି । ନିଃଶବ୍ଦ ଚୁପ୍‌ଚୁପ୍ ଭଙ୍ଗୀ ! – କଥା କ'ଣ ?

ଭୋଳାନାଥବାବୁଙ୍କୁ ହଠାତ୍ ସତ୍ୟ ଦୃଶ୍ୟ ହୋଇଗଲା । ସେ ଥମିଗଲେ । ଇସ୍, ଏତେ କସି ଚୋର ଏ ଦେଶରେ ? ...ଏଗୁଡାକ ଚାଲିଚନ୍ତି ଯା ବାଡିରୁ ତା' ବାଡିରୁ ଗଳି ପଶି ଆଙ୍କୁଡି ଲଗେଇ ଫୁଲପତ୍ର ଡାଳ ଯାହା ପାଇବେ ମୋଡି ଆଣିବେ । ଘରେ ଅପେକ୍ଷା କରି ବସିଥିବେ କେବେ ଫୁଲଟିଏ ଫୁଟେଇ ନ ଥିବା, ପୁଅକୁ ପେଷି ଜଗତ ଲୁଣ୍ଠନ କରିବାକୁ ମନସ୍ଥ କରିଥିବା, ଏଭଳି ବାଳୁତ ବୟସରୁ ପୁଅର ଅନ୍ଧାରି ଅର୍ଜନକୁ ହସ ହସ ବଦନରେ ସାଉଁଟି ନେଉଥିବା ବାପା ମା' ବୋଲାଉଥିବା ବୁଢାଚୋର ଓ ବୁଢାଚୋରଣୀ ଦଳ । ଅପେକ୍ଷା କରି ବସିଥିବେ, ସାନ ବଡ,

ସୁନ୍ଦର ଅସୁନ୍ଦର, ଶସ୍ତା ମହରଗ, ମୂଲିଆ ସାହି, ମନ୍ତ୍ରୀ ସାହିର ପେଟୁଆ ଗଣେଶମାନେ । ବିନା ଫେରିରେ ଯେଉଁଠି ବିଭବ ନାହିଁ, ସେଇଠି ଠକେଇ ସୁନାରେ ଝିଅ ମାଇପଙ୍କୁ ମଣ୍ଡଣି କଲାପରି, ଫେରିଫୁଲରେ ଗଣେଶ ବାବାଙ୍କୁ ସନ୍ତୁଷ୍ଟ କରାଯାଏ । ଦିଅଁ ବି ଶଳା ଏ ଦେଶରେ ବେହିଆ, ଲାମ୍ବୁଆ ହୋଇଗଲେଣି ।

ଭୋଳାନାଥବାବୁ ଆହୁରି କୋଡିଏ ତିରିଶ ଖୋଜ ଯାଇ ଛକ ଛୁଇଁଲେ ନାହିଁ । ରାଗିଲା ପରି ସେଇଠୁ ବୁଲିପଡିଲେ । ଭାରି ଇଚ୍ଛା, ରୋଧିପକାନ୍ତେ ଏ ସମସ୍ତ ବ୍ୟାପାରକୁ; କିନ୍ତୁ ଆଜି ପରା ତାଙ୍କ ଘରେ ବାଣ୍ଡିଆ ଚୂନଧଉଳା ଗଣେଶଟିଏ ବସିଛନ୍ତି ପୂଜା ପାଇବାକୁ ! ଛ'ଇଞ୍ଚିଆ ଗଣେଶଙ୍କୁ ବା'ରଟଙ୍କା ଦେଇ କିଣି ନେଇଛନ୍ତି ବୋଲି ସଞ୍ଜରେ ଗୋଟାଏ ପର୍ବ ସରିଛି; ସେ ପିଲାଗଣ୍ଡାକ ମଧ ପିତୃଦୋରେହା ହେଇଗଲେଣି । ସମସ୍ତେ ମା' ପଟେ । ଆରେ, ଥୋଡପାହାରଟା ପେଟ ଉପରେ ଲାଖିରହିଲାରୁ କ'ଣ ଭାସିଗଲା ? ସବୁବେଳେ କ'ଣ ଶୁଣ୍ଢ ଟେକି ଗଣେଶ ଫଁ ଫଁ କରୁଥିବେ ? ଟିକିଏ ଆରାମରେ ଶୋଇବେ ନାହିଁ ? ଛ'ଇଞ୍ଚ ଆୟତନରେ ଛ'ଟି ମୋଟା ମୋଟା ଗୋଡ ହାତ; ତା' ସାଙ୍ଗକୁ ପୁଣି ହାତୀମୁଣ୍ଡଟିଏ, ଟିମିରା ପେଟଟିଏ । ସବୁ ଖଞ୍ଜିଲାବେଳକୁ କାଦୁଅ ଅଣାୟତ୍ତ ହୋଇଗଲା । ସେ ମୂଳରୁ ଥୋଡପାହାରକୁ ଟେକେଇଥିଲା, କିନ୍ତୁ କ'ଣ କରିବ ? ପେଟ ଉପରେ ତାକୁ ଲମେଇ ଗଣେଶ ଟିକିଏ ଘୁମେଇ ପଡିଲେ । ସେ ଖଣ୍ଡ ସେଇଠି ଲାଖିଗଲା । ଦେବତାଙ୍କ ମାୟା, ତୁମେ ଛାର କ'ଣ ବୁଝିବ ?...

ଭୋଳାନାଥ ଆଗକୁ ଚହିଁଲାବେଳକୁ ପ୍ରାୟ ଆଲୁଅ ହୋଇଗଲାଣି । ରାସ୍ତା ଉପରୁ ଅସଂଖ୍ୟ ଫୁଲଫେର କୁଆଡେ ଉଭାନ ହୋଇଗଲେଣି । ତାଙ୍କ ଘରେ ପୂଜାପାଇଁ ଫୁଲ ଯୋଗାଡ ହୋଇନାହିଁ । ଗୋଟିଏ ଲେଖା ଝୋଲା ଧରି ଛବି ଆଉ ଅମର ପର ବାଡିରୁ ଫୁଲ ଫେରେଇବେ, ଏକଥା ଭୋଳାନାଥବାବୁ ସହିପାରିବେନାହିଁ । ପୂଜା ନ ହେଲାରୁ କ'ଣ ହୋଇଗଲା ? ଯାଉ ଏ ପାଳିକ ସେମିତି ! ଆର ପାଳିକୁ ବାଡିରେ ଫୁଲଗଛ ହୋଇ ଫୁଟିଥିବ । ନିଜ ଫୁଲ । ସେଥିପାଇଁ ଆଜି ଲାଗିବ ଗଛ ! ପାଣି ଡେଣ୍ଡାହେବ ଆଜିଠୁ !...ସେ ବି ଆରକ ଝାମେଲା । ...କେମିତି ହେଲେ ଆଜିକ ଚଳେଇନେବା କଥା । ସେ ଅମରକୁ କହିଛନ୍ତି ଯେ ତାଙ୍କ ବାଡିରେ ଶୋଡଙ୍ଗା ଚମ୍ପାଗଛ ଶିଖରେ ମେଞ୍ଚାଏ କଢ ସେ ଦେଖିଥିଲେ । ସେଥିରୁ ଗୋଟିଏ ନିଶ୍ଚେ ଫୁଟିଛି । ସେଇ ଗୋଟିଏ ଚମ୍ପା ଚଢେଇଦେଲେ ଗଣେଶ ବାବା ଖୁସି ହୋଇଯିବେ । ଅଜାଡିଦେବେ ବିଦ୍ୟା ଆମ ମଝିଘରେ । ଚମ୍ପା ତାଙ୍କ ବଉଁଶଯାକର ପ୍ରିୟ ଫୁଲ । ତାଙ୍କ ବାପେ, ତାଙ୍କ ମା' ତା' ବାସ୍ନା ପାଇଗଲେ ମୋହିହୋଇଯାନ୍ତି; ଆଉ ୟେ ତ' ସହଜେ ଖୁସି ହେବା କଥା ! ସେଇ ଗୋଟିଏ ମାତ୍ର ଚମ୍ପା ଏ ସମଗ୍ର ସହରରେ । ସେଇ ଗୋଟିକ ଚଢେଇଲେ ଯାହା, ଆଉ ପାଞ୍ଚ ଶଗଡ ଏଣ୍ଡୁତେଣ୍ଡୁ ଫୁଲ କୁଢେଇଲେ ମଧ ତାହା ନୁହେଁ ! ଅମର ବୁଝିଗଲା, ଡିଆଁଟାଏ ମାରି ପଳିଗଲା ଖେଳିବାକୁ ।

ଆଲୁଅ ବଢିଆସିଲା । ଘର ପାଖେଇ ଆସିଲା । ସେ ଦେଖିଲେ ତାଙ୍କ ସାହିର ସମସ୍ତଙ୍କ ବାଡିରେ ଗୋଳ । ଗଛମାନଙ୍କରେ ଫୁଲ ଆଉ ନାହିଁ । ଡାଳ ଭାଙ୍ଗି ଓହଳି ରହିଛନ୍ତି । ରାସ୍ତାଯାକ

ପତ୍ର, ଡାଳ, ଫୁଲ ପାଖୁଡା ବିଛୁହୋଇ ପଡିଛି । କାହା ବାଡିରୁ ଛୋଟ ଛୋଟ କ୍ରୋଟନ୍ ଗଛ ଚେର ସହିତେ ଉପାଡି ନେଇଯାଇଛନ୍ତି । ଗମଲା ସାଙ୍ଗେ ଟେକି ନେଇଯାଇଛନ୍ତି ଗଜଦନ୍ତ । ମୁକ୍ତକଣ୍ଠରେ ଦୋ'ଅକ୍ଷରି ଶୋଧାଶୋଧି ହେଉଛନ୍ତି ସାନ ବଡ । ଭୋଳାନାଥ ବାବୁଙ୍କ ଆଖି ଖୋସି ହୋଇଗଲା । କେତେ ଅସନା କଥା ଏ ଅଣ୍ଡାସବୁ ଜାଣିଗଲେଣି ? ଆଉ ତାଙ୍କଠୁ ପାଞ୍ଚବର୍ଷ ବଡ ହେବ ସେ ବୁଢା, ବଙ୍କାବାଡିରେ ପବନକୁ ଖେଞ୍ଚୁ ଖେଞ୍ଚୁ କ'ଣ ସବୁ ଅଭାଷିଆ ବକୁଛି ପାଟିକରି । ଇସ୍, ଏଇ ବୋଧେ ଗଣେଶଙ୍କ ଆବାହନ ପର୍ବ ! ଛୋକାର ଟୋକା, ଆଉ ଏ ଛୋପରା ବୁଢା ମିଶି ଆଗରୁ ମନ୍ତ୍ର ଏତେ ପାଟିରେ ବୋଲୁଛନ୍ତି – ସବୁ ବିଦ୍ୟା ଜାଣ ଏଇଠୁ ଆରମ୍ଭ ହେଲା !

ଖୁବ୍ ଲାଜେଇ ଲାଜେଇ ମୁହଁ ରଙ୍ଗାକରି ନ ଶୁଣିଲାପରି ଗାଲେଇଦେଇ, ସେ ଖଣ୍ଡକ ପାରିହୋଇଗଲେ ଭୋଳାନାଥ ବାବୁ । ଦୂରରୁ ଯାହା ଦେଖିଲେ, ସେଥିରେ ତାଙ୍କୁ ଦ୍ୱିତୀୟ ଥର ବାହାରପାଣି ଦେଖେଇଲା । ତାଙ୍କ ବାଡିଆଡେ ଥାଟପଟାଳି ଲୋକ । ଦୂରରେ ଖଣ୍ଡେ ଦୁଇଖଣ୍ଡ ଜିପ୍ । କିବେ ଘଟଣା କଣ ? – ସେ ଟାଉ ଟାଉ ଯାଇ ସେଠି ପହଞ୍ଚିଲେ; କିନ୍ତୁ ଭିଡ ପିଠିରେ ଘଷି ହେଉଥାନ୍ତି, ଭେଦି ପଶିଯିବାକୁ ବାଟ ନ ଥାଏ । ସେଇଠୁ ତାଙ୍କୁ ଦିଶିଲା ଯେ ଚମ୍ପାଗଛର ଶେଷ ଦୋକେନା ଉପରେ ପାଟିପରି ପିଲାଟିଏ ବସିଛି । ତଳେ କିଏ ଖିଙ୍କାରି ହେଉଛି, "ଆବେ ଶଳା, ସେ ଚମ୍ପାଫୁଲ ପକେଇଦେ ତଳକୁ, ନ ହେଲେ ଟେକାମାରି ତୋ ତାଳୁ କଣା କରିଦେବି !" "ପକା ପକା ।" "ଚମ୍ପାଫୁଲ ତୋ ବୋପାର ନୁହେଁ ।" "ମାର୍ ଶଳାକୁ ।"

"ସତ କଥା ! ମାର୍ ଶଳାକୁ ।" ଭୋଳାନାଥ ବାବୁଙ୍କର ତୁଣ୍ଡରୁ ମଧ ବାହାରିଗଲା । କେତେ ସାହସ ସେ ବଗୁଲିଆର ? ପର ବାଡିରେ ପଶି ଗଛ ଶିଖାରେ ଯାଇ ବସିଛି । ଲକ୍ଷେ ଟଙ୍କାର ଗୋଟିଏ ଚମ୍ପା । ଏ ସହରରେ ଆଉ ଗଛ ନାହିଁ କି ଆଉ ଫୁଲ ନାହିଁ । ସେ ବସିଛି ତାକୁ ଚୋରେଇ ନେଇଯିବ ! ମାର୍ ଶଳାକୁ !

ଚାରିଆଡେ ଶୁଭିଲା "ମାର୍" "ମାର୍" ଶବ୍ଦ । ଗୋଟାଏ ଧୂର୍ତ୍ତ କଷିଚୋରର ଶେଷକୁ ଏ ଜନତା ଦରବାରରେ ନ୍ୟାୟ ଧର୍ମ ଉପରେ ବିଚାର-ଦଣ୍ଡ ପାଇଯିବ ! ଅତି ଉତ୍ତମ, ଅତି ଉତ୍ତମ ! – ଭାବିଲେ ଭୋଳାନାଥ । ଏମିତି ନ ହେଲେ ଏମାନଙ୍କ ମୁହଁ ବଢିଯିବ । ଲାଉଚୋର କଖାରୁଚୋର ଚୋରଉ ଚୋରଉ ଅସଲ ଚୋର । ଅନ୍ତତଃ ଏ ପାଟିଟାକୁ ଗଛ ଉପରୁ ଖସେଇ ଦେଇପାରିଲେ ଭୋଲାନାଥବାବୁ ତାଙ୍କ ଚମ୍ପାଫୁଲଟିକି ନେଇ ପୂଜାରେ ଲଗେଇ ପାରିବେ । ନ୍ୟାଯ୍ୟ ଅଧିକାର ସାବ୍ୟସ୍ତ ହେବ ।

ତାଙ୍କ ପାଖରେ ଲମ୍ବା-କଲିଆ ଜୁଲଫି-ବାଳିଆ ଷଣ୍ଡାଟୋକା ସବୁ ଠିଆ ହୋଇଥାନ୍ତି । ସେଇମାନେ ବଳୁଆ ଯୁବକ । ସେମାନେ ଅନ୍ୟାୟ ସହିବେ ନାହିଁ । ୟା'ଙ୍କୁ କ'ଣ ସେଇ ପାଟିଟା ବଳେଇଯିବ; କିନ୍ତୁ ଏମାନେ ମଧ ସମସ୍ତେ ଝୋଲାଟିଏ ଲେଖା ଧରିଛନ୍ତି ତ; ସେଥିରେ ଡାଳ ପତ୍ର, ଫୁଲଗଣ୍ଡିଏ ଭର୍ତ୍ତି ହୋଇଛି । କୋଉଠୁ ଆଣିଲେ ? ଏମାନେ ବି କ'ଣ ଚୋର ? ? ସେ ନାବାଳକ ଗଜାଚୋର ହୁଏତ ଜାଣୁନାହାନ୍ତି ଚୋରଉଛନ୍ତି ବୋଲି । ମଜାରେ ବୋହୂଚୋରୀ

ଖେଳିଲାପରି ଫୁଲ ଚୋରି କରୁଛନ୍ତି; କିନ୍ତୁ – ଏଗୁଡାକ ? ଏମାନେ କ'ଣ ପାଠ ପଢୁଛନ୍ତି ? ଘରଦ୍ୱାର କରିଥିଲେ ଯୋଡାକର ବାପ ହୋଇସାରନ୍ତେଣି ? ଏଇମାନେ ତ' ଜାଣିଶୁଣି ପର ବାଡିରୁ ଫୁଲ ତୋଳିଛନ୍ତି ? ...ଭୋଳନାଥ ବାବୁଙ୍କ ମନ ବିଷେଇଗଲା । ଆହୁରି ଅନେଇଲାବେଳକୁ ଲୁଙ୍ଗି ପିନ୍ଧା, ଖଦଡ ପଞ୍ଜାବିପିନ୍ଧା ଦରବୁଢା ପାକଳ ମଣିଷମାନେ ସେମିତି ଝୋଲାଟିଏ ଲେଖା ଧରି ମୁହଁ ଜୋର୍‌ରେ ସେ ବକଟେ-ନା'କୁ ପିଲାକୁ ଭିଡିଆଣି ବଳି ଚଢେଇଦେବାକୁ ଖିଙ୍କାରି ହେଉଛନ୍ତି । ...ଜିପ୍ ଗାଡିରେ ବଡ ଅଫିସରଙ୍କ ଡ୍ରାଇଭର୍ ପିଅନ ସେମିତି ଝୋଲା ଧରି ଆସିଛନ୍ତି । ଭିତରେ ସ୍ୱୟଂ ଅଫିସର ବସି ରହିଛନ୍ତି ।

ସେଇ ଲକ୍ଷେ ଟଙ୍କିଆ ଚମ୍ପାଟି ପାଇଁ ସମସ୍ତେ ତା'ହେଲେ ଲାଳାୟିତ !!

ଏଇଠି ଜୋର୍ କସାକସି ହୋଇଯିବ । ଯେ ପାରିଲା ସେ ତାକୁ ନେଇଯିବ । ଭୋଳାନାଥବାବୁ ନିଜେ ଗଛର ମାଲିକ । ସେ ଏମାନଙ୍କୁ ରୋଧି ପାରିବେ ନାହିଁ । ଏମାନେ ଯୋଉ ଭାଷାରେ ଶୋଧୁଛନ୍ତି, ସେମିତି ଭାଷା କହିପାରିବେ ନାହିଁ । ୟାଙ୍କ ସଙ୍ଗେ ଲଢିପାରିବେ ନାହିଁ । ଏଣେ କେମିତି କେଜାଣି ରାଷ୍ଟ୍ର ହୋଇସାରିଛି ଯେ ଗଣେଶଙ୍କ ବରଦାନ ଏ ଚମ୍ପାଫୁଲ ପାଇଁ ଅଟକି ରହିଛି । ଯେ ୟା'କୁ ନେଇ ତାଙ୍କୁ ପିନ୍ଧେଇ ଦେବ, ତା'ରି ଉପରେ ଢଳାହୋଇଯିବ ସୁନାକଳସ ।

ଆଲୁଅ ହୋଇଆସିଲା । ଗୋଳ ବଢିଲା ଆହୁରି ଆହୁରି । କିଏ କହିଲା, ଆଙ୍କୁଡ ଲଗେଇ ନହକା ଗଛଟାକୁ ନୁଆଁଇ ଆଣ । କିଏ କହିଲା, ମୂଳରୁ ହାଣି ଦିଅ । ସମସ୍ତେ ଛକିଛନ୍ତି ସେ ଫୁଲଟିକୁ, ପାଟି କରୁଛନ୍ତି – 'ଚୋର ଚୋର', "ଓହ୍ଲା ଶଳା", "ପିଟ ଶଳାକୁ ।"

ଏତିକିବେଳେ ଗଛ ଦୋକେନା ଉପରୁ କୋଇଲି ରାବିଲା ପରି ଶୁଭିଲା, "ମୁଁ ଚୋର ନୁହେଁ, ଏଇଟା ଆମ ଗଛ ।"

ଭୋଳାନାଥ ବାବୁ ଚମକି ଡେଇଁ ପଡିଲେ । ୟା' ଦେହରେ ତା' ଦେହରେ ବାଡେଇହେଲେ । ସେହିଭଳି ଧକ୍କା ମଧ ଖାଇଲେ । ସେ ପେଲିପଶୁଥାନ୍ତି ଗହଳି ଭିତରେ । ଅମର ଚଢିଛି ଗଛ ଉପରେ, ସହସ୍ରେ ଡକେଇତ ଜଗି ବସିଛନ୍ତି ଚାରିପଟେ – ତାକୁ ଭିଡିଆଣି ଟିକି ଟିକି କରିଦେବେ । ଭୋଳାନାଥ ଉଦ୍‌ବେଗରେ କଥା କହି ପାରୁ ନଥାନ୍ତି; କ'ଣ କରିବେ ଜାଣି ପାରୁ ନଥାନ୍ତି । ସେ କି ଜାଣିଥିଲେ ଯେ, ତାଙ୍କ ଗଛର ଦୋକେନା ଉପରେ ମାଛି-ଅନ୍ଧାରରେ ବସିଥିବା ସେ ପିଲାଟି ତାଙ୍କ ପୁଅ !

ଭିଡ ଭିତରେ କହୁଣେଇ ପଶିଲାବେଳେ କିଏ ସବୁ ତାଙ୍କୁ ଧରିନେଲେ । ଗୋଟାଏ ସେଥିରୁ ବେକକୁ ଧରି କହିଲା, "କିଏବେ ତୁ ? କୁଆଡେ ହେମତି ପେଲି ପଶୁଚୁ ?" – ଆଉ କିଏ କହିଲା, "ଆବେ ଦଉନୁ ଖୋବି ଦି'ଚାରି ବିଧା । କିଏ ସେ ? କୁଆଡେ ଯାଉଛି ? ଧର୍ ତାକୁ ।"

ଭୋଳାନାଥ ବାବୁ କିଛି ଭାବିବା ଆଗରୁ ତାଙ୍କ ତୁଣ୍ଡରୁ ବାହାରିଗଲା, "ସେ ମୋ' ପୁଅ !" – ହୋ ହୋ ହସି ଉଠିଲା ବଲୁଆ ଯୁବକଗୋଷ୍ଠୀ । ଅଧାଡିଆ ଖଦଡପିନ୍ଧା ବୁଢା ହସିଲେ । ଦପ୍ତରୀ

ବାବୁମାନେ ହସିଲେ । ତା'ପରେ ସମସ୍ତେ ଏକାଥରକେ ରାଗିଯାଇ ପାଟିକଲେ ।

ଏଇ ନିର୍ଲଜ ବୁଢା ଶଳା ପକ୍କା ଚୋର । ତା' ପୁଅକୁ ଗଛରେ ଚଢେଇଦେଇ ଏଇଠି ଠିଆହୋଇଛି । ଏଇ ଚୋରେଇ ନେବାକୁ ଚାହିଁଛି ଲକ୍ଷେ ଟଙ୍କାର ଚମ୍ପା । ଏଇ ଶଳା ପ୍ରକୃତରେ ଚମ୍ପାଚୋର । ମାର୍ ମାର୍ ଶଳାକୁ – "ପୋଲିସରେ ଦେଇଦିଅ ।" ଉଠିଲା ଗୋଳ । ଦଳା ଚକଟା, ଧାଁ ଦଉଡ । ଗୋଟାଏ ହାତରେ ଫୁଲଡାଲା ଧରି ଆର ହାତରେ ଭୋଳାନାଥବାବୁଙ୍କୁ ବିଧାଏ ଲେଖା ବସେଇଦେଇଗଲେ ଲୋକେ ।

କଣ ହୋଇଥାନ୍ତା କହିହେଉନାହିଁ – ଏତିକିବେଳେ ନାରୀକଣ୍ଠରେ ଶୁଭିଲା, "ହେଇ ପୋଲିସ ଆସିଗଲେ ।" "ପୋଲିସ, ପୋଲିସ, ଚୋର, ପୁଲିସ୍!" କହି କହି ଦୌଡିଲେ ସମସ୍ତେ । କିଏ କୁଆଡେ ଛିନ୍‌ଛତ୍ର ହୋଇଗଲେ । ଭୋଳାନାଥ କାବା ହେଲାପରି ଠିଆହୋଇଥାନ୍ତି । ସକାଳ ପହରରେ ଦଉଡି ପଳାଉଥିବା ସେ ଜନତାର ଅସହାୟ ପିଠିଗୁଡିକୁ ଚାହିଁ ରହିଥାନ୍ତି । ଇସ୍, ଏଗୁଡାକ ଚୋର ବି ହୋଇପାରିବେ ନାହିଁ ।

"ଓହ୍ଲେଇ ଆ, ଅମର, ଫୁଲ ଦରକାର ନାହିଁ । ଓହ୍ଲା ଚଞ୍ଚଳ ।" ଶିବାନୀ ଗଛମୂଳେ ଥାଇ ପୁଅକୁ ଡାକୁଥାନ୍ତି । ଅମର ଉପରୁ କିହଲା, "ଫୁଲ ଏଠି ଜମା ନାହିଁ ବୋଉ ! ତୁଚ୍ଛା ଫଳଗୁଡାକ । ତୁଚ୍ଛାରେ ବାପା କହୁଥିଲେ ଅଛି ବୋଲି ।"

ଅମର ଓହ୍ଲେଇଲା । ବୁଲିପଡି ଶିବାନୀ କହିଲେ, "ଆଉ କାହିଁକି ଏମିତି ଠିଆହୋଇଛ – ଅକୀର୍ତ୍ତି ପସରା ? ଚାଲ ଘରକୁ । ଏ ହାଡୁଆ ଶୁକୁଟା ଗଛରେ କୋଉଠି ତୁମକୁ ପେନ୍ଥାଏ ଚମ୍ପାଫୁଲ ଦିଶିଗଲାବୋଲି ଏତେ କାଣ୍ଡ ଭିଆଇଦେଲ ? ଏବେ ଚଢ ଏ ଗଛରେ, ଆଉ ତୋଳ ସେ ଫୁଲ – ମୋ' ପିଲେ ପୂଜା କରିବେ ।"

ଭୋଳାନାଥ ବାବୁଙ୍କର ଜାମା ବୋତାମ ଯୋଡିଏ ଛିଡିଯାଇଥାଏ । ପିଠିରେ, ପଖା ପଞ୍ଜରାରେ ଚୋରଠଉଁ ବିଧା ଖାଇ ଘୋଳେଇ ହେଉଥାଏ । ଗଛଚଢା କଥା ଶୁଣି ତାଙ୍କ ପାଦତଳେ ସିର୍‌ସିର୍ ହେଲା । ସେ କି ଭାର୍ଜନ ଗଛଚଢାକୁ, ନାଁ ଏ ଶଳା ଶୁକୁଟା ଚମ୍ପାଗଛ ଭାର୍ଜନ ତାଙ୍କୁ ସମ୍ଭାଳିବାକୁ !!

ଅମର ଆସି ଠିଆହୋଇ କହିଲା, "ଗଛର ସବୁପତ୍ର ପରା ମୁଁ ଟେକି ଦେଖିଲି । ପେନ୍ଥାଏ ଫଳ ଗୋଟାଳି ଅଛି; ଫୁଲର ନାଁ ନାହିଁ ।"

ଭୋଳାନାଥବାବୁଙ୍କୁ ଉଶ୍ୱାସ ଲାଗିଲା । ସେ ପାଟି ଫାଡୁଙ୍କେଇ ଅଳ୍ପ ହସି ପକେଇଲେ । ଏତିକିବେଳେ ଗୋଟାଏ ଜିପ୍ ଆସି ରହିଗଲା ସାମନାରେ । ସେଥିରୁ ଓହ୍ଲେଇଲେ ଜଣେ ବଡ ଅଫିସର – ଖୋଦ୍ ବଡମନ୍ତ୍ରୀଙ୍କ ପାର୍ଷଦ । କହିଲେ, "ଆରେ ଭୋଳାନାଥବାବୁ; ଆପଣ ସେ ଚମ୍ପାଫୁଲଟିକୁ ଦେଇଦିଅନ୍ତୁ । ସେଇ ଗୋଟିଏ ମାତ୍ର ଫୁଲ ଏ ସହରରେ – ଆଉ ଫୁଲ ନାହିଁ । ସେ ଚମ୍ପାଟି ଉପରେ ପ୍ରଥମ ଅଧିକାର ମନ୍ତ୍ରୀଙ୍କର । ଆପଣ ଜାଣନ୍ତି, କାହିଁକି ହଇରାଣରେ ପଶିବେ ?"

ପାର୍ଷଦଙ୍କ ହାତରେ ମୁଣିଟିଏ । ମନ୍ତ୍ରୀଙ୍କ ମୁଣି !! □

## ଘର ଠିକଣା

ରାତି ସେତେବେଳକୁ ଅନ୍ଦାଜ ଏଗାରଟା ହବ ନା କ'ଣ । ଭଦ୍ରଲୋକ ଜଣକ ବତିଖୁଣ୍ଟ ତଳେ ଠିଆହୋଇ ଚାରିଆଡକୁ ଅଚିହ୍ନା ଭଳି ଚାହୁଁଥାନ୍ତି । ଜଣାପଡୁଥାଏ ଯେମିତି ସେ ପାଖରେ ଥାନ ଟିକିଏ ପାଇଲେ ବସିପଡନ୍ତେ । ଖୁବ୍ କ୍ଳାନ୍ତ । ବୟସ ଅନ୍ଦାଜ ଷାଠିଏ ।

ନୀଳାମ୍ବରବାବୁ ଭାରି ବଢିଆ ଲୋକ । ସୁବିଧା-ଅସୁବିଧାରେ ପାଖରେ ଆସି ଠିଆହୁଅନ୍ତି । ଗୁଳୁଗୁଳିରେ ଘର ଭିତରେ ଭାରି ଗରମ । ସେ ସାନପୁଅକୁ କାନ୍ଧରେ ପକାଇ ଲୁଙ୍ଗି ପିନ୍ଧି ଟହଲୁଥିଲେ ।

ଆସି ପଚାରିଲେ, "କ'ଣ ମଉସା, କାହାକୁ ଖୋଜୁଛନ୍ତି କି ?"

ଦଶ ପନ୍ଦର ବର୍ଷର ପୁରୁଣା ପୋଷାକ ଦି'ଖଣ୍ଡ ସେମିତି ଢିଲା ଢିଲା ଓହଳି ରହିଥିଲା । ଓହଳିଥିଲା ଭୃଲତାକୁ ସେ ଭଦ୍ରଲୋକ କେବଳ ଚାହିଁଲେ ନୀଳାମ୍ବରବାବୁଙ୍କୁ । ଥୁଲୁଥୁଲିଆ ମୁହଁରେ ଟୋପା ଟୋପା ଝାଳ ।

ନୀଳାମ୍ବରବାବୁ ଅପେକ୍ଷା କଲେ । ବୁଢାବାବୁ ବୋଧେ ମନେ ପକାଉଛନ୍ତି । ଲାଜେଇଲାପରି ଭଦ୍ରଲୋକ ଅଳ୍ପ ହସିଲେ । କହିଲେ, "ଖୋଜୁଚି ତ । ବେଳବୁଡଠୁ ରାତି ଆସି ଏତେ ହେଲାଣି; କିନ୍ତୁ ବହୁତ ଚେଷ୍ଟାକରି ପାଉନାହିଁ । କ'ଣ କହିବି କାହାକୁ, ଲାଜ ମାଡୁଚି ।"

"କ'ଣ, କହୁନାହାନ୍ତି !" ଉତ୍ସାହିତ କଲେ ନୀଳାମ୍ବରବାବୁ । ଭଦ୍ରଲୋକ ତଳକୁ ଚାହିଁ ମନକୁ ମନ ହସିଲେ । "ମୁଁ ମୋରି ଘରଟାକୁ ହିଁ ପାଉନାହିଁ, ଖୋଜି ଖୋଜି ନୟାନ୍ତ ହେଲିଣି ।"

ନୀଳାମ୍ବରବାବୁ ମଧ ଅଳ୍ପ ହସି କହିଲେ, "ଆଶ୍ଚର୍ଯ୍ୟ କଥା ! ଆପଣ କେତେଦିନ ହେଲା ସେ ଘରେ ରହିଲେଣି ।"

"କ'ଣ ଆଉ କହିବି ଆପଣଙ୍କୁ; ନଦିଆ ପରା ସେଇ ଘରେ ଜନ୍ମହେଇଚି । ସେ ଚାକିରି କରିବାର ଆସି ପାଞ୍ଚବର୍ଷ ହୋଇଗଲା । ତା'ର ପୁଅଝିଅ ହେଲେଣି । ସେଇ ଘରେ ଆମେ ରହିଲୁଣି, ଧରନ୍ତୁ, ଗତ ତିରିଶ ବର୍ଷ ହେଲା ।"

"ଆଶ୍ଚର୍ଯ୍ୟ ! ଆପଣ ବୋଧେ ଚାକିରି କଲାବେଳେ ସେ ଘରକୁ ଆସିଥିଲେ ?"

"ହଁ, ସରକାରୀ ଘର । ଏବେ ନଦିଆ ନାଁରେ ସେଖଣ୍ଡ ଅଛି ।"

"ତିରିଶ ବର୍ଷ ରହିଲା ପରେ ଆପଣ ତ' ଆଖିବୁଜି ସେ ଘର ବାରିଦେଇ ପାରନ୍ତେ ?"

"ତା' ବୋଧେ ଏଯାଏଁ କରି ଆସିଥିଲି । ଆଜି ତ' କାହିଁ ମୋତେ ସେ ଘରଖଣ୍ଡ ଦିଶୁନାହିଁ । ଏ ସମଗ୍ର ଅଞ୍ଚଳ ମୋତେ ନୂଆ ନୂଆ ଲାଗୁଚି । ଏଇ ଧରନ୍ତୁ, ଆପଣଙ୍କୁ ତ' ମୁଁ କେବେ ଦେଖିଚି ବୋଲି ମନେପକେଇ ପାରୁନାହିଁ ।"

ନୀଳାମ୍ବରବାବୁ ସବ ବୁଝିଲା ପରି ହସିଲେ । "ଆଚ୍ଛା ଆଜ୍ଞା, ଆପଣ ପାଞ୍ଚ ମିନିଟ୍ ସମୟ ଦିଅନ୍ତୁ । ମୁଁ ଲୁଗା ବଦଳେଇ ଚାଲିଆସେ । ନଦିଆବାବୁ ବୋଧେ ଆପଣଙ୍କ ପୁଅ । ମୋର ଅନୁମାନ, ସେ ମୋରି ବୟସର ହିଁ ହେବେ । ମୁଁ ଆପଣଙ୍କ ପୁଅ ଭଳି ଭାବନ୍ତୁ । ମୁଁ ଏଇ ସାଙ୍ଗେ ସାଙ୍ଗେ ଆସୁଚି ।"

ନୀଳାମ୍ବରବାବୁ ଫେରିଆସି ଦେଖିଲେ ଯେ, ଭଦ୍ରଲୋକ ସେମିତି ତଳକୁ ଚାହିଁ ଠିଆହୋଇଛନ୍ତି । ଏ ବୟସରେ ଏମିତି ବାଉଳା ହେବାକଥା ନୁହେଁ ତ ! କିନ୍ତୁ ହଜିଗଲା ପିଲାଟିର ପରି କେଡେ ନିରୀହ ଅସହାୟ ଏ ବୁଢାଟି ବିଚରା !

ବ୍ୟବସାୟୀ-ଗଳାରେ ନୀଳାମ୍ବରବାବୁ ଗଭୀର ବିଶ୍ୱାସରେ କହିଲେ, "ଆସନ୍ତୁ ଆଜ୍ଞା, ଆସନ୍ତୁ ! ମୁଁ ଆପଣଙ୍କ ଘରଯାଏଁ ବଳେଇ ଦେଇ ଆସେ । କହିଲେ ଦେଖି ଘର ନମ୍ବରଟା !"

ଭଦ୍ରଲୋକ ମୁହଁଟେକି ମୁଣ୍ଡ ନାଡିଲେ । "ଘର ନମ୍ବରଟା ? – ସେଇଟା ହିଁ ମନେପକାଉଥିଲି । ଖୋଜି ଖୋଜି ଯୋଉ ଶହେ ଘର ହାବୁଡିଲି, ସେଗୁଡାକ ବରଂ କିଛି କିଛି ମନେପଡୁଛି; କିନ୍ତୁ କେମିତି କେଜାଣି ମୋ' ନିଜ ଘର ଠିକଣାଟା ମନେପଡୁନାହିଁ । ବହୁତ ଚେଷ୍ଟା କଲିଣି । ପାରୁନାହିଁ । ମୁଁ ଦେଖୁଚି ବୁଢା ହେଇଗଲେ ଅନେକ ଅଦ୍ଭୁତ କଥା ଘଟେ ।"

ନୀଳାମ୍ବରବାବୁ ଏଥର ଗଦ୍‌ଗଦ୍ ହୋଇ ଖୁବ୍ ହସିଲେ । "ଆଚ୍ଛା ଅଦ୍ଭୁତ ଲୋକ ତ' ଆପଣ । ତିରିଶ ବର୍ଷ ଯେଉଁ ଘରଟାରେ ଆପଣ ରହିଛନ୍ତି, ତା' ନମ୍ବର ଭୁଲିବା ଯାହା, ନିଜ ନାଁ ଭୁଲିଯିବା ସେଇଆ ।"

ଭଦ୍ରଲୋକ ସେମିତି ଉଦ୍‌ବିଗ୍ନ । ସେମିତି ବିବ୍ରତ । ପରିହାସ ବୁଝିବା ଅବସ୍ଥାରେ ନାହାନ୍ତି ସତେ ବା – "ଆପଣ ଠିକ୍ କହୁଛନ୍ତି । ମୋ' ନିଜ ନାଁ ଭୁଲିଯିବା କିଛି ବିଚିତ୍ର କଥା ନୁହେଁ । ପଚାଶ ପାଖେଇଲାବେଳକୁ ଗୋଟାଏ ଭୁଲା ରୋଗ ଆରମ୍ଭ ହୋଇଯାଏ । ତାକୁ ଆମ୍ନେସିଆ କହନ୍ତି । ସେଇଟା ସେ ସମୟରେ ମୋର ଟିକିଏ ଅଧିକ ଥିଲା ! ମନର କଅଁଳ ତାଳ ସବୁ ଝାଉଁଳି ଆସେ ତ । ସେଇଠି ପବନ ବାଜିଲେ ଆଉ ବାରିହୁଏ ନାହିଁ । ଲୋକକୁ ଦେଖିଦେଲେ ଚିହ୍ନିହୁଏ; କିନତୁ ନାଁ କଥା ଉଠିଲେ ଭାରି ହିନସ୍ତା । ମୋର ଥରେ ନଦିଆର ନାଁଟା ମନେପଡିଲା ନାଇଁ । ତା' ବୋଉ ନାଁ ବି ମନେ ପଡିଲା ନାଇଁ । ଆଉ ଥରେ, ହଁ, ସେଇ ପେନସନ୍‌ବେଳେ ତ । ଭାଗ୍ୟକୁ ନଦିଆ ପାଖରେ ଥିଲା ବୋଲି । କହିଲା, ବୋଉ ନାଁ ପରା ତିଳୋତ୍ତମା । ମୁଁ କହିଲି, ହେଇଥିବ । ସମସ୍ତେ ହସିଲେ ।"

ନୀଳାମ୍ବରବାବୁ ବି ହସିଲେ; କିନ୍ତୁ ସେ ବିଚରା ଅନେକ ବିବ୍ରତ ଜଣାଯାଉଥାନ୍ତି । ଏ ବୁଢାଟିକୁ ନେଇ ଏତେ ରାତିରେ ସେ କରିବେ କଣ । ରାସ୍ତାଘାଟ ସେତେବେଳକୁ ଖାଲି

ହୋଇସାରିଥାଏ । ସିନେମା-ଦେଖାଳି ଫେରିସାରିଥାନ୍ତି । ଏଠି ସେଠି କୁକୁର ଡାକ ଦୂରରୁ ଶୁଭୁଥାଏ । କାହିଁ ଦୂରରେ ବୋଧେ କାଳୀଗଳି ଛକ ହେବ ନା କଣ...ନେପାଳୀର ସିଟି ଶୁଭିଲା । ନୀଳାମ୍ବରବାବୁ ଘଣ୍ଟା ଦେଖି ଭୂରୁ କୁଞ୍ଚେଇଲେ...ବାରଟାକୁ ପାଞ୍ଚମିନିଟ୍ ।

ଠିକଣା ନ ଜାଣି ଉଭୟେ ବଡ ରାସ୍ତା ଉପରେ ଟହଲିଲା ଭଳି ଚାଲୁଥାନ୍ତି । ଆକାଶରେ ତୁଳାଭିଣା ନିଷ୍କଳ ମେଘ । ତା' ପଛକୁ କେମିତି ନିଷ୍କଳ ଫାଳେ ଫକାସିଆ ଜହ୍ନ ।

ନୀଳାମ୍ବରବାବୁଙ୍କୁ ଛଟେଇ ପଟେଇ ଲାଗୁଥାଏ । ଆଚ୍ଛା ଭାଲୁଲାଙ୍ଗୁଡିଆ କାମରେ ହାତ ଦେଇଦେଲେ । ଚୁଲୁବୁଲିଆ ଲୋକଙ୍କୁ ଏଇଆ ସାଜେ । ବେକୁବ୍ କାହାଁକା ।

"ଆଚ୍ଛା ଆଜ୍ଞା, ଆମେ ଏମିତି ଗଲେ ତ' ଆପଣଙ୍କ ଘରେ ପହଞ୍ଚି ପାରିବାନାହିଁ । ଆପଣ ଘର ଚିହ୍ନିବାର କିଛି ଉପାୟ କହନ୍ତୁ ।"

"ଘର ପରା ଅଧମାଇଲ ଦୂରରୁ ଯେ ମନ ସେ ଚିହ୍ନିଦେବ । ସେ ଖଣ୍ଡମଣ୍ଡଳରେ ଆଉ କାହାର କଇଁଠ ଗଛ ନାହିଁ । ସେ ବି ଅଦ୍ଭୁତ କଇଁଠ । ତା' ବିହନ ମୁଁ କାଶୀରୁ ମଗେଇଥିଲି । ସେ କାଶୀ କଇଁଠ ବାସ୍ନା ଆପଣ ଥରେ ଶୁଙ୍ଘିଲେ ଜୀବନସାରା ଭୁଲିପାରିବେ ନାହିଁ । ତାକୁ ଲାଗି ଗୋଟେ ଗଙ୍ଗଶିଉଳୀ । ସବୁଠୁ ବେଶି ଆଖିଦୃଶିଆ ସେଇ ଝାଙ୍କୁଳା ପିଜୁଳି ଗଛଟା । ତା'ରି ଡାଳରେ ଚାରି ଛାଇରେ ନଦିଆ ବଢିଚି । ତା' ସାଙ୍ଗମାନେ ବଢିଚନ୍ତି । ଘର ଚିହ୍ନି ହେବ ନାଇଁ କହୁଛନ୍ତି । ଆପଣ ଟିକିଏ ଦମ୍ଭ ଧରନ୍ତୁ । ଘର ନିଶ୍ଚୟ ମିଳିଯିବ ।"

ଏ ବୁଢାଟା ବାୟା ନା କଣ ! ନୀଳାମ୍ବରବାବୁ କ'ଣ ଧୈର୍ଯ୍ୟ ଧରିବେ, କିଓ କାଇଁକି ? ଘର ନ ମିଳିଲେ ଏବେ ତାଙ୍କର ସେଥିରେ ଥାଏ କ'ଣ ? ମିଳିବ ତ' ନାହିଁ; କାଶୀ କଇଁଠ, ଗଙ୍ଗଶିଉଳୀ ଆଉ ପିଜୁଳି ଗଛ ଠିକଣାରେ କିଏ କେବେ ଘର ଖୋଜିଲାଣି । ଜାଣିଶୁଣି ହଟହଟାରେ ମଣିଷ ପଡିଗଲା । ସେ ତ' ଯାହା କରିବାର କରିଥାନ୍ତା । ଏବେ କ'ଣ ନା – 'ଆ ବଳଦ ମୋତେ ବିନ୍ଧ' ।

ଏଠି ସେଠି ନୀଳାମ୍ବରବାବୁଙ୍କୁ ଛୁଞ୍ଚି ଫୋଡିଲାପରି ଲାଗୁଥାଏ । ସେ ଠକ୍ କିନା ଠିଆହୋଇଗଲେ ।

"ନାଇଁ ଆଜ୍ଞା ଏଆଡେ ଆଉ ଯିବା ନାଇଁ ।" – ନିଷ୍ପତ୍ତିର ସ୍ୱର ।

ଭଦ୍ରଲୋକ ବି ଠିଆହେଲେ ଜହ୍ନ ଆଲୁଅରେ । ତୁଳାର କୁଣ୍ଢେଇଟିଏ । ସେ ବି ଚାହୁଁ ନଥିଲେ ସେଆଡେ ଯିବାପାଇଁ । କୌଣସିଆଡେ ଯିବାକୁ ସେ ଚାହୁଁ ନଥିଲେ ମୋଟ ଉପରେ । ସେ ଆସ୍ତେ ରାସ୍ତାକଡ ଘାସ ପଡିଆକୁ ଓହ୍ଲେଇଗଲେ ଏବଂ ନଥ୍ କିନା ବସିପଡିଲେ – 'ଓଃ' । ଗୋଡ ଯୋଡିକ ଲମ୍ବେଇ ଦେଲେ । ହାତ ଉପରେ ଭରାଦେଇ ଉପରକୁ ଚାହିଁ ରହିଲେ, ବୋଧହୁଏ ଜହ୍ନକୁ ।

ଏ ବୁଢା ବୋଧହୁଏ ଏଇଠି ଆଜି ରାତି ପୁହାଇବ । ଖରାଦିନ ରାତି । ଆଉ ତିନି ଚାରି ଘଣ୍ଟା କଥା । ଆଖି ବୁଜି ଫିଟେଇଲାବେଳକୁ ଆଉ ନ ଥିବ । ଏଇ ମୌକାରେ ଫେରିଗଲେ ହୁଏ । ସକାଳୁ ଆସି ବରଂ ତା' ଘରେ ସମର୍ପି ଦେବେ... । ନୀଳାମ୍ବରବାବୁ ଚାହିଁଲେ ଚାରିଆଡକୁ । ଭାରି ନିରୋଳା କାକର । ମେଘଗୁଡିକ ସୂତା ପରି ସରୁ । ଜହ୍ନଟା ଭାରି ତୋଫା । ଫେରିଯିବାକୁ ହେଲେ

ହେଇ ଉପର ମୋଡଠେଇଁ ତ' ଘର । ଅତି ବେଶି ହେଲେ ମାଇଲିଏ । ବୁଢାଙ୍କୁ ସଙ୍ଗରେ ନେଇଯିବା ଭଲ; କିନ୍ତୁ ସତରଶହ ଷାଠିଏ ଗଜ । ପାଞ୍ଚ ହଜାର ଦୁଇଶହ ଅଶି ଫୁଟ!! – ଉଁଃ – । ଭାରି ଅଳସ । କିଏ ଯାଏ ଏଇନେ ସେ ଗୁଳୁଗୁଳି ଗୁମ୍ଫା ଭିତରକୁ । ଘରଟା ତ' ପଳେଇ ଯାଉ ନାହିଁ । ଏଇଠି କାକରରେ ଟିକିଏ ବସିଗଲେ କ୍ଷତି କ'ଣ ? ଏମିତି ବସି ବସି ନୀଳାମ୍ବରବାବୁ ଯାତ୍ରା ଦେଖି ରାତି ବିତେଇଛନ୍ତି ଅନେକ ଥର । ଆସ୍ତେ ପବନ ଟିକିଏ ଫୁଙ୍କି ଦେଲା । ସେ ଗୋଡ କାଢିଲେ ପଡିଆକୁ । ମନକୁ ମନ ପଚାରୁଥାନ୍ତି ମାଇଲ୍‌କ କେତେ ଇଞ୍ଚ କେଜାଣି ? ଇଞ୍ଚକେ ଗୋଟିଏ କରି ଗେଣ୍ଡା ଥୋଇଦେଲେ ଷାଠିଏ ହଜାରରୁ ବେଶି ରହିଯିବେ, ନା' କ'ଣ...

ଭଦ୍ରଲୋକ ସେମିତି ହାଁ କରି ଉପରକୁ ଅନେଇ ବସିଛନ୍ତି ।

ଅଣ୍ଟାରେ ହାତଦେଇ ନୀଳାମ୍ବରବାବୁ ତାଙ୍କୁ କିଛି ସମୟ ଚାହିଁଲେ । "ଆଜ୍ଞା, ଆପଣ ବୋଧହୁଏ ହାଲିଆ ହୋଇଯାଇଛନ୍ତି, ଟିକିଏ ବିଶ୍ରାମ ନେଇ ଉଠିବା । କ'ଣ କହୁଛନ୍ତି ?"

ଗୋଡ ଲୋଟେଇ ଚକା ପକେଇ ନେଲେ ଭଦ୍ରଲୋକ । ନୀଳାମ୍ବର ବାବୁଙ୍କୁ ଚାହିଁ ପଚାରିଲେ, "କାହିଁକି ?..."

ନୀଳାମ୍ବର ବାବୁ ହସିଲେ, "ଆପଣ ଘରକୁ ଫେରିବେ ନାହିଁ କି ?"

ସେ ବି ହସିଲେ, "ଆଜି ବୋଧହୁଏ ଏମିତି ମେଲାରେ ରାତି କଟେଇବାର ଯୋଗ ଅଛି । କ'ଣ କରାଯାଏ । ମୁଁ ଆଜ୍ଞା ଏଇ ହାତରେ ଏ ଟାଉନ୍ ପ୍ଲାନିଂ କରିଚି । ସେତେବେଳେ ସାଇବଙ୍କ ସମୟ ।" ନୀଳାମ୍ବରବାବୁଙ୍କ ଉପରୁ କିଏ ଟିପ ଟେକିନେଲା ଯେମିତି । ସେ ଟ୍ରେସିଂ କାଗଜ ପରି ଗୁଡେଇ ହୋଇଗଲେ ମନକୁ ମନ । ଘାସ ଉପରେ ଗୋଡ ଲମ୍ବେଇ ବସିଗଲେ ନ ଉଠିବା ଭଙ୍ଗୀରେ ।

"ମୁଁ ଏବେ ମଧ କହିଦେବି । କେମିତି ପାହାଡକୁ ସଳଖ ରାସ୍ତା ଟଣାହେଇଥିଲା । କେମିତି ତଳେ ଜାଗା ଥିଲା । ହ୍ରଦ ପାଇଁ, ଉପରକୁ ଧାଡି ଧାଡି ହେଇ ବସ୍ତିମାନଙ୍କର ନମ୍ବର ପୂର୍ବ, ପଶ୍ଚିମ ପାଞ୍ଚ – ଉତ୍ତର ଦକ୍ଷିଣ ପାଞ୍ଚ, ଏମିତି ପଚିଶଟି ବସ୍ତି । ବସ୍ତିଗୁଡିକ ଚାରିଚାରି ଭାଗ, ଭାଗକେ ଶହେ କରି ଘର । ଇଂରାଜୀ 'ଏ' ଠଉଁ 'ୱାଇ' ପର୍ଯ୍ୟନ୍ତ ବସ୍ତିଙ୍କ ଚିହ୍ନଟ; ଜେଡ୍‌ଟା ମଶାଣି ।"

"ବାଃ ବଢିଆ ପ୍ଲାନ ତ, କିନ୍ତୁ ଆମେ ଯୋଉଠି ଅଛୁ ସେଇଟା ତ' ସେମିତି ନୁହେଁ ।"

"ହେଇଥାନ୍ତା । ତାକୁ କ'ଣ ଏମାନେ ରଖେଇ ଦେଲେ କି । ରାସ୍ତାକୁ ମୋଡିଲେ...ଏ ଆଡୁ ମୋଡିଲେ ସେ ଆଡୁ ତାଡିଲେ, ଦେଲେ ତାକୁ ଧ୍ୱସ୍ତ କରି । ଫଳରେ ଏ ଟାଉନ୍ ମୋ' ପାଇଁ ଗୋଟାଏ ଗୋଲକଧନ୍ଦା । ୟା'ର ସେମିତି ଗୋଟାଏ ବିଧିବଦ୍ଧ ରୂପ ନାହିଁ । ବଣୁଆମାନେ, ଯେ ଯୋଉଠି ପାରିଲା ମାଟି ହାଣି ଘର ଟେକିଲା ପରି ୟା' ଅବସ୍ଥା । ସବୁ ଖୁନ୍ଦିଖାନ୍ଦି ଦେଇଛନ୍ତି ବିଗାଡି । ଛାଡ – ମୁଁ ଯେଉଁ ସରକାରୀ ଘରେ ରହିଆସିଛି ତା' ନମ୍ବର ବି ପାଞ୍ଚଥର ବଦଳିଲାଣି । ଯୋଉଟା ମୋର ମନେ ପଡୁନାହିଁ, ସେଇଟା ବି କୁଆଡେ ଆଉ ଥରେ ବଦଳୁଚି ବୋଲି ପୁଅ କହୁଥିଲା ।"

ମୁଣ୍ଡ ଲାଡି ଏ ବେକୁବ୍ ଦୁନିଆକୁ ସେ ହସିଲେ କିଛି ସମୟ ।

"ବଦଳୁ ଯେତେ ବଦଳୁଚି; ଆମେ କୋଉ ରହିଯାଉଚୁ ତୁମ ଲେଉଟ ଦୋଳିରେ । ତମେ ତମର ଘିରିଘିରି ବୁଲୁଥାଅ; କିନ୍ତୁ ବାବୁ, ମୁଁ କହିଦେଉଚି, ମୋର ଯେଉଁ ଘର ଖଣ୍ଡିକ ଏବେ ନଦିଆକୁ ମିଳିଛି, ସେଭଳି ଏ ଟାଉନ ସାରା କୋଉଠି ନାହିଁ । ସେ ଟୋକା ସିନା ମାନିବ ନାହିଁ । ଦେଖନ୍ତୁ, ଯେଉଁ ବର୍ଷ ସେ ଜନ୍ମ ହେଲା ବାଡିଆଡେ ଗୁହାଳଟିଏ ତୋଳାହେଲା । ଆଗରେ ଉଠିଲା ସେ ଜାମୁ ଆଉ କଇଁଠ ଗଛ । ଯେତେବେଳେ ସେ ପାଠ ପଢିଲା, ବାରଣ୍ଡା ଉପରେ ଅଧାକାନ୍ଥ ଘେରି ତା' ଉପରକୁ ଜାଫ୍ରି ଦେଇ ସେ ଛୋଟ ବୈଠକଘର ଖଣ୍ଡିକ ତିଆରି ହେଲା । ଆଉ ଯେତେବେଳେ ସେ ବାହାହେଲା ସାରାଘର ରଙ୍ଗ ହେଲା । ଝରକା କବାଟ ସଜଡା ହେଲା । ରୋଡରେ ଘେରା ହେଲା ତାରବାଡ । ଯେ ଦେଖିଲା ସେ ସେମିତି ଠିଆ ହୋଇଗଲା ଅବାକ୍ ହେଇ । ତାରି ପାଇଁ ସେ ଘର । ସେ ନିଜେ ସେଇ ଘର ପାଇଁ । ଏ ସାରା ଟାଉନ୍‌ରେ ସେମିତି ଘର ନାହିଁ ପରା କହିଲି । ଆଲୁଅ ପବନ ଢେର୍ ଯେମିତି, ଛକ ଉପରେ ଜାଗାଟା ବି ସେମିତି ।"

"ନଦିଆ କ'ଣ ଆପଣଙ୍କର ଗୋଟିଏ ପୁଅ ।"

ସେ ହସିଲେ । "ଓଃ...ଗୋଟିଏ ହେଲେ ତ' କାହିଁରେ କ'ଣ ? ସଂସାର ତାକୁ ଘେରି ଏମିତି ବୁଣିହୋଇଯିବ ଯେ, ଛନ୍ଦି ବାନ୍ଧି ଦବ ଚାରିଆଡୁ । ଆଉ ପୁଞ୍ଜାଏ କ'ଣ ହବ ? ଗୋଟିଏ ପାଇଁ ଯାହା ଶ୍ରମ, ଯାହା ବେଠି–ଆପଣ ତ' ଘରଦ୍ୱାର କଲେଣି, ବଳେ ବୁଝିଯିବେ ନାଇଁ କି । ଆପଣଙ୍କର କେତୋଟି ?"

"ଆଜ୍ଞା, ଚାରି – ଦୁଇ ଝିଅ, ଦୁଇ ପୁଅ ।"

ଭଦ୍ରଲୋକ ଚୁପ୍ । ପାଖ ପଡିଶା ଗଛ ପରି ଚୁପ୍ ।

ବୁଢା ବୋଧେ ଛାନିଆ ହେଇଯାଇଛି । ନୀଳାମ୍ବରବାବୁ କହିଲେ, "ଯା'ର କିନ୍ତୁ ଗୋଟିଏ ପୁଅ, ତା'ଠାରୁ ବଳି ସୁଖୀ ଆଉ କେହି ନାହିଁ ।"

ବୁଢା ଭଦ୍ରଲୋକ ପାଟି ନ ଫିଟେଇ ଅନେକ ବେଳଯାଏ ହସିଲେ । ନୀଳାମ୍ବରବାବୁ ଶେଷକୁ ସନ୍ଦେହ କଲେ ଯେ, ସେ ଯେମିତି କାନ୍ଦୁଛନ୍ତି ନା କ'ଣ !

ଭଦ୍ରଲୋକ କିନ୍ତୁ ସେଇ ହସ ଭିତରେ କହିଲେ, "ଆହେ ବାବୁ, ଏଠି ସୁଖ କ'ଣ, ଦୁଃଖ ପୁଣି କ'ଣ ? ସଂସାର ଢଙ୍ଗରେ ଚାଲିଥାଏ । ବରଡା ଲଇଁଚାଲିଥାଏ ତଳକୁ ତଳକୁ । ଯେତେବେଳେ ଯେମିତି ଲାଗିବା କଥା ଲାଗେ । ସୁଖ, ଦୁଃଖ, ଜଞ୍ଜାଳ ସବୁ ଏକାକଥା ।"

ନୀଳାମ୍ବରବାବୁ ଟିକିଏ ଆଶ୍ୱସ୍ତ ବୋଧକଲେ । କହିଲେ, "ଆଜ୍ଞା ଉଠିବା କି, ଆପଣଙ୍କ ଘର ଖୋଜିବା ।"

"ଆପତ୍ତି ନାହିଁ । କିନ୍ତୁ ଏବେ ଖୋଜି ଆଉ ଲାଭ ନାହିଁ । ସମସ୍ତେ ଶୋଇ ଯାଇଥିବେ । ତାଙ୍କୁ ଉଠାଇବା ଉଚିତ୍ ମନେକରୁନାହିଁ ।"

"ନାଇଁ ଆଜ୍ଞା, ସେମାନେ ବରଂ ଦାଣ୍ଡଦୁଆରେ ଜଗି ବସିଥିବେ । ଏତେ ରାତି ହେଲା

ଆପଣ ନ ଫେରିବାରୁ ଅନେକ ଦୁଷ୍ଚିନ୍ତା ହେଉଥିବ ।"

ଗୋଟିଏ ଗଭୀର ଦୀର୍ଘଶ୍ୱାସ ଶୁଭିଲା କେବଳ । ତା'ପରେ ହସର ଘରେଣିଟିଏ । "ବାୟା ହେଲେ ଆପଣ । ଦୁଷ୍ଚିନ୍ତା ହେଲେ କିଏ କ'ଣ ଦୁଆରେ ବସି ରହେ । ଏଇ ନଦିଆ ଥରେ ଫେରି ନ ଥିଲା ବୋଲି ପରା ଅନ୍ଧାର ରାତିରେ ବାଟ ନ ପାଇ ମୁଁ ପୋଖରୀରେ ପଶିଯାଉଥିଲି । ତାକୁ ଆଉ ଦିନେ ରାତିରେ ଜର ହୋଇଥିଲା । ବାଉଳୁ-ଚଉଳୁ ହେଲାରୁ ଆମକୁ ଦଶଦିଗ ଆଉ ଦିଶିଲାନାଇଁ । ମୁଁ ଧାଇଁ ଧାଇଁ ପାଞ୍ଚ ମାଇଲ ଯାଇ ଡାକ୍ତର ଦୁଆରେ ମୂର୍ଚ୍ଛା ହୋଇଯାଇଥିଲି । ମମତା ସିନା ଏଇମିତି ଘୋଷାରେ – ଦାଣ୍ଡଦୁଆରେ ବସି ଗୋରୁକୁ ଅପେକ୍ଷା କରାଯାଏ ।"

ନୀଳାମ୍ବରବାବୁ ସାମାନ୍ୟ ଦବିଗଲେ । ସତେ ତ, ଷାଠିଏ ବର୍ଷର ବୁଢା ରାତିଅଧଯାଏ ଫେରିନାହାନ୍ତି – କେହି ହେଲେ ଖୋଜିବାକୁ ଆସି ନ ଥାନ୍ତେ ! ସ୍ତ୍ରୀ ତ, ଅନ୍ତତଃ ହାତ ଧରି ବିଭା ହୋଇଛନ୍ତି, ଜୀବନ ସାରା ଏକାସାଙ୍ଗରେ ରହିଲେଣି, ସେ ତ' କିଛି ନ ହେଲେ...

ତାଙ୍କ ମନକଥା ଜାଣିଲା ଭଳି ସେ କହିଲେ, "ନାଇଁ ବାବୁ, ସେସବୁ କିଛି ନୁହେଁ – ମୁଁ ଢେର୍ ଦେଖିଲିଣି । ତଥାପି ନଦିଆ ଘେରାଏ ବୁଲିଯିବଣି । ତା' ପୁଅ ଦେହ ଏ କେତେଦିନ ଭଲ ରହୁନାହିଁ । ଏଣୁ ତା' ମନ ବି ଭଲ ନାହିଁ । ବୋହୂ-ମା'ଙ୍କର ବାପଘରୁ ମୋହ ଛାଡିନାହିଁ । ଆମେ ବୁଢା ବୁଢୀଥିବା ପର୍ଯ୍ୟନ୍ତ ସେ ନଦିଆର ସଂସାରକୁ ଷୋଳଅଣା ନିଜର କରିବେ ନାହିଁ । ନଦିଆ ଏବେ ଭାଗ ଭାଗ ହୋଇ ହନ୍ତସନ୍ତ ହେଉଚି । ତା' ମା' କିନ୍ତୁ ସ୍ଥିର କରି ନେଇଛି ଯେ ପୁଅକୁ ଆଶ୍ରା ନ କଲେ ଆଉ ରକ୍ଷା ନାହିଁ । ଦିନକୁ ଦିନ ଆହୁରି ଆହୁରି ମେଘ ଅନ୍ଧାର ମାଡୁଆସୁଚି, କିଏ ସମ୍ଭାଳିବ ? ଏ ବୁଢା ତ' ନିଜକୁ ସମ୍ଭାଳିବା କଷ୍ଟ ।"

ନୀଳାମ୍ବରବାବୁଙ୍କୁ ମଡେଇ ପଡିଲା ପରି ଲାଗିଲା । ସେ କିଛି ନ କହି ନିଃଶ୍ୱାସଟିଏ ଛାଡିଲେ – ବୁଢା ଟିକିଏ ଚେଙ୍ଗାହୋଇ ଛିଡାହୋଇ ପଡିଲେ ।

"ଆଚ୍ଛା, ଅନେକ ରାତି ହେଲାଣି, ଆପଣ ବଡ ଭଲ ଲୋକ । ଆପଣଙ୍କୁ ମୁଁ କଷ୍ଟ ଦେବାକୁ ଚାହୁଁ ନାହିଁ । ଚାଲନ୍ତୁ, ମୁଁ ଆପଣଙ୍କୁ ଘରେ ଛାଡିଦିଏ । ଆପଣଙ୍କ ପିଲାମାନେ ଉଦ୍‌ବିଗ୍ନ ହେବେଣି । ଖୋଜିବାକୁ ସାଇପଡିଶା ଡାକି ବାହାରି ଆସି ପାରନ୍ତି । ଉଠନ୍ତୁ ।"

ନୀଳାମ୍ବରବାବୁ ଠିଆହୋଇ ହସିଲେ । "ଆଚ୍ଛା କଥା ହେଲା ଏବେ, ମୁଁ ସିନା ଆସିଥିଲି ଆପଣଙ୍କୁ ସାହାଯ୍ୟ କରିବି ବୋଲି । ଏବେ ଦେଖାଗଲା ଯେ ମୋ' ପାଇଁ ଆପଣ ହଇରାଣ ହେବାକୁ ବସିଲେଣି । ସେଇଆଡେ ତ' ପୁଣି ଫେରିବାକୁ ହେବ । ଚାଲନ୍ତୁ, ମୁଁ ଘରେ ମୁହଁ ମାରି କହିଦେବି । ତା'ପରେ ଆପଣଙ୍କ ଘର ଖୋଜି ବାହାର କରିବା ।"

ଭଦ୍ରଲୋକ କିଛି ନ କହି ରାସ୍ତାକୁ ଉଠିଲେ । ପ୍ରାୟ ନୀରବ ହୋଇ ଦୁଇଜଣ ଚାଲିଥାନ୍ତି । ନୀଳାମ୍ବରବାବୁ ଅନେକ କଥା ଉଖାରିଲେ, ବୁଢା କେବଳ ପଦେ କହି ଛିଣ୍ଡାଇ ଦେଉଥାନ୍ତି । ପାଦ ଖୁବ୍ ଭାରି ଭାରି ପଡୁଥାଏ । ନିଃଶ୍ୱାସ ତୋଳୁଥାଏ ଉଜାଣି । ନୀଳାମ୍ବରବାବୁ ମଝିରେ ଧ୍ୟେମେଇଗଲେ ଜାଣିଶୁଣି ।

ବୁଢ଼ା ଟିକିଏ ହସିଲେ । କହିଲେ, "ହାଲିଆ ହୋଇଗଲେ କି ?"

ବତିଖୁଣ୍ଟ ଆସିଲା । ନୀଳାମ୍ବରବାବୁଙ୍କ ଅଞ୍ଚଳ ଶୂନ୍‌ଶାନ୍ । କେହି କୁଆଡେ ନାହିଁ । ପିଲେ ବୋଧହୁଏ ଶୋଇଯାଇଛନ୍ତି । ସେ କବାଟ ବାଡେଇଲେ । କହିଲେ, "ଆପଣ ଟିକିଏ ଠିଆହୋଇଥାନ୍ତୁ । ମୁଁ କହିଦେଇ ଚାଲିଆସୁଚି ।"

ସେ ଅଳ୍ପ ହସିଲେ । ସେମିତି ଠିଆହୋଇ ରହିଲେ ବତିଖୁଣ୍ଟ ତଳେ । ନୀଳାମ୍ବରବାବୁ ଘରେ ପଶିଲେ । କଥାବାର୍ତ୍ତା ଶୁଭିଲା । ପିଲାଟିଏ କାନ୍ଦିଲା । କିଛି ସମୟ ଗଲା । ସେ ପଦାକୁ ପୁଣି ବାହାରିଲେ । ଘରର ତାଟି କବାଟ ଗାଜୁ ମାଜୁ ହୋଇ ତାଙ୍କ ପଛେ ପଛେ ଦୁଆରବନ୍ଧ ପର୍ଯ୍ୟନ୍ତ ବଳେଇ ଆଣିଲା । ସେ ଆସି ଦେଖିଲେ ଯେ, ବତିଖୁଣ୍ଟ ତଳେ ବୁଢ଼ା ନାହାନ୍ତି – ସେ ଏଣେତେଣେ ଆଖି ପକେଇଲେ । ଆଶ୍ଚର୍ଯ୍ୟ; କେଉଁଠି ଦିଶୁ ନାହିଁ । ସେ ରାସ୍ତା ଉପରେ ଏପଟେ ସେପଟେ କିଛି ବାଟ ଗଲେ । କେହି କେଉଁଠି ନାହିଁ ।

ଭଦ୍ରଲୋକ ବିଚରା ମୋତେ ହଇରାଣ ନ କରିବାକୁ ଏକୁଟିଆ ଚାଲିଗଲେ କୁଆଡେ । ସେ ନିଜେ ଆଉ ତ' କିଛି ତ୍ରୁଟି କରିନାହାନ୍ତି । ଛାଡ କ'ଣ ଆଉ କରାଯାଏ; ସେ ଘରକୁ ଫେରିଗଲେ । ଭିତରୁ କବାଟ କିଳାହେଲା । ବାହାରେ ନିଛାଟିଆ ରାସ୍ତା, ନିଛାଟିଆ ଜହ୍ନ । ଭିତରେ ସଂସାର । ଘନିଷ୍ଠ ଅତି ଆପଣାର ପରିବାର ।

ନୀଳାମ୍ବରବାବୁ ଉଠି ନ ଥା'ନ୍ତି । ତାଙ୍କୁ କିଏ ଉଠାଇଲା । ସେ ନିଦଆଖିରେ ବସି ଦେଖିଲେ ଯେ, ତାଙ୍କ ବଡପୁଅ ଆଉ ସ୍ତ୍ରୀ ଠିଆହୋଇଛନ୍ତି । ତାଙ୍କ ହାତରେ ଖଣ୍ଡେ ଚିଠି ।

"ଏ ଚିଠି ଆଉ ଏ ପୁଡିଆ ବାବୁଲି ପାଇଲା ଝରକା ଫାଙ୍କରୁ । କିଏ ଖୋସି ଦେଇଚି ।"

ଚଉଁକିନା ନିଦ ଭାଙ୍ଗିଗଲା ନୀଳାମ୍ବରବାବୁଙ୍କର – "କାହିଁ ଦେଖି ଦେଖି !"

ଥରିଲା ଥରିଲା ହାତରେ ବଡ ବଡ ଓଡିଆ ଅକ୍ଷର ଲେଖା – "ତୁମେ ହିଁ ମୋର ନଦିଆ । ତମ ପୁଅ ମୋ' ନାତି । ତା' ପାଇଁ ୟାକୁ କିଣିଥିଲି । ମୁଁ ଆଉ ଘର ଖୋଜୁନାହିଁ । ଏମିତି ଥରେ ହଜିଲେ ସେ ମିଳେ ନାହିଁ । ମୁଁ ଜାଣେ ସେ ମିଳିବ ନାହିଁ ।"

କାଗଜ ପୁଡିଆ ଫିଟେଇ ନୀଳାମ୍ବରବାବୁ ଦୁଇଟି କାଡ୍‌ବରି ଚକ୍‌ଲେଟ୍ ହାତ ପାପୁଲିରେ ଧରି ଚାହିଁରହିଥାନ୍ତି, ଅନେକ ବେଳଯାଏ ।



## ଶାବକ

କୋଡାପୋଛା ପୁଅ ବୋଲି ବୋଉ ମୋତେ ଭାରି ଗେଲ କରେ । ମୁଁ ବି ତା' ପାଖ ଛାଡେ ନାହିଁ । ମୋତେ ତା' ଦେହ ବାସେ; କାକର ଲାଗେ; କଅଁଳ ଲାଗେ । ତାକୁ ଛାଡି ସ୍କୁଲକୁ ଯିବାକୁ ମୋ' ମନ ଜମା ଡାକେନାହିଁ । ଖାଲି ସେ ରାହୁଆ 'ନନା' ଡରରେ ମୁଁ ଯାଉଥାଏ । ନନା ପାଖ ମୁଁ ପଶେନାହିଁ । ମତେ ଜମା ଭଲ ଲାଗେନାହିଁ । ସବୁଦିନ କୁସୁମା ଶିଳ ପାଖରେ ମୋ' ଉପରେ ସେ ରାଗ ଛିଡାନ୍ତି । ତାଙ୍କର ସେ ଟକା ଟକା ତରାଟିଲା ପରି ରଙ୍ଗିଲା ଆଖି, ସେ ଗୁଡ଼ିଆ ଥୋଡ – ସତ କହୁଛି, ମୋର ଜମା ଇଚ୍ଛା ହୁଏନାହିଁ ଦେଖିବାକୁ । ମୁଁ ବେଳେବେଳେ ଭାବେ, ଏ ଓଲୀ ବୋଉଟା କାହିଁ ଏଇଠି ଅଛି ? ସବୁଦିନ ବୁହାଏ ଲେଖା କଳି ଲାଗୁଚି, ମୁଣ୍ଡ ବାଡେଇ କାନ୍ଦୁଚି; ହେଲେ ଗଜି-ସାଆନ୍ତପୁର କେତେ ବା' ବାଟ । ସେଇଠି ମାମୁଁଘର, ଉଆସ ପରି । ସେଇଠି ବାଡିରେ ନଡିଆଗଛ, ଜାମୁଗଛ, ସୀତାଫଳ, କମଳା ଭର୍ତ୍ତିହେଇଚି । ସେଇଠି 'ବୁଲି', 'ଭରତ', 'ଆବୁଆ', 'ମଦନ' କେତେ ମଜାରେ ଅଛନ୍ତି । ପାଠପଢା ଜଞ୍ଜାଳ ନାହିଁ ଜମା । ଏମିତି ଖରାଦିନେ ସେ ନଡିଆଗଛ ମୂଳେ କି କାକର । ସେଠିକି ପଳେଇଲେ କି ବଢିଆ ହୁଅନ୍ତା ! ଏଠି କଥା-କଥାକେ ଏମିତି ଖାଲି ଦହଗଞ୍ଜ ସିନା...

ସେଦିନ ଏବେ ମତେ ସେ ପୋକତା ନନା କାଇଁକି ଚଟକଣାଟାଏ ମାରିଲା ? ମୁଁ ତ' ସବୁଦିନ ବୋଉ ପାଟିଭିତରୁ ପାନ ଖଦା କାଢି ଖାଏ । କହିଲା କ'ଣ ନା' – 'ଏଡେଟାଏ ହେଲୁଣି, ତଡେ ଲାଜମାତୁ ନାହିଁ ଅଇଁଠା ପାନ ଆଣି ଖାଉଚୁ ?' – ଭାରି କାନ୍ଦ ମାଡିଲା ମତେ । ମୁଁ ଥୁ' ଥୁ' କରି ତୁଣ୍ଡରୁ ସେ ବାସ୍ନା ଖଦା କାଢି ପକେଇଦେଇ ଦାଣ୍ଡକୁ ପଳେଇଲି । ରାତିରେ ବୋଉ ସାଙ୍ଗରେ ଆଉ ଖାଇଲିନାହିଁ । ବାଇଗଣ ପୋଡା ସାଙ୍ଗକୁ ରସୁଣ ପୋଡା ଲଙ୍କା ମନ୍ଥି ବଢିଆ ଚିଟିକା ମଉଜଟାଏ କରିଥିଲା । ତାକୁ ମଝିରେ ରିଖି ଦି'ମା' ପୁଅ ଖାଇଥାନ୍ତୁ । ...ବୋଉ ଡାକିଲା କେତେ ଥର । ବାଇଗଣଟାକୁ ସେ ଥରେ ଚିପିଦେବାରୁ ମୋ' ପାଟିରୁ ପାଣି ବୋହିଗଲା । ହେଲେ ମୋତେ ରାଗ ମାଡୁଥାଏ ସେଇ ନନା ଉପରେ । ମୁଁ ଗଲିନାହିଁ । ସେଦିନ ରାତିରେ ବୋଉ ପାଖରେ ଶୋଇଲିନାହିଁ ।

ତା' ଆରଦିନ ଉଠିଲାବେଳକୁ ରାତି ଆଉରି ଥାଏ । ଆମ ଘରେ ସାଇର ବଡମଣିଷମାନେ

ଆସି ପଶିଥାନ୍ତି । ସେଥିମଧ୍ୟରେ 'ଦାମ କକେଇ' ନାହି ତଳକୁ ଗାମୁଛା ବେଢ଼େଇ ମେଲା ଦେହରେ ଠିଆ ହେଇଥିବା ମତେ ଆଗ ଦିଶିଲା । ମୋ' ନିଦ ଭାଙ୍ଗି ନଥାଏ । ମତେ ଡର ମାଡିଲା । ତୋଟି ପାଖ ଗତଗତ ହେଲା । ବୋଉ ମୋତେ ଦିଶୁ ନଥାଏ । ବୋଉ ଖଟ ଚାରିଆଡେ ଏମାନେ ସମସ୍ତେ ବେଢି ଠିଆହୋଇଥାନ୍ତି । ମତେ 'ଯଦୁଆ ପଣ୍ଡା' ଶିଖେଇଥାଏ ଯେ ମରିଯିବା ହେଲା ସବୁଠୁ ବେଶି 'ଡେଞ୍ଜର'...ମୋ ବୋଉ କ'ଣ ମରିଗଲା କି ?...ମୋତେ ଗୋଡଠଉଁ ଦୁର୍ବଳ ଲାଗିଲା । ଅତର୍କ୍ଷେ ଲାଗିଲା – ଗଛ ଶିଖରେ ଥାଇ ତଳକୁ ଅନେଇଲେ ଯେମିତି ଆକଟା ଲାଗେ, ସେଇଭଳି ।

ମୁଁ ଗଳି ଅନେଇଲି । 'ବୁଲି ମାଉସୀ' ବୋଉର ଖଟ ଉପରେ ବସି ତା' ହାତ ପାପୁଲା ଚିପି ଦଉଥାନ୍ତି । ତା' ବୁକୁ ଉପରେ ଲୁଗା ସଜାଡି ଦଉଥାନ୍ତି । ବୁଲି ମାଉସୀ ବଢିଆ ଲୋକ । ତାଙ୍କ ବାଡିରେ ଝଙ୍କାଳିଆ ପିଜୁଳିଗଛ । ଚଢିଲେ ସେ କିଛି କହନ୍ତି ନାହିଁ ।...

ମୋ ବୋଉର କ'ଣ ହେଲା ? – ସେ ସେମିତି କାହିଁକି ଶୋଇଥିଲା ? ମୁଁ ତା'ର ଅଲରା ବାଳ, କୋଳି ପରି ଦୁଇଟି ପାନଖିଆ ଅଳ୍ପ ଦିଶୁଥିବା ଦାନ୍ତକୁ ଦେଖି ଖଟର ମଞ୍ଚୁଆକୁ ଲାଗି ଠିଆହୋଇଥାଏ । ବଡମଣିଷମାନେ କ'ଣ ସବୁ କଥା ହଉଥାନ୍ତି । ବୋଉ ନାକରେ ଗୁଣା । ଓଠ ତଳଖୁ କଳାଜାଇ । ମୁଁ ସେ କଳାଜାଇଟି ଉପରେ ଟିପମାରେ । କେମିତି କେଜାଣି ସେଇଆଡେ ମୋ' ହାତ ଅଧେ ବାଟ ଉଠିଯାଉଥିଲା । ଏତିକିବେଳେ ମୋ' ବୁକୁ ଉପରେ ବାଁ ହାତ ପଛପଟ ଲଗେଇ ମତେ କିଏ ପେଲିଦେଲା । ଖଟ ମଞ୍ଚା ପାଖରେ ସେ ତଳେ ଟିପେଇ ବସିବାରୁ ମୁଁ ଚିହ୍ନିଲି । ସେ ମୋ' ନନା । ଆଖିଗୁଡାକ ଆହୁରି ରଙ୍ଗିଲା । ଥୋଡ ଆହୁରି ଗୁଡିଆ । ସେ ମତେ ଥରୁଟିଏ ବି ଚାହିଁଲେ ନାହିଁ । ସେଇଠି ବସି 'ଦାମ କକେଇ' କଥା ଶୁଣୁଥାନ୍ତି । "ଭାଇନା, ଆଉ ଦେଖୁଚ କ'ଣ ମ । କାନରେ ମୁହଁ ଲଗେଇ ଫୁଙ୍କିଦିଅ, ଚେତା ଆସିଯିବ ।"

ନନା ଝୁଙ୍କିପଡି ବୋଉର କାନପାଖକୁ ମୁହଁ ଲଗେଇଲେ । ବୋଉ ନନାଠୁ ସେତେବେଳେ ଢେର୍ ଗୋରା ଦିଶୁଥାଏ । ଗାଲ ଟୁମା କରି ଫୁଙ୍କିଲା ବେଳକୁ ନନାଙ୍କ ମୁହଁର ଶିର ଟାଣିଯାଉଥାଏ । ନାଲି ଜରଜର ହୋଇ ଫାଟିପଡୁଥାଏ । ନନା ଦିଶୁଥାନ୍ତି ଭାରି ଭୟଙ୍କର । ମୋ' ଭିତର ଆତଙ୍କରେ ଥରୁଥାଏ । ବୁକୁ ଦୁଲୁକୁଥାଏ । ମୁଁ ରଡି ଛାଡିଥାନ୍ତି । ମତେ ବୁଲି ମାଉସୀ ଖପ୍‌କିନା ତାଙ୍କ କୋଡ ଭିତରକୁ ଭିଡିନେଲେ । ତାଙ୍କ ପେଟଉପରେ ମୁହଁ ମାଡି ମୁଁ ଗୁଡାଏ ସକସକ କାନ୍ଦିପକେଇଲି ବୋଧହୁଏ । ମାଉସୀ ମୋ' ପିଠିରେ ହାତ ବୁଲେଇ ଦଉଥାନ୍ତି । ମୋ' କାନରେ ପଡୁଥାଏ – "ପିଲାଟା ଛାନିଆ ହେଇଗଲା ।"

– "ତାଙ୍କର ତ' ସବୁବେଳେ ପିତାଧିକ ଶାମଳ ମୁଣ୍ଡ, ଏମିତି କେତେ ଥର ଚେତା ବୁଡିଯାଇଛି ।"

– "ଗୁଆକାଟି ଡାଙ୍ଗଟାକୁ ଦାନ୍ତସନ୍ଧାରେ ପୂରେଇ ଟିକିଏ ମେଲା କରିଦିଅ । ପାଣିଢୋକେ ପିଇଦେଲେ ତେଣିକି ଆଉ ଚିନ୍ତା ନାହିଁ ।" ମୋତେ ଆସ୍ତେ ଟିକେ ଟିପ ମାରିଦେଇ ମାଉସୀ କହିଲେ, "ଦେଖି ବାପା ଟିକିଏ ଠିଆ ହେଲୁ; ମୁଁ ବୋଉକୁ ସାଷ୍ଟମ କରେ ।"

ତା'ପରେ ଦାନ୍ତ କଡମଡ କରି ରଡିଟାଏ ଶୁଭିଲା, "କାଇଁ ସେ ମାଇଗୁଲିଆ ହେମ୍ତେ ସକସକ ହଉଚି । ଯା' ସ୍ୟାଡେ ।" ନନାଙ୍କ ପାଟି ଶୁଣି ମୋତେ ଆହୁରି କାନ୍ଦ ମାଡିଲା ।

"କାହିଁକି ସେ ପିଲାଟାକୁ ଏମିତି ଚ୍ଛେବେଇ ରଗଡି ହଉଚ ମ ଭାଇନା ! ଦେଖି ବାପା ଆଇଲୁ । ଆ, ମୋ' ପାଖକୁ ।" ଦାମ କକେଇଙ୍କର ଏଡେ ବଡ ପେଟ ମୋ' ବୁକୁ ଉପରେ ଠେସି ହେଲା ।

କେତେବେଳକୁ ବୋଉର ଚେତା ଆସିଲା । ସକାଳ ପାହିଲା । ଯେ ଯାହା ଘରକୁ ଗଲେ । ତା' ଆରଦିନଯାକ ବୋଉ ଅଳ୍ପ ଅଳ୍ପ କଥା କହୁଥାଏ । ଆଖି ଯୋଡିକ ପହଁରିଲା ପରି । ଭାରି ଦୁର୍ବଳ ଜଣାପଡୁଥାଏ । ନନା ରନ୍ଧାବଢା କରି ନସରପସର ହଉଥାନ୍ତି । ମଝିରେ ମଝିରେ ଦେଖି ଦେଇ ପଳଉଥାନ୍ତି । ମୋତେ କଅଁଳେଇ କରି କହୁଥାନ୍ତି, "ତୁ ଏଇଠି ବସି ଜଗିଥିବୁଟି ବାପା; କ'ଣ ହେଲେ ମତେ ଡାକି ଦେବୁ ।" ଏ ପଦକ କଥା ଶୁଣି ମୋତେ ଭାରି ଖୁସି ଲାଗିଲା । ଓ, ତା'ହେଲେ ମୋ' ଉପରେ ନନା ଭରସା କରୁଛନ୍ତି; – ମୋ' କହିବା ଉପରେ ଜଗିବା ଉପରେ ବୋଉର ଦିହ ପା' ନିର୍ଭର କରୁଛି । ମୁଁ ସେଇଠି ବସିଗଲି । ଏକାଲୟରେ ଚାହିଁରହିଲି ବୋଉକୁ ।

ବୋଉ ଶୋଇଥାଏ ।

ସେ ଶୋଇଗଲେ ତାକୁ ଦେଖିବାକୁ ମୋତେ ଜମା ଭଲଲାଗେନାହିଁ; ସବୁବେଳେ ଡରମାଡେ । ଏଇ ଯେ ବୋଉ ଶୋଇଚି ଯଦି ଆଉ ନ ଉଠେ । – ଦିନେ ଦିନେ ଖେଳଛୁଟିରେ ମୁଁ ଘର ଭିତରକୁ ଧାଇଁଆସି ଦେଖେ ଯେ ବୋଉ ସଅପ ଉପରେ ଏମିତି ଶୋଇଚି । ତା'ର ଦି'ଟି ନାଲି ଦାନ୍ତ ଏତିକି ଟିକିଏ ଲେଖା ଦିଶୁଚି । ସୁନାମାଳିଟି କୁଢେଇ ହେଇ ପଡିଚି ତକିଆ ଉପରେ । ...ମୁଁ କେମିତି ହେଲେ ତାକୁ ଉଠେଇ ଦିଏ । ତା' ଆଖିପତା ଶିର ଟାଣିଲା ପରି ଫୁଲି ରହିଥାଏ । ସେ ଅଳ୍ପ ଚାହିଁ ଟିକିଏ ହସିଦିଏ । ପୁଣି ଆଖିବୁଜି ମୋ' ସାଙ୍ଗେ କଥା କହେ – "ଡେଙ୍ଗେଡା ଉପରେ ଜଳଯନ୍ତ୍ର କରି ଘୋଡେଇ ଦେଇଚି ଚକୁଳି ଆଉ ଗୁଡ – ଆଣି ଖାଇ ଦେ । ସିକା ଉପରେ କ୍ଷୀର ଅଛି ।" ମୁଁ ଦୁମୁଦୁମୁ ଧାଏଁ । ମୋତେ କୌଣସି ଜିନିଷ ଦିଶେ ନାହିଁ । ମୁଁ ପୁଣି ରନ୍ଧାଘରୁ ପା' ଭାଗରୁ ପାଟିକରେ । ବୋଉ ମୋଡିଭିଡି ହେଇ ଉଠେ – "ବାପ ଓଳିଆ ସାଆନ୍ତ ପୁଅକୁ କିଛି ଦିଶିବ ନାହିଁ । ହାତରେ ଆଣି ଧରେଇଦେଲେ ଯାଇଁ ହବ । ରହିଥା, ମୁଁ ମରିଗଲେ ଦେଖିବା ନାଇଁ କେମିତି ବେଦିତଳ ମା' ଆସି ତୋ ସେବା କରିବ ? ସେତେବେଳକୁ ତା' ଆଜ୍ଞା ପ୍ରମାଣେ କାନଧରି ଉଠବସ ନ ହେଇଚୁ ଯଦି !"

ମୋତେ ଏମିତି କଥା ଶୁଣିବାକୁ ଭଲ ଲାଗେନାହିଁ । ମୁଁ ସବୁ ବୁଝେ ନାହିଁ । ମୋତେ ଖାଲି ଲାଗେ ଯେ ବୋଉ ଆଉ ଜଣେ କାହା କଥା କହୁଚି । ମୋତେ ଲାଜମାଡେ । ମୁଁ ଗୋଡ ବାଡେଇ ଅଝଟହେଇ କାନ୍ଦେ ।

ମୋତେ ସବୁଠୁ ଭଲଲାଗେ ମାଣବସା ଗୁରୁବାରଦିନ । ସକାଳୁ ବୋଉ ହଳଦି ଲଗେଇ ଗାଧୋଇ ସାରିଥାଏ । ତା'ର କୁଞ୍ଚ କୁଞ୍ଚ ମୁକୁଳା ବାଳଗୁଡିକ ଅଗରେ ଛୋଟିଆ ଗଣ୍ଠିଟିଏ

ପକେଇଥାଏ । ସେଥିରୁ ପାଣି ଟୋପେଲେଖା ପଡୁଥାଏ ସକାଳ ଓଳି ଯାକ । ତା' ପାଦରେ ଅଳତା, ମୁଣ୍ଡରେ ସିନ୍ଦୂର । ବୋଉ ସେଦିନ ଗୋଟେ ନାଲି ବ୍ରହ୍ମପୁରୀ ପାଟ ଶାଢ଼ି ପିନ୍ଧେ । ପେଡି ଭିତରେ କେତକୀ ଫୁଲ ଗୁଡେଇ ସେଇଟା ରଖାହୋଇଥାଏ । ଗୁରୁବାର ଦିନାଟା ଯାକ ସେଇ ବାସ୍ନା ବୋଉ ଆମର ଘରସାରା ମହକଉଥାଏ । ବୋଉକୁ ଦେଖି ମୋତେ ଲାଗେ ଯେ ଲକ୍ଷ୍ମୀ ଦୁର୍ଗା ଆଦି ଦେବୀମାନେ ଏମିତି ଦିଶୁଥିବେ ।

ଆଉବେଳେ ଭଲଲାଗେ । ମୁଁ ସେଇ ଖେଳଛୁଟିରେ ଆସିଲାବେଳକୁ ବୋଉ ଶାରଳା ମହାଭାରତ ଫିଟେଇ ପଢୁଥାଏ । ପଞ୍ଜୁରିରେ ଶୁଆ ଗୋଟିଏ ଗୋଡ ଟେକି ଦେଇ ଥଣ୍ଟ ଜାକି ଘୁମଉଥାଏ । ମୁଁ ବୋଉ ପାଖରେ ଆଣ୍ଠେଇପଡି ତା' ଦେହରେ ଲଟେଇ ହେଇଯାଏ । ବୋଉ ପଢୁଥିବା ଧାଡିଟାକୁ ଠଉରେଇ ନେଇ ମୁଁ ବି ତାକୁ ପଢିପକାଏ । ନବଗୁଞ୍ଜର ରୂପ କଥା ପଡିଥାଏ । ବୋଉ ମହାଭାରତରୁ ସବୁ କଥା ମୁହେଁ ମୁହେଁ କହିଦେଇପାରେ । ସେତେବେଳେ ବୋଉ କଳରେ ପାନ ଜାକି ବସିଥାଏ । ପଢାରେ ଭୋଳ ହୋଇ ପାନ ଖାଇବା ପାସୋରି ଦେଇଥାଏ । ଅଣ୍ଟ ଧାରେ ପିକ ବୋହିଆସିଥାଏ । ମୁଁ ସେତିକିବେଳେ ତା' ପାଟିରୁ ପା ଖାଏ ।...

ମୁଁ କୁଆଡେ ଚାହିଁ ବସିଥିଲି କେଜାଣି, ହଠାତ୍ ନନା ଆସି ପାଟିଟାଏ କଲେ – "ଯାଃ, କ୍ଷୀରଯାକ ସେ ଶଳା ଭୁଆ ଖାଇଗଲା । କୁଆଡେ ବିଲୁଆପରି ହେମ୍‌ତେ ଚାହିଁ ବସିଚୁ କିରେ ଜଳକା ? ବସେଇ ଦିଅନ୍ତି ଚଟକଣାଟାଏ ଯେ କାନମୁଣ୍ଡାରୁ ଉଇ ଝଡିଯାନ୍ତା ।"

ମୁଁ ଚମକି ପଡି ଠିଆହେଇଗଲି । ବୋଉ ଚମକିପଡି ମଟମଟ ଚାହିଁଲା । ବୋଉକୁ ସାକ୍ଷୀ କରି ସେ କହିଲେ, "ଦେଖ୍ ତୋ ପୁଅକୁ, ଏଡିକିଟାଏ ହେଲାଣି, ସେମିତି ଓଲାଙ୍କ ପରି ଜଳଜଳ ଚାହିଁ ବସିଚି, ତା' ଆଗରେ ବିରାଡି କ୍ଷୀରଯାକ ଖାଇଗଲା !"

ବୋଉ ନରମି ଯାଇ କହିଲା, "ହଉ ପିଲାଲୋକ, ଖେଳବୁଲ ଛାଡି ଏଇଠି ଏମିତି ବସିରହିଚି । ତା'ର କିଛି ଦୋଷ ନାହିଁ । ସେ ଉତୁପାତିଆ ଦଇବଛତା ବିରାଡି ଯେତେ ଜଗିଲେ ଆସି ଖାଇଯିବ ପରା । ମୁଁ ଆଜି କ୍ଷୀର ଖାଇବି ନାହିଁ । ମୋତେ କ୍ଷୀର ଦେଖିଲେ ବିଷପରି ଲାଗୁଚି ।"

ନନାଙ୍କ ରୋଷ ମଉଳିଗଲା । ସେ ବୋଉ ପାଖରେ ଆଉ କ'ଣ ସବୁ ଥୋଇ ସାକୁଲେଇଲା ପରି କହିଲେ, "ଉଠି ଏତକ ଖାଇ ଦବୁଟି । କାଲିଠଉ ପେଟରେ ପାଣି ପଡିନାହିଁ, ହଂସା ଉଡିଯିବ ।"

"ସେଇଠି ଥାଉ । ମନହେଲେ ଉଠି ଖାଇବି ।"

ମୁଁ ଜାଣୁଥାଏ ଯେ ବୋଉ କ୍ଷୀର ଖାଇବାକୁ ସୁଖ ପାଏ । ଜାଣୁଥାଏ ଯେ ତାକୁ ଭୋକ କରୁଥିବ । ମୋ' ପାଇଁ ଖାଲି ସେ ସେମିତି ହଉଥାଏ ।

ନନା ଉଠିଗଲେ କ'ଣ କାମରେ । ବୋଉ ମୋତେ ଚାହିଁ ହାତ ଠାରି ପାଖକୁ ଡାକିଲା । ଥାଳିଆ ଟେକି ଦେଖିଲାବେଳକୁ ସାଗୁଦାନା କ୍ଷୀରୀ । ବୋଉ ଜାଣେ ଯେ ମୋତେ ସାଗୁକ୍ଷୀରୀ ଭଲଲାଗେ । ନନା ଆସିବାର ଜାଣି ଶୁଣେଇ ଶୁଣେଇ କହିଲା, "ଏଥିରୁ ଗୁଡାଏ ଘାଣ୍ଟିଚନ୍ତି ଯେ ତାକୁ ଦେଖିଲେ ସତରେ ମଳୁପରି ଲାଗିବ । କିଏ ଖାଇବ ଏଗୁଡାକ ?" ନନା ପଶିଆସିଲେ ।

କ୍ଷୀରୀଟକ ମୁଁ ଶେଷକୁ ଖାଇଲି । ବୋଉ ସେମିତି ସିଝା ଦି'ଖଣ୍ଡ ଖାଇ ରହିଗଲା ।

ଓପାସ ରହିବା ତା'ର ଦେହସୁହା । ବାର ପ୍ରକାର ଓଷାବ୍ରତ ତା'ର ଚାଲିଥାଏ । ବର୍ଷାଦିନେ ଆମେ ସମସ୍ତେ ଉପରକୁ ଚାହିଁ ବସିଥାଉ । ହୁତା ହୁତା ମେଘ ଅସରା ଅସରା ବର୍ଷା ଭିତରେ କେତେବେଳେ ଟିକିଏ ସୂର୍ଯ୍ୟ ଦିଶିଗଲେ ଧାଇ ଯାଇ ବୋଉକୁ ମୁଁ କହିଦେଉଥିଲି । ସେ ସୂର୍ଯ୍ୟ-ଦର୍ଶନ କରି ସାରି ଭାତ ଖାଉଥିଲା । ଏଯାଏଁ ତା'ର ସେ ବଦଭ୍ୟାସ ରହିଚି । ନନା ଏଇଥିପାଇଁ ହଜାରେ ଥର କଳି ଲାଗିଥିବେ । ଓଷାବ୍ରତ କରି ଶୁଖି ଶୁଖି କେହି କେବେ ସର୍ଗକୁ ଯାଇନାହିଁ । ଆମ ନନା କିନ୍ତୁ ଓଳିଏ ଓପାସ ରହି ନାହାନ୍ତି କେବେ; ବରଂ ବୋଉର ଓପାସ ଦିନ ତାଙ୍କୁ ବେଳ ସହଳ ଭୋକ କରେ ।

ମୁଁ କ୍ଷୀରୀ ଗିନା ଆଡେଇ ରଖିଦେଉଥାଏ । ନନା ସେଇଠି ଟିପେଇ ବସିଥାନ୍ତି । ବୋଉ ସିଝା ଦି'ଖଣ୍ଡ ଚୋବଉଥାଏ । ଆସି ପହଞ୍ଚିଗଲେ ବିଦିଆ ଅଜା; ବିଦ୍ୟାଧର ମହାନ୍ତି । ଚଷମାପିନ୍ଧା ପେଟା ବୁଢ଼ାଲୋକ । ପୁରୁଣା ହେଡମାଷ୍ଟ୍ର । ଓଷୁଅ-କଷା କିଛି ଜାଣିଛନ୍ତି । ନନା ତାଙ୍କୁ ଭାରି ଖାତିର୍ କରନ୍ତି । ଡାକନ୍ତି ମଉସା । ମଉସା-ଅଜାଙ୍କୁ ଦେଖି ବୋଉ ଧଡପଡ ଉଠି ଲୁଗା ଘୋଡେଇ ହୋଇ ବସିଲା । ନନାଙ୍କୁ ଅଜା ପଚାରିଲେ, "କିରେ, ତତେ ପରା କହିଥିଲି ପନ୍ଦର ଦିନ ପଇଡପାଣି ପିଆଇବାକୁ ?"

"ମୁଁ ଯାଇଥିଲି ତ୍ରିନାଥ ତିଆଡି ବାଡିକୁ । ସେ କହିଲା, ଏବେ ଗୋଟାମା ଧରିଚି, କାଟିଲେ ପାଣି ବାହାରିବ ନାହିଁ । ଆଉ ଆରଟା କଥା ତ' ଜାଣିଚ – ଶଳା ଚମଚଟା ଶୁଣ୍ଡି । ନ ଖାଇଲେ ଏ ପିତ୍ତ ଶାନ୍ତି ହବନାହିଁ । ...ଗଜି ସାଆନ୍ତପୁରରୁ ଦି'ପୁଞ୍ଜା ନେଇ ଆସୁନୁ ।" – ମୋତେ ଚାହିଁ କହିଲେ, "କିରେ ଭେଣ୍ଡିଆ, ଯାଉନୁ ଅଜାଘରୁ ପଇଡ ନେଇ ଆସିବୁ, ବୋଉ ପିଇବ ।"

ମୁଁ ଖୁସିରେ ଡେଇଁପଡିଲି । ନନା ଟିକିଏ ହସିଲା ପରି ଚାହିଁଲେ ।

ବୋଉ କହିଲା, "ବେଳବୁଡ ସମୟ ହେଲାଣି । କୁଆଡେ ଯିବ ପିଲାଲୋକ । ଆଉ ଗୋଟେ ଗାଁକୁ ଯାଇ ପଇଡ ସେ ଆଣିପାରିବ ନାହିଁ । ମୁଁ ପଇଡ ପିଇବିନାହିଁ – ମୋର କିଛି ହେଇନାଇଁ ।"

"ନାଳ ଡେଇଁଗଲେ ଅଜାଘର । ମୁଁ ହେଇ ଦୌଡିଯାଇ ନେଇ ଆସିବି – ତୁ ଦେଖୁଥା ।"

"ବାଃ ରେ ପହିଲ୍‌ମାନ୍, ଦେଖି ଦେଖି !" କହି ଅଜା ଚାହିଁଲେ ମୋତେ । ନନା ବି ସେମିତି ଚାହିଁଲେ ଉସ୍‌କେଇଲା ପରି । ସେଇ ନନା ଫେର୍ ମୋତେ ମାଇଗୁଲିଆ ବୋଲି ଗାଳି ଦେଇଥିଲେ ତ !

ମୁଁ ଆଉ ବୋଉକୁ ନ ଶୁଣି ଡିଆଁ ମାରି ଗଲି । ବୋଉ ପାଇଁ ପଇଡ ଆଣିବି । ମାମୁଘରକୁ ଯିବି । ଏତିକିରେ ମତେ ନିଶା ଲାଗିଗଲା । ମୁଁ ଗାଁ ଗୋହିରୀଟାକୁ ଯୋଡି ଛାଡି ପାରିହେଇଗଲି । କିଏ ଜଣେ ମତେ ବାଟରେ ହାତ ଦେଖେଇ ପଚାରିଲା, "ଆରେ, ହେ' କ'ଣ ହେଲା, ଧାଇଁଚୁ ?" "ପଇଡ" ବୋଲି ପଦଟେ କୁହାଟି ଦେଇ ମୁଁ ପୁଣି ଧାଇଁଲି ।

ଆସି ରହିଗଲି ନାଳ ହୁଡା ଉପର ଆମ୍ବତୋଟା ପାଖରେ । ସେଇଠିକି କେତେ

ଖେଳଛୁଟିରେ ଆମେ ଖେଦି ଆସୁ । 'ଆସନ୍ତୁ' ବୋଲି ଗୋଟେ ଟୋକା ନୂଆ ମିଶିଥାଏ । ସେ ଗୋଟାଏ ଟେକାରେ ଗଛ ଶିଖରୁ ଆମ୍ବ ଖସେଇ ଦିଏ । ଲୁଣ ଲଙ୍କାଗୁଣ୍ଡ ଆଣିଥାଏ 'ଦୟାନିଧି' । ବଡ କଷ୍ଟରେ ସେ ଟିର୍‌ଟିରିଆ ଆମିଳି ଆମ୍ବକୁ ଆମେ ଖାଇଯାଉ । ମୋ' ଦେହସାରା ଠକ୍‌ଠକ୍ ଶୀତେଇଯାଏ । ମୁଁ ଝୁଣି ହେଇଯାଏ । ଢେଁକେଇଲାବେଳେ ସରସର ହେଇ ପାଟିରୁ ଲାଳ ବର୍ଷା ହେଇଯାଏ । ତଥାପି ଆମେ ଖାଉ । ହସି ହସି ଗଡିଯାଉ ଯେ ଯେ ତା' ମୁହଁ ସେ ୟା' ମୁହଁ ଦେଖି; କିନ୍ତୁ ଖାଉ ।

"ଆମ୍ବଖିଆ ଦିନ ବୋଉ ପାଖରେ ମୁଁ ଧରାପଡେ । ଗାଳି ଖାଏ । କିନ୍ତୁ ନନାଙ୍କ କାନକୁ କଥା ଯାଏ ନାହିଁ । ବୋଉ ବି ନନାଙ୍କୁ ଡରେ । ମୋ' ପାଇଁ ବେଶି ଡରେ । କାହିଁକି ସେ ନନାଙ୍କୁ ଏମିତି ଡରୁଥାଏ ?"...

ଦିନେ ଗାଲରେ ହାତଦେଇ ବୋଉ ବସିଥାଏ ଏକୁଟିଆ । ଆଖିରୁ ଲୁହ ବୋହି ଗାଲ ଓଦା ହୋଇଯାଇଥାଏ । ମୁଁ ଧାଇଁ ଧାଇଁ ଆସିଥାଏ । ମୋ' ବୁକୁ ଧଡପଡ୍ ପଡୁଥାଏ । ମୁଁ ଅଣ୍ଟାରେ ହାତ ଦେଇ ନାକପୁଡା ଫୁଲେଇ ବୋଉକୁ ଚାହିଁ ରହିଲି । ପଚାରିଲି, "ତୁ କାଇଁ କାନ୍ଦୁଚୁ ବୋଉ ?" ଆଣ୍ଠେଇ ପଡି ତା' କାନ୍ଧରେ ମୁହଁ ରଖି ପଚାରିଲି ଆଉ ଥରେ । ବୋଉ ମୋତେ ଜାକିଧରି କିଛି ସମୟ ସେମିତି ରହିଗଲା । ତା'ପରେ କାନ୍ଦ କାନ୍ଦ ହେଇ କହିଲା, "ଆ' ତତେ ପଖାଳ ବାଢିଦିଏ ।" ମୁଁ କେତେବେଳକୁ ଜାଣିଲି ଯେ ଘରୁ ଚାଉଳ ସରିଯାଇଛି । ପଇସା ନାହିଁ ବୋଲି ନନା ଗାଳି ଦେଇଛନ୍ତି । ମୁଁ ଆଦୌ ବୁଝିପାରିଲି ନାହିଁ । ଚାଉଳ ସରିଗଲେ ବୋଉ କାହିଁକି ଗାଳି ଶୁଣିବ ? ଏ ନନାଟା ଗୋଟେ ରାକ୍ଷସ । ମୁଁ ରାଗରେ ଗରଗର ହେଉଥାଏ । ବୋଉ ବେକରେ ଓହଳି କହିଲି, "ରଇ ଥା, ମୁଁ ବଡ ହେଇଯାଏ, ଏ ଦି'ଟା ବଖରା ଖାଲି ଚାଉଳରେ ଭର୍ତ୍ତି କରିଦେବି । ନନା ଯେତେ ଖାଇଲେ ସରିବ ନାହିଁ । ସେ ଆଉ ତତେ ଗାଳି ଦେବେ ନାହିଁ ।" ବୋଉ କିଛି କହିଲା ନାହିଁ । ସେଦିନ ରାତିରେ ମୁଁ ସ୍ୱପ୍ନ ଦେଖିଲି ଯେ ଗୋଟାଏ ଗୁମ୍ଫା ଭିତରେ ଧାଡି ଧାଡି ମାଟିହାଣ୍ଡିରେ ପଲମ ଘୋଡିଆ ହୋଇ ଖାଲି ଚାଉଳ, ଡାଲି, ନାନାଦି ପିଠାପଣା, ଗୁଆଘିଅ, ଚିନି, ଖୁଆ, ଛେନା, ସାଗୁଦାନା କ୍ଷୀରୀ!! ବୋଉକୁ ନେଇ ଗୁପ୍ତ କବାଟ ଫିଟେଇ ମୁଁ ଦେଖଉଚି ଭଣ୍ଡାର । ବୋଉ ହସୁଚି । ଏତିକିବେଳେ ନିଦ ଭାଙ୍ଗିଯାଉଚି ।...

ମୁଁ ଟାଉଟାଉ ଚାଲି ସେ ମଶାଣିଭୂଇଁ ପାରି ହେଇଗଲି । ଲେଉଟିଆ ଖଟ, ପୋଡା କାଠ, କୁଲା, ଫଟାହାଣ୍ଡି ଦେଖିଦେଇ ମୋ' ଦେହ ଶୀତେଇଲା । ନୂଆଣିଆ ଖରାବେଳେ କେହି କୁଆଡେ ନ ଥାନ୍ତି । କାହିଁ ଉପରେ ଶାଗୁଣା ଘେରା କାଟୁଥାନ୍ତି ।

ମୁଁ ରାସ୍ତା ଛାଡି ଶଗଡଦାଣ୍ଡା ଧରିଲି । ମାମୁଁ ଘର ସେ ମୁଣ୍ଡିଆ ତଳେ ଦିଶୁଥାଏ । ଧାଡି ଧାଡି ନଡିଆ ଗଛ ଦୋହଲୁଥାଏ ପବନରେ । ମୋତେ ପଇଡ ନେଇ ଫେରିଆସିବାକୁ ହେବ । ବୋଉ ପଇଡ ପିଇଲେ ତା' ରୋଗ ଭଲ ହେବ । ସେ ମୋ' ବାଟକୁ ଅନେଇଁ ବସିଥିବ । ମୁଁ ପୁଣି ଧାଇଁଲି । ଘରଫେରନ୍ତା ଗାଈଗୋଠରୁ ବାଛୁରୀଗୁଡିକ ମୋତେ କାନଡେରି ଚାହିଁଲେ । ଲାଞ୍ଜ ଟେକି

ହୁରୁଡିଗଲେ କିଏ କୁଆଡେ ।

ମୁଁ ଗାଁମୁଣ୍ଡରେ ଯାଇ ଥମିଲି । ଟାଉଟାଉ ଚାଲିଲି ଏକମୁହାଁ । ମାମୁଁ ଘର ଆଗରେ ଗୋଟେ ପଥର ବେଦି । ସେଇଟା କୋଉ କାଳୁ ଅଛି । ସେଇ ବେଦିରେ ବୋଉ ବିବା ହେଇଥିଲା ବୋଲି ଅଜା କହୁଥିଲେ । ବଡମାମୁଁ ବ୍ରତ ହେଇଥିଲେ ପଚାଶ ବର୍ଷ ତଳେ । ବେଦି ଉପରେ ଖୁଣ୍ଟିକୁ ଆଉଜି ମାମୁଁ ବଡୁଆରୁ ପାନ ଭାଙ୍ଗି ଖାଉଥାନ୍ତି । ମୋତେ ଦେଖି ଛନକା ହେଲାପରି ପଚାରିଲେ, "କିରେ ପୁଅ, ତୁ କୁଆଡେ ଆସିଲୁ ? ଏକୁଟିଆ କେମିତି ଆସିଲୁ ? ନାନା ବୋଉ କାହାନ୍ତି ?"

ମୁଁ ବେଦିର ପାହାଚ ଉପରେ ଲଥିକିନା ବସିପଡି ନିଶ୍ୱାସ ମାରି କହିଲି, ମୁଁ ଦୁଇପୁଞ୍ଜା ପଇଡ ନେଇ ଗଲେ ବୋଉ ପିଇବ । ତା'ର ଚେତା ବୁଡିଯାଇଥିଲା । ସେ କିଛି ଖାଇ ନାହିଁ – ସେମିତି ଶୋଇଚି ।

ମାମୁଁ ଧଡପଡ ଉଠି ଡାକ ପକେଇଲେ । ଚାହୁଁ ଚାହୁଁ ସମସ୍ତେ ରୁଣ୍ଡ ହୋଇଗଲେ । ବୋଉକଥା ସମସ୍ତଙ୍କୁ ଥରେ ଥରେ ମୁଁ କହିଗଲି । ସମସ୍ତେ ବୋଉକୁ ଏତେ ଭଲପାଆନ୍ତି; ବୋଉ ଦେହବ୍ୟସ୍ତ କଥା ଶୁଣି ସମସ୍ତେ ଏତେ ଦୁଃଖ କରୁଛନ୍ତି ଦେଖି ମୋତେ ଭାରି ଭଲଲାଗୁଥାଏ ।

ଜଣେ ଆଣି ନାଲି ନାଲି ପଇଡ ଦୁଇପୁଞ୍ଜା ଭାରକରି ଥୋଇଦେଲା । ମାମୁଁ କହିଲେ 'ଗଣିଆ'କୁ ମୋ' ସଙ୍ଗେ ପଇଡ ନେଇ ଯିବାକୁ । ମୁଁ ଅଡି ବସିଲି । ନା, ମୁଁ ଏକୁଟିଆ ନେବି । ବୋଉ ପାଇଁ ପଇଡ ଆଉ କିଏ ନେଇଗଲେ ମୁଁ ଆଉ କ'ଣ କଲି ? ଯେତେ ବଳେଇଲେ ମଧ ମୁଁ ଶୁଣିଲି ନାହିଁ ।

ପଇଡ ଭାରଟାକୁ ଟେକି ଧାଇଁ ବାହାରି ପଡିଲି । ମାମୁ ହାଁ ହାଁ କରୁଥାନ୍ତି...ଗଣିଆକୁ ଡାକ ପକଉଥାନ୍ତି...ମୋ ପଛେ ପଛେ ଯିବାକୁ ପାଟିକରି କହୁଥାନ୍ତି । ମୁଁ ଦୂରେଇଲି । ଗାଁ ପାରିହେଇଗଲି । ଶଗଡଦାଣ୍ଡରେ ଧାଇ ଧାଇଁ ଯାଉଥାଏ ।

ରଙ୍ଗମାଣ ଛୋଟ ପଇଡ । ହେଲେ ଦୁଇପୁଞ୍ଜା ପଇଡ ଭାରରେ ମୁଁ ନତଥତ ହଉଥାଏ । ଏ କାନ୍ଧରୁ ସେ କାନ୍ଧକୁ ବଦଳ କରୁଥାଏ । କାନ୍ଧ କାଟୁଥାଏ । ନିଃଶ୍ୱାସ ଧଇଁ ପେଲୁଥାଏ । ଝାଳ ଫିଟି ପଡୁଥାଏ କପାଳରୁ ।

ମୁଁ ବଡରାସ୍ତା ଧରିଲାବେଳକୁ ମାଛି-ଅନ୍ଧାର ବେଳ । ପଛକୁ ଚାହିଁଲି – କିଛି ଦିଶିଲା ନାହିଁ । ଖାଲି ମାମୁଁଘର ଗାଁର ମୁଣ୍ଡିଆଟା ଆକାଶରେ ଉହୁଙ୍କିଲା ପରି ଦିଶୁଥାଏ – ତା'ହେଲେ ମୁଁ ମୋ' ବୋଉ ପାଇଁ ପଇଡ ନିଜେ ନେଇଯିବି । ଗଣିଆ ବୋହି ଆଣିଥିଲେ ମୋର ଆଉ କ'ଣ ବାହାଦୂରୀ ହେଇଥାନ୍ତା ? ନନା ଅଳ୍ପ ହସି ଚାହିଁଥାନ୍ତେ ତାଙ୍କର ଅଣ୍ଡିରିପୁଅକୁ ଅବିଶ୍ୱାସରେ । – ହୁଁଃ, ସେ କଥା ହେଇପାରିବ ନାହିଁ । ମୁଁ ପାରିଲା ପିଲା । ମୁଁ ମୋ' ବୋଉର ବଳବନ୍ତ ପୁଅ ।

ଚାହୁଁ ଚାହୁଁ ଅନ୍ଧାର ହୋଇଗଲା । ଗଛରେ ଗଛ ମିଶିଗଲା । ମୋ' ନିଃଶ୍ୱାସ ମୋତେ ଦୋହରାଇ ହୋଇ ଶୁଭିଲା । ମୋ' ପାଦଶବ୍ଦ ମୋତେ ଗୋଡେଇଲେ ପଛରୁ । ପଇଡମାନେ ଖସ୍ ଖସ୍ ଚିଂ ଚିଂ ହୋଇ ଘଷିହେଲେ । କାନ୍ଧ ଜଳିଲା । ଗୋଡ ନତଥତ ହେଲା । ପେଟ ଭିତରେ

ସବୁ ନାଡ ଲେଉଟି ପଡିଲା । ଥରିଲା ମଝିଶିରା ହାତ ।

ଏ ଖଣ୍ଡକ ଯାଏଁ କେମିତି ? ମଶାଣି ପାରିହେବି କେମିତି ? ମୋ' ଆଗରେ ଥନଥନ ହୋଇ ଅନ୍ଧାର ନାଚିଲା । ପାଟି ଅଠା ଅଠା; ମୁଣ୍ଡ ଘାଉରେଇଲା ପରି ଗରମ । ଡରରେ ମୋ' କଲିଜା ତଣ୍ଟି ପାଖରେ ଆସି ବାଡେଇ ହେଲା । କରେ କ'ଣ ? ଭାବିଲି ଯୋଡି ଛାତି ଦୌଡିଯିବି । ଗୋଡ ଚଳିଲା ନାହିଁ ।

ବହୁ କଷ୍ଟରେ ଭିଡି ହୋଇ ଚାଲିଥାଏ । ମନେ ପଡିଲା କେମିତି ବୋଉର କାନି ନ ଧରିଲେ ବାଡିଆଡେ ଯାଉନଥିଲି । ରାତିରେ କେମିତି ବୋଉକୁ ନ ପାଇ ହାଉଳି ଖାଇ ଡାକ ଛାଡିଲି । ବୋଉ ଆସି ମୋତେ ଜାକି ଧରି ବୁଝେଇଲା । ନନା ଗାଉଁକିନା ବିଧାଟାଏ ବସେଇଲେ ପିଠିରେ । ମୁଁ ସୁକୁସୁକୁ ହେଇ କିଛି ବେଳ କାନ୍ଦିଲି । ବୋଉ ପାଖରେ ଥିଲା ବୋଲି ଦମ୍ଭ ଲାଗିଲା । ଶୋଇଗଲି ।

ଏ ପଇଡ ନେଲେ ବୋଉ ପିଇବ । ତା' ଦିହ ଭଲ ହେଇଯିବ । ସକାଳୁ ଗାଧେଇସାରି ଅଟ୍ଟ ନଇଁ ଓଦାବାଳକୁ ଗାମୁଛାରେ ଝାଡିବ । ମୋତେ ଖାଇବାକୁ ଦେବ କେତେ ଦରବ । – ଯା ଭିତରେ ମୁଁ କିଛି ବାଟ ପାରିହେଇଗଲି ।

ମୋ ପାଦ ତଳୁ କ'ଣଟାଏ ଫଡ୍‌କିନା ଉଠିଗଲା । ମୁଁ ଲଡବଡେଇ ଗଲି । ମେଞ୍ଚା ହେଇ ଗଡିଗଲି ରାସ୍ତା ଉପରେ । ମୋର ମନେପଡିଲା ସେଇଟା ଭୂଇଁପେଚା । ଆଉ ଥରେ ନନାଙ୍କ ସାଙ୍ଗରେ ଗଲାବେଳେ ରାତିରେ ତାକୁ ଦେଖିଥିଲି । ତଳେ ପଡି ମୋତେ କାନ୍ଦ ମାଡିଲା । ବାହାରପାଣି ଦେଖେଇଲା । କରେ କ'ଣ ? ନିର୍ଜନ ମଶାଣି । ସେଇଠି ଧୋବ-ସରସର ଭୂତମାନେ ଆତଯାତ ହେବେ । ସେ ଗଛ ଉପରୁ ବୋଝ ବୋଝ ବାଲି ବର୍ଷା ହେବ । ଝାଙ୍କଲାମୁଣ୍ଡ ତଳକୁ ଓହଳେଇ ସାଉଁ ସାଉଁ ହେଇ କଳାଭୂତ ମାଡିଆସିବ । ମୋ' ବୋଉକିଲୋ !... ମୁଁ ଗେଁ ଗେଁ ହେଇ କାନ୍ଦିଲି । ଭୟରେ ପାଟି କରି ପାରୁ ନଥାଏ ।

ଅଣ୍ଡାଳି ପାଇଲି ପଇଡ ଭାରଟାକୁ । ପଥର ପରି ସେ ଘୁଞ୍ଚିଲା ନାହିଁ । ଘୋଷାରିଲେ ସୁଦ୍ଧା ଚହଁଲା ନାହିଁ । ବହୁ କଷ୍ଟରେ ତାକୁ ମାଳ ପକାଇଲା ପରି ବେକରେ ପକେଇ କୁନ୍ଥେଇ କୁନ୍ଥେଇ ରହିଲା - ମୋ' ବେକଷଣ୍ଢା ମାଡିପଡୁଥାଏ । ଗୋଡ ଘୁଞ୍ଚୁ ନ ଥାଏ । ବୋଉ ମନେପଡିଲା – ତା'ର ସେ କଅଁଳ ଆଖି, ଦାଉ ଦାଉ କପାଳ, ପାନଖିଆ ପାଟି, ସେ ଛୋଟ କଳାଜାଇ । ମୁଁ ତଗଡଗ କେତେ ପାହୁଣ୍ଡ ଆଗେଇଲି ।

ଭୟରେ ଡାକିଲି ଜଗନ୍ନାଥଙ୍କୁ । ବୋଉ ସେମିତି ଡାକେ । ଡାକିଲି ବାରାହୀ ଠାକୁରାଣୀଙ୍କୁ । ନନା ସେମିତି ଡାକନ୍ତି ।... ଦିନେ ଶିବ, ଯଦୁଆ, ଗୋକୁଳି ସାଙ୍ଗରେ କ୍ଷେତଉଠିଆ ଶୀତ ଦିନେ ଧାନ କିଆରିରେ ଖୋଜି ଖୋଜି ମୁଁ ଗୋଟେ ଦିଅଁ ବାହାର କରିଥିଲି । ହୁଟା ଦେହରେ ସେ ବାରି ହୋଇ ଦିଶୁଥାନ୍ତି । ମୁଁ ମୋ' ସାଙ୍ଗମାନଙ୍କୁ ଦେଖେଇଦେଲି ତାଙ୍କ ମୁଣ୍ଡ, ହାତ, ଗୋଡ, ପାଟି, ଦାନ୍ତ । ସେମାନେ ଗଦା ଗଦା ମଣ୍ଡା, ଧୁତୁରା, କନିଅରଫୁଲ ଆଣି ଗଦେଇଲେ । ପୁରୁଣା ବଟା ବାଉଁଶରେ ଦେଢହାତ ଉଚ୍ଚର ମଣ୍ଡଣି ଦେଉଳ ତୋଳା ହେଲା । ଘରମାନଙ୍କରୁ ଭୋଗ ଆସିଲା ।

ବାଟରେ ଆଣିଲାବେଳକୁ ସେଥିରୁ ନଡିଆପାଚିଯାକ ବାଛି ଖାଇ ଦେଇଥିଲା । ମୁଁ ତାକୁ ଦୂରରୁ ଦେଖି ଦେଇଥିଲି । କହିଲି ଯେ ମୁଁ ଧାନ ବଳରେ ଜାଣିଛି ସେ ମୁଆଁ ଅଇଁଠା । ସେ ଡରିଯାଇଥିଲା । ମୁଁ ସେଇ କ୍ଷେତ ହୁଡାର କାଦୁଆ ଦିଅଁଙ୍କୁ ମଧ ଡାକ ପକେଇଲି ।

ସେତେବେଳେ ମୋତେ କିଏ ଟିପ ମାରିଦେଇଥିଲେ ମୁଁ ପଡିଯାଇଥାନ୍ତି । ହାଣି ଦେଲେ ମୋ' ରକ୍ତଯାକ ପାଣି ହୋଇ ବୋହିଯାଇଥାନ୍ତା । ତଥାପି ମୁଁ ସେ ପଇଡ ଦି'ପୁଞ୍ଜାକୁ ଜାବୁଡି ଧରିଥାଏ । ସେଇ ଚିକ୍‌କଣ କାକର ଭାରି ଗୋଟାଳି ଗୁଡିକ ମୋତେ ଦିଅଁ ପରି ଲାଗୁଥାନ୍ତି । ସେଇ ମୋତେ ଦମ୍ଭ ଦେଉଥାନ୍ତି ।

ମୁଁ ନାଳ ପାରିହେଇଗଲି । ଆମ୍ବତୋଟା ପାରିହେଇଗଲି । ପଛରୁ କିଏ ପେଲିଦେଲା ପରି ଲାଗୁଥାଏ । କିଏ କଥା କହିଲା ପରି, ହସି ଦେଲାପରି ଶୁଭୁଥାଏ । ମୋ' ଉପରେ ମଡେଇ ହେଇଗଲା ପରି ଡର ମାଡୁଥାଏ । ମୁଁ ଆସି ଗାଁମୁଣ୍ଡରେ ପହଞ୍ଚିଲି । ପାଟି ତୁଣ୍ଡ ଶୁଭିଲା । ମୁଁ ଧାଇଁଲି । ସେଇଆଡୁ ଗୋଟେ ହାରିକିନ୍ ଧରି ବଡ ଖେପା କାଢି କିଏ ଜଣେ ମାଡିଆସୁଥାଏ । ପାଖକୁ ଯାଇ ମୁଁ ଦେଖିଲି 'ନନା' ।

ହାରିକିନ୍ ଟେକି ସେ ଅନେଇଲେ । କହିଲେ, "ଓହୋ, ଏତେ ବେଳଯାଏଁ କ'ଣ କରୁଥିଲୁ କିରେ ଛୋକାର ! ତୁ ପଇଡକୁ ଆଣୁଥିଲୁ ନା ତତେ ପଇଡ ଆଣୁଥିଲା ? ଆଣ୍, ମତେ ସେ ପଇଡ ଦେ ।"

ମୁଁ ସେ ପଇଡ ଆଣିବାକୁ ଶହେ ଥର ମରିଚି; ଶହେ ଥର ଜନ୍ମିଚି । ବୋଉ ମୋତେ ଶହେ ଥର ଜୀଆଇଚି । ମୁଁ ଏତେ ବାଟ ଆଣିଲା ପରେ ମୋ'ଠୁଁ ନନା ଝିଙ୍କିନେଇ ଏ ପଇଡ ଥୋଇବେ ବୋଉ ପାଖରେ ? ଅସମ୍ଭବ । ମୁଁ କଟମଟ କରି ମୁଠେଇ ଧରିଲି ଯାଉଁଳି ପଟକୁ । ନନା ଗୋଟେଥର ଝିଙ୍କିଲେ । ମୁଁ ଓଟାରି ହେଇଗଲି । ମୋ' କାନ୍ଧରୁ ପଇଡ ଘୁଞ୍ଚିଲା ନାହିଁ । ମୋତେ ଭାରି ଖୁସି ଲାଗିଲା । ମୋ' ବୁକୁ ପୂରିଗଲା ।

ମୁଁ ଆଗରେ ଆଗରେ ଧାଇଁଗଲି । ନନା ହାରିକିନ୍ ନେଇ ପହଞ୍ଚିଲା ବେଳକୁ ମୁଁ ପଇଡତକ ବୋଉର ଖଟ ପାଖରେ ଥୋଇ ହାଲିଆରେ ସଁ-ସଁ ହେଉଥାଏ । ଅଥୟ ହୋଇ ପାଦ ଘୁଞ୍ଚାଉଥାଏ ଆଗପଛ । ବୋଉକୁ ଚାହିଁରହିଥାଏ । ବୋଉ ମୁହଁଟି ଲହୁଣି ବୋଳିଲାପରି କାନ୍ଦ କାନ୍ଦ ।

"ମୁଁ ମରିଯାଉଥାଏ ମୋ' ଧନ ! ମୋ' ପାଇଁ କେତେ କଷ୍ଟ ସହିଲୁ ?" ନନା ହାରିକିନ୍ ନେଇ ଆସି ପହଞ୍ଚିଲେ । କାନ୍ଥ କୋଣରୁ ଗୋଟେଇଲେ କଟୁରି । ମୁଁ ଖୁସି ହେଇଗଲି । ବୋଉ ମୋ' ଆଣିବା ପଇଡ ପିଇବ ।

ନନା ଗୋଟେ ପଇଡ ଧରି ଖେଟେ ଛିଆଇଦେଲେ । ମୁଁ ଆଣ୍ଠୁମାଡି ବୋଉ ପାଖରେ ବସିଥାଏ । ବୋଉ ହାଣ ଖାଇଲା ପରି ରଡି ଛାଡିଲା । ନନା ହାଉଳି ଖାଇଗଲେ । ବୋଉ ମୋ' ବେକ ଷଣ୍ଢାରୁ ହାତ କାଢି ନେଇ ଆଲୁଅରେ ଦେଖୁଥାଏ । ତା' ହାତଯାକ ରକ୍ତ ସାଲୁବାଲୁ । ମୋ' ବେକମୁଣ୍ଡାଯାକ ରକ୍ତ । ବୋଉ ଚିହିକି ଚିହିକି ରଡିଛାଡିଲା । ପଡିଶାଘରୁ ଲୋକ ଧାଇଁଆସିଲେ ।

କିଛି ବୁଝାଗଲା ନାହିଁ କିଛି ସମୟ । ...ରକ୍ତ ? କିଏ ହାଣିଲା ? କେମିତି ହାଣିଲା ? ମୁଁ ମଧ ଛାନିଆ ହେଇଯାଇଥାଏ ରକ୍ତ ଦେଖି । ସତେ କ'ଣ କଟୁରିରେ ନନା ମୋତେ ହାଣିଦେଲେ; ମୁଁ ଜାଣିପାରିଲି ନାହିଁ ।

କେତେବେଳକୁ ଅବସ୍ଥା ଶାନ୍ତ ପଡିଲା । ପଇଡ ଭାର ବୋହିବାରୁ ସେ ବାଣୀ-ଦଉଡି ମାଉଁସକୁ ଖାଇ ଯାଇଚି । ହାଣି ହେଇଯାଇଚି ବେକମୁଣ୍ଡା । ସମସ୍ତେ ତେଣିକି ମୋ' ସେବାରେ ଲାଗିଗଲେ । ନନା ନିଜେ ଚିନି, ହଳଦି ଏକାଠି କରି ଘା' ଭିତରେ ଦେଲେବେଳେ ମତେ ଲାଗୁଥାଏ ଇନ୍ଦ୍ରପଦ ପାଇଲାପରି । ମୁଁ ବୋଉ କୋଳରେ ବସିଥାଏ । ନନା ପୋଛି ଦଉଥାନ୍ତି ମୋ' ଦେହରୁ ଝାଳ, ବେକ ଷଣ୍ଢାରୁ ରକ୍ତ । ସମସ୍ତେ ମୋର ପ୍ରଶଂସାରେ କୁରୁଳୁଥାନ୍ତି । ମଝିରେ ମଝିରେ ବୋଉ ମୋ' ଗାଲ ଆଉଁସି ଦଉଥାଏ । ମୋ' ଅଲରା ବାଳ ଟେକି ଦଉଥାଏ । ସମସ୍ତଙ୍କ ଆଗରେ ସୁନାକୁଢପରି ଗଦା ହୋଇଥାଏ ଦୁଇପୁଞ୍ଜା ପଇଡ । X X X

ଘା' ଉଭାରୁ ଦିନେ ବୋଉ ତା' ବେକରୁ ହାର ଓହ୍ଲେଇ ଦେଲା । ଦୁଆର ମୁହଁରେ ଆଉଜି ରହି ଲୁହ ସରସର ଆଖିରେ ଚାହିଁ ରହିଲା । ନନା ବିରସ ମନରେ ମୋ' ହାତମୁଣାଟିକୁ ଧରି ମୋ' ସାଙ୍ଗେ ସାଙ୍ଗେ ବସ୍‌ଷ୍ଟାଣ୍ଡ ପର୍ଯ୍ୟନ୍ତ ଚଳେଇ ଦେଇଗଲେ । ମୋ' ପିଠିରେ ଆସ୍ତେ ହାତଟିକୁ ରଖି ଗାଡିରେ ଚଢେଇ ଦେଲେ । ତାଙ୍କ ରଙ୍ଗୀଲା ଆଖି ଲୁହରେ ଟଳମଳ ହେଉଥାଏ । ମୁଁ ତାଙ୍କର ସେ ରୁଢିଆ ମୁହଁଟିକୁ ଚାହିଁ ରହିଥାଏ । ସେ କଣ୍ଡକ୍‌ଟରର ହାତ ଧରି କହିଲେ, "ପିଲା ଲୋକ; ଏକୁଟିଆ ଘର ଛାଡି ପ୍ରବାସ ଯାଉଛି, ଟିକିଏ ଦେଖିବ ।"...

ମୁଁ ଆଉ ନନାଙ୍କୁ ଦେଖିନାହିଁ । ମୁଁ ବନାରସରୁ ଆସି ପହଞ୍ଚିଲା ବେଳକୁ ବୋଉ ଧଳା କନ୍ତା ଖଣ୍ଡିଏ ପିନ୍ଧି ଡବଡବ ଆଖିରେ ମୋତେ ଚାହିଁ ରହିଲା ଗାଈଟିଏ ପରି ।...ନନା ଚାଲିଗଲେ । କାହିଁକି ? କେମିତି ? ବୋଉ କଥା କହି ପାରିନାହିଁ । ତା' ଓଠ ଥରିଛି । କଳାଜାଇଟି କେବଳ ପୁରୁଣା ଦିନର ସାକ୍ଷୀ ପରି ସେଇଠି ରହିଚି ଏଯାବତ୍ ।

ବୋଉକୁ ଏକୁଟିଆ ଦେଖି ମୁଁ ବି ସହି ପାରିନାହିଁ । ମୋର ମନେ ପଡୁଛି ସେଦିନ ।...ନନା ଗୋଡ ଲମେଇ ବସିଚନ୍ତି । ବୋଉ ଚିନାବାଦାମ ଛଡେଇ ନାଲି ଚୋପା ଫୁଙ୍କି ବଡ ଯତ୍ନରେ ଧଳା ଧଳା ମଞ୍ଜି ତାଙ୍କ ହାତକୁ ବଢେଇ ଦେଉଚି । ନନା ମାଞ୍ଜୁ ମାଞ୍ଜୁ ଚୋବେଇ ତାକୁ ଅଳ୍ପ ହସି ହସି କ'ଣ ସବୁ କହୁଛନ୍ତି । ଆଉ ଦିନେ...ସେ ତେଲ ଘଷି ଦେଉଛି ନନାଙ୍କ ଦେହରେ । ତାଙ୍କ ପିନ୍ଧା କୁଞ୍ଚ ପରି ରଖିଦେଉଛି...ଦିଅଁ ସଜ ମାଜି ଉଗୁଡେଇ ଦେଉଛି... । କେତେ ଯତ୍ନରେ ସତେ ସେ ନନାଙ୍କୁ ପାଳିଥିଲା । କେତେ ଯତ୍ନରେ ମୋତେ ପାଳିଥିଲା । ତା' ଶରୀରର ଦୁଇଟି ରକ୍ତଧାର – ନନା ଆଉ ମୁଁ । ଗୋଟିଏ ଏମିତି ସତେ ଛିଣ୍ଡି ଗଲା ।

ବୋଉକୁ ଆଣି ମୁଁ ବିରାଟ ସରକାରୀ କୋଠାମାନଙ୍କରେ ରଖିଛି । କେତେ କେତେ ଥାନ ଗାଡିରେ ନେଇ ବୁଲେଇଛି । କଞ୍ଜିବରମ୍ ପାଟ କିଣି ଦେଇଛି । ଏବେ ବର୍ଷାଦିନେ ଘରର ସାତଜଣ ପିଅନ୍ ଛକେର ଉପରକୁ ଚାହିଁ ରହିଥାନ୍ତି । ସୂର୍ଯ୍ୟ ଦେଖିଲେ ଧାଇଁଯାଇ ମା'ଙ୍କୁ କହିବେ ।...ମୋ

ପାଇଁ ଭାତ ବଢା ହେଲେ ବୋଉ ପାଖରେ ବସିରହେ । ଛୁଟିଦିନମାନଙ୍କରେ ସାଗୁକ୍ଷୀରୀ ନିଜେ କରି କାଚ ଗିନାରେ ଘୋଡେଇ ରଖିଥାଏ ।

ବୋଉ କିନ୍ତୁ ଆଉ ପାନ ଖାଉନାହିଁ । ତା' ପାଟିରୁ ପିକ ବୋହୁନାହିଁ । ପାଟିରେ ପାନ ଖଦା ମହକୁ ନାହିଁ । ମୋତେ ଯେତେବେଳେ ସେ ଏକୁଟିଆ ପାଇଲେ ଖାଲି ଗୋଟିଏ ପଦ ସେ ରଟି ଲାଗିଛି – "ଘରକୁ ବୋହୂଟିଏ ଆଣ୍ । – ବୋହୂଟିଏ ଆଣ । ବୋହୂ ଆଣିଲେ, ମୁଁ ତା' ହାତରେ ସବୁ ସମର୍ପି ଦେଇ ନିଶ୍ଚିନ୍ତ ହେଇଯିବି ।"

କାହିଁକି ? – ମୁଁ କ'ଣ ତା' ପାଇଁ ଭାର ହେଇଛି ? ମୁଁ କାହିଁକି ବୋହୂଟାଏ ଆଣିବି ? – କ'ଣ ପ୍ରୟୋଜନ ? ମୁଁ ଯେତେ ବୁଝେଇଲେ ବୋଉ ଜମା ବୁଝୁନାହିଁ । ଖାଲି କାନ୍ଦୁଛି । କହୁଛି, "ତୋ' ନନା ଆଉ ଆସିବେ ନାହିଁ । ତୁ ତାଙ୍କୁ ଫେରାଇ ଆଣି ପାରିବୁ ନାହିଁ । ବୋହୂଟିଏ ଆଣ୍ । ମୋର ସବୁ ସାଧ ମେଣ୍ଟିଯିବ ।"

ମୁଁ ତଥାପି ବୁଝିପାରୁ ନାହିଁ କାହିଁକି !!



## ସୋଦର

କମ୍ବୁ ଡ୍ରାଇଭରକୁ ଆପଣ ଜାଣିବାର କୌଣସି ଉପାୟ ନାହିଁ । ସେ ସେଭଳି କୌଣସି ବିଖ୍ୟାତ ଲୋକ ମଧ ନୁହେଁ । ଆବୁଆ କମ୍ବୁପାଣି ମିଶ୍ର ଏକନମ୍ବର ମଦୁଆ, ମନମୋଟିଆ, ଗୁମାନୀ ଡ୍ରାଇଭର । ହେଲେ ଗାଡି ଖଣ୍ଡିକ ଚଳାଏ ରଜା ମାର୍ଗେ । ଯେତେ ହୁରୁଡା, ଗାଉଁଗାଇଁଆ, ଧଡଧଡିଆ ଗାଡି ହେଇଥାଉ, କମ୍ବୁ ତାକୁ ଥରେ ସାଉଁଳେଇ ଦେଲେ ସାତଟା ଦିନ ଭିତରେ କେମିତି କେଜାଣି ସେଇଟା ବେମ୍‌ଜାନ୍ ହେଇଯାଏ । ସେ ଯନ୍ତ୍ର-କାଉଁରୀ ସାଧିଚି । ଗାଡିର ସହସ୍ରେ ଶିରା କଥା ସେ ଜାଣେ । ତା' ଖଞ୍ଜା, ଗଣ୍ଠି, ହାବଭାବ, ବୋଲି, କୁହାଟ ସବୁ ସହିତ ତା'ର ପରିଚୟ ଅଛି । ସେ ତା' ଆତ୍ମାକୁ ଚିହ୍ନେ । ଗାଡି ମାତ୍ରେ ତାକୁ ଭଲଲାଗେ । ଡ୍ରାଇଭର ମାତ୍ରେ ତା'ର ସାଙ୍ଗ । କମ୍ବୁ କହେ ଯେ ଅସଂଖ୍ୟ ଗାଡି ଆଉ ଡ୍ରାଇଭର ମିଶି ଗୋଟାଏ ଜଗତରେ ଥାଆନ୍ତି । ସେଠିକୁ ଯିବା ବା ତାକୁ ବୁଝିବା ଅନ୍ୟମାନଙ୍କ ପକ୍ଷେ ସମ୍ଭବ ନୁହେଁ ।

ପାଞ୍ଚ ନମ୍ବର ବଡ ରାସ୍ତା ପାଇଗଲେ ସେ ଥରେ ଝୁଙ୍କି ହୋଇ ସଜ ହୋଇଯାଏ । ସଳଖି ଯାଏ ତା' ଅଣ୍ଟା, ହାତ, ଆଉ ଦୃଷ୍ଟି । ତା'ପରେ ତା' ଆଖିପିତୁଳା ଆଉ ହଲେ ନାହିଁ । ଗାଡି ଉଡୁଥାଏ ପବନ ମାର୍ଗେ । ପଛରେ ଟୋକା ଅଫିସର ପବନ ହାବୁକରେ ଆକଟା ଖାଇ କୁରୁଳି ଉଠନ୍ତି । ଚନ୍ଦାମୁଣ୍ଡିଆ ଡଗକୁଳା ଦରବୁଢାମାନେ ଆଖି ତରାଟି ଏକାଲୟରେ ଗାଡିର ବେଗ ଯନ୍ତ୍ରଟିକୁ ଚାହିଁ ରହିଥାନ୍ତି । କମ୍ବୁକୁ କିଛି କହି ଚମକାଇ ପାରନ୍ତି ନାହିଁ । ଉଠି ଆସୁଥିବା କଲିଜାଗୁଡିକୁ ତଣ୍ଟିପାଖରୁ ଢୋକି ଢୋକି କୌଣସି ପ୍ରକାରେ ସେମିତି ଚିପେଇ ବସିଥାନ୍ତି । ଡାକବଙ୍ଗଳାରେ ଗାଡି ଆସି ଠିଆହୋଇଗଲେ କୁମ୍ଭ ଉପରେ ସମସ୍ତେ ପ୍ରଶଂସା ଅଜାଡନ୍ତି । ବୁଢା ଅଫିସ୍‌ର ରାଗରେ ଟମ୍‌ଟମ୍ ହୋଇ ଓହ୍ଲେଇ ଯାଆନ୍ତି କେବଳ – 'ହୁଁଃ! ଇଏ ଗାଡି ଚଳେଇବ ବୋଲି ମଣିଷ ମରିବ ନା କ'ଣ ?' ସେଥିପାଇଁ କମ୍ବୁ କେତେଥର ତାଗିଦା ପାଇଲାଣି, ତା'ର କିନ୍ତୁ ହୋସ୍ ନାହିଁ କି ଖାତିର୍ ନାହିଁ । ଆୟତ୍ତ ବି ନାହିଁ । ଗାଡି ଚଳେଇବା ତା'ର ତ' ଖାଲି ବୃତ୍ତି ନୁହେ !

ଦିନେ ଏମିତି କାହିଁ ମୟୂରଭଞ୍ଜର ଯୋଷିପୁରରେ କମ୍ବୁପାଣି ସାହିବକୁ ଗସ୍ତରେ ନେଇ ବୁଲଉଥାଏ । ଖବର ପହଞ୍ଚିଲା ଯେ ତା' ରୋଗୀଣା ମାଇପ ଅଣହେଳାରେ ମରିଗଲା । ସେ ଗୁମ୍ ଖାଇଗଲା କିଛି ସମୟ । ତାକୁ ବୁଝାଶୁଝା କରି ବସ୍‌ରେ ଟିକଟ କାଟି ପଠେଇଦେଲେ । ସମସ୍ତେ

ମିଶି କମ୍ପୁପାଣିକୁ କିଛି ପଇସା ଦେଲେ । କିଛି ଛୁଟି ମଞ୍ଜୁର କରିଦେଲେ । କଥା କହି ବୋଧେଇଲେ; କିନ୍ତୁ ତାରି ଭିତରେ ଦାମିଆକୁ ହେଡ୍ ଡ୍ରାଇଭର୍ କରିଦେଲେ – କମ୍ପୁ ନିଶା ଖାଏ, ଜୁଆ ଖେଳେ – ତା' ଚରିତ୍ର ଖରାପ – ସେ କୁଆଡେ ଗାଡି ଚଳେଇ ଜାଣେ ନାହିଁ ।

କମ୍ପୁର ବ୍ରହ୍ମରେ ନିଆଁ ଲାଗିଗଲା । ସେ ଶୁଧଘରୁ ଯାଇ ଅଫିସରେ ପହଞ୍ଚିଲା ତମ୍‌ତମ୍ ହେଇ । ପାଟିକଲା । କାନ୍ଦିଲା । ହାତ ଗୋଡ ଧରି ନେହୁରା ହେଲା । ଶେଷକୁ ଯାହା ମନ ତାହା ଶୋଧିଲା – ବେଇମାନ୍ ଶଳା ଦାମିଆ, ଗଲା କୁଆଡେ ସେ କୁକୁର ? ତାକୁ ପାଇଲେ ଏଇଠି ଖୁନ୍ କରିବି । ସେ ନିଶ୍ଚେ କମ୍ପୁ ନାଁରେ ଖଚମିଛ କହି ସମସ୍ତଙ୍କୁ ବିଗାଡି ଦେଇଛି ।

"...ବେ, ତୁ କ'ଣ ହେଡ ଡ୍ରାଇଭର ? ନାଲାଏକ୍, ବତା ତୋ ବୟସ କେତେ ! ତୁ ପରା ମୋ' ସାନଭାଇଠୁ ଆହୁରି ସାନ ! ତୁ କେମିତି ମୋ' ଉପରକୁ ଯିବୁ ? ତୁ ଖଡି ଛୁଇଁବା ବେଳୁ ମୁଁ ଡ୍ରାଇଭର । ମୁଁ ଶାଲା, ଜନ୍ମରୁ ଡ୍ରାଇଭର ! ତୁ କି ଜାଣୁ ଗାଡି କଥା ? କ'ଣ ନା, ମୁଁ ଗାଡି ଚଳେଇ ଜାଣେନାହିଁ ? ପଚାର ସେ ଗାଡିକୁ; ସେଇ କହିବ କିଏ କେମିତି ଚଳାଏ ।"

କିନ୍ତୁ ଦାମୋଦର ହୋତା ସେଇଦିନ ହେଡ୍ ଡ୍ରାଇଭର ହେଲା, ଯେଉଁଦିନ କମ୍ପୁ ତା' ସ୍ତ୍ରୀର ଦଶା ଖଟିବାକୁ ଶୀତଳ ପଣା ଯୋଗାଡ କରୁଥାଏ । ହଜାରେ ଛଟପଟ ହେଲେ କ'ଣ ହେବ ? ସେଇ ତ' ନିଜେ ଦାମିଆକୁ ଆଣି ଆସିଥିଲା ସରକାରୀ ଚାକିରି ପାଇଁ । ସେତେବେଳକୁ କମ୍ପୁ ବାରବର୍ଷ ଗାଡି ଚଳେଇ ପୋଖତ ହେଇ ସାରିଥାଏ । ଦାମିଆକୁ ଜଙ୍ଘ ଉପରେ ବସେଇ ଗାଡିଚଳା ଶିଖେଇଥାଏ । କେମିତି ବୋଝେଇ କାଠ ଟ୍ରକ୍‌କୁ ବାଟ ଛାଡି ଦେବାକୁ ହୁଏ, କେମିତି ଆଗ ଗାଡିକୁ ଆଖିମାରି ଦେଇ ଟପି ଯିବାକୁ ହୁଏ, ପାଣି ସରିଗଲେ କ'ଣ ହୁଏ, ତେଲ ସରିଗଲେ କ'ଣ ହୁଏ – ଏ ସବୁ ମନ୍ତ୍ର ତାକୁ ଗୋଟି ଗୋଟି କରି ପଢେଇ ସାରିଥାଏ । ଦୁହେଁ ପାଇଲେ ଚାକିରି । ଦାମିଆ କାଗଜପତ୍ର ଆଣି ଆସିଥିଲା, ସେଇଠି ସାଙ୍ଗେ ସାଙ୍ଗେ ସଇ କରିଦେଲା । କମ୍ପୁ ଘରକୁ ଯାଇ ଆସୁ ଆସୁ ସୋମବାର ହେଇଗଲା । ଏତିକିରେ କ'ଣ ନା, ପ୍ରଳମ୍ବ ଅଶୁଦ୍ଧ ହେଇଗଲା ! ଚାକିରିରେ ଥିବାଯାକେ କମ୍ପୁ ଦାମିଆଠୁ ପଛେଇଗଲା ଦୁଇଦିନ । ଏ ବେହିଆ ଅଫିସର ଯାକ ଖାଲି ଅନେଇଲେ ସେ ତାରିଖଟାକୁ – କିଓ, କମ୍ପୁପାଣି ମିଶ୍ରର ବୟସ ତୁମକୁ ଦିଶୁନାହିଁ ? ନାଁ ଗାଡି ଚଳେଇବା ତୁମକୁ ଦିଶୁନାହିଁ ? ପାଣିରେ ହଂସ ପହଁରିଲା ପରି ପରା ସେ ଗାଡି ଚଳାଏ ! – ଶେଷକୁ କହିଲ କ'ଣ ନା ସେ ଗାଡି ଚଳେଇ ଜାଣେ ନାହିଁ !

ରାଗ ଅଭିମାନରେ ଭାଙ୍ଗି ପଡୁଥାଏ କମ୍ପୁ । ତେବେ ଘୋସାରି ହେଇ କାମକୁ ନ ଗଲେ ନ ଚଳେ । ଯେଉଁ କାଳିଆ ଆମ୍ବାସାଡର ଗାଡିଟାକୁ ଭିତର ବାହାର ମାଜି ଘଷି ଶାଳବନ୍ଧା ଘୋଡା ପରି ସେ ପାଳିପୋଷି ରଖିଥିଲା, ସେଇଟା ଏବେ ଘାଏଁ କିନା ତା' ଆଗ ଦେଇ ଚାଲିଯାଉଛି । ତାକୁ ଛୁଇଁଦେବାକୁ ତା'ର ଅଧିକାର ନାହିଁ । ଡିକ୍‌କିର ହେଣ୍ଡଲ୍ ପୁଣି ଢିଲା ହେଇ ଖଣ ଖଣ ହେଲାଣି । ତାକୁ ଭିଡିଦେଲେ ତୁନି ପଡିଯାନ୍ତା । ଦାମିଆକୁ ଶୁଭୁନାହିଁ । ସେ ଜାଣି ପାରୁନାହିଁ । ସେ ପରା କାଲିକା ଟୋକା – ସେ କ'ଣ ବୁଝିବ ?

ଜିପ୍‌ଟା ଶିକାରୀ ଗାଡ଼ି । ମିଲିଟାରୀ ଗାଡ଼ି । ଖୁବ୍ ମାଡ ସହିପାରେ । ହେଲେ ଜିନିଷଟା ଜାତିଆ ନୁହେଁ । ନିଃଶବ୍ଦ ଚିକ୍‌କଣ ରାସ୍ତାରେ ଝାଇଁ ଝାଇଁ ବିଜୁଳି ପରି ପାରେଇ ଯିବାକୁ ଏ ଶଗଡ଼ିଆ ଚଉଖୁଣ୍ଟିଆ ଥୋକଡ଼ା ଗାଡ଼ିର ଯୁ' ନାହିଁ । କମ୍ବୁ ଆଖିରେ ଜିପ୍‌ଟା ଗାଡ଼ି ଜାତିରେ ଧାପେ ଊଣା । ତଥାପି ଗାଡ଼ି ମାତ୍ରେ ସେ ଭଲପାଏ । ଗାରେଜ୍ ପାଖକୁ ଦଶଦିନ ଧାଇଁ ଧାଇଁ ତା' ମାଲିକ ସାଙ୍ଗେ ଲାଗି ଲାଗି ସେ ଶେଷକୁ ଧୁଆଧୋଇ କରି ଯେତେବେଳେ ସେ ସତାବନ ଏକାଅଶୀ ନମ୍ବର ଜିପ୍‌କୁ ଅଫିସ୍ ହତା ଭିତରକୁ ଗଡ଼ାଇ ଆଣିଲା, ଅଧେ ଲୋକ ତାକୁ ଚିହ୍ନି ପାରିଲେ ନାହିଁ । ସମସ୍ତଙ୍କ ମୁହଁରେ ଆଖିରେ ପ୍ରଶଂସା ! କମ୍ବୁ ହାତ ଦେଲେ ପରା ମଲା ଗାଡ଼ି ଜୀଇଁଯିବ ! ତା' ଚେହେରା ବାଗେଇ ଯିବ ।

କମ୍ବୁ କିଛି ନ ଶୁଣିଲା ପରି ମୁହଁ ଫଣ ଫଣ କରି ଉପର ମହଲା ପାହାଚ ପାଖରେ କାନ୍ଥକୁ ଆଉଜି ବସିରହିଲା । ଏ ଶୁଖିଲା ପ୍ରଶଂସା ତା'ର କ'ଣ ହେବ ? ସେ ଏମିତି ଢେର୍ ଶୁଣିଛି । ଏଗୁଡ଼ାକ ସବୁ ପାକୁଆ ଅସମର୍ଥ କିରାଣି; ନ ହେଲେ ମଦୁଆ ଲାମ୍ପୁଆ ଅଫିସର । ଏମାନେ କ'ଣ ବୁଝନ୍ତି ? ସେ ଡାକି ଦେଲେ ତା' ଗାଡ଼ି 'ଓ' କରିବ । ପଚାରିଲେ ଉତ୍ତର ଦେବ । ଅନ୍ଧାରରେ ସୁଦ୍ଧା ବୋଲ ମାନିବ – ଏଇ ଯଥେଷ୍ଟ । ଗାଡ଼ି ବୁଝିବ ଯେ ସମଝଦାର ଡ୍ରାଇଭର ବସିଛି, ଯେ ତାକୁ ଭଲପାଏ । ତା'ର ସେତିକି ଲୋଡ଼ା । ସଞ୍ଜବେଳ ଦେଖି ନିଶାପାଣି ଟିକେ ମଧ ଲୋଡ଼ା । କମ୍ବୁ କିନ୍ତୁ ଏ ସବୁ ଶୁଖିଲା ପ୍ରଶଂସାକୁ ଖାତିର୍ କରେନା ।

ସେଦିନ ସଞ୍ଜବେଳେ କମ୍ବୁ ଜିପ୍‌କୁ ଗ୍ୟାରେଜ୍‌ରେ ଭର୍ତ୍ତିକରି ଖୁସି ମନେଇବାକୁ ସିଧା ଯାଇ ଖଟିରେ ହାବୁଡ଼ିଲା । ଫେରୁ ଫେରୁ ରାତି ଅନେକ । ଘରେ ଆଉ କିଏ ଅଛି କି ତାକୁ ଜଗିବାକୁ ?

ତା' ଆରଦିନ ସାନ ବାବୁଙ୍କର ଷ୍ଟେନୋ କହିଲେ, "କମ୍ବୁ, ତୁମ ଜିପ୍ ଗସ୍ତରେ ଯାଇପାରିବ ତ ?" କମ୍ବୁ ରାଗରେ କମ୍ପିଗଲା, କିନ୍ତୁ ହସିଦେଇ ପଚାରିଲା, "କୋଉଠିକି ?" – ମନେ ମନେ କହୁଥାଏ, 'ଆକାଶକୁ ନା ପାତାଳକୁ ?'

"ରାୟଗଡ଼ା ଗୁଣୁପୁର ହେଇ ଫେରିବ । ମୂଳରୁ ଶେଷ ଖାଲି ଘାଟି ରାସ୍ତା !"

କମ୍ବୁ ଅଳ୍ପକେ କଥା ଛିଣ୍ଡେଇ ଦେଲା । କହିଲା, "ଯିବା ।"

ଦୁଇଘଣ୍ଟା ଭିତରେ ତା'ର ପୁରୁଣାକାଳିଆ ଅଏଲ କ୍ଲଥର ମୁଣାଟିକୁ ଡାହାଣ କଡ଼େ ରଖିଦେଇ କମ୍ବୁ ଜିପ୍ ଗାଡ଼ିର କାଠୁଆ ଆଠଅଙ୍କିଆ ସିଟ୍‌ରେ ବସିଗଲା । ସାନ ସାହେବ ହସିଲେ । ପଛରେ ଆଉ ଦୁଇଜଣ ଏଣୁତେଣୁ କିଏ । ସାହେବଙ୍କ ଦରପାଚିଲା ନିଶ, ସିଗ୍ରେଟ୍‌ଖିଆ କଳା ଓଠ । ଡାଇରୀରେ ହାତ ରଖି କହିଲେ, "ଚାଲ ।"

ଚାବି ଖଟ୍‌କିନା ମୋଡ଼ୁ ମୋଡ଼ୁ ଗାଡ଼ି ଡାକିଲା, ଘାଏଁ । କମ୍ବୁ କାନେଇଲା ଜିପ୍‌ର ଖନ୍ ଖନ୍ ଡାକ । ଅନୁଭବ କଲା ଗାଡ଼ିର ଦୁରୁଦୁରୁ କମ୍ପ ! ତା' ଆଖି ଆଗରେ ସପ୍ନ ପରି ଦିଶିଗଲା କଳା ଆମ୍ବାସାଡର । ପଦ୍ମପେଡ଼ି ଭିତରେ ଭଅଁର ଗୁଞ୍ଜରିଲା ପରି ତା' ଇଞ୍ଜିନ୍‌ର ଆବାଜ । ନରମ ସ୍ଥିର ଗଦି । କମ୍ବୁର ବୁକୁ ଭାରି ନିଶ୍ୱାସଟିଏ ଆସ୍ତେ ତୋଳିହୋଇଗଲାବେଳକୁ ସାହେବ କହିଲେ, "ଟିକେ

ଶୀଘ୍ର ଯିବା, ତିନିଘଣ୍ଟା ଆଗରୁ ସାର୍ ବାହାରିଗଲେଣି । ଆମ ପାଇଁ ଯେମିତି ବେଶୀ ସମୟ ଅପେକ୍ଷା ନ କରନ୍ତି ।"

କମୁର ଭୂରୁ ଟେକି ହେଇଗଲା । ସେ କିଛି କହିଲା ନାହିଁ...ଓ, ଏଇ କଥା । ଦାମିଆ ତା'ହେଲେ ତିନି ଘଣ୍ଟା ଆଗରୁ ଆମ୍ବାସାଡର ନେଇ ଯାଇଛି ? ଆଚ୍ଛା, ଦେଖିଲେଗା ।

ଜିପ୍ କୋଡିଏ ମିନିଟ୍‌ରେ ଖୋର୍ଦ୍ଧା ପାରିହେଇଗଲା ।

ପଛରୁ ସାହିବକୁ ଶୁଣେଇଲା ପରି, କମୁକୁ ସୁହାଇଲା ଭଳି, କିରାଣି କଣ୍ଠରୁ ଶୁଭୁଥାଏ, 'କମୁ ଭଳି ଡ୍ରାଇଭର, ସାର୍, ଏ ରାଜଧାନୀରେ ଆଉ କେହି ନାହିଁ!'

ସାଢେ ଚରିଟା ସମୟ ହେବ । ନିରୋଳା ଜଙ୍ଗଲୀ ରାସ୍ତା । ସମସ୍ତେ ଢୋଳଉଥାନ୍ତି । କମୁ ସିଧା ରାସ୍ତା ଉପରେ ଦେଖିଦେଲା ବେଳକୁ ଆଗରେ ଆମ୍ବାସାଡର ଗାଡି । ଦେଖିବା ମାତ୍ରେ ସେ ଚିହ୍ନିଦେଲା । ଏ ଦାମିଆଟା ଡ୍ରାଇଭର ନାଁ ଶଗୁଡିଆ ? ତା' ହାତରେ ଗାଡିଖଣ୍ଡ ଗେଣ୍ଡା ହେଇଗଲାଣି ।

କମୁ ମୁଣ୍ଡକୁ ପିତ୍ତ ଚଢିଗଲା । ସେ ଦାବିଦେଲା ଗୋଡ । ଜିପ୍ ଝଣଝଣେଇ ଗଲା । ଘୁମେଇଲା ମଣିଷମାନେ ମଟମଟ ଚହିଁଦେଇ ପୁଣି ଢୋଲେଇଗଲେ । ଗାଡିଖଣ୍ଡ ଉଡିଲା ପବନ ବେଗରେ । ରାସ୍ତା ବି ସମତୁଲ, ସିଧା, ଅବାଧ ଆଉ ନିରୋଳା ! କମୁ ଏ ଚାନ୍‌ସ ଛାଡିବା ଲୋକ ନୁହେଁ । ହର୍ଣ୍ଣ ଟିପି ଦେଇ ସେ ଆଖିପିଛୁଳାକେ ଆମ୍ବାସାଡରଟାକୁ ଟପି ଆଗେଇଲା । ଧୂଳିରେ ପୋତି ହେଇଗଲା ପରାସ୍ତ ଗାଡି, ଆଉ ତା' ଟୋକା ଡ୍ରାଇଭର ।

...ହୁଁଃ ! ଇଏ ଚଳେଇବ ମୋ' ଆଗରେ ଗାଡି ! କମୁର ତେଜ ତା'ପରେ ବି କମିଲା ନାହିଁ । ସେ ସେମିତି ଜୋର୍‌ରେ ଜିପ୍‌ଟାକୁ ପ୍ରାୟ ଆଉ ଘଣ୍ଟାଏ ଚଳେଇଲା । ଯେତେବେଳେ ଅନେକ ସମୟ ଯାଏ ଦର୍ପଣରେ କୌଣସି ଗାଡିର ଚିହ୍ନ ଦିଶିଲା ନାହିଁ କମୁର ନାଡି ଶିରା ହୁଗୁଳିଲା । ଆସ୍ତେ ନରମିଲା ତା' ମୁଠା । ଘର ଦ୍ୱାର ଦିଶିଲା । ଟାଉନ୍ ଆସିଗଲା ।

ଡାକବଙ୍ଗଳାକୁ ଘାଇଁକିନା ଗାଡି ବୁଲେଇ ଦେଇ ପାହାଚ ପାଖରେ ଛପ୍‌କିନା ବ୍ରେକ୍ ଦାବି ଦେଲା କମୁ । ସମସ୍ତେ ଆଗକୁ ଝୁଙ୍କି ପଡିଲେ । ସାହିବ ଘଣ୍ଟା ଦେଖିନେଲେ । ମୁହଁରେ ଦିଶି ନ ଦିଶିଲା ପରି ଟିକିଏ ହସ ।

କାହାକୁ କିଛି ନ କହି କମୁ ଗାଡିକୁ ଆଡେଇ ନେଲା । ଟକମକ ଫୁଟୁଥିବା ଇଞ୍ଜିନ ଉପରୁ ଢାଙ୍କୁଣି ଫିଟେଇଦେଲା । ଚରିଆଡେ ଘେରାଏ ବୁଲିଯାଇ ଗାଡିର ତନଖି କରିନେଲା । ଏଠି ଟିକିଏ ସେଠି ଟିକିଏ ହାତ ମାରି ଥାପୁଡେଇ ଦେଲା । ଜିଭ ଜାଡି ଧକଉଥିବା ଜିପ୍ ଗାଡି ଉଲୁସିଉଠିଲା ।

ଷ୍ଟେନୋ ବାବୁ ଡାକପକାଇଲେ, "କମୁ, ଆସ ଚ ଖାଇବ !"

ପାଖକୁ ଆସିଲାରୁ ହସି ହସି କହିଲେ, "ଆଜି ଯାହା ତୁମେ ଗାଡି ଆଣିଲ ନା, ସେଇଟା ରେକର୍ଡ ରହିଗଲା । ଏ ଯାଏଁ ଡାଇରେକ୍ଟରଙ୍କ ଗାଡି ପହଞ୍ଚି ନାହିଁ । କୋଉଠି ପାରି ହେଇ ଆସିଲ କି ?"

କମ୍ପୁ କାହିଁକି କ'ଣ କୁହନ୍ତା ? ଗ୍ଲ ନେଇ ଖୁଣ୍ଟକୁ ଆଉଜି ସୋଡକିଲା । ମନେ ମନେ ଭାରି ଖୁସି । ଆଜି ଦାମିଆ ତା' ଗୁରୁକୁ ଚିହ୍ନିଚି । ଶଳା, ହେଡ୍ ଡ୍ରାଇଭର ନା ଆଉ କ'ଣ ବା । ...ହେଲେ ଅନ୍ଧାର ହେଇ ଆସିଲାଣି, କାହିଁକି ପହଞ୍ଚୁ ନାହିଁ ଆମ୍ବାସାଡର । ବାଟ ଭାଙ୍ଗି ଆଉ କୁଆଡେ ଗଲା କି ? ନା ତ, ଆଉ ତ' କୁଆଡେ ବାଟ ନାହିଁ ? କ'ଣ ଗାଡି ଅସୁବିଧା ହେଲା କି ? କମ୍ପୁର ଭୂରୁ କୁଞ୍ଚେଇଗଲା । ସେ ଏପାଖ ସେପାଖ ଟହଲୁଥାଏ । ସମସ୍ତେ ଘଣ୍ଟା ଦେଖି ବାଟକୁ ଗ୍ଲହୁଁଥାଆନ୍ତି । ଗାଡିର ଚିହ୍ନ ବର୍ଣ୍ଣ ନାହିଁ ।

ଦୂରରୁ ଗୋଟାଏ ମଟର ସାଇକେଲ ପାଖେଇ ଆସିଲା । ଜଣେ ପୋଲିସ୍‌ବାଲା । ଡାକବଙ୍ଗଳା ଭିତରକୁ ମାଡିଆସି ପଗ୍ଲରିଲା, "ଡେପୁଟି ଡାଇରେକ୍ଟର ଏଠି ଅଛନ୍ତି ?"

"ହଁ, କ'ଣ ହେଲା ?"

"ଏଠୁ ଦଶ କିଲୋମିଟର ପାଖରେ ଡାଇରେକ୍ଟରଙ୍କ ଆମ୍ବାସାଡର ଗାଡି ଆକ୍ସିଡେଣ୍ଟ ହେଇଗଲା । ପଛରୁ ପୋଲିସ ଗାଡି ଆସୁଥିଲା ବୋଲି ତାଙ୍କୁ ନେଇ ଆସିଲୁ । ଡ୍ରାଇଭର୍ ଅବସ୍ଥା ସିରିଅସ୍ । ସେ ଡାକ୍ତରଖାନାରେ ଅଛି । ଡାଇରେକ୍ଟର ମଧ ସେଇଠି ଅଛନ୍ତି । ତାଙ୍କର ସାମାନ୍ୟ ଟିକିଏ ଆଞ୍ଚୁଡି ହେଇଯାଇଛି – ସେ କିଛି ନୁହେଁ । ମୁଁ ଯାଏ । ତେଣେ ଡି.ଏସ୍.ପି. ମୋତେ ଅପେକ୍ଷା କରିଥିବେ ।"

ଧଡ ଧଡ ହେଇ ମଟରସାଇକଲ ପାର ହେଇଯିବା ଯାଏ ସମସ୍ତେ ସେଇଆଡେ ଗ୍ଲହିଁ ରହିଥାନ୍ତି । ତା'ପରେ ଏକା ସାଙ୍ଗେ ସମସ୍ତେ ପାହାଡ ଓହ୍ଲେଇଗଲେ । କମ୍ପୁ ଗାଡି ପହଞ୍ଚେଇ ଦେଲା । ସମସ୍ତେ କ'ଣ ଗାଜୁମାଜୁ ହେଉଥାନ୍ତି, କମ୍ପୁ କିନ୍ତୁ ଦେଖୁଥାଏ ଏତେ ଯତ୍ନରେ ବଢେଇଥିବା ଆମ୍ବାସାଡରକୁ; କେମିତି ସେଇଟା ଲେଉଟିପଡିଛି ଏବଂ ମେଞ୍ଚାଟାଏ ହୋଇ ଦାମିଆ କେମିତି ପଡିରହିଚି, ଡାକିଲେ ଶୁଣୁନାହିଁ । ...ତାକୁ ସେ କୋଳରେ ବସେଇ ଗାଡି ଚଳେଇବା ଶିଖେଇଚି...କ'ଣ ହେଇଛି ଦାମିଆର ?...ଦୁମ୍‌ଦୁମ୍ ସମସ୍ତେ ଡାକ୍ତରଖାନା ପିଣ୍ଡାକୁ ଚଢିଗଲେ । ଏଠି ସେଠି ଲୋକ କ'ଣ ସବୁ କଥାହେଲେ । କମ୍ପୁ କିନ୍ତୁ ଗାଡି ପାଖେ ଠିଆହୋଇ ରହିଗଲା...ଶଳା ଦାମିଆ, ଟୋକା ବୋଧେ ଗ୍ଲହୁଁଥିଲା ମୋତେ ଟପି ଗ୍ଲଲିଆସିବାକୁ । ଅଖଡରେ ପ୍ରାଣ ଉଡେଇ ଦେଲା । ଏଥର ବୁଝିଲୁ, ହେଡ୍ ଡ୍ରାଇଭର୍ ହେଇଗଲେ ବି କମ୍ପୁ ତୋ'ଠାରୁ ଗ୍ଲଖେଣ୍ଡେ ଉପରେ,...ହୁଁଃ ।

କିଏ ଜଣେ ଆସି କମ୍ପୁ ପାଖରେ ପହଞ୍ଚିଲା – ଅନ୍ଧାରରେ । "ଇସ୍, ଦାମିଆ ଜଖମ ହେଇଯାଇଛି । ଘା ବେଶି ନୁହେଁ, ହେଲେ ରକ୍ତ ନିଗିଡି ଯାଇଛି । ତା' ଚେତା ବୁଡିଯାଇଛି । ଚଞ୍ଚଳ ରକ୍ତ ନ ଦେଲେ ଅବସ୍ଥା ସିରିଅସ୍ ।" – ଏତିକି କହିଦେଇ ସେ ପୁଣି ସେ ଅନ୍ଧାର ଭିତରକୁ ଗ୍ଲଲିଗଲା ।

କମ୍ପୁ ସେମିତି ଠିଆ ହୋଇଥାଏ । ବିଡିଟାକୁ ନ ପିଇ ତା' ଅଗକୁ ଦାନ୍ତଉଥାଏ...ଦାମିଆର ଯେତେ ରକ୍ତ ଲୋଡା ତା' ସାହିବ ତାକୁ କିଣି ଦେଉ । ଦାମିଆ ପରା ହେଡି ଡ୍ରାଇଭର୍ – ସେ କ'ଣ ରକ୍ତ ନ ପାଇ ଏଠି ମରିବ ?...ସେ ଆଜି ହାରିଗଲା କମ୍ପୁ ପାଖରେ । ସେ କ'ଣ କେବେ

ଜିଣିଥିଲା ନା ଜିଣିବ ? ଜିଣିଯିବାକୁ ବାଜି ଲଗେଇ ଦେବାରୁ ଏ ଦୁର୍ଦ୍ଦଶା ଭୋଗିଲା ! – ଶଳା ଟୋକା ପାଇଗଲା ଚେଙ୍ଗେ ।

"...ଦାମିଆର କୋଉଠି ଜଖମ ହେଇଛି ?...କେମିତି ଜଖମ ହେଲା ? କେତେ ଘା ହାଣି ହେଇଗଲା ?" ଦାମିଆର ବିଭାଘରକୁ କମ୍ମୁ ଯାଇଛି । ଏବେ ଛଅମାସ ତଳେ ତା' ପୁଅକୁ ଦେଖିବାକୁ ଯାଇଥିଲା । "କମ୍ମୁଆନ୍ନା ! ତମେ ନ ଆସିଲେ କେମିତି ହେବ ? ତମେ କିଏ, ମୋ' ଭାଇନା କିଏ ?"

କମ୍ମୁ ବିଡି ଫୋପାଡିଦେଇ ପିଣ୍ଡାକୁ ଉଠିଗଲା ! କେହି ଜଣେ କହିଲା, "ଏ ରାତିରେ ଏଠି ଆଉ କ'ଣ ହେଇପାରିବ ? ତା' ରକ୍ତ ଗ୍ରୁପ ପରା 'ଓ' ବାହାରିଲା । ତା' ଭାଗ୍ୟ ଖରାପ ! ସେ ରକ୍ତ କ'ଣ ମିଳିବ ? ଆହା ବିଚରା !!" ଆଉ ଜଣେ କହିଲା, "ଆହେ ସେ ରକ୍ତବାବୁଠୁ ଭଲ କରି ବୁଝୁନ, ସେ କୁଆଡେ ତା' ଘରେ ମଣିଷ ରକ୍ତ ଲୁଚେଇ ରଖିଥାଏ । ବେଳ ପଡିଲେ ଚଢା ଦରରେ ବିକେ । ନଉ ଯାହା ନବ – ବୋତଲେ ଦେଇଦେଲେ ଏ ରାତିଟା ପାହିଯାନ୍ତା । ତେଣିକି ଯାହା ହେଲେ ବଳ କରନ୍ତେ ।"

ସେ ଛୋଟ ମେଳା ଭିତରେ ଡାଇରେକ୍ଟର ସାହେବ, ଡେପୁଟି ସାହେବ ସମସ୍ତେ ମିଶି ଭାଳେଣି କରୁଥାନ୍ତି । ଲୋକ ଧାଁ-ଦଉଡ କରୁଥାନ୍ତି । ରକ୍ତ ବାବୁ ବାରମ୍ବାର ଫେରେଇଦେଉଥାଏ ।

ବେଳ ଗଡିଚାଲିଥାଏ ଟିକ୍ ଟିକ୍ । ଦାମିଆର ଚେତା ନାହିଁ ।

'...ନ ଥାଉ ! କିଏ କ'ଣ ସେଥିପାଇଁ କରି ପାରିବ ? ଜନ୍ମ ମରଣ କଥା କା' ହାତରେ ଅଛି ? ଏଇଟା ତ' ମଣିଷ ଆୟତ୍ତ ନୁହେଁ !...' କମ୍ମୁ-ଆନ୍ନା, ମ' ! ଯଦି ସରକାରୀ କାମ ମିଳିଯାଏନା, ମୋତେ ଯାହା ମାଗିବୁ ଦେବି ! ...ଆରେ ଯା, ତୁ କ'ଣ ମୋତେ ଦବୁ ବା ? ବକଟେ ନାକୁ ଟୋକା ! ତୁ କ'ଣ ଦବୁ ମୋତେ ଆଗ କହ !

...'ଏମାନେ ମିଶି ତାକୁ ହେଡ୍ ଡାଇଭର କରିଦେଲେ ନା – ସେ କ'ଣ ନିଜେ ଚାହୁଁଥିଲା କି ? ସେ କ'ଣ ସେଇଦିନୁ କମ୍ମୁ ଆଗରେ ହେଲାଣି ? ସେମିତି ଲୁଚି ଲୁଚି ବୁଲୁଚି ନା !..ଦାମିଆ, ଶଳା ଛୋକାର – କାଇଁକି ଏମିତି ଗାଡି ଚଳେଇଲୁ ବେ ? ଏମିତି ଚଳେଇଲେ ମରିବୁ ନା ନାଇଁ ? ତୋ ପିଲା ମାଇପଙ୍କୁ କ'ଣ ଏ ଶଳେ ପୋଷିବେ ବୋଲି ଭାବୁଛୁ ?'

...ଆଚ୍ଛା, କମ୍ମୁ କ'ଣ ବୋତଲେ ରକ୍ତ ନିଜେ ଦେଇ ପାରିବ ? ସେ ଜାଣେ ତା ରକ୍ତ ଗ୍ରୁପ୍ 'ଓ' ! ଏ ଚାକିରି କରିବା ଆଗରୁ ସେ ପରୀକ୍ଷା କରି କାଗଜ ରଖିଛି । ସେଇ କେବଳ ଚାହିଁଲେ ଦାମିଆ ବଞ୍ଚିବ... ।

କିନ୍ତୁ କାହିଁକି ? କମ୍ମୁ କଥା ତ' କେହି ଭାବୁନାହିଁ ? ଏଇ କେତେ ଦିନ ହେଲା ତା' ଦେହ ଜମା ଭଲ ରହୁନି । ମାଇପ ଗଲାଦିନୁ ବଳ ଖସିଗଲା ପରି ଲାଗୁଛି । ବିନା କାରଣରେ ବୁକୁ ଧଡଧଡ ହେଉଛି...ବୋତଲେ ରକ୍ତ କିଛି କମ୍ ନୁହେଁ । ସେତକ ନିଗାଡି ଦେଲେ ସେ ନିଜେ ବଞ୍ଚିପାରିବ ତ ?

ଅନ୍ଧାର ଭିତରେ କିଏ ଜଣେ କହିଲା, "ଡାକ୍ତର ଆଶା ଛାଡ଼ି ଦେଉଛନ୍ତି । ଏଇ ଘଣ୍ଟାଏ ଭିତରେ ରକ୍ତ ନେହେଲେ ଦାମିଆ ଆଉ ବଞ୍ଚିବ ନାହିଁ ।"

ଡାଇରେକ୍ଟର କହିଲେ, "ଫୋନ୍ କରି ବୁଝ ଏପାଖରେ କୋଉଠି ଯଦି ରକ୍ତ ଥାଏ !"

"ପାଖ କହିଲେ ଏଠୁ ତିନି ଘଣ୍ଟାର ରାସ୍ତା ଯିବାକୁ ପଡିବ – ସେଥିରେ କ'ଣ ଲାଭ ?"

...ଛମ୍ ଛମ୍ ଅନ୍ଧାର । କମ୍ପୁର କଲିଜା ଧଡଧଡ ହେଇ ତଣ୍ଟି ପାଖରେ ପିଟିହେଲା । ତା' ଆଖି ଆଗରେ ଝିଲିମିଲି ଆଲୁଅ ଦିଶିଲା । ମୁଣ୍ଡ ବୁଲେଇଲା ପରି, ଅଇ ଟେକିଲା ପରି ଲାଗିଲା । ପାଦ ତଳିପା ସର୍ ସର୍ ଲାଗିଲା । ସେ କାହାକୁ କିଛି ନକହି ଆସ୍ତେ ପିଣ୍ଡାରୁ ତଳକୁ ଓହ୍ଲେଇ ଆସିଲା ତା' ଗାଡି ପାଖକୁ । ତାକୁ ଶୁଭିଲା – କମ୍ପୁଆନ୍ନା, କାଲି ସକାଳୁ ମୋ' ପିଲାଙ୍କୁ ଟିକିଏ ଯାଇ କହିଦେବ ନାଇଁ ! କିଏ ଅଛି ଆଉ ତାଙ୍କ ପାଇଁ ?

କମ୍ପୁ ବିଡି ଖଣ୍ଡିଏ ଲଗେଇଲା । ମନକୁ ଦୃଢ କଲା । ଅଧା ବିଡିଟାକୁ ଗାଡି ଦେହରେ ଲିଭେଇ ଦେଇ ପହଁରିଲା ପରି ଚାଲିଲା ରକ୍ତବାବୁ ଘରଆଡକୁ । ସେଇଠୁ ସମସ୍ତେ ବାହୁଡିଥାନ୍ତି । ତା' ବେଉସା ହେଇ ନଥିବାରୁ ସେ ତାତି କରିଥାଏ । କମ୍ପୁକୁ ଦେଖିଲା ମାତ୍ରେ ଖିଙ୍କାରି ଉଠିଲା – "ଯାଅ ବାବୁ ! ମୁଁ ପରା କହିଲି ମୋ' ପାଖରେ କିଛି ମାଲ୍ ନାହିଁ । କାହିଁକି ବାରମ୍ବାର ବିରକ୍ତ କରୁଛ ?"

କମ୍ପୁ କିଛି ନକହି ସେମିତି ଠିଆ ହୋଇ ରହିଲା ଅନ୍ଧାରରେ ।

ଅଳ୍ପ ସମୟ ରହି କହିଲା, "ଟିକିଏ ଶୁଣିବେ !" – ସ୍ୱରରେ କେମିତି ଗୋଟାଏ ମୁରବି ଢଙ୍ଗର ଗମ୍ଭୀରତା ।

ରକ୍ତବାବୁ ଥମିଗଲା । ଟିକେ କୁନ୍ଥେଇଲା । ଚୌକିରୁ ଉଠି ଦୁଆରମୁହଁ ଅନ୍ଧାରରେ ଆସି ଅପେକ୍ଷା କଲା ବିରକ୍ତିରେ, କିଛି ଭୟରେ ଏବଂ ସଂଭ୍ରମରେ ।

"ବୋତଲେ 'ଓ' ଗ୍ରୁପ୍ ରକ୍ତ ତୁମର ଦରକାର ନା ?" ଶୁଭିଲା ଅନ୍ଧାରରୁ –

"ଏଁ ?" ସେ ହୁଏତ ବୁଝି ପାରିଲା ନାହିଁ, କିମ୍ବା ବିଶ୍ୱାସ କରି ପାରିଲା ନାହିଁ ।

"ମୋ ରକ୍ତର ଗ୍ରୁପ୍ ହେଉଛି 'ଓ' । ମୋ' ଦେହରୁ ବୋତଲେ ରକ୍ତ କାଢିନିଅ !"

ଖପ୍‌କିନା କମ୍ପୁ ହାତ ଧରି ସେ ଟାଣିନେଲା ଭିତରକୁ । ସେଇଠି କମ୍ପୁର ଆଖିକୁ ଚାହିଁ ପଚାରିଲା, "କେମିତି ଜାଣିଲ ତୁମର 'ଓ' ଗ୍ରୁପ୍ ବୋଲି ?"

କମ୍ପୁ ନୀରବରେ ବୁକୁ ପକେଟରୁ କାଗଜ ପେଣ୍ଡା କାଢିଲା । ସେଇଠି ତା'ର ଲାଇସେନ୍‌ସ, ତା'ର ନାନା ଜାତି କାଗଜ । ତା' ଭିତରୁ ଗୋଟିଏ ପୁରୁଣା କାଗଜ କାଢି ବଢେଇଦେଲା । ପନ୍ଦର ବର୍ଷ ତଳେ ଡାକ୍ତର ତା'ର ରକ୍ତ ପରୀକ୍ଷା କରି ଲେଖିଦେଇଛି । ରକ୍ତବାବୁ ଆଖି ତରାଟି ସେ କାଗଜକୁ ପଢିଲା । ଓଠ ଚାଟି କହିଲା, "ଦେଖ, ଏଥିପାଇଁ ତୁମକୁ ପଚାଶ ଟଙ୍କାରୁ ଅଧିକ ଦେଇ ପାରିବି ନାହିଁ ।"

କମ୍ପୁ ଅଳ୍ପ ହସିଲା । ସେ ଶୁଣିଛି ପିଣ୍ଡାରେ ଲୋକେ କଥା ହେଉଥିଲେ, ରକ୍ତବାବୁକୁ

ବୋତଲେ ରକ୍ତ ପାଇଁ ପାଞ୍ଚଶହ ଟଙ୍କା ଯାଚିସାରିଲେଣି ।

"ମୋର ଟଙ୍କା କ'ଣ ହେବ – ମୁଁ ଟଙ୍କା ନେବି ନାହିଁ ।"

ଧୋବ ଧୋବ ଦାନ୍ତ କାଢି ରକ୍ତବାବୁ ନୀରବରେ ହସିଲା । ଏମିତି ଲୋକ କାହିଁ ଏ ସଂସାରରେ ?

କମୁକୁ ଶୁଆଇଦେଇ କ'ଣ ସବୁ ପରୀକ୍ଷା କରି ପକେଇଲା । କମୁପାଣି ମିଶ୍ର ଜୀଅନ୍ତା ମାଛଟିଏ । ଆଉ ଜଣେ ମିଶି କମୁକୁ କ'ଣ ବନ୍ଧାଛନ୍ଦା କଲେ । ତା'ପରେ ଗୋଟାଏ ଛୁଞ୍ଚ ତା' ଶିରା ଭିତରେ ପୂରାଇ ଦିଆଗଲା ।

କମୁକୁ ଲାଗିଲା ଯେ ଗୋଟାଏ କଳା ରବର ନଳୀ ବାଟେ ଭୋକିଲା ଟାଙ୍କି ଭିତରକୁ ଛଳ ଛଳ ପେଟ୍ରୋଲ ନିଗିଡି ଯାଉଛି । ସେ ଇଞ୍ଜିନ୍‌ର ଜୀବନ, ସେଇ ଦାମିଆର ଜୀବନ । ...ତା'ର ମନେପଡିଲା ତା'ର ବୋଉ କଥା, ତା' ପିଲାଦିନ କଥା, ବିଭାଘର ସୁଖ ଦୁଃଖ । ଦାମିଆର ଭାଇନା ବିଶିଆ ତା'ର ସାଙ୍ଗ । ସେ ମରିଗଲା, ତା' ସ୍ତ୍ରୀ ମରିଗଲା । ଆଜି ଦାମିଆ ପଡିଛି ମରିବାକୁ । କେବଳ କମୁ ବଞ୍ଚିଛି, ବାଣ୍ଟିଦେଉଚି ତା'ର ରକ୍ତ ।

ଛୁଞ୍ଚ ବାହାରିଲା ବେଳକୁ ତାକୁ ଘଉଁକିନା ଲାଗିଲା । ଆଖି ଉପରକୁ କେମିତି ଅନ୍ଧାରଟା ମାଡି ଆସିଲା ପରି ଲାଗିଲା । ବୁକୁ ଦୁର୍ବଳ ଲାଗିଲା । ସେ ଦାନ୍ତ ଜାବି ଏସବୁ କୁହୁଡିକୁ ଠେଲିବାକୁ ଲାଗିଲା । ତା' ହାତ ପାଦ ଥରିଲା । ଓଠ ଥରିଲା । ଜିଭ ଭିଡିନେଲା ଭିତରକୁ । ସେ ଚାହିଁଲା କଥା କହିବାକୁ, ପାରିଲା ନାହିଁ । ଆଖି ବୁଜି ଦେବାକୁ ମନ ହେଉଥାଏ । ସେ ଟୋଳିରଖିଥାଏ ତା' ଭୂଲତା । ଥରେ ବୁଜିଦେଲେ ଆଉ ଫିଟିବ ନାହିଁ ବୋଲି ତା'ର ଶଙ୍କା ।

କଅଁଳା ପିଲାଟିଏ ପରି ଉଷୁମ ବୋତଲଟାକୁ ତଉଲିଆ ଘୋଡେଇ ଆର ଘରକୁ ନେଇଗଲା ସେ ରକ୍ତବାବୁ । ଆରଜଣକ ଛୁଞ୍ଚ ଫୋଡା ସ୍ଥାନରେ ତୂଳା ମଡେଇ ଧରିଲା । ଗ୍ଲାସରେ ପାଣି ସାଙ୍ଗକୁ କ'ଣ ଟିକିଏ ମିଶେଇ ତା' ପାଟି ଭିତରେ ଇଡିଦେଲା । କମୁ ପକ୍‌କା ମଦୁଆ । ଗନ୍ଧରୁ ବାରିଦେଲା ବ୍ରାଣ୍ଡି । ପିଉ ପିଉ ତାକୁ ସତେଜ ଲାଗିଲା । ହାତ ଗୋଡ ଆଉ ଫଟଫଟ ହେଲା ନାହିଁ । ଆଖିପତା ଘୋଡେଇ ହେଲା ନାହିଁ । ଆର ଘରେ ମଣିଷଙ୍କ ପାଟିତୁଣ୍ଡ । ବେଗି ବେଗି ଧାଁ ଦଉଡ ଶବ୍ଦ ।

କିଛି ସମୟ ପରେ ରକ୍ତବାବୁ ଫେରିଆସିଲା । ହସି ହସି କମୁର ହାତ ଧରି ପଚାରିଲା – କେମିତି ଲାଗୁଛି ? ରକ୍ତ ବୋତଲ ସେଇଠି ଲଗାଇ ଦେଇ ଆସିଲି, ଏଣିକି କିଛି ଚିନ୍ତା ନାହିଁ । ଡାକ୍ତରଖାନା ଆଗରେ ଡାଇରେକ୍ଟର ଗତ ଜୟ କଲା ଢଙ୍ଗରେ କହିଲେ, "ବାସ୍, ଏଣିକି ଆଉ କିଛି ଚିନ୍ତା ନାହିଁ । ଚାଲ, ଡାକବଙ୍ଗଳାକୁ ଏଥର ଯିବା । ଡାକ ସେ କମୁଆକୁ ।"

"କମୁ!...ସେ ଏଠି ନାହିଁ ସାର୍! କୁଆଡେ ବୋଧେ ଖସି ଗଲାଣି!"

"ସେଇଆ ପରା, ସେଇଟା ସେମିତି ଠାପୁଆଟାଏ! ଚାଲ ମୁଁ ଚଳେଇ ନେବି । ସେ ଆସୁ ଚାଲି ଚାଲି! ମଦୁଆ କାହାଁକା! କାଲି ତାକୁ ମୁଁ ସସ୍‌ପେଣ୍ଡ୍ କରୁଛି ରହିଥା ।"

ସମସ୍ତେ ଛକ୍‌କିନା ତୁନିପଡିଗଲେ ।

ଲୁହା ଖଟ ଉପରୁ କମ୍ବୁ ଚିହ୍ନିଲା ଗାଡିର ଆବାଜ୍ । ଜାଣିଲା ଡାଇରେକ୍ଟର ନିଜେ ଚଳଉଛି । ଏମିତି ଢକ ଢକ ଗିଅର ବଦଳାଇବା କଷ୍ଟା ହାତ ଆଉ କାହାରି ନାହିଁ । କିନ୍ତୁ ଉପାୟ କ'ଣ ? ସେଇଠୁ ଉଠିବା ତା' ଆୟତ୍ତ ବାହାରେ । ଦାମିଆଟା ତ' ଅଚେତ ହେଇ ପଡିଛି – ନହେଲେ ସେ ବା ଚଳେଇ ନେଇଥାନ୍ତା !

କମ୍ବୁଆର କପାଳରୁ ଟୋପା ଟୋପା ଝାଳ ନିଗିଡିଗଲା । ତା' ନାଡି ଦେଖି ରକ୍ତବାବୁର ଭୂରୁ କୁଞ୍ଚେଇ ଗଲା । ସେ ଘାବରେଇଲା ପରି କହିଲା – "କେମିତି ଲାଗୁଛି ?...ଆଖି ବୁଜି ଶୋଇଯାଅ ।"

କମ୍ବୁଆ ସାମାନ୍ୟ ଦାନ୍ତ ନିକୁଟେଇ ହସିଲା । ଶୋଇଯିବାରେ ତା'ର ଆପତ୍ତି ନାହିଁ । କିନ୍ତୁ ଶୋଇଗଲେ ସେ ପୁଣି ଉଠିବ ତ ? କିଏ ବୁଝିବ ତା' କଥା – ଦାମିଆ ନାଁ ଡାଇରେକ୍ଟର ?



# ମୁକ୍ତି

ଅନ୍ଧଟି ଅନୁଭବ କଲା ଯେ ତାକୁ କିଏ ସବୁ ମାଡି ବସିଛନ୍ତି । ଯେଉଁ ଅଂଗଗୁଡିକ ତା'ର ସର୍ବସ୍ୱ, ତାକୁ ସେମାନେ ଅକାମୀ କରିଦେଇଛନ୍ତି । ପାଟି ଉପରେ ପାପୁଲି ମଡେଇ ଜଣେ ଜାବି ଧରିଛି । ଆଉ ଜଣେ ଦୁଇଡେଣାକୁ ଓସାରି ଦେଇ ଭୂଇଁ ଉପରେ ପୋତି ଧରିଛି । ସବା ଶେଷଜଣକ ତା' ବଳାଗଣ୍ଠି ଉପରେ ଲୁହା ଷଣ୍ଢଆସି ପରି ଜାବ ପକାଇ ମାଡି ବସିଛି । ଭୂଇଁ ଭାରି କାକର । ଘରିଆଡ ନିଶୂନ । ବୋଧହୁଏ ରାତି ଅନେକ ।

ତାକୁ ଭାରି କଷ୍ଟ । ତା' ଗଣ୍ଠି ଖଣ୍ଡ ଖଣ୍ଡ ହୋଇ ଝଡି ପଡୁଥାଏ । ରୁନ୍ଧି ହୋଇ ଆସୁଥାଏ ନିଃଶ୍ୱାସ । କିନ୍ତୁ ଏତେଗୁଡିଏ ମଣିଷକୁ ଏତେ ପାଖରେ ସେ କେବେହେଲେ ପାଇ ନ ଥିଲା । ଯନ୍ତ୍ରଣାର ଗୋଟାଏ ଗୋଟାଏ ଫାଙ୍କରେ ତାକୁ କେମିତି ଟିକିଏ ମନେହେଲା ଯେ ସେମାନେ ସମସ୍ତେ ମିଶି ତାକୁ ସେବା କରୁଛନ୍ତି । ସେମାନଙ୍କ ପାପୁଲିଗୁଡିକ ଭାରି ଉଷୁମ । ଗୋଟାଏ ହାତ ତା' ଅଣ୍ଟାର ଏ ପାଖ ସେ ପାଖ, ତଳିପେଟ, ପିଠି, ପଞ୍ଜରା କନାକୁ ଦରାଣ୍ଡି ପକେଇଲା, ଅବିକଳ ସେ ଯେମିତି ଦରାଣ୍ଡି ଠଉରେଇନିଏ ଗାଁମୁଣ୍ଡାଳି ବିରାଟ ଗୁକୁଣ୍ଡା ଗଛଟାର ବାଁ ଏବଂ ଡାହାଣ! ଅଣ୍ଡାଳୁଥିବା ହାତର ଆଙ୍ଗୁଠିଗୁଡିକ ଭାରି ଚିକ୍କଣ, କଅଁଳିଆ ଏବଂ ଉଷୁମ । ...ମାଇକିନିଆଟିଏ କି ?...ତା' ଦିହ ସାରା ଶୀତେଇଗଲା । ଅଣ୍ଟାରେ ସେଇ ହାତ ବାଜିଯିବାରୁ ସେ ଚମକିଲା । ତାକୁ କୁତୁକୁତୁ ଲାଗିଲା । ସେ ଗବ୍‌ଗବ୍ ହସିପକେଇଲା ମାଡିବସିଥିବା ପାପୁଲି ଭିତରେ । ତା' ଦେହ ସାରା ହୁତା ହୁତା ହେଇ ଲହଡି ମାଡିଗଲା ।

ତା' ମୁହଁରେ ଢୋ' କିନା ଗୋଟାଏ ଚଟକଣା କିଏ ବାଡେଇଦେଲା । କାନ ଭାଁ ଭାଁ ଡାକିଲା । ସେଇ କୋଳାହଳ ଭିତରେ ତାକୁ ଶୁଭିଲା –

"ଶଳାର ବାହାନା ବାହାରୁଚି । ଦିହରେ ହାତ ବାଜୁ ନ ବାଜୁଣୁ ବେହିପୁଅର ହସ ଦେଖ! ବଜା ଶଳାକୁ ଆଉ ଗୋଟେ ।"

...ଏଇଟା 'ଶତ୍ରୁଘ୍ନ ଭାଇ' ନୁହେଁ କି! ତଳସାହି ମନ୍ଦିର ପାଖରେ ତାକୁ ବାଟ କଢେଇ ପହଞ୍ଚେଇ ଦେବ ବୋଲି କେତେ ଆପଣାପଣରେ ସେଦିନ କହୁଥିଲା । ନିଛାଟିଆ ଖରାବେଳେ ଦୂର ରାସ୍ତା ଉପରେ ଖଣ୍ଡେ ଅଧେ ଟ୍ରକ୍ ଘାଇଁ ଘାଇଁ ପାରିହେଲା ବେଳେ, ଦି'ପହରିଆ ଝାଞ୍ଜରେ

ଧୂଳି ଛାଟି ହେଇ ମୁହଁରେ ଦିହରେ ଫୋଟି ହେଲାବେଳେ ଏଇ ମଣିଷଟି ତା' ପାଖରେ ବସି ଗୁଡୁରୁ ଗାଡୁରୁ ହେଉଥାଏ । କହୁଥାଏ କେମିତି ଆକାଶରେ ସିଟି ମାରୁଥିବା ଚିଲ ଗଛ ଉପରେ ପକ୍ଷୀ ଝାଡୁଛି, କେମିତି ଛତା ଧରି ରାସ୍ତା ସେ ମୁଣ୍ଡରୁ କାନ୍ଦୁରାମୁହାଁ ବୁଢା ବାବୁଟିଏ ଆସୁଛି, ଡାକିଲେ ଶୁଣିବ ! 'ଚକାଡୋଳା ବକାରି' ବୋଲିଲା ବେଳେ ଏଇ ଶତ୍ରୁଘ୍ନା ପାଳି ଧରେ । ...ସେ କାହିଁକି ଏମିତି ୟାଙ୍କ ସାଙ୍ଗେ ମିଶି ତାକୁ ଲଙ୍ଗଳା ମୁକୁଳା କରୁଛି ? ...କାହିଁକି ମାଡି ବସି ବାଡଉଛି ?

"ଆବ୍‌ବେ, ତୁ ନିଜେ ଦେଖିଛୁ ନା ଖାଲି ଏମିତି ଗାଲୁ ମାରି ଆମକୁ ଏଠିକି ଆଣିଚୁ ବେ ?"...ସ୍ୱରଟା ଅଚିହ୍ନା । ଟିକିଏ ବାବୁଆନିଆ କଡା ସ୍ୱର । ବୟସ ମଧ ପାକଳ । – ମାନେ, ଟୋକା ବଇସିଆ ନୁହେ ।

ଶତ୍ରୁଘ୍ନା କହିଲା, "ଏ ଶଳା ୟା ଭିତରେ ତରକିଗଲା କି କ'ଣ ! ଶଳା ସେ ନୋଟ୍ ବିଡାଟାକୁ କୋଉଠି ମାଡି ଦେଇ ମତେ ଭାଣ୍ଡିଆ କରି ଦେଲା । ମୁଁ ପରା ନିଜେ ତା' ଅଣ୍ଟାରେ ତାକୁ ମୋଡି ପୂରେଇବାର ଦେଖିଛି । ସେ ସେତେବେଳେ ଭାବୁଥିଲା ଯେ ତାକୁ କେହି ଦେଖୁନାହାନ୍ତି । ନିରୋଳା ବେଳାଟା' ତ ! ମୁଁ କିନ୍ତୁ ସେଦିନ ସକାଳୁ ଗୋଟେ ଓଳି ବରଗଛ ତଳୁ ନିଃଶ୍ୱାସ ରୋଧି ତାକୁ ଛକିଥିଲି । ପତରଟିଏ ହଲିଗଲେ ସେ ଚମକୁଥିଲା । କେତେବେଳକେ ସେ ଅଣ୍ଟାକୁ ଅଣ୍ଡାଳି କାଢିଲା ବିଡାଏ ନୋଟ୍ । ମୋ' ଆଖି ଖୋସି ହେଇଗଲା । ଶଳା ପାଖରେ ଶହ ଶହ ଟଙ୍କା ।"

ପୁଞ୍ଜାଏ ହାତ ଅନ୍ଧର ଅଣ୍ଟାରୁ ଲୁଗା ଖଣ୍ଡ ଭିଣି କାଢିପକେଇଲେ ।

"କାଇଁ, ଏଠି ତ' କିଛି ନାଇଁ, କାଇଁ ?...କାଇଁ ?"

ସାଲୁବାଲୁ ହାତଗୁଡାକ ତା' ଅଣ୍ଟା ଚାରିପାଖେ ଅଣ୍ଡାଳି ହେଉଥାନ୍ତି । ଅନ୍ଧକୁ ଆଉ ସଲସଲ ଲାଗୁ ନ ଥାଏ, କୁତୁକୁତୁ ଲାଗୁ ନଥାଏ । ତା' ପାଟି ଉପରୁ ହାତ ଉଠିଆସି ତା' ତୋଟିକୁ ମାଡିବସିଲା । ମୁହଁରେ ଆଉରି ଗୋଟେ ଜାବଡା ମାରି ଆଉ ଜଣେ ଗର୍ଜିଲା, "କହ ବେ ଶଳା, କୋଉଠି ତୋ ସମ୍ପତ୍ତି ଲୁଚେଇଚୁ ?" – ଏଇଟା ବି ଅଚିହ୍ନା ଫଟା ହାଣ୍ଡି ପରି ସ୍ୱରଟାଏ । ଅନ୍ଧ ଖାଲି ଗାଁ ଗାଁ ବୋବେଇଲା ।

"ଆବ୍‌ବେ, ତା' ତୋଟି ଛାଟିଦେ !" ସେ କହିଲା ।

ଅନ୍ଧଟି ହୁଗୁଳାରେ ମୁଣ୍ଡ ଗଡେଇଲା । ତା' ନିଃଶ୍ୱାସ ଚଳିଲା ସହଜରେ । ସେ ଖାଲି କୁନ୍ଥେଇଲା କଷ୍ଟରେ ।

"ଶଳା ବେଲି କାଢୁଛି ।" – ଶତ୍ରୁଘ୍ନା ତା' ନୁଖୁରା ଚୁଟି ଗଣ୍ଡାକୁ ଚଉରସ ଧରି ଝିଙ୍କିଲା !

"କହ ବେ ।"

"ମୁଁ ଗରିବ, ଅନ୍ଧଲୋକ ! ମୋ' ପାଖେ କିଛି ନାହିଁ ।"

ଆହୁରି ଗୋଟେ ଜାବଡା ବସିଗଲା । ଓଠ ଫାଟି ରକ୍ତ ଝରିଗଲା ପାଟି ଭିତରକୁ ।

"ସେ କାରିଗିରି କଥା ଏଠେଇଁ କାହିଁକି ବେ ? ବତା, କୋଉଠି ରଖିଚୁ । ନ ହେଲେ ଏଇଠି ନିଷ୍ପତ୍ତି ହେଇଯିବ । ତୋଟି ଚିପି ଶଳାକୁ ଖତମ କରିଦେବି ।"

ଖପ୍ କିନା ତୋଟିରେ ମାଡିବସିଲା ଶତ୍ରୁଘ୍ନ। ଅନ୍ଧ ଛଟପଟ ହେଲା ମାଛ ପରି। ରୁନ୍ଧି ହେଇ ତା' ମୁହଁ ଉପରକୁ ନିଆଁ ଉତୁରି ଆସିଲା। ତୋଟି ଛାଡିଦେଇ ସେ ଗର୍ଜିଲା, "ବତା!"

ଉଦୁଉଦିଆ ଖରା, ତାତିଲା ଧୂଳି, ଦୂରନ୍ତ ଶୋଷ ବେଳର ଗୋଟିଏ ଗୋଟିଏ ଦୋ'ପଇସି, ତିନିପଇସି, ଓଜନିଆ ଚରିକୁଣିଆ ପାଞ୍ଚପଇସିଗୁଡିକ! ଲୋକେ ସେଥିରେ ପୁଣ୍ୟ ଅର୍ଜିଛନ୍ତି। ଏ ଫିଙ୍ଗା ପଇସାଗୁଡିକରେ ଶାଗ ମିଳେ ନାହିଁ, ମୁଢି ମିଳେ ନାହିଁ। ଦେଲାବେଳେ କିନ୍ତୁ ସେମାନେ ଧର୍ମ କିଣିଛନ୍ତି ଶସ୍ତାରେ, ନିଲାମରେ! ତା' ହାତରେ ପଡିବା ମାତ୍ରେ ସେ ଜାଣିଛି ସେ ପଇସାର ଓଜନ। ତା' ଟିଣ ଡିବାରେ ପଡିଲାବେଳେ ଆବାଜ୍‌ରୁ ଜାଣିଛି ସେ ପଇସାର ମୂଲ୍ୟ। ଖୁଚୁରା ଭଙ୍ଗେଇବାକୁ ଜଣେ ବାବୁ ଥରେ ଟଙ୍କିକିଆ ନୋଟ୍ ଖଣ୍ଡିଏ ଦେଇଥିଲେ। ସେ ଦିନ ଜାଣି ତା' ଜୀବନର ପ୍ରଥମ ନୋଟ୍‌ଟିକୁ ସେ ଅତି ଯତ୍ନରେ ସାଉଁଳି ଥିଲା। ଗୋଟାଏ ଟଙ୍କା କିଛି କମ୍ ସମ୍ପତ୍ତି ନୁହେଁ। ଗୋଟାଏ ଟଙ୍କା କ'ଣ ଖର୍ଚ୍ଚ କଲେ ସରିଯାଉଥିବ ?...ସେ ଦଶବର୍ଷ ତଳ କଥା। ସେ ଦୁଇ ଦିନ କାଳ ଶୋଇନାହିଁ। ସବୁବେଳେ ଚମକିଛି। ଅଣ୍ଟାକୁ ଦରାଣ୍ଡି କୁଚୁ କୁଚୁ ହେଉଥିବା ସେ କାଗଜ ଖଣ୍ଡିକୁ ଠାବ କଲା ପରେ ସହଜ ନିଃଶ୍ୱାସ ଛାଡିଛି। ...ତା' ଉତ୍ତାରୁ ସେମିତି ସେମିତି ଆଉରି ନୋଟ୍ ସେ ଭଙ୍ଗେଇ ରଖିଛି। ତିନିଓଳି ଚାରିଓଳି ଓପାସ ରହି ପଇସା ଭରଣା କରିଛି। ତା'ପରେ ଦିନେ ଗୋଟାଏ ହାଟଫେରନ୍ତା ବେପାରି ପାଖରୁ ଖଣ୍ଡେ ଦଶଟଙ୍କିଆ କିଣିଛି। ଟଙ୍କାଳିଆ ନୋଟ୍ ଠଉଁ ସେଇଟା ଢେର୍ ବଡ। କାଗଜ ମଧ ମୋଟା, କର୍କରିଆ – ଇସ୍, ସେ କୁରୁଳି ଉଠିଛି। ତା' ମା' ବଞ୍ଚିଥିଲେ ସେ ଖଣ୍ଡ ତାକୁ ନେଇ ସେ ଦେଇଥାନ୍ତା। କହିଥାନ୍ତା, 'ହେଇ ଦେଖ୍ ଦଶଟଙ୍କିଆ ନୋଟ୍, ଯୋଉଟା ମୋ' ବାପା ତତେ ଦେଇଥିଲା, ଆଉ ତୁ ହଜେଇଦେଇଥିଲୁ।'

ତା'ପରେ ସେ ସବୁବେଳେ ଚାହିଁଥିଲା କେମିତି ଦଶଟଙ୍କିଆ ନୋଟ ଗୁଡାକ ଥାକ ଥାକ କନାରେ ବାନ୍ଧି ସେ ରଖନ୍ତା। ସେଥିରୁ ଗୋଟାଏ ପକେଇ ଦେଲେ ପୁରି ଆଉ ମହନଭୋଗ ପେଟେ ଖାଇ ହୁଅନ୍ତା। ଖଣ୍ଡେ ବାସ୍ନା ପାନ ଚୋବେଇ ଶିରିଷ ଗଛକୁ ଆଉଜି ହୁଅନ୍ତା। ହାତ ଗୋଡ ଗୁଡିକ ନିଶ୍ଚଳ ହୋଇ ବୁଡିଯାଆନ୍ତେ କାକର ଗହୀର ନିଦ ଭିତରକୁ।

"ବେ, ଏ ଚମଚଟା କ'ଣ ସେମିତି ବତେଇବ ? ମା'ର ଶଳାକୁ! ରଃ, ତାକୁ ଆଗ ଲଙ୍ଗଳା କରି ଖୋଜିପକା, ତା' କନାପଟା ଅନ୍ଧି ସନ୍ଧି। ଏଇଠି କୋଉଠି ତ' ରଖିଥିବ ଶଳା; କୁଆଡେ ଯିବ ? ନ ହେଲେ ଦେଖିବା! ...ଛୁଞ୍ଚି ସଜିଲ କରିଛୁ...ଦେଖି, ମତେ ଦେ!"

ଅନ୍ଧର ପାପୁଲି ଦୁଇଟିରେ ଗବ୍ ଗବ୍ ଗଳିଗଲା ଲୁହାଛୁଞ୍ଚି। ରଡି ଛାଡିଲା ଅନ୍ଧ। ସେମାନେ ତା' ପାଟିରେ ଲୁଗାବିଣ୍ଡା ପୂରେଇ ବାନ୍ଧି ଦେଲେ। ହାତ ଯୋଡାକ ପଛକୁ ନେଇ ବାନ୍ଧିଦେଲେ। ଗୋଡକୁ ଛନ୍ଦି ବାନ୍ଧି ତାକୁ ଗଡେଇ ଦେଲେ। ଅଣ୍ଟାରେ ବସେଇ ଦେଲେ କଚ୍‌କାଚ୍ ଲାତ।

ଦୁମ୍‌ଦାମ୍ ଭୁସ୍‌ଭାସ୍ ସେ ଭିତରେ ହାତଗୁଡାକ ବୁଲିଲେ। ଚର୍ କିନା ଗୋଟାଏ ଦିଆସିଲି ଜଣେ ମାରିଲା।

"ଦେଖ ଶତ୍ରୁଘ୍ନ, ଯଦି କିଛି ନ ମିଳେ ତୋ ମୁଣ୍ଡଟିକି ଛେଚି ହାଲୁଆ କରିଦେବି।"

"ଆଖି ଥିଲେ ସିନା ଦିଶିଲା ଭଳି ଜାଗାରେ ଲୁଚେଇଥାନ୍ତା । ସେ ଶଳା କୋଉଠି ଦରାଣ୍ଡି ଦରାଣ୍ଡି ମାଡି ଦେଇଚି, ଜଣାପଡୁନାହିଁ । ତା' ତୁଣ୍ଡି ଫିଟେଇ ତା'ରିଠଉଁ ବୁଝିବାକୁ ହେବ ।"

"ଠିକ୍ କରି ଶୁଣ୍‌ରେ ଅନ୍ଧା ! ଯଦି ସାଙ୍ଗେ ସାଙ୍ଗେ ତୋ' ପୋତାମାଲ୍ କଥା ନ କହୁ, ଏ ଛୁରୀ ତୋ ବ୍ରହ୍ମଘରେ ଫୋଡିଦେବି । ପାଟିକଲେ ଜିଭ ଉପାଡି ଫିଙ୍ଗିଦେବି । ବେଶି ଗୋଳମାଳ କଲେ ତଣ୍ଟି କଣା କରି ହଲାଲ୍ କରିଦେବି । ବତା ଜଲ୍‌ଦି !" ଗବ କରି ପାଦରେ ଛୁରୀ ଗଳିଗଲା ମଞ୍ଜି ପର୍ଯ୍ୟନ୍ତ ।

ଅନ୍ଧଟି ଝାଳରେ ଛଟପଟ । ପାଟିରେ ତୁଣ୍ଡି; ପୁଣି ଗବ୍‌ଗବ୍ ପିଉରେ ଗଳିଗଲା ଛୁରୀ । ଅଧୀର ଯନ୍ତ୍ରଣାରେ ଅନ୍ଧ ଓଟାରି ହେଲା ଉରିଆଟୁ । ଲଙ୍ଗଳା ପୋକଟିଏ । ତୁଣ୍ଡି ଫିଟେଇଲା ଶତ୍ରୁଘ୍ନା ।

"ସେଦିନ ଯୋଉ ଗଣୁଥିଲୁ ନୋଟ୍, ଶଳା ଅଣ୍ଟାରେ ଖୋସିଲୁ – ସେ ବିଡାଟା କାଇଁ ? ଗୁଡେଇବା ଧଳା କାଗଜ ଖଣ୍ଡ ଅଣ୍ଟାରେ ଖୋସିଛୁ, ଟଙ୍କାଯାକ କ'ଣ କଲୁ ବେ ?" ଅନ୍ଧର କୁନ୍ଥେଇବା ବନ୍ଦ ହେଇଗଲା ।

"ଏଁ ! ସେ ଖଣ୍ଡ ପାଇଗଲୁ ? ମୋ' ପଞ୍ଚପ୍ରାଣ ଯାକ ପାଇଗଲୁରେ ଶତ୍ରୁଘ୍ନା ? – ସେଇଟା ମୋ' ପନ୍ଦର ବର୍ଷର ରକତ ! – ମରିଯିବୁ ଶତ୍ରୁଘ୍ନା ! ତାକୁ ତୁ ଦିନେ ହେଲେ ଭୋଗି ପାରିବୁ ନାହିଁ...ହା ଆଁ...ଆଁ...ଆଁ !"

"କ'ଣ କହୁଚି ବେ ସେଇଟା ? ବେ କ'ଣ କହୁଚୁ ? ...କ'ଣ ପାଇଗଲା ଶତ୍ରୁଘ୍ନା ! ହେଇ ଧୋବ କାଗଜ ଖଣ୍ଡେ ତ' ମୁଁ ଧରିଚି !!"

"ଧୋବ କାଗଜ ? ହେ, ହେ, ହେ, ତେବେ ତାକୁ ମୋ' ବୁକୁ ଉପରେ ଥୋଇ ଦେଇ ଯାଉନ ଶଳେ ଡକେଇତଙ୍କ ପୁଅ ।"

"ବଜା ବେ ଶଳାକୁ ।"

"ଆରେ ସେଇଟାକୁ ତ' ତୁମ ସତେଇଶିପୁରୁଷ ଦେଖି ନ ଥିବ – ତୁମର କି ଦୋଷ ? ତୁମେ ତ' ସହଜେ ପାତି ଚୋର – କାହୁଁ ଜାଣିବ ? ସେ ମହାଜନ କାଲି ଆସି କେତେ ସମୟ ମୋ' ସାଙ୍ଗେ ଦୁଃଖସୁଖ ହେଲା । ଆଃ, ଦେବତା ସିଏ, ଖାଇବାକୁ ଦେଲା ଏତେଟାମାନ ପୁଞ୍ଜାଏ ମିଠେଇ । ଧୀରେ ଧୀରେ ମୋ' ପିଠି ସାଉଁଳି ଦେଲା । ଆହା, ତା'ର ଶହେ ବର୍ଷ ପରମାୟୁ ହେଉ । କହିଲା, ବୁଝିଲ ମଉସା, ତେମେ ଅନ୍ଧେ ମଣିଷ । ତମଠି ସେ ଟଙ୍କା ବିଡାଟା ଲୁଚିବ ନାଇଁ । ସଂସାରରେ ଖଳଲୋକ ଛକି ବସିଚନ୍ତି । ତେମେ ତାକୁ ଭଙ୍ଗେଇ ଦିଅ । କହିବ ଯେବେ ମୁଁ ଦଉଚି, ହେଇ ରଖ ଶହେଟଙ୍କିଆ ଖଣ୍ଡିଏ ନୋଟ । ଅଣ୍ଟାରେ ଖୋସିଦେଲେ ଜମା ଜଣାପଡିବ ନାଇଁ । ହେ, ହେ, ହେ...ହେ ହେ ହେ...ସେଇଟା ଶଏଟଙ୍କା ନୋଟ୍ ବେ ଶଳେ । କହିଲା କ'ଣ ନାଁ ଧଳାଁ କାଗଁଜଁ !!...ଆଁ ଆଁ – ଭେଁ ଭେଁ କାନ୍ଦିଲା ଅନ୍ଧ । ସେଇଟା ମୋ' ରକ୍ତନଳୀ, ମୋ' ପଞ୍ଚପ୍ରାଣ । ମତେ ଆଗ ମାରିଦିଅ, ଆଉ ସେ ଖଣ୍ଡ ନେଇଯାଅ ।"

"ଯାଃ ଶଳା, ମାଲ୍ କେବଠଉଁ ଖଲାସ୍, ଆମେ ଆସି ଅଣ୍ଡାଳିଲେ କ'ଣ ଘୋଡାଡିମଟା

ମିଳିବ ? ଉଠ୍ ବେ ଶତ୍ରୁଘ୍ନା, ପାଟିରେ ପୂରେଇଦେ ସେ କାଗଜ ଖଣ୍ଡ । ସେ ଖେବଉଥାଉ ମହାଜନ ପୁଅର ସେଇଟାକୁ ।"

"ଏଁ ?...ଏଁ ?...ଶତ୍ରୁଘ୍ନାଭାଇ, ସେଇଟା ଶହେଟଙ୍କିଆ ନୋଟ୍ ନୁହେଁ ?"

"ନେ, ଖା' ଶଳା ତୋ' ଶହେଟଙ୍କିଆ । ସେ ଠାପୁଆ ମହାଜନିଆକୁ କହିଲୁ ନାଇଁ – ଟିକିଏ ରଇଥା, ଶତ୍ରୁଘ୍ନା ଭାଇ ଆସୁ! ମତେ କ'ଣ ତୋର କେବେହେଲେ ବିଶ୍ୱାସ ଥିଲା କି ? ନେଲା ମାରି ଠାଉରିଆ ଠକ । ଭଲ ହେଇଚି, ମର୍ ଶଳା !!" ଗୋଟାଏ ଠିଆଲାତ କଚ୍ କିନା ବଜେଇଦେଲା ତା' ପଞ୍ଜରାକୁ ।

ଛଟପଟେଇଗଲା, ତା' ଶ୍ୱାସ ରୋଧ୍ ହୋଇଗଲା । ମୁଦାହେଇଗଲା ଯନ୍ତ୍ରଣାରେ ଲଙ୍ଗଳା ପୋକଟି । ଧୂଳି ଉପରେ ଗଡିଲା ଏକତ ସେକତ ।

ତିନିହଳ ପାଦଶବ୍ଦ ଦୂରେଇଗଲେ କାହିଁ କେତେ ବାଟ । ମୋତାଣି ପାଖରେ ନୀରବ ହୋଇଗଲା ପୃଥିବୀ । ନିଃଶ୍ୱାସରେ ତାତିଲା ଲୁହ ଗୁଡାଏ ତରଳିଗଲା । ଅଝଟ ପିଲାପରି ସେମିତି ଲୋଚହୋଇ ସେ କଇଁ କଇଁ ଗୁଡାଏ କାନ୍ଦିଲା । ପାଟିରୁ ଥୁ'କରି ଫିଙ୍ଗିଦେଲା ଲୋଚକୋଚ ସେ କାଗଜ ଖଣ୍ଡ । ରାମ୍ପୁଡି ବିଦାରି ହେଇ ପୁଣି କାନ୍ଦିଲା ।

...ଏମାନେ କିଏ ତାକୁ ଆସି ବାନ୍ଧିଛନ୍ଦି ବାଡେଇଲେ । ତା' ହାତ ଗୋଡରେ କଣ୍ଟା ଫୋଡିଦେଲେ । ତା' ମୁହଁ ଫଟେଇ ରକ୍ତ କାଢି ଦେଲେ । – ଅସଂଖ୍ୟ ଦୋ'ପଇସି, ତିନିପଇସି ଦାତାଙ୍କ ଭିତରେ ତ' ଏମାନେ ନୁହନ୍ତି! କାଲି ସେ କିଏ ଆସି ତା'ର ସର୍ବସ୍ୱ ଲୁଟି ନେଇ ଚାଲିଗଲା ?...ଆଖିଯୋଡିକୁ ମୂଳରୁ ପୋଛିଦେଇ ତାକୁ ଏ ଅନ୍ଧାର ବଣ ଭିତରକୁ ପେଲିଦେଲା, ସେ କିଏ ? ଅନେକ ଦିନ ତଳେ ସେଇ ଶିରିଷ ଗଛ ମୂଳେ ତା' ମା' ତାକୁ କ'ଣ ଖୁଆଇ ଦେଉଥିଲା ? ଦି'ଓଳି ତା' ହାତ ଧରି ସେ ଯାଉଥିଲା ଗୀତ ଗାଇ ଭିକ ମାଗିବାକୁ । ସେଦିନ ସେ ବସିଥିଲା ଚାଉଳର କନା ବୁଜୁଳାଟିଏ ଧରି । ମା' ଯାଇଥିଲା ପାଣି ପାଇଁ । ଗୋଟେ ଷଣ୍ଢ କାହୁଁ ଆସି ତା' ହାତରୁ ସେ ବୁଜୁଳାଟିକୁ ଉଷ୍ଟିନେଇ ଖାଇଯାଇଥିଲା । ତା' ମା' ତାକୁ ମନଇଚ୍ଛା ବାଡେଇ ଥିଲା । ପୁଣି ତାକୁ କୋଡରେ ଧରି ସକସକ କାନ୍ଦିଥିଲା, ସେ ଶୋଇବା ପର୍ଯ୍ୟନ୍ତ । ...ମା'କୁ ଜର ହେଲା । ସେ ବାଉଳୁଚାଉଳୁ ହେଲା । 'ଟକାତୋଳା ବକାରି' ଭଜନ ପାଟିକରି ବୋଲିଲା । କାହାକୁ କେଜାଣି ତା' ଅନ୍ଧପୁଅ କହ୍ନେଇକି ସମର୍ପି ଦେଇ ଶୋଇଗଲା, ଆଉ ଡାକିଲେ ଶୁଣିଲାନାହିଁ । – ସେ କିଏ ? କାହା ଉପରେ ଏମିତି ବିଶ୍ୱାସ ରଖିଥିଲା ତା' ମାଆ ? ସେ କ'ଣ ଏଇ କାଲିକା ମହାଜନ ? ନାଁ ଏଇ ଶତ୍ରୁଘ୍ନା ?...ଛାଡ ।

ସେଇ ଦିନଠୁ ସେ ଚାରିଆଡକୁ କାନ ଡେରି ଶୁଣିଛି । ପାଖରୁ ଦୂରରୁ ଶୁଙ୍ଘିଛି ବିଭିନ୍ନ ବାସ୍ନା । ପାଟିତୁଣ୍ଡ ହେଲେ, ଚାରିଆଡ ଉଷୁମ ଲାଗିଲେ, ଏମାନେ କହନ୍ତି ଦିନ ହେଇଗଲା । ଯଦି ସବୁ କାକର ଓ ନୀରବ ହେଇଗଲା, ସେଇଟା ରାତି । ଏ ରାତିଟା କୁଆଡେ ଅନ୍ଧାର ଆଉ ଦିନଟା ଆଲୁଅ । ଦିନ ରାତିର ବାସ୍ନା କିନ୍ତୁ ଅଲଗା ଅଲଗା । ଦିନଟା ଗଛ ଉପରେ ଫଡ୍‌ଫଡ୍ ହୁଏ । ନାନା

ଘରରେ ଡାକେ, ଘୁମୁରେ । ଦିନଟା ଖରା, ଉଷୁମ ଲାଗେ, କାଟେ, ଛୁଞ୍ଚ ଫୋଡିଲା ପରି ଲାଗେ । ରାତିଟା ଚୁପ୍‌ଚାପ୍ । କାକର ନରମ ଧୂଳି ହେଉଚି ରାତି । ଶିରିଷ ଗଛର ସୁଁ ସୁଁ ଆବାଜ ହେଉଚି ରାତି । କଅଁଳିଆ ସୁର୍‌ସୁରିଆ ବାସ୍ନାଗୁଡିଏ ହେଉଚି ରାତି । ଏ ଆଲୁଅଟା ତେବେ କ'ଣ ଯେଉଁଥିପାଇଁ ଏମାନେ ଏମିତି ଖୁସି ହେଇଯାନ୍ତି ? ସେମାନେ ସବୁ କେମିତି ଦେଖୁଛନ୍ତି ? ତା' ମା'ର ନାକ ଦି'ପଟେ ଟୁମା ଟୁମା ହେଇ ଆଖି ଦି'ଟା ସେ ଦରାଣ୍ଡି ଥିଲା । ସେଥିରେ କ'ଣ ଅଧିକ ବାସ୍ନା ଶୁଙ୍ଘି ହୁଏ ? ବେଶି ଶୁଭେ ? ସେମିତି ଦି'ଟା ଥିଲେ ଏ କାଗଜ ଖଣ୍ଡ ଦିଶିଥାନ୍ତା ? ଶତ୍ରୁଘ୍ନା ଦିଶିଥା'ନ୍ତା ? ସେ ମହାଜନ ଦିଶିଥାନ୍ତା...

...ସେ ଗୁରାଣ୍ଡି ହେଲା । ଧନ୍ଦିହେଲା । ତା' ହାତ ପାପୁଲି ଜଳିଲା । ପାଦ ଜଳିଲା । ସେ ଓଟାରି ହେଲା, ହାତ ଯୋଡାକୁ ଟାଣିଲା ମୁକୁଳେଇବାକୁ । ପୁରୁଣା କନା ଫୁର୍ ଫୁର୍ ହେଇ ଚିରିଗଲା । ହାତ ହୁଗୁଳିଲା ପରି ଲାଗିଲା । ଗୋଟାଏ ହାତକୁ ଟାଣିଲେ ଆର ହାତଟା ତାକୁ ଭିଡିଧଇଲା । ବନ୍ଧାହେଇଥିବା କନା ଢିଲା ହେଇଗଲାଣି; ତଥାପି କାହିଁକି ହାତ ଯୋଡାକ ଫିଟିପାରୁନାହିଁ । ସେ ଦାନ୍ତ କାମୁଡି ଗର୍ଜିଲା । ଓଟାରିଲା । ହାତ ଫିଟିଲା ନାହିଁ । ସେ କାନ୍ଦି ପକେଇଲା, ଗୋଡ ଯୋଡାକୁ ଛାଟିଲା । ସେ ବି ଫିଟିଲା ନାହିଁ ।

ଖାଇବାକୁ ନ ପାଇଲେ ବେଳେବେଳେ ରାଗରେ ସେ ଭୂଇଁକୁ ବିଧା ଗୋଇଠା ମାରିପକାଏ । ଆମ୍ପୁଡି ବିଦାରି ଦିଏ ମୁହଁକୁ । ସେଇଭଳି କ୍ରୋଧରେ ସେ ଟାଣିହେଲା । ତା' କଟଟି ଠଉଁ ହାତ ଯୋଡିକ ଛିଡି ଯାଇଥାନ୍ତା; କିନ୍ତୁ ଫିଟିଗଲା । ଓଃ, ସେ ହାତ ଯୋଡିକ ଆଗକୁ ଛାଟି ଆଣିଲା । ଦରାଣ୍ଡିଲା ପରିଚିତ ଧୂଳି ଉପରେ ଶୋଇଥିବା ରାତିଗୁଡିକୁ । କାକର ଧୂଳିରେ ତା' ରାଗ ଲିଭିଗଲା । ସେ ହାଲିଆ ହୋଇ ମୁହଁ ଘୋଡାଇଲା ତା' ଆଞ୍ଜୁଳାରେ । ଖୋଲା ହାତଯୋଡିକ ଶୂନ୍ୟରେ ପହଁରିଲେ । ପେଟ ଭିତରେ କେମିତି ଗୁଡାଏ ଅଧିକ ପବନ ପଶି ତାକୁ ଠେଲିଲା ପରି ଲାଗିଲା । ସେ ଉନ୍ମତ୍ତ ହୋଇ ଉଠି ବସିଲା । ଗୋଡ ଯୋଡାକୁ ମୁକୁଳେଇଦେଲା, ମେଲେଇଦେଲା, ହାତରେ ଆଉଁସିଲା ଅଣ୍ଟାଠଉଁ ତଳକୁ । ଆଉଁସିଲା ଉପରକୁ । ଅଣ୍ଟାରେ କନା ଖଣ୍ଡ ନାହିଁ – ନ ଥାଉ, ତା' ଦେହ ଖଣ୍ଡ ତା'ର, ତା' ହାତ ଗୋଡ ତା'ର । ପୁଣି ଭିତରେ ପବନର ଉଲ୍ଲାସ ତାକୁ ଟେକିଲା । ସେ ଉଠି ଭୁଷ୍‌କିନା ଠିଆ ହୋଇ ପଡିଲା । ପାଦ ତଳିପା କପ୍ କପ୍ ହେଲା । ପିଚ୍ଚ କଟକଟ ହେଲା । ଦେହସାରା ଖଣ୍ଡିଆ । ଘା'ଗୁଡାକ ଜଳିଲା । ସେ ହଠାତ୍ ଅନୁଭବ କଲା ଯେ ତା'ର ସବୁ ବନ୍ଧନ ଛିଡିଯାଇଛି । ସବୁ ଖସି ଯାଇଛି । ସମସ୍ତେ ତା' ଶତ୍ରୁ । ସେ ଖସିଯାଇଛି ସେମାନଙ୍କ ଖାବଳ ଭିତରୁ । ତାକୁ ଆଉ କେହି ରୋକି ପାରିବେ ନାହିଁ । ସେ ମୁକ୍ତ !

ସେ ତିଆଁମାରି ଦୌଡିଲା । ତା' ଭିତର ପବନ ତାକୁ ଅସମ୍ଭାଳ ତଡିଲା । ପଛପଟେ ଯାଇଥିଲେ ରୋଡ୍‌ର ଉଠାଣି ଆସିଥାଆନ୍ତା । ଭିଡି ହେଲା ପରି ସେ ଯାଇଥାଆନ୍ତା ପାନଦୋକାନ ଛକ ପର୍ଯ୍ୟନ୍ତ । ସେ ଆଉ କୌଣସି ଲକ୍ଷ୍ୟରେ ବନ୍ଧା ନୁହେଁ, ଆଶାରେ ବନ୍ଧା ନୁହେଁ । ତା' ଅଣ୍ଟାରେ ଲୁଗାର ଗଣ୍ଠି ନାହିଁ । ଗଣ୍ଠିରେ କାଗଜ ବିଡାଟିର ଓଜନିଆ ମୋହ ନାହିଁ । ଶତ୍ରୁଘ୍ନା ନାହିଁ । ମହାଜନ

ନାହିଁ । ଛୁଂଚି ଫୋଡା, ତଣ୍ଟିକଟା ଡକେଇତ ନାହିଁ । ...ଚକାଡୋଳା ନାହିଁ । ଧର୍ମ ନାହିଁ । ଦୟା ନାହିଁ । ପୁଣ୍ୟ ନାହିଁ । ...ଆଃ...

ସେ ପ୍ରାଣମୂର୍ଚ୍ଛା ଧାଇଁଲା । ଗୁଡିଏ ଜ୍ୱଳନ୍ତ କ୍ଷତ ଏବଂ ନିର୍ଯାତନାର ସ୍ମୃତି, ଗୁଡିଏ ବନ୍ଧନର ପୀଡା ତା' ସାଙ୍ଗରେ ଦୌଡିଥାନ୍ତି । ସେ ସେମାନଙ୍କୁ ଅନେକ ପଛରେ ପକେଇ ପଶିଗଲା କାକର ରାତି ଭିତରକୁ । ରାତିଗୁଡିକ ପାତଳ ପାଣି ପରି ନୀରବ । ଜନମାନବହୀନ ଗଛବୃକ୍ଷହୀନ ବିସ୍ତୀର୍ଣ୍ଣ ଟାଙ୍ଗି ଉପରେ ସେ ଧାଇଁଥାଏ । ହାଲିଆରେ ଭିତରୁ ପବନ ଟୋଳିହେଲା । ସେ ଥମିଲା । ତା' ପୂର୍ବରୁ ଗୁଡାଏ ମନଇଚ୍ଛା ଚକ୍‌କର କାଟିଲା । ଡେଇଁଲା । ଗଡିଲା । ବାଁ ଡାହାଣ ଆଗ ପଛ ଚାରିଆଡେ ଧାଇଁଲା । ଡେଣା ମେଲେଇ ପବନ ଶୋଷିଲା ।

ସେଇଠି ସେ ଚାରିକାତ ମେଲେଇ ଶୋଇଗଲା । କିଏ ଅଛି ତାକୁ ବାରଣ କରିବ ?...ପବନ ଥମି ଆସିଲା । ସେ ହଠାତ୍ ପାଟିକରି ଡାକିଲା, "ଆଲୁଅ ରେ...ହେ...ଏ...ଆଲୁ...ଅ...ଅ ।"

ଠୋ ଠୋ ହସିଲା ପାଟିକରି । ତା'ପରେ କାନେଇଲା । ଶୂନ୍‌ଶାନ । ସେ କିର୍‌କିର୍ ମାରି ହସିଲା । ଛପ୍ କରି ଉଠି ବସିଲା । ଏଣେ ତେଣେ ଛେପ ପକେଇଲା । ...କେହି କୁଆଡେ ନାହିଁ?...ହି...ହି...ନଥାନ୍ତୁ...ଥୁ' ଥୁ' ।

ୟା'ପରେ କୁଆଡେ ଯିବ?...ଯୋ'ଆଡେ ମନ ସେଆଡେ...ହେ, ହେ! କିନ୍ତୁ କୁଆଡେ??...ସତେ କୁଆଡେ???...ଆଗକୁ! ଆଗକୁ? ସେ ଆଡେ କ'ଣ ଅଛି? – କିଛି ନାହିଁ ।

ପଛକୁ? – କିଛି ନାହିଁ । ତଳେ ଧୂଳି ନାହିଁ । ଉପରେ ଡାଳ ନାହିଁ । ଏଠି ଶିରିଷ ଗଛ ନାହିଁ । ତା' ସୁ' ସୁ' ଛାତ ନାହିଁ ।

ସେ ଛେପ ଢୋକିଲା । ତା' ପାଦ ସିର୍‌ସିର୍ କଲା...ହଗ ମାଡିଲା! ଖପ୍‌କିନା ଉଠିପଡି ସେ ପାଟିକରି ଡାକିଲା... "ହେ...ଏ...ଶତ୍ରୁଘ୍ନା ଭାଇ...ଇ...!" ସ୍ୱରଟା ଲଙ୍ଗଳା ହୋଇ ଦୌଡିଗଲା କାହିଁ କୁଆଡେ! ଚୂଣି ହୋଇଗଲା । ହଜିଗଲା ।

ତାକୁ ଆହୁରି ଡରମାଡିଲା । ସେ ଆହୁରି ଜୋର୍‌ରେ ଡାକିଲା...

"ହେ...ଏ...ଚକାଡୋଳା...ଆ...! ହେ...ଏ...ବକାରି...ଇ!!" ତା' ନିଃଶ୍ୱାସ ଗୁଡାକ ନିଗିଡିଗଲେ ଶୂନ୍ୟରେ ।

ସେ ଅତର୍କରେ ପୁଣି ଧାଇଁଲା । ବାଉଳିହୋଇ କ'ଣ ସବୁ ଖୋଜିଲା । କାହାକୁ ଟିକିଏ ଧରିପକାନ୍ତା! ଆଉଜିପଡନ୍ତା! କାମୁଡା କୁତିଟାଏ ହେଲେ ବି ତା' ବେକକୁ ଧରି ଓହଳିଯାଆନ୍ତା । ମଣିଷ ହାତର ଉଷୁମ୍ ପାପୁଲା ତା' ତୋଟି ଚିପି ଧରୁ, ସେ ତାକୁ ଫିଟାନ୍ତା ନାହିଁ । କିନ୍ତୁ ଥଳକୂଳ ନାହିଁ । ଖଣିଆ ଖାବରା ନାହିଁ । ଏଇଟା ମେଲାଟାଏ ପୋଲା ଭୋକିଲା ମେଲାଟାଏ ଖାଲି!...ମୋ ମା'କିଲୋ...ଏଇଟା କ'ଣ??

ତା' ଚାରିଆଡେ ରାତିର ପାତଳ କାକର, ନୀରବ ପାଣି । ତା' ହାତ ଗୋଡ କୋଲ ମାରି

ଠକ୍ ଠକ୍ ଥରିଲା । ସେ ଠିଆ ଠିଆ ମୂଡି ପକେଇଲା । ତା' ଭିତରୁ ପବନ ଖସିଗଲା । ହାତର ଛାଞ୍ଚଟା ତରଳିଗଲା । ସେ ମେଞ୍ଚାଟିଏ ହୋଇ ତା'ର ଉଷୁମ ମୂତ ଉପରେ ଲୋଟି ପଡ଼ିଲା... କାକର ପଥର ଉପରେ । ଆକ୍ତା ଲାଗିଲା ତାକୁ । ଭୟାବହ ଶୂନ୍ୟତାରେ ଗୋଟିଏ ମାତ୍ର ଅନ୍ଧ କଲିଜା ଦୁକ୍ ଦୁକ୍ ହେଲା କିଛି ସମୟ । ତା' ଭିତରକୁ ରାତି ପଶିଗଲା ନିଃଶ୍ୱାସରେ । ସେ ଭିତରେ ବୁଡ଼ିଗଲା ସବୁ ସ୍ମୃତି-ବନ୍ଧନର, ଜ୍ୱାଳାର, ପୀଡନର । ସେ ଭୁଲିଗଲା ତା'ର କ୍ଷତ, ତା'ର ହାତ, ତା'ର ଗୋଡ, ତା' ଲଙ୍ଗଳା ଦେହଟାକୁ!!

ତା' କଲିଜା ଦୁକ୍‌ଦୁକ୍ କାନେଇଲା ଏ ପାଖରୁ ସେ ପାଖକୁ! ଦୋହଲିଲା । ଦରାଣ୍ଡିଲା । ଭୟରେ ଦୁକ୍ କିନା ଆଖି ବୁଜିଦେଲା କଲିଜାଟି ।



# ପ୍ରହରୀ

"ଟିକିଏ ଆସ୍ତେ କଥା କହନ୍ତୁ...ଆଉ ଘୁଞ୍ଚି ଆସନ୍ତୁ ଏ ଅନ୍ଧାର ଭିତରକୁ । ...ଏଇଠୁ ସବୁ ଦେଖାଯିବ...ଏମିତି ଗୁଡାଏ କାଉଳି ହେଲେ ଚଳିବ ନାହିଁ । ଟିକିଏ ଥୟ ଧରନ୍ତୁ । ତା' ବେଳା ଅନୁସାରେ ସବୁ ହବ ।... ରହନ୍ତୁ, ମୁଁ ଆଗ ଖଣ୍ଡେ ବିଡି ଲଗାଏ, ତା' ଉତ୍ତାରୁ ସବୁ... ।"

"...ହଁ, ସେ ଯେଉଁ କାଳିଆ କୋଠାଟା ନୁହେଁ, ସେଇଟା ସେମିତି ନ ଥିଲା । ଏ ସାଇଯାକରେ ସେଇଟା ଥିଲା ପ୍ରଥମ କୋଠା । ହେଇ, ଟିକିଏ ଆଗକୁ ଗୋଟାଏ ବତିଖୁଣ୍ଟ, ଯେଉଁଟା ଧପ୍ ଧପ୍ ହଉଚି, ଲିଭୁନାହିଁ କି ଜଳୁ ନାହିଁ, ସେଯାଏଁ ଘରଦ୍ୱାର କିଛି ନ ଥିଲା । ତୁଚ୍ଛା ଅପନ୍ତରା । ସେଇଠି ସଞ୍ଜ ହେଇଗଲେ ବିଲୁଆ ଭେଳା ଭେଳା ବୁଲୁଥିଲେ । ତା' ଉତ୍ତାରୁ ଏଇ କୋଠାଟା ଆଗ ଉଠିଲ ।..."

"ସେତେବେଳକୁ ମନହର ସାହୁ, କୁଣ୍ଡାବେପାରୀ ପାଖରେ ମୁଁ ରହୁଥାଏ । ଦିନବେଳେ ରାନ୍ଧେ । ରାତିରେ କୁଣ୍ଡାବସ୍ତା ଉପରେ ଚୋରଙ୍କୁ ଜଗି ଶୁଏ । ...ମୋ ବୟସ ? ମୋ' ବୟସ ସେତେବେଳକୁ ଦଶବର୍ଷ କି ବାରବର୍ଷ ହବ ପରା !...ଶୁଣୁନାହାନ୍ତି ମଜାକଥା ! ଦି'ଥାକ କୁଣ୍ଡାବସ୍ତା ସନ୍ଧିରେ ଗୋଟେ ହାରିକିନି ଜାଳି ସେ ସବୁଦିନେ ବସି ପଇସା ଗଣେ । ମଦପିଏ । ସେଇଠିକି ମତେ ଦିନେ ରାତିରେ ଡାକିଲା । ନିଶାଖାଇ ତା' ହୋସ୍ ବିଗିଡି ଯାଇଥାଏ । ମତେ କୁଣ୍ଢେଇଧରି ଭାତୁ ଭାତୁ ଗୁଡାଏ କାନ୍ଦିଲା । ଉଧୁ ଲଙ୍ଗଳା ହେଇ ଠିଆହେଇଥାଏ, ଥରୁଥାଏ, ଆଉ କାନ୍ଦୁଥାଏ । କଞ୍ଚାନିଦରୁ ଉଠି ମୁଁ ଘୁମେଇଲା ପରି ଠିଆହେଇଥାଏ । ଏମିତି ଥିଲା ଥିଲା, କ'ଣ କଲା ନା', ମୋ' ଗାଲକୁ ରାଟ୍‌କିନା ଦେଲା କି କାମୁଡି !.. ହସୁଛନ୍ତି କ'ଣ ମ, ଶୁଣୁନାହାନ୍ତି !...ମୁଁ କଲବଲ ହେଇ ରଡିଛାଡିଲି । ତା' ପେଟରେ ଗୋଟେ କହୁଣୀ ଭୁଷା ମାରିଦେଇ ଡେଇଁପଡିଲି । ଦାଣ୍ଡରେ ଆସି ଠିଆହବାକୁ ଡରମାଡିଲା । ଧାଇଁଲି ସେ ଛକଯାଏଁ । ସେଇଠୁ ସେ କୋଠା ଅଧା ତୋଳା ହେଇଥାଏ, ତା'ରି ଭିତରେ ପଶିଗଲି । କେହି କୁଆଡେ ନ ଥାନ୍ତି । ଅନ୍ଧାରରେ ବସି ଗାଲକୁ ଆଉଁସିଲି । ଦାଗ ପଡି ଫୁଲି ଯାଇଥାଏ । ବିନ୍ଧୁଥାଏ କପ୍ କପ୍ ହେଇ । ତା' ଛେପ ଗୁଡାକ ଗନ୍ଧଉଥାଏ ଦୋକତା ଭଳି, ମଦ ଭଳି !"

"...ହେ, ହେ, ହେ; ଆଜ୍ଞା ଠିକ୍ କହିଛନ୍ତି । ବୟସ ଉଣା ହେଲେ କ'ଣ ହବ, ଆପଣ

ଜାଣି ଖୁବ୍ ସମଝିବା ଲୋକ । କୁଣ୍ଡାବେପାରୀ ସେଇଆ ବୋଧେ ଭାବୁଥିଲା । ହେଲେ ସେ ଲୋକଟା, ଆଜ୍ଞା ଖରାପ ଲୋକ ନ ଥିଲା । ତା'ର ସେ ଲୁଚି ଲୁଚି କ'ଣ ସବୁ କରୁଥିଲା ସିନା, ତା' ପାଖରେ ପହଞ୍ଚିଗଲେ ସେ କାହାକୁ ଖାଲିହାତରେ ବାହୁଡେଇ ଦେଉ ନଥିଲା । ଦିନେ ମତେ ବାଟରୁ ଡାକିନେଇ ଫେଣାଏ ଦେଶୀ କଦଳୀ ଯାଚି ଦେଇଥିଲା । ହେ, ହେ, ଆପଣ ତ' ଏମିତି ଥଟିଲି କଥା କହିବେ । ହଉ, ଛାଡନ୍ତୁ, ତା'ହେଲେ, ତା' କଥା !"

"ମୁଁ, ଆଜ୍ଞା, ସେ କୋଠାରେ ଚୌକିଦାର କାମ କଲି । କେମିତି, ଶୁଣନ୍ତୁ ! ମୁଁ ସେଇଠି ରାତି ବିତେଇଦେଲି କାନ୍ଥକୁ ଆଉଜି ! ସକାଳୁ ଗୋଟାଏ ପେଣ୍ଡୁରାମୁହାଁ ବାବୁ, ଆଉ ତା' ପାତଳୀବାବୁଆଣୀ ବଡ ମେଘଡମ୍ବର ଗାଡିଟାଏ ରଖି ଓହ୍ଲେଇ ଆସିଲେ । ସତକହୁଚି, ସେ ବାବୁଟାର ମୁହଁ ତମରି ମୁହଁଛିଡିକା – ବଅସ ଲାଗିଗଲେ ତମେ ଅବିକଳ ସେମିତି ପେଣ୍ଡୁରାମୁହାଁ ଦିଶିବ ! ନାଇଁ ଆଜ୍ଞା, ମୁଁ କାହିଁକି ଥଟ୍ଟା କରିବି ! ମୁଁ ସେତିକି ଦେଖିଲାବେଳୁ ପରା ଆପଣଙ୍କୁ ଥାରେଇଗଲି । ...ହଉ, ଶୁଣନ୍ତୁ ! କଅଁଳ ଖରାରେ ସାଇବ ପରି ତୋଫା ଦିଶୁଥାନ୍ତି ଦି'ଜଣଯାକ । ମୁଁ କ'ଣ କରିବି, କ'ଣ କରିବି ବୋଲି ଆଗ ଧନ୍ଦି ହେଇଗଲି । ବୁଦ୍ଧି ଖଟୁ ନଥାଏ । ସେ ଦିହେଁ ଏଣେ ପାହାଚ ଉଠି ଆସୁଥାନ୍ତି । ମୁଁ ଭୁସ୍‌କିନା ତାଙ୍କୁ ମୁଣ୍ଡିଆଟାଏ ମାରିଦେଇ ଠିଆହେଇଗଲି । ବାବୁ ଚମକି ପଡିଲା । ତା' ଟୁମା ଟୁମା ଆଖି କୁଞ୍ଚେଇଗଲା । ସେ ସିଗାରେଟ୍ ଧୂଆଁ ଛାଡି ପଚାରିଲା, "କିବେ ଶଳା, କ'ଣ ଚୋରି କରିବାକୁ ପଶିଥିଲୁ ?"...ମୁଁ କହିଲି, "ନା !" ପଚାରିଲା, "ତେବେ କାହିଁକି ଯା ଭିତରେ ପଶିଥିଲୁ ବେ ? ଏଇଟା କ'ଣ ତୋ ବୋପାଘର ?" ମତେ କାନ୍ଦମାଡିଲା । ମୁଁ ତଳକୁ ମୁହଁ ପୋତି କାନ୍ଦି ପକେଇଲି । ବାବୁଆଣୀଟା ସହି ନପାରି ମୋ' ପିଠି ଆଉଁସିଦେଲା, "କିରେ, କ'ଣ ଭୋକକରୁଚି ?" ବାବୁ କହିଲା, "ଏଇଟା କ'ଣ ନ ଖାଇଲା ପରି ଦିଶୁଚି ତମକୁ ? ଦେଖୁନା, କେମିତି ଗୋରାହେଇଚି, ଭାଲୁ ଛୁଆପରି ମୋଟେଇଚି । ଏଠି ସେଠି ମୁହଁ ମାରି ନଖାଇଲେ କ'ଣ ଏମିତି ଦିଶନ୍ତା ?" "ହଉ, କ'ଣହେଲା – କିରେ କ'ଣ ଖାଇବୁ ?...ଆଚ୍ଛା, ଏଇଠି ଜଗିବାକୁ ପରା ଗୋଟେ ପିଲା ଖୋଜୁଥିଲ- ଯାକୁ ରଖିଦଉନ ?"...ବାବୁ ଗୁଡାଏ ହସିଲା । ହେଲେ ରାଜି ହେଇଗଲା...ବଢିଆଲୋକ ଦି'ଜଣଯାକ ।

"...ଏଇଟା ହେଲା ତିରିଶବର୍ଷ ତଳର କଥା । ଏ କୋଠା ତୋଳା ହେଲା । କଲିକତାରୁ କାରିଗର ଆସିଲେ । ରଙ୍ଗ ଲାଗିଲା । ସେତେବେଳେ ଏଇଟା ଥିଲା ସେବତୀ ଫୁଲ ପରି ତୋଫା ହଳଦିଆ । ତା' ପାଖକୁ ସେ ଯେଉଁ କୋଠାଟା ନାଁ...ସେଇଟା ନୁହଁ...ଆଉ ଗୋଟେ ଛାଡି – ହାଁ, ହାଁ, ସେ ଛାତ ଉପର ଟୁଙ୍ଗିଘରେ ଯେଉଁଠି ଆଲୁଅ ଜଳୁଛି – ସେଇଠି ସେ ଶୁକୁଟା ବୁଢାକୁ ଶ୍ୱାସଟେକୁଚି, ସେ ଉଠି ଏଇଲାଗେ ଓଷଦ ପିଉଥିବ, ତା' କଥା ପରେ କହିବି – ପ୍ରାୟ ସେଇ ରଙ୍ଗ, ହେଲେ ଆଉରି ଚହଟ ! ଘରଭିତର ଉଆସ ପରି ସଜାହେଲା । ସେଇଠୁ ସେମାନେ ଆସିଲେ । ତାଙ୍କ ଘରେ ଜମା ତିନିଜଣ – ବାବୁ, ବାବୁଆଣୀ, ଆଉ ଛ'ସାତବର୍ଷର ଝିଅ ବେବି ! ଚଳଣି, ଗୋଟାଏ ରଜା ପାରିବନାହିଁ । ମତେ ମିଶେଇ ଛ'ଜଣ ନୌକର ରହିଥାଉ । କପିଳ ରାନ୍ଧେ । ତା'

ମାଇପ ରଙ୍କୀ ଘରଓଳାଏ, ବାସନ ମାଜେ । ମତେ ସମସ୍ତେ ଭଲ ପାଉଥିଲେ । ମତେ ଡାକୁଥିଲେ 'ନେପାଳୀ' । ସେଇ ନାଁ ଏବେ ବି ମୋର ରହିଚି । ମୋ' ନିଜ ନାଁ କିନ୍ତୁ 'ଗୋର୍ଖା' । ସେ ବହୁଦିନ ତଳ କଥା । ମୋ' ମା' ମତେ ଗୋରାବୋଲି ଡାକୁଥିଲା । ମୋର ମନେଅଛି – ମୋ' ମା' ପାଖକୁ ଗୋଟେ ନେପାଳୀ ଦିନେ ଆସିଲା । କ'ଣ ସବୁ ପାଟିତୁଣ୍ଡ ହେଲା । ମୋ' ମା'ର ଚୁଟିଧରି ସେ ଘୋଷାରିଲା । ମୁଁ ପାଟି କରିବାରୁ ମତେ ଲାତମାରି ଗଡେଇଦେଲା । ମୁଁ ସେମିତି ପଡିଥାଏ । ସେ ଦିହେଁ ରାତିରେ କୁଆଡେ ବାହାରିଗଲେ – ଆଉ ଫେରିଲେ ନାହିଁ । ତା' ଆରଦିନ ପୋଖରୀରୁ ଗୋଟେ ଶବ ବାହାରିଲା । ଲୋକେ କହିଲେ ସେଇଟା ମୋ' ମା'ର ! ସେ କୋଠାରେ ଦିନେ ବଡ ଦର୍ପଣ ଆଗରେ ଠିଆହେଇ ମୁଁ ଚମକି ପଡିଲି । ପିଲାଦିନ କଥାଗୁଡାକ ମନେପଡିଗଲା । ମତେ ଜଣାଗଲା ଯେ ବୋଧେ ସେ ନେପାଳୀଟା ଥିଲା ମୋ' ବାପ । ସେଇ ମୋ' ମା'କୁ ମାରିଦେଇ ପାଣିରେ ଫିଙ୍ଗିଦେଲା, ନିଜେ ପଳେଇଲା କାହିଁ କୁଆଡେ । ମୁଁ ସେ ଦର୍ପଣକୁ ଅନେଇଥାଏ । ମତେ ଶୁଭିଲା, ମୋ' ମା'ମତେ ଡାକୁଚି, "ଗୋରା ! ଗୋରାକିରେ ?" ଚମକିପଡି ପଛକୁ ଚାହିଁଲି । ବାବୁଆଣୀ ଠିଆହେଇଥାଏ । "କିରେ ନେପାଳୀ, ଏଇଠି କ'ଣ କରୁଚୁ ?" – ନାଇଁ ମା'...ଏଇଟାକୁ ସେଇଟା କ'ଣ ଏମିତି କହି ମୁଁ ଖସିଯାଇଥିଲି ।..."

"ମୋ' ଚେହେରାଟା ଦେଖୁନାହାନ୍ତି କେମିତି ସତକୁସତ ନେପାଳୀଭଳି – ସେମିତି ଗୋରା, ସେମିତି କୁନ୍ଦିଲା ପରି ମୋଟାରୋଟା, ସେମିତି ବାଙ୍ଗରା, ଛେପେରା ମୁହାଁ ! ମତେ ସେ ଘରେ ସମସ୍ତେ ସାଉଁଳୁଥିଲେ, ଭଲପାଉଥିଲେ । ରଙ୍କୀ, ଲୁଚେଇ ଲୁଚେଇ ମାଂସଭଜା ଖୁଆଉଥିଲା । ସେଇଟା ତା' ପାଇଁ କପିଳା ଚୋରେଇ ଆଣି ଦେଉଥିଲା ରୋଷଘରୁ । ...ବେବି କଳ ଆଲମାରୀରୁ କାକର କାକର ମିଠେଇ ଆଣି ବାଟିପଟେ ମତେ ଧରେଇଦେଉଥିଲା । ମୁଁ ଭାରି ଆନନ୍ଦରେ ବାଲୁବାଲୁ କରି ଖାଉଥିଲି । ସେ ଖୁସିହେଇ ମୋ' ମୁହଁକୁ ଚାହିଁରହୁଥିଲା । ସରିଆସିଲାବେଳକୁ ପଚାରୁଥିଲା, "ଆଉ ଖାଇବୁ ?" ମୁଁ ମିଠା ସାଲୁ ସାଲୁ ମୁହଁରେ ତା'ର ସେ ବଡ ବଡ ଆଖିକୁ ଚାହିଁ ରହୁଥିଲି । ମୁଣ୍ଡ ହଲେଇ ନାହିଁ କରୁଥିଲି । ବାବୁର ଦିନେ କ'ଣ ମନହେଲା କେଜାଣି – ଗସ୍ତରୁ ଫେରିଥାଏ; ମୁଁ ଟେବୁଲ୍ ପୋଛି ପ୍ଲେଟ୍ ସଜାଡି ଦେଉଥାଏ । ବାବୁ ନୂଆ ବୋତଲରୁ କ'ଣ ନିଶା କାଢି ପିଉଥାଏ । ବାବୁଆଣୀ ନିଜେ ଗୋଟାଏ ଭଜା କୁକୁଡା ଆଣି ଥୋଇଦେଲା । ମୁଁ ଚାହିଁଥାଏ । ବଢିଆ ରାନ୍ଧିଥାଏ କପିଳା । ସେ କଲିକତାରେ ଥିଲା ତ !

"...ବାବୁ ହଠାତ୍ କହିଲା, 'ନେପାଳୀ, ତୁ ଏଇଟା ଖାଇପାରିବୁ ?' ବାବୁଆଣୀ କହିଲା, 'ତର୍କାରି ହେଇଚି, ସେ ଖାଇବ ନାଇଁ କି ? ତମେ ଏଇଟା ଖାଉନ !' ନ ଶୁଣିଲା ପରି ବାବୁ ମୁଚୁ ମୁଚୁ ହସୁଥାଏ । ପୁଣି କହିଲା, 'ଖାଇ-ପାରିବୁ ? ଆ, ଏଇଠି ବସ୍' ମୁଁ ବସିଗଲି । ମୋ' ପାଖରେ ସେ ପ୍ଲେଟ ଥୋଇଦେଇ କହିଲା, 'ଖା' ! ମୁଁ ଟିକିଏ ଲଜେଇଲି । ତା' ଉତ୍ତାରୁ ବାସ୍ନାଟା ଏମିତି ବଢିଆ ହେଇଥିଲା ଯେ, ମୋ' ପାଟିରେ ପାଣି କଚକଚ ହେଲା । କଣ୍ଟା ଛୁରୀକୁ ଆସ୍ତେ ତଳେ ଥୋଇଦେଇ ମୁଁ ସେ କୁକୁଡାଟିକୁ ଦୁଇହାତରେ ମୁହଁକୁ ଟେକିଲି । ବାବୁ ହୋ ହୋ ହେଇ ହସିଲା ।

ମୁଁ ମୋର ପୁଳା ପୁଳା ମାଉଁସ ଦାନ୍ତ ଲଗେଇ ଭିଡି ଲାଗିଥାଏ । ସୁଆଦିଆ କଅଁଳ ବୁଙ୍ଗା ବୁଙ୍ଗା ମାଉଁସରେ ମୋ' ମନ । ମୋର ନଜର ନାହିଁ, ମୋତେ ଘେରି କେତେ ଲୋକ ଠିଆ ହୋଇ ଯାଇଥାନ୍ତି । ସମସ୍ତେ ହସିଲାଗିଥାନ୍ତି । ବାବୁ ତା' ପେଟ ଚିପି ହସି ଲାଗିଥାଏ । ଶେଷକୁ ନିର୍ମଳ ହାଡଯାକ ଥୋଇ ମୁଁ ଅନେଇଲି । ମୋ' ମୁହଁ ସେତେବେଳକୁ ସାଲୁବାଲୁ, ହାତ ସାଲୁବାଲୁ । ବାବୁ, ବାବୁଆଣୀ, ବେବି – ସମସ୍ତେ ହସୁଥାନ୍ତି । ମୁଁ ବି ଦାନ୍ତ ଦେଖେଇ ହସିଦେଲି ନା କ'ଣ – ସେମାନେ ହସି ହସି ଲୋଟିଗଲେ...ଏମିତି ଏମିତି କେତେ କଥା ସେ ଘରେ । ଭାରି ବଢିଆ ଲୋକ ସମସ୍ତେ ।..."

"...ହେଇ ତା' ବେଳ ପାଖେଇ ଆସିଲା । ଜହ୍ନ ସେ ତେନ୍ତୁଳିଗଛ ଉପରୁ ଉଠିଆସି ମୁଣ୍ଡ ଉପରେ ହେଇଗଲେ; ଏମିତି ପୂନିଆଁ ରାତିରେ ସେ କଥା ପୁଣି ହବ ।...ମୁଁ କହୁଚି ହବ । ମୁଁ ଆଜିକୁ କୋଡିଏ ବର୍ଷ ହେଲା ଦେଖିଆସୁଚି । ଆପଣ ବିଶ୍ୱାସ କଲେ ସିନା ହବ ! ହଉ, ଟିକିଏ ସବୁର କରିଥାନ୍ତୁ । ନିଜେ ଶୁଣିବେ, ନିଜେ ଦେଖିବେ । ...ସେ ବାଁପାଖେ ଶେଷମୁଣ୍ଡ ଆଡେ ଦେଖନ୍ତୁ । ସେଇଠି ଆଲୁଅ ନାହିଁ । ଦୂରରେ ଯୋଉ ପାହାଡ ଜହ୍ନ ଆଲୁଅରେ ଦିଶୁଚି, ସେସବୁ ଅନେକ ଦୂର । ତା' ଆଡକୁ ଟାଳଗଡ ଦି'ଚାରିଟା ଦେଖିପାରୁଚନ୍ତି ?...ବାଆସ୍, ସେଇଠି ଗୋଟାଏ ପୋଲ ଅଛି । ଏବେ ଯେଉଁଟା ଅଛି, ସେଇଟା ନୂଆ । ଯା ଆଗରୁ କାଠ ପୋଲଟାଏ ଥିଲା – ଗାଡି ଚାଲିଲେ କଟ କଟ ହୁଏ । କେହି ଖାତିର୍ କରନ୍ତିନାହିଁ – ଚାଲିଚି ତ' ଚାଲିଚି ! ସେତେବେଳକୁ ମୁଁ ସେ ଘରେ ଦଶବର୍ଷ ରହିସାରିଥାଏ । ସେଦିନ ରାତି ଦଶଟାରେ ତାଙ୍କ ମେଘଡମ୍ବର ଗାଡିରେ ବାବୁଆଣୀ ଆଉ ବେବିକୁ ନେଇ ବାବୁ ଫେରିବେ । ବାବୁଆଣୀଙ୍କ ବାପଘରକୁ ବେବିକୁ ନେଇ ସେ ଚାରିଦିନ ହେଲା ଯାଇଥାନ୍ତି । ଆମେ ସବୁ ନୌକର ଚାକର ଟାକିବସିଥାଉ । ଘରେ କୋଉଠି ହେଲେ ଏତେଟିକେ ଧୂଳିମଳି ନ ଥାଏ । ରଙ୍ଗୀ ଜିଭଲଗେଇ ସବୁ ଚାଟିଦେଉଥାଏ । କପିଳା ରାନ୍ଧିଥାଏ ନାନାଦି ଜିନିଷ । ଟେବୁଲ ସଜା ହେଇଥାଏ । ମୋର ଥିଲା, ବାବୁଙ୍କ ଶୋଇବା ଘର ଦେଖି ବୁଲିଆସିବା । ସେଇ ଚଦରକୁ ଟାଣି ପାଣିଭଳି ବିଛେଇ ରଖିଥାଏ – ତଥାପି ମାଠିଦଉଥାଏ ଥରକୁଥର । ଖଟପାଖ ଛୋଟ ଟେବୁଲରେ ଗୋଟାଏ ଗଜଦନ୍ତର ତୋଡା । ଆଉ ଗୋଟାକରେ ଯୂଇ ପେନ୍ଥା ସଜାଡି ଦେଇଥାଏ । ଭିତରେ ପଶିଗଲେ ଯେମିତି ବାସ୍ନାରେ ପେଟ ପୂରିଯିବ । ...ବେବି ବିଚାରୀ ସବୁବେଳେ ଏକୁଟିଆ । ତା' ଘରେ ସେଇଭଳି ଫୁଲତୋଡା ସଜାଡି ଦେଇଥାଏ । ପାଞ୍ଚବର୍ଷ ରହିବା ପରେ ବେବି ଦିନକୁଦିନ ବେଶି ବେଶି ସୁନ୍ଦର ଦିଶୁଥାଏ । ମୋତେ ବି ବେଶି ବେଶି ଆଦର କରୁଥାଏ । ସେଇ ଭିତରେ ଥରେ ଗୋଟାଏ ବେକୁବ୍ କାମ ମୁଁ କରିଦେଇଥାଏ । କ'ଣ କି, ବେବି ଯାଇଥାଏ ବୁଲି । ଫେରୁ ଫେରୁ ରାତି ହବବୋଲି କହିଥାଏ । ମୁଁ ତା' ବଖରାରେ ପଶିଗଲେ ତାରି ବାସ୍ନା ମହକି ଯାଉଥାଏ । ତା' ଶେଯ, ତା' ତକିଆ, ସବୁ ସେଇ ବାସ୍ନା । ମୁଁ ଶେଷକୁ ଶୁଙ୍ଘି ଶୁଙ୍ଘି ଠଉରେଇଲି । ଗୋଟେ ସୁନ୍ଦର କାଚଡବା ଫିଟେଇ ଯେଉଁଟା ସେ ମୁହଁରେ ଲଗାଏ ତାକୁ ଆଙ୍ଗୁଠିରେ କାଢି ନାକପାଖରେ ଲଗେଇବାରୁ ସେମିତି ମହମହ ବାସିଗଲା । ମୋ' ଭିତରେ କେମିତି କେମିତି

ହେଇଗଲା । ମୁଁ ଯାହା କଲି, ଆପଣ ଶୁଣିଲେ ହସିବେ । ମତେ ବି ହସମାଡୁଚି । ମୁଁ ଯାଇ ବେବିର ଶେଯ ଉପରେ ଗଡିପଡିଲି । ମତେ ଖାଲି ସଲସଲ ଲାଗୁଥାଏ । ମୁଁ ଏ ମୁଣ୍ଡରୁ ସେମୁଣ୍ଡ ଗଡିଯାଉଥାଏ । ଟିକିଏ ହାଲିଆ ଲାଗିଲା, ଖୁସିଲାଗିଲା । ସେମିତି ଚିତ୍‌ମାତ୍ ହେଇ, ଗୋଡ ଓସାରି ଦେଇ ନିଧତକ ଶୋଇଥାଏ । ସେ ଡବାରୁ ମେଞ୍ଚା ମେଞ୍ଚା ବାସ୍ନା ଆଣି ମୁଁ ମୁହଁରେ ବୋଲି ହେଉଥାଏ । ଡବାକଯାକ ସରିବା ଉପରେ । ହଠାତ୍ ଖଟପାଖରେ ଆସି ଛପ୍‌କିନା ଠିଆହେଇଗଲେ ବାବୁଆଣୀ ଆଉ ବେବି । ...ଓଃ, ମୋ' ଅବସ୍ଥା କାହିଁ ପଚାରୁଛନ୍ତି ? ମୋ' ହାତ ଗୋଡରୁ ଜୀଅ ଛାଡିଗଲା । ମୁଁ ସେମିତି କାଠପରି ପଡିରହି ମିଟି ମିଟି ଚାହିଁଥାଏ । ବେବି କିଲିକିଲିଆ ରଡିଛାଡି ହସୁଥାଏ । ବାବୁଆଣୀ ମୁହଁରେ ହାତ ଦେଇ ହସୁଥାନ୍ତି । ବାବୁ କାହୁଁ ଆସି ସେଇଠି ପହଞ୍ଚିଗଲେ । ମତେ ଦେଖି ଗେଁ ଗେଁ ହସିଲେ । କେତେବେଳକୁ ଡେଣାଧରି କହିଲେ – ଉଠ୍‌ବେ ମାଙ୍କଡ, ଆ ଇଆଡେ ! ମତେ ନେଇ ବଡ ଦର୍ପଣଟା ଆଗରେ ଠିଆ କରେଇଦେଲେ । ବହେ ହସିଲେ ସମସ୍ତେ । ତାଳିମାରି ବେବି ହସୁଥାଏ । ମୁଁ ଦର୍ପଣରେ ମୋ' ବାଲୁବାଲୁ ମୁହଁ ଦେଖି ଚିହ୍ନିପାରିଲି ନାହିଁ । ଲାଜରେ ତଳକୁ ମୁହଁ ପୋତିଦେଲି । କାନ୍ଦମାଡିଲା । ବାବୁଆଣୀ ଗୋଡତଳେ ମୁଣ୍ଡିଆମାରି ପଡିଗଲି । ସେ ପିଠିରେ ହାତମାରି କହିଲେ, "ଆରେ, ଏମିତି କାଇଁ ହଉଚ ସବୁ ! ମଣିଷ ମନ ତ' – କ'ଣ କରିବ ? ଉଠ୍, ତତେ ଏଥିରୁ ଗୋଟେ ଡବା ମଗେଇଦବା । ଲଗେଇବା ଶିଖେଇଦବ ରଙ୍କୀ । – ବୁଝିଲୁ ! ଆଉ ଗୋଟେ ଗଦି କରିଦବା ଶୋଇବାକୁ । ଯା, ଏମିତି ଆଉ କରିବୁନାହିଁ ।"

"ମୁଁ ତିଆଁ ମାରି ପଳେଇଲି । ଚାରି ପାଞ୍ଚଦିନ ଯାଏଁ ଲାଜରେ ଲୁଚିଲି । କାହା ଆଗରେ ବାହାରିଲି ନାଇଁ । ବେବି ବଖରାରେ ତ' ଜମା ପଶିଲିନାହିଁ । ଯାର କିଛିଦିନ ପରେ ବେବି ପଳେଇଲା ବାହାରେ କୋଉଠି ପଢିବାକୁ । ମଝିରେ ମଝିରେ ଆସୁଥାଏ ଛୁଟିରେ । ଭାରି ମଉଜ ହୁଏ । ଖିଆପିଆ ଧୁମ୍‌ଧାମ୍ । ସେଇଠୁ ସେ ପଳାଏ । ତା' ଘରେ ତାଲା ପଡିଯାଏ । ମୁଁ ସବୁଦିନ କବାଟ ଦୁଆରବନ୍ଧ ଝାଡିଦଉଥାଏ । ସେ ବାହାରିଗଲେ ବାବୁଆଣୀ ଏକୁଟିଆ ଉଦାସ ହେଇ ବସନ୍ତି । ନହେଲେ ଗାଡିନେଇ ବାହାରିଯାଆନ୍ତି ବୁଲିବାକୁ । ବାବୁ ବେଶି ସମୟ ବାହାରେ ରହନ୍ତି । କ'ଣ ସବୁ ବ୍ୟବସାୟ କାମ ତାଙ୍କର ଲାଗିଥାଏ । ମୁଁ ସେ ଚାରି ପାଞ୍ଚବର୍ଷ ବେଶି ବେଳ କଟାଏ କପିଳା ବଖରାରେ । ...ସେଇଟା କ'ଣ ହେଲା କି, ରଙ୍କୀ ତ' ମତେ ବାସ୍ନା ଲଗେଇବା ଶିଖେଇଲା ! ଦିନେ କପିଳା ଯାଇଥାଏ କଲିକତା । ରଙ୍କୀ ମତେ ତା' ବଖରାକୁ ଭିଡିନେଇ ଭିତରୁ କବାଟ ପକେଇଦେଲା । ଏ ଆଜ୍ଞା, ଆପଣ ଯାହା କହିବେ । ମୁଁ କ'ଣ ମାନୁନାହିଁ ସେ ମୋ' ଗୁରୁ ବୋଲି ! କାନମୋଡି ବିଦ୍ୟା ଶିଖେଇଚି ମାଲୁଣୀ, ମାନିବିନାହିଁ କେମିତି ? ଅମାଲୁଖିଆ ଶିଖେଇଚି ସେଇ । ସେଥିଲାଗି ପରା ସେ ମତେ ଫାନ୍ଦି ରଖିଥାଏ ତା' ପଣତରେ । ସେ ଆଖିମାରିଦେଲେ ମୁଁ ପହଞ୍ଚି ଯାଉଥାଏ..."

"ହଁ, ସେଦିନ ଆମେ ସମସ୍ତେ ଟାକି ବସିଥାଉ । ଶୋଇବାଘର ଝରକାରୁ ମୁଁ ଦେଖିଲି, ଏଇ ପୁନିଅଁ ଜହ୍ନ ଉଠିଆସିଥାଏ କେତେ ବାଟ । ଚାରିଆଡେ କେମିତି ଶୁନ୍‌ଶାନ୍ ହେଇଥାଏ । ଜମା ତା' ଆରଦିନ ବେବି ଫେରିଥାଏ ପାଠ ପଢା ସାରି । ଆଉ ସେ ଯିବନାଇଁ ବୋଲି ସମସ୍ତେ ଖୁସି ।

ଅଜାଘରୁ ବେଢ଼ାଏ ବୁଲିଆସିବାକୁ ବେବିର ମନ । ଯୋଉଦିନ ସେ ଆସି ପହଞ୍ଚିଲା, ମୁଁ ତା' ବାକ୍ସ ନେଇ ବଖରାରେ ପହଞ୍ଚେଇଦେଲି । ବେବି କେତେ ଉଞ୍ଚ ଦିଶୁଥାଏ – ଆଉ କେତେ ଚୋଫା ସୁନ୍ଦର ଦିଶୁଥାଏ, ମୁଁ ଆଉ କ'ଣ କହିବି ! ମୁଁ ଚାହିଁ ପାରୁ ନଥାଏ ତା' ମୁହଁକୁ; ମାତ୍ର ସେ ମତେ କେତେବେଳୁ ଏକାଲୟରେ ଚାହିଁ ରହିଥାଏ । କାହିଁକି କେଜାଣି ଖପ୍‌କିନା ମୋ' ଗାଲକୁ ମୁଠାରେ ଧରି ସେ ଚୋଡିଦେଲା...'ତୁ କେତେଟାଏ ହେଇଗଲୁଣି ମ!' ମୋ' ଦିହ ଶୀତେଇଗଲା । ...ମୁଁ ରଙ୍ଗ ଜରଜର ମୁହଁ ପୋତି ସେଇଠୁ ଫେରି ଆସିଲା ବେଳକୁ ସେ ମୋ' ପିଠିରେ ବିଧାଟାଏ ପକେଇଦେଲା । ...ସକାଳ ପାହିଲାରୁ ସେମାନେ ବାହାରିଲେ ଅଜାଘରକୁ । ନାନା ଆଳରେ ବେବି ଆସି ମୋ' ଦେହରେ ଘଷିହେଇ ବାହାରି ଯାଉଥାଏ । ମୁହଁକୁ ଚାହିଁ ହସିହେଉଥାଏ । ଦିଥର ମୋ' ଡେଣାକୁ ଚିମୁଟିଦେଲା । ମୁଁ ଝାଉଁଳି ଯାଉଥାଏ । ...ବାହାରିଲାବେଳେ ସମସ୍ତଙ୍କ ଆଗରେ ବେବି ମତେ ଚାହିଁ କହିଲା, 'ନେପାଳୀ, ତୁ ଗୋଟାଏ ଓଲୁ!' ତା'ପରେ ହସିଲା ଖେଁ ଖେଁ । ଭାରି କଅଁଳେଇ କହିଲା, 'ରଇଥା, ଅଜାଘରୁ ଫେରେ, ମୁଁ ତତେ ଗୋଟେ ବଢ଼ିଆ ଜିନିଷ ଦେବି ।' – ଗାଡିଭିତରେ ସେ ତା' ଗୋରା ପାପୁଲି ହଲଉଥାଏ । ମେଘଡମ୍ବର ଗାଡି ଆସ୍ତେ ଦୂରେଇଗଲା । ଏଇଲାଗେ ମତେ ସବୁ ଦିଶିଯାଉଛି । ସେତେବେଳକୁ ମୋ' ବୟସ କେତେ ପଚାରୁଛନ୍ତି ? ବୟସ ହବ କୋଡିଏ କି ବାଇଶ !"

"...ସେ ଝରକା ପାଖରୁ ଏ ରାସ୍ତାଟା ପରିଷ୍କାର ଦିଶେ । ମୁଁ ବାହାରି ଆସିଲି ପଦାକୁ । ମନଟା କେମିତି ହଜିଲା ପକେଇଲା ପରି ଲାଗୁଥାଏ । ଦରବାନ୍ ବିଡି ପିଇ ବସିଥାଏ । ସେଇଟା ସତ ନେପାଳୀଟାଏ । ସେଇଟାକୁ ମୁଁ କେବେହେଲେ ଭଲପାଇନାହିଁ । ସେ ମୋତେ ଦେଖିବା ମାତ୍ରେ ଛପ୍‌କିନା ପଛରୁ ଭିଡିଧରି କୋଳରେ ବସେଇ ଦଉଥିଲା । କହୁଥିଲା, ମୁଁ କୁଆଡେ ତା' ପୁଅ । ହାରାମ୍‌ଜାଦାକୁ ବଜେଇଲି ଦିନେ ଏକ୍ ଘୁଷି – ସେତିକିରେ ସେ ଥଣ୍ଡା ବନିଗଲା । ...ସେଦିନ ରାତିରେ ତା' ପାଖେ ଆସି ମୁଁ ଠିଆହେଲି । ସେ କାନ୍ଧରେ ଠେଙ୍ଗା ଡେରିଦେଇ କାଠଷ୍ଟୁଲ୍ ଉପରେ ବସି ବିଡି ପିଉଥାଏ । କହିଲା, 'ବାରହ୍ ବଜ୍ ଗିୟା'...ମୁଁ କହିଲି 'ଆଛା, ଦଶଟାରେ ଗାଡି ଆସିବା କଥା, କ'ଣ ହେଲା ?' – ଚାଲ ଚାଲ ହେଇ ବାହାରି ଆସିଲି ଏଇଆଡେ । 'ବାବୁ, ବାବୁଆଣୀ ମୋ' ବାପା ମା', ଆଉ ବେବି...ତିନିହେଁ ଆସିବା କଥା – ଆସୁନାହାନ୍ତି କାହିଁକି ? ବେବି ଆସିଲେ ମତେ କ'ଣ ଦବ ?... ଏମିତି ଗୁଡାଏ ଭାବି ଭାବି ମୁଁ ଆସି ଏଇଠି ପହଞ୍ଚୁଥାଏ, ଜହ୍ନ ଏମିତି ଉଠିଥାଏ ମୁଣ୍ଡଉପରକୁ । ଏମିତି କୁହୁଡିଆ ଦିଶୁଥାଏ ଚାରିଆଡ ।..."

"...ହେଇ, ହେଇ, କାନାନ୍ତୁ, ଏଇ ସେଇ ଗାଡିର ଶବ୍ଦ । ମୁଁ ଆଙ୍କା ତାକୁ ଚିହ୍ନି ରଖିଚି । ଆଜିକୁ କୋଡିଏ ବର୍ଷ ପୁନିଅଁକୁ ପୁନିଅଁ ପାଳି । ...ଆପଣଙ୍କୁ ଶୁଭୁନାଇଁ ?... ହେଇ ଦେଖନ୍ତୁ, ଆଲୁଅ...ଆସିଗଲା...ଆଉ ଗୋଟାଏ ମୋଡ, ତା'ପରେ ସେଇ ପୋଲ !...କାନ ବୁଜିଦିଅନ୍ତୁ, ଆପଣ ସେ ଶବ୍ଦ ସମ୍ଭାଳି ପାରିବେ ନାଇଁ... ।"

"ଓଃ...ପୋଲ ଭାଙ୍ଗିଗଲା...ପାହାଡ କୁଢେଇ ହେଇ ପଡିଲା, ଖସିପଡିଲା ଝଣଝାଣ

ହେଇ ଗାଡି...ସେ ଚଡଚଡି ଭିତରେ ମଣିଷ ସ୍ୱର ଆପଣ ଶୁଣିପାରୁଛନ୍ତି ?...ଶୁଣିପାରୁନାହାନ୍ତି ? ମୁଁ ଠିକ୍ ବାରିପାରୁଚି । ମୁଁ ଜାଣୁଚି ସେ ତିନିଖିଅ ସ୍ୱର ଭିତରେ କେଉଁଟା ବେବିର...ଆଃ ସରିଗଲା, ଆଉ ଶବ୍ଦ ଶୁଭିବନି ! ଏଣିକି କାନ ଛାଡିଦିଅନ୍ତୁ । ଚହାଁନ୍ତୁ ସେଆଡେ...ସେ କଳାଗାଡିଟା ହେଇ ବାହାରିଲା... ତା' ଆଲୁଅ ଲିଭିଯାଇଛି । ନିଃଶବ୍ଦରେ ଜହ୍ନଆଲୁଅରେ ହେଇ ସେଇ ମେଘଡମ୍ବର ଗାଡି କେମିତି ପହଁରି ଯାଉଛି ଦେଖନ୍ତୁ !...ହେଇ; ସେ ମୋଡ ପାଖରେ ଜହ୍ନଆଲୁଅ ତା' କାଚରେ ପଡିଲା, ଦେଖିଲେ ? ସେଇଟା ଯାଇ ସେ କୋଠା ପାଖରେ ରହିଯିବ – ମୁଁ କହୁନି ! ରହିଗଲା ସେଇଠି, ଦେଖନ୍ତୁ !...ରହନ୍ତୁ ଟିକେ...କବାଟ ଫିଟିବା ଶବ୍ଦ ଏଠିକି ଶୁଭିବ ! ହେଇ...ଏଇଟା । ସେଇ ଉପର ମହଲାର ପ୍ରଥମ ଦରଜାଟା ଫିଟିଲେ ତା' ବାଁ ପାଳ କବାଟ ଏମିତି ଖଟ୍‌କିନା ଶୁଭେ !...ସେ ତା' ବଖରାକୁ ଗଲା... । ଆଲୁଅ ଜଳିଲା ଦେଖିଲେ ? ଜଳିଲା ଆଉ ଲିଭିଗଲା ! ଏଣିକି ରାତିସାରା ଜହ୍ନ ବୁଡିଲା ପର୍ଯ୍ୟନ୍ତ ସକ ସକ କାନ୍ଦ ଶୁଭିବ ସେଇ ଉପର ବଖରାଟାରୁ । ମୁଁ କେତେ ଦିନ ଶୁଣିଚି । ଭାବିଚି, ଉଠିଯିବି ଉପରକୁ, ହେଲେ ଦାଣ୍ଡଦୁଆରେ ସବୁବେଳେ ତାଲାଟାଏ ପଡିଥାଏ, ଦଶ କି ପନ୍ଦର ବର୍ଷ ନ ଫିଟି ସେମିତି ରହିଥାଏ ।"

"ମୁଁ କାମ କରୁଥାଏ ସେ ଆର କୋଠାଟାରେ, କିନ୍ତୁ ରହୁଥାଏ ଏଇଠି । ଏବେ ବି ରହୁଚି । ଦିନେ ଜଣେ ବାବୁ ଆସିଲେ । ଦିନବେଳେ ମୋତେ ଉଠେଇ ଆଣିଲେ । ମୋ' ଆଖିରୁ ନିଦ ଓହ୍ଲେଇ ନ ଥାଏ । ଦି'ପହର ଆଲୁଅ ମୋତେ ଦିଶୁଥାଏ ଅଚିହ୍ନା । କବାଟ ଫିଟିଲା । ସମସ୍ତେ ଏକାଠି ଭିତରେ ପଶିଲୁ । ବୈଠକ ଘରେ ଗାଲିଚ୍‌, ଗଦି, ସବୁ ସେମିତି ପଡିଥାଏ... । କୋଣକୁ ସେମିତି ଠିଆ ହୋଇଥାଏ ବତି ପିଲିସଜ । ଚଢିଲୁ ଉପରକୁ । ଶୋଇବା ଘର ଚଦର ଆଉ ବଦଳା ହେଉନଥାଏ । ତା'ପରେ ଢେର୍ ଧୂଳି । ତା'ପରେ ବେବିର ଶୋଇବା ଘର । ମୁଁ ଯାହା ଆଖିରେ ଦେଖିଚି କହୁଚି । ବଖରାରେ ଧୂଳି ନାଇଁ କି ମଳି ନାଇଁ, ହେଲେ ଚଦରଟି ଲୋଚ୍‌କୋଚା ହେଇଚି । ତକିଆ ଟୋଲାହେଇ ରହିଚି । ସେ ବାବୁଜଣକ ମୋତେ ଚହିଁ କହିଲେ, "ଏଇଠି କିଏ ରହୁଚି କି ? ଏଠିକି ଅନ୍ୟ ବାଟ ଅଛି ?" ମୁଁ ଆଉ କ'ଣ କହିବି ? କାବାହେଇ ଅନେଇଁଥାଏ । ମୁଣ୍ଡ ହଲେଇ ସବୁ କଥାକୁ ନାହିଁ କରିଦେଲି । ସେ ବି ଆଉ କିଛି ଖୋଳତାଡ କରି ପଚାରିଲେ ନାହିଁ – ଅନ୍ୟ କାମରେ ମନଦେଲେ । ଜିନିଷ ବୁହାହେଲା । ଗାଡି ଲାଗିଲା । ଘର ଖାଲି ! ...ରଙ୍ଗ ମଡେଇ ଦିଆଗଲା । କ'ଣ ମନ ହେଲା କେଜାଣି ବାହାରେ କଳା ବୋଳିଦେଲା ସେ ବାବୁ । କେହି ଆଉ ସେ ଘର ପାଖ ପଶିଲେନି । ମୁଁ ମୋ' ବାହାର ଘରେ ଏବେ ସୁଦ୍ଧା ଅଛି । ବିକ୍ରି କରିବାକୁ ସେଇଦିନଠୁଁ ଘର ସାମ୍ନାରେ ଗୋଟେ ପଟା ଝୁଲୁଛି । ସେ କୋଠା ସାଙ୍ଗରେ ମୁଁ ବି ବିକ୍ରି ହୋଇଯିବି । ତାକୁ ଛାଡି ମୁଁ ଯିବି କୁଆଡେ ?...ମୁଁ ଜାଣିବାରେ କେହିହେଲେ ସେ ଘର କିଣିବାକୁ ଏ ପର୍ଯ୍ୟନ୍ତ ଆସିନାହାନ୍ତି ।"

"...ଓ, ଏ ଯେଉଁ କଳା ଗାଡିଟା ଆସୁଛି ? – ଏଇଟା ଆଉ ଗୋଟାଏ । ସେ ହଳଦିଆ କୋଠାର ମାଲିକ ଫେରୁଚି । ବଡ ଅଫିସର କ'ଣ ହେଇଛି । ସେ ଶ୍ୱାସରୋଗିଣୀ ବୁଢୀ ହେଉଛି ତା' ମା' । ରାତି ଗୋଟାଏବେଳେ ସେ ସବୁଦିନ ଫେରେ । ରହନ୍ତୁ, ଆଉ ଟିକକୁ ତା' ଘରେ

ଗୋଳ ଶୁଭିବ । ସେ ନିସା ଖାଇ ଫେରୁଥାଏ ତ' – ଯାହା ମନ ତାହା ଗାଳିଦିଏ । ଗୀତ ଗାଏ । ତାକୁ ସମସ୍ତେ ଥାପୁଡା ଥାପୁଡି କରି ଶୁଆଇଦିଅନ୍ତି । ତା'ର ଆଉ ଦି'ଖଣ୍ଡ ଗାଡି ଅଛି – ଗୋଟାଏ ତା' ମାଇପର, ଆରଟା ତା' ପୁଅପାଇଁ । ସେମାନେ ତାଙ୍କ ମନଇଚ୍ଛା ବୁଲି ବୁଲି ଆଉ ଘଣ୍ଟାକ ପରେ ଫେରିବେ । ପଇସା ଅଛି । ନୌକର ଅଛନ୍ତି । ବଡ ଘର, ବଡ କଥା – ଯାହା କରୁଛନ୍ତି ତାଙ୍କୁ ସୁନ୍ଦର । ତାଙ୍କ ଘରେ ଝିଅଟି ହେଉଛି ଲକ୍ଷ୍ମୀ । ସେ ବୁଢ଼ୀମା'ର ସେବାକରେ, ଘର ଚଳାଏ । ସମସ୍ତଙ୍କ ଆର୍ଦ୍ଦୋଳି ସହେ । ତାକୁ ତା' ଭାଇ ଦୈନିକ ବାଡାଏ । ବାପ ବି ବାଡାଏ । ମା' ତାକୁ ସାଙ୍ଗରେ କୁଆଡେ ନିଏନାହିଁ । ତା' ପାଇଁ ବରପାତ୍ର ଖୋଜା ଚାଲିଛି । ଯାଙ୍କ ଘରକଥା ସମସ୍ତେ ଜାଣିଲେଣି । ଏ ଯାଏଁ ତାକୁ ବିଭାହେବାକୁ କେହି ଆସିନାହାନ୍ତି । ଭାରି ଦୁଃଖିନୀଟି ବିଚାରୀ । ହେଲେ ଏମିତି ସୁନ୍ଦର ଝିଅ ଏ ଆଖି ଦେଖିନି... ।"

ଏ ପାଖ ଘରେ କ'ଣ ଗୋଟାଏ ଚାଲିଚି, ମୁଁ ବୁଝିନି । ସେଠି ଆଠ ଦଶଜଣ ସୁନ୍ଦର ସୁନ୍ଦର ଝିଅ ଅଛନ୍ତି । ସେମାନେ କ'ଣ ସବୁ ଧର୍ମଶିକ୍ଷା ଦଉଛନ୍ତି । ରାତିଯାକ ତାଙ୍କ ପାଖକୁ ଲୋକ ଆସନ୍ତି । କ'ଣ ସବୁ ଜିନିଷ ବୁହାହୁଏ, ବାହାରୁ ଭିତରକୁ – ଭିତରୁ ବାହାରକୁ । କିଏ ଆସନ୍ତି ପଚାରୁଛନ୍ତି ? ସେମାନେ ଖୁବ୍ ମୋଟା ମୋଟା ବେପାରୀ, ବଡ ବଡ ଅଫିସର, ମନ୍ତ୍ରୀପରି ବଡ ବଡ ଲୋକ । ଘଣ୍ଟାଏ ଘଣ୍ଟାଏ କ'ଣ ଭିତରେ ରହି ଶିଖନ୍ତି । ତାଙ୍କର ଅନେକ ଟଙ୍କା । ସବୁଦିନ ତାଙ୍କ ବାଡିଆଡେ କୋଡିଏଟି କୁକୁଡା କଟାହୁଏ । ପକ୍ଷୀ ସବୁ ଗୋଟେଇ ସେ ପଡିଆ ପଛଆଡ ଗାତରେ ପକାହୁଏ । ରହିଥାନ୍ତୁ, ଶୁଣିବେ, ଆଉ ଦି'ଘଣ୍ଟା ଗଲେ ଅନ୍ଧାର ଥାଉ ଥାଉ କେମିତି କୁକୁଡାଯାକ କାଲୁରୁ ବାଲୁରୁ ହେଇ ବୋବେଇବେ । ...ଆଉ ମଜାକଥା ହେଲା, ସେ ଧୋବଧୋବଳିଆ ଝିଅ ଭିତରୁ ଜଣେ ଦି'ଜଣ ମୋ' ପାଖେ ପହଞ୍ଚିବେ ପାଳିକରି, ଲୁଚି ଲୁଚି ସେଇ ପାହାନ୍ତା ପହର ବେଳେ । ଉପରବେଳା ମୁଁ ମୋ' ବଜାର ସଉଦା କରି ଗଲାବେଳେ ସେମାନେ ମୋତେ ଡାକନ୍ତି, ଖାଇବାକୁ ଦିଅନ୍ତି । କହନ୍ତି, କଡା ନଜର ଦବାକୁ । ମାସ ଶେଷରେ ପଇସା ବି ଦିଅନ୍ତି ..."

"...ଗୋଟାଏ ଶୁଣି ସାଉକାର ଏବେ ଯା' ପାଖକୁ ଘର କରିବ । ସେ କୁଆଡେ ଜମାଦାର୍ କାମ କରୁଥିଲା । କାମ ଛାଡିଲାଣି । ତା'ର ଯୋଡାଏ ମାଇପ; ସବୁ ମିଶି ସାତଟା ପିଲା, ପଇସା ଢେର୍ ! ହେଲେ ସେଇଟା ଗୋଟେ ଚୋର । ଆଉ ଟିକକୁ ସେ ଇଟା ଟ୍ରକ୍ ନେଇ ଆସିବ । ଏଇ ରାସ୍ତାର ଆଗକୁ ଅନେକ ନୂଆ ଘର ତୋଳାହେଇଚି । ସେଇଠୁ ଜଗୁଆଳିକୁ ଲାଞ୍ଚ ଦେଇ ଇଟା ଚୋରେଇ ଆଣି ସେ ଏଇଠି ଜମା କରୁଚି । ମୋତେ ଟଙ୍କା ଯାଚିଲା ତା' ଇଟା ଜିଗବାକୁ – ମୁଁ ମନାକରିଦେଲି । କାହୁଁ ଗୋଟାଏ ମଦୁଆକୁ ଆଣି ଜଗେଇଚି । ସେଇଟା ଦିନସାରା ଗର୍ଜେ; ରାତିଯାକ ଶୁଏ ! ଏବେ ଚାଲନ୍ତୁ ତା' ଚୁଟି କାଟିଆଣିଲେ ସେ ଜାଣିପାରିବନି !.."

"ସବା ଶେଷକୁ ଏଇ ବାଟେ ଗୋଟାଏ ସଂକୀର୍ତ୍ତନ ଦଳ ବୁଲିବେ । ପାହାନ୍ତିଆରେ ବୁଲି ଖୋଳ ବାଡେଇବାକୁ ତାଙ୍କୁ ଭଲଲାଗେ । ବାକି ସମସ୍ତଙ୍କୁ ଶୁଣିବାକୁ ସେମିତି ଭଲ ଲାଗୁଥିଲେ ସିନା ! ସେକଥା ସେମାନେ ବୁଝନ୍ତିନି । ଝାଞ୍ଜି ପିଟି ପିଟି ଏଇ କୋଠାମାନଙ୍କରେ ଅଳ୍ପ ନିଦେଇ

ଆସୁଥିବା, ଘୁମଉଥିବା, ନିଶା ଖସି ଆସୁଥିବା ମଣିଷମାନଙ୍କୁ ସେମାନେ ଚମକେଇ ଦିଅନ୍ତି । ଦାନ୍ତ କଡମଡ କରି ଅଧେ ଢ ଢା ଝରକା ବନ୍ଦ କରନ୍ତି । ଆଉ କେତେ ଜଣ ଝରକା ବାଟେ ଛେପ ପକାନ୍ତି; ଅଭାଷିଆ ଗାଳି ଦିଅନ୍ତି । ସେମାନେ ବାହାରିବା ଆଗରୁ ମୁଁ ମୋ' ବସାକୁ ଫେରିଯାଏ । ସେ କଳାକୋଠା ପାଖରେ କୀର୍ତ୍ତନିଆମାନେ ଟିକେ ବେଗି ବେଗି ପାହୁଣ୍ଡ ପକେଇ ପାରିହେଇଯାନ୍ତି । ସେମିତି ବେଶି ପାଟି ବି କରନ୍ତି ନାହିଁ । ଦିନେ ତା' ଭିତରୁ ଗୋଟାଏ କହୁଥିଲା ଯେ ସଂପୂର୍ଣ୍ଣ ଧୋବ ଛାଇଟାଏ ମୋ' ବସା ଭିତରକୁ ପାହାନ୍ତିଆବେଳେ ପଶିଯିବାର ସେ ସଚକ୍ଷୁରେ ଦେଖିଚି । ମୁଁ କିଛି ନ ଜାଣିଲା ପରି ତାକୁ ଚାହିଁଲି, କିଛି କହିଲିନି..."

"...ଏ ଶୂନ୍ୟ ଘରକୁ ମୁଁ ତିରିଶବର୍ଷ କାଳ ଜଗିଲିଣି । କେହି ସେମିତି ମାଲିକ ଆସିଲେ ତାକୁ ସମର୍ପି ଦିଅନ୍ତି ଏ କୋଠାକୁ ଆଉ ମତେ । ମୁଁ ଯା'ଠାରୁ ଅଲଗା ହେଲେ କ'ଣ ବଞ୍ଚିପାରିବି ?...ବାକି ସମସ୍ତେ ଯେ ଯୁଆଡେ ମାସକ ଭିତରେ ପଳେଇଗଲେ । କପିଳା ଓ ରଙ୍କୀ ଏଇ ସହରରେ ଆଉ ଠାଏ ରହିଥିଲେ ବର୍ଷେ । ମଝିରେ ମଝିରେ ରଙ୍କୀ ମତେ ଡାକିନେଇଚି କେତେଥର । ଏବେ କୁଆଡେ ଅଛନ୍ତି ମୁଁ କହିପାରିବିନି..."

"ମାସକୁ ଥରେ ଏଇ ପୂନିଆଁ ଦିନ ମୁଁ ଏଠିକି ଆସେ । ଏ ସବୁ ମତେ ସତ ଆଉ ସଭିଙ୍କୁ ମିଛ । ଏ କଳା କୋଠାରେ ମୋ' ଜୀବନ ନାଡି ବାନ୍ଧିହେଇ ରହିଚି । ଯଦି ନୂଆ ମାଲିକ ତଡିଦିଏ, ତେବେ ବି ମୁଁ ଛାଡି ଯାଇପାରିବିନି... ମୋର ଅନେକ ଦେବାର ବାକି ଅଛି...କିଛି ପାଇବାର ବି ବାକି ଅଛି ।"

"ତଡିବ ନାହିଁ ? ଆପଣ କେମିତି ଜାଣିଲେ ? ହେଃ, ହେଃ, ହେଃ, ଯିଏ ସେ ଘର ଝିଅକୁ ବିଭାହେବ, ସେ ଏ ଘର କିଣିବ ? ହ... ଅ... ଅ, ସେମିତି କୁଆଡେ ହେଲାଣି ?... ଆପଣ ତ' ହେଇ କାଲି ଏଠାକୁ ଆସିଛନ୍ତି । ଯାରି ଭିତରେ କିଏ ଜଣେ ଆସିବ ବୋଲି ଗୋଟାଏ ଗୁଜବ୍ ଉଠିଚି । ସେ ହଲଦିଆ କୋଠାର ଦରୁଆନ୍ ମୋତେ କହୁଥିଲା – ଯେ ଆସୁଚି ସେ କୁଆଡେ ଭାରି ମାତବର ଲୋକ । ସେ ଝିଅଟା ତ' ଖଣ୍ଡେ ସୁନା । ଆଉ ଏ ଘର, ସତ କହୁଚି, ଭାଗ୍ୟର ଖଣି । ସେ ରହିଲେ ବଳେ ଜାଣିବନି ? ଯେମିତି ଲୋକ ଏଠି ଥିଲେ ତାଙ୍କଠୁ ଉଣାହେଲେ କିନ୍ତୁ ରହିପାରିବନି...ଏଁ ? ସେ ଲୋକ ଆସିଲାଣି ? କିଏ କହିଲା ଆପଣଙ୍କୁ ? ସେ ଗୋଟାଏ ମନୁଆ ଟୋକା, କୋଟିପତି ? ସତେ ସେ ଏଠି ଲୁଚିଛପି ଖବର ନଉଚି ? ଆଚ୍ଛା ! ସେ ମତେ ଜେରା କରିପାରେ ? କରୁ । ଆରେ, ଆରେ, ଆପଣ କୁଆଡେ ଏମିତି ବାହାରିଲେ ? ଆସନ୍ତୁ, ମୁଁ ବଢିଆ ଚା' କରି ମୋ' ବସାରେ ପିଆଇବି । ପାହାନ୍ତା ହେଇଗଲା । ସେ ଟୋକାମାଲିକ କେମିତିଆ...ତା କଥା ଆଉ ଟିକେ କହିବେନା...ଏମ୍ତି ପଳେଇଲେ ହବ ! ସେ ଆପଣଙ୍କ ପରି ସହଣିକ, ସମଝଦାର୍ ଆଉ ଚଲାକ୍ ହୁଅନ୍ତା କି !!"



## ଶ୍ୱାପଦ

ସେ ମୋଟେ ଚାହୁଁ ନଥିଲା ସକାଳ ହେଉ ବୋଲି ।

କିନ୍ତୁ ସକାଳ ହେଲା । ଗୁଡିଏ ଭୋକିଲା ପକ୍ଷୀ ଚାରିଆଡୁ ମିଶି ଚୁହାକୁ ଚୁହା ଡାକିବାକୁ ଲାଗିଲେ । ଆଖିପତା ଭିଡି ତଥାପି ସେମିତି ସେ ଘାଲେଇ ପଡିଥାଏ ଏବଂ ଅସ୍ୱୀକାର କରୁଥାଏ ସେ ସକାଳଟାକୁ । ତାକୁ ଡର ମାଡୁଥାଏ – କେମିତି ଆଖି ଫିଟେଇ ଚାହିଁଦେବ ! ଘରଟାରେ ତ' କେହି ନାହିଁ !

...ବରଂ ଆଖି ବୁଜି ଥିଲେ, ହେଇ ସମସ୍ତେ ଦିଶୁଛନ୍ତି, ହସୁଛନ୍ତି, କଥା କହୁଛନ୍ତି । ...ତା' ମଲାବାପ ପୁଣି ଚେଇଁ ଉଠୁଛି...ବାଡିଧରି ଘର ଭିତରକୁ ପଶି ଆସୁଛି । ତା' ରୋଗିଣା ପୁଅ ସେମିତି ଚିମିରା ପେଟ କାଢି କୁନ୍ଥଉଛି; ଡାକି ଦେଲେ ଆଖି ମେଲେଇ ଦାନ୍ତ ନିକୁଟି ଦେଉଛି । ସେ କୁଆଡେ ଫୁଲକୋବି ଦୁଇ ଖଣ୍ଡ ଖାଇବାକୁ ଝୁରୁଛି ! ଖାଇଦେଲେ ଭଲ ହେଇଯିବ । ସାରା ଦିନର ରୋଜଗାର ନେଇ ଦୋକାନୀ ତାକୁ ଗୋଟାଏ ନଡନଡିଆ ବାସି ଫୁଲ ଧରେଇ ଦେଇଥିଲା...ହଉ କୋବି ତ !...ଟୋକାଟା ମା' କୋଡକୁ ଆଉଜି ରସ ଥାଳିଆରେ କୋବି ତିଅଣକୁ ଭୋକିଲା ଭୋକିଲା ଆଖିରେ ଚାହୁଁଛି !...ତା' ହାତ କାହିଁକି ସେମିତି ଥରୁଛି ?...ହେଇ ଖଣ୍ଡିଏ ନେଇ ଚୁଙ୍କୁଛି !...ଉପରକୁ ତା' ବାପ ମୁହଁକୁ ଚାହିଁ ଦାନ୍ତ ନିକୁଟି ହସିଦେଉଛି...ସେଇଠୁ...

ଆଖି ଫିଟେଇ ମଟମଟ ଚାହିଁଦେଲା । ଶିବୁ ସାମଲ୍ । ଖୋଲା ଖୋଲା ବିସ୍ତୀର୍ଣ୍ଣ ଗୋଟିଏ ସକାଳ ତା' ପତା ତଳେ କେତେବେଳୁ ଆସି ଛକି ବସିଥିଲା । ଆଖି ଫିଟିଯିବାରୁ ତା' ଭିତର ପୁଅକୁ ଚାହିଁ ଛିଗୁଲେଇ ଦେଲା, ଖତେଇ ହେଲା । ତଳୁ ଗାମୁଛା ଖଣ୍ଡି ଉଠାଇ ଉଠିବସିଲା ଶିବୁ । ମୁଣ୍ଡଟା ଧପ୍ ଧପ୍ ପିଟି ଦେଇଗଲା । ବୁକୁ ଦାଉଁ ଦାଉଁ ପଡୁଥାଏ । ଯାକୁ ମିଶେଇଲେ ତିନିଟା ବାଘୁଆ ନିରନ୍ନ ସକାଳ ତା'ର ବିତିଯାଇଥିଲା । ଏମିତି ଥରେ ଥରେ ହୁଏ । ଦୁଇଦିନ ଡେଇଁଗଲେ ଶିବୁ ଦେଖିଚି ମୁଣ୍ଡଟା ତା'ର ଏମିତି ଟିକିଏ ବିନ୍ଧେ ।

ସେ ଉଠି ଚାହିଁଲା ଡାଟିଆଡକୁ । ଶସ୍ତା ଅଖା ପରି ତା' ପିଠିରୁ ଫାଳେ ଆଉ ବାଁ ଡେଣାଟା ଟାଙ୍କୁରିଗଲା । ସେଇଆଡୁ ପବନ ପିଟୁଥାଏ । ଘରର ଚାରୋଟି କାକର କାନ୍ଥ ଆଉ ସେ ଚଉକୋଣିଆ ଖାଲି ପଡିଆ ଉପରୁ ତାକୁ ଛାଡି ସମସ୍ତେ ଓହ୍ଲେଇ ଯାଇଥିଲେ ।

ଉଠିଲାବେଳକୁ ତା' ଅଣ୍ଟା କାଟୁଥାଏ । ସେଇଟା ସେମିତି ମଝିରେ ମଝିରେ କାଟେ । ଏ

ବାଁ ଆଣ୍ଠୁଟା ବି କଟ୍ କଟ୍ ହୁଏ । ଏ ସବୁ ଉପରକୁ ତା' ମଝି ଶିରା ହାଡ ଭିତରେ ନିଆଁ ଚେଙ୍କାଭଳି କଣଟାଏ ଜଳିଉଠୁଥାଏ । ସେଇଟା ବୋଧହୁଏ ସେଇ ନିଲଠିଆ ହାରମ୍‌ଜାଦା ଲୋକ ।

ଅଣ୍ଟାକୁ ଚୌରସ ଭିଡି କୋଳି ଖୋଲିଦେଲା ଶିବୁ । ଭୋକର ନିଆଁ ଆଉ ତାଳୁଠଉଁ ତଳିପା ଯାଏଁ ଚହଟି ପାରିବ ନାହିଁ, ମଝିରେ ପରା ଗଣ୍ଠି ପଡିଗଲା ! – ହ...ଅ...ଅ, ଏଇଟାକୁ କ'ଣ ଶିବୁ ଦିହକ ଯାକ ଚିହ୍ନିନାଇଁ! କାମୁଡା କୁକୁର ପରି ଏଇଟା – ହାକୁ ହାକୁ ହେଉଥିବ ମନ୍ଦେ ପେଜ ପାଇଁ ।

ଚିରା ମଶିଣାଟାକୁ ଯତନରେ ଗୁଡେଇ କୁଣକୁ ଡେରି ରଖିଦେଲା । ଗୋଟିଏ ବୋଲି ମାଠିଆ ଉପରୁ ପୁରୁଣା ଲୁଗା କେତେଖଣ୍ଡ ଆଡେଇ ହାତଟାକୁ ଆହୁରି ଭିତରେ ଭର୍ତ୍ତିକଲା । ଗୋଟାଏ ବୋତାମ ଟିପ ଅଗରେ ବାଜିଗଲା ନା' କ'ଣ – ସେଇଟା ସେଇ ଜାମୁକୋଳି ରଙ୍ଗର ଜାମା ଖଣ୍ଡିକ ହେଇଥିବ । ପିଲାର ବର୍ଷିକିଆ ପାଳିବାକୁ ତିନିମାସର ପଇସା ସଞ୍ଚି ସେ କିଣିଆଣିଥିଲା । ...ଚକି ପାଖରେ ସାଇତିଥିବା ଧୂଆଁପତ୍ର ଖଣ୍ଡ ମଧ ସରିଆସିଲାଣି । ତାକୁ ଉପରକୁ କାଢି ଆଣି ଦେଖିବାକୁ ତା' ହୁବ ପାଇଲାନି ।

ବଡ ଯତ୍ନରେ ସେ ପତ୍ର ଟିକକ ଜିଭ ଅଗରେ ଗେଣ୍ଡିଦେଇ ତା' ଉପରେ ନାଳ ମଡେଇ ସେ ଚାପିଦେଲା । ଦାନ୍ତ ମୂଳ ଆଉ ଜିଭ ଝିମ୍ ଝିମ୍ କରି ତା' ଦେହକୁ ବଳ ଚଢି ଆସିଲା । ସେ ଗାମୁଛାଟାକୁ କାନ୍ଧରେ ବେଢେଇଦେଇ ଆଉ କୁଣରୁ ଉଠେଇଲା ତା' ଗଇଁତି । ତା' ଦାଢକୁ ଚାହିଁଲା । ତା' ମୋଟା ରୋଟା ମଜବୁତିଆ ବେଣ୍ଟ ଉପରେ ହାତ ସାଉଁଳେଇଦେଲା । କାନ୍ଧକୁ ଟେକି ନେଲାରୁ ସେଇଠି ସେ ତା' ସରୁ କାକର ଗୋଡ ଲମ୍ବେଇ ବସିଗଲା । ତା' ପୁଅ ସେମିତି ତା' ଜଟିଆ ବାଳଖୁ ମୁଠେଇ ତା' ଖାଇବି କାନ୍ଧରେ ବସୁଥିଲା ।

ଶିବୁ ଟାଉ ଟାଉ ଚାଲିଥାଏ । ସହଳ ନ ପହଞ୍ଚିଲେ କାମ ମିଳିବନାହିଁ । ମହରଗ କାଳ ପଡିଛି । କାହିଁ କେତେ ଲୋକ ଆସିଯାଉଛନ୍ତି କାମ କରିବାକୁ । ଦିନାପୁର ଖମାରୀ ପୁଅ ଆସିଥିଲା କାଲି । ତାକୁ ଦେଖି ଲାଜେଇ ଗଲା । ତା' ବିଲରେ ମଜୁରୀ ନେଇ ହୁଟା ଟେକିଥିଲା ଶିବୁ ଗଲାବର୍ଷ ।

କେଜାଣି ଆଜି ତାକୁ କାମ ମିଳୁଛି ନା ନାଇଁ ? ଏ ଘଡିକ ତାକୁ ବେଶି ବାଧେ । କାଳେ ମିଳିବ ନାହିଁ ବୋଲି ଗୋଟେ ଅସହାୟ ଭୟ ତାକୁ ଦୋହଲେଇ ଦିଏ । ସତକୁ ସତ ତାକୁ ଘଉଡେଇ ଦେଲେ ଆଉ ବୁକୁ ଦାଉଁ ଦାଉଁ ରହିବ ନାହିଁ କି ଏ ଭୟ ଆଉ ରହିବନାହିଁ ।

ବ୍ଲକ ଅଫିସ କାମ ବଡ ସହଜ । କିଏ ଗୋଟାଏ ଦିନକୁ ଦୁଇ ଅଡା ଚାଉଳ ମୂଲ ଦେବାକୁ ସରକ ପଠେଇଚି । ଏମାନେ ସିନା ଅଡେଇ ଦେଉଛନ୍ତି । ...ଏମିତି ଦଶଦିନ ଚାଲିବ । ...କି ସୁନ୍ଦର ମୋଟା ମୋଟା ଚିକ୍‌କଣ ସୁଆଦିଆ ଚାଉଳ !

ଶିବୁର ଅନ୍ତ ଭିତରେ ହାଉ ହାଉ ଜଳିଉଠିଲା ପୁରୁଣା ନିଆଁ । ସେ ଦୋକତା ଚାପିଦେଇ ଛେପ ଢୋକି ନେଲା । ତଣ୍ଟି ଗତଗତ ହେଇ ମୁହଁ ଝାଳେଇ ଗଲା । ମନ ହେଲେଇଗଲା ।

ବ୍ଲକ୍ ଅଫିସ । ତା' ଆଗରେ ଗୋଟିଏ ମସ୍ତବଡ ଆମ୍ବଗଛ । ତା' ପତ୍ରଗୁଡାକ ଭାରି ଲମ୍ବ

ଲମ୍ବ, ନାଲି ଜରଜର ଆଉ ଭାରି ନହକା । ନୂଆ ପତ୍ର କେତେଖଣ୍ଡ ଦେବେଇଦେଲେ ଶୋଷ ମରିଯାଏ । ...ଗଛ ମୂଳେ ତା' ଆଗରୁ ଗୋଟେ ଲୋକ ଆସି ବସିଥାନ୍ତି । ଶିବୁର ମନ ଟିକିଏ ଦବିଗଲା । ହଉ ତଥାପି ଦେଖାଯାଉ! ତା'ର ମନେପଡିଗଲା ନୂଆ ବି.ଡି.ଓ. ସାହେବ । ମନ୍ଦିର ମୂଳେ ଝାଁପୁରା ମୁଣ୍ଡିଆ ଯକ୍ଷ ପଥ୍ର ଭାର ଗୋଳି ରଖିଥିଲା ଭଳି ଏ ବି.ଡି.ଓ. ସବୁ ଭାରା ସମ୍ଭାଳି ବସିଛି । ଶିବୁ ମନକୁ କଥାଟା ପାଇଗଲା । ମାଛି ଅନ୍ଧାରରେ କେହି ନ ଦେଖିଲାବେଳେ ତା' ମୁହଁ ଟିକିଏ କୁଞ୍ଚେଇ ଗଲା । ...ନୂଆ ବି.ଡି.ଓ. ଜଣକ ସତକୁସତ ଦେଉଳ ଯକ୍ଷ ପରି ଦିଶେ । ସେମିତି ଝାଁପୁରା ମୁଣ୍ଡ, ଥାକୁଲା ଥାକୁଲା ହାତଗୋଡ, ଆଖି ଯୋଡାକ କରଣ୍ଡା କୋଳି ପରି ଡବଡବ ।

ପାକୁଳି କରୁ ନ ଥିବା ସେ ନୀରବ ମଣିଷଙ୍କ ଗୋଠ ପଛପଟକୁ ଶିବୁ ଗଇଁଠିଟିକୁ ସେମିତି କାନ୍ଧେଇ ବସିଗଲା । ଉତ୍ତରା ପବନ ହୁ' ହୁ' ଗର୍ଜୁଥାଏ । ସେମାନଙ୍କ ସଂଖ୍ୟା ବଢୁଥାଏ । ବେଳୁବେଳ ଅନ୍ଧାର ଘୁଞ୍ଚିଯାଉଥାଏ । ଶିବୁ ମନରେ ଆଶା ଆଶଙ୍କା କେତେ କ'ଣ ।

ଖରା ପଡିଗଲା । ଉଇଁ ଆସାଲ ନାଲି ଜରଜର ଏତେ ବଡ ସୂର୍ଯ୍ୟ । ପାଚିଲା ତାଳ ଦେହରୁ ପରସ୍ତେ କାଳିଆ ଚେପା କିଏ ଯେମିତି ଛେଲିଦେଇଛି! ସେଥିରୁ ପୁଞ୍ଜାଏ ପାଇଲେ ଶିବୁ ମୁହଁ ଲଗେଇ ଶୋଷିଦିଅନ୍ତା । ଶହେ ନେଳି ମାଛି ସେମିତି ତା' ହାତରେ ମୁହଁରେ ବେଢିଥାନ୍ତେ, ତାଙ୍କୁ କିଏ ପରୁରେ!

ଆସ୍ତେ ଖରା ଚଢିଆସିଲା । ଚିହ୍ନାଚିହ୍ନି ହୋଇ ସେମାନେ ଘୁଞ୍ଚିଲେ; ମାଇକିନିଆ ମରଦମାନଙ୍କର ଛୋଟ ଛୋଟ ମନ୍ଦା । ଅଳସ ଖରାରେ ଗରିଆଡକୁ ଚହିଁ ଶିବୁ ଦୋକତା ପାଣି ଶୋଷୁଥାଏ । ହଠାତ୍ ଗୋଳହେଲା; କ'ଣ ନା ବି.ଡି.ଓ. ଆସିଗଲେ! ସତକୁସତ ଲୁଙ୍ଗିଟାଏ ପିନ୍ଧି ଅଧୁଆ ମୁହଁରେ ମେଞ୍ଚାଏ ଗୁଡାଖୁ ଘଷି ଘଷି ବିଜେହେଲେ ଶିବୁର ଅନ୍ନଦାତା । ଶିବୁ ସମ୍ଭାଳି ପାରିଲାନାହିଁ । ଭିଡ ପେଲି ପଶିଗଲା ବି.ଡି.ଓ.ଙ୍କ ପାଖକୁ ।

ତାକୁ ଦେଖୁ ଦେଖୁ ସେ ଝାମ୍ପୁରା ମୁଣ୍ଡ ତଳକୁ କରି, ପାଟିରୁ ଗୁଡାଏ ଗରଳ ନିଗାଡି କହିଲେ, "କିରେ, ତୁ ପୁଣି କାହିଁକି ଆସିଲୁ? ଜଣେ ହେଲେ ନୂଆ ଲୋକ ଆଜି କାମରେ ଲାଗିପାରିବେ ନାହିଁ । କାଲି ଯେତେ ଜଣ ଥିଲେ, ଆଜି ସେତେ ଜଣ ।"

ଶିବୁ ଆଉ ବାଗେ ଭାବିଯାଉଥିଲା ତ...ସେ ବି.ଡି.ଓ.ଙ୍କ କଥା ଶୁଣିପାରିଲା ନାହିଁ । ତା' ପାଟିରୁ କେଜାଣି କେମିତି ବାହାରିଗଲା – ହେଁ ହେଁ ।

ବି.ଡି.ଓ. ଖିଙ୍କାରିଲେ, "ହେଁ ହେଁ କ'ଣ ବେ ଶଳା! ଏଠି ତୋ ପାଇଁ କାମ ନାହିଁ ବୋଲି କହିଲି, ଶଳା ବୁଝିପାରୁନୁ?"

"ଏ ଶହ ଶହ ଲୋକଙ୍କ ପାଇଁ ଅଛି ସାହେବ, ମୋ' ପାଇଁ ନାହିଁ?!"

"କିବେ, ଏଇଟା କ'ଣ କଥା କହୁଛି? ନିକାଲ୍ କର ଏଇଠୁ ଏଇଟାକୁ! ହଇବେ, ନିୟମ ଉପରେ କାମ ଦିଆଯିବ ନା' ଯେତେ ଶଳେ ଏ ମୁଲକରେ କାଙ୍ଗାଳ ଅଛ ସମସ୍ତଙ୍କ ପାଇଁ ମୁଁ ଛତ୍ର ଖୋଲି ବସିଛି? – ଭାଗ୍ ଏଇଠୁ!"

"ଏଠି ନହେଲ ଆଉ କେଉଁଠି ହେଲେ ଆଜି ଦିନକ ମୂଲ ଲଗେଇ ଦିଅ ସାହେବ ! ତମ ରୋଡ୍‌ରେ ମୁରମ୍ ବିଛେଇ ଦେବି – ତୁମ ଗାଡି ଟିକିଏ ବି ଦୋହଲିବ ନାହିଁ । କିହଲେ ପଥର ଭାଙ୍ଗିବି, କୂଅ ଖୋଳି ଦେବି । ବାଡିରେ ପାଣି ଟେଣ୍ଡି ପରିବା କରିବ । କୋବି କରିବ – ବଡ ବଡ ଧଳା ଧଳା କୋବି, ସାହେବ ଲାଗି..."

"ବେ, ଏଇଟା ବାୟା ନା କ'ଣ ?"

"ପୋଖରୀ ଖୋଳି ଦେବି ସାହେବ; ସେଇଠି ରୋହି ଭାକୁଡ ଛାଡିବ ! ଇଟା ଭାଟିକରି ପୋଡିଦେବି; ତୁମେ କୋଠା ତୋଳିବ । ମୋତେ ଯାହା କହିବ କରିବି – ଆଜି ଦିନକ ମୂଲ ଲଗେଇ ଦିଅ...ମୁଁ ବଞ୍ଚିଯାଏ ।"

"ଆରେ କିଏ ଅଛରେ, ମା'ର ଧକ୍‌କା ଶଳାକୁ ! କଥା କହିଲେ ଶୁଣୁନାଇଁ ଏଇଟା !"

ଶିବୁ ପାଖରୁ ଲୋକ ବାହାରି ପଡିଲେ । ପ୍ରଥମ ଧକ୍‌କା ପକେଇଲା ତାରି ଗାଆଁର ପାଣ୍ଡବା । ପାଣ୍ଡାବା ହାଡି । କିଛି ଦୂର ଘୁଞ୍ଚିଗଲା ଶିବୁ । କାନ୍ଧରୁ ଗଇଁତିଟିକୁ ଓହ୍ଲେଇ ନିଃଶ୍ୱାସମାରି ପ୍ରସ୍ତୁତ ହୋଇଗଲା ଆଉ ଦିନକର ନିରନ୍ନ ସଂଗ୍ରାମ ପାଇଁ ।

ବୁଢିଆ ତେନ୍ତୁଳି ଗଛଟିଏ ଖଣ୍ଡେ ଦୂରରେ ଠିଆହୋଇଥାଏ । ସେ ବି ଖାଇବାକୁ ପାଇ ନଥାଏ ଅନେକ ଦିନ ଧରି ନା କ'ଣ ! ପାଟିରୁ ତା'ର ଧୂଆଁପତ୍ର କେତେବେଳୁ ସରିଯାଇଥାଏ । ପବନ ପିଟୁଥାଏ ସାଇଁ ସାଇଁ । ଶିବୁ ଅନେଇଲା ଦଳ ଦଳ ହୋଇ ମାଡିଯାଉଥିବା, ହସ ଖୁସିରେ କଥା ହେଉଥିବା ମଜୁରିଆ ଗୁଡିକୁ । ସେଇ ତେନ୍ତୁଳି ଗଛ ମୂଳେ ଆଣ୍ଠୁ ଉପରେ ଥୋଡିରଖି, ନିଜ ଗୋଡ ଯୋଡିକୁ କୁଣ୍ଢେଇଧରି ସେ ସାଙ୍କୁଡିଗଲା । ଧୂସର ତେନ୍ତୁଳିଗଛ ମୂଳେ ମେଞ୍ଚାଟିଏ ହୋଇ ବସିଥିବା ସେ ଭୋକିଲା ମଣିଷଟି କାହାରି ଦୃଷ୍ଟି ଆକର୍ଷଣ କଲାନାହିଁ ।

ଶିବୁ ଆଖି ବୁଜିଦେଲା । ସେ ବିଶ୍ୱାସ କରିବାକୁ ଚାହୁଁ ନଥିଲା ଯେ ସେ ଦିନ ମଧ ତା'ର ମଜୁରୀ ନାହିଁ ।

...ଆଖି ବୁଜିହେଇ ଯିବାରୁ ସେଇ ଝାମ୍ପୁରାମୁଣ୍ଡିଆ ବି.ଡି.ଓ. ତାକୁ ଚାହିଁ ହସିଲା । ତା' ପିଠି ଥାପୁଡେଇ ତାକୁ କଅଁଳେଇ କଥା କହିଲା । ଗୋଟାଏ ଧୋବ ଫରଫର ଅଡାରେ ଚାଉଳ ମାପିଦେଲା କେଜାଣି କେତେ – ବୋଧହୁଏ ଗୋଟାଏ ବସ୍ତା !...ଶିବୁ ତାକୁ ଟେକିବ କେମିତି ? ସେ ଟିକିଏ ଜୋର୍ ଲଗେଇଦେଲା । ଏତିକିରେ ଆଖି ଫିଟିଗଲା । ସେ ଚାହିଁଲା ଶୂନ୍ୟ ଆମ୍ବ ଗଛ ମୂଳକୁ । ସକାଳୁଆ ଖରାରେ ବ୍ଲକ ଆଗରେ କେହି ହେଲେ ଜଣେ ଦିଶୁ ନ ଥାନ୍ତି ।

ଉପରକୁ ଚାହିଁଲା । ହଳଦିଆ ଗୁମ୍‌ସୁମ ନୂଆ ପତ୍ରଗୁଡିଏ ଗୁନ୍ଥି ହୋଇଥାଏ ତେନ୍ତୁଳି ଗଛଟାର ଡାଳେ ଡାଳେ । ସେଇ ପତ୍ରରୁ ଦି'କଳ ଚୋବେଇଲେ କେମିତି ହୁଅନ୍ତା ?...ଉଠିବାକୁ କିଏ ପାରେ ?...ଶିବୁ ପୁଣି ଆଖି ଘୁମେଇ ଆଣିଲା ।

ସେ ଆଡେ ରୋଡ କାମ ଚାଲିଥାଏ । ମନ୍ତ୍ରୀ ଆସି ପରିଦର୍ଶନ କରିବେ – ଆନ୍ତର୍ଜାତିକ ସଂସ୍ଥାରୁ ଆସିଥିବା ଚାଉଳ ବଣ୍ଟା ହେବ । ଫଟୋ ଉଠାହେବ । ରନ୍ଧାବଢା, ଖିଆ ପିଆ, ଭୋଜି

ଭାତ ଅନେକ କଥା ।

ଶିବୁ ହାଲିଆରେ ବୋଧେ ଅନେକ ବେଳ ଶୋଇଗଲା । ନିଦ ଭାଙ୍ଗିଲାରୁ ଉଠିବାକୁ ଚାହିଁଲା । ଗୋଡ ସଳଖି ଉହୁଁକି ହେଲା । ପେଟଠଉଁ ଗୋଟିଏ ନାଡ ତା' ଗୋଡର ବେଇଁ ଶିରା ପର୍ଯ୍ୟନ୍ତ ଟାଙ୍କି ଥାଏ । ତାକୁ ଆଉଁସି ସାଉଁଳି ସଳଖିଲା । ଠିଆହୋଇ ମୁଠେ ହଳଦିଆ ତେନ୍ତୁଳିପତ୍ର ପାଟିରେ ପୂରେଇ ଘଣେଇ ଦେଇଗଲା । ତା'ପରେ ଆଉ ମୁଠେ...ଆଉ ମୁଠେ...

...ଓଃ ! ପେଟ ଭିତର ରଟ୍ ରଟ୍ କାମୁଡି ଦେଇଗଲା । ଶିବୁ କହିଲା, "ବେ ଖା ! ଏଇଆ ତ' ଖାଇବୁ ନ ହେଲେ ମରିବୁ ! ଆଉ ତୋତେ କ'ଣ ମାଉଁସ ଭାତ କିଏ ପରଷି ଦେଇଥାନ୍ତା କି ! – ତୁ ଶଳା ମନ୍ତ୍ରୀ ହେଲୁନାହିଁ ?"... ମନକୁମନ ଟିକିଏ ହସିଲା ଶିବୁ ।

ପେଟ ଆହୁରି ବୋବେଇଲା, ଆହୁରି କାମୁଡିଲା । ଶଳାକୁ ମନ୍ଦେ ପାଣି ଦେଇଦେଲେ ସେ ଠିକ୍ ହେଇଯିବ । ବ୍ଲକ୍ ପଛପଟୁ ରୋଷେଇ ଧୂଆଁ ଉଠୁଛି । ସେଇଠି ମାଗିଲେ କ'ଣ ପାଣି ମୁନ୍ଦେ ଦେବେନାହିଁ ?

ରୋଷ ଶାଳରେ ଢେର୍ ଭିଡ । ଗୋଟାଏ ଜରୁରୀ ପରିସ୍ଥିତିରେ ଚାଲାଥାଏ ଧାଁଦଉଡ । ...ହେ, ଆଉ ଟିକକୁ ଆସିଯିବେ...ହେଇ ଆସିଗଲେ...ହେ ମାଂସ କାଲିଆ...ହେ ଚିଙ୍ଗୁଡି କଟ୍‌ଲେଟ୍, ହେ ବିରିଆନି...ଏଇ ଭଳି ଗୁଡିଏ ଶବ୍ଦ ଧାଇଁଆସି ପୁଣି ଧାଇଁପଳାଉଥାନ୍ତି ।

ଶିବୁ ଜଳାବାଟେ ଚାହିଁଲା । ନାକପୁଡା ମେଲି ଗୁଡାଏ ବାସ୍ନା ଶୋଷିନେଲା ।

ଇସ୍ ! ମଲ୍ଲୀ କଢ ପରି କେମିତି ବୋଝେ ହେବ ଭାତ ଥୁଆହେଇଛି । ସେ ତା' ଶୁଖିଲା ଓଠ ଉପରେ ଜିଭଟାକୁ ବୁଲେଇ ଆଣିଲା...ତା ନିଃଶ୍ୱାସ ଟେକିନେଲା । ଗୋଡ ଯୋଡାକ ନିଃଶବ୍ଦେ ଘୁଞ୍ଚିଲେ । ତା' ନାଡ ଭିତରେ ଗୋଟାଏ ମହାବଳ ଦାନ୍ତ କଡମଡ କରି ରଡିଛାଡିଲା । "ଦେ ନହେଲେ ତୋ ରକ୍ତ ପିଇଯିବି !"

ଚାରିଆଡ ଅନ୍ଧାର ଦିଶିଗଲା ଶିବୁକୁ ।

ତା' ପାଟିରୁ ଥୋଲା ଥୋଲା ନାଳ ଗଡିଆସିଲା । ସେ ଭୁସ୍‌କିନା ଭିତରେ ପଶିଯାଇ ଆଣ୍ଠେଇ ପଡିଲା ଭାତ ବୋଝ ପାଖେ...ଆଖି ବୁଜି ମୁହଁଟାକୁ ମାଡିଦେଲା ଉଷୁମବାସ୍ନାର ସେ ସମୁଦ୍ରରେ । ସେ କୁଣ୍ଢେଇଧରିଲା ସେ ବୋଝଟାକୁ । ମନେହେଲା ସେ ତା' ସ୍ତ୍ରୀକୁ କୁଣ୍ଢେଇଛି ଗୋଟିଏ ନିଭୃତ ମୁହୂର୍ତ୍ତରେ । ପାଟିରେ ତା'ର ଅମୃତ ! ଦେହସାରା ଗୋଟିଏ ସମ୍ଭୋଗର ସୀତ୍‌କାର !

ଖଟ୍‌କରି ଗୋଟାଏ ଶବ୍ଦହେଲା । ହଠାତ୍ ଲିଭିଗଲା ସବୁ ବାସ୍ନା । ଶିବୁର କୁଣ୍ଢ ହୁଗୁଳି ପଡିଲା ।

ତା' ତଙ୍କ ଶିରା ଉପରେ ପାହାରେ ପିଟିଦେଇ କେହି ଜଣେ ଚିତ୍କାର କଲା, "ଶାଲା, କୁକୁର ଶାଲା, ଦେଲା ଅଇଁଠା କରି ସବୁଯାକ ଭାତ !"

"ମର୍ ଶାଲା" – କହି ଠିଆଲାତଟାଏ କଚିଦେଲା ତା' ଫଟିଆ ଉପରେ ।

ବୋଝ ଉପରୁ ଭୁଷୁଡି ପଡିଲା ଶିବୁର ସନ୍ତୁଷ୍ଟ ଶରୀରଟି । ତା' ମୁହଁଯାକ ଭାତ ସାଲୁବାଲୁ ।

ପାଟିରେ ପାଟିଏ ଭାତ ଉଭାରି ରହିଥାଏ । ଆନନ୍ଦମ୍, ଆନନ୍ଦମ୍ ! ପେଟେ ହେବ ଅମୃତ ପିଇଦେଇ ଦାନ୍ତ ନିକୁଟି ଦେଇ ତା'ର ଧ୍ୟାନ ମୁଦ୍ରାରେ ସେ ଆଶୀର୍ବାଦ କରୁଥାଏ ଜଗତକୁ ।

ଗୋଳ ଉଠିଲା । ପହଞ୍ଚିଲେ ବି.ଡି.ଓ. । ପହଞ୍ଚିଲେ ମନ୍ତ୍ରୀ । କହିଲେ ଶୋଭାଯାତ୍ରା ହେବ । ଏଇ ମୂଲିଆ ଭାଇର ଚିତା ଭସ୍ମ ଏଇ ମରୁଡି ଅଞ୍ଚଳରେ ବୁଣାହେବ । କେତେ ଛକା ପଞ୍ଝା । କେତେ ଫିସ୍‌ଫିସ୍ କଥା । ସବୁ ଆସ୍ତେ ଏକ ମୁହାଁ ଭୋଜିଘର ପାଖକୁ ଆଡେଇ ହୋଇଗଲା । ସେଇଠୁ ଗ୍ୟାସ୍ ଆଲୁଅରେ ଧାଡି ଧାଡି ମାଉଁସ ଖିଆ ମୁହଁ । ହାତ ଶୋଷୁଥିବା ଶବ୍ଦ ।

ରାତି ଘନେଇ ଆସିଲା । ରୋଷଘରେ ଋକୁଋକୁ ହୁଁ ହାଁ ଅନେକ ଶବ୍ଦ । ସେଗୁଡାକ କ'ଣ ସମସ୍ତେ କୁକୁର ? ଶିବୁର ଶବ ଉପରେ ଅସଂଖ୍ୟ ନିର୍ମାଲ୍ୟ ଶୁଖି ଆସୁଥାଏ । ତା' ବୁକୁ ଉପରେ କୌସ୍ତୁଭ ମଣି ପରି କାଦୁଅରୁ ଉଠିଆସିଥିବା ଗୋଟାଏ ଲେଙ୍କେଡା କୁକୁରର ଖୋଜ ଚିହ୍ନ ।

ଛାପଛାପୁଆ ଜହ୍ନ ଆଡେ ଅଧରାତିରେ ମୁହଁ ଟେକି ଦେଇ ଗୋଛାଏ ସନ୍ତୁଷ୍ଟ କୁକୁର ସାମଗାନ କରୁଥାନ୍ତି, "ଓଁ ଅଦାମ୍ ଅଦାମ ଅଦାମ୍ ! ଓଁ ପିବାମ୍ ପିବାମ୍ ପିବାମ୍ ! ଏ ଦୁର୍ଭିକ୍ଷ ରାଜ୍ୟରେ ଆମେ କୁକୁରମାନେ ଖାଉଛୁ ଖାଉଛୁ ଖାଉଛୁ ! – ଆମେ କୁକୁରମାନେ ପିଉଛୁ ପିଉଛୁ ପିଉଛୁ !"



## ପ୍ରଳୟ

ପୃଥ୍ୱୀ ଦୁଇଫାଳ ହୋଇ ଫାଟିବାକୁ ଆଉ ଦୁଇଟି ରାତି ବାକି ଥାଏ ।

ତଥାପି ଯେ ଯାହାର ସାଧମତେ ଅଶୁଭ ଶଙ୍କୁନମାନ ଦେଖୁଥିବାର ଶୁଣାଗଲା । ତେରଟା କୁକୁର ଗୁଦ୍ରାନ୍ତ ବେଳାରେ ଉପରକୁ ମୁହଁ ଟେକି ଏକାଠି ରାବ କରୁଥିବାର ଦେଖି କେହି ଜଣେ ଅତର୍କ ହୋଇ ପଳାଇଲା ବେଳକୁ ଶିମୁଳି ଗଛମୂଳେ ଝାନ ହାରି ପଡିଗଲା । ଆଉ ଜଣେ କହୁଥିଲା ଯେ ଗର୍ଭିଣୀ ଗାଈ ପରି ଏ ଭୂଇଁ ସବୁବେଳେ ଥରିଲାଣି; ଏଣିକି ସେ ଆଉ ଭାରା ସମ୍ଭାଳି ପାରୁ ନାହିଁ । ତା'ର ବତିଶି ବନ୍ଧନ ଛିଣ୍ଡୁଛି । ସେ ନିଶ୍ଚେ ଦୁଇଫାଳ ହୋଇ ଫାଟିଯିବ । ଗାଁର କେତେ ଅଚିହ୍ନା ଲୋକ ସବୁ ବୁଲିଲେଣି । ସେମାନେ କୁଆଡେ ସେଇଠି ଉଭାନ ହୋଇଯାଉଛନ୍ତି । ଭୂଇଁରୁ ପାଦ ଛାଡିଛି ନା ନାହିଁ ଦେଖିବା ସକାଶେ ନଇଁ ପଡିଲେ ସୁ କରି ଗୋଟାଏ ପବନ କାହୁଁ ଆସି ତାଙ୍କୁ ଟେକିନେଇ ଯାଉଛି । ପୁରୁଣା ବିଲମାନ ସବୁ ଅଚିହ୍ନା ଜଣାପଡୁଛନ୍ତି । ଫଳନ୍ତି ଗଛଗୁଡାକ ଠିଆରେ ଜଳିଯାଉଛନ୍ତି । ଗାଈମାନଙ୍କର ପହ୍ନା ସବୁ ଲେଉଟିଯାଉଚି; ଘୁଞ୍ଚିଯାଉଚି ଇନ୍ଦ୍ରିଆଡକୁ । ଇନ୍ଦ୍ରିଗୁଡାକ ଲିଭି ଯାଉଛନ୍ତି । ତାଙ୍କ ପଛଆଡୁ ଟିକପରି ଲାଖିଥିବା ଚିରକୁ ଚିମୁଟି ଝିଙ୍କିଲେ ଦି'ଋରିଟୋପା ରୁଧିର ବାହାରୁଚି । ଗାଁ ଦାଣ୍ଡରେ ଧାଡି ଧାଡି ହୋଇ ଲଣ୍ଡା ଶାଗୁଣାମାନ ନିଶ୍ଚଳ ଆଖିରେ ଋହିଁ ବସିଛନ୍ତି । ବାଡିଆଡେ ବିଲୁଆ ପଲ ପଲ ବୁଲୁଛନ୍ତି ।

ମୁଁ ଆସି ଦାଣ୍ଡପିଣ୍ଡାରେ ଗୋଡ ଦେଇଛି ନା ନାହିଁ ଏକାନିଃଶ୍ୱାସରେ କୋଡିଏ କି ପଚିଶ ପ୍ରକାର ସର ଏକାଠି ଏସବୁ ବଖାଣିଗଲେ ।

ମୋତେ ଯେଉଁସବୁ ହାଡର ପଞ୍ଜୁରିଗୁଡିକ ବେଢି ରହିଥିଲେ, ସମସ୍ତଙ୍କ ମୁହଁଟି ମାନ ମେଲା । କାହାର ଦି'ଋରିଟା ବିରଳ ଦାନ୍ତ, ଥୋଡ ଉପରେ ପାଚିଲା ଗୁଢ । କାହା ଜିଭରେ ବିଧେ ବହଳରେ ହଳଦିଆ ବୋଳ; କାହାର ଓଠ କଡରେ ବଜ ବଜ ଛେପ ! ସମସ୍ତଙ୍କ ଆଖିଗୁଡାକ କିନ୍ତୁ ତାତିଲା ଲୁହା ଗୋଟାଳି ପରି ଡହକୁଥାଏ । ଲୁଖୁରା, ଅଲରା ବାଳ କେରା କେରା ହୋଇ ଉଡୁଥାନ୍ତି । ସେମାନଙ୍କ ପ୍ରାଣ ଭିତରକୁ କୋକୁଆ ପଶି ଯାଇଥାଏ । ଆଖିପତା ବାଳଗୁଡିକ ପୁଞ୍ଜି ପୁଞ୍ଜି । ଗାଲ ଉପରୁ ରୁମଯାକ ଠିଆ ଠିଆ, କପାଳ ଉପରେ ଟୋପି ଟୋପି ଯମଝାଳ । ତାଙ୍କ ଭିତରେ ଭୟ । ବାହାରେ କୋହଲା ହେମାଳ ବୋଝେଇ ହୋଇ କୁଲା କୁଲା ଆତଙ୍କର ଶୀତ ।

ଏ ପୃଥ୍ୱୀ ଅବଶ୍ୟ ଠୋ'କିନା ଫାଟିଯିବ! ଧାନଉଷୁଆଁ ହାଣ୍ଡିପରି ଦୁଇଫଟା ହୋଇଯିବ। ତା' ଗର୍ଭରୁ ବୁଜୁଲା ବୁଜୁଲା ନିଆଁ ଛିଟିକି ପଡିବ; କୁଢେଇ ହେଇ ପଡିବ ଭୁସ୍‌ଭାସ୍ ହୋଇ ଘରିଆତକୁ। ନିତେଇ ମଉସା ହାତର ଭଙ୍ଗୀ, ଟିମା ନାହାକର ଡରେଇଲା ଶତ୍ରୁଘ୍ନମାନଙ୍କର ଫୁଙ୍ଗୁଲା ପଞ୍ଜରା, ଧୂଳିଆ, ମସିଆ, କାଠିଗୋଡିଆ, ଡଇଁଡଇଁଆ ପିଲାଗୁଡାଙ୍କର ଟିମିରା ବୁଜୁଳିଆ ପେଟ ସବୁ ମିଶି ମୋ' ଉପରେ କୁଢେଇ ହେଇ ପଡିଲା। ମୋ' ହାଣ୍ଡିଆ କମ୍ପିଲା। ପଞ୍ଜୁରି ଥରିଲା, ଗୋଛିଠଉଁ ବେକମୁଣ୍ଡା ଯାଏଁ ଶୀତେଇଗଲା ପାଞ୍ଚ ଛଅ ଥର। ଏଭଳି କଥା ସମ୍ଭାଳି ଯିବାକୁ ମୁଁ ସେମିତି ବୀର ପୁରୁଷ ମଧ ନୁହେଁ। ଆମ ସତେଇଶ ପୁରୁଷରେ କେହି ବୀର ନ ଥିଲେ। ସମସ୍ତେ ଗାଁ ମଶାଣିକି ଥରେଲେଖାଁ ଯାଇଛନ୍ତି, ଆଉ ବାହୁଡି ନାହାନ୍ତି। ମତେ ଅବେଳରେ ବାହାରପାଣି ମାଡିଆସିଲା, ଅଇ ଟେକିଲା।

ତଥାପି ଏ ସମସ୍ତ ପ୍ରକାର ଆନ୍ଦୋଳନକୁ ମାଡି ବସି, ମୋର ସେ ଗୋବବସା ଟ୍ରଙ୍କ ଉପରେ ଭାରଦେଇ ମୁଁ ଦମ୍ଭ ହୋଇ ପିଣ୍ଡାରେ ଚକାଟାଏ ପକେଇଲି। ନିଃଶବ୍ଦରେ ମୋ' ଘରିଆତେ ସେ ଛାଇଗୁଡିକ ସାଲୁସାଲୁ ହୋଇ ପାଖେଇ ଆସିଲେ! ବଳ ଚଢେଇବାକୁ ମୁଁ ଖାଲି ରେଳଗାଡିକି ସ୍ମରଣ କଲି। ତା'ର ସେ ଥାକୁଲା ଥାକୁଲା ଚକ, ନିଘଞ୍ଚ, ନିଃଶଙ୍କ ପର୍ବତ ପରି ରୂପ, ନିର୍ଘାତ ଗତି, ସବୁ ମନେପକେଇ ମୋ' ଡେଣାକୁ ଆସ୍ତେ ଆସ୍ତେ କହଲେଇଲି। କିଛି ଉଷୁମ ଚଢିଆସିଲା। ଭିତର ନାଡଗୁଡାକ ଯାହା ଚହଲି ଯାଇ ଧାକୁଧାକୁ ହେଉଥିଲେ, କିଛି ଥମିଗଲେ!

ମୋର ଆହୁରି ବଳ ଚଢିଆସିଲା! ହାଡଗୁଡାକ ଯାହା ଓଦା ସଳିତା ପରି ନଡ ନଡ ହୋଇଯାଉଥିଲେ, ନିଘଞ୍ଚ ଲୁହା ପଇ ପରି ସ୍ଥିର ହୋଇଗଲେ। ରେଳ-ଲାଇଟ୍ ପରି ମୋ' ଆଖି ଜଳିଲା; ମୋ' ଭିତର ବାବା ତା'ର ନିଃଶ୍ୱାସ ଭଳି ସାଉଁ ସାଉଁ ହେଲା। ମୋ' ଘରିଆତ ଜନତା ନିସ୍ତବ୍‌ଧ। ମୁଁ ମୋ' ଟ୍ରଙ୍କ୍ ଉପରେ ଚଉରସ୍ ଘପୁଡାଟାଏ ମାରି ଗର୍ଜିଉଠିଲି – "କେମନ୍ତ...!"

ସେତିକିରେ ଦେଖାଗଲା ଯେ ପୁଞ୍ଜାଏ ଖଣ୍ଡେ ଯୋଡି ଛାଡି ଧାଇଁ ପଳେଇଲାବେଳକୁ ମୁହଁମାଡି ପଡିଗଲେ! ଆଉ କେହି କେହି ସେଇଠି ପଡିଗଲେ! ବାକି ସମସ୍ତେ ମିଶି ଗୋଟାଏ ଇଲି ଇଲି ହୋଇ ବିଳିବିଳେଇଲା ପରି ଶୁଣାଗଲା। ସନ୍ଧ୍ୟା ପହରର ସେ ଛାପଛାପୁଆ ମଳିଛିଆ ଅନ୍ଧାରରେ ଗାଁଖଣ୍ଡ ଟାଟକା ହୋଇ ଲେଉଟି ପଡିଲା।

ମୁଁ କିନ୍ତୁ ସେଇଠି ସେଇ ଟ୍ରଙ୍କକୁ ଆଉଜି ବସିଥାଏ। ବୁଝିପାରୁଥାଏ ଯେ ଏମାନଙ୍କୁ କିଏ ଗୁଡାଏ ମାଳିକା ପିଆଇଛି। "ଦକ୍ଷିଣେ ସାଜିବ, ଉତ୍ତରେ ଗାଜିବ ପୂରୁବେ ନ ଥିବେ କେହି!" ମାଳିକାରେ ଯାହା ସବୁ ଅଛି, ତାକୁ କାଟିଦେବାକୁ ମୋର କ'ଣ ଯୁ' ହେଲାଣି ? ତାକୁ ଶୁଣିଦେଲେ ମୋତେ ମଧ ଦଶଦିଗ ଅନ୍ଧାର ଦିଶିଯିବ, ଏ କଥା ମୁଁ ଜାଣେ! ତଥାପି ମୋ' ରେଙ୍ଗାମ ଟ୍ରଙ୍କ ଭିତରେ ସହରରୁ ତିନିମାସ କାଳ ଖଟି ଖଟି ସାତକୋଡି ଛ'ଟଙ୍କା ଆଣିଛି, କ'ଣ ପୃଥ୍ୱୀ ଫାଟିଗଲେ ତା' ଭିତରେ ଗଳେଇଦବା ପାଇଁ! ସେଥିରେ ଆମ ତା' ପାଇଁ ଗୋଟାଏ ବାସ୍ନା ତେଲ, ଲଗେଇ ଜାଣିଲେ ଦୁଇମାସ ଯିବ! ଗୋଟାଏ ମଜବୁତ ତବା ସୁବାସିତ ଗୁଡାଖୁ, ଦି'ଓଳି ଗୁଳାଏ ଲେଖା

ଘଷିଲେ ସୁଦ୍ଧା କସାକସି ଦେଢମାସ। ଗାଁକୁ ଆସିଛି ଭୋଗିବାକୁ ନାଁ; ଶଃ – ଏମାନଙ୍କ ସାଙ୍ଗରେ ମରିବାକୁ ? ଏ ପୃଥ୍ୱୀକୁ ଏଇନେ ବେଳ ମିଳିଲା ଫାଟିବାକୁ ! ଏଇଟା ଏମିତି ଏଇଠୁ କଖାରୁ ଫାଟିଲାପରି ଫାଟିଗଲେ ଆମେ ସବୁ ଧର ଗଳିପଡିବୁ ! ମାତ୍ର ଯାଇଁ ଯାଇଁ ଏ ଫାଟ ପୁଣି ଗୋଟାଏ ରେଳଗାଡି ପାଖରେ ପହଞ୍ଚିବ ନା ନାହିଁ। ସେ ରାଘବା କ'ଣ ଭୂଇଁ ଛାଡିବ ଯେ ଏ ଫାଟିଯିବ। ସେ ବଡ ଷ୍ଟେସନରୁ ସାତଭାୟା ରେଳସବୁ ଆସି ଯଦି ପଇ ମାଡି ଠିଆହେଇଯିବେ, ୟାର ସାଧ କାହିଁ ଫାଟିବାକୁ। ଫାଟିବା କ'ଣ ଏମିତି ଖେଳଘର ପଡିଚି ! ଛଃ...ଜୟ ଭାୟା ରେଳଗାଡି।

ପୁଣି ଟ୍ରଙ୍କ ଉପରେ ଗୋଟାଏ ଥାପୁଡା ମାରିଲି। ଦେଖିଲି, ପାଖରେ ଆଉ କେହି ନାହାନ୍ତି ! ଦୁଆରମୁହଁରେ ମୋର ବାଙ୍ଗରୀ ବୋଉ, ଆଉ ତା' ପଛକୁ ଆମର ୟେ ଠିଆହେଇଛନ୍ତି। ଛାନିଆଁରେ କଥା କହୁ ନ ଥାନ୍ତି।

ଶେଷକୁ ବୋଉ କହିଲା, 'ସେଗୁଡାକ ସବୁ ଗଲେଣି ମ! ତୁ ଦାଣ୍ଡପିଣ୍ଡାଟାରେ ଆଉ କେତେ ବେଳ ବସିବୁ ? ଏଥିରୁ ଗୁଡେ ପରା ଗାଁ ଖଣ୍ଡକ ପକେଇ ଚକଟି ଲାଗିଛନ୍ତି ମାସେ ହେଲା। ମଣିଷ ଦିନ ଗଣି ଗଣି ଶୋଷିହୋଇଗଲାଣି।' ମୁଁ ଫେର୍ ଟ୍ରଙ୍କକୁ ବାଡେଇ କେଜାଣି କାହିଁକି ପଚାରିଦେଲି, "ତୁ ରେଳ ଦେଖିଛୁ ? – ରେଲଘାଡି ?" ସେ ଛାନିଆଁ ହୋଇ ରହିଲା। ଭାବିଲା, ବୋଧହୁଏ ଯେ ପୁଅକୁ ଭୂତ ଲାଗିଛି ! ମୁଁ ବୁଝିଗଲି। କାଲୁ ମା' ଠାର – ତା' ପୁଅ ଜାଣିବ ନାଇଁ ତ' କିଏ ଜାଣିବ ? – ଗଳା ନରମା କିନ୍ତୁ ବେଶ୍ ପରିଷ୍କାର କରି କହିଲି, "ଆଣିଲୁ ଆଗ ପାଣି ଲୋଟାଏ। ମୁଁ ସେ ଡବା ଫିଟେଇ ବଡ କରି ଟେଳାଏ ଗୁଡାଖୁ ଘଷେ ! ତୁ ବି ଟେଳାଏ ଘଷ। ଭଲକରି କୁଳି କରି ପାଣି ପୁଚୁକା ଖୁବ୍ ଜୋରରେ ଛାଡିଲେ ଯାଇ ମୁଁ ଘରକୁ ଯିବି ! କାଲି ଦିନଯାକ ଭିତରେ ଗାଁ ଦାଣ୍ଡ ସାରା ବୁଲି ବାଇଶ ଥର ଘଷିବି। ଶଃ – କଅଣ ନା ପୃଥ୍ୱୀ ଫାଟିଯିବ ପଅର ଦିନ !"

ବୋଉ ପାଣି ଆଣିବାକୁ ଗଲା। ମୁଁ ସଟାଂକରି ତାଲା ଫିଟେଇ ଆଗ ଗୁଡାଖୁ ଡବାଟା କାଢି ପିଣ୍ଡାରେ ଛେଚିଦେଲି। ତଳୁ ଦରାଣ୍ଡି କାଢିଲି ତେଲକାଚ। ଠିପି ଫିଟେଇଦବାରୁ ସେ ଖଣ୍ଡମଣ୍ଡଳ ମହକିଗଲା। ଆମର ତା' ହାତରେ ଗୁଞ୍ଜିଦେଲାରୁ ସେ ନାକ ପାଖକୁ ଟେକି ନେଇ ବାସ୍ନାଯାକ ଖାଲି ପିଇଗଲା, କହିଲା – "ମଲାରେ ଏ ଗାଁ ରଇଜଲାଙ୍କୁ ଆଉ କିଛି ନାଇଁ ! ଖାଲି ଶୁଖି ଶୁଖି ତାମ୍ପଡା ହୋଇଗଲେଣି। ଖାଲି ଘୋଷୁଚନ୍ତି ପୃଥ୍ୱୀ ଫାଟିଯିବ ! ୟାଙ୍କରି ବୋଲରେ ତ' ପୃଥ୍ୱୀ ରହିଚି ! କାଇଁ ଫାଟିଯିବ କହିଲ ?"

"ବାଆସ୍, ସେଇ କଥା, କାଇଁ ଫାଟିଯିବ ନା ? ଖାଲି ଖେଳଘର ପଡିଚି ! ରହ, ମୁଁ ଏ ଗୁଡାଖୁ ଘଷି ସାରେ, କହୁଚି ! ତୁ ଟେଳାଏ ଘଷିବୁ କି ! ମିଜାଜ୍ ଠିକଣା ହୋଇଯିବ ! ନଉନ୍ତୁ...ନେ।"

ଅନ୍ଧାର ଭିତରୁ ବୋଉ ବଡ ଢାଳରେ ପାଣି ନେଇ ଥୋଇଲା ! ଦ୍ୱିତୀୟ ଗୁଳା ଗୁଡାଖୁ ବୋଉ ହାତରେ ମାଡିଦେଲି ! ନେ' ୟାକୁ ଘଷିଦବୁଟି ଆଗ। କେମିତି ବାସୁଚି ଆଗ ଶୁଙ୍ଘିଦେ।

ବୋଉ ଆମର ଭାରି ଧୀର ! ନାକ ପାଖରେ ଘଡିଏ ଧରି, ଭଲ କରି ଶୁଙ୍ଘି କହିଲା, "ବାସୁଚିରେ ପୁଅ ! ମରୁଆ, କି ଚମ୍ପା କି କ'ଣ ପରି କେତେହେଁ ମହକିଯାଉଛି ! ହଇରେ ଏ

ଗୁଡାଖୁଟି, ନାଁ ଆଉ କ'ଣ ଆଣିଛୁ ବା ?" ମୁଁ ହସି ଦେଇଥାନ୍ତି; ମାତ୍ର ସେତେବେଳେ ତାଉ ଭାଙ୍ଗିବାକୁ ହେବନାହିଁ! ରାଗରୋଷବେଳେ ହସିଦେଲେ ସବୁ ଫାଙ୍କାସି ଯିବ । ମୁଁ ଗଳା ଖଙ୍କାରି କଥାଟାର ସମାଧାନ କରିନେଲି । କହିଲି, "ହୁଁ ଗୁଡାଖୁ, ନା ନାହିଁନଥିବା ଗୁଡାଖୁ! ତୁ ଆଗ ଦି'ବେଙ୍ଗା ରଗଡି ଦଉନୁ । ଦେଖିବୁ କେମିତି ଏ ପୃଥ୍ୱୀ ଥୟ ଧରିଯିବ । ଆଉ ଦେଖ, ଏ ଦି' କେଜିଆ ଟିଣ! ଏତକ ସବୁ ସେଇ ବାସ୍ନାରେ ଭର୍ତ୍ତିହେଇ ରହିଚି । ଦେଖୁନୁ, ଦେଖ୍! ଟିକିଏ ଟେକ୍ ଏଇଟାକୁ । ଆଉ କହ ଏ ପୃଥ୍ୱୀ ଫାଟିବ ନା ରହିବ ?"

ବୋଉ ଟିପମାରି ଡବାଟାକୁ ଘୁଞ୍ଚେଇଲା – "ମୋ ବାବାରେ, କେତେ ଭାରି ହେଇଚି ମ!" – ତା'ପରେ ପାଟିରେ ଉଶ୍ୱାସରେ ବିଶିଆଙ୍ଗୁଠି ଟିପଟିକି ଆଉଳେଇ ଆଣି ଆମୋଦ ପବନରେ ଆକଟା ହେଲାପରି କହିଲା, "ଯାଉନୁ, ଏ ରଇଜଳାଙ୍କ ହାଣ୍ଡିଆ ଫାଟିବ ବା! ପୃଥ୍ୱୀ କାହିଁକି ଫାଟନ୍ତା... ?"

ମୁଁ ଦାଣ୍ଡ ଉପରକୁ ଓହ୍ଲେଇ ଆସିଲି! ହାତରେ ଗୁଡାଖୁ, ତୁଣ୍ଡରେ ଗୁଡାଖୁ । ଯୁଆଡେ ବୁଲିପଡିଲେ ସେଇ ମହମହ ବାସ୍ନା – ମୁଁ ପଇଁତରା କାଟି ପାହୁଣ୍ଡ ମେଲେଇଦେଲି । ଏଆଡିକି କୋଡିଏ ଖୋଜ, ସେଆଡିକି କୋଡିଏ ଖୋଜ! କେହି କୁଆଡେ ନ ଥାନ୍ତି । ସେ ଦାନ୍ତୁରା ଶତ୍ରୁଘ୍ନା-ଲଗାତ୍ ସମସ୍ତେ ଘରେ ଟାଟି ପକେଇ ପଶିଯାଇଥିଲେ । ଦାଣ୍ଡରେ ମଣିଷ ନାହିଁ । ଡାକିନୀ ପିଶାଚୁଣୀ ମଧ୍ୟ ସୋରାଏ କି ଫାଳେ ଦେଖିବାକୁ ମିଳିଲେ ନାହିଁ । ମୁଁ ଆହୁରି ଜୋର୍‌ରେ ଗୁଡାଖୁ ଘଷିଲି । ଦାଣ୍ଡମଝିରେ କୁଳି ଛାଟିଲି । ସେତେବେଳେ ମୁଁ ଏକୁଟିଆ ମଶାଣିକି ଖେପିଯାଇ ପାରିଥାନ୍ତି! ସାରା ଗାଁ ତାବଦା ହୋଇ ଶୁଣିଥିବ । ଷୋହଳ ଥର କୁଳି ଛାଡି ସାରି ଢାଳ ଅଣେଇଲାବେଳକୁ ପାଣି ସରିଯାଇଥିଲା । ମୋର ମନ କିନ୍ତୁ ଆଉ ଦଶ କୋଡିଏ ଥର ଛାଡିଥାନ୍ତି! ଛଃ...କ'ଣ ନା ପୃଥ୍ୱୀ ଫାଟିଯିବ । କୋଉ ଫାଟୁ ନ ଥିଲା!!

ବାକ୍ସ ଖଣ୍ଡ କେତେବେଳୁ ଘର ଭିତରକୁ ଯାଇସାରିଥିଲା । ତଳଘର ପିଣ୍ଡାରେ ଠିଆରେ ଢାଳଟାକୁ ଦୁମ୍‌କିନା ଛାଡିଦେଲି । ମୋତେ ସେମିତି କରିବାକୁ ଭଲ ଲାଗୁଥାଏ । ବୋଉକୁ ଆଉ ତାକୁ ମଧ୍ୟ ସୁଖ ଲାଗୁଥାଏ, ଏ ପ୍ରକାର ଅଣ୍ଡିରାପଣିଆରେ! ଡିବିଟାକୁ ରୁଖା ଉପରେ ଥୋଇଦେଇ ଦୁହେଁ ଟ୍ରଙ୍କରୁ ଜିନିଷ କାଢି ଲାଗିଥାନ୍ତି । ଦି'ଖଣ୍ଡ ମୋଟ ଖୋର୍ଦ୍ଧା ଶାଢୀ ଭିଡିଆଣି ଯ୍ୟା ଉପରକୁ ଖଣ୍ଡେ ଫିଙ୍ଗିଦେଲି ମାଲିକାନା ଭଙ୍ଗୀରେ! ଦୁହେଁ ନରମା ଲୁଗାଟାକୁ ମୁଠା ମୁଠା କରି ପକେଇଲେ; ଗାଲରେ ମୁହଁରେ ଘଷିପକେଇଲେ । ବୋଉ ମୁହଁରୁ ହସ ଫାଟିପଡୁଥାଏ । କହିଲା "କେତେ ଭାରି ହେଇଚି ଏ ଖଣ୍ଡ ମ'! ମାଡିମକଚି ପିନ୍ଧିଲେ ଦିହକ ପାଇଯିବ ।"

ତା' ଉତାରୁ ହାତ ପୂରେଇ ଗୋଟାଏ ନାଲି ରୁମାଲରେ ବନ୍ଧା ହୋଇଥିବା ପୁଡିଆଟିକି ବାହାର କଲି । ଦି'ଜଣଯାକ ଦୁଇଆଟୁ ଓହଳି ପଡି ରହିଁଥାନ୍ତି! ଆମ ଯ୍ୟା' ମୁହଁ ବାସିଯାଉଥାଏ । ଯ୍ୟା ଭିତରେ ସେ ଲେଡିଏ ବାସ୍ନା ତେଲ ଲଗେଇ ସାରିଥାଏ । ଫିଟେଇ ଦେଇ ବିଡାଏ ନୋଟ ତଳେ କଚି ଦେଲି! "ଏଇ ବିଡାଟା ଶହେ...ବୁଝିଲୁ ବୋଉ...ଶହେ ବୋଇଲେ ପାଞ୍ଚକୋଡି... ।

ଆଉ ଏଇ ହେଲା ଦି'କୋଡି ପାଞ୍ଚଟଙ୍କା । ଏମିତି ହେଲା ସାତ କୋଡି ପାଞ୍ଚ ଟଙ୍କା !...ଆଉ ଇଏ ହେଲା ଦଶ ପଇସା ପାଞ୍ଚ ପଇସା ହେଇ ଟଙ୍କାଏ ! ...ତୁ କାଲି ଆଗ ସେ ଚମଚଟା ଚେମି ବେହେରା ଘରୁ ଅଡେ ଗୁଆଘିଅ ଆଣିଲୁ । ମନ ପୂରେଇ ଖାଇବା, ଯଦି ପଅରଦିନ ପୃଥ୍ୱୀ ଫାଟିଗଲା, ତେବେ ଅଡେ ଘିଅ ପିଇ ତ' ମରିବା !

ମୋ ନିଜ କଥାରେ ମୁଁ ଚମକି ପଡିଲି ! ବୋଉ ଆଉ ଆମର ସିଏ ମତେ ଏଡେଟାମାନ ଆଖିକରି ଚାହିଁଥାନ୍ତି । ମୁଁ କଥା ଘୋଡାଇବାକୁ ହେଁ ହେଁ ହୋଇ ହସିଲି । ଗୁଡାଏ ଅଶ୍ଳୀଳ କହିଥାନ୍ତି...ଖାଲି କହିଲି, "ମାର୍ ଗୁଲି...ୟାକୁ କିଏ ପଚାରେ ! ମୁଁ ପୁଉଣି ଯିବି ଟାଉନ୍କୁ ! ପୁଉଣି ଛାଣି ଆଣିବି ପଇସା । ସେଇଠି ସବୁ କାହିଁରେ କ'ଣ ହେଲାଣି । ଝାଳକୁ ଲୋକ ତୋଳା ଦରରେ କିଣୁଛନ୍ତି । ଦି'ଘଣ୍ଟା ଖଟି ଦେଲେ ଦି'ମୁଠା ପଇସା...ମୁଁ ଠିକଣା କରିଚି ଗୋଟେ ଘର ! ଚାଲ କାଲି ଏଇଠୁ ପଳଇବା ! ବସିଥାନ୍ତୁ ଶଳେ ଏଇଠି । ପୃଥ୍ୱୀ ଫାଟିଲେ ଏଇଠି ଫାଟିବ ନା ଚାରିଆଡେ ।"

କିଛି ସମୟ ଘର ନୀରବ ହୋଇଗଲା । ମାଡିପଡିଲା ପରି ଲାଗିଲା । ବୋଉ କହିଲା, "ସାତପୁରୁଷ ଘରଡିହ ଛାଡି ଏ ବଅସରେ ମୁଁ ଆଉ କୁଆଡେ ଯିବି ଦୁଃଖ, ଦେଖିବା ! କାଲି କଥା ତ' ଅଛି ! ହଇଲୋ ପଖାଳ ଆଉ ଅଛି ? ଯାଉନୁ ବାଢି ଦବୁ ! ଖଣ୍ଡେ ଶୁଖୁଆ ଚୁଲିରେ ପକେଇ ଦେ !"

ମୁଁ ସାଙ୍ଗେ ସାଙ୍ଗେ ଟ୍ରଙ୍କରେ ହାତ ପୂରେଇ କହିଲି, "ରଃ ଦଉଚି ପାମ୍ଫଡ ଦି ତିନିଟା, ସେଇ ନିଆଁରେ ଥୋଇ ଦବୁଟି । ଆଗ ସେଥିରୁ ଆଣ୍, ଚାବେଇବା, ତା' ଉତ୍ତାରୁ ପଖାଳ କଥା !"

ମୋ ସ୍ୱର ସମ୍ପୂର୍ଣ୍ଣ ସ୍ୱାଭାବିକ ! ଟିକିଏ ମାଇଚିଆ, ଟିକିଏ କେଁ-କେୟାଁ । ମୋତେ ସେଇଟା ଆଦୌ ସୁଖ ଲାଗେନାହିଁ; କିନ୍ତୁ ରାଗ-ରୋଷ ସେତେବେଳକୁ ଥମି ଆସୁଥାଏ । ରାତି ଘୋଡେଇ ହୋଇ ଆସୁଥାଏ । ଗାଁଯାକର ହେମାଳ ଚାରିଆଡୁ ପଶି ଆସୁଥାଏ ! ଆଉ କିଛି କହିବାର ବି ନଥାଏ, କ'ଣ ପଚାରିବି ପଚାରିବି ହେଇ କହିଲି – "ବୋଉ ମ, କେମିତି ଏକଥା ଉଠିଲା ଗାଁରେ ! କହିଲୁ ?"

"କୋଉ କଥା ?"

"ଏଇ ମ, ପୃଥ୍ୱୀ ଫାଟିଯିବ କଥା... !"

"କାଇଁ କହୁଚୁରେ ପୁଅ ! କେମିତି କେଜାଣି ଗୋଟେ ହୁ' ଉଠିଲା ତ । ଯେ ତାକୁ ସେ ୟାକୁ କୁହାକୁହି ହଉ ହଉ ଦିନରାତି ଖାଲି ସେଇ କଥା, ଖାଲି ସେଇ କଥା ! କ'ଣ ନା, ଏଇ ଉଆଁସ ଦିନ ମଙ୍ଗଳବାର ରାତି ଅଧରେ ପୃଥ୍ୱୀଟା ଫାଟିଯିବ ! କିଏ କହୁଚି, ସେ ମଶାଣି ପାଖ ମୁଣ୍ଡିଆଠୁ ଫାଟି ଆସିବ । ଆଉ କିଏ କହୁଚି, ଏଇ ଗାଁ ମଝିରୁ ମେଲା ହୋଇଯିବ । ଆଉ କିଏ କହୁଚି, ତଳଗୋହିରି ଆଡୁ ଆଗ ଭିଁପୁରକୁ ଖାଇଯିବ...ଏଇମିତି କେତେ କଥା । ଆମେ ଶୁଣି ଶୁଣି ତେନ୍ତୁଳି ପରି ହୋଇଗଲୁଣି ! ସମସ୍ତଙ୍କ ପ୍ରାଣ ଅଧେ ଲେଖାଁ ଗଲାଣି । ଆଉ ଅଧଟେ ସେଇ ରାତିରେ ଉଡିଯିବ ।"

"କାଇଁ ସେଗୁଡାକ ତୁ ଶୁଣୁଚୁ କି ବୋଉ ?" – ମୁଁ ଜାଣେ, ଏସବୁ ସେଇ ଗାଁ ଲଫଙ୍ଗା

ଟାଉଟରିଆଙ୍କ କାମ!..."ଆଚ୍ଛା ଗାଁ ମୁଖିଆ ଲୋକେ ଭଲା କ'ଣ କରୁଛନ୍ତି ?"

"ତୋର ସେ ଯେଉଁ ନିତେଇ ମଉସା – ଅଳପେଇଷ, ଯେବେ ମତେ ଦେଖିଲେ ଟାହୁଲି କରୁଥିଲା (ଆମ ବୋଉ ତାଙ୍କ ଶାଳୀଲେଖା ହେବ) ଆଉ ଅଛି କି ? ଢଣା ଖାଇଲା ପରି କେମିତି ହତଶ୍ରୀ ଦିଶିଲାଣି, ଆଜି ଦେଖିଲୁ ତ ? ସେ ଭିଁପୁର ଡମ ପାଖରେ ସବୁ ଜମି ବିକିଦେଇ ଏବେ ଅଫିମ ଖାଉଛି । ଏତକ ଦିନ ଭିତରେ ଟଙ୍କାଯାକ ଭୋଗିପକେଇବ କହୁଚି !"

"ଆଉ ସେ ଆରକ ପ୍ରେତ – ଟିମା ନାହାକ...ଗୋଟେ ଦେଢହାତ ଉଞ୍ଚ ଶେଯକରି ତା' ଉପରେ ଦିନରାତି ଶୋଇଚି । ଶୁଖି ଶୁଖି ଧୋକଡା ହୋଇଗଲାଣି ! ତାକୁ ଡାଙ୍କିନୀ ଶୋଷୁଚନ୍ତି ବୋଲି ସବୁ କହୁଚନ୍ତି ? ତା'ର ତ' ମାଇପ କୋଉକାଳୁ ମଲାଣି । ସଞ୍ଜପହରେ ସବୁ ନିସ୍ତବ୍ଧ ହୋଇଗଲେ ତା' ଘରୁ କାଚ ଝମ୍‌ଝମ୍ ସବୁଦିନ ଶୁଭୁଚି !...ସେ ତା' ଘରତିହ ବନ୍ଧକ ଦେଇ ପାଁ ଶହ ଟଙ୍କା ଆଣିଚି । ସବୁ ଟୁଙ୍କି ଦେଲାଣି, ଏ ମାସକ ଭିତରେ –"

"ଭାଇଗ ମାଇପ ତା' ଭୁଆଷୁଣିଆ ପାଟଖଣ୍ଡ ପେଟିରୁ କାଢି ଦିନରାତି ଘୋଷାରି ଲାଗିଚି । ଏତେ ସୁନ୍ଦର ଶୁଆପଖିଆ ପାଟ, ପନ୍ଦର କୋଡିଏ ଟଙ୍କାର ଶୁଭ ସାଇତା ପାଟ – 'କାଇଁ ଏମିତି କୁଟେଇ ଦଉଚୁ' କହିଲେ ମୁହଁ ମୋଡିଦେଇ କହୁଚି – ଯା' ମ ପୃଥ୍ୱୀ ଫାଟିଗଲେ ତ' ଗଲା ସମସ୍ତେ ଯିବା; ଆଉ ଥିବି ଯେ ଏ ଖଣ୍ଡ ସାଇତି ରଖିଥିଲେ ପିନ୍ଧିବି ! ଲୁଗା ବୋଲି ତ' ଏଇ ଖଣ୍ଡେ ! କୋଉ ଏବେ ଆଉ ଅଛି କି ? ପିନ୍ଧିଲି ବଲି ଜାଣିବି । ମରିଗଲେ ଗଲା !"

"ଏମିତି ଏମିତି ସମସ୍ତେ...ଆଉ ସେ ବିମଳୀ, ତା' କଥା ଶୁଣିଲେ ହସିବୁ!" ବୋଉ ନିଜେ ଖୁଁ ଖୁଁ କରି ଗୁଡିଏ ହସି ପକେଇଲା । ତା' ମନ ମଧ ଫୁଲଣା ନାଇଁ ! ନ ହେଲେ ପଡିଶାଘରୁ ମାଗଣା ବିନ୍ଧା ବାଇଗଣ ପରି ସେ ହସଗୁଡିକ ଏମିତି ବାରିହୋଇ ନ ଥାନ୍ତେ !

"କୋଉ ବିମଳୀ ?" ମୋ' ସ୍ୱର ମଧ ଗହଳିଆ । ଆଉ ଫୋବି ମାରିବାକୁ ତେଜ ନ ଥାଏ ।"

"ସେ ଇ ଇ ବିମଳୀ କେଉଟୁଣୀ । ସମସ୍ତଙ୍କ ଘରେ ଧାନ କୁଟେ । ନିର୍ମାଖୀଟିଏ ! ତା' ଝିଅଟା ବର୍ଷେହେଲା ମରିଗଲା ଦିନୁ ସେ ତା' କୁଡିଆଖଣ୍ଡ ଭାଙ୍ଗିଦେଲା । ଏବେ ଯାହା ଘରେ ଧାନ କୁଟୁଚି ତା'ରି ଢିଙ୍କିଶାଳେ ଶୋଇଯାଉଚି । ସେ ଶୁଣିଲା ଏମିତି ଗାଁଯାକ ଛାନିଆ ହେଲେଣି; ଯେ ଯାହାର ମନ ଭିତର କଥା କହୁଚନ୍ତି – ପ୍ରଳୟ ହେଇଯିବ । ସେ ଆସି ଦିନେ ପହଞ୍ଚିଲା ମୋ' ପାଖରେ; କହିଲା, 'ମାଉସୀ ମ' ଏ ମାଉସୀ !' 'ଆଲୋ କ'ଣ କହୁନୁ' – ସେ ଆଉ କହୁ ନ ଥାଏ – ମୁଁ ତାକୁ ବଳ ଦେଲାପରି ଶେଷକୁ କହିଲି, 'ଆଲୋ କହୁନୁ କାହିଁକି ! କ'ଣ ଚଉଳ ନାଇଁ ?' – 'ନାଇଁ ମ ମାଉସୀ – ମୁଁ କ'ଣ କହୁଥିଲି କି, ସବୁ ଏଇ ଉଆଁସ ଦିନ ସରିଯିବ ପରା...ମୋର ମନ ହଉଚି ଟିକିଏ ଖାଆନ୍ତି !'...ମୁଁ ହସିଲି, 'ଏଇ କଥା ତ...ଆସୁନୁ ଆମ ଘରେ ପଖାଳପାଣି ଗଣ୍ଡେ ଖାଇବୁ ।'...'ନାଇଁମ ମାଉସୀ...ପାଚିଲା କଖାରୁ ଚୁନି ଚୁନି ହେଇ ପଡିଥାନ୍ତା...ରସୁଣ ଏତେଟାମାନ କୁଳ ପଡିଥାନ୍ତା, କଞ୍ଚାଲଙ୍କାଟାଏ ଭାଙ୍ଗି ଦେଇ ବଡ ଥାଳିଆରେ ଥାଳିଏ କଲରାଶାଗ ଖାଇଦିଅନ୍ତି ।

ସେଇଠୁ ମରିଗଲେ ଯା'ନ୍ତି । ଆଉ ଲୋଭ ନାହିଁ!'

ବୋଉ ପୁଣି ସେମିତି ଖୁଁ ଖୁଁ ହୋଇ ଗୁଡିଏ ହସିଦେଲା । 'ଆରେ ଏଦିନେ କୁଆଡୁ କଲରା ଶାଗ ମିଳିବ ?' ଗଛ ତ' କୋଉକାଳୁ ମଲାଣି । ପାଣି ପଡିବ, ଗଛ ହବ । ସେ ଯାଇଁ ଆଉ ଦୁଇ ତିନି ମାସ କଥା! ବିମଳୀ ମାତ୍ର ବୁଝିବାକୁ ନାହିଁ । ଏକ ଶିଙ୍ଘା । ସବୁବେଳେ ଯା ବାଡି, ତା' ବାଡିରେ ବାୟାଣୀ ପରି ବୁଲୁଚି । କିଏ ତ' କହୁଥିଲା କାଲି ସେ ଭିଁପୁର ପର୍ଯ୍ୟନ୍ତ ଖୋଜି ଯାଇଥିଲା ବୋଲି । ସେ ମୁଠାଏ କଲରା ଶାଗ ଖୋଜି ଲାଗିଚି ।"

ମୋ ମନ ଭିତରଟା ମଉଳିଗଲା । ଇସ୍, ଯେ ଯାହାର ସଜ ହୋଇ ଗଲେଣି । ତାଙ୍କ ଅରମାନ ସବୁ ମେଣ୍ଟେଇ ଲାଗିଚନ୍ତି... । କେଜାଣି ଧର ଯଦି ପୃଥ୍ୱୀ ସତକୁ ସତ ଫାଟିଗଲା...

"ଏଇ ନିଅ, ପାମ୍ପଡ ଏମିତି ହେଲା ।"

ମଡମଡିଆ ପାମ୍ପଡଗୁଡିକୁ ହାତରେ ଛୁଇଁଦେଇ ମୁଁ ପୁଣି ପବନ ଫୁଲେଇଲି; କିନ୍ତୁ ବଳ ଆଉ ଚଢୁ ନ ଥାଏ । ନିଦରୁ ଉଠି ଚଣା ଚେବେଇଲା ପରି ସେ ପାମ୍ପଡ ଖଣ୍ଡ ଆସ୍ତେ ଚେବାଉଥାଏ । ବୋଉ ତା' ଖଣ୍ଡ ଧରି ଗାଲରେ ହାତଦେଇ ବସିଥାଏ । ମୁଁ ଦେଖିଲି ଚାରିଆଡୁ ପବନ ସରିଆସୁଚି । ଆମେ ମଧ ଗାଁବାଲାଙ୍କ ପରି ସାଙ୍କୁଡି ଯାଉଚୁ! ମୁଁ ନିଜକୁ ଅଳ୍ପ ଝାଙ୍କି ଦେଇ ଉଠେଇଲି । "ମା'ର ଗୁଲି ଏ ଗଞ୍ଜିଆ କଥାକୁ । ବାଢିଲୁ ପଖାଳ, ଖିଆପିଆ ସରୁ । କାଲିକି ଦେଖିବା ।"

"ଖିଆପିଆ ଆଉ କ'ଣ ? ଆମେ ତ' ବେଳ ଥାଉ ଥାଉ ଖାଇସାରିଚୁ । ଖାଲି ତୁ ଖାଇବା କଥା ।"

ତା'ପରେ ବୋଉ ଯାଇ ତା' ମୁନ୍ଦୁରା ଖଣ୍ଡ ପାରିଦେଇ ଶୋଇଗଲା ।

ଡିବି ଆଲୁଅରେ ଆମର ତା' ମୁହଁ ଖଣ୍ଡ ଦାଉ ଦାଉ ଦିଶୁଥାଏ । ଚାଲିଗଲେ ମହମହ ବାସୁଥାଏ । ପଖାଳ ଗଣ୍ଡାକ ଗୋଟା ଗୋଟା । ତୋରାଣି ମନ୍ଦାକ ନିର୍ମଳ । ଫଡାଏ ପେଟଶୁଖୁଆକୁ ତେଲ-ଜରଜର କରି ଭାଜି ଦେଇଥାଏ । ତା' ମହକ ସବୁଠୁ ବଳି !

ମୋ ଭିତରକୁ ପୁଣି ପବନ ଚଢି ଆସିଲା । ନଡନଡିଆ ନାଡଗୁଡାକ ଫେର୍ ଟାଣ ହୋଇଗଲେ । ମୁଁ ଦମ୍ଭ ହୋଇ ତା' ମୁହଁକୁ ଚାହିଁହସିଦେଲି । ସେ ହସିଦେଇ ଆଖି ତଳକୁ କରିନେଲା ।

ମୁଁ ସେଇଠୁ ସରଗୋଳି କହିଲି – 'ଆବେ ଯେ ଶଳା, ଯା'ଙ୍କ ବୋଲରେ ଏତେ ବଡ ପୃଥ୍ୱୀ ଫାଟିଯିବ । ...କିଛି କାଇଁ ହୁଅନ୍ତା... ।'

"ହଇମ – ଏଗୁଡାକ ଏମିତି ଚକଟି ହେଉଚନ୍ତି ଖାଲି ।"...

କିଛି ସମୟ ପଖାଳଖିଆର ସାଉଁ ସାଉଁ ଶବ୍ଦ କେବଳ ଶୁଭିଲା – "କାଲି ଆମର ସମସ୍ତେ ଭିଁପୁରକୁ ପଳେଇଲେ କେମିତି ହଁନ୍ତା ?" ଭାତଗୁଣ୍ଡା କଂସାରେ ପକେଇ ଦେଇ ମୁଁ ତାକୁ ଚାହିଁଲି । ସେ କହିଲା, "କିଛି ନାଇଁ ଯେ, ଯାହା ହବ କାଲି ରାତି ସିନା ହବ, ଆମେ ଦିନରେ ଏ ଗାଁ ଛାଡିଗଲେ ତ' ଜଞ୍ଜାଳ ଗଲା । ଆଉ ହାଟକୁ ପୁଣି ବାହୁଡି ଆସନ୍ତେ ।" ଇଏ ଆମର ଭିଁପୁର ଝିଅ

ତ, ବାପଘରକୁ ପଳେଇଲେ ବର୍ତ୍ତିଯିବ ବୋଲି ଭାବୁଚି । ମୁଁ କହିଲି, "ସେଠିକି ଗଲେ ତୋର ସେ ଭେଣ୍ଡିଆ ଭାଇଯାକ କ'ଣ ତୋତେ ଘଣ୍ଟ ଘୋଡେଇ ରଖିବେ ? ପୃଥ୍ୱୀ ବଇଲେ କ'ଣ ଏଇ ଗାଁଟା ଖାଲି ? ପୃଥ୍ୱୀ କହିଲେ ପରା ଏ ନବଖଣ୍ଡ ମେଦିନୀ । ...ଏ ସସାଗରା ପୃଥ୍ୱୀ । ସବୁ ଫାଟି ଦୁଇଫାଳ ହେଇଯିବ ।"

ଅଳ୍ପ ହସି ସେ କହିଲା, "ଫାଟୁ, ମଝିରୁ ଫାଟିଯିବ ତ ! ଆମେ ଆର ଫାଳରେ ରହିଯିବା । ଏ ରଇଜଳେ ଯାଆନ୍ତୁ ଯୁଆଡେ ଯିବେ ।"

ଭାରି ସହଜରେ ସେ କଥାଟାକୁ ବୁଝିଥାଏ । ମତେ ମଧ କଥାଟି ଭାରି ମନକୁ ପାଇଗଲା । କିଛି ନ କହି ତୋରାଣି ଟେକିଲି ।

ରାତିଯାକ ସେଦିନ ଠିଆରେ ପାହିଗଲା । ରାତି ସିନା ପାଇଲା, ନିଦ କିନ୍ତୁ ଆଖି ଉପରେ ମଡେଇ ହେଇ ରହିଥାଏ । ବୋଉର ଖଣ୍ଡିକାଶ ଶୁଣି ଇଏ ପଳେଇଲା ବାସି ଆତତି ପାଇଁ! ମୁଁ ମୁନ୍ଦୁରା ଉପରେ ମୁହଁମାଡି ପଡିଥାଏ, ଗୋଡ ଛେଚୁଥାଏ ଭୂଇଁ ଉପରେ । କେତେ ବେଳ ଗଲା କେଜାଣି । ଆଖିମଳି ଉଠିଲାବେଳକୁ ଜବରଦସ୍ତ ଘଡିଏ ! ସେଇଠି ବସି ତିନି ଖରୋଟି ଅଧାଳିଆ ହାଇ ମାରିଲି । ମନେ ପଡିଗଲା ସେଇ ଭୟ! ଭାରି ଅସୁସ୍ଥ ଲାଗିଲା । ପୁଣି ଶୋଇପଡିଥାନ୍ତି । ନାକରେ ବାଜିଗଲା ତାଜା ଗୁଡାଖୁର ଗନ୍ଧ । ଧଡପଡ ହୋଇ ଉଠି ମୁହଁ ଧୋଇଲି । ସେଇ ପାଖରେ ଓସାରି ବିସାରି ହୋଇ ବସି ବୋଉ ଆଖି ବୁଜି ଗୁଡାଖୁ ଘଷିଲାଗିଥାଏ । ତାକୁ ସେ ବାସ୍ନା ବାସ୍ନା କରି ଦେଇଥାଏ ।

ମୁଁ ଧରିଲି ଆଉ ଟେଳାଏ । ଖରି ବେଢା ବୁଲେଇ ଦେଲାପରେ ସବୁ ଚେଙ୍ଗା ହେଇଗଲା । ହାତରେ ହାଉଲେ ହାଉଲେ ମୁହଁ ଟିକିଏ ବୁଲେଇ ଦେଲା । ଖାଲି ପେଟରେ ଲେଡିଏ ଗୁଡାଖୁପାଣି ଢୋକି ହୋଇଯିବାରୁ ତୋଟି ଗଡଗଡ ହୋଇ ଉଠିଲା ହାକୁଟି । ମୋଟ ଉପରେ ଦେହରୁ ଝାଳ ଜକେଇ ଆସିବାରୁ ସକାଳ ପବନ ସୁହାଇଲା । ମିଜାଜ ଠିକଣା ଧରିଆସିଲା । ବୋଉ ଓଠ ଉପରୁ ଲାଳଟାକୁ ଛିଞ୍ଚାଡି ଦେଇ ମତେ ଚହିଁ କହିଲା, "ଆଜି ଦିନଟା କେମିତି ରୋଗିଣା ଦିଶୁଚି ଦେଖିଲୁ! ବେଳ ଆସି ଦି'ଘଡି ହେଲାଣି । ରାତି ପାହିଲା ପରି ଦିଶୁଚି ?"

ସତକୁ ସତ ଖରାର ତେଜ ନରମ ହୋଇଯାଇଥାଏ । ହଠାତ୍ ଗାଁଦାଣ୍ଡରେ ଧାଁ ଦଉଡ ଶୁଭିଲା ! କିଏ ଗୋଟାଏ ସେଥିରୁ ପାଟିକରି ଦୌଡିଗଲା, "ଲାଗିଗଲା ! ଲାଗିଗଲା ! ଲାଗିଗଲା ?" ବେ, କ'ଣ ଲାଗିଗଲା ? ଭୁସ୍ ଭୁସ୍ ପାଣି ଦି'କଳ ଛାଡିଦେଇ ମୁଁ ଦୌଡିଲି ଦାଣ୍ଡପିଣ୍ଡାକୁ! ବୁକୁ ମୋର ଦାଉଁ ଦାଉଁ ପଡୁଥାଏ । ବୋଧହୁଏ କୁଠି ଗୋଟାଏ ନିଆଁ ଲାଗିଗଲା ନାଁ କ'ଣ ? ଦାଣ୍ଡରେ ଠିଆହୋଇ ଚହିଁଲି! ଦିନବେଳେ ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ଦିଶୁଥାଏ, କହି କୁଆଡେ ନ ଥାନ୍ତି । ଗଲେ ଶଳେ କୁଆଡେ, ଏଇନେ ଧାଉଁଥିଲେ !

ତା'ପରେ ଲକ୍ଷ୍ୟକଲି ସମସ୍ତଙ୍କ ଦୁଆରେ ଲୋକ ଠିଆହୋଇଛନ୍ତି । କେହି ଆଉ ଓହ୍ଲେଇ ଆସୁନାହିଁ ତଳକୁ । ମୁଁ ପାଟିକଲି, "ହେ, କୁଠି ନିଆଁ ଲାଗିଗଲା ?" ଗୋଟାଏ କୂଆ ଭିତରୁ କଥା

ଦୋହରେଇ ହେଲାପରି ଶୁଭିଲା, 'ନିଆ ଲାଗିଗଲା, ଲାଗିଗଲା' । ଯେ ଯାହାର ତାଟି ତରବରରେ ପକେଇ ଭିତରେ ପଶିଗଲେ । ମୁଁ ଦୌଡିଯାଇ ଆମ ପଡିଶାଘର ଲୋକଟାକୁ ଖପ୍‌କିନା ଧରିପକେଇଲି । ସେଇଟା ଶତ୍ରୁଘ୍ନ ।

ତା' ଡେଣାଟା ମୋ' ହାତକୁ ଲାଗିଲା ଗୋଟାଏ ତାଳି ସାରୁ ଭଳି । ସେ ଆଖି ମଟକା ମାରି ମୋତେ ଋହିଁଲା । ତା' ପାଟି ଓହଳି ପଡିଥାଏ । ସେ ରାତିଯାକ ଶୋଇ ନ ଥାଏ । ମାସକଯାକ ବୋଧେ ଶୋଇ ନ ଥାଏ ।

"ବେ ଶତ୍ରୁଘ୍ନା !" କହି ମୁଁ ଥରଟେ ତାକୁ ଖୁଣିଦେଲି ।

ସେ ଡେଣା ଟେକିଲା ଛଡେଇହବାକୁ । ବଳ ପାଇଲା ନାହିଁ । ମୋତେ ପୁଣି ବାଲୁବାଲୁ ଋହିଁଲା !

ଝିଙ୍କି ହେଲା ଘର ଭିତରେ ପଶିବାକୁ । ମୁଁ ବାଁହାତ ଟେକି ଗୋଟାଏ ଜାବଡା ମାରିବାକୁ ଚମକେଇଲି । ତାକୁ ଭିଡିଆଣିଲି ଦାଣ୍ଡକୁ ।

କହିଲି, "ଶଳା, ଏଇଠି ଠିଆହେଇଥା, ନ ହେଲେ ତୋ ଘରେ ନିଆଁ ଲଗେଇ ଦେବି । ମୋ' ବୁକୁ ଯାହା ଧାକୁ-ଧାକୁ ହଉଥାଏ, ମୁଁ ଜାଣେ ! ମାତ୍ର ମତେ ଅକସ୍ମାତ୍ ରେଳଗାଡିଟାଏ ଦୃଶ୍ୟ ହୋଇଗଲା । କରଯୋଡି ଦେଇ ଡାକିଲି, "ମା !"

ରଖି ଯା !"–

ପାଖ ପାଖ ଆଉ ଦୁଇ ଋରିଜଣଙ୍କୁ ଭିଡିଆଣି ଏକାଠି କଲି ! ସମସ୍ତଙ୍କ ଅବସ୍ଥା ସେମତି !

"କିବେ ଶଳେ, ତମେ ସବୁ ମଲଣି ନା ବଞ୍ଚିଚ । କ'ଣ ହେଇଚି ତମକୁ –

ହେବ ! ହେବ ! ହେବ !"

ମୁଁ ଚମକି ପଛକୁ ଋହିଁଲି ।

ଏଡେଟାମାନ ନାଲି ଜରଜର ଆଖି କରି ନିତେଇ ମଉସା ଠିଆ ହେଇଚି । ବିଦମାଳ ପରି ତା' ପଞ୍ଜୁରି ଗଣି ହେଇଯାଉଚି । ସେଇ କ'ଣ ସେମିତି ହସିଲା ?

"ସରିଆସିଲା ପୁଅ ! ଆଉ ବେଳ ନାଇଁ ।" ଗୋଟାଏ କୂଅ ଭିତରୁ କାକର ଶବ୍ଦଗୁଡାଏ ଗୁମୁରିଲା ପରି ଶୁଭିଲା । ଯଥାସମ୍ଭବ ତେଜା ଗଳାରେ କହିଲି, "ନେଫେଡାଟା ସରିଆସିଲା" – ମୁଁ ଖେପିଗଲି ।

ବିନେଇ ମଉସା ସେମିତି ଠିଆ ହୋଇ ହସିଲା – ହେ-ହେ-ହେ ।

ମୋ ରକତ ପାଣି ହେଇଗଲା । ହେମାଳ ଚଢିଗଲା ମଝିଶିରା ହାଡ ଉପରେ । ମଳଦ୍ୱାର ଧାକୁ-ଧାକୁ ହେଲା ।...

ତଥାପି ବୁଲିପଡି ତେଜ କାଢିଲି । ...ଜିଭରେ ଓଠ ଋଟି ପାଟିକଲି, "କ'ଣ ସବୁ ନବରଙ୍ଗ ଲାଗିଚି ? କ'ଣ ସରିଯିବ ? କାହିଁକି ସରିଯିବ ?"

ସମସ୍ତେ ହାତ ଟେକି ପୂର୍ବଦିଗକୁ ଦେଖେଇଲେ । ସୂର୍ଯ୍ୟଟା ମଳିଛିଆ ଦିଶୁଥାଏ ।

"ହେ-ହେ-ହେ...ମାଳିକା କହିଚି, ଆଗ ଦିବସରେ ଅନ୍ଧାର ଘୋଟିଯିବ । ସେଇଠୁ ପୃଥ୍ୱୀ କମ୍ପିବ । ଐଶାନ୍ୟ ଦିଗରୁ କୁହାଟ ଶୁଭିବ ।"

"ଗେପ୍!" ମୋ' ଆଖି ଦହକିଲା ରାଗରେ! ସେ ସମସ୍ତେ ନିତେଇ ମଉସା ସାଙ୍ଗରେ ରାତିଯାକ ଅଫିମ ଶୋଷିଥାନ୍ତି । ଚମକିଲେ ମୋ' ରଡିରେ । ପାଖପଡିଶାରେ ଆସ୍ତେ ଆସ୍ତେ ଘରିଆତକୁ ଛନକା ହେଲାପରି ଚହିଁ ଚହିଁ ବାକି ସମସ୍ତେ ଆସି ପହଞ୍ଚିଲେ । ମୁଁ ପାଟିକରି କହିଲି, "ହଇହେ ଗାଁ ଗୋଟାକଯାକର ମରଦ, ସମସ୍ତଙ୍କୁ ଭୂତ ଲାଗିଲା ପରି କାହିଁକି ହଉଚ ? କୋଉ ପୃଥ୍ୱୀ ତମ ପାଇଁ ଫାଟିଯାଉଛି ।"

"ଫାଟିଯିବ!" "ଫାଟିଯିବ! ଆଜି ରାତିରେ ଫାଟିଯିବ ।"

"ମୁଣ୍ଡିଆ ଉପରୁ ଧୂଆଁ ଓଦ୍‌ଗାର ହେଲାଣି । ଧୂଳି ଉଠିଲାଣି ସେ ଦିଗରେ । ଦିବସରେ ଅନ୍ଧାର ଘୋଟିଲାଣି । ଫାଟିଯିବ, ଆଉ ବେଳ ନାହିଁ, ଯେ ଯାହାର ଆଦରି ଯାଅ! ଘୁଞ୍ଚିଯାଅ! ଏଇଟା ଯେ ରଡୁଚି ସେ ନବଘନିଆ ନୁହେଁ । ତା' ଉପରେ ଗୋଟାଏ ପିଶାଚ ଆସିଚି । ଏଇଟା ଗାଁର ଦକ୍ଷିଣପଟେ । ଏଇଠି ସାଜିବ, ଉତ୍ତରେ ଗାଜିବ । ଆମକୁ ଏକାଠି ସାଜିଲାଣି...ପଳାଅ, ପଳାଅ, ଏଇଟା ପିଶାଚ..."

କିଲିକାଲିଆ ହେଇ ସମସ୍ତେ ଦୌଡିଲେ, ମୁଁ ଖପାଙ୍ଗ୍ କରି ଯା' ତୋଟିକି ଧରିନେଲି, ସେଇଟା ଅଫିମିଆ ନିତେଇ । ମୋର ସେତେବେଳକୁ ଜ୍ଞାନ ହଜିଆସୁଥାଏ । "ହେଇରେ ଶଳା, ତୁଇ ଏମିତି ସମସ୍ତଙ୍କୁ ମତେଇଛୁ, ନାଇଁ, ରହ, ତତେ ମୁଁ ଦଉଚି ।"

ସେ ରଡି ଛାଡିଲା କେଁ...କେଁ । ଭୟରେ ଛାଡିଦେଲି । ସେ ହସିଲା "ହେ, ହେ, ହେ, ତୁ ଯେ ମନ ସେ ହେଇଥା, ମୁଁ ମୋର ସବୁ ସାରିଦେଲିଣି । ଆଉ କାହାକୁ ଡର! ତିନି ସେର ଅଫିମ ଶୋଷି ଦେଲିଣି, ଶଳା ଭୋଗିବୁ ଯଦି ଆ' ମୋ' ସାଙ୍ଗରେ, ତୋଳେ-ଅଧେ ତୋ ଭାଗରେ ପଡିବ ।" ସେ ବି ମୋ' ଆଖି ଆଗରେ ଅପସରିଗଲା ତା' କବାଟ ଉହାଡକୁ । ମୁଁ ଗଣା ଦାଣ୍ଡକୁ ଚହିଁଲି । ଶୂନ୍ୟକୁ ଚହିଁଲି । ମୁଣ୍ଡିଆ ଶିଖକୁ ଚହିଁଲି । ମତେ ମଧ କିଲିକିଲିଆ ରଡିଟେ ଛାଡି ଦଉଡିଯିବାକୁ ମନ ହେଲା ।

ଏତିକିବେଳେ ଦେଖିଲି ଗୋଟିଏ କସରୀ ଗାଈ ସାଇ ପିଣ୍ଡା କଡେ କଡେ ପାଖେଇ ଆସିଲା । ଥାକୁଲି, ବାଙ୍ଗୁରା ଗାଈଟିଏ । ବୁଢୀ ଗାଈଟିଏ । ମତେ ହଠାତ୍ ଲାଗିଲା ସେଇଟା ମୋ' ବୋଉ; ସେମିତି ଗାଈ ରୂପରେ ଆସୁଚି ।

ମୁଁ ଲମ୍ବ ଲମ୍ବ ଖେପା କାଢି ତା' ପାଖେ ପହଞ୍ଚିଗଲି । ସେ ନିଧୋକା ଠିଆହୋଇଗଲା – ତା'ର ବଡ ବଡ ଆଖିରେ ମୋତେ ଚହିଁଲା । ତା' ପଟାବାଳଯାକ ଧଳା । ତା' କମଳପଟା ଲୋତରା । ତା' ମୁଣ୍ଡରେ ଚନ୍ଦ । ଆଗପଟ ବାଁ ଗୋଡରେ ତଳୁ ମୁଠୁଣିଏ ହେବ ଧୋବ-ଫରଫର । ମୁଁ ତାକୁ ଲଇଁପଡି ବେକପାଖରୁ କୁଣ୍ଢେଇ ନେଲି । ତା' ମୁହଁରେ ମୁହଁ ଘଷି ଗାଲ ପାଖରେ ଗୋଟେ ଚୁମା ଦେଲି ।

କହିଲି, "ତୁ ଇ ଜାଣି ଏ ପୃଥ୍ୱୀକୁ ଧରିଚୁ । ଧରିଚୁ କ'ଣ, ତୁ ଇ ନିଜେ ପୃଥ୍ୱୀ । କାଇଁ ତୋର ତ' ଟିକିଏ ବୋଲି ଡର ନାଇଁ, ଆଜି ରାତିରେ ଫାଟିଯିବୁ ବୋଲି ? ଆ ! ଆସିବୁଟି ମୋ' ସାଙ୍ଗରେ । ମୁଁ ତତେ ଦିନଯାକ ସେବା କରିବି । ତୋ' ଗୋଡ ଘଷିଦେବି । ତତେ ଭାତ ଖାଇବାକୁ ଦେବି । ତୋ ଗୁହ ପୋଛିବି, ମୂତ ପୋଛିବି । ତୁ ଖାଲି ଏମିତି ସ୍ଥିର ହୋଇ ମୋ' ପାଖରେ ଠିଆ ହୋଇଥିବୁ । ତୋ ଚାରି ଖୁରା ସ୍ଥିର ହୋଇ ଭୂଇଁ ଉପରେ ପୋତା ହୋଇଥିବ । ଏମିତି ସ୍ଥିର ହେଇ ତୁ ତୋ କାନ ହଲଉଥିବୁ, ଲାଞ୍ଜ ଦୋହଲଉ ଥିବୁ ! ମୁଁ ବଞ୍ଚିଯିବି । ରାତି ପାହିଗଲେ; ମୁଁ ତୋ ପାଦମୂଳେ ପୁଞ୍ଜାଏ ନଡିଆ ବାଡେଇବି । ...ଆ..."

ବୋଲ ମାନିଲା ପରି ସେ ମୋ' ସାଙ୍ଗରେ ଚାଲିଲା । ଦୁଆରମୁହଁରେ ଦୁଇଜଣଯାକ ମୋ' ବାଟ ଚାହିଁ ଠିଆରହିଥାନ୍ତି । ବୋଉ ଦେଖୁ ଦେଖୁ କହିଲା, "କେତେ ସୁନ୍ଦର ଲକ୍ଷଣବନ୍ତ ଗାଈଟିଏ ମ ! ଏଇଟା ଆମ ଗାଁ ଗାଈ ନୁହେଁ ।" ମୁଁ କିଛି ନ କହି ତାକୁ ଅଗଣାକୁ ଓଡେଇ ନେଲି । ଗୋଟାଏ କୁଣକୁ ଠିଆହୋଇ ସେ ଘୁମେଇଲା ପରି ପାକୁଳି କରିବାକୁ ଲାଗିଲା ।

ବୋଉ କହିଲା, "ଗାଈ ପରା ଘରକୁ ଲକ୍ଷ୍ମୀ । ତା'ର ରୁମଗୋଟିକୁ ଦେବତା ଗୋଟିଏ । ସେ ଥିଲେ, ସବୁ କଥାକୁ ଆଡବାଡ ।"

ଗାଁଗୋଟାଯାକ ନିଶୂନ୍ । ଆମରି ଘର କଥା ବୋଧେ ସମସ୍ତେ କାନେଇ ଶୁଣୁଛନ୍ତି । ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ସମସ୍ତେ ଫାଁଗାଳି ଦେଇ ହୁଏତ ପଡିଗଲେଣି । କାନଡେରି ଶୁଣୁଛନ୍ତି, କେତେବେଳେ ଶୂନ୍ୟରୁ ଚଡକ ଶୁଭିବ ।

ପବନଟା ବହଳ ପେଜ ଭଳି ଶୋଷି ହେଉଥାଏ । ହସିଲେ ମୁହଁ ଲେଫେଡେଇ ହେଇ ରହିଯାଉଥାଏ; ପୁଣି ଭିଡିଲେ ଯାଇ ବୁଜି ହେଉଥାଏ । ମୁଁ ଦେଖିଲି ଯେ ମୋ' ଅବସ୍ଥା କାଇଲ୍ ଆଡକୁ ଗଲାଣି । ନିର୍ଘାତ ଗୋଟାଏ କ'ଣ ନ କଲେ ଶଙ୍ଖ ଖଣ୍ଡ ଚିପି ହେଇଯିବ । ହୁଏତ ଗୋଟାଏ ଗଡିଦେଇ ମୁଁ ତେଇଁ ପଡିଥାନ୍ତି । କେଜାଣି କହିଁକି ମୋର ତା' ବଦଳରେ ଛୋଟିଆ ସୁଉକି ଭଳି ଯୋଡିଏ ଠୁଁ ଠୁଁ କାଶ ବାହାରିଗଲା ଏବଂ ମୁଁ ଆସ୍ତେ ସେ ଗାଈଟି ପାଖରେ ଉଠି ଠିଆହେଲି । ଚାହିଁଲି, ନୁଆଣିଆ ତୁଳିଟାକୁ ଚାହିଁଲି, ସେଇ ଯୋଡିଏ ପରିଚିତ ମାଇକିନିଆ ମୁହଁକୁ । ସେମାନେ ହଠାତ୍ ମୋତେ ଭାରି ଶୁଖିଲା ଜଣାଗଲା । ସେଇ ସଞ୍ଜବେଳେ ଯେମିତି ଗୁଡିଏ ପଞ୍ଜୁରି ମୋତେ ଘେରି ଯାଇଥିଲେ, ଏମାନେ ସେଇଭଳି, ଯା'ଙ୍କ ଭିତରେ ମଧ କୋକୁଆ ପଶି ଯାଇଛି ।

ଏଇଭଳି ଭାବି ମୁଁ ସାଙ୍କୁଡି ଯାଉଥାଏ । ଶୁଭିଲା ଗୋଟାଏ ଟହଟହ ପାଚିଲା ହସ । ରୁଅଶେଣି ଲଗାତ୍ ଫଡ୍‌ଫଡ୍ ହେଇ ଥରିଲା । ମୁଁ ହୁଡା ହୁଡା ହେଇ ଲହଡି ମାରିଗଲି । ମୋ' ତଳପାଟି ଓହଳି ପଡିଲା । ମୁଁ ଚାହିଁଲି ତିନୋଟି ଗାଈର ମୁହଁକୁ । ଭାବିଲି, ଏମାନେ କଦାପି ହସି ନଥିବେ । ମୁଁ ଦାଣ୍ଡପିଣ୍ଡାକୁ ବାହାରି ଆସି ଦେଖେ ଯେ କେହି କୁଆଡେ ନାହିଁ । ଖାଲି ସେ ଶୁଖିଲା ଦାଣ୍ଡ ଉପରେ ଟାଟିଲା ନିଆଁ ରଡି ପରି ଖରା ବିଛେଇ ହୋଇ ଶୋଇଥାଏ ।

କିଏ ସେମିତି ହସିଲା ?

ମୁଁ ଭିତରକୁ ପଶିଯାଇ ବୋଉକୁ ପଚାରିଲି –

"କିଏ ସେମିତି ହସିଲା କି ବୋଉ ?"

"ହସିଲା ? କାଇଁ ? – କିଏ ହସିଲା ?"

ମତେ ବାହାରପାଣି ଦେଖେଇଲା । "ତୁ କିଛି ଶୁଣି ନାହୁଁ? – ଆଲୋ ତୁ ଶୁଣିଚୁ ?" ଆମର ସିଏ ବୋଉ ମୁହଁକୁ ଚାହିଁଲା । ଭୂରୁ କୁଞ୍ଚେଇ ମତେ ଅନେଇଲା । କହିଲା, "କାଇଁ କିଛି ତ' ମୁଁ ଶୁଣି ନାହିଁ!"

ଯା ଶଳା, ଏଇଠି ଏମିତି ହେଲେ ବାୟା ହବାକୁ ଆଉ କେତେ ଘଡି ! ମୁଁ ପୁଣି ଦାଣ୍ଡକୁ ବାହାରି ଆସିଲି । ମୋର ମନେପଡିଗଲା ଯେ ଟାଉନ୍‌ରେ କ'ଣ ଗୋଟାଏ କହୁଥିଲା । ଏଥର ସୂର୍ଯ୍ୟଗ୍ରହଣ ପଡିବ ବୋଲି – ଏଇ ଶାଲା ଗ୍ରହଣ ହେବାରୁ ଏଇମିତି ଦିଶୁଚି !

ମୁଁ ଡାକ ଛାଡିଲି, "ବୋଉ ମ, ଆଣିଲୁ, ଆଣିଲୁ ଗୋଟେ ଥାଳିରେ ହଳଦିପାଣି ! ଆଜି ପରା ଗ୍ରହଣ!" –

ବୋଉ ମନେପକେଇଲା ପରି କହିଲା, "ହଇ ତ, ମାସେ ତଳେ ନାହାକ କହୁଥିଲା ଆଜି ଗ୍ରହଣ ବୋଲି । ଅମାସିଆ ଦିନ ସୂର୍ଯ୍ୟଗ୍ରହଣ ବୋଲି ।"

"ହଁ । ଆଣିଲୁ ହଳଦିପାଣି – ଏଇନେ ଦେଖିଦେଇ ମୁଁ କହୁଚି !" ହଳଦି ପାଣିରେ ଚାହିଁଲାବେଳକୁ ଆଉ ଅଛି କି ! ସୂର୍ଯ୍ୟଟା ଦିଶୁଚି ଦିତିଆ ଜହ୍ନପରି । ଗ୍ରାସିଗଲାଣି ବାରପଣ ! ମୁଁ ଖୁସିଟାଏ ହେଇ କହିଲି, "ଦେଖିଲୁ ଏଇ ହେଲା କଥା ! ଏ ଶଳେ କହୁଚନ୍ତି ଦିନଟା ରାତିପରି ହେଇଯିବ ।" –

"ଆରେ ଗ୍ରହଣଛୁଆଁ ହେଇଯିବ, କିଛି ଛୁଁ ନା ।"

ମୁଁ ଦାଣ୍ଡକୁ ଯାଇ ଡାକିଲି । "ଆରେ ସମସ୍ତେ ଆସ, ଗ୍ରହଣ ହେଇଛି, ସୂର୍ଯ୍ୟଗ୍ରହଣଟାକୁ ଶଳେ କାଇଁ ଏମିତି ହଗି ପକଉଚ ।" –

କେହି ଗୋଟିଏ ହେଲେ ଆସିଲେ ନାହଁ !

ମୁଁ ମୁଣ୍ଡିଆକୁ ଚାହିଁଲି । ମୁଣ୍ଡିଆ ଉପରେ ଧୂଆଁଟାଏ ଲାଖିଥାଏ, କ'ଣ ସେଇଟା ? ମେଘ ଖଣ୍ଡେ ବେଳେ ବେଳେ ସେମିତି ଲାଗିଥିବାର ମୁଁ କେତେଥର ଦେଖିଚି ! ଆମର ଭାରି ଉଚ୍ଚ ପାହାଡଟା ତ । ଭାବିଲି ଯେ ଘରେ ବସିରହିଲେ ଅବଶ୍ୟ ବାଉଳା ହୋଇଯିବି ? ଯାହା ହବ ଦେଖିବା, ଆଗ ବୁଲିବି ଏ ଗାଁ ଦାଣ୍ଡରେ ଏ ମୁଣ୍ଡରୁ ସେ ମୁଣ୍ଡ ।

ହାତରେ ଠେଙ୍ଗାଟାଏ ଧରି ମୁଁ ବାହାରିଲି । ମୋ' ପାଦଶବ୍ଦ ମୋତେ ଶୁଭୁ ନଥାଏ । ନିଃଶବ୍ଦରେ ଥୋଇହେଉଥାଏ ଭୂଇଁରେ । ମୁଁ ଉଶ୍ୱାସ ହେଇ ଯାଇଥାଏ । ମନରେ ଭୟ ନାହିଁ । ଦମ୍ଭ ବି ନାହିଁ । ସେ ନିଛାଟିଆ ଗାଁଦାଣ୍ଡରେ ମୁଁ ପ୍ରବାସୀଟିଏ କାହୁଁ ଆସିଛି, କାହିଁ ଯାଉଛି କହିପାରିବି ନାହିଁ ।

ଏଇ ପିଣ୍ଡାର ସେ ଖୁଣ୍ଟିକୁ ଧରି ଗଉରୀ ଠିଆହୋଇଥିଲା ସେ ଦିନ ! ମତେ ଚାହିଁ

ଲାଜେଇଗଲା । ତା' ଶାଶୁଘର ଏବେ ଶିଖରପୁର । ତା'ର ତିନିଟା ପିଲା ।...

"ଏଇ ବିନେଇ କକେଇ ଘର । ଯାଙ୍କରି ଦୁଆରେ ମୋ' କାନକୁ ଧରି ନନା ଝିଙ୍କ ଝିଙ୍କ ଘରକୁ ନେଇଥିଲେ, ଏଇଠି ବସି ଆଲି ଗଡଉଥିଲି ବୋଲି ।"

...ଏ ହେଲା ଚଟଶାଳୀ, ଓଃ ଯମଦ୍ୱାର ପରି ଏ ଖଣ୍ଡ । ଭୟ କହିଲେ ସବୁ ଏଇ ପିଣ୍ଡାରୁ ଜାତ । ସେ ରାହୁଆ ମାଟିବଂଶ ଅବଧାନପୁଅ । ତା'ର ସେ ବସନ୍ତ ମୁହଁ, ବଙ୍କା ନାକ । ଗୋଟାଏ ଫୁଟିଲା ଆଖି । ମୋ' ବାପାଲୋ ! ସେଇ ବୋଧେ ତା' ବେତମାଡରେ ଏ ପୃଥ୍ୱୀକୁ ଫଟଉଚି !

ସେଇଠି କିଛି ସମୟ ଚହିଁ ଠିଆହେଲି । ଛାତି ଦମ୍‌କରି ଚହିଁଥାଏ । ପିଣ୍ଡା ଉପରୁ ଛେଲା ଛାଡିଯାଇଥାଏ । ଜଣାଯାଉଥାଏ ସେଇଟା ଏବେ ଗୁହାଳ ହେଇଚି । ପାଠପଢା ଆଉ ନାହିଁ । – ଯାଃ ଶଳା, କଳଙ୍କ ଗଲା ।

ମୁଁ ଆଗେଇଲି । ଗାଁ ଠାକୁରାଣୀ ଟୁଙ୍ଗିଘର । ସେଇଠି ପିଲାଦିନେ କେତେ ଛୋଟ ଛୋଟ ଅଳି କରିଚି । ନୂଆ ଖଡି ହଜିଗଲା ଦିନ ଅଧିଆ ପଡିଥିଲି । ଘରେ ନନାଠୁ ଛେଚ଼ ଖାଇବା ଭୟରେ ଏଇ ପାଖରେ ବସିରହିଥାଏ ସଞ୍ଜଯାଏ ।

ହାତ ଯୋଡିଲି, "ମା – ତୁ ଥାଉ ଥାଉ, କ'ଣ ଏମିତି ଅଘଟଣ ଘଟିବ !" ଦେଖିଲି ମାସେ ହେବ ସେ ଦୁଆର ଫିଟିନାହିଁ । ପବନରେ ନାନା ଜାତି ପତ୍ର କୁଟା ଉଡି ଭିତରେ ଜମା ହେଇଚି । – ମୋର କ୍ରୋଧ ହେଲା, ଦୁଃଖ ହେଲା । ମୁଁ ସେ ଆଙ୍କୁଡା ଫିଟେଇ କବାଟ ମେଲେଇଲି ? ଭିତରୁ ଅଳିଆ ପତ୍ର ହାତରେ ଆଡେଇ ଦେଲି । ସିନ୍ଦୂର ଫିକା ପଡିଯାଇଥିଲେ ସୁଦ୍ଧା, ଠାକୁରାଣୀ ସେମିତି ଆଗଭଳି ହାତ ମେଲେଇ ବସିଚି । ହାତରେ ତା'ର ଦି'ମୁଠା କାଚ !

ମତେ ଲାଜ ମାଡିଲା, ଠାକୁରାଣୀ ପାଇଁ ଗାଁବାଲାଙ୍କ ପାଇଁ । ମୁଁ ଆସ୍ତେ କବାଟ କିଳିଦେଲି । ଜୁହାର ହେଇଗଲି ଆଗକୁ । ଗାଁ ପୋଖରୀହୁଡା; କେତେଦିନର ହୁଡା – କେତେକଥା ସେଇଠି ନ ହେଇଚି । ସେଇଠି ସେ ଗୋଳିଆ ପାଣିକୁ ଚହିଁ ବସିଲି । ବେଳ ଆସି ମୁଣ୍ଡ ଉପରେ । ଖରା କାଟୁଥାଏ । ଆଲୁଅର ତେଜ ଆସିଯାଇଥାଏ । ବୋଧେ ମୁକ୍ତ ହେଇଗଲା । ଚଣ୍ଡାଳଛୁଆଁରେ ଗାଧେଇବା କଥା । କାନ୍ଧରେ ଗାମୁଛା ଖଣ୍ଡ ଥିଲା – ଭାବିଲି ଗାଧେଇପକେଇବି ।

ଚରିଆଡେ ନିସ୍ତବ୍ଧ । ପାଣି କବକବ ମତେ ଭାରି ନୂଆ ଭଳି ଶୁଭିଲା । ମୁଁ ମୁଣ୍ଡ ବୁଡେଇ ଗାଧେଇଲି । ପୋଛିହୋଇ ଓଦା ପିନ୍ଧି ବାହାରିଲି । ଉଶ୍ୱାସ ଲାଗିଲା – କଥା କହିବାକୁ ଆଉ ମନ ହଉନଥାଏ । କାହାକୁ କିଛି କହିବାକୁ ମନ ନାହିଁ । ସିଧା ଘରେ ଉଠିଲି । ବୋଉ କୂଅମୂଳେ ଲୁଗା ଚିପୁଡି ଓଦା ଦେହରେ ଠିଆହୋଇଥାଏ । ଆମର ସିଏ ମଧ ଗାଧେଇସାରିଥାଏ । ବେଶ୍, ଜଣେ ହେଲେ କିଏ ଧର୍ମ ରଖିବା କଥା ।

ରାତି ଆସିଲା, ଶେଷ ରାତି । ଏ ରାତି ଆଉ ପାହିବ ନାହିଁ । ନ ପାହୁ । କ'ଣ ହେଇଗଲା ସେଇଠୁ । ଗୁଡାଖୁ ଡିବାଟା ନଷ୍ଟ ହେଇଯିବ । ତେଲକାଚଟା ରହିଯିବ । ଟଙ୍କା ଗଣ୍ଡାକ ରହିଯିବ । ଓଃ, ଗଲା ସେଇଠୁ । ଏତେ ମଣିଷ ମରିଯିବେ, ପୃଥ୍ୱୀ ଫାଟିଯିବ, ସେଥିରେ ଏଗୁଡାକୁ କିଏ ପଚ଼ରେ ।

ହ ଅ ଅ, ଫାଟିଲେ ଭଲ, ନ ଫାଟିଲେ ଭଲ । ଯାହା ହବ ସେଥିକୁ ଚିନ୍ତାକରି ଲାଭନାହିଁ ।

ମୁଁ ସେ ବାଙ୍ଗୁରୀ ଥାକୁଲି ଗାଈ ପାଖରେ ଶୋଇଲି । ତା' କୋଡ ଭିତରେ ଜାକିହୋଇ ଶୋଇଗଲି । କେମିତି ଗୋଟାଏ ନିଷ୍ଚିନ୍ତ ନିଦ ମତେ ଲାଗିଗଲା । ଶୋଇବା ଆଗରୁ ମତେ କଥା ଶୁଭୁଥାଏ । ବୋଉ କ'ଣ କହୁଥାଏ, ସିଏ କ'ଣ କହୁଥାଏ । ସକସକ କାନ୍ଦ ମଧ୍ୟ ଶୁଭିଲା ! ଯାଃ, ଯାହା ହବାର ହେଇଯାଉ । ମୁଁ ଆଉ ସେ ଅଭୟ କୋଡରୁ ନ ଉଠେ । ଗୋ-ମାତା ପାକୁଳି ମତେ ଶୁଭୁଥାଏ । ମୁଁ ଶୁଣି ଶୁଣି ଶୋଇଗଲି !

ସେମିତି ନିସ୍ତବ୍ଧ ରାତି କେବେ ପାରି ହେଇ ନଥିଲା । ଆଖି ନ ଫିଟାଇ ମୁଁ ଚାହିଁଥାଏ, ମତେ ଶୁଭିଲା ଗୋଟେ କଅଁଳା ପିଲା କାନ୍ଦୁଚି । ମୁଁ ମଟମଟ ଚାହିଁଲି । ନୂଆ ଦିନର ଖରା ପଡିଥାଏ । ଘରଠେଇ ଘର, ଗାଈଠେଇ ଗାଈ, ବୋଉ ଆଉ ସିଏ ଉଠି ବସିଥାନ୍ତି । କାହାରି ବିଶ୍ୱାସ ହେଉ ନଥାଏ ଯେ ରାତି ପାହିଗଲା ।

ମୁଁ ଡିଆଁ ମାରି ଉଠିଥାନ୍ତି, ଉଠିଲି ନାହିଁ । ରଡି ଛାଡିଥାନ୍ତି, ଛାଡିଲି ନାହିଁ । ଆସ୍ତେ ବାଛୁରୀଟିଏ ଭଳି ଗାଈ ପେଟତଳୁ ଖସି ଆସି ମୋଡିହେଲି । ଖରାକୁ ଚାହିଁ ହସିଲି । ୟା' ମୁହଁକୁ ତା' ମୁହଁକୁ ଚାହିଁ ହସିଲି ।

ଅଧୁଆ ମୁହଁରେ ଦାଣପିଣ୍ଡାକୁ ଆସି ଚାରିଆଡେ ଚାହିଁଲି । ଦାଣ୍ଡରେ ଆସି କଅଁଳିଆ ଖରାରେ ଠିଆହେଲି ।

ଗୋଟିଏ ଗୋଟିଏ ମୋ' ଆଡକୁ ଲାଜ ଲାଜ ହୋଇ ସମସ୍ତେ ଆସିଲେ ।

ନିତେଇ ମଉସା...ଗାଁଯାକର ମଶାଣିମୁହାଁ ମଣିଷଯାକ । ମାସେ ହେଲା ସେମାନେ ମରିଚନ୍ତି । ସବୁ ବଞ୍ଚିବା ତାଙ୍କର ସରିଯାଇଚି । ସେମାନେ ରାତିଅଧରେ ଅନ୍ଧାର ଭିତରକୁ ଗଳିଯିବାକୁ ବସିଥିଲେ । ହେଲା ନାଇଁ, ସକାଳ ପାହିଲା । ତାଙ୍କର ଆଉ ବଞ୍ଚିବାକୁ ରାହା ନାହିଁ । ବଞ୍ଚିବା ସଧ ମେଣ୍ଟିଯାଇଚି । ମରି ପାରି ନାହାନ୍ତି । ମରଣ ଘୁଞ୍ଚିଯାଇଚି । ମାଳିକା ମିଛ । ତାଙ୍କ ଭୟ ମିଛ । ବିଶ୍ୱାସ ମିଛ । ଇସ୍ ଏମିତି ଫାଳ ହେଇଯାଇଛି, ପୃଥ୍ୱୀ ତାଙ୍କ ପାଇଁ ! ସେମାନେ ଶୂନ୍ୟକୁ ଗଳିପଡୁଚନ୍ତି । କାହାରି ମୁହଁରେ ପାଣି ନାଇଁ ।

ନିତେଇ ମଉସା ମୋ' ଆଗରେ ନଥିକିନା ବସିପଡିଲା । ମୁହଁ ଘୋଡେଇ କାନ୍ଦିପକେଇଲା ପିଲାଙ୍କ ପରି । "ମୋର ସବୁ ସମ୍ପତ୍ତି ସରିଗଲାରେ, ମୋ' ଧନ, ମୁଁ ପ୍ରାଣ ହାରିଦେବି ।" ଆଉ ସମସ୍ତେ ମଧ, ସେମିତି କାନ୍ଦ କାନ୍ଦ ।

ସେମାନଙ୍କୁ ଦେଖି ମତେ କାନ୍ଦ ମାଡିଲା । ଆହା, ମୋ' ଗାଁ ଲୋକେ, ତେମେ ମରିପାରିଲ ନାହିଁ । କେତେ ଆଶା କରିଥିଲ ପୃଥ୍ୱୀ ଫାଟିଯିବ ବୋଲି । ଏ ପୃଥ୍ୱୀ ଫାଟିଲା ନାହିଁ – ମରିବ ବୋଲି ସବୁ ତଙ୍କ ଛିଣ୍ଡେଇ ସାରିଥିଲ । ଏବେ କାହା ଆଶ୍ରାରେ ବଞ୍ଚିବ ? ମୁଁ ମାସେ କାଳ ଏଇଠି ଥିଲେ ଏଇଭଳି ମୋ' ଗୁଡାଖୁ ଡିବାଟା ସରିଥାନ୍ତା । ତେଲକାଚ ଖାଲି ହେଇଥାନ୍ତା । ସାତକୋଡି ଟଙ୍କା ଫୁଙ୍କି ଦେଇଥାନ୍ତି ।

ବାଙ୍ଗୁରୀ ଗାଈଟି ଦାଣ୍ଡକୁ ଚାଲିଆସିଲା । ପୋଷ ମାନିଲା ପରି, ବାଛୁରୀ ଦେହରେ ଘଷିହେଲା ପରି ମୋ' ପାଖକୁ ଲାଗି ଠିଆହେଲା ।

ମୁଁ ତା' ବେକକୁ କୁଣ୍ଢେଇ ଟାକୁ ଗେଲ କଲି । ମୋ' ଆଖି ଲୁହରେ ଭର୍ତ୍ତି । କହିଲି – ଏଇ ଚାରିପାଦ ଧର୍ମ । ଏଇ ଚାରିପାଦରେ ପୃଥ୍ୱୀ ଠିଆରହିଚି । ତୁନି ପଡି ସବୁ ସହିବ । ନିଶ୍ଚୟ ଠିଆହେବ । ପହ୍ନେଇବ...କ୍ଷୀର ଦବ । ଏ ପୃଥ୍ୱୀ କାଇଁ ଦି'ଫାଳ ହୁଅନ୍ତା । କହିଲ ? ମୁଁ ମରିଯାଏ ମୋ' ମା । ତୁ କାଇଁ ଦି'ଫାଳ ହେବୁ ଲୋ । ତୁ ମୋ' ବାଙ୍ଗୁରୀ ବୋଉ । ଏମିତି ଗୋଟାଳ ହେଇ ନିଶ୍ଚଳ ଠିଆ ହୋଇଥା, ସମ୍ଭାଳି ଥା' ଏସବୁ କଥା ।

ଆମ ଘରପିଣ୍ଡାରେ ମୋ' ବୋଉ ଆଉ କବାଟ କୁଣରୁ ସେ ସରୁ ମୁହଁଟି କାଢି ଗାଁବାଲାଙ୍କୁ ଚାହିଁଥାନ୍ତି । ପୁଣି ଶୁଭିଲା ପିଲାଟିଏ କୁଆଁ କୁଆଁ ଡାକୁଛି । ସେ ରାତିଅଧରେ କିଏ ଜନ୍ମନେଲା ଏ ମଶାଣିମୁହାଁ ଗାଁରେ ?



# ଏତେ ପାଖରେ ସମୁଦ୍ର

# ବାମମାର୍ଗ

ସେ କାଲି ମୋ ପାଖରେ ସେମିତି ଅବସ୍ଥାରେ ଆସି ପହଞ୍ଚିଲା ସିନା; ନ ହେଲେ ତ ତା' ସାଥିରେ ମୋର କୋଉ କାଳର ପ୍ରସ୍ତପ୍ରସ୍ତ ସଂପର୍କ ।

ଆମେ ଥିଲୁ ପ୍ରକୃତରେ ତିନିଜଣ । କୂଅକୁ ଦେଖିଲେ ଡରୁଥିଲୁ, ପାହାଡ ଦେଖିଲେ ଚଢୁଥିଲୁ, ନଈ ପହଁରୁଥିଲୁ ବନ୍ୟାବେଳେ, ଆମ୍ବ ତୋଳୁଥିଲୁ ଶିଖଡାଳରୁ । ମଣିଷଟାଏ ଆମ ଆଖିକୁ ପାହାଡ ଭଳି ନ ଦିଶିଲେ ଆମେ ତାକୁ ଖାତିର କରୁ ନ ଥିଲୁ – ସେ ଯେ ମନ ସେ ହେଇଥାଉ ।

ଥରେ ଆମେ ସହରଠାରୁ କିଛି ଦୂରରେ ଠିଆ ହୋଇଥିବା ପାହାଡକୁ ଲକ୍ଷ୍ୟ କଲୁ । ମନକୁ ମନ ସ୍ଥିର ହୋଇଗଲା ଯେ ଆମେ ତାକୁ ଚଢିବୁ ଏବଂ ସେଇଦିନ ଚଢିବୁ । ସେତେବେଳକୁ ପ୍ରାୟ ମଧ୍ୟାହ୍ନ ପାଖାପାଖି ସମୟ, ଛୁଟିଦିନ ।

ଦିନ ତିନିଟା ବେଳକୁ ଆମେ ନିକଟେଇ ଗଲା ବେଳକୁ ପାହାଡ କାୟା ବିସ୍ତାର କରୁଥାଏ । ଆମେ ବି ସ୍ପର୍ଦ୍ଧା ବିସ୍ତାର କରୁଥାଉ । ଶେଷରେ ପାହାଡ ମୂଳେ ଠିଆହୋଇ ଆମେ ଉପରକୁ ଚାହିଁଲୁ । ଢିମାଢିମା ବିରାଟ ପଥର, ଏଠି ସେଠି କିଛି କଣ୍ଟାଗଛ, ସବା ଉପରେ ଆସ୍ତେ ଥୋଇଦେଲା ପରି, ଟିପ ବାଜିଲେ ଝଡି ପଡିଲା ପରି ଗୋଟାଏ ବିଶାଳ ପଥର । ସେହି ଥିଲା ଆମ ଲକ୍ଷ୍ୟ । ତା' ଉପରେ ବସି ସୂର୍ଯ୍ୟାସ୍ତ ଦେଖିବୁ ଏବଂ ଓହ୍ଲେଇ ଆସିବୁ । ଏତିକି ବେଳେ ପଥର ଉହାଡରୁ ଦରବୁଢା କାଠୁରିଆଟିଏ ଭାର ଧରି ଓହ୍ଲେଇ ଆସିଲା । ଆମ ଆଖି ମୁହଁକୁ ଚାହିଁ ବୋଧେ ଜାଣିଗଲା ଯେ ଆମେ ପାହାଡ ଚଢିବୁ । ଝାଳରେ ଓଦା ପାପୁଲିରେ ସେ ଆମକୁ ବାରଣ କରି କହିଲା, "ନାଇଁ ଯା'ସ୍, ହେଲଗେ ବାଗ୍ ଅଛେ !" ଗୋଟାଏ ମୁହୂର୍ତ୍ତ ପରେ ବାଣ ଫୁଟିଲା ପରି ହସି ଉଠିଥିଲା ଏଇ ଦିଲ୍ଲୀପ ରାଜ୍ । ତା'ର ଗୋରା ତକ୍ ତକ୍ ଦର୍ପଣ ପରି ମୁହଁ, ହୀରା ପରି ଆଖି ହସରେ ଫାଟି ପଡୁଥିଲା । ମାର୍ବଲ ଦର୍ପଣପରି ମୁହଁ, ହୀରା ପରି ଆଖି ହସରେ ଫାଟି ପଡୁଥିଲା । ମାର୍ବଲ ମୂର୍ତ୍ତି ପରି ତା' ବେକ ବୁକୁ ଉପରେ ଫଗୁ ବୁଣି ହୋଇ ଯାଉଥିଲା । ତା' ହସ ଅଜାଡି ହେଉଥିଲା ପାହାଡର ପ୍ରାନ୍ତରରେ, ଲହଡି ମାରୁଥିଲା ଦିଗ୍‌ବଳୟ ଯାଏଁ, ଆକାଶ ଯାଏଁ । ତା' ହସରେ ଅପମାନିତ ହେଲା ପରି କାଠୁରିଆଟି ଓହ୍ଲେଇ ଯାଇଥିଲା ଚଲା ରାସ୍ତାକୁ । ଆମେ ହୋହଲ୍ଲା କରି ମାତି ଯାଇଥିଲୁ ଏ ପଥରରୁ ସେ ପଥରକୁ, ଉପରକୁ ଆହୁରି ଉପରକୁ । ପାହାଡର ଅଣ୍ଟା ପାଖରେ ବିରାଟ ଗୁମ୍ଫା । ସେଇ ବୋଧେ ବାଘ ଗୁମ୍ଫା । ପାଖ ଆଖ ଫୁର୍‌କୁଟିଆ ଗନ୍ଧ । ଦିଲ୍ଲୀପ୍ ଗୋଡ ଫରକଟେଇ ତା'

ସାମ୍ନାରେ ଠିଆ ହେଲା । କୁହାଟିଲା "ଏ ବାଘ...ହେ ବାଘ" ଏବଂ ଡେଇଁଲା । କେବଳ ବାଘ ନୁହେଁ, ମୃତ୍ୟୁକୁ ହିଁ ଅସ୍ୱୀକାର କରୁଥିଲା ଦିଲ୍ଲୀପ ।

କୋଡିଏ ବର୍ଷ ପରେ ସେ ଅଚାନକ ଆସି ରାତି ଦଶଟାରେ ପହଁଞ୍ଚିଲା । ଖୁବ୍ ଭରସାରେ ନିଶ୍ଚୟ ଆସିଥିଲା । ଖୁବ୍ ଲଢେଇ କରିସାରି ଆସିଥିଲା । କୋଉଠି ହୁଏତ ପାହାଡ ଚଢୁ ଚଢୁ ବାଘ ହାବୁଡରେ ପଡିଯାଇଥିଲା, ଆସିଥିଲା ଆଶ୍ରୟ ନେବାକୁ । ତା' ଆଖିରେ ଭୀଷଣ କ୍ରୋଧ ଡହକୁଥିଲା । କ'ଣ କରିଥିଲା ଦିଲ୍ଲୀପ ? ମୁଁ ତାକୁ ପଚାରି ପାରିନାହିଁ । ସେ ନିଜେ ହୁଏତ କହିଥାନ୍ତା ସେ କଦାପି ସେପରି କିଛି କରିନାହିଁ ଯେଉଁଥିରେ ତା'ର ଦେହ ହାତ ସେମିତି ରକ୍ତରେ ସାଲୁବାଲୁ ଅସନା ହୋଇ ରହିଥିଲା । ତାକୁ ତରବରରେ ଗେଷ୍ଟରୁମ୍ ଭିତରକୁ ପୁରେଇ ଦେଲାବେଳେ ସେ ସବୁ ନିଠେଇ ଦେଖିବାକୁ ଡର ନାହିଁ । ତା' ଦେହର ଜଖମ୍‌ରୁ ହୁଏତ ରକ୍ତ ଝରୁଥାଇ ପାରେ । ରକ୍ତ ଝରିବାହିଁ ମୋ ପାଇଁ ଏକ ବିଷମ ଅବସ୍ଥା । କଞ୍ଚାରକ୍ତ ଦେଖିଦେଲେ ମୋ ଦେହ ଶୀତେଇ ଯାଏ, ଝାଇ ଉଠେ, ଆଖି ଉପରକୁ ଅନ୍ଧାର ମାଡିଆସେ । ଏବେ ଗତ ରାତିର ଘଟଣା ଚଳଚ୍ଚିତ୍ର ପରି ଦିଶିଯାଉଛି । ଏତେ ସମୟ ହେଲା ଗେଷ୍ଟରୁମ୍ ଭିତରେ ଦିଲ୍ଲୀପ କ'ଣ କରୁଛି ? ସେ କ'ଣ ପାଇଖାନା ବାଟେ ମେହେନ୍ତର ରାସ୍ତାରେ ପୁଣି ଅନ୍ଧାର ଭିତରକୁ ଓହ୍ଲାଇ ଗଲା ? ତା' ପଛରେ ହୁଏତ ତା' ଶତ୍ରୁମାନେ ଗୋଡେଇଛନ୍ତି । ଆଉ ପାଞ୍ଚମିନିଟ୍ ଭିତରେ ପହଞ୍ଚିଯିବେ । ସେମାନଙ୍କୁ ଭଡକେଇବାକୁ କ'ଣ ସେ ଏମିତି ଫନ୍ଦିଟାଏ କରିଦେଲା ? ଆଜିକୁ ପ୍ରାୟ ଦଶବର୍ଷ ତଳେ ବଜାରରେ ଥରେ ଦିଲ୍ଲୀପ ସାଙ୍ଗେ ଦେଖା ହୋଇଗଲା । ମୋଟର ସାଇକଲରେ ଉଡିଗଲା ବେଳକୁ ମୋତେ ଦେଖି ବ୍ରେକ୍ ଦାବିଦେଲା । କହିଥିଲା – "ଆରେ ଦୋସ୍ତ ତୋର ସବୁ ଖବର ମୁଁ ରଖିଛି । ତୁ ଏଇନା ମାତବର ଲୋକ । ତୋ ନାଁ ଶୁଣିଲେ ସମସ୍ତେ ଜାଣୁଛନ୍ତି । ମୋ ହାତରେ ଭାଇ ସେତେ ପାଠଶାଠ ହେଲା ନାହିଁ । ମୁଁ କୌଣସି ପ୍ରକାରେ ଚଳିଯାଉଛି । କେବେ ଆସିବି ଦିନେ କଥାଭାଷା ହେବା । ଆଉ ଗୋବିନ୍ଦ କଥାତ ଶୁଣିଥିବୁ । ସେ ସ୍କୁଲ ମାଷ୍ଟର ହୋଇ କୋରାପୁଟ ଭିତରେ କୁଆଡେ ପଡିଚି । ହେଲେ ତାକୁ ମୁଁ ନେଇ ଆସିବି । ସେ ଏଗୁଡାଙ୍କୁ ଖାତିରି କଲା ନାହିଁ ବୋଲି ତାକୁ ଏ କୁକୁର ଶଳେ ଭିଣି ଖାଇ ଗଲେଣି । ବହୁତ କଥା ଅଛି କହିବାକୁ । କେବେ ଦିନେ ଆସିବି ତୋ ଘରକୁ ।" ମୁଁ ତା' ନିଜ ବିଷୟ ପଚାରିବାକୁ ସୁଯୋଗ ପାଇଲି ନାହିଁ । ସେ ଘାଇଁ କିନା ମୋଟର ସାଇକଲ ନେଇ ଚାଲିଗଲା । ତା'ର ଅନେକ ପରିବର୍ତ୍ତନ ହୋଇ ଯାଇଥିଲା । ହେଲେ ସେ ରାଉରାଉ ଆଖି, ଫଣା ଟୋକିଲା ପରି ଠାଣି, ନିର୍ଭୀକ ଠୋକ୍‌ଠୋକ୍ କଥା । ଦିଲ୍ଲୀପ୍ ଚାନ୍ଦ୍ ତେବେ ବି ସିଂହଟାଏ । ଏତ ଦଶବର୍ଷ ତଳର କଥା । ୟା ଭିତରେ କ'ଣ ସବୁ ହୋଇଗଲାଣି ମୁଁ ଜାଣି ନାହିଁ । ମୁଁ ନିଜେ ବାର ଜାଗା ବୁଲି ବୁଲି ଆସି ଏ ସହରରେ ପହଞ୍ଚିଛି । ମୋ ଚାରିଆଡେ ସବୁବେଳେ ସରକାରୀ କାନୁ । ମୁଁ ସରକାରୀ ଗାଡିରେ ଯା ଆସ କରେ । ସରକାରୀ ପଇସାରେ ଦିଲ୍ଲୀ ଗସ୍ତ କରେ ।

ରାତି ଦଶଟାରେ ଦିଲ୍ଲୀପ୍ ଆସି ପହଞ୍ଚିଛି । ତା'ର ସେ ମୋଟର ସାଇକଲ୍ ତ' ଆଣି ନାହିଁ । ସେ ଖୁବ୍ ତରବରରେ ଧାଇଁ ଆସିଛି ।

ତା' ପଛରେ ନିଶ୍ଚୟ ବାଘ !

ମୁଁ ଗେଷ୍ଟରୁମ୍ କବାଟ ସାମ୍ନାରେ ଠିଆହୋଇ କାନେଇଲି । ହାତ ମାରିବାକୁ ଗଲି । ମୋତେ ଖୁବ୍ ଡର ମାଡିଲା ହଠାତ୍ ।... ଦିଲ୍ଲୀପ ବୋଧେ ଘର ମଝିରେ ମୁହଁମାଡି ପଡିଯାଇଛି । ତା' ପେଟ ତଳୁ ବହଳ ରକ୍ତ ଧାର ବୋହି ଯାଉଛି ତଳ ଗଡାଣିକୁ । ତା' ଦରବୁଜା ଆଖି ସ୍ଥିର ହୋଇଯାଇଛି... ।

ସାମ୍ନା ରାସ୍ତାରେ ଜିପ୍‌ଟାଏ ଘାଇଁ ଘାଇଁ ମାଡିଗଲା । ମୋ ତାଳୁରୁ ତଳିପା ଯାଏଁ ହୁଳାଟାଏ ଖସିଗଲା । ମୋ କପାଳ କାନ ମୁଣ୍ଡ ତାତିଗଲା । ବେଲକନି କାନ୍ଥରେ ମୁଁ ହାତ ରଖି ବାହାରକୁ ଅନାଇଲା ବେଳେ ମୋ ଆଙ୍ଗୁଠି ଗୁଡାକ ମୋ ଅଣାୟତ୍ତରେ ଥରୁଥିବାର ମୁଁ ଅନୁଭବ କଲି ।

"ଆଜି ଶୋଇବ ନାଇଁକି ?"

ମୁଁ ଚମକି ପଡିଲି । ହୁଏତ' ଚିତ୍କାର କରି ପକାଇଥାନ୍ତି । ସ୍ତ୍ରୀକୁ ଦେଖି ସମ୍ଭାଳି ଗଲି । ସେ କିନ୍ତୁ ମୋର ଅସ୍ୱାଭାବିକ ଢଙ୍ଗ ଜାଣିଗଲେ ନା କ'ଣ ?

"କିଓ ଏମିତି କାଇଁକି ହଉଚ ?"

ମୁଁ ତରବରରେ ତାଙ୍କୁ ବୈଠକ ଘର ଆଡେ କଢେଇ ନେଇ ଅନୁନୟ ଢଙ୍ଗରେ କହିଲି, "ଆଚ୍ଛା, ମାତ୍ର ଜଣେ ଗେଷ୍ଟକୁ ଚଳେଇ ନେଇ ପାରିବ ? କିଛି ଖାଇବାକୁ ଦେଇ ପାରିବ !"

ସେ କିଛି ନ କହି ମୋ ମୁହଁକୁ ଚାହିଁଲେ । ମୁଁ କେବଳ ଗେଷ୍ଟ ରୁମ୍ ଆଡକୁ ଆଙ୍ଗୁଠି ଦେଖେଇ ଦେଲି ।

ଏମିତି ବହୁବାର ଅଧରାତିଆ ତାଙ୍କୁ ହଇରାଣ ହେବାକୁ ପଡେ । ସେ ଭଦ୍ରମହିଳା କେବେ ଜାଣିବାକୁ ଚାହିଁନାହାନ୍ତି କାହା ପାଇଁ ଆୟୋଜନ ହୁଏ ।

ଏଥର କିନ୍ତୁ ପଚାରିଦେଲେ – "କିଏ ଆସିଛନ୍ତି କି ?"

ମୋ ଭୂରୁ କୁଞ୍ଚେଇ ଗଲା । ମୁଁ ଖୁବ୍ ଅସହଜ, ଅସ୍ୱାଭାବିକ, ସତର୍କ ହୋଇ କହିଲି – "ମୋର ପିଲାଦିନର ସାଙ୍ଗଟାଏ – ଦିଲ୍ଲୀପ୍ ଚନ୍ଦ୍ ।"

ସେ ମୁହୂର୍ତ୍ତେ ତଳକୁ ଚାହିଁ ହୁଏତ ମନେ ପକାଇବାକୁ ଚେଷ୍ଟା କଲେ । ତା'ପରେ ମୁହଁ ଟେକି ପଚାରିଲେ – "ତାଙ୍କର ପରଠା ଚଳିବତ ? ମାଂସ ତରକାରୀ ଢେର୍ ବଳିଛି, ଦେଇଦେବା ! ମୁଁ କିଛି ସାଲାଦ କାଟିଦିଏ !" ସେ ତରବର ହେଇ ଚାଲିଗଲା ବେଳେ ମୁଁ ତାଙ୍କୁ ଚାହିଁ ରହିଲି । ପୁଅଝିଅ ବଡ ହୋଇ ବାହାରକୁ ଚାଲିଗଲେଣି । ସେ ଏଣିକି ଭାରି ଏକୁଟିଆ ପ୍ରାଣୀଟିଏ । ଏ ହେଲେ କ'ଣ ମୁଁ ଶୋଇବି ନା ନାହିଁ ବୋଲି ପଚାରି ଆସିଥାନ୍ତେ !

ମୋ ମୁଣ୍ଡରେ କେବଳ ଗୋଟିଏ ସମସ୍ୟା ସବାର ରହିଥାଏ । ମୁଁ କେବଳ କାନ ଡେରି ରହିଥାଏ । ସାହାସ ହେଉ ନଥାଏ ଗେଷ୍ଟରୁମ୍ ଆଡେ ଯିବାକୁ । ଅଧରାତିର ଅନ୍ଧାର ଅରଣ୍ୟ ପରି ନୀରବ ସେ ଗେଷ୍ଟ ରୁମ୍ । ଏତେ ନୀରବ ରହିଲେ ସେ କାନ୍ଥ କବାଟ ବୋଧେ ଦୁଲ୍‌ଦୁଲ୍ କମ୍ପିବ । ଝଣ୍ ଝାଣ ଖସି ପଡିବ ଭଙ୍ଗା କାଚ । ଛାତରୁ ଖସିପଡିବ ଚଳମାନ ପଙ୍ଖା । ଓଃ, ମୁଁ ଉଠିଲି ସେଇଆଡେ ଧସେଇ ଯିବାକୁ । କିନ୍ତୁ ବାଁକୁ ମୋଡି ଯାଇ ରୋଷେଇ ଘରେ ପହଞ୍ଚିଲି ।

ମୋ ସ୍ତ୍ରୀ କିଛି ସାଲାଦ କାଟି ସାରିଥିଲେ ମୋତେ ନ ଚାହିଁ ଅନ୍ୟମନସ୍କ ଢଙ୍ଗରେ କହିଲେ, "ସେ କ'ଣ ଏଇନା ଖାଇବେ ନା' ଡେରିରେ ?"

ମୋ ପାଖରେ ଉତ୍ତର ନ ଥିଲା । ମୁଁ ତାଙ୍କୁ ହତବତେଇଲା ପରି କହିଲି, "ତୁମେ ବରଂ ଏଇ ଟ୍ରେରେ ସବୁ ଯୋଗାଡି ରଖିଦିଅ; ଆଉ ଯାଇ ଶୋଇପଡ । ମୁଁ ତା' କଥା ସମ୍ଭାଳିବି ।"

ସେ ମୋ ମୁହଁକୁ କିମ୍ଭୂତ ଢଙ୍ଗରେ ଚାହିଁଲେ । ସେ କ'ଣ ଭାବୁଥିଲେ ଯେ ଆମେ ଦୁହେଁ କୌଣସି ଗୁରୁତର ଅପରାଧ କରିବସିବୁ ସାଙ୍ଗହେଇ! ତାଙ୍କ ଆଖିରେ ଅମାପ ଉଦାସୀନତା । ସତେ ବା ସେ ମୋତ ଜମା ଚିହ୍ନି ପାରୁ ନଥିଲେ ।

ମୁଁ କାଠଗଡାରେ କାତର ଆସାମୀପରି ଛେପ ଢୋକି ତଳକୁ ମୁଣ୍ଡ ପୋତି ନେଲି । ମୁଁ କାହିଁକି ସେପରି ଦୁର୍ବଳ ଅନୁଭବ କରୁଥିଲି କହି ପାରିବିନାହିଁ ।

ତଳକୁ ଚାହିଁ ଚାହିଁ ଭାବିଲି, ହୁଏତ ଦିନଯାକ କାମ କରି ସେ ଖୁବ୍ ଥକି ଯାଇଥିଲେ । ତାଙ୍କ ଆଖିକୁ ଘୁମ ମଡେଇ ହେଇ ଆସୁଥିଲା । ସେ ଆଉ କିଛି ସମୟ ପରେ ଶୋଇଯିବେ ।

ସେ କିଛି ନକହି, ସତକୁ ସତ ଚାଲିଗଲେ ଶୋଇବା ଘରକୁ!

ମୁଁ ବୈଠକ ଘର ପଙ୍ଖା ତଳେ ବସି ଶୂନ୍ୟକୁ ଅନେଇଥାଏ । କାନ ଠିଆ କରି ରଖିଥାଏ, କାଳେ ଗେଷ୍ଟରୁମ୍ ଆଡୁ କୌଣସି ଶବ୍ଦ ଆସିବ ।

ଦିଲ୍ଲୀପ ଚନ୍ଦ କଦାପି ଚୋରନୁହେଁ, ଡକେଇତ ନୁହେଁ, ମଣିଷମାରୁ ନୁହେଁ ସେ ନିଶ୍ଚୟ ଟିକିଏ ବଦରାଗୀ ହୁଙ୍କାପିଟା ହୁଣ୍ଡା...କିନ୍ତୁ ସେ ଅପରାଧ କରିବ ନାହିଁ... ସେ ସମୟ କଥା । ଆମେ ପାହାଡ ପରେ ପାହାଡ ଚଢି ଚାଲିଥାଉ । ଦିନେ ମୁଁ ତାକୁ କହିଲି, "ଦେଖ୍ ଦିଲ୍ଲୀପ୍, ଆଉ କାହାକୁ କଥା କୁହାଇ ନଦେବା ତୋର ଗୋଟାଏ ବଦଭ୍ୟାସ । ଅନ୍ୟ ଜଣେ କ'ଣ କହୁଛି ତୁ ଶୁଣିବୁ ନାଇଁ କାହିଁକି ? ଶୁଣି ସାର୍, ତା'ପରେ ତୋ ଇଚ୍ଛା ଯାହା କହିବୁ ।"

ସେ ବେଖାତିର ଢଙ୍ଗରେ ଏଣେ ତେଣେ ଚାହିଁଲା, କିନ୍ତୁ ଚୁପ୍ ରହିଲା ।

ମୁଁ କହିଲି, "ଏ ପାହାଡ ଶିଖରେ ପହଞ୍ଚିବା ଆମ ସମସ୍ତଙ୍କ ଇଚ୍ଛା । କେମିତି କେଉଁବାଟେ ପହଞ୍ଚିବା ସେଥିରେ କେବଳ ବିଭେଦ ରହୁଛି । ମୁଁ କହୁଛି ଯା ପଛପଟେ ଚଢିବା ଖୁବ୍ ସହଜ, କାରଣ ଚଢାଣିଟା ଖୁବ୍ ଆସ୍ତେ ଆସ୍ତେ ଉଠିଚି । ତୁ ଏପଟେ ଚଢିବାକୁ କାଇଁକି ଜିଦ୍ ଧରିଚୁ । ଏ ପାଖଟା ପରା ଦେଖୁଚୁ ଠିଆ କାନ୍ଥ ପରି ।"

ସେ ଖିଙ୍କାରି ଉଠିଥିଲା, "ଗେପ୍ ବେ ମାଇଚିଆ । ପାହାଡ ଚଢିବୁତ ଏମିତି ସୁକୁମାରିଆ ହବୁ କାହିଁକି ? ତୁ ଯା ସେପଟେ ଆସ୍ତେ ଆସ୍ତେ ଉଠୁଥିବୁ । ତୋ ପାଇଁ ସିଡି ପଡିଚି ସହଜରେ ଉଠିବା ପାଇଁ । ମୁଁ ପାହାଡ କହିଲେ ବୁଝେ ଗୋଟାଏ ଜିଅନ୍ତା ବାଘ ଜନ୍ତୁ, ଯେ ମୋତେ ପାଦେ ପାଦେ ଛକିଥିବ । ମୁଁ ତାକୁ ପାଦେପାଦେ ପରାଜିତ କରୁଥିବି । ମୁଁ ଜାଣେ ଥରେ ଗୋଟାଏ ପାହୁଣ୍ଡ ଖସିଗଲେ ସେ ମୋତେ ଛାଡିବ ନାହିଁ । ଏକାଥରେ ଛତୁ କରିଦେବ । ଯଦି ମରଣ ସେମିତି ଖଣ୍ଡାପରି ଆଗରେ ଝୁଲି ନ ରହୁଛି ତେବେ ଲଢିବାର ଅର୍ଥ କ'ଣବେ ନାଲାଏକ ? ମୋର ଆନନ୍ଦ

ମୁକାବିଲାରେ ।" ...ଏମିତି ଗୁଡାଏ ଲାଗିମାଗି କ'ଣ ସବୁ କହିଥିଲା । କିନ୍ତୁ କହିଥିଲା ତା' ବିଶ୍ୱାସର କଥା । ଆମ ଭିତରେ ପ୍ରଭେଦର କଥା । ଏବେ ବି ଦିଲ୍ଲୀପ ଚନ୍ଦ ବୋଧେ କୌଣସି ଶିଖରେ ପହଞ୍ଚି ପାରିନାହିଁ । କେବଳ ପାହାଡ ଚଢୁଛି; ଲଢିବାର ସଉକ୍‌ରେ, ତା' ବାହୁରେ ବିଶ୍ୱାସ ଅଛି, ବୁକୁରେ ବଳ ଅଛି ବୋଲି । ଶାଳା ଏକବୁଝା ଦନ୍ତାକୁ କେମିତି ବୁଝେଇବ ତା' ଓଲାପଣ ।

ମନକୁ ମନ ଦିଲ୍ଲୀପ ସାଙ୍ଗେ ସାମାନ୍ୟ ଭାବଦୋସ୍ତି କରି ହସିଦେଲି । ଏତିକି ବେଳେ ଗେଷ୍ଟ ରୁମ୍‌ରେ ଖୁବ୍ ଆସ୍ତେ 'ଖୁଟ୍' କିନା ଆବାଜ ହେଲା । ମୋତେ ଲାଗିଲା ବଜ୍ର ପଡିଲା ପରି । ମୁଁ ଚମକି ଗଲି ସେ ଦୁଆର ବନ୍ଧ ଯାଏଁ ଆଖି ପିଛୁଳାକେ ।

କାହିଁ କିଛି ନାହିଁ । ସବୁ ଆଗଭଳି ଚୁପ୍‌ଚାପ୍ ।

ମୁଁ ଆସ୍ତେ କବାଟରେ ହାତ ମାରିଲି ।

ସମୟ ଏଗାରଟା ଚାଳିଶ୍ ।

ରାସ୍ତାଘାଟ ସାଇପଡିଶା ଶୁନ୍‌ଶାନ୍ । ମୁଁ ବହୁକାଳୁ ଦିଲ୍ଲୀପକୁ ହୁଏତ ଡରୁଥିଲି । ଭଲ ବି ପାଉଥିଲି ଖୁବ୍‌ବେଶୀ । କିନ୍ତୁ ଜାଣିପାରୁ ନଥିଲି ତା'ର ସେ ସାଲୁବାଲୁ ରକ୍ତକୁ ନେଇ କ'ଣ କରିବି ? ମୁଁ ବେଲକନି ପାଖରେ ଫୁଲ ଗମ୍‌ଲାର ମଙ୍ଗକୁ ଧରି ଠିଆ ହୋଇଥାଏ । ଆସ୍ତେ ମୋ ହାତମୁଠା ଟାଣିଗଲା । ଦାନ୍ତପାଟି କଟମଟ ହେଲା । ମୁଁ ବୁଲିପଡି କବାଟରେ ହାତ ବାଡେଇଦେଲି ।

କବାଟ ଠିଆ ମେଲା ହୋଇଗଲା ।

ସେଇଟା ବୋଧେ ଖୋଲା ଥିଲା ମୂଳରୁ ।

ଚମକି ପଡିଲି ନିଶ୍ଚୟ । କିନ୍ତୁ ମୁହୂର୍ତ୍ତକରେ ସମ୍ଭାଳି ଯାଇ ଭିତରକୁ ପଶିଗଲି ।

ଦିଲ୍ଲୀପ ଖଡଖଡିଆ ପଟାଖଟଟା ଉପରେ ବସିଥିଲା । ମୁଁ ତା' ଦେହହାତକୁ କଟମଟ ଚାହିଁ ରହିଥିବା ସେ ଅନୁଭବ କଲା । ମୋ ମୁହଁକୁ ଚାହିଁ ଅଳ୍ପ ହସି ଦେଲା । ସେଭଳି ପରିସ୍ଥିତିରେ ବି ସେ ହସିପାରୁଥିଲା । ତା' ମୁହଁସାରା ଗୁଡ, ଝାଳ ଧୂଳି । ଆଖି ଚାରିପଟେ କଳାଦାଗ ! କ'ଣ ସବୁ ହୋଇଯାଇଛି ତା' ପୂର୍ବରୁ । ମୋତେ ପରାସ୍ତ କଲା ପରି କହିଲା, "ଖଣ୍ଡେ ପିକା ଦେଇ ପାରିବୁ ?" ମୁଁ ନିରୁପାୟ ହୋଇତାକୁ ଚାହିଁରହିଲି । ସେ ସାମାନ୍ୟ ଥଟ୍ଟାଳିଆ ସ୍ୱରରେ କହିଲା, "ଓ, ବୁଝିଲି ତୋର ଆଉରି ନାବାଳକି କଟି ନାହିଁ ।" ସେ ତା' ପକେଟ ଅଣ୍ଡାଳି ଖଣ୍ଡେ ବିଡି କାଢିଲା । ଦିଆସିଲି କାଠି ଗୋଟାକ ପରେ ଗୋଟାଏ ଫସକି ଯାଉଥାଏ । ସେ ଦାନ୍ତରେ ବିଡିଟାକୁ କାମୁଡି ଧରି କେମିତି ଗୋଟାଏ ନିଶ୍ଚିନ୍ତ ଢଙ୍ଗରେ ଦିଆସିଲି ମାରୁଥାଏ । ଶେଷକୁ ଦିକଳ ଧୂଆଁ ଫୁଙ୍କି ସାରିଲା ପରେ ମୋତେ ପୁଣି ଚାହିଁଲା । ତା' ଆଙ୍ଗୁଠି ସନ୍ଧା ପାପୁଲିଠଉ କହୁଣିଯାଏଁ ରକ୍ତ ବୋହିଶୁଖି ଯାଇଥାଏ । ତା'ର ମସିଆ କୋଠି କୋଠି ଜାମା ଚିରିଯାଇଥାଏ, ବୁକୁ ପାଖରୁ କାନ୍ଧ ପାଖରୁ । ସେଥିରେ ଦି ଚକତା ରକ୍ତ ଲାଗିଥାଏ ଅଣ୍ଟାପାଖକୁ । ତା' ପେଣ୍ଟ ଖଣ୍ଡକ ଲୋଚାକୋଚା, ଅପରିଷ୍କାର । "ଆରେ, ବସୁନୁ କାହିଁକି ? ବସ୍ ତୋ ପାଖରେ ଅନେକ କଥା ଅଛି ।" ...ତା' ତ ନିଶ୍ଚୟ ଅଛି... ମାତ୍ର କି ଧରଣର କଥା ? ମୁଁ କିଛି ନ କହି ବସିଲି । ମୋତେ ସାମାନ୍ୟ ଅସୁସ୍ଥ

ଲାଗୁଥାଏ । ଥଇ ଟେକିଲା ପରି ଲାଗୁଥାଏ । ତା'ପରେ ସେ କ'ଣ କହିବ କ'ଣ ହବ କେଜାଣି । ସେ କିନ୍ତୁ ଶୂନ୍ୟକୁ ଚାହିଁ ଅନ୍ୟମନସ୍କ ବସି ରହିଲା । ମୁଁ ସାମାନ୍ୟ କାଶି ଜଣେ ଦେଲି ମୋର ଉପସ୍ଥିତି ଏବଂ ଉତ୍କଣ୍ଠା । ସେ ଚଟକିନା ବୁଲିପଡି କହିଲା, "ମୁଁ ତୋ ଘରକୁ ପଶିଆସିଛି ବୋଲି ଡରୁଚୁକି ? ଦୁଇଘଣ୍ଟା ଶୋଇଗଲା ପରେ ମତେ ଭଲ ଲାଗିଲାଣି । ମୁଁ ଚାଲିଯିବି । ତା' ପୂର୍ବରୁ ଟିକିଏ ଧୂଆଧୋଇ ହୋଇଯାଏ । ଜାମାଟାରୁ ସହଜରେ ଛାଡିବ ନାହିଁ । ମୁଁ ତାକୁ ଏଇଠି ପକେଇ ଦେଇଯିବି । ଖୋଲା ଦେହରେ ଚାଲିଗଲେ ମୋର କୌଣସି ମାନହାନି ହେବନାହିଁ ?" କି ସର୍ବନାଶ ! ଯେ କୌଣସି ପୋଲିସ କୁକୁର ଏଠିକି ପଶିଆସିବ, ଏ ଜାମାଟାକୁ ଦାନ୍ତରେ ଧରି ଗାରୁଗାରୁ ହବ । ପୋଲିସ ଅଫିସର ସ୍ଥିର ଆଖିରେ ମୋତେ ଚାହିଁବେ । ଦାନ୍ତ ଦାବି ଆଖି ସରୁ କରିନେବେ । ତା'ପରେ...

ସେ ବିଡିଟାକୁ ଗୋଇଠି ମଡେଇ ବାଥ୍‌ରୁମ୍ ଆଡିକି ଆଗେଇଗଲା । ପଛକୁ ଫେରି ଚାହିଁ କହିଲା, "ତୋ ଘରେ ଏଇନା କିଛି ଖାଇବାକୁ ଥିବ ?"

ମୋ ଶୁଖିଲା ଜିଭ ଓଠରୁ ଇତସ୍ତତଃ ହୋଇ ଶବ୍ଦଟିଏ ବାହାରିଲା – "ଅଛି ।"

ସେ ଦାନ୍ତ ନିକୁଟି ହସିଦେଇ ବାଥ୍‌ରୁମ୍ କବାଟ ବନ୍ଦ କରିଦେଲା ।

ଦିଲ୍ଲୀପ ଚାନ୍ଦ କଥାଟାକୁ କେତେ ସହଜରେ ନେଇ ପାରୁଛି ! ସେ କ'ଣ ହତ୍ୟା କରିଛି ଏବଂ ତା' ବାହାଦୁରିଆ ଢଙ୍ଗରେ ତାକୁ ବେଖାତିର୍ କରୁଛି ? କାହାକୁ ହତ୍ୟା କରିଛି ? ଯାହାକୁ ମନ ତାକୁ ! ସେଥିରେ କ'ଣ ଥାଏ ? ସେ ଏକ ଖୁନୀ ଆସାମୀ । ତା' ପଛରେ ପୁଲିସ୍, ତା' ପଛରେ କାନୁନ୍ । ତାକୁ ସେମାନେ ଖୋଜି ଖୋଜି ନିଶ୍ଚୟ ଏଠି ପହଞ୍ଚିବେ । ସରକାରଙ୍କ ବିଶ୍ୱସ୍ତ ଭୃତ୍ୟ ! ଦାମୀ ଉଚ୍ଚପଦସ୍ଥ ଅଫିସର ! ଖବରକାଗଜର ପ୍ରଥମ ପୃଷ୍ଠାରେ ଫଟୋ ବାହାରିଯିବ ! ନିନ୍ଦା ଅପମାନ ଜେଲ ! ମୁଁ ଝାଳେଇ ଗଲି ! "...ହଲୋ, ପୁଲିସ ଷ୍ଟେସନ୍ ? କିଏ କହୁଛନ୍ତି । ...ଆଜ୍ଞା ଅଫିସର ଇନ୍‌ଚାର୍ଯ ଲିଆକତ ଅଲ୍ଲିଙ୍କୁ ଟିକିଏ ଟଞ୍ଚଳ ଡାକନ୍ତୁ । ମୁଁ ଟି.ଆର. ପ୍ରହରାଜ କହୁଛି ।"

"...ସାର୍–ସାର୍...ମୁଁ ଅଲ୍ଲି କହୁଛି ସାର୍... ୟେସ୍... ସାର୍ ! ମୁଁ ଏଇ ସାଙ୍ଗେ ସାଙ୍ଗେ ବାହାରିଲି ସାର୍ !..."

ବାଥ୍‌ରୁମ୍ କବାଟ ହଠାତ୍ ଫିଟିଯିବାରୁ ମୁଁ ପ୍ରାୟ ଡେଇଁ ପଡିଲି ।

ସେ ମୋତେ ସେଇଠୁ ସ୍ଥିର ଆଖିରେ ଚାହିଁ କହିଲା, "କିରେ ଏମିତି ଚମକୁଚୁ କାହିଁକି ? ସେତେବେଳୁ ଏମତି ଠିଆ ରହିଚୁ କାହିଁକି ?"

ଖଟ ଆଡକୁ ଯାଉଯାଉ ଥଟ୍ଟା କଲାପରି କହିଲା, "ତୁ କ'ଣ ପୁଲିସ୍‌କୁ ଏ ଯାଏଁ ଡାକିବୁ ବୋଲି ଚିନ୍ତା କରୁଚୁ କି ?"

ମୁଁ କେମିତି ଚମକି ପଡି ସେଇଠୁ ବାହାରି ଆସିଲି ରୋଷଘର ଯାଏଁ ସେ ବୋଧହୁଏ ଦେଖି ପାରିଲା ନାହିଁ । ସତେତ ମୁଁ ପୁଲିସ୍‌କୁ ଡାକି ଦେଇଥିଲେ ସେମାନେ ପହଞ୍ଚି ଯାଇଥାନ୍ତେ ।

ମୁଁ ତାଙ୍କୁ କ'ଣ କହିଥାନ୍ତି ?

କହିଥାନ୍ତି ଦିଲ୍ଲୀପ ମୋ ବନ୍ଧୁ ? ...କହିଥାନ୍ତି ସେ ଖୁନ୍ କରିଛି ?

ମୁଁ କେମିତି ଜାଣିଲି ବୋଲି ସେମାନେ ପଚାରିଥାନ୍ତେ ? ଦିଲ୍ଲୀପ କ'ଣ କହିଥାନ୍ତା ପୁଲିସକୁ – ମୋତେ ?

ମୁଁ ଠିଆ ରହିଗଲି କିଛି ସମୟ । ଯାହା ହେଉ ପଛେ ଦିଲ୍ଲୀପ ଯଥାଶୀଘ୍ର ଚାଲିଯିବା ଉଚିତ୍ ।

ମୁଁ ଘଣ୍ଟାକୁ ଅନେଇଲି । ରାତି ଗୋଟାଏ ବାଜିବାକୁ ସାତ ମିନିଟ୍ !

ମୋ ସ୍ତ୍ରୀ ସଜାଡି ଦେଇଥିବା ଟ୍ରେଟିକୁ ଟେକିନେଇ ଦିଲ୍ଲୀପ ସାମ୍ନାରେ ଥୋଇଦେଲି । ସେ ବିନା ଦ୍ୱିଧାରେ ବିନା ବାକ୍ୟବ୍ୟୟରେ ତଳକୁ ମୁହଁ ପୋତି ହାଉଁହାଉଁ ଖାଇ ଦେଇଗଲା । ତାକୁ ବୋଧେ ଖୁବ୍ ଭୋକ କରୁଥିଲା । ହୁଏତ ଦିନସାରା ଖାଇ ନ ଥିଲା କିଛି ।

ଆମ ଘରେ ଖୁବ୍ ଚମତ୍କାର ରନ୍ଧା ହୁଏ । ତା' ବାସ୍ନା ଖୁବ୍ ସ୍ୱତନ୍ତ୍ର ।

ମୁଁ କିଛି ଦୂରରେ ଥାଇ ବାରିଦେଲି । ମୋ ପାଟିକୁ ପାଣି ଚାଲି ଆସିଲା ।

ଦିଲ୍ଲୀପ ଚନ୍ଦ ମାଂସକୁ ଖୁବ୍ ଲାଳାୟିତ ହୋଇ ଖାଉଥାଏ । ହାଡ ଚେକୁଟୁ ଥାଏ । ମେଲା ଦେହରେ ସେ ମୋତେ ହଠାତ୍ ଖୁବ୍ ଛୋଟ ଏବଂ ସାଧାରଣ ଦେଖାଗଲା । ମୁଁ ମୁହଁକୁ ନ ଚାହିଁ, ତା'ର ସେ ମଧ୍ୟମ ଧରଣର ସାବ୍‌ନା ଦେହ ଖଣ୍ଡକୁ ଚାହିଁଥାଏ । ମୁଁ ଚୌକିରେ ଦୃଢ ଭାବରେ ବସି କହିଲି, "କ'ଣ ହେଇଚି ଦିଲ୍ଲୀପ, ମୁଁ ଶୁଣିବାକୁ ଚାହେଁ ।" ସେ ନଳି ହାଡଟାକୁ ଅଧା ପାଟିରେ ପୁରେଇ ମୋତେ ଚାହିଁ ମୁଚ୍‌କି ମାରିଲା । ତା' ଆଖି କୁଞ୍ଚେଇ ଗଲା କିଞ୍ଚିତ୍ ।

ମୁଁ କିନ୍ତୁ ଖୁବ୍ ଦୃଢ ଥିଲି ଭିତରେ ଏବଂ ବାହାରେ । ସେ ହାଡଟାକୁ ଶୋଷି ସାରିଲା ପରେ କହିଲା, "ଟିକିଏ ସବୁର୍ କରି ପାରୁନୁ । ଖାଇବାକୁ ଦେଇଚୁ ପରା । ମୁଁ ସାରିଦିଏ, କହିବି ।"

ସେତେବେଳେ ସମୟ ଗୋଟାଏ କୋଡିଏ । ବାହାରେ ଗହନ ଗଭୀର ରାତ୍ରି । ସାରା ପୃଥିବୀରେ କେବଳ ସ୍ୱପ୍ନ ବୋଝେଇ ହେଇ ଚାଲିଛି ନୀରବରେ । ସମସ୍ତେ ସ୍ୱପ୍ନ ରାଜ୍ୟରେ ଟଳମଳ ।

ଦିଲ୍ଲୀପ ବାଥ୍ ରୁମ୍‌ରେ ଓଦା ଜାମାଟାକୁ ଚିପୁଡିବାର ଶବ୍ଦ ଶୁଣିଲି । ସେ ଆସି ମୋ ସାମ୍ନାରେ ଠିଆ ହେଲା । କହିଲା, "ଦେଖ ତାପସ୍ ! ମୋତେ ଆଜି ଆଉ ବେଳ ନାହିଁ । ଆଉ କେବେ ଆସି ସବୁ କହିବି । ଦୁଇଟାରୁ ତିନିଟା ଭିତରେ ଆଉ ଜଣେ ମୋତେ ଅପେକ୍ଷା କରିଥିବ ! ମୁଁ ଯାଏ ! ଆଉ ଏ ଜାମାଟା ତୋ ପାଖରେ ପକେଇ ଯିବା ମୋ ଯୋଜନାରେ ନାହିଁ । ମୁଁ ଛାଡିଯିବାର ପ୍ରସ୍ତାବ ଦେଲାବେଳେ ତୁ ଆଦୌ ପ୍ରତିବାଦ କଲୁ ନାହିଁ । ବୋଧହୁଏ ମୋ ଖାତିର୍‌ରେ କିମ୍ବା ହୁଏତ ତୁ ଜାଣି ପାରିଲୁ ନାହିଁ ସେଥିରେ ବିପଦ କେତେ । ତୋତେ ବିପଦରେ ପକେଇବା ମୋର ଇଚ୍ଛା ନୁହେଁ ।"

"କି ପ୍ରକାର ବିପଦ, ତୁ ଖାଲି କହୁନାହୁଁ କାହିଁକି ? ଯଦି ବିପଦ ଥିଲା ତୁ ମୋ ପାଖକୁ କାହିଁକି ଆସୁଥିଲୁ ?"

"ୟାଠୁ ବଳି ଆଉ ନିରାପଦ ଜାଗା ମୋ ପାଇଁ କାହିଁ ? କେହି କ'ଣ ଭାବି ପାରିବ ଯେ ମୁଁ

ପ୍ରହରାଜ ସାହେବଙ୍କ ଘରେ ଥାଇପାରେ!"

"ତୁ କ'ଣ ଏଠି ଆସି ଲୁଚିଥିଲୁ?"

"ଧରାଯାଉ ଲୁଚିଥିଲି!"

ତା'ପରେ ପ୍ରଶ୍ନ ମୋ ଜିଭ ଅଗରେ ଇତସ୍ତତଃ ହେଲା। ମୁଁ ପଚାରି ନାପାରି ଛଟପଟ ହେଲି।

"ହଁ, ଧର ତୁ ଯାହା ପଚାରି ପାରୁନାହୁଁ ମୁଁ ଯଦି ସେଇଆ କରିଥାଏ।"

"ମାନେ"...

"ମାନେ ଖୁନ୍ କରିଥାଏ!"

ମୁଁ ଧଡାସ୍ କିନା ଠିଆ ହୋଇ ପଡିଲି। "ଅସମ୍ଭବ!!" –

ସେ ମୋତେ ଆସ୍ତେ ବସେଇ ଦେଇ କହିଲା, "ବରଂ ଖୁବ୍ ଅସମ୍ଭବ। ମଣିଷଟାକୁ ଖୁନ୍ କରିବାଠୁ ବଳି ଆଉ ସହଜ କାର୍ଯ୍ୟ କିଛି ନାହିଁ।"

ମୁଁ ଖୁବ୍ କଷ୍ଟରେ ସମ୍ଭାଳି ରହିଲି। ଜାଣି ପାରିଲି ନାହିଁ ତା'ପରେ କ'ଣ କହିବି।

ସେ କାନ୍ଥକୁ ସ୍ଥିର ଆଖିରେ ଚାହିଁ ରହି କହିଲା, "ତୁ ସେ କଥା ବୁଝି ପାରିବୁ ନାହିଁ। କାରଣ ତୁ ସେ ଦିଗଟାକୁ ଜମା ଦେଖିନାହୁଁ। ସେ ସବୁ କହିବାକୁ ବେଳ ନାହିଁ। ତାପସ୍ ତୋର ବି ସହିବାକୁ ବଳ ନାହିଁ। ମୁଁ ଯାଏଁ – ତୁ ଜାଣୁ ମୁଁ ତୋ ଭଳି ସହଜ ରାସ୍ତାରେ ପାହାଡ ଚଢେ ନାହିଁ।"

"ତା' ଠିକ୍, ମୁଁ ବି ଖୁନ୍ କରିପାରେ ନାହିଁ।"

"କିନ୍ତୁ ପଡିଶା ଘରେ ଖୁନ୍ ହେଲେ ନିର୍ବିକାର ସହିଯାଇ ପାରୁ!"

"ତତେ କିଏ କହିଲା ମୁଁ ସହିଯାଏ ବୋଲି ?"

"ଯଥେଷ୍ଟ ପ୍ରମାଣ ରହିଛି।"

"ଭୁଲ୍ କଥା! ତୁ ଜାଣୁ, ମୁଁ ପୁଲିସକୁ ଯେ କୌଣସି ମୁହୂର୍ତ୍ତରେ ଡକାଇ ଆଣିପାରେ।"

"ତା' ଜାଣେ। କିନ୍ତୁ କାହିଁକି ଡାକି ପାରୁନାହୁଁ ତା' ବି ଜାଣେ! ଶୁଣ୍ ତାପସ୍। ତୋ ବିଚାରରେ ପ୍ରତ୍ୟେକ ଅପରାଧୀ ଦଣ୍ଡ ପାଇବା ଉଚିତ୍। ତୁ ଶୁଣି ହୁଏତ ଖୁସି ହେବୁ ଯେ, ମୁଁ ବି ଅବିକଳ ସେଇଆ ଚାହେଁ। ଅସୁବିଧାଟା କୋଉଠି ଜାଣିଚୁ ? ଏଇ ଅପରାଧୀ ଚିହ୍ନିବାରେ ଆଉ ଦଣ୍ଡ ଦେବାପାଇଁ ତୁମମାନଙ୍କର ସହଜିଆ ଢଙ୍ଗରେ। ଏଇ ଦେଖ୍, ତୁ ଯଦି ଜାଣିଲୁ ମୁଁ ଖୁନୀ ବୋଲି, ମୋତେ ଏଇଠି ତୁ ନିଜେ ଖୁନ୍ କରିଦେଇ ପାରିବୁ ? ନା, ତା' କରିବାକୁ ବୁକୁରେ ବଳ ନାଇଁ। ପୋଲିସ୍ ଆସିବ। ବାନ୍ଧି ନେବ। ଓକିଲ ଜଜ୍ ମିଶି ଗୋଟାଏ ପ୍ରହସନ କରିବେ। ତା'ପରେ ମାନେ ବର୍ଷେ, ଦୁଇ ବର୍ଷ, ପାଞ୍ଚ ବର୍ଷ ପରେ, ଗୋଟାଏ ଦିନ ପାହାନ୍ତିଆରୁ ଲୋକଟାକୁ ପଛଆଡେ ହାତ ବାନ୍ଧି ବେକରେ ଦଉଡି ଲଗେଇ ମାରିବ। ଏଥିରେ ତୋର ସନ୍ତୋଷ ଯେ ଯାହା ହେଉ ଅପରାଧୀ ଦଣ୍ଡ ପାଇଗଲା। ତୁ ତୋର କର୍ତ୍ତବ୍ୟ କରିଦେଲୁ। ବାଃ,ରେ ବାହାଦୁର।... ହଉ ଛାଡ, ତୁ କି ଚିହ୍ନିବୁ ଅପରାଧୀ। ତୁ କି ଦେବୁ ଦଣ୍ଡ!... ମୁଁ ଯାଏଁ। ମୋର ବେଳ ନାହିଁ।"

ସେ ଓଦା ଜାମାଟାକୁ ଫିଂଟେଇ ଅଣ୍ଟାରେ ବାନ୍ଧିଲା । ଖାଲି ପାଦ, ଖାଲି ଦେହ, ନୁଖୁରା ମୁଣ୍ଡ, ଅତି ସାଧାରଣ ମଣିଷଟା, ଅପରାଧୀଟା – ତଥାପି ଦିଲ୍ଲୀପ ରାନ୍ଦ ଗୋଟାଏ ଠାଣି, ସେ ଗୋଟାଏ ରାହାଣି, ତାକୁ ଅସ୍ୱୀକାର କରିବା କଷ୍ଟ ।

ସେ ନିଃଶବ୍ଦରେ, ଦାଣ୍ଡ କବାଟ ଖୋଲି ପଦାକୁ ବାହାରିଗଲା । ଅନ୍ଧାରରେ କୁଆଡେ ମିଳେଇ ଗଲା । ସମୟ ରାତି ଦୁଇଟା କୋଡିଏ ।

ମୁଁ ହଠାତ୍ ଖୁବ୍ କ୍ଳାନ୍ତ ବୋଧ କଲି । ମୋର ଦେହମୁଣ୍ଡରୁ ଜିଅ ଛାଡିଗଲା । ମୁଁ ଟଳମଳ ଆସି ସୋଫା ଉପରେ ଆଖି ବୁଜି କୁଢେଇ ହୋଇ ପଡିଲି । ଟିକିଏ ଶୋଇ ପାରିଥିଲେ ହୁଏତ ଭଲ ଲାଗିଥାନ୍ତା । ନିଦ ହେଲା ନାହିଁ! ଅସ୍ୱସ୍ତି ବଢିଲା, କ୍ଳାନ୍ତି ବଢିଲା । ମୁଁ ଖୁବ୍ ଚିଡିଗଲି । ମୋ ଦେହ ନିଆଁ ଧାସରେ ତାତିଲା ପରି ଝାଳେଇଗଲା । ଠିଆହୋଇ ପଙ୍ଖା ସିଚ୍ ଟିପିବା ପାଇଁ ମଧ୍ୟ ମୋର ପ୍ରବୃତ୍ତି ହେଲାନାହିଁ । ମୁଁ ସେମିତି ପଡି ରହିଲି ନିଶ୍ଚେଷ୍ଟ ଭାବେ ।

ମୁଁ ଚମକି ଉଠିଲି । ଦାଣ୍ଡଆଡୁ ପାଟିତୁଣ୍ଡ ଚିତ୍କାର ଶୁଭୁଥିଲା । ମୋର କଲିଜା ଆସି ପଞ୍ଜରାରେ ପିଟି ହେଉଥିଲା । ଗୋଡ ପକ୍ଷାଘେଣା ପରି ଫଡ୍‌ଫଡ୍ ଥରୁଥିଲା । ମୁଁ କୌଣସି ମତେ ବାଲକନି ଯାଏଁ ପହଞ୍ଚିଗଲି ।

"ଖୁନ୍, ଖୁନ୍ ହୋଇଗଲା, ପୁଲିସ୍ ଡାକ । ପୁଲିସ୍ । ପୁଲିସ୍ ।"

"ଆହେ କାହାର ଖୁନ୍ ହୋଇଗଲା ?" ମୁଁ ସାମାନ୍ୟ ବିରକ୍ତିରେ ତଳକୁ ରାହିଁ ପଚାରି ଦେଲି ।

ଅନ୍ଧାରରେ ଧାଉଁଥିବା ପାଦଶବ୍ଦ ଦୁମ୍‌ଦୁମ୍ ପାରି ହେଇଗଲେ – ସେ ଛକ ପାଖରେ ପାଟି ତୁଣ୍ଡ । ସେଇଠି ହତ୍ୟା । ସେଇଠି ଅପରାଧ । ମୋର ପ୍ରବଳ ଉତ୍କଣ୍ଠା ହେଲା ଯାଇ ଦେଖିବାକୁ । ପୁଣି ଭୟ ହେଲା । ଇଜ୍ଜତ୍, ସମ୍ମାନ, ଦାମୀ ଅଫିସର୍!...ମୁଁ ଘଣ୍ଟାକୁ ରାହିଁଲି ।

ସମୟ ତିନିଟା ।

ଝୁଳାଟାଏ ଖସିଗଲା ତାଳୁରୁ ତଳିପା ଯାଏଁ । କିଛି ସମୟ ପୂର୍ବରୁ ଦିଲ୍ଲୀପ ରାନ୍ଦ କହୁଥିଲା, "ଦୁଇଟାରୁ ତିନିଟା ଭିତରେ ଆଉ ଜଣେ ଅପେକ୍ଷା କରିଥିବ!" ମାଇ ଗଡ୍! ସେ କ'ଣ ଏହାରି କଥା କହୁଥିଲା ? ..."ମଣିଷଟାକୁ ହତ୍ୟା କରିବାଠୁ ବଳି ଆଉ ସହଜ କିଛି ନାହିଁ ।" ...କି ଭୟଙ୍କର!!

ମୁଁ ଟଳିଟଳି ପୁଣି ସୋଫା ଉପରକୁ ଫେରି ଆସିଲି ।

ବାଘ ଆସି ରାଲିଯାଇଛି । ପାହୁଲ ଚିହ୍ନ ପଡିଛି ଘରସାରା । ହିଂସ୍ର, ଜାନୁଆର୍ । ତାକୁ ଏଣିକି ଦେଖିଲା ମାତ୍ରେ ଗୁଳି କରାଯାଇ ପାରେ । ଅଥବା ପୁଲିସକୁ କୁହାଯାଇପାରେ ଗୁଳି ମାରିବାକୁ! – ଇଡିଅଟ!

ମୁଁ ଘୋର ଅସୁସ୍ଥ ବୋଧ କଲି । ଗେଷ୍ଟ ରୁମ୍‌ରେ ପହଞ୍ଚି, ଅଇଁଠା ଟ୍ରେଟାକୁ ଉଠେଇବାକୁ ହାତ ବଢେଇଲି । ଘୃଣ୍ଣ ଆସିଲି । ବାଥ୍‌ରୁମ୍‌ରେ ଅନେକ ସମୟ ପାଣି ଖୋଲି ଗୋଡରେ ଚଟାଣରୁ ଅଦୃଶ୍ୟ ଦାଗକୁ ଲିଭେଇଲି । ଅସଂଖ୍ୟ ଥର ଗେଷ୍ଟ ରୁମ୍‌ରୁ ଡ୍ରଇଂ ରୁମ୍‌କୁ ଗଲି ଏବଂ ଆସିଲି । ଖୁବ୍

ପାଟି କରି ରାସ୍ତାରୁ କିଏ କହିଲା, "ହେ ତାପସ୍ ବାବୁ, ଆପଣଙ୍କ ଗେଟ୍‌ଟା ମେଲା ହେଇଚି । ବଗିଚାରେ ବୁଲା ଗୋରୁ ପଶି ସବୁ ଖାଇଗଲେଣି । ହୁସ୍, ହାସ୍... ଯାଃ... । ମୁଁ ଫେରିଆସେ ଅନେକ କଥା କହିବି ।"

ମୁଁ ବାଲ୍‌କନି ପାଖକୁ ଆସି ଦେଖିଲି ଯେ ରାତି ପାହିଗଲାଣି । ଜଗଦୀଶ୍ ବାବୁ ହାଫ୍‌ପେଣ୍ଟ ପିନ୍ଧି ବୁଲି ବାହାରିଲେଣି । ସେ ମୋ ବାଗିରୁ ଗୋରୁ ତଡି ପାରିଲେ ନାହିଁ । ସେ କାର୍ଯ୍ୟ ମାଳି ଆସିବା ଯାଏଁ ରହିବ ନା ମୁଁ କରିବି ! ଠିଆ ହେଇ ଭାବିଲି । ମୋତେ ଦେଖି ଜଗଦୀଶ ବାବୁ, ଗାଇତଡା ଦାୟିତ୍ୱ ମୋତେ ଦେଇ ଚାଲିଗଲେ ।

ମୋତେ କିନ୍ତୁ ଅନେକ ଭଲ ଲାଗୁଥିଲା । ଆଲୁଅ ହେଇ ଯାଇଥିଲା ଚାରିଆଡ । ...ଆଗ ଛକରେ ପୁଲିସ ଗାଡି ଦିଶୁଥାଏ । ମୋର ଆଦୌ ଆଗ୍ରହ ନ ଥାଏ ଯିବାପାଇଁ । ମୁଁ ସେମିତି ଠିଆ ହୋଇଥାଏ ଉତୁରି ଆସୁଥିବା ଆଲୁଅକୁ ଚାହିଁ ଚାହିଁ ।

ପଛରୁ ଶୁଭିଲା "ଆସ ଚା ଖାଇବ ?"

ମୁଁ ଭୁସ୍‌କିନା ବୁଲି ପଡିଲି । ରାଗିଗଲି । "ଏମିତି ଗୋଟାଏ କ'ଣ ଡାକୁଛ ?"

ମୋ ସ୍ତ୍ରୀ ମୋତେ ଡରିଲା ଡରିଲା ଆଖିରେ ଚାହିଁଲେ ।

ମୁଁ ହୁଏତ ରାତିସାରା ନ ଶୋଇ ନିଶା ଖାଇଚି । ନାନା ଅପକର୍ମ କରିଛି । ସେ ଆସ୍ତେ ଡ୍ରଇଂ ରୁମ୍‌କୁ ଚାଲିଗଲେ । ମୁଁ ଯାଇ ଗୁମ୍‌ମାରି ବସିଲି । ଆମେ ନୀରବରେ ଚା ପିଇଲୁ । ମୋର ସମସ୍ତ ସ୍ନାୟୁ ତଥାପି ଟାଣି ହୋଇ ରହିଥାଏ ।

"ହୋ ତାପସ୍ ବାବୁ!" – ଜଗଦୀଶ ପାଣ୍ଡିଆଙ୍କ ସ୍ୱର । ମୋ ହାତରୁ ଚା କପ୍‌ଟା ଖସି ପଡିଥାନ୍ତା । ମୁଁ ତାଙ୍କୁ ପାଛୋଟି ଆଣିବାକୁ ଯାଉଁଯାଉଁ ସେ ପଶି ଆସିଥିଲେ ।

"ଶୁଣିଲେଣିତ, କାଲି ରାତିରେ ଯାହା ସବୁ ବିଚିତ୍ର କାଣ୍ଡ ଘଟିଗଲା ।" ମୁଁ ବୋଧେ ସେଇଠି ପଥର ପାଲଟି ଯାଇଥାନ୍ତି, ବାଲିବସ୍ତା ପରି ଭାରି ପାଦ ଘୋଷାରିଘୋଷାରି ମୁଁ ତାଙ୍କ ପଛେପଛେ ଆସିଲି । ସେ ଗେଷ୍ଟ ରୁମ୍ ଆଡେ ମୁହାଁଇ ଯାଉଥିଲେ । ମୁଁ ପ୍ରୟୋଜନରୁ ଅଧିକ ବଳ ପ୍ରୟୋଗ କରି ତାଙ୍କୁ ଡ୍ରଇଂରୁମ୍ ଆଡକୁ ଆଗେଇ ଆଣିଲି ।

"କାଲି ବଡ ବିଚିତ୍ର ଘଟଣା ସବୁ ଘଟିଲା । ଏ ମୁଲକରେ ଆଉ ରହି ହେବନାହିଁ । ରାତି ବୋଧହୁଏ ନଅଟା । ସୁରୁୟା ପାତ୍ରର ବାରବର୍ଷର ପୁଅଟାକୁ, ଦୁର୍ଗାମଣ୍ଡପ ଛକ ପାଖରେ କିଏ ଗୋଟାଏ ଛୁରୀ ଭୁଷିଦେଲା । ସେ ଟୋକାଟା ତଳେ ପଡି ଛଟପଟ ହଉଥାଏ । ଲୋକେ ହାଉହାଉ ହଉଥାନ୍ତି । କିଏ ଜଣେ ଆସି ପିଲାଟିକୁ ଟେକିନେଲା ଡାକ୍ତରଖାନା ଯାଏଁ... । ସେଇଠି ନ ପହଞ୍ଚିଥିଲେ ପିଲାଟା ମରି ଯାଇଥାନ୍ତା । ସେ ଲୋକାଟା କାହା ସଙ୍ଗେ କଥା ହେଇନାହିଁ, କେହି ତା' ମୁହଁକୁ ଅନେଇ ନାହାନ୍ତି । ଖୋଜିବା ବେଳକୁ ସେ କୁଆଡେ ଅନ୍ତର୍ଦ୍ଧାନ ହୋଇଛି । ଏଣେ ପୁଅ ପାଖରୁ ସୁରୁୟା ଫେରିଲା ଲୁଗାପଟା ନବାକୁ । କାଇଁକି ଫେରିଲା କେଜାଣି ? ସେ ଘରେ ପଶୁ ପଶୁ ତାକୁ କିଏ ଛୁରୀ ମାରିଦେଲା । ସେ ସେଇଠି ମରିଗଲା ।"

ପୁଲିସ କହୁଛି ସୁରୁଯ୍ୟ ପାତ୍ରକୁ ଚିଠି ମିଳିଥିଲା । ତା'ର ଅନେକ ଅଜଣା, ଅପରାଧର ତାଲିକା କୁଆଡେ ଥିଲା । ସେ ପୁଲିସ୍‌କୁ ସେତକ ଦେଖେଇ ନାହିଁ ।...କ'ଣ ବୁଝୁଛନ୍ତି ତା' କଥାଟା ?

ମୁଁ ବୋଧହୁଏ ଅନ୍ୟମନସ୍କ, କିମ୍ବା ଆତଙ୍କିତ ଦେଖା ଯାଉଥିଲି । ବୋଧହୁଏ ରାତିସାରା ଶୋଇ ନ ଥିବାରୁ ସେଭଳି ଦେଖା ଯାଉଥିଲି ।

"ଆଉ ଶୁଣନ୍ତୁ ! ପାତ୍ରକୁ ମିଶେଇଲେ ଏଭଳି ସାତଟା ହତ୍ୟା ହେଇଗଲାଣି । ତାଲିକାରେ କୁଆଡେ ମୋ ନାଁ ବି ଅଛି । ହେ, ହେ, ମୋଠି ସେମାନେ କ'ଣ ପ୍ରମାଣ କରିପାରିବେ ? ମୋର କାଗଜପତ୍ର ସବୁ ଦୁରୁସ୍ତ । ସୁପ୍ରିମ୍ କୋର୍ଟକୁ ମଧ୍ୟ ମୋର ଡର ନାହିଁ – ସେମାନେ କିନ୍ତୁ ଖୁବ୍ ଖୋଜଖବର ରଖୁଛନ୍ତି । ରଖନ୍ତୁ, କ'ଣ ଅପରାଧ କରିଥିଲେ ସିନା ମୋର ଡର ଥାଆନ୍ତା ।"

ସେ ଅସୁସ୍ଥ ବୋଧ କଲେ । ଉଠି ଠିଆ ହେଲେ ଯିବାପାଇଁ । "କେହି ଜାଣି ପାରୁ ନାହାନ୍ତି କିଛି । ନିହାତି ଅପାରଗ ପୁଲିସ୍ । ଏଠି କେହି ନିରାପଦ ନୁହେଁ ଜାଣିଥାନ୍ତୁ !..."

ମୁଁ ଭାଗ ଭାଗ ହେଇ ଯାଉଥିଲି । କିଏ ଟେକିନେଲା ପିଲାଟାକୁ ଡାକ୍ତରଖାନା ? ? କିଏ ପୁଣି ତା' ବାପକୁ ଖୁନ୍ କରିଦେଲା ସେଇ ରାତିରେ ? ପୁଲିସ୍‌କୁ ସବୁ କଥା କହିଦେଲେ କେମିତି ହୁଅନ୍ତା ?...

ପୁଲିସ୍ ତାକୁ ଧରି ଫାଶୀ ଦେଆପାରେ !

...ନାଁ, କିଛି ନ ଜାଣିଲା ପରି ଚୁପ୍ ରହିଗଲେ କ୍ଷତି କ'ଣ ? ଦିଲ୍ଲୀପ୍ ସେମିତି ପାହାଡ ଚଢୁ, ବାଘ ହାବୁଡରେ ପଡିବା ଯାଏଁ । ଶିଖ ପାଖରୁ ଗୋଡ ଖସିଯିବା ଯାଏଁ । ସେମିତି ସେ ଅବଶ୍ୟ ଯିବ । ତାକୁ ରୋକି ହବନାହିଁ ।

ଦୁଆର ବନ୍ଦ ପାଖରୁ ଜଗଦୀଶ ବାବୁ ପୁଣି ବୁଲିପଡି କହିଲେ – "ଆଉ ବିଚିତ୍ର କଥା ଶୁଣନ୍ତୁ । ପାତ୍ରର ବଗିଚା ପାଖରେ ଆଉ ଗୋଟେ ଲାସ୍ ମିଳିଛି । ସେ କୁଆଡେ ଜାମାଟାକୁ ଫିଟେଇ ଅଣ୍ଟାରେ ଗୁଡେଇଛି । ତାକୁ କେହି ଚିହ୍ନିପାରୁ ନାହାନ୍ତି ।"

ଧପ୍ କରି କଣଟାଏ ଜଳି ଉଠିଲା ମୋ ଭିତରେ । କୁଢେଇ ହୋଇଗଲା କ'ଣ ସବୁ । "ମୁଁ ଦେଖିଲେ ଚିହ୍ନିଦେବି ।" – ମୁଁ କେମିତି କହିଲି କେଜାଣି ମୁଁ ବୋଧେ ମୋ କଲିଜାଟାକୁ ପାପୁଲିରେ ଟେକି ଧରିଲି ଜଗଦୀଶ ବାବୁଙ୍କ ଆଗରେ । ସେ ଏତେଟାମାନ ଆଖି କରି ମୋତେ ଚାହିଁଲେ । ବିଚିତ୍ର ଢଙ୍ଗରେ ହସି ପ୍ରଶଂସା କଲେ । "ଠିକ୍ ଅଛି, ମୁଁ ପୁଲିସ୍‌କୁ କହି ଦଉଚି ।" – ସେ ଟୋକାଳିଆ ଢଙ୍ଗରେ ପାହାଚ ଓହ୍ଲେଇଗଲେ ଡେଇଁଲା ପରି ।

ମୁଁ ବୋଧହୁଏ ଆଉ ପୃଥିବୀରେ ପାଦ ଦେଇ ଠିଆ ହୋଇ ପାରିଲି ନାହିଁ । ଗେଷ୍ଟରୁମ୍‌ର ପଟାଖଟ ଉପରେ ଅଣ୍ଡାଳି ଅଣ୍ଡାଳି ବସି ପଡିଲି । ମୁହଁ ଘୋଡେଇ ପିଲାଙ୍କ ପରି କାନ୍ଦିଲି ଅନେକ ସମୟ । ମୋ ସ୍ତ୍ରୀ ମୋ ପାଇଁ ଖୁବ୍ ଉଦ୍‌ବିଗ୍ନ ହୋଇ ପଡୁଥିଲେ । କିନ୍ତୁ ମୋର କୌଣସି ମରିବାର ଲକ୍ଷଣ ନ ଥିଲା । ମୁଁ ପରା ଖୋଦ୍ ସରକାରଙ୍କ ଦାମୀ ଅଫିସର !

– ଏବଂ ଆଜି ନଅଟାବେଳେ ମୁଁ ସଦର ଥାନାରେ ବୟାନ୍ ଦେବାକୁ ଯିବି ! □

## ଏତେ ପାଖରେ ସମୁଦ୍ର

ଏତେ ଗୁଡ଼ାଏ ନିର୍ଜନ ଖରାବେଳକୁ ନେଇ ସେ କ'ଣ କରିବ, କିଛି ସ୍ଥିର କରି ପାରିଲା ନାହିଁ। କୁଢ କୁଢ ରୂପା ଟଙ୍କା ପରି ଏତେ ସବୁ ଖରାବେଳ ସେ କାହାକୁ କେମିତି ବାଣ୍ଟି ପାରିବ ?

ଅବିନାଶ ଚକ୍ରବର୍ତ୍ତୀ ଗତ ତିରିଶ ବର୍ଷ ଧରି ଜାଣି ନଥିଲା ଯେ ଦି'ପହରଟା ଏତେ ଓସାର ଏବଂ ଏତେ ଉଦାର ଗୋଟାଏ ଜିନିଷ। ଏତେ ଉଜ୍ଜଳ ଆଉ ଏମିତି ନିଛାଟିଆ!

ସେ ରାସ୍ତାରେ ଠିଆ ହୋଇ ଅନେଇ ରହିଥିଲା। ସେତେବେଳେ ବି ସେ ଆଶା କରୁଥିଲା ଯେ ତା' ଚଷମା ଫ୍ରେମ୍ ଉପରେ ଲୋକଙ୍କ ଦୃଷ୍ଟି ପଡିବା ଉଚିତ୍। କାରଣ ସେଭଳି ବିଲାତି ଜିନିଷ ଆଉ ଦେଖିବାକୁ ମିଳୁନାହିଁ ତ! କିନ୍ତୁ ପିଚୁ ରାସ୍ତାର ସେ ମୁଣ୍ଡ ପର୍ଯ୍ୟନ୍ତ ତା'ଛଡା ଆଉ ଦ୍ୱିତୀୟ ବ୍ୟକ୍ତି କେହି ଦିଶୁ ନଥିଲେ। ଖୁବ୍ ଦୂରରେ କାଉଟିଏ ବୋଧହୁଏ କ'ଣ ଖୁମ୍ପୁଥିଲା। ଭାରି ଭୋକିଲା ହେଇଥିବ ନିଶ୍ଚୟ!

ଅବିନାଶ ଖୁବ୍ ଜୋର୍ କରି ପଛକୁ ଫେରି ଚାହିଁଦେବାର ଇଚ୍ଛାଟିକୁ ରୋଧି ନେଉଥିଲା। ସେ ଅନୁଭବ କରୁଥିଲା ଯେ ତିନିଶହ ହଳ ଦୃଷ୍ଟି ମଡେଇ ହୋଇ ଯାଉଥିଲା। ତା' ପିଠି ଉପରେ। ...ନାଃ, ଛାଡି ଆସିଲା ପରେ ଆଉ କାହିଁକି ? ତଥାପି ଏତେ ଲୋକଙ୍କୁ ବୁଲିପଡି ଥରେ ହାତ ହଲେଇ ଚାହିଁଦେଲେ କ୍ଷତି କ'ଣ ? ସେମାନେ ବିଚରା କେତେ ଖୁସି ହୋଇଯାନ୍ତେ! ଦିଆଯାଉ ତାଙ୍କୁ ଗୋଟାଏ ସୁଯୋଗ! ଦି'ପହର ଖରାକୁ ଥରେହେଲେ ସେମାନେ ସେ ତିନିମହଲାର କାକର ପିଣ୍ଡାକୁ ଚାହାଁନ୍ତୁ, ଖରାରେ ଝଲମଲ ଝଟକୁଥିବା ଅବିନାଶ ଚକ୍ରବର୍ତ୍ତୀକୁ ଦେଖନ୍ତୁ!!

ସେ ପ୍ରକୃତରେ ଥରେ ଫେରି ଚାହିଁ ଦେଲା।

ଏକ ମହଲା। ଦୁଇ ମହଲା! ତିନି ମହଲା!!...ନୀରବ, ନିର୍ଜନ, ନିକାଞ୍ଚନ!!

ବହୁକାଳୁ ପରିତ୍ୟକ୍ତ ଖୁବ୍ ଗୋଟାଏ ଉଚ୍ଚ କୋଠା! ଶୂନ୍‌ଶାନ୍! ଅବିନାଶକୁ ଜଣାଗଲା ଯେ ତା' ମେରୁଦଣ୍ଡ ସାମ୍ନା ଆଡକୁ ଖୁବ୍ ବାଙ୍କି ଯାଇଛି! ସେ ସହଜ ଢଙ୍ଗରେ ଆଉ ଆକାଶକୁ ଚାହିଁ ପାରୁନାହିଁ!

ସେ ସେମିତି ନଇଁଲା ପରି ମୁହଁ ଫେରାଇ ନେଲା। ଆଗରେ ଆଖି ପାଇବା ପର୍ଯ୍ୟନ୍ତ ଲମ୍ବା ପିଚୁ ରାସ୍ତା। ଚରିଆଡେ ଅଗ୍ନାଗ୍ନି ନିଝୁମ୍ ଦ୍ୱିପ୍ରହର।

ସେ ତ ଫେରି ପାରିବ ନାହିଁ। ଥଣ୍ଡା ବଖରାର କାଠଚୌକି ଉପରେ ସୁଦାମ ସାହୁ। କାଠ ଟେବୁଲ୍ ଉପରେ ନଥିଖାତାର ସ୍ତୂପ। ସେପାଖେ ସୁଦର୍ଶନ ହୋତା...ବିଭୂତି ସାସମଲ...ମାଣିକ ଅଗ୍ରୱାଲ୍। ...ସୁଦାମ ସାହୁର ଢଳଢଳ ଚଷମା, ଚିକ୍କଣ ଚନ୍ଦା ମୁଣ୍ଡ!... ସୁଦର୍ଶନ ହୋତା

ସବୁଦିନ ଘୁଗୁନି ଖାଏ; ଦାନ୍ତ ଦେଖେଇ କଥା କହେ; କାମରେ ଦେଖା ! ...ବିଭୂତି ନେତାଗିରି କରେ । ମନ ହେଲେ ଆସି ବସିଯାଏ, ନହେଲେ ନାହିଁ । ...ଆଉ ମାଣିକ ଅଗ୍ରଓ୍ୱାଲ୍ – ପକ୍କା ମାଗୁଆଡି ! ଅବିନାଶକୁ ଥରେ ମାସର କୋଡିଏ ତାରିଖରେ ଷାଠିଏ ଟଙ୍କା ଋଣ ଦେଇ ଦଶ ଦିନ ପାଇଁ ନବେ ପଇସା କଳନ୍ତର ରଖିଥିଲା । ...ଧୁତ୍! ଏଗୁଡାଙ୍କ ପାଇଁ କ'ଣ ବା ତା'ର ମୋହ ଥାଇପାରେ ? ଗଛରେ ପତ୍ର ପାଚିଲା ପରି ତିରିଶ ବର୍ଷ ଭିତରେ ସୁଦାମ ସାହୁର ମୁହଁ ଲୋତରା ହେବାର ସେ ଦେଖିଛି । ନଈ ଅତଡା ଖାଇଲା ପରି ତା' କପାଳ ଉପରୁ ବାଳ ଘୁଞ୍ଚି ଘୁଞ୍ଚି ଯାଇଛି । ଏବର ଏ ଚନ୍ଦା, ଟାଙ୍ଗରା ଭୂଇଁର କ୍ରମବିକାଶ ମଧ୍ୟ ସେ ଦେଖିଛି । ...ଛାଡ! ...ସେ ତ ସବୁ ଗଲା । ଆଉ ସେ ବିଷୟରେ ଭାବି ଲାଭ କ'ଣ ? ସେଠିକି ତ ସେ ଆଉ ଫେରି ପାରିବ ନାହିଁ!

ଏତେ ଉଜ୍ଜଳ ଆଲୁଅରେ ରାସ୍ତା ଉପରେ ଠିଆ ହେବାର ବି ଅର୍ଥ କିଛି ନାହିଁ । କିନ୍ତୁ ସେଭଳି ଏକ ବିଶିଷ୍ଟ ଦିନରେ ଏମିତି ଖରାବେଳେ ତା' ବସାକୁ ଫେରିଯିବା କଥାଟା ତାକୁ ଜମା ସ୍ୱାଭାବିକ ମନେ ହେଉ ନଥାଏ । ପ୍ରଥମେ, ସେ କ'ଣ ତା' ବସା ଖଣ୍ଡକୁ ଏତେ ଆଲୁଅରେ ଚିହ୍ନି ପାରିବ ? ମୁହଁ ସଞ୍ଜବେଳେ ସେ ସାହିର ପାଣିକଳ ଛକରୁ ହିଁ ତାକୁ ଦେଖି ଆସିଛି । ଏବେ ତ ଏତେ ତୀବ୍ର ଖରାବେଳ । ଗଛଲଟା, ଜୀବଜନ୍ତୁ ସମସ୍ତଙ୍କର ନିର୍ଦ୍ଦିଷ୍ଟ ରୂପ; ନିର୍ଦ୍ଦିଷ୍ଟ ଛାଇ । ଏତେବେଳେ ତା' ବସା କେମିତି ଦିଶୁଥିବ କେଜାଣି । ଛୁଟିଦିନମାନଙ୍କରେ ସେ ତା' ଭିତରେ ରହି ଆସିଛି । ଏମିତି ଦିନବେଳେ କେବେ ବାହାରୁ ଦେଖି ନାହିଁ ।

ତାକୁ କେମିତି ଗୋଟାଏ ଲାଜ ମାଡିଲା । ଦି'ପହରଟାରେ ସେ ଯାଇ ଦୁଆର ଠକ୍ ଠକ୍ କରିବ ଏବଂ କବାଟ ଫିଟିଗଲେ ଦାନ୍ତ ନେଫେଡେଇ କୈଫିୟତ୍‌ଟିଏ ଦେବାକୁ ପଡିବ, "ବୁଝିଲ, ଆଜିଠଉଁ ସରିଗଲା । ଆଉ ଘଣ୍ଟା ଦେଖି ଦରଭୋକିଲା ଅବସ୍ଥାରେ ଧାଇଁବାକୁ ପଡିବ ନାହିଁ । ଇତି ! ମାନେ ଇତି !! ...ଯାଃ, ଗୋଟାଏ ପରିଚ୍ଛେଦର ଏଇଠି ଗାରଟଣା ହୋଇଗଲା ।"

କୌଣସି ଉତ୍ତର ନ ପାଇ ସେ ହାତରୁ ଘଣ୍ଟା ଫିଟେଇବ । ନିଜେ ଯାଇ ପାଣି ଗିଲାସେ ଆଣି ମୁହଁରୁ ଧାସ ଲିଭେଇବ । ତା'ପରେ ସେ ଅନେଇବ ଘରିଆଡେ, ଅନେକ ଆଶା ନେଇ ।

ନାଃ, ସେ ଫେରି ପାରିବ ନାହିଁ । ସନ୍ଧ୍ୟା କଥା ଅଲଗା । ତା'ର ଅନେକ ବନ୍ଧୁ । ଦୁଇ ଚାରିଜଣ ନିଶ୍ଚୟ ଆସିଯିବେ । ସେ ସେମାନଙ୍କ ସହିତ ଅନେକ ଗପ କଲାପରେ ଶେଷକୁ ଅତି ସାଧାରଣ ଗୁରୁତ୍ୱହୀନ ଗଳାରେ କହିବ, "ଜାଣିଲ ଯତୀନ୍ ବାବୁ ! ଆଜି ମୁଁ ସେ ବେକୁବ୍ କାମରୁ ଅବ୍ୟାହତି ନେଇଗଲି । ଏଣିକି ବଞ୍ଚିଥିବା ଯାକେ ଆପଣମାନଙ୍କ ସେବାରେ ଦିନରେ ଚବିଶ ଘଣ୍ଟା ରହିଲି । ମୋତେ ଏଣିକି ଆପଣ ନିଜ ଇଚ୍ଛାମତେ ବିନିଯୋଗ କରି ପାରନ୍ତି ।" ଗୁଡାଏ ହୋ ହୋ ହସ ହେବ । ସତେବା ଏଭଳି କଥା ଆଗରୁ ଶହେଥର କୁହା ସରିଛି ଏବଂ ଶହେବାର ତାକୁ କୌଣସି ଗୁରୁତ୍ୱ ନ ଦେଇ ଆଡେଇ ଦିଆ ହୋଇଛି ।

ରାସ୍ତା ଉପରେ ଠିଆହୋଇ ଅବିନାଶ ଭାବିଲା ସେ ଯିବ କୁଆଡେ ? ସେତେବେଳେ କୌଣସି ଚା କଫି ଦୋକାନ ମଧ୍ୟ ଖୋଲା ନ ଥିଲା । ରାସ୍ତା ଉପରୁ ସରକାର ସବୁ କାଠ

କେବିନ୍, ପାନ ଦୋକାନ ଉଠେଇ ଦେଇଥିଲେ । ଏମିତି କିଛିବାଟ ଗଲେ ଡାହାଣ ପଟେ ଗଳି ଭିତରେ ପୁରୁଣା ଦୋତାଲା ଉପରେ ବିପ୍ରଚରଣ ରହେ । ଶଳା, ସଂସାର ଯାକର ଅସନା ଆଇଁଷିଆ କଥାର ଖଣି ! ହାତରୁ ସହଜରେ ପଇସା ଛାଡେନାହିଁ । କୋମୁଟି ପରି ଦିଶେ । ସେମିତି କଥା କହେ । ଘର ଗଞ୍ଜାମ । ଲୋକଟା ଭଲ !

ଅବିନାଶକୁ ଦେଖୁ ଦେଖୁ ସେ କୁରୁଳି ଉଠିବ, "କ୍ୟେ, ବେଙ୍ଗ ବାବୁ ! ଆଇଲ କ୍ୟେ । ଇସ୍, ତେନ୍ନେ ଏକା କପାଳିଆ ହେ ! ପଇସା, ୟାପ ଜମ୍ମେଇଚ, ଯେ କାଇଁରେ କ'ଣ ! – ଜଞ୍ଜାଳ କଇଲେ ଶୂନ୍ୟ ! – ଆମେ, ଦେଖୁନ କେମିତି ଘାଣ୍ଟି ହଉଚୁ । ହଉ, ଏବେ କ୍ୟଣ ପେଇଁ ଆଇଲ ହେ ? ଏତେ ଭାବନା ଫାବନା କିସ୍‌ସ କରୁଚ ମ ? – କହି ପକ ହେ !"

ଅବିନାଶ ସେ ନିର୍ଜନ ରାସ୍ତାଟା ଉପରେ ମନକୁ ହସି ପକେଇଲା ଏବଂ ସ୍ଥିର କଲା ଯେ ବିପ୍ରଚରଣ ଘରେ ଯାଇ ପହଞ୍ଚିବ ଏବଂ ଏ ସମଗ୍ର ଖରାବେଳଟା ତାକୁ ହିଁ ଦେଇ ହେବ । ସେ ତା' ସହଜ ସରଳ ମୋଟାମୋଟି ସ୍ଥୁଳ ଢଙ୍ଗରେ ଏ ସମସ୍ତ ବିଷୟଟିକୁ ହୁଏତ ବୁଝିଯିବ ଠିକ୍ ।

ଅବିନାଶ ଖରା ଉପରେ ପାଦ ପକେଇ ଆଗେଇ ଗଲା । ବାଁ ପାଖ ଦେଇ ବାଲି ଟ୍ରକ୍‌ଟାଏ ପାରି ହୋଇଗଲା । ଶୁଖିଲା ବାଲି ତା' ମୁହଁରେ, ବେକରେ ଛୁଞ୍ଚ ପରି ଫୋଡି ହୋଇଗଲା । ସେ ରିକ୍‌ସାରେ ବସି ଯାଇ ପାରିଥାନ୍ତା । କିନ୍ତୁ ସେତେବେଳେ କେହି ଗୋଟିଏ ହେଲେ ଦିଶୁ ନଥାନ୍ତି କୋଉଠି ! – ହଉ, କିଛି ଯାଏ ଆସେ ନାହିଁ ! ଅବିନାଶ ଚାଲିବାକୁ ଭଲ ପାଏ । ଚାଲିଲେ ତାକୁ ବଞ୍ଚିଲା ପରି ଲାଗେ । ଜୀବନର ସ୍ଥିର ବେରଙ୍ଗ ଚିତ୍ର ଘୁଞ୍ଚିଲା ପରି ଲାଗେ ।

ସେ ବିପ୍ରଚରଣ ଦୁଆରେ ଯାଇ ଖଟ୍ ଖଟ୍ କଲା ।

ଝିଅଟିଏ କବାଟ ଫିଟେଇ ନିଦ ମଳମଳ ଆଖିରେ ତାକୁ ଚାହିଁଲ । ବିପ୍ରଚରଣର ପାଞ୍ଚ କି ଛ'ନମ୍ବର ଝିଅ ବୋଧେ ।

"ବାପା ଅଫିସ୍ ଯାଇଛନ୍ତି । ...ସନ୍ଧ୍ୟାକୁ ଫେରିବେ ।"

ଆରେ, ସତେ ତ ! ବିପ୍ରଚରଣ ସେତେବେଳେ ଘରେ ଥିବ ବୋଲି ସେ କେମିତି ବେକୁବ୍ ଭଳି ଧରି ନେଇଥିଲା । ଧୁତ୍, ଇଡିଅଟ୍ ଆଉ କାହାକୁ କହନ୍ତି !

ସେ ରାସ୍ତାକୁ ଓହ୍ଲେଇ ଆସିଲା । ତା'ହେଲେ ଅଗତ୍ୟା ଏଇଠୁ ବି ତାକୁ ଯିବାକୁ ପଡିବ !

କରଞ୍ଜଗଛ ଛାଇରୁ କରଞ୍ଜଗଛ ଛାଇକୁ ସେ ଆଗେଇ ଯାଉଥାଏ ଗୋଟାଏ ଅଭ୍ୟାସରେ । ଦେଖିଲା ରାସ୍ତା ସେମୁଣ୍ଡ ଝିଲିମିଲି ଦିଗ୍‌ବଳୟରୁ ଜଣେ କିଏ ସାଇକେଲରେ ଗଡି ଆସୁଛି । ସେ ପାଖେଇ ଆସିଲା, କିନ୍ତୁ ଅବିନାଶର ଗୋଟାଏ ଗଛ ଆଗରୁ ଓହ୍ଲେଇ ଗଲା । ...ଓ, ଅବିନାଶକୁ ଚିହ୍ନିପାରି ଆପେକ୍ଷା କଲା ନା କ'ଣ ! ନ କରି ଯିବ କୁଆଡେ ? ଅବିନାଶ ଚକ୍ରବର୍ତ୍ତୀ ଗତ ତିରିଶ ବର୍ଷ ଧରି ସେ ତିନି ମହଲା କୋଠାରେ କାମ କରିଛି କ'ଣ ବୃଥାରେ ? ତେବେ, ଏତେ ଦୂରରେ କାହିଁକି ଓହ୍ଲେଇ ଗଲା । ସେ ସାମ୍ନାକୁ ଚାଲି ଆସି ବ୍ରେକ୍ କସିଦେଇ ଓହ୍ଲେଇ ପାରିଥାନ୍ତା । କହି ପାରିଥାନ୍ତା, 'ଆରେ ଅବିନାଶ ବାବୁ ଯେ ! ଆପଣ ଏତେବେଳେ କୁଆଡେ ?' ...ଦୋସ୍ତ ହୋଇଥିଲେ

ଡାହାଣ ହାତରେ ହେଣ୍ଡଲ୍ ସମ୍ଭାଳି ବାଁ ହାତରେ ପିଠି ଥାପୁଡାଇ ଦେଇଥାନ୍ତା !

ସାଇକଲ ଚଢାଳିଟି ରାସ୍ତା କଡକୁ ଚାଲିଗଲା ପରିସ୍ରା କରିବାକୁ ।

ଅବିନାଶ ସଙ୍କୋଚରେ ଆଗେଇ ପାରିଲା ନାହିଁ ।

ସାଇକେଲ୍ ଚଢାଳି ସଂପୂର୍ଣ୍ଣ ନିର୍ବିକାର ଢଙ୍ଗରେ ତା' ପାଖ ଦେଇ ଚାଲିଗଲା । ତା' ମୁହଁକୁ ସୁଦ୍ଧା ଚାହିଁଲା ନାହିଁ । ଦି'ପ୍ରହରଟା ଅସମ୍ଭବ ନିର୍ଜନ ବୋଧହେଲା ତାପରେ ।

ଠକ୍ ଅଛି । ଅବିନାଶର ଅନ୍ୟ ଗତି ବା କାହିଁ !

ସେ ସେମିତି ଆଗେଇ ଗଲା । ଶେଷରେ ଅଗତ୍ୟା ବସାରେ ହିଁ ପହଞ୍ଚିବାକୁ ପଡିବ । ବାଟରେ ବଜାର । କିନ୍ତୁ ସେଭଳି ଅସମୟଟାରେ ବଜାରରେ ପହଞ୍ଚିଲେ କ'ଣ ଲାଭ ? ଦୋକାନ ପତ୍ର କ'ଣ ଖୋଲିଥିବ ? ତେବେ ଅବିନାଶର ଆଉ ଚାରା କ'ଣ ? ଯେତେ ଧୀରେ ଚାଲିଲେ ସୁଦ୍ଧା ଗଛ ପରେ ଗଛ ପାରି ହୋଇ ଯାଉଥାଏ । ଦ୍ୱିପ୍ରହର ସେମିତି ସ୍ଥିର ନିସ୍ତରଙ୍ଗ ଜଣା ଯାଉଥାଏ । ଶେଷକୁ ବଜାର ଆସି ତା' ସାମ୍ନାରେ ଛିଡା ହୋଇଗଲା । ଅବିନାଶ ଯେତେ ନ ଚାହିଁଲେ କ'ଣ ହେବ ? ସେ ହୁଏତ ଯେଉଁଠି ଥିଲା ସେଇଠି ଠିଆ ହୋଇଥିଲା । ବଜାର ହିଁ ଘୁଞ୍ଚି ଆସିଲା ତା' ପାଖକୁ ।

ସବୁ ଦୋକାନ ବନ୍ଦ ଥିଲା । ବୁଲା ଗୋରୁଟିଏ ଚେଷ୍ଟା କରୁଥିଲା ଜୋତା ଡବାକୁ ବାଗରେ ପାଇଲେ ଚୋବେଇ ଦିଅନ୍ତା କେମିତି ! ଗୋରୁ ଆଖିରୁ ଲୁହ ଗଡି ଆସିଥିଲା କଜଳଗାର ପରି । ଚାରିଗୋଡିଆ ଜନ୍ତୁଟିଏ ବିଚାରା ।

ଗୋଟାଏ ବନ୍ଦ ଦୋକାନ ସାମ୍ନାରେ ପଡିଥିବା କାଠ ବେଞ୍ଚ ଉପରେ ଅବିନାଶ ଯାଇ ଚୁପ୍‌ଚାପ୍ ବସିଗଲା । ସେ କାବା ହୋଇ ଅନେଇଥାଏ ସେ ବଜାରକୁ । ଏମିତି ଦେଖି କିଏ କହି ପାରିବ ଯେ ଏଇଠି ବେଳ ପଡିଲେ ବାଟ ମିଳେ ନାହିଁ ଚାଲିବାକୁ ।

ହେଇ, ସେ କୋଣରେ ଗୋଟେ ପାକଲା ବୁଢା ବସେ । ଖାଲି ଅଦା ବିକେ । ସେ ବୋଧେ ତା' ଜୀବନ ସାରା ଅଦା ବିକିଛି । ତା' ପୁଅ ମାଇପ ସବୁ କ'ଣ କରନ୍ତି ? କେମିତି ଚଳନ୍ତି ?

ଆଉ ଏ ଧାଡିକଯାକ ଲୁଗା ଦୋକାନ । ଆର ପାଖେ ଆଳୁ ପିଆଜ ।

...ଓଃ, କେତେ ଗହଳି ଏ ଜାଗାଟାରେ ! ଅସଂଖ୍ୟ ଲୋକ ହାଉଯାଉ ! ଅବିନାଶର ନିଶ୍ୱାସ ଭାରି ଲାଗେ । ସେ ଆଖି ମିଟକା ମାରିଦେଲେ ସାରା ବଜାର ଚିତ୍ରଟିଏ ପରି ନିର୍ଜନ ହୋଇଯାଏ । ପୁଣି ମୁହୂର୍ତ୍ତକରେ କାହୁଁ କାହୁଁ ଜମି ଯାଆନ୍ତି ବେପାରୀ ଗରାକ, ବାରବୁଲା ଭିକାରୀ ।

ଦ୍ୱିପ୍ରହର ଘୁଞ୍ଚିଯାଏ ଖୁବ୍ ଆସ୍ତେ ।

ଅବିନାଶ ଚକ୍ରବର୍ତ୍ତୀ କାଠ ବେଞ୍ଚ ଉପରେ ନିଶ୍ଚଳ ବସି ଚାହିଁଥାଏ ସାମ୍ନାକୁ ଏବଂ ଶୂନ୍ୟକୁ !!

କିଏ ଜଣେ ବୋଧେ ଆସିଲା ।

ସେ ଆଖି ମିଟକା ମାରି ଚାହିଁଲା ବେଳକୁ ବୁଢାଟିଏ । ଉଙ୍ଗ ଗାମୁଛାର ଠେକା । ପାଚିଲା କସରା ଦାଢି । ହାତରେ ଗୋଛାଏ କନାମୁଣା । ଛିଟ, ତୋରିଆ, ଧଳା, ସାନ, ବଡ ଗୁଡିଏ ମୁଣା ।

ତା' ଭିତରୁ କେତେ ମଗଜିମରା । ଆରଗୁଡ଼ିକରେ ନାଲିକନାର କଲି ।

ସେ ଅବିନାଶ ପାଖୁ ଚାଲି ଆସିଲା । ମୁହଁକୁ ଚାହିଁ ଚିହ୍ନିଲା ଭଳି ହସିଲା । ଡାଳିମ୍ବ ମଞ୍ଜି ପରି ସୁସଜ୍ଜ ପାନଖିଆ ଦାନ୍ତ !

ଅବିନାଶର ଆଖି ସେଇ ମୁଣା ଗୁଡ଼ିକ ଉପରେ ।

"କ'ଣ ଏଥିରୁ ଖଣ୍ଡେ ନେବେ ? ଦେଖୁ ନାହାନ୍ତି ! ମୁଁ ଯାକୁ ସବୁ ହାତରେ ସିଲେଇ କରିଛି ।" କହୁ କହୁ ସେ ବେଞ୍ଚର ଆର ମୁଣ୍ଡରେ ବସିଗଲା । ମଝିରେ ଥୋଇଦେଲା ସବୁଯାକ ମୁଣା ।

ଅବିନାଶ ଚକ୍ରବର୍ତ୍ତୀ ମୁଣାଗୁଡ଼ିକୁ ଖୋଲାଇ ଗୋଟିଏ ଟେକି ଦେଖୁଥାଏ । ବୁଢ଼ା ବିକାଳିଟି ବେପାର ଆଶାରେ କହିଲା, "ଆଜିକାଲି ଆଜ୍ଞା ଆମ ବେଉଷା ବୁଡ଼ିଗଲା । ସମସ୍ତେ ତ ସେଇ ଅଖାମୁଣା, ପ୍ଲାଷ୍ଟିକ୍ ମୁଣା ଧରି ବଜାର କଲେ । ଯାକୁ ଆଉ ପଚାରେ କିଏ ?" ସେ ତା' କାଖମୂଳରୁ ବଟୁଆ କାଢ଼ି ପାନରେ ଚୂନ ଲଗେଇଲା । କହିଲା, "ଆଜ୍ଞା ପାନ ଖାଇବେ ?"

ଅବିନାଶ ଚକ୍ରବର୍ତ୍ତୀ ଖୁବ୍ ନରମି ଗଲା । ବୁଢ଼ାର ଆପଣାପଣରେ ଏତେ ସହଜ ସ୍ନେହ ଦେଖି ଖୁସି ହୋଇଗଲା । "ମୁଁ କତା ପାନ ଖାଏ ନାହିଁ ।"

"ହେଃ ହେଃ, କତା ନ ହେଲେ କି ସେ ପାନରେ ଲେଖା ? ଏ ଗୁଣ୍ଡି ଘର ତିଆରି । ଭାରି ତାପିନି, ଭାରି ବାସ୍ନା । ଖଣ୍ଡେ ପାଟିରେ ପଡ଼ିଥିଲେ ତା' ମହକରେ ଚାଲିଗଲା ଲୋକ ବୁଲି ଚାହିଁବେ । ହଉ, ଏଇ ନିଅନ୍ତୁ ସାଧା । ଏଗୁଡ଼ାକ ଖାଲି ଓଠ ରଙ୍ଗ କରିବା କଥା ! ହେଲେ ଆପଣଙ୍କର ଯଦି କତା ଖାଇବାର ଅଭ୍ୟାସ ନାହିଁ, ତେବେ ଯାର ଧାସ ବାଜିଗଲେ ମୁଣ୍ଡ ବୁଲେଇ ଦେବ ! ସେଥିପାଇଁ ଆଗ ଆପଣଙ୍କ ପାନ ମୋଡ଼ି ଦଉଚି, ନିଅନ୍ତୁ !"

ପାନଟି ପାଟିରେ ପକେଇ ଅବିନାଶ ବୁଢ଼ାକୁ ଚାହିଁଲା ।

"ଆଚ୍ଛା ମଉସା, ତୁମ ଘରେ ଆଉ କିଏ ସବୁ ଅଛନ୍ତି ?"

"କିଏ ନାହାନ୍ତି ପଚାରନ୍ତୁ ! ସେ ପରା ଘର । ଘର ଯିଏ, ସଂସାର ସିଏ । ବାପ, ମା, ପୁଅ, ଝିଅ, ବୋହୂ, ନାତି, ନାତୁଣୀ ଗୋଛାଏ ଅଛୁ ଏକାଠି । ଛନ୍ଦାଛନ୍ଦି, ଭିଡ଼ାଓଟରା, କଳିଗୋଳ ଚାଲିଛି । ହେଲେ ଘରର ଗୋଟାଏ ମୋହ, କେହି କାହାକୁ ଛାଡ଼ି ପାରିବେ ନାହିଁ ।"

"ତମର କେତୋଟି ପୁଅ ଝିଅ ?"

"ମୋର ପିଲାପିଲି ସାତ । ଯୋଡ଼ାକୁ ଯମ ଖାଇଗଲା । ବାକି ତିନି ପୁଅ, ଦୁଇ ଝିଅ । ସବୁ ବିଭାତୋଳା ହୋଇ ଯେ ଯାହା ଘରସଂସାର କଲେଣି ।"

"ଆଉ ତୁମ ସ୍ତ୍ରୀ ?"

"ହେ, ସେଇତ ମେରୁଖୁଣ୍ଟ । ସେଇ ଜାଣ ମୋର ସଂସାର । ସେଇ ମୋ କାଳ ! ଏବେ ଟିକିଏ ବାତୋଇ ହୋଇଗଲା । ଚାଲବୁଲ କରିବାକୁ ଅକ୍ଷମ । ହେଲେ ପାଟି ଖଣ୍ଡକ ଆଗପରି ବାଜେଣି ବଜା । ଖାଲି କଥାରେ ହାତରୁ ମାଉଁସ ଝିଙ୍କାରି ଦେବ ସେ ମାଇକିନା !"

ବୁଢ଼ା ଆହୁରି ଗପିଥାନ୍ତା । ଅବିନାଶ ଶୂନ୍ୟକୁ ଅନ୍ୟମନସ୍କ ଚାହିଁ ଥିବା ଦେଖି ତୁନି ପଡିଗଲା । ମୁଣା ଗୁଡିକୁ ସଜାଡିଲା । ବୋଧେ ଉଠିଯିବାକୁ ପାଞ୍ଚୁଥିଲା ।

ଅବିନାଶ ହଠାତ୍ ଚଞ୍ଚଳ ହୋଇ ଉଠିଲା । ବାଛିଥିବା ମୁଣାଟିକୁ ପୁଣି ଟେକି ଧରି ପଚାରିଲା, "ଏଇ ଖଣ୍ଡ କେତେ ପଡିବ ?"

"ଏ କନା ମିଟର୍ ଆଖ୍ଖା ଆଠଟଙ୍କା । ଏଥିରେ ଅଧମିଟର୍ କନା । କଲି, ହାତ କାମ ଅଲଗା । ଆପଣଙ୍କ ହାତରେ ଆଜି ବଇନି ହେବ । ପାଞ୍ଚଟଙ୍କା ଆଠଣା, ଛାଡନ୍ତୁ । ଟଙ୍କା ପାଞ୍ଚଟା ଦେଇ ଦିଅନ୍ତୁ !"

ଅବିନାଶ ବିନା ଦ୍ୱିଧାରେ ଟଙ୍କା ବଢେଇ ଦେଇ ଖୁସି । ବୁଢ଼ା ଟଙ୍କା ପାଇ ଖୁସି । ଖଣ୍ଡିଗୁଆଟିକୁ ଅଗଦାନ୍ତରେ ଚେବେଇ ସେ ଚାହିଁ ରହିଲା ତା'ର ଉଦାର ଗରାକ ମୁହଁକୁ । ସବୁ ଗରାକ ଆଜି ଏମିତି ଯୁଟନ୍ତେ କି ! ତା'ର ସେଇଠୁ ଆଉ ଉଠିବାର ନାଁ ନାହିଁ !

"ଏଇଟାରେ କେଯାଏଁ ଫୁଲକୋବି ଧରିବ କହିଲ !"

ବୁଢ଼ା ଭୂଲତା ଟେକି ତାଜୁବ୍ ହେଲା ପରି କହିଲା, "ଏବେ ଯେଉଁ ନୂଆ କୋବି ପଡିଚି ଗେଣ୍ଡୁଫୁଲ ପରି ଆକାର, ଗୋଟି ପାଞ୍ଚଟଙ୍କା । ସେଥିରୁ ଜାଣ ଟଙ୍କା ଶହେର କୋବି ଏଥିରେ ଧରିଯିବ !"

ନିଜ ପରିହାସରେ ନିଜେ ଖୁସି ହେଇ ଖେଁ ଖେଁ ହସିଲା ବୁଢ଼ା !

ଅବିନାଶ ନିର୍ବିକାର ।

"ଶହେ ଟଙ୍କାର କୋବି ହେଲେ ସୁଦ୍ଧା ଆମ ପାଟରାଣୀଙ୍କ ମନକୁ କ'ଣ ପାଇବ କି ? କହିବେ, 'ଏତିକି କାହା ମୁହଁରେ ଦେବ ?' ହେଃ, ହେଃ, ହେଃ !"

ଅବିନାଶର ହସିବା ଢଙ୍ଗଟା ଟିକିଏ ଅଲଗା । ନିଦରେ ଶୋଇଥିବା ଲୋକ ହସିଲେ ଯେମିତି ଶୁଭେ, ପ୍ରାୟ ସେମିତି ।

"କାଇଁ, ବାବୁ ଆପଣ କ'ଣ ମୋରି ଭଳି ବହୁକୁଟୁମ୍ବୀ କି ?"

"ଦେବହୁତିର ସବୁ କଥାରେ ବଡ ମୁହଁ । ସେ ପିଲାଦିନେ ଯାହା ଥିଲା ଏବେ ବି ସେଇଆ । ବଡ ଘର ଝିଅ ତ ! ଚେହେରାଟା ବି ସେମିତି । ଭସା ଭସା ଆଖି, ଲମ୍ବା ବେକ । ସେ ସଚ୍ଚା ମୋତିମାଳଟା ମୁଁ ତାକୁ ପ୍ରଥମ ଦିନ ପିନ୍ଧେଇ ଦେଇଥିଲି ।"

ଛାମୁଦାନ୍ତରେ ଗୁଆ ଦାନ୍ତେଇ ମୁଣାବିକାଳି ମୁଚ୍ ମୁଚ୍ ହସୁଥାଏ ଆଖି କୁଣରେ । କଥା ସୁଆଦକୁ କତା ପାନ ସାଙ୍ଗରେ ବୋଧହୁଏ ଢୋକିଦେଲା । କାଶି ପକେଇଲା ।

ଅବିନାଶର ଆଖିପତା ମଟମଟ ପଡିଗଲା । ସେ ବାଉଳା ହେଲା ପରି କହିଲା – "ଆଚ୍ଛା, ୟା' ଦାମ କେତେ ? ଓ, ପାଞ୍ଚଟଙ୍କା ମୁଁ ଦେଇ ଦେଲି ତ ! ଆଚ୍ଛା, ଏଥିରେ କୋବି ଶହେ ଟଙ୍କାର ଧରିଯିବ କହୁଛ ?"

ବୁଢ଼ା କାଶ ସମ୍ଭାଳି ସେମିତି ମୁଚୁକି ମାରି କହିଲା, "ତେମେ ବାବୁ ଭାରି କପାଳିଆ –

ଏବେ ସୁଦ୍ଧା ତମ ସୁଆଗ ଯାଇନାହିଁ । ବାଃ, ପ୍ରଭୁ ସୁଖରେ ରଖିଛନ୍ତି । କ'ଣ ଅଭାବ ଅଛି ? ଆଉ ପୁଅ ଝିଅ କ'ଣ ?"

"ଗୋଟିଏ ପୁଅ, ମନୋଜ । ମା' ଭଳି ଚେହେରା । ସେ ଏତେ ଲମ୍ବା ହେଲା କେମିତି କେଜାଣି ! ଏତିକି କହିଦେଲେ ତା' ମା' ଚିଡିଯାଏ । ସାଏବ ଚେହେରା ନେଇ ବିଲାତ ଗଲେ ଯାହା ହୁଏ । ଆରେ, ଏଇଠି ତତେ ତିନିହଜାର ଟଙ୍କାରେ କାମ ମିଳୁଛି, ତୁ କାହିଁକି ଏତେ ବାଟ ଯିବୁ ? ନ ହେଲା ଯଦି ଯିବୁ ସେ ସୁନିଲ ମିଶ୍ର ଝିଅଟାକୁ ବାହା ହେଇ ନେଇଯା ! ସୁନିଲ ମିଶ୍ର ମୋ ହାକିମ ହେଲେ ତୋର କ'ଣ ଗଲା ? ତୁ ତ ତାଠୁଁ ଆଉରି ଉଠିଆ କାମ କରୁଚୁ ! ପୁଅ, ମା' ମିଶି ମୋ ବିରୁଦ୍ଧରେ ଷଡଯନ୍ତ୍ର କଲେ । ସେମିତି ସେମାନେ ମୋପାଇଁ ଜାମା କିଣନ୍ତି, ଯୋତା କିଣନ୍ତି, ମାଉଁସ କାଲିଆ ରାନ୍ଧି ରଖିଥାନ୍ତି । ମୋର ଭିତର ବାହାର ଟିକିନିଖି ସେମାନେ ଜାଣି ଯାଇଛନ୍ତି ତ ! ସେ ଟୋକା ସାଇବାଣୀ ବିଭା ହେବ ବୋଲି କହିଥିଲେ ମୁଁ କ'ଣ ମନା କରିଥାନ୍ତି ? ହେଲା, ଏବେ ତା'ର ନାଲି ମୁଣ୍ଡିଆ ଗୋଟାଏ ପୁଅ ହୋଇଛି ।"

ସୁଶୀଲ ଚକ୍ରବର୍ତ୍ତୀ ଜାଣ ତା' ବାପ ଭଳି । ଜମା ପସନ୍ଦ କରି ପାରୁନି । କିରେ, ତୋ ନୂଆବୋଉର ସାଇବାଣୀ ହେଲେ ଅସୁବିଧା କ'ଣ ? ତା' ସାଙ୍ଗେ ଇଂରାଜୀରେ କଥା କହି ନ ପାରି ଖାଲି ଚିଡୁଛି, ମୁଁ ଆଗକାଳର ଗ୍ରାଜୁଏଟ୍ । ମୋର ଇଂରାଜୀ ପକ୍କା ! 'ନାନସି' ବି ତାଜୁବ୍ । ହୁଁ, ବୁଟନ୍ ସାହବ ପାଖରେ ମାଡ୍ରାସ୍‌ରେ ପଢିଛିଟି ! ଖେଳଘର ଲାଗିଛି ନା କ'ଣ ! ଅବିନାଶ ଚକ୍ରବର୍ତ୍ତୀ କଲେକ୍ଟର ହୋଇଥାନ୍ତା, କିରାଣୀ ହୋଇଗଲା । ଏଇ ସୁଶୀଲଟା କଲେକ୍ଟର ହବ ।

"ତମର ତା'ହେଲେ ଦି' ପୁଅ ?"

"ଏଁ!..." ପୁଣି ଆଖି ମିଟକା ମାରି ହସିଲା ଅବିନାଶ । "ହଁ – ମାନେ, ତମର କେତୋଟି ?"

"ମୋର ପରା ତିନି ପୁଅ !"

"ମୋର ବି ତିନି ପୁଅ !"

"ଗୋଟିଏ ତ ମନୋଜ, ଯେ ସାଇବାଣୀକୁ ବିଭା ହେଲା । ଆଉ ଜଣେ ସୁଶୀଳ । ଆରଟି ନାଁ କ'ଣ ?"

"ବିନୋଦ...ବିନୋଦ ଚକ୍ରବର୍ତ୍ତୀ । ସେ ପରା ପଢୁଛି ! ମୁଁ କହିନାହିଁ ସେ ପଢୁଛି ବୋଲି ? ଆଃ, ତା' ପଢା ତ ଏମିତି ସେମିତି ନୁହେଁ । ଏକାଥରେ ବ୍ରିଲିଏଣ୍ଟ ! ମାନେ ଓଡିଆରେ କହିଲେ ଖୁବ୍ ବେଶୀ, ସେଇ ବ୍ରିଲିଏଣ୍ଟ୍ ! ହେଃ, ହେଃ !"

ବୁଢା ବି କିଛି ନ ବୁଝି ହସିଲା, ହେଃ ହେଃ ! କୌଣସି କାରଣରୁ ସେ ଆମୋଦିତ ବୋଧ କରୁଥିଲା ।

"ଆଉ 'ନୋରା' ମୋ ଝିଅ ! ତା' ନୂଆବୋଉ ତାକୁ ଡାକେ ନୋରା । ସେ ବି ସେମିତି ସାଇବାଣୀ ସାଇବାଣୀ ଦିଶେ ତ ! ଲମ୍ବା ଡେମ୍ପର ଫୁଲ, ସରୁ ଡେଣାର ପକ୍ଷୀ, ଆଉ ନୋରା...ଏ ସବୁ ଏକା ! ନୋରା ପାଇଁ ପୁଅ କାହିଁ ଏ ପୃଥିବୀରେ ?"

ଅବିନାଶର ସ୍ୱର ଧିମେଇ ଆସିଲା । ସେ ଶୋଇଯିବ କି ଆଉ !

ମୁଣା ବିକାଳି ଖସ୍‌ମୁସ୍ ହେଲା ।

ଅବିନାଶ ପୁଣି ଗହୀର ପାଣିରୁ ଉଠି ଆସି ଚାହିଁଲା । ବୁଢାର କୋଳି ପରି ପାଚିଲା ଦାନ୍ତ ଆଉ ସେ କସରା ଦାଢି ଦେଖି ବୋଧେ ଟିକିଏ ହସିଲା ।

"ଆଚ୍ଛା ମଉସା, ଏଇଟାରେ କୋବି ରହିଗଲେ ବାକି ସବୁ କୋଉଠି ରହିବ ? ମାଉଁସ, ଟମାଟୋ, ଟିଣ, ମଟର ଓଗେର୍ ଓଗେର୍ ? ତମେ ଜାଣିଛ ନା ଆଜି ଗୋଟେ ବିଶିଷ୍ଟ ଦିନ । ସେମାନେ ସମସ୍ତେ ମତେ ଅପେକ୍ଷା କରି ବସିଥିବେ । ମୁଁ କାଳେ ମନ ଉଦାସ କରି ଫେରିବି ବୋଲି କେତେ କଥା ଯୋଜନା କରିଥିବେ । ମୁଁ ପରା ସେମାନଙ୍କୁ ସବୁ ଜାଣେ ! ପୁଅ ଏମିତି ବାଁ ପାଖେ ଦେହକୁ ଲାଗି ଠିଆ ହେବ । ମୋ ଦୁଇ କାନ୍ଧକୁ ଚିପି ଧରିଥିବ । ଜାଣି ଜାଣି ସେ ସୁନ୍ଦରିଆ, ସୁନ୍ଦରିଆ ନାତି ଟୋକାକୁ ମୋ କୋଳକୁ ଆଉଜେଇ ଦେବ । କହିବ, 'ବାପା, ଆପଣ କିଛି ଚିନ୍ତା କରିବେ ନାହିଁ...ଆମେ ଅଛୁ ପରା !' ମୋର ଆଉ ବୋହୂ କଲିକତି, ଭାରି ସୁନ୍ଦର ଦେଖିବାକୁ । ନରମ ମଟର ଚଣାକୁ ଘିଅ ପିଆଜରେ ଭାଜି ଦେଇ ପ୍ଲେଟ୍‌ରେ ବଢେଇ ଦେବ । ହାତରେ ପାଣି ଗ୍ଲାସ ଧରି ଅପେକ୍ଷା କରି ରହିବ । ଚାହିଁଦେଲେ ହସି ଦେବ । ଝିଅ ମୋ ଗାଲ ଆଉଁସି ଦେଇ ପଚାରିବ, 'ବାବା, ଆଜି ରାତିରେ ମାଉଁସ କ'ଣ କଲେ ତମେ ଖାଇବ ? ତମକୁ କୋପ୍ତା ଭାରି ଭଲ ଲାଗେ ନା !' କିନ୍ତୁ ସମସ୍ତେ ଗୋଟାଏ କଥାକୁ ଲୁଚେଇବାକୁ ଚେଷ୍ଟା କରୁଥିବେ । ଦେବହୁତି ସେଇଠି ନ ଥିବ । ସେ ବୁଝିଥିବ ଠିକ୍ କଥା । ମୁଁ ଆଉ ଅଫିସ୍ ଯିବିନାହିଁ । ଆଉ ସକାଳେ ଯାଇ ସଞ୍ଜକୁ ଫେରିବି ନାହିଁ । ଏ ପିଲାମାନେ ଛୁଟି ସରିଲେ ଚାଲିଯିବେ । ଦେବହୁତି ବୋଧେ ରନ୍ଧାଘରେ ଆଖି ଟୁମା ଟୁମା କରି ଓଠ ଥମ୍ ଥମ୍ କରି ବସିଥିବ । ଅନ୍ୟ ମନସ୍କ ଭୂଇଁରେ ଗାର ଟାଣୁଥିବ । ତା' ପାଖରେ ଏ ନୂଆ କୋବି ମୁଣା ଥୋଇଦେଲେ ସେ ଖୁସି ହୋଇଯିବ । ଏତେ ଗୁଡାଏ ମହର୍ଗ କୋବି ! ନିଶ୍ଚୟ ସେ ଖୁସି ହୋଇଯିବ ।"

ଅବିନାଶ ଚକ୍ରବର୍ତ୍ତୀ ଖାଲି ମୁଣାଟିକୁ ହାତରେ ଝୁଲାଇ ଓହ୍ଲେଇ ଗଲା କାଠ ବେଞ୍ଚ ଉପରୁ । ନିର୍ଜନ ବଜାର ଭିତରେ ଟଳି ଟଳି ଚାଲିଗଲେ ଆଗକୁ ।

ବୁଢା ବିକାଳି ଭୁରୁକୁଞ୍ଚେଇ ପଛକୁ ଚାହିଁ ରହିଲା । ତା' ଗେଞ୍ଜିମୁଣାରୁ ପାଞ୍ଚଟଙ୍କିଆ ନୋଟ୍‌ଟିକୁ ଦେଖି ପୁଣି ରଖିଦେଲା ।

ଅଦୃଶ୍ୟ ହୋଇଗଲା ଅବିନାଶ ଚକ୍ରବର୍ତ୍ତୀ ମୋଡ ପାଖରେ ।

ମୁଣା ବିକାଳି ବଟୁଆରୁ ପାନ କାଢି ଚୂନ ଲଗେଇଲା ।

କିଏ ଦୁଇଜଣ ସାଇକେଲ୍‌ରେ ଆସି ଓହ୍ଲେଇଲେ । କ'ଣ ଖୋଜିଲା ପରି ଏଣେତେଣେ ଚାହିଁଲେ । ବୁଢା ପାଖକୁ ଆସି ଠିଆ ହେଲେ ।

ଜଣେ ପଚାରିଲା, "ମଉସା, ଧୋତି ପଞ୍ଜାବୀ ପିନ୍ଧି ଜଣେ କିଏ ବଜାରକୁ ଆସିବାର ଦେଖିଛ ? ତା' ଆଖିରେ ବିଲାତି ଫ୍ରେମ୍‌ର ଚଷମା । ନିଶ ଦରପାଚିଲା । ଖୁବ୍ ଭଦ୍ର !"

ପାନ ଉପରୁ ଆଖି ଟେକି ସେ ଚାହିଁଲା । ସେମିତି ତଳକୁ ଚାହିଁ କହିଲା, "ଏଇ ପରା ସେ

ବାବୁ ଜଣକ ଏଇଠି ବେଞ୍ଚ ଉପରେ ବସି ମୋତେ ତାଙ୍କ ଘରର ଦୁଃଖ ସୁଖ କହୁଥିଲେ । ଭାରି ବଢିଆ ଲୋକ । କୋବି କିଣିବା ପାଇଁ ପରା ପାଞ୍ଚଟଙ୍କା ଦେଇ ମୋ ପାଖରୁ ମୁଣା କିଣିଲେ ।"

"କୋବି କିଣିବାକୁ ?"

"ଆଜ୍ଞା ! ତାଙ୍କ ଘରେ କ'ଣ ଅଭାବ ? ପୁଅ ବିଲାତରେ, ବୋହୂ ସାଇବାଣୀ, ନାତି ସାଇବ । ତାଙ୍କର ତିନି ପୁଅ, ଆଉ ଗୋଟିଏ କଲିକତି ବୋହୂ । ଝିଅ ନାଁଟି କି ସୁନ୍ଦର... କ'ଣ ଟି...ନୋରା ? ହଁ ନୋରା !" କୋଳି ପରି ଦାନ୍ତ ଝିଲ୍‌ମିଲ୍ ଦିଶୁଥାଏ ବୁଢା ବିଶି ଆଙ୍ଗୁଠି ଚେକି ଖୁସି ହୋଇଗଲା ବେଳେ ।

ସେ ଦୁହେଁ ପରସ୍ପରକୁ ଚାହିଁଲେ । ସୁଦାମ ସାହୁର ଝାଳ ସରସର ମୁହଁ ତଳକୁ ନଇଁଗଲା । "ମୁଁ ସେଇଆ ଅନୁମାନ କରୁଥିଲି ! ଆଜି ସେ ଗୁମ୍ ମାରି ବସିଲାବେଳୁ ମୁଁ ଜାଣିଲିଣି ତା'ର ମତିଗତି !"

ଅଗ୍ରଓ୍ୱାଲା କହିଲା, "ସେ ଏଇ ଅକ୍ଟୋବର ଶେଷକୁ ତ ନିଶ୍ଚୟ ଚାକିରିରୁ ବିଦାୟ ନେବ । କେମିତି ବଞ୍ଚିବ ଏକୁଟିଆ ?"

ମୁଣା ବିକାଳି ଗୁଆ ଦେଉଥିଲା ପାନରେ । ଛପ୍ କରି ମୁହଁ ଟେକି ଚାହିଁଲା ।

"ଆଜି ତା'ର ଜନ୍ମଦିନ । ଆଜି ତାକୁ ଅଠାବନ ପୂରିଗଲା ତ ! ସେ ଭାବିନେଲା ଯେ ସରିଗଲା । ସେ ବିଭା ହେଇନାହିଁ । ସଂସାର ଜଞ୍ଜାଳରେ ପଡି ଘାଣ୍ଟି ହେଇନାହିଁ ବୋଲି କେତେ ବାହାଦୁରୀ ନ ନେଇଛି ? ଆମେ ତାକୁ କେତେ ଈର୍ଷା ନ କରିଛୁ ? ତା' ଭିତରେ ଏମିତି ତଷୁନିଆଁ କୁହୁଳୁଛି ବୋଲି କେମିତି କିଏ ଜାଣିବ ?"

"ସେ କ'ଣ ସେଇ ହୋଟେଲରେ, ସେଇ ବଖରାରେ ରହିଯିବ ବାକି ଦିନ ଯାକ ?"

ଉତ୍ତରରେ ସୁଦାମ ସାହୁର ଦୀର୍ଘଶ୍ୱାସ ।

ବୁଢା ବିକାଳି କ'ଣ କହିବ ବୋଲି ଚାହୁଁଥିଲା, ରହିଗଲା ।

"ଟୋକା ବୟସରେ ସେ ବିଭା ହୋଇ ପାରିଥାନ୍ତା । ତା'ର ସେ ବିଲାତି ଫ୍ରେମ୍‌ର ଚଷମା..."

"ଆରେ ରଃ ! ସେ ଇତିହାସ ଶୁଣିଲେ ତୋ ଛାତି ଫାଟିଯିବ !"

ମୁଣା ବିକାଳି ବିହ୍ୱଳ ହୋଇ ମନକୁ ମନ ବିଡ୍‌ବିଡ୍ ହେଲା, "ତା'ହେଲେ ସେ ବାବୁ ଜଣକ ଏତେ ଅନୁଭବିଲା ପରି କଥା କେମିତି ମୋ ଆଗରେ ବଖାଣି ଗଲେ ?"

ସାଇକଲ ବଙ୍କେଇ ସେମାନେ ବାହାରି ଆସିଲେ ରାସ୍ତା ଉପରକୁ ।

ନୁଆଣିଆ ଅପରାହ୍ନର ନିର୍ଜନ ରାସ୍ତା !

ହାତରେ ଖାଲି ଝୋଲାଟିଏ ଧରି ବହୁ ଦୂରେ ଝିମିମିଲି ଦିଶୁଥାଏ ଅବିନାଶ ଚକ୍ରବର୍ତ୍ତୀ ସ୍ୱପ୍ନନାୟକ ପରି !

ଢଳନ୍ତା ଦ୍ୱିପ୍ରହର ଏକ ଝଟକୁଥିବା ନିଛାଟିଆ ସମୁଦ୍ର ।

ଅବିନାଶ ଚକ୍ରବର୍ତ୍ତୀ ଏକାକୀ ମାଛଟିଏ !



# ଅପରିବାର

ବାପକୁ ଦେଖିଲେ ହିଁ ସେ ଭୟରେ ଲୁଚି ଯାଉଥିଲା ।

ଭୋକିଲା ବାଘ ପରି ତା' ବାପ ଏକମୁହାଁ ଘର ଭିତରକୁ ପଶିବା ମାତ୍ରେ ଭିତରୁ ପାଟିତୁଣ୍ଡ ଶୁଭୁଥିଲା । ଦୁମ୍ ଦୁମ୍ ଶବ୍ଦ ଆଉ ମା'ର କାନ୍ଦଣା ! 'ପାରୁ' ତା' ସାନଭାଇ 'ସୋଲା'କୁ ଭିଡିଧରି ସୁନାରି ଗଛ ଉହାଡରେ ଲୁଚି ଯାଉଥିଲା ।

ଏଇଟା ଥିଲା ସେତେବେଳେ ପ୍ରାୟ ନିତିଦିନର ଘଟଣା ।

ତା' ମା' ଦିନେ ତାକୁ କହୁଥିଲା ଯେ ମହାବଳ ବାଘ ତା' ପିଲାଙ୍କୁ ଚୋବେଇ ଖାଇଯାଏ । ମା' ବାଘୁଣୀ ନ ଥିଲେ ପିଲାମାନେ ଗୋଟିଏ ହେଲେ ବଞ୍ଚି ପାରନ୍ତେ ନାହିଁ ।

'ପାରୁ' ଭାବୁଥିଲା ଯେ ବାପ ମାତ୍ରେ ମହାବଳ । କେବେ ହୁଏ ତ' ତା' ବାପ ତାକୁ ଚୋବେଇ ଖାଇଯିବ । ତା' ସାନଭାଇ 'ସୋଲା'କୁ ଖାଇଯିବ । ପାରୁ ଭୟରେ ଭୋକ ଶୋଷ ଭୁଲି ଯାଉଥିଲା । ତା' ନୁଖୁରା ବାଳ, ଧୂଳିମଳି ଫୁଙ୍ଗୁଳା ଦେହ, ତା' ଦୁର୍ବଳ ପଞ୍ଜୁରି, ସବୁ ଗୋଟାପଣେ ଥରି ଉଠୁଥିଲା ।

ପାରୁ ସେତେବେଳେ ପାଞ୍ଚବର୍ଷର ଝିଅ । 'ସୋଲା'ର ବୟସ ଚାରି ।

ଦିନେ ବାପ ଆସି ଦୁଆର ମୁହଁରେ ଥମିଗଲା । ତା' ଓଠ ଶୁଖି ଯାଇଥିଲା । ଆଖି ଡହକୁଥିଲା । ସେ କ'ଣଟାଏ ଖୋଜିଲା ପରି ଚାରିଆଡକୁ ଚାହିଁଲା । ତାକୁ ବୋଧେ ନିଶ୍ଚୟ ଭୋକ କରୁଥିଲା ।

ସେଦିନ ସକାଳୁ ମା' ଚାଲି ଯାଇଥିଲା କାମକୁ । ଗଲା ବେଳେ କହିଥିଲା ଯେ ବାପ ଆସିବା ଆଗରୁ ସେ ଫେରି ଆସିଥିବ । କାହିଁକି ଫେରି ନଥିଲା କେଜାଣି ? ବାପ ଘର ଭିତରକୁ ପଶିଲା ନାହିଁ । ସେଇଠି କେହି ହେଲେ ନାହାନ୍ତି ବୋଲି ଜାଣିଗଲା ନା' କ'ଣ ?

ସେ ସେଇଠୁ ସୁନାରି ଗଛ ଆଡକୁ ମୁହାଁଇଲା । ଡାକିଲା – 'ପାରୁ'! ହେ ପାରୁ ।'

ଗଛ ଆଡୁଆଳରୁ ନୁଖୁରା ମଇଳା ଅଲରା ବାଳ କେରାଏ ଦିଶିଲା । ତା'ପରେ ହଳେ ଆଖି ! 'ପାରୁ' ବିଶ୍ୱାସ କରି ପାରୁ ନଥିଲା ଯେ ତା' ବାପ ତାକୁହିଁ ଡାକୁଥିଲା । କାହିଁକି ଡାକୁଥିଲା ? ସେ ତ' କେବେ ସେମିତି ଡାକେ ନାହିଁ । ମୁହଁରେ ପଡିଗଲେ ଖାଲି କଟମଟ କରି ଅନାଏ । ପାରୁ

ତଳକୁ ମୁହଁ କରି ଆଡେଇ ହୋଇଯାଏ । ଆଜି କ'ଣ ଡାକୁଛି !

ପାରୁ ଡରି ମରି ଗଛ ଉହାଡରୁ ବାହାରି ଆସିଲା, ଶୀତ ଦିନେ ସାଙ୍କୁଡି ଯାଇଥିବା ପକ୍ଷୀ ପରି । ତା' ବାପ ତା' ଆଗରେ ବସି ପଡି ତାକୁ ସେମିତି କଟମଟ ଚାହିଁଲା । ପାରୁ ନିଶ୍ଚଳ ଠିଆ ରହିଥାଏ । ମଇଳା ଜଙ୍ଘିଆଟିଏ ନାହି ତଳକୁ ଖସି ଆସିଥାଏ । ପେଟଟି ଧୂଳି ସର ସର, ଲୋତରା ।

ସେ ହାତ ବଢେଇଲା ପାରୁ ଆଡକୁ । କହିଲା, 'ଆ...'

ପାରୁର ଗଣ୍ଠି ଗୁଡିକ ହୁଗୁଳି ଗଲା ପରି ଲାଗିଲା । ଏମିତି ବୋଧେ ବାଘ ତା' ପିଲାକୁ ଖାଇବା ଆଗରୁ ପାଖକୁ ଡାକେ ।

ସେ ପାରୁକୁ କାନ୍ଧ ଉପରକୁ ଆଉଜେଇ ନେଇ କିଛି ସମୟ ଭିଡି ଧରିଲା । ପାରୁର ବୁକୁ ପାଖରେ ବାପର ଟାଆଁସା ବାଳ ଫୋଡି ହେଉଥିଲା । ସେ ଛାନିଆଁ ହେଲା ପରି ଚାହିଁ ରହିଲା ସାମ୍ନାକୁ ।

ତା'ପରେ ତାକୁ ଛାଡି ଦେଇ ତା' ବାପ ଗୋଟାଏ କାଗଜ ପୁଡା ଫିଟେଇଲା । ପାରୁ ମଟମଟ ଚାହିଁଥାଏ ତା' ଭିତରୁ କ'ଣ ବାହାରିବ ବୋଲି । ଗୋଟାଏ ଛିଟ ଜାମା । ଖଣ୍ଡେ ଛିଟ ଜଙ୍ଘିଆ । ନୂଆ ଚକ୍‌ଚକ୍ !

ସେ ଜାମାଟାକୁ ପାରୁକୁ ପିନ୍ଧେଇ ଦେଲା । ଅନେକ ସମୟ ଲାଗିଲା ତାକୁ । ନୂଆ ଜଙ୍ଘିଆଟାକୁ ପୁରୁଣା ଜଙ୍ଘିଆ ଉପରେ ପିନ୍ଧେଇ ଦେଲା । ପିନ୍ଧିଲା ବେଳେ ପାରୁ ବାପ ମୁଣ୍ଡରେ ହାତ ଦେଇ ଗୋଡ ଗଳଉଥିଲା । ଶୀତେଇ ଉଠୁଥିଲା ।

ବାପ ତାକୁ ଟିକିଏ ଦୂରେଇ ଠିଆ କଲା ତା' ସାମ୍ନାରେ । ତା' ମୁଣ୍ଡ ସାଉଁଳି ଦେଲା । ଅଲରା ବାଳକୁ କାନମୂଳେ ଖୋସିଦେଲା । ଚାହିଁଲା କଟମଟ କରି ଗୋଡ ଠଉଁ ମୁଣ୍ଡ ଯାଏଁ ।

ଠିଆ ହୋଇ କହିଲା – "ଆ ମୋ ସାଙ୍ଗେ ।"

ପାରୁ ନୂଆ ଜାମାର ବାସ୍ନାରେ ବିଭୋର ହୋଇ ଯାଇଥାଏ । କେତେବେଳେ ସେ ବାପର ଗୋଟାଏ ଆଙ୍ଗୁଠି ଧରି ନେଇଛି, ଜାଣି ପାରି ନାହିଁ । ଆର ହାତଟିକୁ ଜାମା ଉପରେ ସାଉଁଳି ଆଣିଲାବେଳେ ବୁଲି ଚାହିଁଲା । ଯୋଡିଏ ଆଖି ତାକୁ ସୁନାରି ଗଛ ଉହାଡରୁ ଅନେଇ ରହିଛି ।

ପାରୁ ଦାନ୍ତ ଦେଖେଇ ହସିଦେଲା । ସେଇଟା ସେମିତି ହସକୁରିଟାଏ ।

ମୋ ପାଖରେ ବାପ ଟାଉଟାଉ ଚାଲିଲା । ପାରୁ ନ ଧାଇଁଲେ ହାତ ଛାଡି ହେଇଯିବ । ପାରୁର ମନେ ହେଲା ସେମାନେ ବୋଧେ ଦୌଡି ପଳଉଛନ୍ତି ପଛକୁ ନ ଚାହିଁ । ପଛରୁ ହୁଏତ କିଏ ଗୋଡେଇଚି । ପେଚି ବୋଉ ପରି ତାକୁ ମନେ ହେଲା । ସେ ରାକ୍ଷୁଣୀ ବୁଢୀ ତା' ବରକୋଳି ଗଛକୁ ଜଗି ବସିଛି ଦିନରାତି । ...ସେଦିନ ସୋଲାକୁ ନେଇ ସେ ଜମା ପାଞ୍ଚଟି କଞ୍ଚା କୋଳି ଗୋଟେଇଚି କି ନାଇଁ ସେ ତଡି ଆଣିଲା । ସେ ଦିହେଁ କିଲିକାଲିଆ ରଡି ଛାଡି ଧାଇଁ ଆସିଲେ ଏକା ନିଶ୍ୱାସରେ । ସୁନାରିଗଛ ମୂଳେ କୋଳି ଖିଆ ହେଲା । ଆମ୍ବିଳିଆ କଷାଳିଆ ନାଲୁଆ କୋଳି...କିନ୍ତୁ କି ବଢିଆ !...

ପାରୁକୁ ଭୋକ ଲାଗିଲା କି କ'ଣ । ସେ ଚାହିଁଲା ବାପ ମୁହଁକୁ । ମୋ ବୋପା କିଲୋ ! ଭୋକ କରୁଚି କହିଲେ ବୋଧେ ସେ ଚେବେଇ ଖାଇଯିବ ।...

କିନ୍ତୁ ନଈକୂଳ ଆମ୍ବତୋଟା ପାଖେ ସେ ଥୟ ହୋଇ ଠିଆ ହେଲା । ବସିପଡି ଗାମୁଛାରେ ବିଞ୍ଚିହେଲା । ଚାହିଁ ରହିଲା ଗୋଟାଏ ଆଡକୁ । ଉଁ କି ଚୁଁ କଲା ନାଇଁ । ମଝିରେ ମଝିରେ ତା' ତୋଳା ବୁଲି ଯାଉଥିଲା ।

ତାକୁ ବି ବୋଧେ ଭୋକ କରୁଥିଲା । ବାଘକୁ ଭୋକ କରୁଥିଲା । ଆଉ ଟିକେ ପରେ ସେ ବୋଧେ ପାରୁକୁ ଚେବେଇ ଖାଇଯିବ... । ମା' କହୁଥିଲା...

ତା' ବାପ ଆଉ ଗୋଟାଏ କାଗଜ ପୁଡିଆ କାହୁଁ ବାହାର କରି ଫିଟେଇଲା । ତା' ଭିତରୁ ଯାହା କାଢିଲା ପାରୁ ତାକୁ ଦେଖୁ ଦେଖୁ ଚିହ୍ନିଦେଲା । ସେ ଜିନିଷ ସେ ଥରେ ଖାଇଥିଲା । ସେଇଟା ସହରରେ ମିଳେ । ତା' ମଙ୍ଗ କୁଣ୍ଡ କୁଣ୍ଡ । ଦାନ୍ତ ବାଜିଲେ ଭାଙ୍ଗିଯାଏ । ଭାରି ହାଲୁକା ।

ଚାରୋଟି ବିସ୍କୁଟ ତା' ବାପ ପାରୁକୁ ବଢେଇ ଦେଇ କହିଲା – 'ଖା'...

ପାରୁ ହାତରେ ଜାମାଟାକୁ ଚିମୁଟୁ ଥାଏ । ସାହସ କୁଳଉ ନଥାଏ । ବାପ ଆଖିକୁ ଚାହିଁ ଡରି ଯାଉଥାଏ । ଶେଷକୁ ସେ ଚାରିଟି ଯାକ ଅମୂଲ୍ୟ ନିଧି ମୁଠେଇ ଧରିଲା । ଭାବି ପାରିଲା ନାହିଁ, ତାକୁ ନେଇ କ'ଣ କରିବ । ଆର ଥର ତା' ଭାଗରେ ଫାଳେ ବିସ୍କୁଟ ପଡିଥିଲା । ତାକୁ ସେ ଚାଖି ଚାଖି ଗୋଟାଏ ଓଳି ଖାଇଥିଲା ।...

ବାପ କ'ଣ ଭାବିଲା କେଜାଣି । ପାରୁକୁ କହିଲା – 'ଆ, ମୋ କାନ୍ଧରେ ବସ୍ ।'

ଜାମା ମୁଣାରେ ଚାରିଟି ବିସ୍କୁଟ ଭରି ଦେଇ ସେ ପାରୁକୁ କାନ୍ଧରେ ବସେଇ ଚାଲିଲା ଦୁମ୍ ଦୁମ୍ । ପାରୁ ଦୁଲୁକିଲା । ଚମକିଲା ! ବୁଝି ପାରିଲା ନାହିଁ କିଛି । ମାଛି ଅନ୍ଧାରଟାଏ ମଡେଇ ଆସିଲା । ପାରୁ ପଡିଯିବା ଭୟରେ ବାପର ଚୂଳକୁ ଚଉରସ ଧରିଥାଏ ।

ଆସ୍ତେ ସ୍ଥିର ହୋଇ ଆସିଲା ତା' ପଞ୍ଜୁରୀ । ତାକୁ ଭଲ ଲାଗିଲା । ଭୋକ କଲା ସେ ଗୋଟାଏ ହାତରେ ବାପ ମୁଣ୍ଡକୁ ଧରି ଆର ହାତରେ ଗୋଟିଏ ବିସ୍କୁଟ କାଢି ଶୁଙ୍ଘିଲା । ...ଆଉ ତ' କେହି ନାହାନ୍ତି ଭାଗ ନେବାକୁ । ଚାରିଟି ଯାକ ତା'ର । ସେ ଏକା ଥରକେ ଅଧେ ବିସ୍କୁଟ ପାଟିରେ ପୁରେଇ ଚେବେଇଲା । ଇସ୍ ଆଉ ଟିକିଏ ହେଇଥିଲେ ପାରୁର ଜାବ ହୁଗୁଳି ଯାଇଥାନ୍ତା । ସେ ଆଖି ବୁଜି ଅନୁଭବ କଲା ଯେ ସେ ବିସ୍କୁଟ ଖାଉଚି ତା' ବାପ ତାକୁ କାନ୍ଧରେ ବସେଇଚି ନୂଆ ଜାମା ପିନ୍ଧେଇଚି ସବୁ ମିଛ କଥା । ...ତା' ବାପ ବାଘ ନୁହେଁ । ତା' ବାପ ବଢିଆ । ଭାରି ଭଲ । ତା' ବାପକୁ ସେ ଯୋଡିଏ ବିସ୍କୁଟ ଦବ କି !

ସେଇ ସନ୍ଧ୍ୟାରେ ପାରୁକୁ ତା' ବାପ ବାହିନାପତି ଘରେ ତିରିଶ ଟଙ୍କାକୁ ବିକିଦେଲା !

ମଦୁଆ; ଜାନୁଅର୍ କାହାଁକା !...

ବଟ ବେହେରା, ଆଜି ନୁହେଁ, କୋଉକାଳୁ ମଦ ଖାଇ ଆସିଛି । ମଦୁଆ ନୁହେଁ ତ ଆଉ କ'ଣ ? ସେ ନିଶା ଖାଇବାକୁ ମାଇପର ରୋଜଗାର ଲୁଟି ନେଇଚି, ତା' କାନର ନୋଳି ବିକି

ଦେଇଛି ।

ହାରାମି ଶେଷକୁ ଝିଅବିକା ଟଙ୍କାରେ ନିଶାପାଣି ଖାଇଦବ ନା' କ'ଣ ?

ସେ କିନ୍ତୁ ଟଙ୍କା ନେଇ ଫେରି ଆସିଲା ।

ରାତିରେ ରାସ୍ତା ଉପରୁ ତା' ପାଦ ଶବ୍ଦ ଦୁମ୍ ଦୁମ୍ ଶୁଣାଯାଉଥିଲା । ଦୁଆର ମୁହଁରେ ସୋଲାକୁ କାଖେଇ ତା' ମା' ଜେମା ଛିଡା ହୋଇଥିଲା । ବଟ ବେହେରାକୁ ଦେଖି ହାଉଳି ଖାଇ କାନ୍ଦି ଉଠିଲା । ...କୁଆଡେ ଗଲା ତା' ପାଞ୍ଚବର୍ଷର ଝିଅ ? କାହିଁ ଗଲା ପାରୁ ?

ସେ ବଟ ଉପରକୁ ଝାମ୍ପି ପଡି ବିଦାରି ଦେଇଗଲା । 'କହରେ, ମଦୁଆ, ରଇଜଳା, କ'ଣ କଲୁ ମୋ ଝିଅକୁ ।'

ବଟ କିଛି ଉତର ନ ଦେଇ ମାଇପର ଚୁଟିଧରି ଝିଙ୍କିନେଲା ଘର ଭିତରକୁ, ନିସ୍ତୁକ ଛେଚିଲା ସେଇଠି । ନିଜେ ମୁଣ୍ଡ ବାଡେଇଲା କାନ୍ଥରେ । ମା' ପୁଅ ରଡି ଛାଡୁଥିଲା ବେଳେ ବଟିଆ କାନ୍ଥକୁ ଆଉଜି ବସି ରହିଲା ।

ମା'ଟାତ'! ଭୂଇଁ ଦରାଣ୍ଡି ବାହୁନି ହେଲା – "କୁଆଡେ ଗଲା ମୋ ପାରୁ ?"

"ପାରୁ, ଲୋ ! ...କଁଣ କଲୁ ତାକୁରେ ରାକ୍ଷାସ ?"

ବଟ କିଛି ନ କହି ବସିଥାଏ ସେମିତି ।

ଟିକିଏ କାନ୍ଦ ଧିମେଇବାରୁ କହିଲା – "ମୁ ତାକୁ ଭଲ ଘରେ ଦେଇଚି । ଦି ଓଳି ଖାଇବ । ବଞ୍ଚିଯିବ, ଏଇଠି ଦିନେ ଭୋକରେ ମରି ଯାଇଥାନ୍ତା !"

ଗାଁରେ ଆଉ ଖାଇବାକୁ ମିଳିବ ନାହିଁ ବୋଲି ଜେମା ବି ଜାଣି ସାରିଥିଲା । ଯେ ସବୁ ପାଞ୍ଚ ସାତ ଜଣ ମୂଲ କିଣୁଥିଲେ ସେମାନେ ଏବେ ନିଜେ ଖାଟିବାକୁ ବାହାରିଲେଣି – ମହର୍ଗ କାଳ ପଡିଛି । ବଞ୍ଚିବା ଦୁଷ୍କର । ଗାଁରେ ପାଣି ଛାଡି ଗଲାଣି । ଗଛପତ୍ର ମଉଳି ଗଲାଣି । ବଟିଆ କାଠ ବିନ୍ଧାଣି କାମ କରୁଥିଲା । ଶେଷକୁ ମାଟିହାଣିଲା ମୂଲ ପାଇଁ । ତା' ବି ଆଉ ମିଳିଲା ନାହିଁ । ବାରେସି ବଟାଳି ବିକିଦେଲା ।

ଜେମା କ'ଣ ବଟିଆକୁ ଜାଣି ନାହିଁ ? ...ତା' ଗେରସ୍ତ ତାକୁ ବାଡାଏ । ତା' ହାତରୁ ମୂଲ ଛଡେଇ ନେଇ ନିଶା ଖାଇଦିଏ । ହେଲେ, କ'ଣ କରିହେବ । ନିଶା ନ ଖାଇଲେ ବେରୋଜଗାର ମରଦଟା ମୁଣ୍ଡରେ ହାତ ଦେଇ କାନ୍ଦିବ – ଜେମା ଏକଥା କେବେ ସହି ପାରିବ ନାହିଁ । ତା' ଛାତି ଫାଟିଯିବ ।...

ଦିନେ ଜେମା ସହଳ ଫେରି ଆସି ଦେଖିଲା ଯେ ବଟ ବସି ଘର ଲିପୁଚି । ସେ ଦେଖୁ ଦେଖୁ ହସି ପକେଇଲା । ବଟିଆ ଚୋର ଧରା ହେଲାପରି ଠିଆ ହୋଇ ରହିଲା । ହାତରୁ ଗୋବର ପାଣି ଛିଞ୍ଚାଡିଲା । ଜେମା ହସି ହସି ଲୋଟି ଯାଉଥାଏ । ଫାଉଁ କିନା ବଟିଆ ଜଳି ଉଠିଲା । ଗୋଟାଏ ଗୋଇଠାରେ ଗୋବର ହାଣ୍ଡିକୁ ଭାଙ୍ଗିଦେଇ ଜେମାର ଚୁଟିଟାକୁ ଧରି ଘୋଷାରି ନେଇଗଲା । ବାଡେଇଲା ମନଇଚ୍ଛା । ଦଳି ଚକଟି ନାରଖାର କରି ପକେଇଲା ! ...ଧନ୍ୟ ସେ ମାଇକିନା,

ଏତେ ବ୍ୟାଘାତ ସହିବାକୁ!

ଭୋକ କଲେ ବଟିଆ ଜ୍ଞାନ ହାରିଯାଏ । ବାଘ ଗର୍ଜିଲା ପରି ହେଣ୍ଟାଳେ । ଘରେ ପହଞ୍ଚିଲେ ଟା' ମୁହଁରେ କ'ଣ କୁଢେଇ ନ ଦେଲେ ସେ ତଣ୍ଟି କଣା କରି ପିଇଯିବ । କିନ୍ତୁ ଏବେ ଦିନେ ଦିନେ ଜେମା କେବଳ ଶୂନ୍ୟକୁ ଚାହିଁ ବସି ରହେ । ମାଣ୍ଡିଆ ଟମ୍ପାରେ କ'ଣ ବାଘ ପୋଷି ହୁଏ ? ...ବଟିଆ ବାଡାଏ, ଗର୍ଜେ, ଦୁମ୍ ଦୁମ୍ ଦୌଡି ପଳାଏ । ଜେମା ବୁଝିଯାଏ ଯେ ସେ ସେମିତି କାନ୍ଦେ । ମରଦଟା ଆଉ କ'ଣ କରନ୍ତା ? କୋହ ଲୁଚେଇବାକୁ ପାଚିକରେ ।

ସେ କେତେଥର କହିଲାଣି ଘର ଛାଡି ଯାଇ ସହରରେ ମୂଲ ଲାଗିବାକୁ । ସେଠି ଖାଇବାକୁ ମିଳିବ । ଜେମା ଆଦୌ ରାଜି ହେଇ ପାରିନାହିଁ । ବଟ ଚିଡିଯାଇ କହେ – 'ମର ଏଇଠି ପଡି ପଡି ଭୋକରେ । ମୁଁ ଯାଉଚି ଏକୁଟିଆ' । – ସେ ବି ଯାଇପାରେ ନାହିଁ । ପିଲାଙ୍କ ମୁହଁକୁ ଚାହିଁ ପାରେ ନାହିଁ । ସହି ପାରେ ନାହିଁ । ମାଇପକୁ ବାଡାଏ । ମନ ଇଚ୍ଛା ଗର୍ଜେ । ନିଶାପାଣି ଟିକିଏ ଖାଇ ଭୋକ ମାରିଦିଏ । ନିପଟ ମଦୁଆଟାଏ ତ' ବଟ ବେହେରା ।

ସେ ଯଦି କହୁଛି ଚାଲି ଯିବାକୁ ଜେମା ଯାଉନାହିଁ କାହିଁକି ? ସେ ଘର ଡିହ ଜେମାର । ତା' ବୁଢା ବାପର । ସେ ଚାହିଁଚି ବାଡିରେ କୂଅ ଖୋଳିବ । ପାଣି ମଡେଇ ଶାଗ ମୁଗ କରିବ । ବାଡ ପକେଇବ, ଘର ତୋଳିବ । ବଟିଆ ନିଜେ ସେଥିରେ ମାଟି କାଙ୍କ ଧରି ଗୁଡାଏ ଖୋଳି ପକେଇଥିଲା । ଦିଜଣଯାକ ମିଶି ମଣିଷେ ଗହୀର ଯାଏ କୂଅ ଖୋଳିଦେଲେ । ଘରେ ମେହେନତ କରି ପେଟ ପୋଷି ହେଲାନାହିଁ । ବନ୍ଦ ହେଲା କୂଅ ଖୋଳା । ସେଇଟା ଅସ୍ୱରା ଗାତ ହୋଇ ପୋତି ହୋଇଗଲା । ଜେମା ଚାହିଁଥିଲା ଛେଳି ରଖି ଗୋଠ ବଢେଇବ । ଛେଳି ଛୁଆଟାଏ ପାଳିଥିଲା । ଦିନେ ଏମିତି ନିଅଣ୍ଟିଆବେଳ ପଡିଥାଏ । ଛେଳିଟା ସେତେବେଳକୁ ଟଳମଳ ଗର୍ଭିଣୀ । ଟା' ବେକରେ ଗାମୁଛା ଗୁଡେଇ ଏ ମଦୁଆ ଘୋଷାରି ନେଇଗଲା । ଫେରିଲା ନିଶା ପେଟେ ପିଇ ଦେଇ । ପିଲାଙ୍କ ପାଇଁ ଆଣିଥିଲା ବିସ୍କୁଟ । ଜେମା ପାଇଁ ଝଲେବି । ପୋଡି ଯାଉକିନା' ଜେମାର ଝଲେବି ଖିଆ ।...

ସେ ଜାଣେ ବଟିଆ ଦିଦିନ ଓପାସରେ ରହିଚି । ପିଲାଙ୍କ ଟମ୍ପା ଛୁଇଁ ନାହିଁ । ଜେମା ନିଜେ ହେଲେ କ'ଣ ତୁଣ୍ଡରେ କିଛି ଦେଇଚି ? ସେମିତି ଖାଡା ଉପାସ । ପେଟ ଭିତରେ ନିଆଁ ଜଳି ଲିଭି ଯାଉଛି । ରାତି ପାହିଲେ କ'ଣ ହବ ? କେମିତି ପିଲାଙ୍କୁ କଞ୍ଚା ପାଣିରେ ବଞ୍ଚେଇ ରଖିବ ? – ଏଇ ଚିନ୍ତା ମଡେଇ ହୋଇ ପଡିଥିଲା ଅନ୍ଧାର ପରି !

କିନ୍ତୁ 'ପାରୁ'କୁ ନେଇ ସେ କାହାକୁ ଦେଇଦେଲା ? କାହିଁକି ଦେଇଦେଲା ?

'ତେତେ କ'ଣ ଭାରି ହେଇଥିଲା ମୋ ଝିଅ ? ମୁଁ ତାକୁ ଯେମିତି ମନ ସେମିତି ପୋଷି ଥାନ୍ତି ! – ମୋ ପିଲାକୁ ତୁ କୁଆଡେ ଛାଡି ଆସିଲୁ କହ !'

'ମୁଁ ତାକୁ ବିକି ଦେଲି । ଏଇ ନେ ଟଙ୍କା ।'

ଟଙ୍କେ, ଦିଟଙ୍କିଆ, ପାଞ୍ଚ ଟଙ୍କିଆ କୋଚଟିଆ ନୋଟ କାଢି ସେ ତଳେ ଛେଚି ଦେଲା ।

ଏଡେଟାମାନ ଆଖି କରି ଜେମା ତାଟକା ହେଲା ପରି ଚାହିଁଲା ସେ ନୋଟ ବିଣ୍ଡାକୁ । କଂସେଇ ପାଖରେ ରକ୍ତ ସରସର ଛୁରୀଟାକୁ ଦେଖିଲା ପରି ମୁହଁ ଘୋଡେଇ ରଡି ଛାଡିଲା ଜେମା । ତା' ଦେହସାରା ଠକ୍ ଠକ୍ କମ୍ପୁଥିଲା ଗୁଳି ଚୋଟ ଖାଇଥିବା ଜନ୍ତୁଟିଏ ପରି ।

ବଟ ଭୁସ୍ କିନା ଉଠି ଚାଲିଗଲା ବାହାର ଅନ୍ଧାରକୁ ।

'ସୋଲା' ଗରିବ ପିଲାର କଣ୍ଢେଇଟିଏ ପରି ଛାନିଆ ହେଇ ଚାହିଁ ରହିଥିଲା । ମା' ଦେହରେ ଲେସି ହେଲା ପରି ବସିଥିଲା । କାବାହେଇ ଯାଇଥିଲା ପିଲାଟା । ତା' ବୁକୁରେ ଛନକା ପଶି ଯାଇଥିଲା ।

କେତେବେଳକୁ ମୁହଁରୁ ଚଟକିନା ହାତ ଆଡେଇ ଜେମା ସେମିତି ଡଗ ଡଗ ଚାହିଁଲା ସେ ନୋଟ ବିଡାକୁ । ମୁହଁ ଲୁହ ଶିଙ୍ଘାଣିରେ ଓଦା ସରସର । ସେ ଖପ୍ କିନ ଟଙ୍କା ଗୁଡାକୁ ମୁଠା କରି ଠିଆ ହୋଇପଡିଲା । ଚାଲିଲା ବାହାରକୁ ।

ତା'ର ଅଷ୍ଟାଙ୍ଗ ଶରୀର ବାହୁନୁଥିଲା । 'ପାରୁ ଲୋ...ମୋ ମା, ପାରୁ...ପାରୁ...!'

ସେ ଅନ୍ଧାର ଭିତରକୁ ପାଟିକରି ଡାକିଲା – 'ଆରେ ରାକ୍ଷାସ, କହ କାହାକୁ ବିକି ଦେଲୁ ମୋ ଝିଅକୁ ମୁଁ ତା' ମୁହଁକୁ ଏ ଟଙ୍କା ଫିଙ୍ଗି ମୋ ଝିଅକୁ ମୁକୁଳେଇ ଆଣିବି । କହ କାହାକୁ ଦେଇଛୁ ?'

ଅନ୍ଧାର ବାଘ ଗୁମ୍ଫା ଭଳି ନୀରବ ।

ଜେମାର ଆଉ କୌଣସି କଥାର ଜ୍ଞାନ ନାହିଁ । ସେ ଲସର ପସର ଧାଇଁଲା ରାସ୍ତାକୁ । ପଛରେ ଭେଁ ଭେଁ ରଡୁଥିଲା ସୋଲା ଏବଂ ପୃଥିବୀ । ଜେମା ସେମିତି ଧାଇଁ ଯାଇଥାନ୍ତା ଯୁଆଡେ ମନ ସେଆଡେ ।

'ଆଲୋ, ହେ, କୁଆଡେ ଯାଉଚୁ ?' ବଟିଆ ପାଟିକଲା ସୁନାରି ଗଛ ପାଖରୁ । ଜେମା ଫେରିଲା ନାହିଁ । ସେଇଠୁ ଠିଆ ହୋଇ ପଚାରିଲା – 'ମତେ କହ ସେ ଅଲପେଇସ ନାଁ । କୋଉଠି ତା' ଘର ।'

ବଟିଆ ଅନ୍ଧାର ଭିତରୁ କହିଲା – 'ଫେରିଆ ! ସେ ପାରୁକୁ ଦବ ନାଇଁ ।'

ଜେମା ଝପଟି ଆସିଲା ସୁନାରି ଗଛ ପାଖକୁ । 'କାଇଁକି ଦବ ନାଇଁ । – ଆମେ କ'ଣ ତା'ର ପଇସାଟିଏ ଖାଇଚୁ ? ତା'ର ଏ ସବୁ ପୋଚ ଟଙ୍କା ମୁଁ ତା' ଉପରକୁ ଫିଙ୍ଗି ଦେବି । ...କହିବି 'ମୋ ଝିଅକୁ ଦେ ! ଦବ ନାଇଁ !! ମୁଁ ତା' ଘରେ ନିଆଁ ଲଗେଇ ଦେବି । ଏକାଠି କରି ଦେବି ଶହେ ଲୋକ !'

ବଟ ବସିଥାଏ । ଘୁଞ୍ଚୁ ନ ଥାଏ ଜମା । ଗାଉଁ ଗାଉଁ ହେଲା ପରି କହିଲା – 'ମୁଁ ତା' ପଇସା ଆଗୁଆ ଖର୍ଚ୍ଚ କରି ଦେଇଚି ।'

ଜେମା ଚିହିଁକି ଉଠିଲା – 'କଣ କହିଲୁରେ, ମଦୁଆ, ହାଣମଙ୍ଗଳ ? ...ତୁ ମୋ ପାରୁକୁ ବିକି ନିଶା ଖାଇଦେଲୁ ? ପୋଡିଯାଉ କିନା ତୋ ବାପ ପଣିଆ !'

ସେ 'ବଟ'ର ଚୁଟି ଧରି ଝିଙ୍କାଝିଙ୍କି କରି ପକେଇଲା । ବିଧା ଗଦ୍ରପୁଡା ବସେଇ ଦେଇଗଲା ମନଇଚ୍ଛା ! –

ବଟିଆ ସେମିତି ନିଶ୍ଚଳ ବସିଥାଏ ।

ସେ କ'ଣ ଜେମାକୁ ଜାଣି ନାହିଁ । ଏମିତି ଛଟେଇ ପଟେଇ ହେଇ ଶେଷକୁ ସେ ସ୍ଥିର ହେଇଯିବ । ଛେଳି ବିକିଲା ଦିନ ସେମିତି ଚିହିଁକିଲା । ବଟିଆ କ'ଣ ସତେ ଚାହିଁଥିଲା ଗର୍ଭିଣୀ ଛେଳିଟାକୁ ବିକି ଦବାକୁ । ସେ ଜେମାର ବେଙ୍କିତ୍ ସହି ପାରିଲା ନାହିଁ । ତା' ଚିରା ଶାଢୀ ସନ୍ଧାରେ ସେ ବେହିଆ ଶୁଣି ପୁଅ ତା' ଦିହ ମୁଣ୍ଡକୁ ଅନେଇବା ସେ ସହି ପାରିଲା ନାହିଁ । ଛେଳି ପାଇଁ ଜେମା କାନ୍ଦିବାରୁ ସେ ତାକୁ ନିର୍ଘାତ ଛେଚିଲା । ତାକୁ ଜାବୁଡି ଧରି ନୂଆ ଶାଢୀଟା ତା' ଦିହରେ ଗୁଡେଇ ଦେଲା । ଏଇନା ଜେମାକୁ କେହି ଦେଖିଲେ କହି ପାରିବ ତା' ଗେରସ୍ତ ନାହିଁ ବୋଲି ? ପିଲାଙ୍କୁ ବିସ୍କୁଟ, ଜେମା ପାଇଁ ଝଲେବି କିଣିସାରି, ମୁନ୍ଦେ ନିଶାପାଣି ପିଇ ଦେଇଥିଲା ! ଏମିତି ତ ଚାଲିଛି କୋଉକାଳୁ । ହେଲେ ଏମିତି ନିଅଣ୍ଟିଆ ଦିନ କେବେ ନ ଥିଲା । ବଡ଼ିଆଳ ଝିଅଟା 'ପାରୁ' । ପାଞ୍ଚ ବର୍ଷର ଝିଅକୁ କିଏ ଦେଖିଲେ କହିବ ଦଶବର୍ଷ । ଏବେ ନ ଖାଇ ନ ପିଇ କ'ଣ ଅବସ୍ଥା ହେଲାଣି ତାର । ସେ କ'ଣ ଏଇଠି ବଟ ବେହେରା ଆଗରେ ଶୁଖି ଶୁଖି ମରିବ ? କ'ଣ ହାନି କାମକଲା ବଟିଆ ଯଦି ତାକୁ ନେଇ ବାହିନୀପତି ଘରେ ଦେଇ ଦେଲା ? କ'ଣ ନା ଝିଅକୁ ବିକିଦେଲା । ଆବେ୍ ଯା, ମୋ ଝଅକୁ ମୁଁ ବିକିଲି, କାହାର କ'ଣ ଗଲା ? ...ମୋ ଇଚ୍ଛା !...

ଜେମା ନିଜେ ବହେ ଛେଚି କୋଡି ହେଲା । ପାରୁ ନାଁ ଧରି କେତେ ବାହୁନିଲା । ତାରି ଭିତରେ ଉଠି ଆସି ବଟର ଦୁଇ କାନ୍ଧକୁ ଧରି ଝୁଙ୍କିଲା ।

କାନ୍ଦ ଭିତରେ ପଚାରିଲା – 'କେତେ ଟଙ୍କାର ନିଶା ଖାଇଲୁ କହ ! ମୁଁ ସବୁ ବନ୍ଧା ପକେଇ ଭରଣା କରି ଦେବି । କହ, ମୋ ପାରୁ ରକ୍ତ ମାଉଁସ କେତେ ଖାଇବୁ, କହ ।'

ବଟ ଉଦାସ ବସିଥାଏ । ତାତିଲା ବାମ୍ଫ ଆଉ ପାଣି ବର୍ଷୁଥାଏ କୋପିନୀ ମାଇକିନା । 'ଆରେ–କହ, ନ ହେଲେ ତୋ' ଆଗରେ ମୁଣ୍ଡ ପିଟି ମରିଯିବି ।'

ବଟ ଶେଷକୁ ଖୁବ୍ ମୋଟା ଗଳାରେ କହିଲା – 'ମୁଁ ନିଶା ଖାଇ ନାହିଁ ।'

'ମୁଁ ନିଶା ଖାଇ ନାହିଁ – ଭାରି ନିଉତୁରିଆ ଦେଖେଉଚି । ଟଙ୍କା ହାତରେ ତୁ ନିଶା ନ ଖାଇ ରହିବୁ ? ନିଶା ତ' ଖାଇନୁ, ପଇସା କେମିତି ନିଅଣ୍ଟ ଧରିଲା ?'

"ଆଗତୁରା ଟଙ୍କା ଦଶଟା ଆଣି ପାରୁ ପାଇଁ ଜାମା ଜଙ୍ଘିଆ କିଣି ଦେଲି । ଲଙ୍ଗଳା ପିଲାଟାକୁ ତା' ଘରେ କେମିତି ଦେଇଥାନ୍ତି ?"

ଜେମା ଆଖିରୁ ଡବଡବ ପାଣି ନିଗିଡିଗଲା । ପାରୁ ପାଇଁ ଜାମା କେତେକାଳୁ ନ ଥିଲା ବୋଲି ସେ ଜାଣିଥିଲା । ମାଇକିନିଆ ଝିଅଟା ଫୁଙ୍ଗୁଳା ଦିହରେ କେମିତି କାହା ଆଗରେ ଠିଆ ହେଇଥାନ୍ତା ଭଲା । ବଟିଆଟା ମଦୁଆଟାଏ, ସେ କ'ଣ ଆଉ କରି ପାରିଥାନ୍ତା !

ଜେମା ସକ ସକ ହେଇ ସେଇ ଅନ୍ଧାରରେ ଗୁଡାଏ କାନ୍ଦିଲା । ସୋଲାକୁ କୋଳରେ

ପୁରେଇ ବସିଲା ଏବଂ କାନ୍ଦିଲା । ସେ ଭଲା ଆଉ କ'ଣ କରିପାରିଥାନ୍ତା ?

"ତୁ କେବେ ମୋ ଝିଅକୁ ଆଣିବୁ କହ ?"

ବଢ଼ିଆ ଚୁପ୍ । ଗଛପତ୍ର ଟାଙ୍ଗରା ଭୂଇଁ, ଆକାଶ ସବୁ ଚୁପ ।

ମା' ବୁକୁ ପାଖରେ ମୁହଁ ଗୁଞ୍ଜି ସୋରା କହିଲା – 'ମେତେ ଭୋକ କରୁଚି ।'

ଅନ୍ଧାର ଆହୁରି ନିଘଞ୍ଚ ହୋଇ ଚିପି ଆସିଲା ଚଉରିଆଡୁ । କିଏ ନାହିଁ କଲା ତୋତେ ଭୋକ କରୁଚି ବୋଲି । ମାଣ୍ଡିଆ ତମ୍ପାଯାକ ତ ସବୁ ପାଇଚୁ । ପାରୁ ତ' ନାଇଁ ତା' ଭାଗ ପିଇବାକୁ । କାଲି କ'ଣ କରିବୁ ! କାଲି ପାଇଁ ତ କିଛି ନାଇଁ !

ଜେମା ଶୁଣି ପାରିଲା ବଟିଆ ପେଟ କଡ କଡ ଡାକିଲା । ଭୋକିଲା ମଣିଷଟା ଘାଉତା ବାଘ ନୁହେଁ କି ?...ସେ ଝାଳେଇ ଗଲା ଗୋଡଠଉଁ ମୁଣ୍ଡଯାକେ । ତା' ପେଟ ଭିତରେ ରଡ ନିଆଁ ପରି ଦହକି ଉଠିଲା ଦୁଇ ଦିନର ଭୋକ ।

ବଟ ଚମକିଲା ପରି ଠିଆ ହୋଇ ପଡିଲା । ଗୋଡ ଫରକଟେଇ ଅଣ୍ଟାରେ ହାତ ଦେଇ ଅନ୍ଧାର ଭିତରେ ଆହୁରି ଅନ୍ଧାରର ବିକଟାଳ ମୂର୍ତ୍ତି ।

ଜେମା 'ସୋଲା'କୁ ଭିଡି ସାଙ୍କୁଡି ଗଲା ।

'ମତେ ସେ ଟଙ୍କା ଦେଇପକା !' – ମେଘ ଡାକିଲା ଉପରୁ ।

କେମିତି ସାହାସ କଲା କେଜାଣି । ଜେମା କହିଲା – 'ନା ମୁଁ ଦେବି ନାଇଁ ।'

ତା'ପରେ ଚୁଟି ଧରି ସେ ଘୋଷାରି ନେଇଥାନ୍ତା । ବର୍ଷିଯାଇଥାନ୍ତା, ଭୋକ, ରାଗ, ଲୁହର ଫୁଟନ୍ତା ମେଘ ।

କାହିଁ, ସେମିତି କିଛି ହେଲା ନାହିଁ ତ ।

ଜେମା ତଳେ ଭରା ଦେଇ ଧୀରେ ଉଠିଲା । ଘର ଭିତରେ ପଶିଗଲା । ତା' ପଛରୁ ଶୁଭିଲା – 'ଦି ଟଙ୍କାର ଚୁଡା ଆଣିବି ପଇସା ଦେ । ନ ହେଲେ କାଲିକି ସୋଲା ମରିଯିବ ।'

ନିର୍ଜୀବ ପରି ଠିଆ ହୋଇଗଲା ଜେମା । ତା' ହାତ ଗୋଡରୁ ଜିଅ ଛାଡିଗଲା । ମୁଠା ହୁଗୁଳିଗଲା । ନୋଟ ବିଡାଟା ଥପ୍ କିନା ପଡିଗଲା ତଳେ ।

...ତେନ୍ତୁଳି, ଲଙ୍କା, ବଟୁରା ଚୁଡା, ଲୁଣିଆ ଲୁହ, କୋହ, ଭୋକ ସବୁ ଏକାକାର ହୋଇଗଲା ନୀରବ ଅନ୍ଧାର ଭିତରେ ।

X X X X

ଅତୀତର ସମଗ୍ର ଘଟଣାକୁ ଏମିତି ଖଞ୍ଜିନେଇ ମୁଁ ବୁଡି ରହିଥିଲା ବେଳେ ଶୁଣିଲି – 'ବୁଝିଲେ ରଥବାବୁ । ଏଇ ସେଇ ସୋଲା । ଆଜି ଦଶବର୍ଷ ପରେ ଆସିଛି ତା' ଭଉଣୀକୁ ଫେରେଇ ନବାକୁ ।'

ବାହିନୀପତିଙ୍କ ସ୍ତ୍ରୀ ବେତ ଚୌକିରେ ଧଳା ଧୋତିଟିଏ ପିନ୍ଧି ବସିଥାନ୍ତି । ବିଧବା ହେବାର ଚଉରିବର୍ଷ ଭିତରେ ଅନେକ ସମୟ କେରା କେରା ପାଚି ଗଲାଣି ତାଙ୍କ ମୁଣ୍ଡ ଉପରେ ।

ହାଡୁଆ, ଟାଣୁଆ, ଖୁରମୁସିଆ ଟୋକାଟିଏ ଅଗଣାରେ ସେମିତି ଆମକୁ ଅନେଇ ଠିଆ ହୋଇଥାଏ । ହାତରେ ନୋଟ ବିଡାଟିଏ ମୋଡି ଧରିଥାଏ ।

'ମୋ ବାପ ଏଇ ଘରେ ବିକିଚି ବୋଲି ଦେଖେଇ ଦେଇଥିଲା । ଆମେ, ତିରିଶ ଟଙ୍କା ସଞ୍ଚ ପାରିଲୁ ନାହିଁ । ଥରେ ବାଇଶ ଟଙ୍କା ହେଇଥିଲା । ତା' ଆର ଦିନ ମା' ରୋଗରେ ପଡିଗଲା ସାତଦିନ । ସବୁ ପଇସା ସରିଗଲା । ବାପ ନିଶା ଖାଇଲା । ଦିନେ ପଳେଇଲା । ଆମେ ତା' ପତ୍ତା ପାଇଲୁ ନାହିଁ...ମା'ର ପିଲା ହେଲା । ସେ ଚାଲିଗଲା ଭଗିଆ ସାଙ୍ଗରେ । କାନ୍ଦିଲା, ମତେ ପାଞ୍ଚଟଙ୍କା ଧରେଇ ଦେଇ ଚାଲିଗଲା... ମୁଁ ମୂଲ ଲାଗିଲି !'

ସେ ଆସ୍ତେ ନୀରବ ହେଇଗଲା । ତା' ଆଖି କୋରଡରୁ ନୀରବ ଦୁଃଖର ପଟୁଆର ବୋହିଗଲା ଅଗଣାରେ ବାଲି ଉପରକୁ ।

ଶ୍ରୀମତୀ ବାହିନୀପତି କିଛି ନ କହି ଉଠିଗଲେ ।

ମୁଁ ସାହସ କରି କହିଲି – 'ଶୁଣ ସୋଲା, ତୋ ଭଉଣୀ ମୁକୁଳି ଯାଇଚି । ସେ ମଙ୍ଗୁ ପଧାନକୁ ବାହା ହେଇ ରାଉରକେଲା ପଳେଇଲା । ଏଠି କାହାକୁ କହି ନାଇଁ ରାତିରେ ଲୁଚି ପଳେଇଲା । ...କ'ଣ ବୁଝି ପାରୁଚୁ ?'

ସୋଲାର ହାତ ଯୋଡିକ ଓହଳି ପଡିଲା ତଳକୁ । ସେ ତା' ମୁଠାରେ ନୋଟ୍ ଗୁଡିକୁ ମକଚୁ ଥାଏ । ଚାହିଁଥାଏ ତଳକୁ, ଅଥବା ଶୂନ୍ୟକୁ ।

ଶ୍ରୀମତୀ ବାହିନୀପତି ପାହାଚ ଓହ୍ଲେଇ ସୋଲା ପାଖକୁ ଚାଲିଗଲେ । ଥାଳିଆଟିଏ ତା' ଆଡକୁ ବଢେଇ ଦେଇ କହିଲେ – "ତୋ ଭଉଣୀ କହୁଥିଲା ତତେ କୁଆଡେ ବରକୋଳି ଭଲ ଲାଗେ । ନେ, ଆମ ବାଗି କୋଳି ଖା । ମୁଁ ଝିଅକୁ କହିଚି ସେ ତୋ ପାଇଁ ଜଳଖିଆ ଆଣି ଦଉଚି ।"

ମଣିଷ ଛୁଆଟାର ହାଡ, ରକ୍ତ, ମାଂସ ଏମିତି ତରଳି ବୋହି ଯିବାର ମୁଁ ଆଉ କେବେ ଦେଖି ନାହିଁ ।

ସୋଲା ସେଇ ଅଗଣାରେ ମେଞ୍ଚାଟିଏ ହେଇ କୁଢେଇ ହେଇ ପଡିଲା । ଧକଉଥିଲା ଚଟିଆ ଛୁଆ ପରି ତା' ଦେହ ଫଡ ଫଡ ହଉଥିଲା ।

ଆମେ ତାକୁ ପିଣ୍ଡା ଉପରକୁ ଟେକି ଆଣିଲା ବେଳକୁ ତିନିଖଣ୍ଡି ଦଶଟଙ୍କିଆ ନୋଟ ଗଳି ପଡିଥିଲା ଟୋପା ଟୋପା ଲୁହ ଆଉ ଝାଳ ଉପରକୁ ।



# ଚିରକାଳ ଅନ୍ୟ ଭୂମିକାରେ

ଡୋରିଆ ବୁସ୍‌ସାର୍ଟ ପିନ୍ଧିଲେ ମୁଁ କୁଆଡେ ତାଙ୍କ ଭଳି ଦିଶେ ।

ମୁଁ ଜାଣିପାରେ ନାହିଁ, ହୁଏତ; କିନ୍ତୁ ନିଶ୍ଚୟ ତାଙ୍କରି ଭଳି ଦିଶେ । ନଚେତ୍ ନରୋତ୍ତମ ମଙ୍ଗରାଜଙ୍କ ପରି ପୋଖତ ସଂସାରୀ ମଣିଷ ସେଦିନ ସେମିତି ବ୍ୟବହାର କରି ନ ଥାନ୍ତେ । –

– ସକାଳ ଖରା ଓ ଫୁଲ ବାସ୍ନା ଆମ ସାମ୍ନାରେ ବିଛେଇ ହୋଇରହିଥାଏ । ଜିପ୍ ମାଡି ଚାଲିଥାଏ ଆଗକୁ । ମୋ ସାଙ୍ଗରେ ମୋର ପତ୍ନୀ ଆଉ ଦୁଇ ପୁଅ, ବାପୁ ଏବଂ ଦିପୁ । ତା' ପୂର୍ବଦିନ ସନ୍ଧ୍ୟାରେ ସଭା, ସମ୍ବର୍ଦ୍ଧନା ଫୁଲମାଳ, ପ୍ରଶଂସା ସବୁ ବୋଝେଇ ହୋଇ ରହିଥିଲା ଅଧାରାତି ଯାଏଁ । ସକାଳୁ ଚଞ୍ଚଳ ସେଇଠୁ ବାହାରି ଆସୁଥିଲୁ, ଦିନ ଭିତରେ ପାଞ୍ଚଶହ କିଲୋମିଟର ପାରି ହେବାର ଜରୁରୀ ଯୋଜନା ନେଇ । ତଥାପି ସେ ନିର୍ମଳ, କାକର ସକାଳ, ପାହାଡ ଉପରେ ପାହାଡର ଶାନ୍ତଚିତ୍ର ମନରୁ ସେ ଉଦ୍‌ବେଗ ପୋଛି ଦେଉଥାଏ । ଆମେ ସେ ତହସିଲର ସଦର ମହକମା ପାରି ହୋଇ ଆସୁଥାଉ ।

ଦେଖିଲୁ ବାଟ ରୋଧି ଜଣେ ପିଆଦା ଠିଆ ହେଇଚି ।

ଗାଡି ବନ୍ଦ ହେଲା । ପଛ ଧୂଳି ସବୁ ଆଗକୁ ମାଡିଆସିଲା । ଇସ୍ ।

ମୁଁ ଭିତରେ ବସି ପଚାରିଲି, "କ'ଣ ଘଟଣା ? – କାହିଁକି ଗାଡି ବନ୍ଦ କଲ ?"

ପିଆଦାଟି ସଲାମ ଠୁକି କହିଲା, 'ଆପଣଙ୍କୁ ସାହେବ ଡାକୁଛନ୍ତି !'

ମୁଁ ଫାଉଁକିନା ଚିଡିଗଲି । କହିଲି, 'କିଏ ସେ ସାହେବ ? କାହିଁକି ଡାକୁଛନ୍ତି ? ଆମେ ତାଙ୍କର ଖାଉ ନା ଧାରୁ ? ଯାଅ କହିଦେବ ଆମକୁ ବେଳ ନାହିଁ । ...ଡ୍ରାଇଭର ଗାଡି ଛାଡ ।'

ପିଆଦା ତଥାପି ବାଟ ଛାଡିଲା ନାହିଁ । ମୁଣ୍ଡର ପଛପଟ କୁଣ୍ଡାଇ ଅଳ୍ପ ହସି ଠିଆ ହୋଇ ରହିଲା । ଇଡିଅଟ୍ କାହାଁକା !

ଏତିକିବେଳେ ଲସରପସର ହେଇ ପଚାଶ ବାଉନ ବର୍ଷର ଜଣେ ମାନନୀୟ ଭଦ୍ରଲୋକ ମାଡି ଆସିଲେ ।

'ଆରେ ପିଲେ, ଆମେ କେତେବେଳୁ ଅପେକ୍ଷା କରି ବସିଛୁ ତୁମେ ଆସିବ ବୋଲି ! ଘରେ ମାଉସୀ ଆଉ ରଖେଇ ଦେଲାନାହିଁ । କହିଲା ଚଞ୍ଚଳ ପିଲାଙ୍କୁ ନେଇଆସ ।'

ଅପ୍ରତ୍ୟାଶିତ ଆତ୍ମୀୟତା ପାଇଁ ମୁଁ ପ୍ରସ୍ତୁତ ନଥିଲି । କ'ଣ କହିବି ସ୍ଥିର କରି ପାରିଲି ନାହିଁ । '...ମୁଁ ...ମୁଁ...'

ମୋ ଡେଣା ଧରି ତଳକୁ ଓଟାରି ନେଉ ନେଉ ସେ ମୋ କଥାରେ ମଡେଇ ହୋଇପଡି

କହିଲେ, 'ଆରେ, ମୁଁ କ'ଣ ବୁଝି ପାରୁନାହିଁ ? ମୁଁ ଏଠି ଅଛି ବୋଲି ଜାଣିଥିଲେ ତୁ ଆଉ ଦେଖା ନ କରି ଚାଲି ଯାଇଥାନ୍ତୁ ? ...ମୁଁ ତତେ ଜାଣି ନାଇଁ! ତୋ ଜନ୍ମ ହେଲା ଦିନୁଁ ମୁଁ ତୋତେ ଜାଣେ। ତୋ ବାହାଘରକୁ ମୁଁ ଯାଇଚି। ଏ ବୋଉ ମା'କୁ ସେ ଗହଳିରେ କ'ଣ ଦେଖି ପାରିଥିଲି କି ? ଆସ, ଆସ, ଆହେ ଏ ନାତି ଟୋକା ହଳକ କେମିତି ସାଇବ ଛୁଆ ପରି ହେଇଛନ୍ତି! ...ବାଃ...'

ମୋ ସ୍ତ୍ରୀ ମୋ ମୁହଁକୁ ଚାହୁଁଥାନ୍ତି। ମୁଁ କିଛି ନ କହି ସେ ଅପରିଚିତ ଦରବୁଢ଼ା ମଣିଷଟି ସାଙ୍ଗରେ ବାଧ୍ୟ ପିଲାଟିଏ ପରି ଚାଲିଥାଏ। ମୁସ୍କିଲ ପରିସ୍ଥିତି! ସେ ନିଶ୍ଚୟ କେଉଁଠି ଭୁଲ କରି ପକେଇଛନ୍ତି।

ସେ ମୋ ଅଣ୍ଟାରେ ହାତ ଗୁଡେଇ ମତେ ବଳେଇ ନେଇ ଯାଉଥାନ୍ତି।

ଏପରି ମଉସାଟିଏ ପାଇବା କମ୍ ଭାଗ୍ୟର କଥା ନୁହେଁ! ୟାଙ୍କୁ ଏଇ ମୁହୂର୍ତ୍ତରେ ମଉସା ବୋଲି ବିଶ୍ୱାସ କରିନେଲେ କ୍ଷତି କ'ଣ ?...

ମୋର ଆଚରଣ, ଚାଲି, ହସ, କଥାବାର୍ତ୍ତା ତେଣିକି ଅନେକ ସରଳ ଏବଂ ସହଜ ହୋଇଗଲା।

ପୁରୁଣାକାଳିଆ ସରକାରୀ ଘର। ବେଶ ପ୍ରଶସ୍ତ ଅଗଣା। ମାଉସୀଟି ବେଶ୍ ପେଣ୍ଡିପାଣ୍ଡି ବାଙ୍ଗୁରୀ ମଣିଷ! ଓଢଣା, ସିନ୍ଦୁର ଟୋପା! ଓଠକୁଣରୁ ପାନପିକର ସରୁଧାର! ବେକରେ ତିନିସୋରା ଚପ ସରି। ବାହୁରେ ସୁନା ଅନନ୍ତବ୍ରତ, ବାହାସୂତା। ଏ ସମସ୍ତ ମୋ ବୋଉ ଭଳି ଅତି ଆପଣାର, ନିର୍ମଳ ମମତାର, ଚୁଆ ଗୁଣ୍ଡି, ଚମ୍ପାଫୁଲ ମହକୁଥିବା ମାତୃରୂପ। ସେ ମୋ ସ୍ତ୍ରୀର ଚିବୁକ ଟେକି ଦେଇ ପିଠି ସାଉଁଳି ଦେଲେ। ପିଲାଙ୍କ ସାଙ୍ଗେ ତାଙ୍କୁ ନେଇଗଲେ ଘରଭିତରକୁ।

ମୋ ନମସ୍କାର ଉତ୍ତରରେ କହିଲେ, 'ବୁଢ଼ାଟିଏ ହେଇଥା।' ଆଉ ସତେ ବା ମୋ ସହିତ କଥାବାର୍ତ୍ତା କରିବାର କୌଣସି ପ୍ରୟୋଜନ ନ ଥିଲା ତାଙ୍କର।

ମଉସା ମୋତେ ନେଇ ସୋଫା ଉପରେ ବସାଇଲେ। ଏତେ ପାଟିରେ ଡାକିଲେ ଜଣକୁ ମୋ ପାଇଁ ଜଳଖିଆ ଆଣିବାକୁ। ମୋତେ ଚାହିଁ କହିଲେ –

"ବୁଝିଲୁ, ତତେ କାହିଁ କେତେକାଳ ପରେ ଦେଖୁଛି। ବିଭାଘରେ ଖାଲି ମୁହଁ ମାରି ଚାଲି ଆସିଥିଲି। ବରବେଶରେ ତୁ ଉଠି ନମସ୍କାର କରିବାକୁ ମନା କରିଦେଇ ମୁଁ ତୋ ଶଶୁର ଘରୁ ସିଧା ଚାଲିଗଲି ପାରଳାଖେମୁଣ୍ଡି। ମୁଁ ସେତେବେଳେ ସେଇଠି ଥିଲି ତ! ତା' ପୂର୍ବରୁ ତୁ କଲେଜରେ ପଢୁଥିଲା ବେଳେ ଯାହା ମଝିରେ ମଝିରେ ଦେଖିଥିଲି। ତୁ ବୁଝିପାରିବୁ ନାଇଁ ତୋ ବାପା ସାଙ୍ଗରେ ମୋ ସମ୍ପର୍କ। ମା' ପେଟରୁ ଜନ୍ମିତ ଭାଇ ଏମିତି ହେବ ନାଇଁ। ...ହଉ ଛାଡ ସେ କଥା। ତୋ ନାଁ ଏମିତି ଖବରକାଗଜରେ କେତେଥର ପଢ଼ିଚି। ଘରେ ତୋ ମାଉସୀକୁ ଦେଖାଏ। ଦେଖ, ଦେଖ, ସେ ରବି ଟୋକା କେତେ ନାଁ କଲାଣି। ...ଏଠିକା ଲୋକଙ୍କୁ ଦେଖାଏ। ଏବେ ଗତ ପଅରିଦିନ ନିମନ୍ତ୍ରଣ ପତ୍ର ଦେଇଗଲେ। ତୁ ଏ ଅଞ୍ଚଳକୁ ଆସୁଚୁ ଶୁଣି ଆମର ଆଉ ଖୁସିର ସୀମା ନାହିଁ। ତୋ ଭାଇ ଯେ ବନାରସ୍‌ରେ ପଢୁଚି ସେ ଛୁଟିରେ ଆସିଚି। କୁଆଡେ ଲୁଚିଛି ସେ ଟୋକା। ...ହଇରେ

ବିନୟ! ଏଠିକି ଆ' ।"

ସଦ୍ୟ ଛଣା ଟୁମା ଟୁମା ଲୁଚି ଏବଂ ହାଉ ବାହାରୁଥିବା ତର୍କାରି ଆସି ଥୁଆ ହେଲା ଟେବୁଲ୍ ଉପରେ । ଆଉ ସେ ଯେ ଟୋକାଟି ଆସି ନମସ୍କାର କଲା ସେ ବୋଧେ ବିନୟ ।

ମଉସା, ଆମ ଦୁହିଁଙ୍କୁ ଖାଇବାକୁ କହି ଦେଇ ଉଠିଗଲେ । ଏଇଠି ଆଜି ଏ ଓଳି ଖାଇ ପିଇ ଯିବ । ମୁଁ ଯାଏଁ ସେ ଡ୍ରାଇଭର କଥା ବୁଝି ଦେବି ।

ମୋ ଉପରେ ଆଉ କୌଣସି କଥା ନିର୍ଭର କରୁ ନଥାଏ । ମୁଁ କିନ୍ତୁ ଜାଣି ସାରିଥାଏ ଯେ ଗତକାଲି ରବିବାବୁଙ୍କ ସାଙ୍ଗେ ମୋର ସଭା କାର୍ଯ୍ୟ ଥିଲା । ସେ ଆସି ପାରି ନଥିଲେ । କର୍ମକର୍ତ୍ତାମାନେ ମଧ୍ୟ ଏଇଭଳି ଭ୍ରମ କରିଥିଲେ ଜାଣିବା ପରେ । କହିଥିଲେ, "ଆଜିର ଦୁଇଜଣ ଅତିଥି ଏ ମଞ୍ଚ ଉପରେ ଠିଆ ହୋଇଥିଲେ ଯାଆଁଳା ଭାଇ ପରି ଦିଶିଥାନ୍ତେ । ଆମେ ଜଣକୁ ପାଇ ଧନ୍ୟ!"

...ତା'ହେଲେ ଏ ହେଉଛନ୍ତି ରବିବାବୁଙ୍କ ମଉସା । ନିଶ୍ଚୟ ଦୂର ସଂପର୍କିତ, କିନ୍ତୁ ଖୁବ୍ ଆପଣାର ଲୋକ । ରବିବାବୁ ମୋର ଘନିଷ୍ଠ ବନ୍ଧୁ । ଯଦି ତାଙ୍କର ପ୍ରାପ୍ୟ ସ୍ନେହ ଆଦରରୁ କିଛି ମୋତେ ମିଳିଗଲା ବିଶେଷ କିଛି ଅନ୍ୟାୟ, ଅପରାଧ କ'ଣ ହେଇଗଲା କି ? କିନ୍ତୁ କ'ଣ କରାଯାଇପାରେ ? ତାଙ୍କୁ କ'ଣ ମୋର ପରିଚୟ ମୁଁ ଠୋ ଜିନା ଦେଇଦେବି ? ତାଙ୍କର ଭୁଲ ହେଲା ବୋଲି କହିଦେବି ? ସେ ମୂର୍ଚ୍ଛା ହୋଇଯିବେ ! ହୁଏତ' ତାଙ୍କର ଦୁର୍ବଳ ହୋଇ ଆସୁଥିବା ପ୍ରାଣ ତନ୍ତୁଟି ଛିଣ୍ଡିଯିବ । ...ଚୋର ଭଳି ମୁଁ ଲୁଚଇ ପାରିଲି ନାହିଁ । ...ଧର ଯଦି ଏଠି ମୋତେ ଚିହ୍ନି କେହି ଜଣେ କହିବ, "ଆରେ କିଶୋର ବାବୁ ଯେ! '...ହୁଏତ' ମୋ ପୁଅକୁ କିଏ ପଚାରି ଦେଇପାରେ," କହିଲୁ ଦେଖି ତୋ ବାପା ନାଁ କ'ଣ! – କହି ପାରିବୁ ? ...ଡ୍ରାଇଭରକୁ ବିଶ୍ୱାସ ବଢାଇବାକୁ ପିଆଦା କହିପାରେ, "ଏ ବାବୁ ପରା ଆମ ସାଇବଙ୍କର ନିଜ ପୁତୁରା!" ଡ୍ରାଇଭର ସହଜ ଭାବରେ କହିବ, "ଓ ଏଇ କିଶୋର ବାବୁ!" ...ଦୈବାତ୍ ଧର ଯଦି ପିଆଦାକୁ ରବିବାବୁଙ୍କ ନାଁ ଜଣାଥିବ!...

ବିନୟ କ'ଣ ଖାଇଲା, ନ ଖାଇଲା ମୋତେ କ'ଣ ପଚାରିଲା ନ ପଚାରିଲା ମୁଁ ଲକ୍ଷ୍ୟ କରି ପାରିଲି ନାହିଁ । ମୁଁ କେବଳ ଅନେକ ଥର ଘଣ୍ଟାକୁ ଚାହୁଁଥିଲି; ବାରମ୍ବାର ରୁମାଲ କାଢି ମୁହଁ ପୋଛୁଥିଲି ।

ସେଦିନ ଅସମ୍ଭବ ସ୍ନେହ ଆଦର ପାଇଛି । ଚମତ୍କାର ମାଛ ତରକାରୀ, ମାଛ ମୁଣ୍ଡ, ଗୁଆଦହି ସରୁଚାଉଳ ଭାତ ଖାଇଛି । ମଉସା ମାଉସୀ ମୋ ଦେହ ମୁଣ୍ଡ ଆଉଁସି ନୀରବ ଆଶୀର୍ବାଦ ଅଜାଡି ଦେଇଛନ୍ତି ।

ମୋ ପିଲାଙ୍କ ହାତରେ ଟଙ୍କା; ମୋ ସ୍ତ୍ରୀଙ୍କ ପାଖରେ ମିଠାହାଣ୍ଡି ଥୋଇବା ପର୍ଯ୍ୟନ୍ତ ମୁଁ ସମ୍ଭାଳି ରହିଛି ।

କିନ୍ତୁ ଯେତେବେଳେ ମୋ ହାତ ଧରି ଛଳ ଛଳ ଆଖିରେ କହିଲେ, "ବାପା, ରବି! ମୁଁ

ଜାଣେ ତୋ ଭଳି କୀର୍ତ୍ତିମାନ ପୁଅ ସବୁ ବାପ ଭାଗ୍ୟରେ ଯୁଟେ ନାହିଁ । ମଉସାଙ୍କୁ ମନେ ରଖିଥିବୁ !" ମୁଁ ତାଙ୍କୁ ଜାକିଧରି କଇଁ କଇଁ କାନ୍ଦି ପକେଇ ଥିଲି । ମୋ ନାଁ, ମୋ ବାପ ମା' ସାତପୁରୁଷ ଚିହ୍ନଟ ମୁଁ ସେ ମୁହୂର୍ତ୍ତରେ ପୋତି ପକେଇବାକୁ ପ୍ରସ୍ତୁତ ଥିଲି ।

ଅବସ୍ଥା କିଛି ସମୟ ପରେ ସମ୍ଭଳା ପଡିଲା । ଗାଡି ଷ୍ଟାର୍ଟ ଦେଲା । କମ୍ପି ଉଠିଲା ଜିପ୍‌ର ପ୍ରତ୍ୟେକ ଅଙ୍ଗ, ମୋର ମାଂସ ପଞ୍ଜରା, ମୋର ଅତୀତ ବର୍ତ୍ତମାନ ମୋର ପରିଚୟ ।

ମୁଁ ବିନୟକୁ ଟାଣି ଆଣି ପାଖରେ ବସେଇଲି । କହିଲି ମୁଁ ବାଟରେ ତାକୁ ଓହ୍ଲେଇ ଦେବି ।

ଗାଡି ଛାଡି ଦେଲା । ପଛରେ ଠିଆହୋଇ ହାତ ହଲେଇଲେ ମଉସା । ଗାଡି ଭିତରୁ ବାପୁ, ଦିପୁ ହାତ ହଲେଇଲେ ।

ପ୍ରାୟ ତିନିଶହ ଗଜ ଗଲାପରେ ଗାଡି ବନ୍ଦ କରିବାକୁ କହି ବିନୟ ସାଙ୍ଗରେ ମୁଁ ଓହ୍ଲେଇଗଲି । ଏକାନ୍ତକୁ ଡାକିନେଲି ତାକୁ । ଭିତରୁ ସବୁ ସାହସ ସଞ୍ଚୟ କରି କହିଲି,

"ଦେଖ୍ ବିନୟ, ତୁ ମୋ ଭାଇ । ମୁଁ ତତେ ଯାହା କହିବି, ମୋ ଦିହ ଛୁଇଁ ଶପଥ କର, ମଉସାଙ୍କୁ ଏଇନା କହିବୁ ନାହିଁ, ପ୍ରୟୋଜନ ନହେଲେ ଆଦୌ କହିବୁ ନାହିଁ ।"

ସେ ଆଖି ମଟକା ନ ମାରି ଚାହିଁ ରହିଥାଏ । ତା' ପାଟି ଓହଳି ରହିଥାଏ । ମୁଁ ମୋର ସତ୍ୟପାଠ କରି ଗଲି ଅତି ନିର୍ମମ ଭାବରେ । –

ତା'ପରେ ଆମେ ଆସି ଘରେ ପହଞ୍ଚିଲା ପର୍ଯ୍ୟନ୍ତ ମୋ ସ୍ତ୍ରୀଙ୍କୁ ମଧ୍ୟ ସେ ବିଷୟରେ ପଦେ ତୁଣ୍ଡେଇ ନାହିଁ । ଏବେ ବି ମଉସାଙ୍କୁ ମନେପକାଇ ମୁଁ ନମସ୍କାର କରେ । ସେଇ କେତେ ଘଣ୍ଟାର ସ୍ନେହ ମୋ ଜୀବନରେ ଅତି ଦୁର୍ଲଭ ଅନୁଭବ ।

X X X କିଛିଦିନ ଏମିତି ଏମିତି ଚାଲିଗଲା । ମୁଁ ଡୋରିଆ ବୁସ ସାର୍ଟ ପିନ୍ଧିଲେ ହିଁ ସନ୍ଦେହ କରି ବସିଲି ମୋର ପରିଚୟ ବିଷୟରେ । ସେଥିପାଇଁ ଜାମା ବଦଳ କରିଦେଲି । ଜାଣିଶୁଣି ନିଶ ରଖିଲି । ରଖୁ ରଖୁ ଦାଢି ରଖିଲି । ଏବଂ ଗୋଟାଏ ସମୟରେ ଏଇ ଖଦଡ ଧୋତି ପଞ୍ଜାବୀ ପିନ୍ଧି ମୁଁ ଦିଶିଲି ସଂପୂର୍ଣ୍ଣ ଅନ୍ୟ ପ୍ରକାର । ମୁଁ ଯେ ରବିବାବୁ ଠାରୁ ସଂପୂର୍ଣ୍ଣ ଭିନ୍ନ ଦିଶିଲି ଏଥିରେ ସନ୍ଦେହ ନାହିଁ, ମୁଁ ସେଇ ପରିମାଣରେ ମୋ ନିଜଠାରୁ ମଧ୍ୟ ଅଲଗା ଦିଶିଲି । ଦର୍ପଣକୁ ଚାହିଁଲେ ଚିହ୍ନିବା କଷ୍ଟ ହେଲା । ମୁଁ ବୋଧହୁଏ ଏମିତି ନିବୁଜ ଆଡୁଆଳ ଖୋଜୁଥିଲି ଲୁଚିଯିବା ପାଇଁ; ସର୍ବଦା ଆଉ କାହାଭଳି ଦିଶୁଥିବା ମୋ ଚେହେରାଟିକୁ ଲୁଚେଇ ଦେବା ପାଇଁ ।

ମୁଁ ଦାଢି ରଖିବା ଦ୍ୱାରା ସର୍ବପ୍ରଥମେ ବିଗିଡିଲେ ମୋ ସ୍ତ୍ରୀ । ରାଗ ରୋଷ ପ୍ରତିବାଦର ଗୋଟାଏ ପର୍ବ ପାରି ହୋଇଗଲା । ମୁଁ କିନ୍ତୁ ଦାଢି କାଟିବା ସମ୍ଭବ ନୁହେଁ ବୋଲି କହିଦେଲି । ସେଥିପାଇଁ ଯଦି ପ୍ରୟୋଜନ ହୁଏ ମୁଁ ବରଂ ସନ୍ୟାସ ନେଇଯିବି, କିନ୍ତୁ ଦାଢି କାଟିବି ନାହିଁ । କାଟିଦେଲେ କାଳେ ପୁଣି ମଉସାଙ୍କ ସାଙ୍ଗେ କେଉଁଠି ଦେଖା ହେଇଯିବ ଏ ଭୟ ମୋ ମନରୁ ଜମା ଯାଉ ନ ଥାଏ ।

ମୋ ନୂଆ ଚେହେରାରୁ ଆସ୍ତେ ଆସ୍ତେ ସବୁ ଗ୍ରହଣ କରି ସାରିଥାନ୍ତି । ଅନେକେ ମୋତେ

ମଉସା ଡାକିଲେ ବି ମୁଁ ନିର୍ବିକାର ସ୍ୱୀକାର କରିସାରିଥାଏ । ଭାବୁଥାଏ ଦିନେ ଏ ଖଦଡକୁ ରଙ୍ଗ ମଟେଇ ଗେରୁଆ କରିଦେବି । ସେଇଦିନ ଜାଣି ମୁଁ ଚୂଡାନ୍ତ ଭାବରେ ଲୁଚିଯାଇ ପାରିବି । ମୋତେ ଦେଖିଲେ ହିଁ ହଜାରେ ମଣିଷଙ୍କ ଭିତରେ ଚିହ୍ନଟ କରି ହେଉଥିବ । ମୁଁ ଆଉ କାହାଭଳି ଦିଶିବାର ପ୍ରଶ୍ନ ନଥିବ ।

ମୋ ଛଦ୍ମ ବେଶରେ ମୁଁ ଖୁବ୍ ଆମୋଦିତ ହେଉଥାଏ । ମୋର ଖୁବ୍ ପୂର୍ବ ପରିଚିତ ଲୋକଙ୍କ ଆଗରେ ଠିଆହେଲେ ବି ସେମାନେ ମୋତେ ଜାଣିପାରୁ ନ ଥାନ୍ତି । ମୁଁ ମୁଚୁକି ମାରି ଚାଲିଯାଉଥାଏ । ମୋତେ ଗୋଟାଏ ପ୍ରକାର ଆତ୍ମସନ୍ତୋଷ ମିଳୁଥାଏ । ମୁଁ ଗୋଟାଏ ପୁରୁଣା ପରିଚିତ ପୃଥିବୀରେ ଲୁକ୍କାୟିତ ଈଶ୍ୱର ପରି ଅଚିହ୍ନଟ ରହି ପାରୁଥାଏ ଏବଂ ସେମାନେ କେହିହେଲେ ମୋତେ ଜାଣି ସୁଦ୍ଧା ଜାଣିପାରୁ ନଥାନ୍ତି । ଅଥଚ ମୁଁ ସେ ସମସ୍ତଙ୍କୁ ଜାଣିଥାଏ! ଏଇଭଳି ଗୋଟାଏ ସର୍ବଜ୍ଞାତା ଭାବ ବି ମୋ ମନକୁ ଆସୁଥାଏ ବେଳେ ବେଳେ ।

ସେ ଦିନ ଶୁକ୍ରବାର । ମୁଁ ବାହାରିଥାଏ ବଜାରକୁ । ଆମ କଲୋନିରୁ ଢେର ଗୁଡାଏ ବାଟ । ଚାଲିଯିବାକୁ ଏମିତି ଗୁଡାଏ ସମୟ ହୁଏତ ଲାଗେ ନାହିଁ, କିନ୍ତୁ ଖୁବ୍ ନିଛାଟିଆ ନିରୋଳା ବାଟ ହେଇଥିବାରୁ ଜଣାପଡେ ସତେବା ସେ ରାସ୍ତାଟି ଲମ୍ବି ଯାଇଛି ସୂର୍ଯ୍ୟାସ୍ତ ଯାଏଁ ।

ବାଟଯାକ କାଁ ଭାଁ ଗଛ । କାଁ ଭାଁ ମଣିଷ ।

ଆଉ ଗୋଟାଏ ବତୀଖୁଣ୍ଟ ପାରି ହୋଇଗଲେ ଡାହାଣ ମୋଡ । ତେଣିକି ବଜାର ବେଶୀ ଦୂର ନୁହେଁ । ମୁଁ ଚୁପ୍‌ଚାପ୍ ଏକୁଟିଆ ଚାଲିଥାଏ । ସତେବା ଅଦୃଶ୍ୟ ରହି ମୁଁ ଏ ପରିଚିତ ପୃଥିବୀରେ ମନଇଚ୍ଛା ପହଁରି ବୁଲୁଥାଏ । ମୋ ବୁକୁ ମୁଣାରେ ଶହେ ବର୍ଷ ଖର୍ଚ୍ଚ କରିବାକୁ ଥିଲା ଭଳି ଖୁବ୍ ଧୀରେ, ଆରାମ୍‌ରେ ଚାଲିଥାଏ । କୌଣସି ଗରଜ ନାହିଁ; ତଡବଡି ନାହିଁ ।

ମୋତେ ଯେ କେହି ଚିହ୍ନି ପାରିବେ ନାହିଁ, ଏ ବିଶ୍ୱାସ ମୋତେ ବେପରୁଆ କରି ଦେଇଥାଏ । ମୋ ପୋଷାକ ଏବଂ ଦାଢି ଯେ ମୋ ପାଇଁ ଏକ ଅଭେଦ୍ୟ ବର୍ମ – ତାକୁ କେହି ଭେଦି ପାରିବେ ନାହିଁ, ଏଥିରେ ମୋର ସନ୍ଦେହ ନ ଥାଏ । ମୋତେ ଲାଗିଲା, ମୁଁ ଆଉ କୋଉଠୁ ସେ ଧୋତି ପଞ୍ଜାବୀ ପିନ୍ଧା ଦାଢିଆ ମଣିଷଟିକୁ ଦେଖୁଥାଏ! ଭାରି ଜଣେ ତ'! – କେମିତି ବେଖାତିର୍ ଚାଲିଛି ରଜା ମାର୍ଗେ! ଭାବିଛି ତାକୁ କେହି ଦେଖୁନାହାଁନ୍ତି! – ନୁହେଁ? ଆବେ, ସତେ ତୁ କିଏକି??

ଏଇ ପ୍ରଶ୍ନଟିକୁ ମୁଣ୍ଡେଇ ମୁଁ ଚାହିଁଲି ସେ ସାଧାରଣ ସନ୍ଧ୍ୟାର ନିରୋଳା ରାସ୍ତାକୁ । କିଏ ସତେ ଏ ଧୋତି ପଞ୍ଜାବୀ ପିନ୍ଧା ଦାଢିଆ ଲୋକଟି? – ମୁଁ ତ' ୟାକୁ ଚିହ୍ନି ପାରୁନାହିଁ ।

ମୁଁ ମୋ ହାତ ଗୋଡକୁ ସାଉଁଳିଲି । ଦାଢିଟାକୁ ଅଣ୍ଡାଳିଲି । ତଥାପି ମନେ ହେଲା ସେ ଜଣକ ଯେମିତି ଆଉ କିଏ । ମୋ ପାଖେ ପାଖେ ଚାଲିଥିବା ସହଯାତ୍ରୀ ହୁଏତ, କିନ୍ତୁ ମୁଁ ନୁହେଁ ।

ମୋଡ ଆସିଲା ।

ବତୀ ଖୁଣ୍ଟ ପାଖେ ଗୁଡିଏ ପିଲା ଗୋଟିଆ ଗୋଟି ଖେଳୁଥିଲେ । ତା' ଭିତରୁ ଗୋଟାଏ ମୋ ଆଡକୁ ସଳଖ ଧାଇଁ ଆସିଲା । ତା' ପଛରେ କ୍ଷେପି ଆସିଲା ଅଣ୍ଟାରେ ଗାମୁଛା ଭିଡିଥିବା

ଆଉ ଗୋଟାଏ ଟୋକା ।

ପ୍ରଥମଟି ମୋ ପଛରେ ଲୁଚିଲା ।

ଦୁହେଁ ମୋ ଚାରିଆଡେ ଘିରି ଘିରି ବୁଲିଲେ ।

ମୁଁ ଅଗତ୍ୟା ଠିଆହୋଇ ରହିଲି । ମୋ ସାମ୍ନାରୁ ମୋତେ କୁଣ୍ଢେଇ ହାତ ବଢେଇ ଥାଏ ଜଣେ । ଚେଷ୍ଟା କରୁଥାଏ ଛୁଇଁବାକୁ, କିନ୍ତୁ ଆରଜଣକ ଚାଖଣ୍ଡେ ଅପହଁଚ ରହି ତାଳିମାରି ଡେଉଁଥାଏ ।

ତାଙ୍କ ମଝିରେ ମୁଁ ଗଛଟାଏ ଅଥବା ମନ୍ଦିର ଅଗଣାରେ ପଥର ଖୁଣ୍ଟିଟାଏ । ମୁଁ ଆମୋଦିତ ବୋଧକଲି । ଅପେକ୍ଷା କଲି ସେମାନଙ୍କ ଖେଳ ସରିବା ଯାଏଁ । କହିପାରିବି ନାହିଁ ସେ ଦାଢିଆ ଲୋକଟି ହସିଲା ନା ନାହିଁ ।

ମୋତେ କୁଣ୍ଢେଇଥିବା ଟୋକା ପାଟିକଲା "ଛୁଇଁଚି ! ଛୁଇଁଚି ।" ଆର ଟୋକା ପ୍ରତିବାଦ କରି ହେଣ୍ଟି ଲାଗିଲା, "ନା', ତୁ ଛୁଇଁନୁ, ଛୁଇଁନୁ ।" ରାଗି ମାଗି ଜଣେ କିଛି ବାଟ ଧପାଲି ଗଲା, "ଯା', ମୁଁ ଆଉ ଖେଳିବି ନାହିଁ" ପୁଣି ସେମିତି ଫେରିଆସି ତା' ସାଙ୍ଗକୁ କହିଲା, "ବେ, ସତ କହୁଚୁ ମୁଁ ତତେ ଛୁଇଁ ନାଇଁ ? ମୋ ହାତ ପରା ତୋ ଦିହରେ ବାଜିଲା ।" ଆର ଟୋକା ମୋତେ ଖପାଙ୍କିନା କୁଣ୍ଢେଇ ଧରି କହିଲା, "ମଉସା, ମଉସା, ୟେ ମତେ ଛୁଇଁଚି ? – ମିଛୁଆ କାହାଁକା !"

ବତୀ ଆଲୁଅରେ ମୁଁ ତା' ମୁହଁକୁ ଚାହିଁ ମଉସା ହେଇଗଲି, ସେ ଦାଢି, ଧୋତି ପଞ୍ଜାବୀ ସବୁ ମୋର ହୋଇଗଲା । ମୁଁ ଟିକିଏ ହସିଲି, କିଛି କହିଲି ନାହିଁ ।

ଆର ଟୋକାଟି ଖେଳ ଭୁଲିଯାଇ ମୋତେ କୁଣ୍ଢେଇଲା, କହିଲା, "ମଉସା ମୁଁ ଜମା ମିଛୁଆ ନୁହେଁ । ସେ ମିଛୁଆ !"

ସେମାନଙ୍କର ଆଉ ତିନୋଟି ସାଙ୍ଗ ଆସି ପହଞ୍ଚିଲେ । ସମସ୍ତେ ଗୋଳେଇ ପୋଳେଇ ହେଲେ ବିରାଡି ଛୁଆ ପରି । ମଉସା, ମଉସା, ମଉସା ଡାକ ଶୁଭିଲା ଚାରିଆଡୁ । ମୁଁ ସମସ୍ତଙ୍କୁ ସାଉଁଳି, ମୁଣ୍ଡରେ ହାତ ମାରି କହିଲି,

"ଚକ୍‌ଲେଟ୍ ଖାଇବ ?"

ଚଢେଇ ଛୁଆଙ୍କ କଳରୋଳରେ ପୃଥିବୀର ସବୁ ଅରଣ୍ୟ ଭରିଗଲା ।

ପାଖ ବଜାରରୁ ସେମାନଙ୍କୁ ଚକଲେଟ୍ ଦେଲାବେଳେ ସେମାନେ ମୋ ହାତର ଆଙ୍ଗୁଠି ଧରି ଓଟାରୁଥାନ୍ତି । ନିମନ୍ତ୍ରଣ କରୁଥାନ୍ତି ତାଙ୍କ ସାଙ୍ଗେ ଖେଳିବାକୁ । କିଛି ସମୟ ପରେ ସେମାନେ ଚାଲିଗଲେ । ମୁଁ ବଜାରରେ ପଶିଲି ।

ପୁଣି ସେଇ ଅପରିଚିତ ଆଗନ୍ତୁକର ଭାବ ମୋତେ ଆଚ୍ଛନ୍ନ କଲା । ପୁରୁଣା ଦୋକାନ, ପୁରୁଣା ଦୋକାନୀ ମୁଁ ପାରିହୋଇ ଯାଉଥାଏ ନିର୍ବିକାର ।

ପରିବା ବଜାର । ...ମାଛ ବଜାର !

"ଟଟକା ! ଟଟକା ! ଏଇଠି ଶସ୍ତା...ଚିଙ୍ଗୁଡି କିଲୋ ଚାଳିଶ ! ରୋହି କଟା ପଚିଶ୍ !"

ମୁଁ ସେଇଆଡେ ମୋହିଲା ବେଳକୁ କେହି ଜଣେ ବୁଲି ପଡି ମତେ ଚାହିଁଲା । କହିଲା, "ସେଆଡେ ଯାଆନ୍ତୁ ନାହିଁ, ସେଇଟା ଆଇଁଷ ମାର୍କେଟ ।" ମୁଁ ଥମିଗଲି । ମୋ ଚେହେରା ନିହାତି ନିରାମିଶ ଦିଶୁଥିବାର ଅନୁମାନ କଲି ।

ସେ ଲୋକଟି ମୋ ପାଖକୁ ଲାଗିଆସି କହିଲା, "ଆପଣଙ୍କୁ ଦେଖି ତ ମୁଁ ପ୍ରଥମେ ଚମକି ପଡିଲି । ଅବିକଳ ମୋ କକେଇ ପରି ଆପଣ ଦିଶୁଛନ୍ତି । ଏତେ ଟିକେ ହେଲେ ତଫାତ୍ ନାହିଁ । ସେ ବି ଆପଣଙ୍କ ଭଳି ନିରାମିଷ, ଅତି ପବିତ୍ର ଆତ୍ମା । ସେ ଶେଷକୁ ଆମକୁ ଛାଡି ଚାଲିଗଲେ ତୀର୍ଥ । ଆଉ ଫେରିଲେ ନାହିଁ । ଆପଣ ଆମ ଘରକୁ ଟିକିଏ ଆସିବେ କି ? ସମସ୍ତେ ଆଶ୍ଚର୍ଯ୍ୟ ହେଇଯାନ୍ତେ, ଖୁସି ହେଇଯାନ୍ତେ । ଆସନ୍ତୁନା ! ଆମ ଘରଟା ହେଇ ପରା ଦିଶୁଚି ।"

ମୁଁ ଡରିଗଲି । ଗମ୍ଭୀର ହୋଇ ମୁହଁ ଫେରେଇ ଆଣିଲି । ହାତ ଟେକି ବାରଣ କଲି । ମୋତେ ସେ ପଛରୁ ହୁଏତ ଚାହିଁ ରହିଥିଲା । ମୁଁ ବୁଲିପଡି ଆଗେଇ ଗଲି । କିନ୍ତୁ ମାଛ ବଜାରକୁ ପଶି ପାରିଲି ନାହିଁ । ମାଛ କିଣି ପାରିଲି ନାହିଁ । କେମିତି ସେ ଲୋକଟାର କକେଇ ପରି ଦିଶୁଥିଲା ବେଳେ ତା' ସାମ୍ନାରେ ଆଇଁଷ ହାଟରେ ପଶିଯିବି ? କେମିଟି ତାକୁ କହିଦେଇ ପାରିବି ଯେ ମୁଁ ଆଇଁଷ ଖାଏ ଏବଂ ଖାଇବାକୁ ଭଲପାଏ ! ବେକୁବ୍ କାହାଁକା !

କୋବି, ଶିମ୍ବ, ଲାଉ ଗହଳି ଭିତରେ ମୁଁ ନିଷ୍ପତ୍ତି ନେଇ ପାରୁନଥାଏ । ଭାବୁଥାଏ ହୁଏତ' ଆଉ ଥରେ ମାଛ ବଜାରକୁ ଫେରିଗଲେ ହୁଏ । ଏତିକିବେଳେ ମୁଁ ଦେଖିଲି, ଜଣେ ଚକାମକା କାଳିଆ ମଣିଷ ବେକରେ ଗାମୁଛା ପକେଇ ଆଠଅଙ୍କ ନମସ୍କାର କଲା । ହାତ ଯୋଡି ଆଗରେ ଠିଆ ହେଲା ।

ମୁଁ ଘାବରେଇଲା ପରି ଟିକିଏ ନିରୋଳା ଥାନକୁ ଘୁଞ୍ଚିଗଲି । ସେ ଲୋକଟି ପୁଣି ମୋ ଆଗରେ ହାତଯୋଡି ଗୋଡ ଯୋଡି କିଛି ନିବେଦନ କରିବା ଭଙ୍ଗୀରେ ଠିଆ ହୋଇଥାଏ । ତା' ଥନ୍ତଲ ପେଟ, କଳା ମଚ୍‌ମଚ୍ ବୁକୁ, ଖାଲି ପାଦ, ଆଣ୍ଠୁଯାଏ ଧୂଆ ଧୋତି – ମୁଁ ବୁଝିଲି କେହିଜଣେ ସରଳ, ସଚ୍ଛଳ ଚଷା ଭାଇଟିଏ ହେଇଥିବ ।

ସେ କୃତାର୍ଥ ହେଲାପରି କହିଲା, "ମୁଁ ଦେଖିଲାରୁ ଜାଣିଗଲି । ଆଖିରେ ହେମ୍‌ତି ଜୋତି, ମୁହଁରେ, ଜୋତି ! – ଆଉ କିଏ ହବ ? – ଆପଣେ ସନ୍ଥ ପୁରୁଷ । ସମତେ ଅନେଇ ବଇଚନ୍ତି କେତେବେଳେ ବିଜେ ହେବେ । ସଂକୀର୍ତ୍ତନ ଚାଲିଚି । ଆପଣେ ମୋ ସାଙ୍ଗରେ ଗାଦି ପାଖକୁ ବିଜେ ହେବା ହୁଅନ୍ତୁ ।"

ସର୍ବନାଶ ! ମୁଁ ହତବମ୍ବ ହେଇ ଠିଆ ହୋଇଥାଏ ।

ତା'ରି ଭଳି ଆଉ ଗୁଡିଏ ଲୋକ କାହୁଁ ଆସି ଘେରିଗଲେ ! ଦଳେ କୀର୍ତ୍ତନିଆ ଝାଞ୍ଜ ମୃଦଙ୍ଗ ପିଟିଲେ । ଘେର ଭିତରୁ ବାହାରିଯିବା ମୋ ପକ୍ଷରେ ସମ୍ଭବ ହେଲାନାହିଁ ।

"ବିହାରୀ ବାବାଙ୍କର ଜୟ ! ବିହାରୀ ବାବାଙ୍କର ଜୟ !"

କୃତକୃତ୍ୟ ହେଲା ପରି ମୋ ପାଖରେ ଜଣେ ଜଣକୁ କହୁଥାଏ "ୟେ ପରା ନିର୍ମାୟା

ଉଦାସୀ ବାବା । ଛୋଟ ପିଲାଙ୍କ ପରି ସ୍ୱଭାବ । ଦେଖୁନ ଏଇ ବଜାରଟା ଭିତରେ କେତେବେଳେ ଆସି ବୁଲୁଚନ୍ତି ।"

ମୁଁ ଆସ୍ତେ ସହଜ ଅନୁଭବ କରିବାକୁ ଚେଷ୍ଟା କରୁଥାଏ । ଯେ କୌଣସି ମୁହୂର୍ତ୍ତରେ ସତ୍ୟ ଜଣା ପଡିଗଲେ ମୁଁ ସମସ୍ତଙ୍କୁ କ୍ଷମାମାଗି ଖସିଯିବାକୁ ବସିଥାଏ । ତଥାପି ଆଶା କରୁଥାଏ ଯେ ପରିବା, ମାଛ କିଣି ଟିକିଏ ଡେରିରେ ଘରେ ପହଞ୍ଚି ଯିବି । କେହି ଜଣେ ଚିହ୍ନାଲୋକ ଏଇନା ଜୁଟି ଯାଆନ୍ତା କି ! ତାକୁ ନିଜ ଆତୁ ପରିଚୟ ଦେଇ ଏ ଜାଲରୁ ମୁକୁଳି ଯାଆନ୍ତି !

ମୁଁ ବଲବଲ ଚାହୁଁଥାଏ ଚାରିଆଡକୁ । କେହି ଜଣେ ସେମିତି ଆଖିରେ ପଡୁ ନଥାଏ । କୋଳାହଳ ଭିତରେ ମୁଁ ନୀରବ ରହିଥାଏ । ଯାହା ହବ ଦେଖାଯିବ ।

ମୋ ବେକରେ ଫୁଲମାଳ ସଂଖ୍ୟା ବଢୁଥାଏ । ଚାରିଆଡେ ଜନଗହଳି ବଢୁଥାଏ । ମୁଁ ଆହୁରି ଆହୁରି ଏକୁଟିଆ ହୋଇଯାଉଥାଏ । ଅସହାୟ ହୋଇ ଯାଉଥାଏ । ଭାସୁଥିବା ମେଘ ଖଣ୍ଡପରି ମୁଁ କେତେବେଳେ କ'ଣ ପରି ଦିଶୁଥାଏ ମୁହୂର୍ତ୍ତେ ମୁହୂର୍ତ୍ତେ ଲିଭିଯାଉଥାଏ ମୋର ପରିଚୟ ।

ମୁଁ ମୋ ଅଜାଣତରେ ଠିଆ ହୋଇପଡିଲି । ମୋର ଶିରା ପ୍ରଶିରା ଟାଣି ହୋଇଗଲା । ଦେହ ଥରିଲା ଠକ୍ ଠକ୍ ହୋଇ ।

ପାଖଲୋକେ ତଟସ୍ଥ ହୋଇ ଚାହିଁଲେ । କୋଳାହଳ ଠପ୍ କିନା ବନ୍ଦ ହୋଇଗଲା । ଭିତର ବାହାର ନୀରବ ହୋଇଗଲା । ମୁଁ ଆସ୍ତେ ଆଖି ବୁଜନେଲି ।

...ମୁଁ ବୋଧେ ସଭାମଞ୍ଚ ପାଖରେ ପହଞ୍ଚି ସାରିଥିଲି । ତା'ପରେ ଯାହା ହେବାର ହେଲା । ଜାଣିବା ଲୋକେ ଆସି ସବୁ ବୁଝିଗଲେ । ଭାଷଣରେ ମୁଗ୍ଧ ହୋଇଥିବା ଜନତାଙ୍କ ଆଗରେ ଧନ୍ୟବାଦ ଦେଲାବେଳେ ଉଦ୍ୟୋକ୍ତା ମୋର ପରିଚୟ ଦେଇ କହିଲେ, "ତାଙ୍କୁ ଶୁଣିଲା ପରେ ତାଙ୍କ ଜ୍ଞାନ ଗାରିମା, ପାଣ୍ଡିତ୍ୟ ଆପଣମାନେ ବୁଝି ପାରିଥିବେ । ଆମର ପରମଭାଗ୍ୟ ଏପରି ଜଣେ ବିଦ୍ୱାନଙ୍କୁ ଆଜି ଏଠାରେ ପାଇଚେ । ଆଜି ବିହାରୀବାବା ଆସି ପାରି ନ ଥିଲେ ସୁଦ୍ଧା ଆମ୍ଭ କାର୍ଯ୍ୟ ଅତି ଚମତ୍କାର ଭାବରେ ସମ୍ପନ୍ନ ହୋଇପାରିଲା । ଆଜିର ଅତିଥିଙ୍କୁ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଛି । ସେ ହେଉଛନ୍ତି ଆମ ନେହେରୁ କଲୋନୀର ଶ୍ରୀଯୁକ୍ତ କିଶୋର ମିଶ୍ର ।..."

ମୁଁ ତଳକୁ ମୁହଁପୋତି ବସିଥାଏ । ମୋର ଇଚ୍ଛା ହେଉନଥାଏ ତାଙ୍କୁ ସଂଶୋଧନ କରିବାକୁ ଯେ ମୁଁ କିଶୋର ମିଶ୍ର ନୁହେଁ କିଶୋର ମହାପାତ୍ର ! ମଉସା ପିଉସା ଜକେଇ, ରବିବାବୁ, ବିହାରୀବାବା ହୋଇ ପାରୁଥିବ ଗ:ସା:ଗୁ: ମଣିଷଟିକୁ ମହାପାତ୍ର ନକହି ମିଶ୍ର କହିଲେ କୋଉ ଅଶୁଦ୍ଧ ହୋଇଗଲା ।

ରାତିରେ ଘରେ ବିଳମ୍ବରେ ପହଞ୍ଚିଲି ।

ପିଲାଏ ଉଠିଆସି ମୋତେ କୁଣ୍ଢେଇ ଡାକିଲେ 'ବାପା', 'ବାପା' ।

ମୁଁ ସେମିତି ଠିଆ ରହିଲି । ଧୋତି ପଞ୍ଜାବୀ ପିନ୍ଧା ଦାଢିଆ ମଣିଷଟି ବୋଧେ ନିହାତି ବିମୂଢ ବିହ୍ୱଳ ଦେଖାଯାଉଥିଲା । ବିଭିନ୍ନ ଛଦ୍ମବେଶ ଭିତରେ ହଜିଗଲାପରି ଠିଆ ହୋଇଥିଲା ।

ପିଲାଙ୍କ ଡାକ ସତେବା ଖୁବ୍ ଦୂରରୁ କିଛି ଅପରିଚିତ ଏବଂ ଅସ୍ପଷ୍ଟ ଶୁଣାଯାଉଥିଲା ।

## କାଳ କାଳକୁ ସେଇକଥା

ଆମେ ବିବାହ କରିବାର ସେତେବେଳକୁ ତିନିବର୍ଷ ।

'ମୁନ୍ନା' ରଙ୍ଗୀନ ପୋଷାକ, ଛିଟ ଜାମା ପିନ୍ଧି ସମସ୍ତଙ୍କୁ ଅଥୟ କରୁଥାଏ । ନିଜେ ଅଥୟ ହେଉଥାଏ । ଦରୋଟି କହୁଥାଏ । କିର୍‌କିରି ହସୁଥାଏ । ଆଖି ଚମକୁଥାଏ ତରାପରି । ଗୋଲାପଜାମୁରୁ ରସ ଥୋପିଲା ପରି ତା' ପାଟିରୁ ଲାଳ ନିଗିଡି ଯାଉଥାଏ ।

ଖୁବ୍ ନିଘଞ୍ଚ ସଂପର୍କ ସେତେବେଳେ : ଖୁବ୍ ନିସନ୍ଧି ସମୟ ।

ମନେ ହେଉଥାଏ ଆମେ ହିଁ ଏ ସସାଗରା ପୃଥିବୀ, ବାକି ସବୁ କେବଳ ଟଳମଳ ଫମ୍ପା ମେଘ, ନନାଙ୍କ ପରି ମଳିନ ହୋଇ ସାଙ୍କୁଡି ଯାଉଛନ୍ତି ଦିଗ୍‌ବଳୟରେ । ଆଖି ମଟକା ମାରି ଚାହିଁଲା ବେଳକୁ ଆଉ ନଥିବେ ।

ଚିଠି ଆସୁଥାଏ ମୋଠୁ ଉତ୍ତର ନପାଇ ବିସ୍ମୟ ଆସୁଥାଏ ତାକରେ । ତା'ପରେ ଅଭିମାନ କାରୁଣ୍ୟ ଆସୁଥାଏ ଚିଠି ରୂପରେ । ଖୁବ୍ ବଳେଇଗଲେ କୁଣ୍ଠିତ ଉତ୍ତରଟିଏ ଯାଉଥାଏ ପୋଷ୍ଟକାର୍ଡର ଚଉଠେ ଜାଗାରେ । – ବ୍ୟସ୍ତତା ଭିତରେ ବେଳ କାହିଁ ଦୁଇ ପୃଷ୍ଠା ଚିଠି ଲେଖିବାକୁ? – ବା ପଢିବାକୁ? – କିନ୍ତୁ ସେଇ ପୋଷ୍ଟକାର୍ଡର କୁଣ୍ଠା କାର୍ପଣ୍ୟ ସତ୍ତ୍ୱେ ସେଆଡୁ ଅଜାଡି ହୋଇ ଆସୁଥାଏ ଗୁଡାଏ ଭାବପ୍ରବଣତା ।

ମୁନ୍ନା ସେ ଚିଠି ସମୂହକୁ ଟିକି ଟିକି କରି ଚିରି ବୁଣିଦିଏ । ତା' ଉପରେ ମୁତିଦିଏ ! ଫାଜିଲ୍ କାହାଁକା !

...ସେ ସମୟରେ ମଣିଷଙ୍କ କଟାମୁଣ୍ଡରେ ବୋଝେଇ ହୋଇ ଟ୍ରେନ୍ ସବୁ ଆସୁଥାଏ । ଭୂମିକମ୍ପ ହୋଇ ଧସି ଯାଉଥାଏ ସହରମାନ ସମୁଦ୍ରକୁ । ଆମେ କୁକୁଡା ଗୋଡ ଚୋବେଇଲା ବେଳେ ପତ୍ରପତ୍ରିକାର ଚିତ୍ର ଏବଂ ଖବର ଦେଖି ଛୋଟ ପିଲା ଜାସୁସି ଗଳ୍ପ ପଢିଲାପରି ଡରି ଯାଉଥାଉ ଏବଂ ଉପଭୋଗ କରୁଥାଉ ପ୍ରଚୁର । ଇସ, କେମିତି ସତେ ଗୋଟିଏ ଗୁଳି ସେ ବସେଇଦେଲା ବୁଢାର ମେଲା ବୁକୁ ଉପରେ ? ଆମେ ଚକିତ ହୋଇ ପରସ୍ପର ମୁହଁକୁ ଚାହୁଁଥାଉ । ମୁନ୍ନାକୁ ସମ୍ଭାଳୁଥାଉ, ଅନ୍ୟମନସ୍କ ହେଲାପରି ପକ୍ଷୀ ହାଡକୁ ଆସ୍ତେ ଚୋବାଉଥାଉ । ଅନୁଭବ କରୁଥାଉ ଯେ ଝୋଳଟା ଆଉ ଟିକିଏ ମୋଟା ହୋଇଥିଲେ ଭଲ ଲାଗିଥାନ୍ତା...

ସେଇ ସମୟରେ ଗୋଟିଏ ଚିଠି ଆସି ପହଞ୍ଚିଲା ଯେ ନନାଙ୍କ ଦେହ ଖରାପ ! – ଖରାପ ମାନେ ସେଇ ଅଣ୍ଟାବଥା, ବୁକୁବଥା ତ ! – ଔଷଧ ତ ଖିଆ ଚାଲିଛି ! – କିଛି ଟଙ୍କା ପଠାଇଦେଲେ ଚଳିଯିବ ନାଇଁ ?

– ଉଠି ବସିପାରୁ ନାହାନ୍ତି କୁଆଡେ –

– ଓ, ସେଇଟା କୋଉ ନୂଆ କଥା । ମୁଁ ଜାଣିବାରେ ସେଇଟା ଅନ୍ତତଃ କୋଡିଏ ବର୍ଷର ପୁରୁଣା ରୋଗ । କେତେଥର ସେମିତି ସେ ପଡିଛନ୍ତି । ପୁଣି ଫିଟ୍‌ଫାଟ୍ ହେଇ ଚାଲବୁଲ କରିଛନ୍ତି । ସେଇଟା କିଛି ନୂଆ କଥା ନୁହେଁ ।

– ନାଁ, ଏଥର କୁଆଡେ ଭାରି ସିରିଅସ୍ ।

ମୋତେ ଆଡଆଖିରେ ଚାହିଁ ମୋ ସ୍ତ୍ରୀ କହିଥିଲେ, "ଯିବ ତ ଥରେ ଦେଖିଦେଇ ବାହାରି ଆସିବ । ଏତେ କିଆଁ ଡରେଇ ହଉଚ ? – ବୁଢା ବାପ ବୋଲି କିଏ ନାହିଁ କଲା । ଯାଅ ଥରେ ଯାଇ ଦୋଷ କାଟି ଚାଲିଆସ ।"

ଠିକ୍ କଥା । ଯିବାରେ ଆପତ୍ତି ନାହିଁ । ହେଲେ ହେଇ ପରା ନାନା ଜଞ୍ଜାଳ ଲାଗି ରହିଚି । ମୁନ୍ନାର ଝାଡା ପରୀକ୍ଷା ପାଇଁ ଦିଆଯାଇଛି, ତାକୁ ନିୟମିତ ଫଳରସ ଦେବାକୁ ଡାକ୍ତର କହୁଚି । କ୍ଷୀର ଭଲ ମିଳୁନାହିଁ । ଗୋଲା ବଦଳ କରିବାକୁ ହେବ । ତା' ବାହାରେ ଲଛମନ୍ ଭାଇ ଶିଲ୍‌କବାଲା କହିଛି ଯେ ଏଇ ଦିନେ ଦୁଇଦିନ ଭିତରେ ଆମେ ବରାଦ୍ ଦେଇଥିବା ଦୁଇଖଣ୍ଡ କାଞ୍ଜିବରମ୍ ପାଟ ଚାଲି ଆସିବ । ସେ କ'ଣ ଭାବିବ ଆମେ ନ ଆଣିଲେ ? ଇଜ୍ଜତ ବୋଲି ଗୋଟେ ଜିନିଷ ପୁଣି ଅଛି ତ' ।

ଅକ୍ଟୋବର ମାସ ଷୋଳ ତାରିଖର ସଞ୍ଜବେଳେ ମୁଁ ଯାଇ ଆମ ପୁରୁଣା ଘରେ ପହଞ୍ଚିଥିଲି । ସମସ୍ତଙ୍କୁ କୃତାର୍ଥ କଲି ବୋଲି ଭାବିଥିଲି ।

"ଆରେ ବିଧୁ ଆଇଁଷ ନ ହେଲେ ଖାଇପାରେ ନାହିଁ ।"

"ଆରେ ସେ ଶୋଇବ କୋଉଠି ? – ମଶାରି ଅଛି ନା ନାହିଁ ?"

"ତାକୁ ସେ ନୂଆ ରେଜେଇଟା ଦିଅ, ସେ ଘୋଡେଇ ହବ ।"

ଏମିତି ଗୁଡିଏ ମନଧରା କଥା କିଏ ସବୁ କହୁଥିଲେ କେଜାଣି ! ମୁଁ ସେ କଥାରେ ଆଦୌ ବିଚଳିତ ନ ହେବାକୁ ସ୍ଥିର କରିଥିଲି । ବରଂ ପଚାରିଥିଲି ।

"କିଏ ଡାକ୍ତର ଦେଖୁଛନ୍ତି ?"...

"କେତେଦିନ ହେଲା ଏମିତି ପଡିଛନ୍ତି ?"

"କ'ଣ ସବୁ ଖାଇବାକୁ ଦଉଚ ?"

ଖୁବ୍ ସାଧାରଣ ପଡିଶା ଅଡିଶାଙ୍କୁ ଅଭ୍ୟସ୍ତ ଜେରାଭଳି, ଉତ୍ତରକୁ ଅପେକ୍ଷା ନ ରଖୁଥିବା ଗୁଡିଏ ବାଞ୍ଛ ପ୍ରଶ୍ନ । ତା' ଭିତରେ ବାରମ୍ବାର ହାଇ ମାଡୁଥିଲେ ବି ମୁଁ ଚାପିଦେଇ ପାରୁଥିଲି । ଏତେଗୁଡାଏ ବାଟ ବସ୍‌ରେ ଛେଚାକଚା ଖାଇ ଗଲେ କେତେ କଷ୍ଟ ହୁଏ ସେମାନେ ତ' ବୁଝିପାରିବେ

ନାହିଁ ।

ତା' ଆରଦିନ ଘରିଟାବେଳେ ଡାକ୍ତର ଷଡଙ୍ଗୀ କହିଲେ, "ବୁଢାଙ୍କୁ ବରଂ ହସ୍‌ପିଟାଲ ନେଇଯାନ୍ତୁ । ଏଠି ଆଉ ସମ୍ଭାଳି ହେବ ନାହିଁ ।"

ହସ୍‌ପିଟାଲ ? – ସେଇଠି ରାତିରେ ଜଗିବ କିଏ ? କାହାନ୍ତି ସବୁ ପାଖ ଲୋକ, ଆପଣାର ବୋଲାଉଥିବା ସଜନମାନେ ? କାହାଘରେ କୁଣିଆ, କାହା ପୁଅକୁ ଜର, କାହାର ଦାନ୍ତବିନ୍ଧା, ଏମିତି ସବୁ ଧାଡି ଧାଡି ମିଛ ଦୁଃଖର ଅଭିନୟ କରି କରି, ଉପଦେଶ ଦେଇ ଦେଇ ଆଡ ହୋଇଗଲେ ସମସ୍ତେ । ...କ'ଣ ହେଲେ କରିବ ସେ ବିଧୁ ଟୋକା ? ...ପୁଅ ତ ! – ନ ସମ୍ଭାଳି ଯିବ କୁଆଡେ ? ...କିଛି ବ୍ୟସ୍ତ ହେବୁନି ବାପ, ଆମେ ସବୁ ସକାଳୁ ଘଲିଆସିବୁ । ବୁଢାଗୁଡାକ ଆମେ, ଗୋଟାଏ ରାତି ନ ଶୋଇଲେ ଦଶଦିନ ଯାଏଁ ଅସୁସ୍ଥ । ତୋତେ ଚିନ୍ତା କରିବାର କିଛି ନାହିଁ । ଡାକ୍ତରଙ୍କୁ, ହେଡ୍ ନର୍ସଙ୍କୁ ଆମେ ବୁଝେଇ ଦଉଚ । ସେମାନେ ଜଗି ରହିବେ । – ତତେ ସାହାପକ୍ଷ ହେବେ ।...

ଖଣ୍ଡିଏ ଆରାମ ଚୌକିରେ ବସିବାକୁ ହେବ ରାତିଏ । ମଶା କାମୁଡିବେ । ଡାକ୍ତରଖାନାର ରୋଗ ଗନ୍ଧ, ରୋଗୀ ଗନ୍ଧରେ ନିଶ୍ୱାସ ମାରିବାକୁ ହେବ । ବୁଢାବାପକୁ ମଝିରେ ମଝିରେ ଯାଇ ଦେଖିବାକୁ ପଡିବ ନିଶ୍ୱାସ ଠିକ୍ ଘଲିଛି ନା ନାହିଁ, କଲିଜାଟା ଲବ୍‌ଡବ୍ ଡାକୁଚି ନା ନାହିଁ । ଇଲେକ୍ଟ୍ରିକ୍ କାର୍ଡିଓଗ୍ରାମରେ ନାଚି ନାଚି ପାରି ହେଉଥିବା ବିଜୁଳୀ ରେଖାଗୁଡିକୁ ଘହିଁବାକୁ ପଡିବ । ...ଉଃ...

...ପୁଅ ପରା ! – ପିଣ୍ଡକୁ କାରଣ... ! ଜାଣିବା ଶୁଣିବା ଆଉ ଜଣେ କାହାକୁ ଏଠି ଟଙ୍କା ଦେଇ ରଖେଇଲେ ସେ ହୁଏତ ଆହୁରି ମନଦେଇ ଭଲ କାମ କରିବ; କିନ୍ତୁ ସେତିକିରେ ଅଶୁଦ୍ଧ ହୋଇଯିବା କଥା । ପୁଅ ହେଇ ନିଜେ ସେଇଠି କଷ୍ଟ ନ ସହିଲେ ସେ ଆଉ କି ପୁଅ ! ନ ଖାଇ, ନ ପିଇ, ନ ଶୋଇ, ଦାଢି ନ କାଟି ସେ ଦୁଃଖ ପାଉଛି ବୋଲି ଜଣାଇ ଦେବାକୁ ପଡିବ । ଦୁଃଖପାଇଁ ମଧ୍ୟ ଗୋଟାଏ ନିର୍ଦ୍ଦିଷ୍ଟ ବେଶପୋଷାକ ଅଛି ତ ! – ଗୋଟାଏ ନିର୍ଦ୍ଦିଷ୍ଟ ଆଚରଣ ବି ।

"ରାତି ଏଗାର ! ଆପଣ ଘହିଁଲେ ଟିକିଏ ରେଷ୍ଟ ନେଇପାରନ୍ତି । ରୋଗୀର ସେମିତି ଇରେଗୁଲାର୍ ହାର୍ଟବିଟ୍ ଘଲିଚି । କୌଣସି ଇମ୍ପ୍ରୁଭମେଣ୍ଟ ନାହିଁ ।"

ସିଷ୍ଟରଟି ଖୁବ୍ ସଫା – ବେଶରେ, ହସରେ, କଥାରେ । ଦେହର ବର୍ଣ୍ଣଟି ବେଶ୍ ମିଠାଳିଆ ! କେରଳୀଟିଏ ।

"ଠିକ୍ ଅଛି, ମୁଁ ଏ ଚୌକିରେ ବସି ରହୁଛି ।"

ସିଷ୍ଟରଟି ତା' ଘଣ୍ଟା ଦେଖି ଟେବୁଲ ପାଖରେ ବସିଗଲା । ଖଣ୍ଡିଏ ବହି କାଢି ଖୋଲି ଧରିଲା । ମନେହେଲା ଶସ୍ତା ଉପନ୍ୟାସଟିଏ । ବୋଧହେଲା ଝିଅଟି ଅବିବାହିତା ।

ନନାଙ୍କ ମୁହଁ କେମିତି ଫେଚଟା ଦେଖାଯାଉଥାଏ । ଚିହ୍ନିବା କଷ୍ଟ । ତାଙ୍କ ସମୟରେ ସେ କୁଆଡେ ଚଉରସ୍ ଭେଣ୍ଡା ଥିଲେ । ଷଣ୍ଢ ଶିଙ୍ଗକୁ ଧରି ଲଢେଇ କରିଥିଲେ । ...ହଅ...ସେ କି ଲଢେଇ କରିଥିବେ, ତାଙ୍କର ଯୁ କାହିଁ ? ସେ କିନ୍ତୁ ଆମକୁ ପ୍ରଚୁର ଭଲ ପାଉଥିଲେ । – ମୋତେ

ଏବଂ ମୋ ଭଉଣୀ ମୀରାକୁ ଭଲ ପାଇବାର ସବୁ ଲକ୍ଷଣ ଦେଖାଯାଉଥିଲା । ସଞ୍ଜବେଳେ ଆମେ ଖେଳରୁ ଫେରି ନ ଆସିଲେ ସେ ବ୍ୟସ୍ତ ହୋଇ ଦାଣ୍ଡପିଣ୍ଡାରେ ବାଟକୁ ଚାହିଁ ରହୁଥିଲେ । ଖାଇଲାବେଳେ ପେଟ ମାଛ ବାଛି ବାଛି ଆମ ଥାଳିଆରେ ଦେଇ ଦେଉଥିଲେ । ଆମେ ଜିନିଷଟାଏ ଭାଙ୍ଗିଦେଲେ ସେ ରାଗୁ ନଥିଲେ ।

ଅବଶ୍ୟ ମୋର ବେଳେ ବେଳେ ମନେ ହେଉଥିଲା ଯେ ମୋ ଅପେକ୍ଷା ମୀରାକୁ ହିଁ ସେ ବେଶୀ ଭଲ ପାଉଥିଲେ । ତା' ପାଇଁ ଅନେକ ଦାମୀ ଜନିଷ କିଣି ଆଣୁଥିଲେ । କହୁଥିଲେ, "ଝିଅପିଲାଟା, ଆଜି ଅଛି, କାଲି ପରଘରକୁ ଚାଲିଯିବ !" ବାଃ, ଯୁକ୍ତି ତ ବଢ଼ିଆ ! ଯେ ସବୁଦିନକୁ ରହିବ ସେ ଖାଉଥାଉ କୁଣ୍ଡାପିଠା, ଯେ ମାତ୍ର ଅଳ୍ପ ଦିନର କୁଣିଆ ତାଙ୍କ ପାଇଁ ଛତିଶା ନିଯୋଗ । – ତା' ବାହାରେ ସେ ମୀରାକୁ ଦେଖିବା ମାତ୍ରେ କୋଳାଇ ନେଉଥିଲେ, ଅଥଚ ମୋତେ ଅତି ବେଶୀ ହେଲେ ଟିକିଏ ମୁଣ୍ଡରେ ହାତ ବୁଲେଇ ଦେଉଥିଲେ, କିମ୍ବା ପିଠି ଥାପୁଡେଇ ଦଉଥିଲେ । – କାହିଁକି ? ମୁଁ କ'ଣ କୋଳେଇ ନେବାର ଯୋଗ୍ୟ ନ ଥିଲି ? ମୋତେ ସେ ଅଧିକାର ଦେଇଥିଲେ ସେ କ'ଣ ଅପମାନିତ ବୋଧ କରିଥାନ୍ତେ ?

– ଏବେ ସେ ମୀରା ଗଲା କୁଆଡେ ? ସେ ତ' ଆସିଲା ନାହିଁ ବାପ ପାଖରେ ଠିଆ ହେବାକୁ । ମୁଁ ହିଁ ବେକୁବ୍, ସବୁ କାଳେ, ସବୁ କଥାରେ । ଧର ଯଦି ଆଜି ରାତିରେ କିଛି ହୋଇଗଲା, ତେବେ ଚାଲିବ ଧନ୍ଦା ବାରଦିନ ଯାଏଁ । ଆଉ ନିଶ୍ୱାସ ନେବାକୁ ବେଳ ମିଳିବ ନାହିଁ । କେହି ସେତେବେଳେ ପିଠିରେ ପଡିବେ ନାହିଁ । କେହି ପାଦେ ଘୁଞ୍ଚିବେ ନାହିଁ । ସମାଜ ଅଡି ବସିବ । ଲୋକେ ଛକି ବସିବେ – କେମିତି କ'ଣ କଲା – ଇନ୍ଦ୍ରଜିତ୍ ଚୌଧୁରୀର ଯୋଗ୍ୟ ପୁଅ ବିଧୁଭୂଷଣ ଚୌଧୁରୀ ପଇସା ଖର୍ଚ୍ଚ କଲା ନା ନାହିଁ, ନୟାନ୍ତ ହେଲା ନା ନାହିଁ – ସେମାନଙ୍କ ବୋଲ ମାନି ନାକରେ ଦଉଡି ବେକରେ ପଘା ହେଲା ନା ନାହିଁ! – ମୋଟ ଉପରେ ସେମାନେ ବୋଧେ ଦେଖିବାକୁ ଚାହାନ୍ତି ବାପର ଶୁଦ୍ଧ ଶ୍ରାଦ୍ଧ କରୁ କରୁ ସେ ନିଜେ ମଲା ନା ନାହିଁ!!

ଚାବୁକ୍ ଖାଇଲା ପରି ମୁଁ ଉଠି ବାରଣ୍ଡାକୁ ବାହାରି ଆସିଲି । ମଳିଛିଆ ଆଲୁଅରେ ନିର୍ଜନ ବାରଣ୍ଡା ଶୋଇ ରହିଥିଲା ରୋଗୀଟିଏ ପରି । ତା' ବୁକୁ ଉପରେ ପାଦ ରଖି ଯିବାକୁ ମୁଁ ଅଶ୍ୱସ୍ତିକର ବୋଧ କଲି । ତା'ପରେ ଖୁବ୍ ରାଗିଯାଇ ଧପ୍ ଧପ୍ ଚାଲି ଯାଇଥିଲି ରାସ୍ତା ଉପରକୁ । ବାହାରେ ଥଣ୍ଡା ପବନ, ଆକାଶରେ କାକର ଜହ୍ନ ! ମୋତେ ଅନେକ ସୁସ୍ଥ ଲାଗିଥିଲା ।

ମୋ ସ୍ତ୍ରୀ ନିଶ୍ଚୟ ଖୁବ୍ ସୁନ୍ଦରୀ । ...କିନ୍ତୁ ଏ କେରଳୀ ନର୍ସଟି ବୟସରେ ଅନେକ କମ୍ । ଏତେ ଛୋଟ କଣ୍ଢେଇ ପରି ଝିଅଟିଏ । ଏତେ ମୋଲାଏମ୍ । ସେ କାହିଁକି ଏତେ କଷ୍ଟ କାମ କରୁଚି ? – କାହିଁକି ବାହା ହେଇ ନାହିଁ ? ତାକୁ ଡାକି ପଚାରି ଦେବି କି ? – ପଚାରିଲେ ସେ ଚିଡିଯାଇ ପାରେ । ହୁଏତ ଖୁସି ବି ହୋଇପାରେ । ହୁଏତ ତଳକୁ ଚାହିଁ ହସି ଦେଇପାରେ ।

ଇସ୍ ! ମୋର ପୁଣି ଭାବାନ୍ତର ଆସିଥିଲା । ମୂର୍ଚ୍ଛିତ ବୁଢା ବାପଟାକୁ ନେଇ କ'ଣ କରିହେବ ସତେ ? ଅପେକ୍ଷା କରିବାକୁ ହେବ । ନିର୍ଦ୍ଦିଷ୍ଟ ଘଟଣା ଘଟିଯିବା ପର୍ଯ୍ୟନ୍ତ ସମୟର ଗୁରୁଭାର

ବୋହିବାକୁ ହେବ ।...

ବିଚିତ୍ର ଢଙ୍ଗରେ ମୁଁ ସେ ଜହ୍ନ ରାତିରେ ବାହାରେ ବୁଲୁଥିଲି ଏବଂ ସିଗ୍ରେଟ୍ ଟାଣୁଥିଲି । ମୋତେ ବ୍ୟସ୍ତ ଲାଗୁଥିଲା । କେମିତି ଗୋଟାଏ ଖୁସି ବି ଲାଗୁଥିଲା । ରାସ୍ତା ଉପରୁ ଥରେ ଦୁଇଥର ଉପର ମହଲା କେବିନ୍‌କୁ ଚାହିଁଥିଲି । ଆଲୁଅ ନିସ୍ପନ୍ଦ ଜଳୁଥିଲା । ସେ ଝିଅଟି ବୋଧହୁଏ ତନ୍ମୟ ହୋଇ ଉପନ୍ୟାସ ପଢୁଥିଲା ।

ପାଖ କାବିନିର ସିଷ୍ଟର୍ କ'ଣ ସବୁ ଔଷଧ ପତ୍ରର ଟ୍ରେ ଧରି ମଳିଛିଆ ଆଲୁଅର ନିର୍ଜନ ବାରଣ୍ଡାରେ ଆସ୍ତେ ଚାଲିଗଲା ।

ମୁଁ ଚାହିଁଲି ଫେରିଯିବାକୁ । – ଉପରକୁ – ମୂର୍ଚ୍ଛିତ ରୋଗୀ ପାଖକୁ । ସେଇଠି କେରଳିନୀ ଚୁପ୍‌ଚାପ୍ ବହି ପଢୁଥିବ ହୁଏତ ମୁହଁଟେକି ଥରେ ଚାହିଁପାରେ । ନୀରବ ଶିଷ୍ଟାଚାରରେ ମୁରୁକି ମାରିପାରେ । ତା'ପରେ ବହିକୁ ଫେରିଯାଇପାରେ । ବହି ପଢିବା ହୁଏତ ନିୟମ ନୁହେଁ । ଏପରି ରୋଗୀକୁ ଜଗିଲାବେଳେ ବହି ପଢିବା ହୁଏତ ସମ୍ଭବ ନୁହେଁ । କିନ୍ତୁ ସେଥିରେ ମୋର କ'ଣ ଥାଏ । ସେ ଯାହା କରିବ କରୁ !

ମୁଁ ପାହାଚ ଉଠିଗଲା ବେଳକୁ ଅଧବାଟରେ ଥମିଗଲି । ସେଇ ଝିଅଟି ଟପ୍ ଟପ୍ ଓହ୍ଲେଇ ଆସୁଥିଲା ।

"ଆପଣ ଏଠି କ'ଣ କରୁଛନ୍ତି । ଚଞ୍ଚଳ ଡାକ୍ତରଙ୍କୁ ଡାକନ୍ତୁ ।"

ମୁଁ ଟାଉଟାଉ ପାହାଚ ଉଠିଗଲି । ସେ ମୋର ଖୁବ୍ ନିକଟରେ ଚାଲୁଥିଲା । ବୋଧହୁଏ ସତର୍କ ହୋଇ ଚାଲୁଥିଲା, କିମ୍ବା ଅନେକ ଅଭ୍ୟାସରେ ସେମିତି ଚାଲୁଥିଲା । ମୋ ଦେହରେ ତା' ଲୁଗା କାନି ସୁଦ୍ଧା ବାଜି ନ ଥିଲା ।

କେବିନ୍ ଭିତର ମାଡି ପଡୁଥାଏ । ନନାଙ୍କ ନିଶ୍ୱାସ ତେଜି ଯାଇଥାଏ । ମୋତେ ସେଇଠି ଛାଡିଦେଇ ସିଷ୍ଟର ଚାଲିଗଲା ଡାକ୍ତରଙ୍କୁ ଡାକିବାକୁ । ମୁଁ ନନାଙ୍କ ପାଖେ ଠିଆହୋଇ ସେ ଜୁଆରିଆ ଶ୍ୱାସର ଦ୍ରୁତ ଛନ୍ଦ ଦେଖୁଥାଏ । କ'ଣଟାଏ ହଲିଯିବାରୁ ଆଖିଫେରେଇ ଆଣିଲି । ନନାଙ୍କ ଶିରାଳ ହାତଟା ପଞ୍ଝା ମେଲେଇ ଅଣ୍ଡାଳୁଥିଲା । ଶେଯ ଉପରେ, ବାହୁଙ୍ଗା ଉପରେ । ମୋତେ ସେ ହାତକୁ ଦେଖି ଡର ମାଡିଥିଲା । ସେ ମୋତେ ହିଁ ଧରିନେବାକୁ ହୁଏତ ସେମିତି ଖୋଜୁଥିଲା ।

କ'ଣ ଗୁଡାଏ ମୋ ଭିତରେ କୁଢେଇ ହୋଇପଡିଲା । ମୁଁ ସେ ହାତଟିକୁ ଚାହିଁବା ଭିତରେ ଉତୁରି ଆସିଥିଲା ଅତୀତ । – ଏଇ ହାତ, ତା'ହେଲେ ମୋ ପିଠି ଆଉଁସିଥିଲା ଅସଂଖ୍ୟଥର । ମୋ ମୁଣ୍ଡ ସାଉଁଳିଥିଲା ! ଏଇ ହାତ ମୋ ଛୋଟ ଛୋଟ ଡେଣାଧରି ମୋତେ ବୁକୁ ଉପରକୁ ଟୋଳି ନେଇଥିଲା ।

...'ଏ ମୁନ୍ନାଟା ଦେଖିବ ବଡଲୋକ ହବ । ତା' ଠିଆ ନାକ, ଓସାର କପାଳ ମୋ ନନାଙ୍କ ପରି...'

ମୁଁ ଚଟ୍‌କିନା ନନାଙ୍କ ମୁହଁକୁ ଚାହିଁଥିଲି । ବୁଡି ଯାଉଥିବା ଜାହାଜର ମାସ୍ତୁଲ ପରି ଠିଆ

ହୋଇ ରହିଥିଲା ସେ ନାକ । ଟୋପା ଟୋପା ଝାଳରେ ଜକେଇ ଯାଇଥିଲା କପାଳ ।

ମୁଁ ଗୋଟାଏ ଆବେଗରେ ସେ ହାତଟିକୁ ଧରି ନେଇ ଖଟ ପାଖରେ ଆଣ୍ଠେଇ ପଡିଥିଲି । ମୋ ଦୁଇ ହାତ ଭିତରେ ଠକ୍ ଠକ୍ ଥରୁଥିବା ସେ ହାତଟି ତଥାପି ଅଣ୍ଡାଳି ହେଉଥିଲା । ମୁଁ ତାରି ଉପରେ ମୁଣ୍ଡ ରଖି ଆଖି ବୁଜି ନେଇଥିଲି, ଚମତାର ବନ୍ଧ ଭାଙ୍ଗି ଗୋଟାଏ ରକ୍ତର ସ୍ରୋତ ବୋଧହୁଏ ସେତେବେଳେ ବହୁଥିଲା ଦୁଇଟି ପଞ୍ଜୁରୀ ଭିତରେ ।

ଡାକ୍ତର ବୋଧହୁଏ ଆସିଥିଲେ । କେରଲିନୀ ଆସିଥିଲା । କେହି ଜଣେ ମୋ କାନ୍ଧ ଉପରେ ହାତ ସାଉଁଳି ନେଇଥିଲା । – "ମୁଁ ବୁଝିପାରୁଛି ତୁମ ଦୁଃଖ । ତୁମେ ଧୈର୍ଯ୍ୟ ଧର ! ଉଠ, ଅନେକ କାର୍ଯ୍ୟ ଅଛି ।" – ପ୍ରାୟ ଏଇଭଳି ସେ ସାଉଁଳିବାର ଅର୍ଥ ।

ମୁଁ ଉଠି ଠିଆହେଲି । ସିଷ୍ଟରଟି ମୋ ପଛରେ ଠିଆହୋଇଥିଲା । ସେଇବୋଧେ ମୋ କାନ୍ଧକୁ ସାଉଁଳିଥିଲା । ଖୁବ୍ ନରମ ସେ ସ୍ପର୍ଶ ।

ଡାକ୍ତର ପାଖକୁ ଲାଗିଯାଇ ସେ ରକ୍ତଚାପ ନେବାରେ ସାହାଯ୍ୟ କଲା, ତା'ପରେ ସେମାନେ ନୀରବରେ ଅଥଚ ଖୁବ୍ ଜରୁରୀ ଢଙ୍ଗରେ ଇନ୍‌ଜେକ୍‌ସନ ଦେଲେ । ବାରମ୍ବାର ଛାତି ଉପରେ ହାତ ରଖି ଯନ୍ତ୍ରକୁ ଅନଉଥିଲେ । ବିଜୁଳୀର ରେଖାଗୁଡିକ ଆସ୍ତେ ନିୟନ୍ତ୍ରିତ ହେଲାପରି ଜଣାଗଲା । ବାତ୍ୟା ଆଘାତରେ ମନ୍ଥି ହେଉଥିବା ସମୁଦ୍ରର ଢେଉ କ୍ରମଶଃ ଶାନ୍ତ ହୋଇ ଆସିଲା ପରି ଜଣାଗଲା ।

ମୁଁ ଚୁପ୍‌ଚାପ୍ ଠିଆହୋଇ ଗୋଟିଏ ଦିଗରେ ଅନେଇ ରହିଥିଲି ।

ଡାକ୍ତର ମୋ ପିଠି ଥାପୁଡେଇ କହିଥିଲେ, "ବିପଦ ଘୁଞ୍ଚିଗଲା । ବର୍ତ୍ତମାନ ପାଇଁ ଅନ୍ତତଃ ଆଉ ଭୟ ନାହିଁ । ରାତି ପାହିଲେ ଦେଖିବା ।" ସେ ଚାଲିଯିବାର ଶବ୍ଦ ମୁଁ ଶୁଣି ପାରୁଥିଲି । କିଛି ଦୂରରେ କେରଲିନୀ ସହିତ ସେ ଖୁବ୍ ଆସ୍ତେ କଥା ହେବାର ମଧ୍ୟ ଶୁଣିଥିଲି । ମୁହୂର୍ତ୍ତକ ପାଇଁ ମୁଁ ସେ ଟୋକା ଡାକ୍ତରକୁ ଈର୍ଷା ବି କରିଥିଲି ।

"ଆପଣ ସେ ଚୌକିରେ ବିଶ୍ରାମ ନିଅନ୍ତୁ । ମୁଁ ଜଗିଚି । ପ୍ରୟୋଜନ ହେଲେ ମୁଁ ଆପଣଙ୍କୁ କହିବି ।..."

"ଆପଣଙ୍କ ସାଙ୍ଗରେ ଆଉ କେହି ନାହାନ୍ତି କେମିତି ? ଆପଣଙ୍କ ସ୍ତ୍ରୀ ? ଆପଣଙ୍କ ଭଉଣୀ – ଭାଇ ନିଜ ଲୋକ ?"

...ଆପଣ ବସନ୍ତୁ । ମୁଁ ରୋଗୀର ଲୁଗା ବଦଳ କରିଦିଏ । ସେ ପରିସ୍ରା କରି ଦେଇଛନ୍ତି ।

ସେ ଖୁବ୍ ଯତ୍ନରେ ମୋତେ ନେଇ ଆରାମ ଚୌକିରେ ବସେଇ ଦେଲା । ସେଇଠୁ ଚଟାପଟ୍ ନନାଙ୍କ ଦେହରୁ ଲୁଗା କାଢି ଗଡେଇ ଦେଲା । ସଫାଲୁଗା ବଦଳ କରିଦେଲା । ଚଦର ଘୋଡେଇ ଦେଲା । ପୁଣି ଥରେ ବୁକୁ ଉପରେ ହାତ ରଖି ଅନେକ ସମୟ ଯନ୍ତ୍ରକୁ ଚାହିଁ ରହିଲା । ଧର୍ମଗ୍ରନ୍ଥ ଉପରେ ହାତରଖି ଶପଥ ନେଲାପରି ସେତେବେଳେ ସେ ଦେଖା ଯାଉଥିଲା ।

ସେ ଆସି ମୋ ପାଖରେ ଠିଆ ହେଲା । ସାମାନ୍ୟ ଇତସ୍ତତଃ କରି କହିଲା, "ମୁଁ

ସେତେବେଳେ ଆପଣଙ୍କ ବାପାଙ୍କର କେସ୍ ହିଷ୍ଟ୍ରି ଦେଖୁଥିଲି । ସେ ଅନେକଦିନରୁ ଔଷଧ ଖାଇଛନ୍ତି । ଡାକ୍ତର ଦେଖାଇଛନ୍ତି । କେହି କିନ୍ତୁ ମନ ଲଗେଇ ତାଙ୍କୁ ଦେଖି ନାହାନ୍ତି । ଏଣୁ ତେଣୁ ଔଷଧ ଦେଇଛନ୍ତି । ...ମୋର ମନେ ହେଲା ଯେ ତାଙ୍କୁ ଅନେକ ଅବହେଳା କରାଯାଇଛି – ଆପଣଙ୍କ ପାଖରେ ତ' ସେ ଥିବେ । ଏମିତି କାହିଁକି ହେଲା ? – ଆପଣ ତାଙ୍କୁ ଆଗରୁ ଏଠିକି ନେଇ ଆସିଥିଲେ କଥା ଏତେଦୂର ଯାଇ ନଥାନ୍ତା ।"

ମୁଁ ବୋଧେ ହତବାକ୍ ଚାହିଁ ରହିଥିଲି ଗୋଟାଏ ଆଡେ ।

ସେ ମୋ ଡେଣାଟିକୁ ସାମାନ୍ୟ ଚିପି ନେଇ କହିଲା, "ଆପଣଙ୍କ ମନର ଅବସ୍ଥା ମୁଁ ବୁଝି ପାରୁଛି । ପୃଥିବୀରେ କେହି ଚାହେଁ ନାହିଁ ଏତେ ସହଜରେ ବାପଟିକୁ ହରାଇ ଦେବାକୁ । ମୋ ବାପାଙ୍କ ବୟସ ତେୟାଅଶି, ସେ ବେଶ୍ ଭଲ ଅଛନ୍ତି । ଆପଣ ଧୈର୍ଯ୍ୟ ଧରନ୍ତୁ । ହୁଏତ ଏଥର ପାରି ହୋଇଗଲେ ଆପଣଙ୍କ ଆଦର ଯତ୍ନରେ ସେ ଆଉ ଦଶବର୍ଷ ବଞ୍ଚି ଯାଇପାରନ୍ତି ।..."

ଆପଣ କଫି ଖାଇବେ ? – ବସନ୍ତୁ, ମୁଁ ନେଇ ଆସେ । ସେ ଚାଲିଗଲା ବାରଣ୍ଡାର ପଶ୍ଚିମ ଦିଗକୁ । ମୋ ଭିତରେ ସେତେବେଳେ ଅନେକ ନିଷ୍ପତ୍ତିର ବାକ୍ୟ ମୁଁ ଶୁଣିଥିଲି ।...

..."ଦେଖ, ମୁଁ ତୁମକୁ ବାହାହେଲି ବୋଲି ତୁମ ବୁଢା ବାପର ମେହେନ୍ତାଣୀ ହେବାକୁ ବାଧ୍ୟ ନୁହେଁ..."

...ସେ ତୁମର ବାପ ହୋଇପାରେ; ମୋର କହି ନୁହେଁ ...ମୁଁ ଏଠି ରହି ପାରିବି ନାହିଁ !...

...ଗାଁରେ ଚଳିବାକୁ ଗୋଟାଏ ଲୋକ ପାଇଁ ଏତେ ଟଙ୍କା କ'ଣ ହବ ? ଏଠି ଆମର ଖର୍ଚ୍ଚ ଅଛି ଅନେକ...ଆମର ପୁଣିତ' ଇଜ୍ଜତ୍‌କୁ ଜଗି ଚଳିବାକୁ ହବ !...

...ଦେଖ, ମୁଁ ପେଟରେ ଗୋଟାଏ କଥା ମୁହଁରେ ଆଉ ଗୋଟାଏ କଥା କହେ ନାହିଁ । ତୁମେ ତୁମ ବାପ ପାଖରେ ରହ, ନହେଲେ ମୋ ପାଖରେ ରହ – ତମ ଇଚ୍ଛା !...

ସୁଜାତା ସୁନ୍ଦରୀ – ସୁଜାତା ବୁଦ୍ଧିମତୀ – ସୁଜାତା ମୋ ସ୍ତ୍ରୀ–ମୁନ୍ନାର ମା !

...'ଶୁଣ ସୁଜାତା, ବୁଢା ହେବା କ'ଣ ଦୋଷ ? ବୁଢା ହେବା କ'ଣ କାହା ଆୟତ୍ତର କଥା । କିଏ ଭଲା ବୁଢା ନ ହେବ ? – ସେ ମୋ ବାପା ଏଇନେ ସଂପୂର୍ଣ୍ଣ ଏକାକୀ । ସେ ଆମ ସାଙ୍ଗରେ ରହିଲେ କ'ଣ ଅସୁବିଧା ହେବ ? ସେ ଆଉ ଏମିତି କେତେ ବର୍ଷ ବଞ୍ଚିବେ କି ?...'

..."ତମ ଭଳି ପୁତ୍ରରତ୍ନ ପାଇଗଲେ ସେ ଆଉ ତିରିଶ ବର୍ଷ ଗଡେଇ ନେଇ ପାରନ୍ତି, ତୁମେ ନିଜେ ବୁଢା ହବା ପର୍ଯ୍ୟନ୍ତ । ତା'ପରେ ସେ ମଲେ କେତେ ଆମେ ମଲେ କେତେ ? ଜୀବନଟାତ ସରି ଯାଇଥିବ ।"

..."ଲୋକେ କ'ଣ କହିବେ, ସୁଜାତା ?"

"ଲୋକେ ସମସ୍ତେ ଜାଣନ୍ତି । ସମସ୍ତଙ୍କ ଘରେ ବୁଢାଟାଏ କେମିତି ହନ୍ତସନ୍ତ କରେ, କିଏ ନ ଜାଣିଛି ! – ସମସ୍ତଙ୍କ ଇଚ୍ଛା କେମିତି ତା' କବଳରୁ ମୁକୁଳି ଯିବେ ।"

..."ଶୁଣ ସୁଜାତା, ମୁଁ କ'ଣ କହୁଚି ଟିକିଏ ଶୁଣ !"

...ଛାଡିଦିଅ, ମୋ ହାତ କହୁଚି । ମୁଁ ସେ ସାକୁଲିଆ କଥା ଶୁଣି ପାରିବି ନାହିଁ । ତୁମ ଭଳି ବେକୁବ୍ କେହି ନାହାନ୍ତି । ତୁମର ଏଇ ବାପା ପରା ତାଙ୍କ ବାପାକୁ ଶୀତ ଋତୁରେ ଉଠି ପାରିବେ ନାହିଁ ବୋଲି ପାଣି ଠୋପାଏ ଦେଲେ ନାହିଁ । ବୁଢା ଡାକି ଡାକି ମରିଗଲା । ଏଇନା ସେ ଚାହୁଁଛନ୍ତି ତାଙ୍କ କୁଳଚନ୍ଦ୍ରମା ତାଙ୍କୁ କାନ୍ଧରେ ବୋହି ବୁଲୁଥାଉ । – ତୁମେ ବରଂ ନିଷ୍ପତ୍ତି ନେଇଯାଅ, ତୁମର ବାପରେ ଦାୟ ନା ମାଇପରେ ଦାୟ – ତୁମେ କାହାକୁ ନେଇ ଘର ସଂସାର କରିବ ?...

..."ବିଧୁ ତୋ ପଠାଇଥିବା ଟଙ୍କା ପାଇଲି । ତୁମ କୁଶଳକୁ ପରମେଶ୍ୱର ମାଲିକ । ମୋର ବସିବା ଠଉଁ ଉଠିବା କଠିନ । ତତେ ଟିକିଏ ଦେଖିବାକୁ ମନ ହଉଚି । ତୋ' ପୁଅକୁ ଟିକିଏ ଦେଖନ୍ତି । ବୋହୂମା'ଙ୍କୁ ଅହିସୁଲକ୍ଷଣୀ ବାଞ୍ଛନ୍ତି । ସେ କ'ଣ ମୋ ପାଖକୁ ଆସିବାକୁ ରାଜି ହେବେ ?"

...'ରଖ, ତୁମେ ସେ ଚିଠି । ତେମେ ଯାଅ । ଥରେ ମୁହଁ ମାରି ଚାଲି ଆସିଲେ ଦୋଷ କଟିଯିବ ।'

ମୁଁ ଯାଇଥିଲି ଅକ୍ଟୋବର ଷୋଳ ତାରିଖରୁ ଆଉ ଦିନେ ।

..."ବାପା, ମୁଁ ଚାହିଁଚି ତୁମକୁ ଟିକିଏ ଏ ବୟସରେ ଟେକପାଳ କରିବାକୁ । କିନ୍ତୁ ବିଶ୍ୱାସ କର ମୁଁ ସବୁ ମନେ ରଖିଚି; ଜାଣିଚି ତୁମେ ମୋତେ କେତେ ଭଲ ପାଅ ।..."

ମୁଁ...ମୁଁ...

..."ତୁ ଭଲରେ ଥା' ବାପ । ମୋର ତ' ଆଉ କେଇଟା ଦିନ ଏମିତି ଚଳିଯିବ । ତୁ ପିଲାପିଲି ଛାଡି ଆଉ କେତେଦିନ ରହିପାରିବୁ ? ତୋ ଛୁଟି ବି ସରିଗଲାଣି । ...ତୁ ଯା'!"

...ସେ ରାତି ହସ୍‌ପିଟାଲରେ ମୁଁ ମୁହଁ ଘୋଡେଇ ବସିଥିଲି । ଆଖିରୁ ଲୁହ ଗଡି ଯାଇଥିଲା । କାହାର ଉଶ୍ୱାସ ପାଦଶବ୍ଦ ପାଖେ ଆସିଥିଲା । ଟେବୁଲରେ କଫି କପ ଥୋଇବା ମୁଁ ଜାଣି ପାରିଥିଲି ।

ସେ ମୋ ହାତଧରି ଉଠେଇଥିଲା । ଟେବୁଲ ପାଖ ଚୌକିରେ ବସେଇ ନିଜେ ଷ୍ଟୁଲରେ ବସିଥିଲା । ଧାର ଧାର ବହି ଆସୁଥିବା ଲୁହକୁ ମୁଁ ହାତ ଲେଡାରେ ପୋଛି ତାକୁ ଚାହିଁଥିଲି । ମୋ ଓଠ ଥରି ଉଠିଥିଲା । ଅନେକ ସମୟପରେ ତାକୁ ପଚାରିଥିଲି ।

"ସିଷ୍ଟର, ତୁମ ନାଁ କ'ଣ ?"

ସେ କିଛି ନ କହି ମୋତେ କଫି ଟେକି ଦେଇଥିଲା ।

X X X X

"ସେସବୁ ଆଜିକୁ ତିରିଶ ବର୍ଷ ତଳର କଥା ଡାକ୍ତର । ମୁଁ ଜାଣେ ମୁନ୍ନା ଆସି ପାରିବ ନାହିଁ । ମୁଁ ଏକୁଟିଆ ବଞ୍ଚ ଶିଖିଚି ଅନେକ ବର୍ଷଧରି । ଏକୁଟିଆ ମରିବାଟା ସେମିତି କିଛି କଷ୍ଟ ହବ ନାହିଁ । ତଥାପି ସେ ସିଷ୍ଟରକୁ କ'ଣ ଖୋଜି ବାହାର କରି ହୁଅନ୍ତା ନାହିଁ ? ...ଆଚ୍ଛା, ଆପଣ ତାକୁ ବାହାର କରିଛନ୍ତି ? ...କ'ଣ କହିଲେ, ତା' ନାଁ ସେଲିନା । ବାଃ, ଖୁବ୍ ସୁନ୍ଦର ନାଁ ତ ! ଆଚ୍ଛା ସେ ବାହାହେଇ କେରଳ ଫେରି ଯାଇଥିଲା ନା ? ...ଓହୋ, ତା' ଝିଅ ଆସି ଏଠି ସିଷ୍ଟର ହେଇଚି ? ...ଓଃ, ଡାକ୍ତର ତାକୁ ଟିକିଏ ମୋ ପାଖକୁ ନେଇ ଆସିପାରିବେ ? ...ସେ ନିଜେ କହିଚି ଆସିବ

ବୋଲି ? ଆଚ୍ଛା, ତା' ମା' ତାକୁ ମୋ ନାଁ କହିଛି ? ବିଧୂଭୁଷଣ ଚୌଧୁରୀ ଭାରି ଭଲ ବୋଲି କହିଚି ? କ'ଣ କହିଲେ, ସେ ଝିଅ ନାଁ ? – ମୋନା ! ମୋନାଲିସା ନୁହେଁ ତ ? ? ହେ, ହେ, ମୋତେ ବର୍ତ୍ତମାନ ଖୁବ୍ ଭଲ ଲାଗୁଚି ଡକ୍ଟର । ନିଦ ମାଡୁଚି । ମୋତେ ଆଉ ଏକୁଟିଆ ଲାଗୁନାହିଁ । ମୁନ୍ନା ନ ହେଲାନାହିଁ, 'ମୋନା' ତ ଅଛି ।"

...ମୋତେ ଏ ସମସ୍ତ କଥା କହିଦେଇ ବିଧୂଭୁଷଣ ଚୌଧୁରୀ ଖୁବ୍ ନିଶ୍ଚିନ୍ତ ଢଙ୍ଗରେ ଶୋଇଗଲେ । 'ମୋନା' ଆସିଥିଲା । ମୁଁ ତାକୁ ହାତଠାରି ମନା କରିଥିଲି ତାଙ୍କୁ ଉଠାଇବାକୁ ।



# ପୁତ୍ରଲାଭ

ଆମର ଖୁବ୍ ପ୍ରୟୋଜନବେଳେ ସେ ଆମ ଘରକୁ ଆସିଥିଲା । – ଆସିଥିଲା, ଠିକ୍ ନୁହେଁ, ବରଂ ଜଣେ ବନ୍ଧୁ ଆମ ଦୁଃଖ ସହି ନ ପାରି ତାକୁ ଆମ ପାଇଁ ଆଣି ଦେଇଥିଲେ । ତାକୁ ଦେଖିଲା ପରେ ମନେ ହେଲା ଯେ ଆମ ବନ୍ଧୁ ହୁଏତ' ତା' ଦୁଃଖ ବି ସହି ପାରି ନ ଥିଲେ ।

ପ୍ରଚଣ୍ଡ ବୈଶାଖୀ ଦ୍ୱିପ୍ରହର ଖରାରେ ସେ ଆସିଥିଲା । ଆମେ ସେତେବେଳେ ଝରକା କବାଟ ବନ୍ଦ କରି ନିବୁଜ କୋଠରୀ ଭିତରେ ଅପେକ୍ଷା କରିଥିଲୁ ଆକାଶର ମଧ୍ୟବିନ୍ଦୁରୁ କେତେବେଳେ ସୂର୍ଯ୍ୟ ଓହ୍ଲେଇବ । ଗଛ କୋରଡରେ କ୍ଳାନ୍ତ ପକ୍ଷୀ ପରି ଯେ ଯେଉଁଠି ଆଉଜି ଯାଇଥିଲୁ । କାହାରି ସାହସ ନଥିଲା ସେ ଅଗ୍ନିବର୍ଷା ଭିତରେ ବାହାରକୁ ଉଙ୍କି ଦେବାକୁ । ଓଃ, ସେ ଅଞ୍ଚଳଟାରେ ସତେ ଭାରି ଖରା !

କବାଟ ଫିଟେଇଲା ବେଳକୁ ଦେବ ବାବୁ ! ଏତେ ଖରାରେ ସ୍କୁଟର ଚଳେଇ ସେ କାହିଁକି ଆସିଛନ୍ତି ? ତାଙ୍କ ମୁହଁରୁ ଦେହରୁ ଧାସ ଫିଟୁଛି ! ସେ ମୋତେ ଦେଖିବା ମାତ୍ରେ ତାଙ୍କ ପଛରେ ହାତ ବୁଲେଇ ତାକୁ ସାମ୍ନାକୁ ଟାଣି ଆଣିଲେ ।

"ଆପଣ କହୁଥିଲେ ପରା ନୌକର ପିଲାଟିଏ ଦରକାର ବୋଲି । ଆଜି ଇଏ ଆସି ଗାଁରୁ ପହଞ୍ଚିଲା । ଆମ ଘରେ ତ ଗୋଟାଏ ଅଛନ୍ତି, ଆପଣ ଜାଣନ୍ତି । ତେଣୁ ଭାବିଲି ଏଠିକି ନେଇ ଆସିବି ।"

ସାଢେ ତିନି ଫୁଟ ଉଚ୍ଚ ମଣିଷ ଛୁଆଟିଏ । ନୁଖୁରା କହରା ଛୋଟ ଛୋଟ ବାଳ । ପକ୍ଷୀ ବୁକୁ ପରି ଦୁକୁଦୁକୁ ପଞ୍ଜୁରୀ । ହାପ୍‌ପେଣ୍ଟର ରଙ୍ଗ କହି ହେବ ନାହିଁ । ଖାଲି ପାଦ, ଖାଲି ଦେହ ।

..."ମୁଁ ୟା' ବାପକୁ ଜାଣେ । ସେ ଆମଘରେ ସେଇଠି ଗାଁରେ ବହୁ କାଳ ହେଲା କାମ କରିଚି । ଏ ଟୋକା ଦିଶୁଚି ଏମିତି; କିନ୍ତୁ ସବୁ କାମକୁ ପାରିବ, ଘରଝାଡୁ, ବାସନ ମଜା, ଲୁଗାଧୁଆ..."

ତା' ଓଠ ଖୋଲି ବନ୍ଦ ହେଇଗଲା । ଆଖି ନଇଁଗଲା ତଳକୁ । ହୋଇପାରେ ନିଜ ପ୍ରଶଂସା ଶୁଣି ଲାଜେଇ ଗଲା । ହୋଇପାରେ ଡରିଗଲା ଅତର୍କିତ ଆତଙ୍କରେ !

"ଆଚ୍ଛା, ତାହେଲେ, ଦାସବାବୁ, ମୁଁ ଆସେ । ...ଶୁଣ୍ ଟିଲୁ ! ସାର୍‌ଙ୍କ ଘରେ ରହିବୁ । ଭଲି

ବାବୁ । ଏଇଠି ମନ ଦେଇ କାମ କଲେ ମଣିଷ ହେଇଯିବୁ । ବାବୁ ଆଉ ମା' ଦିହେଁ ଭାରି ଭଲ ମଣିଷ । ତୋର ଖାଇବା ପିନ୍ଧିବା କଥା ବୁଝିବେ ଦେହପା'କୁ ଚିନ୍ତା କରିବୁ ନାହିଁ । ସହର ଜାଗାରେ କିଛି ଅଭାବ ନାଇଁ । ହେଲେ ଦେଖି ଚାହିଁ ଚଳିବୁ । ଏଇ ହେଲେ ତୋ ମାଲିକ, ତାଙ୍କୁ ମୁଣ୍ଡିଆ ମାର୍ !"

ତା' ପହରିଲା ପହରିଲା ପରି ଆଖି ତଳେ ଝାଳ, ଘିମିରିଆ କପାଳରେ ଝାଳ ତଙ୍କଶିରା ତଳେ ଝାଳ । ସେ ଚୁଟ୍‌କିନା ନଇଁ ପଡି ମୁଣ୍ଡିଆ ମାରିଲା । ମୁଁ ହାଁ, ହାଁ କହି ଘୁଞ୍ଚିଗଲି । ବାଡେଇ ହେଇଗଲି ମୋ ସ୍ତ୍ରୀଙ୍କ ଦେହରେ ।

ଦେବବାବୁ ଅଳ୍ପ ହସି ଦେଇ ଚାଲିଗଲେ ।

ତିଲୁ ଠିଆ ହେଇ ବୁଢା ଆଙ୍ଗୁଠିରେ ତଳ ଖୁରଉଥିଲା । ତା' ପକ୍ଷୀ ବୁକୁ ପରି ସରୁ ପଞ୍ଜୁରୀ ଦୁକୁଦୁକୁ ହେବାର ଦେଖା ଯାଉଥିଲା ।

"ଏଇଟା କୋଉ କାମକୁ ଲାଗିବ ମ ? ବଣି ଚଢେଇ ପରି ହେଇଚି । ଗିଳିବା କାମଟି ଛାଡି ଦେଲେ ଆଉ କିଛି ଯା' ହାତରେ ହବ ନାଇଁ ।"

ସେ ଆତଙ୍କିତ ହୋଇ ଥରେ ମୋ ସ୍ତ୍ରୀଙ୍କୁ ଚାହିଁଲା । ତଳକୁ ମୁଣ୍ଡ ପୋତି ଦେଲା । "ନାଇଁ ମ' ! ଦେବବାବୁ ପରା ଏଇ କହି ଦେଇଗଲେ ସେ ଖୁବ୍ ପାରିବ । ତମେ ଦେଖୁ ଦେଖୁ କାଇଁ ଏମିତି ହଉଚ ? ସେ ଦିନେ ଓଳିଏ ରହିଲା ପରେ ଜଣା ପଡିଯିବ ନାଇଁ...କିରେ ତିଲୁ, ତୁ ପାରିବୁ କାମ କରି ?"

ସେ କିଛି ନ କହି ନଳି ନଡିଆ ପରି ତା' ମୁଣ୍ଡଟିକୁ ବାଁ ପାଖକୁ ଲାଡି ଦେଲା ।

"ଆଚ୍ଛା, ଏବେ ଗଲୁ ପ୍ରଥମେ ଗାଧୁଆ ଘରେ ଗୋଡ ହାତ ମୁହଁ ଧୋଇ ପକା ।"

"ସେଇଠି ପାଲଟା ଲୁଗା ପଡିଛି ତିନିଖଣ୍ଡ, ତାକୁ ସାବୁନ ମାରି ଧୋଇ ଦେଉ ।" – ମୋ କଥାରେ ଯୋଡିଦେଲେ ମୋ ସ୍ତ୍ରୀ !

ତାଙ୍କୁ ଚାହିଁଲି । ସେ ଖାତିର କଲେ ନାହିଁ ।

ଚହଟରା ଘର ଝିଅ । ତିରିଶ୍ ବାଲ୍‌ଟି ପାଣିରେ ମାଜଣା ହେବେ । ତିନିଥର ଲୁଗା ବଦଳ କରିବେ ଦିନ ଭିତରେ । ହାତ ବାଜି ଗଲେ ବାସନ ଧୁଆ ହବ । ଘରେ ଝାଡୁ ଦିନରେ ତିନିଥର । ଅଳନ୍ଧୁ ଝଡାହେବ ପ୍ରତିଦିନ । ଧୁଆ ପୋଛା ହବ ସପ୍ତାହରେ ତିନିଦିନ ।

ତିଲୁଟା ମେଞ୍ଚଡଟାଏ । ବଣି ଚଢେଇ ପରି ଦୁର୍ବଳ । ସେ କ'ଣ ସତେ ଏତେ କାମକୁ ପାରିବ ? ସେତେବେଳକୁ ସେ କାମ ପାଇଁ ସାତଟା ମର୍ଦାନି ମାଇକିନା ହାରି ସାରିଥାନ୍ତି ।

ମୁଁ ଅନ୍ୟମନସ୍କ ହୋଇ ଦାଣ୍ଡ ଘରେ ବସିଲି ଖବରକାଗଜ ଦେଖିବାକୁ । ଭୟଙ୍କର ପୋଡି ତାତି ଭିତରେ ମୋ ସ୍ତ୍ରୀ ତିଲକୁ ଅଗଣା ବାଟେ ନେଇ ଗାଧୁଆ ଘରେ ଛାଡି ଆସିଲେ ।

ତାତିଲା ସିମେଣ୍ଟ ଅଗଣାଆରେ ସେ ଟିପେଇ ଟିପେଇ ପାରି ହଉଥିଲା ।

ମୋ ସ୍ତ୍ରୀ ବାଡି କବାଟ ବନ୍ଦ କରିବାରେ ଅଯଥା ଶବ୍ଦ କରନ୍ତି । ଖୁଆଡ ଖୁଆଡ ଘରେ

ରହିଲେ ବୋଧେ ଶବ୍ଦ କରିବାକୁ ଇଚ୍ଛା ହୁଏ । ଶବ୍ଦ ନ କଲେ ଚଳେ ନାହିଁ । ଜମି ରହିଥିବା ନିରବତାକୁ ଏମିତି ଅବଜ୍ଞା ନ କଲେ, ଚହଲେଇ ନ ଦେଲେ ସେ ପ୍ରତି ନିଶ୍ୱାସରେ ବୁକୁ ଭିତରେ ପଶିଯିବାର ଭୟ ଅଛି ତ ।

କିଛି ସମୟ ପତ୍ରିକା ପଢିବାକୁ ଚେଷ୍ଟା କଲି । ବଡ ବଡ ଶିରୋନାମା ଗୁଡାକ ଅର୍ଥହୀନ ଅକ୍ଷର ପରି ଜଣାଗଲା । ଫଡ୍ ଫଡ୍ କରି ପତ୍ର ଲେଉଟାଇଲି ଏବଂ ତଳେ ପକେଇ ଦେଇ ଉଠିଗଲି ବାଡିଆଡକୁ ।

କବାଟ ଫିଟେଇ ଅଗଣାରୁ ଯିବା ଶବ୍ଦ ମୋ ସ୍ତ୍ରୀ ଶୁଣିଥିବେ । ଶୁଣନ୍ତୁ । ମୁଁ କୂଅ ମୂଳ ଗାଧୁଆ ଘରକୁ ଗଲି । ଭଡାଘରର କାମଚଳା ବ୍ୟବସ୍ଥା । ନୁଆଣିଆ ଆଜ୍‌ବେଷ୍ଟସ୍ ଛାତ । ପାଞ୍ଚଇଞ୍ଚିଆ କାନ୍ଥ । ତହ ତହ ତାତି ସେ ଭିତରେ । ଡିଲୁ ଲୁଗା ସ୍ତୁପ ପାଖରେ କାବା ହୋଇ ଠିଆ ହୋଇଥାଏ ।

ମୋର ଇଚ୍ଛା ହେଲା ତାକୁ ଡାକି ନେଇଯିବା ପାଇଁ । ତାକୁ ମୁନ୍ଦେ ପାଣି ପିଆଇ ସାଷ୍ଟମ କରିବା ପାଇଁ । ସେ ହୁଏତ କିଛି ନ ଖାଇ ଘରୁ ବାହାରି ଥିବ । ମୋର ଇଚ୍ଛା ହେଲା ତାକୁ କ'ଣ ଗଣ୍ଡେ ଖାଇବାକୁ ଦେବା ପାଇଁ ।

କିନ୍ତୁ ପାଟି ଶୁଣେଇ କହିଲି, "କିରେ ହେମ୍ତି ଠିଆଟା କ'ଣ ହେଇଚୁ ? ତତେ ପରା ଲୁଗା କାଚିବାକୁ କୁହାଗଲା ।"

ସେ ମୁହଁକୁ ବଲବଲ ଚାହିଁଲା । ମୁଁ ରାଗିଯାଇ ପାରିଥାନ୍ତି । ହୁଏତ ରାଗିବା ଉଚିତ୍ ଥିଲା । କିନ୍ତୁ ହଠାତ୍ ଆଖି ପଡିଲା ପାଣି କୁଣ୍ଡରେ । ଟୋପାଏ ବି ପାଣି ନଥିଲା ସେଥିରେ । କୂଅ ମୂଳକୁ ଚାହିଁଲି । ବାଲ୍‌ଟି ନାହିଁ, ଦଉଡିଟା ପଡିଚି କେବଳ ।

ଓ, ତାହାଲେ ଏଇ ହେଲା ଅସୁବିଧା । ମୁଁ ପିଣ୍ଡାରୁ ଲୁହା ବାଲ୍‌ଟିଟା ଆଣି ଛେଚିଦେଲି କୂଅ ମୂଳେ । କହିଲି, "ନେ, ପାଣି ପାଞ୍ଚ ଛ ବାଲ୍‌ଟି କାଢି ଆଗ କୁଣ୍ଡଟାକୁ ଭର୍ତ୍ତି କରି ପକା ।"

ସେ କେମିତି ଗୋଟାଏ ତରବର ହେଲାପରି ବାହାରି ଆସିଲା । ବାଲ୍‌ଟିରେ ଗଣ୍ଠି ପକେଇ ଓହଳେଇ ଦେଲା କୂଅ ଭିତରକୁ । ତିରିଶ ହାତ ଦଉଡି । ପାଣିଯାଇ ପାତାଳରେ । ସେ ଅଧବାଲ୍‌ଟିଏ ପାଣି ଭିଡିଲା ବହୁ କଷ୍ଟରେ । ତା' ପିଠି ପାଖ ତନ୍ତୁ ସବୁ ଟାଣି ହେଇ ଯାଉଥିଲା । ପେଟ ଭାଗ ଭାଗ ହେଇ ଯାଉଥିଲା ଟାଣିଲା ବେଳେ ।

ସେ ବାଲ୍‌ଟି ଥୋଇ ଦେଇ ମତେ ନ ଚାହିଁ ଆତୁର ହେଲା ପରି ଆଗ ଆଞ୍ଜୁଳା ଆଞ୍ଜୁଳା ପାଣି ପିଇ ଦେଇଗଲା ।

ତାକୁ ଶୋଷ କରୁ ଥିଲା ନା ଭୋକ କରୁଥିଲା ? – ଛାଡ, ସେ କରୁ ତା' କାମ ।

ମୋ ଭାତ ନିଦ ଭାଙ୍ଗିଲା ବେଳକୁ ଶବ୍ଦ ଶୁଭୁଥିଲା ଗାଧୁଆ ଘରୁ । ମୋ ସ୍ତ୍ରୀ ଟିକିଏ ବେଶୀ ଶୁଅନ୍ତି । ସେ ଦିନ ସେ ହୁଏତ ଆଶା କରୁଥିଲେ ଯେ ଡିଲୁ ଚ'ଟା କରିଦବ ।

ମୁଁ ସାଢେ ତିନିଟା ବେଳେ ଯାଇ ଦେଖିଲା ବେଳକୁ ସେ ରୋଷଘରେ ପିଣ୍ଡାରେ ମୋଟ୍ଟାଟିଏ ହେଇ ଶୋଇଯାଇଚି । ମୁଁ ତାକୁ ଉଠାଇ ଦବାକୁ ଜମା ଚାହୁଁ ନ ଥିଲି । ଅଣ୍ଟାରେ ହାତ ଦେଇ ଚାହିଁ

ରହିଥିଲି କେବଳ ।

ପଛରୁ ନିର୍ଘାତ ପଡ଼ିଲା ପରି ଶୁଭିଲା । "ହେ, ଟୋକା" । ମୁଁ ଚମକି ପଡ଼ିଲି । ରାଗିଗଲି । ଚୁପ୍ ରହିଗଲି । ହସିଦେଲି ।

କହିଲି, "ଶୁଣ, ସେ ଟୋକା ଆଜି ଦିନ ସାରା କିଛି ଖାଇ ନାହିଁ । ପାଣି ବି ଆଞ୍ଜୁଳା ପିଇଚି ମୋ ସାମ୍ନାରେ ଖୁବ୍ ହାଲିଆ ହେଇ ପଡ଼ି ଯାଇଛି । ତାକୁ ଗଣ୍ଡେ କ'ଣ ପଖାଳ ବାଢ଼ିଦିଅ । ତା' ଉତ୍ତାରେ ଅନ୍ୟ କାମ ।"

ମୋ ସ୍ତ୍ରୀ ମତେ ଚାହିଁଲେ । କ'ଣ ମନେ ହେଲା କେଜାଣି, କହିଲେ, "ହଉ, ହେଲା ସାଆନ୍ତଙ୍କ ଯାହା ହୁକୁମ୍ !"

ଆମ ପାଟି ତୁଣ୍ଡରେ ଟିଲୁ ଧଡ଼ପଡ଼ ଉଠି ବସି ପଡ଼ିଲା ।

"ଆରେ, ଏଠି କ'ଣ ଶୋଇବାକୁ ଆସିଚୁ ? ଘରଦ୍ୱାର ଝାଡୁ କରିପକା । ମୁଁ ତୋ ପାଇଁ ପଖାଳ ବାଢ଼ି ଦଉଚି ।"

ଟିଲୁର ମୁହଁ ଆଖି ଉଜଳି ଉଠିଲା । ପହିଲି ଅସରା ବର୍ଷିବା ପୂର୍ବରୁ କାକର ପବନରେ ଶୁଖିଲା ଗଛର ଅଗିଲା ପତ୍ର ଆତୁର ଆନନ୍ଦରେ ଛନଛନ ହୋଇ ଉଠିଲା ।

ସେ ଝାଡୁଟିକୁ ଦୁଇ ହାତରେ ଧରି ଓଳଉ ଥାଏ । ଟେବୁଲ୍ ଆଉ କାନ୍ଥ ସନ୍ଧାରେ ଗଳି ଯାଉଥାଏ । ପଲଙ୍କ ତଳେ ପେଟେଇ ପଡୁଥାଏ । ତା' ଘିମିରିଆ ପିଠିରେ ଟେକା ଟେକା ଝାଳ ଝରୁଥାଏ । ସେ ହାଲିଆ ହୋଇ ଅଣ୍ଟା ସଳୁଖୁ ଥାଏ । ପୁଣି ନଇଁ ପଡୁଥାଏ । ତାକୁ ସେତେବେଳେ ଗଣ୍ଡିଏ ପଖାଳର ସପ୍ନ ହିଁ ଆଚ୍ଛନ୍ନ କରି ରଖିଥାଏ ।

ମୁଁ ବୋଧେ ସେତେବେଳକୁ ମୋ ସ୍ତ୍ରୀକୁ ଅନେକ ଡରିଲିଣି । ନିଜ ଉପରୁ ଅନେକ ପରିମାଣରେ ଆସ୍ଥା ହରେଇଲିଣି । ନ ହେଲେ ମୁଁ ଚିତ୍କାର କରି ପ୍ରତିବାଦ କରିଥାନ୍ତି । ଟିଲୁ ହାତରୁ ଝାଡୁ ଛଡେଇ ଫିଙ୍ଗି ଦେଇଥାନ୍ତି । ଆଦେଶ କରିଥାନ୍ତି ତାକୁ ପ୍ରଥମେ ଖାଇବାକୁ ଦବାପାଇଁ ।

ଆଉ ଜଣେ କାହାକୁ ନିଜ ସେବାରେ ଖଟେଇବା ମୋ ସ୍ତ୍ରୀଙ୍କର ସହଜ ସ୍ୱଭାବ । ତାଙ୍କ ଘରେ ସବୁବେଳେ ନୌକର ଖଟିଛନ୍ତି ଗତ ଚୌଦ ପୁରୁଷରୁ । ଚହଟରା ଖାନ୍‌ଦାନ୍ । ନୌକରକୁ ଭୋକ କରୁଚି କହିଲେ ସେ ବିଶ୍ୱାସ କରି ପାରନ୍ତିନି । ଯେମିତି ଗଛକୁ ଶୋଷ କରୁଛି, ହଡାକୁ ନିଦ ମାଡୁଛି କହିଲେ ସେ ଜମା ବୁଝି ପାରନ୍ତିନି । ପରିହାସ କଲାପରି ହସନ୍ତି ।

ଟିଲୁ ତଳକୁ ମହୁଁ କରି ପଖାଳ ଖାଇଲାବେଳେ, ଆସ୍ତେକିନି ପିଆଜ ଚୋବେଇଲା ବେଳେ ମୁଁ ପାଖରେ ବସି ଚାହିଁ ରହିଥିଲି ।

"କିଓ, ତମେ ସେଇଠି ଡାହାଣୀଙ୍କ ପରି କାହିଁ ସେଇଠି ତା' ଭାତଗୁଣ୍ଡାକୁ ଅନେଇ ବସିଚ ? ସେ ତା'ର ଖାଉ !"

ମୁଁ ଉଠି ଆସିଲି ନିଶ୍ଚୟ । କିନ୍ତୁ ଦେଖିବାକୁ ଭାରି ଇଚ୍ଛା ଥିଲା । – ବାଧ୍ୟ ହୋଇ ସ୍ତ୍ରୀଙ୍କ ଡାକରାରେ ଗଲି । ଦେଖିଲି କୌଣସି କାରଣରୁ ଭଦ୍ରମହିଳା ଖୁସିଥିଲା ପରି ଜଣା ପଡୁଥିଲେ ।

ସେଦିନ ଘଟଣା ପରେ ଡେଣିକି କଥା ସୁଧୁରି ଗଲା । ସବୁ ବାଟରେ ପଡିଗଲା ।

ଟିଲୁ ପାହାନ୍ତାରୁ ଉଠି ବାସି ଆଡତି କରିପାରିଲା । ମୋ ସାଙ୍ଗରେ ବଜାର ଯାଇ ଦୁଇଟା ମୁଣାରେ ବୋଝ ଟେକି ଆଣି ପାରିଲା ।

ତା' ପାଇଁ ଜାମା ଯୋତା କରି ଦିଆଗଲା । ନୂଆ ସଅପ, ପୁରୁଣା ତକିଆ ଚଦର ତାକୁ ଦିଆଗଲା । ଆମେ ଯାହା ଖାଉଥିଲୁ, ସେ ବି ସେଇଆ ଖାଇଲା ।

ସେ ଆସ୍ତେ ହସିବା ଆରମ୍ଭ କଲା । କଥା କହିବା ଆରମ୍ଭ କଲା । ନୂଆ ପତ୍ର ପକାଇ କଅଳିବାକୁ ଆରମ୍ଭ କଲା ।

ଆମେ ଦୁହେଁ ପରସ୍ପରକୁ ନ ଡାକି 'ଟିଲୁ'କୁ ସବୁ କଥାରେ ଡାକିଲୁ । ଯେ ଅଞ୍ଚଳରେ ସାଇପଡିଶା ତା' ନା ଜାଣିଗଲେ । ଆମ ଘରକୁ ଆସିଲେ ସେମାନେ କବାଟ ପାଖରେ 'ଟିଲୁ'କୁ ପ୍ରଥମେ ଡାକୁଥିଲେ । ଆମେ ଗୋଟିଏ ନୌକର ପିଲା ରଖିଛୁ ବୋଲି ଆମକୁ ସ୍ୱତନ୍ତ୍ର ସମ୍ମାନ ମଧ୍ୟ ଦେଉଥିଲେ । ମୁଁ ଆଉ ପିତାମ୍ବର ବାବୁ ହୋଇ ରହିଲି ନାହିଁ । ହେଇ ସେ ଯେଉଁ ବାବୁ ଘରେ ନୌକର ପିଲାଟିଏ ନାହିଁ...ସେଇ ।

ତା' ପାଇଁ ସାବୁନ୍ ଟାୱେଲ ଆସିଲା । ଆମ ସାଙ୍ଗେ ବାହାରକୁ ବୁଲି ଯିବାପାଇଁ ଭଲ ହଳେ ଡ୍ରେସ କରାଗଲା ।

"ଆଛା, ଏ ଦାନ୍ତକାଠି ପାଇଁ ସବୁଦିନ ସକାଳୁ ଗୋଟାଏ ପାଲା । ଆଜି ତା' ପାଇଁ ଶସ୍ତା ବ୍ରସ୍ ଆଉ ଗୋଟେ ସାନ ପେଷ୍ଟ ଆଣି ଦବଟି ।"

"ଟିଲୁର ଦାନ୍ତ ଘସା ପେଷ୍ଟ ସରି ଯାଇଛି । ସେ ଆମ ପେଷ୍ଟରୁ ଟିକିଏ କାଗଜରେ ନେଇ ଘସି ପକଉ ।"

'ତା' ପାଇଁ ଅଲଗା ଥାଳି ଗିନା ଛୋଟ କରି କାହିଁକି ଖର୍ଚ୍ଚାନ୍ତ ହବା । ସେ ବରଂ ଏଥିରେ ଖାଇ ଧୋଇ ଦଉ । ହୋଟେଲରେ ତ' ପୁଣି ବାର ପ୍ରକାର ଲୋକ ଖାଇଥିବା ପ୍ଲେଟକୁ ଅସନା ପାଣିରେ ବୁଡେଇ ଦେଇ ଆମକୁ ବାଢି ଦେଲେ ଆମେ ଖାଇ ଦେଉଚୁ ।'

...ଆସ୍ତେ ଟିଲୁର ରଙ୍ଗ ବେଶ୍ ଫର୍ଶା ହେଇ ଗୋରା ଦେଖାଗଲା । ମୋଟା ରୋଟା ହେଇ ସୁନ୍ଦର ଦିଶିଲା । ନାକ ତଳେ କଅଁଳ ଗୁମ ଦେଖାଦେଲା । ସେ ଅନେକ ନୂଆ କାମ ଶିଖିଗଲା । ମୋ ଜୋତା ଝଲକ ଦେଖି ବାହାର ଲୋକେ ପଚାରିଲେ କିଏ ପାଲିସ୍ କରିଛି ବୋଲି । ମୋ ଜାମା ପ୍ରତିଦିନ କଡା ଇସ୍ତ୍ରୀ ହୋଇ ହେଙ୍ଗର୍‌ରେ ଟଙ୍ଗା ହେଲା । ସେ ଚମତ୍କାର ମାଂସ ରାନ୍ଧିଲାବେଳେ ପଡିଶା ଘର ବାସ୍ନା ବାରି ଦେଉଥିଲେ ।

ଦିନେ ଆମ ପାଇଁ ଚା ଥୋଇ ସେ ଚାଲିଗଲାବେଳେ ମୁଁ ତାକୁ ପଛରୁ ଚାହିଁ ରହିଥିଲି ।

"କ'ଣ ସେମିତି ନ ଚିହ୍ନିଲାପରି ଅନେଉଚ ?"

ମୁଁ କେବଳ ହେଁ ହେଁ ହସିଲି । ତା'ର କୌଣସି ଅର୍ଥ ନଥିଲା, ପ୍ରୟୋଜନ ନଥିଲା ।

ସେ ମୋ ମୁହଁକୁ ଚାହିଁ ରହି ପଚାରିଲେ, "କ'ଣ କଥା କହୁନା, ଖାଲି ହେଁ ହେଁ ।"

"ମୁଁ ଭାବୁଛି ଏଣିକି ତିଲୁ ବରଂ ଏକୁଟିଆ ବଜାର ସଉଦା କରୁ ।"

"କାଇଁ, ତମ ସାଙ୍ଗରେ ଗଲେ କ'ଣ ଅସୁବିଧା ।"

ମୁଁ ପୁଣି ହସିଲି, ଭାରି ଅସସ୍ତିକର । କହିଲି, "କଥା କ'ଣ କି କାଲି ବଜାରରେ ମୋର ଗୋଟାଏ ପୁରୁଣା ଦୋସ୍ତ ସଙ୍ଗେ ଦେଖାହୋଇଗଲା । ସେ ଯ୍ୟା ଗାଲ ଚିପି ଦେଇ କହିଲା, ବାଃ କି ବଢ଼ିଆ ହେଇଚି ? – ଏଇଟା କ'ଣ ତୋ ବଡପୁଅ ?"

ଚ଼' ପାଟିରେ ଧରି ମୋ ସ୍ତ୍ରୀ ଫେଁ କିନା ହସି ପକେଇଲେ । ମୋ ଜାମା ପଟାରେ ଚ଼ ବର୍ଷା ହେଇଗଲା । ସେ ବଡ କଷ୍ଟରେ ଚ଼ କପ୍‌ଟିକୁ ଟେବୁଲ୍‌ରେ ଥୋଇ କିଛି ସମୟ ଖୁବ୍ ହସିଲେ । ହସୁ ହସୁ କାନ୍ଦି ପକେଇଲେ ।

କଥାଟାରେ ଏତେ ହସିବାର କ'ଣ ଥିଲା କେଜାଣି । ଆମର ପିଲାଝିଲା ନ ହୋଇ ସେତେବେଳକୁ ସାତବର୍ଷ ବିତୁଥିଲା ।

ସେ ଶଳା ତିଲୁଟାକୁ ଚୌଦ କି ପନ୍ଦର ହେଇଥିବ । ସେତିକି ପୁଅଟାଏ ମୋ ସ୍ତ୍ରୀ କ'ଣ ବାପଘରୁ କାଖେଇ ଆଣିଥାନ୍ତେ ନା' କ'ଣ । ଆଉ ସେ ହରାମି ଖନା ମହାନ୍ତିର ମୁହଁ ଚ଼ହିଁବାକୁ ମୋର ମନ ହେଉ ନ ଥିଲା । କାଳେ ତା' ସାଙ୍ଗେ ପୁଣି ବଜାରରେ ଭେଟଣା ହୋଇଯିବ ଏ ଭୟ ବି ଥିଲା । ମୁଁ ମନେ ମନେ ସ୍ଥିର କରି ନେଇଥିଲି ଯେ ବଜାର ଗଲେ ଏକା ଯିବା କଥାସିନା, ଆଉ ସେ ଟୋକାକୁ ନେଇ ନୁହେଁ ।

"–ତମେ ତମର ସେ ଦୋସ୍ତକୁ କହିଦେଲ ନାଇ – ଯେ ସେ ତମ ପୁଅ ନୁହେଁ, ତମ ଘରେ କାମ କରୁଥିବା ନୌକରଟୋକା ।"

ମୁଁ ଅଭିଯୋଗ କଲା ଭଳି କହିଲି, "ତମେ ତ' ତାକୁ ଗିଳେଇ ଗିଳେଇ ଷଣ୍ଢ ପରି କଲଣି, ସେ କ'ଣ ଆଉ କାହା ନୌକର ପରି ଦିଶୁଚି ?"

ସେ ପୁଣି ହସିଲେ । ଆମେ ସେମିତି ନୀରବ ଚ଼ ପିଇଲୁ । ତିଳ ଆସି କପ୍ ଉଠେଇ ନେଲା ।

ମୋ ସ୍ତ୍ରୀ ଏତେ ଗୁଡିଏ ହସିବା ପରେ ଖୁବ୍ ଗମ୍ଭୀର ହୋଇ ଯାଇଥିଲେ ।

ତା' ଆର ଦିନ ସକାଳୁ ତିଲୁକୁ ଦେଖୁ ଦେଖୁ ମୁଁ ଖୁବ୍ ଚିଡି ଯାଇଥିଲି । ସେଥିପାଇଁ କୌଣସି କାରଣ ନ ଥିଲା ।

ଦପ୍ତରରେ କାମ କରିବାକୁ ମନ ଲାଗିଲା ନାହିଁ । ତିନିଟା ବେଳକୁ ଚ଼ଲି ଆସିଲି । ଦାଣ କବାଟ ଖୋଲା ଥିଲା, ଟପ ଟପ୍ ପଶିଗଲି ଭିତରେ । ଦେଖିଲି –

ମୋ ସ୍ତ୍ରୀ ଗୋଡ ଲମ୍ବେଇ ବସିଛନ୍ତି । ତାଙ୍କ ପଛରେ ଟିପେଇ ବସିଛି ତିଲୁ । ଜଣା ଯାଉଛି ସେ ତା' କୋଳ ଭିତରେ ବସିଛନ୍ତି । ସେ ଚିରୁଣୀ ଧରି କୁଣ୍ଡେଇ ଦଉଚି ।

ମୋତେ ଦେଖି ସେ ଧଡପଡ ଉଠି ପଡିଲା । ମୋ ସ୍ତ୍ରୀ ସେମିତି ବସି ରହି ଅତି ସହଜ ଢଙ୍ଗରେ କହିଲେ, "ଆଜି ଏତେ ସହଳ କେମିତି ବାହାରି ଆସିଲ ?"

ମୋତେ ବାଧ୍ୟ ହୋଇ ମୋର ସବୁ ସ୍ନାୟୁକୁ ଢିଲା କରିନେବାକୁ ପଡ଼ିଲା । ହସି ଦେଇ କହିଲି, "ଆସିବାରୁ କିଛି ଅସୁବିଧା ହେଲା କି ?"

"ନିଶ୍ଚୟ ଅସୁବିଧା ହେଲା"

ମୁଁ ଚମକି ପଡ଼ିଲି ।

..."ତୁମ ପାଇଁ ଚକୁଳି କରିବାକୁ ବିରି ଚାଉଳ ବତୁରୁଛି । ବଟା ହେଇନି ଜଳଖିଆ ହବାକୁ ଡେରି ହେବ ।"

ଟିଲୁକୁ କହିବା ପୂର୍ବରୁ ସେ ଗୁଗୁଣା ନେଇ ବସି ସାରିଥିଲା । ନୌକର ଟୋକାଟା ତ' । ବୟସ ଏମିତି ତେର କି ଚୌଦ ହବ । ଗୁଣି ମାଲିକାଣୀର ମୁଣ୍ଡ କୁଣ୍ଡେଇ ଦେବା ସେମିତି କିଛି ଅସାଧାରଣ କଥା ନୁହେଁ...

...ମୁଁ ଟିଲୁକୁ ଅନେକ ସମୟ ଦେଖୁଥିଲି । ତା' ବୟସକୁ ଚାହିଁଲେ ସେ ଖୁବ୍ ମଜବୁତ୍ ଦେଖା ଯାଉଥିଲା । ଗୋଡ ପେଣ୍ଡା ଜଙ୍ଘ, ଖୁବ୍ ଗୋରା ଆଉ ବଳୁଆ । ...ଗଜା ଭେଣ୍ଡାଟାଏ! ଗାଁରେ ଥିଲେ ବିଭା ହେଇ ଯାଆନ୍ତା ।...

ଦିନେ ଏମିତି ବୁଲିଯିବା ଆଳରେ ମୁଁ ଦେବ ବାବୁଙ୍କ ଘରେ ପହଞ୍ଚିଲି । ସେ ଦେଖୁ ଦେଖୁ କହିଲେ, "ଆରେ ପିତାମ୍ବର ବାବୁ, ଆପଣ ବିଶ୍ୱାସ କରି ପାରିବେ ନାହିଁ ମୁଁ ତ' ଟିଲୁକୁ ଦେଖି ଚିହ୍ନି ପାରିଲି ନାହିଁ ସେ ୟା ଭିତରେ ଜବରଦସ୍ତ ଭେଣ୍ଡାଟାଏ ହେଇଗଲାଣି ।"

ମୋତେ ଅସୁସ୍ଥ ଲାଗିଲା ।

ନୀରବ ସିଗ୍ରେଟ ଲଗେଇ କହିଲି, "ଦେବବାବୁ, ଟିଲୁକୁ ତା' ଗାଁକୁ ପଠେଇ ଦିଅନ୍ତୁ ।"

ସେ ନ ବୁଝିଲା ପରି ମୋତେ ଚାହିଁଲେ "ଏଁ ?" ତା'ପରେ ପାଖେଇ ଆସି ଆସ୍ତେ କହିଲେ, "କ'ଣ ଅସୁବିଧା କଲା କି ?"

ମୁଁ ନୀରବ ରହିଲି । ସେ ଆହୁରି ଉତ୍କଣ୍ଠିତ ହେଲେ ।

"ନା ସେମିତି କିଛି ନୁହେଁ । ତେବେ ସେ ଏତେ ଗୁଡ଼ିଏ ବର୍ଷ ଏଠି ରହିଲାଣି, ତା' ବାପ ମା' ତାକୁ ହୁଏତ ଚାହୁଁଥିବେ ।"

ଦେବବାବୁ ଉଶ୍ୱାସରେ ଆରାମ ଚୌକିକୁ ଆଉଜି ଯାଇ ଅଳ୍ପ ହସିଲେ, "ଓ, ଏଇକଥା । ଆପଣ ନିଶ୍ଚିନ୍ତ ଥାନ୍ତୁ । ମୁଁ ସେ ପକ୍ଷ ସମ୍ଭାଳିଛି । ମୁଁ ତା' ବାପାକୁ କହି ଦେଇଛି କେମିତି ତା' ପୁଅ ରଜାପିଲା ପରି ଦିଶିଲାଣି । ଗାଁକୁ ଆଣିଲେ ସେ କେମିତି ନ ଖାଇ ନ ପିଇ ଅଣହେଫାଜତରେ ମରିଯିବ । – ଆପଣ ମୋଟେ ସେ କଥା ଚିନ୍ତା କରନ୍ତୁ ନାହିଁ । ଆଜିକାଲି ନୌକର ପିଲାଟିଏ ପାଇବା ଭାରି କଷ୍ଟ ।"

ମୁଁ ଆଉ କିଛି ନ କହି ଫେରି ଆସିଲି ।

ବଜାରରେ ଆସି ଏଣେ ତେଣେ ବୁଲିଥିଲି । ଗୋଟିଏ ମଜବୁତ୍ ଛୁରୀ ଆଖିରେ ପଡ଼ିଲା । ତାକୁ ବାରମ୍ବାର ହାତରେ ଧରି ତା' ମୁନ, ଦାନ୍ଦ ପରୀକ୍ଷା କରିଥିଲି । ଖୁବ୍ ଇଚ୍ଛା ହେଇଥିଲା

କିଣିବାକୁ । ସେମିତି କିଛି ପ୍ରୟୋଜନ ନ ଥିଲା । କିନ୍ତୁ ଘରେ ଛୁରୀଟାଏ ପଡିଥିଲେ କ୍ଷତି କଣ । ଦାମ ବି ମାତ୍ର ତେର ଟଙ୍କା । ପାଖରେ ପଇସା ନ ଥିଲା । ଫେରି ଯାଇଥିଲି ଘରକୁ ।

ମୋରି ପୁରୁଣା ଟାଓ୍ୱେଲ ଗୁଡେଇ ହେଇ ଡିଲୁ ଠିଆ ହୋଇଥିଲା ଦର୍ପଣ ପାଖରେ । ଗାଧେଇ ସାରି ଫେରିଥାଏ । ତା' ପଛରେ ଠିଆ ହେଇ ମୋ ସ୍ତ୍ରୀ ତା' ବେକ ଆଉ ପିଠିରେ ପାଉଡର ଝାଡି ଦଉଥାନ୍ତି ।

ଗବ୍ ଗବ୍ ହୋଇ ମୋ ଭିତରୁ କ'ଣ ସବୁ ଉତୁରି ପଡିଥାନ୍ତା । ମୁଁ କିନ୍ତୁ ଚୁପ୍‌ଚାପ୍ ଛିଡା ହେଲି । ମୋ ଆସିବା କଥା ଉଭୟେ ଜାଣିଥିଲେ । ସେ ଟୋକା ସାମାନ୍ୟ କନକନ ହେଲା । ମୋ ସ୍ତ୍ରୀ କିନ୍ତୁ ଜମା ଲେଉଟି ଚାହିଁଲେ ନାହିଁ ।

ବରଂ ପାଉଡର ଝାଡୁ ଝାଡୁ କହିଲେ, "କୁଆଡେ ଯାଇଥିଲ ସକାଳୁ ? ୟାକୁ ଯତ୍ନ କରି କରି ମୋ ବେଳ ଯାଉଚି । ଟିକିଏ ନ ଦେଖିଲେ ପୁଣି ଘୁସୁରି ହେଇଯିବ ଏଇଟା ।"

ମୋ ଭିତରେ ଖୁବ୍ ରୁକ୍ଷ ସ୍ୱରରେ କିଏ କହିବାକୁ ଚାହୁଁଥିଲା, "ତା' ପାଇଁ ତୋ'ର ଏତେ ଦରଦ କାହିଁକି ଶୁଣେ । ତୁ ତ' ମୋର ଏମିତି କେବେ ଯତ୍ନ ନେଇ ନାହୁଁ ।"

ଗଳା ସଫା କରି କହିଲି, "ଏ ପାଉଡରରେ କ'ଣ ଘିମିରି ମରିବ ? ତା' ପାଇଁ ଗୋଟେ ନାଇସିଲି ପାଉଡର ଆଣି ଦବା କି ? ଟିକିଏ ପଇସା ପଡିବ ।"

ମୋତେ ଉଭୟେ ବୁଲି ଚାହିଁଲେ । ଡିଲୁ ମୁରୁକି ମାରୁଥିଲା । ମୋ ସ୍ତ୍ରୀ ଖୁସିରେ ହସି ହସି କହିଲେ, "ଘିମିରି ପାଉଡର ଗୋଟାଏ ଅଲଗା ମିଳୁଛି ? ନେଇଆସ ।"

ନିଆଁଧାସରେ ମୋ ମୁହଁ ଝଲସି ଯାଉଥିଲା ।

ସେଦିନ ସଞ୍ଜବେଳେ ମୁଁ ଗୋଟାଏ ନାଇସିଲ ପାଉଡର ତ' ଆଣିଦେଲି । ଗୋଟାଏ ଅଜ୍ଞାତ କ୍ରୋଧରେ ଚିପି ଦେବାରୁ ସେ ପାଉଡର ଡବାଟା ଚେପା ହୋଇଗଲା । ମୁଁ ସେଇ ବଜାରରୁ ତେର ଟଙ୍କା ନେଇ ଛୁରୀଟାକୁ ମଧ୍ୟ କିଣି ଆଣିଥିଲି । ସେମିତି କିଛି ଉଦେଶ୍ୟ ନଥିଲା । ହେଲେ ଛୁରୀଟାଏ ଘରେ ଥିଲେ କ୍ଷତି କ'ଣ ?

...ସଂଜବେଳେ ଅଗଣାରେ ଖଟିଆ ପକେଇ ମୋ ସ୍ତ୍ରୀ ମୁହଁମାଡି ଶୋଇଥିଲେ ଏବଂ ଡିଲୁ ତାଙ୍କ ଗୋଡ ମୋଡି ଦଉଥିଲା । ବଳାଗଣ୍ଠିଠାରୁ ପିଚ୍‌ମୂଳଯାଏ ଖୁବ୍ ଜୋର ଲଗେଇ ଦୁଇ ହାତରେ ଦବଉଥିଲା । ଦଉଡିଆ ଖଟ ସ୍ପିଂ ଭଳି ନିର୍ଦ୍ଦିଷ୍ଟ ଛନ୍ଦରେ କଟ କଟ ଡାକୁଥିଲା ।

ମୁଁ ପାଟି କରି ପକେଇଲି । "କ'ଣ ଚାଲିଚି ଏଠି ?" ଏତେ ସରଳ ଏବଂ ନିରୀହ ପ୍ରଶ୍ନଟାକୁ ଏତେ ଚିତ୍କାର କରି ପଚାରିବାର ପ୍ରୟୋଜନ ହୁଏତ ନଥିଲା ।

ଡିଲୁ ସଳଖି ଗଲା । ମୋ ସ୍ତ୍ରୀ ସାମାନ୍ୟ ଚମକି ପଡିଲେ । ଚିଡିଯାଇ କହିଲେ, "ଏମିତି କାଇଁ ଅଭଦ୍ରଙ୍କ ଭଳି ପାଟି କରୁଚ ? ଆଜି ଦିନସାରା ଗୋଡ ହାତ ବିନ୍ଧା ଘୋଳା ହଉଚି ଯେ ମୋ କଥା ମତେ ଦୁଲୁମୁଲୁ । ଛେଚି କୁଟି ହେଇ ଜର ହେଲା ପରି ଲାଗୁଚି । ତୁମେ ଆସି ଏମିତି ରଡିଟାଏ ଛାଡୁଚ । କ'ଣ ହେଲା, କ'ଣ ଦର୍କାର ଅଛି କୁହ ।"

ଫୁଲରେ ବୋଝେଇ ହୋଇଥିବା କଅଁଳ ଗଛଟିଏ ପରି ମୋ ସ୍ତ୍ରୀ ମୋତେ ଦିଶୁଥିଲେ ବିଭାହେଲା ଦିନଠାରୁ । ଗୋଟିଏ ଫୁଲର ଗୋଟିଏ ପାଖୁଡା ମଳିନ ଦିଶିଲେ ମୁଁ ସହି ପାରୁ ନଥିଲି ।

ସେଦିନ କିନ୍ତୁ ମୁଁ ଜମା ତାଙ୍କ ପାଖ ପଶିଲି ନାହିଁ । ଜର ଦେଖିଲି ନାଇଁ । ବରଂ ବାହାରକୁ ଗଲି ଯାଇଥିଲି ତମ୍‌ତମ୍ ହେଇ । କ'ଣ କାରଣ ଥିଲା ସେମିତି ଆଚରଣ କରିବାରେ ?

ଦୋକାନ ଦୋକାନ ବୁଲିଲି । ହୋଟେଲରେ ପଶିଲି । ନିଶା ଖାଇବାକୁ ଇଚ୍ଛା କଲି । ଲୁଟ୍ ତରାଜ କରି ଛୁରୀ ଚଳେଇବାକୁ ଇଚ୍ଛା କଲି । ଯାବତୀୟ ଅପରାଧ ମନ ଭିତରେ ପାରି ହେଉଥିଲା ବେଳେ ମୋତେ ଚିତ୍କାର ମାନ ଶୁଭୁଥିଲା । ମୋତେ ଉତ୍ତେଜିତ ଲାଗୁଥିଲା । ମୁଁ ଆହୁରି କ୍ରୋଧରେ ଜଳି ଉଠୁଥିଲି ।

ଶେଷରେ ଗୋଟେ ଗଳି ଭିତରେ ଛୋଟ ଗୁମୁଟି ଘରେ ପଶି ପନ୍ଦର ଟଙ୍କାରେ ନିଷିଦ୍ଧ ନଗ୍ନଚିତ୍ର ଭିଡିଓ ଟେପ୍‌ରେ ଦେଖିଲି । ଚିତ୍ରରେ ସେ ଲୋକଟାର ନାକ ନିଶ ଫୁଲି ଉଠୁଥାଏ । ଆଖି ତହକୁଥାଏ । ଯେ ଝୁଲୁଥାଏ ଅସୀମ ପରାକ୍ରମରେ । ମୁଁ ମଝିରେ ଅସୁସ୍ଥ ବୋଧ କରୁଥାଏ । ଉତ୍ତେଜନାରେ ବାନ୍ତି ମାଡୁଥାଏ ମୁଁ ସମ୍ଭାଳି ନପାରି ଉଠି ଆସିଲି ବାହାରକୁ । ରାତି ଅନେକ ହେଇ ଯାଇଥିଲା ପରି ଲାଗିଲା । ମୋର ଫାଟି ପଡୁଥିବା ସ୍ନାୟୁର ଉତ୍ତେଜନା ଥଣ୍ଡା ପବନରେ ଆସ୍ତେ ଆସ୍ତେ ଶାନ୍ତ ପଡି ଆସିଲା । ମୁଁ ଘରଆଡେ ମୋହିଲି । ଖୁବ୍ ସତର୍କ ଖୁବ୍ ଉତ୍କଣ୍ଠିତ ଥିଲି ସେତେବେଳେ ।

ନିରୋଳା ରାସ୍ତାରେ ଗରି ପାଞ୍ଚଟି ଭଡାଘର ଭିତରୁ ଆମର ଗୋଟିଏ । ଆମ ଘରଟାରେ ହିଁ ଆଲୁଅ ଜଳୁଥିଲା ହାଉ ହାଉ । ବାକି ବତୀ ଲିଭେଇ ହୁଏତ ଶୋଇ ଯାଇଥିଲେ । ମୁଁ ପାଦ ଟିପି ନିଃଶବ୍ଦରେ ବାରଣ୍ଡାକୁ ଉଠିଲି । କାନେଇଲି କବାଟ ପାଖରେ, ଝରକା ପାଖରେ ଶୋଇବା ଘର କାନ୍ଥ ପାଖରେ ! ସତେବା ମୁଁ ଏକ ଜାରପୁରୁଷ, ଆସିଛି ପରକୀୟା ପାଇଁ । ଘରେ ଯେ ଅଛି ସେ ହିଁ ମାଲିକ । ମୁଁ ଟା ଗୋଟାଏ ଅଇଁଠାଖିଆ ।

ମୁଁ ଫାଉଁ କିନା ରାଗିଯାଇ କବାଟରେ ଗୋଟାଏ ଗୋଇଠା ପକେଇଲି । କବାଟ ଧଡ ଧଡ ହେଇ ଦୁଲୁକିଲା । ସେ ଖଣ୍ଡମଣ୍ଡଳ ଚମକି ପଡିଲା ସେ ଶବ୍ଦରେ । ପଡିଶାଘର ବତୀ ଜଳି ଉଠିଲା । ମୁଁ ଖାତିରି ନକରି ଆଉ ଗୋଟାଏ ଲାତ ମାରିଲି ।

କବାଟ ଫିଟିଲା ନାହିଁ । ଆର ପାଖରୁ ମୋ ସ୍ତ୍ରୀ ଖେଙ୍କି ଉଠିଲେ, "କିଏ ? କ'ଣ ଦର୍କାର ? ଦାସବାବୁ ନାହାନ୍ତି ।"

ସେଇଆ । ଦାସବାବୁ ତ ନିଶ୍ଚୟ ନାହାନ୍ତି । ସେଥିରେ ତୁମର କ'ଣ ଅସୁବିଧା ? ମୁଁ କିଛି ନ କହି ଚୁପ୍ ଠିଆ ରହିଗଲି ।

ଟିଲୁର ସର ଶୁଭିଲା, "କିଏ ? କିଏ ? ବାବୁ ଘରେ ନାହାନ୍ତି ।"

ମୁଁ ଗର୍ଜି ଉଠିଲି, "ଆବେ ତୋ ବାପା । କବାଟ ଖୋଲୁଚୁ ନା ନାହିଁ ?"

ଆରପାଖ ସଂପୂର୍ଣ୍ଣ ଚୁପ୍ ।

ଦାନ୍ତ ରଗଡି ମୁଁ କବାଟରେ ଦୁମ୍ ଦୁମ୍ ବିଧାମାରି କହିଲି, "ଆବେ କବାଟ ଫିଟା ମୁଁ ଡାକୁଚି ।"

ଧଡାସ କିନା କବାଟ ଫିଟିଗଲା ।

ପାଖାପାଖି ଠିଆ ହୋଇଥିଲେ ଦୁଇ ଜଣ ମୋ ସ୍ତ୍ରୀ ଏବଂ ଟିଲୁ ତବ ତବ ଆଖିରେ ମୋତେ ଚାହିଁ ରହିଥିଲେ ।

ମୁଁ କ'ଣ ଅପରିଚିତ ? ଅପ୍ରତ୍ୟାଶିତ ? ଚୋର ନା' ଡକେଇତ ?

ମୁଁ ଟିଲୁ ମୁହଁରେ ପଞ୍ଝା ମଡେଇ ପେଲି ଦେଲି । ସେ ତଳେ ପଡି ଯିବାରୁ ମୁଁ ତା' ଉପରେ ଦୁଇ ଚାରିଲାତ ବସେଇ ଦେଲି । ସେ ଚିତ୍କାର କଲା । ମୋ ସ୍ତ୍ରୀ ଚିତ୍କାର କଲା । ଟିଲୁକୁ ଟଲୁ ଉଠାଇଲା ବେଳେ ତା' ଉପରେ ଗୋଟାଏ ଲାତ ବସିଗଲା ।

ମୁଁ ଶଙ୍କି ଗଲି ଏବଂ ଘୁଷ୍ଟିଗଲି । ଗୋଟାଏ ପଟିଆରାରେ ଯେ ମୁଁ ଖୁବ୍ ରାଗିଛି ।

ମୋ ସ୍ତ୍ରୀ ଭୂଇଁରେ ଭରା ଦେଇ ମୋତେ ଚାହିଁ ରହିଲା । ଆଖିରୁ ଥୋପି ପଡୁଥିଲ କେମିତି ଗୋଟାଏ ଆତଙ୍କ ।

ଟିଲୁ ମାଡ ଖାଇ ଛଟପଟ ହଉ ଥିଲା ।

ମୋ ସ୍ତ୍ରୀର ବାଳ ମୁକୁଳା ଦେହରେ ମୁଣ୍ଡରେ ଲୁଗା ଓହଳି ରହିଥିଲା । ମୋ ସାମ୍ନାକୁ ଚାଲିଆସି କହିଲା, "କ'ଣ ଆଜି ମଦ ଖାଇଚ ?"

ମୁଁ ଗୋଡ ଫରକେଟେଇ ଠିଆ ହେଲି । ବୁକୁ ଉପରେ ହାତ ଛନ୍ଦି କହିଲି, "ଯଦିବା ଖାଇଚି ସେଥିରେ ତୁମର କ'ଣ ଯାଏ ଆସେ ?"

"କଣ ହେଲା ? ମୋର କିଛି ଯାଏ ଆସେ ନାହିଁ । ହଉ ତେବେ ତମେ ଏଇଠି ଥାଅ – ଆମେ ଆଉ ଏଇଠି ରହିବୁ ନାଇଁ ।"

"ଆମେ ? ? ...ହା, ହା ହା"

ମୋ ହସକୁ ସେ ବୋଧେ ଆଦୌ ବୁଝି ପାରିଲା ନାହିଁ । ସେ କିନ୍ତୁ ସତକୁ ସତ ଡରିଗଲା । ପଛେଇ ପଛେଇ ଚାଲିଗଲା ଆର ବଖରାକୁ । ଭିତରୁ କବାଟ ପକେଇ ଦେଲା । କାନ୍ଦଣାର ସୁକ୍ ସୁକ୍ ସର ସ୍ପଷ୍ଟ ଶୁଭୁଥିଲା ଏପାଖରୁ । ମୁଁ ନିଃଶବ୍ଦରେ ଜାମା ପଟା କାଢି ଫିଙ୍ଗି ଦେଲି ଆଲଣା ଉପରକୁ । ଫିଙ୍ଗିଦେଲି ଜୋତା । ମୋଜା କାଢିବା ପ୍ରୟୋଜନ ମଣିଲି ନାହିଁ । ସେମିତି କୁଢେଇ ହେଇ ପଡିଲି ବିଛଣାରେ ।

...କ'ଣ ହେଇଗଲା ସତେ ! ବଢିପାଣିର ଗୋଟାଏ ଉଜାଣିରେ ମାଡିଗଲା ଅଜସ୍ର ବାଲି ସୁକୁମାର ଫୁଲ ବଗିଚାରେ । ମୋ ଭିତରେ ତଥାପି କ'ଣଟାଏ ଫୁଫୁକାର କରୁଥାଏ । ଟଗମଗ ଫୁଟୁଥାଏ ରକ୍ତ ।

ମୁଁ ଖଣ୍ଡେ ଅଣ୍ଡର ଓ୍ୱିଅର ପିନ୍ଧି ଚାରିକାତ ମେଲି ପଡିଥିଲି । କିନ୍ତୁ କାନ ଡେରି ରଖିଥିଲି । ମୋର ନିଶ୍ୱାସ ରୋକି ଯାଉଥିଲା । ବୁକୁ ଧଡ ଧଡ ହଉଥିଲା । ମୁଁ ଭୁସ୍ କିନା ଉଠି ବସିଲି । କବାଟ

ଖଟ୍ ଖଟ୍ କଲି, "କବାଟ ଫିଟାଅ।"

କିଛି ସମୟ ପରେ କବାଟ ଫିଟିଲା। ଟିଲୁ ହିଁ ଫିଟେଇଲା। ଗୋଟେ ସଅପ୍ ଉପରେ ମୋ ସ୍ତ୍ରୀ ନିର୍ବେଦ ପଡିଥିଲା। ତଥାପି ଧକଉଥିଲା। କେଜାଣି କୋଉଠି ଅଖଡରେ ବସି ଯାଇଥିଲା ଲାତଟା।

ମୁଁ ବୁଲି ପଡି ଟିଲୁକୁ କଟମଟ ଚାହିଁଲି।

"ଶୁଣ୍ ବେ ଟୋକା! ତୁ ହାରାମଜାଦା କାଲି ଏ ଘରୁ ବାହାରି ଯା। ମୁଁ ତୋ' ମୁହଁ ଦେଖିବାକୁ ଚାହେଁନା'।"

– ଶାଲା ନମକ ହାରାମ, – ନ ଗଲେ ତୋ ବୁକୁ ବିଦାରି ଦେବି ଛୁରୀରେ!

ସେ କାବା ହେଇ କାନ୍ଥକୁ ଆଉଜି ଠିଆ ହେଇଥାଏ। ପଲକ ପଡୁ ନଥାଏ ତା' ଆଖିରେ। ମୁଁ ତା' ବୁକୁ ପେଟ ଜଙ୍ଘ ଦେଖି ପୁଣି ଚିଡିଗଲି।

କ'ଣଟାଏ ମୋ ଭିତରୁ କୁଦାମାରି ତା' ତଣ୍ଟିକୁ ଚିପି ଧଇଲା।

ଟିଲୁର ମୁହଁ ବିବର୍ଣ୍ଣ ହୋଇଗଲା।

ମୁଁ ପୁଣି ତାକୁ ମନଇଚ୍ଛା ପିଟି ଦେଇଗଲି। ସେ ଦୌଡି ପଳେଇଲା ଅଗଣାକୁ। ଏବଂ ମେହେନ୍ତର ରାସ୍ତାରେ ବାହାରକୁ। ତା'ର ଫୁଙ୍ଗୁଳା ଦେହ। ଖାଲିପାଦ। ଦେହସାରା ଅସଂଖ୍ୟ ଦାଗ ଏବଂ କ୍ଷତ।

ମୁଁ ଅଗଣାରେ ଠିଆ ହୋଇ ଚାହିଁ ରହିଲି। ମୁଁ ବି ହାଲିଆ ହୋଇ ଯାଇଥିଲି ଉତ୍ତେଜନାରେ।

ମୋ ସ୍ତ୍ରୀ ଆଶ୍ଚର୍ଯ୍ୟ ଭାବରେ ବିହ୍ୱଳ ଦେଖା ଯାଉଥିଲା। ହୁଁଃ, ଏତେକାଳ ମୋର ମର୍ଦାନୀ ତେଜ ଦେଖି ଛାନିଆ ହେଇ ଯାଇଥିଲା ସେ ମାଇକିଣା! ତା' ତବ ତବ ଆଖିରୁ ପାଣି ଝରି ଯାଉଥିଲା।

ମୁଁ ଖାତିର୍ ନକରି ଶୋଇବା ଘରେ ପଶି କବାଟ ପକେଇ ଦେଲି। ରାତି ସେତେବେଳକୁ ଏଗାରଟା ପାରି ହୋଇ ଯାଇଥିଲା। ମୋର ମନେ ହେଲା କାନ୍ଥ ବାଡ ସବୁ ନିଶ୍ୱାସ ସ୍ତବ୍ଧ କରି ଶୁଣୁଛନ୍ତି। – ବାରିଆଡ ଗଛ ଦାଣ୍ଡପାଖ ପଡିଆ। ନିଦ ମଳମଳ ଆଖିରେ ଅନ୍ଧାରକୁ ଚାହିଁ ରହିଛନ୍ତି କ'ଣ ହେଲା ବୋଲି। ଗୋଟାଏ ଟୋକାର ବୋବାଳି ଏବଂ ଗୋଟାଏ ଅଣ୍ଡିରାର ଗର୍ଜନ ସାଙ୍ଗକୁ ମାଇକିନାର କାନ୍ଦଣା ସମସ୍ତଙ୍କୁ ନିଦରୁ ଉଠାଇ ଦେଇଥିଲା। ସେମାନେ ବୋଧହୁଏ ଫିସ୍ ଫିସ୍ କଥାବାର୍ତ୍ତା କରୁଥିଲେ। କୌଣସି ଗୋପନ କଥା ସନ୍ଦେହ କରି ଠିସ୍ ଠିସ୍ ହସୁଥିଲେ। କାଲି ହୁଏତ' ସେମାନେ କାନକୁ କାନ କଥା ପ୍ରସାରି ଦେବେ। ସେଇଟା ବ୍ୟାପିଯିବ ସହରସାରା।

...ଆହେ, ଶୁଣିଲଣି! କାଲି ରାତିରେ ପରା ଧରା ପଡିଲା। ଯୋଉ ପାଟିତୁଣ୍ଡ, ପିଟାପିଟି...

ମୁଁ ହୁଏତ' ରାସ୍ତାରେ ଚାଲି ପାରିବି ନାହିଁ। ଲୋକେ ଆଙ୍ଗୁଠି ଦେଖେ ହସି ପାରନ୍ତି।

ଏଠୁ ବଦଳିମାଗି ଚାଲିଯିବାକୁ ପଡିପାରେ। ଆମକୁ ମୁହଁ ଲୁଚେଇବାକୁ ପଡିପାରେ। ...ଇଜ୍ଜତ୍ କଥାରେ ଆଉ ଉପାୟ କ'ଣ?

ମୁଁ ଅନ୍ଧାର ଭିତରେ ଛଟପଟ ହେଲି । ଅନେକ ବିକଟ ଦୃଶ୍ୟ ଦେଖିଲି । ମନକୁ ମନ ଖିଞ୍ଚି ଦେଇ ବିକଟାଳ ଉଲଗ୍ନ ରୂପ ତିଆରି କଲି । ନିଦ ବୋଧହୁଏ ହେଲା ନାହିଁ । ପାହାନ୍ତିଆରୁ ଆଖି ଫିଟି ଯିବାକୁ ମୁଁ ଅନୁଭବ କଲି ଯେ ମୁଁ କିଛି ସମୟ ହୁଏତ ଶୋଇ ଯାଇଥିଲି ।

କେହିଜଣେ ସେଇ ପାଖରେ ବୁଲୁଥିଲା । ସେଇ ଟିଲୁର ପାଦଶବ୍ଦ ନିଶ୍ଚୟ । ମୁଁ ପୁଣି ଉତ୍ତେଜିତ ହୋଇ ପଡିଲି । ସେଇଟା ପୁଣି କେମିତି ଏ ଘରେ ପାଦ ଦେଇପାରିବ ? – ଫୋପାଡି ଦେଲା ପରି ଉଠି ବସିଲି ବିଛଣାରେ । ମୁଣ୍ଡ ବୁଲେଇ ଦେଲା । କିଛି ସମ୍ଭାଳିବା ପରେ ଶୋଇବା ଘରକୁ ଚାହିଁଲି । ପିଣ୍ଡା, ଆର ବଖରା, ଅଗଣା ସବୁ ଦେଖିଲି । ନାଃ ଆଉ ଶଳା ତା' ଦିହକରେ ଏ ସୀମା ମାଡିବ ନାହିଁ । ଯାଃ ଶାଳା, ନୌକର ବାରଗଣ୍ଡା ମିଳିବ । ଭାତ ଫୋପାଡିଲେ କାଉର ଅଭାବ ନାହିଁ ।...

ମୋ ସ୍ତ୍ରୀ ଉପରୁ ମୋର କିଛି ମାତ୍ରାରେ ରାଗ ଓହ୍ଲେଇ ଯାଇଥିଲା । ସେ ସଅପ ଉପରୁ ଉଠି ନ ଥିଲେ । ଭଲ ଦେଖାଯାଉଥିଲେ । ମୁଁ କ'ଣ କରିବି; ଆଗ ତାଙ୍କୁ ଡାକିବି ନା ଗୁମାନରେ ରହିବି ସ୍ଥିର କରି ପାରୁ ନଥିଲି ।

ହଠାତ୍ କବାଟରେ ଦୁମ୍ ଦୁମ୍ ଶବ୍ଦ ହେଲା । ଖୁବ୍ ଜରୁରୀ ହୁଏତ କେହି ଡାକୁଥିଲା । ପାହାନ୍ତା ସମୟ । ଆଉ ଟିକିଏ ପରେ ସୂର୍ଯ୍ୟ ଉଇଁବା ସମୟ ।

ମୁଁ କବାଟ ଫିଟେଇ ଦେଖି ଦେଲା ବେଳକୁ ଦେବବାବୁ ମୋତେ ଆଡେଇ ଭିତରକୁ ପଶି ଆସିଲେ । ତାଙ୍କର ଖରଶ୍ୱାସ ବହୁଥିଲା । ସେ ଖୁବ୍ ଉତ୍ତେଜିତ ଜଣା ପଡୁଥିଲେ । ସେ ମୋ ଡେଣାଧରି ଟାଣି ନେଇଗଲେ ବାରଣ୍ଡାର ଗୋଟାଏ କୁଣକୁ ।

କହିଲେ, "ଭାରି ସାଙ୍ଘାତିକ ଘଟଣା ଦାସବାବୁ । ଟିଲୁ ପାହାନ୍ତିଆ ରେଲଗାଡି ତଳେ କଟି ଯାଇଛି । ପୋଲିସ ଚିହ୍ନଟ କରି ସାରିଲାଣି । ତା' ଦେହସାରା ମାଡର ଦାଗ । ସେମାନେ ଡାକ୍ତର ଡକାଇଛନ୍ତି । ଯେ କୌଣସି ସମୟରେ ସେମାନେ ଏଠି ଆସି ପହଞ୍ଚିଯିବେ ।"

ମୋ ପାଦତଳୁ ଭୂଇଁ ଅପସରି ଗଲା ପାତାଳକୁ । ମୋ ମଝିଶିରା କମ୍ପିଲା ଥରଥର ହୋଇ ମୁଁ କୁଢେଇ ହୋଇ ପଡିଥାନ୍ତି । କାନ୍ଥକୁ ଆଉଜି ଗଲି ।

ଦେବବାବୁ ଅସ୍ଥିର ହୋଇ ମୁଣାରେ ହାତ ପୁରେଇ ଏ ପାଖ ସେ ପାଖ ହଉଥାନ୍ତି । ମୋ ସାମ୍ନାରେ ଠପ୍ କିନା ଠିଆ ହୋଇ କହିଲେ, "ଆପଣ ତାକୁ ମାରିଚନ୍ତି । କାହିଁକି ମାରିଲେ ? ତା'ର ଦୋଷ କ'ଣ ? ଆପଣ ବର୍ତ୍ତମାନ ଆଉ ବର୍ତ୍ତି ପାରିବେ ନାଇଁ । ମୁଁ ବର୍ତ୍ତି ପାରିବି ନାହିଁ । ମୁଁ ତାକୁ ଗାଁରୁ ଆଣି ବିଶ୍ୱାସରେ ଆପଣଙ୍କୁ ଦେଇଥିଲି । ମୁଁ ଜାଣେ ସେ ଆପଣଙ୍କ ଘରେ ରହି ସବୁ କଥା ମାନିଚି । ସବୁ କାମ କରିଚି । କିଛି ଦୋଷ କରିନାହିଁ । କ'ଣ ହେଲା ମତେ ସଫା ସଫା କହନ୍ତୁ । ମୁଁ ଜାଣିବାକୁ ଚାହେଁ । ହାତରେ ଆଉ ସମୟ ନାହିଁ ।"

ମୋ ଜିଭ ଭିଡିନେଲା । ମୁଁ ଓଠ ଚାଟିଲି । ମୋ ଅନ୍ତ ଭିତର ଲେଉଟିବାକୁ ଲାଗିଲା ।

"ମୁଁ କାଲି ଖୁବ୍ ରାଗି ଯାଇଥିଲି, ହୋସରେ ନଥିଲି ।" ସେ ଖେଙ୍କିଲା ପରି କହିଲେ,

"କାହିଁକି ରାଗିଥିଲେ ? କ'ଣ କାରଣ ଥିଲା ରାଗିବାର ? ସେ ତ' ଆପଣଙ୍କ ଘରେ ପୁଅ ପରି ରହିଥିଲା । ଆପଣ ଦୁଇ ଜଣଙ୍କୁ ବାପ ମା' ଜ୍ଞାନ କରୁଥିଲା । ଦିନ ରାତ୍ର ସେବା କରୁଥିଲା ।"

ମୁଁ ଚିହିଁକି ଉଠିଲି – "ନା !!"

ମୋ ପାଟିରେ ସେ ଘୁଞ୍ଚିଗଲେ । ଆଶ୍ଚର୍ଯ୍ୟ ହୋଇ ଅନେଇଲେ । "ସେଇଟା ଗୋଟାଏ ରାସ୍କେଲ୍ । ଆପଣ କଳ୍ପନା କରି ପାରିବେ ନାହିଁ ସେ ଏଇଠି କ'ଣ କରୁଥିଲା । ...ମୁଁ କହି ପାରିବି ନାହିଁ ଆପଣଙ୍କୁ । ସେ ତା' ପାପର ଫଳ ଭୋଗ କଲା । ସେପରି ପାପୀ ପୃଥିବୀରେ ବଞ୍ଚି ରହିବା ଉଚିତ୍ ନୁହେଁ ।"

"ଆପଣ କ'ଣ କହିବାକୁ ଚାହୁଁଛନ୍ତି ? ଟିଲୁ ମାତ୍ର ବାର ବର୍ଷର ପିଲା । ସେ କ'ଣ ପାପ କରିପାରେ ? ସେ କ'ଣ ଚୋରି କଲା ? କେତେ ପଇସା ଚୋରି କଲା । ମତେ କହିଲେ ନାହିଁ, ମୁଁ ସେ ସବୁ ଭରଣା କରି ଦେଇଥାନ୍ତି । ସେ ଏମିତି କ'ଣ ଅପରାଧ କଲା ଯେ ଆପଣ ତାକୁ ଏଭଳି ଶାସ୍ତି ଦେଲେ ।"

ମୁଁ ଝାଳେଇ ଯାଉଥିଲି ଗୋଡଠାରୁ ମୁଣ୍ଡ ପର୍ଯ୍ୟନ୍ତ । ମୋ ଦେହ ଥରୁଥିଲା । ଲୋମ ଟାଙ୍କୁରି ରହିଥିଲା ।

ଏତିକିବେଳେ ମୋ ସ୍ତ୍ରୀ ଉଠି ଆସି ପିଣ୍ଡାରେ ଠିଆ ହେଲେ । ସେ ବୋଧହୁଏ ଦେବବାବୁଙ୍କ ପାଟି ଶୁଣି ଉଠି ଆସିଥିଲେ ।

ଦେବବାବୁ ଅନ୍ୟମନସ୍କ ଭାବରେ ନମସ୍କାର କଲେ । ମୋ ସ୍ତ୍ରୀ ପ୍ରତିନମସ୍କାର କଲେ ନାହିଁ । ତାଙ୍କ ଓଠ ଥରୁଥିଲା । ଆଖିରେ ପାଣି ଭରି ଯାଉଥିଲା ।

"ଆପଣଙ୍କ ଘରେ ଟିଲୁ ଅଛି ନା' ? ତା' ଜିନିଷ ସବୁ ମୁଁ ଏକାଠି କରି ଦଉଚି । ତାକୁ ଦୟାକରି ଦେଇଦେବେ ।"

ସେ ଘରକୁ ମୁହାଁଇବାରୁ ଦେବବାବୁ ଆଗେଇ ଯାଉଥିଲେ କ'ଣ କହିବାକୁ । ମୁହିଁ ବାରଣ କଲି ।

ଦେବବାବୁ ଘଣ୍ଟା ଦେଖି ଅସ୍ଥିର ହେଉଥିଲେ । ମତେ ଆକାଶିଆ ଲାଗୁଥିଲା । କ'ଣ ହବ ତା'ହେଲେ ?...

ମୋ ସ୍ତ୍ରୀ କନା ପୁଟୁଳାଟିଏ ପିଣ୍ଡାରେ ଥୋଇ ଦେଇ ଆଖି ପୋଛିଲେ । ଦେବବାବୁ ଚୁପ୍ ଠିଆ ରହିଲେ କିଛି ସମୟ । ମୁଁ ଆଶଙ୍କା କରୁଥିଲି ଯେ ହୁଁ କିନା ସେ କଥାଟା କହି ପକେଇଲେ । କିନ୍ତୁ ମୋର ମନେ ହେଲା ଯେ ତେତେବେତ କଥାଟା ତାଙ୍କ ତୁଣ୍ଡକୁ ଆସି ପାରୁ ନଥିଲା ।

"ଟିଲୁ ଭଳି ନୌକର ପିଲାଟିଏ କିନ୍ତୁ ଆପଣ ଆଉ ପାଇବେ ନାହିଁ ।" ଦେବବାବୁ ନିଶ୍ଚିତ ରୂପେ ଏ ବାକ୍ୟଟିକୁ କହିବାକୁ ଚାହୁଁ ନଥିଲେ । କିନ୍ତୁ କହୁ କହୁ ଏମିତି କହି ହେଇଗଲା ।

ମୋ ସ୍ତ୍ରୀ ଖୁବ୍ ଧୀର ଅଥଚ ଦୃଢ ଭାବରେ କହିଲେ, "ସେ ତ' ନୌକର ନଥିଲା ଦେବବାବୁ । ସେ ମୋ ପୁଅ ହେଇ ସାରିଥିଲା । ମୁଁ ଜାଣେ ମୋ ଭାଗ୍ୟ । ମୁଁ ସେଇ ଟିଲୁକୁ ନେଇ ଚାଲି ଯାଇଥାନ୍ତି ।

...ଆପଣ ଯାଆନ୍ତୁ । ମୁଁ ବି ସ୍ଥିର କରି ସାରିଛି କ'ଣ କରିବି । ତିଲୁକୁ ଆଉଥରେ ଟିକିଏ ଦେଖନ୍ତି – ସେ କ'ଣ ଏଠିକି ଆସିବ ?" ...ତା'ପରେ ହଠାତ୍ କହିଲେ, "ଚାଲୁ ନାହାନ୍ତି, ମୁଁ ବରଂ ଆପଣଙ୍କ ସାଙ୍ଗରେ ଯାଇ ଦେଖି ଆସିବି । ମୁଁ ହେଇ ବାହାରିଲି ।"

ସେ ବୋଧହୁଏ ଲୁଗା ବଦଳ କରିବାକୁ ଭିତରକୁ ଚାଲିଗଲେ । ଆମେ ଦୁଇ ଜଣ ବିମୂଢ଼ ଅବସ୍ଥାରେ ଠିଆ ରହିଲୁ । କିଛି ଚିନ୍ତା କରିବା ପୂର୍ବରୁ ସେ ଆସି ପହଞ୍ଚ ଯାଇଥିଲେ । କହିଲେ, "ଚାଲନ୍ତୁ ।"

ସେ ମୂଳରୁ ହିଁ ମୋ ଉପସ୍ଥିତିକୁ ସ୍ୱୀକାର କରୁ ନଥିଲେ । ସେ ଭାରି ଶୀର୍ଣ୍ଣ ଦିଶୁଥିଲେ । ଗୋଟାଏ ରାତିରେ କ'ଣ ଜଣେ ଏମିତି ଝଡି ଯାଇପାରେ ? ...ପୁଅ ? ପୁଅ କ'ଣ ? ...ମୋ ଭିତର ଗୋଳିଘାଣ୍ଟି ହୋଇଗଲା ।

ମୁଁ ଶୁଣିଲି ଗୁଡିଏ ପାଦଶବ୍ଦ ଆମ ଘର ଆଡକୁ ପାଖେଇ ଆସୁଥିଲା । ଛୋଟ ଛୋଟ ପିଲା ସବୁ ଆଖି ତରାଟି ଧଇଁ ଧଇଁ ଆସି ଠିଆ ହେଇଗଲେ । ଦେବବାବୁ ଥମିଗଲେ । ମୋ ସ୍ୱୀ ଥମିଗଲେ ପିଣ୍ଡା ଉପରେ ମୋର ଖୁବ୍ ଉଦ୍‌ବେଗ ହେଲା ଲୁଚିଯିବାକୁ । ବାଡିପଟ ମେହେନ୍ତର ରାସ୍ତାରେ ଧାଇଁ ପଳେଇ ଯିବାକୁ ଇଛା ହେଲା ।

କିଛି ଏଣୁ ତେଣୁ ଲୋକଙ୍କ ସାଙ୍ଗରେ ତିନିଜଣ ପୋଲିସ ଆସି ଦୁଆରେ ପହଞ୍ଚିଲେ ।

"ଏଇଟା ପୀତାମ୍ବର ଦାସଙ୍କ ଘର ?" ପଚାରିଲା ଜଣେ ବଡପାଟିଆ କନଷ୍ଟେବଳ ! ମୋ କଲିଜା ଖଣ୍ଡ ଖସି ପଡିଥାନ୍ତା ! ସେ ଉତ୍ତର ପାଇଁ ଅପେକ୍ଷା ନରଖି କହିଲା ।

– "ଆପଣ ଚାଲନ୍ତୁ ଥାନାକୁ ଯିବେ ।"

...ତା'ପରେ ସେ ହୁଏତ କହିଦେବ କ'ଣ ବୋଇଲେ କ'ଣ ! ଚଡକ ଛିଡି ପଡିବ ଆକାଶରୁ ।

ମୁଁ ଚମକିଲା ପରି ରାସ୍ତାକୁ ଓହ୍ଲେଇ ଗଲି । "ଚାଲନ୍ତୁ" କହି ଆଗେଇଗଲି ବଡ ବଡ ପାହୁଣ୍ଡରେ । ଗୋଟାଏ ମୁହୂର୍ତ୍ତରେ ମୋର ମନେ ହେଲା । ସାମାନ୍ୟ ଭୁରୁ କୁଞ୍ଚେଇ ବିହ୍ୱଳ ହେଲା ପରି ମୋ ସ୍ୱୀ ଦେବବାବୁଙ୍କୁ ଚାହିଁଥିଲେ ।

ପୋଲିସ୍ କିନ୍ତୁ ଆଦୌ ବ୍ୟସ୍ତ ନ ଥିଲେ । ସେମାନେ ଚାହିଁ ରହିଥିଲେ ମୋ ସ୍ୱୀକୁ ଏବଂ ଦେବବାବୁଙ୍କୁ । ଦେବବାବୁଟାକୁ ହିଁ ସେମାନେ ନେଇଗଲେ । ପ୍ରକୃତ ଆସାମୀ ପୀତାମ୍ବର ଦାସ ରାସ୍ତାରେ ଅପେକ୍ଷା କରି ରହିଥିଲା ଏକାକୀ ।

ଆକାଶ ଖୁବ୍ ଗହୀର ନିରାଲମ୍ବ ଦିଶୁଥିଲା । ନୂଆମେଘ ଘେରି ରହିଥିଲା ଦିଗ୍‌ବଳୟ ସାରା । ଠିକ୍ ଅଛି ଏଣିକି ଯାହା ହେବାର ହେବ । ଆଉ ଦୁଃଖ କରି ଲାଭ କ'ଣ ? ...ମୁଁ କିନ୍ତୁ ହତ୍ୟା ଅପରାଧ କରିନାହିଁ । ...ତାକୁ ମାରି ଦେଇ ରେଳ ଲାଇନରେ ଶୁଆଇ ଦେଇଥିବା ଅଭିଯୋଗ ମିଥ୍ୟା । ମୋ ସ୍ୱୀ କ'ଣ ରାଜସାକ୍ଷୀ ଦେବାକୁ ସେମାନେ କହୁଛନ୍ତି ? ଦେବବାବୁ କ'ଣ ରାଜସାକ୍ଷୀ ? ...କଳା ଘୁମର ମେଘରୁ ଟୋପା ଟୋପା ପାଣି ନିଗିଡିଗଲା । ହୋଇପାରେ ମୋ ଆଖିରୁ ।

ଜଳମଗ୍ନ ଦିଶିଲା ଚତୁର୍ଦ୍ଦିଗ । ଏଇ ବୋଧେ ପ୍ରଳୟର ମୁହୂର୍ତ୍ତ !!

ଦେବବାବୁ ମୋ ପାଖକୁ ଦୌଡ଼ି ଆସି ମୋ ଡେଣାଧରି ହଲାଇଲେ, "ହେ, ଦାସବାବୁ! – ସେ ସବୁ ମିଛି !! ଟିଲୁ ଥାନାରେ ଅଛି । ସେ ରେଳ ଲାଇନ୍‌କୁ ଡେଇଁ ପଡୁଥିଲା ବେଳେ ପୁଲିସ ତାକୁ ଧରି ନେଇଛି । ସେ କହୁଛି ତା' ବାପ ନାଁ ପୀତାମ୍ବର ଦାସ ! ...ଆପଣ ମାନିଯାନ୍ତୁ । ଚାଲନ୍ତୁ, ତାକୁ ଖଲାସ କରି ନେଇ ଆସନ୍ତୁ । ଓକିଲ ଦାୟିତ୍ୱ ମୁଁ ନେଉଛି । ଟିଲୁକୁ ଆପଣ ଫେରେଇ ଆଣନ୍ତୁ ।"

ମୋତେ ଅତି ପ୍ରାଞ୍ଜଳ ଦିଶୁଥିଲା ସଦ୍ୟସ୍ନାତା ପୃଥିବୀ । ପିଣ୍ଡା ପାହାଚରେ ଶୀର୍ଣ୍ଣା ସ୍ତ୍ରୀଟିଏ ଠିଆ ହୋଇଥିବା ପ୍ରାଞ୍ଜଳ ଦିଶୁଥିଲା । ମୁଁ କିଛି ନ କହି ମୁହଁ ବୁଲେଇ ଆଗେଇ ଯାଇଥିଲି ।

X X X X

ଏଇ ଚିଠି ଦେଖନ୍ତୁ । ସେଇ ଟିଲୁ ଆଜି ଲେଖୁଚି କୋଡ଼ିଏ ବର୍ଷ ପରେ "ବାପା, ମୋତେ ଆପଣ ବାଧ୍ୟ କରନ୍ତୁ ନାହିଁ । ମୋର ବିଭା ହବାକୁ ଆଦୌ ମନ ନାହିଁ । ସେଥିପାଇଁ ପ୍ରୟୋଜନ ବି ନାହିଁ । ମା' ପାଖରେ ଥିଲେ ମୋର କ'ଣ ଅଭାବ ଥାଇପାରେ ? ମୋତେ ଆପଣ ପୋଷି ପାଳି ବଡ଼ କରିଛନ୍ତି । କିନ୍ତୁ ମା'କୁ ଛାଡ଼ି ମୁଁ ବଞ୍ଚି ପାରିବି ନାହିଁ । ଆପଣ କାହିଁକି ଏଠିକି ଚାଲି ଆସୁ ନାହାନ୍ତି ? ମୋର ରୋଜଗାର ଆପଣଙ୍କ ଆଶୀର୍ବାଦାରୁ ଖୁବ୍ ବଢ଼ିଛି । ଆପଣ ରାଉରକେଲା ଆସିଲେ ସାଙ୍ଗ ହୋଇ କଲିକତା ଯିବା । ନୂଆ ଗାଡ଼ି 'କଣ୍ଟେସା' – କିଣିବାକୁ ଯିବା । ଆପଣ ରଙ୍ଗ ବାଛିବେ । ମା' କିନ୍ତୁ ନିଷ୍ପତ୍ତି ନେବେ ।"

ଆରେ, ସେ କ'ଣ ନିଷ୍ପତ୍ତି ନବ ? ସେ ଏମିତି ତୋ'ଠୁ କେତେ ବଡ଼ କି ବୟସରେ ? ...ତଥାପି ତ ତମେ ଦିହେଁ ମିଶି ନିଷ୍ପତ୍ତି ନେଇ ଚାଲିଛ ଏ ପର୍ଯ୍ୟନ୍ତ ! ମତେ ଆଉ ସେ ଭିତରେ ପୁରେଇବାର ଅଭିପ୍ରାୟ କ'ଣ ?

ମୁଁ ଏତେ ବାଟ ଯାଇ ପାରିବି ନାହିଁ ।



# ତ୍ରାଣକର୍ତ୍ତା ଆସିବେ

"ଭାବିଛି ରକ୍ତଚାପରେ ମରିବା ଅପେକ୍ଷା ଏ ସବୁ ଫୁଲଗଛ ଉପାଡି ଫିଙ୍ଗିଦେବି । କିଏ ନ ହେଲେ ଏ ହାରମଜାଦାଙ୍କ ସାଙ୍ଗରେ ନିତି ସକାଳୁ ବକ୍ ବକ୍ ହୋଇ ମୁଣ୍ଡ ଖରାପ କରିବ ? ଯେତେ ତାଲା ଦିଅ, କଣ୍ଟାବାଡ ଘେରାଅ, ଆକଟ ଅର୍ଗଳ ଖଟାଅ ସେ କିଛି ମାନିବେ ନାହିଁ । ତୁମ ସାମ୍ନାରେ ତୁମ ଘରେ ପଶି ଫୁଲଗଛଗୁଡିକୁ ମୋଡି ଦେବେ, କହିଲେ ବେଖାତିର କରି ଅନେଇବେ । ଛିଗୁଲେଇ ହେବେ । ଅଭାଷିଆ ଗାଳି ଦେବେ । ତୁମ ଆଡକୁ ମୁହଁ କରି ମୁତିବେ ଏବଂ ସଦର୍ପେ ଚାଲିଯିବେ ଆଙ୍କୁଡି ଆଉ ଫୁଲ ଅଖା ଧରି । ବାପ ଶଳାଟିମାନ ଘରେ ବସିଥିବେ ପୁଅଙ୍କ ରୋଜଗାରକୁ ଅପେକ୍ଷା କରି । ପର ବାଡିରୁ ଫୁଲ ଆସିଲେ ତାଙ୍କ ଠାକୁର ବସିବେ । ଧନ୍ୟ ସେ ନିଲାମକିଣା ଠାକୁର ! ଫୁଲ ସାଙ୍ଗରେ ପୁଅ ଯଦି ଦଶ କୋଡିଏ କାଠି ସଜନା ଛୁଇଁ ଏବଂ ପୁଞ୍ଜାଏ ବାଇଗଣ ନେଇ ଆସିଥାଏ ତା'ର ପାରିଲାପଣ ଦେଖି ବାପ ମା' କୁରୁଳିବେ, କାରଣ କିଛିକାଳ ପରେ ସେଇ ପୁଅ ତ ପୁଣି ସେମିତି ବିଡା ବିଡା ନୋଟ ଆଣି ତାଙ୍କ ଆଗରେ କୁଢେଇ ଦବ । ତଥାପି ପୁଅକୁ ତ ତିଆରି ପଦେ କହିବାକୁ ହେବ । ନହେଲେ ସେ ଅଳ୍ପକେ ସନ୍ତୁଷ୍ଟ ହେଉଥିବା ମାଇଆ ହେଇ ଯିବନି ? ଏଣୁ ସର୍ଜାନା ଛୁଇଁ, ବାଇଗଣ ସାଙ୍ଗକୁ କାହିଁକି ସେ ଟମାଟୋ ଗଣ୍ଡେ ଯୋଗାଡ କରି ପାରିଲା ନାହିଁ ସେଥିପାଇଁ ଗାଳି ଶୁଣେଇବେ । ...ଏଥିରେ କ'ଣ କରିବା ? ...ସେଗୁଡାଙ୍କ ସାଙ୍ଗରେ ହାତାହାତି ହୋଇଯିବାକୁ ମନ ହେଇଯାଉଛି । କିନ୍ତୁ ତେଣିକି କ'ଣ ହବ କହିହଉ ନାହିଁ । ଅଲିଅଳ ସର୍ବଗୁଣାଧାର ପୁତ୍ରମଣିଙ୍କ ପାଇଁ ବାପଶଳେ ମାଲକଛା ମାରି ଭିଡି ଆସିବେ । ଫୁଲଗଛ ତ ଫୁଲଗଛ, ମଣିଷକୁ ସୁଦ୍ଧା ସେମାନେ ଦଳି ଚକଟି ଦେବେ । ଅଗୁଁଆର, ଅଭଦ୍ର, ଅରଣାଥାଟ ସଙ୍ଗେ କିଏ ବା ମୁକାବିଲା କରିବ ? ହଁ, ସେଗୁଡାଙ୍କୁ ଗୁଳି କରି ଉଡେଇ ଦେଇ ପାରିଲେ ପୃଥ୍ୱୀ ଉଶ୍ୱାସ ହୁଅନ୍ତା । ଦୁର୍ଜନମାନେ ସଂହାର ହୋଇଯାନ୍ତେ । କେତେଥର ମୁଁ ସେମାନଙ୍କୁ ତୋପ ମୁହଁରେ ଉଡେଇଚି, ଖଣ୍ଡାରେ ହାଣିଚି, ଖୁଣ୍ଟରେ ବାନ୍ଧି କୋରଡା ମାରିଛି । – କିନ୍ତୁ ଏ ସବୁ ଖାଲି ମନେ ମନେ । ଫଳରେ ଏତେ କ୍ରୋଧର ବାମ୍ଫ ପେଟ ଭିତରେ ରଖିବାରୁ ରକ୍ତଚାପ ବଢିଚି । ଅସହାୟତା, ନିପାରିଲା କ୍ରୋଧ ଏବଂ ଅପମାନ ମିଶି ଆଖିବାଟେ ଧୂଆଁ ବାହାରି ପାଇଚି । ମୋତେ ଲାଗିଛି ଏଇମାନେ ମୋ ଘରେ ପଶି ଫୁଟିଲା ଫୁଲ ପରି ଅନୂଢା କନ୍ୟାକୁ

ଏମିତି ବଳାତ୍କାର ଉଣ୍ଡି ନେଇଯିବେ, ଇଜ୍ଜତ୍ ଲୁଟିନେବେ, ଧନମାନ ମର୍ଯ୍ୟଦା ଲୁଟିନେବେ । ଏଇମାନେ ବେଙ୍କ ଲୁଟି ନେବେ । ସରକାରୀ ତହବିଲ୍ ମାରିନେବେ । ଦେଶରଇଜ୍ଜତ୍ ବିକିଦେବ...ଏମାନେ...ଏମାନେ ଚମ୍ବଲ୍ ଡକାୟତ, ଏମାନେ ନିମକ୍ ହାରାମ୍ ଜାଗିରଦାର, ଏମାନେ ଗଜନିର ମାମୁଦ । ...ମାର, ମାର ଏ ଶତ୍ରୁଙ୍କୁ କିଏ କେଉଁଠି ଅଛ ।"

ଏମିତି ଦିନେ ସୁଯୋଗ ପାଇ ପାଟି କଲି । ମୋ ଆଗରେ ମୋଠୁ ଆହୁରି ବୁଢା, ଆହୁରି ଅପାରଗ, ପଡିଶାଘର ମଧୁଭାଇନା ବସିଥାନ୍ତି । ମୁଁ ଯେତେ ପାରିଲି ଛେଚି ଦେଇଗଲି ବଜ୍ର । ତାଙ୍କ ଆଖିପତା ବେଳେ ବେଳେ ଟେକି ହେଇ ଯାଉଥିଲା, ପୁଣି ସବୁ ସ୍ଥିର ହେଇ ଯାଉଥିଲା । ସେ ନିଶ୍ଚଳ ବସି ମୋର ଶୂନ୍ୟ ବାଚୁଳି ମାତ ଦେଖୁଥିଲେ । ବୋଧହୁଏ ଉପଭୋଗ ବି କରୁଥିଲେ ।

"...ମୋର ରାଗ, ସତ କହୁଚି ଭାଇନା, ସେଇ ବୋପାମାନଙ୍କ ଉପରେ ଯୋଉମାନେ ମାଛି ଅନ୍ଧାରରୁ ତାଙ୍କ ଡିମ୍ବପିଲାଙ୍କୁ ଉଠେଇ ତାଙ୍କ ହାତରେ ନଗି ଧରେଇ ଦିଅନ୍ତି । ଗେରା ତମ୍ବାତାରରେ ଆଙ୍କୁଡି ତିଆରି କରି ଧରେଇ ଦିଅନ୍ତି । ନାଲାଏକ କେବେ ଜାଣିପାରନ୍ତି ନାହିଁ ଯେ ଛପି ଛପି ପର ବାଡିରେ ପଶିବା ବିଦ୍ୟାଟି ତାଙ୍କ କୁଳଚନ୍ଦ୍ରମା ଏଇ ଡିମ୍ବାବସ୍ଥାରୁ ଆୟତ୍ତ କରି ଓସ୍ତାଦ୍ ଗେରଟିଏ ହେବ – ବା ଜାଣି ଶୁଣି ତାକୁ ଶ୍ରେଷ୍ଠ ବିଦ୍ୟା ଭାବି ତାଲିମ ଦେଇଥାଆନ୍ତି ...ସେଇ ପାପିଷ୍ଠ ବାପଗୁଡାଙ୍କୁ ହତ୍ୟା କଲେ କୌଣସି ପାପ ନାହିଁ ।"

"କିରେ, କ'ଣ ହେଇଚି ତୋର ? କାହିଁ ହେମ୍ତି ଗୁଡେ ଗର୍ଜୁଚୁ ? ତୋରି ବଗିଚାରେ ତ' ଗଣ୍ଡେ ଫୁଲ । ସେଇଠି ସମସ୍ତିଙ୍କ ଆଖି । ଯାହା ବାଡିରୁ ହେଲେ ମାଗି କରି ନବା କଥା ନାଁ । ଯଦି ବଳାତ୍କାର କରୁଛନ୍ତି ପୁଲିସିକୁ କହି ଧରେଇ ଦଉନୁ ?"

ମୋ ଦେହରେ ନିଆଁ ଲାଗି ଗଲା ।

"ରଖ ହେ ତମ ପୁଲିସି ! ସେଥିରୁ ଗୁଡେ କାହିଁ ମତେ ଶୁଣଉଚ ? କୋଉଁ ପୁଲିସି କାହା ପିଠିରେ ପଡିଚି ? ମୁଁ ଥରେ ଯାଇ ଏମିତି ତମ୍‌ତମ୍ ହେଇ ଫାଣ୍ଡିରେ ସକାଳୁ କହିଲି । ସେଇଟା ପାଟି ମେଲା କରି ହାଇ ମାଇଲା । ତା' ଉତ୍ତାରୁ ହସିଲା । କହିଲା, 'ଓହୋ, ଆପଣ ଯେମିତି ଢଙ୍ଗରେ କହିଲେ ମୁଁ ତ ଭାବିଥିଲି ଡକେଇତି ହେଇଗଲା ବଲି । ...ଧନ ସମ୍ପତ୍ତି କ'ଣ ଲୁଟି ନେଇଥିଲେ ସିନା ଆମେ କ'ଣ କରିଥାନ୍ତୁ ? ...ଆଉ ଏଇ ଫୁଲ ଦିଟା ...ହି, ହି, ହି–ଆପଣ ବୃଥାରେ ଆସି ପାତଳ ନିଦଟାକୁ ଭାଙ୍ଗି ଦେଲେ ।"

ଆଉ ଯାହା ଆଗରେ ଗୁହାରିଲେ ମଧ୍ୟ ସେଇଆ । ଏଠି ମୋଟରୁ ଫୁଲଗଛ ନ ଲଗେଇବା ଭଲ । ମଧୁ ଭାଇନା ପାକୁଆ ପାଟି ମେଲେଇ ହାଇ ମାରିଲେ । ତାଙ୍କ ପାଟି ବାଟେ ଗୋଟେ ଭୁଷଣ୍ଡ କାକ ଅକ୍ଲେଶରେ ଗଳି ଯାଇ ପାରିଥାନ୍ତା । ତାକୁ ବାରଣ କରିବାକୁ ବୋଧହୁଏ ସେ ଗରୋଟି ଚୁଟୁକି ମାରିଲେ ଗୁମ୍ଫା ମୁହଁରେ । – ମୁଁ ଉଠି ପଡି ପଳେଇ ଥାନ୍ତି ବହୁ କଷ୍ଟରେ ସମ୍ଭାଳି ଗଲି । ଫଳରେ ରାଗିଗଲି ଆହୁରି ଅଣଚାଶ ଗୁଣା ଏବଂ ରକ୍ତଚାପ ବଢିଲା ଅକଳନ ।

"ବୁଝିଲୁ ବାପ, ଏ ଯୁଗ ଏମିତି ହେଇଗଲାଣି । ଏଥକୁ ତୋ ଆୟତ୍ତ ନାହିଁ କି କାହା

ଆୟତ୍ତ ନାହିଁ । ଏଠି ଏମ୍ତି ସହି ରହିବାକୁ ପଡିବ । ପାପଭାରା ବଢୁଚି । ଆଉରି ବଢିବ ।"

ମୁଁ ଦାନ୍ତ କାମୁଡି ନୀରବ ରହିଲି ।

ବୈଠକ ଘରୁ ବଗିଚାକୁ ନ ଚାହିଁବା ଭଳି ଚୌକିରେ ମୁଁ ବସିଥିଲି । ବଗିଚାକୁ ଚାହିଁ ଦେଲେ ହିଁ ମୋ ବ୍ରହ୍ମରେ ନିଆଁ ଲାଗିଯିବ । ଦିନେ ଏମ୍ତି ନିଷ୍ଫଳ କ୍ରୋଧରେ ହିଁ ମୁଁ ମରିଯିବି ।

ମଧୁ ଭାଇନା ଆସ୍ତେ ଆଖି ବୁଜି ଶୋଇଗଲେ । ସେ ଲୋକ ସଂପୂର୍ଣ୍ଣ ସ୍ଥବିର । ମୁଁ ସେଇଠୁ ଛାଟ ମାରିଲା ପରି ଉଠି ପଡିଲି । ପିଣ୍ଡା ଉପରୁ ହତଶ୍ରୀ ବଗିଚାଟାକୁ କଟମଟ ଅନେଇଲି । ତା'ପରେ ବାଡିପଟେ ପଶିଗଲି ଗୋଟାଏ ଅଭ୍ୟାସରେ । ଆଉରି ଗୋଟାଏ ହୁଳାରେ ନିଆଁ ଲାଗିଗଲା ।...

ସାରା ସାହିର ନର୍ଦ୍ଦମା ପାଣି ବାଡିରେ ଆସି ଟଳମଳ ହଉଥିଲା । ଆମ ପଡିଶାର ଗେଣ୍ଡା ନାହାକ କୁରାଢିରେ ଅଳ୍ପ ମାଟି ଆଡେଇ ପାଣିତକ ମୋରି ବାଡିକୁ ବାଗେଇ ଦେଇଛି । ସେ ଗେଣ୍ଡା ନାହାକର ନାକଦଣ୍ଡା ଫଟାଇ ଦେବାକୁ କେତେଥର ମୁଁ କ୍ଷେପି ଯାଇଛି ବାଦବାଦ ପର୍ଯ୍ୟନ୍ତ । କିନ୍ତୁ ତା' ବାଡିରେ ପ୍ରଳୟ ଦେଖି ଥମି ଯାଇଛି । ପାଣି ଏମିତି ମାଡି ଆସୁଚି ପଶ୍ଚିମରୁ ପୂର୍ବକୁ ଭୂଇଁ ଗଡାଣିରେ! ଉପର ମୁଣ୍ଡାରେ ସହରର ବଡ ରାସ୍ତା । ତାକୁ ଭେଦିଛି ଗୋଟାଏ ପୋଲ । ପୋଲ ଆରପାଖେ ସାରା ସହରର ପୋଚ୍ଚ ପାଣି ଜମା ହବାକୁ ଅନାବାଦି ସନ୍ତସନ୍ତିଆ ଖାଲ ।... ସେଇଠୁ ଉଛୁଳୁଛି ଏ ପାଣି...ତେବେ ଏ ମନ୍ଦାକିନୀକୁ ରୋଧିବ କିଏ ? – କୋଉଠି ରୋଧିବ ? ଏ ସାରା ସହରକୁ ଲଙ୍ଗଳ ମୁନରେ ଟାଡି ଦେଇ ପାହାଡ ଆରପାରି ଫୋପାଡି ଦବାକୁ କିଏ ବା ସମର୍ଥ ?...

ଆମ ବସ୍ତିରେ ଛୋଟ ବଡ ସମସ୍ତଙ୍କର ମୁହଁ ଦିଶିଗଲା । ଗୋଟାଏ ଅସ୍ରା ବର୍ଷା ପରେ କେମିତି ଆଣ୍ଠୁଯାଏ ଲୁଗା ଟେକି ଏଇ ନର୍ଦ୍ଦମା ପାଣିରେ ଚବର ଚବର ସମସ୍ତେ ଚାଲନ୍ତି । – କେତେ ଅବହେଳିତ, କେତେ ଦୁଃଖୀ ଗୁଡିଏ ଆମେ । ଆମେ ଅନ୍ୟର ନର୍ଦ୍ଦମା ପାଣିରେ ହିଁ ବୁଡି ରହିଥିବୁ । ସେଇ ପାଣିରେ ଆମ ମହାଦେବ ଜଳଶାୟୀ ହଉଥିବେ । ତେବେ ବି ଆମେ ପରସ୍ପରକୁ ଏମିତି ଘୃଣା କରୁଥିବୁ, ଅପମାନ ଦଉଥିବୁ । ଓଃ !...

ଉଷୁମ ଲୁହ ଗୁଡାଏ ଡବଡବ ନିଗିଡି ଗଲା ।

ମୁଁ ସେଦିନ ସତକୁ ସତ ଚାହିଁଥିଲି ଘରଦ୍ୱାର ଛାଡି ଚାଲିଯିବାକୁ; ଚାହିଁଥିଲି ମରିଯିବାକୁ । ମୋ ହାତରେ କିଛି ହବନାଇଁ ବୋଲି ଖୁବ୍ ତୀବ୍ର ଅନୁଭବଟାଏ ଆସିଥିଲା । ମୁନ୍ନା ଷଡଙ୍ଗୀ ଏତିକି ଠକ ବୋଲି ମୁଁ କେମିତି ଜାଣିଥାନ୍ତି ? ସେ କେତେ ବିଶ୍ୱାସରେ କହିଲା ସେ ଦିବ୍ୟସିଂହ ରାୟ ପାଖକୁ ଯାଉଛି । ମୁଁ ଦେଇଥିବା ଚିଠି, ଟଙ୍କା, ଆଉ ଜିନିଷପତ୍ର ପେଡି ନେଇ ନିଜ ହାତରେ ଦେଇଦବ । ସେ ଚିଟାକାଟି ଯାଇ କଟକରେ ଲାଖି ଯାଇଛି । ଏଣେ ଦିବ୍ୟସିଂହ ଗର୍ଜୁଛି । ସବୁଯାକ ଜମି ବେଦଖଲ କରିବାକୁ ଧମକ ଦେଲାଣି । ପୁଅ ସେ ସବୁ ମୋ ହାତରେ ତା' ପାଖରେ ପହଞ୍ଚାଇବାକୁ ଦେଇଛି । ଆଉ କୋଉଁ ମୁହଁରେ ତାକୁ ସେ କଥା କହିବି ? 'ମୁନ୍ନା' ଚୁଚୁନ୍ଦ୍ରାର ଦୁଆର ମୁହଁରେ ନିତିଦିନ ଯାଇ ଅଧଘଣ୍ଟାଏ ବସି ଆସୁଚି । ତା'ର ଦେଖା ନାହିଁ । ତା' ଘରେ କେହି ତା' ପାଇଁ ଦାୟୀ ନୁହନ୍ତି । ମୁଁ ବେକୁବ୍, ତା' ହାତରେ ସେତକ ଜିନିଷ କାହିଁକି ଟେକି ଦଉଥିଲି ?

ଜାଣିଶୁଣି ଏମିତି କ୍ଷତି କରାଇଲା ପରେ ମୋ'ର କ'ଣ ବଞ୍ଚିବା ଉଚିତ୍ ? ମୁଁ ଖାଲି ଟାଙ୍କି ବସିଛି, ସେ ମୁନ୍ନା ପାଷଣ୍ଡକୁ ଦେଖିଲେ ଆଗ ଖୁନ୍ କରିବି । ତା'ପରେ ନିଜେ ମାଗି ହୋଇଯିବି ସେ ଜିନିଷ ନେଲା ବୋଲି ନୁହେଁ, ମୋତେ ଏମିତି ବେକୁବ୍ ବନେଇଲା ବୋଲି । ଦୁର୍ଜନକୁ କ୍ଷମା ଦିଆଯାଇପାରେ, ବେକୁବ୍‌କୁ ନୁହେଁ ।

ବାଁ ପାପୁଲିରେ ବିଧା ମାରି ମୁଁ ଦାନ୍ତ କାମୁଡି ଗର୍ଜିଲି । ମୋତେ ସବୁ ଅନ୍ଧାର ଦେଖାଗଲା । ନିଶ୍ୱାସ ତୋଳି ହେଲା । ଏଇଭଳି ଅନେକ ବର୍ଷ ଆଗେ ମୁଁ ମୋ ସ୍ତ୍ରୀ ଅଳଂକାରଯାକ 'ଗୁଗୁନ୍' ମାରଓ୍ୱାଡି ପାଖରେ ରଖି ଦେଇଥିଲି । ସେ ଯୋଡିଏ ଲଡ୍‌ଡୁ ଖୁଆଇ ପାଖରେ ବସେଇ ମୋ ଦୁଃଖ ଶୁଣିଥିଲା । ପଇସା ନ ଥିଲା ବୋଲି ଟଙ୍କା ପଚିଶଟି ଦେଇ ପରେ ସବୁ ହିସାବ କରି ଦେବ ବୋଲି କହିଥିଲା । ମୁଁ ବିଶ୍ୱାସରେ ଅଳଂକାର ପୁଟୁଳାଟିକୁ ତା' ହାତକୁ ବଢେଇ ଦେଇ ଚାଲି ଆସିଥିଲି । ସେ ହାରାମି ଆଉ ଧରା ଦେଲାନାହିଁ । ବେଶୀ ପାଟିତୁଣ୍ଡ କରିବାରୁ ଲୋକ ଲଗେଇ ଘଉଡେଇ ଦେଲା । ...ସେଥିପାଇଁ ତା'ର ବଂଶ ବୁଡିଗଲା । ହେଲେ ମୋର କ'ଣ ହେଲା ? ଚିରଦିନ ମୋ ସ୍ତ୍ରୀ ପାଖରୁ ଖୁଣ୍ଟା ଖାଇ ଆସିଲି । ସେ ମୋତେ ଆଦୌ କ୍ଷମା କରି ପାରିଲା ନାହିଁ । ଆମ ସଂସାର ବିଷାକ୍ତ ହେଇଗଲା । ଏବେ ସେ ପୁଅ ପାଖରେ ଥାଇ ନିଶ୍ଚୟ ମନା କରିଥିବ ଟଙ୍କା ପଠେଇବାକୁ । କିନ୍ତୁ...ଓଃ, ମୁଁ ବୋଧେ ଆଉ ସହି ପାରିବି ନାହିଁ । ମୋ ନିର୍ବୋଧପଣକୁ ଆଉ ସମ୍ଭାଳି ପାରିବିନାହିଁ ।...

ସେଦିନ ସଂଧ୍ୟାରେ ମୋତେ ସେମାନେ ବଡ ଡାକ୍ତରଖାନାରେ ଭର୍ତ୍ତି କରି ଦେଇଥିଲେ । ପୁଅକୁ ଟେଲିଗ୍ରାମ କରି ଡକେଇ ଆଣିଥିଲେ । ଶୁଣିଲି ସବୁ ଫୁଲଚୋରଙ୍କ ବାପମାନେ ଆସି ଧାଁ ଦଉଡ କରିଥିଲେ । ନିଜେ ଗେଣ୍ଡା ନାହାକ କୁଆଡେ ଟେଲିଗ୍ରାମ କରିଥିଲା ।

ମୁଁ କୁଆଡେ ଦଶଦିନ ପରେ ସମସ୍ତଙ୍କୁ ଚିହ୍ନି କଥାବାର୍ତ୍ତା କରି ପାରିଥିଲି । ଏମାନଙ୍କୁ ମୋ ଚାରିଆଡେ ଘେରିଥିବାର ଦେଖି ବୁଝିପାରି ନ ଥିଲି ତାଙ୍କ କାରସାଦି । କିଛିଟା ପୁଣି ଉତ୍ୟକ୍ତ ହୋଇ ପଡିଥିଲି । ମୋର ସବୁ ଶତ୍ରୁ ପକ୍ଷ କେମିତି ମୋ ପକ୍ଷକୁ ଗଳି ଆସିଲେ ? ବେଇଜ୍ଜତ୍ କାହାଁକା । ସେମାନେ ବୋଧହୁଏ ମୋତେ ଏବଂ ମୋ ଶତ୍ରୁପଣକୁ ବେଖାତର କରି ମୋ ଖଟ ପାଖକୁ ଲାଗି ଆସିଥିଲେ । ମୁଁ ଆହୁରି ଉତ୍ତେଜିତ ହେଲି । ମୋର ବୁକୁ ଧଡଧଡ ହେଲା । ଝାଳ ଜକେଇ ଗଲା ମୁହଁରେ, ଦେହରେ । ...ସେମାନେ ବୋଧେ ଖୁବ୍ ପାଖରୁ ମୋର ମରଣ ଦେଖିବାକୁ ଯେମିତି ଘେରି ରହିଥିଲେ । ଉପଭୋଗ କରିବାକୁ ଠିଆ ହେଇଥିଲେ !!

ମୋର ରକ୍ତଚାପ ବଢି ଯାଇଥିଲା । ଖୁବ୍ ଧାଁ ଦଉଡ ହେଇଥିଲା । ଡାକ୍ତର ଆସି ଇଞ୍ଜେକ୍ସନ୍ ଫୋଡିଥିଲା । ତା' ପୂର୍ବରୁ କିନ୍ତୁ ସେ ଯେମିତି ଧକିଆ ମାରି ସେ ଭଣ୍ଡ ଗାଲୁଆଙ୍କୁ ସେଇଠୁ ତଡି ନେଇଗଲା, ସେତିକିରେ ମୋର ପ୍ରାଣ ଶୀତଳ ହେଇଗଲା । ବିନା ଇଞ୍ଜେକ୍ସନ୍‌ରେ ସୁଦ୍ଧା ମୁଁ ହୁଏତ ଶୋଇ ଯାଇଥାନ୍ତି । ବାଃରେ ଡାକ୍ତର, ତୁ ବୋଧେ ପାରିବୁ ଏ ବ୍ୟାଧିମାନଙ୍କୁ ସଂହାର କରି । ସେ ଟୋକା ଡାକ୍ତର ମୁହଁକୁ ଚାହିଁ ମୁଁ ଅଳ୍ପ ହସିଥିଲି । ସେ ଉଦ୍‌ବିଗ୍ନ ଦେଖା ଯାଉଥିଲା, କିନ୍ତୁ

ଦିଶୁଥିଲା ଖୁବ୍ ଆପଣାର । ମୋ ଆଗରେ ମୋ ଶତ୍ରୁକୁ ସେ ଧକ୍କା ମାରି ପାରିଥିଲା ତ !

ଆଖି ଖୋଲିଲେ ମୋତେ ଛାତ ପଙ୍ଖା ଦିଶୁଥିଲା ଏବଂ ଡାହଣପାଖେ ସୁକ୍‌ସୁକ୍ କାନ୍ଦ ହଠାତ୍ ବନ୍ଦ ହୋଇ ଯାଉଥିଲା ।

'କେମିତି ଲାଗୁଚି ତମକୁ ?'

'ଦିବ୍ୟ ପାଲିଙ୍କିରେ ବସିଲା ପରି ଲାଗୁଚି ।' ହୁଁଃ ! ନାଲାଏକ କାହାଁକା ! ବେଶୀ ମାଇପପଣିଆ ଦେଖେଇ ହଉଚି ! – କାହିଁକି ସେଭଳି ଗୋଟେ ମାଖୁନା ପ୍ରଶ୍ନ ସେ କରୁଥିଲା ? ସେ ତ' ମୋ ସ୍ତ୍ରୀ । ଜୀବନ ଯାକ ମୋତେ ବେକୁବ୍ ବୋଲି ଶୋଧି ଶୋଧି ବଜରା କରି ଦେଇଛି । ମୁଁ ଆଉ ସହି ନପାରି ଚିଡଚିଡା ହେଇଯିବାରୁ ମତେ ଛାଡି ପୁଅ:ବୋହୂ ପାଖରେ ଯାଇ ରହୁଛି । ତା'ର କି ଗଲା ମୋତେ ଯେମିତି ଲାଗିଲେ ? – ତା' ବୋପାର କି ଗଲା ? ତା'ର ଖାଇବା ପିନ୍ଧିବାରେ କ'ଣ ତଫାତ୍ ପଡିଯାଉଛି ? ...ମୋ ରକ୍ତ ଚାପ ପୁନଶ୍ଚ ବଢିଥିଲା ।

ଡାକ୍ତର ଅନ୍ୟ ଉପାୟ ନ ଦେଖି କେବଳ ନିଦ ଓଷୁଅରେ ମୋତେ ବୁଡେଇ ରଖିଲେ ।

ଚେତା ଥିଲାବେଳେ ଟୋକା ଡାକ୍ତରଟି ମୋତେ ଡିଆରିଲା ପରି କହୁଥିଲା, "ଆପଣ ଆଉ ଚିଡନ୍ତୁ ନାହିଁ । ସେଥିରେ ଆପଣଙ୍କରହିଁ କ୍ଷତି !" ମୁଁ ଏଇ ପଦକ ଶୁଣି ଆହୁରି ଚିଡି ଯାଇଥାନ୍ତି । 'ଆରେ ବେକୁବ୍, ମୁଁ କ'ଣ ଲାଭ କ୍ଷତି ବିଚାର କରି ଚିଡିବି ନା କ'ଣ ! ମୋ ଆୟତ୍ତରେ କ'ଣ ମୁଁ ଚିଡୁଚି ? ମୋ ବାରୁଦ ଘରେ ନିଆଁ ଲାଗି ଯାଉଚି । ମୋ ଦହି ଚହଲି ଯାଉଚି । ମୁଁ ତେଣିକି ସମ୍ଭାଳି ପାରୁନାହିଁ । ...ହଉ, ଛାଡ ତୋ ମୁହଁଟି ବେଶ୍ ସୁନ୍ଦର । ତୁ ମୋ ନାତି ଟୋକା ଭଳି ଦିଶୁଚୁ । ...ତୁ ଜାଣିଚୁ ନା ବାବୁନିକୁ ? ସେ ବି ତୋ'ଭଳି ଡାକ୍ତର ହେଇଗଲାଣି । ଏବେ ଚଣ୍ଡିଗଡରେ ଅଛି ।'...

ଏଣୁ ମୁଁ ଡାକ୍ତର କଥାରେ ଚିଡିଲି ନାହିଁ । ତାକୁ କୌଣସି ଉତର ବି ଦେଲି ନାହିଁ । କେବଳ ତାକୁ ଚାହିଁ ବୋଧେ ଟିକିଏ ହସି ଦେଇଥିଲି । ସେ ଖୁବ୍ ଖୁସି ହେଇ ଯାଇଥିଲା । ସେଇ ଖୁସିରେ ମୋତେ ଗୋଟାଏ ଇଞ୍ଜେକ୍‌ସନ୍ ଫୋଡି ଦେଇଥିଲା । ନାଲାଏକ୍ କାହାଁକା !

ସେଇ ଟୋକା ଡାକ୍ତର ବୋଲରେ ପଡି ମୋତେ ସେମାନେ କିଛି ଖବରକାଗଜ ପଢି ଶୁଣାଇବାର ବ୍ୟବସ୍ଥା କରିଥିଲେ । ଓଃ, ମାତ୍ର ଗୋଟିଏ ଦିନରେ ସେ ଯୋଜନା ରଦ୍ଦ ହେଇଗଲା ନ ହେଲେ ମୁଁ ଆଜି ବଞ୍ଚି ରହି ନ ଥାନ୍ତି । ...ଇସ୍–ମନ୍ତ୍ରୀଟାଏ କେମିତି ତାହା ମିଛ କହି ଦେଇ ଚାଲିଗଲା ସାଧାରଣ ସଭାରେ ! ପାଞ୍ଚ ହଜାର ଲୋକ ବେକୁବ୍ ଭଳି ସେଇଠି ବସିଥିଲେ । ...କେମିତି ଆମରି ଅଫିସର ଆମର ସବୁ ଗୁପ୍ତ ଖବର ବିକ୍ରୀ କରି ଦଉଛନ୍ତି... ସମସ୍ତେ ତାହା ବି ସମ୍ଭାଳି ଯାଉଛନ୍ତି ।...

ପ୍ରତି କଥାରେ ମୋ ରକ୍ତଚାପ ବଢିଲା । ମୁହଁ ରଙ୍ଗ ପଡିଗଲା । ମୁଁ ଉତ୍‌କ୍ଷିପ୍ତ ହୋଇ ହାତ ମୁଠା ମୁଠା କରି ଦାନ୍ତ କାମୁଡି ବିତ୍‌ବିତ୍ ହେଲି । ବୋଧେ ମୂର୍ଚ୍ଛା ଗଲି ।

ଅଗତ୍ୟା ସେ ଯୋଜନା ସେମାନେ ବନ୍ଦ କଲେ । ଖୁବ୍ ସାବଧାନ ରହି ସୁଦ୍ଧା ସେମାନେ ମୋତେ ବଞ୍ଚାଇ ପାରିବେ ନାହିଁ ବୋଲି କଥାଭାଷା ହେବାର ମୋ କାନରେ ପଡିଥିଲା ।

ଏମିତି ନିଆଁ ଚେଁକ ଖାଇ ଅନ୍ୟମାନେ କେମିତି ସ୍ଥିର ରହି ପାରିଛନ୍ତି ଦେଖି ମୁଁ ବିସ୍ମିତ ହେଉଥିଲି । ସେମାନେ ହୁଏତ ନିଜକୁ ନିଜେ ଠକି ଦଉଚନ୍ତି । ରାଗିବାକୁ ଇଛା କରି ରାଗୁନାହାନ୍ତି – ଏହା ଭାବି ମୁଁ ଆହୁରି ଉତ୍ତେଜିତ ହଉଥିଲି । ସେଭଳି ଅଲାଜୁକ ନିରକ୍ତିଆ କେଞ୍ଚୁଆମାନେ କାହିଁକି ବଞ୍ଚୁଛନ୍ତି...ମୁଁ ଏଇ କଥାରେ ତାତି ଉଠୁଥିଲି । ...ମୋର ରକ୍ତଚାପ ରୋଗ ଆଉ ଭଲ ହବାର କୌଣସି ଉପାୟ ନ ଥିଲା ।

ହପ୍ତାଏ ପରେ ଚିଠିଟାଏ ଆସି ପହଞ୍ଚିଲା ମୋ ନାଁ'ରେ ସେଇ ହସ୍ପିଟାଲ ଠିକଣାରେ । ଲେଖିଥିଲା ମୋ ନାତି ଟୋକା । ଚଣ୍ଡୀଗଡରେ ଡାକ୍ତର ବନିଥିବା, ମତେ ଚିରକାଳ ବିରୋଧ କରୁଥିବା, ମୋର ଆଦିମ ଶତ୍ରୁ, ମୋର ପ୍ରାଣରୁ ବଳିପ୍ରିୟ ନାତିଆ । ତା' ନାକ ତଳେ ନିଶ ଗଜୁରିବା ଦିନଠାରୁ ମୁଁ ଜାଣିଚି ଯେ ସେ ଏଇ ହାରାମିଖୋର, ଦଗଲବାଜିଆ ସଂସାରକୁ ମୁକାବିଲା କରି ପାରିବ । ୟାଙ୍କୁ ସାବାଡ କରି ଥୋଇଦବ । ଦୁରୁସ୍ତ କରିଦବ ମୋ ନାତି ଟୋକା । ...ସେଇ ହଉଚି ସଚ୍ଚା ସେର୍‌କା ବଚ୍ଚା । ମୋ ଭିତରେ ବେକୁବ୍ ମେଣ୍ଢାଟାଏ ଡରିମରି ରହିଚି । ଗୋଟାଏ ସିଂହ ବି ବନ୍ଧା ପଡି ଗର୍ଜୁଚି । ମୋ ପୁଅଟା ସେଇ ମେଣ୍ଢା । କିନ୍ତୁ ମୋ ନାତିଆ...ହୁଁଃ ! ସେଇ ମୋ ସିଂହ !! ରଇଥ ବେ, ଦେଖିବ ତାକୁ । ସେ ଖାଲି ଆସିଯାଉ ଏଠିକି !! ଚିଠିଟା ଖୁବ୍ ଛୋଟ । "ଜେଜେ, ମୁଁ ଆସୁଚି । ତୁମେ କିଛି ଚିନ୍ତା କରିବ ନାହିଁ ।"

ଓଃ, ସେ ତା'ହେଲେ ଆସୁଚି !...ସେ ଏମାନଙ୍କୁ କେବେ ଛାଡିବ ନାଇଁ । ୟାଙ୍କ ଥୋମଣି ଉଡେଇଦବ । ସବୁ ପୋଚପାଣି ଲେଉଟେଇ ଦବ । ସଜାଡି ଦବ ଏ ଖଣ୍ଡିଆ ଦଦରା ନାଲାଏକ ପୃଥିବୀକୁ ।

ମୋର ଆଉ ଜମା ରକ୍ତଚାପ ବଢୁନାଇଁ । ତା' ମୁହଁ ମନେ ପଡିଲେ ସେ ହସି ଦଉଚି । ସେତିକିରେ ମୋ ଭିତରେ ଭରସା ଜମି ଯାଉଚି ଶ୍ରୀମନ୍ତ ହିମାଳୟ ପରି । ମୁଁ ବି ହସି ଦଉଚି ସବୁ କଥାରେ । ମୋ ପାଇଁ ଆଉ ସମସ୍ୟା ନାଇଁ କି ଦାୟିତ୍ୱ ନାଇଁ... ।

ସେଇ ଚିଠି ପହଞ୍ଚିବା ଦିନ ଗେଣ୍ଡା ନାହାକ ପଶି ଆସିଥିଲା । ମୋ ମୁହଁ ଫଣଫଣ ହେଇ ଉଠୁରିଲା ନାହିଁ । ମୁଁ ତାକୁ ନିର୍ବିକାର ଚାହିଁ ରହି ପାରିଲି । ସେ ଖୁବ୍ ଉଦ୍‌ବିଗ୍ନ ଦେଖାଯାଉଥିଲା । ମୋ ପାଦ ଉପରୁ ବୋଧେ ଚାଦର ଖସି ଯାଇଥିଲା । ସେ ତାକୁ ଆସ୍ତେ ସଜାଡି ଦେଲା । ମୋତେ ଚାହିଁ ଅଳ୍ପ ହସିବାର ଉପକ୍ରମ କରିଥିଲା । ମୋତେ ଲାଗିଲା ସେ ଗେଣ୍ଡା ନାହାକ ମୋଟେ ନୁହେଁ । ତା'ର ଭଲ ନାଁ'ଟିଏ ଅଛି । ଜି ନାଏକ ମାନେ ଗୋବର୍ଦ୍ଧନ ନାଏକ । ସେ କେବେ ହେଲେ ଗେଣ୍ଡା ନାହାକ ନଥିଲା । ଗେଣ୍ଡା ନାହାକ ବୋଲି କେହି ପ୍ରକୃତରେ ନାହିଁ ।...

ଦୁମ୍‌ଦୁମ୍ ପାଦ ଶବ୍ଦ ଶୁଭିଲା । ଧାଇଁଲା ଭଳି ପଶି ଆସିଲା ମୋ ସ୍ତ୍ରୀ । ଖଟ ଉପରକୁ ଝୁଙ୍କିପଡି ଆଗ ଗୋଡଠଉଁ ମୁଣ୍ଡଯାଏ ଆଉଁସି ଦେଇଗଲା । ମୁଁ ସେତିକିରେ ଧନୁଷ୍ଟଙ୍କାର ରୋଗୀ ପରି କ୍ରୋଧରେ ବାଙ୍କି ଗଲି ନାହିଁ । ତା'ର ସେ ଡରିଲା ଡରିଲା ଆଖି ଆଉ ମୁହଁ, ଥରିଲା ଥରିଲା ହାତ, ଭଲ ଲାଗିଲା । ସେ ମୋତେ ଚାହିଁ ଉଶ୍ୱାସରେ ଆଶଙ୍କାରେ ପଚାରିଲା ।

"କେମିତି ଲାଗୁଚି ?"

ଉତ୍ତରରେ ମୁଁ ମୁଚ୍ ମୁଚ୍ ହସିଦେଲି । ଚାଳିଶ ବର୍ଷର ମେଘ ଘୁଞ୍ଚି ଯାଇ ଅତି ପୁରୁଣା ଜହ୍ନଟିଏ ଉଇଁଗଲା ଆମ ମଧ୍ୟାକାଶରେ । ...ମୋ ଭିତରେ ଇତସ୍ତତଃ ପଡିଥିବା ଭଗ୍ନ ସ୍ତୂପ ସବୁ ସଜାଡି ହେଇଗଲା; ପୁନଶ୍ଚ ଶଙ୍ଖମଲମଲ ପଥରର ଗମ୍ବୁଜଗୁଡିଏ ଗଣି ହେଇଗଲା; ଝଟକିଲା ଜହ୍ନ ଆଲୁଅରେ ।

ଗୋବର୍ଦ୍ଧନ ନାଏକଙ୍କ ମୁହଁ ଉଜ୍ଜ୍ୱଳ ଦିଶିଗଲା ।

ଖୁବ୍ ଗହଳିଟାଏ ଜମିଗଲା ମୋ ବିଛଣା ଚାରିପଟେ । କାହିଁ ଥିଲା ସେ ଟୋକା ଡାକ୍ତର, ଝପଟି ଆସି ସମସ୍ତଙ୍କୁ ଠେଲି ପେଲି ପକାଇଲା । ମୋ ନାଡି ଚିପି ବୁକୁ ଉପରେ ଯନ୍ତ୍ର ରଖି କାନେଇଲା । ସମସ୍ତେ ଚୁପ୍ ହେଇ ଚାହିଁ ରହିଲେ । ସେ ଭୁରୁ କୁଞ୍ଚେଇ ପୁଣି ନିଠେଇ ନିଠେଇ କାନେଇଲା । ସମସ୍ତେ ଉଦ୍‌ବିଗ୍ନ ଦେଖାଗଲେ । ମୋ କଲିଜା ବି ଦିଥର ପିଟି ହେଇଗଲା ପଞ୍ଜରାରେ ।

ଆସ୍ତେ ତା' ଭୁରୁ ସଳଖିଗଲା । ତା' ମୁହଁ ଉଜଳିଗଲା ସଜଫୁଟା ପଦ୍ମପରି । ସେ ମୋ ନାଡି ଟୋକା ପରି ଦିଶୁଥିଲା ସେତେବେଳେ । ଉପରକୁ ଦୁଇହାତ ଟେକି ଆଲେକ୍‌ଜାଣ୍ଡାର ଭଙ୍ଗୀରେ ସେ କହିଲା, "ଆଉ ଚିନ୍ତା ନାଇଁ । ସବୁ ବିପଦ କଟିଗଲା । ଏଣିକି ଆପଣ ଆଉ ଚିତନ୍ତୁ ନାଇଁ ।"

ମୁଁ ପିଲାଙ୍କ ଭଳି ମୁଣ୍ଡ ଟୁଙ୍ଗାରି ରାଜି ହେଇଗଲି । ମୋ ନାଡି ଟୋକାର ଚିଠିଟାକୁ ବାଁ ହାତରେ ଉପରକୁ ଟେକି ଧରି ସମସ୍ତଙ୍କ ଆଗରେ ନାଗଫଣା ପରି ଖେଳେଇଲି ।

ସମସ୍ତେ ମୁଗ୍‌ଧ । ସମସ୍ତେ ପରାସ୍ତ ।

ମୋର କାହା ପ୍ରତି ଆଉ କ୍ରୋଧ ନାହିଁ, ଆସକ୍ତି ନାହିଁ, ଦ୍ୱେଷ ଆକ୍ରୋଶ ନାହିଁ । ମୋ ଭିତରେ ମୁକ୍ତା ଫଳ ପରି ଟଳମଳ କରୁଚି ଏକ ଅଦ୍ଭୁତ ଭରସା ।

...ମୋ ତ୍ରାଣକର୍ତ୍ତା ଆସୁଚି !



## ଚିହ୍ନଟ

"ହେଇ ଦେଖ, ଅଗ୍ନି କୋଣରେ କେମିତି ନିଆଁ ଲାଗି ଯାଇଛି । ଆକାଶଟା ଦେଖାଯାଉଛି ହଳଦିଆ, ଆଉ ଠାଏ ଠାଏ ନାଲି! ...ପବନ କେମିତି ମରିଯାଇଛି ଦେଖ । ଗଛଗୁଡିକ ସାଙ୍କୁଡି ଯାଇଛନ୍ତି ଭୟରେ । ଗୋଟିଏ ହେଲେ ଚଢେଇ ଦିଶୁନାହିଁ କୋଉଠି । ପତ୍ରଟିଏ ସୁଦ୍ଧା ହଲୁ ନାହିଁ ।"

ମୁଁ ଅନ୍ୟମନସ୍କ ସେଇ ଦିଗକୁ ହିଁ ଚାହିଁ ରହିଥିଲି ।

କେହି ଜଣେ ଆଉ ଜଣକୁ କହୁଥିବା ବିହ୍ୱଳ ଶବ୍ଦଗୁଡିଏ ମୋ କାନରେ ପଡୁଥିଲା ।

ସେମାନେ ସତେ କ'ଣ କିଛି ଏମିତି ଜାଣି ପାରୁ ନଥିଲେ ? ହୋଇପାରେ ସେମାନେ ଜାଣି ଶୁଣି 'ଝଡ' ନାଁ ଧରୁ ନଥିଲେ ତୁଣ୍ଡରେ । ହୁଏତ ଡରୁଥିଲେ କାଳେ କିଏ ତାକୁ 'ଝଡ' ପାଇଁ ଦାୟୀ କରି ଦେଇପାରେ ।

ସେମାନେ ଖୁବ୍ ସତର୍କ ମଣିଷ । ଖୁବ୍ ଚତୁର ।

ମୁଁ କିନ୍ତୁ ସେପରି କୌଣସି କାରଣ ନଥାଇ ହୁଏତ ତାଙ୍କ ଉପରେ ଚିଡି ଯାଉଥିଲି । ଏତେ ସ୍ୱଷ୍ଟ ଏବଂ ଏତେ ବଡ ହରଫରେ ଫାଳେ ଆକାଶକୁ ଆବୃତ୍ତ କରି ଲେଖା ହୋଇଥିବା ସତ୍ୟକୁ ସେମାନେ କାହିଁକି ସେମିତି ଏଡେଇ ଯାଉଥିଲେ ଭାବି ହୁଏତ ରାଗି ଯାଉଥିଲି ।

ମୁଁ ଦାନ୍ତକୁ ଜାବି, ଅଣ୍ଟାରେ ହାତଦେଇ ଗୋଡ ଫରକଟେଇ ଚାହିଁ ରହିଥିଲି ଆକାଶରେ ଘୋଟି ଆସୁଥିବା ସେ ଅତିକାୟ ସିଂହର ପିଙ୍ଗଳ ଶଟାକୁ । ଏତିକିବେଳେ ସେଇ ଦିଗରୁ ଗୋଟାଏ ଶବ୍ଦ ଶୁଭିଲା । – ଖୁବ୍ ଦୂରରୁ କିନ୍ତୁ ସ୍ୱଷ୍ଟ ଶବ୍ଦ – ସମୁଦ୍ର ମାଡି ଆସିଲା ପରି! ମୁଁ ବାହୁ ଟେକି ପଛକୁ ନଚାହିଁ ଚିତ୍କାର କରିଥିଲି, "ଝଡ ଆସିଗଲା ।" –

କହୁ କହୁ ଘୋଟିଗଲା ଅନ୍ଧାର । ମାଡି ଆସିଲା ଧୂମାଳ । ନାଗ ଫଣା ଟେକି ଧାଇଁ ଆସୁଥିଲା ଧୂଳିର ସମୁଦ୍ର । ନିଆଁ ଝୁଲ ପରି ମୋ ମୁହଁରେ ଦେହରେ ଲାଖି ହୋଇଗଲା ଧୂଳିକଣା । ମୁଁ ପଛକୁ ମୁହଁ କରି ଚାହିଁଲା ବେଳକୁ ଅସଂଖ୍ୟ ଲୋକ ନଇଁ ନଇଁ ଧାଇଁ ଯାଉଥିଲେ ଆଶ୍ରୟ

ଖୋଜିବାକୁ । ଅସ୍ପଷ୍ଟ ଦେଖା ଯାଉଥିଲେ ପାଣିରେ ବୁଡି ଯାଉଥିବା ମଣିଷଙ୍କ ପରି –

ମୋ ପଛରୁ ହାତୀ ଭଳି ପବନ ମୋତେ ପେଲି ନେଉଥିଲା । ମୋତେ ଶୁଖିଲା ପତ୍ର ଭଳି ହୁଏତ ଅଳ୍ପକେ ଫିଙ୍ଗି ଦେଇଥାନ୍ତା ଆକାଶକୁ । ସହରର ପ୍ରସିଦ୍ଧ ଭାଷଣ ମଞ୍ଚର ସାମ୍ନା ରାସ୍ତାରେ ମୁଁ ଠିଆ ହୋଇଥିଲି । ପ୍ରଥମ ଧକ୍କାରେ ତା' ପାଚେରୀକୁ ଲାଗି ବଢିଥିବା ଉଚ୍ଚ ଉଚ୍ଚ ଦେବଦାରୁ ଗୁଡିକ ବାଙ୍କିଗଲେ । ତା'ପରେ ପାଚେରୀକୁ ଉଧୁଳେଇ ଉପୁଡି ପଡିଲେ ଜିଅନ୍ତା ଗଛ ସବୁ । ବଡ ବଡ ପୁରୁଣା ଗଛର ଡାଳ ଛିଣ୍ଡିଗଲା ସଂଗ୍ରାମରେ । ଚଡକ ପଡିବାର ଶବ୍ଦ ହେଲା । ମଣିଷଙ୍କ କୋଳାହଳ ସେ ଘୁ' ଘୁ' ପବନରେ ଉଡି ଯାଇଥିଲା କାହିଁ କେତେ ଯୋଜନରେ ଠିଆ ହୋଇଥିବା ପାହାଡ ପର୍ଯ୍ୟନ୍ତ ।

କାଚ ଭାଙ୍ଗି ଝଣ ଝାଣ ଚୂର୍ଣ୍ଣ ହୋଇଗଲା । ମଞ୍ଚ ଭିତରକୁ ବଳାତ୍କାର ପଶି ଆସିଲା ଅଶରୀରୀ ଦୁର୍ମଦ ଦୈତ୍ୟ । ସମସ୍ତେ କୋଣମାନଙ୍କରେ ସାଙ୍କୁଡି ଗଲେ । କାନ୍ଥକୁ ମା' ଭାବି ଲାଖି ରହିଗଲେ ତା' ଦେହରେ । ଜଡିଗଲେ ଭୟରେ ।

ମୁଁ ଟାଉନ ହଲର ଫାଟକ ଭିତର ଦେଇ ତଡି ହୋଇ ଗଲାବେଳେ ପଛରେ ଦୁଲଦାଲ ପଡିଗଲା ଗୋଟାଏ ଗଛ । ମୋତେ ଠେଲି ପେଲି ଶହ ଶହ ଲୋକ ସେତେବେଳେ ପଶି ଆସୁଥିଲେ । କେହି ପଡିଗଲେ ତାକୁ ସେମାନେ ଚକଟି ଚାଲି ଯାଇଥାନ୍ତେ । ସେମାନଙ୍କର ସେତେବେଳେ ଆୟତ୍ତ ବା କ'ଣ ? ଗୋଟାଏ ଗଛ କାଟିଲା ପରି ଦୁଲ୍‌ଦାଲ୍ ଶବ୍ଦ ହେଲା । ଅନେକ ପ୍ରକାର ଚିତ୍କାର ଶୁଭିଲା । କ'ଣ ହେଲା କେଜାଣି ପଛକୁ ଫେରି ଚାହିଁବା ସମ୍ଭବ ନଥିଲା । କିନ୍ତୁ ମୋ ଭିତରକୁ ଝାମ୍ପିଥିବା ସିଂହର ପଞ୍ଝା ତଳୁ ମୁଁ ଅଳ୍ପକେ ଉବୁରି ଗଲି । କବାଟକୁ ସେ ହିଁ ମୋ' ପାଇଁ ଦୁଇ ଫଡା କରି ଚିରି ଦେଲା । ମୁଁ ଭର୍ତ୍ତି ହୋଇଗଲି ସେଇବାଟେ ଭିତରକୁ । ବାଁରେ କଚିହୋଇ ପଡିଗଲି । କିନ୍ତୁ ଆଡୁଆଳ ମିଳିଗଲା ।

ସେଇଠି କେବଳ ଅନ୍ଧାର ଓ ନୀରବ ଆତଙ୍କ ।

ମୁଁ ସୁ' ସୁ' ପବନ ଭିତରେ ଅନ୍ୟମାନଙ୍କ ଭଳି ତ୍ରସ୍ତ ପକ୍ଷୀଟିଏ । ତଥାପି ବଡ ପାଟିରେ ସମସ୍ତଙ୍କୁ ପଚାରିବାକୁ ଇଚ୍ଛା ହେଲା, "କିରେ କ'ଣ ହେଲା ଏମିତି ?"

କିନ୍ତୁ ମୁଁ ଜାଣିଥିଲି ଯେ 'ଝଡ ବହୁଛି' ବୋଲି କେହି କହି ନଥାନ୍ତେ । ହୁଏତ କହିଥା'ନ୍ତେ ଘୁ' ଘୁ' ଗର୍ଜନଟାଏ ଶୁଭୁଚି । ଦୁରୁ ଦୁରୁ କମ୍ପୁଚି କାନ୍ଥ ବାଡ ଭୂଇଁ । ଅନ୍ଧାର ଘୋଟି ରହିଛି । ବାଲିରେ ପୋତି ହୋଇଗଲାଣି ଭାଷଣ ମଞ୍ଚ ।

କିନ୍ତୁ ଝଡ ବହୁଛି ବୋଲି କେହି କହିନଥାନ୍ତେ । କାଳେ କିଏ ତାକୁ ସେଥିପାଇଁ ଦାୟୀ କରିଦେବ । ସେ ଅସହାୟ ଅବସ୍ଥାରେ ସୁଦ୍ଧା ମୁଁ ନୀରବରେ ଅଳ୍ପ ହସି ପକେଇଲି ।

ଭୂକମ୍ପ ହେଲା, ଥରି ଉଠିଲା ସମଗ୍ର କୋଠା । ଭୁଷୁଡି ପଡିବ ନା' କ'ଣ । ନିର୍ଘାତ ଶବ୍ଦ ହେଲା । ଦେଖିଲାବେଳକୁ ଗୋଟାଏ ଗଛ ପଶି ଆସିଲା ଭିତରକୁ । ଅଧେ ଡାଳ ପେଶି ହୋଇ

ଭାଙ୍ଗିଗୁଜି ପଶି ଆସିଥିଲା । ବାକି ଲାଖିଗଲା । ଦୁଆର ମୁହଁରେ ପତ୍ରଯାକ ଦୁହିଁ ହୋଇଗଲା – ଚିପି ହୋଇ ଲାଖିଗଲା ଆରପାଖ କାନ୍ଥରେ, ମନେହେଲା ସେ ସମଗ୍ର କୋଠା ମୂଳଦୁଆଠୁ ଉପୁଡି ପଡିବ । ଭୁଷୁଡି ପଡିବ ଛାତ ଆଉ କାନ୍ଥ ।

ଅନ୍ଧାର ଭିତରେ ଯେ ଯାହା ଇଷ୍ଟମନ୍ତ୍ର ହୁଏତ ଜପୁଥିଲେ । ହୁଏତ ତାଙ୍କର ଘନିଷ୍ଠତମ ସମ୍ପର୍କ ଆଉ ସମ୍ପଦକୁ ଆକୁଳ ହୋଇ ମନେ ପକଉଥିଲେ । ଅନ୍ଧାରରେ କାନ୍ଦଣା ଶୁଭୁଥିଲା । କିଏ କାନ୍ଦୁଥିଲା କେଜାଣି ? ସେତେବେଳେ ଗଛ କାନ୍ଦିଥିଲେ ବି ସେଇଭଳି ଶୁଭିଥାନ୍ତା...

ଆମେ ସବୁ ସେଠିକି ଯାଇଥିଲୁ ଭାଷଣ ଶୁଣିବାକୁ । ଭାଷଣ ଶୁଣିଦେଲେ ଆମ ପେଟ ପୂରିଯାଏ । ଭାରି ଜଣେ ବଡ ଲୋକ କିଏ ସେଦିନ ଆସିବାର ଥାଏ । ତାଙ୍କୁ ସମ୍ବର୍ଦ୍ଧନା ଦେବାକୁ ସେ ସଭା ଡକା ହୋଇଥାଏ । ଖୁବ୍ ଆୟୋଜନ । ଖୁବ୍ ଖର୍ଚ୍ଚ । ବତାସ ମାଡରେ କେମିତି ସେମାନଙ୍କର ଗାଡି ସବୁ ଚାରିଚକ ଉପରକୁ ଟେକି ଦେଇ ଲେଉଟା କଇଁଛ ପରି ବାଁ ପଟ ପଡିଆରେ ଇତସ୍ତତଃ ପଡିଥିବେ ଭାବି ମୋତେ ପୁଣି ହସ ମାଡିଲା ।

ପବନର ସୁଅ ଆଉ କୁହାଟ ଆକାଶରେ ଦୁମୁ ଦୁମୁ ହାତୀ ପାହୁଲ କିଛି ଥମିଗଲା ପରି ଲାଗିଲା । ଆମର ଅନେକ ଉପରେ ଝଡ ହୁଏତ ନିଜେ ନିଜର ପ୍ରବଳ ବେଗରେ ଖଣ୍ଡ ଖଣ୍ଡ ହୋଇ ଛିଣ୍ଡି ଯାଉଥିଲା । ଖୁବ୍ ଗୁଡାଏ ମର୍ଦ୍ଦି ଦେଇଗଲା ପରେ ସେ ହୁଏତ ନିଜେ କ୍ଲାନ୍ତ ହୋଇ ଶୋଇଯିବାକୁ ଚାହୁଁଥିଲା ମର୍ଦ୍ଦିତା ପୃଥିବୀର ବୁକୁ ଉପରେ ।

ଅନ୍ଧାର ଥରି ଥରି ଅପସରି ଯାଉଥିଲା ।

ଝଡ ଥମି ଆସୁଥିଲା ।

ଆଶ୍ରିତ ସ୍ତବ୍ଧ ଲୋକମାନେ ହଲଚଲ ହେଲେ । କିଛି କଥାବାର୍ତ୍ତା ନକରି ପ୍ରାୟ କିଛି ଘଟି ନଥିବା ପରି ବାହାରି ଆସିଲେ । ବର୍ତ୍ତିଗଲେ ବୋଲି ସନ୍ତୁଷ୍ଟ ଏବଂ ସାମାନ୍ୟ ଚକିତ ଦେଖା ଯାଉଥିଲେ ।

ବାହାରେ ତଥାପି ଶେଷ ସନ୍ଧ୍ୟାରେ ଆଲୁଅ ଲିଭି ନ ଥିଲା । ରାସ୍ତା ଘାଟ ଦିଶୁଥିଲା ଦୂର ପର୍ଯ୍ୟନ୍ତ । କିନ୍ତୁ ଦିଶୁଥିଲା ଖୁବ୍ ଅପରିଚିତ । ବାହାରି ଆସୁଥିବା ମଣିଷମାନେ ଟାଉଟାଉ ଚାଲୁଥିଲେ । ଏଣେ ତେଣେ ଅନଉ ଥିଲେ । ସଂସାରରେ କ'ଣ ସବୁ ହୋଇଗଲା ଦେଖିବାକୁ ଛନଛନ ହେଉଥିଲେ ।

ଓଃ, ଏତେ ଲୋକ ସତେ ଆସିଥିଲେ ସେ ସମ୍ବର୍ଦ୍ଧନା ସଭାଟାକୁ!

ସାମ୍ନାପାଖ ସମଗ୍ର ପାଚେରୀଟି ମୁହଁ ମାଡି ଶୋଇ ଯାଇଥିଲା । ଉପୁଡା ଗଛମାନ ଲୋଟି ପଡିଥିଲେ ଏଠି ସେଠି । ଲୁହା ଖୁଣ୍ଟ ଲଇ ପରି ବାଙ୍କି ଯାଇଥିଲା, ବିଧ୍ୱସ୍ତ ଦିଶୁଥିଲା ସେ ଖଣ୍ଡ ମଣ୍ଡଳ ।

ଜଣେ କିଏ ପାଟିଟାଏ କଲା । ସେତିକିରେ ଆକାଶର ଦର୍ପଣ ବାଟ ଚଡ ଚଡ ହୋଇ

ଫାଟିଗଲା ଏ ମୁଣ୍ଡରୁ ସେମୁଣ୍ଡ ଯାଏଁ । ସମସ୍ତେ ସେଇ ଚିତ୍କାରକୁ ଠାବ କରି ସେଇ ଆଡକୁ ଧାଇଁଲେ । ମୁଁ ବି ଧାଇଁଲି ।

ପହଞ୍ଚିଲା ବେଳକୁ ସେଇଠି ଅନେକ ଲୋକ ଗୁଣ୍ଡ ହୋଇ ସାରିଥିଲେ । ସେମାନଙ୍କ ମଝିରେ ଗୋଟାଏ ଉପୁଡା ଗଛ ପଡିଥିଲା । ସବା ପଛରୁ ଟିପେଇ ଚାହିଁବାରୁ କେବଳ ଅଙ୍କାବଙ୍କା ଦୀର୍ଘ ଡାଳଟାଏ ଦିଶିଲା । ଗହଳି ଭେଦି ଆଗକୁ ଯିବାରୁ ଦେଖାଗଲା ଡାଳ ତଳେ ପେଷି ହୋଇ ପଡିଚି କେହି ଜଣେ । ସେ ମୁହଁ ମାଡି ପଡିଚି । ହଠାତ୍ ଜଣା ପଡୁନାହିଁ ସେ ସ୍ତ୍ରୀ ନ ପୁରୁଷ । ଜଣା ପଡୁନାହିଁ ବଞ୍ଚିଛି ନା ମରିଛି ।

ଡାଳଟା ସମସ୍ତେ ଲାଗି ଟେକି ଦବା କି ?

ହାଁ ହାଁ, ସେ କାର୍ଯ୍ୟ କଦାପି କର ନାହିଁ । ତା' ପାଇଁ ଅଧିକାରୀ ଅଛନ୍ତି । ସେମାନଙ୍କୁ ଖବର ଦେଲେ ସେମାନେ ଆସି ଯାହା କରିବେ । ଚେର ତାଙ୍କର । ଡାଳ ତାଙ୍କର । ଫୁଲ ଫଳ ସବୁ ତାଙ୍କର । ସେ ଆସି ଉଚିତ ମନେ କଲେ ଏ ଡାଳଟିକୁ ଉଠେଇ ଦେଇ ପାରନ୍ତି । ନହେଲେ ସେ ହୁଏତ କହିବେ, "ତମେ ଯଦି ବାବୁ ଟେକି ପାରିଲ ତେବେ ପକେଇ ନ ଥିବ କାହିଁକି ?" ...କ'ଣ ପ୍ରମାଣ ଯେ ତୁମେ ଏ ସରକାରୀ ଗଛକୁ ଏମିତି ଉପୁଡେଇ ଦେଇ ନାହଁ ?

ହଉ ହେଲା, ଅଧିକାରୀଙ୍କୁ ଖବର ଦିଅ । କିନ୍ତୁ ଆସ ସେ ମଣିଷଟାକୁ ସମସ୍ତେ ମିଶି ଟାଣି ଆଣିବା । ଯଦି କୋଉଠି ଟିକିଏ ପ୍ରାଣଥାଏ ହସ୍ପାତାଳକୁ ନେଇଯିବା ।

"କିଓ, କ'ଣ ବାୟା ହେଲ କି ? ଧର ସୁକ୍ ସୁକ୍ ହଉଥିବ, ତମେ ଛୁଇଁଲା ମାତ୍ରେ ମରିଯିବ ! ସେଇଠୁ ? ତମେ ତାକୁ ମାରିଲ ନା' ନାହିଁ ? ଯଦି ମରି ସାରିଥାଏ – ସେ କଥା କିଏ କହିବ । ତା' ପାଇଁ ଅଧିକାରୀ କିଏ ? ତାଙ୍କୁ କହିଲେ ସେ ଆସି ବ୍ୟବସ୍ଥା କରିବେ ।"

ଏତେ ବଡ ଝଡରେ ଏତେ ବଡ ଗଛ ମଡେଇ ହୋଇ ପଡିଲେ ସେ କ'ଣ ଆଉ ବଞ୍ଚିଥିବ ? ତାକୁ ଆଣି ତା' ସତ୍କାର କରିଦେବା ଉଚିତ ନୁହେଁ କି ?

ବାବାରେ, କିଏ ହୋ ତମେ ସଂସ୍କାରକ ? ତମେ କିଏ ସତ୍କାର କରିବାକୁ ? ତା'ର ବନ୍ଧୁ ବାନ୍ଧବ ସବୁ କୁଆଡେ ଗଲେ ? ...ତାଙ୍କୁ ବରଂ ଖବର ଦିଅ !

ଖବର ଦିଅ, ଖବର ଦିଅ, ଚାହିଁ ରହିଥାଅ ଶହ ଶହ ଲୋକ । ତମେ କିଛି କରିପାରିବ ନାହିଁ ଏଣୁ କିଛି କର ନାହିଁ । କେବଳ ଖବର ଦିଅ । ଧାଇଁ ବୁଲ ସହର ସାରା । ଡାକବାଜି ଯନ୍ତ୍ରରେ ଚିତ୍କାର କର ।

ଅନିର୍ଦ୍ଦିଷ୍ଟ ଲୋକ ଗୁଡିଏ ଏଇଭଳି ଅନିର୍ଦ୍ଦିଷ୍ଟ କଥା ହଉଥାନ୍ତି । କେହି ଅଣ୍ଟାରେ ହାତଦେଇ ଆଉ କେହି ଓଠରେ ଆଙ୍ଗୁଠି ରଖି ଠିଆ ରହିଥାନ୍ତି ଏବଂ ଚାହିଥାନ୍ତି ସେ ଦୃଶ୍ୟଟିକୁ ।

ଜଣେ ସ୍ତ୍ରୀ ଲୋକ ଚିତ୍କାର କରି ଲୋକଙ୍କୁ ଆଡେଇ ପଶିବାକୁ ଚାହିଁଲେ । ଜଣାଗଲା ସେ ନିଶ୍ଚୟ ସେ ମୃତ ବ୍ୟକ୍ତିର ଆତ୍ମୀୟ ହୋଇଥିବେ । ତାଙ୍କ ପାଇଁ ବାଟ କରି ଦିଆଗଲା । ସେ ଆଗକୁ

ଚାଲି ଆସିଲେ । ତାଙ୍କ କେଶ ବାସ ଅସମ୍ଭାଳ ।

ସେ ଶବଟିକୁ ଦେଖୁ ଦେଖୁ ଭୂଇଁରେ ପଡିଗଲେ । ସମସ୍ତେ ଭାବିଲେ ତାଙ୍କ ଚେତା ବୁଡିଗଲା । ଆଗଧାଡି ପଛଧାଡି ଲୋକ ତାଙ୍କୁ ଘେରି ଗଲେ । ପୁଣି ଅଣ୍ଟାରେ ହାତ ଦେଇ ଚାହିଁ ରହିଲେ । କୋଳାହଳ କଲେ । 'ଯାଙ୍କ ଘରକୁ ଖବର ଦିଅ ।' 'ଡାକ୍ତରଙ୍କୁ ଖବର ଦିଅ', 'ଯାଅ', 'ଧାଅଁ', 'ଡାକିଆଣ', 'ଧରିଆଣ' ।

ସ୍ତ୍ରୀ ଲୋକଟି କେମିତି କେଜାଣି ଚେତା ପାଇ ପୁଣି ଚିତ୍କାର କଲେ ।

ମୃତ ବ୍ୟକ୍ତିଟି ତାଙ୍କ ସ୍ୱାମୀ ନିଶ୍ଚୟ । ନହେଲେ ସେ ଏତେ କାହିଁକି ବିକଳ ହଉଥାନ୍ତେ ! କେଜାଣି ! କିଏ କହିପାରିବ ସେ କିଏ ? ...ସେ ନିଶ୍ଚୟ ସମ୍ବର୍ଦ୍ଧନା ସଭାକୁ ନିମନ୍ତ୍ରଣ ପାଇଥିବ । ତାଙ୍କ ସ୍ୱାମୀ ହିଁ ତାକୁ ଆଣିଥିବେ । ହୁଏତ ତାଙ୍କ କାରଟି ଆରପାଖ ପଡିଆରେ ଚିତ୍‌ମାତ୍ ହୋଇ ପଡିଥିବ । ଝଡବେଳେ ହୁଏତ ସେମାନେ ଏକାଠି ରହି ପାରିନଥିବେ...ଏମିତି କ'ଣଟାଏ ହୋଇଥାଇପାରେ ।

ଆଗଧାଡି ଲୋକେ ଗାଉଗାଉ ହେଉଥିଲେ । ପଛଧାଡି ଲୋକେ କାନଉଥିଲେ । ସେଇ କଥାକୁ ଆଉ ପ୍ରକାରେ ଦୋହରାଉ ଥିଲେ । ସବା ପଛରେ ଠିଆ ହୋଇଥିବା ଲୋକଟି ପାଖରେ କଥା ପହଞ୍ଚିଲାବେଳକୁ ବଦଳି ଯାଉଥିଲା । ସେଥିରେ ବି ତା'ର କିଛି ଅସୁବିଧା ନଥିଲା । ଶୁଣିଦେଇ ସେ ଆଶ୍ଚର୍ଯ୍ୟ ହେବା କଥା । ତାହା ସେ ହେଉଥିଲା ।

ମୋର ଭାରି କୌତୁହଳ ହେଲା ସେ ସ୍ତ୍ରୀ ଲୋକଟିକୁ ଦେଖିବାକୁ । କିନ୍ତୁ ବ୍ୟୂହ ଭେଦି ତା' ପାଖରେ ପହଞ୍ଚିବା ସମ୍ଭବ ନ ଥିଲା । ବରଂ ଲୋକ ସେ ଆଡିକି ଚାଲିଯିବାରୁ ମୂଳ ଦୃଶ୍ୟଟି ପାଖରୁ ଗହଳି ଭାଙ୍ଗିଗଲା ।

ତାଳ ତଳେ ପେଶି ହେଇ ପଡିଥିବା ଶବ ପାଖରେ ମୁଁ ବସିପଡି ଚାହିଁଲି । ଭଲ ଜାମାପେଣ୍ଟ ପିନ୍ଧିଥିବା ସଉଖୀନ ମଣିଷଟିଏ । ଗାଡିଚଢା ହାକିମ ପାହ୍ୟାର ମଣିଷ । ତଳକୁ ଲଇଁ ପଡି ମୁଁ ତା' ମୁହଁଟାକୁ ଦେଖିବାକୁ ଚାହିଁଲି । ହେଲା ନାହିଁ । ଉଧୁଳା ମାଟି ଭିତରେ ତା' ମୁହଁ ପୋତି ହୋଇ ଯାଇଥିଲା ।

ମୁଁ ସେ ପ୍ରକାଣ୍ଡ ତାଳଟାକୁ ଟେକିବାକୁ ଚାହିଁଲି । ସେ ମହାଦ୍ରୁମ ଜମା ଚହଲିଲା ନାହିଁ ।

ତା' ପାଦଯୋଡିକ ସୁନ୍ଦର । ଗୋଡଗୁଡିକ ଲମ୍ବା । କିନ୍ତୁ ପିଠି ମଝିଟାରେ ଗୋଟାଏ ବିରାଟ ହାତୁଡି ପରି ସେ ତାଳର ଗଣ୍ଡିଆ ଗୋବ, ହାତ ପଞ୍ଜୁରୀ ସବୁ ପେଷି ଦେଇଥାଏ ।

ଓ, ମୁଁ ଭାରି ଅସୁସ୍ଥ ବୋଧ କଲି । ମୋ ପିଠି ମଝିରେ ପୀଡା ଅନୁଭବ କଲି । ମୋ ନିଃଶ୍ୱାସର ଛନ୍ଦ ଭାଙ୍ଗି ଗଲା ।

ସେ ସ୍ତ୍ରୀ ଲୋକଟି ବୋଧେ ଲୁଗାପଟା ସମ୍ଭାଳି ଠିଆ ହେଲା । ଖୁବ୍ ପାଟିତୁଣ୍ଡ ହେଲା । ସମସ୍ତେ ତାକୁ ଘେରି ଦୂରେଇ ଗଲେ । ସେଥିରୁ ଗୋଟାଏ ଧାଇଁ ଚାଲିଗଲା ମୋ ପାଖ ଦେଇ ।

ଯାତ୍ରା ଦେଖାଳି ପରି ତା' ଆଖିରେ ଅସମ୍ଭବ ଉତ୍ତେଜନା । ଅଯାଚିତ ଭାବରେ ମୋ ଉଦ୍ଦେଶ୍ୟରେ କହିଲା, 'ସେ ମାଇକିନାଟା ବୃଥାରେ କାନ୍ଦୁଥିଲା । ତା' ଅଣ୍ଡିରା ଆସି ତାକୁ ହେଇ ନେଇ ଯାଉଚି ପରା ।'

ମୁଁ ତାକୁ ଚାହିଁ ରହିଲି ଦୂରେଇ ଯିବା ଯାଏଁ ।

ସେ ଆଉ ଫେରିଲା ନାହିଁ । ସେ ସ୍ତ୍ରୀ ଲୋକକୁ ଘେରି ଯେଉଁମାନେ ଯାଇଥିଲେ ସେମାନେ ବି ଫେରିଲେ ନାହିଁ ।

ମୁଁ ଖୁବ୍ ଏକୁଟିଆ ବୋଧ କଲି । ଅସହାୟ ବୋଧ କଲି । ମୋ' ଭିତରେ ଭୟ, କ୍ରୋଧର ନିଆଁ ଆଉ ଧୂଆଁ ଫେଣ୍ଟି ହେଉଥିଲା ।

ମୁଁ ଖୁବ୍ ଗୋଟାଏ ଜରୁରୀ ଢଙ୍ଗରେ ସଭା ଘରର ପ୍ରବେଶ ଦ୍ୱାର ଯାଏଁ ଗଲି । ସେଇଠି ଦେଖିଲି କାହାକୁ ଚର ନାହିଁ । ସମସ୍ତେ କ'ଣ ଖୋଜି ଲାଗିଛନ୍ତି ।

ସେମାନେ ବୋଧେ ଅଧିକାରୀ ମଣିଷ ମାନେ । ତାଙ୍କ ପୋଷାକ, ତାଙ୍କ ଚେହେରା, ତାଙ୍କ ବ୍ୟସ୍ତତା ତାଙ୍କୁ ଆମ ଭଳି ଲୋକମାନଙ୍କଠାରୁ ଅଲଗା କରି ଦେଉଥିଲା ।

ମୁଁ ଜଣକ ପାଖକୁ ସାହସ କରି ଯାଇ ପହଞ୍ଚିଲି ।

ଖାକି ପୋଷାକ । ମୁଣ୍ଡରେ ସତନ୍ଦ ଟୋପି । କାନ୍ଧରେ ପିତଳର ତାରା । ପୋଲିସ ହାକିମ ହୋଇଥିବେ ।

"ଆଜ୍ଞା ଟିକିଏ ଶୁଣିବେ କି ?"

ସେ ମୋତେ ମାଛିଟାଏ ଭାବି ଅବଜ୍ଞା କରି ଚାଲିଗଲେ ।

ମୁଁ ତଥାପି ବୁଲି ପଡି ତାଙ୍କ ସାମ୍ନାରେ ଠିଆ ହେଲି ।

"ଆଜ୍ଞା, ସେଇଠି ଗଛ ମଡେଇ ହେଇ ଜଣେ ମରି ପଡିଛି । ପଞ୍ଜରା ହାଡ ଗୁଣ୍ଡ ହେଇ ଯାଇଛି । ...ସେ ଭଲ ଜାମାଯୋଡ ପିନ୍ଧିଛି । ...ତା' ମୁହଁ ପୋତି ହୋଇଯାଇଛି ମାଟିରେ ।"

ସେ ମୋତେ ଭେଦି ଅନାୟାସ ସ୍ଥିର ଦୃଷ୍ଟିରେ ଦୂରକୁ ଚାହିଁ ରହିଥିଲେ । ସତେ ବା ମୁଁ ଗୋଟିଏ କାଚ ବାଡ । ତାଙ୍କର ଆଖି ପତାର ଗୋଟିଏ ବାଳ ସୁଦ୍ଧା କମ୍ପୁ ନଥିଲା । ପଥର ମୂର୍ତ୍ତି ପରି ସ୍ଥିର ।

ମୁଁ ହଠାତ୍ ଭାବିଲି, ମୁଁ ବୋଧହୁଏ ଭୁଲ ଲୋକ ପାଖରେ ପହଞ୍ଚିଗଲି । ଏଣୁ ତାଙ୍କ ଆଗରେ ମୁଁ ସାଙ୍କୁଡି ଗଲି ଏବଂ ଚେରଟିଏ ପରି ନଇଁପଡି ଆଡ ହୋଇଗଲି ।

ଦେଖିଲି ଆଉ ଜଣକୁ । ଦାମୀ ପୋଷାକ ପିନ୍ଧି ସେ ସିଗ୍ରେଟ ଟାଣୁଥିଲେ । ତାଙ୍କୁ ସବୁ ଲୋକେ ସଲାମ କରୁଥିଲେ । ସେ ଜଣା ଯାଉଥିଲେ ମାଲିକ ପରି । ସେଇଭଳି ସେ ହୁକୁମ ଦଉଥିଲେ ।

ତାଙ୍କୁ କହିଲେ ହୁଏତ କିଛି ଘଟି ପାରେ ! ମୁଁ ତାଙ୍କ ପାଖରେ ଏଭଳି ଭାବରେ ପହଞ୍ଚିଲି

ଯେପରିକି ମୁଁ ମୋଟେ ସେ କର୍ମ କରିବାକୁ ଚାହିଁ ନଥିଲି । ଏମିତି କେବଳ ସେଇବାଟେ ଯାଉ ଯାଉ ତାଙ୍କୁ ଭେଟିଗଲି । ଧୂଆଁ ସନ୍ଧିରୁ ସେ ମୋତେ ଥରେ କଣେଇ ଚାହିଁନେବାର ମୁଁ ଅନୁଭବ କରିଥିଲି ।

ଅନ୍ୟମାନଙ୍କ ପରି ତାଙ୍କୁ ସଲାମ କରି ଠିଆ ହେଲି । ହାତ ମନ୍ଥିବାକୁ ଇଚ୍ଛା ହେଲା । ଦାନ୍ତ ନିକୁଟି ମୁଣ୍ଡର ପଛପଟ କୁଣ୍ଡେଇବାକୁ ଇଚ୍ଛା ହେଲା । ମୁଁ ସେ ସମସ୍ତ ଢଙ୍ଗକୁ ରୋଧି ନେଲି । ମୁଁ କ'ଣ ତାଙ୍କୁ ମୋ ପାଇଁ ଜାଗିରି ମାଗୁଛି ନା କ'ଣ ? ସେ ଅବଶ୍ୟ ଦିଶୁଥିଲେ ଭାରି ପ୍ରତାପୀ । ସେ ଚାହିଁଲେ ମୁଣ୍ଡ କାଟି ଦେଇ ପାରନ୍ତି, ପୁଣି ଚାହିଁଲେ ଯୋଡି ଦେଇ ପାରନ୍ତି ।

"ଆଜ୍ଞା, ହେଇଟି ସେ ଗଛ ତଳେ ମଡେଇ ହେଇ..."

ମତେ ଲାଗିଲା କେହି ଜଣେ ମୋ ଉପରେ ବରଫ ଅଜାଡି ଦେଲା । ଓଃ କି ସେ ଚାହାଣୀ, ସେ ବାଙ୍କ ଠାଣି, ସେ ଭୁରୁ କୁଞ୍ଚା, ସେ ନିଶ ଫୁଲା ! ଗୁଡିଏ ନୀରବ ଭର୍ତ୍ସନା ଛିଟିକି ଆସୁଥିଲା ମୋ ଉପରକୁ ! – କିଏ ଦେ ଶାଲା ବେକୁବ୍ । ଏତେ ହିମ୍ମତ୍‌ରେ ଆମ ସାମ୍ନାରେ ବକ୍ ବାଜି କରୁଛୁ ? ...କୋଉ ଗଛ ? ଗଛ ଚପାରେ କିଏ ମଲା ? ମରୁ...ତୋର ବା ତୋ ବୋପାର ସେଥିରେ କ'ଣ ଗଲା ?

ମୁଁ ବାକ୍ୟ ବ୍ୟୟ ନ କରି ସେଇଠୁ ଖସିଗଲି ।

ମୋତେ ଅସୁସ୍ଥ ଲାଗୁଥାଏ । ଗୁଡାଏ ଛଟପଟ ଲାଗୁଥାଏ । ମୁଁ ପୀଡା ଅନୁଭବ କରୁଥାଏ । ମୋତେ କଣ୍ଟା ଫୋଡି ହେଲାପରି ଲାଗୁଥାଏ, କିନ୍ତୁ ଠଉରେଇ ପାରୁ ନଥାଏ କେଉଁଠି କଣ୍ଟା ଗଳୁଚି । ଅଦୃଶ୍ୟ ବୁଢିଆଣି ସୂତାରେ ଛନ୍ଦି ହୋଇ ମୁଁ ଛଟପଟ ହେଉଥାଏ । କ'ଣଟାଏ କହି ଦିଅନ୍ତି, କ'ଣଟାଏ କରି ଦିଅନ୍ତି ପରି ଲାଗୁଥାଏ, କିନ୍ତୁ କିଛି ହୋଇ ପାରୁନଥାଏ ।

ଦେଖିଲି ଯେଉଁମାନେ ତୋରଣ ପାଖରେ ତରବର ହୋଇ ଆସି ପହଞ୍ଚିଲେ ସେମାନେ କେହି ସଭାକୁ ଆସି ନଥିଲେ । ଗାଡିମାନ ଚପ୍ ଚପ୍ ଠିଆ ହୋଇଗଲା । ଖଟାଖଟ୍ ସବୁ ଓହ୍ଲେଇ ଆସିଲେ । ଯେ ତାକୁ ସେ ଯାକୁ କ'ଣ ସବୁ ଫିସ୍ ଫିସ୍ କରି କହି ଘୁଞ୍ଚି ଯାଉଥିଲେ । ମାଲିକପଣରେ ସିଗ୍ରେଟ ଟାଣୁଥିବା ଲୋକଟି ତାଙ୍କ ମେଳରେ ଖୁବ୍ ନ୍ୟୁନ ହୋଇ ହାତ ମନ୍ଥି ଚାଲୁଥିଲା । ପୋଲିସ ହାକିମ ପରି ଦିଶୁଥିବା ସେ ଆରଲୋକଟି ବଚସ୍କର ଭୃତ୍ୟ ପରି ସଲାମ ମାରି ଚାଲିଥିଲା । ତା'ହେଲେ ଏ ଆଗନ୍ତୁକମାନେ ନିଶ୍ଚୟ ତାହାଁ ତାହାଁ ବଡଲୋକ ହେଇଥିବେ ନିଶ୍ଚୟ ।

ମୁଁ ଗୋଟିଏ କୃଷ୍ଣଚୂଡା ଗଛକୁ ଲାଗି ଠିଆ ରହିଥାଏ । ସେମାନେ ମୋର ଖୁବ୍ ନିକଟରେ ଥାଇ କଥାବାର୍ତ୍ତା କରୁଥାନ୍ତି । ସମସ୍ତେ ଅଶାନ୍ତ ଓ ଉଦ୍‌ବିଗ୍ନ ଦେଖା ଯାଉଥାନ୍ତି ।

"ଆଚ୍ଛା, ସେ ଏଠିକି କାହା ଗାଡିରେ ଆସିଲେ ?"

"ସାର୍, ଷ୍ଟେଟ୍ କାର୍‌ରେ ଆସିଲେ ।"

"କିଏ ଦେଖିଚି, କିଏ ସେ ଗାଡିରେ ତାଙ୍କ ସାଙ୍ଗେ ଆସିଚି ?"

ସବୁ ଚୁପ୍ ରହିଗଲେ । କେହି କିଛି କହିଲେ ନାହିଁ ।

"ଡ୍ରାଇଭର କିଏ ଥିଲା ?"

"ସନ୍ତୋଖ୍ ସିଂ – ସେ ସାର୍ ମିଳୁ ନାହିଁ ।"

"ମିଳୁ ନାହିଁ ମାନେ କ'ଣ ?" ଗର୍ଜିଲା ପ୍ରଭୁପଣ । "–ତମେମାନେ ଏଠି କ'ଣ କରୁଚ ?"

"ସେ ଏଠୁ ଅନ୍ୟ ଗାଡିରେ ଯିବାର ଦେଖିଚ ?"

"ନାଇଁ ସାର୍ । ଏଠୁ ତା'ପରେ କୌଣସି ଗାଡି ଫେରି ନାହିଁ ।" "ଫେରିନାହିଁ ମାନେ କ'ଣ ? – ୟୁ ଇଡିଅଟ୍‌ସ । ସମଗ୍ର ଅଞ୍ଚଳ ଖୋଜି ଆସ ! ଯାଅ !"

ସମସ୍ତେ ଘୁଞ୍ଚିଲା ପରି ଦିଶିଲେ । ଇତସ୍ତତ କଲେ । କିନ୍ତୁ ଘୁଞ୍ଚିଲେ ନାହିଁ ।

"ସବୁ ଛାଣି ସାରିଲୁଣି ସାର୍ । ଏଠି ସେମିତି କେହି ନାହାନ୍ତି । ଏଡେ ବଡ ଲୋକ ଏଠି ଲୁଚି ରହି ପାରିବେ ନାହିଁ ସାର୍ ।"

ମୋ' କାନ ଠିଆ ଠିଆ ହୋଇ ଗଲା । ଏମାନେ କ'ଣ ହଜିଥିବା ଲୋକଟାକୁ ଖୋଜୁଛନ୍ତି ? ସେ କୁଆଡେ ସମସ୍ତଙ୍କଠୁ ବଡ ? ...ନହେଲେ ଏମାନେ ଏଡେ ଉଦ୍‌ବିଗ୍ନ କାହିଁକି ହଉଥାନ୍ତେ !

ଛ'ଟା ମୋଟର ସାଇକେଲରେ ଘିଡ୍ ଘିଡ୍ ଆବାଜ୍ କରି ବିଜୁଳି ପରି ଓହ୍ଲେଇ ଗଲେ ପୋଷାକ ପିନ୍ଧା କଟୁଆଳ । ଠକ୍ ଠକ୍ ଚାଲି ଆସି କାଠ କଣ୍ଢେଇ ପରି ଠିଆ ହେଲେ । ସଲାମ କଲେ ଏବଂ ଏକା ସ୍ୱରରେ କହିଲେ – "ନହିଁ ମିଲା ସାହାବ୍ ।"

ସର୍ବୋଚ୍ଚ କର୍ତ୍ତା କେହି ମିନିଟିଏ ନୀରବ ରହି କହିଲେ, "ଆଚ୍ଛା, ଠିକ୍ ହୈ ତମେ ଯାଅ ।"

ସେମାନେ ଖଟ୍ ଖଟ୍ ସଲାମ କରି ଚାଲିଗଲେ । ଘିଡି ଘିଡି ଶବ୍ଦ ଦୂରେଇ ଗଲା କାହିଁ କୁଆଡେ ।

"ଯାହାଙ୍କ ପାଇଁ ଏତେ ଆୟୋଜନ, ଏତେ ଲୋକ, ସେ କୁଆଡେ ଗଲେ କେହି ଜାଣି ପାରିଲ ନାହିଁ, କେହି ତାଙ୍କ ପାଖରେ ରହି ପାରିଲ ନାହିଁ ? ନାଲାଏକ୍ ନିମକ ହରାମ, ସୁଅର କା ବଚ୍ଚା !"

ଇସ୍, ଏଇ ବୋଧେ ସବୁଠାରୁ ବଡ ହାକିମ । ନହେଲେ କ'ଣ ଏମିତି କୁଭାଷାରେ ଗାଳି ଦେଇ ପାରନ୍ତା, ଆଉ ଏମାନେ ପୋଷା ବାଘ ପରି ମୁଣ୍ଡ ପୋତି ସହୁଥାନ୍ତେ !

ସେ ପୁଣି ଗର୍ଜିଲା । "ବତାଓ, ଆଜିର ମହାମାନ୍ୟ ଅତିଥି କିଧର ହେ ! ବତାଓ, ବତାଓ ।" ସେ ତା' ହାତ ପାପୁଲିରେ ବିଧା ମାରି ଲାଗିଥାଏ । ଆଉ କ୍ଷଣକେ ହୁଏତ ସେ ନିଜେ ହୁତ୍ ହୁତ୍ ହୋଇ ଜଳିଯିବ କିମ୍ବା ଅନ୍ୟ ସମସ୍ତଙ୍କୁ ଜାଳି ଦବ । ତା'ର ଏତେ ସରଳ ପ୍ରଶ୍ନର ଉତ୍ତରଟିଏ ସତେ ସେମାନେ କାହିଁକି ଦେଇପାରୁ ନଥିଲେ । କୁଆଡେ ଗଲେ ଏତେ ବଡ ଲୋକ ଜଣେ, ଯାହାକୁ ଦେଖିବାକୁ ଶୁଣିବାକୁ ଆମେ ଆସିଥିଲୁ ।

ଫାଇଁକିନା ମୋ' ଭିତରେ ହାଲୋଳମୟ ହୋଇଗଲା ।

ମୁଁ ସେ ଚମକୁ ଥିବା ମହକୁ ଥିବା ବିଶିଷ୍ଟ ମଣ୍ଡଳି ଭିତରକୁ ପଶିଗଲି । ମୋ ବୁକୁରେ ଯେତେ ପବନ ଥିଲା । ତାକୁ ଲଗେଇ ଚିତ୍କାର କଲି, "ସେ ହେଇ ଗଛ ତଳେ ପେଶି ହୋଇ ପଡିଛନ୍ତି । ତାଙ୍କ ପଞ୍ଜରା ଗୁଣ୍ଡ ହୋଇଯାଇଛି ।"

ମୁଁ ଆଉ କିଛି କହି ପାରିଲି ନାହିଁ । ମୋ ପଞ୍ଜରା ଗୁଣ୍ଡ ହୋଇଯାଉଥିବାର ମୁଁ ଅନୁଭବ କଲି ।

ସେମାନେ ମୋତେ ସେଇଦିନ ଠାରୁ ଘୋସାରି ଲାଗିଛନ୍ତି । କୌଣସି ଏକ ଭୟାବହ ଉତ୍ସବ ଦିନ ମୋତେ ହତ୍ୟାପରାଧରେ ହୁଏତ ସର୍ବସମକ୍ଷରେ ଗୁଳି କରି ମାରିବାକୁ ମସୁଧା କରିଛନ୍ତି ।

ତାଙ୍କର ଅଭିଯୋଗ ଯେ ମୁଁ ହିଁ ସେ କ୍ଷତ ପାଇଁ ଦାୟୀ ।

ମୁଁ ଅପେକ୍ଷା କରିଛି, ସୁଯୋଗ ମିଳିଲେ କାହାକୁ ଟିକିଏ ପଚାରନ୍ତି, ସେ ଶବଟିକୁ ସେମାନେ ଏଯାଏ ସେ ଗଛତଳୁ କାଢିଲେଣି ନା ନାଇଁ । ମୋ ପିଠିରେ, ପଞ୍ଜରାରେ ଏବେ ବି ଅସହ୍ୟ ବ୍ୟଥା ମୁଁ ଅନୁଭବ କରୁଛି ।



## ବଡଭାଗ ସତ୍ୟ

ଆକାଶରେ ଗୁଡାଏ ନିଶ୍ଚଳ ଶୃଙ୍ଖଳା ମେଘ ଢାଙ୍କିଗଲେ ମୋତେ ଗଛସବୁ ବିଷଣ୍ଣ ଦେଖାଯାନ୍ତି । ପକ୍ଷୀମାନେ ଜଣାଯାନ୍ତି କ୍ଳାନ୍ତ ଏବଂ ପରାସ୍ତ । ସେ ମେଘମାନଙ୍କୁ ଦେଖିଲେ ହିଁ ମୁଁ ଚିଡିଯାଏ । ସେମାନେ ଜମା ଘୁଞ୍ଚନ୍ତି ନାହିଁ । କିମ୍ବା ତରଳନ୍ତି ନାହିଁ । ଶ୍ୱାସରୋଗୀର ବୁକୁ ଭିତରେ ଗୁନ୍ଥିହୋଇ ରହିଥିବା ଅଛିଣ୍ଡା କଫ ପରି ସେମାନେ ପୀଡା ଦିଅନ୍ତି ପୃଥିବୀକୁ ।

ମୋତେ ଅସୁସ୍ଥ ଲାଗେ । ମୁଁ ସହଜରେ ନିଃଶ୍ୱାସ ନେଇ ପାରେ ନାହିଁ ।

ହୁଏ ତ ସେ ମେଘମାନେ ମୋ ମନ ଆକାଶରେ ଘୋଟିଯାନ୍ତି କିମ୍ବା ବେଳେ ବେଳେ ହୁଏତ ମୋ ଭିତରର ନିର୍ମଳ ମେଘପଟଳ ସେଇଠି ସ୍ଥାନ ନ ପାଇ ଆକାଶ ସାରା ବ୍ୟାପିଯାଏ । ମୋଟ ଉପରେ ବର୍ଷାଦିନଟିକୁ ବୁଝିହୁଏ । ସେଥିରେ ଆଦୌ କାର୍ପଣ୍ୟ ନାହିଁ । ସେ ସବୁ ଢାଳିଦିଏ । ନିଗିଡିଯାଏ ଲହୁ, ଲୁହ ଏବଂ ଦୁଃଖ । କଳା କଳା ମେଘ ସବୁ ଚିପୁଡି ହୋଇଯାନ୍ତି । ଉଶ୍ୱାସ ହୋଇଯାନ୍ତି । ଲିଭିଯାନ୍ତି । ସେଇଟା ଗୋଟାଏ ସମାଧାନ । ବେଶ୍ ଭଲ ଏବଂ ନିଷ୍କପଟ । ତା'ପରେ ଯେତେବେଳେ ଆକାଶରେ ଯୁଦ୍ଧ ସରିଯାଏ, ଦର୍ପଣ ପରି ଆକାଶ, ଦର୍ପଣ ପରି ଚନ୍ଦ୍ର । ଦୂର ଦୂର ଅଜଣା ଆକାଶ ପରେ ଆହୁରି ଆକାଶ ଦେଖାଦିଅନ୍ତି । ସେ ନିର୍ମଳ ପ୍ରାଞ୍ଜଳ ସମୟଟି ସମସ୍ତଙ୍କୁ ପ୍ରସନ୍ନ କରିଦିଏ । ଆହୁରି ବଞ୍ଚିବାକୁ ପ୍ରଲୁବ୍ଧ କରିଦିଏ କିମ୍ବା ଏଇଠି ସବୁ ସରିଯାଇଛି ବୋଲି ଗୋଟାଏ ପ୍ରକାର ମରଣେଚ୍ଛା ଜାଗ୍ରତ କରିଦିଏ । ଏ ଋତୁଟିକୁ ମଧ୍ୟ ବୁଝିହୁଏ । ବେଶ୍ ସ୍ୱଷ୍ଟ ଏବଂ ସ୍ୱଚ୍ଛ ।

କିନ୍ତୁ ମଝିରେ ଏ ଦୋମିଶା ସମୟଟା ଅସହ୍ୟ । ବର୍ଷା ନାହିଁ, ଅଥଚ ଆକାଶଟା ଆଚ୍ଛନ୍ନ ରହିଥାଏ । ମେଘ ଥାଏ, ଅଥଚ ଘୁଞ୍ଚେ ନାହିଁ କି ତରଳେ ନାହିଁ । ଖୁବ୍ ଅସସ୍ତିର ସମୟ । ମୋର ଏବଂ ପୃଥିବୀର ଶ୍ୱାସରୋଧର ସମୟ । ମୁଁ ଏଥିରୁ ମୁକୁଳିବାକୁ ଅନେକ ଉପାୟ କରିଛି । ସବୁ ବ୍ୟର୍ଥ । କେବଳ ଆଖିବୁଜି ସହିଯିବା ଛଡା ଉପାୟ ନାହିଁ ।

ତେବେ ସକାଳ ପହରଟାରେ ନିର୍ଜନ ରାସ୍ତାକୁ ବାହାରି ପଡିଲେ ଏଭଳି ମେଘଗ୍ରସ୍ତ ସମୟରେ ମଧ୍ୟ କିଛି କିଛି କାକର ପବନ ଶୋଷିବାକୁ ଭଲ ଲାଗେ । ବଞ୍ଚିବି ବୋଲି ଭରସା ଆସିଯାଏ । ସେଇ ପ୍ରଲୋଭନରେ ଆଜି ସକାଳେ ମୁଁ ବାହାରି ପଡିଥିଲି । ଆମେ ଏଇ ଯେଉଁ

ବସାରେ ଅଛୁ, ଯାର ପଚାଶ ହାତ ଦୂରରେ ଚଉଡା ରାଜରାସ୍ତାଟା ମୋର ଭାରିପ୍ରିୟ । ମୋତେ ଦିଶେ ଦକ୍ଷିଣରୁ ଉତ୍ତରବାହିନୀ ନଈଟିଏ ପରି ।

ଆଜି ସକାଳ କଥା କହୁଛି । ରାସ୍ତା ଉପରେ ଠିଆ ହୋଇ ସୁଦ୍ଧା ମୋର ମନେହେଲା ଯେ, ମୋ ଆକାଶରୁ କେବେ ହେଲେ ଏ ଜଟିଳ ମେଘଜାଲ ଘୁଞ୍ଚିବ ନାହିଁ । ମୁଁ କେବେହେଲେ ସହଜ, ସରଳ ଭାବରେ ଅନ୍ୟମାନଙ୍କ ପରି ନିଃଶ୍ୱାସ ମାରି ପାରିବି ନାହିଁ । ଏମିତି ତ ସମସ୍ତଙ୍କ ଜାହାଜ ଅଥଳ ସମୁଦ୍ରରେ ଭାସୁଚି । କିନ୍ତୁ କାହା ଭାଗ୍ୟରେ ଏତେ ବୋଝ ଏବଂ ମଙ୍ଗ ପର୍ଯ୍ୟନ୍ତ ପାଣି ଟଳମଳ ? କାହା ଆହୁଲା ଏମିତି ଦୁର୍ବଳ ?...

କବି ହେବାପାଇଁ ବୃଥାରେ ଗୁଡାଏ ଚେଷ୍ଟା କରି କରି ଶେଷକୁ ସିଧା ସଳଖ ଦିପଦ ସରଳ ଗଦ୍ୟ ବି କହିପାରିଲି ନାହିଁ । ରାମା ଶାମା ଭଳି ଠୋସ୍ ସହଜ କଥା ମୋ ତୁଣ୍ଡକୁ ଆସୁନାହିଁ । ସେଇଠି ବି ଏଇ ମେଘ ରୁନ୍ଧି ରଖିଛି !

କଥା କ'ଣ କି ଆମ ଘରେ ଏତେବର୍ଷ ପରେ ବି ଅନେକ ଲୋକ । ବୟସିଆଳୀ ଝିଅମାନେ ବିଭା ହୋଇ ପରଘରକୁ ଚାଲିଯିବା କଥା; ଯାଇ ନାହାନ୍ତି । ପୁଅମାନେ ଯୋଗ୍ୟ ହୋଇ ଦେଶବିଦେଶକୁ ଯିବା କଥା; ଯାଇନାହାନ୍ତି । ସେମାନେ ବାହାରିଗଲେ ଘରଟା ନିଶ୍ଚୟ ଫାଙ୍କା ହୋଇଯିବ; ଫାଙ୍କା ହୋଇଯିବ ଜୀବନ । ସବୁଯାକ ଆକାଶକୁ ନେଇ ବଞ୍ଚି ହେବନାହିଁ । କିନ୍ତୁ ମୋ ଭିତରୁ କିଏ କହୁଛି; 'ଆରେ ଛାଡ ସେମାନଙ୍କୁ, ସେମାନେ ଯାଆନ୍ତୁ; ଯେ ଯାହା ସଂସାର କରନ୍ତୁ । ସେଥିପାଇଁ ବେଳ ହୋଇଗଲା ।' – ଆଉ କିଏ କହୁଚି, 'ନା ନା', ଗଛରୁ ସବୁଯାକ ଡାଳ ହାଣିଦେଲେ ସେ ଥୁଣ୍ଟା ଆଉ ବଞ୍ଚିବ କେମିତି ?' ଏଇ କେତେଦିନ ହେଲା ଏ ଦ୍ୱନ୍ଦ୍ୱ ଭିତରେ ମୁଁ କେବଳ ଜପ କରୁଚି, ସେମାନେ କେମିତି ଯାଆନ୍ତୁ ! ଘରଦ୍ୱାର କରି ସଂସାର କରନ୍ତୁ ! ସୁଖରେ ରହନ୍ତୁ ! ଘୁଞ୍ଚିଯାଉ ଏ ନିର୍ଜଳ ମେଘ । ତେଣିକି ମୋର ଯାହା ହେବାର ହେଉଥାଉ ।'

ଆଜି ବଡଝିଅ ଅଜାଘରୁ ଏଠିକି ଆସିବାର ଥିଲା । ଜଣେ ଖବର ଦେଇଥିଲା ଆଜି ଝିଅ ଦେଖିବାକୁ ଆସିବ । ଏସବୁ ମୋର ମନେଥିଲା । ଯାକୁ ମିଶେଇଲେ, ବାସ୍ତରୀ ଜଣ ଦେଖଣାହାରୀ ଆସିଲେଣି । କ'ଣ ହବ କହିହେଉ ନାହିଁ । କିନ୍ତୁ ଝିଅ ତ ପହଞ୍ଚିବା କଥା । ଯଦି ନ ଆସେ ଏବଂ ସେଇ କାରଣରୁ ହବା ସମ୍ବନ୍ଧଟି ଭାଙ୍ଗିଯାଏ, କ'ଣ ହବ ତା'ପରେ । ଏ ଉଦ୍‌ବେଗ ମୋ ମନରେ ଅବଶ୍ୟ ଥିଲା ।

ମୁଁ ମାନୁଛି ମୋତେ ଅସୁସ୍ଥ ଲାଗୁଥିଲା ।

କିନ୍ତୁ ମୁଁ ଯାହା ଦେଖିଲି ସେଥିରେ ସନ୍ଦେହ କରିବାର କିଛି ନାହିଁ । ଏକବାର ସ୍ୱଷ୍ଟ । ଯଦି କିଏ ଚାହେଁ, ମୁଁ ତାକୁ ନେଇ ସେ ଜାଗାରେ ବି ପହଞ୍ଚେଇ ଦେଇପାରେ ।

ସେତେବେଳେ ବେଶ୍ ଆଲୁଅ ବି ହୋଇ ଯାଇଥାଏ । ପାଖ ଗଛରେ ଭରତିଆ ଚଢେଇ ଡାକୁଥାଏ । ସେଇ କରଞ୍ଜ ଗଛମାନଙ୍କରେ ସେଥିରୁ କିଛି ପକ୍ଷୀ ବସା କରିଛନ୍ତି ମୁଁ ଜାଣେ । ସବୁଦିନ ସକାଳୁ ସେମାନଙ୍କ ଡାକ ଶୁଭେ । ଦିନେ ଦିନେ ରାତି ତିନିଟାରୁ ମୋ ନିଦ ଭାଙ୍ଗିଯାଏ, ଛଟପଟ

ଲାଗେ । ଅନ୍ଧାର ଥାଉ ଥାଉ ମୁଁ ବାହାରିପଡେ ରାସ୍ତାକୁ ।

ଆଜି ସେମିତି ଆଦୌ ହୋଇନାହିଁ । ମୁଁ ବାହାରିଲାବେଳକୁ ଆଲୁଅ ହୋଇଯାଇଥାଏ...ଆଚ୍ଛା ମୋ ଚଷମା ବଦଳିବା କଥା ? ମୁଁ ମାନୁଚି ଯେ ଡାକ୍ତର ମହାନ୍ତି ପରୀକ୍ଷା କରି କାଚ ବଦଳେଇବାକୁ ଲେଖି ଦେଇଛନ୍ତି । କିନ୍ତୁ ଏ ଦ୍ୱଳକ ସେମିତି କିଛି ଅକାମି ହୋଇଯାଇନାହିଁ । ଏଥିରେ ମୁଁ ବେଶ୍ ଛୁଞ୍ଚରେ ସୂତା ଗଳେଇ ପାରୁଚି । ଝାଉଁଗଛର ଶିଖ ଉପରେ ପତ୍ର ଗଣିପାରୁଛି !

...ତେବେ ମୋତେ ସେତେବେଳେ କେତେ ଅସୁସ୍ଥ ଲାଗୁଥିଲା ଏବଂ କି ପ୍ରକାର ଅସୁସ୍ଥ ଲାଗୁଥିଲା ମୁଁ କହିପାରିବି ନାହିଁ ।

କିନ୍ତୁ ମୁଁ ଜମା ମାନିପାରୁ ନାହିଁ ଯେ ମୁଁ ଦେଖିବାରେ ଭୁଲ କରିଛି । ମୁଁ ନିଜେ ଏଇ ଆଖିରେ ଦେଖିଚି ପରା ! ତୁମେ କାହିଁକି ବିଶ୍ୱାସ କରୁନାହଁ, ମୁଁ ବୁଝିପାରୁ ନାହିଁ ।

ସେଇଠି ସେ କ୍ଷୀର ବିକ୍ରୀ କେନ୍ଦ୍ରର ଟିକିଏ ତଳକୁ ରିକ୍ସା, ସାଇକେଲ ଯାହାହେଲେ ଖୁବ୍ ଜୋରରେ ଗଡିଆସେ । ରାସ୍ତାଟାରେ ଅନେକ ଗଡାଣି ସେଇଠି । ମଟର ଗାଡି କଥା ଛାଡ, ଏଇ ପିମ୍ପୁଡିଆ ଲୁନାଗାଡି ଗୁଡାକ ମଧ୍ୟ ଫାଇଁକିନା ପାରି ହୋଇଯାନ୍ତି । ମୁଁ ସେଥିପାଇଁ ବାଁକୁ ମାଡି ଚାଲୁଥାଏ । ସେ ନିରୋଳା ସମୟଟାରେ କାଁ ଭାଁ ଗାଡି ମଟର ଚାଲେ; ହେଲେ, ସତର୍କ ରହିବା ଭଲ । ମନ ତ କୁଆଡେ କୁଆଡେ ଭ୍ରମୁଥାଏ ସେଥିପାଇଁ ବାଟ ଛାଡିଦେଲେ ଅନ୍ୟମନସ୍କ ହେବାରେ ସେମିତି କିଛି ବିପଦ ନାହିଁ । ତେବେ ଶୁଣ –

ମେଘ ଭିତରୁ ଓହ୍ଲେଇ ଆସିଲା ପରି ନିଃଶବ୍ଦରେ ଖଣ୍ଡେ ଗାଡି ଉପର ମୁଣ୍ଡାରୁ ଗଡିଆସିଲା, ନାଲି ରଙ୍ଗ । ଇସ୍ ! ଆମ ପିଲାପିଲି ସମସ୍ତଙ୍କର ନାଲିରଙ୍ଗ ଭାରି ପ୍ରିୟ । ସେତେ ସକାଳୁ ସେମାନେ ଉଠିଥିଲେ ସିନା କିଏ ହେଲେ ଦେଖିଥାନ୍ତା ଆଉ ପାଟିକରି ସମସ୍ତଙ୍କୁ ଉଠେଇଥାନ୍ତା ଦେଖିବାକୁ । ସେମାନଙ୍କର ବିଶ୍ୱାସ ଯେ ନାଲିଗାଡି ଦେଖିଲେ କୁଆଡେ ସେଦିନ ଭିତରେ ନିଶ୍ଚୟ ମିଠା ଖାଇବାକୁ ମିଳିବ, ମାହାଳିଆ ।...

ଗାଡି ଗଡିଗଲା । ମୁଁ ଅଳ୍ପ ହସିଦେଇ ଆଗେଇ ଗଲି ।

ପାଖ ଦଶହାତ ତଳକୁ ଗଡିଯାଇ ଗାଡିଟି ରହିଗଲା । ମୁଁ ପଛକୁ ଚାହିଁ ନାହିଁ । ଗାଡି କବାଟ ଫିଟିଲା, ପଡିଲା । ମୁଁ ଚାହିଁନାହିଁ । ମୋ ପଛରୁ କେହି ଜଣେ ଚଟ୍ ଚଟ୍ ପାଖେଇ ଆସିଲା । ମୁଁ ଅଟକି ନାହି କି ପଛକୁ ଲେଉଟି ଚାହିଁନାହିଁ । ...'ହଅଅ, ନାଲିଗାଡି ଅଟକିଲା ଆମର କ'ଣ ଗଲା ? ସେ ଯେ ଓହ୍ଲେଇଲା ତା'ର ବା ମୋ ସାଙ୍ଗରେ କ'ଣ କାମ ? ଏଣୁ ମୁଁ ଧୀରେ ଧୀରେ ମୋ ଢଙ୍ଗରେ ଆଗେଇ ଚାଲିଥାଏ ।'

ମୋର ଖୁବ୍ ପଛକୁ ଲାଗି ପାଦଶବ୍ଦ ।

ତା'ପରେ ଧାଇଁଲା ପରି କେହି ଜଣେ ମୋ ସାମ୍ନାକୁ ଆସି ଠିଆହେଇଗଲା । ମୋତେ ଏତେ ବଡ ବଡ ଆଖି ଖୋସି ଚାହିଁଲା । କହିଲା – "କିଏ ନନା ? ତମେ ? ?" ଲଇଁପଡି ପାଦଛୁଇଁ

ଓଳଗି ହେଲା । ଠିଆହୋଇ ସେମିତି ଡବଡବ ଆଖିରେ ମତେ ଚାହିଁରହିଲା । ସେ ମତେ ଦେଖି ନିଶ୍ଚୟ ଖୁବ୍ ଆଶ୍ଚର୍ଯ୍ୟ ହୋଇଯାଇଥିଲା ।

କିନ୍ତୁ ତା'ଠୁ ବେଶି ଆଶ୍ଚର୍ଯ୍ୟ ହୋଇଥିଲି ମୁଁ ।

ମୋ ସାମ୍ନାରେ ଯେ ଠିଆ ହୋଇଥିଲା, ମୁଁ ତାକୁ ହଠାତ୍ ଚିହ୍ନିପାରିଲି ନାହିଁ । ସେ ଜଣେ ବୃଦ୍ଧା । ବୟସ ଅନ୍ଦାଜ ପଇଁଷଠୀ । କିନ୍ତୁ ଖୁବ୍ ସମ୍ଭ୍ରାନ୍ତ ଏବଂ ସୁସ୍ଥ । ମୁଣ୍ଡବାଳ କେରାଏ ଧଳା । ପିନ୍ଧିଥାଏ ଖଣ୍ଡେ ଦାମୀ ପାଟ! – ମୁଁ ଚିହ୍ନିପାରୁ ନ ଥାଏ ସତ, ତଥାପି ଚେହେରାଟା କେମିତି ଖୁବ୍ ଚିହ୍ନା ଚିହ୍ନା ଲାଗୁଥାଏ । ସତେ ବା ସେ ଖୁବ୍ ଦୂରସମ୍ପର୍କୀୟା ଆମ କୁଟୁମ୍ବର କେହି ଜଣେ!

ତା'ପରେ ହଠାତ୍ ମୁଁ ତାକୁ ଚିହ୍ନିପାରି ଅବାକ୍ ହୋଇଗଲି । ସେ ତ 'ସୁଲ' – ମାନେ ସୁଲକ୍ଷଣା, ମୋ ବଡ ଝିଅ!! ଆଶ୍ଚର୍ଯ୍ୟ! – ମୁଁ ତାକୁ ଚିହ୍ନି ପାରିଥିବା ସେ କେମିତି କେଜାଣି ବୁଝି ଯାଇଥିଲା ।

ସେ ଅଳ୍ପ ହସିଦେଲା । ସେତିକିରେ ମୁଁ ନିଃସନ୍ଦେହ ହୋଇଗଲି । ତା' ହସ ସମସ୍ତଙ୍କଠୁ ନିଆରା । ସେମିତି ହସ ଆଉ କାହାରି ନାହିଁ ।

ସେ ମୋତେ ଗୋଡଠୁ ମୁଣ୍ଡଯାଏଁ ଚାହିଁ ରହିଥାଏ । ଗଦ୍ ଗଦ ହଉଥାଉ । କହିଲା – "ଏଇଟା ଠିକ୍ ତୁମର ବୁଲିଯିବା ବେଳ । ମୋର ସବୁ କଥା ମନେଅଛି । କିନ୍ତୁ ତମକୁ ଏମିତି ଅଚାନକ ଏଇଠି ଦେଖିବି ବୋଲି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।"

ସେ ହୁଏତ ଚାହୁଁଥିଲା ମୋତେ ଧରି ପକେଇବାକୁ । କିନ୍ତୁ କେଜାଣି କାହିଁକି ମୋତେ କେହି ହେଲେ ଛୁଇଁପାରନ୍ତି ନାହିଁ । ତାଙ୍କ ମନରେ ହୁଏତ ଖୁବ୍ ଡର । ସେମିତି ଡରିବାର କୌଣସି କାରଣ ଅବଶ୍ୟ ମୁଁ ଏଯାଏଁ ଖୋଜି ପାଇନାହିଁ । ସେମାନେ କିନ୍ତୁ ଡରନ୍ତି, ଏଥିରେ ସନ୍ଦେହ ନାହିଁ ।

ସେ ହାତ ବଢେଇ ଆଣୁଥିଲା । ମୁଁ ଖୁବ୍ ସନ୍ତର୍ପଣରେ ପୁରୁଣା ଅଭ୍ୟାସରେ ଘୁଞ୍ଚିଗଲି । ଏତିକିବେଳେ ଡେଙ୍ଗା ଡାହାଳିଆ ଗୋରା ଟକଟକ ଟୋକାଟିଏ ଆସି ତା' ପାଖରେ ଠିଆ ହେଲା । ସାଇବ ପିଲାପରି ଚେହେରା । ସେମିତି ବେଶପୋଷାକ ।

"ଆରେ ମୁଣ୍ଡିଆ ମାର! ଏ ପରା ମୋ ନନା, ମାନେ ମାଇଁ ଡାଡି! ...ଏ ଟୋକା ମୋ ବଡ ନାତି । ଏଇଲାଗେ ଆମେରିକାରେ ରହି ପାଠ ପଢୁଛି । ୟାକୁ ଓଡିଆ ଶିଖେଇବା ଆମ ପାଇଁ ଗୋଟାଏ ସମସ୍ୟା ।"

ପିଲାଟି ମତେ ତା'ର ନିଷ୍କଳଙ୍କ ଆଖିରେ ଚାହିଁ ରହିଥାଏ । ବଢିଆ ଟୋକା । ତା' ନାକ, ଆଖି, କପାଳରେ ଗୋଟେ ଖୁବ୍ ବଡଲୋକର ଠାଣି । ସେ ନିଶ୍ଚୟ ଦିନେ ବିଖ୍ୟାତ ମଣିଷ ହେବ ।

'ସୁଲ' ଖୁସିରେ ଗଦ୍‌ଗଦ ହଉଥାଏ । ତା' ଆଖିକୁ ଲୁହ ଜକେଇ ଆସୁଥାଏ ।

"ମୋର କେଡେ ଭାଗ୍ୟ ଯେ ମୁଁ ଆଜି ତମକୁ ଦେଖିଲି । ମତେ ସ୍ୱପ୍ନ ପରି ଲାଗୁଛି । ଜମା ବିଶ୍ୱାସ ହଉନାହିଁ, ମୁଁ ତୁମକୁ ପୁଣି ଦେଖୁଚି ବୋଲି । ଚାଲ, ମୋ ସାଙ୍ଗରେ ମୋ ନାତୁଣୀଜୋଇଁ ପାଖକୁ ନେଇଯିବି । ସେ ଭାରି ଖୁସି ହେଇଯିବ । ସେ ବି ବିଶ୍ୱାସ କରିପାରିବ ନାହିଁ । ଏବେ ସେ

ବମ୍ବେରୁ ଏଠିକି ପୋଷ୍ଟିଂରେ ଆସିଚି । ତା' ଘରେ ପୁଅ ଝିଅ କ'ଣ ହବାକୁ ଅଛି । ଏଠି ତା'ର ଚିହ୍ନା କେହି ନାହାନ୍ତି । ମୁଁ ଟିକିଏ ବନ୍ଦୋବସ୍ତ କରିଦବାକୁ ଆଜି ସକାଳ ଫ୍ଲାଇଟରେ ଆସି ପହଞ୍ଚିଲି । ତମ ଜ୍ୱାଇଁଙ୍କର ତ ଏ ସବୁ ବୁଝିବାକୁ ବେଳ ନ ଥାଏ ।"

କେତୋଟି ନିଃଶ୍ୱାସ ନୀରବ ପାରି ହେଇଗଲା ।

"ମୋ ପୁଅଝିଅଙ୍କ ବାହାଘର ସେଇ ବାଙ୍ଗାଲୋର ଘରେ କଲି । ସବୁଥର ମୋ ନିଜ ବାହାଘର କଥା ସମସ୍ତଙ୍କୁ କହେ । କେମିତି ମୋ ନନା ହଜାରେ ରୋହିମାଛର ଗୋଟାମୁଣ୍ଡ ତର୍କାରି କରିଥିଲେ । କେହି ବିଶ୍ୱାସ କରନ୍ତି ନାହିଁ । ମାଛ ଏବେ ଟିକିଏ ଶସ୍ତା ହେଲାଣି । କିଲୋ ଦେଢ ଶ' ଟଙ୍କା; କିନ୍ତୁ ବିଭାଘର ବେଳକୁ ମୁଁ ଦୁଇଶ' ଟଙ୍କା ଯାଚି ସୁଦ୍ଧା ଅଳ୍ପ କିଛି ମିଳିଥିଲା । ...ଆଉ ସବୁବେଳେ ସେମାନଙ୍କୁ କହେ କେମିତି ତମେ ମୋତେ ବିଦା କଲାବେଳେ ଜମା କାନ୍ଦି ନ ଥିଲ । ମୁଁ କିନ୍ତୁ ତମ ମୁହଁକୁ ଚାହିଁ ଜାଣିଥିଲି ଯେ ତୁମେ ଭିତରେ ଭିତରେ ଖୁବ୍ କାନ୍ଦୁଥିଲ । ତମ ଭିତରେ ଆମମାନଙ୍କ ପାଇଁ କେତେ ଆଶଙ୍କା, କେତେ ଭୟ, ଆମେ ଜାଣିଥିଲୁ । ନନା ଅଯଥା ଛାନିଆ ହୋଇଯାନ୍ତି ବୋଲି ହସୁଥିଲୁ । ...ଆମପାଇଁ ତମେ ସତେ କେତେ ଉଦ୍‌ବିଗ୍ନ ରହୁ ନ ଥିଲ ! ଆମେ ବଜାରରୁ ଫେରିବାରେ ଟିକିଏ ବିଳମ୍ବ ହେଉଥିଲେ ତୁମେ ଡରୁଥିଲ କାଳେ ଆମେ ଗୁଣ୍ଡାଙ୍କ ହାତରେ ପଡିଗଲୁ । ରାତିରେ ଶୋଇପାରୁ ନ ଥିଲ ଉଦ୍‌ବେଗରେ । ରାସ୍ତାର ଲୋକଙ୍କୁ ଚାହିଁପାରୁ ନ ଥିଲ ବିଶ୍ୱାସରେ । ଆମକୁ ଅତି ମହାର୍ଘ ସମ୍ପତ୍ତି ପରି ସମ୍ପାଦି ରଖିଥିଲ । ତୁମକୁ ଲାଗୁଥିଲା ପୃଥିବୀ ସାରା ଦୁଷ୍ଟଲୋକ ତମ ପିଲାଙ୍କୁ ଭିଡି ନେଇଯିବେ; ଚୋଟି କଣା କରି ରକ୍ତ ପିଇଯିବେ; ଜୀଅନ୍ତା ଜାଳି ଦେବେ...ଏମିତି କେତେ କଥା !"...

'କିନ୍ତୁ ନନା, ତମ ଆଶୀର୍ବାଦରୁ ଶାଶୁଘରେ ମୋତେ ଏତେ ଟିକେ ବୋଲି କେବେ ଅସୁବିଧା ହୋଇନାହିଁ । ଖୁବ୍ ଭଲ ଲୋକ ସେମାନେ । ମୋର ମନେଅଛି ମୋତେ ଆଣିବାକୁ ତମେ ତାଙ୍କ ଘରକୁ ଥରେ ଆସିଥିଲ । ସେମାନେ କ'ଣ ମନା କରିଦେଲେ ବୋଲି ଅଭିମାନରେ ତାଙ୍କ ଦୁଆର ମାଡିଲ ନାହିଁ । ତାଙ୍କର ସେଥିପାଇଁ ଯେତେ ଅବଶୋଷ ଆଉ କ'ଣ କହିବି ! ତମେ କ'ଣ ଏବେ ବି ମନରେ ରାଗ ରଖିଛ ? ଚାଲ, ମୁଁ ଆମ ପୁରୁଣା ଘରକୁ ତମକୁ ନେଇଯିବି । ଶାଶୁ-ଶଶୁର ତ କୋଉକାଳୁ ଚାଲିଗଲେଣି । ତମ ଜୋଇଁଙ୍କୁ ତ ଏଇ କାର୍ତ୍ତିକକୁ ଆସି ସତୁରି ପୂରିଯିବ । ତମର କିନ୍ତୁ ଟିକିଏ ବୋଲି ପରିବର୍ତ୍ତନ ହୋଇନାହିଁ । ମୁଁ ବିଭା ହେଇ ଗଲାବେଳେ ଯେମିତି ଦେଖିଥିଲି, ଠିକ୍ ସେମିତି ଦିଶୁଚ !'

ମୁଁ ସୁଲକୁ ଚାହିଁ ରହିଥାଏ । ସେ ଚୋକକୁ ଚାହୁଁଥାଏ ମଝିରେ ମଝିରେ ।

"ମନେ ଅଛି ନା, ମୋ ବିଭାଘରେ ଆମେ ସମସ୍ତେ କେମିତି ସିନେମାଗୀତ ଲଗେଇବାକୁ କଟାଳ କରିଥିଲୁ । ତମେ ଜମା ରାଜି ହେଲ ନାହିଁ । କହିଲ, କେବଳ ଶେହନାଇ ବାଜିବ । ତମେ ଅଡି ବସିଲ ବୋଲି ବାକି ଯେତେ ବାହାଘର ହେଲା ସେ ଅଞ୍ଚଳରେ, ସବୁଠି ସେମିତି କେବଳ ଯନ୍ତ୍ରସଙ୍ଗୀତ ବାଜିଲା । ଲୋକଙ୍କ ରୁଚି ବଦଳିଗଲା ସେଇଦିନୁ । ତୁମକୁ ଦେଖିଲେ ଲାଗୁଥିଲା ଶୁଦ୍ଧ

ଆଦର୍ଶଟିଏ କାହାକୁ ନ ମାନି ବେଖାତିର ଏକୁଟିଆ ଠିଆହେଇଛି । ସମସ୍ତେ ତା' ପାଖରେ ଶେଷକୁ ନଇଁ ଯାଉଛନ୍ତି ।"

...ମୋର ମନେ ହେଲା କାହିଁ କେତେ ବର୍ଷ ପୂର୍ବେ ହୋଇଥିବା ଗୋଟିଏ ବିଭାଘରର ଚିତ୍ର ମୋତେ ଦିଶିଗଲା । ବରାନୁଗମନ ବେଳେ ଶଂଖ ବାଜିବାର ଶବ୍ଦ ଶୁଭିଲା । ଧଳାଗାଡି ଉପରେ ମାଳମାଳ ରାଜଦନ୍ତର ଝରା! ...ରାଜପୁତ୍ର ପରି ଜୋଇଁ-ଧଳା ଧୋତି ପଞ୍ଜାବୀ ପିନ୍ଧି ମୋର ଜନ୍ମଜନ୍ମର ବନ୍ଧୁ କୁଟୁମ୍ବୀମାନେ ମୋ ଚାରିଆଡେ ଘେରି ଠିଆ ରହିବାର ଚିତ୍ର !...ବରକୁ ଚନ୍ଦନ ତିଳକ କରି ଫୁଲମାଳ ମଣ୍ଡିଦେଇ ହାତଧରି ପାଦଧୁଆ ପିଢା ଉପରକୁ ବରଣ କରିନେବାର ମାହେନ୍ଦ୍ରବେଳା!!

...ମନେହେଲା 'ସୁଲ' ମୋ ଆଖିରେ ଏ ସବୁ ଦେଖି ପାରୁଥିଲା ଏବଂ ଅଳ୍ପ ହସି ଚାହିଁ ରହିଥିଲା ।

X X X X

ବାରମ୍ବାର ଶଙ୍ଖ ବାଜିଲା; ଖୁବ୍ ନିକଟରେ ଏବଂ ଖୁବ୍ ଜୋର୍‌ରେ! ମୁଁ ଚମକିପଡି ଦେଖିଲି ଗୋଟାଏ ବାଲି ବୋଝେଇ ଟ୍ରକ ମୋ ପାଖରେ ବ୍ରେକ କସି ହର୍ଣ୍ଣ ବଜେଇ ଲାଗିଚି । ମୁଁ ରାସ୍ତା ଉପରେ ଠିଆ ରହିଚି ତା' ସାମ୍ନାରେ ।...

...ତା'ପରେ 'ସୁଲ' ତା' ନାତି, ସେ ନାଲିଗାଡି ଅବଶ୍ୟ କିଛି ସେଇଠି ନ ଥିଲା । କିନ୍ତୁ ସେ କ'ଣ ଏଠିକି ଆସି ନାହିଁ ? ମୋତେ ସେଇଠୁ ଉଠେଇ ଆଣିଲାବେଳେ ତୁମେ କ'ଣ କାହାକୁ ଦେଖିନାହଁ ?

...ବିଶ୍ୱାସ କର! ଆଖି ମିଟିକା ମାରି ମୁଁ ଯେମିତି ହେଇ ତୁମକୁ ଦେଖୁଛି, ସେମିତି ତାକୁ ଦେଖିଛି । ଏଥିରେ ତିଳାର୍ଦ୍ଧ ସନ୍ଦେହ ନାହିଁ । ମୁଁ ଯାହା କହୁଛି ତୁମେ ମାନିନେବାକୁ ମୁଁ ଆଶା କରୁନାହିଁ, କିନ୍ତୁ ତୁମ କଥାଗୁଡାକ କଣ୍ଟାଗଛରେ ଲୁହାକଣ୍ଟା ପିଟିଲା ପରି ଭାରି ମର୍ମକୁ ବାଧୁଚି! ...'ସୁଲ' ଆଉରି ଅଜାଘରୁ ଆସି ନାହିଁ... ତା' ବାହାଘର ଠିକ୍ ହେଇ ନାହିଁ, କିଛି ହେଇ ନାହିଁ...ନାହିଁ; ନାହିଁ...! ...ଓଃ, ଚୁପ୍ କର ଭଲା!!

ଆଜି ଦିନ ସାରା ଡାକ୍ତରମାନେ ଲାଗି ମୋତେ ଚେତା କରେଇଛନ୍ତି ? – ତାଙ୍କୁ ଧନ୍ୟବାଦ ଜଣେଇଦିଅ । ...ନା' ମୋତେ ଆଦୌ ଭୋକ ନାହିଁ, ମୁଁ କିଛି ଖାଇବି ନାହିଁ । ବରଂ ଆଲୁଅ ଲିଭେଇ ତୁମେମାନେ ଏଇଠୁ ଚାଲିଯାଅ । ମୁଁ ଶୋଇଯିବାକୁ ଚାହେଁ । ପାହାନ୍ତାରୁ ଉଠିଲେ ସିନା ବୁଲି ବାହାରିବି । – ସେଇଠୁ 'ସୁଲ' ତା' ନାତିକୁ ନେଇ ଠିଆ ହେଇଥିବ ଯେ! ନିଶ୍ଚେ ମୋତେ ଅପେକ୍ଷା କରିଥିବ । ଏଥର ସେ ଯଦି ଡାକେ ମୁଁ ତା' ପଛେ ପଛେ ରାସ୍ତା କାଟି ଚାଲିଯିବି । ସେ ନାଲି ଗାଡିରେ ବସେଇ ମୋତେ ନେଇଯିବ । ...ନା, ନା, ଏଠିକି ଆଉ କେମିତି ଆସିବି ?

...ଦେଖିଲ, ଆକାଶରୁ ସେ ଅଲକ୍ଷଣା ମେଘ ଘୁଞ୍ଚିଲାଣି ନା ନାହିଁ!



## ଅବାନ୍ତର ଈଶ୍ୱର

"ଆପଣ, ସାର୍, ଏଠୁ ଏଇ ମୁହୂର୍ତ୍ତରେ ଚାଲିଯାନ୍ତୁ! – ନ ହେଲେ ମୁଁ କ'ଣ ବଇଲେ କ'ଣ କରି ଦେଇପାରେ । – ମୁଁ ଆପଣଙ୍କୁ ଡାକି ନାହିଁ । ଯାଆନ୍ତୁ ଆପଣ! ମୁଁ ଆପଣଙ୍କ ମୁହଁ ଦେଖିବାକୁ ଚାହେଁ ନାହିଁ ।"

ଦିନେଶର ମୁହଁ ମଧ୍ୟ ମୁଁ ଦେଖିବାକୁ ଚାହୁଁ ନ ଥିଲି । ସେ ଖୁବ୍ ଉତ୍ତ୍ୟକ୍ତ ଦିଶୁଥିଲା । ତା' ଭୂରୁ କମ୍ପୁଥିଲା । ଓଠ ଥରଥର ହଉଥିଲା । ଆଖି ତବତବ ଥୋପି ପଡୁଥିଲା । ସେ ଅସ୍ୱାଭାବିକ ଭାବରେ ଉତ୍ତେଜିତ ହୋଇ ଉଠୁଥିଲା । ମୁଁ କିଛି ନ କହି ଘୁଞ୍ଚି ଯାଇଥିଲି ସେଇଠୁ ଅଳ୍ପ ଦୂରରେ ଥିବା ଚମ୍ପା ଗଛ ମୂଳକୁ । ଆଜି ସକାଳେ ସେଠିକି ବେଶ୍ ଖରା ପଡିଥିଲା ।

ମୁଁ ଦିନେଶ ମାନସିଂକୁ ଜାଣେ । ମୁଁ ତାକୁ ଭଲପାଏ । ତା' ଚିତ୍ରଗୁଡିକୁ ଭଲପାଏ । ଦିନେଶ ଖୁବ୍ ପ୍ରତିଭାବାନ୍ ପିଲା । ଆକାରରେ ଛୋଟ । ପିଲାଳିଆ ଚେହେରା । କିନ୍ତୁ ତା' ଭିତରେ ଅକ୍ଷୟ ବଜ୍ର ଲୁଚି ରହିଛି । ଘୋର ବିପତ୍ତିବେଳେ ବି ସେ ସ୍ଥିର ରହିପାରେ । ପାଞ୍ଚଦିନ ଅନାହାର ରହିବା ପରେ ସେ ଅସମ୍ଭବ ଧୈର୍ଯ୍ୟରେ ହସି ହସି କଥା କହିପାରେ । ବେଖାତିର୍ କରିପାରେ, ତୁଚ୍ଛ ମଣିପାରେ ସାରା ସଂସାରକୁ ।

ଅଭିଜାତ ଘର ପିଲା । କିନ୍ତୁ ବହୁକାଳୁ ସବୁ ସରିଯାଇଛି ମଦୁଆ ବାପ ଅମଳରୁ । ବିଧବା ମା' ଘରର ଇଜ୍ଜତ୍ ଲୁଚାଇ ଅଧ ରାତିରେ ପରଘରେ ଧାନ କୁଟେ । ପାହାନ୍ତିଆକୁ ଫେରିଆସେ ମୂଲ ନେଇ । ସେଇ ମୂଲରେ ତିଳ ତିଳ କରି ସଞ୍ଚିଥିବା ତିରିଶ ଟଙ୍କା ପୁଅ ହାତକୁ ଟେକି ଦେଇ ସେ କହିଥିଲା, "ଏତିକିରେ ତୁ ଯାହା ହବାର ହବୁ – ପାଠ ପଢିବୁ, ଚିତ୍ରକର ହବୁ ତ ଭଲ କଥା । ନ ହେଲେ ନାଇଁ । ତତେ ତେଣିକି ଠାକୁର ଭରସା । ମୁଁ ଏମିତି ମୂଲ ଲାଗି ପେଟ ପୋଷି ପଡିଥିବି ତୋ ବାପ, ଗୋସେଇଁ ବାପ ଅମଳର ଏଇ ପଥର ଘରେ । ମରିଯିବି ପଛେ, ଇଜ୍ଜତ ହାରିବି ନାଇଁ । ମୁଣ୍ଡ ନୋଇଁବି ନାଇଁ । ହାତ ପତେଇବି ନାଇଁ । ତୁ ଫେରିବା ଯାଏଁ ଯେମିତି ହଉ ବଞ୍ଚିଥିବି ।"

ଦିନେଶ ବି ସେମିତି ବଞ୍ଚିଛି । ଦିନେ ପାଠ ସାରି ଯୋଗ୍ୟ, ରୋଜଗାରିଆ ପୁଅ ହୋଇ ଫେରିବ ବୋଲି ବଞ୍ଚିଛି । କିନ୍ତୁ କି କଷ୍ଟ ଏଠି ବଞ୍ଚିବା !...

– ମୋର ମନେ ପଡିଗଲା । ଛ'ମାସ ପୂର୍ବର ଘଟଣା । ମୁଁ ହିଁ ଜାଣେ କ'ଣ ପ୍ରକୃତରେ

ଘଟିଥିଲା । ଦିନେଶ ଆଉ କାହାକୁ କହିନାହିଁ । ମୁଁ ବି କହିନାହିଁ । ଇଜ୍ଜତ୍‌ଦାର୍ ଟୋକା । ତା' ନାଁରେ ମୁଁ କାହାକୁ ସୁପାରିଶ କରିଛି ବୋଲି ଜାଣିଦେଲେ ସେ ଛୁରୀ ମାରି ହୋଇଯିବ । କିନ୍ତୁ ସେଦନ ଯାହା ଘଟିଗଲା ମୁଁ ତା' ସହିତ ଏ ପର୍ଯ୍ୟନ୍ତ ସାଲିସ୍ କରି ପାରୁ ନାହିଁ ।

ଏବେ ଯେମିତି, ସେତେବେଳେ ବି ଦିନେଶର ଅଭାବ ଲାଗି ରହିଥାଏ । ଦୁଇଦିନ ବା ତିନିଦିନ ଭୋକେ ରହିଯିବା ତା' ପାଇଁ ଅତି ସାମାନ୍ୟ କଥା । ତା' ଭିତରେ କ'ଣ ଗୋଟାଏ ଦୁର୍ଜୟ ଶକ୍ତି ଅଛି କେଜାଣି ସେ ଆଦୌ କୌଣସି ଦୁଃଖ, ଯନ୍ତ୍ରଣାକୁ ଖାତିର୍ କରିବା କଥା ମୁଁ ଜାଣିନାହିଁ । ସେ ରାତି ଏଗାରଟା ଯାଏଁ ଜନଗହଳି ଭିତରେ ପଶି ଗଛକୁ ଆଉଜି ସ୍କେଚ୍ କରେ – ଅସଂଖ୍ୟ ଏବଂ ଅଦ୍ଭୁତ । ସେ ସେଥିରେ ନିମଗ୍ନ ଥାଏ – କଣ୍ଟା ଉପରେ ଶୋଇଥିବା ହଠଯୋଗୀ ପରି ।

ସେଦିନ ତାକୁ ବୋଧହୁଏ ଅସହ୍ୟ ଭୋକ ହଉଥିଲା । କାରଣ ସେତେବେଳକୁ ସେ ପାଞ୍ଚଦିନ ଅନାହାରରେ ରହି ସାରିଥିଲା । ସେଥିପାଇଁ ତା' ସାଙ୍ଗ ବିଜୟ ତାକୁ ସିଗ୍ରେଟ୍ ଯାଚିବାରୁ ସେ ମନା କରି ପାରିଲା ନାହିଁ । ମୋତେ ପରେ କହୁଥିଲା ଯେ, ସିଗ୍ରେଟ୍ ଟାକୁ ସେ ହୁଏତ ସନ୍ଦେଶ ଭଳି ଚୋବେଇ ଦେଇଥାନ୍ତା । ତା' ନକରି ସେ ତା' ଧୂଆଁକୁ କେବଳ ପିଇଗଲା । ବିଜୟକୁ ଆପଣାର ଭାବି କହି ପକେଇଲା, "ତୋ ପାଖରେ ଯଦି ଅଛି, ମତେ ଟଙ୍କା ପାଞ୍ଚଟା ଦେଇଥା । ମୁଁ ତତେ ଏଇନା ଶୁଝି ପାରିବି ନାହିଁ । କିନ୍ତୁ ଶୁଝିବି ନିଶ୍ଚୟ । ଯେତେବେଳେ ରୋଜଗାର କରିବି ପ୍ରଥମ ବେତନରୁ ଶୁଝିଦେବି । ଦେଇ ପାରିବୁ ?"

ବିଜୟ କ'ଣ ଭାବିଲା କେଜାଣି ତାକୁ ପାଞ୍ଚଟଙ୍କି ନୋଟଟିଏ ସେଇଠି ପକେଟରୁ କାଢି ବଢେଇ ଦେଇଥିଲା । ଦିନେଶ କହିବା ଅନୁସାରେ ସେ ସେଇ ଟଙ୍କାକୁ ଧରି ବଜାର ସାରା ବୁଲିଲା । ତାକୁ ଲାଗିଥିଲା ଯେ ସେ ଯେ କୌଣସି ଦୋକାନରୁ ଯେ କୌଣସି ଜିନିଷ କିଣି ନେଇପାରେ । ସେ ମନେ ମନେ ଆଉ ହଳେ ଡ୍ରେସ୍ କିଣିଥିଲା । ଲେସ୍ ଲାଗିଥିବା କଳା ବୁଟ ଜୋତା କିଣିଥିଲା । ଗୋଟାଏ ଚମଡା ସୁଟ୍‌କେଶ୍ ଆଉ ହଳେ ଗାଢ ମେରୋଇନ୍ ବ୍ଲୁ ରଙ୍ଗର ଚଷମା କିଣିଥିଲା । ତା'ପରେ ଶେଷରେ କିନ୍ତୁ ରାତି ସାଢେ ଦଶଟା ବେଳକୁ ଦୋକାନ ବନ୍ଦ କରିବାକୁ ଯାଉଥିବା କୋମୁଟି ପାଖରୁ କିଲେ ଚାଉଳ ଏବଂ ଅଢେଇଶହ ଆଳୁ କିଣି ଫେରିଥିଲା । ଷ୍ଟେସନ ପାଖର ଏ ବସ୍ତିକୁ ଆସିବା ପୂର୍ବରୁ ସେ ସେଇ କବାଟ ନଥିବା ପରିତ୍ୟକ୍ତ ବାରାକ୍ ଘରେ ରହୁଥିଲା । ତା' ପାଖକୁ ଲାଗି ମେସ୍ । ସେଇଠି ତା' ବୟସର କିଛି ଟୋକା ଏବେ ବି ଏକାଠି ରହୁଛନ୍ତି । ସେମାନେ ପାଠ ପଢନ୍ତି; ଏଠି ସେଠି ଚାକିରି କରନ୍ତି । ଆର୍ଟ ସ୍କୁଲରେ ଦିନେଶ ପାଇଁ ଫିଜ୍ ମାଫ୍ ମିଳିଛି । ସେଥିପାଇଁ ପ୍ରିନ୍‌ସିପାଲ୍‌ଙ୍କୁ ଅନେକ ବୁଝାଇବାକୁ ପଡିଥିଲା । ସେ ବି ଦିନେଶକୁ ଅନେକ ଭଲ ପାଇ ଯାଇଥିଲେ ସେଇ ରାତିର ଘଟଣା ପୂର୍ବରୁ ।

ଚାଉଳ ଏବଂ ଆଳୁ ନେଇ ଦିନେଶ ଫେରିଥିଲା ରାତି ଏଗାରଟାରେ । ତା'ର ସବୁ ଯୋଜନା ଗୋଟିଏ ମାତ୍ର ସଂକଳ୍ପରେ ଠୁଳ ହୋଇ ଯାଇଥିଲା । ସେ ଚାହୁଁଥିଲା ଯେ କିଲେ ଚାଉଳର

ଭାତ ଆଉ ଚମତ୍କାର ଆଳୁ ସିଝା ଚିଟିକା ସେ ଖାଇବ । ଖାଇବା ପାଖରୁ ଘଣ୍ଟାଏ ଯାଏ ଉଠିବ ନାହିଁ । ସେ ଭାତ ବାଢ଼ି ନେଇ ଖାଇବ ଏବଂ ଖାଇ ଚାଲିଥିବ । ତା' ଭିତରର ଅନ୍ନ କାଙ୍ଗାଳଟା କେତେ ଖାଇବ ଖାଇଯାଉ ।

କିନ୍ତୁ ରାନ୍ଧିବ କେମିତି ? ତା' ପାଖରେ ରୋଷେଇ ପାଇଁ କୌଣସି ସରଞ୍ଜାମ ନ ଥିଲା । ସେତେ ରାତିରେ ସେ ନିଃସଙ୍କୋଚ ମେସ୍ ଭିତରେ ପଶି ସେଇ ଗଞ୍ଜାମି ଟୋକାଟାକୁ ଉଠେଇଲା । ତା' ନାଁ ସେ ଜାଣେ ନାହିଁ, କିନ୍ତୁ ଚିହ୍ନେ । ସେ ବି ୟାକୁ ଚିହ୍ନେ । ତା' ବଖରାରୁ ଦିନେଶ ବଟୀଷ୍ଟୋଭଟାକୁ ଉଠେଇଲା । କୌଣସି ପ୍ରତିବାଦକୁ କାନ ଦେଲା ନାହିଁ । କହିଲା, "ଭାଇ ତମେ ସବୁଦିନ ରାନ୍ଧିବାଢ଼ି ଖାଉଚ ! ମୁଁ ଦିନେ ଖାଇଲେ ସହି ପାରୁ ନାହଁ ?" ସେ ତା' ଡେକ୍‌ଚିଟା ମଧ୍ୟ ନେଇ ଆସିଥିଲା । କାଚରେ ହାତ ପୂରେଇ ମୁଠାଏ ଲୁଣ ମଧ୍ୟ ନେଇ ଯାଇଥିଲା । ଗଞ୍ଜାମି ପିଲାଟା ଭଲ । ତଥାପି କିରାସିନି ସରିଯିବ ବୋଲି ଟିକିଏ ଗାରୁ ଗାରୁ ହେଲା; କିନ୍ତୁ ଚାହିଁ ରହିଥିଲା ଦିନେଶର ଝୋଲାକୁ । ଦିନେଶ ଏତେ ଚାଉଳ ପାଇଲା କୋଉଠୁ ?

ତା'ର ସେ କବାଟ ନ ଥିବା ବଖରାକୁ ଯାଇ ଦିନେଶ ଷ୍ଟୋଭ ଲଗେଇଲା । ଏକଫାଳିଆ ଜଳୁଥିବା ବଟୀ ନିଆଁରେ ସେ ଡେକ୍‌ଚିଏ ପାଣି ରଖିଦେଇ ଅପେକ୍ଷା କଲା । ଶୁଖିଲା ଚାଉଳକୁ ମୁଠା ମୁଠା କରି ଖେଳିଲା । ମଝିରେ ମଝିରେ ଦି'ଚାରିଟା ପାଟିକୁ ପକେଇ ବିଡି ଟାଣିଲା । ଗୁଣୁଗୁଣୁ ଗୀତ ଗାଇଲା । ସେ ସେମିତି କେତେକାଳ ଅପେକ୍ଷା କରିଥାନ୍ତା କେଜାଣି ! ପାଣି ଚୁଁ ଚୁଁ ଡାକିବା ଆରମ୍ଭ କରୁ କରୁ ସେ ଅଜାଡି ଦେଲା ଚାଉଳ ତକ ସେ ଉଷୁମ ପାଣିକୁ ଏବଂ ଢାଙ୍କିଦେଲା ରସଥାଳିଆ ତା' ଉପରେ । ସେ ତେଣିକି ଷ୍ଟୋଭଟିକୁ ଆବୋରି ବସିଥିଲା ମାଇକୁକୁଡା ଅଣ୍ଡାକୁ ଉଷୁମ କରିବା ଢଙ୍ଗରେ ।

ଅନେକ ଅନେକ ସମୟ ପରେ, ଦିନେଶ ତା'ର କଠାକ ଯାକ ବିଡି ଟାଣି ସାରିବା ପରେ ପାଣି ଉପରକୁ ସାମାନ୍ୟ ଫେଣ ବାହାରି ଟୁକୁଟୁକୁ ସୁକୁମାର ଶବ୍ଦ ଶୁଭିଲା ହାଣ୍ଡି ଗର୍ଭରୁ । ଭାତର ବାସ୍ନା ତାକୁ ବିଭୋର କରିଥିଲା । ସେ ପ୍ରତି ଦୁଇ ମିନିଟ୍‌ରେ ଢାଙ୍କୁଣୀ ଟେକି ସେ ବାସ୍ନାଟାକୁ ଶୋଷି ନେଉଥିଲା । ତା'ରି ଭିତରେ ଆଳୁସିଝାର ବାସ୍ନା ବି ସେ ବାରି ନେଇ ପାରୁଥିଲା ।

ଦିନେଶ ଭଳି ପାଞ୍ଚଦିନ ଓପାସ ନ ରହିଲେ ବୋଧହୁଏ ତା'ର ସେ ସମୟର ଅନୁଭବକୁ ବୁଝିବା ସମ୍ଭବ ନୁହେଁ । ମୁଁ କେବଳ ଅନୁମାନ କରି କହୁଛି । ତା' ପାଖରୁ ଯାହା ଶୁଣିଚି ତାହା କହୁଛି । ସେ ବି ଅନେକ ଦିନ ପରେ ଏସବୁ ମନେ ପକେଇ କହିଚି । ତା'ର ତୀବ୍ରତା କେବଳ ଠାରି ଦେଇଚି ।

ଫୁଟିଲା ଭାତ କୁଆଡେ ତାକୁ ନାନାପ୍ରକାର ବାସିଥିଲା । ଯେତେସବୁ ଫୁଲର ଗନ୍ଧ ସେ ସେଥିରେ ପାଇଥିଲା । ବେଳେବେଳେ ମିଆଁ ହୋଟେଲ୍‌ର ମାଂସ ତର୍କାରୀ ପରି, ଚାଟ୍ ଦୋକାନର ବାମ୍ଫୁଆ ଘୁଗୁନି ପରି ବାସିଥିଲା । ଗୋଟାଏ ସମୟରେ ସେ ଅନୁଭବ କରିଥିଲା, ସେ ଭାତ ଡେକ୍‌ଚିଟା ତା' ମା' ଭଳି ବାସୁଛି ! ସେ କୁଆଡେ ପ୍ରଥମଥର ଜୀବନରେ ଅନୁଭବ କରିଥିଲା ଯେ

ଭାତର ବାସ୍ନା ହିଁ ସବୁଠାରୁ ବେଶି ମୌଳିକ ।

ରାତି ସେତେବେଳକୁ ତିନିଟା ହେଇଥିବ ନା କ'ଣ ! ଡେକ୍‌ଚିର ଫାଳେ ଫୁଟି ଭାତ ଉଲୁସି ଆସୁଥାଏ । ଡିବି ଆଲୁଅରେ ଥରୁଥାଏ ଅସ୍ପଷ୍ଟ ଛାଇ । ଦିନେଶର ଦେହସାରା ଝାଳେଇ ଯାଉଥାଏ । ସେ ବୁଝିପାରୁଥାଏ ଯେ ତା'ର ପ୍ରତି ଲୋମକୂପରୁ କ୍ଷୁଧା ଝରିଯାଉଛି । ଭୋକ ତାତିରେ ହିଁ ସେ ସେମିତି ଝାଳେଇ ଯାଉଥାଏ । ସେ କେବଳ ପୁରୁଣା ଅଭ୍ୟାସରେ ସମ୍ଭାଳି ନେଉଥାଏ ସେ ଗର୍ଜୁଥିବା ଭୋକକୁ । ତା' କାନମୁଣ୍ଡା ଶିରା ଟଣକି ରହିଥାଏ ।

ଏତିକି ବେଳେ ନିସ୍ତବ୍ଧ ରାତି ଭିତରେ କ'ଣଟାଏ ଦୁଲୁକିଲା ପରିତାକୁ ଶୁଭିଲା । ସେ କାନେଇଲା । କେହି ଜଣେ ଖାଲିପାଦରେ ଦୁମ୍‌ଦୁମ୍ ଧାଇଁ ଆସୁଛି ତା'ରି ଆଡକୁ । ସେ ଘୁଞ୍ଚି ଆସି ଅନ୍ଧାରକୁ ଚାହିଁଲା । ଡିବିଟାକୁ ଟେକିଧରି ଆଣ୍ଠୁ ଉପରେ ଭାରା ଦେଇ କୌଣସି ଗୀର୍ଜାରେ ପ୍ରାର୍ଥନା କଲାପରି ସେ ଚାହିଁଲା । ଅନ୍ଧାର କେବଳ ଦୁମ୍‌ଦୁମ୍ କମ୍ପୁଥିଲା । ତା'ପରେ ହଠାତ୍ ତା'ର ସେ କବାଟହୀନ ବଖରାକୁ ଧସେଇ ପଶିଲା କେହି ଜଣେ । ସେ କେବଳ ସଁ ସଁ ହଉଥିଲା । ସେ ଷ୍ଟୋଭ ଉପରୁ ଡେକ୍‌ଚିଟାକୁ ଗୋଟାଏ ଧକ୍‌କାରେ ଗଡାଇ ଦେଲା । ଗଡୁଥିବା ଡେକ୍‌ଚିକୁ ଗୋଟାଏ ଲାତ ମାରି ଲେଉଟାଇ ଦେଲା । ତା'ପରେ ସେମିତି ସଁ ସଁ ହେଇ ଦୁମ୍‌ଦୁମ୍ ପଶିଗଲା ଅନ୍ଧାର ଭିତରକୁ ।

ଡିବିକୁ ଟେକିଧରି ସେଇଭଳି ପ୍ରାର୍ଥନା ଭଙ୍ଗୀରେ ଆଣ୍ଠେଇ ବସି ରହିଲା ଦିନେଶ । ସେ ଜାଣି ପାରିଲା ନାହିଁ କ'ଣ କରିବ । ଡିବି ଆଲୁଅରେ ବଖରାଯାକରୁ ବାମ୍ଫ ଉଠୁଥିବାର ସେ ଦେଖିଲା । ଛୋଟ ଛୋଟ ମଲ୍ଲୀକଢି ପରି ଦରସିଝା ଭାତ ଗୁଡିକ ବିଛେଇ ହୋଇ ପଡିଥିଲା ତଳଯାକ । ଡେକ୍‌ଚିଟି ଦରିଦ୍ର ଖପରା ପରି କାନ୍ଥ କଣରେ ଅଣେଇ ହୋଇ ପଡିଥିଲା । ଉପରୁ ଗୋଟେଇ ନେଇଥିଲେ ଥାଳିଏ ଭାତ ବାହାରିଥାନ୍ତା । ଆଳୁସିଝା ଟକ ବାହାରିଥାନ୍ତା । କିନ୍ତୁ ତଳୁ ଗୋଟେଇବାକୁ ଦିନେଶର ଇଜ୍ଜତ୍ ତାକୁ ବାରଣ କଲା ।

ସେ ବିହ୍ୱଳ ହୋଇ ଚାହିଁ ରହିଥିଲା ଶୂନ୍ୟକୁ । ସେ ଯେ ସେମିତି ଧସେଇ ପଶିଥିଲା ସେ କିଏ ? ସେ ତ ବିଘ୍ନ ପୃଷ୍ଟି ପରି ଦିଶୁଥିଲା । ବିଘ୍ନ ପୃଷ୍ଟି କିନ୍ତୁ ଏମିତି କାହିଁକି କଲା ସେ ଆଦୌ ବୁଝି ପାରୁ ନଥିଲା । ରାତି ତିନିଟାରେ ଆସି ପାଞ୍ଚଦିନ ଭୋକରେ ବସିଥିବା ଦିନେଶର ଦରଫୁଟା ଭାତ ହାଣ୍ଡି ଢାଳିଦେଇ ଦୌଡି ପଳେଇଲା କାହିଁକି ?

ଦିନେଶ ଖୁବ୍ ଆସ୍ତେ ଉଠି ତା' ସଅପ ଉପରେ ପେଟେଇ ଶୋଇଗଲା । ପେଟ ତଳେ ଲୁଗା ବିଣ୍ଡାଟାଏ ମାଡି ଦେଇଥିଲା । ସେ କହେ ଯେ ସେମିତି କଲେ ଭୋକର ଜ୍ୱାଳା କମିଯାଏ । ନାହିମୁଣ୍ଡରେ ରକ୍ତ ଧପ୍ ଧପ୍ ପିଟି ହେବା ଶବ୍ଦ ଶୁଭେ । ଆଖିକୁ ନିଦ ମଡେଇ ହୋଇ ଆସେ ।

ସକାଳୁ ତାକୁ ନିଦରୁ ଉଠେଇଲା ପ୍ରିନ୍‌ସିପାଲ୍‌ଙ୍କ ପିଅନ । ଦିନେଶକୁ ଖୁବ୍ ଦୁର୍ବଳ ଲାଗୁଥିଲା । ସେ ସଅପ ଉପରେ ବସି ଚାରିଆଡକୁ ଅନେଇଲା । ଘର ସାରା କୁକୁରଙ୍କ ପାଦଚିହ୍ନ ପଡିଥିଲା । ଡେକ୍‌ଚି, ଷ୍ଟୋଭ ସେଇଭଳି ଟଳି ପଡିଥିଲେ; ଲାତ ଖାଇଥିବା ଡେକ୍‌ଚିଟ୍‌ରୁ ଉଠିବା ସମ୍ଭବ ନ

ଥିଲା । ପ୍ରିନ୍‌ସିପାଲ ସକାଳୁ ସକାଳୁ ଏମିତି ଜରୁରୀ କାହିଁକି ଡକେଇଥିଲେ ତାକୁ ।

ସେ ଯାଇ ତାଙ୍କ ସାମ୍ନାରେ ନମସ୍କାର କରି ଠିଆହେଲା । ସେ ଗମ୍ଭୀର ହୋଇ ତାକୁ ଚାହିଁ ରହିଲେ କିଛି ସମୟ । ଖୁବ୍ ଗୁଡାଏ କ୍ରୋଧକୁ ଚାପି ରଖିଲା ପରି କହିଲେ, "ଦିନେଶ, ତୁମେ ଏତେ ତଳକୁ ଚାଲିଯିବ ବୋଲି ମୁଁ କେବେ ଭାବି ନ ଥିଲି । ତମକୁ ଭୋକ କରୁଥିଲା ଯଦି ମତେ ମାଗି ପାରିଥାନ୍ତ । ଆଉ କାହାକୁ ମାଗି ପାରିଥାନ୍ତ । ତୁମେ ବିଘ୍ନ ପୃଷ୍ଟି ରୁମ୍‌ରୁ ରାତିରେ ଚାଉଳ ଚୋରେଇ ନେଇ ଲୁଚି ଲୁଚି ରାନ୍ଧି ଖାଇଦେବାକୁ ବସିଥିଲ ? କି ଲଜ୍ଜାର କଥା ।"

ଦିନେଶ ବୋଧେ ପଥର ପାଲଟି ଗଲା । ନ ହେଲେ ସେ ସେଇଠି ପ୍ରିନ୍‌ସିପାଲକୁ ହତ୍ୟା କରି ପାରିଥାନ୍ତା । ସେଇ ହାତରେ ବିଘ୍ନ ପୃଷ୍ଟିକୁ ହତ୍ୟା କରି ପାରିଥାନ୍ତା । ସେ କେବଳ ଦାନ୍ତକୁ ଦାନ୍ତ ଦାବି କଟମଟ ଚାହିଁ ରହିଲା । ତା' ଆଖିର ଅଗ୍ନି ଫୁଟନ୍ତା ପାଣି ହୋଇ ଡବଡବ ନିଗିଡି ଗଲା ।

ତା'ରି ଭିତରେ ପ୍ରିନ୍‌ସିପାଲ ଅନେକ ନୀତିବାକ୍ୟ କହିଥିବେ । ଶେଷରେ ଖିବ୍ ଜୋର୍‌ରେ ଆଦେଶ ଶୁଭିଲା, "ଯାଅ !"

ସେମିତି ଚଡା ଖାଇ ଦିନେଶ ଚମକି ପଡିଥିଲା । ଫେରି ଆସିଥିଲା ସେ ବିଧ୍ୱସ୍ତ ବଖରାକୁ । ତଥାପି ସେ ଅଞ୍ଚଳ ଆନନ୍ଦ ବଜାର ପରି, ପେଜନଳା ପରି ବାସୁଥିବ । ପଛେ ପଛେ ଗଞ୍ଜାମି ପିଲାଟି ଚୁପ୍‌ଚାପ୍ ତା' ଷ୍ଟୋଭ୍ ଏବଂ କଳା ଡେକ୍‌ଚି ଉଠେଇ ନେଇଗଲା । ଦିନେଶ ଚାହିଁ ରହିଲା ସେ ଦୃଶ୍ୟକୁ । ଖୁବ୍ ଅନ୍ୟମନସ୍କ ରହି ସ୍କେଚ୍ ଖାତାରେ ପେନ୍‌ସିଲ୍ ଚଳେଇ ତାକୁ ଆଙ୍କି ଦେଇଥିଲା ଖୁବ୍ ବେପରୁଆ ଢଙ୍ଗରେ ।

ମୁଁ ଏବେ ବି ସେ ସ୍କେଚ୍‌ଟାକୁ ବାରମ୍ବାର ଦେଖେ ।

ମୁଁ ସେଇଦିନ ବାରଟା ବେଳେ ତା' ପାଖକୁ ଯାଇଥିଲି । ଏ ସମଗ୍ର ଘଟଣା ମତେ ଜଣା ନ ଥିଲା । ମୁଁ ଯାଇ ଦେଖିଲା ବେଳକୁ ଦିନେଶ ମୁହଁ ମାଡି ଶୋଇଥିଲା । ଘରଟା କେମିତି ଆମ୍ବିଳା ଆମ୍ବିଳା ବାସୁଥିଲା । ମୁଁ କିନ୍ତୁ ଏତିକି ଜାଣିଥିଲି ଯେ ଦିନେଶ କିଛି ଦିନ ହେଲା ଖାଇ ନ ଥିଲା । ମୁଁ ତା' ପାଇଁ କିଛି ଚୁଡା, ଖଣ୍ଡେ ଗୁଡ ଆଉ ଗୋଟାଏ କଦଳୀ ଧରି ଯାଇଥିଲି । ମୋ ଘରକୁ ଖାଇବାକୁ ଡାକିଥିଲେ ସେ ଚିଡିଥାନ୍ତା; ଅପମାନିତ ବୋଧ କରିଥାନ୍ତା । ସେ ମୋତେ ମାସ ମାସ ଧରି କଥା କହି ନ ଥା'ନ୍ତା ।

ମୁଁ ସେ ଚୁଡା ଗଣ୍ଡିକ ଧୋଇବାକୁ ପାଣି ଖୋଜୁଚି, ସେ ଲେଉଟି ଚାହିଁ ଦେଲା । ସେତିକିବେଳେ ମୋର ମନେ ପଡୁଚି ତା' ମୁହଁଟା ଆଜି ଭଳି ଅତି ବିକଟାଳ ଦେଖା ଯାଉଥିଲା ।

ସେ ବିଜୁଳି ପରି ଚମକି ଉଠିଲା । ମୋ ହାତରୁ ସେ ସବୁ ଛଡେଇ ନେଇ ଫିଙ୍ଗି ଦେଲା । ମୋ ବେଣାକୁ ଧରି ପେଲି ନେଲା ପିଣ୍ଡା ଦାଢ ପର୍ଯ୍ୟନ୍ତ । ଅବିକଳ ଏମିତି କହିଥିଲା, "ଯାଆନ୍ତୁ, ସାର୍ ଚାଲିଯାନ୍ତୁ ଏଇଠୁ । ଗେଟ୍ ଆଉଟ୍ ।"

ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ଏବଂ ପଛକୁ ନ ଚାହିଁ ଚାଲି ଆସିଥିଲି । ବୁଝିପାରି ନ ଥିଲି

ତା'ର ଆଚରଣ । ପ୍ରାୟ ପନ୍ଦର ଦିନ ପରେ ସନ୍ଧ୍ୟାବେଳେ ସେ ଆସି ମୋ ପାଦ ଧରି ଢେର୍ କାନ୍ଦିଲା । କହିଲା, "ସାର୍ ଆପଣ ମୋତେ ଭଲ ପାଆନ୍ତି । ବାଆସ୍, ସେତିକି ମୋ ପାଇଁ ଯଥେଷ୍ଟ । ଆଉ ପାଦେ ଆଗେଇ ଆସିଲେ କିମ୍ବା ମୋତେ ଲାଳନ କରିବାର ନ୍ୟୂନତମ ସୂଚନା ପାଇଲେ ମୁଁ ଆପଣଙ୍କୁ ଖୁନ୍ କରି ଦେଇପାରେ । ମୁଁ ଯେମିତି ଜଳନ୍ତା ଅଙ୍ଗାର ଉପରେ ଚାଲିଛି । ସେଇଟା ମୋ ପାଇଁ ସତ୍ୟ । ଏ ସାରା ପୃଥିବୀ ସେଇଭଳି ନିର୍ମମ ଜଳୁଚି ମୋ ଢଙ୍ଗରେ । ମଝିରେ ଆପଣ ଏମିତି କାହିଁକି ମୋ ଚିତ୍ରଟାକୁ ବିଗାଡି ଦଉଚନ୍ତି । ଖୁବ୍ ଗୋଟାଏ ଗାଢ ରାତିର ଚିତ୍ର ଆଙ୍କିଚି । ମୁଁ ସେଥିରେ ନିଷିଦ୍ଧ କଳାରଙ୍ଗ ପ୍ରବଳ ମାତ୍ରାରେ ଲେସିଚି । 'ଥାଲୋଗ୍ରିନ୍', 'ବର୍ଣ୍ଣ୍ ଅମ୍ବର' ଦେଇ ଗାଢ କରିଛି । ସେଥିରେ ଅତି ଅସ୍ପଷ୍ଟ ଆକୃତି ସବୁ ଦିଶୁଚି, ଦିଶୁନାଇଁ । ହଠାତ୍ ଗୁଡାଏ ଧଳା ଏବଂ 'ଲେମନ ୟେଲୋ' ବୋଲି ଦେଲେ ମୁଁ ସେ କାନ୍‌ଭାସ୍‌ଟାକୁ ସୋରା ସୋରା ଚିରି ଦେବି କିମ୍ବା ଯେ ସେମିତି ବୋଲିଦେଲା ତାକୁ ହତ୍ୟା କରି ପକେଇବି ।"

X X X X

ମୁଁ ଚମ୍ପା ଗଛ ମୂଳେ ଠିଆ ହୋଇ ସେଇ ଆଗ କଥା ମନେ ପକାଉଥିଲି ଏବଂ ଭାବୁଥିଲି ଯେ ଦିନେଶ ଅବିକଳ ସେଇଭଳି କୌଣସି ବ୍ୟାଘାତ ବୋଧହୁଏ ଭୋଗୁଥିଲା । କିଛି ସମୟ ପରେ ସେ ମୋରି ପାଖକୁ ଚାଲିଆସିଲା । ସେ ସେଇଭଳି ଉତ୍ତେଜିତ ରହିଥିଲା । ସେ ଜାଣି ନ ପାରି ମୋ ସାମ୍ନାରେ ବିଡି ଟାଣି ଲାଗିଥିଲା । ସେ ହୋସ୍‌ରେ ନ ଥିଲା ।

ବିଡି ଫିଙ୍ଗି ଦେଇ ସେ ନିଜ ହାତକୁ ନିଜେ ମୁଥ ମାରିଲା । ମୁଁ ଅପେକ୍ଷା କଲି ତା' କ୍ରୋଧର ଶିଖା ମଉଳିବା ପର୍ଯ୍ୟନ୍ତ । ସେ ମୋ ପାଖରେ ଆସି ଚମ୍ପାଗଛ ଚେର ଉପରେ ବସିଲା । ମୁଣ୍ଡ ତଳକୁ ପୋତି ବାଳ ମୁଠା ମୁଠା କରି ବସି ରହିଲା । ମୁଁ ଅପେକ୍ଷା କଲି ।

ଶେଷକୁ ସେ ସେମିତି ତଳକୁ ମୁଣ୍ଡ କରି ବିଡ୍ ବିଡ ହେଲା, "ମୁଁ ତତେ ଖତମ୍ କରିଦେବି । ଶାଲା, ବେଶୀ ଦେଖେଇ ହଉଚୁ ? ଆଜି ତତେ ବାଟରେ ଛକି ମାରିଦେବି ।"

ମୁଁ ତଥାପି କିଛି ନ କହି ଅପେକ୍ଷା କଲି । ଦିନେଶ ଭିତରେ ଯେ ପ୍ରବଳ ଝଡ ଉଠିଥିଲା, ସାରା ସମୁଦ୍ର ମନ୍ଥି ହେଉଥିଲା ଏ କଥା ମୁଁ ଅନୁଭବ କରୁଥିଲି । କିନ୍ତୁ ମୋର କିଛି କରିବାର ନ ଥିଲା । ମୁଁ କେବଳ ସୀମାନ୍ତ ଝାଉଁବଣ ପରି ଅପେକ୍ଷା କରି ରହିଥିଲି । ତାକୁ ସେମିତି ଛାଡି ଚାଲିଯିବା ସମ୍ଭବ ନ ଥିଲା । ତାକୁ ଜାକି ଧରି ଆଉ କାହାକୁ ଆଶ୍ୱାସନା ଦେଲାଭଳି ପିଠି ଆଉଁସି ଦେବା ମଧ୍ୟ ସମ୍ଭବ ନ ଥିଲା ।

ଦିନେଶ ହଠାତ୍ ମୁହଁ ଘୋଡେଇ କାନ୍ଦି ପକେଇଲା । ମୁଁ ତା' ପାଖରେ ଠିଆ ହୋଇ କାନ୍ଧ ଉପରେ ହାତ ଥୋଇବା ମାତ୍ରେ ସେ ସେଇଠି ମୋ ଦୁଇ ଜଙ୍ଘକୁ ବେଢେଇ ଧରି ମୋ ଜାମା ଉପରେ ମୁହଁ ଲୁଚେଇ ଫୁଲି ଫୁଲି ଗୁଡାଏ କାନ୍ଦିଲା । ମୁଁ ଜାଣୁଥିଲି ଯେ ସେଇଟା ସାଧାରଣ ଦୁଃଖ ବା ଯାତନାର ରୋଦନ ନୁହେଁ । କାହିଁ କେଉଁ ଗରୀହରେ ଟଗମଗ ଫୁଟୁଥିବା ତା'ର ସମଗ୍ର ସରାରୁ ବାମ୍ପ ଉତୁରି ଆସୁଥିଲା ପ୍ରତ୍ୟେକ ଲୋମ ମୂଳରୁ ।

ଅନେକଗୁଡାଏ ଗପ କମିଗଲା ପରେ ସେ ଘୁଞ୍ଚି ବସିଲା । ମହୁଁ ପୋଛି ନେଲା ହାତରେ । ଠିଆ ହୋଇ ପଡି ମୋ ଆଖିକୁ ଚାହିଁ ସ୍ପଷ୍ଟ ଶବ୍ଦରେ କହିଲା, "ଜମା ସମ୍ଭାଳି ହେଲା ନାହିଁ ସାର୍! ଆପଣ ମୋତେ କ୍ଷମା କରିବେ ।" ମୁଁ ନୀରବରେ ତା' ପିଠି ମୁଣ୍ଡ ଆଉଁସି ଦେଲି ।

ଆମେ ଦୁହେଁ ଚାଲି ଚାଲି ଗଲାବେଳେ ସେ ତା' ପୂର୍ବ ରାତିର ଘଟଣାଟିକୁ ରହି ରହି, ଢୋକି ଢୋକି ବର୍ଣ୍ଣନା କରିଥିଲା । ସବୁ ଜଟା ଛଡେଇ ବିନ୍ୟାସ କରିଦେଲେ ତା'ର ସରଳ ରୂପଟି ପ୍ରାୟ ଏହିପିରି:

ସେ କୁଆଡେ ସବୁଦିନ ପରି ରାତି ଏଗାରଟାକୁ ଫେରିଥାଏ । ତା' ପଡିଶାରେ ମାଣିକ ପ୍ରସାଦ ପାଞ୍ଚଟି ପିଲା ଆଉ ସ୍ତ୍ରୀକୁ ନେଇ ଗୋଟିଏ ବଖରାରେ ରହେ । ତାକୁ ବୟସ ଅନ୍ଦାଜ ଚାଳିଶ । ଘର ବିହାର । କାମ କରେ ମିଲ୍‌ରେ ।

ତା' ସାଙ୍ଗେ ଦିନେଶର ଭାବଦୋସ୍ତି ଜମିବାର ଗୋଟାଏ କାରଣ ହେଲା ଯେ ଦିନେ ମାଣିକ ପ୍ରସାଦ ମେଲା ଦେହରେ ପାଖ ନଳରୁ ପାଣି ବାଲ୍‌ଟି ଟେକି ଆଣିବା ବେଳେ ଦିନେଶ ମୋଟା ପେନ୍‌ସିଲ୍‌ରେ ତା'ର ଗୋଟାଏ ସ୍କେଚ୍ ଆଙ୍କି ଦେଇଥିଲା । ମାଣିକ ସେମିତି ବାଲ୍‌ଟି ହାତରେ ଧରି ମଟ ମଟ ଅନେଲା ଦିନେଶର ନିର୍ଭୁଲ ଷ୍ଟ୍ରୋକ୍ ଏବଂ ମିନିଟକ ଭିତରେ କାଗଜରୁ ଜନ୍ମ ନେଇଥିବା ତା'ର ପ୍ରତିବିମ୍ବକୁ । ସେ ଅବିଶ୍ୱାସରେ ବଲବଲ ଚାହିଁଲା ଦିନେଶକୁ । ଦୌଡି ଯାଇ ଫେରି ଆସିଲା । ଦିନେଶର ହାତକୁ ଧରି ଚୁମା ମାରିଲା । ଆଖି ଛଳଛଳ କରି ପକେଇଲା । ଦିନେଶ ସ୍କେଚ୍‌ଟିକୁ ବନ୍ଧେଇବାକୁ କହି ତାକୁ ଉପହାର ଦେଇଦେଲା ।

ସେଇଦିନଠୁ ମାଣିକ ପ୍ରସାଦ ସମୟ ପାଇଗଲେ ଆସି ଗପୁଥିଲା । ତା' ସ୍ତ୍ରୀକୁ ଦେଖିଲେ ଦିନେଶ କହୁଥିଲା 'ନମସ୍ତେ ଭାବି ଜୀ!' ପିଲାମାନଙ୍କୁ ସ୍ନେହ କରୁଥିଲା । କିନ୍ତୁ ଦିନେଶ ଯେମିତି, କେବଳ ସେଇ ଢଙ୍ଗରେ, ଖୁବ୍ ଦୂରରେ ରହି ।

ଗତ ରାତିର ଘଟଣାଟି ଖୁବ୍ ସରଳ ।

ରାତି ଏଗାରଟାରେ ଫେରିଆସି ଦିନେଶ କପଡା ଦୋକାନ ବାହାରେ ପଡିଥିବା କାଠ ବେଞ୍ଚ ଉପରେ ଶୋଇବାକୁ ଉପକ୍ରମ କରୁଥିଲା । ସେ ଦିନଯାକ ତା' ଝୋଲାଟିକୁ ଉଠେଇ ବୁଲୁଥାଏ ସ୍କୁଲରୁ ରାସ୍ତାକୁ, ରାସ୍ତାରୁ ବଜାରକୁ । ରାତିରେ ସେଇଠି ଝୋଲାକୁ ତକିଆ କରି ଶୋଇଯାଏ ।

ସେ ଶୋଇବାକୁ ଯାଉଛି, ଦେଖିଲା ପାଖ ଝୁମ୍ପୁଡି ଆଡୁ ମାଣିକ ପ୍ରସାଦ ତା' ପାଖରେ ଆସି ଠିଆ ହେଲା ନୀରବରେ । ମାଣିକର ଡାହାଣ ହାତରେ ଗୋଟିଏ ଥାଳି । ବାଁ ହାତରେ ଗ୍ଲାସେ ପାଣି । ଥାଳିରେ ବେଶ୍ ମୋଟା ମୋଟା ନରମ୍ ଗରମ୍ ଦି'ଖଣ୍ଡ ରୋଟି । ସରବତୀ ଗହମ କ୍ଷେତର ବାସ୍ନା ଉଠୁଥାଏ ସେ ଥାଳିରୁ । ଥାଳି ପାଖେ କ'ଣ ଟିକିଏ ତର୍କାରୀ ।

ମାଣିକ ଥାଳିଟିକୁ ଦିନେଶ ପାଖରେ ବେଞ୍ଚ ଉପରେ ଥୋଇଦେଲା । ପାଣି ଗିଲାସଟିକୁ ରଖି ବେଞ୍ଚର ସେମୁଣ୍ଡେ ବସି ରହିଲା ଚୁପ୍‌ଚାପ୍ ।

ଦିନେଶର ତିନିଦିନର ଭୋକ ହଠାତ୍ ଜଳି ଉଠିବାରୁ ସେ ବିନା ଦ୍ୱିଧାରେ ସେ ଦୁଇଖଣ୍ଡ

ରୁଟିକୁ ସାମ୍ରାଜ୍ୟ ଭୋଗ କଲା ପରି ଗ୍ରାସ କରିଗଲା । ପଚାରିଲା ସୁଦ୍ଧା ନାହିଁ ସେ ରୋଟି କାହିଁକି ଆଣିଥିଲା, କାହାପାଇଁ ଆଣିଥିଲା । ଖାଇସାରି ପାଣିଟିକ ଢୋକି ଦେଲା ପରେ ଏ କାଣ୍ଡଜ୍ଞାନ ତା'ର ଫେରି ଆସିଥିଲା । ସେ ହୁଏତ କ'ଣ ପଚାରିଲା । କିନ୍ତୁ କୌଣସି ଉତ୍ତର ପାଇଲା ନାହିଁ । ମାଣିକ ପ୍ରସାଦ ଗପିବାକୁ ନିଶ୍ଚୟ ଆସି ନ ଥିଲା ।

ଦିନେଶ ପାଞ୍ଚମିନିଟ ଭିତରେ ଶୋଇ ଯାଇଥିଲା ।

ସକାଳ ପାହିଲା ବେଳକୁ ତାକୁ ଖୁବ୍ ସତେଜ ଲାଗୁଥିଲା । ମନରେ ଦେହରେ ଫୁର୍ତ୍ତି ଭରି ରହିଥିଲା । କିନ୍ତୁ କ'ଣ ଗୋଟାଏ ଅସ୍ୱାଭାବିକ ତା' ଚାରିପାଖେ ଘଟୁଥିଲା । ସେ ନିଦ ମଳମଳ ଆଖିରେ ଚାହିଁଲା । ଭୂରୁ କୁଞ୍ଚେଇ କାନେଇଲା ।

ଆଚ୍ଛା! ମାଣିକ ପ୍ରସାଦ ଘରେ ଖୁବ୍ ପାଟିତୁଣ୍ଡ । ସେ ଅଳ୍ପ ହସି ପୁଣି ଘାଲେଇ ଯିବାକୁ ଚାହୁଁଥିଲା । ବିହାରୀ ସ୍ତ୍ରୀ ଅତି ଅଭାଷିଆ ଶୋଧି ଲାଗିଥାଏ । 'ଭାବି ଜୀ' ଟିକିଏ ମୁଖରା । କିନ୍ତୁ ତା' ତୁଣ୍ଡରେ ଅଶ୍ଳୀଳ ଶୁଣିବାକୁ ଦିନେଶ କାନ ଡେରି ଆଖି ବୁଜିଦେଲା ।

ଆସ୍ତେ ସେ ଜୁଆରିଆ ଶବ୍ଦ ଭିତରେ ଗୋଟିଏ କଥା ଦିନେଶ କାନରେ ପଡୁଥିଲା ।

"ରାତ୍ ସେ ଭୁଖେ ହୋ, କୈସେ ମେହେନତ୍ କରୋଗେ ?"

...ଓ, ତା'ହେଲେ ମାଣିକ ପ୍ରସାଦ ମେହନତ୍ କରି ପାରିବ ନାହିଁ ବୋଲି ତା' ସ୍ତ୍ରୀ ସନ୍ଦେହ କରୁଥିଲା ।

ଦିନେଶ ଅଳ୍ପ ହସି ଆଖିବୁଜି ପରିହାସ କଲା । "ଭାବି ଜୀ, ଏ ଯେଉଁ ମାଣିକ ପ୍ରସାଦ, ଯେତେ ମେହେନତ୍ ପଡିଲେ ବି ହଟିଯିବା ହତା ନୁହେ । ଖଟିଚି ଜୀବନ ସାରା, ଆଜି କ'ଣ ନୂଆ କି ?"

...ସେ କାଇଁ ପାରିବ ନାହିଁ ? ସେ ପରା ରାତିରେ ଖାଇ ନାହିଁ !

ଓ, କାଇଁ ଖାଇଲା ନାଇଁ ବେକୁବ୍ ? ତେବେ ବି ସେ ପାରିବ... ।

ଏଁ ? ସେ ଖାଇନାହିଁ । ସେ ତା' ଖାଇବା ରୁଟି ଦିନେଶକୁ ବଢେଇ ଦେଇଥିଲା ? ତା'ର ଦିନସାରା ମେହେନତ ପରେ ନ ଖାଇ ଶୋଇ ଯାଇଥିଲା ? ଆଜି ପୁଣି ବାହାରିଚି ଅନାହାର ଖଟିବାକୁ ? ?

ଦିନେଶ ଧଡାସ୍ କିନା ବେଞ୍ଚ ଉପରୁ ଉଠି ଆସିଲା । ଝୋଲାଟାକୁ ଛାତି ଦୌଡିଲା ମାଣିକ ପ୍ରସାଦ ଦୁଆରକୁ । ମାଣିକ ପ୍ରସାଦ ଚାଲି ଯାଇଥିଲା କାମକୁ । ତା' ମାଇପ ଶୂନ୍ୟକୁ ଶୋଧୁଥିଲା । ବାହୁନୁଥିଲା । ମାଣିକ ଭୋକ ପେଟରେ ଚାଲିଯାଇଥିଲା ।

ପଡୋଶୀ ହେବା, ତାକୁ କିଛି ମାତ୍ରାରେ ଭଲ ପାଇବା, ଏପରିକି ରାତି ଏଗାରଟାରେ ସେଇ ଖାତିର୍‌ରେ ଦୁଇଖଣ୍ଡ ରୁଟି ଅଯାଚିତ ଆଣି ଥୋଇଦେବା ପର୍ଯ୍ୟନ୍ତ ଦିନେଶ ବୋଧହୁଏ ସମ୍ଭାଳି ପାରିଥାନ୍ତା । କିନ୍ତୁ ଦିନଯାକର ପରିଶ୍ରମ ପରେ ନିଜେ ନ ଖାଇ ତା'ର ଅମୂଲ୍ୟନିଧିକୁ ମୁହଁରୁ କାଢି ଏମିତି ଜଣେ ଦେଇଦେବ ଏବଂ ରାତିସାରା ସ୍ତ୍ରୀର ଗଞ୍ଜଣା ଭୋଗିବା ପରେ ସକାଳୁ

ପୁଣି ଭୋକିଲା ପେଟରେ ମଜୁରୀ ପାଇଁ ଚାଲିଯିବ...ନା ନା, ଏଇଟା ସମ୍ଭାଳିବା ସମ୍ଭବ ନୁହେଁ । କଞ୍ଚା କଲିଜା ପରି ସେ ରୁଟି ଦିଖଣ୍ଡ ପେଟ ଭିତରେ ଜୀବନ୍ୟାସ ପାଇଯିବେ । ସେ ଅନ୍ତ ବିଦାରି ତାକୁ ଆଞ୍ଜୁଳାରେ ପ୍ରତ୍ୟର୍ପଣ କରିବାକୁ ଅଥୟ ହୋଇଉଠିବ ।

ସେତେବେଳକୁ ସେ ଦୁଇଟି ନରମ ରୁଟି ତା' ରକ୍ତରେ ହୁତାଶନ ହୋଇ ସାରିଥିଲା । ଦିନେଶ ପ୍ରସାଦକୁ ଆଦୌ ଖଞ୍ଜିପାରୁ ନଥିଲା ତା'ର ପରିଚିତ କାନଭାସ୍‌ରେ । ସେ ହୁଏତ ଚାହୁଁଥିଲା କାନ୍‌ଭାସ୍‌ଟାକୁ ଚିରିଦେବା ପାଇଁ, ନିଜକୁ ଚିକିଚିକି ଚିରିଦେବା ପାଇଁ । କିନ୍ତୁ କହୁଥିଲା, "ମୁଁ ତାକୁ ଖୁନ୍ କରିଦେବି, ସାର୍ ! ମୁଁ ଏତେ ଛୋଟ ହେଇ ପାରିବି ନାହିଁ । ମୋତେ ଏତେ ଉଞ୍ଚରୁ ଦୟା କରିବା ପାଇଁ ଅଧିକାର ସେ ହାରାମ୍‌ଜାଦା ପାଇଲା କୋଉଠୁ ? ...ସେ ଭଗବାନ୍ ବି ପାଇଲା କୋଉଠୁ ?"



# ଆମକୁ ବିପନ୍ନ କର

ମନେ ହେଉଥିଲା ଯେ ଆକାଶ ବୋଧେ ବତୁରି କୁଢେଇ ହୋଇ ପଡିବ, ସୋରା ସୋରା ହୋଇ ଫାଟିଯିବ ବଜ୍ର ମାଡରେ । ସେ ଯେଉଁ ରାତି ! ସେ ଯେଉଁ ବର୍ଷା ! ! ଓଃ ! ମୂଷଳଧାର ପାଣି ହାତୀ ଶୁଣ୍ଢ ପରି ଅଜାଡି ହେଉଥାଏ । ଟଳମଳ ହେଉଥାଏ ପୃଥ୍ୱୀ; ପ୍ରଳୟରେ ଭାସିଯିବ ସତେବା !

ଆମ ସାତସେଣିଆ ଆଟୁ ଘର ବି ଦୁରୁଦୁରୁ କମ୍ପୁଥାଏ ରାତିସାରା । ମୁଁ ତ ଶୋଇ ନଥାଏ । ମୋର ମନେ ହେଲା ବାକି ସମସ୍ତେ ମଧ୍ୟ ମୋରି ଭଳି ଅନ୍ଧାରରେ, ଆତଙ୍କରେ ଡଗଡଗ ଚହିଁ ପଡିଛନ୍ତି । ସେଥିରେ କିଏ ବା ଶୋଇବ କେମିତି ? ସେ କ'ଣ ବର୍ଷା ପରି ବର୍ଷା ! ଯାହାକୁ ଘୋର ଦୁର୍ଦ୍ଦିନ କୁହାଯାଏ ସେଇ ! କେତେବେଳେ କାନ୍ଥ ମଡେଇ ହୋଇ ପଡିବ କି ଛାତ ଭୁସୁଡି ପଡିବ ତା'ର କ'ଣ ଠିକଣା ?

ମୁଁ ପଢାଘରେ ଏକୁଟିଆ । କବାଟ ଫିଟେଇଲେ ଖାଁ ଖାଁ ଦାଣ୍ଡ ପିଣ୍ଡା । ଘର କବାଟ ଭିତର ପଟୁ ବନ୍ଦ । ବାହାରେ ଅସୁମାରି ବର୍ଷା । ମୋର ଭାରି ଇଚ୍ଛା ହେଲା ସମସ୍ତଙ୍କ ପାଖରେ ଏଭଳି ଦୁର୍ଯୋଗ ବେଳେ ଏକାଠି ରହନ୍ତି । ମୋତେ ଡର ମାଡୁଥିଲା କହିଲେ ମୁଁ ରାଜି ହେବି ନାହିଁ କାରଣ କେତେ ଦୁଃସାହସିକ କାର୍ଯ୍ୟ ମୁଁ ନ କରିଛି ଭଲା । ତଥାପି ମୋତେ କେମିତି ଟିକିଏ ଅସହାୟ ଆଉ ଏକୁଟିଆ ନିଷ୍ଚୟ ଲାଗୁଥିଲା । ପ୍ରକୃତରେ ମୋତେ କିଛିତ ଡରମାଡୁଥିଲା ବୋଲି କହିଦେଲେ ବି ଚଳିବ । ମୁଣ୍ଡ ଉପରେ ଛାତଟା ଗୋଟାଏ ଝୁଲନ୍ତା ବିପତ୍ତି ପରି ମଟମଟ ଡାକୁଥିଲା । ସେଇଟା କେବଳ ମୋ ପାଇଁ ନୁହେ, ଘରର ସମସ୍ତଙ୍କ ପାଇଁ ଏକ ଆସନ୍ନ ବିପତ୍ତି ପରି ଝୁଲି ରହିଥିଲା । ପଡିଲେ ତ' ଜଣକ ମୁଣ୍ଡରେ ପଡିବ ନାହିଁ ନିଷ୍ଚୟ !

ହଠାତ୍ ମୋତେ ଦୃଶ୍ୟ ହେଲାପରି ଲାଗିଲା । – ସେ ରାଢ ବୁଢା ମେଲା ଦେହରେ ଠିଆ ହେଇଚି । ତା' ଚନ୍ଦା ମୁଣ୍ଡରେ ଗୋଟିଏ ଶେଣି ଖସି ପଡୁଚି ବଜ୍ର ପରି । ଛତୁ ହେଇ ଯାଉଚି ସେ ଦୁଷ୍ଟଗ୍ରହ ! ସେ ହେଲେ ଆମ କକେଇ । ବାପାଙ୍କ ସାଙ୍ଗେ କୋଉ କାଳୁ ତାଙ୍କ କଜିଆ ଲାଗି ରହିଚି । ଆମକୁ ବାପା ତଳ ଘର ରନ୍ଧାଶାଳେ ବସେଇ କେତେ କଥା କହିଛନ୍ତି । କେମିତି ସେ ହାଣମଙ୍ଗଳ ପାଇଁ ସାତ ପୁରୁଷି ଜମି ହାଡି ଖାଇଗଲେ । ଧନ ସଂପତ୍ତି ଉଜୁଡି ଗଲା । କେମିତି ସେ ଅଣପୁରୁଷା ଆଣ୍ଠୁକୁଡା ମଲେ ଯାଇ ଘର ରକ୍ଷା ପାଇବ ! – ଏ ବର୍ଷା ରାତିରେ ସେ କ'ଣ

ଶୋଇଥିବେ ? ଥରେ ଚଡକ ପଡୁଥିଲେ ଭାଇର ମୁଣ୍ଡରେ ପଡୁ ବୋଲି ମନାସୁଥିବେ !

ଏଭଳି ଦୁର୍ଦ୍ଦିନରେ ସୁଦ୍ଧା ବୋଉ ବାପାଙ୍କୁ ଝିଙ୍ଗାସୁଥିବ । କଡି ବରଗା ପାଇଁ କାଠ କଟା ହୋଇ ଥୁଆ ହେଇଚି କେବଠୁ । – ଛାତ ମରାମତ ବେଳେ କେତେ କହିଲି ଆମ ଫାଳକ କେବଳ ନୂଆ କାଠ ଲଗେଇ ଦିଅ ! ଆଉ ଫାଳକ ଯାଉ ଖତରା ହେଇ; ତମର ସେଥିରେ କ'ଣ ଥାଏ ? ତମ ପରି ଡରୁଆ, ମାଇଚିଆ ସୃଷ୍ଟିରେ ନାହାନ୍ତି ପରା ! ତମେ ସେଇଟାକୁ କାଇଁ ଏତେ ଡରୁଚ ? ସେ କ'ଣ ତୁମକୁ ପୋଷୁଚି ? ବାପା ଏମିତି ଝିଙ୍ଗାସ ଖାଇଲା ବେଳେ ମୁଣ୍ଡ ପଛଟି କେବଳ କୁଣ୍ଡାନ୍ତି । ପାଟିରୁ ବଚନ ବାହାରେ ନାଇଁ । ଏଡେ ବଡ ଘରର ମହତକୁ ତ ପୁଣି ଜଗିବାକୁ ହେବ ! ଏଇଟା ଏବକା କଥା ନୁହଁ । ବିଭା ହେଲା ଦିନଠୁ ଏହିପରି ଚାଲି ଆସିଚି । ଆମେ ଦେଖି ଆସିଚୁ । ଏବେ ତାଙ୍କ ଅବସ୍ଥା ଦେଖି ମତେ ଯେତିକି ଦୁଃଖ ହୁଏ, ତା' ଅପେକ୍ଷା ବେଶି ରାଗ ମାଡେ । କେମିତି ମରଦଟାଏ ମ'! ଗୋଟାଏ ରଡିରେ ତା' ପାଟିକୁ ଚୁପ୍ କରି ଦେଇ ପାରୁ ନାହାନ୍ତି । ଧେତ୍‌ତେରି !! ଅଥଚ ଆଉ ସମସ୍ତଙ୍କ ପାଖରେ ଅଣ୍ଡିରାପଣ ଦେଖଉଚନ୍ତି ଯେ କାହିଁରେ କ'ଣ ! ହୋଇପାରେ ସେ କୌଣସି କାରଣରୁ ବୋଉକୁ ଖୁବ୍ ଡରନ୍ତି । ସେମିତି ବୋଧେ ସେ ତାକୁ ଭଲ ପାଇ ଆସିଚନ୍ତି । – ଘରେ ଯେତେ କଜିଆ, କକେଇ ଘର ସାଙ୍ଗେ ଯେତେ ଗାଳି ଫଜିତ୍, ହାତାହାତି ସବୁ ସେଇ ଗୋଟିଏ ମଣିଷର ଉସ୍‌କାଣ ପାଇଁ । ସେ ମୁହୂର୍ତ୍ତକେ ମଣିଷଟାକୁ ତତେଇ ନିଆଁ କରି ଦେଇପାରେ । – ପୁଅମାନଙ୍କ ଭିତରେ ମତେ ସେ ସବୁଠୁ କମ୍ ଦେଖିପାରେ । ମୋ ତଳ ଭାଇଟା ଗେହ୍ଲା । ଉପର ଭାଇ ରୋଜଗାରିଆ । ତାଙ୍କ ଦିହରେ ପବନ ବଜେଇ ଦିଏ ନାହିଁ । ଅଥଚ ମତେ ଯାବତୀୟ କାମରେ ଖଟାଏ । – ବୋଉଟା ସତେ ରାକ୍ଷୁଣୀଟାଏ । ଏ ବର୍ଷାରେ ସେ କ'ଣ କରୁଥିବ ବୋଲି ଭାବିଲି । ସେ ନିଶ୍ଚୟ ଆଲୁଅ ଜାଳି ଦେଇ ବାକ୍‌ସମାନଙ୍କ ଉପରେ ହାତ ବୁଲାଉଥିବ । କାଳେ ବର୍ଷା ପଡିଲେ ସେ ଭିତରର ମାଲ୍‌ଯାକ ଓଦା ହୋଇଯିବ ।

ମୋର ଖାଲି ମନ ହଉଥାଏ କେମିତି ଘର ଭିତରକୁ ଚାଲିଯାନ୍ତି । – ଗୁମୁଗୁମୁ ବର୍ଷା ଭିତରେ ଗୋଟାଏ ଚଡକ ମାରିଦେଲା । ମନେ ହେଲା ବିଜୁଳୀଟା ଇଟାକାନ୍ଥ, କାଠ କବାଟ, ମଣିଷର ହାଡଚମ ପାରିହୋଇ ଭେଦିଗଲା କାହିଁ କୁଆଡେ । ସେ ଶବ୍ଦରେ ମୁଁ ଫୋପାଡି ହେଲାପରି ଶେଷରେ ବସି ପଡିଲି । କାନ ଯୋଡାକୁ ବନ୍ଦ କରୁ କରୁ କମ୍ପି ଉଠିଲା ଖଣ୍ଡମଣ୍ଡଳ । ଆମ ଘର ଉପରେ ବୋଧେ ବଜ୍ର ପଡିଗଲା । ଆଖି ଫିଟେଇ ଚାହିଁଲି । କିଟିକିଟି ଅନ୍ଧାର । ଝପଝପ ଅଜସ୍ର ବର୍ଷା ।

ମୋତେ କାନ୍ଥ ଆରପଟୁ ପିଲା କାନ୍ଦ ଶୁଭିଲା । ବୋଧେ ବୁନୁ କାନ୍ଦିଲା । ସେଇଟା ଭାଇନାର ବଖରା । ନିସ୍ତବ୍ଧ ରାତିରେ ମୋତେ ସେଇଆଡୁ ପାଦଶବ୍ଦ ଶୁଭେ । କଡ ଲେଉଟେଇବା ଶୁଭେ । ପିଲା କାନ୍ଦିବାର ଶୁଭେ – ଖୁବ୍ କ୍ଷୀଣ, କିନ୍ତୁ ପରିଷ୍କାର । ବୁନୁ ମୋର ଭାରି ପ୍ରିୟ । ମୁଁ ତାକୁ ଗେଲ କଲେ ଭାଉଜ ମତେ ଭଲପାଏ । ଅନେଇ ରହିଥାଏ । ପୁଅଟା ମୋରି ଭଳି ଦିଶୁଚି ବୋଲି ଥଟ୍ଟା କରେ । ସେ ବିଚାରୀ କିନ୍ତୁ ବୋଉକୁ ଭୀଷଣ ଭୟ କରେ । – ତାକୁ କିଏ ଅବା ନ ଡରେ ? – ଭାଇନା ରୋଜଗାର କରି ଆଣୁଥିଲେ ସୁଦ୍ଧା କ'ଣ ଉଣା ଡରେ ? ଭାଉଜ ନାଁରେ ଥରେ ଭାଇନା

ପାଖରେ ଆଉଥରେ ବାପାଙ୍କ ପାଖରେ ଫରିଆଦ୍ ହେବା ବୋଉର ଦୈନିକ ଅଭ୍ୟାସ । – ବଡଭାଗ ଦିନ କିନ୍ତୁ ଭାଉଜ ଆଉ ବୋଉ ବସି ଦି'ପହରେ ଜଣେ ଜଣକର ମୁଣ୍ଡ କୁଣ୍ଡାଇ ଦଉଥାନ୍ତି । ବଡ ଅଜବ ଏ ମାଇକିନିଆ ଜାତିଟା । ସେମାନେ ମୋଟ ଉପରେ ଚାହାନ୍ତି ଯେ ମରଦ ଗୁଡାକ ତାଙ୍କ ଆଙ୍ଗୁଠି ଅଗରେ ନାଚୁଥାନ୍ତୁ । ସେମାନେ ତାଙ୍କୁ ତତେଇ, ଉସ୍କେଇ ସୁଝା ଲଗେଇ ଦିଅନ୍ତି । ତାଙ୍କ କଥା ଶୁଣିଦେଲେ ପୁରୁଷଙ୍କ ଭିତରେ ସିଂହ ପରାକ୍ରମ ଦେଖାଇବାକୁ ଇଚ୍ଛା ହୋଇଯାଏ । ...ସେଦିନ ମୁଁ ଫେରିଥାଏ ଖେଳ ପଡିଆରୁ । ଭାଉଜ ଛାନିଆ ହେଇ ଯେତେବେଳେ କହିଦେଲା ଯେ ବୁନୁ କେତେବେଳୁ କେଉଁଠି ମିଳୁ ନାହିଁ ଏବଂ କହୁକହୁ କାନ୍ଦି ପକେଇଲା, ମୁଁ କିଛି ନ ବୁଝି ଗୁଡାଏ ଧାଇଁଗଲି । ଇସ୍, ଭାଉଜ ଆଖିରେ ଲୁହ ଦେଖିଦେଲେ ପ୍ରାଣ ଛାଡିଗଲା ପରି ଲାଗେ । ସୃଷ୍ଟି ଟାଳିବି, କି ଆକାଶକୁ ଓଟାରି ଆଣିବି ମତେ କହ, କିନ୍ତୁ କାନ୍ଦ୍‌ନା... ।

ଏ ବର୍ଷା ବତାସୀ ଚଡଚଡିରେ ବୁନୁର ନିଦ ଭାଙ୍ଗି ଯାଇଥିଲା । ଭାଉଜ ବୋଧେ ଚାହୁଁଥିଲା ଛାତକୁ, ମଟମଟ ଡାକୁଥିବା କଡି ବର୍ଗା ବତାକୁ । ଯେତେ କହିଲେ କ'ଣ ହବ ? ସେମାନେ ଗୋଟିଏ ବଖରାରେ କାହିଁକି ଓ କେତେଦିନ ରହିବେ ? ଭାଇନା ତା' ନିଜ ନାଁରେ ଜାଗା କିଣିଲାଣି ବୋଲି ଶୁଣାଗଲା । ସେଦିନ ଘରେ ବୋଉର ପାଟିତୁଣ୍ଡ ଆଉ କଥା କଥାକେ ଭାଉଜର ନିନ୍ଦା । ...ସତେଇଶି ପୁରୁଷ ମାଟି । ତିନି ପୁରୁଷ ଘର । ସେ ଟୋକାକୁ ଭଲ ଗତି ଥିଲେ ସେ ମାଇପ ବୋଲରେ ଭିନେ ହେବାକୁ ମସୁଧା କରିଥାନ୍ତା ! ଓ ଏ ଛତରଖାଇ ଘର ଭଙ୍ଗେଇ ଯୋଗୁ ସବୁ ଅନର୍ଥ ।

ଦୁର୍‌ଦୁର୍ ବର୍ଷା ଛେଚୁଥିଲା ବେଳେ ଭାଉଜ ଉପରକୁ ଅନେଇ ବସିଥିବ । ଉପରୁ ଅଳନ୍ଧୁ ଖସୁଥିବ । ମଟମଟ ଡାକୁଥିବ ଚାଳ । ପୁରୁଣା ଛାତଟା ଯଦି ମଡେଇ ହୋଇପଡେ ? ଭାଇନାଟା ନିଦ ଅଳସୁଆ କ'ଣ କରୁଥିବ କେଜାଣି ! ସେ ତା' କାମରେ ବଦଳି ମାଗି ଚାଲି ଯାଉନାହିଁ କାହିଁକି କେଜାଣି ! –

ବେଳକୁ ବେଳ ଆହୁରି ତୋଫାନୀ ପାଗ ଦେଖେଇଲା । ଗର୍ଜିଲା ମେଘ । ସୁ ସୁ ପବନ ଝାଙ୍କିଦେଲା । ମତେ ଶୁଭିଲା ଚାରିଆଡ କବାଟ ଝରକା ସବୁ ବାଡେଇ ହେଲେ । ବହୁ ଦୂରରୁ ମୋ ନାଁ ଧରି କିଏ ହୁଏତ' ଡାକୁଥିଲା । ମୁଁ କାନ ଡେରି ଅପେକ୍ଷା କଲି । ବାପାଙ୍କ ସ୍ୱର ପରି ଶୁଭିଲା । ସେ ବୋଧେ ଡାକୁଥିଲେ । ଭାଇନା ସ୍ୱର ବି ଅବିକଳ ସେମିତି । ସେ କ'ଣ ଡାକୁଥିଲା ମତେ । ...ମୁଁ ନିଶ୍ୱାସ ରୋଧି ପୁଣି କାନେଇଲି । ପଢାଘର କବାଟରେ ଦୁମ୍ ଦୁମ୍ ବାଡେଇ ବାପା ଡାକ – ପକେଇଲେ, "କିରେ ଲିଟୁ, ଉଠୁଚୁ ନା ନାଇଁ ! ଆ, ଚାଲିଆ ! ତତେ ବୋଉ ଡାକୁଚି ।"

ମତେ କେମିତି ବିହ୍ୱଳ ଲାଗିଲା ! ବୋଉ ଡାକୁଚି ! – ତା'ହେଲେ ମତେ ସେ ଭଲପାଏ ? – ମରିଯାଉ ବୋଲି ଚାହେଁନା ? ସେ ଦିନ କେମିତି ମେଘ ଟେକିଥିଲା ବେଳେ ରାତିରେ ଡାଲି ଆଣିବାକୁ ମତେ ପଠେଇଥିଲା ? ଡାଲି ନହେଲେ ଗେଲବସର ପୁଅ ଭାଲୁଆର ଗୁଣ୍ଡା ଉଠିବ ନାଇଁ । କାଇଁ ତାକୁ ତ' ବାର ଚୌଦ ବର୍ଷ ହେଇ ଗଲାଣି । ସେ କ'ଣ ଯାଇ ପାରି ନଥାନ୍ତା !...

ଆରେ ସେଇଟା ମେଞ୍ଚଡଟାଏ, କୋଡପୋଛାଟାଏ ! – ସେ କ'ଣ ତୋ ଭଳି ପାରିବାର ହେଇଚି ! ତୁ' ଏବେ ଋହିଁଲେ, ଦିଲ୍ଲୀ ବୁଲିଦେଇ ଋଲି ଆସିବୁ ଏକୁଟିଆ । ସେ କ'ଣ ପାରିବ ?...

"ଆରେ ମୁଁ ଏଠି ଓଦା ହୋଇଗଲି । କବାଟ ଫିଟା !"

ମୁଁ ଡିଆଁମାରି କବାଟ ଫିଟଉ ଫିଟଉ ବାପା ଆଉ ପବନ ଏକାଠି ପେଲି ପଶି ଆସିଲେ ବଖରା ଭିତରକୁ । ଗୋଟାଏ ହାବୁକାରେ ମୋର ବିଛଣା ଋଦର ଉଡିଗଲା । ମୋ ଡେଣାଧରି ବାପା ପବନକୁ ଆଡି ପଡେଇ ଟାଣି ନେଇଗଲେ ।

ମଡମଡ ଶବ୍ଦରେ କଣଟାଏ ମଡେଇ ହେଇ ପଡିଲା । କମ୍ପିଉଠିଲା ମୋ ଭିତର । ମୁଁ ବାପା ପାଖକୁ ଲେସି ହେଲା ପରି ଘର ଭିତରକୁ ପଶିଗଲି । ଆଗ କାଳର ଗୋବବସା କବାଟଟାକୁ ଆମେ ଦୁଇ ଜଣ ଯାକ ସବୁ ବଳ ଖଟେଇ ଠେଲି ବନ୍ଦ କରିବାରେ ନୟାନ୍ତ ହୋଇଗଲୁ । ବଳକରି ଗେଡା ଲଗେଇ ଦେବାକୁ ହାତୀ ପରି ସେ କବାଟ ତେଡେ ବଡ ତୋଫାନକୁ ସମ୍ଭାଳି ଠିଆ ରହିଗଲା ।

ଅଗଣାରେ ଆହୁରି ଶବ୍ଦ, ଆହୁରି ବର୍ଷା । ସେ ଯେଉଁ ବଖରାଟାରେ ଆମେ କବାଟ କିଳିଲୁ ସେଇଟା ଘରର ମଝି ବଖରା । ତାରି ଉପରେ ମେରଦା । ବାକି ବଖରା ସବୁ ସେମିତି । ମେରଦା ଉପରେ ବହୁକାଳର ପୁରୁଣା ପେଡି ପେଟରା କ'ଣ ସବୁ ଅଛି । ଗୋଟାଏ କୁଣକୁ ମାଟି ପିଣ୍ଡିଟାଏ । ସେଇଠି ଆମ ତିନି ପୁରୁଷଙ୍କ ଆତ୍ମା ଅଛନ୍ତି ବୋଲି ଆମକୁ କୁହାଯାଇଛି । ଆମ ଗୋସେଇମା ଥିଲାବେଳେ ତାକୁ ନିଃଶବ୍ଦ ରାତିରେ ମଣିଷଙ୍କ ପାତଶବ୍ଦ, ଫିସ୍ ଫିସ୍ କଥାବାର୍ତ୍ତା, ଖଳଖଳ ହସ ଶୁଭୁଥିଲା ସେ ମେରଦା ଉପରୁ । ବୋଉ କହୁଥିଲା ଯେ ସେ ଗୁଡାକ ସବୁ ଋଲିଆ ମୂଷା । ଏବେ କହିଲାଣି ଅନ୍ୟ ପ୍ରକାର ।

ସେଇ ତୋଫାନ୍ ବର୍ଷା ରାତିରେ ମେରଦା ତଳେ ଠିଆ ହେଲେ ଉପରୁ ସାତ ପୁରୁଷି ଆବୋରି ରଖିଛନ୍ତି ଭଳି ଲାଗିଲା । ତା'ରି ଭିତରେ ଗଛ ଭାଙ୍ଗି ପଡିବାର ଉପୁଡି ପଡିବାର ଶବ୍ଦ ଶୁଭୁଥାଏ । ଘର ଛାତ ମଡ ମଡ ହେଇ ହୁଏତ ମଡେଇ ହୋଇ ପଡୁଥାଏ । ମୁଁ ଦେଖିଲି ସେଇ ମେରଦା ଘରେ ସମସ୍ତେ ଆସି ଡରିଲା ପରି ଠିଆ ହେଇଛନ୍ତି । ବୋଉ, ଭାଇନା, ଭାଉଜ ପିଲାମାନେ । ଭାଲୁଆ ବୋଉ ପାଖକୁ ଲାଗି କାନ୍ଥକୁ ଆଉଜି ଗଲା । ସମସ୍ତେ ଶଙ୍କି ଯାଇଥାଉ । ଏତିକିବେଳେ ବାପା ହଠାତ୍ ଚମକିଲା ପରି କହିଲେ, "ଆରେ, ବଉଳିର କ'ଣ ହେଲା ?" – ବଉଳ ଆମ ସମସ୍ତଙ୍କର ଅତି ପ୍ରିୟ ପାଟଗାଈ । ବୁନୁ କହିଲା, "ଟମ୍ କାଇଁ ?" ଟମ୍ ତା' କୁକୁର ।

ସମସ୍ତେ ଶୁଣିଲେ । କେହି ଘୁଞ୍ଚିଲେ ନାହିଁ ।

ଶେଷରେ ମୁଁ ବାପାଙ୍କ ସାଙ୍ଗେ ଅଣ୍ଟାରେ ଗାମୁଛା ଭିଡି ବାହାରିଲି । ହାତରେ ଡିବି ଆଲୁଅ ଲିଭିଗଲା । ସେ କିଟିକିଟି ଅନ୍ଧାର ଭିତରେ ବିଜୁଳୀ ଚମକିଗଲେ ବାଟ ଦିଶି ଯାଉଥାଏ । ତା'ପରେ ଘମାଘୋଟ ଅନ୍ଧକାର । ...ଅଗଣା ବାଟେ ପାଣିରେ ତିନ୍ତିଯାଇ ଗୁହାଳରେ ପହଞ୍ଚିଲୁ । ଗୁହାଳ ଘର ଛାତ ଖଣ୍ଡ ଉଡି ଯାଇଥିଲା । ବଉଳି ଖୁଣ୍ଟିରେ ବନ୍ଧାହୋଇ ମେଞ୍ଚାଟାଏ ହୋଇ ବର୍ଷା ମାଡ

ସହୁଥିଲା । ବହୁ କଷ୍ଟରେ ଆମେ ତାକୁ ସେ ଅନ୍ଧାରରେ, ପାଣି କାଦୁଅରେ ପାହାଚ ଚଢେଇ ସେଇ ବଖରାରେ ଆଣି ଠିଆ କରେଇଲୁ । ଆମ ଦିହରୁ, ଗାଈ ଦିହରୁ ପାଣି ନିଗିଡି ବଖରାର ଅଧେ ଓଦା ହୋଇଗଲା । ଟମ୍ ଆସିଲା ବୁନୁ ପାଖକୁ । ଉପରେ ଛାତ ଛପର ଭୁସ୍‌ଭୁସ୍ କୁଢେଇ ହେଉଥାଏ । ଆମେ କଥା କହି ପାରୁ ନ ଥାଉ । ସମସ୍ତେ ଜାକିଜୁକି ହେଇ ଏକାଠି ଠିଆ ରହିଥାଉ । ଏକାଠି ସହୁଥାଉ ସେ ବିପତ୍ତିକୁ ।

ବୁନୁ ଭାଉଜ ପାଖରେ କାଖ ହେଇଥାଏ । କହିଲା, "ସାନ ଜେଜେ" ! ସତକୁ ସତ ମେରଦା ଦୁଆର ମୁହଁରେ କକେଇ; ତାଙ୍କ ପଛକୁ ଖୁଡି ଆସି ଥମ୍ ହେଇ ଠିଆ ହୋଇଥାନ୍ତି । ଆମ ସମସ୍ତଙ୍କୁ ଦେଖି ଭିତରକୁ ଆସିବେକି ନାହିଁ ସ୍ଥିର କରିପାରୁ ନଥାନ୍ତି । ବୁନୁ ଡାକରେ ସେ ଦୁହେଁ ପଶି ଆସିଲେ । ଖୁଡି ବୋଧେ କହିଲେ, "ଆମ ପାଖ ଛାତ ଉଡିଗଲା ।" ସମସ୍ତେ ଶୁଣିଲେ । ଉଁ କି ଚୁଁ କଲେ ନାହିଁ । ସେ ଦୁହେଁ ଆଉ କିଛି କହିଲେ ନାହିଁ । ବଉଳି ପଛପଟେ ଠିଆ ରହିଲେ । ଆମ ସମସ୍ତଙ୍କ ମୁଣ୍ଡ ଉପରେ ଶାଳପଟା ପରି ବାହୁ ବିସ୍ତାର କରି ସାତ ପୁରୁଷି ଘୋଡେଇ ହୋଇ ରହିଥିଲେ ।

ଆମେ ସମସ୍ତେ ଏକା ପରି ବିପନ୍ନ, ଏକା ପରି କାତର ଦିଶୁଥାଉ । ଗୋଟାଏ ପ୍ରଚଣ୍ଡ ଚଡକରେ ମେରଦା ଉପର ଛାତ ମଡେଇ ହେଇ ପଡିଲା । ଆଗଣା ପୋତି ହୋଇଗଲା ଛିନ୍ନଛତ୍ର କାଠ ବାଉଁଶରେ । ଆମେ ଭୟରେ ଯେ ଯାହାକୁ ପାଇଲୁ କୁଣ୍ଢେଇ ପକେଇଲୁ । ହାଉଳି ଖାଇ ସମସ୍ତେ ରଡି ଛାଡିଲୁ । ନିଭୃତ ଗୁମ୍ଫାପରି ସେ ବଖରା କମ୍ପିଗଲା ସିନା ସେମିତି ଠିଆ ହେଇ ରହିଲା । ତା' କାନ୍ଥ ସବୁ ପାହାଡ ପରି ପାତାଳକୁ ଭେଦି ଠିଆ ହେଲେ । ଉପରେ ଫାଳ ଫାଳ ଶାଳପଟା ହୋଇ ସାତ ପୁରୁଷି ଆତ୍ମା ଆବୋରି ରହିଲେ । ନିବାରଣ କଲେ ଆକାଶରୁ ଛିଣ୍ଡି ପଡୁଥିବା ବିପତ୍ତିମାନଙ୍କୁ । ବିଜୁଳୀ ଚମକି ଯିବାରୁ ସମସ୍ତେ ଚମକି ଆଡ ହେଇଗଲେ । ମୁଁ ବି ଚମକି ପଡିଲି । –

ଦେଖିଲି ଖୁଡି, ବୋଉ ଆଉ ଭାଉଜ ଏକାଠି ଧରାଧରି ହେଇ ସମ୍ଭାଳି ଯାଇଛନ୍ତି । ମୁଁ କକେଇକୁ ଜାବୁଡି ଧରିଥିଲି । ବାପା କୋଳେଇ ନେଇଥିଲେ ନାତି ନାତୁଣୀକୁ । ଭାଇନା ଧରି ପକେଇଥିଲା ବାପାକୁ । ଏମିତି ସବୁ ଜାକିଜୁକି ହେଇ ଯାଇଥିଲୁ । ଆଉଜି ଯାଇଥିଲୁ ପାଖରେ ଯେ ଥିଲା ତା' ଉପରକୁ । ବିଜୁଳୀ ମାରିବାବେଳେ ବିଜୁଳୀ ବେଗରେ ତା'ପରେ ତୁହାଇ ତୁହାଇ ମାଈକିନେ କେବଳ କାନ୍ଦିଲେ । ମରଦମାନେ ସ୍ଥାଣୁ ହେଲାପରି ଠିଆ ହେଇ ରହିଲେ ।

ବାହାରେ, ଉପରେ, ଚାରିଆଡେ ବର୍ଷା ବିଜୁଳୀ ସେମିତି ଛେଚୁଥିଲା ।

ତା ଆରଦିନ ସକାଳ ବି ସତେ ଭାରି ଅଦ୍ଭୁତ ! ସେମିତି ପାଚିଲା ଖରା ମୁଁ ଏ ଯାଏଁ ଦେଖିନାହିଁ । ଆକାଶରେ ମେଘର ଚିହ୍ନ ନ ଥାଏ । ସବୁ କିନ୍ତୁ ଧ୍ୱଂସ ହୋଇ ଯାଇଥାଏ ରାତିକ ଭିତରେ । ସେଇ ସ୍ୱଚ୍ଛ ସକାଳଠୁ ସେଇ ଗୋଟିଏ ମାତ୍ର ମେରଦା ବଖରାରେ ଏକାଠି ସମସ୍ତଙ୍କ ପାଇଁ ଭାତ ରନ୍ଧା ହେଲା । ବାପା କକେଇ ଏକାଠି ବାହାରିଲେ ଭଙ୍ଗା ଘର ସଜାଡିବାକୁ । ଆମେ ସମସ୍ତେ ଲାଗିଗଲୁ । ଭଙ୍ଗା ଘରକୁ ଚାହିଁଦେଲେ ଆମ ଭିତରର ଭଙ୍ଗା ମନ କାହିଁ କୁଆଡେ ଲୁଚି

ଯାଉଥିଲା ।

ମାସେ କାଳ କାହାକୁ ଡର ନଥାଏ । ଦିନ ସାରା ଖଟିଖଟି ରାତିରେ ସେଇ ମେରଦା ଘରେ ମୁନ୍ଦୁରା ପକେଇ ସମସ୍ତେ ଗଡି ପଡୁଥିଲୁ । ମତେ ଲାଗୁଥିଲା ଯେ ସେମିତି ଏକାଠି ଲଢିଗଲେ ଆମେ ସାରା ସଂସାରଟାକୁ ସଜାଡି ଦେଇଥାନ୍ତୁ । ମେରଦା କାନ୍ଥକୁ ଲାଗି ବାକ୍ସ ପତ୍ର ପେଡି ପେଟେରା ଧାଡି ଧାଡି ରଖା ହେଇଥାଏ । ମେଲା ପିଣ୍ଡାରେ ରୋଷଶାଳ । ବୋଉ ପରିବା କାଟିଲେ, ଖୁଡି ବେସର ବାଟୁଥାନ୍ତି; ଭାଉଜ ଭାତହାଣ୍ଡି ଓହ୍ଲେଇ ଆଣୁଥାଏ । ନଡା ଛାତ କରି ବଉଳିକୁ ରଖା ହେଇଥାଏ । ନୂଆ କଡି ବରଗା ଆସିଲା । ନୂଆ ଛପର ଆସିଲା । ଲୋକ ଲାଗିଲେ । ଛାତ ସଶକ୍ତ ହେଇ ବନ୍ଧା ହେଲା । ସବୁ ବଖରା ଝଟାଝଟି ସଜାସଜି ହେଇଗଲା । ସୁନ୍ଦର ଦିଶିଲା ଏବଂ ଏଇ ସଜେଇବା ବେଳେ ସମୟ ପାଇ ମୁଁ ତୁଳି ଧରି ଆଙ୍କିଥିଲି ଗୋଟିଏ ଖୁବ୍ ବଡ ଫୁଟିଲା ପଦ୍ମ । ବୁନୁ ଦେଖି ଖୁସି ହେଇ ଯାଇଥିଲା ।

ଆଜି ଜାଣି ଯେ ଯାହା ବଖରାରେ ଶୋଇବେ । କିନ୍ତୁ ଆଜିହିଁ ସକାଳଟାରୁ ଲାଗିଗଲା କଜିଆ ପାଟିତୁଣ୍ଡ । ବଚସାରେ ଛାତ ଖଣ୍ଡ ଭୁସୁଡି ପଡିଥାନ୍ତା । ପୁଣି ବାପା କକେଇ ଉଚ୍ଚବାଚ ହେଇ ଅଲଗା ହେଇଗଲେ । ବୋଉ ଖୁଡି ଲଢିଗଲେ ସମସ୍ତଙ୍କ ଆଗରେ । ଭାଉଜକୁ ବୋଉ କଥାରେ ଭାଇନା ପିଟି ଦେଇଗଲା । ପିଲାଏ ରଡି ଛାଡିଲେ । ମୋତେ ଖେଙ୍କି ଆସିବାରୁ ମୁଁ ଆସି ପୁଣି ଦାଣ୍ଡ ପିଣ୍ଡାର ସେଇ ପଢାଘରେ ବସିଚି । ମୋ ଭିତର ଛିନଭିନ୍ ହେଇଗଲା ପରି ଲାଗୁଚି । ମୋତେ ଭୋକ କରୁଚି ସକାଳୁ । ...ଏମିତି କ'ଣ ସବୁ ହେଇଗଲା ପୁଣି ?

ମୋତେ କାନ୍ଦ ମାଡିଲାରୁ ମୁହଁ ଘୋଡେଇ ମୁଁ ଟେବୁଲ ପାଖରେ କାନ୍ଦିଛି । ରାଗରେ ନିଆଁ ଜଳି ଉଠୁଚି ମୋ ଭିତରୁ । ମୁଁ କେବେ ପ୍ରାର୍ଥନା କରେ ନାହିଁ । ଏଇନା ଆଣ୍ଠୁ ମାଡି କରଯୋଡି ଡାକୁଚି, "କେହି ଯଦି ଉପରେ ଅଛି, ସେ ପୁଣିଥରେ ଗର୍ଜି ଉଠୁ ! ଅଜାଡି ଦେଉ ବିପତ୍ତି । ଉଡିଯାଉ ଏ ଛାତ । ସାତ ପୁରୁଷି ମେରଦା ଭାଙ୍ଗିଯାଉ ! ଆମକୁ ବିପନ୍ନ କର, ପ୍ରଭୁ, କାତର କର, ମଣିଷ କର !"



# ବିକ୍ରି ପାଇଁ ଫୁଲମାଳ

## ବିକ୍ରି ପାଇଁ ଫୁଲମାଳ

ସଞ୍ଜ ହେଲେ ଏ ଖଣ୍ଡାଧାର ପରି ଖରା ନିଶ୍ଚୟ ନଇଁଯିବ । କାକର ପବନ ବହିବ ସମୁଦ୍ରଆଡୁ । ମାଛ ପହଁରି ଆସିବେ ପାଣି ଉପରକୁ । ମଣିଷ ପହଁରି ଆସିବେ ଦାଣ୍ଡ ଉପରକୁ । ଏଇଆ ହେଇଆସିଛି ସବୁକାଳେ । ଏବେ ବି ହବ । ଏଥିପାଇଁ ଈଶ୍ୱରଟାକୁ ପ୍ରଶଂସା କରିବାର କାରଣ କିଛି ନାହିଁ ।

ତା' ବାପ, ଗୋସେଇଁ ବାପ ଭଲ ଭଜନ ବୋଲୁଥିଲେ । ବୋଲୁ ବୋଲୁ କାନ୍ଦି ପକାଉଥିଲେ । ସେ ସେଭଳି କେବେ କରିନାହିଁ । ତେବେ ଦିନେ ଦିନେ ଖୁସିରେ ଗୁଣୁଗୁଣେଇଲା ବେଳେ ତା' ଅଜାଣତରେ ସେ ଭଜନଟିଏ ହିଁ ବୋଲୁଥାଏ ।

ରତନାକୁ ବୟସ ବାର କି ତେର । ଚେହେରାରୁ କିନ୍ତୁ ଜଣାପଡେ ନାହିଁ । ଦେଖାଯାଏ ପିଲାଟିଏ ପରି । ସବୁବେଳେ ପ୍ରାୟ ବସ୍ ଷ୍ଟାଣ୍ଡରେ ବୁଲୁଥାଏ । ସେଇଠି ନୂଆ ଲୋକ ନୂଆ ମୁହଁ ତାକୁ ଭଲଲାଗେ । କେହି କେହି ତାକୁ କୁଲି ବୋଲି ଡାକି ଦିଅନ୍ତି । ସେ ଚିଡିଯାଏ । କିନ୍ତୁ ବେଳ ପଡିଲେ ବାକ୍ସ ପତ୍ର ଉଠେଇ ଦି'ପଇସା ରୋଜଗାର କରିନିଏ । ସେଥିରେ ତା'ର ବିଡି ଖର୍ଚ୍ଚ ଉଠିଯାଏ ।

ତା' ପାଇଁ ସବୁଠୁ ବେଶି ଭଲ ସମୟ ହେଲା ଏଇ ସଞ୍ଜବେଳ । ଏତିକିବେଳେ ସୌଖୀନ ଲୋକେ ହାୱା ଖାଇବାକୁ ବାହାରନ୍ତି । ଭାରି ଦିଲଦାର ମଣିଷ, ସେମାନେ ଚାଲିଗଲେ ମହକିଯାଏ । ସେମାନଙ୍କ ହସ ହସ ମୁହଁ, ସେମାନଙ୍କ ବେଶଭୂଷା, ଦୋହଲିବା ଭଙ୍ଗୀ, ତାଙ୍କ ପୋଷାକରେ ଧପ ଧପ ଜୀଅନ୍ତା ରଙ୍ଗ । ସେମାନେ ଫୁଟିଲା ଫୁଲ ପରି ତାକୁ ଦେଖାଯାନ୍ତି । ସେଇମାନେ ହିଁ ତା'ଠୁ ଫୁଲମାଳ କିଣନ୍ତି । ତାଙ୍କର ଅପେକ୍ଷାରେ ସେ ସଞ୍ଜବେଳଟି ବିତେଇ ଦିଏ । ମଲ୍ଲୀ, ଯୂଇ ଆଉ ଗଜଦନ୍ତରେ ଦଶ ଦଶ କେରାମାନ ଗୋଟିଏ କାଠିରେ ସେ ଝୁଲେଇ ଧରିଥାଏ । ଆଉ ଗୋଟାଏ କାଠିରେ ତୁଳସୀ, ଦୟଣାର ମାଳ ବି ଓହଳେଇ ଥାଏ ।

ସେ ତା' 'ଜେମା-ଅପା' ଉପରେ ସେଥିପାଇଁ ଖୁବ୍ ଚିଡିଯାଏ ବେଳେ ବେଳେ । ତୁଳସୀ, ଦୟଣାର ପତୁରିଆ ମାଳଗୁଡାକ ନହେଲେ କ'ଣ ଚଳନ୍ତା ନାହିଁ ? ସେଥିପାଇଁ ଗରାଖଯାକ ସବୁ ଅପରଛନିଆ, ବୁଢା ହୋଢା, ରାଣ୍ଡୀଖଣ୍ଡୀ, ମଇଳା ମ୍ଳେଚ୍ଛ ! ବେଳେ ବେଳେ ମାତବ୍ବର ଲୋକ ବି

ଜୁଟିଯା'ନ୍ତି । ପାଠଶାଢି ଗୁଡେଇ ହୋଇଥିବା ଲୋତରା ବୁଢୀଟିଏ ସେଦିନ ଅଧାଡିଆ ବୟସର ତା' ପେଟୁଆ ପୁଅ ସାଙ୍ଗେ ଆସି ସବୁଯାକ ଦୟଣା ଏକାଥରକେ ନେଇଗଲା । ଠାକୁରଟାକୁ ପୋତିପକେଇଥିବ !

ଅପା ଫୁଲମାଳ ଗୁନ୍ଥିଲାବେଳେ ହାତଗୋଡ ଧୋଇ ପୂଜାକରିବା ଭଙ୍ଗୀରେ ବସିଯାଏ । ଫୁଲମାଳଗୁଡିକ ସରିଆସିଲା ବେଳକୁ ଦୁଇ ହାତରେ ଉପରକୁ ଟେକି ଅନାଏ । ଉଭାନ୍ ହୋଇଯାଇଥିବା କାହା ବେକରେ ସେମିତି ଶୂନ୍ୟରେ ସେ ମାଳ ପିନ୍ଧେଇ ଦିଏ କେଜାଣି !

ଜେମାଅପା ତା'ଠୁ ଅନେକ ବଡ । ସେ ତା'ର ସବୁ । ଘରେ ଆଉ ତ କେହି ନାହାନ୍ତି । ରତନା କିନ୍ତୁ ଜାଣେ ଯେ ଅପାର ବହୁତ ଚିହ୍ନା ଅଛନ୍ତି । ସେମାନେ ଆସିଲା ମାତ୍ରେ ଅପା ତାକୁ ପାନ ଆଣିବାକୁ ପଠାଇଦିଏ ।

ବନାରସୀ ପାନବାଲାଠଉ ସେ ପାନ ଦେଇ ଫେରିଲା ପରେ ଦିନେ ଦିନେ ସେମାନେ ଚାଲିଯାଇ ଥାଆନ୍ତି । ନ ହେଲେ ଖୁସିରେ ତା'ଠୁ ପାନ ଖାଇ ତା' ଗାଲ ଚିପି ଦିଅନ୍ତି । ହାତରେ ପଇସା ଧରେଇ ଦେଇ ଚାଲିଯାଆନ୍ତି । ଜେମାଅପା ତାଙ୍କୁ ଦୁଆର ପର୍ଯ୍ୟନ୍ତ ବଳେଇ ଦେଇ ଆସି ମୂକ ହୋଇ ବସିଯାଏ । କଥା କହେ ନାହିଁ । ବେଳେବେଳେ ତା' ଆଖିରୁ ଲୁହ ଗଡିଯାଏ । ରତନା ବୁଝିପାରେ ନାହିଁ । ତା' ପାଖରେ ବସି ଲୁହ ପୋଛି ପକାଏ । ଭାବେ ଯେ ସେ ଲୋକଟା ବୋଧେ ଅପାକୁ ଗାଳି ଦେଲା । ସେ ଆଉଥରେ ଆସିଲେ ତା' ପାଇଁ ପାନ ଆଣିଦେବ ନାହିଁ ।

ଏବେ ସେ ଆଉ କାହା ପାଇଁ ପାନ ଆଣୁନାହିଁ । ସେଇ ସଞ୍ଜ ବେଳଟା ତ, ତା'ର ଫୁଲବିକାରେ ଚାଲିଯାଉଚି । ରାତି ଦଶଟା ଯାଏଁ ଗରାଖ ଲାଗି ରହୁଛନ୍ତି । ଦିନେ ଦିନେ ସବୁ ମାଳ ସରିଗଲେ ସେ ସଅଳ ଫେରିଯାଇପାରୁଛି । ରତନା ସକାଳୁ ଗଣ୍ଡେ ଖାଇଦେଇ ବୁଲିବୁଲି ଉପରଓଳି ଫେରେ । ସେତେବେଳକୁ ମାଳଗୁନ୍ଥା ସରିଥାଏ । ତାଟରେ ଓଦାକନା ଗୁଡେଇ ରଖି ଦେଇଥାଏ ଜେମା ଅପା । କେତେ ସୁନ୍ଦର ମାଳ ଗୁନ୍ଥି ଜାଣେ ସତେ ସେ !

ମଲ୍ଲିମାଳଟି ଖାଲି କଢିଗୋଟାଳିରେ ଗୁନ୍ଥା ହୋଇଥାଏ । ଟିକିଏ ହେଲେ ସାନ ବଡ ନଥାଏ କୋଉଠି । ସେମିତି ଦୟଣା ଓ ତୁଳସୀ । କିନ୍ତୁ ସବୁଠୁ ସୁନ୍ଦର ସେଇ ଯୂଇ ଫୁଲର ଗଭାମାଳ । ସେଥିରେ ବହୁତ ଫୁଲ ଲାଗେ । ସେଥିପାଇଁ ମାଳ ଖଣ୍ଡକୁ ପାଞ୍ଚଟଙ୍କା । ଜେମାଅପା ସବୁ ଦିନେ ସେ ମାଳ ଗୁନ୍ଥେ ନାହିଁ । ଗୁନ୍ଥିଲା ଦିନ ରତନାକୁ ତାଗିଦ୍ କରି କହିଥାଏ ଯେ ନକିଣିବା ଲୋକ ଯେମିତି ସେ ମାଳ ଦେହରେ ହାତ ମାରିବ ନାହିଁ ।

ହେଇ ଗତ ଶୁକ୍ରବାର ଦିନ ସେମିତି ଗୋଟିଏ ଗଭାମାଳ ନେଇ ରତନା ଯାଇଥିଲା ମନ୍ଦିର ସାମ୍ନାକୁ । ସଉଖୀନିଆମାନେ କେବଳ ସରୁ ଏକପୁରିଆ ମଲ୍ଲୀ ବା ଯୂଇ ମାଳଟିଏ ହାତରେ ଗୁଡେଇ ଚାଲିଗଲେ । ଏତେ ମୋଟା ଗଭାମାଳକୁ ସାହସ କରିପାରିଲେ ନାହିଁ । ମୁହଁ ଫେରେଇ ନେଇଗଲେ । ପାଞ୍ଚଟଙ୍କା କ'ଣ କମ୍ ପଇସା ହେଲାଣି ? ଖଣ୍ଡେ ଫୁଲମାଳକୁ କିଏ ଭଲା ପାଞ୍ଚଟଙ୍କା ଦେଇପାରିବ ?

ରତନା ମନେ ମନେ ଗଭାମାଳର ଗରାଖକୁ ଧାୟୀ ବସି ରହିଥାଏ । ସଞ୍ଜବେଳେ କାକର ପବନ ବହୁଥାଏ । ମହକିଯାଉଥାଏ ସେ ଅଞ୍ଚଳ ।

ଅନେକ ଗରାଖ ଆସୁଥାନ୍ତି । ସମସ୍ତଙ୍କ ଦଉଡ କେବଳ ସେଇ ଟଙ୍କାକିଆ ଏକପୁରିଆ ସୂତାପରି ମାଳଟି ପର୍ଯ୍ୟନ୍ତ ! ଯଦି ଧର ସେ ଗଭାମାଳ ଖଣ୍ଡିକ ବିକ୍ରି ନହେଲା ! ତାପର ଦିନ ତ ମଉଳିଯିବ ! ଆଉ କ'ଣ ବିକ୍ରି ହୋଇପାରିବ ?

ରତନା ମନେ ମନେ ଡରିଗଲା । ଅପା କିଛି ହୁଏତ କହିବ ନାହିଁ । କିନ୍ତୁ ମାଳଟିକୁ ଧରି ସବୁ ହାରିଗଲା ପରି ଠିଆ ହୋଇଯିବ । ସେଇଟା ରତନା ସହିପାରିବ ନାହିଁ । କୌଣସି ପ୍ରକାରେ ବିକ୍ରି କରିବାକୁ ହେବ !

ବାଃ, ଅନେକ ଧର୍ମ କଲାବାଲା ତ ପୁଣି ଅଛନ୍ତି । ସେମାନଙ୍କର କ'ଣ ଅଛି-ଯେତେ ଟଙ୍କା ପଡିବ ପଡୁ । ଠାକୁରଙ୍କୁ ଫୁଲମଣ୍ଡଣି କରିଦେଇ ପାରିବେ ସେମାନେ । ସେ ଯୂଇ ଫୁଲର ଗଭାମାଳଟିକୁ ଆଣି ଆଉ କାଠିରେ ଓହଳାଇ ଦେଲା । ତୁଳସୀ, ଦୟଣା ସାଙ୍ଗକୁ ଯୂଇମାଳ ! ରତନାକୁ ବି କେମିତି ଅଖାଡୁଆ ଲାଗିଲା । କିନ୍ତୁ ଉପାୟ କ'ଣ ? ଅନ୍ଧାର ହେଉହେଉ ସଞ୍ଜଆଳଟି ବଢିଗଲା । ତାରି ଭିତରେ କିଛି ତୁଳସୀ ମାଳ ଖଣ୍ଡକୁ ପଚିଶ ପଇସା ଦେଇ ଭକ୍ତମାନେ କିଣିନେଇଗଲେ ।

ଯୂଇମାଳଟିକୁ ସମସ୍ତଙ୍କର ଆଖି । କେହି ଜଣେ ଦାମ୍ ମଧ ପଚାରିଥିଲା – କିନ୍ତୁ ନେବା କଥା ଉଠାଇଲା ନାହିଁ ।

ତା'ପରେ କାକର ପବନ ବହିଲା । ରତନା ଖୁସ୍‌ମୁସ୍ ହେଲା । ସେଇଠୁ ଉଠିଯାଇ ଆଉ ଛକ ପାଖରେ ଠିଆହେଲେ ଆଉ କିଛି ବିକ୍ରୀ ହୋଇଯାଆନ୍ତା । ହେଲେ ଏଇ ଦୟଣା, ତୁଳସୀ କିଏ କିଣିବ ? – ଉଃ, ଏ ଗୁଡାକ କାହିଁକି ଯେ ଅପା ତା' ଉପରେ ଲଦି ଦେଉଚି ! – କୋଉ ଠାକୁର ସେ ଭିତରେ ବସି ଏମିତି ମାଳପିନ୍ଧୁଛି ? ସେ କ'ଣ ଏ ଯୂଇମାଳଟାକୁ ପିନ୍ଧିବାକୁ ଇଛା କରୁନାହିଁ; ନା ଏମିତି ବାସ୍ନାଫୁଲ ପିନ୍ଧିଲେ ତା' ଚରିତ୍ର ଖରାପ ହେଇଯିବ ?

ତାଙ୍କ ସାଇର ପୁଲଣା ମାଉସୀ କହୁଥିଲା, "ରେ ଟୋକା, ତୁ କେବଠୁ ଅତର ଲଗେଇଲୁଣି ? ବାସ୍ନା ଲଗେଇଲେ ଚରିତ୍ର ଖରାପ ହୋଇଯିବ ।" ରତନାର ଗାଲଟିପିଦେଇ ସେ ହସି ହସି ଗଡିଯାଇଥିଲା ।

ରତନା ଛଟପଟ ହେଉଥାଏ । ଦୁଇଖଣ୍ଡ ମଲ୍ଲୀ, ଦୟଣା, ତୁଳସୀ ଛ'ଖଣ୍ଡ ଆଉ ସେ ଗଭାମାଳ ବିକ୍ରୀ କରିଦେଇ ସେ ଚଞ୍ଚଳ ଘରକୁ ଫେରିଯିବାକୁ ଚାହୁଁଥିଲା । ସେ ନଯିବା ଯାଏ ଅପା ନଖାଇ ଅପେକ୍ଷା କରିଥିବ । କିନ୍ତୁ ଏ ଗଭାମାଳ ଖଣ୍ଡ ଉଠିବ କେମିତି ? କିଏ ନେଇପାରିବ ତାକୁ ଏତେ ପଇସା ଦେଇ ?

ରତନାକୁ ଦିଶିଲା ପେଟୁଆ ମାଢୁଆଳିଆ, ଗଞ୍ଜି-ପିନ୍ଧା ମଣିଷ । ଖୁବ୍ ପଇସାବାଲା । ତା' ଦେହ ସାରା ମଳି । ଦେହଯାକ ଗନ୍ଧ । ସେଇଟା କ'ଣ ତା' ଚଉଦ ପୁରୁଷର ଫୁଲ କିଣିଛି ! ଅତି

ବେଶି ହେଲେ ସେ ଖଣ୍ଡେ ତୁଳସୀ ନେଇ ଠାକୁରଙ୍କୁ ଭଣ୍ଡି ଦେଇପାରେ ! ଛାଡ, ସେଇଆ ହିଁ ଶେଷକୁ ହେଲା । କୋଡିଏ ପଇସା ଦେଇ ସେ ଚାଲିଯାଉଥିଲା । ରତନା କାହିଁକି ଛାଡନ୍ତା ? ପାଞ୍ଚ ପଇସାକୁ ବାଟ ଜଗିଦେଲା । ପେଟ ଦେହରୁ ରକ୍ତ ନିଗାଡି ଦେଲାପରି ଖୁବ୍ କଷ୍ଟରେ ପାଞ୍ଚପଇସିଟିକୁ କାଢି ତା' ଆଗରେ ଫିଙ୍ଗି ଦେଲା । ଧପାଲି ଗଲା ପାହାଚ ପରେ ପାହାଚ । ତାରି ପରି ମୋଟାରୋଟା ଠାକୁରଟାଏ ଏ ଭିତରେ ପାଟି ନେଫେଡେଇ ବସିଚି ତ ! ତାକୁ ତୁଳସୀ ପଦ୍ମପାଖୁଡା ମାଳରେ ପୋତି ଦିଆଯାଇଛି । ବଡ ଅକ୍ଷମ ଏ ଈଶ୍ୱର । ହାତ, ଗୋଡ ନଥାଏ ଖଣ୍ଡିଆଟିଏ । କିନ୍ତୁ ଏ ଧଳା ବାସ୍ନା ଫୁଲର ଗଭାମାଳଟି ସେ କଳାମୁହଁକୁ ମଣ୍ଡି ଦେଲାପରି ଦିଶନ୍ତା ! ଏ ଭକ୍ତ ଗୁଡାକ କେମିତି ଜାଣିପାରୁ ନାହାନ୍ତି ? ଜାଣିଶୁଣି ଅବା ନେଉନାହାନ୍ତି କାହିଁକି ?

ରାତି ସେତେବେଳକୁ ଦଶଟା ।

କିଏ ଗୋଟେ ଆସି କହିଲା ଯେ ଠାକୁରଙ୍କ ପହୁଡବେଶ ଚାଲିଚି । ରତନାର ଆଶା, ଅନ୍ତତଃ ତୁଳସୀତକ ଆଉ ସେ ଦୟଣା ଦି'କେରା ନିଶ୍ଚୟ ଉଠିଯିବ ।

ନିରୋଳା ହୋଇଆସୁଥାଏ ଦାଣ୍ଡ । ଯେଉଁ କେତେଜଣ ଆସୁଥାନ୍ତି ସେଗୁଡାକ ଟାଉ ଟାଉ ଚାଲୁଥାନ୍ତି । ସେମିତି ଡଗଡଗା ଲୋକ ଫୁଲ କିଣନ୍ତି ନାହିଁ କି ସେ ଆଡକୁ ଚାହାଁନ୍ତି ନାହିଁ ବୋଲି ରତନାର ଧାରଣା । ଯିଏ ଫୁଲ କିଣିବା ଗରାଖ, ସେ ତା' ମହକରେ, ତା' ତୋଫା ରୂପରେ ବିଭୋର ହୋଇ ଟଳମଳ ହେଉଥାଏ । ତା' ଚାଲି, ତା' ହାବଭାବ ଅନ୍ୟପ୍ରକାର ।

ରତନାକୁ ନିଜ ଭେକଭୟ ମଦେଇ ହୋଇପଡିଲା । ସେ ଖୁବ୍ ପିଲାବେଳେ ତା' ବାପ ପାଖରୁ ଭଜନ ଶୁଣିଥିଲା । ବାପର ଚେହେରା ମନେ ନାହିଁ । କିନ୍ତୁ ତା'ର ସେ ବୁଢା ବଗଡିଆ ସ୍ୱର ବେଳେ ବେଳେ ରତନା କାନରେ ଗୁଞ୍ଜରି ଉଠୁଥିଲା । ରତନା ବିଡି ଟାଣିଲାବେଳେ, ଶୂନ୍ୟ ଆଖିରେ ଦାଣ୍ଡରେ ଜମିଥିବା ଅପରିଚିତ ଭିଡକୁ ଚାହିଁରହିଥିଲାବେଳେ ସେ ଗୁଣୁଗୁଣୁ ହେଉଥିଲା ଅନେକ ସମୟରେ । ଜାଣିପାରିଲେ କିନ୍ତୁ ରୋକି ଦେଉଥିଲା । ଅନ୍ୟଆଡେ ମନ ଫେରାଇ ନେଉଥିଲା । ଜଣାଣଟାଏ ସେ କ'ଣ ଗାଇବ ? – କାହା ପାଇଁ ? ସେ କ'ଣ ଦେଉଚି କି ତାକୁ ଯେଉଁଥିପାଇଁ ଏତେ ଡର, ଏତେ ଖୋସାମତି ?

ସେଦିନ ରାତିରେ ତାକୁ ନିରୋଳାରେ ବସି ବସି ଭାରି ଡର ମାଡୁଥିଲା । ସେଇ ଉଦ୍‌ବେଗରେ ସେ ଗୁଣୁଗୁଣୁ ହେଉଥିଲା । 'ଅନୁସରିତ, କାଳ ଯାକ ଗଲା ସରିତ... ସେଇ ଗୀତଟାକୁ କେତେଥର ବା ସେ ନ ଶୁଣିଚି ? କିନ୍ତୁ ତା' ବାପ ତାକୁ ଆଉ ପ୍ରକାରେ ବୋଲୁଥିଲା । କାହିଁକି ସତେ ତା' ବାପ ମରିଗଲା ? କାହିଁକି ତାଙ୍କର ଏମିତି ଦଶା ହେଲା ? ଜେମା ଅପା କାହିଁକି ସବୁଦିନ କାନ୍ଦିବାକୁ ଥିଲା, ଫୁଲ ଗୁନ୍ଥିବାକୁ ଥିଲା ? – ସେ ବୁଝିପାରେନା ।'

ସେ ଗୁଣୁଗୁଣୁ ଗାଉଥାଏ । ଭାବୁଥାଏ ସବୁଯାକ ମାଳ ଦେଉଳ ଦୁଆରେ ଥୋଇଦେଇ ଚାଲିଯିବ । ଏତିକିବେଳେ ଦୋଳମଣ୍ଡପ ଆଡୁ ଜଣେ କିଏ ଆସିବା ଦେଖାଗଲା । ହଲିଝୁଲି ଗୁଣ୍ଡୁଣି ହାତୀଟିଏ ପରି ସେ ଆସୁଥାଏ । ପାଖକୁ ଆସିବାରୁ ରତନା ଦେଖିଲା ତା' ମେଲାଦେହ ।

ଧୋତିଖଣ୍ଡକ ବାହୁଣିଆ ପିନ୍ଧା ଧୋବ ଫରଫର । ଏତେ ଓସାର ବୁକୁ ଉପରେ ପାତଳ ପାଛୁଡ଼ା ଖଣ୍ଡ ମଧ ଧଳା ।

ରତନା ଫିକ୍‌କିନା ହସିଦେଲା । 'ଆସିଗଲେ ରସିକ ଷେଣ୍ଢ! ତୁଳସୀ ମାଳଟିଏ ଭଲା ୟାଙ୍କ ହାତରେ ଉଠିଯାନ୍ତା! ଠାକୁର ବି ଆଜି ଶୋଇବ ନାହିଁ ନା କ'ଣ? ଭଲା ରସିକ ସେ ଠାକୁର!'

ସେ ଆସି ରତନା ଆଗରେ ଠିଆହେଲା । ତାକୁ ରତନା ଦେଖିଚି ନା କ'ଣ ଚିହ୍ନାଚିହ୍ନା; କିନ୍ତୁ ଠଉରେଇ ହେଲା ଭଳି ନୁହେଁ । ତା' ଦେହରେ କ'ଣ ଗୋଟେ ବାସ୍ନା ମାରିଥାଏ ଯେ ମହକିଯାଉଥାଏ । ଫୁଲଠୁ ବଳି ମହକ ।

ଶୁଣ୍ଢ ପରି ହାତ ବଢେଇ ସେ ଗଭାମାଳଟାକୁ ଧଇଲା । ରତନା ଶୀତେଇ ଉଠିଲା । ତୁଣ୍ଡରେ ପ୍ରତିବାଦ କଲା, "ହାଁ ହାଁ, ସେଇଟା ପାଞ୍ଚଟଙ୍କା ।"

ଗରାଖ ତାକୁ ଏତେଟାମାନ ଆଖିକରି ଖାଲି ଅନେଇଲା । ଫୁଲମାଳଟା ଲୁଟି ନେବ କି ଆଉ? କିନ୍ତୁ ଅଣ୍ଟା ଖୋସଣିରୁ କାଢି ସେ ବଢାଇଦେଲା ଦଶଟଙ୍କିଟାଏ । ରତନା ତରବରରେ ସେ ଖଣ୍ଡ ନେଇ ପାଞ୍ଚଟଙ୍କା ଗରାଖର ଗଦିଭଳି ପାପୁଲିରେ ଥୋଇଦେଲା । ଦି'ଖଣ୍ଡ ଦି'ଟଙ୍କିଆ ଖଣ୍ଡେ ଟଙ୍କାକିଆ ।

ଶୁଣ୍ଢରେ ଫୁଲମାଳ ଦୋହଲାଇ ହଲିଝୁଲି ଗୁଣ୍ଡୁଣିଟି ଚାଲିଥିଲା ପର୍ଯ୍ୟନ୍ତ ରତନା ପୁଲକିତ ହୋଇ ଚାହିଁରହିଥିଲା ପଛକୁ । ମୋଡ ପାଖରେ ସେ ଆଉ ଦିଶିଲା ନାହିଁ ।

ରତନା ଭାବିଲା, "ବାଃ, ଏଇ ଯେ ହେଲା ଅସଲି ଗରାଖ । ପଦେ ହେଲେ ପାଟି ଫିଟାଇଲା ନାହିଁ । ଟଙ୍କା ଗଣିଦେଇ ନେଇଗଲା । ଇସ୍! କି ମଣ୍ଡଣି ହୋଇଥିବ ଠାକୁର । ହେଲେ ଠାକୁରଟାର ଗଭା ଥିଲେ ସିନା ଏ ମାଳଟା ଶୋଭାପାଇଥାନ୍ତା ।"

ରତନା ଖୁସିରେ ଆଉ ଥୟ ହୋଇ ବସିପାରିଲା ନାହିଁ । ବାରମ୍ବାର ମୁଣା ଭିତରେ ଦଶଟଙ୍କିଆଟାକୁ ସେ ଦରାଣ୍ଡୁଥିଲା ।

ରିକ୍‌ସାରେ ଦୁଇଟା ଟୋକା-ଟୋକି ଆସିଲେ । ମଲ୍ଲୀମାଳଟିକୁ ନେଇ ହସି ହସି ସେ ଟୋକା ଝିଅ ଖୋସାରେ ଗୁଡାଇ ଦେଲା । ରିକ୍‌ସା ଚାଲିଗଲା ସମୁଦ୍ରମୁହାଁ ।

ମନ୍ଦିର ମୋଡରୁ କିଏ ଦୁଇଜଣ କୁହାକୁହି ହୋଇ ଚାଲିଗଲେ ଯେ ଠାକୁର ବେଶ ଆହୁରି ସରିନାହିଁ ।

ରତନାର ମାଳ ବି ତ ସରିନାହିଁ । ଏ ତୁଳସୀ ଦୟଣା ଆଉ କାହା ପାଇଁ? ଯୂଇଫୁଲର ଗଭାମାଳ ପିନ୍ଧିଲା ପରେ ଠାକୁରର ବୋଧେ ଚରିତ୍ର ଖରାପ ହୋଇଗଲା । ସେ ଏ ପତର ମାଳକୁ କାହିଁକି ମନ କରିବ?

ରତନା ଆଉ ମାଳ ଧରି ଠିଆ ନହୋଇ ଏଠିସେଠି ଟିକିଏ ବୁଲିଲା । ଦୂରରୁ କୀର୍ତ୍ତନ ଶୁଭୁଥାଏ । ଆରପାଖ ପାନ ଦୋକନ ଆଗରେ ହୋ ହୋ ହସ ଶୁଭୁଥାଏ । ଚାରି ବୟସର ଚାରିଟା

ଟୋକା ଗମାତରେ ଗୋଡିଆଗୋଡି ଖେଳୁଥାନ୍ତି ।

କେତେବେଳ ଏମିତି ବିତିଗଲା । ତା' ଉଲ୍ଲାସ ତଳେ ଲୁଚି ରହିଥିବା ଭୋକ ପୁଣି ଦିକ୍ ଦିକ୍ ହୋଇ ଜଳି ଉଠିଲା । ନିଦ ନଇଁ ଆସିଲା କୁହୁଡିପରି । ତାକୁ ଉଦାସ ଲାଗିଲା । ହାଲିଆ ଲାଗିଲା ।

ନା, ଆଉ କେହି ବୋଧେ ଆସିବେ ନାହିଁ ।

ନ ହେଲା ନାହିଁ । ଏ ତୁଳସୀ ଦୟଣାକୁ ଫେରାଇ ନେଲେ ବି ଅପା କିଛି ଭାବିବ ନାହିଁ । ଗଭାମାଳଟା ତ ଉଠିଯାଇଚି ।

ସେ ମାଳ ଋରିଖଣ୍ଡ ଧରି କ'ଣ ମନ ପାଇଲା କେଜାଣି, ରଡି ଛାଡି ଡାକିଲା, "ହେ ମାଳ ନିଅ ମାଳ! ତୁଳସୀ ଦୟଣା ଲାଗି କର ।"

ଦୀପାବଳିର ଉଆଁସ ରାତିରେ ପାହାନ୍ତା ପହରର ଗୋଟିକିଆ ବାଣ ପରି ସେ ଶବ୍ଦ ମିଳେଇଗଲା ଅନ୍ଧାର ଭିତରେ । ନିଛାଟିଆ ଦାଣ୍ଡଟାରେ ସେ ଓଲାଟୋକା କାହିଁକି ସେମିତି ଡାକୁଥିଲା ? କାହାକୁ ଡାକୁଥିଲା ? – ବେଳୁବ କାହାଁକା!!

ରତନା ଆସ୍ତେ ଘରଆଡେ ମୋହିଁଲା । ଦେଉଳ ଦ୍ୱାର ପାରି ହୋଇ ଗଲାବେଳକୁ ଋରିଆଡକୁ ଥରେ ଋହିଁଦେଲା । ଦୁଆର ତଥାପି ମେଲାଥାଏ । ଜଣେ ହେଲେ କେହି ଯାଉ ନଥାଏ କି ଆସୁ ନଥାଏ ।

ସେ ଛପ୍‌କିନା ଅଟକି ଗଲା ତା'ପରେ ବୁଲିପଡି ଭୁସ୍ ଭୁସ୍ ହୋଇ ପଶିଗଲା ମନ୍ଦିରକୁ । ଏକମୁହାଁ ଧାଇଁଲା ପରି ଟାଉ ଟାଉ ପଶିଗଲା ।

ଭିତରେ ଦୀପଟିଏ, ଠାକୁରଟିଏ, ପୂଜକଟିଏ, ଭକ୍ତଟିଏ କିଛି ବାରିପାରିଲା ନାହିଁ । ଅର୍ଗଳ ପାଖକୁ ଯାଇ ଟେକିଦେଲା ମାଳଋରିଖଣ୍ଡ ।

"ଲାଗି କରିଦିଅ ଠାକୁରକୁ ।" କହି ବୁଲିପଡୁଥିଲା । ପଛରୁ କେହି ଜଣେ କହିଲା, "ହେ ଟୋକା, ତତେ ପଇସା କିଏ ଦବ ?"

ରତନା ପଛକୁ ନ ଋହିଁ "ମାହାଳିଆ ଦେଇଦେଲି, ଲଗେଇଦିଅ" – କହି ସେ ଡିଆଁଟାଏ ମାରି ବାହାରି ଆସିଲା । ତାକୁ ଲାଗୁଥିଲା, ବୋଝଟାଏ ଓହ୍ଲେଇଗଲା ପରି । ଲାଗୁଥିଲା, ସେ ହରିଣ ଛୁଆଟାଏ । ସେମିତି ଡେଇଁ ଡେଇଁ ସେ ଆସି ତା' ଘର ସାମ୍ନାରେ ପହଞ୍ଚିଗଲା ।

ସେଇଠି ତାକୁ ହଠାତ୍ କ'ଣ ସବୁ ମନେଇ ହୋଇପଡିଲା । – ଅପା ଖାଇ ନଥିବ! – ଅପା ହିସାବ ମାଗିବ! – ଅପା କାନ୍ଦୁଥିବ!

ସେ ଆସ୍ତେ ଘର ଭିତରେ ପଶିଲା ।

ପିଣ୍ଡା ଉପରେ ବଡ ଆଲୁଅଟା ଜଳୁଥିଲା । ଅପା ପଶିଯାଉଥିଲା ଘର ଭିତରକୁ । ଅଗଣା ମଝିରେ ରତନା ଥ-ହେଇ ଠିଆ ରହିଗଲା । ତା' ଆଖି ଢିମା ଢିମା । ତା' ବୁକୁ ଧଡ ଧଡ ।

ଯୂଇ ଫୁଲର ସେ ଗଭାମାଳଟା ଅପା ଜୁଡାରେ ଗୁଡେଇ ହେଇଚି କେମିତି ?...ସେ କ'ଣ

ଆଉ ଗୋଟାଏ ଗୁନ୍ଥି ପିନ୍ଧିବି ? – ତା' କେମିତି ସମ୍ଭବ ? ସେଥିପାଇଁ ଏତେ ଫୁଲ କାହିଁ ?

"କିରେ, ଠିଆ ରହିଲୁ କାହିଁକି ? ଆସୁନୁ ?" – ଓ, ଅପା ତା'ହେଲେ କାନ୍ଦୁନାହିଁ । ରତନା ଅପା ପଛେ ପଛେ ରହି ଖାଲି ସେ ଜୁଡାଟାକୁ ବଲବଲ ଚାହିଁରହିଲା ।

ପିଣ୍ଡା ଆଲୁଅ ପାଖରେ ଦୁଇଟଙ୍କି ଦି'ଖଣ୍ଡ ଆଉ ଟଙ୍କିକିଆ ନୋଟ୍‌ଟିକୁ ଦେଖି ସେ ଚମକି ପଡିଲା । ଯାକୁ ତ ସେ ଫେରସ୍ତ ଦେଇଥିଲା ସେଇ ଗରାଖକୁ । ଜେମା ଅପା ସବୁ ଜାଣିଲା ଢଙ୍ଗରେ ରତନାକୁ ଚାହିଁ ମୁଚ୍ ମୁଚ୍ ହସୁଥିଲା । ରନ୍ଧାଘରେ ପଶି ତା' ପାଇଁ ଖାଇବାକୁ ବାଢୁଥିଲା ।

ରତନାକୁ ଦିଶୁଥିଲା ଧୋବ ଧୋତି ପିନ୍ଧା ଗୁଣ୍ଡୁଣି ହାତୀ ପରି ସେ ଗରାଖଟା । ...ସେ ତେବେ ଗଭାମାଳଟିକୁ ଫେରେଇଦେଲା । ଟଙ୍କା ଫେରେଇ ଦେଲା । ଦେଲା ଖାଲି ଏ ଦଶଟଙ୍କି ଖଣ୍ଡ !

କି ପୁଣ୍ୟ ଅର୍ଜିଲା ସେ ଦଶଟଙ୍କାରେ ?



## ମୋ ପାଖରେ ସେ କିଏ ?

ଆଜକୁ କାହିଁ କେତେ ବର୍ଷ ହେଲା ମୁଁ ସ୍ଥିର ହୋଇ କାହା ସହିତ ଘଡିଏ କଥା ମଧ ହୋଇପାରେ ନାହିଁ । ଅଳ୍ପ ହସିଦିଏ, କ୍ଷମା ମାଗିନିଏ ଏବଂ ପୁଣି ଧାଏଁ । ଯାଚିବା ପାନ ଖାଇପାରେ ନାହିଁ । ଭଦ୍ରତାକୁ ବେଖାତିର କରେ । ଫୁଲଟିଏ ମୋ ହାତରେ ଅଣହେଳାରେ ମଉଳି ଯାଏ । ମୁଁ ଅଜାଣତରେ ତାକୁ କେଉଁଠି ବାଟରେ ପକେଇଦିଏ ।

କ'ଣ କରାଯାଏ ? ମୋ ବିପତ୍ତି ତ ମୋତେ ବଳେଇ ଯାଏ । ହାତୀ ତଡୁଥାଏ ପଛରୁ । ମୋର ବା ଆୟତ୍ତ କ'ଣ ?

ହେଇ ଗତ ସୋମବାର କଥା । ସକାଳ ଆଠଟା ବେଳେ ମୁଁ ଏଗାର ନମ୍ବର ଟାଉନ୍ ବସ୍‌ରୁ ଓହ୍ଲେଇ ନଅ ନମ୍ବର ପାଇଁ ଅପେକ୍ଷା କରିଥାଏ । ସବୁଦିନର ଜଳଖିଆ ଟଙ୍କାଟି କାଢି ଇଡ୍‌ଲି ବରାଦ କରିଥାଏ । ମୋ ସାମ୍ନା ଚୌକିରେ ଜଣେ ବୟସ୍କ ଲୋକ ମୋତେ ଚାହିଁରହିଲେ । ମୁଁ ପ୍ରଥମେ ଖାତିର୍ କଲିନାହିଁ । ତା'ପରେ ମୋର ମନେହେଲା ସେ ଭଦ୍ରଲୋକ ଖୁବ୍ ବିଚିତ୍ର ଜଣାଯାଉଛନ୍ତି ! ଅଳ୍ପ ହସିଦେଇ କହିଲେ, "ଆପଣ କ'ଣ ସବୁଦିନ ଏଇଠି ଜଳଖିଆ କରି ଯାଆନ୍ତି ।"

ମୁଁ ଏ ପ୍ରଶ୍ନର କୌଣସି ଉତ୍ତର ଦେବା ପ୍ରୟୋଜନ ମଣିଲି ନାହିଁ । ବେକାର ବସି ଗପ ମାରିବା ଲୋକଙ୍କ ପାଇଁ ସମୟ ଦେବା ମୋ ପକ୍ଷରେ ସମ୍ଭବ ନଥିଲା । ମୁଁ ଟାଉ ଟାଉ ଖାଇଦେଇ ଉଠିବାର ଉପକ୍ରମ କରୁଥିଲି । ସେ ପୁଣି କହିଲେ, "ଆପଣଙ୍କୁ ମୋର କିଛି ପଚାରିବାର ଥିଲା ।"

"ହୁଁ" କହି ମୁଁ ଉଠିଲି ହାତ ଧୋଇବାକୁ । ରୁମାଲରେ ମୁହଁ ପୋଛୁପୋଛୁ ପଚାରିଲି, "କହନ୍ତୁ" ଏବଂ ଘଣ୍ଟାକୁ ଚାହିଁ ମୋ ବେଗ୍‌ଟିକୁ ଉଠାଇଲି ।

ସେ କହିଲେ, "ବସ୍ ଆସିବାକୁ ଆଉ ଦଶମିନିଟ୍ ସମୟ ଅଛି । ମୁଁ ବି ସେଇ ନ' ନମ୍ବର ବସ୍‌ରେ ଯିବି । ବସନ୍ତୁ ନା !"

ମୁଁ ଅଳ୍ପ ହସିଦେଇ କହିଲି, "ମୋ ପାଇଁ କିନ୍ତୁ ମିନିଟିଏ ବି ସମୟ ନାହିଁ । ମୋର ଦାୟିତ୍ୱ ଆପଣ ବୁଝି ପାରିବେ ନାହିଁ ।" ମୁଁ ତାଙ୍କୁ ଧନ୍ୟବାଦ ସୁଦ୍ଧା ନଦେଇ ବୁଲିପଡିଲି ।

ସେଦିନ ଔଷଧ ଦୋକାନ ଫିଟିନଥିଲା । ଫେରି ଆସିଲା ବେଳକୁ ଗୋଟାଏ ଶିଙ୍ଘ ପାନିଆ

କିଣିଲି । ଚିତ୍ର ମାଗାଜିନ୍‌ଟିଏ ମଧ କିଣିଲି । ଔଷଧ ପଇସାଟା ସେଥିରେ ହୁଏତ ସରିଗଲା ! – ଓଃ...ସରିଗଲେ ସରିଗଲା । କେତେ ଚିପିହେଇ ମଣିଷ ଚଳୁଥିବ ସବୁବେଳେ । ବୁଢ଼ାବୁଢ଼ୀ ହେଲେ ରୋଗ ହବ । ସେମାନେ ମରିବେ । ଔଷଧ ତାଙ୍କୁ ରଖିପାରିବ ନାହିଁ । ପାନଦୋକାନୀକୁ ଦୁଇଖଣ୍ଡ କିମାମ ଆଉ ଗୋପାଳ ପକାଇ ଭାଙ୍ଗିବାକୁ ବରାଦ କରି ମୁଁ ଘଣ୍ଟା ଦେଖୁଥାଏ ଏବଂ ମୋ କପାଳ ଜକେଇ ଯାଉଥାଏ ଝାଳରେ । ନ ଆସିବାଯାଏଁ ସେ ନଅନମ୍ବର ବସ୍‌ଟା ମୋ ପଛରେ ହାତୀପରି ମଡେଇ ପଡୁଥାଏ ! ଭଉଣୀ ପାଇଁ ତ ପ୍ରସଙ୍ଗ ଖୋଜୁଛି-କୁଞ୍ଜକୁ କଲା ପାଇଲି ନାହିଁ । ତା' ସାଙ୍ଗକୁ କହି ରଖିଛି । ସେ ବରପାତ୍ର କଥା ବୁଝିକହିଲେ ମୁଁ ଯିବି । ମୁଁ କ'ଣ ନାହିଁକରୁଛି ? ଶଳାଟାର ଆଡମିସନ୍ ହବ ! ପାଠ ଭଲ ପଢୁଥିଲେ ଏତେ ଧନ୍ଦା କାହିଁକି ଚାଲିଥାନ୍ତା ? ସେ କିରାଣିଟାକୁ ପଇସା ଦିଆ ସରିଲାଣି । ସେ କୌଶଳରେ ତାକୁ ଗଳେଇନବ । ଦେଖିବା । ସବୁ ଗୁଡାକ ଠକ । ଏତେ ଦିନ ହେଇଗଲା, ଖାଲି ଗଡଉଚି ।

"ଆଜ୍ଞା ପାନ"

"ଆଚ୍ଛା, ଆଚ୍ଛା ! କେତେ ହେଲା ?"

"ଅଶୀ ପଇସା ।"

"ଏକାଥରେ ଟଙ୍କାଏ କରିଦଉନ !"

ଘଣ୍ଟା ଦେଖି ଦେଖି ତରବର ହୋଇ ଚାଲିଆସିଲା ବେଳକୁ ଜଣେ ଦି'ଜଣଙ୍କ ଦେହରେ ବାଡେଇ ହୋଇଗଲି । ସେ ବି କୋଉ ନୂଆ କଥା ? ପ୍ରତିଦିନ ଦିହ ସୁହା ଘଟଣା ।

ନଅ ନମ୍ବର ବସ୍ ବୋଧେ ଗଡିଯାଉଚି ଏବଂ ଯାତ୍ରୀ ସୁଅ ଗୋଡେଇଛନ୍ତି । ମୁଁ ବି ଧାଇଁଲି । ଖୁବ୍ ପରିଶ୍ରମ ପଡିଲା । ଠେଲା ପେଲା । ଶୁଣିଲି ସେଇଟା ସାତନମ୍ବର ବସ୍ ।

ଓହ୍ଲେଇ ଆସିଲି । ଜାମା ଝାଡି ନେଲି । ଶଃ – ବୃଥାରେ ଏତେ ପରିଶ୍ରମ କରୁଥିଲି । ମନକୁମନ ବିଡ୍ ବିଡ୍ ହେଉଥିଲି । ଆଜି ନଅ ନମ୍ବରଟା କାହିଁକି ଏତେ ବିଳମ୍ବ କରୁଚି କେଜାଣି ? ଜଣେ ପାଖରେ ଠିଆ ହୋଇଥିଲେ, ନିର୍ବିକାର ସ୍ୱରରେ କହିଲେ "ନଅ ନମ୍ବର ବସ୍ ଆଜ୍ଞା କେତେବେଳୁ ଛାଡି ସାରିଲାଣି ।" ହେଁ ? ଛାଡି ଦେଲା ? ତେବେ କ'ଣ ହବ ?...କେମିତି ଯିବି...କୁଆଡେ ଯିବି ? "କୁଆଡେ ଯିବେକି"...ଛାଡ ଯାକୁ କହି ଲାଭ କ'ଣ ।

ସେଇ ସାତ ନମ୍ବରରେ ଅଧେ ବାଟ ଯାଇ ହେବ । ସେଇଠୁ ବରଂ ରିକ୍‌ସା କରି ନେଲେ ଚଳିବ । ଏତିକିବେଳେ ସାତ ନମ୍ବର ମଧ୍ୟ ଗଡିବାକୁ ଆରମ୍ଭ କଲା । ମୁଁ ପୁଣି ଯୋଡି ଛାଡି ପହଂଚିଲି । ଦୁଆର ମୁହଁରେ ଓହଳି ରହିଥିବା ଲୋକଙ୍କୁ ଆଡେଇ ଭିତରେ ପଶିବା ସମ୍ଭବ ନଥିଲା । ମୁଁ ଉପାୟ ନପାଇ କୌଣସି ପ୍ରକାରେ ଗୋଟାଏ ହେଣ୍ଡଲ ଧରି ଓହଳି ପଡିଲି । କେହି ଜଣେ ମୋ ଅଣ୍ଟାରେ ହାତ ବେଢେଇ ଭିତରକୁ ଓଟାରି ନେଲା । ବିଭିନ୍ନ ଗନ୍ଧର ମାଂସପିଣ୍ଡମାନଙ୍କୁ ତୁଳା ତକିଆ ଭଳି ଠେଲି ତା' ଭିତରେ ମୁଣ୍ଡ ଗଳେଇ ମୁଁ ବସ୍ ଭିତରେ ପଶିଗଲି । ସେ ସମୟରେ ଦର୍କାର ପଡିଥିଲେ ମୁଁ ଯାହାସାଙ୍ଗେ ହେଲେ ଲଢିଯାଇଥାନ୍ତି । ଧିକ ଶାଳା ବେକୁବ୍ । ହତଭାଗ୍ୟ !

କାହିଁକି ଏମିତି ଏ ସଂସାରରେ ବଂଚିଚୁ ?

ଅଫିସରେ ଡେରି । ଦାନ୍ତ ନେଫଡା ! ହାତ ଧରା, ନେହୁରା ! ଓଃ ଆହୁରି ଜ୍ୱାଳା । ସେଇଠି ଦେଖିଲି, ମାଗାଜିନ ଖଣ୍ଡ ବାଟରେ ଚାଲିଯାଇଚି । ପାନିଆ ଖଣ୍ଡ ଗଳି ପଡିଚି । ଦଶ ଟଙ୍କା ଶ୍ରାଦ୍ଧ – ! ଗୋଟାଏ ମୁଥି ମାରିଲି କାଠ ଟେବୁଲ ଉପରେ । ହାତଗଣ୍ଠି ବଥା କଲା – କିନ୍ତୁ ଭଲ ଲାଗିଲା । ସେ ଦିନଟା ଏମିତିଖାଲି ଚମକି ଚମକି ବିତିଗଲା । ଫେରିଲାବେଳକୁ ସେଇ ଠେଲାପେଲା, ସେଇ ଗହଳି, ସେଇ ଉଛୁଳି ପଡୁଥିବା, ଚିରକାଳ ଘୁଞ୍ଚୁ ଯାଉଥିବା ବସ୍ ! ଘରେ ଲୁହା ପଞ୍ଜୁରୀମାନଙ୍କରେ ସ୍ଥିର ଅଥଚ କ୍ଷୁଧାର୍ତ୍ତ ସମସ୍ୟାମାନ ସେମିତି ଅପେକ୍ଷା କରି ରହିଥାନ୍ତି । ସେମାନଙ୍କୁ ନିଜର କିଛି କିଛି ଦୀର୍ଘଶ୍ୱାସ ଏବଂ ରକ୍ତ ବାଣ୍ଟି ଦେଲାପରେ, ପୁରୁଣା ଶେଯରେ ପୁରୁଣା ଚାଦରପରି ମୁଁ ବିଛେଇ ହୋଇ ଯାଇଥିଲି ।

ତା'ପର ଦିନ ସେଇ ଇତ୍‌ଲିଖିଆ ବେଳ । ଏବଂ ଆଶ୍ଚର୍ଯ୍ୟର କଥା, ଟେବୁଲ ଆରପାଖେ ସେଇ ବୟସ୍କ ଭଦ୍ରଲୋକ । ଆମ ଆଖି ମିଶିବା ମାତ୍ରେ ସେ ସାମାନ୍ୟ ହସି ଦେଲେ । କିଛି ନକହି ବସି ରହିଲେ । ବୋଧହୁଏ ଅପେକ୍ଷା କଲେ । ମୁଁ ଇତଲିକୁ ଅପେକ୍ଷା କଲି । ଘଣ୍ଟା ଦେଖିଲି । ଟେବୁଲରେ ବାଁହାତରେ ତବ୍‌ଲା ବୋଲ ବଜେଇଲି । ଏ ପାଖ ଦେଖିଲି । ସେ ପାଖ ଦେଖିଲି ।

ହଠାତ୍ ପଚାରିଲି, "ଆପଣ କ'ଣ ଆଜି ମଧ୍ୟ ସେଇ ନ' ନମ୍ବର ବସ୍‌କୁ ଅପେକ୍ଷା କରିଛନ୍ତି ।" "ହଁ" – ଛୋଟ ଉତ୍ତର, ଛୋଟ ହସ । ଭାରି ସୁଇଟ୍ ।

ଇତଲି ଉଦ୍ଦେଶ୍ୟରେ ଥରେ ପଛକୁ ଚାହିଁଲି । ଘଣ୍ଟା ଦେଖିଲି । ପୁଣି ପଚାରିଲି "କାଲି ଆପଣ କ'ଣ କହିବାକୁ ଚାହୁଁଥିଲେ ନା ?" "ହଁ" – ସେମିତି ଛୋଟ ଉତ୍ତର, ଛୋଟ ହସ...ନନ୍‌ସେନସ ! ଭାରି ଦେଖେଇ ହଉଚି ।

ଚିଡିଲା ସ୍ୱରରେ କହିଲି, "କହୁନାହାନ୍ତି ।"

ସେ ସେମିତି ଶାନ୍ତ ନମ୍ରଭାବେ କହିଲେ, "ଆପଣଙ୍କର ସମୟ ଅଛି ତ ?"

...ଓ...ସେ ଅପମାନ ଦବାକୁ ଚାହୁଁଛି ? ଆବେ ମୁଁ କେଆର୍ କରେନା । ଆଜି କି କାଲି ଭଳି ଖାତିର ନକରି ଉଠି ଯାଇପାରେ ! କହିଲି "ବିସ୍ତର ସମୟ ଅଛି । କହନ୍ତୁନା !"

ସେ ଏଥିରେ ସଂପୂର୍ଣ୍ଣ ପରାସ୍ତ ହୋଇଯିବେ ବୋଲି ମୁଁ ଆଶା କରିଥିଲି । ସେ କିନ୍ତୁ ସେପରି କୌଣସି ଲକ୍ଷଣ ପ୍ରକାଶ କଲେ ନାହିଁ – "ବେଶି କିଛି ନୁହେଁ, ମୁଁ ପଚାରିବାକୁ ଚାହୁଁଥିଲି ଆପଣ ଈଶ୍ୱରଙ୍କ ସ୍ପର୍ଶ ପାଇଲେଣି କି ?"

ହେଁ ?...ହେ...ହେ...ହେ...ହେ...ହୋ ହୋ ହୋ ହୋ!!

ସାରା ହୋଟେଲରେ ସମସ୍ତେ ମୋରି ଆଡକୁ ଅନେଇଲେ । ସେ ଭଦ୍ରଲୋକ ଅପେକ୍ଷା କରୁଥିଲେ ମୋର ଉତ୍ତରକୁ । ...ଏତେ ପାଟିରେ ଏତେ ସ୍ପଷ୍ଟ ଉତ୍ତରଟାକୁ ସେ କ'ଣ ବୁଝିପାରୁ ନଥିଲେ ? ମୁଁ ଏପାଖ ସେପାଖ ମୁଣ୍ଡ ଲାଡି ଅଳ୍ପ ଶବ୍ଦରେ ଆଉ କିଛି ସମୟ ହସିବାକୁ ଲାଗିଲି । କାରଣ ତା'ଠାରୁ ବଳି ଆଉ ଅଧିକ ହାସ୍ୟାସ୍ପଦ ପ୍ରଶ୍ନ ମୋତେ କେହି କେବେ ପଚାରି ନଥିଲା ।

ତା'ପରେ ସର୍ବଜାଣ ଢଙ୍ଗରେ ଦୟା କଲାପରି କହିଲି, "ଆପଣ ଜଣେ ପାଦ୍ରୀ, କିମ୍ବା ତାଙ୍କ ଦଲାଲ୍ । ଧର୍ମର ଥୋପ ଗିଳେଇବା ବୋଧହୁଏ ଆପଣଙ୍କ ବୃତ୍ତି ! – ହଉ, ଆପଣ ଏଥର କିନ୍ତୁ ଭୁଲ୍ ଲୋକ ହାବୁଡରେ ପଡିଗଲେ । ଏଠି ଆପଣଙ୍କର କୌଣସି ଚାଲାକି କାଟିବ ନାହିଁ । – ଛାଡନ୍ତୁ, ମୋର ଇଡ୍‌ଲି ଆସିଗଲା । ସମୟ ବି ସରିଗଲା ।"

ସେ ଉଠିଯିବେ ବୋଲି ଆଶା କରିଥିଲି – ଉଠିଲେ ନାହିଁ । ବରଂ ସେ ଅଦ୍‌ଭୁତ ପ୍ରଶ୍ନର ଉତ୍ତରକୁ ଅପେକ୍ଷା କଲାପରି ମୋ ଆଡେ ଚାହିଁ ରହିଲେ । ମୁଁ ପୁଣିଥରେ ବେଖାତିରଭାବେ ହସିଦେଇ ଉଠିଯିବାକୁ ବସିଥିଲି । କ'ଣ ମନେହେଲା ଭର୍ତ୍ସନା କଲାପରି କହିଲି "ଆପଣ ଭଲା ସେ ସ୍ୱର୍ଗରୁ ଥୋଡାଏ ଖଣ୍ଡେ ପାଇଯାଇଛନ୍ତି ?"

ସେ ଅବିଚଳିତରହି କହିଲେ "ଭାବୁଛି ତ' ପାଇଛି ବୋଲି । ଆଶ୍ଚର୍ଯ୍ୟର କଥା ଦଶବର୍ଷ ତଳେ ଅବିକଳ ଆପଣଙ୍କ ଭଳି ମୁଁ ଉତ୍ତେଜିତ ହେଉଥିଲି ଏବଂ ପ୍ରାୟ ଏହି ଭାଷାରେ ପ୍ରତିକ୍ରିୟା ପ୍ରକାଶ କରିଥିଲି ।"

ସେ ମୋ ଆଡେ ଚାହିଁ ପୁଣି ସେମିତି ଆସ୍ତେ ଟିକିଏ ହସିଲେ । "ଆଜି ବୋଧହୁଏ ଆପଣଙ୍କୁ ଆଉ ସମୟ ମିଳିବ ନାହିଁ । ଏଇ ନଅ ନମ୍ବର ବସ୍ ଆସିଗଲା । ଚାଲନ୍ତୁ ଯିବା । କାଲି ଦେଖା ହେଲେ କହିବି ।"

"ହୁଃ – ମୁଁ ତାଙ୍କୁ ଅପେକ୍ଷା ନକରି ବସ୍‌କୁ ଦୌଡିଗଲି । ତାଙ୍କ ସାଙ୍ଗେ ଆଦୌ ଦେଖା ନହେବା ଭଳି ଓହ୍ଲେଇବା ରାସ୍ତା ପାଖେରେ ବାହାରକୁ ମୁହଁକରି ବସିଗଲି । ଭାବିଲି, 'ବେହିଆ ଆଉ କାହାକୁ କହନ୍ତି – କହିଲା କ'ଣ ନା ସେ ସେଥିରୁ ପୁଳାଏ ପାଇଛି ବୋଲି ଭାବୁଛି !...ହି ହି ହି... ! ଏଠି ବାପ ଈଶ୍ୱର ଫିଶ୍ୱର କିଛି ନାହିଁ । ଏଠି ଖାଲି ଏଇ ଘାଇଁ ଘାଇଁ ରାଇଁ ରାଇଁ, ଧୂଳି, ଗହଳି ପକାଉଠା ଚାଲିଚି । ଆଉ ଚାଲିଥିବ ଶେଷଯାଏଁ ।"

ଦିନସାରା ସେଇକଥା ଗୁଡେଇ ତୁଡେଇ ହୋଇ ମନେ ପଡିଯାଉଥାଏ । ...ଆଚ୍ଛା, ମୋଟ ଉପରେ ସେ କ'ଣ କହିବାକୁ ଚାହୁଁଛି, ଶୁଣିଦେଲେ କ୍ଷତି କ'ଣ ? ଆଉ ଶହ ଶହ ଭଣ୍ଡଙ୍କ ଭଳି ଏ ବି' ଗୋଟାଏ ହେଇଥାଇପାରେ, କିନ୍ତୁ ଦେଖିଲେ ସେମିତି ଜଣାଯାଉନାହିଁ ତ ! ଏତେ ସ୍ଥିର ସେ ରହିପାରୁଛି କେମିତି ? ତା' ବାହାରେ ସେ ଏତେ ଲୋକଭିତରୁ ମୋତେ ହିଁ କାହିଁକି ବାଛିଲା ? ମୁଁ ବୋଧେ ସବୁଠାରୁ ବେଶି ଓଲା ଦେଖାଯାଉଥାଇପାରେ । ମୋ ସ୍ତ୍ରୀ ବାରମ୍ବାର ସେଇ କଥା କହେ ବୋଲି ମୋର ତା' ସହିତ ଝଗଡା । ମୋ ଝିଅ କହେ, ମୁଁ ଭାରି ସରଳ, ଅର୍ଥାତ୍ ସିମ୍ପଲ୍ ଦେଖାଯାଏ – ସେଭଳି 'ଅର୍ଥାତ୍' 'ନଲଗେଇଲେ ସେ କଥା କହିପାରେ ନାହିଁ । ଭାରି ଗୁମାନ ସେ ଟୋକୀର – ଖୁବ୍ ଗଉଁ, ଇଂରାଜୀ ପଢିଚି ବୋଲି ।'

"ସାର୍ ଫୋନ୍ ଆସିଥିଲା ଖାଡଙ୍ଗା ଡାକ୍ତରଙ୍କଠୁ!"

"ରାମମୂର୍ତ୍ତି ସାହେବ ଖୋଜୁଥିଲେ ।"

"ଆଜି ଛୁଟି ଫାଇଲ୍ ଫେରିଆସିଲା ।"

"ପଅର ଦିନ ଛୁଟି ହଉଚି ।"

ଧେତ୍‌ତେରି । ଏଇ ଗୁଡା ଚାଲିଛି, ଚାଲିଥିବ ସବୁ ଦିନ । ଫୋନ୍ ଫୋନ୍...ସାହେବ ସାହେବ...ଫାଇଲ୍ ଫାଇଲ୍!! ଘରକୁ ଫେରିଲି ଗୋଟାଏ ବୋଝ ମୁଣ୍ଡେଇଲା ପରି । ପିଲାଙ୍କୁ ବସେଇ ଗପିଲି । "ସେ ହାରାମି ମୋତେ କାହିଁକି ବାଛିଲା, ମୁଁ ବୁଝିପାରୁନାହିଁ ।"

"ତୁମର ଓଲୁ ଚେହେରା ଦେଖିଲେ ଯିଏ ମାନେ ସିଏ ଟମକୁ ମୁଣାରେ ପୁରେଇ ନେଇଯିବାକୁ ବସିବ ।"

"ବାପା ଓଲୁ ନୁହନ୍ତି ଜମା । ସେ କେବଳ ସିମ୍ପଲ ମାନେ ଖୁବ୍ ସରଳ ଦେଖାଯାନ୍ତି ।"

"ସେଇଗୁଡାକ ହିଁ ଓଲୁ!"

ସକାଳ ହଉ ହଉ ସେଇ ବୁଢା କଥା ମନେ ପଡିଗଲା । ତା' ଚେହେରା ତା' ହସ । ଆଉ, ସେ ଅଦ୍‌ଭୁତ ପ୍ରଶ୍ନ! ଦେଖାଯାଏଗା! ଆଜି ତାକୁ ଶୁଣିବି, ଆଉ ଦେବି ପାନେ ଯେ ଶାଲା ୟାଦ୍ ରଖିଥିବ ।

ଆଠଟା ବେଳେ ସେଇ ଇଡ୍‌ଲି ଦୋକାନ । ସେଇ ଟେବୁଲ ଏବଂ ସେ ପଟେ ସେଇ ବୃଦ୍ଧ ।

ଏଥର ସେ ତାଙ୍କ ଘଣ୍ଟା ଦେଖିବାର ଲକ୍ଷ୍ୟ କଲି । ମୁଁ ବସିଲି ଏବଂ ସେ ଅପେକ୍ଷାକଲେ । ସେ କିଛି ନକହିବାରୁ କହିଲି "କ'ଣ ଆଜ୍ଞା, କିଛିକହିବେ ପରା...ଈଶ୍ୱରଙ୍କ ସ୍ୱର୍ଗ ନା' କ'ଣ! କହନ୍ତୁ । ଆରେ ବିଅରର୍, ମୋ ପାଇଁ ଚାରିଟା ଇଡ୍‌ଲି ଚଞ୍ଚଳ ଆଣ୍-ହଁ ଆଜ୍ଞା କହନ୍ତୁ ।"

ସେ ଅଳ୍ପ ହସିଲେ । ମୋତେ ଦିଶିବା ଭଳି ଘଣ୍ଟାକୁ ଥରେ ପୁଣି ଚାହିଁଲେ, କହିଲେ, "ତା'ହେଲେ ଆପଣ ଆଜି ନିଶ୍ଚୟ ଶୁଣିବାକୁ ଚାହାନ୍ତି!...ନା କାଲିକୁ ରଖିବା ?" ...ହାରାମି କା ବଚ୍ଚା, ମତେ ପାଠ ଶିଖଉଚି! ...ଆଜ୍ଞା ଶୁଣିବାକୁ ମୋର ଗରଜ ପଡି ନାହିଁ । ଆପଣ ହିଁ ନିଜେ ଶୁଣେଇବାକୁ ତିନିଦିନ ହେଲା ଚେଷ୍ଟା କରୁଛନ୍ତି । ...ଆପଣ ଚାହିଁଲେ ନ ଶୁଣେଇ ପାରନ୍ତି । ମୋର ସେମିତି କିଛି ଜରୁରି ନୁହେଁ ଆପଣଙ୍କୁ ଶୁଣିବା ।

"ଠିକ୍ ଅଛି । ତା'ହେଲେ ଆପଣ ପ୍ରସ୍ତୁତ ନହେବା ଯାଏଁ ମୁଁ ଅପେକ୍ଷା କରିବି!"

ହୁଃ, ଏଗୁଡାକ ଖୁବ୍ ଚାଲାକ୍ । ଦି'ଚାରିଟା ଚତୁର କଥା କହି ଆଗ ବଶୀଭୂତ କରିନେବେ । ତା'ପରେ ଗିଳେଇବେ ଥୋପ।...କ'ଣ ଦରକାର ଏ ଅଜଣା ଲୋକଟାର ବକ୍‌ବାଜି ଶୁଣିବା ? ମୋର ଏତେ ଫୁରୁସତ୍ କାହିଁ ? ମୁଁ ମନେ ମନେ ଫଇସଲା କରିନେଇଥିଲି ତାକୁ ଜଣାଇ ଦେବାପାଇଁ ଯେ ଆଉ କାହାକୁ ସେ ଫାନ୍ଦି ପାରନ୍ତି । ମୁଁ ହାତରେ ଗାଲ ରଖି ତଳକୁ ଚାହିଁ ଭାବୁଥିଲି । ବୋଧହୁଏ ଦିଶୁଥିଲି ମନେ ମନେ ପ୍ରସ୍ତୁତ ହେଲାପରି । ସେଥିପାଇଁ ସେ କହିଲେ, "ଠିକ୍ ଅଛି – ତାହାଲେ ଶୁଣନ୍ତୁ!"

ମୁଁ ଆଖି ଟେକି ତାଙ୍କୁ ଚାହିଁଲି । ଅଳ୍ପ ହସିଲି । କିନ୍ତୁ କିଛି କହି ପାରିଲି ନାହିଁ ।

କଥାଟା ଏଇଭଳି ଆରମ୍ଭ ହୋଇଗଲା ଅକସ୍ମାତ୍, ମୋର ଅନିଚ୍ଛା ସତ୍ତ୍ୱେ ।

"ମୁଁ ଏକ୍‌ଜାକ୍ଟଲି ଆପଣଙ୍କର ପରି ବସ୍ ପଛରେ ଧାଇଁଥିଲି । ଘରେ ମୋ ଫାଦର୍ ଖୁବ୍

ବେମାର ପଡିଥିଲେ । ବଞ୍ଚିବାର ଆଶା ନଥିଲା । ପୁଅର ସ୍କୁଟର୍ ଏକ୍‌ସିଡେଣ୍ଟରେ ଡାହାଣ ହାତ ଆଉ ଗୋଡ ଭାଙ୍ଗିଥାଏ । ସେ ପଡିଥାଏ ପ୍ଲାଷ୍ଟରରେ । ମୋ ସ୍ତ୍ରୀ ଆଉ ଝିଅକୁ ଟାଇଫଏଡ୍‌ର ସିକ୍‌ସଥ ଡେ । ଏଣେ ନୂଆ ପୋଷ୍ଟିଂ ହୋଇଥାଏ ଡେପୁଟେସନ୍‌ରେ । ଜଏନ୍ କରିବା କଥା । ସବୁଦିନ ପରି ଆଠଟାରେ ଆସି ନ' ନମ୍ବର ବସ୍ ଧରି ଦଶ ନମ୍ବର ସେକ୍ଟରକୁ ନଗଲେ ନଚଳେ । ଛୁଟି ନେବା ସମ୍ଭବ ନୁହେଁ । କାମକୁ ଯିବା ବି ସମ୍ଭବ ନୁହେଁ..."

ଲୋକଟାର କହିବା ଢଙ୍ଗରୁ ମୁଁ ତା' ଜୀବନର ବିଗତ ସଙ୍କଟ ଭିତରେ ନିଜେ ବୁଡିଯିବାର ଅନୁଭବ କଲି । ମୋର ପାଦ ଆଣ୍ଠୁ, ତଳିପେଟରୁ ରକ୍ତ ଶୋଷି ହୋଇଯିବାର ଅନୁଭବ କଲି । ସେ ତ ପ୍ରାୟ ମୋରି ଭଳି ବିପଦଗ୍ରସ୍ତ । ମୋର ମନେହେଲା ବାପାହିଁ ପୁଣି ମୃତ୍ୟୁ ଶଯ୍ୟାରେ ମୋର ଅପେକ୍ଷା କରିଛନ୍ତି...

"ଏବଂ ମୋ ପାଖରେ ପଇସା ନଥିଲା । ଦରମାଟା ସରିଆସିଥିଲା । ଲୋନ୍ ବି ବହୁତ ହୋଇସାରିଥିଲା । ଆଉ କାହାକୁ ମାଗିବାର ଉପାୟ ନଥିଲା ।"

ମୁଁ ଖୁବ୍ ଅସୁସ୍ଥ ବୋଧ କଲି । ଛେପ ଢୋକିଲି ଏବଂ ଚାହିଁ ରହିଲି ସେ ନିର୍ବିକାର ଲୋକଟାକୁ ।

"ସେଦିନ ମୁଁ ଅନ୍ୟମନସ୍କ ଥିଲି । କେତେବେଳେ କ'ଣ ହେଉଥିଲା ଜାଣିପାରୁ ନଥିଲି । ଫଳରେ ବସ୍ ଚାଲିଗଲା । ମୁଁ ବସି ରହିଲି ମୁଣ୍ଡଟାକୁ ଚିପି ଧରି । ମୋ ଚାରିଆଡେ ପ୍ରବ୍ଲେମ୍‌ସ!"

"ମୋତେ ଖୁବ୍ ଡର ମାଡୁଥିଲା । ମୁଁ ଚାହୁଁଥିଲି ସେଇଠୁ ଦଉଡି ଚାଲିଯିବା ପାଇଁ, କିନ୍ତୁ ମୋ ଗୋଡ ଚଳୁ ନଥିଲା ।"

ଏତିକିବେଳେ ମୋ ସାଙ୍ଗ ଅଫିସରଟିଏ ଦେଖାହେଲା । ସିଗ୍ରେଟ୍ କିଣିଲାବେଳେ ସେ ମୋତେ ବସିଥିବାର ଦେଖିନେଲା । ସେ ଜଣେ ଫରେନ୍ ଲେଡିକୁ ଗାଡିରେ ବୁଲେଇ ନେଉଥିଲା । ମୋତେ ଆସି ପଚାରିଲା, "କିରେ, ତୋ'ର ଦେହପା' ଖରାପ ଅଛି ନା କ'ଣ ?" ମୁଁ ମୋ କଥା ଦୁଇ ମିନିଟ୍‌ରେ କହିଦେଲି । ସେ ଅଳ୍ପ ହସି କହିଲା, "ଆ ମୋ ସାଙ୍ଗରେ । ଏ ଭଦ୍ରମହିଳାଙ୍କୁ ହୋଟଲରେ ଛାଡି ଆସିବା । ସେ ରାତି ତିନିଟାରୁ ସମୁଦ୍ର କୂଳରେ ବସି ଧ୍ୟାନ କରୁଥିଲେ । ତାଙ୍କୁ ଛାଡି ତୋତେ ତୋ ଅଫିସକୁ ନେଇଯିବି । ସେଇଠି ତୁ ଜଏନ୍ କଲାପରେ ଛୁଟି ଦରଖାସ୍ତ ଦେଇଦେବୁ । ତୋ ପିଲାଙ୍କ ପାଇଁ ଔଷଧ କିଣି ତୋ ଘରକୁ ଯିବା । ତା'ପରେ ସନ୍ଧ୍ୟାବେଳେ ତୁ ଏ ଅଦ୍‌ଭୁତ ମହିଳାଙ୍କ ସଙ୍ଗେ କିଛି କଥାବାର୍ତ୍ତା କରିବୁ ।" – ମୁଁ ତା' ଗାଡିରେ ବସିଲି । ମହିଳା ଜଣକ ବାସ୍ତବିକ୍ ଅଦ୍ଭୁତ । ଆମେ ଦୁଇଜଣ ଆଗରେ ବସିଥାଉ । ମୋ ପଛରେ ମୁଁ ଗୋଟାଏ ଥଣ୍ଡା ଅନୁଭବ କରୁଥାଏ । ମୁଁ ସ୍ଥିର ହୋଇଆସୁଥାଏ । ମୋତେ ପାହାଡ ମଡେଇ ପଡିଲା ପରି ଲାଗୁଥାଏ । ସେ ଓହ୍ଲେଇ ଗଲାବେଳେ ମୋତେ ଚାହିଁ ଅଳ୍ପ ହସିଲେ । ମୁଁ ସେ ହସ ଏ ପର୍ଯ୍ୟନ୍ତ ଭୁଲି ପାରିନାହିଁ । ଏକ୍‌ଷ୍ଟ୍ରାଅର୍ଡିନାରି ।

ସେ ଘଣ୍ଟା ଦେଖି କହିଲେ, "ଆଉ କୋଡିଏ ମିନିଟ୍ ଅଛି ଆପଣଙ୍କ ବସ୍ ପାଇଁ । ମୋର ବକ୍ତବ୍ୟ ତା' ଆଗରୁ ନିଶ୍ଚୟ ସାରିଦେବି । ଶୁଣନ୍ତୁ!"

"ମୁଁ ସେଦିନ ସନ୍ଧ୍ୟାରେ ସେ ଭଦ୍ରମହିଳାଙ୍କୁ ଭେଟିଲି । ଫ୍ରେଞ୍ଚ୍‌ଲେଡି । ମୋ ସାଙ୍ଗ ଅଫିସର୍ ସହିତ ସେ କଥାବାର୍ତ୍ତା ହେଉଥାନ୍ତି ଇଂରାଜୀରେ । ମୋତେ ବେଳେବେଳେ ଚାହିଁ ଦେଉଥାନ୍ତି କେବଳ । ସେ କହୁଥାନ୍ତି ଯେ, କୌଣସି ବ୍ୟକ୍ତି ବସ୍ତୁ ବା ସ୍ଥାନକୁ ଖୋଜିଲା ପରି ଈଶ୍ୱରଙ୍କୁ ଅତି ବାସ୍ତବଭାବରେ ଖୋଜା ଯାଇପାରେ । ଏହା ଏକ ରିଏଲ୍ ଏକ୍‌ସପିରିଏନ୍‌ସ ହୋଇପାରେ !...ମୋ ବନ୍ଧୁ ଅନେକ କାରଣରୁ କିଛି କହୁନଥାଏ । ମୋତେ ଥରେ ସୁଯୋଗ ଦେଉ ଦେଉ ମୁଁ ମୋ କଣ୍ଟ୍ରୋଲ ହରାଇ ଗୁଡାଏ କ'ଣ କହିଗଲି । ଏବେ ମନେ ହେଉଛି ସେଗୁଡାକ ଅତି ଅଶ୍ଳୀଳ ଆବର୍ଜନାପରି ଶବ୍ଦ ଗୁଡିଏ । ଜଷ୍ଟ ରବ୍‌ବିସ୍! ଉଭୟେ ପରସ୍ପରକୁ ଚାହିଁ ଖୁବ୍ ଅଳ୍ପ ହସୁଥାନ୍ତି । ମୁଁ ଆହୁରି ଚିଡିଯାଇ ପାଟି କରି ଉଭୟଙ୍କୁ ଗାଳି ଦେଉଥାଏ । ଶେଷରେ ମୁଁ ହାଲିଆ ହୋଇଗଲି । ସେ ଆସ୍ତେ କହିଲେ – ଆଜି ରାତି ସରି ଆସିଲା ବେଳକୁ ସୂର୍ଯ୍ୟୋଦୟର ଦୁଇଘଣ୍ଟା ଆଗରୁ ଆପଣ ଈଶ୍ୱରଙ୍କୁ ଖୋଜନ୍ତୁ । ଆପଣଙ୍କ ଚାରିଆଡେ ଥିବା ସାଇଲେନ୍‌ସ ଭିତରେ ଖୋଜନ୍ତୁ । ସେ ସାଇଲେନସ୍‌ଟାକୁ ନିଜ ଦେହରେ ଛୁଇଁଲା ପରି ଅନୁଭବ କରନ୍ତୁ । ନିଜ ଭିତରେବି ସେଇ ସାଇଲେନସ୍ ରହିଛି ତାକୁ ଅନୁଭବ କରନ୍ତୁ । ସାଇଲେନସ୍‌କୁ କାନାନ୍ତୁ! ଆପଣଙ୍କୁ ଖୁବ୍ ସୂକ୍ଷ୍ମ ଝିଲ୍ଲିରବ ଶୁଣାଯିବ । ...ଆପଣ ଈଶ୍ୱରଙ୍କ ସ୍ପର୍ଶ ପାଇପାରିବେ । ସେ ଖୁବ୍ ନିକଟରେ ଥାଆନ୍ତି । ଇନଫେକ୍ଟ ସେ ହିଁ ସବୁଠାରୁ ପାଖରେ ଅଛନ୍ତି । ତାଙ୍କ ସ୍ପର୍ଶ ଜଣେ ଚାହିଁଲେ ହିଁ ମିଳିପାରିବ ।"

ମୁଁ ଆଉ ସେ ଭଦ୍ରଲୋକଙ୍କୁ ଚାହିଁ ପାରୁନଥିଲି । ତଳକୁ ମୁହଁ କରି ଅପେକ୍ଷା କରୁଥିଲି କେବଳ ।

"ମୁଁ କିଛି ନକହି ରାତିରେ ଫେରିଥିଲି । ଶୋଇ ପାରିନଥିଲି । ତିନିଟାରେ ଝରକା ପାଖେ ବସି ବାହାରକୁ ଚାହିଁଥିଲି । ଘରେ ଗୋଟାଏ ବଖରାରେ ମୋ ବାପା ଡେଥ୍ ବେଡରେ ପଡିଥିଲେ । ଆର ବଖରାରେ ମୋ ସ୍ତ୍ରୀ ଓ ଝିଅ ଜର ଭୋଗୁଥିଲେ । ମୋ ମୁଣ୍ଡ ଟିକ୍ ଟିକ୍ ବିନ୍ଧୁଥିଲା । ମୁଁ ତଥାପି ଝରକା ପାଖେ ଚୌକିରେ ବସି ଖୁବ୍ ଲମ୍ବା ନିଶ୍ୱାସ ମାରି ସ୍ଥିର ହେବାକୁ ଚେଷ୍ଟା କଲି । କାନେଇବାକୁ ଚେଷ୍ଟା କଲି । କିଛି ହେଲାନାହିଁ । କିନ୍ତୁ ଭଲ ଲାଗିଲା । ତା'ପରେ ପ୍ରତି ରାତିରେ ମୁଁ ସେଇଠି ଅପେକ୍ଷା କରି ଆସିଛି । ଆସ୍ତେ ମୋ ଦେହକୁ ଲାଗି ରହିଥିବ  ଏବଂ ପାତଳ ପବନ ପରି ଚାରିଆଡେ ଘେରି ରହିଥିବା ସାଇଲେନ୍‌ସକୁ ମୁଁ ଅନୁଭବ କଲି । ମୁଁ ସେଠି ବସି ରହିବାକୁ ଭଲ ପାଇଲି । ସେଥିପାଇଁ ମୋର ଗୋଟାଏ ପ୍ରକାର ଥାର୍ଷ୍ଟ, ଘଣ୍ଟାଏ ବସିଗଲେ ଶୋଷ ମେଣ୍ଟି ଗଲାପରି ଅନୁଭବ ଆସିଲା । ...ମୋଟ ଉପରେ...ମାନେ...ମୁଁ କହିପାରୁ ନାହିଁ...ମାନେ...ଅମୃତ ଅମୃତ ଲାଗିଲା ମୋତେ !"

ଭଦ୍ରଲୋକଙ୍କ ମୁହଁ ଲଟ୍‌ପଟ ଦେଖାଯାଉଥିଲା । ସ୍ୱର ଭାରି ଶାନ୍ତ ଏବଂ ଗଭୀର । ମନେହେଲା ଲୋକଟା ମିଛ କଦାପି କହୁନାହିଁ । ଅନେକ ଅନୁଭବକୁ ପ୍ରକାଶ କରିନପାରି ଛଟପଟ ହଉଚି । ତଥାପି ଶାନ୍ତ ରହୁଛି ।

"...ତା'ରି ଭିତରେ ବାପା ମରିଗଲେ । ଝିଅ ବିଭା ହୋଇ ଚାଲିଗଲା । ପତ୍ନୀଙ୍କୁ ଶ୍ୱାସରୋଗ

ହୋଇଗଲା । ଘରେ ନିଆଁ ଲାଗିଗଲା...ମୋର ଚାକିରି ସରିଗଲା...କିନ୍ତୁ ଏସବୁ ମୁଁ ପାରି ହେଇଗଲି । ମୋର କାମ କରିବାରେ କୌଣସି ଅସୁବିଧା ହେଲାନାହିଁ, ଏବେ ବି ନାହିଁ । ମୁଁ ପ୍ରତିଦିନ ରାତିରେ ସେ ସ୍ୱର୍ଣ ପାଇଁ ଅପେକ୍ଷା କରି ରହୁଥିଲି । ବାକି ସବୁ ତାସ୍ ଖେଳରେ ପରା ପକେଇଲା ପରି ଗୌଣ ମନେହେଲା । ମୁଁ ଯଦି ବଞ୍ଚିଥାଏ, ସେଇ ସାଇଲେନ୍‌ସ ସହିତ ହିଁ ବଞ୍ଚିଛି । ତାରି ପାଇଁ ବଞ୍ଚିଛି । ୱେଲ...ଆପଣଙ୍କ ବସ୍ ହେଇ ଆସିଗଲା ।"

ମୁଁ ଚମକିଲା ପରି ଉଠି ପଡିବାରୁ ବୁକୁ ଧଡପଡ ହେଲା । ମୁଁ ପୁଣି ବସିପଡିଲି । ସେ ମୋ ପାଖକୁ ଆସି ପିଠି ସାଉଁଳି ଦେଲେ । ...ବସ୍ ମୋ ସାମ୍ନାରେ ଷ୍ଟାଣ୍ଡ ଭିତରକୁ ଆସିଲା । ଖୁବ୍ ଖାଲି ଖାଲି ଦିଶୁଥିଲା । ମୋତେ ଅପେକ୍ଷା କଲାପରି ଜଣାପଡୁଥିଲା ।

ମୁଁ ବେଗ୍ ଧରି ଆସ୍ତେ ଠିଆହେଲି । ତାଙ୍କ ମୁହଁକୁ ଚାହିଁ ଅଳ୍ପ ହସିଲି, "ପଚାରିଲି, ଆପଣ ଆସିବେ ନାହିଁ ?"

ସେ ମୁଣ୍ଡ ହଲାଇ ନାହିଁ କଲେ । ଘଣ୍ଟା ଦେଖି ଆସ୍ତେ ଅଥଚ ସ୍ଥିର ପାହୁଣ୍ଡ ପକେଇ ସେ ବାହାରିଗଲେ ଡାହାଣକୁ । ମୁଁ ବସ୍‌ରେ ସୁବିଧାରେ ବସି ଚାରିଆଡକୁ ଚାହିଁଲି । ଦିନସାରା ହାଲୁକା ବୋଧକଲି । ମୋ ପଛରୁ ତଡି ଆସୁଥିବା ଦନ୍ତାହାତୀ ଛୋଟ ଜଣାଗଲା । ଧୂଆଁଳିଆ ହାଲୁକା ଜଣାଗଲା – ଆଜି ଆସି ସପ୍ତାହେ ହେଇଗଲାଣି । ମୁଁ ଟାଳିଚାଲିଛି ।

ରାତି ତିନିଟାରେ ନିଦ ଭାଙ୍ଗିଗଲେ ସୁଦ୍ଧା ସାହସ ହେଉନାହିଁ, ଏକାକୀ ସେ ନୀରବତାକୁ କାନେଇବାକୁ କିମ୍ବା ତାକୁ ଚିପ ମାରି ଛୁଇଁ ଦେବାକୁ । ତଥାପି ମୋତେ ମଙ୍ଗ ପର୍ଯ୍ୟନ୍ତ ଭରପୂର ଲାଗୁଛି । ଟଳମଳ ଲାଗୁଛି ।

ଭାବିଛି ଯାହାହେଉ ପଛେ ଆଜି ରାତିର ଚତୁର୍ଥ ପ୍ରହରରେ ମୁଁ ଝରକା ଖୋଲି ବସିବି । ତା'ପରେ କ'ଣ ହବଟି !



## ବାହାର ଲୋକ

ବଙ୍ଗୋପସାଗରରେ ପ୍ରବଳ ଲଘୁଚାପ । ଝଙ୍କା ପବନ ଆଉ ବର୍ଷା ଏ ଅଞ୍ଚଳ ସାରା । ଗଛ କୋରଡରେ ଆଶ୍ରିତ ପକ୍ଷୀପରି ଘର ଭିତରେ ବସିରହି ଝିପି ଝିପି ବର୍ଷାକୁ ଚାହିଁରହିବା ଛଡା ଆଉ କିଛି ସମ୍ଭବ ନୁହେଁ । ବଡ ବିଚିତ୍ର କଥା ଯେ ମେଘ ଆଦୌ ଡାକୁ ନଥାଏ କି ବିଜୁଳି ମାରୁ ନଥାଏ; ଅଥଚ ଅଜାଡି ହେଉଥାଏ ଅଜସ୍ର ପାଣି । କେମିତି ଗୋଟାଏ ନିଛାଟିଆ ଲାଗୁଥାଏ ଚାରିଆଡ । କେହି ଜଣେ ପାଖରେ ବସିରହିଲେ ହୁଏତ ଭଲଲାଗନ୍ତା । କିନ୍ତୁ ତା' ସହିତ ପାଟି ଫିଟେଇବାକୁ ପଡନ୍ତା ନାହିଁ । ନୀଡ ଭିତରେ ପକ୍ଷୀମାନେ ଲାଗି ଲାଗି ବସିରହିବା ହିଁ ଯଥେଷ୍ଟ । ଏଭଳି ପାଗରେ ରବିବାର ଅର୍ଥ କ'ଣ ?

ସେଥିପାଇଁ ଭୋଳାନାଥବାବୁ ଖଣ୍ଡିଏ ଚାଦର ଘୋଡେଇ ହୋଇ ଚୌକିରେ ବସିଥାନ୍ତି । ପାଖ ଟେବୁଲରେ ଖାଲି ଚା କପ୍‌ଟିଏ ଥୁଆ ହୋଇଥାଏ । ତାଙ୍କ ଚଷମା ଉପରେ ବାମ୍ଫ ମାଡିଯାଇଥାଏ । ତା' ଭିତରୁ ତାଙ୍କୁ କ'ଣ ଦିଶୁଥାଏ କେଜାଣି – ସେ କିନ୍ତୁ ନିଶ୍ଚଳ ଚାହିଁ ରହିଥାନ୍ତି ବର୍ଷାକୁ ।

ପାଖ ବଖରାରୁ ରହି ରହି ହସ ଶୁଭୁଥାଏ । କଳରବ ଶୁଭୁଥାଏ ଅନ୍ୟ ତାଳରୁ ସତେବା ଭୋଳାନାଥବାବୁ ସେ ହସର ଖିଅ ଫିଟେଇ ଗୋଟି ଗୋଟି କରି ସ୍ୱର ବାରିପାରୁଥାନ୍ତି । ପରିବାରର ସମସ୍ତଙ୍କସ୍ୱର ସହିତ ଢେର୍ ଦିନର ପରିଚୟ ତ! ସେମାନେ ଏମିତି ଖୁସିରେ ହସୁଥିବା ବେଳେ ତାଙ୍କୁ ମନେପକାନ୍ତିନାହିଁ । କ'ଣ କୌତୁକ ହେଲା ବୋଲି ତାଙ୍କୁ ଜଣାଇବା ପ୍ରୟୋଜନ ମଣନ୍ତି ନାହିଁ । କେବେ କେମିତି ସେ ନିଜେ ଚାଲିଯାଇଛନ୍ତି କୌତୂହଳରେ । ଠପ୍ କିନା ସବୁ ବନ୍ଦ ହୋଇଯାଇଛି । କିଏ ଜିଭ କାମୁଡି ପକାଇଛି ତ ଆଉ କିଏ ସମ୍ଭାଳି ନପାରି ପାଟିରେ ଲୁଗାକାଣ୍ଡା ମାଡି ଉଠି ଚାଲିଯାଇଛି । ତାଙ୍କ ସ୍ତ୍ରୀ ହସ ଚାପିରଖି ପଚାରିଛନ୍ତି, "କ'ଣ ତୁମ ଚା'ଖିଆ ବେଳ ହୋଇଗଲାଣି କି ?" ଭୋଳାନାଥବାବୁ ଅଗତ୍ୟା କହିଛନ୍ତି, "ନାଇଁ ଯେ, ହେଲେ କପେ ମିଳିଲେ ମନ୍ଦ ହୁଅନ୍ତା ନାହିଁ ।"

ସେଦିନ ସେଥିପାଇଁ ସେ ଆଉ ବଖରାକୁ ଜାଣିଶୁଣି ଗଲେ ନାହିଁ । ତାଙ୍କ ଆଗରେ ସେମାନେ ଏମିତି ହସିପାରିବେ ନା' କ'ଣ ସେ ତାଙ୍କ କଥାରେ ମିଶି ପାରିବେ !

ଭୋଳାନାଥବାବୁ ସେ ଘରେ ନିଶ୍ଚୟ ସବୁଠାରୁ ବୟସରେ ବଡ । ତାଙ୍କ ସ୍ତ୍ରୀଙ୍କଠାରୁ ଦଶବର୍ଷ

ଏବଂ ସବା ବଡପୁଅଠାରୁ ପଚିଶ ବର୍ଷ । ବାକିଗୁଡାକର ହିସାବ ନାହିଁ ।

ତାଙ୍କ ମୁଣ୍ଡରୁ ଅଧେ ବାଳ ପାଚିଗଲାଣି । ଦୁଇଟା କଳଦାନ୍ତ ଝଡିଗଲାଣି । ରଙ୍ଗବେରଙ୍ଗ ପଟାଳିଆ ଜାମା ତାଙ୍କର ନାହିଁ । ପିଠିରେ ବୋତାମଲଗା ପେଣ୍ଟ ନାହିଁ । ସେ ମସଲା ତିଅଣ ଅପେକ୍ଷା ବେସର ବେଶି ପସନ୍ଦ କରନ୍ତି ।

'ଗଜଲ୍' କିମ୍ବା କର୍ଣ୍ଣାଟକୀ ସଙ୍ଗୀତ ବାଜିଲେ ଏକୁଟିଆ ବସି ଶୁଣନ୍ତି । ପପ୍ ବାଜିଲେଇ ସେ ଚିଡିଯାଆନ୍ତି ଏବଂ କିଛି ନକହି ଉଠିଆସନ୍ତି । ସେତିକିବେଳେ କୋଉଠୁ ଉଣ୍ଡିଥାଆନ୍ତି ବାକି ସମସ୍ତେ । ଆସି ଧାଡିବାନ୍ଧି ବସିଯାଆନ୍ତି ଟି.ଭି. ପାଖରେ ।

ଭୋଳାନାଥବାବୁ ତ ବେକୁବ୍ ନୁହନ୍ତି । ସେ ଠିକ୍ ବୁଝିଛନ୍ତି ଯେ ନିଜେ ପଛେଇ ଯାଇଛନ୍ତି । ସମୟ ସାଙ୍ଗେ ବଦଳି ପାରିନାହାନ୍ତି । ନ ହେଲେ ବା କ'ଣ ହେଇଥାନ୍ତା । ଚିନ୍ତାମଣି ତାଙ୍କ ସାଙ୍ଗ । ସେ ନଳିପେଣ୍ଟ ପିନ୍ଧିଲା । ବାଳରେ ରଙ୍ଗ ଲଗେଇଲା । କ୍ଲବ୍ ଗଲା । ଟୋକାଙ୍କ ସାଙ୍ଗେ ଟୋକା ହେବାକୁ ପ୍ରାଣାନ୍ତ ଚେଷ୍ଟାକଲା । ଏବେ ବି କରୁଚି । କିନ୍ତୁ ତା' ଗନ୍ଧ ସେମାନେ ବାରି ଦଉଛନ୍ତି । କରଛତା ଦେଇ କହୁଛନ୍ତି, "ମଉସା, ଆପଣ ଏଇଠି ଥାଆନ୍ତୁ, ଆମେ ଟିକିଏ ଅନ୍ୟଆଡେ ଯାଉଛୁ । ଆପଣ ସେଠି ପାରିବେ ନାହିଁ!" – ହାଃ, ହାଃ...ପାରିବେ ନାହିଁ ।

ସତକୁ ସତ ଭୋଳାନାଥ ବାବୁ ସେ ବର୍ଷାପାଗରେ ଏକୁଟିଆ ବସି ମନକୁ ମନ ହସୁଥିଲେ । ...ଚିନ୍ତାମଣିଟା ସତେ କେତେ ଅଭିଲା । ଆରେ ତତେ ସୁଅ ନେଇ କୋଉଠି ଛାଡିଲାଣି । ତୁ ସେଇଠୁ କ'ଣ ଉହୁଙ୍କି ହଉଛୁ ୟାଙ୍କ ସାଙ୍ଗେ ମିଶିବା ପାଇଁ । ତୁ ଅଯଥା ଗୁଡାଏ ଅଭିମାନିଆ ବି କାହିଁକି ହଉଛୁ ? ସେମାନେ ତତେ କ'ଣ ଅବଜ୍ଞା କରୁଛନ୍ତି ? ତତେ ବରଂ ସେମାନେ ବେଶ୍ ସମ୍ମାନ ଦିଅନ୍ତି । ତୁ ପାହାଚ ଚଢି ଆସିଲେ ଆଡେଇ ହୋଇ ଯାଆନ୍ତି । ତୋ ଆଗରେ ସିଗ୍ରେଟ୍ ଟାଣନ୍ତି ନାହିଁ । ତତେ ଚୌକି ଛାଡି ଉଠି ପଡନ୍ତି । କଥାଟାକୁ ଟିକେ ବୁଝ । ଏମିତି କାଇଁକି ହଉଚୁ ?

ଭୋଳାନାଥ ବାବୁଙ୍କୁ ଲାଗେ ଯେ ଚିନ୍ତାମଣିଆଟା ପାହାଡ ଚଢି ପାରୁ ନାଇଁ । ତା' ଗୋଡ ଫରକଟେଇ ହେଇଯାଉଚି, ଦମ୍ ଅଣ୍ଟୁ ନାଇଁ । ପବନ ଟୋଳୁଚି ଅଣଓ୍ଵାଶ । ପାହାଡ ଶିଖରେ ଗଣ୍ଡେ ଟୋକା ତାଳିମାରି ହସୁଚନ୍ତି, ତାଙ୍କ ଭିତରେ ଥଟ୍ଟାପରିହାସ ଚାଲିଚି । ୟାକୁ ସେମାନେ ଆଦୌ ନଜର ଦେଇ ନାହାନ୍ତି । ଏଇଟା ଖାଲି ହେମ୍ତି ଧଇଁସଇଁ ହଉଚି ମିଶିଯିବା ପାଇଁ । ବେକୁବ୍!

ଆର ବଖରାରୁ ପୁଣି ଖଳଖଳ ହସ ଶୁଭିଲା । ଭୋଳାନାଥ ବାବୁ ସେମିତି ନିଶ୍ଚଳ ଚାହିଁ ରହିଲେ ବର୍ଷାକୁ, ପବନରେ ଲୋଟିପଡୁଥିବା ଲମ୍ବଲମ୍ବ ଝାଉଁଗଛମାନଙ୍କୁ ।

ତାଙ୍କ ସ୍ତ୍ରୀ ଗୋଟିଏ ବଡ ପ୍ଲେଟରେ କିଛି ଗରମ ପକୁଡି, କାଚ ଗିନାରେ କିଛି ଗରମଥିବା ଘୁଗୁନି ଧରି ପହଞ୍ଚିଲେ । ଝିଅ ହାତରେ ପାଣି ଗ୍ଲାସ । ତାଙ୍କୁ ପକୁଡି ଘୁଗୁନି ନିଶ୍ଚୟ ଭଲଲାଗେ – ସେ କଥା ଘରେ କିଏବା ନ ଜାଣିଛି ? ତାଙ୍କର ରୁଚି ଅରୁଚି ବିଷୟରେ ଟିକିନିଖି ସବୁ କଥା ଟିପା ହୋଇ ରହିଛି । ସେଥିପାଇଁ ମଝିରେ ମଝିରେ ଘରେ ପାଟି ଶୁଭେ, ଆରେ ସେମ୍ତି କରନା, ନନାଙ୍କୁ ସୁଖ ଲାଗିବ ନାହିଁ; ମହୁରରେ ଆଳୁ ପଡିଲେ ସେ ଯେମିତି ହେଲେ ବାରିଦେବେ ।

ଖାଇବେ ନାହିଁ । ତାଙ୍କ ପାଇଁ ଅଲଗା କରୁନାହଁ କାହିଁକି ? – ଆମ ପାଇଁ ଶୁଖୁଆ ମୁଣ୍ଡ ପକେଇ ଘାଣ୍ଟ କରିଦିଅ । ତାଙ୍କ ପାଇଁ କ'ଣ ଟିକିଏ ଅଲଗା ଭାଜିଦିଅ... ।

ବର୍ଷା ପାଗରେ ଗରମ ପକୁଡି – ବାଃ !

"କିଓ, ତମପାଇଁ ଆଣୁନା ।"

"ଆମର ସେଇଠି ଅଛି, ତମେ ଖାଅ !"

ଝିଅ କହିଲା, "ଆମେ ଚୂଡଳ, କଖାରୁ ମଞ୍ଜି ଆଉ ବୁଟ ବାଲିରେ ଖରଡି ପାଗ କରିଚୁ ।"

ଭୋଳାନାଥ ବାବୁଙ୍କ ମୁହଁରେ କାହିଁ କେଉଁ କାଳର ଫୁଲମାନେ ଫୁଟି ଆସୁଥିଲେ ।

ସ୍ତ୍ରୀ ଘର ମହତ ପଦାରେ ପଡିଗଲାବେଳେ ତରବର ଘୋଡେଇ ପକାଇବା ଢଙ୍ଗରେ କହିଲେ, "ସେଗୁଡାକ ନନାଙ୍କର କ'ଣ ହବ ! ତୁ ଚାଲ୍; ମୁଁ ଆସୁଛି !"

ଅତି ଯତ୍ନରେ ଟେବୁଲ ଉପରେ ସବୁ ସଜାଡି ଦେଇ, ଟେବୁଲକୁ ଭୋଳାନାଥ ବାବୁଙ୍କ ସାମ୍ନାରେ ରଖି ଦେଇ ସେ ଚାଲିଗଲେ । ଭୋଳାନାଥବାବୁ ଚାହିଁରହିଲେ ବାମ୍ଫଉଠିବା ଘୁଗୁନିକୁ, ପକୁଡିକୁ, କାଚ ଗିଲାସର ଛଳଛଳ ପାଣିକୁ । ତାଙ୍କୁ ଟିକେ ଘୁଞ୍ଚିବାକୁ ବା ଶ୍ରମ କରିବାକୁ ପଡିବ ନାହିଁ – ହାତ ପାଖରେ ସବୁ । ମାଲିକ ପଣରେ ଭୋଳାନାଥବାବୁ ପୁରୁଣା ଅଭ୍ୟାସରେ ମାଣୋହିରେ ବସିଲେ; ହୁଏତ ଆଉ ଭାତିଏ ପକୁଡି ଯଥାସମୟରେ ଆସି ପହଞ୍ଚିଯିବ – ମାଗିବାର ସୁଯୋଗ ତାଙ୍କୁ ଦିଆଯିବ ନାହିଁ ।

ଆଚ୍ଛା, ସେ ଚୂଡଳଭଜାରୁ କଲେ ଚୋବେଇଥିଲେ କେମିତି ଲାଗିଥାନ୍ତା ! ଅନେକ କାଳ ପୂର୍ବେ ସେ ଖାଇଥିଲେ, ସ୍ୱାଦ ମନେଅଛି । ଭାତୁ ଭାତୁ ଚୋବେଇଦେଲେ ଦାନ୍ତଶୂଳ ମରିଯାଏ । ଦାନ୍ତ ସାମର୍ଥ୍ୟକୁ ନିଜ ସାମର୍ଥ୍ୟ ମନେ କରି ଜଗତ୍ ଜିଣିବାକୁ ମନହୋଇଥାଏ । କିନ୍ତୁ ସେମାନେ ବୋଧହୁଏ ଦେବେ ନାହିଁ । ମାଗିଲେ ଦିଅନ୍ତେ...ତେବେ... ।

ଗୋଟାଏ ଥାଳିରେ ଚିନାବାଦାମ ରଖି ସମସ୍ତେ ବେଢି ବସନ୍ତେ । ଭୋଳାନାଥବାବୁ ସମସ୍ତଙ୍କ ଭିତରେ ଜଣେ ହୋଇ ଚିନାବାଦାମ ଖାଆନ୍ତେ । ୟା'ସାଙ୍ଗେ ତା' ସାଙ୍ଗେ ଥଟ୍ଟା ହୁଅନ୍ତେ । ଖୁବ୍ ମନଖୋଲି ହସନ୍ତେ, ହସାନ୍ତେ । ବର୍ଷାପାଗଟା କେତେ ଗୁମ୍‌ସୁମ୍ ଲାଗନ୍ତା । ପରସ୍ପରକୁ ସ୍ୱୀକାର କରି ଆତ୍ମାଗୁଡିକ ପକ୍ଷୀଭଳି କଳରବ କରିଉଠନ୍ତେ । ଘରଟି ଜଣାଯାନ୍ତା ନୀଡ ପରି ।

ଏ ବର୍ଷା ତ ନୂଆ ନୁହେଁ । ୟା' ଭିତରେ ତିରିଶଟି ବର୍ଷା ପାର ହୋଇଗଲାଣି । ଭୋଳାନାଥବାବୁ ଚିନାବାଦାମ ନେଇ ବ୍ୟୁହ ଭେଦିବାକୁ ଚେଷ୍ଟା ନ କରିଛନ୍ତି ନୁହେଁ; ହେଲେ କ'ଣ ହବ । ବାଛି ବାଛି ତିନିମଞ୍ଜିଆ ଚିନାବାଦାମଗୁଡିଏ ନିର୍ମଳ ପ୍ଲେଟ୍‌ରେ ସଜାଡି ତାଙ୍କୁ ଅଲଗା ଦିଆହୋଇଛି । ମଞ୍ଜି ଛଡେଇ ଧରେଇଦିଆଯାଇଛି । ଭୋଳାନାଥବାବୁ ହସି ଦେଇ ତାଙ୍କ ଏକାକୀ ସିଂହାସନରେ ସେ ମଞ୍ଜି ଗଣିକ ଚୋବେଇଛନ୍ତି । ପିଆଜି, ଆଳୁଚପ୍, ଛେନାପୋଡ, ସନ୍ଦେଶରେ ମଧ ସେଇ ସତନ୍ତ୍ର ଠାଆ, ପିଢାପାଣିରେ ସନ୍ତୁଷ୍ଟ ରହି ଆସିଛନ୍ତି ।

ତାଙ୍କ ସାଙ୍ଗେ ବସି ଖାଇବାବେଳେ ସେମାନେ କେବଳ ଖାଆନ୍ତି ସିନା; କିନ୍ତୁ ସେମାନଙ୍କ

ମୁହଁରେ ସହଜେ ପଦ୍ମ ଫୁଟେ ନାହିଁ । ଆଖି ଝଲସେ ନାହିଁ । ମୁଠାଏ ଖୁଦଭଜାକୁ ନେଇ ତାଙ୍କ ଭିତରେ ସେମାନେ ଯେମିତି ବିଭୋର ହୋଇପାରନ୍ତି, ଅମୃତ ଖାଇଲା ପରି ହସି ହସି ଲୋଟିଯାଆନ୍ତି, ସେଇଟା ତାଙ୍କ ସାଙ୍ଗେ ଥିଲାବେଳେ କେବେ ହୁଏ ନାହିଁ । ସେମାନଙ୍କର ସେ ସହଜ ଭାବ କେଉଁଆଡେ ଉଭେଇଯାଏ । ସମସ୍ତେ ସଜାଡି ହୋଇଯାନ୍ତି, କଥାରେ, ଆଚରଣରେ । ନନା ଆସିଗଲେ ତାଙ୍କୁ ଲାଗେ ସତେବା ଖଟୁଲିରୁ ଦିଅଁଙ୍କ ନିଷ୍ପଳ ପ୍ରତିମା ହାଣ୍ଡିଶାଳକୁ ଚାଲି ଆସିଲେ । – ଆରେ, ଆରେ, ତମେ ସେଇ ଖଟୁଲିରେ ହିଁ ବସିରହ । ତମ ପାଖେ ଧୂପ, ଦୀପ, ନୈବେଦ୍ୟ ପହଞ୍ଚିଯିବ ଠିକ୍ ସମୟରେ । ତମେ ଏମିତି ଆମ ଗହଣରେ ଚଲାବୁଲା କଲେ ଆମେ ସ୍ୱଚ୍ଛନ୍ଦରେ ଚଳିପାରିବୁ କେମିତି ?

"ପକୁଡି ଗଣ୍ଡାକ ଧରି ବସିଚ । ଘୁଗୁନି କାକୁର ହୋଇଗଲାଣି, ତମକୁ ଭଲଲାଗୁ ନାହିଁ କି ? ଘୁଗୁନିରେ ପରା ନଡିଆ କୋରା ପଡିଛି, ପକୁଡିରେ ପିଆଜ ପଡିଛି ! ଖାଉନ କାହିଁକି ?"

"ପିଲାଙ୍କୁ ଦେଲଣି କି ?"

"ପିଲାଙ୍କୁ ଏଗୁଡାକ ଭଲଲାଗୁନାହିଁ । ସେମାନେ ବାଇଗଣ ଭରତା ସାଙ୍ଗକୁ ମୁଢି ଧରି ବସିଛନ୍ତି । ଆଣିଦେବି କି ସେଥିରୁ ଗଣ୍ଡେ ?"

"ନା ।"

"କ'ଣ ଦେହ ବ୍ୟସ୍ତ ଲାଗୁଚି ?"

ପତ୍ନୀଙ୍କ ମୁହଁକୁ ଚାହିଁ ଭୋଳାନାଥବାବୁ ହସିଦେଲେ – ତୁମ ଭଳି ପତ୍ନୀ ଜଗିବସିଲେ ତ ଯମ ବି ପଶି ପାରିବ ନାହିଁ ମୋ ପାଖରେ – ରୋଗ କଥା ଉଠୁଚି କାହୁଁ ? ଖୁଆଇ ପିଆଇ ପାଳି ରଖିଚ ଏତେବର୍ଷ ଧରି, ନିଜେ ନଖାଇ, ପିଲାଙ୍କୁ ନଦେଇ ମତେ ହିଁ ଅତିଥିସତ୍କାର କରି ଆସିଚ । ଦେଖୁନାହଁ କେମିତି ମୁଁ ଯେଉଁ ଜ୍ୱାଇଁପୁଅକୁ ସେଇ ଜ୍ୱାଇଁପୁଅ ହୋଇ ରହିଚି ।

"ହଅଅ, ତମର ଯୋଉ କଥା ।"

"ସେ ପକୁଡିଗୁଡିକ ଏଥିରେ ମିଶାଅ । ଆଉ ଘୁଗୁନି ଯଦି ଅଛି ଆଣ । ସବୁ ନେଇଚାଲ ପିଲାଙ୍କ ସାଙ୍ଗେ ବସି ଖାଇବା ।"

"ସେ ଗହଳି ଭିତରେ ତୁମେ କାହିଁକି ପଡିବ କହିଲ ? ତମେ ତମର ଏଇଠି ବସି ଖାଉନ । ସେମାନେତ ତାଙ୍କର ବସି ଖାଉଛନ୍ତି, ସେମାନଙ୍କୁ କାହିଁକି ଅକାରଣ ହଇରାଣ କରିବ ।"

ପକୁଡିତକ ପ୍ଲେଟ୍‌ରେ ଅଜାଡି ଦେଇ ସେ ବୁଲିପଡିଲେ । କହିଲେ ମୁଢି ଆଉ ଭରତା ମୁଁ ଅଲଗାରେ ବାଢି ନେଇ ଆସୁଛି ।

ଭୋଳାନାଥ ବାବୁ ତାଙ୍କ ସ୍ତ୍ରୀଙ୍କ ପଛକୁ ଚାହିଁରହିଲେ । ତିରିଶ ବର୍ଷ ତଳେ ସେ ତାଙ୍କ ଶ୍ୱଶୁରଘରେ ପ୍ରଥମଥର କୁଣିଆ ହୋଇଥିଲେ । ସେଦିନ ତାଙ୍କୁ ଲାଗିଥିଲା ଯେ ସାରା ସଂସାର ତାଙ୍କ ସେବାରେ ଖଟି ରହିଛି । ସେ ସମ୍ରାଟ ଭଳି ମଝିରେ ବସିଛନ୍ତି ରତ୍ନସିଂହାସନରେ । ଭୁଞ୍ଜିବା ହିଁ ତାଙ୍କର ଏକମାତ୍ର କର୍ତ୍ତବ୍ୟ । ତାଙ୍କୁ ଭୁଞ୍ଜେଇବା ସେମାନଙ୍କ ଦାୟିତ୍ୱ, ସେମାନଙ୍କ ଧର୍ମ ।

ଲସରପସର ହୋଇ ମୁଢ଼ି ଭରଟା ଧରି ତାଙ୍କ ସ୍ତ୍ରୀ ପଶିଆସିଲେ ।

"ଆରେ ଆଉରି ଖାଇନ ? ଖାଇଦଉନ କାହିଁକି । କେତେ ଶ୍ରଦ୍ଧାରେ ପିଲେ ରାନ୍ଧିଛନ୍ତି । ପକୁଡ଼ି ଛାଣିଛନ୍ତି ତମେ ଖାଇବ ବୋଲି ।"

ତାଙ୍କ ଆଖିକୁ ଚାହିଁ ଭୋଳାନାଥ ବାବୁ କହିଲେ, 'ତମେ ଏଥିରୁ ଯଦି ମୋ ସାଙ୍ଗରେ ବସି ଖାଇବ, ତେବେ ମୁଁ ମଧ ଖାଇବି । ମୁଁ ଆଉ ଏକୁଟିଆ ଖାଇ ପାରିବି ନାହିଁ ।'

"ମତେ ଏଗୁଡ଼ାକ ଭଲଲାଗେ ନାଇଁ – ତମେ ତ ଜାଣିଚ ।"

ଭୋଳାନାଥ ବାବୁ ନିଷ୍ଚୟ ଜାଣିଛନ୍ତି ଯେ ତାଙ୍କୁ ସବୁ ଖୁଆଇବାକୁ ତାଙ୍କ ସ୍ତ୍ରୀ ସେମିତି ମିଛ କହିଦିଅନ୍ତି ।

'ହେଇ ମୁଁ ନଉଚି' – କହି ଦୁଇଟି ଚିପରେ ଧରି ସେ ତାଙ୍କୁ ଚାହିଁଲେ ।

"ଖାଇନିଅ । ମୁଁ ଆଉ କପେ ଚା ପଠେଇ ଦେଉଚି ।"

ଭୋଳାନାଥବାବୁ ଅଳ୍ପ ହସି ବର୍ଷାକୁ ଚାହିଁରହିଲେ । ଚିନ୍ତାମଣିଆ କ'ଣ କେବେ ମିଶିଯାଇ ପାରିବ ଏମାନଙ୍କ ସାଙ୍ଗରେ! ସେ ଯଦି ଏଇନା ଆସି ପହଞ୍ଚିଯାନ୍ତା, ସାଙ୍ଗ ହୋଇ ଅନ୍ତତଃ ଏ ପକୁଡ଼ିକୁ ଖାଆନ୍ତେ । ଏକାଠି ବସିଲେ ଦି'ଜଣ କୁଣିଆ ମଧ କୁଟୁମ୍ବୀ ପରି ଲାଗନ୍ତେ ପରସ୍ପରକୁ । ସେ ଚଣ୍ଡାଳ କ'ଣ ଆସିବ ଏମିତି ପାଗରେ ? ସେ ତା' କୁକୁରକୁ ନେଇ ମାତିଥିବ । କଳା ମଚ ମଚ ଘୋଡ଼ା ଛୁଆପରି ଏଡେବଡ ଆଲ୍‌ସେସିଆନ୍ । ତାକ ନାଁ ସିଜର! ତାକୁ ସେ ସାଙ୍ଗରେ ରଖିଥାଏ । କଥାବାର୍ତ୍ତା କରେ । ଖେଳେ । ତା' ପିଲାଏ ତ' ଥାନ୍ତି ମା' ପାଖରେ । ପାଠ ପଢ଼ି ଫେରନ୍ତି ସେଇ ମାଆ ପାଖକୁ । ଏ ଶଳା ବେକୁବ୍ ବାପ ଏକୁଟିଆ ଥାଏ କୁକୁରକୁ ନେଇ ।

ଆଚ୍ଛା, ଟମ୍ ବି ତ ଭଲ କୁକୁରଟା । ଏମିତି ଗୁଡ଼ାଏ ଅଭିଜାତ ହୁଏତ ନୁହେଁ । ତଥାପି ବେଶ୍ ବଢ଼ିଆ । ତାକୁ ଚେନ୍‌ରେ ବାନ୍ଧି ରଖାହୋଇଥାଏ । ତାକୁ ହାଡ, ହଳଦିଆ ଭାତ, ସାତଦିନକୁ ଦୁଇଟି ଅଣ୍ଡା, ରୁଟି, କ୍ଷୀର ଲାଗୁଆଣି ହୋଇ ରହିଛି । ତାକୁ ପାଳି ପୋଷି ରଖିବାରେ, ତା' ସେବା କରିବାରେ ଏତେ ଟିକେ ତ୍ରୁଟି ରହେନାହିଁ । କିନ୍ତୁ ସେ ବାଟଘରୁ ଫିଟି ଆସିଲେ ପୁଣି ତାକୁ ଥାପୁଡ଼ା ଥାପୁଡ଼ି କରି ଚେନ୍‌ରେ ବାନ୍ଧିଦିଆହୁଏ । ସେପର୍ଯ୍ୟନ୍ତ କେହି ଆଶ୍ୱସ୍ତ ବୋଧ କରନ୍ତି ନାହିଁ ।

ଛପ୍ ଛପ୍ କ'ଣ ଗୁଡ଼ାଏ ଛାଇ ଭୋଳାନାଥ ବାବୁଙ୍କ ମୁହଁ ଉପରେ ଦେଇ ପାରିହୋଇଗଲା । ଏଇ ଟମ୍‌ର ବାପ ଭାଲୁଆ ବି ତାଙ୍କ ଘରେ ଆଠବର୍ଷ କାଳ ଥିଲା । ସେ ମରିବା ଦିନ ତାଙ୍କ ସ୍ତ୍ରୀ ପିଲାମାନେ ଖୁବ୍ କାନ୍ଦିଥିଲେ । ଓପାସ ରହିଥିଲେ, ତାକୁ ମନେପକାଇ ବାହୁନିଥିଲେ ।

ଭୋଳାନାଥ ବାବୁଙ୍କର ଭାରି ଇଚ୍ଛା ହେଲା ଚିନ୍ତାମଣି ଭଳି ଟମ୍‌କୁ ନେଇ ସେ ଏଇ ବର୍ଷାପାଗଟା କାଟି ଦିଅନ୍ତେ । ଟମର ଜିଭ ଖୁବ୍ ନରମ ଆଉ ଉଷୁମ । ସେ ତାଙ୍କ ପାଖରେ ବସି ପାଦ ଚାଟିଛି ବହୁବାର । ଏବେ କିନ୍ତୁ ତାକୁ ସେ କୋଳକୁ ଉଠେଇ ନିଅନ୍ତେ । ଟମ୍ ବିଶ୍ୱାସ କରି ପାରନ୍ତା ନାହିଁ । ତା'ପରେ କିନ୍ତୁ ମାତିଯାନ୍ତା । ତାକୁ ଭୋଳାନାଥବାବୁ ନିଜ ହାତରେ ପକୁଡ଼ି ଖୁଆଇ ଦିଅନ୍ତେ । ତାକୁ ବାରମ୍ବାର କୁଣ୍ଡାନ୍ତେ । ମୁହଁରେ ମୁହଁ ଘଷନ୍ତେ । ତା' ପାଖରେ ତାରି

ଢଙ୍ଗରେ ପେଟେଇ ପଡନ୍ତେ ଏବଂ ପ୍ଲେଟରୁ ସାଙ୍ଗ ହୋଇ ମୁହଁ ଲଗେଇ ପକୁଡି ଖାଆନ୍ତେ ଦି'ଜଣ ।

ଟମ୍ ଖୁସିରେ ତାଙ୍କ ଦେହସାରା ଚଢିଯାନ୍ତା । ଗଡି ପକାନ୍ତା । ଗୋଟାଏ କ'ଣ ଅମୂଲ୍ୟ ସମ୍ପଦ ପାଇଲା ପରି ସେ ବିହ୍ୱଳ ହୋଇ ଭୁକୁଥାନ୍ତା । କମ୍ପୁଥାନ୍ତା ତା' ଦେହ । ତାତିଯାଇଥାନ୍ତା । ଠକ୍ ଠକ୍ ଥରୁଥାନ୍ତା...

ଭୋଳାନାଥ ବାବୁଙ୍କ ସ୍ତ୍ରୀ ଏବଂ ପିଲାମାନେ ଆସି ଚିତ୍ର ପ୍ରତିମା ପରି ଠିଆ ହୋଇଯାନ୍ତେ । କାହାରି ତୁଣ୍ଡରୁ କଥା ବାହାରନ୍ତା ନାହିଁ । ଗୋଟାଏ ବାହୁକୁ ଟମ୍ ବେକରେ ବେଢେଇ ଖଣ୍ଡିଏ ପକୁଡି ସେ ଦାନ୍ତେଇଲାବେଳେ ହୁଏତ ଟମ୍ ଅନ୍ୟମାନଙ୍କୁ ଘଉଡେଇବାପାଇଁ ଡାକନ୍ତା, ଭୋଃ ଭୋଃ । ଭୋଳାନାଥ ବାବୁ ମଧ ଖୁସିରେ, ଦୋସ୍ତିରେ ଆପଣାପଣରେ, ଅନନ୍ତ ସାଧୀନତା, ସନ୍ତୋଷ ଏବଂ ବେଖାତିରରେ କହନ୍ତେ; ଭୋଃ, ଭୋଃ । ଯେ ଯାହା ସେଥିରୁ ବୁଝୁ ନବୁଝୁ କ'ଣ ଯାଏ ଆସେ ତାଙ୍କର ? ଟମ୍ ଏମିତି ଅଲଗା ଘରେ ମାଉଁସ ହାଡ ସତନ୍ତ୍ର ଥାଳିଆରେ ଖାଇ ଖାଇ ଦିନେ ମରିଗଲେ ତ ସେମାନେ ପୁଣି ବାହୁନି କାନ୍ଦିବେ । ହୁଏତ ଓଳିଏ ଓପାସ ରହିବେ । କିଛି ଦିନ ପାଇଁ ଅତିଥି ହୋଇ ଚାଲିଯିବା କଥାତ । ଟମ୍ ହେଉ ବା ସେ ହୁଅନ୍ତୁ କ'ଣ ତଫାତ୍ କହୁନ ।

"କ'ଣ ହେଇଚି ଆଜି ତମର, ଆଖି ଛଳ ଛଳ କରି ବସିଚ । କିଛି ଖାଉନାହଁ । କାହିଁକି ଏମିତି ବର୍ଷାକୁ ଚାହିଁ ଗୁଡାଏ ଏଣୁତେଣୁ ଭାବନା କରୁଛ କହିଲ । ପିଲେ କେରମ୍ ଖେଳୁଛନ୍ତି । ତମକୁ ଡାକୁଛନ୍ତି, ଆସ ଖେଳିବ । ମୁଁ ପକୁଡି ନେଇ ଆସୁଚି ସେଠିକି ।"

ଭୋଳାନାଥ ବାବୁ ଅନୁଭବ କଲେ ତାଙ୍କ ବେକରେ ଚିକ୍‌କଣ ଭେଲ୍‌ଭେଟ୍‌ର ଫିତା ଲାଗିଚି । ସେଥିରେ ଲୁହା ଶିକୁଳି ଗଳେଇ ଭୋଳାନାଥ ବଳିଆର ସିଂହଙ୍କ ସ୍ତ୍ରୀ ଶ୍ରୀମତୀ ବଳିଆର ସିଂହ ଟାଣୁଛନ୍ତି ଆସ୍ତେ ଆସ୍ତେ । ଚୁଁ ଚୁଁ କରି ସିଟି ମାରି ପିଠି ଥାପୁଡେଇ ଭିଡୁଛନ୍ତି ।

ଭୋଳାନାଥ ବାବୁ ଉଠିଲେ ସତ; କିନ୍ତୁ ଜାଣି ପାରିଲେ ନାହିଁ କେଉଁ ଆଡକୁ ଯିବେ । ବାହାରଘରେ ପକୁଡି ଗନ୍ଧ ବାରି କୁଁ କୁଁ ଡାକୁଥିବା ଟମ୍ ପାଖକୁ ଅଥବା ଘର ଭିତରେ ଗାଲିଚା ଉପରେ ସଜାହୋଇଥିବା କେରମ୍ ପାଖକୁ । ସେ ଜାଣିପାରୁ ନଥିଲେ ତାଙ୍କର ଦୁର୍ବହ ଅତିଥି ପଣକୁ କେମିତି ଓହ୍ଲେଇବେ କାନ୍ଧରୁ; କେଉଁଠି ଓହ୍ଲେଇବେ ।

ଅସାଭାବିକ ଭାବରେ ତାଙ୍କୁ ସେଦିନ ବର୍ଷା ପାଗରେ କାନ୍ଦ ମାଡୁଥିଲା । ତାଙ୍କ ଆଖି ଉପରକୁ ନଇଁଆସୁଥିଲା ମେଘ । ନିଶ୍ୱାସରେ ଝଙ୍କା ପବନ ସାଇଁ ସାଇଁ ଡାକୁଥିଲା । କିନ୍ତୁ ବହୁ ଦୂରରେ କେଉଁ ଦୂରନ୍ତ ବଙ୍ଗୋପସାଗରରେ ଲଘୁଚାପ ସୃଷ୍ଟି ହୋଇଥିଲା ତାହା ତାଙ୍କ ସ୍ତ୍ରୀ ବା ସେ ନିଜେ ଠଉରେଇ ପାରୁ ନଥିଲେ ।



# ଅନାବରଣ

ଏକୁଟିଆ ଛାତ ଉପରେ ବସିଥିଲାବେଳେ ଏ ଅଞ୍ଚଳରୁ ଆଲୁଅ ଗ୍ଭଲିଗଲା । ନିବିଡ ଅନ୍ଧାର ଭିତରେ ତେଣିକି ଅପେକ୍ଷା କରିବା କଥା । କେତେବେଳେ ହୁଏତ ପରିଚିତ ପୃଥିବୀ ପୁଣିଥରେ ଫେରିଆସିବ ବା ନଆସିବ ! ମେଘ ଟେକି ରଖିଥାଏ । ପବନ ବହୁଥାଏ ପଶ୍ଚିମରୁ; ଖଣ୍ଡଗିରିଆଡୁ । ଆସିଲେ ସେଇଆଡୁ ବର୍ଷା ମାଡି ଆସିବ; ପଶ୍ଚିମରୁ ପୂର୍ବକୁ । ଏ ଆକାଶରୁ ସେ ଆକାଶକୁ । ମଝିରେ ଏ ପରିଚିତ ପୃଥିବୀ ଏ ବଂ ମୁଁ ଓଦା ସରସର ହୋଇଯିବୁ । ଜାଣିପାରିବୁ ନାହିଁ କିଏ ଏମିତି ଆମ ଉପରେ ଧାର ଧାର ପାଣି ଅଜାଡି ଦେଇଗଲା ଅଯାଚିତ ଅନୁକମ୍ପାରେ ।

ଆସିଲେ, ସେ ବି ସେଇ ପଶ୍ଚିମରୁ ହିଁ ଆସିବ; ଖଣ୍ଡଗିରିଆଡୁ! କାରଣ ସେ ଖବର ପଠେଇଚି ଆଜି ଆସି ପହଞ୍ଚିବାକୁ । ଏକୁଟିଆ ଆସିବ । ଏଇଥର ବୋଧେ ମୋ ସହିତ ତା'ର ଗୋଟାଏ ଚୂଡାନ୍ତ ଆଲୋଚନା ହୋଇଯିବ । ତା'ପରେ ଆଉ ଆମର ଦେଖା ହେବ କି ନହବ! କାହିଁକି ବା ହବ ?

ମୁଁ ଭାବୁଚି ତାକୁ ମନାକରିଦେଇଥିଲେ ଭଲ ହୋଇଥାନ୍ତା । ଆଉକିଛି ଦିନ, ଏମିତି ଅପେକ୍ଷା କରିଥିଲେ ଭଲହୋଇଥାନ୍ତା । କିନ୍ତୁ ସେ କ'ଣ ମାନିଥାନ୍ତା ? ଏଇଲାଗେ ଏ ବର୍ଷା ବତାସିକୁ ମନାକଲେ କ'ଣ ମାରିବ ?

ସତକୁ ସତ ବର୍ଷା ମାଡି ଆସିଲା । ମୁଁ ବେତ ଚୌକି ଟେକି ପାହାଚ ଆଡକୁ ଯାଉ ଯାଉ ତିନ୍ତିଗଲି । ଅନ୍ଧାରକୁ ଫାଳ ଫାଳ କରି ବିଜୁଳି ଚମକି ଗଲା । ପାହାଚ କମ୍ପିଗଲା ଦୁରୁଦୁରୁ ମେଘ ଗର୍ଜନରେ । ହେଇ ତ ଆସିଗଲା ବର୍ଷା, କାହାକୁ ଅପେକ୍ଷା ନକରି ।

ମୁଁ ଅନ୍ଧାରରେ ମନକୁ ମନ ଅଳ୍ପ ହସି ଦେଇ ଓହ୍ଲେଇ ଯାଉଥିଲି – ଧର, ଯଦି ସେ ଆସି ବୈଠକ ଘରେ ବସି ସାରିଥାଏ ! ମନ୍ଦ କ'ଣ ? ସେ'ତ କେବେ କଥାଦେଇ ହାରି ଯାଇନାହିଁ । ସୃଷ୍ଟି ଲେଉଟି ଗଲେ ମଧ ନୁହେଁ । ତେବେ ଆଜି କଥା ସାମାନ୍ୟ ସତନ୍ତ୍ର । ଏଇଥିପାଇଁ ଯେ ଶରତ୍ ଏଥର ବହୁତ ଦୂରରୁ ଆସିଛି । ଏକାଥରେ କୋଡାଇକେନାଲରୁ ।

ଅଶିଣର ସଫା ସଫା ପବନ, ଖରା ଏବଂ ଆକାଶର ପ୍ରଭାବ ମୋତେ ବଦାନ୍ୟ ସମ୍ରାଟ ଭଳି ଆଚରଣ କରିବାକୁ ଉଗ୍ରଚିତ କରେ । ସେତେବେଳେ ସାରା ସଂସାରକୁ ମୁଁ ଭଲପାଇଁ ବସେ ।

ପରିଚିତ, ଅପରିଚିତ, ସୁନ୍ଦର, ଅସୁନ୍ଦର ସବୁ ଆପଣାର ମନେ ହୁଅନ୍ତି । ଚିରକାଳ ବନ୍ଧୁ ରହିବାକୁ ଇଚ୍ଛା ଏତିକିବେଳେ ମୋତେ ଆବିଷ୍ଟ କରିଥାଏ । ଏହିପରି ଏକ ଋତୁରେ ମୁଁ ଜନ୍ମ ହୋଇଥିଲେ । ଏହିପରି ଏକ ଋତୁରେ ଶରତ ଦତ୍ତ ସହିତ ମୋର ପ୍ରଥମ ସାକ୍ଷାତ୍ ହୋଇଥିଲା । ସେ ମୋଠାରୁ ଅନ୍ତତଃ ଦଶବର୍ଷ ସାନ । କୋଡିଏ ବର୍ଷର ଗଜା ଟୋକା । ପାତଳ ଛନ୍ ଛନ୍ ଚେହେରା । ଖୁବ୍ ଲମ୍ବା ବଡ ବଡ ତରୁଣୀସୁଲଭ ଆଖି ।

ସନ୍ଧ୍ୟାବେଳେ ମୁଁ ପିଣ୍ଡାକୁ ଉଠି ଆସିଲା ବେଳକୁ ଉମାପଦବାବୁ, ଆମ ପଡୋଶୀ ହସି ହସି କହିଲେ – "ୟାକୁ ବୋଧହୁଏ ଆପଣ ଜାଣନ୍ତି ନାହିଁ ଭୋଳାନାଥ ବାବୁ । ଏ ଗୋଟେ ଜିନିଅସ୍ । ଆମ ସାଙ୍ଗେ ଯେଉଁ ନିହାର ଦତ୍ତ କ୍ଲବରେ ବିଲିଆର୍ଡସ୍ ଖେଳେ, ଏ ତା'ର ସବା ସାନ ଭାଇ । ୟା ନାଁ ଶରତ୍ – ଶରତ ଦତ୍ତ । ମେଟ୍ରିକ୍ ପରୀକ୍ଷାରେ କିଛି ନ ପଢି ବେଷ୍ଟ ଟେନ୍ ଭିତରେ ଆସିଥିଲା । ତା'ପରେ ଚାହିଁଥିଲେ ପଢିଥାନ୍ତା ! କହିଲା – 'ଚକ୍ଷୁକୁଟି ସମୟ ବରବାଦ୍ କରିବା ନାହିଁ । ଆଉ...'

"ଆସନ୍ତୁନା ଘରେ ବିସ କଥାବାର୍ତ୍ତା ହେବ ।" – କହି ମୁଁ ଉଭୟଙ୍କୁ ବୈଠକ ଘରକୁ ନେଇ ଆସିଥିଲି ।

ଉମାପଦ ବାବୁ କ'ଣ ସବୁ କହୁଥାନ୍ତି । ଶରତ ଅନ୍ୟମନସ୍କ ହୋଇ କାନ୍ଥରେ ଟଙ୍ଗା ହୋଇଥିବା ତୈଳଚିତ୍ର ଦେଖୁଥାଏ । ମୁଁ ଅନ୍ୟମନସ୍କ, କେବଳ ତାକୁ ଚାହିଁରହିଥାଏ । ଏ ଟୋକାଟା ଯଦି ନାରୀ ହୋଇଯାଏ, ଏଇ ମୁହୂର୍ତ୍ତରେ ପୃଥିବୀ ପ୍ରଳୟ କରିଦବ । ବିଧାତା ବୋଧେ ନାରୀର ସମସ୍ତ ଐଶ୍ୱର୍ଯ୍ୟ ଭୁଲ୍‌କ୍ରମେ ଏହାରି ଉପରେ ଲଦିଦେଇଛି ।

ଉମାପଦ ବାବୁ କହିଲେ ଏବଂ ମୋତେ ଉଦ୍ଦେଶ୍ୟକରି କହିଲେ, "ଏବେ ଗୋଟାଏ ବଡଧରଣର ବ୍ୟବସାୟ କରିବାକୁ ସେ ସ୍ଥିର କରିଛି । ସେଥିପାଇଁ ସରକାରୀ ବେସରକାରୀ ଋଣ ସେ ଯୋଗାଡ କରିସାରିଲାଣି । ଆପଣଙ୍କୁ ସେ ଭେଟିବ ଭେଟିବ ବୋଲି ଆସିପାରିନଥିଲା । ଏଇ ବୋଧେ ସୁଯୋଗ ମିଳିଲା । ଆପଣଙ୍କ ସହ ପରାମର୍ଶ କରିବାକୁ ତା'ର ଇଚ୍ଛା । ଆପଣ ଯଦି ରାଜି ହୁଅନ୍ତେ ସେ ସେଇ ଅନୁସାରେ ଆସନ୍ତା ।"

ମୁଁ ଉଲ୍ଲସିତ ହୋଇ କହିଥିଲି, "ଆରେ ଏ ଗୋଟେ କଥା ! ନିହାରର ଭାଇ କିଏ; ମୋ ଭାଇ କିଏ ? ସେ ଯେତେବେଳେ ଚାହିଁଲେ ଆସିପାରିବ । କେଉଁ ବିଷୟରେ ସେ ପରାମର୍ଶ ଚାହେଁ ?"

ଶରତ କହିଲା – "ମୁଁ ଆସିବି କାଲି । ସକାଳ ଆଠଟା ବେଳେ ଆପଣ ଥିବେ ତ ! ମୋ ପାଖରେ କିଛି ସାମ୍ପଲ ପଥର ଅଛି । ଆପଣ ତାକୁ କ୍ଲାସିଫାଏ କରିଦେବେ, ଟିକିଏ ଦେଖିବେ ପରୀକ୍ଷା କରି ।"

"ଠିକ୍ ଅଛି, ତୁ କାଲି ଆଣେ ଦେଖିବା !"

ଏତିକିବେଳେ ଚା ପଠେଇ ଦେଲେ ମୋ ସ୍ୱୀ । ଶରତ ଚା ଥରେ ପିଇ ଦେଇ ଖୁସିହୋଇଗଲା । "ଏଠି ଖୁବ୍ କମ୍ ଲୋକ ଚା କରି ଜାଣନ୍ତି । ଭାଉଜ ଅତି ବଢିଆ ଚା କରିଛନ୍ତି ।"

ଉମାପଦ ବାବୁ ଚା ହାତରେ ଉଠିଯାଇ ବହିଥାକ ଦେଖୁଥାନ୍ତି । ଶରତ କହିଲା, "ଆଜିକାଲି

ମଣିଷ ଭଳି ବଞ୍ଚିବାକୁ ହେଲେ ଖୁବ୍ ଟଙ୍କା ଉପାର୍ଜନ କରିବା ଦରକାର ମୁଁ ଭାବୁନାହିଁ । ଯେ ଯେତେଦରମା ପାଇଲେ ବି ଚାକିରିଆଟାଏ କେବେ ହେଲେ ତା'ର ଜୀବନକୁ ଉପଭୋଗ କରିପାରିବ ? ତା'ର ଅନେକ ଇଚ୍ଛା ଅସଂପୂର୍ଣ୍ଣ ରହିଯିବାକୁ ବାଧ୍ୟ । ଇଚ୍ଛା ଅନୁସାରେ ଖାଇବା ପିନ୍ଧିବା ମଧ୍ୟ ସମ୍ଭବ ନୁହେଁ । ବୁଆନା ଗଛପରି ସେ ସେମିତି ଦୁଇପତ୍ରରୁ ଚାରିପତ୍ର କେବେହେଲେ ହୋଇପାରିବ ନାହିଁ – ଅଥଚ ବଞ୍ଚିଥିବ । ମୁଁ ଚାହେଁ ଅଜସ୍ର ଟଙ୍କା ଉପାର୍ଜନ କରିବାକୁ । ନ ହେଲେ ମୋର କୌଣସି ଯୋଜନା ହେବ ନାହିଁ ।"

ଉମାପଦ ବାବୁ ସେଉଠୁ କହିଲେ, "ବୁଝିଲେ ଭୋଳାନାଥବାବୁ, ଶରତତକୁ ଆପଣ ଥରେ ଶୁଣିଲେ ତା' ଜାଲରେ ପଡିଯିବେ । ସେ କଣଟାଏ କରି ଦୁନିଆକୁ ତାଜୁବ୍ କରିଦେଇପାରେ ।"

"ମୁଁ ତାକୁ ଶୁଣିବା ଆଗରୁ ହିଁ ତା' ଜାଲରେ ପଡି ଛଟପଟ ହଉଥିଲି । ଏବେ ତା' କଥା ଶୁଣି ମୋର ମନେହେଉଚି ଯେ ସେ ଜୀବନର କିଛି ଜିନିଷ ବୁଝିସାରିଲାଣି । ଆଚ୍ଛା ଛାଡ, ଭାଉଜ ସାଙ୍ଗରେ ସାକ୍ଷାତ୍ ପରିଚୟ ହେବା ଦରକାର । ଆରେ ଚଗଲା ମା'କୁ କହିବୁ ଆସିବେ ।"

ଉମାପାଦବାବୁ ସାଙ୍ଗେ ସାଙ୍ଗେ ବାହାରିବାକୁ ଉଦ୍ୟମ କରି କହିଲେ, "ନାଇଁ ଭୋଳାନାଥବାବୁ, ଆଉ କେବେ ସେ ଦେଖିନେବ, ହେଇ ତ କାଲି ଆସିବ । ମୋର ତାକୁ ନେଇ କାମଟା ଆଜି ନ କଲେ ଆଉ ରକ୍ଷା ନାହିଁ । ଆମେ ଆସୁଚୁ ।"

ଦୁହେଁ ଟପ୍‌ଟାପ୍ ଓହ୍ଲେଇ ଯାଇଥିଲେ ତଳକୁ ଏବଂ କୌଣସିଠାରେ ନ ଅଟକି ବାହାରକୁ ।

ତାପରେ ଶରତ ଦତ୍ତ ଆମ ପରିବାରରେ ପ୍ରବେଶ କରିଗଲା ଅତି ସହଜ ଆତ୍ମୀୟ ଭାବରେ । ସେ କେବଳ ପାନ୍ନା, ପୋଖରାଜ, ନୀଳମ୍ ରାଜ୍ୟରେ ହିଁ ବୁଡିରହିଥିଲା । ସବୁବେଳେ ତା' କଥା ସେଇଆଡେ ମୁହାଁଇ ଯାଉଥିଲା । ମୋ ସ୍ତ୍ରୀ ତା' ମୁହଁ ଆଖି ଦାନ୍ତକୁ ମୁଗ୍ଧ ହୋଇ ଅନେଇ ଥିବାର ମୁଁ ଲକ୍ଷ୍ୟ କରିଥିଲି । ମୁଁ ନିଜେ କିଛି କମ୍ ମୁଗ୍ଧ ନଥିଲି ତା' ଚେହେରାରେ । ସେ କିନ୍ତୁ ପୁରୁଷ ବେଶରେ ଅସାମାନ୍ୟ ନାରୀଟିଏ ପରି ମୋତେ ବୋଧହେଉଥିଲା । ମୋ ସ୍ତ୍ରୀଙ୍କର ମଧ ଖ୍ୟାତି ଥିଲା ସୁନ୍ଦରୀଙ୍କ ମହଲରେ । ସେ ଦୁହେ ପାନ୍ନା, ପୋଖରାଜ, ନୀଳମ୍ ସପ୍ନରେ ମଜିଥିଲାବେଳେ ମୋତେ ମୋଗଲ ବାଦଶା ଭଳି ଲାଗୁଥିଲା ।

ଶରତ୍ ଦତ୍ତ ଦିନେ କହିଲା ଯେ ସେ ଏଭଳି ପଥର ପ୍ରାୟ ପାଞ୍ଚବସ୍ତା ସଂଗ୍ରହ କରିଛି । କାହିଁ ସେ ପାହାଡିଆ ବଣ ମୂଳକରେ ସେଠିକା ସରଳଲୋକଙ୍କୁ ଲଗେଇ ପାଞ୍ଚହାତ ମାଟି ଆଡେଇଦେଲେ ଗୋଟାଏ ପ୍ରକାର ଝୁରୁଝୁରିଆ ଶୁଖିଲା ମାଟି ଭିତରୁ ଏ ପଥରଯାକ ମିଳୁଛି । ତାଙ୍କୁ ମାଣିଆଖିଆ, ହାଣ୍ଡିଆଖିଆ ଅଲଗା ଅଲଗା ଧରେଇ ଦେଲେ ସେମାନେ ଖୁସି । ବସ୍ତାଏ ଖଣ୍ଡେ ନେଇଆସି ପରୀକ୍ଷା କରିବା ପରେ ହାରାହାରି ପଚାଶରୁ ଶହେଖଣ୍ଡ ଜାତିଆ ପଥର । ବାକି ଚାରିଶ ପାଞ୍ଚଶ ବେଶ୍ ବିକ୍ରିଗଲା ଭଳି, ଆଉ ହଜାରେ ଖଣ୍ଡେ ଚାଲୁ ପଥର । ଆଉ ମାଟି ଗୋଡି ।

କହିଲା, ତା' ପାଖରେ ପାନ୍ନା, ପୋଖରାଜ, ନୀଳମ୍ ସବୁଥିରୁ ବଛା ବଛା ବଡ ବଡ ପଥର ତିନିଖଣ୍ଡ ଅଛି । ତାକୁ ବିକ୍ରି କଲେ ଲକ୍ଷାଧିକ ଟଙ୍କା ମିଳି ପାରିବ, କିନ୍ତୁ ଶରତ୍ ଦତ୍ତ ତାକୁ ବିକିବ

ନାହିଁ ବୋଲି ନିଷ୍ପତ୍ତି ନେଇଗଲା । ତିନିଟାକୁ ଏକାଠି କରି ଗୋଟାଏ ପଦକ ପିନ୍ଧିବାକୁ ତା'ର ଇଚ୍ଛା ।

"କିରେ ପଦକ ପିନ୍ଧି ଲାଭ କ'ଣ, ତାକୁ ଗରାକ ଦେଖି ବିକ୍ରି କରିଦେଲେ ବ୍ୟବସାୟ ପାଇଁ ଅନେକ ଟଙ୍କା ମିଳିଯିବ । ମାଳ ଚୂଳ ପଦକ ମାଇକିନାଙ୍କୁ ସୁନ୍ଦର ତୁ କାହିଁକି ସେଥିରୁ ଗୋଟେ ବେକରେ ଲମ୍ବେଇବୁ ? – ଅବଶ୍ୟ ତୋ ଚେହେରାକୁ ଖୁବ୍ ମାନିବ ସେ ପଥରର ପଦକ !"

ମୋ ଶେଷ କଥାରେ ତା' ମୁହଁ ଫଣଫଣ ହୋଇ ଲାଲପଡିଗଲା । ମୁଁ ବି ତାକୁ ଅପ୍ରତିଭ ହୋଇ ଚାହିଁ ରହିଲି । ମୁଁ ତ କିଛି ମିଛ କହିନାହିଁ । ତା' ଚେହେରାକୁ ନିଶ୍ଚୟ ଭଲ ମାନିବ । ଏଥିରେ ଏମିତି କିଛି ଅପମାନ କଲାଭଳି କଥା କାହିଁ । ଶରତ୍ ଦତ୍ତ ତଳଖୁ ଚାହିଁଲା ଗୋଟାଏ ମୁହୂର୍ତ୍ତ । ତା'ପରେ ମତେ ଚାହିଁ ବଡ ବିଚିତ୍ର ଢଙ୍ଗରେ ହସିଦେଇ ଚାଲିଗଲା ।

ମୁଁ ନଥିବା ସମୟରେ ସେ ହୁଏତ ଆମ ଘରକୁ ଆସୁଥିଲା । କାରଣ ତା' ସାଙ୍ଗେ ମୋର କିଛି ଦିନ ଆଉ ଦେଖା ହୋଇନଥିଲା । ନାଲାଏକ୍ ଟୋକା; ଦେଖା କରୁନାହିଁ କାହିଁକି ? ପୁରୁଷ ପିଲାଟାଏ ଏମିତି ଗୁଷାଗୁଷି କ'ଣ କରୁଛି ? ମୁଁ ଦଶ ବାର ଦିନ ପରେ ଲାବୋରାଟରୀରୁ ଫେରିଲା ବେଳକୁ ଭାବୁଥିଲି ଯେ ନିଶ୍ଚୟ ଶରତ୍‌କୁ ଯାଇ ବୁଝାଇବାକୁ ପଡିବ । ଯେ କୌଣସି ପ୍ରକାରେ ସେଦିନ ସନ୍ଧ୍ୟାରେ ତାକୁ ନ ଦେଖିଲେ ନଚଳେ ।

ମୋର ଏବେ ବି ବିଶ୍ୱାସ ଅଛି ଯେ ଘରେ ଆସି ପହଞ୍ଚିଲା ପରେ ଚା ନେଇ ମୋ ସ୍ତ୍ରୀ ଆସି ଠିଆହେଲେ । ସନ୍ଧ୍ୟା ଆଲୁଅରେ ତାଙ୍କ ବେକରେ ସେ ପଦକ ଦାଉ ଦାଉ ଜଳୁଥିଲା ।

"ମୁଁ ଯେତେ ମନାକଲି ପରା ସେ ମାନିଲେ ନାହିଁ । ମତେ ଜବରଦସ୍ତି ଏ ମାଳଟାକୁ ପିନ୍ଧେଇ ଦେଲେ ।" ଏତକ କହିଲାବେଳେ ତାଙ୍କ ମୁହଁସାରା ଫଗୁ ବିସ୍ତୃ ହୋଇଯିବାର ମୁଁ ଲକ୍ଷ୍ୟକଲି ଏବଂ ଲକ୍ଷ୍ୟ କଲି ଯେ ସେ ଭାରି ସୁନ୍ଦର ଦେଖାଯାଉଥିଲେ । ଖୁବ୍ ଯତ୍ନରେ ନିଜକୁ ସେଦିନ ସେ ସଜେଇଥିଲା ପରି ଜଣାପଡୁଥିଲେ । ପଦକଟା ସୁନା ବନ୍ଧେଇ, ସୁନା ଜଡଉ । ମଝିରେ ପ୍ରାୟ ଇଞ୍ଚେ ଆକାରର ବିରାଟ ନୀଳମ୍ ପଥର । ଉପରେ ପୋଖରାଜ ତଳେ ପାନ୍ନା । ସାଧାରଣ ଘସା ପଥରରେ ଯେତେ ସମ୍ଭବ ତାକୁ ନିଜେ ବୋଧେ ଶରତ ଘୋରି ଘୋରି ସାଇଜ୍‌କରି ରଖିଥିଲା । ସେତିକିରେ ସେ ପଦକ ଚମକୁଥାଏ କାହିଁରେ କ'ଣ !

ଶରତ୍ ଦତ୍ତ ଜବରଦସ୍ତି ଏ ମାଳଟାକୁ ପିନ୍ଧେଇ ଦେଲା ? କୋଉଠି ? କେମିତି ? ଝଲମଲ୍ ଗୁଡିଏ ଦୃଶ୍ୟ ଆଖିକୁ ଦିଶିଗଲା । ମୁଁ ଅନୁଭବ କଲି ମୋର ଅବୟବ ସବୁ ସାମାନ୍ୟ କମ୍ପିବାର । ଅନୁଭବ କଲି, କ'ଣ ଗୁଡାଏ ଦପ୍‌ଦପ୍ ଜଳିଉଠିବାର । ମୋ କପାଳରେ ଝାଳ ଗଜରିବାର ଅନୁଭବ କଲି । ମୋ ବାଁହାତ ମୁଠା କଠିନ ହୋଇ ଯାଇଥିଲା । ଚା କପ୍ ଈଷତ୍ ଥରୁଥିଲା ମୁହଁକୁ ଉଠେଇଲା ବେଳେ । ମୁଁ ଖୁବ୍ ଧୀରେ ପଚାରିଲି – ଶରତ ଆଜି କେତେବେଳେ ଆସିଥିଲା ?

ମୁଁ ମୋ ସ୍ୱର ଶୁଣି ନିଜେ ବିସ୍ମିତ ହୋଇଯାଇଥିଲି । ଏତେ ଦୁର୍ବଳ ସ୍ୱର ତ ମୋର ନୁହେଁ । ଖୁବ୍ ବେପରୁଆ ଢଙ୍ଗରେ ସେ ହସିଦେଇ କହିଲେ – "ତାଙ୍କର କ'ଣ କିଛି ଠିକ୍ ଥାଏ ? ଦିପହରେ

ଯେତେବେଳେ ମନ ହେଲା ଚାଲିଆସନ୍ତି । ଏଠି ଚା କପେ ପିଇ ନ ଗଲେ ତାଙ୍କର କୁଆଡେ କାମ କରିବାକୁ ମୁଡ୍ ଆସେ ନାହିଁ । ତାଙ୍କର ଏଇନା ରାଜସ୍ଥାନ, ହାଇଦ୍ରାବାଦ ଦୁଇଟା ଜାଗାକୁ ଲେଖାଲେଖି ଚାଲିଛି । ବେପାରୀମାନେ ଆଉ ଦଶଦିନ ଭିତରେ ଚାଲି ଆସିବେ । ଖୁବ୍ ଲୁଚାଛପାରେ କାମ ହବ । ଏତେ ଅଳ୍ପ ବୟସରୁ କ'ଣ ଏମିତି ଗୋଟାଏ କାରବାର ଭିତରେ ସେ ପଶିଗଲେ କେଜାଣି । ମତେ କିନ୍ତୁ ଭଲ ଲାଗୁନାହିଁ । ଏମିତି ଡରିମରି ଲୁଚେଇ ଛପେଇ କ'ଣ କାମ ହୁଏ ? ଖୋଲା ଖୋଲି କଲେ କ୍ଷତି କ'ଣ ? ଯେ ଯାହା କହିବାର କହୁ । ସେ କିନ୍ତୁ ଏମିତି ପସନ୍ଦ କରୁଛନ୍ତି । କହୁଛନ୍ତି – ଲୁଚାଛପାରେ ଶହେରେ ଶହେ ଲାଭ । ଏଥିରେ ସାହାସ ଥିବା ଲୋକ, ବୁଦ୍ଧିଥିବା ଲୋକ ହିଁ ପଶନ୍ତି । ମାନ୍ଦାଳିଆ ମାଧାଙ୍କ ହାତରେ ଏସବୁ ହୁଏ ନାହିଁ । ମୁଁ ଫୁଟନ୍ତା ଚା'ଟାକୁ ମୋ ସ୍ତ୍ରୀଙ୍କ ମୁହଁକୁ ଛାଟି ଦେଇଥିଲି । ସେ ଚିତ୍କାର କଲାବେଳେ ମୁଁ ଓହ୍ଲାଇ ଯାଇଥିଲି ଦାଣ୍ଡକୁ ଏବଂ ସିଧା ଯାଇ ଶରତ ଦତ୍ତ ଦୁଆରେ ପହଞ୍ଚିଥିଲି । ସେ ନ ଥିଲା । ନୌକର ଟୋକା କହିଲା ଯେ ସେ କୁଆଡେ ଲେବୋରେଟରିକୁ ଯାଇଛନ୍ତି । ରାତିରେ ଫେରିଲାବେଳକୁ ଅନେକ ଡେରି, ଅଧିକାଂଶ ଦିନ ସେ କୁଆଡେ ରାତିରେ ଆସନ୍ତି ନାହିଁ ।"

ମୁଁ ଆଉ କିଛି ଭାବିପାରିଲି ନାହିଁ । ସିଧା ଚାଲିଗଲି ଲାବୋରେଟରିକୁ । ମୋତେ ଫେରିଆସିବାର ଦେଖି ଦରଓ୍ୱାନ ବିସ୍ମିତ ହୋଇଗଲା । କିଛି ପଚାରିବାକୁ ସାହସ କଲାନାହିଁ । ମୁଁ ଚାଲିଲେ ବିଶେଷ ଶବ୍ଦ ହୁଏ ନାହିଁ । ମୁଁ ଯାଇ ଲେବରେଟାରିରେ ପହଞ୍ଚିଲାବେଳକୁ ଟେଷ୍ଟଟ୍ୟୁବ୍‌ରେ ଏସିଡି ନେଇ ଶରତ ଦତ୍ତ ଗୋଟିଏ ପଥର ଉପରେ ପରୀକ୍ଷା କରିବାକୁ ବସିଚି । ମୁଁ ଛପ୍‌କିନା ତା' ସାମ୍ନାରେ ଠିଆହୋଇଯିବାରୁ ସେ ଖୁବ୍ ଜୋର୍‌ରେ ଚମକି ପଡିଲା । ତା' ହାତରୁ ଏସିଡ୍ ଯାକ ଛାଟି ହୋଇଗଲା ତା' ମୁହଁ ସାରା । ସେ ଯନ୍ତ୍ରଣାରେ ଚିତ୍କାର କରି ତଳେ ପଡିଗଲା । ମୁଁ କିଛି ନ କହି ତା' ଆଡକୁ ଫେରି ନଚାହିଁ, ଖୁବ୍ ଧୀରେ ଲେବରେଟରି ପାରିହୋଇ ରାସ୍ତାକୁ ଚାଲିଆସିଥିଲି । ମୋର କିଛି ହେଲେ କହିବାକୁ କିମ୍ବା ଚିନ୍ତା କରିବାକୁ ଇଚ୍ଛା ହେଉନଥିଲା । ତଥାପି ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ଅନୁଭବ କରୁଥିଲି ।

ଏ ସମସ୍ତ ଘଟଣା ପ୍ରବାହରେ ମୋର ଏବେ ମଧ ପୂର୍ଣ୍ଣ ବିଶ୍ୱାସ ଅଛି । କାରଣ ଅତି ପ୍ରାଞ୍ଜଳ ଭାବରେ ମୁଁ ତାକୁ ନିଜେ ବଞ୍ଚିଛି । କିନ୍ତୁ ମୋ ସ୍ତ୍ରୀ ଏବେ ସୁଦ୍ଧା ସେ କଥାକୁ ନେଇ ଥଟ୍ଟା କରନ୍ତି । ତାଙ୍କର ଗୋଟାଏ ପ୍ରଶ୍ନର ଉତ୍ତର ନ ପାଇ ମୁଁ ତୁନିପଡିଯିବାକୁ ବାଧ ହୁଏ ।

"ଧରାଯାଉ ତମେ ଯାହା ଯାହା କହୁଚ ସବୁ ସତ । ତା'ହେଲେ ସେ ପଦକଟା କାହିଁ ? ମୁଁ ତ ଏ ଯାଏଁ ତାକୁ ଦେଖି ନାହିଁ । ଶରତ ତ' ଦେଖି ନାହାନ୍ତି । ସେ ଭଳି ପଦକ କିମ୍ବା ହାର କେହି ତ' ଗଢି ନାହିଁ । ସେ ତିନିଖଣ୍ଡ ପଥର ବା କାହିଁ – ପାନ୍ନା, ପୋଖରାଜ ଆଉ ନୀଳମ୍ ?"

ମୁଁ ନିର୍ବାକ ତାଙ୍କ ମୁହଁକୁ ଅନାଏଁ । ତାଙ୍କ ମୁହଁରେ ସେ ଦୁଷ୍ଟାମିରେ ହସ ମୋର ଅସହ୍ୟ ବୋଧହୁଏ । ମୁଁ ତଳକୁ ମୁହଁ ପୋତି ତୁନିପଡି ଚାଲିଯାଏ । ମୋ ସ୍ତ୍ରୀ ଦି'ପହରେ ଶୋଇଥିଲାବେଳେ ଘର ନକ୍‌ସା ଖୋଜି ସବୁ ବାକ୍‌ସ ପତ୍ର ଓଲଟ ପାଲଟ କରିଛି – କିନ୍ତୁ କୋଉଠି ସେ ପଦକ ମୁଁ

ପାଇନାହିଁ । ଦିନେ ରାତିରେ ଏକୁଟିଆ ବସି ସେ ପଦକର ଚିତ୍ର ଆଙ୍କିଥିଲା କାଗଜ ଉପରେ । ସେ ତିନିଟା ପଥର ଦାଉ ଦାଉ ଦେଖାଗଲା । ସେ ହାର ଚମକିଲା ଚିକ୍‌ଚିକ୍ । ମୁଁ ଅନେକ ସମୟ ଦେଖିଲା ପରେ ତା' ଉପରେ ହାତ ମାରି ଆଣିଥିଲି । ସବୁ ରଙ୍ଗ ସେତିକିରେ ପୋଛିହୋଇଯାଇଥିଲା । ସକାଳୁ ଛୋଟ ପିଲା ଗାରେଇଲା ପରି ସେ ଚିତ୍ର ଦେଖି ମୁଁ ଭାଙ୍ଗି ପଡିଥିଲି । ସତେ ବା ମୋତେ ରାତି ଭିତରେ କିଏ ଲୁଟିନେଇଥିଲା, ଦରିଦ୍ର କରିଦେଇଥିଲା ।

ଶରତ ଦତ୍ତ ସାଙ୍ଗରେ ମୁଁ ଖୋଲାଖୋଲି କଥା କହିବାକୁ ଇଚ୍ଛା କଲି ନାହିଁ । ସେ ଖୁବ୍ ଚାଲାକ ପିଲା ତ' – ଆସ୍ତେ ଆସ୍ତେ ଆସିବା ବନ୍ଦକରିଦେଲା । ହାଇଦ୍ରାବାଦ ଯିବା ପୂର୍ବରୁ ଥରେ ଆସିଥିଲା ।

"ମୁଁ ବାହାରିଲି । ଆଉ କେବେ ଦେଖା ହେବ କହିପାରୁ ନାହିଁ । ମୁଁ ଫେରିଲେ କିନ୍ତୁ ଏମିତି ଫେରିବି ନାହିଁ । ମୋର ଯୋଜନା କାମ କରିଗଲେ ଅନ୍ତତଃ ପାଞ୍ଚକୋଟି ଟଙ୍କା ପ୍ରଥମ ଦାଉଁରେ ମିଳିଯିବ । ମୋର ଏଇନା ଟିକିଏ ଅସୁବିଧା ହୋଇଯାଇଛି । ଇନ୍‌ଭେଷ୍ଟ କଲେ ସିନା ଯାହା ହେଲେ ହୁଅନ୍ତା ! ଆପଣଙ୍କୁ ଗୋଟାଏ ଅଫର୍ ଦେବାକୁ ଆସିଲି । ଆପଣ ଆଜି ମତେ ଯଦି ହଜାରେ ଟଙ୍କା ଦିଅନ୍ତି, ଆସନ୍ତା ବର୍ଷ ଏଇ ତାରିଖରେ ମୁଁ ଆପଣଙ୍କୁ ଲକ୍ଷେ ଟଙ୍କା ଦେବାକୁ ପ୍ରମିଜ୍ କରୁଛି । ବିଶ୍ୱାସ ହେଲେ ଦିଅନ୍ତୁ; ନ ହେଲେ ସେଥିରେ କିଛି ଯାଏ ଆସେ ନାହିଁ । ଉମାପଦ ବାବୁ କିଛି ଇନ୍‌ଭେଷ୍ଟ କରିଛନ୍ତି । ଆପଣଙ୍କୁ ଏପ୍ରୋଚ୍ କରିବାକୁ କହିବାରୁ ମୁଁ ଏ ପ୍ରସ୍ତାବ ନେଇ ଆସିଚି ।"

ଚା' ନେଇ ମୋ ସ୍ୱୀ ଆସି ପହଞ୍ଚିଲା ।

– 'ନମସ୍କାର ଭାଉଜ, ମୁଁ ବାହାରିଲି ।'

– 'କୁଆଡେ ?'

– "ବାହାରକୁ, ବ୍ୟବସାୟରେ । କେବେ ଦେଖା ହେବ କହିପାରୁ ନାହିଁ ।"

ସେମାନେ ପରସ୍ପରକୁ ଚାହିଁ ଶିଷ୍ଟାଚାରରେ ଅଳ୍ପ ହସୁଥାନ୍ତି । ମତେ ମନେହେଲା ସେମାନେ କୋଉକାଳୁ ଏମିତି ଗୋପନରେ ହସିଆସୁଛନ୍ତି । ହଠାତ୍ ମୋ ସ୍ୱୀଙ୍କ ବେକରେ ସେ ହାରଟା ମୋତେ ଦିଶିଗଲା ।

"କିଓ ଏମିତି କ'ଣ ଏତେଟାମାନ ଆଖି କରି ଅନେଇଚ ? ମତେ କ'ଣ ନୂଆ ଦେଖୁଚ କି ?"

ମୁଁ ଆଖି ମଟକା ମାରି ଚାହିଁଲା ବେଳକୁ ସେ ହାର କିମ୍ବା ପଦକ ନଥିଲା । ମୁଁ ଆଶ୍ୱସ୍ତ ବୋଧକଲି । ମୋ ସ୍ୱୀ ଦୁଷ୍ଟାମିରେ ମତେ ଚାହିଁ କହିଲେ "କହିବି ଶରତ୍‌କୁ ସବୁ କଥା ?" ମୋତେ ଅପେକ୍ଷା ନକରି ହସି ହସି କହିଲେ "ତମ ପାଖରେ ଯେଉଁ ତିନିଟା ବଡ ବଡ ପାନ୍ନା, ପୋଖରାଜ ଆଉ ନୀଳମ୍ ଅଛି ସେଥିରେ ତୁମେ କୁଆଡେ ଗୋଟେ ପଦକ ତିଆରି କରି ସୁନାହାରରେ ଜଡଉ କରିଛ, ଆଉ ମୁଁ ନାହିଁ କଲେ ବି ମୋ ବେକରେ ଜବରଦସ୍ତି ପିନ୍ଧେଇ ଦଉଚ । ସେ ହାର ଆଉ ପଦକ ମୋ ବେକରେ ସେ କୁଆଡେ ଦେଖିଛନ୍ତି ।"

ଦୁହେଁ ଖେଁ ଖେଁ ଗୁଡାଏ ହସିଲେ । ଶରତ୍ ଗମ୍ଭୀର ହୋଇଗଲା । କହିଲା, ଦେଖ ଭାବି ! ଭାଇ ଯାହା କହୁଛନ୍ତି ସେଇଟା ସେମିତି କିଛି ଅସମ୍ଭବ ନୁହେଁ । ମୁଁ ପ୍ରକୃତରେ ସେ ତିନିଖଣ୍ଡ ପଥର ସାଙ୍ଗରେ ନେଇ ଯାଉଚି କଟିଂ କରାଇବାକୁ । ତା'ପରେ ପ୍ରକୃତରେ ମୁଁ ଗୋଟାଏ ପଦକରେ ତାକୁ ଏକାଠି କରିବାକୁ ଭାବିଛି । ସେଇଟା ହେବ ମୋର ରକ୍ଷାକବଚ । ମୋର ଭାଗ୍ୟ ତାହାରି ଉପରେ ନିର୍ଭର କରିବ । ଛାଡ, ତା'ହେଲେ  କ'ଣ କହୁଛନ୍ତି ଭାଇ ? ମୋ ଅଫର୍ ବିଷୟ ଭାବିକୁ ପଚାରୁ ନାହାନ୍ତି ?

ସେ ମୋ ଆଡକୁ ଚାହିଁବାରୁ ମୁଁ କହିଲି "ଶରତ୍ କହୁଚି ଆଜି ତାକୁ ହଜାରେ ଟଙ୍କା ଦେଲେ ଆସନ୍ତାବର୍ଷ ଏଇ ତାରିଖରେ ସେ ଆମକୁ ଲକ୍ଷେଟଙ୍କା ଫେରାଇ ଦେବ ।"

"ସତେ ?"

ଶରତ ତା' ବାଁ ପାପୁଲିରେ ଡାହାଣ ହାତ ମାରି କହିଲା, "ବେଶ୍ ! ମୁଁ ନିଶ୍ଚୟ ମୋ କଥା ରଖିବି, ଅଧିକା କଛି ଏବେ କହୁନାହିଁ ।"

ମୁଁ ତାକୁ ସେଦିନ ତିନିହଜାର ଟଙ୍କା ଦେଇଥିଲି । ସେ ବିଦାୟ ନେଲା ବେଳେ ମୁଁ ତାକୁ ଜାକିଧରିଥିଲି । ସେ ମୋତେ ଚାହିଁ ହସିଥିଲା । ମୁଁ ଚାହିଁଥିଲି ତାକୁ – ସେ ପଦକ ଥିବା ହାରଟା ପାଇଲେ ଜବରଦସ୍ତି ପିନ୍ଧେଇଦେଇଥାନ୍ତି ।

ସେ ଆଜିକୁ ତିନିବର୍ଷ ତଳର ଘଟଣା । ଶରତ ଦଶ ଦେଢବର୍ଷ ନିଖୋଜ ହୋଇ ଯାଇଥିଲା । ଆମେ ବି ଆସ୍ତେ ଆମ ତିନିହଜାର ଟଙ୍କା କଥା ଭୁଲି ଆସୁଥିଲୁ । ଦିନେ ଜଣେ ଆସି ଆମ ଖବରନେଇ ପହଞ୍ଚିଲା । ଜଣାଯାଉଥିଲା ସେ ଖୁବ୍ ଗହୀର ପାଣିର ମାଛ । ସେ ଅଳ୍ପ କଥା କହୁଥିଲା । 'ସେଥିରୁ ଜଣାଗଲା ଯେ ଶରତ ବିଦେଶ ଯାଇଛି । ସେଇଠି ତା'ର ବ୍ୟବସାୟ ଖୁବ୍ ଚାଲିଛି । ସେ ଚିଠି ଦେଇ ପାରୁନାହିଁ । କିନ୍ତୁ ତମକୁ ଜଣେଇବାକୁ ଚାହିଁଛି ଯେ ଦିନେ ସେ ଆସି ପହଞ୍ଚିବ ।'

ଆଉ କୌଣସି ପ୍ରଶ୍ନର ଉତ୍ତର ନଦେଇ ସେ ଚାଲିଯାଇଥିଲା । ତା'ର ସ୍ଥିର ଆଖି, ଆଦୌ ଚହଲୁ ନଥିବା ଚେହେରା ଦେଖି ଆମର ବି ସାହସ କୁଳେଇଲା ନାଇଁ ଅଧିକ କିଛି ପଚାରିବା ପାଇଁ । ସେ ଗଲାପରେ ମୁଁ ମୋ ସ୍ତ୍ରୀକୁ କହିଥିଲି – "ଦେଖ ଘଟଣା ବିଶେଷ ଭଲଜଣାପଡୁନାହିଁ । ଶରତ ନିଶ୍ଚୟ ସ୍ମଗ୍ଲିଂ କରୁଚି । ସେଥିରେ ଅପର୍ଯ୍ୟାପ୍ତ ପଇସା । କିନ୍ତୁ ସେଇଠୁ ଉଠିଆସି ସ୍ୱଚ୍ଛ ଆଲୁଅରେ ନିଜକୁ ଜାହିର ନ କଲାଯାଏ ସେ ଆମ ସହିତ ସମ୍ପର୍କ ନ ରଖିବା ଭଲ । ମୁଁ ତା' ଭାଇ ପାଖରୁ ତା' ବିଷୟରେ କିଛି ଶୁଣିନାହିଁ । ଏ ଲୋକଟା ତାଙ୍କ ଠିକଣା ଆଣିଥାଇପାରେ । ତାକୁ ଦେଖାକରିପାରେ । କିନ୍ତୁ ସେମାନେ ବି ତାକୁ ଆଉ ପାଖ ପୂରାଇବେ ନାହିଁ ।"

ସେ ଖୁବ୍ ଗମ୍ଭୀର ଏବଂ ବିମର୍ଷ ଦେଖାଗଲେ । ଅଣାଉରେ ମୋ ଭିତରୁ ଗୋଟାଏ ଦୀର୍ଘଶ୍ୱାସ ଓହ୍ଲେଇଗଲା । "ଶରତ୍‌ଟାକୁ କିନ୍ତୁ ଭୁଲିହେବ ନାହିଁ । ସେ ଯେଉଁ ପିଲା । ସେ ଚାହିଁଥିଲେ କ'ଣ ବୋଇଲେ କ'ଣ ହେଇପାରିଥାନ୍ତା । ଛାଡ..."

ପୁଣି ଖବର ଦେଇଥିଲା ସେ ଦିନେ ଆସିବ ବୋଲି । ଶେଷଥର ସମୟ ଦେଇଥିଲା ସେଇ ତାରିଖରେ ରାତି ନଅଟା ତିରିଶରେ ପହଞ୍ଚିବ । ସମୟ ବୋଧେ ହୋଇଗଲା । ଚାରିଆଡେ ବି ଅନ୍ଧାର ହୋଇଯାଇଥିଲା ତା'ର ସ୍ୱାଗତ ପାଇଁ । କବାଟ ଠକ୍ ଠକ୍ ଶୁଭିଲା । ଅନ୍ଧାରରେ ମୁଁ ମୋର ସ୍ତ୍ରୀକୁ ଟର୍ଚ୍ଚ ଦେଖେଇବାକୁ କହିଲି । ସେ ମୋ ପାଖରେ ଆସି ଠିଆ ହୋଇ ରହିଲେ । ଉଭୟେ କ'ଣ ଗୋଟାଏ ଘଟିବାକୁ ଅପେକ୍ଷା କରୁଥିଲୁ ! ଅତି ପରିଷ୍କାର ଭାବରେ କବାଟର ଠକ୍ ଠକ୍ ଶବ୍ଦ ଶୁଭିଲା !

ମୋର ସନ୍ଦେହ ନଥିଲା ଯେ ସେଇଟା ଶରତ୍ ଦତ୍ତ ନହୋଇ ଆଉ କିଏ ହୋଇପାରେ । ତଥାପି ଆମେ ଦୁହେଁ ଯେ ଯାହାକାରଣ ପାଇଁ କବାଟ ଫିଟେଇବାକୁ ଯାଉନଥିଲୁ ।

ମୁଁ ପରିଶେଷରେ ଟର୍ଚ୍ଚ ହାତରେ ନେଇ ବାହାରିଲି । କବାଟ ଫିଟେଇଦେଲି ଏକାଥରେ । ବୁକୁ ବାଡେଇ ଦେଉଥାଏ ପଞ୍ଜରାରେ । ଦେଖିଲି କେହି ନାହାନ୍ତି । ଚାରିଆଡୁକୁ ଟର୍ଚ୍ଚ ମାରି ଦେଖିଲି । ଅପେକ୍ଷା କଲି, ତା'ପରେ କବାଟ ବନ୍ଦ କରି ଫେରିଆସିଲି ।

ଆମେ ଦୁହେଁ ଅନ୍ଧାରରେ ବସିଲୁ କିଛି ସମୟ । ମୁଁ କହିଲି, "ଆଶ୍ଚର୍ଯ୍ୟ କଥା । ସେ ଏମିତି କଥା ଦେଇ ନ ଆସିବା ପିଲା ନୁହେଁ । ଆଜି ସେ ଆସି ତା'ର ଋଣ ପରିଶୋଧ କରିଥାନ୍ତା !"

– ସେ କ'ଣ ତିନିଲକ୍ଷ ଟଙ୍କା ଆଣିଥାନ୍ତା ?

– ନିଶ୍ଚୟ ଆଣିଥାନ୍ତା । ନହେଲେ ସେ ସେଇ ପାନ୍ନା, ପୋଖରାଜ, ନୀଳମ୍ ହାରଟା ଆଣି ତୁମକୁ ପିନ୍ଧେଇଦେଇଥାନ୍ତା ।

"ତୁମେ କ'ଣ ସେ 'ହାର'ରୁ ମୁକୁଳି ପାରିବ ନାହିଁ ?"

"ପାରିବି, ଯଦି ଜାଣେ ଯେ ତୁମେ ଶରତ ଦତ୍ତଠୁ ମୁକୁଳି ଯାଇଚ ।"

"ତୁମେ ନିଜେ ଭଲା ତା'ଠୁ ମୁକୁଳିଲଣି ?"

'ଇସ୍' କହି ଆଲୁଅ ଜଳିଉଠିଲା ।



# ଅନୁପସ୍ଥିତର କାହାଣୀ

ଅନ୍ୟ ସମସ୍ତେ ସେଇଠି ଉପସ୍ଥିତ ଥିଲେ । ସେ ସଭାଗୃହର ଧାଡିଧାଡି ପଙ୍ଖା ତଳେ ଅଚିହ୍ନା କପୋତ ପରି ଘୂରି ବୁଲୁଥିଲେ ସାରା ଜଗତର ଯେତେସବୁ ସମସ୍ୟା । ଡାକବାଜି ଯନ୍ତ୍ରରେ ଅନେକ ଗମ୍ଭୀର ସ୍ୱର ଓଜନଦାର ଶବ୍ଦ ଉଚ୍ଚାରଣ କରି ଫେରି ଯାଉଥିଲେ । ଏତିକିବେଳେ ସାମାନ୍ୟ ମଧ୍ୟାନ୍ତର ଆସିଲା ଏବଂ ସେଇ ନୀରବ ବ୍ୟବଧାନ ହଠାତ୍ ସମସ୍ତଙ୍କ ଉପରେ ମଡେଇ ହୋଇପଡିଲା ପରି ଲାଗିଲା । ଉପରୁ କତି ବର୍ଗୀ ସବୁ ନଇଁ ଆସିଲେ ସେ ନୀରବତାର ଓଜନରେ ।

ହଠାତ୍ ସମସ୍ତେ ଅନୁଭବ କଲେ ଯେ ଭୋଳବାବୁ ଆସିନାହାନ୍ତି । ଏଠି ସେଠି ଚୁପ୍‌ଚୁପ୍ ତାଙ୍କ ବିଷୟରେ ପଚରାପଚରି ହେଲା । ତାଙ୍କ ଅନୁପସ୍ଥିତି ସେମାନେ ମୂଳରୁ କେମିତି ଲକ୍ଷ୍ୟ କରି ପାରିନଥିଲେ ବୋଲି ବିସ୍ମିତ ହେଉଥିଲେ ।

ଏଭଳି ଏକ ସ୍ତବ୍‌ଧତା ଭିତରେ ସମସ୍ତଙ୍କୁ ଚକିତ କରି ଅତି ସ୍ୱଷ୍ଟ, ଅଥଚ ମୃଦୁ ଶବ୍ଦରେ ଜଣେ କେହି ଘୁଙ୍ଗୁଡି ମାରିବାର ଶୁଣାଗଲା । ଉତ୍ତେଜିତ, ଚକିତ ଆଖିସବୁ ବିଭିନ୍ନ ଢଙ୍ଗରେ ଖୋଜିଗଲେ ଘରସାରା । କାନ ସବୁ ଠିଆ ଠିଆ ହୋଇଗଲେ । ନୀରବ ବ୍ୟବଧାନ ଆହୁରି ସ୍ୱଷ୍ଟ ଖିଆଲିଏ ପରି ବୋଧ ହେଲା । ଏମିତି ଗୋଟାଏ ଗମ୍ଭୀର ଆଲୋଚନା ଭିତରେ ମଣିଷର ଭାଗ୍ୟ ନିୟନ୍ତ୍ରଣ ହେଉଥିଲାବେଳେ, କିଏ ସେ ନାଲାଏକ ସେଇଠି ଘୁଙ୍ଗୁଡି ମାରିପାରିଲା ? ଉପସ୍ଥିତ ଭବ୍ୟ ସମାଜ ସେଥିରେ ଘୋର ଅପମାନିତ ବୋଧକଲା । ସେମାନେ କଦାପି ଏତେ ଅବହେଳାର ପାତ୍ର ନଥିଲେ । ସେମାନେ ଏକେ ଏକେ ଶକ୍ତିଶାଳୀ ହାକିମ । କିଏ ସେ ଅପାଙ୍‌କ୍ତେୟ, ମୂର୍ଖ ? କିଏ ସେ ଏଭଳି ସଭାରେ ବସିବା ପାଇଁ ଅଯୋଗ୍ୟ ବର୍ବର ?

ଜଣେ ଖୁବ୍ କ୍ରୋଧରେ ନାକପୁଡା ଫୁଲେଇ ଏକତ ସେକତ ଅନେଇଲେ । ଦାନ୍ତସନ୍ଧିରୁ ପଚାରିଲେ "ଭୋଳାବାବୁ କାହିଁ ?"

"କାହିଁ ସତେ ସେ ଲୋକଟା ? – କାହିଁ ଭୋଳାବାବୁ ?" ମର୍ମରି ଉଠିଲା ସଭାଗୃହ ।

ଭୋଳାବାବୁଟି ଦେଖିବାକୁ ଭାରି ସୁନ୍ଦର ମଣିଷ । ହସଖୁସି ମଣିଷ । ବୟସ ପଇଁତ୍ରିଶ୍ । ତାଙ୍କୁ ଦେଖି ସମସ୍ତେ ଭାବନ୍ତି ଯେ ସେ ଜମିଦାରିଆ ମିଜାଜ୍‌ର ଲୋକ । ଖାଇପିଇ ଚେଷ୍ଟ ଶୋଇବା ହେଲା ତାଙ୍କ କାମ । ମନକୁ ନ ପାଇଲେ, ସେ ଆଲୋଚନା ସଭାରୁ ଉଠି ଚାଲିଯିବାର ମଧ୍ୟ

ଲୋକେ ଦେଖୁଛନ୍ତି । ସେଇ ଯଦି ଏଠି ଥାଆନ୍ତେ ତା'ହେଲେ ହୁଏତ ତାଙ୍କରି ଘୁଙ୍ଗୁଡି ଶୁଭୁଚି ବୋଲି ପ୍ରତ୍ୟୟ ହୁଅନ୍ତା । ସେ ଲୋକଟା ନଥିବାରୁ ଗୋଟିଏ ଅତି ସରଳ ସମାଧାନର ବିଜୟରୁ ବଞ୍ଚିତ ହୋଇ ସେମାନେ ଆହୁରି ଚିଡିଯାଉଥିଲେ ।

କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶ ସତ୍ତ୍ୱେ ଭୋଳବାବୁ କାହିଁକି ଆସିଲେ ନାହିଁ ଆଲୋଚନାକୁ ? ସେ ଆସି ବରଂ କିଛି କହିନଥାନ୍ତେ, କିଛି ଶୁଣି ନଥାନ୍ତେ ମନ ହେଲେ ବରଂ ଘୁଙ୍ଗୁଡି ମାରିଥାନ୍ତେ ଭଲା । ଧରାପଡି ଅଲାଜୁକ ଭଳି ସମସ୍ତଙ୍କୁ ନିଦ ମଳମଳ ଆଖିରେ ଚାହିଁ ଦାନ୍ତ ନିକୁଟି ହସିଥାନ୍ତେ । ତାଙ୍କୁ କେହି ରାଗିପାରି ନଥାନ୍ତେ । ବରଂ ଦୟା କରିଥାନ୍ତେ । ତାଙ୍କ ତୁଳନାରେ ପ୍ରତ୍ୟେକେ ନିଜକୁ ନିଜେ କେତେ ବିଜ୍ଞ, ଦାୟିତ୍ୱସଂପନ୍ନ, କେତେ ଜାଗ୍ରତ ବୋଲି ଭାବି ପାରିଥାନ୍ତେ । କେଡେ ବଡ ସୁଯୋଗଟାଏ ସତେ ଚାଲିଗଲା ହାତରୁ ? ଏଥିରେ କିଏ ଭଲା ଅସୁସ୍ଥ ବୋଧ ନ କରିବ ? ଯେତେ ଉଦାର ହେଲେ ସୁଦ୍ଧା ଏଥିରେ ସେ ନ ଚିଡିବ ବା କାହିଁକି ? ଚାଲିଯାଉଥିବା କୁକୁରଟିକୁ ଟେକା ମାରୁଥିବା ପିଲାଟି ଆଶା କରୁଥାଏ ଯେ ସେ ଜନ୍ତୁ ଦେହରେ ମାଡଟା ବାଜିଯାଉ । ଆଖିରେ ବାଜି କଣା ହୋଇଯାଉ । ଗୋଡରେ ବାଜି ସେ ଛୋଟା ହୋଇଯାଉ । ଏତିକି ଟିକିଏ ଆନନ୍ଦ ପାଇଁ ଯଦି ସେ ଜାନୁଆର୍‌କା ବଚ୍ଚା ସହଯୋଗ ନକଲା ଏବଂ ଖସିପଳେଇଲା, ତା'ହେଲେ ଚିଡିଯିବାର ସମସ୍ତ ଅଧିକାର ଅଛି ନା ନାହିଁ!

ଭୋଳବାବୁଟା ନାଲାଏକ୍ । ସେ ସବୁ କଥାରେ ଶୁଏ ଏବଂ ଘୁଙ୍ଗୁଡି ମାରେ । ତା' ଚୌଦ ପୁରୁଷ ଘୁଙ୍ଗୁଡି ମାରୁଥିଲେ – ସେ ହାରାମି କଣ ଆଜି ବଦଳିଗଲା ? ସେ ଅଲବତ୍ ଏଠି ଘୁଙ୍ଗୁଡି ମାରିଚି । ସେ ଆସି ନଥିଲେ କ'ଣ ହେଲା ? ସେ ଗର୍‌ହାଜର୍ ରହିବା ଯାହା, ହାଜର୍ ରହି ଘୁଙ୍ଗୁଡି ମାରିବା ତାହା । ତା' ନାଁରେ ସୌଜନ୍ୟବିରୋଧ ଏବଂ ସଭାର ମାନହାନି ଅପରାଧରେ ଫରିଆଦ୍ ହେବା ଉଚିତ୍ ।

ଗୋଟିଏ ମାତ୍ର ଶ୍ୱାସ ପତନର ବ୍ୟବଧାନରେ ଖୁବ୍ ତେଜା ଚିନ୍ତାକରି ପାରୁଥିବା ମସ୍ତିଷ୍କମାନଙ୍କରେ ଏ ସମସ୍ତ ଯୁକ୍ତି ପାରିହୋଇଯାଇଥିବ । କାହିଁକି ନା, ସମସ୍ତେ ଖୁବ୍ ବିରକ୍ତ ଏବଂ ଅସୁସ୍ଥ ଦେଖାଯାଉଥିଲେ । ଶେଷ ବକ୍ତା ଜଣକ ନିଶ୍ଚିତ ଭାବରେ ଚିଡିଯାଇଥିଲେ । ସାଧାରଣ ସଭାରେ ତାଙ୍କ ଉପରକୁ ପୋଚ ଅଣ୍ଡା ବା ଟମାଟୋ, ଅଥବା ଛିଣ୍ଡା ଚପ୍‌ପଲ ପକେଇଲେ ବରଂ ସହିହେବ । ସେମାନେ ଅନ୍ତତଃ ଶୁଣୁଥିବେ ଏବଂ ଉତ୍ୟକ୍ତ ହେଉଥିବେ ବୋଲି ପ୍ରମାଣ ମିଳୁଛି । କିନ୍ତୁ ଏପରି ଚରମ ଅବହେଳା ଏବଂ ଅବଜ୍ଞାରେ ଘୁଙ୍ଗୁଡି ମାରିବା ଅସହ୍ୟ ।

ଏତିକିବେଳେ ପୁଣି ଥରେ ଆହୁରି ସ୍ପଷ୍ଟ ଜୋର୍‌ରେ ଶୁଭିଲା ଘେଁଟ୍ ଘେଁଟ୍... ଘେଁଟ୍... ଗୁର୍‌ର୍‌ର୍ ! ସମସ୍ତେ ସ୍ପ୍ରିଙ୍ଗ୍‌ଲଗା କଣ୍ଢେଇ ଭଳି ଠିଆ ହୋଇଗଲେ । ଛନକା ହେଲାପରି ଚାହିଁଲେ ପରସ୍ପରକୁ, ଟେବୁଲ୍ ଚୌକି ଏପରିକି ଟେବୁଲ୍ ତଳକୁ ! ସମସ୍ତେ ତ' ଠିଆ ହୋଇଛନ୍ତି । ଚାହିଁରହିଛନ୍ତି । ଏମାନଙ୍କ ଭିତରୁ କେହି କ'ଣ ଏମିତି ନିଦରେ ଠିଆହୋଇ ଘୁଙ୍ଗୁଡି ମାରିପାରେ ?...ଆଶ୍ଚର୍ଯ୍ୟ ! ଯଦି ଏମାନେ କେହି ମାରୁନାହାନ୍ତି, ତେବେ କେଉଁଠୁ ଆସୁଛି ଏ ଶବ୍ଦ ?

ଆଲୋଚନାର ବିଷୟ ସମସ୍ତେ ଭୁଲିଗଲେ । ହଠାତ୍ ରାତି ଦଶଟା ବାଜିଗଲା ବୋଲି ସଚେତନ ହୋଇଗଲେ । ତୁମୁଳ ପାଟିତୁଣ୍ଡ କଲେ । ଉତ୍ତେଜିତ ଉତ୍ୟକ୍ତ ହୋଇ ଏଣେତେଣେ ବୁଲିଲେ । ସବୁ ଚୌକି ଇତସ୍ତତଃ ଘୁଞ୍ଚିଗଲା । ଟେବୁଲ ଉପରୁ ଚଦରଟାକୁ ଟାଣି ନିଆଗଲା । ସମସ୍ତେ ବାରମ୍ବାର ଲଇଁପଡି ଟେବୁଲ ତଳକୁ ଅନେଇଲେ । ସମସ୍ତଙ୍କର ଆଶଙ୍କା ହେଉଥିଲା ଯେ ଅପରାଧୀ ନିଶ୍ଚୟ ସେଇଠି ଶୋଇରହିଛି, ଚିତ୍‌ମାତ୍ ତା' ଗୋଡ ସାମାନ୍ୟ ଫରକଟେଇ ଯାଇଛି । ସେ ବୁକୁ ଉପରେ ଦୁଇହାତ ଥାପି ରଖିଛି । ନାକ ଟୋଳି ହୋଇ ରହିଛି ଉପରକୁ । ପାଟି ଈଷତ୍ ମେଲା । ଆଖି ଈଷତ୍ ମେଲା । ମୁଣ୍ଡବାଳ ଖୁବ୍ ଟାଆସାଁ, କୁଞ୍ଚୁକୁଞ୍ଚୁଆ । ଦେଖିବାକୁ ପ୍ରାୟ ଭୋଳବାବୁ ପରି । ଟେବୁଲ ତଳେ ସେମାନେ ପରସ୍ପର ମୁହଁକୁ ଚାହିଁ ପୁଣି ସଳଖିଗଲେ ।

କେହି କେହି ଚୌକି ଟେକି ତା' ତଳକୁ ଅନେଇଲେ । ଖୁରାସନ୍ଧିମାନଙ୍କୁ ଚାହିଁଲେ । ଓଡଶ, ଛୋଟ ଛୋଟ ବୁଢିଆଣୀ ଅତି ଛୋଟ ସୂକ୍ଷ୍ମ ଜାଲରେ ଧରା ପଡିଥିବା କାହିଁ କେଉଁ କାଳର ଗୁଣ୍ଡିଆ ମଶାଟିଏ ଲାଖି ରହିଥିବାର ଆବିଷ୍କାର କଲେ । ଟେବୁଲ ତଳ ବାସ୍ତବିକ୍ ଖୁବ୍ ଅପରିଷ୍କାର ଥିଲା ।

କୋଳାହଳ ଧିମେଇ ଆସିଲା ଏବଂ ପୁଣି ଶୁଣାଗଲା ସେ ଅଦ୍ଭୁତ ରାବ ।

ଯେ ଯାହା ସ୍ଥାନରେ ଥାଇ ଚମକି ପଡିଲେ । ଠିଆହୋଇ ପରସ୍ପରକୁ ଚାହିଁଲେ । ତା' ଭିତରୁ କେତେଜଣ ନିଶ୍ଚୟ ଖୁବ୍ ଉଦ୍‌ବିଗ୍ନ ଏବଂ ଆତଙ୍କିତ ଦେଖାଯାଉଥିଲେ – କାରଣ ଶୋଇଥିବା ଲୋକଟି କେଉଁଠି ହେଲେ ଦିଶୁ ନଥିଲା – ଅଥଚ ଘୁଙ୍ଗୁଡି ଶୁଭୁଥିଲା । ଭାରି ଭୟାନକ ଶୁଭୁଥିଲା ସେ ଶବ୍ଦ । ରାସ୍ତା ଉପରେ ଏ ସଭାକକ୍ଷର ଶୀତତାପ ନିୟନ୍ତ୍ରିତ ଆରାମ ନଥିଲା ହୁଏତ, କିନ୍ତୁ ଖୁବ୍ ନିରୁଦ୍‌ବିଗ୍ନ ପୃଥିବୀ, ଭାରି ସହଜ ଏବଂ ବୁଝିପାରିଲା ଭଳି ଜୀବନ ତ' ଥିଲା...

ସମସ୍ତେ ସ୍ୱତଃ ଘୁଞ୍ଚିଯାଇଥିଲେ ଦ୍ୱାର ପାଖକୁ । କବାଟ ଫିଟେଇଦେଲେ ତେଣିକି ଆଉ କିଛି ରହସ୍ୟ ନାହିଁ – ସବୁ ସ୍ୱଚ୍ଛ ଏବଂ ପ୍ରାଞ୍ଜଳ ।

ଦିବାକର ବାବୁ ଅଳ୍ପ ହସିବାକୁ ଚେଷ୍ଟା କଲେ । କହିଲେ, "ଦେଖନ୍ତୁ, ମୋର ସେମିତି ଗୋଟାଏ ଜରୁରୀ କାମ ନଥିଲେ ମୁଁ ଏହାର ତଦନ୍ତ ନକରି ଛାଡିନଥାନ୍ତି । ମୁଁ କିନ୍ତୁ ଆଉ ମାତ୍ର ପାଞ୍ଚମିନିଟ୍ ପରେ ଚାଲିଯିବି । ତଥାପି ଆପଣାମାନେ ଦୟାକରି ଟିକିଏ ପାଖକୁ ଲାଗି ଆସିବେ କି ? – ବାଆସ୍! ଆପଣ କ'ଣ କହୁଛନ୍ତି ଧନେଶ୍ୱରବାବୁ ? ଏଇଟା କ'ଣ ଆପଣଙ୍କ ମତରେ କୌଣସି ଭୌତିକ କାଣ୍ଡ ହୋଇପାରେ ?"

"ଭୌତିକ ଫୌତିକ କିଛି ନାହିଁ । ଆମରି ଭିତରୁ ଗୋଟାଏ କିଏ ରହି ରହି ଘୁଙ୍ଗୁଡିଟାଏ ମାରିଦେଉଚି, କିନ୍ତୁ ନିଜେ ଜାଣିପାରୁ ନାହିଁ । ଏମିତି ବି ହୁଏ । ମୋର ଜଣେ ପିଉସା ଥିଲେ । ସେ ସବୁବେଳେ ଘାଡୁରୁ ଘାଡୁରୁ ହଉଥିଲେ – କିନ୍ତୁ ଜାଣିପାରୁନଥିଲେ । ଆମେ ବର୍ତ୍ତମାନ ସେଇ ଭଦ୍ରଲୋକଙ୍କୁ ନିଦରୁ ଉଠେଇବାକୁ ହେବ ।"

"ସେଇଟା ତ କାହିଁ ସେମିତି ସୁବିଧାଜନକ ଜଣାଯାଉନାହିଁ । ତାଙ୍କୁ ଆମେ ଜାଣିବା କେମିତି କହୁନାହାନ୍ତି ?"

"ଆରେ, ତା'ଠାରୁ ବଳି ସହଜ କଥା କ'ଣ ଥାଇପାରେ ? ସମସ୍ତେ ଚୁପ୍‌ଚାପ୍ ଅପେକ୍ଷା କରିବା । ଘୁଙ୍ଗୁଡି ମାରିବା ମାତ୍ରେ ପାଖ ଜଣକ ତାଙ୍କୁ ଧରିନେବ ।"

"ହେଃ...ହେଃ...ଆପଣ ଛୋଟ ପିଲାଙ୍କ ଭଳି କଥାଟା କହୁଚନ୍ତି । ବର୍ତ୍ତମାନ ସୁଦ୍ଧା ତିନିଥର ଶୁଭିଲାଣି । ଅଥଚ ଆମେ କାହିଁକି ଟେବୁଲ ତଳକୁ ହିଁ ଖୋଜିଲାଗିଛୁ । ସେ ଶବ୍ଦଟା କେଉଁଠୁ ଆସୁଚି ପରା ଜଣାପଡୁନାହିଁ ।"

କଥା ସତ । ତେବେ କ'ଣ କରାଯାଇପାରେ ? ସମସ୍ତେ ଚୁପ୍‌ଚାପ୍ ଅପେକ୍ଷା କଲେ । ଜଙ୍ଗଲରେ, ମଞ୍ଚା ଉପରେ ବାଘକୁ ଛକି ବସିଲା ପରି ନିଶ୍ୱାସ ରୋଧି ରହିଥାନ୍ତି । ସେତେବେଳେ ରୁମାଲଟିଏ ସୁଦ୍ଧା ତଳେ ପଡିଥିଲେ ଶୁଣାଯାଇଥାନ୍ତା ଏବଂ କାହା ହାତରୁ ପଡିଲା ସମସ୍ତେ କହିପାରିଥାନ୍ତେ । ଏତେ ସତର୍କ ରହି ଦେଖିବା ଶୁଣିବାରେ ସେମାନେ କେହି ହେଲେ ଅଭ୍ୟସ୍ତ ନଥିଲେ । ସେଥିପାଇଁ ସମସ୍ତେ ଅସୁସ୍ଥ ଏବଂ କ୍ଳାନ୍ତ ବୋଧକଲେ । ନିଶ୍ୱାସ ଅସ୍ୱାଭାବିକ ହେଉଥିବାରୁ ସମସ୍ତଙ୍କ ବେକମୁଣ୍ଡା ଆଉ କପାଳରେ ଝାଳ ଜକେଇଗଲା । ଆଖିପତା ପଡିଗଲେ କାଳେ ସେଇ କ୍ଷଣିକ ଅନ୍ଧାର ଭିତରେ କ'ଣଟାଏ ଘଟିଯିବ – ଏ ଆଶଙ୍କା ସବୁରି ମନରେ ରହିଥିବାର ଜଣାଯାଉଥିଲା ।

ଧନେଶ୍ୱର ବାବୁ ପାନ ଖାଉଥିଲେ । ଖଣ୍ଡିଗୁଆଟିଏ ଅଗଦାନ୍ତରେ ଭାଙ୍ଗିଲାବେଳେ ସେ ଶବ୍ଦ ସୁଦ୍ଧା ସମସ୍ତେ ବାରି ପାରୁଥିଲେ ଏବଂ ତାଙ୍କ ଆଡେ ଚାହିଁଦେଉଥିଲେ ।

ମିସେସ ପାଢୀ ସିଲ୍‌କ ଲୁଗା କାନିଟାକୁ ବୁଲେଇଆଣି ଅଣ୍ଟାରେ ଖୋସିବାର ଖସ୍ ଖସ୍ ଶବ୍ଦ ମଧ କାହାକୁ ଏଡେଇ ପାରିଲା ନାହିଁ । ସମସ୍ତେ ଶୁଣିଲେ ଏବଂ ଜାଣିଗଲେ ।

ଘୁଙ୍ଗୁଡି ଶୁଭିଲା ନାହିଁ । ପାଞ୍ଚମିନିଟ, ଦଶମିନିଟ, କିଛି ନାହିଁ । ବରଂ ପାଞ୍ଚ ବଖରା ଦୂରରୁ କେହି ଜଣେ ଟାଇପ୍ କରିବାର ଶବ୍ଦ ଶୁଭୁଥାଏ ।

ଦିବାକରବାବୁ ଘଣ୍ଟା ଦେଖି କିଛି କହିବା ଆଗରୁ ଖଣ୍ଡିକାଶଟିଏ କାସିବାରୁ ସମସ୍ତେ ଚମକିପଡିଲେ ।

"ଦେଖନ୍ତୁ, ମୁଁ ଜାଣେନାହିଁ କେତେ କାଳ ଆପଣମାନଙ୍କୁ ଏପରି ଅପେକ୍ଷା କରିବାକୁ ପଡିବ! ରାତି ପାହିଯାଇପାରେ; ମୁଁ ଭାରି ଦୁଃଖିତ ଯେ ମୁଁ ଆଉ ରହିପାରୁନାହିଁ । ମୋତେ ଆପଣମାନେ କ୍ଷମା କରିବେ ।"

ଦିବାକର ବାବୁ କବାଟ ଫିଟେଇଲେ । ସମସ୍ତେ ଖୁସମୁସ ହେଲେ । ସେ ଜଣେ କାହିଁକି ଯିବେ ? ବାକି ସମସ୍ତେ ଏକାଥରକେ ଚାଲିଗଲେ କ୍ଷତି କ'ଣ ? ଯେ ଯାହା ଯିବା କଥା ଚିନ୍ତା କଲାବେଳେ ସେ ଅସତର୍କ ମୁହୂର୍ତ୍ତରେ ଶୁଭିଲା, ମର୍ମ ଥରାଇ ଦେଲା ଭଳି – ଘୁଁଟ ଘୁଁଟ ଘୁଁଟ ଗୁର୍‌ର୍‌ର୍ ।

କବାଟ ଦରଆଉଜା କରି ଦିବାକର ବାବୁ ଠିଆ ହୋଇଗଲେ । ଅନ୍ୟମାନେ ସବୁ ଚିତ୍ର ପ୍ରତିମା ପରି ନିଶ୍ଚଳ । ଆଶ୍ଚର୍ଯ୍ୟ! "କିଏସେ!" ବୋଲି ପାଟି କରି ଉଠିଲେ ଧନେଶ୍ୱର ବାବୁ ।

ସଭାକକ୍ଷ ସେ ପାଟିରେ ଗୁମୁରିଲା । ସମସ୍ତେ କମ୍ପିଲେ । କିନ୍ତୁ ପ୍ରଶ୍ନର ଉତ୍ତର ନାହିଁ ।

ଦିବାକର ବାବୁ କିଛି ନକହି ଚାଲିଗଲେ । ତାଙ୍କ ପଛେ ପଛେ ସମସ୍ତେ ବାହାରିଗଲେ । ସବା ଶେଷରେ ମିସେସ୍ ପାଢୀ ବାହାରିଗଲା ବେଳକୁ ମଡେଇ ପଡିଲା ପରି ଲାଗିଲା । କବାଟଟାକୁ ଚଟ୍‌କିନା ବନ୍ଦକରି ଦେଇ ସେ ପାହାଚ ବାଟେ ଓହ୍ଲେଇଗଲେ ।

ତଳେ ଯେ ଯାହାର ଗାଡିରେ ବସି ସାରିଥିଲେ । ରାତି ସେତେବେଳକୁ ଏଗାରଟା ।

ମିସେସ୍ ପାଢୀ ଅନ୍ୟମନସ୍କଭାବେ ଗାଡିରେ ବସି ଷ୍ଟାର୍ଟଦେଲେ ଏବଂ ଗାଡି ରାସ୍ତା ଉପରକୁ ଗଡିଆସିଲା । ଚିକ୍‌କଣ ରାଜରାସ୍ତା । ନୂଆ ନାଲି ଟୁକଟୁକ ଗାଡିଟି ନିଃଶବ୍ଦରେ ଗଡିଯାଉଥିଲା । ରାସ୍ତା ସାରା ଉଜ୍ଜ୍ୱଳ ବତିଆଲୁଅ । ସେ ରାସ୍ତାଟା ସେତେବେଳେ ସଂପୂର୍ଣ୍ଣ ନିରୋଳା ହୋଇଯାଇଥିଲା । ଅନ୍ତତଃ ଇଞ୍ଜିନ ଶବ୍ଦରେ ନୀରବତା ଭାଙ୍ଗିବାକୁ ସେ ଗାଡିର ବେଗ ବଢେଇଦେଲେ । ଗୁଣୁଗୁଣୁ ହୋଇ ଗୀତଟିଏ ମଧ ଗାଇବାକୁ ଚେଷ୍ଟାକଲେ ।

ରାସ୍ତାର ଗୋଟାଏ ଖୁଣ୍ଟର ଆଲୁଅ ଲିଭିଯାଇଥିଲା । ସେଇ ଆପାତ ଅନ୍ଧାର ଭିତରେ ମିସେସ୍ ପାଢୀ ଶୀତେଇ ଉଠିଲେ । ତାଙ୍କୁ ଲାଗିଲା ପଛ ସିଟ୍‌ରେ କେହି ଜଣେ ଖୁବ୍ ଆସ୍ତେ ଘୁଙ୍ଗୁଡି ମାରୁଛି । ତାଙ୍କ ହାତ ଥରିଗଲା । ସେ ଗାଡିକୁ କଷ୍ଟରେ ସମ୍ଭାଳି ନେଲେ । ଗାଡି ବନ୍ଦକରି ଭିତରେ ଲାଇଟ ଜାଳି ପଛକୁ ଅନେଇଲେ, କିଛି ନାହିଁ । ତାଙ୍କ ଦେହସାରା ବାରମ୍ବାର ଶୀତେଇ ଯାଉଥିଲା । ସେ ଆଉ ଆଲୁଅ ଲିଭାଇଲେ ନାହିଁ । ତରବର ହୋଇ ଏପଟ ସେପଟ ଛନଛନ ଅନେଇ ଅନେଇ ସେ ଗାଡି ଚଳେଇଲେ ।

ତାଙ୍କୁ ବୋଧହୁଏ ସାମାନ୍ୟ ଶୋଷ କରୁଥିଲା । ସେ ଜିଭ କାଢି ଶୁଖିଲା ଓଠକୁ ଥରେ ଚାଟିନେଲେ ।

ମିସେସ୍ ପାଢୀ ଖ୍ରୀଷ୍ଟିଆନ୍ ସାହି ପାଖରେ ସରକାରୀ ବଙ୍ଗଳାରେ ରହନ୍ତି । ମିଷ୍ଟର ପାଢୀ ରହନ୍ତି କାନପୁରରେ । ପୁଅ ଋଷିଭେଲିରେ । ଉଭୟଙ୍କର ସର୍ବଭାରତୀୟ ଚାକିରି । କେମିତି ଭଲା ଇତର ଲୋକଙ୍କ ଭଳି ସେମାନେ ଏକାଠି ରହିପାରିବେ ?

ଦରଓ୍ୱାନ ଗେଟ୍ ଖୋଲିଲା । ଗାଡି ସିଧା ଗେରେଜକୁ ନେଇ ସେ ଇଞ୍ଜିନ୍ ବନ୍ଦ କଲେ । ଖଟ୍‌କିନା ଡାହାଣପାଖ ପଛ କବାଟଟା ତା' ମନକୁ ଫିଟିଗଲା । ସେ ଡେଇଁଲା ପରି ପଦାକୁ ବାହାରି ଆସିଲେ । ସତକୁ ସତ କବାଟଟା ଫିଟି ଯାଇଥିଲା । ସେ କ'ଣ ଲକିଂ କରିବାକୁ ଭୁଲିଯାଇଥିଲେ ?...ତା'ହେଲେ ତ ବାଟରେ ଫିଟିଯାଇଥାନ୍ତା ।

ମିସେସ୍ ପାଢୀ ଖୁବ୍ ଚିଡିଲା ଭଳି କବାଟଟାକୁ ଢାଇ କିନା ବନ୍ଦକଲେ । କାଚ ଟେକି ସାମନା ଦରଓ୍ୱାଜା ବନ୍ଦକରି ଚାବିଦେଲେ । ଦରଓ୍ୱାନ୍‌କୁ ସାଧାରଣ ଭାବରେ ତାଗିଦ୍ କରି ଘର ଭିତରକୁ ପଶିଲେ । ତାଙ୍କର କିନ୍ତୁ ବାରମ୍ବାର ପଛକୁ ଚାହିଁବାକୁ ଇଚ୍ଛା ହେଉଥିଲା ।

ସେ ଡ୍ରଇଂରୁମ୍‌ରେ ପହଞ୍ଚି କାନପୁର ଫୋନ୍ ଡାଏଲ୍ କଲେ । ମିଷ୍ଟର ପାଢୀଙ୍କ ସ୍ୱର ଶୁଣି ତାଙ୍କୁ ଅନେକ ଆଶ୍ୱସ୍ତ ବୋଧହେଲା ।

"ନାଇଁ ଏମିତି ଫୋନ୍ କଲି । ଆଜି କାହିଁକି କେଜାଣି ଭାରି ଡରମାଡୁଛି । କ'ଣ ବିଚିତ୍ର ଘଟଣା ସବୁ ଘଟୁଛି ।"

"ହେଃ, ତମେ ସବୁବେଳେ ସେମିତି ଡରକୁଳୀ କିଓ, ତମେ ପରା ଏତେ ବଡ ଦାୟିତ୍ୱ ତୁଲଉଚ ! ଏତେ ଲୋକ ତମକୁ ଚାହିଁ ରହିଛନ୍ତି । ତମେ ଅଛ ବୋଲି ତାଙ୍କୁ ଦମ୍ଭ ଲାଗୁଚି । ତମେ ଯଦି ଡରିଯିବ, ତେବେ ସେମାନେ ଅନାଥ ହୋଇଯିବେ ନାହିଁ ? ତମେ ପରା ତାଙ୍କୁ ଘଣ୍ଟ ଘୋଡେଇ ରଖିଚ !"

"ରଖ ରଖ ତମ ପରିହାସ ! ତମେ କ'ଣ କେବେ ମୋ କଥା ବୁଝିଥିଲ ଯେ ଆଜି ବୁଝିବ ?"

"ଏତେ ଦୂରରେ ଥାଇ କେମିତି ପ୍ରମାଣ ଦେବି ମୁଁ ବୁଝିଛି ନା ନାହିଁ ! ମୁଁ ତା'ହେଲେ ଏଇ ଶନିବାର ଦିନ ଆସୁଛି !"

"ଧେତ୍ ତେରି...ତମେ ଗୋଟେ ବୋର୍ !" କହି ମିସେସ୍ ପାଢୀ ଫୋନ୍ ଥୋଇଦେଲେ ।

"ଶୁଣ ଶୁଣ"...କହୁ କହୁ ମିଷ୍ଟର ପାଢୀଙ୍କ ସାମନାରୁ ଦୃଶ୍ୟ ଅପସାରିତ ହୋଇଗଲା ।

ମିସେସ୍ ପାଢୀ ଚାରିଆଡକୁ ଥରେ ଚାହିଁଲେ ।

ଘରଟା ସତେ କେଡେ ଶୂନ୍‌ଶାନ୍ ହେଇଚି !

ପଛପଟ ବାରଣ୍ଡା ଘରେ ଆୟା, ରୋଷେୟା ରହନ୍ତି । ତାଙ୍କର ମନହେଲା ବାହାଦୂର ହାତରେ ସେ ସମସ୍ତଙ୍କୁ ଡାକି କିଛି ଗାଳିଦେବା ଆଳରେ ଏ ନୀରବତା ଭାଙ୍ଗିବାକୁ ।

ସେ ସୋଫା ଉପରେ ଅଯଥା ଶବ୍ଦ କରି ବସିଲେ । ମାଗାଜିନ ଗୁଡାକ ଧରି ଟେବୁଲରୁ ଧୂଳି ଝାଡିଲା ପରି କଚଡିଲେ । ଫଡ୍ ଫଡ୍ ପତ୍ର ଲେଉଟାଇ ଏଣେତେଣେ ଚାହିଁଲେ ।

ସୋଫା ଆଉ କାନ୍ଥ ମଝିରେ ବ୍ୟବଧାନଟା ତାଙ୍କୁ ଭାରି ଅସୁସ୍ଥ କରୁଥିଲା । ସେ ତାଙ୍କ ପଛପଟକୁ ଚାହିଁଦେବାକୁ ବାରମ୍ବାର ଇଚ୍ଛା କରୁଥିଲେ । ସେ କିନ୍ତୁ ଉଠିପଡି ଦାଣ୍ଡ କବାଟ ଫିଟାଇଦେଲେ ଏବଂ ଡାକିଲେ – "ବାହାଦୁର !"

"ଜି ମେମ୍ ସାହାବ" – କହି ଧାଇଁଆସିଲା ବାହାଦୁର ।

"ହମ୍ ଜବ୍ ନହିଁ ଥେ, କୋଇ ୟହାଁ ଆୟାଥା କ୍ୟା ?"

"ନହିଁ, ମେମ୍ ସାହବ...ହଁ ମେମ୍‌ସାହାବ, କୋଇ ଭୋଲାବାବୁ କରକେ ଅଫ୍‌ସର୍ ଆୟେଥେ ।"

"ଅଚ୍ଛା, କିତ୍‌ନେ ବଜେ ଆୟେଥେ ?"

"ଆପ୍ ଆନେସେ କୁଛ ଦେର୍ ପହଲେ"

ମିସେସ୍ ପାଢୀଙ୍କ ଭୂରୁ କୁଞ୍ଚେଇ ଗଲା ।

ବାହାଦୁର ଥଙ୍ଗେଇଲା ପରି କହିଲା, "ଔର ଏକ ଅଜବ୍ ବାତ୍ ମେମ୍ ସାହାବ..."

"କ୍ୟା ହେ, ବୋଲୋ ।"

"ଓ୍ୱହ ବାବୁକି ଗାଡି ବୁରି ତରହ ଜଖମ ହୁଆଥା । ଡ୍ରାଇଭର୍ ଭି କୁଛ୍ ଅଜବ ସା ଲଗତା

ଥା ।"

ମିସେସ୍ ପାଢୀ ଏ କଥାକୁ ବିଶେଷ ଧ୍ୟାନ ନଦେଇ କବାଟ ମେଲା ରଖି ଫୋନ୍ ପାଖକୁ ଚାଲିଗଲେ । ଉଠାଇବାକୁ ଯାଉଥିଲେ । – ହାତରହିଗଲା । ସେ ଜାଣନ୍ତି ଭୋଳବାବୁ ଏକୁଟିଆ ରହନ୍ତି । ତାଙ୍କ ବୟସ ପଇଁତ୍ରିଶ । ଦେଖିବାକୁ ବେଶ୍ ସୁନ୍ଦର । ତାଙ୍କ ନାଁରେ ଏମିତି କିଛି କଛି ଶୁଣିବାକୁ ମିଳେ । ତାଙ୍କୁ ଏତେ ରାତିରେ ଡାକିବା ହୁଏତ...

ଡାକିଲେ ସେ କ'ଣ ବା କହିବେ ?...ଆଲୋଚନାକୁ କାହିଁକି ଆସିଲେ ନାହିଁ ବୋଲି କୈଫିୟତ୍ ମାଗିବେ ? କାଲି ଅଫିସକୁ ଟିକେ ଚଞ୍ଚଳ ଆସିବାକୁ ତାଗିଦ୍ କରିବେ ? ଦିଲ୍ଲୀ ଗସ୍ତ ପାଇଁ ବନ୍ଦୋବସ୍ତ କରିବାକୁ କହିବେ ?...ଏ ଗୁଡାକ ସବୁ ଫାଲ୍‌ତୁ ଆଳ ଭଳି ଜଣାପଡିଯିବ ନାହିଁ ?

ଯଦି ଭୋଳବାବୁ ସେପଟୁ କହେ, "ଆପଣ ଚାହିଁଲେ ମୁଁ ବର୍ତ୍ତମାନ କୋଠିକୁ ଆସି ସବୁ ବୁଝିନେବି ମାଡମ୍!" – ତା'ହେଲେ  ସେ ନିଶ୍ଚୟ କହିବେ, "ନା ଥାଉ! କାଲି ସକାଳେ ଆସିବେ ।"..."ଏତେ ରାତିରେ ତା'ହେଲେ  କାହିଁକି ଫୋନ୍ କରୁଥିଲେ ?"...ଏଇ ଅନୁଚ୍ଚାରିତ ପ୍ରଶ୍ନଟି ଲାଜେଇଲା ପରି ଫୋନ୍ ପାଖରେ ଠିଆ ରହିବ ଅସଂଖ୍ୟ ଇଙ୍ଗିତ ବହନ କରି !

ପିଣ୍ଡାରେ ବାହାଦୁର ସାମାନ୍ୟ କାଶିଲା ।

ମିସେସ ପାଢୀ ଧଡକିନା ଫୋନ୍ ଟେକି ଡାଏଲିଂ କଲେ ।

"କିଏ ଭୋଳବାବୁ ?"

"ଆବେ କୌନ୍ ଭୋଳାବାବୁ...ଏସା କୋଇ ନହିଁ ହେ ଇଧର !" ଭୁଲ ନମ୍ବର ଲାଗିଗଲା । ଭଲ ବି ହେଲା ଗୋଟାଏ ରକମ । ସେ ଆସ୍ତେ ଫୋନ୍ ଥୋଇଦେଲା । ଆରପାଖେ ଅକଥ୍ୟ ଭାଷାରେ ସେ ଲୋକଟା ଶୋଧୁଥାଏ । ତାକୁ ସେ ନିର୍ବିରୋଧ ସହିଗଲେ । ଆସ୍ତେ ଆସିଲେ ଦୁଆର ପାଖକୁ ।

"ସବ୍ ଠିକ୍ ହେ, ବାହାଦୁର ।"

ସେ କାବଟ ବନ୍ଦକଲେ ଏବଂ ଚୁପ୍‌ଚାପ୍ ଶୋଇବା ଘରେ ପଶିଗଲେ । ଠିକ୍ ଅଛି । ଯଦି କିଛି ଅସୁବିଧା ହୁଏ ତେବେ ଦେଖାଯିବ । ସ୍ଲିପିଙ୍ଗ୍ ଗାଉନ୍‌ରେ ତାଙ୍କୁ ଶୀତ ଶୀତ ଲାଗୁଥିଲା । ଖଣ୍ଡେ ଚାଦର ଘୋଡେଇ ହେବାକୁ ପଡିପାରେ ବୋଧେ । ସେ ଚାଦର କାଢିବାକୁ ଯାଉଥିଲେ । ସେପଟେ ଫୋନ୍ ବାଜିଉଠିଲା !

ଆଶ୍ଚର୍ଯ୍ୟ ! ...ଏତେ ରାତିରେ...କିଏ ଡାକିପାରେ ? କାନପୁରରୁ ମିଷ୍ଟର ପାଢୀ ? ଦିବାକର ବାବୁ ?...ଭୋଳବାବୁ ?...ଅସମ୍ଭବ !!

"ହେଲୋ !...ମିସେସ୍ ପାଢୀ କହୁଛି ।"

"ଆପଣ ଭଲଅଛନ୍ତି ତ ?"

"ମାନେ ? କିଏ ଆପଣ ଦିବାକର ବାବୁ କହୁଛନ୍ତି ତ ?"

"ହଁ । ମୁଁ ଏକପ୍ରକାର ବାଧ ହେଲି ଆପଣଙ୍କୁ ଏ ଅସମୟରେ ଡାକିବାକୁ । ମୁଁ ଯା ପୂର୍ବରୁ

ଫୋନ କଲ ପାଇଲି । ଜଣେ କିଏ ଆପଣଙ୍କ ବିଷୟରେ ଅନେକ ଆଶଙ୍କା ପ୍ରକାଶ କଲେ । କୌଣସି କାରଣରୁ ସେ ଆପଣଙ୍କୁ ସିଧା ଫୋନ କରିପାରିବେ ନାହିଁ ବୋଲି କହିଲେ । ଆଜି ରାତିସାରା ମୋତେ ସତର୍କ ରହିବାକୁ କହି ଫୋନ୍ ରଖିଦେଲେ । ମୁଁ ତାଙ୍କ ପରିଚୟ ମଧ ପଚାରି ପାରିଲି ନାହିଁ । ରାଦର୍ ଫନ୍ନି ନୁହେଁ କି ? ଆଜି ସଂଧ୍ୟାବେଳୁ ସବୁପ୍ରକାର ଅସାଧାରଣ କଥା ହଉନାହିଁ କି ?"

"ହଁ, ତା' ମୁଁ ବି ଲକ୍ଷ୍ୟ କରୁଛି । ଆପଣ କ'ଣ ଭାବୁଛନ୍ତି ଏସବୁ ପଛରେ କେହି ଜଣେ ଅଛି ?"

"ଏମିତି କହିବା ମୁସ୍କିଲ୍ । କିନ୍ତୁ ମୁଁ ଏଠି ରହିବାର ଆଠବର୍ଷ ଭିତରେ ଏମିତି କେବେ ଘଟି ନଥିଲା । ମୁଁ ଏ ପର୍ଯ୍ୟନ୍ତ ଠିକ୍ ବୁଝିପାରି ନାହିଁ...ଏ ବିଷୟଟାକୁ । ସେ ଯାହାହଉ, ଆପଣ ନିଜେ ଟିକେ ସତର୍କ ରହନ୍ତୁ । କୌଣସି ପ୍ରକାର ଅସୁବିଧା ହେଲେ ମୋତେ ସାଙ୍ଗେ ସାଙ୍ଗେ ଡାକିବେ ।"

"ଆଚ୍ଛା !"

ମିସେସ୍ ପାଢୀ ବି ଆଦୌ ବୁଝିପାରୁନଥିଲେ ସେ ସମସ୍ତ ଘଟଣା । ରାଜଧାନୀରେ ସେ ଦୁଇବର୍ଷ ତିନିମାସ ରହିସାରିଥିଲେ । ସେ ପର୍ଯ୍ୟନ୍ତ ସବୁ ଠିକ୍ ଚାଲିଥିଲା । ...କିନ୍ତୁ ଭୋଳବାବୁ ହିଁ ତାଙ୍କର ବାରଂବାର ମନେପଡିବାକୁ ଲାଗିଲେ । ସେ ଲୋକଟାତ ବେଶ୍ ଭଲ !

– ତା' ବାହାରେ ସେ ଆଜି ଅନୁପସ୍ଥିତ ଥିଲା । ଏ କଥାଟି ସମସ୍ତେ ଲକ୍ଷ୍ୟ କରିଛନ୍ତି... । ତେବେ ସେ କାହିଁକି ରାତି ଏଗାରଟାରେ ଆସି ଦରବାନକୁ ପରିଚୟ ଦେଇଥିଲା ? କ'ଣ କହିବାକୁ ସେ ଚାହୁଁଥିଲା ? ଦିବାକର ବାବୁଙ୍କୁ ଯା ପୂର୍ବରୁ ଯେ ଫୋନ୍ କରିଥିଲା ସେ ଏଇ ଭୋଳ ହୋଇ ନଥିବ ବୋଲି କ'ଣ ପ୍ରମାଣ ? – ନା, ସେକଥା ନୁହେଁ । ଦିବାକର ବାବୁ ନିଶ୍ଚୟ ତା' ସ୍ୱର ଚିହ୍ନି ପାରିଥାନ୍ତେ । ତା' ବାହାରେ ସେ ସେଭଳି ଓଲୁ ବି ନୁହେଁ । ସେ ହୁଏତ ଆଉ କାହା ଜରିଆରେ ଫୋନ୍ କରେଇଚି ।

କିନ୍ତୁ କାହିଁକି ? – ସେ କ'ଣ ଆଜି ରାତିରେ ପୁଣି ଏଠିକି ଆସିବାକୁ ଯୋଜନା କରିଛି ? ସେ କ'ଣ ଆଉ କୌଣସି ବିପଦରୁ ମୋତେ ରକ୍ଷା କରିବାକୁ ଚାହୁଁଛି ? ତା'ହେଲେ ସେ ମୋତେ ସିଧାସଳଖ ଫୋନ୍ କରୁନାହିଁ କାହିଁକି ?

ମିସେସ୍ ପାଢୀ ପଦସ୍ଥ ଅଫିସର । କୌଣସି ପ୍ରକାର ଅପରିଚ୍ଛନ୍ନ କଥା ସେ ସହି ପାରନ୍ତି ନାହିଁ । ଭୋଳ ତାଙ୍କ ପାଖକୁ ସାମାନ୍ୟତମ ଆଳରେ ଆସୁଥିଲା । ଖୁବ୍ ସଜେଇ ହୋଇ ଆସୁଥିଲେ ପରି ମନେହେଉଥିଲା । ତା'ର ଆସିବା ଯିବାକୁ ଅନ୍ୟମାନେ ସତର୍କ ଲକ୍ଷ୍ୟ କରୁଥିଲେ – ଏକଥା ମିସେସ୍ ପାଢୀ ଜାଣିଥିଲେ । ଏଣୁ ସେ ତାକୁ କୌଣସି ପ୍ରକାର ପ୍ରଶ୍ରୟ ଦେବାକୁ ଚାହୁଁ ନଥିଲେ । କିନ୍ତୁ କ୍ଲବ୍‌ରେ ଶିଷ୍ଟାଚାରର ଦୃଷ୍ଟିରୁ ତା' ସହିତ କଥାବାର୍ତ୍ତା ହେବା କିମ୍ବା କ'ଣ ଟିକିଏ ଖାଇବା ପିଇବାରେ ଏକତ୍ରିତ ହେବା ଏକପ୍ରକାର ଅନିବାର୍ଯ୍ୟ ଥିଲା ।

ମିସେସ୍ ପାଢୀ ତା'ଠୁ ବୟସରେ ହୁଏତ ବର୍ଷେ ଦୁଇବର୍ଷ ସାନହେବେ । ସେ ସେମିତି

କିଛି ସୁନ୍ଦରୀ ନୁହନ୍ତି । କିନ୍ତୁ ଯୌବନବତୀ । ବେଶ୍ ପାତଳା ଲମ୍ବା ଏବଂ ଗୋରା ଚେହେରା । ହୋଇପାରେ ଭୋଳ ତାଙ୍କ ପ୍ରତି ମନେ ମନେ ଆସକ୍ତ ହୋଇପଡ଼ିଛି ।

ସେ ଆସ୍ତେ ଶୋଇବା ଘରେ ପଶିଗଲେ । ଆଲୁଅ ଜଳୁଥିଲା । ଅଳସ ଭଙ୍ଗୀରେ ମିସେସ୍ ପାଢ଼ୀ ଚିତ୍‌ହୋଇ ଶୋଇ ରହିଲେ ବିଛଣା ଉପରେ । କିଛି ସମୟ ସେ ଏମିତି ଛାତକୁ ଚାହିଁ ରହିବା ପରେ ଚାରିଆଡୁ ନିରବତା ଘୋଡେଇ ହୋଇଆସୁଥିଲା । ପାତଳ କୁହୁଡିରେ ସେ ଆସ୍ତେ ବୁଡିଯାଉଥିଲେ । ଏତିକିବେଳେ ସେ ହଠାତ୍ ଚମକି ଉଠିଲେ । ଆଖି ମଟମଟ କରି ସେ କାନ ଡେରିଲେ, ଯାହା ଶୁଭୁଥିଲା, ଆଉ ଶୁଭିଲା ନାହିଁ । କିନ୍ତୁ ତାଙ୍କର ପରିଷ୍କାର ମନେହେଲା ଯେ ତାଙ୍କ ପାଖରେ ଖୁବ୍ ଆସ୍ତେ ଘୁଙ୍ଗୁଡିଟିଏ ସେ ଶୁଣିଛନ୍ତି । ସେଥିରେ ତାଙ୍କର ଆଦୌ ଭୁଲ ହୋଇନାହିଁ ।

ସେ ଖଟ ଉପରେ ବସି ରହିଲେ । ତାଙ୍କ ମୁଣ୍ଡ ଗରମ ଲାଗୁଥିଲା । ବୁକୁ ଦାଉଁ ଦାଉଁ ହେଉଥିଲା । ...ଆଉ ଅନେକ କଥା ତାଙ୍କର ମନେ ପଡୁଥିଲା । ତାଙ୍କ କାର୍‌ର ପଛପଟ କବାଟଟା ତ' ମନକୁ ସେମିତି ଫିଟି ଯିବାର ନୁହେଁ । ...ଠିକ୍ ଜଣେ ଚୁପଚାପ୍ ଗାଡିରୁ ଓହ୍ଲେଇ ଗଲେ ସେମିତି ଶବ୍ଦ ହୋଇଥାନ୍ତା ।

ତାଙ୍କୁ ମାଡିପଡିଲା ପରି ଲାଗୁଥିଲା । ଆଉ କେହି ଜଣେ ସେ ଘରେ ଉପସ୍ଥିତ ଥିବାର ସେ ଅନୁଭବ କରୁଥିଲେ । ସେ ଖୁବ୍ ଦୁର୍ବଳ ବୋଧ କରୁଥିଲେ । ସଂଧ୍ୟାବେଳୁ ଘଟି ଆସୁଥିବା ସମସ୍ତ ଘଟଣା ତାଙ୍କ ମଣ୍ଡ ଦୋହଲାଇ ଦେଉଥିଲା । ଖୁବ୍ ବିଚିତ୍ର ଘଟଣା । କିନ୍ତୁ କ'ଣ କରାଯାଇପାରେ ସେ ପରିସ୍ଥିତିରେ ?

ଆଉ ବିଚିତ୍ର କଥା ହେଲା ଯେ କୌଣସି କାରଣ ବା ପ୍ରମାଣ ନଥାଇ ସେ ଦୃଢ଼ ଅନୁଭବ କରୁଥିଲେ ଯେ ଏ ସମସ୍ତ କାଣ୍ଡ ପାଇଁ ଭୋଳବାବୁ ହିଁ ଦାୟୀ ! ଶୋଇବା ଯେହେତୁ ସମ୍ଭବ ନଥିଲା, ସେ ଉଠିପଡିଲେ । ଫ୍ଲାସ୍କରେ ଆୟା ଚା ରଖିଥିଲା ସକାଳୁ ପାଇଁ । ଫ୍ଲାସ୍କ ଏବଂ ଗୋଟିଏ କାଚଗ୍ଲାସ୍ ଧରି ପୁଣି ଡ୍ରଇଂ ରୁମ୍‌ରେ ଯାଇ ବସିଲେ । ଚା ପିଇବାରୁ ତାଙ୍କର ନିଦୁଆ ଭାବଟା କଟିଗଲା । ସେ ଚିଡି ଯାଉଥିଲେ ନିଜ ଉପରେ, ସେ ସମଗ୍ର ଜିନିଷଟା ଉପରେ ଏବଂ ଭୋଳବାବୁ ଉପରେ !!

...ରାସ୍କେଲ୍ ! ତାକୁ ଏଇନା ପାଇଲେ ତା' ମର୍ଦପଣିଆ ଛଡେଇ ଦିଅନ୍ତି । ଯଦି ଯୋଜନା କରିଛି, ସେଇ ଅନୁସାରେ ଆଉଥରେ ଏବେ ଆସନ୍ତା କି !

...କ'ଣ ଭୋଳବାବୁ, ଏତେ ରାତିରେ କୁଆଡେ ?

'ସେ ଗୁଡାଏ ପରଫ୍ୟୁମ ହୁଏତ ଲଗେଇଥାନ୍ତା ।'

ଅଯଥା ଇସ୍ତିକରା ସଫାରି ସୁଟ୍ ପିନ୍ଧି ଜୋତାକୁ ଅଯଥା ଚକ୍‌ଚକ୍ କରି ସେ ଆସିଥାନ୍ତା । ତା'ର ଦାନ୍ତ, ନାକ, ଭୂରୁ, ବେଶ୍ ସୁନ୍ଦର ଦିଶୁଥାନ୍ତା ।

'...ଆସନ୍ତୁ ଭୋଳବାବୁ ! ଭିତରକୁ ଆସନ୍ତୁ ନା ।'

ତା' ଆଖି ଜଳିଉଠନ୍ତା । ମୁହଁ ଉପରେ ଫଗୁ ବୁଣି ହୋଇଯାନ୍ତା । ସେ ସନ୍ତର୍ପଣରେ

ଆଡେଇ ହେଲାପରି ପଶିଆସନ୍ତା । ପଛରୁ କବାଟ ବନ୍ଦ ହେବାର ଶବ୍ଦରେ ସେ ଖୁବ୍ ଘାବରେଇ ଯାଆନ୍ତା...ଇଡିଅଟ୍!

...'ବସନ୍ତୁ ନା !...ଏଇ ପାଖରେ ବସନ୍ତୁ! ଲାଜେଇବାର କ'ଣ ଅଛି । ଡରିବାର ବା କ'ଣ ଅଛି !'

ସେ କିନ୍ତୁ ଖୁବ୍ ଡରିଯାଆନ୍ତା ଏବଂ ଘାବରେଇଲା ପରି ହସନ୍ତା । ସେ କେବଳ ମୋ ସ୍ଲିପିଙ୍ଗ୍ ଗାଉନ୍‌ଟାକୁ ଗହିଁଥାନ୍ତା, ପ୍ରବଳ ଆବେଗରେ, ଲୋଭରେ, ଆତଙ୍କରେ! ନିଆଁ ଧାସରେ ତା' ମୁହଁ ସିଝିଯାଉଥାନ୍ତା ।

...ତା' ପାଖକୁ ଲାଗିଯାଇ ତା' କାନ୍ଧରେ ହାତ ପକେଇ ଦେଲେ କ'ଣ ହୁଅନ୍ତା ? ?...ତା' ଗାଲର ଋମଚ୍ଛଳ ଯାକ ଟାଙ୍କୁରି ଯାଆନ୍ତା, ତା' ଦେହ ତାତିଯାନ୍ତା ନିଆଁ ପରି । ସେ ଥରଥର ହୋଇ କମ୍ପି ଉଠନ୍ତା ।

ସେଇଠୁ ବୋଧେ ଭୋକିଲା ବାଘ ଝାମ୍ପି ପଡନ୍ତା ।

...ଭାରି ଭୋକ ଆତୁରିଆ, କାଉଳିଆ ଡହଡହ ତାତିଲା ମଣିଷଟା !

...ଭୋଳବାବୁଟା ଜନ୍ମା ବାଘ ନୁହେଁ ମ ! ତା'ର ନଖ ନାଇଁ କି ଦାନ୍ତ ନାଇଁ ! ତା' ଦେହସାରା କୋଉଠି ହାଡ ଖଣ୍ଡିଏ ବି ନାଇଁ ! ଖୁବ୍ ନରମ ପୋକଟାଏ ।

ଅନ୍ଧାର ଭିରେ ଲହଡି ମାରୁଥାନ୍ତା ବାସ୍ନାଟାଏ !...ଭାରି ଷ୍ଟ୍ରଂ ପର୍‌ଫ୍ୟୁମ୍ ।

X X X X

ଟେଲିଫୋନ୍ ବାଜି ଉଠିଲା । ମିସେସ୍ ପାଢୀ ହଡବଡେଇ ଉଠିଲେ । ସେ ସେଇ ସୋଫାରେ ହିଁ ଚିତ୍‌ମାତ୍ ଶୋଇ ଯାଇଥିଲେ । ଖୁବ୍ କ୍ଲାନ୍ତ, ଅବିନ୍ୟସ୍ତ ଦେଖାଯାଉଥିଲେ ।

"ହେଲୋ ! ଗୁଡ୍ ମର୍ନିଂ, ମିସେସ ପାଢୀ ! ମୁଁ ଦିବାକରବାବୁ କହୁଛି । ଛ'ଟା ବାଜିଯିବାରୁ ଆପଣଙ୍କୁ ଡାକିଲି । ରାତିରେ କିଛି ଅସୁବିଧା ହେଇ ନାହିଁ ତ ?" ଆଶ୍ଚର୍ଯ୍ୟ ! ଯା ଭିତରେ ରାତି ପାହିଗଲା କେମିତି ! ମିସେସ ପାଢୀ ଭୂରୁ କୁଞ୍ଚେଇ ଝରକାବାଟେ ବାହାରକୁ ଅନେଇଲେ । ବେଶ୍ ଆଲୁଅ ହୋଇ ସାରିଥାଏ । ଘର ସାରା କିନ୍ତୁ କୌଣସି ବିଚିତ୍ର ପର୍‌ଫ୍ୟୁମର ହାଲୁକା ବାସ୍ନା ବାରିହେଉଥାଏ । ଆଶ୍ଚର୍ଯ୍ୟ !

"ଗୁଡ୍ ମର୍ନିଂ, ଦିବାକର ବାବୁ ! ମୁଁ ବୋଧେ ଶୋଇଗଲି ପାଞ୍ଚଘଣ୍ଟା । ତଥାପି ଭାରି ହାଲିଆ ଲାଗୁଛି । ଥେଙ୍କ୍ୟୁ !"

"ନା, ନା, ଆପଣଙ୍କୁ ସାମାନ୍ୟ ଡିସଟର୍ବ କରିବାକୁ ପଡୁଥିବାରୁ ଡାକିଲି । କଥା କ'ଣ କି – ଖବରଟା ଗୋଟାଏ ଦୁଃସମ୍ବାଦ । ଆପଣ ଟିକିଏ ପ୍ରସ୍ତୁତ ହୋଇଯାନ୍ତୁ ଏବଂ କଥାଟାକୁ ବିଶେଷ ଗୁରୁତ୍ୱ ଦିଅନତୁ ନାହିଁ ।"

"କ'ଣ କହନ୍ତୁ !" ମିସେସ୍ ପାଢୀ ହାଇ ମାରିବାର ଉପକ୍ରମ କଲେ ।

"ଭୋଳବାବୁ ମରିଗଲେ ।"

"ଓଃ'...ମିସେସ୍ ପାଢୀଙ୍କର ପ୍ରତ୍ୟେକ ଗଣ୍ଠି ଝଣଝଣ ହୋଇ ଝଡିପଡିଲା । ଖୁବ୍ କଷ୍ଟରେ ଖୁବ୍ ଉତ୍ତେଜିତ ହୋଇ କହିଲେ, "ମାନେ ?"

"ଗତ କାଲି ତାଙ୍କ ଗାଡି ଘାଟ ରାସ୍ତାରେ ପାହାଡ ଦେହରେ ବାଡେି ହେଇଗଲା । ଡ୍ରାଇଭର ରାତି ଏଗାରଟାରେ ଡାକ୍ତର ଖାନାରେ ମରିଗଲା । ମରିବା ଆଗରୁ କହୁଥିଲା ଯେ ଭୋଳବାବୁ ତାକୁ ଜବରଦସ୍ତି ଗସ୍ତରେ ଯିବାପାଇଁ ବାଧ କଲେ । ତା' ପୂର୍ବ ଦୁଇରାତି ଡ୍ରାଇଭରଟା ଶୋଇ ନଥିଲା, ଛାଡନ୍ତୁ, ଯୋଗ ତ'! ଆଉ ଆଶ୍ଚର୍ଯ୍ୟର କଥା ହେଲା ଯେ, ଭୋଳବାବୁ ଗାଡିରେ ବସୁ ବସୁ କୁଆଡେ ଶୋଇଯାଇଥିଲେ ଏବଂ ପଛ ସିଟ୍‌ରୁ ଖୁବ୍ ଜୋର୍‌ରେ ଘୁଙ୍ଗୁଡି ମାରୁଥିଲେ । ତାକୁ ଶୁଣି ଶୁଣି ଡ୍ରାଇଭର ଗୋଟିଏ ମାତ୍ର ନିଶ୍ୱାସ ଘୁମେଇ ପଡିଥିଲା ।"

...ଆଉ ଶୁଣନ୍ତୁ, ସେ ଗତକାଲି ଅଫିସରେ କୁଆଡେ କହୁଥିଲେ ଯେ ଆମେ ଯେତେସବୁ କାମ କଲାବେଳେ ଘୁଙ୍ଗୁଡି ମାରୁଛୁ, ଏବଂ ସେ ଶୁଣିଛନ୍ତି । ହସି ହସି କହୁଥିଲେ ଯେ ଅଫିସଟା ସାରା ଅହରହ କେବଳ ଘୁଙ୍ଗୁଡି ମାରୁଚି !

ମିସେସ୍ ପାଢୀ ଆସ୍ତେ ଫୋନ୍ ନୁଆଇଁ ଦେଲେ । ସେ ବିମୂଢ ହେଲାପରି ଚାହିଁରହିଥିଲେ ତାଙ୍କ ନାଇଟ ଗାଉନରୁ ଛିଣ୍ଡି ପଡିଥିବା ତିନିଟା ବୋତାମକୁ । ତାଙ୍କ ସର୍ବାଙ୍ଗ ଈଷତ୍ କମ୍ପୁଥିଲା ।



## ଛାୟାପାତ

"ଜର କୋପରେ ମୁଁ ଚିରିଚିରେଇ ଉଠିଲି ବୋଲି ଏମାନେ କହୁଛନ୍ତି । ତମକୁ ହୁଏତ କିଏ ଡାକି ଆଣିଲା ଭୟ ଲାଗିବାରୁ ।"

ମୋ ସାମ୍ନା ବେତ ଚୌକିରୁ କୌଣସି ଶବ୍ଦ ବାହାରିଲା ନାହିଁ । ଢଳ ଢଳ ଚଷମା ସେମିତି ଢଳ ଢଳ ଦେଖାଗଲା । ଚିକ୍‌କଣ ଚନ୍ଦା ମୁଣ୍ଡରେ ଗୋଟିଏ ବିନ୍ଦୁରେ ଆଲୁଅ ସ୍ଥିର ହୋଇ ରହିଥିଲା । ମୁଁ ଅପେକ୍ଷା କଲି ।

"ଏଥିପାଇଁ ପରା ମୁଁ ଆକୋନାଇଟ୍ ଦେଇଥିଲି । ଜର କୋପରେ ନୁହଁ, ତୁମେ ନିଜେ ଭୟ ହେତୁରୁ ସେମିତି ପାଟି କରିଥିଲ । ଆଚ୍ଛା ଚିନ୍ତା କରି କହିଲ ଦେଖି, ତୁମକୁ କେମିତି ଡର ମାଡୁଥିଲା କୂଅକୁ ଗଳି ପଡିଲା ପରି, ନା କ'ଣଟାଏ ଭେଟେଣା ହେଲାପରି, ନା ଆଉ କେମିତିଆ !"

ମୋ ବୁକୁ ପୁଣି ଦାଉଁ ଦାଉଁ ହେଲା । ମୁଁ ସେ ଚିହ୍ନା ମୁହଁଟାକୁ ଚାହିଁ ଚମକିଲି । ଏଇ ବୋଧେ ମୋତେ ମାରିବାକୁ ଆସିଛି । ଏ ମୋତେ ଔଷଧ ଦେଇ ଭଲ କରି ପାରିବ ନାହିଁ । ଖାଲି ମୋ ବାଟ ଜଗି ଠିଆ ହେବ । ମୁଁ ଆଉ କୌଣସି ଡାକ୍ତର ଡାକି ରୋଗର ନିଦାନ କରି ପାରିବି ନାହିଁ । ମୁଁ ମୁହଁକୁ ଚାହିଁ ପାରିଲିନାହିଁ ।

"କହ । କହିଲେ ସିନା ଜଣା ପଡିବ ।"

"ମୋତେ ଲାଗୁଥିଲା...ଏବେ ବି ଲାଗୁଛି...ଯେ ହେଇ ବୋଧେ ଆଉ ଟିକେ ପରେ ମୁଁ ମରିଯିବି ।"

ଏତେପାଟିରେ ହଁ ।' କହି ବାଣ ଫୁଟିଲାପରି ସେ ଗୋଟାଏ ତାଳି ମାରିଲେ ।

"ମୁଁ ଏଇ କଥାଟା ଶୁଣିବାକୁ ଅପେକ୍ଷା କରିଥିଲି । ଏଇଟା ହେଲା ଅସଲ ଲକ୍ଷଣ । ମୃତ୍ୟୁଭୟ ! ଆଉ ଚିନ୍ତା ନାହିଁ । ଜର ନିଶ୍ଚେ ଭଲହୋଇଯିବ ।"

ମୁଁ ସତକୁ ସତ ଆଜି ପାହାନ୍ତାରୁ ଭଲହୋଇଗଲି ।

ମୁଁ କିନ୍ତୁ ହଲଫ୍ କରି କହିପାରେ ଯେ ମୁଁ ଆଦୌ ଡରକୁଳା ନୁହେଁ । ମୁଁ ଚିରକାଳ ଡେଣା ହଲେଇ ଚାଲିବାକୁ ଭଲ ପାଉଥିଲି । ମୋ ଓସାର ବୁକୁରେ, ଚମକୁଥିବା ଆଖିରେ, ମୋ ବେପରୁଆ ଠାଣି, ଟହଟହ ହସ, ବିସ୍ଫାରିତ ଚାହାଁଣି, – କେଉଁଠି ହେଲେ ଭୟର ଦାଗ ନଥିଲା ।

ଏଇନା ମୋତେ ଚାରିଆଡୁ ସମୁଦ୍ର ବେଢି ଯାଇଛି । ମୁଁ ପାଦ ବଢେଇଲେ ଇ ରସାତଳ । ଯା ପାଇଁ କ'ଣ 'ଆକୋନାଇଟ୍' ଚଳିବ ? ମୁଁ ଖାଲି ଖୋଳଟିଏ । କେତେବେଳେ ଲୁଣାପାଣି ଆସି ଭିତରେ ବାହାରେ ମୋତେ ଅଧିକାର କରିନେବ ସେଥିପାଇଁ ଶଙ୍କିତ ହୋଇ ଅପେକ୍ଷା କରିଛି । ...ଅଜଗର ଯନ୍ତାରେ କୁକୁଡାଟିଏ ଥରୁଥିବାର ଦେଖିଛନ୍ତି...ନିଶ୍ଚଳ ଅଜଗର...ନିଶ୍ଚଳ ଆଖି...କୁକୁଡାର ସର୍ବାଙ୍ଗ ଥରଥର !

ମୋ ସ୍ତ୍ରୀ ମୋ ପାଇଁ ଚା ନେଇ ଆସିଲେ । ମଇଳା ଶାଢି, କାନଭଙ୍ଗା କପ୍ । ମୋ ଖଟ ପାଖ କାଠ ଚୌକିର ହାତ ରଖା ବାହୁଙ୍ଗା ଉପରେ ଛତୁ ଫୁଟିଲା ପରି ମଇଳା । ମୋ ଶେଯ ଚାଦରର ଫୁର୍କୁଟିଆ ଗନ୍ଧ ।

ମୁଁ ହୁଏତ, ସାମଗ୍ରିକ ଭାବରେ ସାଙ୍କୁଡି ଯାଉଥିଲି । ସଢିଯାଉଥିଲି । ଗଛଟିଏ ଶାଖାପତ୍ର ହରାଇ ଏହିପରି ବୋଧେ ଆସ୍ତେ ଆସ୍ତେ ଶ୍ରୀହୀନ ହୋଯାଏ ମାଟିରେ ହିଁ ସଢିଯାଏ । ମୋର ବୋଧେ ମରିବା ଆରମ୍ଭ ହେଇଯାଇଥିବ, ସମୁଦ୍ରକୁ ଡେଇଁବାର ସମୟ ପାଖ ହୋଇଯାଇଥିବ । ମୋ ସ୍ତ୍ରୀଙ୍କ ସ୍ୱର ଅନେକ ଦୂରରୁ ଶୁଣାଗଲା । କାହିଁ କେଉଁ ଗୁମ୍ଫାଭିତରୁ ସତେବା – ଏମିତି କ'ଣ ଅନେଇ ବସିଚ ? ଚା ଥଣ୍ଡା ହେଇଯାଉଛି – ପିଇଦିଅ ।

ମୁଁ ତାଙ୍କ କଥା ଶୁଣି ଭାବିଲି ଏ ବୋଧେ ସବୁ ବୁଝି ସାରିଛି; ତଥାପି ଚାହୁନାହିଁ ଏ ପଟିଆରାଟା ଏତେ ଚଞ୍ଚଳ ଅପସରି ଯାଉ । ସାମୀଟି କେତେ ଦରକାରୀ ଉପକରଣଟିଏ ସତେ ! ଘୋଡାଟିଏ, ବେଠିଆଟିଏ, ଶୀତ ଚାଦରଟିଏ, ଆଢୁଆଳଟିଏ । ...ଏ ବରଂ ଥାଉ । ଚା ଟିକିଏ, ଜଳଖିଆ, ରୁଟି, ଆଦର ସ୍ନେହ ଟିକିଏ ବରଂ ଖାଉ – କିନ୍ତୁ ବଞ୍ଚିଥାଉ । ...ମୁଁ ଯଦି ଅସମର୍ଥ ହୋଇଥାନ୍ତି ...ରୋଗରୁ ଉଠି ପୁଣି ତାଙ୍କ ସେବାରେ ଖଟିବାର ସମ୍ଭାବନା ନଥାନ୍ତା, ତେବେ ଅନ୍ୟ ବିଚାର କରିବାକୁ ଏ ମାଇକିନିଆର ତିଳେମାତ୍ର ଦ୍ୱିଧା ହୁଅନ୍ତା ନାହିଁ ।

ମୁଁ ଚା ପିଇବାକୁ ସେପରି କୌଣସି ଜରୁରୀ କାର୍ଯ୍ୟ ବୋଲି ଭାବିଲି ନାହିଁ । ଚା ପିଇଲି ନାହିଁ । ରହି ରହି ଥଣ୍ଡା ହେଲା । ସେ ତାଙ୍କ ଚା ପିଇସାରିଲା ପରେ ଉଠିଗଲେ ।

ସେ ପୁଣି ଲେଉଟି ଚାଲି ଆସିବେ କି ?...ପୁଣି ହଡାଟିକୁ ଯଥାଶୀଘ୍ର ଚାରିଖୁରା ଉପରେ ଠିଆ କରେଇ ଦେଲେ ଯୁଆଳି ଲଦିଦେବାକୁ ଇଚ୍ଛା କରିବେ କି ? ...ମୁଁ ଗୋଡ ସାଙ୍କୁଡେଇ ନେଲି । ଚାଦର ମୁହଁ ଉପରକୁ ଟାଣି ନେଇ କାନ୍ଥ ପଟକୁ କଡ ଲେଉଟେଇନେଲି ।

ଜର ଦେହରେ ନଥିଲେ ଏମିତି ଶୋଇବାର ଅର୍ଥ କିଛି ନାହିଁ । ତଥାପି ମୋ ବୁକୁ ଥୟ ଧରିଲେ ତ' ମୁଁ ଧପ୍ ଧପ୍ ଖରାକୁ ଅନେଇ ପାରିବି । ରାସ୍ତାକୁ ଏବଂ ରାସ୍ତାର ସମ୍ଭାବନାକୁ ଚାହିଁପାରିବି ।

ଆଖି ବୁଜି ପଡି ରହିଲେ ମଧ ଛୁଞ୍ଚି ମୁନରେ ତେଡେ ବଡ ପାହାଡ ନଟୁ ପରି ଥାକି ରହିଛି । ମୋ ଝାଳ ଫିଟି ଯାଉଛି । ନିଶ୍ୱାସ ରୁଦ୍ଧ ହୋଇ ଯାଉଛି । ଏ ଅସମ୍ଭବ ଭାର ଛୁଞ୍ଚି ମୁନରୁ କୋଉ ମୁହୂର୍ତ୍ତରେ ଟଳି ପଡିବ । ମୁଁ ଇଷ୍ଟ ମନ୍ତ୍ର ଜପିଲି । ଦେବ ବିଗ୍ରହମାନଙ୍କୁ କଳ୍ପନା କଲି । କିନ୍ତୁ

ଚଳଚ୍ଚିତ୍ର ପରି ସେ ସବୁ ଉଭାନ ହୋଇଗଲେ । ସେଇ ପ୍ରକାଣ୍ଡ ନଟୁପରି ପାହାଡ ତା' ମୁକୁ ଛୁଞ୍ଚମୁନରେ ଯୋଖି ଟୋଳି ହୋଇ ରହିଲା ଅନ୍ଧାର ଭିତରେ ।

ମୁଁ ମଟମଟ ଚାହିଁ ଦେଲି । ଧଳା କାନ୍ଥ ରାଉ ରାଉ ଆଖି ତରାଟି ମୋତେ ଚାହିଁଲା । ମୁଣ୍ଡ ବୁଲେଇ ଦେବାରୁ ମୁଁ ପୁଣି ଆଖି ବନ୍ଦ କରିବାକୁ ଯାଉଥିଲି । ଅନ୍ଧାରକୁ ଓହ୍ଲେଇ ଯିବାକୁ ସାହସ ଅଣ୍ଟିଲା ନାହିଁ । ମୁଁ ଖଟ ଉପରେ ଉଠି ବସିଲି । ଦେହରୁ ଚାଦର ଓହ୍ଲେଇ ବୁକୁ ଦାଉଁଦାଉଁକୁ କାନେଇ ରହିଲି ଆଖି ବୁଜି ।

କାହାର ପାଦ ଶବ୍ଦ ପାଖେଇ ଆସିଲା । ଘର ଭିତରେ ଜୋତା ପିନ୍ଧା ପାଦ ଆଉ କାହାର ହୋଇପାରେ ? ପୁଅ ବୋଧେ ଆସିଲା । ତା'ର ଅଫିସ ଯିବା ସମୟ ହେଇଗଲାଣି କି ?

ସେ କଥା ନକହି କପାଳରେ ହାତ ରଖିଲା । ଝାଳୁଆ କପାଳରେ କାକର ଝାଳ ବୋଲି ହୋଇଯାଇଥିବ । ସେ ହୁଏତ ରୁମାଲରେ ହାତ ପୋଛିଥିବ ।

ସେ ପାଟି ଫିଟେଇ କଥା କହିଲା ବେଳକୁ ମୁହଁ ଫେରେଇ ଦୁଇ ପାଦ ଯାଇସାରିଥିଲା ।

"ଜର ଆଦୌ ନାହିଁ । ତୁମେ ଯାଇ ଲୁଗା ବଦଳ କରି ସଫା ହେଇପଡ – ଭଲଲାଗିବ ।"

ମୁଁ ମନ ଭିତରେ ଏତକ ଆଉଡଇ ବାକି ଅନିବାର୍ଯ୍ୟ ବାକ୍ୟ ଗୁଡିକୁ ଯୋଡିଦେଲି । ..."ଭଲ ଲାଗିଲେ ଗଣ୍ଡିଏ ଖାଇନିଅ । ତା'ପରେ ଛତା ନେଇ ବାହାରକୁ ଯାଇପାରିଲେ ଆଜିର ଜରୁରୀ କାମଯାକରୁ କିଛିହେଲେ ହେଇଯାନ୍ତା । କାହିଁକି ଯାଇ ପାରିବ ନାହିଁ ଯେ ? ଧୀରେ ଧୀରେ ତ ଚାଲିଯିବ । ଏଇ ଏମିତି କେତେ ବାଟ କି ? ଘର ବାବଦରେ ସେ ଅଫିସରଟାକୁ ଟିକିଏ ଦେଖା ନକଲେ ଚଳୁ ନାଇଁ ।"

ତା' ପାଦଶବ୍ଦ ପାହାଚ ଦେଇ ଓହ୍ଲେଇ ଯାଇଥିଲା । ପୁଅ ତ ଏଇ ଅଶରୀରୀ ପାଦଶବ୍ଦ । ଏଇ ପର-ଆପଣା ମଝିଗାର ଉପରେ ଉଚ୍ଚାରିତ ଦୁଇଟି ଅନୁଜ୍ଞା ବାକ୍ୟ ।

ମୁଁ କାନ୍ଥକୁ ଆଉଜି ଅପେକ୍ଷା କଲି । ପଞ୍ଜୁରୀ ଭିତରେ ଫଡକୁଥିବା ପକ୍ଷୀଟି କେତେବେଳେ ଟିକିଏ ଶାନ୍ତହେବ ।

ଆସ୍ତେ ଆଖି ଫିଟେଇ ଚାହିଁଲି । କାନମୁଣ୍ଡା ଧପ୍ ଧପ୍ ହେଲା, କଥା ସତ ! ଉଠିଯାଇ ମୁହଁ କାନ ଧୋଇ ନେଲେ ହୁଅନ୍ତା – ମୋର ସବୁ ବଳ ଏକାଠି କରି ଉଠି ଆସିଲି । କ'ଣ କେଉଁଠି ଦୋହଲି ଯାଉଥିଲା । ଫଟ୍ ଫଟ୍ କରୁଥିଲା । ତାକୁ ଆଦୌ ଖାତିର ନକରି, ସତେବା ସବୁ ଠିକ୍ ଅଛି, ଏଇ ଭଙ୍ଗୀ ଏବଂ ବିଶ୍ୱାସରେ ମୁଁ ବାଥ୍‌ରୁମ୍ ଯାଏ ଗଲି । ଟିକିଏ ଧକେଇବାକୁ ପଡିଲା । ମୁହଁ ଧୋଇ ହାତ ଗୋଡ କାକର ପାଣିରେ ପିଛୁଳେଇ ନେଲି । ନିଶ୍ଚୟ ଚେଙ୍ଗା ଲାଗିଲା । କିନ୍ତୁ ମଝିରେ ମଝିରେ ଇଟାଟାଏ ଖସିପଡୁଥାଏ ଗହୀର କୂଅର ପାଣି ଭିତରକୁ ।

ସ୍ତ୍ରୀ ଭାରି ପ୍ରସନ୍ନ ଦେଖାଗଲେ । – "ସେଇଆ ମ' । ଭୂତ ଜରଟା ଆସିଲା ଯେମିତି ଗଲା ସେମିତି । ଏଇଠି ବସ । ମୁଁ ସଜିଲ କରି ଆଣୁଚି, ଗଣ୍ଡେ ଖାଇ ପକାଅ ।"

ମୁଁ ବସି ପଡିଲି ଅନେକ କାରଣରୁ । ପଞ୍ଜୁରୀ ଉପରେ ଧପ୍ ଧପ୍ ବାଡେଇ ହେଉଥାଏ

ବନ୍ଧା ପଡିଥିବା ପକ୍ଷୀ । ସେ ହଠାତ୍ ଝୁଲିପଡୁଥାଏ ଏବଂ ସେଇ ଶୂନ୍ୟ ମୁହୂର୍ତ୍ତରେ ଲିଭିଯାଉଥାଏ ସୃଷ୍ଟି ।

କ'ଣ ଖାଇଲି କି ନଖାଇଲି ମନେ ନାହିଁ – ଆଳୁ, ଭାତ – ଭେଣ୍ଡି, ଆଳୁ...ଆଳୁ...ଆଳୁ...ମୋ ସ୍ତ୍ରୀ କ'ଣ କହିଲେ କି ନକହିଲେ ମନେ ନାହିଁ – ଖରା...ଜର...ଘର...ଜର...ଘର...ଘର...

ଖରାରେ ଝଲମଲ କରୁଥିବା ପୃଥିବୀକୁ ମୁଁ ଓଡ୍ଲେଇଗଲି । ଛତା କାନ୍ଧେଇ ଆହୁରି ଦୁର୍ଦ୍ଦାନ୍ତ ଖରାରେ ବାର କୋଶ ରାସ୍ତା ଏକା ଦିନକେ ପାରିହୋଇଥିଲି ଏକଦା-ଏଇଟା କି ଛାର କାମ ତା' ତୁଳନାରେ ? ମୁଁ ଛତା ମୁଣ୍ଡେଇ ଖୁବ୍ ଆସ୍ତେ ଆଗେଇଯାଉଥିଲି । ଯାତ୍ରା ସତେବା ଅନନ୍ତ !

ମୋର ସେପରି ଅବସ୍ଥାରେ ବିଶ୍ରାମ ନେବା ଉଚିତ ହୋଇଥାନ୍ତା । କେହିତ କହିଲେ ନାହିଁ ସେପରି । ମୁଁ ବି ଚାହିଁଲି ନାହିଁ । ମୋତେ ଲାଗୁଥାଏ ସେଇ ନିଶ୍ଚୟ ମୋର ଶେଷ ଯାତ୍ରା । ଏ ଘରଦ୍ୱାର ତାତିଲା ମରୁଭୂମି ହୋଇଯିବ । ଏ ଗଛ ଗୁଡିକ ତ' କଣ୍ଟା ମରିଚିକା ପରି ମିଳେଇ ଯିବେ । ଫଡକୁଥିବା ପକ୍ଷୀ ହୁସ୍‌କିନା ଉଡିଯିବ । ଖାଲି ପଞ୍ଜୁରୀ କୁଢେଇ ହୋଇ ପଡିବ ବାଲି ଉପରେ । ଛତାଟାକୁ ନେଇ ପବନ ଖେଳିବ ସାରା ରାତି ।

ମଝିରେ ଦୁଇ ଜାଗାରେ ବସିଲି ବୋଧେ । ତା'ପରେ ପାଇପରୁ ମୁନ୍ଦେ ତାତିଲା ପାଣି ପିଇଗଲି । କାଇଁ କିଛି ହେଲା ନାଇଁତ ? ମୁଁ ତ' ବେଶ୍ ପହଞ୍ଚି ଗଲି ! ମୋ ମୁହଁ ଉପରକୁ ରକ୍ତ ଉଠୁରି ଆସିଥିବା ମୁଁ ଅନୁଭବ କଲି । ମୋତେ ସାହାବଙ୍କ ଆଗକୁ ଯିବାପାଇଁ ଡାକରା ଆସିଲା ।

କବାଟ ତା' ମନକୁ ଫିଟିଗଲା । ମୁଁ ପଶିଯିବାରୁ ନିଃଶବ୍ଦରେ ବନ୍ଦହୋଇଗଲା । ଟେବୁଲଟା ଟାଣି ଯାଉଥିଲା କାନ୍ଥ ପର୍ଯ୍ୟନ୍ତ ରବର ପରି ଏବଂ ପୁଣି ସାଙ୍କୁଡି ଯାଉଥିଲା । ମୁଁ ସେଇ ଫାଙ୍କ ଭିତରେ ଆରପାଖକୁ ଚାଲିଯାଉଥିଲି । ଟେବୁଲଟା ବୋଧେ 'ଜୀଇଁ ଥିଲା, ନିଶ୍ୱାସ ମାରୁଥିଲା' । ଫାଇଲ ଗୁଡାକ ଯାଦୁ କଣ୍ଢେଇ ଭଳି ପହଁଚି ଆସୁଥିଲେ ଏବଂ ପହଁଚିଯାଉଥିଲେ ।

ମୁଁ କିଛି ସମୟ ଅପେକ୍ଷା କଲା ପରେ ଚୌକିଟାଏ ଟାଣିନେଇ ବସିଗଲି । ତା'ପରେ ସେ ହାକିମଙ୍କ ମୁହଁକୁ ଚାହିଁଲି ଏବଂ ଥମ୍ ହୋଇ ରହିଗଲି । ଆଶ୍ଚର୍ଯ୍ୟ ! ସେ ଗୋଟାଏ ମୁଖା ପିନ୍ଧି ବସିଥିଲେ । ଏବେ ବୋଧହୁଏ ଫେସନ୍ ହୋଇଥିବ । ଆଗ ଯେମିତି ମାନ୍ୟତା ପାଇଥିବା ଲୋକେ ପରଚୁଲା ବା ୱିଗ୍ ପିନ୍ଧୁଥିଲେ ପ୍ରାୟ ସେଇଭଳି ।

ଛଉ ନାଚରେ ଯେମିତି ଚିକ୍‌କଣ ମୁଖା – ଟଣା ଟଣା ଆଖି ଆଉ ଭ୍ରୁ – ଏ ସେମିତି ନୁହଁ । ମୋର ମନେହେଲା ସେଇଟା ବୋଧହୁଏ ଗୋଟାଏ ପ୍ରକାର ରବରରେ ତିଆରି । ନିଷ୍ପ୍ରଭ କଷୁଟିଆ ସାଧାରଣ ଭାରତୀୟ ରଙ୍ଗ । ନିଶ ହଳକ ବେଶ୍ ସୁସଜ୍ଜ । ...ଆଖି ସ୍ଥିର । କପାଳ ପରିଷ୍କାର । କ'ଣ, ସେ ମୁଖା ଦେଖି ଶୁଣି ପାରୁଥିବ ? ସମୁଦ୍ର ବୁଡାଳିମାନେ ଯେମିତି ଗୋଟାଏ ରବର ଖୋଳ ମୁଣ୍ଡରେ ଗଳେଇ ଦିଅନ୍ତି ତା' ମୁଖାଟା ବୋଧେ ସେଇପରି । ସେ କାନ ତା'ର ନୁହେଁ । ସେ ଟେରି କଟା କୁଞ୍ଚ ବାଳ ତା'ର ନୁହେଁ । ପେଜୁଆ ନିଷ୍ପଲକ ଚିତ୍ର ଆଖି ଟେକିଥିଲା

ଉପରକୁ – ଦେଖିଲା କି ନଦେଖିଲା କେଜାଣି । ମୁଁ ହଲଚଲ ହେଲି – କାଳେ ସେ ଆଖିକୁ ଦିଶିଯାଇପାରେ ।

ମୋ ବୁକୁ ଦାଉଁ ଦାଉଁ ପଡୁଥିଲା । ମଝିରେ ମଝିରେ ଇଟା ଖସି ପଡୁଥିଲା ଗହୀର କୂଅ ଭିତରକୁ । ସାରା ଦେହରୁ ଜୀଅ ଛାଡିଯାଉଥିଲା ।

ମୁଁ ଛଟା ମୁଣ୍ଡି ତଳେ ବାଡେଇଲି । ଗଳା ସଫା କଲି – କାଳେ ସେ କାନକୁ ଶୁଣାଯାଇପାରେ ।

କୌଣସି ଫଳ ହେଲା ନାହିଁ । ସ୍ପ୍ରିଂ ଲାଗିଥିବା କଳ ପାରା ପରି ଫାଇଲ ଗୁଡିକ ଡେଇଁ ଆସୁଥାନ୍ତି ଏବଂ ଡେଇଁ ଯାଉଥାନ୍ତି । ଟେବୁଲଟା ମଧ୍ୟ ବିଚିତ୍ର ଢଙ୍ଗରେ ଓସାରି ହୋଇଯାଉଥାଏ – ପୁଣି ସାଙ୍କୁଡି ଯାଉଥାଏ । ସେ ଯେ ସେଇଠି ବସିଚି ଏକଥା ମୁଁ ବିଶ୍ୱାସ କରିପାରୁ ନଥାଏ । ସେ ବୋଧହୁଏ ଏ ଟେବୁଲରୁ ଗଜା ବାହାରିଲା ପରି ବାହାରି ଆସିଚି । ଟେବୁଲ କାଠ ଭିତରେ ତା' କଲିଜା ଧକ୍ ଧକ୍ ହଉଚି, ତା' ଫୁସ୍‌ଫୁସ୍ ଟେବୁଲକୁ ଏମିତି ସାନବଡ କରୁଛି ।

ହୋଇପାରେ ମୁଁ ଅସୁସ୍ଥ ଥିଲି ଏବଂ ମୋତେ ସେମିତି ସବୁ ଦେଖା ଯାଉଥିଲା । କିନ୍ତୁ ସେ ମୁଖାଟା ତ' ଅନ୍ତତଃ ସତ ।

ମୁଁ ସମ୍ଭାଳି ନପାରି ଗୋଟାଏ ରଡି ଛାଡିଲି । ଛାତ ଲଗାତ୍ ଦୁରୁଦୁରୁ ହେଲା ସେ ରଡି ଘାତରେ । ମୁଁ ନିଜେ ଚୌକିରୁ ଚମକି ଉଠି ପୁଣି ନଥିକିନା ବସିପଡିଲି ।

କିନ୍ତୁ ସେ ରବର ମୁଖରେ ସାମାନ୍ୟତମ ପ୍ରତିକ୍ରିୟା ଦେଖାଗଲା ନାହିଁ । ମୋର ପ୍ରତ୍ୟୟ ହେଇଗଲା ଯେ ସେଇଠି ମୁଁ ବୋମାଟାଏ ଫୁଟେଇଲେ ମଧ୍ୟ ସେ ସେମିତି ଅବିଚଳିତ ରହିଯାଇଥାନ୍ତା । ମୋର ଝାଳ ବୋହିଗଲା । ଆଣ୍ଠୁଠଉଁ ତଳକୁ ହୁଗୁଳିଗଲା । ମୋ ଭିତରଟା ଫମ୍ପା ହୋଇଗଲା ପରି ଲାଗିଲା । ସେମିତି ବୋଧେ ରଡି ଛାଡିବାର ପ୍ରୟୋଜନ ନଥିଲା । ମୁଁ କାହିଁକି ରଡିଲି କେଜାଣି, କିନ୍ତୁ ନରଡିଥିଲେ ଆଉ କ'ଣ କରିଥାନ୍ତି ?

ମୁଁ ଦବିଯାଉଥିଲି । ସେ ମୁଖାକୁ ଚାହିଁ ଶିହରି ଉଠୁଥିଲି । ଏତିକିବେଳେ ଟେଲିଫୋନ ବାଜିଲା । ସେ ଚଟ୍‌କିନା ତାକୁ ଉଠେଇଲା । ଯାହାହେଉ, କିଛି ହେଲେ ତ' ସେ କାନକୁ ଶୁଭୁଚି ! ମୁଁ ଆଶ୍ୱସ୍ତ ବୋଧକଲି ।

ଗୋଟାଏ ସମୟରେ ମନେହେଲା ଯେ ମହଣେ ଓଜନର ଟେଲିଫୋନଟାକୁ ସେ ଆଉ ଟେକି ରଖିପାରୁନାହିଁ ।

ଆଉ ମନେହେଲା ଯେ ସମଗ୍ର ମୁଖାଟା ଆସ୍ତେ ଆସ୍ତେ ଧଳା ହେଇଗଲା । ମୁଣ୍ଡର ଚୁଳଯାକ ସୁଦ୍ଧା ଧଳା ହୋଇଗଲା । ଓ, ତା'ହେଲେ ମୁଖା ବି ଡରିଜାଣେ!

ତାକୁ କିଏ କ'ଣ କହିଲା ସେ ଟେଲିଫୋନରେ । ସେ କାହିଁକି ସେମିତି ବିମର୍ଷ ଦେଖାଗଲା । ତାକୁ କିଏ କହିଲା କି ଯେ ତା' ଘର ଛାତ ଭୁସୁଡି ପଡିଚି, ଆଉ ତା' ଭିତରେ ତା' ପୁଅ ଝିଅ ମାଇପ ପୋତି ହୋଇଯାଇଛନ୍ତି ?

ମୁଁ ତ ଅବିକଳ ଏଇଭଳି କଥାଟିଏ ତାକୁ କହିଥିଲି, ସେ ଜମା ତାକୁ ଶୁଣି ପାରି ନଥିଲା । ମୋ ଭିତରେ ମୁଁ ହିଁ ଚମକିଥିଲି ।

ସେ ଟେବୁଲ ଉପରେ ଥୋଡି ରଖି ଚାହିଁ ରହିଲା । ତା' ଆଖିରେ ପଲକ ପଡୁନଥିଲା । ମୁଁ ଆଉ ସେଇଠି ରହି ପାରିଲି ନାହିଁ । ହୁଏତ' ମୁଖାପିନ୍ଧା ଲୋକଟି ମରିଯାଇଥିଲା । କିମ୍ବା ମୋତେ ମାରିବାକୁ ସେମିତି ଲେପ୍‌ଟି ଅପେକ୍ଷା କରିଥିଲା ।

ମୁଁ ଦୌଡିଲା ପରି ଚାଲିଆସିଲି । ମୋ ପଛରେ ଅସଂଖ୍ୟ ପାଦଶବ୍ଦ ମୁଁ ଶୁଣିପାରୁଥିଲି । ବାଟରେ ଧକେଇଲି । ଗଛମୂଳେ ସେମାନେ କାହାକୁ ଘେରି ପାଟି କରୁଥିଲେ । ତାକୁ ସମସ୍ତେ ମିଶି ମାଡମାରୁଥିଲେ । ସେ କୁଆଡେ ପସରାରୁ ଲେମ୍ବୁଟିଏ ଚୋରିକରିଥିଲା । ଟଙ୍କାକୁ ଚାରିଟି ଉଠେଇଲା ବେଳେ ଗୋଟିଏ ଲୁଚେଇ ଧରି ନେଇଥିଲା । ମୁଁ ତା' ଭୟାର୍ତ ମୁହଁକୁ ଚାହିଁ ଚିହ୍ନିଲି । ଆମ ତଳ ସାହିର ବୁଢା ସଂସ୍କୃତ ମାଷ୍ଟ୍ରେ । ତାଙ୍କ କପାଳରେ ଚନ୍ଦନ ଟୋପା । ପାଟିରେ ପାନ । ମୁଣ୍ଡରେ, ମୁହଁରେ ଧଳା ରୁଢ । ଭାବିଲି ମୁଁ ହିଁ ଲେମ୍ବୁ ଚୋରି କରିଛି । ଥରେ ନୁହେଁ ବହୁବାର । ଆଉ ଟିକକୁ ମୋ ଉପରେ ହିଁ ମାଡ ବର୍ଷିଯିବ ।

ମୁଁ ସେ ଗଛମୂଳ ଛାଡି ଆଗେଇଲି । ଆର ଗଛମୂଳେ ଗାଈଟାଏ ବିଡାଏ ନଡା ପାଟିରେ ଧରି ଚୋବାଉ ଥିଲା । ମୁଁ ପାଖକୁ ଯାଇ ଦେଖେତ, ସେ ଗୋଟାଏ ମଣିଷ ପିଲାର ଗୋଡ ଦୁଇଟାକୁ ପାଟିରେ ଧରି ଚୋବଉଚି, ତଳକୁ ଓହଳିଛି ମଲା ପିଲାଟାର ମୁଣ୍ଡ ଆଉ ହାତ । ସେଇଠି ଠିଆ ହେଲେ ଗଛଟା ମୋ ମୁଣ୍ଡ ଉପରେ ମାଡି ପଡିପାରେ । ଉପୁଡି ଯାଇପାରେ ବିନା ପବନରେ । ମୁଁ ଚଞ୍ଚଳ ଆଗକୁ ଖସିଗଲି । ମୋ ପିଠିଯାକ ରୁମ ଠିଆ ହୋଇ ରହିଥିଲା ।

ମୁଁ ଖୁବ୍ ଟାଉ ଟାଉ ଚାଲୁଥିଲି । ମୋ କପାଳରେ ଝାଳ ଛିଡି ପଡୁଥିଲା । ବୁକୁ ଦାଉଁ ଦାଉଁ ବଢିଯାଉଥିଲା । ମୁଁ ଗୋଟାଏ ନିରୋଳା ଗଛମୂଳେ ପଥର ଉପରେ ଆଖି ବୁଜି ବସିଗଲି । ତେଣିକି ଯେ କୌଣସି ନିଶ୍ୱାସ ଆଉ ନଫେରିପାରେ ବୋଲି ମୋର ପ୍ରତ୍ୟୟ ହୋଇଯାଇଥିଲା ।

ମତେ କିନ୍ତୁ ଘରକୁ ଫେରିବାକୁ ହେବ । ସେଠି ହୁଏତ ସମସ୍ତେ ମୁଖାପିନ୍ଧି ବସିଥିଲେ । କିଏ କୁକୁର, କିଏ ମାଙ୍କଡ, କିଏ ବା ଭାଲୁ ମୁହଁ କାଢି ଅନେଇବେ । ମୁଁ କାହାକୁ ଚିହ୍ନି ପାରୁନଥିବି । ମୁଁ ବି ତାଙ୍କୁ ଶଶାଟିଏ ପରି ଦିଶୁଥିବି ।

ମୁଁ ବସିଲା ଠେଇ ହାଲିଆ ହେଇଗଲି । ଚିହ୍ନା ଚିହ୍ନା ଶବ୍ଦରେ ଆଖି ଫିଟେଇ ଚାହିଁଦେଲି । ଯୋଡିଏ ପାରା ଘୁମୁରିବାର ଦୃଶ୍ୟ ମୋତେ ଭାରି ବେଖାପିଆ ଜଣାଗଲା । ସେମାନେ କ'ଣ ଜାଣିପାରୁ ନଥିଲେ ଯେ ସେ ଗଛର ପ୍ରତି ଡାଳରୁ ମୃତ୍ୟୁ ଓହଳି ରହିଛି ?

ପୁରୁଷ ପାରାଟି ଅନେକ ବେଳ ଘୁମୁରିଲା ପରେ ବାରମ୍ବାର ସଙ୍ଗମ କଲା । ମୋ ବୁକୁ ଆଉରି ଦାଉଁ ଦାଉଁ ହେଲା । ଦେହକୁ ତାତି ଚଢି ଆସିଲା । ମୁଁ ସେ ଗଛମୂଳ ବି ଛାଡିଲି ।

ଦୁଆର ମୁହଁରେ ପହଞ୍ଚି ପାହାଚ ଚଢିବାକୁ ହୁବ କରି ପାରିଲି ନାହିଁ । ତଳ ବଖରାରୁ କିର୍ କିର୍ ରଡି ଛାଡି ମୋ ନାତି ଟୋକା ବାହାରି ଆସିଲା । ତା' ସାଙ୍ଗରେ ପାଞ୍ଚଦିନର କଅଁଳା ବାଛୁରୀ ।

ବାଛୁରୀ ମୁଣ୍ଡରେ ଚନ୍ଦ । ମୋ ନାତି ଅଣ୍ଟାରେ କଳା ସୂତାରେ କଉଡି । ସେ ଆସି ହସି ହସି ମୋ ଉପରେ କୁଡେଇ ହୋଇ ପଡିଲା । ବାଛୁରୀ ଡେଇଁଗଲା ରାସ୍ତାକୁ ପେଣ୍ଡୁଳାଏ ନାଲି ପାଟ ପରି । ମୋ ବୋହୂ ଆସି ପୁଅକୁ ନବାକୁ ଚହିଁଲା । ସେ ଗଲା ନାହିଁ । ପାଟଗାଈ ହମ୍ବାଳିଲା । ବାଛୁରୀ କନକନ ଅନେଇଲା, କାନ ଡେରି । ବିଡେଇଲା ପରି ଆଉରି ଦୂରକୁ ଡେଇଁଗଲା ।

ମୁଁ ପାହାଚ ତଳକୁ କପେ ଚ ମଗେଇ ପିଇନେଲି ।

ସେ ଆଜିକୁ ବର୍ଷେ ତଳର ଘଟଣା । ଏଣିକି ଯେ କୌଣସି ଦିନ ଯାହା ମନ ତାହା ଘଟିଯାଇପାରେ । କିନ୍ତୁ ମୁଁ ଏଯାଏଁ ଆଉ ଆକୋନାଇଟ୍ ଖାଇନାହିଁ ।



# ଦ୍ରୁମ ଉପାଖ୍ୟାନ

ପାହାନ୍ତିଆ ଅନ୍ଧାର ଭିତରେ ବି ଅନେକ ଦୂରରୁ ସେ ବିସ୍ତୃତ ତାଳ ଯାକ ଦେଖାଯାଉଥିଲା । ଆକାଶରେ ଅଙ୍କାବଙ୍କା ଖୁବ୍ ମୋଟା କଳା କଳା ରେଖା । ସାରା ଦିଗ୍‌ବଳୟରେ ଆଉ ଗୋଟିଏ ହେଲେ ଶିଖ କେଉଁଠି ଦିଶୁ ନଥିଲା । ସେତେବେଳେ କୌଣସି ପକ୍ଷୀ ଡାକୁ ନଥିଲେ । ଉତ୍ତରରୁ ହେମାଳ ପବନ ପିଟୁଥିଲା । ନିଃଶବ୍ଦ ଛାଇପରି ନୁଆଣିଆ ଘରଗୁଡିକ ଶୀତ କାଟିବାକୁ ଜାକିଜୁକି ହୋଇ ଘୁମଉଥିଲେ ।

ଅନ୍ଧାର ଭିତରେ ବହୁ ଦୂରରୁ ମାଖୁନା ଶବ୍ଦଟାଏ ଶୁଣାଗଲା କଲିଜା ଥପ୍ ଥପ୍ ହେଲାପରି । ସେତେ ସକାଳୁ କ'ଣ କାଠହଣାଟାଏ ଗଛରେ ଥଣ୍ଟ ମାରିବା ଆରମ୍ଭ କରି ଦେଇଥିଲା କି ?...ସେ ତ ଅନେକ ପଛରେ ଆସିବା କଥା ।

ତେବେ ପାଖେଇ ଗଲା ଉତ୍ତାରୁ ଜଣାଗଲା ଯେ ସେ ଶବ୍ଦଟା କୌଣସି ହୃତ୍‌ପିଣ୍ଡର ନୁହେଁ କି କାଠହଣାର ବି ନୁହେଁ । ଅଧ ଫୁଙ୍ଗୁଳା ବୁଢୀଟିଏ ବେଣ୍ଟ ନଥିବା କଟୁରିରେ ହାତୀପରି ଗଛର ଗଣ୍ଡି ଦେହରୁ ଛୋଟ ଛୋଟ ଛେଲା ଛଡଉଛି । ଭୂଇଁରୁ ଆଣ୍ଠୁଏ ଉଚ୍ଚ ଯାଏଁ ଆସ୍ତେ ସରୁ ହୋଇଯାଇଛି ଗଛର ଧଳା କଙ୍କାଳ । କିନ୍ତୁ ଅନେକ ଗହୀରକୁ ହାଣି ନେଇଥିବାରୁ କଲିଜା ରଙ୍ଗର ମଞ୍ଜ ଦିଶି ଗଲାଣି । ବୁଢୀର ବାଉଁଶ ଟୋକେଇରେ ମୁଠାଏ ଛୋଟ ଛେଲି ଜମା ହୋଇଥାଏ । ତାକୁ ନେଇ ସେ ହୁଏତ ଜାଳିବ । ନିଆଁ ପୋଇଁବ । ତା' ସ୍ଥବିର ହାତ ଗୋଡ ଭିତରେ ଉଷ୍ମ ଆଣିବାକୁ କେତେ କାଳ ଜଳି ପାରିବ ସେ କେଇଖଣ୍ଡ ପଳଖା ?

ବୁଢୀ ଗଛ ଗଣ୍ଡିକୁ ପବନ ପାଇଁ ଆଡୁଆଳ କରିଥାଏ । ଗଛ ତାକୁ ଆବୋରି ରଖିଥାଏ, କୋଳ ଭିତରେ । ସେଇ କୋଳ ଭିତରେ ହିଁ ମୁହଁ ଗୁଞ୍ଜି ସେଇ ମଞ୍ଜ ପାଖରୁ ସେ କଟୁରିରେ ହାଣି ଛଡଉଥାଏ ପଳକା । ପାହାନ୍ତା ପହରରେ ପକ୍ଷୀଡାକ ଶୁଭୁ ନଥାଏ । କେବେଳ ଶୁଭୁଥାଏ ଠୁକ୍ ଠୁକ୍ – ସେଇ କଟୁରି ହଣା ଶବ୍ଦ ।

ପୂର୍ବଦିଗ ଉଜଳି ଆସିଲା ।

ତଥାପି ପକ୍ଷୀଡାକ ଶୁଭିଲା ନାହିଁ । କୁଆ ନାହିଁ କି କୋଇଲି ନାହିଁ । ଆଖି ପାଉଥିବା ଯାଏଁ ଆଉ କେଉଁଠି ଗଛଟିଏ ବି ନାହିଁ । ସେ ଅଞ୍ଚଳର ପକ୍ଷୀ ବୋଧହୁଏ ଉଡିଯାଇଥିଲେ । ସେ ବିରାଟ

କଙ୍କାଳ ଯେତେବେଳେ କଳ୍ପଦ୍ରୁମ ପରି ଠିଆହୋଇଥିଲା, ତା'ର ପ୍ରଶାଖାମାନଙ୍କରେ ବୋଝେଇ ହୋଇଥିଲା ପତ୍ର ଆଉ ଫୁଲ, ଆଶୀର୍ବାଦ ପରି ଛାଇ ଝରୁଥିଲା ତା' ଡାଳରୁ, ସେତେବେଳେ ବୋଧହୁଏ ଜାତି ଜାତି ପକ୍ଷୀ ସେ ଗହଳରେ ବସାବାନ୍ଧି ରହିଥିଲେ । ଏଇ ପହରକୁ ମଧୁର କଳରବ ହୁଏତ ଶୁଭୁଥିଲା ।

ହାତ ପରି ଧଳା ଏ ବିରାଟ କଙ୍କାଳ ଉପରେ ପକ୍ଷୀ ବସିବ ତ ? ବସିବ କେଉଁଠି ?

ଏଇ ବୁଢ଼ୀ ହୁଏତ ତା' ପିଲାଦିନେ ଝୁମ୍ପୁରିମୁଣ୍ଡି ଝିଅଟିଏ ହେଇ ଏଇଠି ଖେଳୁଥିଲା । ନାଲିକସ୍ତା ପିନ୍ଧି ତେଲ ଜରଜର ମୁଣ୍ଡରେ ଓଢ଼ଣା ଦେଇ ଆଉ କିଛି ବର୍ଷ ପରେ ନୂଆବୋହୂ ହୋଇ ଠିଆହୋଇଥିଲା ତା' ଗେରସ୍ତକୁ ଅପେକ୍ଷା କରି...ଏଇ ଗଛମୂଳେ ।

X X X X

ହବିବ୍ ତା' ଓଭରକୋଟ୍ କଲର୍ ଭିତରୁ ଅଳ୍ପ ଖସିବାରୁ ମୋର ସଂବିତ୍ ଫେରିଆସିଲା । ସେତେବେଳକୁ ହବିବ୍‌ର ଗହଳ ଦାଢ଼ି ଆଉ ଧଳାଦାନ୍ତ ସ୍ପଷ୍ଟ ଦିଶି ଆସୁଥିଲା । ସେ ମୋତେ ଭଲ ଭାବେ ଜାଣିଛି ତ ! ସେଥିପାଇଁ ପ୍ରାୟ ପାଞ୍ଚ କିଲୋମିଟର ଚାଲି ଚାଲି ଆସିବା ଭିତରେ ସେ ପଦେହେଲେ କଥା କହିନାହିଁ । ରାତିର ସେଇ ଶେଷ କେତେ ଦଣ୍ଡ ମୋର । ଭାରି ପ୍ରିୟ । ମୁଁ କିନ୍ତୁ ଖୁବ୍ ଅସୁସ୍ଥ ବୋଧ କରୁଥିଲି । କ'ଣଟାଏ ଖୋଜି ଖୋଜି ପାଉ ନଥିବା ପରି । ସେ ସମୟଟାରେ ପକ୍ଷୀଟିଏ ବହୁ ଦୂରରୁ ଯଦି ଥରଟିଏ ମାତ୍ର ଡାକିଦେଇଥାନ୍ତା, ହୁଏତ ମୋର ସେ ଅସୁସ୍ଥତା ଚାଲିଯାଇଥାନ୍ତା । ସେ ବୁଢ଼ୀଟି କିଛି ସମୟ ପାଇଁ କୁଟୀରରେ ଗଛଗଣ୍ଡିକୁ ନ ହାଣିଥିଲେ ହୁଏତ ଅସୁସ୍ଥତା ଦୂର ହୋଇଥାନ୍ତା । ପାହାନ୍ତା ପହର ଯେମିତି ଗୋଟାଏ ଅଶରୀରୀ ପୁରାତନ ଜୀଅନ୍ତା ଗଛ । ମୋରି ଭଳି ସେଥିରେ ଯେ କଟୁରି ହାଣୁଛି ଜାଣିପାରୁ ନାହିଁ, ମୋର କେମିତି ପ୍ରତି ଚୋଟରେ ରକ୍ତ ଝରୁଛି । ଅଥଚ ମଲାଗଛର କଙ୍କାଳରେ ଆଉ ଟୋପାଏ ହେଲେ ଲସା ନାହିଁ । ସେ ଅଧାଫୁଙ୍ଗୁଳା ବୁଢ଼ୀଟିର ଅନ୍ୟ ଉପାୟ ବି ନାହିଁ । ତଥାପି ମୁଁ ରାଗିଯାଇଥିଲି । କାନ୍ଦ କାନ୍ଦ ହୋଇଉଠିଥିଲି ।

ପାଞ୍ଚ କିଲୋମିଟର ଦୂରରେ ଛାଡି ଆସିଥିବା ଗାଡିରେ ଆଉ ଦୁଇଜଣ ଅପେକ୍ଷା କରିଥିଲେ । ହବିବ୍‌ର ସାଙ୍ଗ । ସେମାନେ ଘୁମଉଥିଲେ । ଅନଭିଜ୍ଞ କଲେଜ ଟୋକା । ରାତିରେ ବାଟବଣା ହୋଇ ହବିବ୍‌କୁ ଷାଠିଏ ସୁତରା କିଲୋମିଟର ଚକକର କଟେଇଛନ୍ତି । ତେଲ ସରିଯାଇଛି । ଅବାଟରେ ପଶିଆସିଛୁ ଆମେ ସମସ୍ତେ । ମୁଁ ଯାଉଛି ସେ ବେକୁବ୍ ଟୋକାଙ୍କ ବେକୁବ୍ ମୁଖ୍ୟ ଅତିଥି ହୋଇ । ବାର୍ଷିକ ସାଂସ୍କୃତିକ ଉତ୍ସବରେ ଭାଷଣ ଦେବାକୁ । ହେଃ – ନାଲାଏକ୍ ଆଉ କାହାକୁ କହନ୍ତି ?

ହବିବ୍ ମୋତେ ଅନେକ ଥର ତା' ଗାଡିରେ ନେଇଛି । କେମିତି କେଜାଣି ତାରି ଟାକ୍‌ସି ଖଣ୍ଡ ଏ ଟୋକାମାନଙ୍କୁ ପସନ୍ଦ ହୋଇଯାଏ । ସେ ବି ରାଜି ହୋଇଯାଏ ପ୍ରତିଥର । ଦିନରେ ରାତିରେ ଘଣ୍ଟା ଘଣ୍ଟା ତା' ସାଙ୍ଗରେ ମୁଁ ବହୁ ରାସ୍ତା ବୁଲିଛି । ହବିବ୍ ମୋତେ ଖାତିର କରେ । ମୁଁ ନିଜେ ନ ପଚାରିଲେ କିଛି କହେ ନାହିଁ । ଆମେ କଚ୍ଚା ରାସ୍ତାଟିଏ ଦେଖି ଚାଲୁ ଚାଲୁ ଚାଲିଆସିଲୁ, କାଳେ କିଏ ଜଣେ ସେମିତି ମିଳିଯିବେ – ତାଙ୍କୁ ସାହାଯ୍ୟ ମାଗିବୁ । ବାଟ ପଚାରିବୁ ତେଲର ସନ୍ଧାନ କରିବୁ ।

କିନ୍ତୁ ହାବୁଡ଼ିଲୁ ସେଇ ଅଦ୍‌ଭୁତ ଗଛର କଙ୍କାଳ ପାଖରେ ।

ହବିବର ମୁହଁକୁ ଚାହିଁ ମୁଁ ବୁଝିଗଲି ଯେ ଆମେ ଭୁଲ ବାଟରେ ହିଁ ଚାଲିଆସିଲୁ ସେ ଯାଏଁ । ସେଇଠୁ ଫେରିଯିବା ଉଚିତ ହେବ । ମୁଁ ବି ସେଇଆ ଅନୁଭବ କରୁଥିଲି । କିନ୍ତୁ ସ୍ୱଚ୍ଛ ଆଲୁଅରେ ଖୁବ୍ ନିକଟରୁ ସେ ଗଛଟାର ଆକାର ଦେଖି ମୁଁ ସ୍ତବଧ ହୋଇଗଲି ।

ଗଛମୂଳର ଘେରେଇ ଅନ୍ୟୁନ ତିରିଶ ଫୁଟ । ପ୍ରାୟ ସେଇ ତିରିଶ ଫୁଟ ଉଚ୍ଚରୁ ତିନିଟା ଶାଖା ବାହାରିଛି – ଗୋଟାଏ ଖୁବ୍ ମୋଟା, ଅନ୍ୟ ଦୁଇଟି ତା'ଠୁ ସାମାନ୍ୟ ସରୁ । ତେଣିକି ଶାଖା ଉପଶାଖା – ଶହେଫୁଟଯାଏ ବିଛେଇ ହୋଇ ରହିଛି । ଶିଖ ସବୁ ହଣାସରିଛି । ବକଳା ବି ଝରିସାରିଛି । ଅନେକ ଦିନ ଧରି ଗୋଟାଏ ହାତୀର ମୃତଦେହକୁ ଉଈମାନେ ଚରି ଚରି ଆସିଛନ୍ତି । ମୁଁ କେଜାଣି କାହିଁକି ରାଗିଲା ପରି କହିଲି, 'ହେ ବୁଢ଼ୀ କାହିଁକି ହାଣୁଚୁ ? – ବନ୍ଦକର !'

ସେ ଉଞ୍ଚେଇଥିବା କଟୁରି ରୋକି ନେଇପାରିଲା ନାହିଁ । ଗଛରେ ହାଣିଦେଲା ଏବଂ ଆମ ଆଡେ ଫେରି ଚାହିଁଲା ।

ତା' ମୁହଁରେ ସହସ୍ରେ ରେଖାର ଜାଲ ଭେଦି କୌଣସି ଭାବ ଉପରକୁ ପ୍ରକଟି ପାରିଲା ନାହିଁ । ସେ ହୁଏତ ଡରିଗଲା । ହୁଏତ କୌତୂହଳୀ ହେଇ ଅନେଇଲା । ହୁଏତ ମୋତେ ନଜରକୁ ନେଲା ନାହିଁ, ଖାତିର ବି କଲା ନାହିଁ ।

"କ'ଣ କରୁଚୁ ?"

ସେ ଖୁଁ ଖୁଁ ଶବ୍ଦ କଲା, ହୁତେ ହସିଲା  କି କାଶିଲା କେଜାଣି !

"ମତେ ସିନା ଦୁଶୁନାଇଁ ! ତତେ କ'ଣ ଦୁଶୁ ନାଇଁ ?" କଟୁରିକି ହୁଗୁଳେଇ ଆଣି ପୁଣି ଟେକିଲା ।

"ହେ ବୁଢ଼ୀ, ରହ ! ବନ୍ଦକର୍ !" ମୋ ମୁଣ୍ଡକୁ ଜିଦ୍ ଚଢ଼ି ଯାଇଥାଏ ସେତେବେଳକୁ ।

"ଆରେ ର' ବା ! ସମତେ ନଉଚନ୍ତି – ମୁଁ ନେଲାଠୁ ନାଇଁ କରୁଚୁ ?... ବୁଢ଼ୀ ନୋକ, ନନେଲେ ଆଉ ଜାଳ କାଇଁ ?"

ସେ ସେମିତି ଠୁକ୍ ଠୁକ୍ ହାଣିବାରେ ଲାଗିଲା ।

ଆଲୁଅ ଚଢ଼ି ଆସୁଥିଲା । ମୁଁ ଆଗପଛ ଚିନ୍ତା କରୁଥିଲି । ହବିବ୍ ମୁହଁକୁ ଚାହିଁ ଉପସ୍ଥିତ ସମସ୍ୟା ବିଷୟରେ ବି ଭୟଙ୍କର ଚିଡ଼ିଯାଉଥିଲି । ସେ ଦୁଇଟା ବେକୁବ୍ ଟୋକା, ଆମକୁ ଭୁଆଁ ବୁଲେଇ, ହାଲିଆ ହୋଇ ଦାୟିତ୍ୱହୀନ ଭାବରେ ଜଣେ ଜଣକ ଉପରେ ଆଉଜି ଶୋଇଥିବାର ଦୃଶ୍ୟ ମୋତେ ଉତ୍ୟକ୍ତ କରୁଥିଲା । ମୋରି ଦେଶର ଚଉହଦି ଭିତରେ ମୁଁ ଏମିତି ବାଟ ହଜେଇ ଅସହାୟ ଅବସ୍ଥାରେ ପଡ଼ିଯାଇଥିବା ବିପର୍ଯ୍ୟୟ ପାଇଁ ବି ମୁଁ ଚିଡ଼ିଯାଉଥିଲି । ...ଆବ୍‌ବେ, ଏଇଟା ସେଇ ଓଡ଼ିଶାଟି ଯାହାକୁ ତୁ ଏତେ ଚିହ୍ନିଚୁ ବୋଲି ଭାଷଣ ଦେଇ ଚାଲିଚୁ ? – ତୋର ପ୍ରିୟ ଜନ୍ମମାଟି ବୋଲି ଜିଭ ଲଗେଇ ଚାଟିଚୁ ? ...କହିଲୁ ଦେଖି ଏ କେଉଁ ଜାଗା ? ଏ ଗଛ କେବକାର ? ଏତେ ବଡ ଦ୍ରୁମ କେମିତି ମଲା ? – ତାକୁ କିଏ ମାରଣା ମିଶି ହତ୍ୟା କଲେ, କହିପାରିବୁ ?

ଗାଁଆଡ଼ୁ କିଏ ସବୁ ସକାଳ ଆଲୁଅରେ ନୀରବ ଧାଡିବାନ୍ଧି ଆସୁଥିଲେ । ହବିବ୍ ନିଘା କରୁଥିଲା କେହି ଯଦି ସେ ଭିତରୁ ସାହାଯ୍ୟ କରିଦେଇ ପାରିବ ! ମୁଁ କିନ୍ତୁ ଲକ୍ଷ୍ୟ କଲି ଯେ ତା' ଭିତରୁ ଅଧିକାଂଶ ମାଲକଛା ମାରି ଆସୁଥିଲେ ଯୁଦ୍ଧକୁ ବାହାରିଲା ପରି । ଆଗରେ କେତେଜଣ ଲମ୍ବାବେଣ୍ଟର ଟାଙ୍ଗିଆ ଧରିଥିଲେ ।

ସେମାନେ ଚୁପ୍‌ଚାପ୍ ଆସି ସେଇ ମଲାଗଛମୂଳେ ଠିଆହେଲେ । ଜଣେ ସେ ଭିତରୁ ବୁଢ଼ୀ କାନ୍ଧରେ ହାତରଖି ଆସ୍ତେ ପଛକୁ ଟାଣି ଆଣିଲା,

"ଏଣେ ଚାଲିଆ, ଆରୁରୀ ମା ! ଏ ଗଛ ଏଇନେ ହଣା ହବ !"

"ରଇଥା ବା ଅଳପେଇସ । ମୋ' ଜାଳକୁ ଦି'ଖଣ୍ଡ ପଳଖା ହେଲେ ହାଣିଦଉନୁ !"

"ହଉ, ରହିଥା !"

ସଜ ଦେଖି ସେ ଦୁଇ ଚେଟରେ ଗୋଟାଏ ବଡ ଛେଲା ଛଡେଇଦେଲା ।

"ଆଜି ଏତକ ନେଇଥା । ଗଛ ଟଳିଲେ ଆସି ପୁଣି ନବୁ ।"

"ମୋର କେତେ ଲକ୍ଷଣବନ୍ତ ଗଛ ଆଜି ହଣା ହେଇଯିବ ଲୋ ! ଲଖିମୀ ଛାଡିଗଲା ଏ ଗାଁରୁରେ ଅଳପେଇସେ !" ବୁଢ଼ୀ ସୁକ୍ ସୁକ୍ ହେଲା ନାକରେ ।

"ରଖିଥା ସେଗୁଡାକ ! ଖୁଣ୍ଟାଗଛ ଦେଖିଲେ ଅମଙ୍ଗଳ ! ଏଇଲେ ତ ବରଷେକାଳ ଗାଁଯାକ ଏଇଆକୁ ଜାଳି ଚଳିଯିବୁ !"

ସେମାନେ ଆମ ଦୁହିଁଙ୍କୁ ଦେଖି ଟିକିଏ ଥମିଗଲେ ।

ଜଣେ ମୋ ପାଖକୁ ଆସି ପଚାରିଲା, "କିଏ ବାବୁ ! ତମର ଏଠି କି କାମ ?"

ସେମାନଙ୍କର ସଜବାଜ, ସେ ମୋଟ ଦଉଡି, ସେ ନୂଆ ହେଇ ପଜା ହେଇଥିବା ଟାଙ୍ଗିଆ, ଆଉ ସେ ସ୍ଥିର ରହି ଅପେକ୍ଷା କରିଥିବା ମହାଦ୍ରୁମକୁ ଦେଖି ମୋ ଭିତର ଦୋହଲି ଯାଉଥିଲା ।

ମୁଁ କହିଲି, ମୁଁ ସରକାରୀ ଲୋକ । ଆସିଛି ଏ ଗଛ ବାବଦରେ ବୁଝିବାକୁ । ତମ ଗାଁର ମୁଖିଆ କିଏ ଡାକ । ଏ ସରକାରୀ ଗଛ କେମିତି ମଲା ଆଗ ମତେ ବୁଝାଅ ।

ହବିବ୍ କିଛି ନବୁଝିପାରି ବଲବଲ ଅନେଇଥାଏ ।

ସେମାନେ ସବୁ ଖୁସ୍‌ମୁସ୍ ହେଇ ଠେଲାଠେଲି ହେଲେ । ବୁଢ଼ୀ କହିଲା, "ଆରେ ପୁନିଆଁ, ତୋ ବାପ କଥା ପଚାରୁଚନ୍ତି ପେରା ! ତୁ କଉନୁ !"

ଗୋଟାଏ ଗଜା ଭେଣ୍ଡା ସେ ଭିତରୁ ଆସି ଆଗରେ ଠିଆହେଲା । କହିଲା, "କ'ଣ ପଚାରୁଛ ପଚାର ! ମୋ ବା' ଏ ଗାଁର ମୁଖିଆ !"

ମୁଁ ଆଉ ପଛକୁ ଫେରିବା ଅବସ୍ଥାରେ ନଥିଲି । ଖୁବ୍ ଜୋର୍ ଦେଇ ସରକାରୀ ଢଙ୍ଗରେ କହିଲି, "ମୋତେ କହ, ଏ ଗଛ ପ୍ରଥମେ କେମିତି ମଲା । ସରକାରୀ ଖାସମାହାଲ ଉପରେ ରାସ୍ତା କଡରେ ଠିଆ ହୋଇଥିବା ଗଛ ସରକାରଙ୍କର, ଏତେ ବଡ ଗଛ କେମିତି ମଲା କହ !"

ସେ ସେମିତି ସଳଖ ଚାହିଁ ତା' ବୋଲିରେ ଯାହା କହିଲା ତାହା ପ୍ରାୟ ଏହିପରି – 'ଆମେ

ମାରିଦେଲୁ । ଏଇ ମୂଳ ପାଖରୁ ଉପରକୁ ହାତେ ଚୌଡାରେ ଘେରବାଗେ ଗଛର ବକଳ କାଢିଦେଲୁ । ଫଳରେ ଗଛଟା ଶିଖ ଆଡୁ ମଉଳିଗଲା । ନିଗିଡି ଗଲା ତା'ର ସବୁ ଯାକ ରସ । ପତ୍ରଡାଳ ସବୁ ଶୁଖି ଆସିଲା । ପତ୍ର ଝଡିଗଲା ଶଗଡ ଶଗଡ । ଗଛରେ ଆଉ ଗୋଟିଏ ହେଲେ ପତ୍ର ରହିଲା ନାଇଁ । ଡାଳରୁ ପଳଖା ଝଡିଗଲା । ଆମେ ଯାର ସାନଡାଳ ଆଉ ପତ୍ରସବୁ ନେଇ ଜାଳି ସାରିଲୁଣି । ବାକି ଯାହା ଅଛି ଜାଳିବୁ । ନ ହେଲେ ଶୀତ କାଟିବୁ କେମିତି ?'

ଖୁବ୍ ସରଳ ଢଙ୍ଗରେ ସେ କହିଗଲା । ଲୁଚଛପା ସଂକୋଚ ମିଛ କିଛି ନାହିଁ । ମୁଁ ବୁଝିଗଲି । କିନ୍ତୁ ସରକାରୀ ଢଙ୍ଗରେ ଗାଲୁ ପେଲିବା ଛାଡିଲି ନାହିଁ ।

"ତୁମେ ଶୀତ କାଟିବ ବୋଲି ଏ ଗଛ କାହିଁକି କଟାହବ ? ତୁମେ ଅପରାଧ ମଣିଷମାରୁ ଅପରାଧ ସଙ୍ଗେ ସମାନ । ଏ ଗଛ ତ ମନକୁ ମରି ନାହିଁ – ତାକୁ ତୁମେ ସବୁ ମିଶି ମାରିଛ । ସେଇ ଅପରାଧରେ ତୁମକୁ ଦଣ୍ଡ ମିଳିବ ।"

ସେମାନେ କିଛି କହିଲେ ନାହିଁ । କିଛି କଲେ ନାହିଁ । କିନ୍ତୁ ସେଇଠୁ ଘୁଞ୍ଚିଲେ ବି ନାହିଁ ।

ଏତିକିବେଳେ ନୂଆ ପ୍ରକାର ଶବ୍ଦଟାଏ ଶୁଣାଗଲା । ହବିବ୍‌ର କାନ ଠିଆଠିଆ ହେଇଗଲା । ମୁଁ ବି ବାରିପାରିଲି ଯେ ଖଣ୍ଡେ ଲୁନା ଗାଡି କିଏ ଚଳେଇ ଏଇଆଡେ ଆସୁଛି । ସେଇ ଗାଁ ଆଡୁ ଆସୁଛି । ସମସ୍ତେ ସେ ଶବ୍ଦ ଶୁଣିଲେ, ବୁଝିଲେ ଏବଂ ଉପରକୁ ମୁହଁ ଟେକି ଅନେଇଲେ ସେଇଆଡେ ।

ଶଗଡଦଣ୍ଡା ରାସ୍ତା ଉପରେ ସେ ପିଟିପିଟିଆ ଶବ୍ଦଟି ସାମାନ୍ୟ ଧୂଳି ଉଡେଇ ଆମ ଆଡକୁ ବଢିପାଣି ପରି ମାଡି ଆସିଲା ।

ସମସ୍ତେ ବୋଧେ ଅପେକ୍ଷା କଲେ ଗୋଟାଏ ମୁକାବିଲାକୁ । ମୋର ମଧ ମନରେ ନାନାଆଶଙ୍କା ଦେଖାଦେଲା । ହୋଇପାରେ ଏ ଜଣକ ସରପଞ୍ଚ, କଥାକଥାକେ ମନ୍ତ୍ରୀ । ହୋଇପାରେ କଣ୍ଟ୍ରାକ୍ଟର, ଆଖିଠାରିଦେଲେ ଠେଙ୍ଗା । ହୋଇପାରେ ନୂଆ ସଉକିନିଆ ଟୋକା । ବାପ ଟଙ୍କାରେ ଚଢୁଛି ଅଥବା ନୂଆ ବିଭାହେଇ ଶଶୁରଠୁ ଆଣିଛି ଲୁନା...

ଏ ସବୁ ମିଛ ପ୍ରମାଣିତ ହେଲା । ମୋଟା ନିଶୁଆ କାଳିଆ ହେଇ ଜବରଦସ୍ତ ଗୋଟାଏ ଲୋକ ଖୋଲା ଦେହରେ ଖୋର୍ଦ୍ଧା ଲୁଙ୍ଗି ମାରି ଲୁନା-ଚଢେଇ ଉପରେ ଗ୍ରହରାଜ ବସିଲା ପରି ଆସି ବିଜେ ହେଲେ । ବୟସ ଅନ୍ଦାଜ୍ ଚାଳିଶ୍ ।

ସେ ଭେଣ୍ଡିଆ ଟୋକା ପୂନିଆ କହିଲା 'ମୋ ବା' ଆଇଲା ତାକୁ ପଚାର କ'ଣ ପଚାରିବ !'

ସେ ଲୁନାଟାକୁ ଅବଲୀଳାକ୍ରମେ ଠିଆକରି ମୋରି ଆଡକୁ ମୋହିଁଲା ।

"କ'ଣ ଆଜ୍ଞା, ଆପଣମାନେ କୁଆଡେ ?"

ମୁଁ ଯଥାସମ୍ଭବ ଜୋର୍ ଦେଇ ସ୍ୱାଭାବିକ ଢଙ୍ଗରେ କହିଲି, "ଏ ସରକାରୀ ଗଛ କାହିଁକି କଟାହେଉଛି ବୋଲି ମୁଁ ପଚାରୁଛି ।"

"ଏଁ ହୁଁ! ସରକାରୀ ତ ସରକାରୀ – ସେଇଟା କା' ବୋପା ସମ୍ପତ୍ତି କି ! ଆପଣ ଏକଥା

ପଚାରିବାକୁ କିଏସେ ?"

ଥାକୁଲା ବାଁ ପାପୁଲି ଉପରେ ନଥିକିନା ଗୋଟାଏ ଡାହାଣ ମୁଷ୍ଟି ବସେଇ ସେ ମୋ ଆଡକୁ ଚାହିଁଲା । ସେଥିରେ ସେ ସୂଚେଇ ଦେଲା ଯେ ଏଣିକି ମୁଁ ଯଦି ପୁଣି ଅଡିବସେ, ସେ ଅବସ୍ଥା ଅସମ୍ଭାଳ କରି ଦବ ।

"ଆପଣ ଠିକ୍ କହିଛନ୍ତି । ଏଇଟା ତ କାହା ବୋପା ସମ୍ପତ୍ତି ନୁହେଁ । କିନ୍ତୁ ବୁଝିବାକୁ ଗଲେ ଏଇଟା କ'ଣ ଏ ଗାଁର ସମସ୍ତଙ୍କର ଗୋସେଇଁ ବାପ ପଣିଗୋସେଇଁ ବାପ ଅମଳର ସଂପତ୍ତି ନୁହେଁ କି ? ଏ ଗଛଟା ତ ଅନ୍ତତଃ ତିନିଶ ବର୍ଷରୁ ପାଞ୍ଚଶ ବର୍ଷ ପୁରୁଣା । ଏ ଗାଁର ଇତିହାସ ତା'ର ଚିହ୍ନଟ । ତା'ର ଇଜ୍ଜତ୍ ଏ ଗଛ – ନାଁ କ'ଣ ମତେ କହୁନାହାନ୍ତି ?"

ବିପକ୍ଷକୁ ସାମାନ୍ୟ ଲଇଁବା ଦେଖି ମୁଁ ବି ମୋ ବାଁପାପୁଲିରେ ଗୋଟାଏ ଘୁସି ଆସ୍ତେକିନା ମାଇଲି । ଭାଷଣ ଅବ୍ୟାହତ ରଖି କହିଲି –

"ଏ ଗଛ ଯେତେବେଳେ ଟୋକା ବଇସିଆ ହେଇଥିବ, ଆପଣଙ୍କ ପଣିଗୋସେଇଁ ବାପ କି ତାଙ୍କ ଗୋସେଇଁ ବାପ ଯା' ଡାଳରେ ଚଢି ଖେଳିଥିବେ । ଯା ଛାଇରେ ବୈଠକ ବସିଥିବ । ସାଧୁ ସନ୍ଥ ବସିଥିବେ । ନ୍ୟାୟ ନିଶାପ ହେଇଥିବ । ଖରାବେଳେ ପାଣିଛତ୍ର ବସିଥିବ । ଯା ଉପରେ ନାନା ଜାତି ପକ୍ଷୀ ବସା ବାନ୍ଧିଥିବେ । ଆପଣ ନିଜେ ଯା ମୂଳେ ସ୍କୁଲକୁ ନଯାଇ ଗୋଟା ଦିପ୍ରହର ବିତେଇଥିବେ ।"

ତା'ତଳ ପାଟି ଓହଳିପଡିଲା ।

"ଏଁ ହୁଁ! ଆହେ, ଆପଣ କ'ଣ ସବୁ ଦେଖିଲା ପରି କହୁଛନ୍ତି । ଆପଣ ଯାହା କହିଲେ ସେ ସବୁ ଏଇଠି ହେଇଚି । ଯା ଡାଳରେ ଶେଷକୁ ଭୂତ ରହିଲେ । ଏ ବାଟରେ ଦିନବେଳେ ଯିବାକୁ ଲୋକେ ଡରିଲେ । ଏଁ ହୁଁ!"

ଜଣେ ସେଆଡୁ କହିଲା, "ଦନେଇ ମାଇପ ରକ୍ତବାନ୍ତି କରି ମରିଯାଇଥାନ୍ତା । ଏ ଗଛଟା ବ୍ରହ୍ମରାକ୍ଷସ ଗଛ, ନଇଲେ ହେମ୍ତି ଅର୍ଘାହେଇ ବଢିଥାନ୍ତା କିଏ ?"

ନିଶୁଆ ନେତା କହିଲା, "ଆବ୍‌ବେ ସେଇଟା ସେମେତେ କାଇଁ ହବ ବଳୁଆ ମାଟି ପାଇ ସେ ଗଛ ସେତିକି ବଢିଥିଲା ନାଁ । ଆମ ପଣ ଗୋସେଇଁବାପେ ପରା ଯା ମୂଳେ ପୂଜାଧୂଜା କରୁଥିଲେ ।"

ମୁଁ ସଜ ଉଣ୍ଡି ପଚାରିଲି, "ତା'ହେଲେ ଯାକୁ ମାରିଲ କାହିଁକି ଥିଲେ ତ ଏବେ ମଧ ଗଛଟା ରଜାପରି ବିରାଜୁଥାନ୍ତା ! ମୁଁ ଜାଣିବାରେ ଏମିତି ଗୋଟାଏ ଗଛ ସାରା ଓଡିଶାରେ କୋଉଠି ନଥିବ । ଏଇଟା ବଡଦେଉଳଠୁ ଉଚ୍ଚ ହେଇଥାନ୍ତା । ତା' ଉପରେ ବାନା ବାନ୍ଧିଥିଲେ କୋଡିଏ କୋଶ ଦୂରରୁ ଦିଶିଥାନ୍ତା । ଲୋକେ ଯାକୁ ଦେଖିବାକୁ ଦୂରଦୂରାନ୍ତରୁ ଆସିଥାନ୍ତେ ।"

ସମସ୍ତେ ମୁଣ୍ଡ ତଳକୁ କରି ଠିଆ ହେଇଥାନ୍ତି । ନିଶୁଆ ନେତା କହିଲା, "ଆଚ୍ଛା ସାରେ, ଆମେ ତ ମାରି ଦେଲୁ । ଆମ ଗଛମଲା । ସେଥିରେ କା ବୋପାର କି ଗଲା ଆମେ ଜାଣି ଆମ

ପଣିଗୋସେଇଁ ବାପକୁ ହରେଇଲୁ! ଏବେ ଏ ମଲା ଗଛକୁ ଆମେ ଭାଗ ବାଣ୍ଟିନବୁ । ଗାଁ ଯାକର ଜାଳ ଏ ଯୋଗେଇବ ଗୋଟାଏ ବର୍ଷ, ଘର ପିଛା ପାଞ୍ଚ ଶଗଡ କାଠ ମିଳିବ ।"

"ବର୍ଷେ ପରେ କ'ଣ କରିବ ?"

"ଏଁ ହୁଁ! ବର୍ଷେ ପରେ କ'ଣ କରିବ, ଦଶବର୍ଷ ପରେ କ'ଣ କରିବ !"

– ନେଫେଡାଟା କରିବୁ! ସେତେବେଳେ ଆମେ ବୁଝିବୁନାଇଁ, ତମ ମୁଣ୍ଡ କାଇଁକି ବଥଉଚି – ଆରେ କାହାକୁ ଅନେଇ ବସିଚ ? – କାଟୁନ କାଇଁକି ।

ମୋତେ ସମସ୍ତେ ଚାହିଁଲେ । ହବିବ ଚାହିଁଲା ।

ମୁଁ ଅନ୍ୟ ଉପାୟ ନଦେଖି ଗଛ ପାଖକୁ ଚାଲିଗଲି । ସେ ବିଶାଳ କଙ୍କାଳ ଉପରେ ହାତ ରଖି କହିଲି, 'ମୁଁ ସରକାର ତରଫରୁ ନୋଟିସ ଦଉଚି, ତମେ ୟାକୁ କାଟି ପାରିବ ନାଇଁ । କାଟିଲେ ଏଠିକି ପୁଲିସ୍ ଆସିବ । ନାଲିଶ୍ ହବ ।'

ଏତିକିବେଳେ ସେ ବୁଢୀ ମୋ ଆଡକୁ ଆସି କହିଲା, 'ତେମେ ସରକାର ଲୁକଟି ! ମେତେ ଏ ଜାଡ ଶୀତରେ ମାରିବାକୁ ବସିଚ...ମୋ ନାତୁଣୀକୁ ମାରିବାକୁ ବସିଚ...ମୋତେ ଆଉ ଦୁଇଖଣ୍ଡ ଛେଲି କରି ଦେଇ ଦିଅ ବାବୁ, ଆଜି ଦିନକର ଜାଳ ହେଲେ ମେତେ ଦିଅ । ...ସେ ନାତୁଣୀ ମତେ ଖାଇଯିବ । ...ଗୋସେଇଁ ମା'କୁ ତ' ଖାଇବ ସେ । ଆଉ କେଉଁ କ'ଣ ମିଳିବ କହୁନୁ!

ହେମାଳ ପବନରେ ବୁଢୀର ନୁଖୁରାବାଳ ଉଡୁଥିଲା । ଫୁଙ୍ଗୁଳା ଲୋତରା ଦେହ ଶୀତକଣ୍ଟା ମାରୁଥିଲା ।

ତା'ର ନାତୁଣୀଟିକୁ ନେଇ ବୋଧେ ସଂସାର । ସେ ବସିଚି ତା' ପିଠିରେ, ବସେଇ ତାକୁ କୂଳରେ ଲଗେଇଦବ ନିଜେ ବୁଡିବା ପୂର୍ବରୁ । ସେଇ ନାତୁଣୀ ତା' କୋଳରେ ବସି ସେଇଠୁ ଆଞ୍ଚୁଡି ଆଞ୍ଚୁଡି ଉଷୁମ ଖାଇବ । ସେଇଥିରେ ସେ ହୁଏତ ବଞ୍ଚିଯିବ ।

ନିଶୁଆ ବୋଧେ ମୋ ଆଡକୁ ଧପାଲି ଆସିଥାନ୍ତା । ସେଇଠି ଠିଆହେଇ କହିଲା, "ଏଁ ହୁଁ! ଏଇ ମଲାଗଛଟାକୁ କ'ଣ ଜଗିଚ ହେ ବାବୁ! ସେ ପାହାଡ ପାଖକୁ ଯାଉନ; ଘାଇଁ ଘାଇଁ ଟ୍ରକ୍ ଚାଲିଚି ଦିନରାତି । ତାକୁ ଜଗିପାରିବ...ଏଁ ହେଁ ଆମେ ତ ଏଠି ଗୋସେଇଁବାପ ଅମଳର ଜମିବାଡି ଘରଡିହ ସୋରା ସୋରା କରି କରି ବଞ୍ଚୁଚୁ । ସେ କାଳର ଗୋଟିଏ କୂଅ, ଗୋଟିଏ ପୋଖରୀରୁ ଚଳେ ଚଳେ ପାଣି ପିଉଚୁ । କେମିତି ଏ ଫୁଙ୍ଗୁଳା ଲୋକେ ଶୀତ କାଟିବେ କହୁନ ? ତମ ସରକାର ତାକୁ ଶେଯ କମ୍ବଳ ଦବ କି ? ମରିଯିବେ ଶୀତରେ ସମସ୍ତେ..." ଏଁ ହେଁ, ଏଇନେ ବାପର ରଇକାଠ ଆଣି ଚୁଲି ଜାଳିବା ଦିନ ଆସିଗଲା । ...ହଟିଯାଅ ସେଇଠୁ । ନ ହେଲେ ଭଲକଥା ହବନାହିଁ କହୁଚି ।

ସବୁ କୁରାଢିରେ ଖିରା ପଡୁଥିଲା । ସବୁ ଆଖିରେ ଭୋକ ଦହକୁ ଥିଲା । ଶୁଖିଲା ଓଠ, ନୁଖୁରା ମୁଣ୍ଡ, ଛାଇରୁଆ ଦେହରେ ଶୀତକଣ୍ଟା ମାରୁଥିଲା ।

ମୋ ପାଖରେ ବୁଢୀକୁ ଚାହିଁ ମୁଁ ଆସ୍ତେ ହାତ ଅପସରି ଆଣିଲି । ସାଉଁଳି ଦେଲି

ପଣିଗୋସେଇଁ ବାପର ଗଛ କଙ୍କାଳକୁ..."ତତେ ଆଉ ପୋଷି ପାଳି ରଖିବା ଶିଖିଥିଲେ, ଆମେ କାହିଁକି ନିଉଛୁଆ ଦରିଦ୍ର ହେଇଅଛୁ । ତୁ ହିଁ ତ କଳ୍ପବଟ, ତୁ ହିଁ ନିଗ୍ରୋଧ, ନିକୁମ୍ଭିଲା, ମୋର ବିଶାଳ ବେଦ ! ତତେ ଆଉ କେହି ରଖି ପାରିବେ ନାହିଁ । ତୋର ସ୍ମୃତି ମଧ ଲୋପ ପାଇଯିବ..."

"ହଉ, କ'ଣ କରୁଚ କର !" କହି ମୁଁ ହବିବ୍ ପାଖକୁ ଚାଲି ଆସିଲି ।

ଦୁହେଁ ରାସ୍ତାକୁ ମୁହଁକରି ଠିଆହେଲୁ । ଦୁର୍ ଦୁର୍ କୁରାଢି ପାହାର ପଡିଲା ଗଛ ଗଣ୍ଡିରେ । ଗୁମ୍ ଗୁମ୍ ଦୁଲୁକିଲା ଗଛ । ପାଟି ଶୁଭିଲା ଆବୁରୁ ଜାବୁରୁ ଅଯୋଗ୍ୟ ଗୋଛା ଗୋଛା ନାତିମାନଙ୍କର ।

ନିଶୁଆ ତା' ଗାଡି ପାଖକୁ ଗଲାବେଳକୁ ହବିବ୍ ତାକୁ ପଚାରିଲା, "ଆମେ ଆମ ଗାଡି ବଡରାସ୍ତା ଉପରେ ଛାଡି ଆସିଛୁ । ତେଲ ସରି ଯାଇଚି । ଏଇଠି କୋଉଠି ମିଳିବ କିଣିବାକୁ ?"

ଟହ ଟହ ହସିଲା ସେ କଳା ମଚ ମଚ ଖୋର୍ଦ୍ଧା ଲୁଙ୍ଗି ପିନ୍ଧା ଅପରପକ୍ଷ ।

"ଏଇ କଥା କହୁନ ! ଏଁ ହେଁ ଏଁ ହୁଁ ! ଚାଲୁନ...ମୁଁ ମୋ ଘରୁ ପାଞ୍ଚ ଲିଟର ମାଲ ନେଇ ପହଞ୍ଚେଇ ଦଉଚି । ତିନିଟଙ୍କା ଲେଖାଁ ଅଧିକ ପଡିବ ।"

"ଏଁ ହେଁ, ଏଁ ହୁଁ ହେଇ ହସିଲା ସେ ଦୈତ୍ୟ । ଆମେ ନୀରବ ବଙ୍କା ରାସ୍ତା ଧରି ଆଗେଇଲୁ । ଚାରିଆଡ ବିସ୍ତୀର୍ଣ୍ଣ ଟାଙ୍ଗରା । ଦୂର ଧାନକ୍ଷେତରେ ପାଚିଲା ଫସଲ । ନିର୍ମଳ ଦିଗଚକ୍ରରେ କେଉଁଠି ହେଲେ ଗଛର ଶିଖଟିଏ ଦିଶୁନାହିଁ ।"

ଲୁନା ଦୂରେଇଗଲା । ଆମେ ଦୂରେଇ ଗଲୁ ।

ପଛକୁ ଫେରି ଚାହିଁ ଦେବାକୁ ମୋର ହୁବ ପାଉ ନଥିଲା । କୁରାଢି ପାହାର ଅନେକ ବେଳଯାଏଁ ଶୁଭୁଥିଲା ନିସ୍ତବ୍ଧ ସକାଳଟାରେ । ଗୋଟିଏ ହେଲେ ପକ୍ଷୀର ଡାକ ଶୁଭୁ ନଥିଲା । କେତେ ଅଲକ୍ଷଣିଆ ଲାଗୁଥିଲା ସେ ସକାଳ ! ଆକାଶ ଦିଶୁଥିଲା ବିଧବାର ଶୂନ୍ୟ କପାଳ ପରି ।

ମୁଁ କେବଳ କାନେଇଥିଲି କେତେବେଳେ ମଟ ମଟ ଶବ୍ଦ କରି ସେ ବିଶାଳ ଇତିହାସର ସମାପନ ହେବ ।



# ମୋହ

ଆମେ ଦୁହେଁ ସେତେବେଳେ ଏକାଠି ରହୁଥିଲୁ ଅଥବା ରହିବାକୁ ଚାହୁଁଥିଲୁ ଦିନରାତି ଅହରହ ମାସ ମାସ ବର୍ଷ ବର୍ଷ ଅବିଚ୍ଛେଦ୍ୟ ଭାବରେ । ଦେଖିବା ଶୁଣିବା ଲୋକେ ବିସ୍ମିତ ହେଉଥିଲେ । ଥଟ୍ଟା ଟାପରା କରୁଥିଲେ । ବାରକଥା କହୁଥିଲେ । କିନ୍ତୁ ଆମେ କାହା କଥା ନଶୁଣି, କାହାକୁ ଖାତିର୍ ନକରି ପରସ୍ପର ଭିତରେ ମଜ୍ଜି ରହିଥିଲୁ ।

ତା' ଘରଟା ଆମ ସାହିଠାରୁ ବେଶ୍ କିଛି ଦୂର । ମୁଁ ସୁଯୋଗ ପାଇବା ମାତ୍ରେ ଉଡି ଆସୁଥିଲି । ବାଟରେ ପୋଖରୀ, ହାଟ, ମନ୍ଦିର, ରାଜାବଗିଚା । ମୁଁ ସେତେବେଳେ ଏ ସମସ୍ତ ସ୍ଥାନ ଅଛି ବୋଲି ଅନୁଭବ କରିପାରୁ ନଥିଲି । ଗୋଳିଆ ପାଣିର ଅଙ୍କାବଙ୍କା ନଈ ପରି ମୁରୁମ୍ ରାସ୍ତା ବହିଯାଉଥିଲା । ମୁଁ ଡଙ୍ଗାଟିଏ ପରି ସେ ସ୍ରୋତରେ ଭାସିଯାଉଥିଲି ।

ତା'ଘର ସାମ୍ନାରେ ଆଉ ଗୋଟିଏ ପୋଖରୀ; ଆଉ ଗୋଟିଏ ମନ୍ଦିର । ମୋ ପାଇଁ ସେଗୁଡିକ ସ୍ୱପ୍ନ ପରି ସୁନ୍ଦର, ତୀର୍ଥ ପରି ପୁଣ୍ୟମୟ ଲାଗୁଥିଲା । ତାଙ୍କର ଦୋତାଲା କୋଠା । ସୁନ୍ଦର ସୁନ୍ଦର ସବୁଜ ରଙ୍ଗର ଝରକା । ଝରକାରେ ସାତଟି ଲେଖାଁ ରେଲିଂ । ଭିତରପଟୁ ଗାଢ ନୀଳ ରଙ୍ଗର ପର୍ଦା । ତାଙ୍କ ଦୁଆରେ ଲୁହା ଫାଟକ । ପିଣ୍ଡାରେ ଆଲସେସିଆନ୍ । ପିଣ୍ଡା ତଳକୁ ଗାଲିଚା ଭଳି ଲନ୍ । ଧାଡି ଧାଡି ଗୋଲାପ ଏବଂ ଠାଏ ଠାଏ ଡାହାଲିଆର ଜଳନ୍ତା ନିଆଁ ପରି ବର୍ଣ୍ଣ ! ସେତେବେଳେ ପଚାରିଥିଲେ ମୁଁ ସାରା ପୃଥିବୀର ପରିଚୟ ଏଇ କେତୋଟି ମାତ୍ର ରଙ୍ଗ ଏବଂ ଆକାର ମାଧମରେ ଦେଇଥାନ୍ତି । ଆଉ ଯାହା ଅବଶିଷ୍ଟ, ଅଶେଷ ସମ୍ପଦ କଥା ମୋତେ କୁହା ଯାଇଥାନ୍ତା ମୁଁ ସେଥିପାଇଁ ହୁଏତ ଅବିଶ୍ୱାସ ଏବଂ ବିସ୍ମୟ ପ୍ରକାଶ କରିଥାନ୍ତି, କିନ୍ତୁ ଖାତିର କରିନଥାନ୍ତି । ମୁଁ ସେତେବେଳେ ସହସ୍ରବାର ଅଭିଯୋଗ କରିଥିଲି କାହିଁକି ଆମ ଭିତରେ ଏତେ ଅବାନ୍ତର ଅଶ୍ଳୀଳ ରାସ୍ତା ଏମିତି ସାପେଇ ରହିଛି । କାହିଁକି ଆମେ ଚାଳକୁ ଚାଳ ଲାଗିଥିବା ଦି'ଟା ପଡିଶା ଘରେ ରହିପାରୁନାହୁଁ । ମଝିରେ କେବଳ ଝିଲିମିଲି କୁହୁକ କବାଟଟିଏ ଆଖି ପତା ପରି ଇଚ୍ଛା କଲେ ହିଁ ନିଃଶବ୍ଦ ଫିଟି ଯାଉ ନାହିଁ । କାହିଁକି ଆମ ଘରେ ଏବଂ ତା' ଘରେ ଏମିତି ଗୋଛା ଗୋଛା ଲୋକ ସବୁବେଳେ କଳଗାଉଣା ପରି ଗୋଟିଏ ପ୍ରଶ୍ନ ପଚାରୁଛନ୍ତି, "କିରେ କୁଆଡେ ଯାଉଚ ?"

ପୋଖରୀ ହୁଡାରେ ଠିଆହୋଇ ସକାଳ ଖରାରେ ସବୁଜ ଝରକାକୁ ନିର୍ନିମେଷ ଚାହିଁ

ରହିଥିଲାବେଳେ ମୁଁ ସେ ସମସ୍ତଙ୍କୁ ମହାମାରୀ ଖାଇଯିବାକୁ ପ୍ରାର୍ଥନା କରିଛି । ପୁଣି କ'ଣ ଭାବି ସେ ସମସ୍ତଙ୍କୁ ବଞ୍ଚେଇ ଦେଇଛି ।...ଏ ଦୋତାଲା କୋଠାର ସାମ୍ନା ଲୁହାଫାଟକ ଟରଳିଗଲେ କ'ଣ ଭଲ ଦେଖାଯିବ ? ଘୋଡାଛୁଆ ଭଳି ସେ ଆଲ୍‌ସେସିଆନ୍ ମରିଗଲେ କିଏ ପୁଣି ସେ ଗୋରା ଗୋରା ଗୋଡ ପେଣ୍ଡା ପାଖରେ ଲଟେଇ ହେବ ? ସେ ଥାକୁଲାମୁହାଁ ପେଟା ବାପ କିଛି କିଛି ବୁଝିଲା ଭଳି ମୋତେ ମିଟିମିଟି ନଚାହିଁଲେ କ'ଣ ଭଲ ଲାଗିବ ? ଆଉ ତା'ର ସେ ଫ୍ରକ ପିନ୍ଧା କଣ୍ଢେଇ ଭଳି ଭଉଣୀ ଯୋଡିଏ ଚୁଟିବେଣୀ ମଝିରେ ପେଣ୍ଡୁପରି ମୁହଁ କାଢି ପୁଚକିନା ହସି ନଦେଲେ ତା' ଉଷୁମ ହାତଟି ଧରି ଆମେ ବାହାରକୁ ଚାଲି ଆସିବାରେ ଆନନ୍ଦ କାହୁଁ ମିଳିବ ? ଆମ ଘରେ ପହଞ୍ଚୁ ପହଞ୍ଚୁ ଭାରି ସୁଆଦିଆ କ'ଣ ସବୁ ତଣ୍ଟିଯାଏ ଗିଳେଇ ଦେଉଥିବା ବୋଉଟି ନିଶ୍ଚୟ ବଞ୍ଚିବ । ଏତେ ପାଟିରେ କ'ଣ ସବୁ ବକିଯାଉଥିବା, କଟାସ ପରି ଆଖିଡୋଳା ବୁଲାଉଥିବା ନନା ଅବଶ୍ୟ ପିଣ୍ଡା ଉପରେ ବସିଥିବେ, ନହେଲେ ପିଣ୍ଡାଟା କେଡେ ଖାଲି ଦେଖାଯିବନାହିଁ ? ଆଉ ଫୁଟବଲ ଖେଳରେ ମାଟି ଶୂନ୍ୟକୁ ଅହରହ କିକ୍ ମାରୁଥିବା ଭାଇନା ମୋ ପିଠିରେ ବିଧାଏ ପକାଇ ପଚାରିବ, "କିରେ କୁଆଡେ ଏମିତି ବୁଲୁଚୁ, ବାଲୁଙ୍ଗା ?" ଏବଂ ଉତ୍ତରକୁ ଅପେକ୍ଷା ନକରି ଧାଇଁପଳାଇବ । ସେ କ'ଣ ମରିବା ଉଚିତ୍ ?

ମୋଟ ଉପରେ ସମସ୍ତେ ବଞ୍ଚି ରହିବାରେ ମୋର କ'ଣ ବା ଆପତ୍ତି ଥାଇପାରେ ? ମୁଁ କେବଳ ଚାହେଁ ଆମେ ଦୁହେଁ ଏକାଠି ବୁଲିବା, ଖେଳିବା, ପରସ୍ପରକୁ ଜାକିଧରିବାରେ, ମନ ଇଚ୍ଛା ହସିବାରେ କିମ୍ବା ଏକାଠି ଗୋଡ ଲମେଇ ଆଲ୍‌ଜେବ୍ରା କଷିବାରେ କେହି ଯେମିତି ବାଧା ନ ହେଉ ! ସେ ବିଚରାମାନେ ପ୍ରକୃତରେ କେହି ହେଲେ ବାଧା ବି ଦେଉ ନଥିଲେ । କିନ୍ତୁ ଆମକୁ ଲାଗୁଥିଲା ଯେ ସେ ବଜାତ୍‌ମାନ ଆଉରି ଦୂରକୁ, ଅଗ୍ନାଗ୍ନି ବନସ୍ତକୁ ଅପସରି ଯିବା ଉଚିତ । କିମ୍ବା ମଝିରେ ମଝିରେ ଟଳମଳ ସମୁଦ୍ର ପାଣି ଉପରକୁ ଫଣା ଟେକି ଅନେଇ ଦେଉଥିବା ସାପ ପରି ସେମାନେ ଆବିର୍ଭୂତ ନହେବା ଉଚିତ ।

ଆମେ ସେ ଛୋଟ ପଢାଘର ଭିତରେ କାନ୍ଥକୁ ଆଉଜି ପଟି ଉପରେ ବସୁଥିଲୁ । ଆଲ୍‌ଜେବ୍ରା ବହିଟା ଖୋଲି ରଖୁଥିଲୁ; କିନ୍ତୁ ଅଣ୍ଟାପାଖରେ ବାହୁ ବେଢେଇ ପରସ୍ପରକୁ ଭିଡିଧରୁଥିଲୁ ।

ଆମେ ସେତେବେଳକୁ ନିଶ ଗଜୁରି ଆସିଥିବା ମାଖୁନାମୁହାଁ ହାଫ୍‌ପେଣ୍ଟ ପିନ୍ଧା ଟୋକା । ଦଶମ 'କ' ଶ୍ରେଣୀ ଛାତ୍ର । ତା' ନାଁ 'ମନ୍ନୁ' । ମୋ ଭଳି ନାଁଟିକୁ ଉଚ୍ଚାରଣ କରି ଜାଣିଲେ ଆଉ କିଛି ତା' ସହିତ ଯୋଡି ହୋଇ ପାରିବ ନାହିଁ । ଏବେବି ସେ ନାଁଟିର ବିଚିତ୍ର ନିଶା ମୋତେ ଘାରିଯାଏ । ସେତେବେଳେ ସେ ନାଁ ଧରି ଥରେ ଡାକିଦେଲେ ମୋତେ ସୃଷ୍ଟି ଦିଶୁନଥିଲା । ମୋତେ ସେ ଡାକୁଥିଲା – 'ରମେ' ! ମୋ ଡାକଘରି ନାଁରୁ ବହୁଅଂଶ ବାଦ୍ ଦେଇଦେଲେ ବୋଧହୁଏ ଏଇ କାଇଁଚମଞ୍ଜି ପରି ଅଂଶଟକ ରହିଯିବ । ଏଇ ବୋଧେ ମୋ ସତ୍ତାର ଅବ୍ୟୟ ଅକ୍ଷୟ ନିତ୍ୟ ପଦାର୍ଥ । ମୁଁ ସତେ 'ରମେ' ନହୋଇ ଆଉ କ'ଣ ହୋଇପାରେ ? ରମେଶଚନ୍ଦ୍ର ଦ୍ୱିବେଦୀ ଗୋଟାଏ ଅତି ଫାଟୁଙ୍ଗା, ବେହିସାବି ଅତିକଥନ ପରି ମନେହେଉନାହିଁ ? ଧୁତ୍, ଏଇଟା କ'ଣ ନାଁ ? ଏଇଟା

ଗୋଟାଏ ଲାବେଲ୍ । ନାଁ ହେଲା 'ରମେ' ! 'ମନ୍ନୁ' ଥରେ ସେ ନାଁ ଧରି ଡାକିଦେଲେ ମୋ ଭିତରର ଆତ୍ମାପୁରୁଷ ଜାଗିଉଠେ ।

'ମନ୍ନୁ'କୁ ମୁଁ ବୋଧେ ସାଧାରଣ ଆଖିରେ କେତେବେଳେ ଦେଖି ନଥିଲି । ବହୁକାଳ ପରେ ନିସ୍ପୃହ ଭାବରେ ମନେପକେଇଲେ ଯେଉଁ ରୂପ ଦେଖାଯାଉଛି ସେଥିରେ ଏମିତି ମୋହାବିଷ୍ଟ କରିପାରିବାର ଲକ୍ଷଣ କିଛି ନାହିଁ । ଖୁବ୍ ଗୋରା, ନହକା, ହାଫପେଣ୍ଟ ହାଫ୍ ସାର୍ଟ ପିନ୍ଧା ପିଲାଟିଏ । କହରା ଛୋଟ ଛୋଟ ଠିଆ ବାଳ । ଲମ୍ବାଳିଆ ଚିକ୍‌କଣ ବେଲୁଆ ମୁହଁଟିଏ । ଗାଲରେ ମୁହଁରେ କୁଣ୍ଡା ରୁମ ଭର୍ତ୍ତି । ଆଖି ଯୋଡିକ ପାଟଳ ସ୍ୟାହି ପରି ନେଳି ଜରଜର । ଫୁଙ୍ଗୁଳା ହାତ ଗୋଡ ବଳିଲା ପରି, ମହୁ ରଙ୍ଗର ଏବଂ ଉଷ୍ଣୁମ୍ । ମୁଁ ତା' ଅପେକ୍ଷା ବର୍ଣ୍ଣରେ ଅନେକ ଊଣା; ଅନେକ ଭାରି, ହାଡୁଆ, ପଥୁରିଆ ଏବଂ ଲୋମଶ...

ସବୁ ହେଡ୍‌ମାଷ୍ଟ୍ରଙ୍କ ମୁଣ୍ଡରେ ବଜ୍ରପାତ ହେଉ । ଚିରକାଳ ବାତିଲ୍ ହୋଇଯାଉ ସବୁପ୍ରକାର ପରୀକ୍ଷା । ଆମେ ସେ ସମୟରେ ନିରୁଦ୍ଦିଷ୍ଟ କୁଆଡେ ନାଇଁ କୁଆଡେ କାହିଁକି ଯାଇ ପାରୁ ନଥିଲୁ ? କାହିଁକି ସେ ଛୋଟ କୋଠରିର କାନ୍ଥକୁ ଆଉଜି ଅଶ୍ଳୀଳ ଆଲ୍‌ଜେବ୍ରା ଅଙ୍କ କଷୁଥିଲୁ ? ସେଥିପାଇଁ ଏ ପରୀକ୍ଷା ଏବଂ ଏ ହେଡମାଷ୍ଟ୍ର ହିଁ ଦାୟୀ । କିନ୍ତୁ ଆମେ ପରସ୍ପର ପାଖରେ ରହି ଘଣ୍ଟା ପେଲିବାକୁ ପଡିଥିଲେ ମଧ୍ୟ ବିନା ଦ୍ୱିଧାରେ ସେ କାର୍ଯ୍ୟ ବୋଧହୁଏ କରିଥାନ୍ତୁ । ଏକାଠି ଯାହା କଲେ ମଧ୍ୟ ଚଳିଥାନ୍ତା । ଏଣୁ ବୋଧେ ଆଲ୍‌ଜେବ୍ରାକୁ ଆମେ ସହିଯାଉଥିଲୁ ।

ପରୀକ୍ଷା ଦେବାକୁ ପଡିଲା । ଅନିବାର୍ଯ୍ୟ ରାତ୍ରି ଭଳି ସେ ସମୟତକ ଛଟପଟ ହୋଇ କାଟି ଦେଉଥିଲୁ । କ'ଣ ସବୁ ଲେଖି ଦେଇ ଲମ୍ବା ଘଣ୍ଟି ପୂର୍ବରୁ ବାହାରି ଆସି ଅପେକ୍ଷା କରୁଥିଲୁ । ବାର୍ଷିକ ପରୀକ୍ଷା କିଛି ଥଟ୍ଟା କଥା ନୁହେଁ । ଏଥିରେ ଗଡିଗଲେ ପୁଣି ସେଇ ପୁରୁଣା କ୍ଳାସରେ ବସିବାକୁ ପଡିଥାନ୍ତା । ସେଥିକୁ ଆମର ଡର ନଥାଏ । ଡର ଥାଏ କେବଳ ଗୋଟିଏ କଥାକୁ । ତା' ହେଲା ଯେ ଯଦି ଆମ ଭିତରୁ ଜଣେ ଖସିଗଲା ତେବେ କ'ଣ କରାଯିବ ? ପୃଥ୍ୱୀ ଦି'ଫାଳ ହେଇଯିବ ନାହିଁ ? ଉଭୟଙ୍କ ମନରେ ଏଇ ଆତଙ୍କ ହେତୁ ସତର୍କତା ଆସିଥିଲା ।

ଆମେ ଉଭୟେ ପାରି କରିଗଲୁ । ସେତେବେଳେ ଡିସେମ୍ବର ମାସ । ଖରାପିଠିଆ ସଅପ ଉପରେ ବସି ଖଣ୍ଡିଏ ଚଦର ଘୋଡେଇ ହୋଇ ଆମେ ନୂଆ ବହିର ପତ୍ର ଲେଉଟାଉ ଥାଉ । ମୁହଁ ପାଖରେ ଧରି ତା' ବାସ୍ନା ଶୁଙ୍ଘୁଥାଉ । ସର୍ଗ ସର୍ଗ ଲାଗୁଥାଏ । ମନ୍ନୁର ଭଉଣୀ ଗରମ ପକୁଡି ଗୋଳେଇ ଥାଳିଏ ମୁଢି ଆଣି ଥୋଇଦେଲା । ମୁଁ ତା' ମୁହଁକୁ ଚାହିଁ ରହିଗଲି । ଇସ୍ 'ମନ୍ନୁ' ଝିଅ ହୋଇ ଯାଉନାହିଁ କାହିଁକି କିମ୍ବା ମୁଁ ଝିଅ ହେଇ ଯାଉନାହିଁ କାହିଁକି ? ତା' ଭଉଣୀ ଆମକୁ ପଛକରି ଗଲାବେଳେ ମୁଁ ତା' ଗୋଡ ଦି'ଟାକୁ ଚାହିଁରହିଥିଲି ଏବଂ ମନ୍ନୁର ଅଣ୍ଟାରେ ହାତ ବେଢେଇ ଆସ୍ତେ ପାଖକୁ ଟାଣି ନେଇଥିଲି ।

ଆମେ କ୍ଳାସ୍‌ରେ ପାଖେ ପାଖେ ବସୁଥିଲୁ । ଏକାଠି ପାଣି ପିଇବାକୁ ଯାଉଥିଲୁ । ସଞ୍ଜବେଳେ ପଡିଆରେ ନ ଖେଳି ନିରୋଳା ରାସ୍ତାରେ ବୁଲି ଯାଉଥିଲୁ । ଅନେକ କଥା ପଡୁଥିଲା । ସେ

ସମୟରେ ତକ୍‌ଲି ନେଇ ସୂତା କାଟିବା ଖୁବ୍ ଜୋର୍‌ରେ ଚାଲିଥାଏ । ସେଇଟା ସାହସର କାମ, ପୁଣ୍ୟକାମ, ଦେଶ କାମ ବୋଲି ଲୋକେ କହୁଥାନ୍ତି । ଆମେ ସେସବୁ କିଛି ନବୁଝି ସେଥିରେ ପଶିଲୁ । ମୋ ହାତରେ ସୂତା କଟାହେଲା ନାହିଁ । ଏତେ ସୂକ୍ଷ୍ମକାମ ମୋ ଦେଇ ହୁଏ ନାହିଁ । ମନ୍ନୁ ମୋତେ ଶିଖେଇ ଶିଖେଇ ଥକିଗଲା । ମୋ ଅପାରଗତାରେ ନିଜେ କାନ୍ଦ କାନ୍ଦ ହେଇଗଲା । ଶେଷକୁ ମୋତେ ପିଠିଆଡୁ ଜାବୁଡି ଧରି ମୋ ହାତର ତକ୍‌ଲିକୁ ବୁଲେଇଲା ଏବଂ ସୂତା କାଟିଲା । ଏଭଳି ବ୍ୟବସ୍ଥାରେ ମୋର ନିଶ୍ଚୟ ଆପତ୍ତି କରିବାର ନଥିଲା ।

ମାଟ୍ରିକ୍ ପରୀକ୍ଷା ବାଘ ପରି ମାଡି ଆସିଲା । ଚାରିଆଡେ ବିପଦ ଘଣ୍ଟି ବାଜିଲା । ତାଗିଦା, ଉପଦେଶ, ଗାଳି, ମାଷ୍ଟ୍ରଗିରି ଚାଲିଲା । ଯେ ମନ ସେ ଆମକୁ ଦି'ପଦ ତିଆରି କହି ପକେଇଲେ । ଆମେ ସହିଲୁ । ଦିନେ ରାତି ଏଗାରଟା ହେବ ନା କ'ଣ ମନ୍ନୁ ବିକଳ ହେଇ ମୋ ଆଡକୁ ଚାହିଁବାର ମୁଁ ଦେଖିଲି । ମୁଁ ତା' ହାତଧରି ତା' ଆଖିକୁ ଅନେଇଲି । ସେ କହିଲା, "ଏ ବାଦଶାହମାନଙ୍କ କଥା ମୋର ଜମା ମନେରହୁନାହିଁ ।" ମୁଁ ତାକୁ ସାଙ୍ଗେ ସାଙ୍ଗେ ଆକବର ବାଦଶା କାହାଣୀ କହିଗଲି । ତା' ଆଖିରୁ ଲୁହ ନିଗିଡିଗଲା । କହିଲା, "ତୁ ପାଶ୍ କରିଗଲେ ମୁଁ କ'ଣ କରିବି ?" ମୁଁ ସେତେବେଳେ ବୁକୁ ବାଡେଇ କହିଥିଲି, "ଆରେ, ମୁଁ ତତେ ଛାଡି ପାରିବି ନାହିଁ । ହୁଏତ ଦୁହେଁ ପାରି ହେଇଯିବା, ନହେଲେ ଦୁହେଁ ଗଡିଯିବା ।"

ହାତରେ ହାତ ରଖି ଆମେ ଅନେକ ସମୟ ସେମିତି ଆଖି ବୁଜି ବସି ରହିଲୁ । ମୋର ଗୋଟାଏ ମୁହୂର୍ତ୍ତରେ କାହିଁକି କେଜାଣି ଅବାନ୍ତର ଭାବରେ ଇଚ୍ଛା ହୋଇଥିଲା ଆମ ଭିତରୁ କେହି ଜଣେ ଝିଅ ହେଇଯିବାକୁ !

ପରୀକ୍ଷା ଆସିଲା ଏବଂ ଗଲା । ତା'ପରେ ପ୍ରଥମ ରବିବାର । ମନ୍ନୁର କପାଳ ଦାଢରେ ଝାଳ । ତା' ବେକ ଝାଳରେ ଚିକ୍‌ଚିକ୍ । ଦେହ ସାରା ଉଷୁମ । ତା' ନିଃଶ୍ୱାସରେ କଅଁଳ ମହୁଆବାସ୍ନା । ତୋଫା ଗହମ ରଙ୍ଗର ଚେହେରା । ବିନା ଗେଞ୍ଜିରେ ପାତଳ ମଲମଲ କନାର ଫତେଇ ଭିତରୁ ତା' ଦେହର ବର୍ଣ୍ଣ ଫୁଟି ଦିଶୁଥିବା ସେ ରୂପ ସ୍ଥିର ଚିତ୍ର ପରି ମୋ ସ୍ମୃତିରେ ସଞ୍ଚରି ରହିଛି ।

ସେ ତା'ର କିଛି ଦିନ ପରେ ଚାଲିଗଲା । ବାପା ମା, ସେ ଖୁସମୁସି ଭଉଣୀ, ସମସ୍ତେ ଚାଲିଗଲେ । ଚାଲିଗଲେ ଯେ ଚାଲିଗଲେ କାହିଁ କେତେ ବର୍ଷ ! ମୁଁ ଚିଠି ଲେଖିଛି ଅନେକ । ସବୁ ଚିରି ପକେଇଚି । 'ମନ୍ନୁ' ମୋ ପାଖକୁ ଆଦୌ ଚିଠି ଦେଇ ନାହିଁ । ସେ ବି ବୋଧେ ସେମିତି ଲେଖି ଚିରିଥିବ । କେଜାଣି ! ମୁଁ ଆଉ ତାକୁ ପଚାରି ପାରିନାହିଁ ।

ସେ ହିଁ ପ୍ରଥମେ ବିଭା ହେଲା, ମୁଁ ନୁହେଁ । ମୁଁ ମୋ ଦପ୍ତରରେ ତା' ନିମନ୍ତ୍ରଣ ପତ୍ର ପାଇଲି । ଛପା କାର୍ଡ ତଳକୁ ଛୋଟ ଛୋଟ ଅକ୍ଷରରେ ଲେଖାଥିଲା 'ମନ୍ନୁ' । ମୁଁ ହସି ପକେଇଥିଲି । ମୋ ପାଖରେ ମିଷ୍ଟର ରେଡ୍‌ଡି ବସିଥିଲେ । ପଚାରିଲେ, "କ'ଣ ଭୁଲ ଛପା ହେଇଯାଇଛି କି ?" ମୁଁ କହିଥିଲି, 'ନା' ! ବିଚିତ୍ର କଥା ମୁଁ ବୋଧେ ସାମାନ୍ୟ ଚିଡି ଯାଇଥିଲି । କାହିଁକି କେଜାଣି ! ମନ୍ନୁର ସ୍ତ୍ରୀକୁ ଦେଖିବାକୁ ମୋର ଖୁବ୍ ଇଚ୍ଛା ହୋଇଥିଲା । ନିମନ୍ତ୍ରଣ କାର୍ଡଟିକୁ ମୁଁ ବାରମ୍ବାର ଦେଖୁଥିଲି ।

କେମିତି କେମିତି ଲାଗୁଥିଲା ସମଗ୍ର ଜିନିଷଟା ।

ମୁଁ ସେ ବିଭାଘରକୁ ଯାଇ ପାରିଥାନ୍ତି – ଗଲିନାହିଁ । ଚିଠି ଲେଖି ପାରିଥାନ୍ତି – ଲେଖିଲି ନାହିଁ । ଦେଖା ହୋଇଗଲେ ନିମନ୍ତ୍ରଣ ପାଇନାହିଁ ବୋଲି ମିଛ କହି ଦେବାକୁ ମଧ୍ୟ ସ୍ଥିର କରିନେଲି । ଖୁବ୍ କିନ୍ତୁ ଇଚ୍ଛା ହେଉଥାଏ ସେ ଝିଅଟିକୁ ଦେଖିବାକୁ, ଯାହାକୁ ମନ୍ନୁ ବିଭାହେଲା ।

ପ୍ରାୟ ଗୋଟାଏ ଜିଦ୍‌ରେ ମୁଁ ମଧ ବିଭା ହୋଇଗଲି ସେଇ ବର୍ଷ । ତାକୁ ସେମିତି କାର୍ଡ ପଠାଇ ଦେଲି । ତଳେ ଲେଖିଲି 'ରମେ' । ସେ ବି ଆସିଲା ନାହିଁ କି ଚିଠି ଦେଲାନାହିଁ । ସବୁ ସତ୍ତ୍ୱେ ମୁଁ ତାକୁ ଭୁଲି ପାରୁନଥିଲି । ରୂପବତୀ, ଗୁଣବତୀ ନାରୀଟିଏ ସ୍ତ୍ରୀରୂପେ ମୋତେ ଆବୃତ କରି ରଖିଥିଲା । ମୋର ଭିତର ବାହାର ଟିକିନିଖି ସବୁ ଅଧିକାର କରୁଥିଲା । ତେବେ ବି କୋଉ ଟିକିଏ ଫାଙ୍କ ବାଟେ 'ମନ୍ନୁ' ଚାଲିଆସୁଥିଲା ମୋ ସାମ୍ନାକୁ । କିଛି ସମୟ ପାଇଁ ସେ ଦୋତାଲା କୋଠା, ସବୁଜ ରଙ୍ଗର ଝର୍କା, ଲନ୍, ଆଲ୍‌ସେସିଆନ୍, ସଅପ ଉପରେ ବସି ଆଲ୍‌ଜେବ୍ରା କଷିବା ପୁଣି ଥରେ ଅଭିନୀତ ହୋଇଯାଉଥିଲା । ମୋର ଅନ୍ୟମନସ୍କତା ପାଇଁ ମୁଁ ମୋ ସ୍ତ୍ରୀ 'ମନୋରମା'କୁ କୈଫିୟତ୍ ଦେଇ ପାରୁ ନଥିଲି । ସେ କ'ଣ କେମିତି ଟିକେ ବୁଝିଗଲା ଭଳି ଅଳ୍ପ ହସି ଦେଉଥିଲା ।

ଚାକିରିରେ ମୁଁ ଚାଲିଗଲି ଗୁଣୁପୁର । କିଏ ଜଣେ ଆସି ମୋତେ କହୁ କହୁ କହିଲା ଯେ ମନୋରଞ୍ଜନ ଶତପଥୀ ରାଉରକେଲାରେ କାମ କରୁଛି । କି କାମ କରୁଚି ମନ୍ନୁ! ହଁ, ସେମିତି ଗୋଟାଏ କ'ଣ କରୁଥିବ । ଗୁଣୁପୁରରେ ଫଳ ପରିବା, ସରୁ ଚାଉଳ, ଘିଅ ମହୁରେ ଆମେ ବୁଡି ରହିଥାଉ । 'ରାଜୁ'କୁ ସାତ ବର୍ଷ । 'ଲିନା'କୁ ତିନ୍ । ସବୁ ଗଛରେ ଫୁଲ ବୋଝେଇ ହୋଇଥାଏ । ସବୁ ଡାଳରେ ମହୁ । ବିଭୋର ଭାବ ଆଚ୍ଛନ୍ନ କରି ରଖିଥାଏ । ସରୁଅଣ୍ଟାରେ କଳସି କାଖେଇ ଘେରାଏ ଅଳସରେ ବୁଲି ପଡିଲା ପରି ପାରି ହୋଇଯାଉଥାଏ ପ୍ରତିଟି ବର୍ଷ । ସମ୍ଭୋଗର ବର୍ଷଗୁଡିଏ । ଖୁବ୍ ନରମ, ଚିକ୍‌କଣ, ମିଠା ମିଠା ସପ୍ନରେ ବୋଝେଇ ହୋଇଥିବା ନୀରବ ପାଲଟଣା ଡଙ୍ଗା ଗୁଡିଏ !!

ଦିନେ ପତ୍ରିକା ପଢିଲା ବେଳେ ଆଖିରେ ପଡିଲା ଅଫିସରଙ୍କ ବିଦେଶ ଗସ୍ତ । ସେ ସମୟରେ ବିଦେଶ ଯିବା ଆଜିକାଲି ଭଳି ସହଜ ନଥିଲା । ମୁଁ ଆଗ୍ରହରେ ନାଁ ପଢି ଦେଇ ଚମକିପଡିଲି । ମନୋରଞ୍ଜନ ଶତପଥୀ! ଖବରକାଗଜରେ ଫଟୋ ବାହାରିଥିଲା । ପ୍ରାୟ ଅଚିହ୍ନା ମୁହଁଟିଏ । ପୁଚୁକା ଗାଲ । ଗହଳ ନିଶ । ଓସାର କପାଳ । ମୋଟା ବେକ । ସୁଟ୍ ପିନ୍ଧା କେହି ଜଣେ । ସେ କ'ଣ 'ମନ୍ନୁ' ? ମୁଁ ମୋ ସ୍ତ୍ରୀକୁ ନେଇ ଦେଖାଇଲି । ସେ ଥରେ ଚାହିଁଦେଇ ମୋତେ ମୁରୁକି ମାରି ପଚାରିଲେ, "ଏଇ ତୁମ ସାଙ୍ଗ ?" ମୁଁ ଆଉ କିଛି ସମୟ ସେ ମୁହଁକୁ ଚାହିଁଲା ପରେ ପଚାରିଲି, "ତୁମ ମନକୁ ପାଉଛି ନା ନାହିଁ ?"

ସେ ଫିକ୍ କିନା ହସିଦେଇ ଚାଲିଗଲେ । ମୋତେ ଲାଗିଲା ସେ ଖୁବ୍ ପସନ୍ଦ କଲେ ନା କ'ଣ! ଏଇଟାକୁ ସେ କ'ଣ ପସନ୍ଦ କଲେ ? ଏଇଟା ଗୋଟାଏ ମଣିଷ ? ୟା' ସାଙ୍ଗେ 'ମନ୍ନୁର' ସମ୍ପର୍କ କ'ଣ ? ଏ ତ ଶଳା ପେଟୁଆ ଗାଲମାଧବ !

ମୁଁ ଅନେକ ଦିନ ଯାଏ ସେ ଫଟୋକୁ ରଖି ଚାହିଁରହୁଥିଲି । ଖବରଟାକୁ ପୁଣି ପଢି ଦିନେ ଦିନେ ଖୁସି ହେଇଯାଉଥିଲି । ଆଉ ବେଳେ ଚିଡ୍ ଚିଡ୍ ହେଉଥିଲି । ଏଇଟା ପରା ମୋଠୁ ଆଲଜେବ୍ରା ଶିଖୁଥିଲା ? ଯା'ର ପରା ଇତିହାସ ଜନ୍ମା ମନେ ରହୁ ନଥିଲା ? ତେବେ ଭାରି କପାଳିଆ ଶଳା ହାରାମି ! ତାକୁ ମୌକା ମିଳିଗଲା । ହଉ, ଯାଉ !

ମୁଁ କହିପାରିବି ନାହିଁ ମୁଁ ସେତେବେଳେ 'ମନ୍ନୁ'କୁ ଈର୍ଷା କରୁଥିଲି ନା ନାହିଁ । ସେ ମୋଠୁ ବଳି କ'ଣ ନାଇଁ କ'ଣ ହେଇ ଗଲାଣି । ତାକୁ କ'ଣ ଆଉ ଆଗଭଳି ଭାବିଲେ ଚଳିବ ? ସେ ଭଲା ମତେ ମନେ ରଖିଥିବ ଏ ଯାଏଁ ? ମତେ ଦେଖିଲେ ଚିହ୍ନିବ ତ ?

ଖୁବ୍ ପିଲାବେଳେ ମୋତେ ଥଟ୍ଟାରେ କିଏ ସବୁ ପଚାରୁଥିଲେ, "କିରେ, ତୁ କାହାକୁ ବିଭା ହବୁ ?" ମୁଁ କିଛି ନବୁଝି ଅତି ସ୍ପଷ୍ଟ କରୁଥିଲି, "ମୁଁ ଭାଇନାକୁ ବିଭା ହେବି !" ଭାଇନା ମତେ କାଖଉଥିଲା । ଗଛରୁ ପିଜୁଳି ତୋଳି ଦଉଥିଲା । ସ୍କୁଲରେ ପାଠ ପଢିଲା ବେଳେ ମଧ ମତେ ଯଦି କିଏ ସେଇଭଳି ପଚାରିଥାନ୍ତା, ମୁଁ କିଛି ନବୁଝି କହିଥାନ୍ତି, "ମୁଁ 'ମନ୍ନୁ'କୁ ବିଭା ହେବି !" ଶୁଣିବା ଲୋକେ ନିଶ୍ଚୟ ଠୋ ଠୋ ହସିଥାନ୍ତେ । ମୁଁ ନିର୍ଲ୍ଲଜ ଭଳି ପାଟି ନେଫେଡେଇଥାନ୍ତି । କିନ୍ତୁ ଭାବିଥାନ୍ତି ଯେ ମୁଁ ଯାହା କହିଛି ଠିକ୍ ତ କହିଛି ! 'ମନ୍ନୁ' ଭଳି ମୋର ଆଉ ଏତେ ଆପଣାର କିଏ ଥିଲା କି ?

ସେ ବିଦେଶରୁ ଫେରିଲା । ଅନେକ ସମ୍ବର୍ଦ୍ଧନା ସଭା ହେଲା । ସବୁ ପତ୍ରିକାରେ ଫଟୋ ବାହାରିଲା । ତା' ସ୍ତ୍ରୀ ଆଉ ଦି'ଟି ଝିଅଙ୍କ ଫଟୋ ମଧ ବାହାରିଥିଲା । ସ୍ତ୍ରୀଟି ସେମିତି ଚୋପା ଜଣା ପଡୁନଥିଲା, ହେଲେ ଗଢଣ ଭଲ ଥିବ ପରା ! ତାକୁ ଦେଖିବାକୁ ବହୁ କାଳ ପରେ ପୁଣି ଇଚ୍ଛା ହେଇଥିଲା । ଝିଅ ଯୋଡିକ ଗୋରୀ ଗୋରୀ, ଏଣ୍ଡୁରିମୁହିଁ ! ଆଚ୍ଛା 'ମନ୍ନୁ'ର ପୁଅ ହେଲେ ନାହିଁ କାହିଁକି ?

ମନ୍ନୁ ଆସିଲା ଭୁବନେଶ୍ୱର । ଆମେ ଚାଲିଗଲୁ ସୁନ୍ଦରଗଡ । ରାଜୁ ଦିଲ୍ଲୀରୁ ପାଠ ପଢି ଫେରିଲା । ତା'ର ବି ଫଟୋ ବାହାରିଲା ପତ୍ରିକାରେ । ସେ – ସମସ୍ତଙ୍କୁ ଟପିଗଲା ପରୀକ୍ଷାରେ । ସ୍ୱର୍ଣ୍ଣପଦକ ପାଇଲା । ତା'ର ଇଚ୍ଛା ସେ ଆଇ.ଏ.ଏସ. ହେବ । ସେଥିପାଇଁ ପଢାପଢି କରିବାକୁ ପୁଣି ଦିଲ୍ଲୀ ଫେରିଯିବ । ନୂଆ ବର୍ଷା ପଡୁଥାଏ । ସେଦିନ ମେଘ ଚେକି ରଖିଥାଏ ସୁନ୍ଦରଗଡର ପାହାଡକୁ ଆଚ୍ଛନ୍ନ କରି । ଆମ ଘର ଆଗରେ ଖଣ୍ଡେ ଫିଆଟ୍ ଆସି ରହିଲା । ଖାଲି ଗାଡି । ଡ୍ରାଇଭର ପଦାକୁ ଆସି ପଚାରିଲା, "ଏଇଟା ରମେଶଚନ୍ଦ୍ର ଦ୍ୱିବେଦୀଙ୍କ ଘର ?"

"ହଁ ! କାହିଁକି ?"

"ଆଜ୍ଞା ନମସ୍କାର ! ଆପଣଙ୍କୁ ସାଏବ୍ ଡକେଇଛନ୍ତି । ସେକ୍ରେଟେରୀ ସାଏବ୍ । ମନୋରଞ୍ଜନ ଶତପଥୀ !"

"କିଏ ?"

"ମନୋରଞ୍ଜନ ଶତପଥୀ । ଆପଣଙ୍କୁ ନେବାପାଇଁ ଏ ଗାଡି ପଠେଇଛନ୍ତି !"

ମୁଁ ଅଳ୍ପ ହସିଲି । ଓ, ତା'ହେଲେ ମନ୍ନୁ ଭୁଲି ପାରି ନାହିଁ ! ଖବର ରଖିଛି । କିନ୍ତୁ ଡକେଇଲା

କାହିଁକି ? ସେ ନିଜେ ଆସିପାରିଥାନ୍ତା । ବୋଧହୁଏ ବଡ ଅଫିସର ଏଠିକି ଆସିବାକୁ ସଂକୋଚ କଲା ବା ଏତେ ଦିନ ପରେ ହଠାତ୍ ଆସି ପହଞ୍ଚିବାକୁ ଲାଜେଇଲା କିମ୍ବା ମୋ ସ୍ତ୍ରୀକୁ ଦେଖିବାକୁ ଲାଜେଇଲା ।

ମୁଁ ଅଳ୍ପ ହସି ଦେଇ କହିଲି, "ହଉ ଯିବା ।"

ଡାକବଙ୍ଗଳାରେ କିଛି ଗୀତ ଶୁଭୁଥିଲା । ମେଘ ଡାକୁଥିଲା ଆକାଶରେ । ସନ୍ଧ୍ୟାଟା ଖୁବ୍ ପୁରୁଣା, କାହିଁ ତିରିଶ ବର୍ଷ ତଳର ଭଳି ଅନୁଭବ ହଉଥିଲା ।

ଗାଲିଚ୍ଚ । ଗାଲିଚ୍ଚ ଉପରେ ସୋଫା । ସୋଫା ଉପରେ ସେ କିଏ ? 'ମନ୍ନୁ' ? ପାତଳ ମଲମଲ କନାର ଫତେଇ ଭେଦି ତା'ର ସାଏବି ରଙ୍ଗ ଫୁଟି ଦିଶୁଥିଲା । ଧଳା ଧୋତିର ଲୁଙ୍ଗିଟିଏ ପିନ୍ଧି ସେ ବସିଥିଲା । ଆଖିରେ ଚଷମା । ପୁଚ୍‌କା ଗାଲ । ଫଟୋ ସାଙ୍ଗରେ ଠିକ୍ ମିଶିଯାଉଥିଲା । ତେବେ...

ସେ ମୋତେ ଦେଖି ଧଡପଡ ଉଠି ଠିଆହେଇଗଲା "ଆବେ, ରମେ, ତୁଟା ଏମିତି କ'ଣ ବୁଡା ଦିଶିଲୁଣି ବେ ଶଳା ?"

ମୁଁ ହତବତେଇ ଗଲି । 'ମନ୍ନୁ' ମତେ ଏମିତି ଶଳାମଳା କରି ଡାକିବାର ମୋର ଆଦୌ ମନେନାହିଁ । ମୁଁ ବରଂ ତାକୁ ତୁ ତା' କରୁଥିଲି । ସେ ମତେ ତମେ ତମେ କରୁଥିଲା ପ୍ରଥମ କିଛି ଦିନ । ମୁଁ କାବା ହେଇ ଚହିଁ ରହିଥିଲାବେଳେ ସେ ଆସି ମୋତେ କୁଣ୍ଢେଇ ପକାଇଲା । ସେ ମୋଠୁ ବେଶ୍ ଚରିପାଞ୍ଚଇଞ୍ଚ ଉଞ୍ଚ । ଛ'ଫୁଟ ପାଖାପାଖି । ଚଉଡା ଛାତି । ବେଶ୍ ସୁନ୍ଦର ନିଶ । ଗୋରା ତକତକ ବେକ, ଗାଲ, ଡେଣା । ଗୋଟାଏ ନିଃଶ୍ୱାସ ବିଳମ୍ବରେ ମୁଁ ବି ତାକୁ ଭିଡି ଧରିଲି । ଅଣ୍ଟା ପାଖ ଏତେ ମୋଟା ? ଧେତ୍‌ତେରି, ମନ୍ନୁଟା ଏମିତି ମାଢୁଆଳି କ'ଣ ହେଇଗଲା ମ !

ଆମେ ବୋଧେ ପ୍ରୟୋଜନରୁ କିଛି ଅଧିକ ସମୟ ପରସ୍ପରକୁ ଭିଡିଧରି ଠିଆହେଇ ରହିଲୁ । ତା'ପରେ ସେ ମୋତେ କୋଳେଇ ନେଇ ସୋଫା ଉପରେ ବସେଇ ଦେଲା । ଅଣ୍ଟା ପାଖରେ ବାହୁ ବେଢେଇ ଦେହକୁ ଦେହ ଲାଗି ବସିଲା । ତା' ହାତ ବୁଲିଆସି ମୋ କୋଳରେ ଦରଫୁଟା ପଦ୍ମଟିଏ ପରି ଦେଖାଗଲା ।

ଗୋଟାଏ ଖାନସାମା ଆସି ଆଗରେ ଠିଆହେଲା ।

"ଆବ୍‌ବେ କ'ଣ ଖାଇବୁ, ବରାଦ୍ କର୍ !" କ'ଣ ଭାବି ଗୁଡାଏ ହସିଲା । ମୁଁ ଅପ୍ରସ୍ତୁତ ହେଲାଭଳି କହିଲି – "ଖାଇବି ? କ'ଣ ? କାହିଁକି ?"

"ଆବ୍‌ବେ ଲାଜଉଚୁ କ'ଣ ? ଏତେ ଦିନ ପରେ ଦେଖା ହେଇଚୁ ! ଏକାଠି ଆଜି ରାତିଟା ଖିଆପିଆ ହଉ ।" ମୋ ଅଣ୍ଟା ପାଖରେ ଆଙ୍ଗୁଠି ମାରିନେଇ ଆସ୍ତେ କହିଲା, "ନା ମୁଢି ପକୁଡି ଖାଇବାକୁ ମନ କରୁଚୁ ?" ପୁଣି ହୋ ହୋ ହେଇ ଗୁଡାଏ ହସିଲା ।

ମୁଁ ବି ଫେଁ କିନା ହସିଦେଲି ।

ତାପରେ ସେ ଖାନ୍‌ସାମାକୁ ଗୋଟାଏ ଲମ୍ବା ବରାଦ୍ କରିଗଲା । ମୁଁ ସେଥିକୁ ଅଧେ ବୁଝି

ପାରିଲି ନାହିଁ । ଶେଷକୁ ଦୁଇଟା ଗ୍ଲାସ୍ ପଠେଇବାକୁ କହିଲା ।

ମୁଁ ପ୍ରଥମେ କିଛି କହିଲି ନାହିଁ । କିନ୍ତୁ 'ମନ୍ନୁ' ଯେତେବେଳେ ସୁଦୃଶ୍ୟ ବୋତଲଟିଏ କାଢି ଟେବୁଲ ଉପରେ ଥୋଇଲା ମୁଁ ଆଗରୁ ସତର୍କ କରି ଦେବାକୁ କହିଲି, "ମୁଁ ନିଶା ଖାଏ ନାହିଁ ।"

"ଆବ୍‌ବେ ନିଶା କ'ଣ ? ଜିନିଷଟା ଏଇ ଟଟକା ଆସିଛି ବିଦେଶରୁ । ଯା'ର ଚମକ୍ କେମିତି ଥରେ ଚଖ୍, ତା'ପରେ କହିବୁ ! ବେହେରା, ଗ୍ଲାସ୍ ଆଣିଲୁ !"

'ହାଁ ସାବ୍' କହି ସେ ଦୁଇଟା ଗ୍ଲାସ୍ ଆଣି ଥୋଇଦେଇଗଲା ।

"ମୁଁ ପିଏ ନାହିଁ ।"

ସେ ଗବ୍ ଗବ୍ ଗୁଡାଏ ହସିଲା । "ପିଏ ନାହିଁ କ'ଣ, ତା'ହେଲେ  ଖାଲି ଖାଏ ? ଆବ୍‌ବେ ସାପ ବେଙ୍ଗ, ଗଣ୍ଡା ଗୟଳ ସମସ୍ତେ ପିଅନ୍ତି – ତୁ କ'ଣ କହୁଚୁ ପିଏ ନାହିଁ !"

ସେ ଠିପି ଫିଟେଇ ଢାଳିନେଲା । ମୁଁ ବୁଝେଇଲା ପରି କହିଲି, "ଦେଖ୍ 'ମନ୍ନୁ', ତୁ ତୋର ପି ! ମୋର ସେଥିରେ କୌଣସି ଅସୁବିଧା ନାହିଁ । ମୁଁ କିନ୍ତୁ ଆଦୌ ପିଏ ନାହିଁ । ତୁ କଥାଟାକୁ ଟିକିଏ ବୁଝିବାକୁ ଚେଷ୍ଟା କର । ମୁଁ ତ ଆଉ ଏ ବୟସରେ ନୂଆ ଅଭ୍ୟାସଟାଏ କରି ପାରିବି ନାହିଁ ।"

"ତୁ ଗୋଟେ ଏକନମ୍ବର ଇଡିଅଟ୍ ! ଛାଡ୍, ତୋ ସାଙ୍ଗେ ଯୁକ୍ତି କରି ଲାଭ ନାହିଁ ।"

ଏତିକିବେଳେ ଜଣେ ଭଦ୍ରମହିଳା ପଶି ଆସିଲେ । ପୋଷାକ ପରିଚ୍ଛଦ, ସାଜସଜ୍ଜାରୁ ଜଣାଗଲେ ଖୁବ୍ ରଇସ୍ ଖାନଦାନୀ । ମୁଁ ହତବତେଇ ଗଲି । ଭାବିଲି ହୁଏତ ମନ୍ନୁ ସପରିବାର ଆସିଥାଇପାରେ ।

ନ କହିଥିଲେ ଚଳିଥାନ୍ତା – କିନ୍ତୁ ମୁଁ ବେକୁବ୍ ଭଳି କହିଲି, "ଆରେ ମନ୍ନୁ, ତୁ ପରିବାର ନେଇ ଆସିଛୁ ବୋଲି ତ ମତେ କହିନାହୁଁ ? ଆଜ୍ଞା ନମସ୍ତେ, ମୋ ନାଁ ରମେଶ ଦ୍ୱିବେଦୀ, ମୁଁ ମନ୍ନୁର ମାନେ ମିଷ୍ଟର ଶତପଥୀଙ୍କର ପିଲାଦିନ ସାଙ୍ଗ !"

ସେ ମହିଳା ଜଣକ କିଛି ନକହି ମୋତେ ବିଚିତ୍ର ଢଙ୍ଗରେ ଚାହିଁ ରହିଲେ । ସେତିକିବେଳେ ମୋର ହୋସ୍ ଆସିଲା । ଖବରକାଗଜର ଫଟୋ ମନେ ପଡିଗଲା । ଭୁଲ ବୁଝିବାରେ ଆଉ ବାକି ରହିଲା ନାହିଁ ।

ମୁଁ ମୁଣ୍ଡ ତଳକୁ କରିନେଲି – ନୀରବ ଅପେକ୍ଷା କଲି ଦଣ୍ଡବିଧାନକୁ । କେତେ ବେକୁବ୍ କାମ ନକଲି ସତେ ! କିନ୍ତୁ ମୋତେ କେବଳ ଗବ ଗବ ହସ ଶୁଭିଲା । ମନ୍ନୁ ସୋଫାରେ ଆଉଜି ପଡି ଉପରକୁ ମୁହଁ କରି ହସୁଥିଲା । ସେ ମହିଳା ଜଣକ ପାହୁଣ୍ଡ ଜମେଇ ଆସ୍ତେ ପରଦା ଆଡେଇ ଚାଲିଯାଉଥିଲେ ।

"ଆବ୍‌ବେ ମଫ ! ତତେ ଏ ଜଣକ ମୋ ସ୍ତ୍ରୀ ଭଳି ଦେଖାଗଲା ? ତତେ ଆଉ କ'ଣ କହିବି, ତୁ ତ ଯୋଉଠି ଥିଲୁ ସେଇଠି ରହିଗଲୁ ! ଏ ହଉଚି ମିସ୍ ସୁଷମା ଦାସ ! ମୋର ଜଣେ ଫ୍ରେଣ୍ଡ୍ ! ଡାକବଙ୍ଗଳାରେ ଏକୁଟିଆ ବସି କ'ଣ କରିବି ବୋଲି ତାକୁ ଡିନର ପାଇଁ ନିମନ୍ତ୍ରଣ କରିଛି ।"

ମୁଁ ତଥାପି ଆଖିରେ ଆଖିଏ ପ୍ରଶ୍ନ ନେଇ ମନ୍ନୁକୁ ଚାହିଁଲି । ସେ ମୋତେ ସିଧା ଅନେଇ

କହିଲା, "ଏ କିଏ ବୋଲି ପଚାରୁଚୁ ତ ? ତୁ ଶଳା ମାଇ ନା ଅଣିରା ବେ ? ଏତକ ବୁଝିପାରୁ ନାହୁଁ ?"

ମୁଁ ପୁଣି ମୋର ଆଖି କାନକୁ ବିଶ୍ୱାସ କରିପାରୁ ନଥିଲି ଯେ ସେଭଳି କଥା କ'ଣ ସତେ ମନ୍ନୁ ଶତପଥୀ, ମୋତେ ମାନେ ରମେ ଦ୍ୱିବେଦୀକୁ କହି ପାରିଲା ? ଆଶ୍ଚର୍ଯ୍ୟ !

ମୁଁ ହଠାତ୍ ସେଇଠୁ ଉଠି ଚାଲିଯିବାକୁ ଇଚ୍ଛା କଲି । କେଜାଣି କାହିଁକି ଉଠି ପାରିଲି ନାହିଁ । ମୋ ଭିତରେ କ'ଣ ସବୁ ସାଙ୍କୁଡି ଯାଉଥିବାର ମୁଁ ଅନୁଭବ କଲି ଏବଂ ମନ୍ନୁକୁ କାବା ହେଲାପରି ଅନେଇ ରହିଲି । ଏଇ ତା'ହେଲେ ମନ୍ନୁ, ଏଇ ବଡ ଅଫିସର । ଏଇ ତା'ହେଲେ ଏଇଆ !

ଆଖି ମିଟିକା ମାରି ଚାହିଁଲା ବେଳକୁ ମନ୍ନୁ ସାମ୍ନା ବଡ ସୋଫାରେ ବସିଥାଏ । ଗୋଡ ଲମ୍ବେଇ ଦେଇଥାଏ ଟେବୁଲ ଉପରକୁ । ଗୋଟାଏ ହାତରେ ଗ୍ଲାସ, ଅନ୍ୟ ହାତରେ ସିଗ୍ରେଟଟିଏ ଧରି ସେ ବି ସ୍ଥିର ଚିତ୍ର ପରି ଅନେଇ ରହିଥାଏ; ବୋଧହୁଏ ଅତୀତକୁ, କୌଣସି ଅପସାରିତ ସତ୍ୟକୁ ।

ତା ମୁହଁ ହାତ କେତେ ଗୋରା ! ତା' ପାପୁଲି, ପାଦ ତଳିପା ପଦ୍ମପାଖୁଡା ପରି କେତେ ଲାଲ ! ତା' ବେକ ଗାଲ କେତେ ଚିକ୍‌କଣ ! ମନ୍ନୁଟା ସତେ ନାରୀ ହେବା ଉଚିତ ନଥିଲା କି ?

"ଆରେ ରମେ, ଏ ସୋଫାକୁ ଆ ! ତୋ ସାଙ୍ଗେ କଥା ଅଛି ।" ସେ ଗ୍ଲାସ ଥୋଇ ଗୋଡ ଲୋଟେଇ ନେଲା । ସିଗ୍ରେଟଟା ମଧ ଲିଭେଇ ଦେଲା ଆସ୍‌ଟ୍ରେ ଭିତରେ ।

ମୁଁ ଚାହୁଁ ନଥିଲି ଉଠିବା ପାଇଁ । ଚାହୁଁ ନଥିଲି ତା' ପାଖରେ ବସିବା ପାଇଁ । ଚାହୁଁ ନଥିଲି ସେଇଠି ଆଉ ରହିବା ପାଇଁ । କିନ୍ତୁ ତା' ଇଙ୍ଗିତରେ ତାକୁ ଚାହିଁ ରହି ମୁଁ ଯାଇ ତା' ପାଖରେ ବସିଲି । ସେ ମୋ କାନ୍ଧରେ ହାତ ରଖି ମୋତେ ଚାହିଁ ଅଳ୍ପ ହସିଲା ।

"କ'ଣ ଖୁବ୍ ଚିଡି ଯାଇଚୁ ନା କ'ଣ ?" ତା' ପାଟିରୁ ମୃଦୁ ମହୁଆ ବାସ୍ନା ବାହାରୁଥିଲା । ମୁହଁରେ ଫଗୁ ବୁଣି ହୋଇଯାଉଥିଲା କଥା କଥାକେ ।

"ଶୁଣ ରମେ, ଡିନର ଖାଇସାରି ଏତେରାତିରେ ଆଉ କ'ଣ ଫେରୁଥିବୁ ! ଆଜି ରାତିକ ଏଇଠି ରହିଯାଉନାହୁଁ !"

ମନା କରିବାକୁ ମୁଁ କେତେ କଡା ଉତ୍ତର ଦେବି ବୋଲି ଭାବି ଭାବି ଆଉ କିଛି ପାରିଲି ନାହିଁ । ଅନେକ ବିଳମ୍ବରେ ଯାହା କହିଲି, ତା' ମୁଁ କହିବାକୁ ଆଦୌ ଚାହିଁନଥିଲି । କହିଲି, "ଆଚ୍ଛା ଡିନର୍ ସରୁ ଦେଖିବା । ମୁଁ ସେଥିପାଇଁ ପ୍ରସ୍ତୁତ ହେଇ ଆସିନାହିଁ ।"

"ଆରେ ପ୍ରସ୍ତୁତ କ'ଣ ହବୁ । ତୁ କ'ଣ ତୋ କଲିଜାଟା ଛାଡି ଆସିଛୁ କି ଘରେ ?"

ପୁଣି ଯାହା ଚାହୁଁ ନଥିଲି ତାହା କହି ହେଇଗଲା । "ଲୁଗାପଟା ଆଣିନାହିଁ ପରା ।"

ସେ ଖେଁ ଖେଁ ହସିଲା । "ଶଳା ମଫ ! ଏଠି କ'ଣ ପାଲଟିବାକୁ ଲୁଗା ମିଳିବ ନାଇଁ ତତେ । ମୁଁ କ'ଣ ତତେ ଏଠି ଲଙ୍ଗଳା କରି ଶୁଆଇବି ବୋଲି ଭାବିଚୁ ?"

ମୋ ଗୋଡ ହାତ ଠକ୍ ଠକ୍ ଥରିଲା । ଶୀତେଇ ଗଲା ତାଳୁରୁ ତଳିପା ଯାଏଁ । ସେ କହି

ଚାଲିଥାଏ – "ଆଜିକ ରହିଯା, ଅନେକ କଥା ଅଛି ।"

ନାଲାଏକ କାହାଁକା, ତିରିଶ ବର୍ଷ ପରେ ଏମିତି କ'ଣ କଥା କହୁଚି ସେ ? ମୋର କେଜାଣି କାହିଁକି ମନେହେଲା ଯେ ମନୁ ବୋଧେ ଯାହା ଥିଲା ତାହା ଅଛି । ତା'ର କୌଣସି ପରିବର୍ତ୍ତନ ହୋଇନାହିଁ ।

ସେ ତା' ବାଁହାତରେ ମୋ ବାଁହାତକୁ ଧରି ସାମାନ୍ୟ ଗେଲ କଲାଭଳି ପାଖକୁ ଟାଣିନେଲା । ତା'ପରେ କହିଲା, "ଦେଖ୍ ରମେ, ଆଜି ଏସବୁ ଦେଖି ତୁ ଯାହା ଭାବୁଚୁ, ମୁଁ ତାହା ନୁହେଁ । ମୋର ତୋ ପାଖରେ ପ୍ରକୃତରେ ଭାରି ସିରିଅସ୍ କାମ ଅଛି ।"

ସେ ମୋଠୁ ଛଡେଇ ହେଇ ଆଉ ଖଣ୍ଡେ ସିଗ୍ରେଟ୍ ଲଗେଇଲା । ଦି'କଳ ଧୂଆଁ ଛାଡି ଅଚାନକ କହିଲା –

"ଭାବିଥିଲି ତୋ ଘରକୁ ଯାଇ କଥାଟା କହିବି । ମୋ ସ୍ତ୍ରୀକୁ ନେଇ ତୋ ଘରକୁ ଆସିବି । କଥା କ'ଣ କି ମୋ ଝିଅ ମୁନ୍ନି ପାଇଁ ତୋ ପୁଅ ରାଜାର ବିବାହ ପ୍ରସ୍ତାବ ବିଷୟରେ ତୋର ମତ କ'ଣ ?"

ମୁଁ କଥାଟାକୁ ବୁଝୁ ବୁଝୁ ହୁସ୍ କିନା ତିରିଶ ବର୍ଷ ପାରି କରି ମୋତେ ଏ କୂଳରେ କିଏ ଆଣି କଚାଡି ଦେଲା । ମୋର ହୋସ୍ ଫେରି ଆସିଲା । ମୁଁ ମଟମଟ ଚାରିଆଡକୁ ଅନେଇଲି । ମୋ ବୁକୁ ଦାଉଁ ଦାଉଁ ପଡୁଥିଲା । ମୁଁ ଏଥିପାଇଁ ଆଦୌ ପ୍ରସ୍ତୁତ ନଥିଲି ତ ! ମୁଁ କେବଳ ଗୋଟାଏ ଅତି ପରିଚିତ ବାସ୍ନା – ସମୁଦ୍ରରେ ହାଲୁକା କିଛି ସମୟ ଆସି ରହିବାକୁ ଚାହୁଁଥିଲି ହୁଏତ । ମୁଁ ଆଶା କରିନଥିଲି ହଠାତ୍ ଏମିତି ହାଉଁକିନା ସ୍ପଷ୍ଟ ଆଲୁଅରେ ଏ କୂଳର ବାଲିବନ୍ତ ହାବୁଡିଯିବ ।

ମୋ କାନ ପାଖରେ କେହି ଜଣେ ଅନୁନୟ କରୁଥିଲା – "ଖୁବ୍ ଗୋରା ଝିଅ । ବାପ ଭଳି ଚେହେରା । ଗୀତ ଗାଏ । ଚିତ୍ର କରେ । ତା' ହାତ ବାଜିଗଲେ ଘର ସୁନ୍ଦର ଦିଶେ । ଚାଲିଗଲେ ଭୂଇଁ ସୁନ୍ଦର ଦିଶେ । ଡାକ ନାଁ ମୁନ୍ନି । ଭଲ ନାଁ ଶୋଭା ।"

ମନୁର ଝିଅ । ମନୁଭଳି ହୋଇଥିବ । ଡାକ ନାଁ ମୁନ୍ନି !

ତାକୁ 'ରମେ'ର ପୁଅ ରାଜା ହିଁ ତ ବିଭା ହେବା ଉଚିତ୍ !

ଏତିକିବେଳେ ମିସ୍ ସୁଷମା ଦାସ ଆସି ସାମ୍ନା ସୋଫାରେ ବସିଗଲେ । ବାସ୍ନା ଚହଟିଗଲା ଘର ସାରା ।

ମୁଁ ଚଟ୍ କିନା ଠିଆହୋଇ ପଡିଲି । ଦୁଆର ଆଡକୁ ଚାରି ପାହୁଣ୍ଡ ଯାଇ ପକେଟ୍‌ରେ ହାତ ରଖି ବୁଲି ଚାହିଁଲି ଏବଂ ଯାହା ଚାହୁଁଥିଲି କହିଲି, "ମୁଁ ଆସୁଚି !" ଏବଂ ମୁହଁ ଫେରେଇ ଚାଲିଗଲି । କବାଟ ପାଖରେ ଶୁଭିଲା – ଆରେ, ରମେ କିଛି କହିଲୁ ନାହିଁ ଯେ ! ଆବ୍‌ବେ ଡିନର ନଖାଇ କୁଆଡେ ଚାଲିଯାଉଚୁ ?

ମୁଁ ଏକମୁହାଁ ଚାଲିଆସିଲି ସେ ପ୍ରତ୍ୟାଖ୍ୟାତ ଭୂମିରୁ ।



# ରାତି ପାହିଲେ ଅନ୍ୟକଥା

ପୂଜା ପର୍ବ ଆଉ କିଛିଦିନ ଆଗରୁ ଥାଏ । ତଥାପି ସଞ୍ଜବେଳକୁ ଆମ୍ବୁଲିଆ ଶୀତ ପଡିଆସିଥାଏ । ମୁଁ ରାତି ପାଇଁ ପ୍ରସ୍ତୁତ ହୋଇ ବସ୍‌ରେ ଉଠିଲି । ବାକ୍‌ସ, ବେଗ୍, ପାଣି ବୋତଲ, ପବନ ତକିଆ । ବାହାରେ ଖଣ୍ଡେ ହାଲୁକା ଶାଲ୍ – କାଳେ ଶୀତ କରିପାରେ; ଝରକା ପାଖେ ପବନ ଲାଗିପାରେ !

ଗାଡିର ସବୁ କାଚ ଝରକା ନିବୁଜ୍ ବନ୍ଦ ରହିଥାଏ । ତିନି ଯୋଡା ଉଜ୍ଜ୍ୱଳ ଆଲୁଅ ଜଳୁଥାଏ ଧପ୍ ଧପ୍ । ବାକ୍‌ସପତ୍ର ବୁହାବୋହି ! ପ୍ରତିଟି ଯାତ୍ରୀ ପାଖରେ ଜଣେ ଦି'ଜଣ ଛାଡିବା ଲୋକ । ତାଙ୍କ ତୁଣ୍ଡରେ ସେଇ ସେଇ କଥା – "ଟିକେଟ୍ ଯତ୍ନରେ ରଖିଚ ନା ନାହିଁ...ବେଗ୍‌ରେ ପାଣି ଅଛି...ରାତିରେ ସତର୍କ ରହିଥିବ ।" ପାଟି ତୁଣ୍ଡ ନ ହେଲେ ବି ବେଶ୍ ଗହଳି । କଥାବାର୍ତ୍ତା ।

ତା'ପରେ ଧଡାସକିନା କବାଟ ବନ୍ଦକରି ଡ୍ରାଇଭର ଗାଡିରେ ଷ୍ଟାର୍ଟ ଦେଲା । ଜୀଇଁ ଉଠିଲା କାଚବାଡ, ଲୁହା ଉଦର, ଫୋମ୍ ଗଦି । ଥର ଥର କମ୍ପିଲା, ଜୀଅନ୍ତା ଘୋଡା ପରି । ଛାଡି ଆସିଥିବା ଲୋକେ ସମସ୍ତେ ଓହ୍ଲେଇ ଗଲେ । ମୁଁ ବାହାରକୁ ଚାହିଁରହିଲି । ମୋତେ ଛାଡିବାକୁ କେହି ହେଲେ ଆସି ନଥିଲେ । କିଏ ବା ଆସିଥାନ୍ତା ? ମୁଁ ନିଜେ ଛାତି ପକେଟ୍‌ରେ ହାତମାରି, ବେଗ୍‌କୁ ଅଳ୍ପ ନିଜ ଆଡକୁ ଘୁଞ୍ଚାଇ ଆଣି, ଉପର ଥାକରେ ଥୁଆ ହୋଇଥିବା ସୁଟ୍‌କେସ୍‌ଟିକୁ ଦେଖି ନେଲି ଏବଂ ଘଣ୍ଟାକୁ ଚାହିଁଲି । ଠିକ୍ ଆଠଟା ତିରିଶ୍ । ଗାଡି ତା'ହେଲେ ଠିକ୍ ସମୟରେ ଛାଡିଦେବ !

କିନ୍ତୁ ମୋ ପାଖ ସିଟ୍‌ଟା ସେତେବେଳଯାଏଁ ଖାଲି ପଡିଥାଏ । କିଏ ସେ ବେପରୁଆ ଦାୟିତ୍ୱହୀନ ଯାତ୍ରୀ – ତା' ପାଇଁ ଏତେ ଲୋକ କ'ଣ ଅପେକ୍ଷା କରି ବସି ରହିବେ ? ମୁଁ ଅନ୍ୟ କାରଣରୁ ମନେ ମନେ ଏକ ପ୍ରକାର ଖୁସି ବି ହେଉଥିଲି । କିଛି ନ ହେଲେ ଟ'ଟିକିଏ ଗୋଡ ହାତ ଖୋଲି ଫର୍ଚ୍ଚା ହେଇ ବସିହେବ । ମୁଁ ତଳୁ ମୋ ବେଗ୍ ଖଣ୍ଡିକ ନେଇ ପ୍ରାୟ ସେ ସିଟ୍‌ଟି ଉପରେ ରଖୁଥିଲି, ଜଣେ ଚଢି ଆସିଲେ । ବୟସ ଅନ୍ଦାଜ୍ ମୋରି ପାଖପାଖି । ଢଙ୍ଗ ବି ପ୍ରାୟ ସେଇଭଳି ନା' କ'ଣ ! ସେ ସିଧା ଆସି ସିଟ୍ ପଛପଟୁ ନମ୍ବର ଦେଖି ନେଲେ ଏବଂ ଏକ ପ୍ରକାର କୁଡେଇ ହେଲାପରି ବସି ଗଲେ; ଠିକ୍ ମୋରି ଭଳି । ତାଙ୍କର କିଛି ଜିନିଷପତ୍ର ନଥିଲା, କିନ୍ତୁ ମୋର ମନେହେଲା ସେ ମୋ ବାକ୍‌ସ ଏବଂ ବେଗ୍‌ଟିକୁ ନିଜ ସମ୍ପତ୍ତି ତଦାରଖ କରୁଥିବା ଢଙ୍ଗରେ ଚାହିଁ

ନେଲେ ।

ମତେ ପ୍ରଥମରୁ ହିଁ ଗୋଟିଏ କଥା ଆଶ୍ଚର୍ଯ୍ୟ ଲାଗିଲା । ସେ ଲୋକଟିକୁ କେହି ଚାହୁଁ ନଥିଲେ । କଣ୍ଡକ୍ଟର ସୁଦ୍ଧା ନୁହେଁ । ତାକୁ କେହି କିଛି ପଚାରିଲେ ନାହିଁ । ସେ ବି କାହାକୁ ଚାହୁଁ ନଥିଲା । ମୋତେ ବି ନୁହେଁ । ଭାରି ଦେଖେଇ ହଉଚି ଭାବିଲି ମୁଁ । ଲାଇଟ୍ ଚଟ୍‌କିନା ଲିଭିଗଲା ବେଳକୁ ମୁଁ ଚମକିଲା ପରି ଦେଖିଲି ଯେ ସେ ଅବିକଳ, ମୋରି ପେଣ୍ଟ ସାର୍ଟ ଏବଂ ସେଟର୍ ପିନ୍ଧିଛି । ଅବିକଳ ସେଇ ରଙ୍ଗ । ଆଶ୍ଚର୍ଯ୍ୟ !

ଅନ୍ଧାର ହେଇଗଲା ବସ୍ ଭିତର । ଗାଡି ନିରୋଳା ରାସ୍ତା ଧରି ଜୋର୍ ଚାଲିବା ଆରମ୍ଭ କରିଦେଲା ।

...ନାଃ, ମୁଁ ତାକୁ ଜମା ଆଗରୁ କୋଉଠି ଦେଖି ନଥିଲି । ଆଚ୍ଛା, ପଚାରିଦେଲେ କ୍ଷତି କ'ଣ ? ଆମେ ତ' ପୁଣି ରାତି ସାରା ଏକା ଡାଳରେ ଦୁଇଟି ପକ୍ଷୀ । ପରସ୍ପର ଦେହକୁ ଦେହ ଘଷି ହେବ । ନିଶ୍ୱାସ ଶୁଭିବ । ମନେ ମନେ ଜଣେ ଜଣେ ଜଣକ ବିନାଶ ଇଚ୍ଛା କରୁଥିବୁ; ଅଥଚ ବସି ରହିଥିବୁ ଲାଗି ଲାଗି । ଏଣୁ କେତୋଟି ସାଧାରଣ ନିରୀହ ପ୍ରଶ୍ନ ପଚାରିଦେଲେ କ୍ଷତି କ'ଣ ? – ଯଥା 'କେତେ ବାଟ ଯିବେ ?' ..."ସେଇଠି କ'ଣ କାମ ଅଛି ଆପଣଙ୍କର ?" ..."ଆପଣ ଏଇଠି କ'ଣ କରନ୍ତି ?" ଇତ୍ୟାଦି । ସେଥିରୁ ଯଦି କିଛି ଜାଣି ହେଇଗଲା ଭଲ । କିନ୍ତୁ ଏ ଯେମିତି ରାହୁଆ ଦେଖାଯାଉଛି – ମୁଁ ବି କୁଆଡେ ସେମିତି ଦିଶେ – ହୁଏତ' ଚୁପ୍ କରିଦେବ ଗୋଟିଏ ଜବାବ୍‌ରେ, "ଆପଣଙ୍କର ସେଥିରେ କ'ଣ ଥାଏ ? ଚୁପ୍‌ଚାପ୍ ବସନ୍ତୁ ।" ...ହୁଁଃ, ଏମିତି କହି ଦବ ! – କାଇଁ, ମୁଁ ତ କହି ପାରନ୍ତି ନାହିଁ । ହୁଏତ ଯେ କେହି ଜେରା କଲେ ମୁଁ ସହି ପାରେ ନାହିଁ, ବିରକ୍ତ ହୁଏ । କିନ୍ତୁ ତା' ବୋଲି ତା' ସହିତ ଅଭଦ୍ର ବ୍ୟବହାର କରିବାର ଅର୍ଥ କ'ଣ ?

ପଚାରି ଦେବି, ନା ସେ ପଚାରିବା ଯାଏଁ ଅପେକ୍ଷା କରିବି ? ପଚାରିଦେଲେ ଅନ୍ତତଃ ଧାପେ ଇଜ୍ଜତ୍ ଚାଲିଯିବ । ଜଣାଯିବ ଯେ ସେ ଜଣକ ଖୁବ୍ ବିଶିଷ୍ଟ ଗୋଟାଏ କେହି, ଯାହା ବିଷୟରେ ଜାଣିବାକୁ ମୁଁ ବିକଳ । ତା' ତୁଣ୍ଡରୁ ଉତ୍ତର ଶୁଣିଦେଲେ କୃତାର୍ଥ ହୋଇଯିବି । ମୋଟ ଉପରେ ମୁଁ ନିଜ ଦାନ୍ତ ନେଫେଡି ତାକୁ ପରିଚୟ ପଚାରିବାଦ୍ୱାରା ତା' ଆଗରେ ନଇଁ ପଶିଲା ପରି ଲାଗିବ । କାଇଁ, ସେ ତ' ମତେ ଖାତିର୍ କରୁନାହିଁ । ମୋ ବିଷୟରେ କିଛି ହେଲେ ଜାଣିବାକୁ ଚାହୁଁ ନାହିଁ । ଆଳାପକରିବାକୁ ହୁଏତ' ତା' ଇଜ୍ଜତ୍ ତାକୁ ବାଧା ଦେଉଛି ।

ମୁଁ ବା କାହିଁକି ମୋ ଇଜ୍ଜତ୍ ନଜଗିବି ? ଫଳରେ ଆମେ ଦୁହେଁ ପାଖାପାଖି ବସି ରହିଲୁ । ଦେହକୁ ଦେହ ବାଜିଲା । ଖୁସ୍‌ଖାସ୍ ହେଲୁ । ଆଖି ବୁଜି ଶୋଇବାକୁ ଚେଷ୍ଟା କଲୁ – କିନ୍ତୁ ପାଟି ଫିଟେଇଲୁ ନାହିଁ । ତା'ହେଲେ ମୋ ଭଳି ତା'ର ବି ଭାରି ଗର୍ବ । ହେଲା ! ଦେଖାଯାଉ ! ସେ ଯଦି କଥା ନ କହୁଛି, ମୁଁ ବା କାହିଁକି କହିବାକୁ ଯିବି ଯେ ! କ'ଣ ହେଇଯାଉଛି, ଦୁଇଟି ମୁଗ ବସ୍ତାପରି ପାଖେ ପାଖେ ଆମେ ଥାକମାରି ରହିଲେ ?

ପ୍ରାୟ ପଇଁଚାଳିଶ ମିନିଟ୍ ପରେ ଗାଡି ରହିଲା । ଛୋଟିଆ ଗାଁଟିଏ । ପେଟ୍ରୋମେକ୍ସ

ଜାଳି ଯୋଡିଏ ପାନ ଦୋକାନୀ ଆଉ ଜଣେ ଚା'ବାଲା ଏ ଯାତ୍ରୀବାହୀ ବସ୍‌କୁ ଅପେକ୍ଷା କରିଥିଲେ । କ'ଣ ଦୁଇ-ତିନିଟଙ୍କା ମୋଟ ବିକ୍ରି ହେଇଥିବ !

ଦି'ଟା ଚା'ମଗେଇ ତାକୁ ଗୋଟେ ଯାଚିବି କି ? ଧୁତ୍, ଅପାତ୍ରରେ ଦାନ ଦେଇ ଲାଭ କ'ଣ ? ବେକୁବ୍ ମୁଗ୍‌ଗାମୁହାଁ କାହାଁକା । ଯାବତ୍‌ଚନ୍ଦ୍ରାର୍କେ ମୁଁ ତା' ମୁହଁକୁ ଚାହିଁବି ନାହିଁ କି ଚା ଯାଚିବି ନାହିଁ । ରାତି ସାରା ସେଥିପାଇଁ ଚା ନପିଇ କଟିଯାଇପାରେ, ସେଥିକୁ ଚିନ୍ତା ନାହିଁ । ବୀରରସରେ ଏଣିକି ଆଉ କିଛି ହେଲେ ମିଶି ପାରିବ ନାହିଁ । ଖାଲି ବାକି ରହିଲା ବେଳ ପଡିଲେ ତା' ହାତ ବାଜୁ ବାଜୁ ତାକୁ କହୁଣିରେ ଖୋବି ଦେଇଯିବା ଏବଂ ସେ ହୁଙ୍କାରିଲେ, ଆହୁରି ପ୍ରବଳ ହୁଙ୍କାର କରି ତାକୁ ମାଡିବସିବା ।

ଗାଡି ଛାଡିଦେଲା । ଅଭଦ୍ର କାହିଁକା ! ଗୋଟାଏ ଚା ବା ଖଣ୍ଡେ ପାନ ଯାଚିଲା ନାହିଁ । ନିଜେ ବି ନେଲା ନାହିଁ । ଲୋଭୀ ଶଳା ! ଠିକ୍ ଅଛି ! ମୁଁ କି ଘୁଞ୍ଚେ ! ମୋତେ ସେ କ'ଣ କରି ପାଇଚି କି ? ମୁଁ ପରା ଲୋକା ଷଡଙ୍ଗୀ ପୁଅ, ଦୀନା ଷଡଙ୍ଗୀ; ଓରେଫ୍ ବ୍ରହ୍ମବୈବର୍ତ୍ତ ପୁରାଣ; ଓରେଫ୍ ବୃହତ୍ ସଂସ୍କୃତ ବ୍ୟାକରଣ; ଓରେଫ୍ ମହା ଜଟିଳ ଭଗ୍ନାଂଶ !! ଦେବି ଡେଢି ଯେ ଶଳା ୟାଦ ରଖିଥିବ !

ଦଶଟା ପାଖାପାଖି ମୋର ଶୋଇଯିବା କଥା ! କିନ୍ତୁ ଘୋଡା ପିଠିରେ କିଏ କେବେ ଶୋଇଚି ନା' କ'ଣ ! ତଥାପି ପଂଝେ ଘୁଙ୍ଗୁଡି ମାରିବାର ଶୁଣାଗଲା । ମୁଁ ଉପକ୍ରମ କଲି ଆଖି ବୁଜି ହାଇମାରିବାକୁ । ପ୍ରତିଥର ମୋ ପାଖରୁ ହିଁ ସେ 'ହାଇ'ଟିକୁ ବାଟ ମାରଣା କରି ନେଉଥିଲା । ମୁଁ ରାଗିବାରୁ ଆଣ୍ଠୁଗଣ୍ଠି ଘୋଳି ହେଲା । ଆଖି ଜଳିଲା । ଭାରି ଅସୁସ୍ଥ ଲାଗିଲା । ମୁଁ ଖାଲି ଏକଡ ସେକଡ ଲେଉଟାଇ, ଚେଷ୍ଟା କଲି ହାଇଟିଏ ମାରିବାକୁ – ହେଲାନାହିଁ । ମନ ସ୍ଥିର କରିବାକୁ ଇଷ୍ଟମନ୍ତ୍ର ଜପକଲି – ହେଲା ନାହିଁ ।

ସେ ବି ଶୋଇ ପାରୁ ନଥିଲା । ହାଇ ମାରି ଦେଲେ କ'ଣ ନିଦ ହେଇଯିବ ? ଠିକ୍ ହେଇଛି ହାରାମିକୁ । କଣ୍ଟାନିଦ ହଉଥିବ, ଭାଙ୍ଗୁଥିବ । ସେଥିରେ ତା' ସ୍ନାୟୁ ପଟାପଟ୍ ଛିଣ୍ଡୁଥିବ । ସେ ଚିର୍‌ଚିରେଇ ଉଠିବ । ମୋ ଅବସ୍ଥା ବରଂ ଢେର୍ ଭଲ । ମୋତେ ମୂଳରୁ ହାଇ ମାଡୁନଥିଲା । ଅଜବ୍ ନାଲାଏକ ପାଲରେ ପଡିଗଲା ମଣିଷ । ଅନ୍ୟ ସିଟରୁ ଆସ୍ତେ ଚୁପ୍‌ଚାପ୍ ଗୁଞ୍ଜରଣ ଶୁଭୁଥିଲା । ସାମାଜିକ ମଣିଷମାନେ ବସିଥିବାର ସୂଚନା ! କିମ୍ବା ଯୋଡି ଘୁଙ୍ଗୁଡି ଶୁଭୁଥିଲା – ବେଶ୍ ନିଶ୍ଚିନ୍ତ ଶୋଇଯାଇ ପାରୁଥିବା ନିରୀହ ଖର୍‌ଗୋସ୍‌ମାନେ ବୋଧେ ସେଥିରେ ବସିଥିଲେ । କିନ୍ତୁ ଏଇଟା ଗୋଟାଏ କିଏ ? ୟା'ର କ'ଣ ପରିବାର ଥିବ ? ମୋରିଭଳି । ତା' ହେଲେ ତ' ଝିଅ ବିଭା ହେଇସାରିବଣି । ତା' ନାତିକୁ କ'ଣ ପାଞ୍ଚବର୍ଷ ହେଇ ସାରିବଣି ? ତା'ର ସାନ ଝିଅଟି କ'ଣ ଆମ ପିଙ୍କି ଭଳି ଅପାରଗ ? ଗୋଟିଏ ଗୋଡ ପୋଲିଓରେ ନିତାନ୍ତ ସରୁ ? ମୁହଁଟି ସୁନ୍ଦର । ସାସ୍ଥ୍ୟ, ଉଚ୍ଚତା, ପାଠ, ଆଚରଣ କୋଉଥିଲେ ଖୁଣିଦେଲା ଭଳି ଝିଅ ସେ ନୁହେଁ ! ସେ ବି କ'ଣ ଅଧାପିକା ହୋଇ ଅଭିଆଡି ରହିବାକୁ ମନସ୍ଥ କରିଛି ?

ମୁଁ ଆସ୍ତେ ବୁଡ଼ିଗଲି ଗହୀରକୁ । ଘରକଥା ଦିଶିଲା ଚିତ୍ରପଟ ପରି । ସ୍ତ୍ରୀଙ୍କ କଥା ମନେପଡ଼ିଲା । ତାଙ୍କୁ ନେଇ ଆଉରି ଗହୀରକୁ ବୁଡ଼ିଗଲା ମନ । କାହିଁ କେଉଁ କାଳ କଥା; ଯେତେବେଳେ ଏ ପିଲାଏ କେହି ହୋଇ ନଥିଲେ । ନାନାଜାତି ଫୁଲ, ଜାତି ଜାତି ପକ୍ଷୀ, ମନୋରମ ପୃଥିବୀ । ଉଲ୍ଲସିତ ପୁଲକିତ ଜୀବନ । ଦୁଆର ମୁହଁରେ ମଧୁମାଳତୀ । ଝର୍କା ପାଖରେ ରଜନୀଗନ୍ଧା । ତା'ରି ଭିତରେ ଏ ହାରାମି ବସ୍‌ଯାତ୍ରୀ କେମିତି ଗଳି ପଶି ଯାଇଚି !! – ତାକୁ ମୁଁ ଧରିବା ପୂର୍ବରୁ ସେ ଘରଭିତରେ ପଶି ଭିତରୁ କବାଟ ପକେଇ ଦେଇଛି !...ସେ ଭିତରୁ ମୋ ପତ୍ନୀର ଚିତ୍କାର ଶୁଭୁଚି । ତା'ପରେ କିନ୍ତୁ ସବୁ ସ୍ତବଧ ହୋଇ ଯାଇଛି । ଏ ବୋଧେ ନାରୀକୁ କାବୁ କରିବା କୌଶଳ ଜାଣିଚି । ହେଇପାରେ ସେ ଦୁହେଁ ଚରମ ସମ୍ଭୋଗରେ ମାତିଛନ୍ତି । ମୁଁ କବାଟରେ କଷି କରି ଗୋଟାଏ ଲାତ ବସେଇ ଦେଲି ।

ସାମ୍ନା ସିଟର ଲୁହା ଦଣ୍ଡା ଉପରେ ଲାତଟା ବସିଗଲା । ମୁଁ ଆଖି ମେଲି ମଟମଟ ଚାହିଁଦେଲି । ବସ ଗୋଟାଏ ରାସ୍ତା କଡ ଗାଁ ମୁଣ୍ଡେ ଠିଆହେଇଥିଲା । ମୋ ପାଖ ସିଟ୍ ଖାଲି ପଡିଥିଲା । ଝରକା ବାଟେ ଦେଖିଲି ଯେ ମୋ ସହଯାତ୍ରୀ ଗୋଟାଏ ଦୋକାନ ଆଗରେ ଠିଆହୋଇ ଚା ପିଉଚି !...ତାକୁ ଲୋକେ ବେଢ଼ି ଯାଇ ବାଡଉ ନାହାନ୍ତି କାହିଁକି ? ସେ ଜଣେ ଭଦ୍ରଲୋକ ଘରେ ପଶି ଜବରଦସ୍ତ ଏମିତି ଅପକର୍ମ କରି ଖସି ଆସିଚି ବୋଲି କ'ଣ ସେମାନେ ଜାଣନ୍ତି ନାହିଁ ? ମୁଁ ଓହ୍ଲେଇ ଯାଇ ଏଇନା ପାଟି କରିଦେଲେ ନିସ୍ତୁକ ମାଡଟାଏ ହେଇଯାନ୍ତା !...ଆବେ ଯାଃ; ଛାଡିଦେଲି । ମାଡ ମାରି ପାରିଥାନ୍ତି, ମାରିଲି ନାହିଁ; ଯେମିତି ତୁ ସେଭଳି ମାଡଖିଆ କାମଟାଏ କରି ପାରନ୍ତୁ, କଲୁ ନାହିଁ । – କିନ୍ତୁ ତତେ ସେଥିପାଇଁ ମୁଁ ବିଶ୍ୱାସ କରି ପାରିବି ନାହିଁ । ତୁ ଘୋର ଦଗାବାଜ୍‌ଟାଏ ହେଇପାରୁ । ତତେ ଦେଖିଲେ ହିଁ ତୁ ଦୁଷ୍ମନ୍ ଭଳି ଦିଶୁଚୁ – ମୁଁ କ'ଣ କରିବି !

ଡ୍ରାଇଭର ଗାଡିରେ ଷ୍ଟାର୍ଟ ଦେଲା । ଅନ୍ୟମାନେ ପଶି ଆସିଲେ । ସେ କିନ୍ତୁ ଚା'ଟାକୁ ନସାରି ଅବଶିଷ୍ଟ ଫିଙ୍ଗି ଦେଲା ଏବଂ ପଇସା ଦେଇ ଚାଲି ଆସୁଥିଲା । ଜଣେ କିଏ ସେଇ ଚା ଦୋକାନରୁ ଦୌଡି ଆସି ତା' ହାତକୁ ଛୋଟ ପାକେଟ୍‌ଟିଏ ବଢେଇ ଦେଲା । ଟଙ୍କେ ପଚିଶ ପଇସିଆ ବିସ୍କୁଟ୍ ହେଇଥିବ । ଲୋକଟା ତା'ହେଲେ ନଖାଇ ବସ୍‌ରେ ଚଢି ଆସିଚି । ଘରେ କ'ଣ ତାକୁ କେହି କିଛି ଖାଇବାକୁ ଦେଇନାହାନ୍ତି ? କ'ଣ କରୁଛନ୍ତି ଏତେ ଲୋକ ଥାଉ ?

...କୋଉ ଲୋକ ?...ତା ଘର କେଉଁଠି ? ସେ କିଏ ? ତା' ଘରେ ଆଉ କିଏ ଅଛନ୍ତି ନା ନାହିଁ ?

ଯା' ମ ! ଏ ସବୁ ଜାଣି ମୋର ଲାଭ କ'ଣ ?

ସେ ଆସି ସେମିତି କୁଢେଇ ହେଲା ପରି ବସିଲା । ପାକେଟ୍‌ଟା ହାତରେ ଧରିଥାଏ । ଫିଟେଇ ଖାଉନାହିଁ କାହିଁକି ? ଆଉ କ'ଣ ରାତି ପାହିଲେ ଖାଇବ ? ମୋତେ ଗୋଟେ ଦି'ଟା ଦେବାକୁ ପଡିପାରେ ବୋଲି ବୋଧେ ଖୋଲୁ ନାହିଁ ! ଲୋଭା କାହାଁକା !!

ମୁଁ ଝରକା ଆଡକୁ ଅଣେଇ ହେଇ ବସିଲି । ଆଖି ବୁଜିଲି । ଇଷ୍ଟ ଜପିଲି ଏବଂ ଚେଷ୍ଟା

କଲି ଟିକିଏ ଶୋଇଯିବାକୁ । ସେତେବେଳକୁ ମଥାବିନ୍ଧା ଆରମ୍ଭ ହୋଇଯାଇଥିଲା । ମୋ ପିଠି ପଟେ ଗୋଟାଏ ବୋଝ ଓହଳିଲା ପରି ଅସସ୍ତିକର ଅନୁଭବ ହେଉଥାଏ । ଆଚ୍ଛା ସତେ ସେ ଲୋକଟା ଉପରେ ମାଡ ହେଲାନାହିଁ କାହିଁକି ? ଏଇ ଚିନ୍ତାରେ ମୋ ମୁଣ୍ଡ ଆହୁରି ଟଣକିଲା ଏବଂ ମୁଁ ପୁଣି କଡ ଲେଉଟାଇ ସାମନାକୁ ଚାହିଁ ବସିଲି ।

କିଛି ସମୟପରେ ନିଶ୍ଚିନ୍ତ ବାଲୁତମାନେ ବସ୍ ଦୋଳିରେ ଦୋହଲି ଦୋହଲି ଘୁଙ୍ଗୁଡି ମାରିଲେ । ମୋର ପଡୋଶୀ ମୋରି ଭଳି ଖୁସ୍‌ଖାସ୍ ହେଉଥିଲା । କିନ୍ତୁ ତା'ର ବି ଗର୍ଉ କମ୍ ନୁହେଁ । ମୋତେ ପାଟି ଫିଟେଇ ପଦେ କହୁ ନଥିଲା । ...ମୁଁ ବି ତାକୁ ଖାତିର୍ କରିନଥିଲି । ଏମିତି ଜିଦାଜିଦିରେ ତ' କେତେଲୋକ ମୋ ପାଖରେ ନଇଁ ଯାଇଛନ୍ତି । ...ଜଣେ କିନ୍ତୁ ଆଦୌ ନଇଁଲା ନାହିଁ । ଜୀବନ ସାରା ଆମେ ଦୁହେଁ ସେଥିପାଇଁ ବହୁ ଅବସୋସ୍ ଏବଂ ଦୁଃଖ ଭୋଗ କରିଛୁ । ଅପର୍ଣ୍ଣା ଗନ୍ତାୟତ୍ ଚାହିଁଥିଲା ମୁଁ ଆଗ ତାକୁ ନାଁ ଧରି ଡାକିଥାନ୍ତି । ମୁଁ ଚାହିଁଥିଲି ସେ ମୋତେ ଆଗ କଥା କହିଥାନ୍ତା । ବହୁଦିନ ଧରି ଆମେ ଆଉଟି ହେଉଚୁ । ପରସ୍ପରକୁ ଅପେକ୍ଷା କରିଚୁ । ଭେଟ ହେଇଗଲେ ମୁହଁ ରଙ୍ଗା କରି ଚାହିଁଚୁ । ମଝିର ବ୍ୟବଧାନ ସ୍ୱଚ୍ଛ କାଚ ପରି ଗୋଟାଏ ରହସ୍ୟରେ ଆମକୁ ପୃଥକ କରିଛି । ଏଇ ସାମାନ୍ୟ ଗର୍ଉ ପାଇଁ ଦୁହେଁ ନୀରବ ରହିଛୁ । ଚିଠି ସୁଦ୍ଧା ଲେଖୁନାହୁଁ । କାହା ଆଗରେ ଦୁଃଖ ବଖାଣି ନାହୁଁ । ମୋତେ ଆସି ପରଶ ପାଖେଇଲା । ତାକୁ ବି ସେଇଆ । ସେ ବି ମୋ ପରି ଘରସଂସାର କରି ଏଇ ସହରରେ ଅଛି । ସୁଖରେ ଅଛି । ସ୍ୱାମୀ ଇଂଜିନିୟର । ଏବେ ବଜାର ହାଟରେ ଦେଖା ହେଇଗଲେ ତିରିଶ ବର୍ଷ ପୁରୁଣା କ୍ଷୋଭର ଅଙ୍ଗାର ଦହକି ଉଠେ । ଏବେ ମଧ ଆମେ କଥା କହିନାହୁଁ । ଦମ୍ଭୀ, ଦର୍ପୀ, ଅଭିମାନୀ ଯୋଡାକ ଯାକ । ଏମିତି ନୀରବରେ ପରସ୍ପରକୁ ଚାହିଁ ଚାହିଁ ଏ ସଂସାରରୁ ବିଦାୟ ନେଇଯିବୁ...ଛାଡ...

ଖୁବ୍ ଲମ୍ବା ଦୀର୍ଘଶ୍ୱାସଟାଏ ଭରିଗଲା ବୁକୁ ଭିତରେ ଏବଂ ରାତିର କାକର ପବନରେ ବାହାରି ଚାଲିଗଲା ରାସ୍ତା କଡର ଘଞ୍ଚ ଅରଣ୍ୟକୁ ।

X        X        X        X

ହୁଁଃ...ଆଉ ଏଇ ପେଟା, ଭୋଟା, ଆକୁଳିଆ, ନାଲାଏକ ଭାବିଚି ମୁଁ ତାକୁ ପ୍ରଥମେ ସମ୍ଭାଷିବି !! ହେଃ...

ମୁଁ ଘୋର ଅବଜ୍ଞାରେ ତା' ଆଡକୁ ପୁଣିଥରେ ପିଠି ବୁଲେଇ ଦେଲି । ସେ କିନ୍ତୁ ନିର୍ବିକାର ଖିରାଖିଆ କୁମ୍ଭୀର ପରି ଗୋଡକୁ ବସ୍ ମଝିଯାଏ ଲମ୍ବେଇ ଦେଇ ପଡିଥାଏ । କାହିଁକି କେଜାଣି ମୋତେ ବେଳୁ ବେଳ ଅନୁଭବ ହେଉଥାଏ ଯେ ସେ ବି ଗୋଟାଏ ଅପର୍ଣ୍ଣ ଗନ୍ତାୟତ୍‌କୁ ପ୍ରେମ କରିଛି ଏବଂ ସେହି ଗର୍ଉପାଇଁ କଥା ନକହି ଦୁଃଖ ଭୋଗୁଛି । ଛୋଟୀ ଝିଅକୁ ନେଇ ଏକୁଟିଆ କଇଁ କଇଁ କାନ୍ଦିଛି । ସେ ଠିକ୍ ମୋରି ପରି ଦେଖିବାକୁ । ମୋରି ଆଚରଣ, ମୋରି କର୍ମ, ମୋରି ଭାଗ୍ୟ ନେଇ ଏ ମଣିଷଟି ଆସି ମୋରି ପାଖରେ ବସିଚି ।

ସେ ସତରେ ମୁଁ ନୁହେଁତ' ! ମୁଁ ଆଖି ମେଲେଇ ଅନ୍ଧାର ଭିତରେ ଫିକ୍ କିନା ହସିଦେଲି ।

ସେତିକିବେଳେ ଚାହିଁଥିଲେ ମୁଁ ତା' କାନ୍ଧ ଉପରେ ହାତ ଥୋଇ ଦେଇଥାନ୍ତି । ତାକୁ ଭିଡିଆଣି ତା' ଗୁଡ଼ିଆ ଗାଲରେ ବୋକ ଦେଇଥାନ୍ତି । ସେତିକିବେଳେ ଡ୍ରାଇଭର ଭେ ପୁ ବଜେଇବା ଆରମ୍ଭ କରିଦେଲା । ଗୋଟାଏ ନିଦୁଆ ବଳଦଗାଡି ରାସ୍ତା ମଝିରୁ ଜମା ଘୁଞ୍ଚୁ ନଥାଏ । ସେ ଶବ୍ଦରେ ମୋ ବ୍ରହ୍ମ ଚିଡିଗଲା ।

ରାସ୍ତା କଡରେ ଲାଇଟ ଖୁଣ୍ଟ, ଆଉ ଗୋଟିଏ ଦି'ଟି କୋଠା ଦେଖାଗଲା । ତା'ହେଲେ ମଧ୍ୟବର୍ତ୍ତୀ ସହର ବୋଧେ ଆସିଗଲା । ଆଉ ତେଣିକି ଅଧେ ବାଟ ରହିଲା ।

ରାତି ସେତେବେଳକୁ ଅନ୍ଦାଜ୍ ଦୁଇଟା । ବସ୍‌ଷ୍ଟାଣ୍ଡ, ରାସ୍ତାଘାଟ ସବୁ ଶୂନ୍‌ଶାନ୍ । ସେ ଲୋକଟି ଚଟ୍‌କିନା ଝରକାବାଟେ ଅନେଇ ଦେଇ ଗୋଟିଏ ସେକେଣ୍ଡରେ ଦୁଆର ପାଖକୁ ଚାଲିଗଲା । ଗାଡି ଧିମେଇବାରୁ ସେ ଓହ୍ଲେଇଗଲା । ଧଡାସ୍ କିନା କବାଟ ପଡିବାରୁ କଣ୍ଡକ୍ଟର ଅନେଇଲା । କିଛି ବୁଝିପାରିଲା ନାହିଁ ହୁଏତ' । କିନ୍ତୁ ମୁଁ ବୁଝିପାରୁ ନଥିଲି ସେ ଲୋକଟା କାହିଁକି ଏତେ ବ୍ୟସ୍ତହୋଇ ଓହ୍ଲେଇ ଗଲା । ଏମିତି କାହିଁକି ସେ କଲା ? ମୁଁ ତ' କରି ନଥାନ୍ତି ।

ମୁଁ ଦେଖିଲି ଯେ ବସ୍‌ଷ୍ଟାଣ୍ଡର ଗୋଟିଏ କୋଣକୁ ଖଣ୍ଡେ ଜିପ ଅଳ୍ପ ଆଲୁଅରେ ଠିଆ ରହିଥିଲା । ତା' ପାଖକୁ ଲାଗି ପ୍ରାୟ ଆଠ ଦଶଜଣ ଖାକି ପିନ୍ଧା ଲୋକ ବାରିହେଉଥିଲେ । ଷ୍ଟାଣ୍ଡ ଭିତରକୁ ଆସିବା ପୂର୍ବରୁ ମୋଡ ପାଖରେ ମୋ ସହଯାତ୍ରୀ ଓହ୍ଲେଇ ଯାଇଥିଲା କାହିଁକି ?...ତାକୁ ବୋଧେ ଅତି ତରବର ପରିସ୍ତା ମାଡିଥିବ । ବସ୍ ରହିବାରୁ ମୁଁ ମୋଡିଭିଡି ହେଲି । ସେଠି ଓହ୍ଲେଇବା ଲୋକ ବାକ୍‌ସପତ୍ର ଧରି ଡାକ-ହାକ ହେଲେ । ମୁଁ ଉଠିବା ଉପକ୍ରମ କରୁଛି, ଏତିକିବେଳେ ଚାରିଟା ଖାକିପିନ୍ଧା ପଶିଆସିଲେ । ବସ୍ ଚାରିପଟେ ଆଉ ଆଠଜଣ ଘେରିଗଲେ ।

ଜଣେ ବସ୍ ଭିତରେ କହିଲା, "ଦୟାକରି କେହି କାହା ଜାଗାରୁ ଘୁଞ୍ଚିବେ ନାହିଁ । ବସ୍‌ର ସବୁ ଜିନିଷ ଯାଞ୍ଚହେବ ।"

ଧୁତ୍‌ତେରି । ଗଲା ଏଇଠି ଘଣ୍ଟାଏ ଭାବି ମୁଁ ଗୋଡ ଲମ୍ବେଇ ଆଖି ବନ୍ଦ କଲି । ଯାହା କରିବା କରନ୍ତୁ ୟା'ପେ । ମାଗିଲେ ଜିନିଷ ଦେଖେଇ ଦବା । ମୋ ସହଯାତ୍ରୀଟା ଶଳା ଭାରି କପାଳିଆ । ତା'ର ତ' ଜିନିଷ କହିଲେ ସେଇ ପିନ୍ଧିଥିବା ଲୁଗା ଦି'ଖଣ୍ଡ, ଆଉ ବୋଧେ ସେଇ ବିସ୍କୁଟ୍ ପ୍ୟାକେଟ୍ । ସେଇଟା ବି ଆଉ କ'ଣ ଥିବ ? ସେ ତାକୁ ଖାଇସାରିବଣି ନା !

"ଆଜ୍ଞା, ଏ ବେଗ୍‌ଟା ଆପଣଙ୍କର ?"

ମୁଁ ଆଖି ନ ଫିଟେଇ ଉତ୍ତର ଦେଲି, "ହଁ ।"

"ଏଇଟା ଖୋଲାଅଛି, ଆମେ ଯାଞ୍ଚ କରୁଚୁ ।"

"କରୁନା, ଯାହା ତୁମ ନିୟମ ଅନୁସାରେ କରିବା କଥା କରିଯାଅ ।" ସେ ବେଗ୍ ଭିତର ଦେଖୁ ଦେଖୁ ଗୋଟାଏ ଚିତ୍କାର କରି କହିଲା – "ହେଇଟି !"

ସମସ୍ତେ ଚମକି ଚାହିଁଲେ ତାକୁ । ଖାକି ପିନ୍ଧାଳି ଖେପି ଆସିଲେ । ମୁଁ ବି ହାତଗୋଡ ସାଉଁଟିଆଣି ଓହଟି ଅନେଇଲି; ଏବଂ ଖେଁ ଖେଁ ହସି ପକେଇଲି ।

"ଆରେ ସେଇଟା ବିସ୍କୁଟ୍ ପାକେଟଟାଏ – ମୋ ପାଖ ସିଟ୍‌ରେ ଯେ ବସିଛନ୍ତି ତାଙ୍କରି । ସେ ବିଚରା ତାକୁ ନଖାଇ ରଖିଦେଇଛନ୍ତି ।"

ଜଣେ କିଏ ପଶିଆସି ଖେକିଲା ପରି କହିଲା, "ଏ ବେଗ୍‌ଟା କାହାର ?"

ମୁଁ ଅପମାନିତ ବୋଧ କଲି । କିଛି କହିଲି ନାହିଁ । ବିସ୍କୁଟ୍ ଧରିଥିବା ଲୋକଟି କହିଲା, "ଏ ବାବୁଙ୍କର !"

"ହୁଁ ଏ ଜିନିଷ କୋଉଠୁ ପାଇଲ ହେ ?"

ମାନେ ! ଏ ତ ରୀତିମତ ଅସଭ୍ୟ ବ୍ୟବହାର କଲାଣି ।

"ଆପଣ ଏମିତି କ'ଣ ପଚାରୁଛନ୍ତି ? ମୁଁ ପରା କହିଲି ସେଇ ବାବୁ ଯେ ପରିସ୍ରା କରିବାକୁ ଓହ୍ଲେଇ ଯାଇଛନ୍ତି ସେ ବାଟ ଗାଁ ର ଦୋକାନରୁ ଏ ପାକେଟ୍‌ଟି ଆଣିଛନ୍ତି ।"

"କୋଉ ବାବୁ ? କାହାନ୍ତି ? – କିରେ ବାହାରେ କିଏ ବାବୁ ଅଛନ୍ତି ?"

ଏକାଥରକେ ଦୁଇ ତିନିଜଣ ଉତ୍ତର ଦେଲେ – "ନାହାନ୍ତି ।"

"ତମେ ଆସ ଆମ ସାଙ୍ଗରେ ।"

"ମାନେ ?"

"ମାନେ ତମକୁ ପୋଲିସ ଷ୍ଟେସନ ଯିବାକୁ ହବ ।"

ମୋ ତଳି ପେଟରେ ତେନ୍ତୁଳିଆ ବିଛା ଚାଲିଗଲା ପରି ଲାଗିଲା । ମୁଁ ତଥାପି ମୁହଁ ଜୋର୍‌ରେ କହିଲି, "କି ଆଶ୍ଚର୍ଯ୍ୟ କଥା ! ଆପଣ ଅନ୍ୟମାନଙ୍କୁ ପଚାରୁ ନାହାନ୍ତି; ସେ ଯେ ଏଠି ବସିଥିଲେ ସେ ବାବୁ ଯାଙ୍କୁ ଆଣିଛନ୍ତି ନା ନାହିଁ!"

କେହି ଜଣେ ହେଲେ ପାଟି ଫିଟେଇଲେ ନାହିଁ । ଘୁଙ୍ଗୁଡି ମାରୁଥିବା ଲୋକେ; ଟୁପ ଟାପ୍ କଥା ହେଉଥିବା ଲୋକେ ସମସ୍ତେ ତ୍ରସ୍ତ, ନୀରବ ହୋଇ ରହିଁଲେ କେବଳ ।

"କିଓ କଣ୍ଡକ୍ଟର ବାବୁ ଏଠି କିଏ ବସିଥିଲେ କହୁନା !"

"ମୁଁ ଆଜ୍ଞା, ଠିକ୍ କହି ପାରିବି ନାହିଁ । ସେ ସିଟ୍ ପାଇଁ ଟିକେଟ୍ ବିକ୍ରି ହେଇଯାଇଛି ।"

ସେ ଭୟରେ ମିଛ କହିପକେଇଲା । କେହି ତା'ହେଲେ ତାକୁ ଦେଖିବା କଥାଟା କହିବେ ନାହିଁ । ...କିନ୍ତୁ ସେ ରାସ୍କେଲ୍‌ଟା ଫେରୁନାହିଁ କାହିଁକି ? ସେଇଠି ମୋର ମୁଣ୍ଡକୁ ଆସିଲା ଯେ ସେପରି ତରବରରେ ଓହ୍ଲେଇବା ଲୋକ ଆଉ ଆସିବ ନାହିଁ ।

ଭାରି ଅଡୁଆ ହେଲା ତ' !

"ଆଚ୍ଛା, ଏ ବିସ୍କୁଟ୍ ପାକେଟ୍‌ଟାରେ କ'ଣ ଏମିତି ବେନିୟମ୍ କାମ ହେଇ ଗଲା ? ଏଇଟା କ'ଣ ବୋମା ?"

ବସ୍‌ସାରା ଚହଲି ଗଲା । ସମସ୍ତେ ଚମକିଲେ ଉଠିବା ପାଇଁ । ଖାକି ବାବୁ କହିଲା, "ଆପଣ କେହି ବ୍ୟସ୍ତ ହୁଅନ୍ତୁ ନାହିଁ । ଏଇଟା ବୋମା ନୁହେଁ । ଏଇଟା ଗୋଟାଏ ନିଶାଦ୍ରବ୍ୟ । ଯାକୁ ହିରୋଇନ କହନ୍ତି । ଏମିତି ଗୋଟିଏ ପାକେଟ ପାରିହେଇଯାଇଥିଲେ ଯା'କୁ ଦଶହଜାର ଟଙ୍କା ମିଳିଥାନ୍ତା ।

କ'ଣ ହେ! ସତନା'? – କି ଆଉ ଦର ବଢ଼ିଲାଣି?"

ତା' ଠେଙ୍ଗୁଣିରେ ମୋ ପିଠିକୁ ଠୁକେଇ ସେ ଗାଈ ଅଡେଇଲା ପରି କହିଲା, "ଚାଲ, ଏଥର ତମ ବ୍ୟବସ୍ଥା କରିଦବା! ଉଠ!"

ମୁଁ ଉତ୍‌କ୍ଷିପ୍ତ ହୋଇ ପାଟିକଲି, "କିଓ, ମତେ କ'ଣ କରି ପାଇଲ କି? ମୁଁ କ'ଣ ଏ ସବୁ ଧନ୍ଦା କରିପାରେ? ମୋର ସମାଜରେ ଯାହା ମାନ ସମ୍ମାନ, ଯାହା ଇଜ୍ଜତ୍ ତମେ କେହି ଜାଣିବ ନାହିଁ। କାରଣ ସେ ପର୍ଯ୍ୟନ୍ତ ତମେ ପହଞ୍ଚ ପାରିବ ନାହିଁ। ମୁଁ ଛାଡିବି ନାହିଁ କହୁଚି। ମୁଁ ତମମାନଙ୍କୁ ସମସ୍ତଙ୍କୁ ଜଣ ଜଣ କରି ହାତକଡା ପକେଇ ଦେବି। ମୋ ସାନଭାଇ ଜଜ୍। ମୋର ବଡଜ୍ୱାଇଁ କମିଶନର୍। ମୁଁ ପାଞ୍ଚ ଜଣ ମନ୍ତ୍ରୀଙ୍କ ଖାସ୍ ଦୋସ୍ତ। ମୁଁ ତମକୁ ସାବାଡ କରିଦେବି। କିଏ କ'ଣ କଲା – ଅଥଚ ତମେ ଜଣେ ଭଦ୍ରଲୋକକକୁ ବେଇଜ୍ଜିତ କରୁଚ କୌଣସି ପ୍ରମାଣ ନଥାଇ!!"

"ହେ, ଚୁପ୍ କରି ଯିବୁ ନା' ଦେଖିବୁ!" ଏ ଜିନିଷ ଯଦି ଆଉ କାହାର, ଏ ବେଗ୍ ଭିତରକୁ ଆସିଲା କେମିତି? ସେ ପୂରେଇ ଦେଇ ଖସିଗଲା, ନୁହେଁ? ଆମେ ଆଉ ଦୁଧଖିଆ ପିଲା ହେଇଚୁ। ଚାଲୁଚୁ ନା ନାଇଁ!

ତା' ଗର୍ଜନରେ ମୋର ଫଣା ନଇଁଗଲା। ମୁଁ ତଥାପି ଫୁ ଫୁ-କାର କରି କ'ଣ ସବୁ ବିଡ୍ ବିଡ୍ ହେଇ ଓହ୍ଲେଇଲି। ବସ୍ ଯାତ୍ରୀମାନଙ୍କ ଚାପା କଥା, ଖିଲ୍ ଖିଲ୍ ହସ ଶୁଣାଗଲା। ମୁଁ ଲଜ୍ଜା ଅପମାନରେ ଖଣ୍ଡ ଖଣ୍ଡ ହେଇଯାଉଥାଏ; ଭାଙ୍ଗି ଚୁରି ଯାଉଥାଏ। ଆଖିରେ ନିଆଁ ପାଣି ଏକାକାର ହେଇ ଟକମକ ଫୁଟୁଥାଏ। ମୁଁ ତଥାପି ସେ ହାରାମିଖୋରକୁ ଖୋଜୁଥାଏ ଚାରିଆଡକୁ ଚାହିଁ। ମୁଁ ବିକଳରେ ସେ ବାବୁ ହାତକୁ ଧରି ପକେଇଲି। ସେ ଛିଞ୍ଚାଡିଦେଲା। ମୁଁ ତେବେ ସୁଦ୍ଧା ଅନୁନୟ କଲି, "ମୁଁ ପରା ଦୀନନାଥ ଷଡଙ୍ଗୀ; ଆପଣ ମୋ ନାଁ ଶୁଣିନାହାନ୍ତି? ମୋତେ ବିଶ୍ୱାସ କରନ୍ତୁ। ମୁଁ ଜମା ଏ କାର୍ଯ୍ୟ କରିନାହିଁ। ଯେ ଅପରାଧୀ ସେ ଏଇ ମୋଡ ପାଖରେ ଓହ୍ଲେଇ ପଡିଲା। ମୁଁ ଆପଣଙ୍କ ଦିହ ଛୁଇଁ କହୁଛି ଯୋଉ ରାଣ କହିବେ ସେଇରାଣ ପକାଇ କହିବି; ମୁଁ ଦେଖିଛି ସେ ଏ ପାକେଟଟାକୁ ବାଟର ଏକ ଛୋଟ ଚା ଦୋକାନରୁ ଆଣିଲା।"

କେହି କିଛି ଶୁଣିଲେ ନାହିଁ। ବସ୍ ଚାଲିଗଲା ତା' ବାଟରେ।

ମୋତେ ସେମାନେ ଜିପରେ ନେଇ ଥାନାରେ ହାଜର କରେଇଲେ। ହାଜତରେ ଠେଲିଦେଇ ଖୁସି ଗପ କଲେ। "ଶଳା, ଭାବି ନଥିଲା ଆମେ ଏମିତି ଝାମ୍ପ ମାରିବୁ ବୋଲି। ଯିବ କୁଆଡେ ପଡିଗଲା ଖାପଚରେ! ତା' ବେଗ୍‌ରୁ ଜିନିଷ ବରାମଦ ହଉଚି; କହୁଚି କ'ଣ ନା' ଆଉ କିଏ ଆଣି ପୂରେଇ ଦେଲା।"

"ହୋ, ହୋ, ହୋ।"

ବଡ ବିପଦରେ ମଣିଷ ପଡିଗଲା ତ'! କ'ଣ କରାଯାଏ? ହିରୋଇନ୍ ଏ ମୁଲକରେ ଏମିତି ବିସ୍କୁଟ୍ ଖୋଳ ଭିତରେ ଚାଲାଣ ହଉଚି ବୋଲି କେହି ଜାଣି ନଥିଲେ। ଏମିତି ଗୋଟିଏ ପାରି କରିଦେଲେ ରାତି ପାହିଲା ବେଳକୁ ଦଶହଜାର। ...ଚମକିଲା ପରି ମୋର ମନେପଡିଗଲା

ତା' ପୂର୍ବଦିନ ମୁଁ ମନକୁ ମନ ବସି ହିସାବ ଯୋଡୁଥିଲି । ମୋର ସେ ଛୋଟୀ ଝିଅର ନକଲି ଗୋଡ ଲଗେଇବାକୁ ବମ୍ବେ ଯିବାକୁ ହେବ । ସେଇଠି ସବୁହିସାବ କଲାବେଳକୁ ମୋଟ ଦଶହଜାର ଆସିଥିଲା । ମୁଁ ଦୀର୍ଘଶ୍ୱାସ ପକେଇ ସେ କାଗଜଟିକୁ ଟିକିଟିକି କରି ଚିରିଦେଇଥିଲି । ଦଶହଜାର କିଏ ମୁଁ କିଏ ! ଆମ ଭାଗ୍ୟରେ ଯାହା ଅଛି ତାକୁ ହିଁ ଭୋଗିବାକୁ ହେବ । ତାକୁ ଟାଳିଦେବାକୁ ବଳ କାହିଁ । ...କିନ୍ତୁ ଲୋକ ପାରୁଛନ୍ତି । ତାଙ୍କୁ ଏ ଦଶହଜାର ଟଙ୍କା କେତେମାତ୍ର ! ସେମାନେ ହଜାରେ ଅପରାଧ କରି ଖସି ଯାଉଛନ୍ତି । ଅଥଚ ବିନା ଦୋଷରେ ଦଣ୍ଡ ପାଇବାକୁ ଆମେ ଅଛୁ । ଭାଗ୍ୟ ଦେଖ ! ଆଜି ଯେ ଏତେ କାଣ୍ଡ କରି ମୋ ମୁଣ୍ଡରେ ଥାପି ଦେଇ ଖସିଗଲା, ମୁଁ ତାକୁ ଦେଖିଲେ ବିନା ଦ୍ୱିଧାରେ ହତ୍ୟା କରିଦିଅନ୍ତି । ମୁଁ ତାକୁ ହାତଗୋଡ ବାନ୍ଧି କୂଅ ଭିତରକୁ ଗଳେଇ ଦିଅନ୍ତି । ତା'ର ସେଇ ଅପରାଧୀ ହାତକୁ କହୁଣିଠାରୁ ଛିଣ୍ଡେଇ ଦିଅନ୍ତି । ତାକୁ ଯେତେ ପ୍ରକାର ପାରିଲି ବାରମ୍ବାର ହତ୍ୟା କରି କରି କେତେବେଳେ କ୍ଲାନ୍ତ ହୋଇ ଆଖି ବୁଜିଦେଲି ।

ଆଖି ଫିଟେଇଲା ବେଳକୁ ରାତି ପାହିଯାଇଥିଲା । ଖରା ପଡିଥିଲା ଚାରିଆଡେ । ଘାଉ କିନା ମୋର ବେଜ୍ଜିତ୍ ମୋ ଉପରେ ମଡେଇ ହେଇ ପଡିଲା । ଦିନ ଆଲୁଅରେ ମୁଁ ଆହୁରି ଶଙ୍କିଗଲି । ଇସ୍ କ'ଣ ହେଲା ସତେ ? ଆଉ କିଛି ସମୟ ପରେ ପତ୍ର ପତ୍ରିକାରେ ଫଟସହ ବିବରଣୀ ବାହାରିଯିବ । ମୁଁ ଏଇଠି ମରିଗଲେ କେମିତି ହୁଅନ୍ତା ! ମୁଁ ସେ ହାଜତ୍ କୋଣର ଏତେ ଟିକେ ଅନ୍ଧାର ଭିତରେ ଲୁଚିଯିବାକୁ ଚେଷ୍ଟା କରୁଥିଲି ।

ଥାନା ଆଗରେ ପାଟି ଶୁଭିଲା । କେତେଜଣ ଆସି ହାଜତ୍ ସାମ୍ନାରେ ଠିଆହେଲେ । ଲୁହା କବାଟ ଆରପାଖେ ଗୋଟାଏ ଡାକିଲା, "ହେ ଏ ଆଡିକି ଆ ।"

ଗୋଟାଏ କାଳିଆ ଟୋକାର ହାତରେ ଦଉଡି ବାନ୍ଧି ସେମାନେ ଠିଆ କରେଇଥାନ୍ତି । ତାକୁ କେହି ଜଣେ କହିଲା, "ଦେଖିଲୁ, ଏଇ ସେଇ ଲୋକ ଯାହାକୁ ତୁ ସେ ବିସ୍କୁଟ ପାକେଟ୍ ଦେଇଛୁ ।"

ସେ ଟୋକାକୁ ମୁଁ ଚିହ୍ନି ନେଲି । ଖୁବ୍ ଆଶାରେ ଚାଲିଆସିଲି ଲୁହା କବାଟ ପାଖକୁ । ମୋ ମୁହଁରେ ସତ୍ୟର ଆଲୁଅ ପଡୁ, ମୋତେ ଏ ମୃତ୍ୟୁଠାରୁ ବଳି ଅପମାନରୁ ମୁକ୍ତି ମିଳୁ ।

ସେ ଟୋକା ମୋତେ ଚାହିଁଦେଇ ନିଃସଙ୍କୋଚରେ କହିଲା, "ଏଇ ବାବୁକୁ ମୁଁ ଦେଇଚି ।"

ମୁଁ କ୍ଷେପିଉଠିଲି, "ଶାଲା, ହାରାମଜାଦା, ତୁ ମତେ ଚିହ୍ନିଚୁ ? ତୁ ମତେ କେବେ ଦେଖିଚୁ ?"

"ହେ, ଚୁପ୍‌କର ! ଆଚ୍ଛା, ଟୋକା କହିଲୁ ଦେଖି, ତୁ ୟାକୁ କେମିତି ଚିହ୍ନି ତା' ହାତରେ ସେ ବିସ୍କୁଟ ପାକେଟ୍‌ଟା ଦେଇଦେଲୁ ?"

"ମତେ କୁହାଯାଇଥିଲା ଯେ, ଯଦି କେହି ଚା କପ୍‌ରୁ ଅଧେ ପିଇ ଆଉଅଧେ ଫିଙ୍ଗିଦିଏ ତେବେ ତାକୁ ତୁ ଏ ପାକେଟଟା ବଢେଇ ଦବୁ । ସେଥିପାଇଁ ମତେ ପଇସା ଦେଇଥିଲା ଦୁଇଶ ଟଙ୍କା । ଆଜି ସକାଳୁ ଆଉ ତିନିଶ ଦବାକୁ କହିଥିଲା ।"

"ହଁ, ହଁ, ସେ'ତ ଗାଡି ଛାଡିବାକୁ ବସିଲାରୁ ଅଧେ ଚା ଫିଙ୍ଗିଦେଇଥିଲା – ମୁଁ ଦେଖିଛି ।

ତା'ପରେ ତୁ ଦୌଡ଼ିଆସି ତାକୁ ସେ ବିସ୍କୁଟ ପାକେଟ୍ ବଢ଼େଇଦେଲୁ।"

"ଆରେ, କାହିଁ ପାଟି କରୁଚୁ। ବେ ଟୋକା, ତୁ ଯ୍ୟାକୁ ଠିକ୍ ଚିହ୍ନି ପାରୁଚୁ ତ!"

"ରାତିରେ ଦେଖିଚି ବାବୁ...ଏଇ ବାବୁ ତ।"

ମୁଁ ମୁହଁ ଘୋଡେଇ କାନ୍ଦିପକେଇଲି।

ଅନ୍ଧାର କୋଣରେ ଦରିଦ୍ର ଆସାମୀଟିଏ ପରି ବସିରହିଲି। ଲୁହା ଫାଟକ ଆରପାଖେ ମୋ ସୁଟକେଶ୍, ବେଗ୍ ଥୁଆହୋଇଥାଏ। ଏଥର କୋଟ୍ ସାଙ୍ଗକୁ ନୂଆ ଟାଇ ପିନ୍ଧିବି ବୋଲି ସାନଝିଅ ବାକ୍ସରେ ରଖି ଦେଇଛି। ଆଜି ଏଗାରଟା ତିରିଶ ମିନିଟ୍‌ରେ ସେଇଠି ମିଟିଂ ହେଇଥାନ୍ତା, ସାଙ୍ଗମାନଙ୍କ ସହିତ ଦେଖାହୋଇଥାନ୍ତା। କେତେ କଥାବାର୍ତ୍ତା, ହସଖୁସି! ସବୁ ସରିଗଲା। ଏଇଠି ଦୀନନାଥ ଷଡଙ୍ଗୀର ମୃତ୍ୟୁ ହେଲା। ଯ୍ୟା'ପରେ ଯେତେ ଧୋଇଲେ କ'ଣ ଏଥିରୁ ଆଉ ମୁକ୍ତି ମିଳିବ...କି ଆଶ୍ଚର୍ଯ୍ୟ କଥା। କିଛି ନକରି କିଛି ନଜାଣି ମଣିଷ ଦୁର୍ବିପାକ ଭୋଗିପାରେ? ଆଖିରୁ ତବତବ କରି ପାଣି ନିଗିଡ଼ିଗଲା।

ଗୋଟାଏ ଗାଡ଼ି ଆସି ବାହାରେ ରହିଲା। ଟପ୍‌ଟାପ୍ ଜୋତାଶବ୍ଦ। କ'ଣ ସବୁ କଥାବାର୍ତ୍ତା। ତା'ପରେ ହାଜତ୍‌ର ତାଲା ଫିଟିବାର ଶବ୍ଦ।

ମୋ ସାମ୍ନାରେ ସେ ବୁଟ୍‌ପିନ୍ଧା ବାବୁ ଠିଆହେଲା। ବୋଧେ ଲାତ ମାରି ମୋ ଅନ୍ତବୁଜୁଳା ବାହାର କରିଦେବ। ମୁଁ ଭୟରେ ଆଖି ବୁଜି ଅପେକ୍ଷା କଲି। ଅସହାୟ ଲୁହ ନିଗିଡ଼ିଗଲା।

"ଆପଣ ଆମକୁ କ୍ଷମା କରନ୍ତୁ। ଆମର ଭୁଲ ହେଇଗଲା। ଆମେ ଜାଣି ପାରିଲୁନାହିଁ।"

ମୁଁ ବିଶ୍ୱାସ କରିପାରିଲି ନାହିଁ। ସେମିତି ତବତବ ଚାହିଁ ରହିଲି ନିଶ୍ଚଳ। ସେମିତି ଧାରଧାର ଲୁହ ଝରିଯାଉଥିଲା। ସେ ମୋ ହାତଧରି ଠିଆକରେଇଲା। ନିଜେ ଆଡହୋଇ ଠିଆହେଲା।

"ଚାଲନ୍ତୁ ବାହାରକୁ। ଆମେ ପ୍ରକୃତ ଅପରାଧୀକୁ ଧରି ପାରିଚୁ।"

ସ୍ୱପ୍ନରେ ପହଁରିଲା ପରି ମୁଁ ଚାଲିଆସିଲି।

ମୋରି ଭଳି, ମୋରି ବୟସର, ମୋରି ରଙ୍ଗର ପେଣ୍ଟ ଏବଂ ସେଟର ପିନ୍ଧିଥିବା ଆଉ ଗୋଟିଏ ଲୋକ ହାତକୁ ହାତ ଛନ୍ଦି ଠିଆହୋଇଥାଏ! ତଳକୁ ମୁହଁ ପୋତି ନୀରବ। ସମସ୍ତଙ୍କ ଘେର ଭିତରେ ଅପରାଧୀ।

ଦିନ ଆଲୁଅରେ ସେ ମୋଠାରୁ ଅବଶ୍ୟ ଖୁବ୍ ଅପରିଚ୍ଛନ୍ନ, ଧୂଳି ଧୂସର, ନଖୁରାମଖରା ଦିଶୁଥିଲା। ନିସ୍ତେଜ ଏବଂ ପରାସ୍ତ ଦିଶୁଥିଲା। ତଥାପି ରାତି ଅନ୍ଧାରରେ ମୋରି ଭଳି ଦିଶିବା ପାଇଁ ତା'ର ଅନେକ ଉପାଦାନ ଥିଲା। କାହାକୁ ଦୋଷ ଦେଇ ହେବନାହିଁ ଯଦି ଭୁଲ ହେଇଯାଏ। ସେ ହୁଏତ ମୋ ଭଳି ଦିଶିବାକୁ ପ୍ରବଳ ଯୋଜନା କରିଥିଲା; ସେଇଠି ବସିବାକୁ, ସେମିତି ପିନ୍ଧିବାକୁ। ଧରା ନପଡ଼ି ଓହ୍ଲେଇଗଲେ ଦଶହଜାର ପାଇଥାନ୍ତା। ନହେଲେ ଏମିତି ମୋ ମୁଣ୍ଡରେ ଅପରାଧ ଚାପି ଦେଇ ଖସି ପଳେଇଥାନ୍ତା ଗୁମ୍ଫା ଭିତରକୁ।

ଅନେକ ପ୍ରକାର ଗୁଞ୍ଜରଣ ଭିତରେ ମୁଁ ତାକୁ ଚାହିଁରହିଥିଲି। ଅନ୍ୟମାନେ ବୋଧହୁଏ

ଆମ ଦୁହିଁଙ୍କୁ ଚାହିଁରହିଥିଲେ । ଗୋଟାଏ ସମୟରେ ରାତିରେ ମୋର ଧାରଣା ହୋଇଥିଲା ଯେ ସେ ହିଁ ମୁଁ । ହାଜତ୍‌ଭିତରୁ ମୁଁ ଚାଲି ଆସିଛି, ସେ ହୁଏତ ପଶିବ । କିନ୍ତୁ କଥାଟା ଆରବାଗେ ମଧ ହୋଇପାରିଥାନ୍ତା । ମୁଁ ତ ପୁଣି ତା' ପୂର୍ବଦିନ ଛୋଟ ଝିଅର ଅପରେସନ୍ ପାଇଁ ଦଶହଜାର ଟଙ୍କାର ଅଟକଳ କରିଥିଲି । ମୁଁ କ'ଣ ଚାହିଁନଥିଲି କୌଣସିପ୍ରକାରେ ହେଲେ ମୋତେ ସେ ଟଙ୍କା ମିଳିଯାଉ ବୋଲି । ଧର ଯଦି ମୁଁ ବାଟରେ ଚା ପିଇବାକୁ ଓହ୍ଲେଇଥାନ୍ତି – ବସ ଛାଡୁଥିବାରୁ ଅଧେ ଚା ଫିଙ୍ଗି ଦେଇଥାନ୍ତି – ସେ କାଳିଆ ଟୋକା ବିସ୍କୁଟ ବଢେଇ ଦେଇଥାନ୍ତା ଏବଂ ମୁଁ ଜାଣିଥାନ୍ତି ସେ ଜିନିଷ କ'ଣ । ମୁଁ କ'ଣ ତାକୁ ଏ ଥାନାବାବୁ ହାତକୁ ବଢେଇ ଦେଇ ମୋ ସଚ୍ଚୋଟପଣ ଜାହିର କରିଥାନ୍ତି ?

ମୁଁ ସେ ଲୋକଟି କାନ୍ଧରେ ଆସ୍ତେ ହାତ ଥୋଇବାରୁ ସେ ମୁହଁ ଟେକି ଚାହିଁଲା । ଢଳଢଳ ବିଷାଦରେ ଭରପୂର ଯୋଡିଏ ଆଖି । ଶୁଢ ସାଲୁବାଲୁ ମୁହଁ । କପାଳରେ ଭାରଭାର ରେଖା ।

ମୁଁ ତାକୁ ଖୁବ୍ ଧୀରେ ପଚାରିଲି, "ତୋର ସେ ଛୋଟ ଝିଅକୁ କେମିତି ଆଉ ବମ୍ବେ ନେଇପାରିବୁ ?" ଜାଣିପାରିଲି ନାହିଁ କାହିଁକି ତାକୁ ସେଭଳି ପଚାରିଲି ।

ସେ ମୋତେ ମଟ ମଟ ଚାହିଁଲା । ମୋର ମନେହେଲା ତା' ଆଖିବାଟେ ସତେ ବା ଲୁହ ସରସର ତା' ଆତ୍ମାପୁରୁଷ ବାହାରି ଆସିବ ସେ ପଞ୍ଜୁରି ଭିତରୁ ।



# ଅର୍ଜୁନି ଦେଖିଚି

ସେପରି ସୂର୍ଯ୍ୟୋଦୟ ମୋ ଜୀବନରେ ଆଉ କେବେ ଘଟି ନଥିଲା । ଏତେ ବିଶାଳ ପୃଥିବୀ ଉପରେ ସେମିତି ଏକଛତ୍ର ଅଧିକାରରେ ମୁଁ କେବେ ଠିଆହୋଇନଥିଲି । କେହି ନା କେହି ଜଣେ ମୋ ପାଖରେ ଶତ୍ରୁପଣରେ ହେଉ ବା ମିତ୍ରପଣରେ ହେଉ ମୋତେ ସ୍ୱୀକାର କରିଆସିଛି । କିନ୍ତୁ ସେଦିନ ଥିଲା ଅନ୍ୟ ପ୍ରକାର ।

ରାତି ଦୁଇଟାରେ ଯେତେବେଳେ ମୁଁ ଏଠି ଆସି ପହଞ୍ଚିଲି ଏବଂ ପ୍ଲାଟଫର୍ମରୁ ଗାଡି ଛାଡିଦେଲା, ମୁଁ ଚାରିଆଡକୁ ଥରେ ଚାହିଁନେଲି । ମୁଁ ଆଦୌ ଆଶା କରୁନଥିଲି ଯେ ମୋତେ କେହି ଏଠି ଅର୍ଜୁନି ବୋଲି ଡାକିଦେବ କିମ୍ବା ମୁଁ ଗୋବିନ୍ଦନନା କହି କାହା ହାତକୁ ଧରିପକେଇବି । ସେ ସମ୍ଭାବନାକୁ ମୁଁ ବହୁ ଦୂରରେ ଛାଡିଆସିଥିଲି । ସେଠିକି ମୁଁ ବୋଧେ ଆଉ କେବେ ହେଲେ ଫେରି ଯାଇପାରିବି ନାହିଁ । କୋଉଠିକି ଭଲା ଫେରିଯାଇ ହୁଏ ?

...'ଦେଖ୍ ଅର୍ଜୁନି, ବୋଲ ନମାନି ଘରୁ ଗୋଡ କାଢି ଯାଉଚୁ, ତୋ ଅବସ୍ଥା ଗାଆଣି ଗାଇବ ନାଇଁ ।' କମ୍ପୁ ଭାଇନା ଶୁଣେଇ ଶୁଣେଇ କହୁଥିଲା । ମୋ ପଛରୁ ସେସବୁ ଶୂନ୍ୟବାଣୀ ପରି ଶୁଭୁଥିଲା । ମୁଁ କିନ୍ତୁ ନିଷ୍ପତ୍ତି ନେଇସାରିଥିଲି ଯେ ସେ ଶଳା ଆବର୍ଜନା ଗାଁରେ ମୁଁ ଆଉ ଖରା ବର୍ଷା ଶୀତ ଖାଲି ପାଗୁଳି କରି କରି କାଟିପାରିବି ନାହିଁ । ଯାହା ହବାର ହବ ପଛେ ମୁଁ ଥଣ୍ଟ ମେଲି, ଡେଣା ମେଲି ଆଗ ବହେ ଉଡିଯାଏ, ଦେଖିବା ତେଣିକି ।

ମୁଁ ପ୍ଲାଟଫର୍ମ ଉପରେ ହିଁ ବାକିତକ ରାତି ବିତେଇବାକୁ ସ୍ଥିର କଲି । ଗୋଟାଏ ସିମେଣ୍ଟ ବେଞ୍ଚ୍ ଉପରେ ମୁଣ୍ଡତଳେ ବେଗ୍ ଖଣ୍ଡକ ଦେଇ ଶୋଉ ଶୋଉ ଶୋଇଗଲି । ରାତିସାରା ଭୂଇଁ ଦୁଲ୍ ଦୁଲ୍ କମ୍ପୁଥିଲା । ରହି ରହି ଟ୍ରେନ୍ ଶବ୍ଦ ଶୁଭୁଥିଲା । ମୁଁ ସେସବୁକୁ ସପ୍ନରେ ଗୁନ୍ଥି ନେଇଥିଲି ।

କ'ଣ ହେଲା କେଜାଣି ମୋ ନିଦ ଭାଙ୍ଗିଗଲା । ମୋ ମୁହଁ ଦେହ ଉପରେ କୌଣସି ପକ୍ଷୀ ଡେଣାର ପବନ ବାଜିଲାପରି ଲାଗିଲା । ମୁଁ ଆଖି ଫିଟେଇ ଚାହିଁଦେଲି । ଏତେ ବିଶାଳ ସୁନା ସୂର୍ଯ୍ୟ ଉଇଁ ସାରିଥାଏ । ମୁଁ ଚାରିଆଡକୁ ଅନେଇଲି । କେହି କୁଆଡେ ନଥିଲେ । ଚା ଦୋକାନୀ ଚଦର ଘୋଡେଇ ହୋଇ ଶୋଇଥିଲା । ଦୁଇ ନମ୍ବର ପ୍ଲାଟଫର୍ମରେ ମଧ କୌଣସି ପ୍ରକାର ଚଳପ୍ରଚଳ ନଥିଲା । ମୁଁ ପାଣି ନଳ ପାଖକୁ ଗଲି । ପ୍ରଚୁର ପାଣି । କିନ୍ତୁ ମୋତେ ସେଇଠି ଟିକିଏ

ଅଡୁଆ ଲାଗିଲା । ମୁଁ ଚମକିଲା ପରି ଅନୁଭବ କଲି ଯେ କେହି ଜଣେ ହେଲେ ମଣିଷ ସେ ସାରା ପ୍ଲାଟଫର୍ମରେ କୋଉଠି ନଥିଲା । ପ୍ଲାଟଫର୍ମର ନିରୋଳା ବେଳ ଅଛି । କିନ୍ତୁ ଏମିତି ତ କେବେହେଲେ ନିର୍ଜୀବ ହେବା କଥା ନୁହେଁ । ମୁହଁ ଧୋଇସାରି ସୂର୍ଯ୍ୟକୁ ପୁଣି ଚାହିଁଲି । ମୋତେ ଲାଗିଲା ସମ୍ରାଟ ପରି । ମୋ ଖାତିରରେ ସମସ୍ତେ ସତେବା ଆଡେଇ ହୋଇଯାଇଥିଲେ । ମୁଁ ମଥାଟାକୁ ଖୁବ୍ ଟେକି ଅଳ୍ପ ହସିଲି । ପାହୁଣ୍ଡ ଲମ୍ବା ଲମ୍ବା ପକେଇ ପଇଁତରା କାଟିଲି । ଗୁଣୁଗୁଣେଇଲି । ମନେହେଲା ମୋ ବାକିତକ ଆୟୁଷର ପ୍ରଥମ ଦିନ ଏଇ ଆରମ୍ଭ ହେଲା । ଆଜିଭଳି ଅମୂଲ୍ୟ ଦିନକୁ ଅପବ୍ୟୟ କରିବାର ଅର୍ଥ ନାହିଁ । ଯାହା ବିତିଯାଇଛି ସେ ଭଙ୍ଗାକାଚ ଯୋଡିବାର ଅର୍ଥ ନାହିଁ ।

ମୁଁ ମୋ ଛୋଟ ବେଗ ଭିତରୁ ଗାମୁଛା କାଢିଲି । ଲୋଚାକୋଚା ପେଣ୍ଟ୍ ସାର୍ଟ ହଳକ କାଢି ପିନ୍ଧିଲି । ଦରିଦ୍ର ବୋଲି ଆଉ ଅନ୍ୟ ପ୍ରମାଣର ପ୍ରୟୋଜନ ନଥିଲା । ରାତି ପିନ୍ଧାଟିକୁ ଗାମୁଛା ସାଙ୍ଗରେ ଗୁଞ୍ଜିଦେଇ ଆଗକୁ ଗୋଡ ବଢେଇଲି, ମୋ ଅବଶିଷ୍ଟ ଜୀବନର ଆଦ୍ୟ ଦିନ ।

ନିର୍ଜନ ପ୍ଲାଟଫର୍ମ । ମୋତେ ଖୁବ୍ ଅଡୁଆ ଲାଗୁଥାଏ । ଏମିତି କ'ଣ ନିଶୂନ୍ ହେଇଚି ଏ ଅଞ୍ଚଳଟା ! ସବୁ ଝରକା ବନ୍ଦ । ସବୁ କବାଟ ବନ୍ଦ । ବାହାରକୁ ଯିବାପାଇଁ ଜାଲି ଦୁଆର – କିନ୍ତୁ ସାହାଣ ମେଲା । ସେଇଠି ବି ଜଗୁଆଳି କେହି ନାହିଁ । ବାହାରେ ତ ଦରିଦ୍ର ଉଦ୍‌ବାସ୍ତୁ ଲୋକେ ଶୋଇଥିବେ । ଝାଡୁଦାର ଆସିଥିବ । ଚା ବାଲା ପ୍ରସ୍ତୁତ ହେଉଥିବ । ଖଣ୍ଡେ ଦି'ଖଣ୍ଡ ରିକ୍‌ସା ଚଳପ୍ରଚଳ ହେଉଥିବ ।

ବାହାରକୁ ଆସିବାରୁ ଆହୁରି ଛାନିଆ ଲାଗିଲା । ସେଠି ବି କେହି ନାହାନ୍ତି । ଏଠି ସେଠି ଛିଣ୍ଡା କାଗଜ, ସିଗ୍ରେଟ ଖୋଳ, ଏଣୁ ତେଣୁ ମଇଳା ପଡିଛି । କିନ୍ତୁ ଜନମାନବ କେହି କୁଆଡେ ନାହିଁ । ତେଢେ ବଡ ରାସ୍ତା ସକାଳ ଖରାରେ ଶୋଇ ରହିଛି । କାଉଟିଏ ବି ରାବୁନାହିଁ । ବୁଲା କୁକୁରଟିଏ ଅନ୍ତତଃ ଏ ପାଖଆଖରେ ବୁଲୁଥିବା କଥା । ଗୋରୁ, ବାରଜାତି, ଚଢେଇ – କିଛି ନାହିଁ – ଇସ୍ । ଏ ସହରଟା ମରିଯାଇ ନାହିଁ ତ !!

ମୁଁ ଭୟାତୁର ହୋଇ ତବତବ ଅନେଇଲି ଚତୁର୍ଦ୍ଦିଗକୁ । ମୋତେ ଲାଗିଲା ମୁଁ ଏ ଅତିକାୟ ମୁର୍ଦାରକୁ ସାମ୍ନା କରୁଛି । କେଉଁଠି ହେଲେ ବି ଜୀବନର ଚିହ୍ନ ଦିଶୁନଥିଲା । ଅଥଚ ଏତେବଡ ସୂର୍ଯ୍ୟୋଦୟଟାଏ ସେତେବେଳକୁ ହୋଇସାରିଥିଲା । ମୁଁ ତଥାପି ରାସ୍ତା ଉପରକୁ ଓହ୍ଲେଇ ଆସିଲି । କିଛି ଚିନ୍ତା କରିବା ପୂର୍ବରୁ ମୁଁ ଆସ୍ତେ ଆଗେଇ ଯାଉଥିଲି – ସେ ସହରର ବୋଧହୁଏ ଏକମାତ୍ର ଜୀଅନ୍ତା ପ୍ରାଣୀ ।

ମୁଁ ଷ୍ଟେସନ ପାଖ ବଜାରର ଉପର ମୁଣ୍ଡରେ ପହଞ୍ଚ ସାରିଥାଏ । ମୋତେ ପ୍ରଚଣ୍ଡ ଭୋକ ହେଉଥାଏ । ମୁଁ ଦେଖିଲି ଯେ ସେ ଦୋକାନଟା ଖୋଲା ରହିଛି । ଭିତରେ ଧାଡି ଧାଡି ଥାକ ଥାକ ଜିନିଷ ନାନା ଜାତିର । ଗୋଟାଏ ଥାକ ବିସ୍କୁଟ ଆଉ ମିଠା ପାଉଁରୁଟି ବି ଥୁଆହୋଇଥାଏ । କେହି କୁଆଡେ ନଥାନ୍ତି । ମୁଁ ଚାରିଆଡକୁ ଚାହିଁ ସେ ଭିତରକୁ ପଶିଲି ମୋର ଦୁର୍ବାର ଭୋକକୁ ନେଇ ।

ମୁଁ ସେ ବିଚିତ୍ର ନିସ୍ତବଧତାକୁ ବୁଝିପାରୁନଥିଲି । କେହି ତ କେଉଁଠି ଦେଖୁ ନଥିଲେ । ମୁଁ

ଗୋଟାଏ ସୁଯୋଗ ପାଇଲା ଭଳି କାଚବାଡ ଘୁଞ୍ଚାଇ ଗୋଟାଏ ମିଠା ରୁଟି ଉଠେଇ ଆଣିଲି । ମତେ ଡର ମାଡିଲା । ହାତରେ ରୁଟିଧରି ଠିଆ ହେଲାବେଳେ ଲାଗିଲା ଯେ ଅସଂଖ୍ୟ ଆଖି ମୋତେ ଉଁକିଆଡୁ ଅନେଇରହିଛନ୍ତି । ଫେର୍ ଭାବିଲି – ଦେଖୁଥାନ୍ତୁ । ଭୋକିଲା ମଣିଷଟିଏ ଖଣ୍ଡେ ରୁଟି ଖାଇଯିବା କ'ଣ ଏମିତି ଗୋଟାଏ ଅପରାଧ । ବରଂ ମୋ ବିଗ୍ରହରେ ତ ରୁଟି ଭଳି ଜିନିଷ ଆଦୌ ବିକ୍ରି ହେବା କଥା ନୁହେଁ । ପାଣି ପବନପରି ଯେ ଯେତେବେଳେ ଗ୍ରହିଲା ଏଥିରୁ ଖଣ୍ଡେ ଖାଇନେଇ ପାରନ୍ତା । ମୁଁ ଆଖି ବୁଜି ବିରାଡି ମାଛମୁଣ୍ଡ ଲେଖାଇଲା ପରି ପାଟି ଭର୍ତ୍ତିକରି ବୁଙ୍ଗାଏ ଲେଖା ରୁଟି ଖାଇଦେଇଗଲି । ନାହି ମୁଣ୍ଡାରେ ଅନ୍ନ ପଡିଯିବାରୁ ଆଶ୍ୱସ୍ତ ଲାଗିଲା । ଖୁସି ଲାଗିଲା । ତା' ଉତ୍ତାରୁ ମୁନ୍ଦେ ପାଣି ପିଇଦେଲେ ବାକି ସବୁ ଦେଖାଯିବ । କେହି ମାଲିକ ଆସି ପଚାରିଲେ ଦେଖାଯିବ ।

ଏତିକିବେଳେ ମୋତେ ଖୁବ୍ ସୂକ୍ଷ୍ମ ଶବ୍ଦମାନ ଶୁଣାଗଲା । ମତେ ଲାଗିଲା ସତେବା ମୋ ମୁଣ୍ଡ ଭିତରୁ ସେ ଶବ୍ଦ ଶୁଭୁଚି – ଖୁବ୍ ଦୂରରୁ ଝିଲ୍ଲୀପରି, ଅତି ସୂକ୍ଷ୍ମ ଯନ୍ତ୍ରପରି । ମୁଁ କାନେଇ ରହିଲି । ମୋ ପାଟିରେ ମିଠା ପାଉଁରୁଟି ଭର୍ତ୍ତି ହୋଇ ରହିଥିଲା । ଟାଉ ଟାଉ ଢୋକି ଦେଇ ପୁଣି କାନେଇଲି । ସେଇ ଶବ୍ଦ ସେମିତି ଶୁଭୁଥିଲା । ସେ ଦୋକାନର କାନ୍ଥ ବାଡରୁ ଛାତ ଚଟାଣରୁ ଆସିଲାପରି ଶୁଭୁଥିଲା । ମୁଁ ଯେଉଁ କାଠ ଷ୍ଟୁଲ ଉପରେ ଠିଆହୋଇ ରୁଟି ଆଣିଥିଲି ସେଥିରୁ ଓହ୍ଲେଇ ଆସିଲି । ହାତ ଝାଡିଦେଇ ଝୋଲାଟିକୁ ଧରି ବାହାରି ଆସିବାକୁ ଉପକ୍ରମ କରୁଚି, ଏତିକିବେଳେ କେଉଁଠି ଥିଲେ ଗୋଛାଟିଏ ପିଲା ସେ ଦୋକାନ ଭିତରକୁ ପଶି ଆସିଲେ । ମତେ ଲାଗିଲା ସେମାନେ ସବୁ କଣ୍ଢେଇ । ଭାରି ସୁନ୍ଦର ବଳିଲାପରି ହାତଗୋଡ । ଦେହର ବର୍ଣ୍ଣ ଅତି ବିଚିତ୍ର, ସୁନେଲି ରଙ୍ଗ । ଆଖିଗୁଡିକ ଘନ ନୀଳ । ସେମାନେ ପୋଷାକ ପିନ୍ଧିଥିଲେ କି ନାହିଁ ଜଣା ପଡୁନଥିଲା । ପୁଅ କି ଝିଅ ଜଣାପଡୁନଥିଲା । ସେମାନେ ସତରେ ବୋଧହୁଏ କଣ୍ଢେଇ । ତା' ଭିତରୁ କେତେଜଣ ଛୋଟ ଛୋଟ ଖେଳନା ଧରିଥିଲେ । ମତେ ଦେଖି ସେମାନେ ନିଃଶବ୍ଦରେ ହସିଲେ । ମୁଁ ବି ଆଖି କୁଞ୍ଚେଇ, ଦାନ୍ତ ନଦେଖେଇ ହସିବା ମୁଦ୍ରା ଦେଖେଇଲି । ସେମାନେ ଖୁବ୍ ଖୁସି ହେଲାପରି ଜଣାଗଲେ ।

ସୁନେଲି ରଙ୍ଗର ପିଲାମାନେ ଖୁବ୍ ତତ୍ପର ହୋଇ ଚଟାପଟ ମୋ ଚାରିପଟେ ବୁଲି ଆସୁଥିଲେ । ସେମାନଙ୍କ ଖେଳନାର ଛୋଟ ଛୋଟ ବୋତାମମାନଙ୍କୁ ଟିପିଦେଇ କାନଉଥିଲେ । ତା' ଭିତରକୁ ଅନଉଥିଲେ । ମତେ ଅନଉଥିଲେ ।

କିଛି ସମୟପରେ ଜଣେ ତା' ଭିତରୁ ଅନ୍ୟମାନଙ୍କୁ ଅନେକ କୌତୂହଳରେ କ'ଣ ସବୁ ପଚାରିଲା ପରି ଲାଗିଲା । ମୁଁ ସେମାନଙ୍କୁ ଶୁଣିପାରୁନଥିଲି । ସେ ତା' ଯନ୍ତ୍ରକୁ ପାଟି ପାଖରେ ରଖି କହିଲା ଏବଂ ବାଁହାତରେ ବୋତାମଟିଏ ଟିପି ଦେବାକୁ ମୋତେ ହିନ୍ଦୀ-ଓଡିଆ ମିଶାମିଶି ଭାଷାରେ ଶୁଭିଲା – "ମେରେକୋ ଦିଶୁଥିବା ୟେ ତୁମ୍ କ'ଣ ପୁରୁଣା ମଣିଷ ? ହମାରା ପୂର୍ବପୁରୁଷ ?"

ମୁଁ ଫେଁ' କିନା ହସିଦେଲି । ମୁଁ ନଇଁପଡି ତା' ଗାଲକୁ ଛୁଇଁ ଦେଲାରୁ ଧାଉଁକିନା ଗୋଟାଏ ଇଲେକ୍‌ଟ୍ରିକ୍ ସକ୍ ମାରିଲାପରି ଚମକିପଡିଲି । ସେ ହସିଲା ଭଙ୍ଗୀରେ ମୋତେ ଚାହିଁଥାଏ ।

ଅନ୍ୟମାନେ ଚାହିଁଥାନ୍ତି ।

ଯନ୍ତ୍ରରେ ସେ କହିଲା – "ତୁମ୍ ବହୁତ୍ ମଇଲା ଅଛ । ତୁମାରା ଦେହରୁ ବହୁତ ଗନ୍ଧ ବାହାରୁଛି । ପାଃ !"

"ତୁମ୍ ଓ ରୋଟିକୋ ଯେମିତି ତୁମାରା ଭିତର ଭର୍ତ୍ତି କରୁଥିଲ, ସେମିତି ଆଉଥରେ ଭର୍ତ୍ତି କରିବ କି ?"

ମୋତେ ସେତେବେଳେ ଅନୁଭବ ହେଲା ଯେ ମୁଁ ସେମାନଙ୍କ ପାଇଁ ଏକ କୌତୂହଳର ସାମଗ୍ରୀ । ମୋ ଚେହେରା, ମୋ ବେଶପୋଷାକ, ମୋ ଆଚରଣ ! ମୁଁ ବି ସମାନ କୌତୂହଳରେ ସେମାନଙ୍କୁ ଚାହିଁରହିଥିଲି । ସେମାନଙ୍କୁ ମୁଁ ଯେ ପିଲାକଣ୍ଢେଇ ଭାବିଥିଲି, ସେଇଟା ବୋଧେ ଭୁଲ । ସେମାନେ ସମସ୍ତେ ଗୋଟାଏ ପ୍ରକାର ଟୋପି ପିନ୍ଧିଥିଲେ । ଗୋଟାଏ ପ୍ରକାର ପୋଷାକ ପିନ୍ଧିଥିଲେ । ଚେହେରା କିନ୍ତୁ ଭିନ୍ନ ଭିନ୍ନ । ମୁଁ ଭାରି ଆମୋଦିତ ବୋଧକଲି । ଦୋକାନ ବାହାରକୁ ଚାହିଁଦେବାରୁ ଆହୁରି ବିଚିତ୍ର ଲାଗିଲା । କେହି କୁଆଡେ ନଥିଲେ । ମୁଁ ମନେ ମନେ ଭାବିଲି, ରାଜଧାନୀ ସହର । ମୁଁ କ'ଣ ୟାକୁ ଆଗରୁ ଦେଖିଥିଲି କି ? ଏଠି ଏମିତି ହୁଏତ ବିଳମ୍ବରେ ଲୋକଙ୍କ ନିଦ ଭାଙ୍ଗୁଥିବ ! ଯାହାହେଲେ ସୁଦ୍ଧା ଏ ଦୋକାନର ମାଲିକ କ'ଣ ନଆସି ରହିବ । ସେ ଆସିଗଲେ ସବୁ ଠିକଣା ହୋଇଯିବ । ସେ ପର୍ଯ୍ୟନ୍ତ ୟାଙ୍କ ସାଙ୍ଗରେ କିଛି ଗମାତ୍ କରାଯାଉ ।

ଯନ୍ତ୍ରରୁ ଶୁଭିଲା – "ତୁମ୍‌କୋ ରୁଟି ତୁମାରା ଭିତର ଭର୍ତ୍ତି କରିବାକୁ କହା ।" ମୁଁ ଅମାନିଆ ପିଲା ପରି ସେଇଠି ବସିପଡିଲି । ସେମାନଙ୍କୁ ମିଟି ମିଟି ଚାହିଁ ହସିଲି । ସେମାନେ ମୋ ଚାରିପଟେ ଘୂରିବୁଲିଲେ । ମହୁମାଛି ଗୁଣୁଗୁଣୁ ହେଲାପରି ଶବ୍ଦ ଶୁଭୁଥିଲା । ଜଣେ ତା' ଭିତରେ ଆସି ମୋ ପିଠିକୁ ଛୁଇଁଦେଲା ଆଉଁସିଲା ଭଙ୍ଗୀରେ । ମନେହେଲା ମୁଁ ସତେବା ଗୋଟିଏ ଷଣ୍ଢ ବା ହାତୀଛୁଆ । ମୁଁ ହସିହସି ତାକୁ ଚାହିଁଲି । ମୋର ଇଚ୍ଛା ହେଲା ତାକୁ ଗୋଟାଏ ହାତରେ ଶୂନ୍ୟକୁ ଟେକି ଘିରି ଘିରି ବୁଲାଇ ଦିଅନ୍ତି । ଗେଲ କରନ୍ତି । ସେ ମୋ ମନକଥା ଜାଣିଲା ପରି ଚଟ୍‌କିନା ଘୁଞ୍ଚିଗଲା ଦୂରକୁ ଠିକ୍ ମୋ ହାତ ନପହଞ୍ଚିବା ଥାନକୁ । ମୁଁ ସ୍କୁଲ୍‌ରେ ପଢିଲା ବେଳୁ ବାର୍ଷିକ ଉତ୍ସବରେ ଗୋଟାଏ ଜିନିଷରେ ବରାବାର ପୁରସ୍କାର ପାଉଥିଲି – ତା' ହେଲା ବିଭିନ୍ନ ପଶୁପକ୍ଷୀଙ୍କ ଡାକ । ମୋର ପିଲାଦିନ କଥା ମନେପଡିଗଲା ଏବଂ ମୁଁ ମୁହଁ ଘୋଡେଇ କୁକୁର ଭଳି ଡାକିଲି । ଛୋଟ ଶୀତଦିନିଆ କୁକୁରଛୁଆ, ସାତଟା ପିଲାକୁ କ୍ଷୀର ଦେଇପାରୁନଥିବା, ସମସ୍ତଙ୍କୁ ଖିଙ୍କାରି ଗୋଡାଉଥିବା ଭୁକିଲା ଧେଙ୍ଗେଡି କୁତି – ଆଉ ବାଘୁଆ ରାହୁଆ ଲଢୁଆ କୁକୁର – ଏ ସମସ୍ତଙ୍କ ସ୍ୱର ମୁଁ ନକଲ କରିଗଲି । ଖୁସି ଲାଗିଲା ଯେ ମୁଁ ଏବେ ବି ଏକ କଳାକାର । ମୋ ଚାରିପଟେ ବେଢିଥିବା ସେ ପିଲାକଣ୍ଢେଇଙ୍କ ଛାନିଆରେ ଡରୁଁ ଡେଇଁ ଦେଖି ମୋତେ ଆହୁରି ଖୁସି ଲାଗିଲା ।

ସେମାନେ ଭୟରେ ଆଡେଇ ହୋଇଯାଇଥିଲେ କି ? ତା'ପରେ ସେଇଠୁ ଯାଇ ସେ ଯନ୍ତ୍ରରେ ମତେ କହିଲେ, "ତୁମ୍ କ୍ୟା କହିବାକୁ ଚାହୁଁ ଛ ! ଅବ୍ ଯାହା କହିଲ ଉସ୍‌କା ଅର୍ଥ କ'ଣ ?"

ମୁଁ ଠୋ ଠୋ ହସିଲି । ଭାବିଲି ଏଗୁଡାକ କୁକୁର ଡାକ ଚିହ୍ନିପାରୁ ନାହାନ୍ତି । ତେଣୁ ମୋର

ମନେପଡିଗଲା – "ଆରେ ହେ, ସତେ ତ, ଏଠି ଗୋଟିଏ ହେଲେ ବାରବୁଲା କୁକୁର ଆଖିରେ ପଡିଲା ନାହିଁ – ହଉ ସେ ଅର୍ଥ ଚାହୁଁଚନ୍ତି ତ – ମୁଁ ଦଉଚି ତାଙ୍କୁ କାବା କରି ।"

'ମୁଁ ବିରାଡି ଡାକରେ ଭୁଆ ପରି ଶବ୍ଦ କଲି ।' ସେମାନେ ପୁଣି ଛାନିଆ ହେଲେ ।

ମୁଁ ଗାଈ ପରି ହମ୍ବାଳିଲି । ମହାବଳ ବାଘର ରଡି ଦେଲାବେଳେ ସେମାନେ ଛିନ୍ନଛତ୍ର ହୋଇ ଦୌଡିଲେ ।

ମୁଁ ହସି ହସି ଗଡିଗଲି ।

ସେମାନେ ପୁଣି ମୋ ପାଖକୁ ଆସିଲେ । ମୋ ଚାରିପଟେ ଘେରି ରହିଲେ – ତାଙ୍କ ଆଖିରୁ ମୁଁ ବାରି ପାରୁଥିଲି ଯେ ସେମାନେ ଡରି ଡରି ଆସିଥିଲେ । ଛାନିଆ ହୋଇଯାଇଥିଲେ । ଜଣେ ଭାରି ଚାଲାକିରେ ପଚାରିଲା –

"ଏ କ'ଣ ତୁମମାନଙ୍କର ଅଲଗ୍ ଅଲଗ୍ ଭାଷା ?"

ମୁଁ ଫେଚକାମି କରି ଦାନ୍ତ ନେଫେଡେଇ ମୁଣ୍ଡ ଟୁଙ୍ଗାରିଲି; ଜଣେ ପଛୁଆ ଭିଡ ଠେଲି ସାମ୍‌ନାକୁ ଚାଲିଆସିଲା, କହିଲା – "ତୁମ୍ ଆମକୁ ଠିକ୍ କଥା କହୁନାହଁ । ତୁମ ଭିତରର ହିସାବ ଅନ୍ୟ ପ୍ରକାର ବାହାରୁଚି ।" ଏହା କହି ସେ ତା' ଯନ୍ତ୍ରକୁ ବୋତାମ ଟିପି ଅନେଇଲା । ମୁଁ କିଛି କହିଲି ନାହିଁ ।

ସେ ପୁଣି କହିଲା, "ତା'ହେଲେ ତମେ ସେଇ ନିଷିଦ୍ଧ କଥା କହୁଚ ! ମିଛ କହୁଚ ?"

ମୋତେ ହସ ମାଡିଲା, ମୁଁ କହିଲି, "ଆରେ ମିଛ କ'ଣ, ସତ ପୁଣି କ'ଣ ?"

ଆଉ ଜଣେ ହମହମ ହେଇ ଆଗେଇ ଆସିଲା, କହିଲା, "ତୁମ୍ ଅଲଗ୍ ଅଲଗ୍ ଜାନୁଆର୍ ଶବ୍ଦ କଲ । ତୁମ୍ ନିଜେ ଜାନୁଆର ! ତମେ ପୁଣି ସେମାନଙ୍କ ଭାଷା କେମିତି ଜାଣିଲ ?"

ମୁଁ ଜାଣିଗଲି ଯେ ସେମାନେ ଯନ୍ତ୍ର ଭିତରେ ଓଡିଆକୁ ତର୍ଜମା କରି କହୁଛନ୍ତି । ତାଙ୍କ ଭାଷା କ'ଣ କେଜାଣି । ସେମାନେ ବୋଧେ ସେଇ ମହୁମାଛି ଭଳି ଗୁଣୁଗୁଣୁ ହୋଇ କଥା କହୁଛନ୍ତି । ମୁଁ କହିଲେ ସେମାନେ କେମିତି ବୁଝିବେ ଦେଖିବା !

"ତୁମେ ସବୁ କେଉଁ ଦେଶ ଲୋକ ? କେଉଁଠୁ ଆସିଚ ? ତୁମ ସାଙ୍ଗେ ବଡ ମଣିଷ କିଏ ଆସିଚି ନା ନାଇଁ ?"

ସେମାନେ ତାଙ୍କ ଯନ୍ତ୍ରକୁ କାନେଇ ରହିଥାନ୍ତି । ମୋ କଥା ଶୁଣି ସେମାନେ ଖୁବ୍ ଖୁସି ହେଲାପରି ଦିଶିଲେ । ତାଙ୍କ ଭିତରେ କ'ଣ ଆଲୋଚନା କରି କହିଲେ –

"ତୁମ୍ ଜୈସା ଲୋକ ନାହାନ୍ତି...ବହୁତ୍ ପୁରାନା କଥା...ଆମେ ତୁମକୁ ଆଉ ଛାଡିବ ନାହିଁ । ତୁମ୍ ଏ ଜାଗାର ସବୁ ପହଚାନ୍ ପାରୁଛ ?"

ମୁଁ ଦୋକାନ ଭିତରେ ଆଖି ପକାଇ ଆଣିଲି । ବଢିଆ ଜିନିଷ ସବୁ ରହିଛି । ଗୁଡିଏ ଜାମ୍ ବୋତଲ ଦେଖି ମୋ ମନ ସେଇଠି ଲାଗିଗଲା ।

ସେ ଆଗକୁ ଆସି ତା' ଯନ୍ତ୍ରକୁ ଚାହିଁଲା ଏବଂ କହିଲା, "ତୁମେ କ୍ୟା ଓ ସାମାନ୍ ଅପ୍‌ନା

ଭିତରେ ପୂରାଇବାକୁ ଚାହୁଁଛ ?" ମୁଁ ଅଳ୍ପ ହସିଲି । ଖାଇବା କଥାଟା ଏମାନେ କ'ଣ ଜାଣନ୍ତି ନାହିଁ ? – ମୁଁ ସେଥିରୁ ଗୋଟାଏ ଜାମ୍ ବୋତଲ ଧରି ଖୋଲିଲି । ସେମାନେ ଟଟସ୍ଥ ରହିଁରହିଲେ । ଥୋଡପାହାରରେ ଗୋଟାଏ ବରଡାଳ ଧରି ହାତୀ ଖେଳିଲା ଭଳି କୌତୂହଳ-ଜନକ ଘଟଣା । ଟାଙ୍କର ହୁଏତ ଧାରଣା ହେଉଥିବ ଯେ କାଚ ବୋତଲ ସମେତ ମୁଁ ସେ ସମଗ୍ର ବସ୍ତୁଟିକୁ ମୋ ଭିତରେ ପୂରେଇ ଦେବି ।

ମୁଁ ଆସ୍ତେ ଷ୍ଟୁଲରେ ଉଠି ଆଉ ଗୋଟିଏ ରୁଟି ଆଣିଲି । ଜାଣିଗଲି ଯେ ମୋତେ ଆଉ କାହାକୁ ଡରିବାକୁ ପଡିବ ନାହିଁ । ଏ ସମସ୍ତର ମାଲିକ ହେଉଛନ୍ତି ସେ ସୁନେଲି ରଙ୍ଗର କଣ୍ଢେଇମାନେ ।

ଗୋଟିଏ ବଟର୍ ଟିନ୍ କାଢିଲି । ଟିଣ କଟର୍ ଚାମୁଚ କାଢିଲି ସେଇ ଦୋକାନରୁ – ଅତି ଉତ୍ତମ ଭାବରେ ବସି ଜାମ୍ ବଟର୍ ଦେଇ ସୁନ୍ଦର ଭାବରେ ପାଉଁରୁଟି ସ୍ଲାଇସ୍‌ଗୁଡିକ ସଜେଇ ରଖିଲି ଗୋଟାଏ ପ୍ଲେଟ୍‌ରେ । ତା'ପରେ ସେମାନଙ୍କ ଆଡକୁ ହସି ହସି ପ୍ଲେଟ୍‌ଟିକୁ ଟେକି ଧରିଲି । ମୋ ଭିତର ହିସାବରୁ ସେମାନେ ବୁଝିଥିବେ ଯେ ମୁଁ ସେମାନଙ୍କୁ ଖାଇବାକୁ ନିମନ୍ତ୍ରଣ କରୁଛି ।

ସେ ସମସ୍ତେ ଘୁଞ୍ଚ ଘୁଞ୍ଚ ଗଲେ । ପାଳ ବିଣ୍ଡା ଭିତରେ ଗୋଟାଏ ନଡିଆ ପୂରେଇ ମାହୁନ୍ତ ହାତୀକୁ ଧରେଇ ଦିଏ । ଥୋଡପାହାରରେ ସେ ଅମୃତ ପିଣ୍ଡୁଳା ଧରି ହାତୀ ଝୁଲେ । ମୁଁ ସେମିତି ସେ ରୋଟି ପ୍ଲେଟ୍‌ଟିକୁ ଧରି ଦୋହଲିଲି ।

ତା'ପରେ ଗୋଟିଏ କରି ସାଣ୍ଡୱିଚ ନେଇ ଖାଇବା ଆରମ୍ଭ କଲି । ସେମାନେ ଯନ୍ତ୍ର ଟେକି ଅନେଇଲେ । ମତେ ଲାଗିଲା ସେମାନେ ଫଟ ଉଠାଉଥିଲେ । ମୋର ଭୋକ ବେଳାକୁ ଖାଦ୍ୟଟି ଏପରି ଉପାଦେୟ ହେଲା ଯେ ମୋ ଆଖି ବୁଜିହେଇ ଆସିଲା । ପରମ ସନ୍ତୋଷରେ ମୁଁ ସବୁଯାକ ଖାଇଗଲି । ଅଧ ଡିବାଏ ବଟର୍ ଏବଂ ଅଧବୋତଲ ଜାମ୍ ସେଥିରେ ସରିଗଲା । ସେ ସୁନେଲି କଣ୍ଢେଇ ସବୁ ଝଲମଲ ଦେଖାଗଲେ । ମୋ ଆଖିକୁ ନିଦ ମଡେଇ ଆସିଲା । ସେ ଦୋକାନର ଖୋଲା ଦୁଆରକୁ ସେମାନେ କ'ଣ ଗୋଟାଏ ଚିକ୍ ଚିକ୍ ଆଲୁଅରେ ରୁନ୍ଧିଲା ଭଳି ଲାଗିଲା, ଗୋରୁ ଗୁହାଳରେ ଅର୍ଗଳ ପକେଇଲା ପରି । ମୁଁ ଜମା ଖାତିର୍ ନକରି ସେଇ ଦୋକାନର ଗୋଟାଏ କୋଣରେ ଡେରାହୋଇଥିବା ଅନେକ ଗାଲିଚା ଭିତରୁ ଗୋଟିଏ ଛୋଟ ଗାଲିଚା ନେଇଆସି ବିଛେଇ ଦେଲି ଏବଂ ଚାରିକାତ ମେଲି ଶୋଇଗଲି । ମୋତେ କିଛି ସମୟ ମୋ ନିଜ ଘୁଙ୍ଗୁଡି ଶୁଣାଯାଉଥିଲା । ଚଉଁକିନା ମୋ ନିଦ ଭାଙ୍ଗିଗଲା । ମୋ ଡାହାଣ ପାଦରେ ମୁଁ ତୀବ୍ର ଯନ୍ତ୍ରଣା ଅନୁଭବ କଲି । ମୁଁ ଉଠି ବସିଲି ରାଜଧାନୀ ଷ୍ଟେସନ୍‌ର ସିମେଣ୍ଟ ବେଞ୍ଚ ଉପରେ । ମୋ ସାମ୍ନାରେ ଗୋଟାଏ ରେଳବାଇ କନେଷ୍ଟବଳ ଠିଆହେଇଥିଲା । ହାତରେ ଠେଙ୍ଗୁଣି । ଢିଲା ବେଲ୍‌ଟ । ଓହଳ ନିଶ । ମୋଠୁ ଦଶହାତ ଦୂରେଇ କାଳିଆ ନଙ୍ଗଳା ଚାରିଟା ପିଲା ଶିଆଳି ପତ୍ରରେ ଲାଗିଥିବା ଉପମା ପୋଛି ଖାଉଥିଲେ । ପାଖରେ ଦୁଇଟା ଧେଡିଆ କୁକୁର ରହିଁବସିଥିଲେ । ପୁଞ୍ଜାଏ କାଉ ବେକେଇ ଚାହୁଁଥିଲେ ସେ ଅଇଁଠା ପତ୍ରକୁ, ଜଣାପଡୁନଥିଲା ସେ ସମ୍ପତ୍ତିର ଅଧିକାରୀ ପ୍ରକୃତରେ କିଏ ।

ମୋ ଉପରେ କିନ୍ତୁ କନେଷ୍ଟବଳର ଅଧିକାର ଥିଲାପରି ଜଣାପଡୁଥିଲା । ମୁଁ ତାକୁ ମୋ ମୁଣ୍ଡତଳେ ଥିବା ମୁଣା ଭିତରୁ କାଢି ଟିକଟ ଦେଖେଇ ଦେବାରୁ ସେ ଗୋଟାଏ ହୁଁକାର କରି ଚାଲିଗଲା । ମୁଁ ଚାହିଁରହିଲି ଉଇଁଆସୁଥିବା ସୂର୍ଯ୍ୟଙ୍କୁ । ଗଛ ଶିଖ ଉପରକୁ ଆକାଶରେ ମେଘ ଖଣ୍ଡ ସୁନା ଛାଉଣି ହେଲାପରି ଦିଶୁଥିଲା ।

ମୁଁ ସେଇଠୁ ଆଖି ଓହରେଇ ଆଣି ସେଇ କାଳିଆ ପିଲାଙ୍କୁ ଚାହିଁରହିଲି । ମୋ ବୁକୁରେ ପବନ ଭରିଗଲା । ମନ ବଦଳେଇବାକୁ ମୁଁ ପ୍ଲାଟ୍‌ଫର୍ମର ଲୋକଗହଳିକୁ ଚାହିଁଲି । ମୋ ଚିରା ଜାମା କୋଟଟିଆ ପେଣ୍ଟକୁ ଚାହିଁଲି । ନାନା ପ୍ରକାର ଅଶ୍ଳୀଳ କୋଳାହଳ ଚାରିଆଡେ ହାଉ ହାଉ ହେଉଥିଲା । ମୁଁ ଦାନ୍ତ କଡମଡ କରି ତାଳୁଠାରୁ ତଳିପା ଯାଏଁ ଜଳି ଉଠିଲି କ୍ରୋଧରେ । ହାତ ମୁଠା ମୁଠା କରି ଭୂଇଁକୁ ଲାତ ମାରିଦେଲି । ମୋ ନିଜର ଏବଂ ମୋ ଚାରିଆଡେ ଅସଂଖ୍ୟ ମଣିଷ ଜୀବଜନ୍ତୁଙ୍କର କୁତ୍ସିତ ଦରିଦ୍ରତା, କ୍ଷୁଧାର ଅପମାନରେ ମୁଁ ଜଳି ଯାଉଥିଲି । ମୋ ଆୟତ୍ତରେ ଥିଲେ ମୁଁ ଏ ସମସ୍ତଙ୍କୁ ଏକାଥରେ ପୋଡି ପାଉଁଶ କରିଦିଅନ୍ତି ।

ସବୁ ରାଗ ରୋଷ, ଯାତନା ଭୋକ, ଦୁଃଖ ଅଭିମାନ, ଫେଣ୍ଟି ହୋଇଗଲା । ମୁଁ ମୁହଁ ଘୋଡେଇ ମାଇଚିଆ ପରି ଗୁଡାଏ କାନ୍ଦିପକେଇଲି ।

ମୁଁ ରାଜଧାନୀରେ ଗୋଟାଏ ପାଉଁରୁଟି କାରଖାନାରେ କାମ କରେ । ସବୁଦିନ ସୂର୍ଯ୍ୟୋଦୟବେଳେ ମୁଁ ସେ ଷ୍ଟେସନ୍ ପାଖ ଦୋକାନ ସାମନାରେ କିଛି ସମୟ ଠିଆହୁଏ । ମୋର ଏବେ ବି ଆଶା ଯେ ଏ ସହର ଦିନେ ସଂପୂର୍ଣ୍ଣ ନିର୍ଜନ ହୋଇଯିବ । ମହେଞ୍ଜୋଦାରୋର ଭଗ୍ନାବଶେଷ ପରି, ଦିନେ ସେ ସୁନା ରଙ୍ଗର ପିଲା କଣ୍ହେଇଙ୍କ ସହିତ ମୋର ପୁଣି ସାକ୍ଷାତ ହେବ । ସୂର୍ଯ୍ୟ ବି ଖୁବ୍ ଚମକିବ ସେଦିନ ସୁନା ଥାଳିପରି ।



## ନମାନିଲେ ପଥର

ସନ୍ଧ୍ୟା ଜମି ଆସିଲା ବେଳକୁ ସେଭଳି ଗୋଟିଏ ଅଘଟନକ ଖବର ପାଇ ମୁଁ ଚିଡି ଯାଇଥିଲି । ମୋ ଭିତରୁ ଗୁଡାଏ ଅଶ୍ଳୀଳ ପ୍ରତିବାଦ ଗବ୍ ଗବ୍ ଉତୁରି ଆସିଥାନ୍ତା । ହୁଏତ ହାତପାଆନ୍ତା ଦୁଇ ଚାରିଟା ଜିନିଷ ମୁଁ ଭାଙ୍ଗି ପକେଇଥାନ୍ତି । ସାର୍ଟରେ ବୋତାମ ଲଗେଇବାକୁ ଖାତିର ନକରି ମୁଁ ହୁଏତ ଖୁସି ହେଲାପରି ଘରୁ ନିରୁଦ୍ଦିଷ୍ଟ ବାହାରି ପଳେଇଥାନ୍ତି । ପଛରୁ ଯେ ଡାକିଲେ ସୁଦ୍ଧା ଶୁଣି ନଥାନ୍ତି । ରାସ୍ତାରେ ଖାଲି ପଇଡଟାକୁ ଖୁବ୍ ଜୋର୍‌ରେ ଲାତ ମାରି ଦେବାରୁ ହାୱାଇ ଚପଲ ଛିଣ୍ଡି ଯାଇଥାନ୍ତା । ଦାନ୍ତ କଡମଡ କରି ପବନକୁ ପ୍ରଚଣ୍ଡ ଘୁଷି ମାରିଦେଇ ଯାଇଥାନ୍ତି ।

ଏସବୁ କିଛି ହେଲା ନାହିଁ । ମୁଁ କେବଳ ଦାନ୍ତକୁ ଦାନ୍ତ ଚାପି ତଳକୁ ଚାହିଁ ବସି ରହିଲି । ବୈଠକଘରର ସୀମିତ ଆଲୁଅରେ ପାଖ ବଖରାର ଘଣ୍ଟା ଶବ୍ଦ ମିଶିଯାଉଥିଲା । ମୋ ପତ୍ନୀ ଖବରଟିକୁ ଦୋହରାଇଲେ – "ବୈଦ୍ୟନାଥଜୀ ଏଇ ଘଣ୍ଟାକ ଭିତରେ ଆସି ପହଞ୍ଚିବେ ।" "କାହିଁକି ପହଞ୍ଚିବେ...କିଏ ଡାକିଥିଲା ତାଙ୍କୁ...ଏଇଟା କ'ଣ ଧର୍ମଶାଳା ନା-ବସ୍‌ଷ୍ଟାଣ୍ଡ...ଯେ ମନ ସେ ଯେତେବେଳେ ଇଚ୍ଛା ସେତେବେଳେ ଆସି ଏଠି ପହଞ୍ଚିଯିବ ! ରାତି ଆଠଟାରେ ଆସି ଅଘଟନକ କାହାଘରେ ପହଞ୍ଚିବା କୋଉ ପ୍ରକାର ଭଦ୍ରତା !...ମୋ ତୁଣ୍ଡରୁ କିନ୍ତୁ କୌଣସି ଶବ୍ଦ ବାହାରିଲା ନାହିଁ । ପତ୍ନୀ ପୁଣି କହିଲେ, "ସେ ତ କିଛି ଖାଆନ୍ତି ନାହିଁ । ରାତିରେ କେବଳ ଫଳ ଖାଆନ୍ତି । ଠା ଟିକିଏ ଦେଲେ ହୁଏତ ଖାଇ ପାରନ୍ତି । ତମେ ଏଥର ଉଠ...ପ୍ରସ୍ତୁତ ହବ ନା ନାଇଁ ଏମିତି ଭାଗ୍ୟ କ'ଣ ସବୁବେଳେ ମିଳେ । ନିଜ ଘରେ ତାଙ୍କ ପାଦ ପଡିବ ବୋଲି ଶହ ଶହ ଲୋକ ଟାକି ବସିଛନ୍ତି । ସେ କିନ୍ତୁ ଆଗ ଚାହିଁଛନ୍ତି ଏଇଠି ରହିବେ ବୋଲି ।"

ସେ ବୋଧେ କୃତଜ୍ଞତାରେ ଗଦ୍‌ଗଦ୍ ହୋଇ ଆଖି ବୁଜି ପ୍ରଣାମ କଲେ । ମୁଁ ତାଙ୍କ ଆଡେ ଦେଖି ନାହିଁ । ସେଥିରୁ ଗୋଟେ ବାଆଜିର କାଇଁକି ମନହେଲା ଆମକୁ ଆସି ଏ ରାତିରେ କୃତାର୍ଥ କରିବାକୁ ? ଶାଳା, ହାରାମି, ଆଉ ଲୋକ ପାଇଲା ନାହିଁ । ଏଇ ମାଇକିନା ତାକୁ ନିଶ୍ଚେ ଡାକିଛି । ନହେଲେ ସେ କାହିଁକି ଉପରେ ପଡି ଆସିଥାନ୍ତା !...କାଇଁକି ଡାକିଚି ?

ମୁଁ ସ୍ପ୍ରିଙ୍ଗଚାକୁ ଫିଟିଲା ପରି ଠିଆହୋଇ ପଡିଲି । ମୋ ଆଖି ବୋଧେ ତହକୁ ଥିଲା । ମୁହଁ ଫଣା ହୋଇ ଉତୁରିପଡୁଥିଲା ରାଗରେ । ମୁଁ ପାଟି ଫିଟେଇ କହିଲି "କିଏ ଶାଳା ଆସୁ ଅଥବା

ଯାଉ, ସେଥିରେ ମୋର କିଛି ଯାଏ ଆସେ ନାହିଁ । ମୁଁ ଏସବୁ କେଆର୍ କରେନା । ତମେ ତମର ସାଧୁବାବାଙ୍କୁ ନେଇ କ'ଣ କରୁଚ କର – ମୋର ବେଳ ନାହିଁ ।"

ସେ ଆଦୌ ବିଚଳିତ ନହୋଇ ସାପୁଆ ପଦ୍ମତୋଳା ବୋଲିଲା ପରି ଧୀରେ କହିଲେ, "ଏମିତି କ'ଣ ଅବୁଝା ହଉଚ ମ ! ମୁଁ କ'ଣ କହୁଚି ତମେ ତାଙ୍କୁ ସାଧୁବାବ ବୋଲି ମାନି ଯାଅ ! ମୁଁ ଖାଲି କହୁଚି ଯେ ଆମେ ସହରରେ ଘର କରିଚେ । ଆମ ବନ୍ଧୁ କୁଟୁମ୍ବୀ ସାଙ୍ଗସୁଖ ହଠାତ୍ ପହଞ୍ଚିଗଲେ ଆମେ ପୁଣି ତାଙ୍କ ପାଇଁ ବନ୍ଦୋବସ୍ତ କରିଚେ ନା ନାହିଁ ? ତମର ମାଉସୀଝିଅ ଭଉଣୀଙ୍କ ବର ସେଦିନ ଅଧା ରାତିକୁ ଆସି ଯାହା ଜିଦ୍ କଲେ ତମେ କ'ଣ ଜାଣିନାହଁ ? ସେଇ ଅସମୟରେ ତ ପୁଣି ତମେ ଯାଇ ତାଙ୍କ କହିବା ଜିନିଷ କିଣି ଆଣିଲ ! ସେଥିରେ ଅବଶ୍ୟ ତୁମର ଭାଗ ଥିଲା । ଦିହେଁ ମିଶି ରାତି ଦୁଇଟା ଯାଏଁ ପିଇଲ ! ପଚାରିଲାରୁ କହିଲ ଅତିଥି ହେଉଛନ୍ତି ସ୍ୱୟଂ ଭଗବାନ, ତାଙ୍କ ସେବା କରିବା ଆମର ଧର୍ମ !...ମୁଁ ଯୁକ୍ତି କରୁନାହିଁ, ମୁଁ ଖାଲି ମନେପକେଇଦଉବି ।"

ଚିକ୍କଣ ନାଇଲନ୍ ଜାଲଟି ଖୁବ୍ ସରୁ ଆଉ ହାଲୁକା କିନ୍ତୁ ଦୁର୍ଭେଦ୍ୟ । ମୋତେ ସେ ଆସ୍ତେ ଆୟତ୍ତ କରିନେଲେ । ମୋ ହାତରେ ଝୋଲା, ପକେଟରେ ତିରିଶଟା ଟଙ୍କା ଏବଂ ସ୍କୁଟର ଚାବି ଧରେଇଦେଇ ମୁହଁକୁ ଚାହିଁ ହସିଲେ । ମୁଁ କିନ୍ତୁ ଖୁବ୍ ଗମ୍ଭୀର ରହି ପାହାଚ ଓହ୍ଲେଇଗଲି ବାଆଜୀ ପାଇଁ ସାମଗ୍ରୀ ଯୋଗାଡ଼ିବାକୁ ।

ମୁଁ ଚାହୁଁନଥିଲି କାଶ୍ମିରୀ ସେଉ କିମ୍ବା ମଞ୍ଜିନଥିବା ଚମନ୍ ଅଙ୍ଗୁର କିଣିବା ପାଇଁ; କିନ୍ତୁ ତାହାହିଁ ମିଳିଲା । ଦ୍ୱିତୀୟ ବା ତୃତୀୟ ଶ୍ରେଣୀର ଶସ୍ତା ଜିନିଷ ଖୋଜିଲେ ବି ମିଳିଲାନି । ମୁଣ୍ଡି ପଚିଯାଇଥିବା ଜାମୁକୋଳିଆ ଖଟା ଅଙ୍ଗୁର ତାଟରୁ ମାଛି ଓଡେଇ ଅଧକେଜି ନେଇଯାଇଥାନ୍ତି, ସତର ବଙ୍କା ଧରିଥିବା କଡକଡିଆ ଖଟାଳିଆ ସେଉ ବି ଉଠେଇ ନେଇଥାନ୍ତି । କିନ୍ତୁ ବାବାଜିର ଭାଗ୍ୟ ଭଲ – ସେପରି ଜିନିଷ ଖୋଜି ଖୋଜି ପାଇଲି ନାହିଁ । ଆହୁରି ଆଶ୍ଚର୍ଯ୍ୟ କଥା ହେଲା ଯେ, ଆନ୍ଧ୍ର ମୁଲକର ଶସ୍ତା କାର୍ବାଇଡ୍ ପଚା ଆମ୍ବିଳା ଠୁସି କଦଳୀରେ ବଜାର ଫାଟିଯାଉଥାଏ । ସେଦିନ ବଡବଜାର ବନ୍ଦ । ଜଣେ ବୁଢ଼ୀ ବସିଥାଏ ଗୋଟିଏ ଫେଣା ଦିବ୍ୟ ଚନ୍ଦନପୁରୀ ଧରି । ଗଛ ପାଚିଲା ବାଦଶାହୀ କଦଳୀ ଚାରିଟାକୁ ପାଞ୍ଚଟଙ୍କା !

ଦାମ ସାହୁ ମିଠାବାଲା ଦୋକାନ ବନ୍ଦ କରି ଆସୁଥିଲା । ମୁଁ ଗୋଟାଏ ନିରସ ନିଦୁଆ ସ୍ୱରରେ ପଚାରିଲି – କ'ଣ ମିଠା ଅଛି ?...ଏତିକି ଶୁଣି ଦଉ ଦଉ ଦାମିଆ ପରମ ଉତ୍ସାହରେ କହିଲା, "ସାର୍ କି ବଢ଼ିଆ ଜିନିଷ, ଖାସ୍ ଆପଣଙ୍କ ପାଇଁ ହେଇଚିବୋଲି ଜାଣନ୍ତୁ...ସୀତାଭୋଗ...ଅତି ବଢ଼ିଆ ମାଲ୍ !" – ସେ ମୋର କୌଣସି ପ୍ରତିବାଦକୁ ନମାନି ଅଧକେଜି ସୀତାଭୋଗ ମୋ ଝୋଲା ଭିତରେ ରଖୁ ରଖୁ କହିଲା, "ଦେଖିବେ ସାର୍ ଏ ଜିନିଷ କ'ଣ ! ଦେବ-ଭୋଗ୍ୟ ହେଇଚି ପରା ।"

ମୁଁ ଏଇଠି ମନେ ମନେ ରାଗିଗଲି । ଶାଳା ବାଆଜୀ ପାଇଁ କ'ଣ ଛାଏଁ ଛାଏଁ ସାରା ସଂସାର ଥାକମରା ମହୁଫେଣା ପରି ଖଞ୍ଜି ହୋଇଯିବ ? ଗଛ ନଇଁ ଆସି ଫୁଲ ଅଜାତି ଦେବ ? ଫଳ ବାଢ଼ି

ଥୋଇଦେବ ? ଦୁଆରେ ଠିଆହେବା ମାତ୍ରେ ସାହାଣ ମେଲା ହୋଇଯିବ ? ଶାଲା, ଏ କ'ଣ ବାଦଶା ହେଇଚି ?

ପଇସା ପୂରେଇ ମୁଁ ଘରମୁହାଁ ବାହାରିଲି । ସମୟ ପାଖାପାଖି ରାତି ନଅଟା । ନଅଟା ମୋ ଖାଇବାବେଳ । ମୋର ମନେହେଲା ଯେ ସେଭଳି ଚମତ୍କାର ଖାଇବା ଜିନିଷ ଆଉ ଜଣକ ପାଇଁ ବୋହିନେବା ଏବଂ ନିଜେ ଭୋକରେ ରହିଥିବାଠାରୁ ବଳି ବେକୁବ୍ କାମ ଆଉ କ'ଣ ଥାଇପାରେ କିନ୍ତୁ ସେ ଶାଲା ବୈଦ୍ୟନାଥଜୀ କିଏ ସେ ମୋ ଘରେ ଅଏସ୍ କରିବାକୁ ? କିଏସେ ମୋତେ ଆଡ କରି ନିଜେ ମାଲିକାନାର ମୁକୁଟ ପିନ୍ଧିବାକୁ ? ସେ କ'ଣ ଯା ଭିତରେ ଆସିସାରିଥିବ ? ଘରେ ତ ମୋ ସ୍ତ୍ରୀ ଏକୁଟିଆ – କୋଉଠି ଯାଇ ବସିଥିବ କି ଶୋଇଥିବ ସେ ବାଆଜୀ ? ମୁଁ ସ୍କୁଟରକୁ ଦାବି ଦେବାରୁ ଘାଇଁ ଘାଇଁ ଶବ୍ଦ ହେଲା । ଗୋଟାଏ ନିଛାଟିଆ ଅଞ୍ଚଳ ପାରିହେଲା ବେଳେ ମୁଁ ଅଗତ୍ୟା ଗାଡି ରୋକିଦେଲି । ମୋତେ ଅସୁସ୍ଥ ଲାଗୁଥିଲା । ପରିସ୍ରା ମାଡୁଥିଲା । ଗଛ ପାଚିଲା ଚନ୍ଦନପୁରୀ ମହ ମହ ବାସୁଥିଲା । ମୁଁ ଆସ୍ତେ ହାତ ପୂରାଇ ଗୋଟିଏ କଦଳୀ ଭାଙ୍ଗି ଆଣିଲି । ମଲ୍ଲୀଫୁଲ ଡେମ୍ଫରୁ ଖସିଲା ପରି କଦଳୀଟି ଫେଣାରୁ ଝଡିପଡିଲା । ମୁଁ ଠିଆଠିଆ ସେ ଗୋଟିକ ଅତି ଆନନ୍ଦରେ ଖାଇଦେଇ ଆଉ ଗୋଟିକୁ ହାତ ବଢେଇଲି । – ନା' ଥାଉ ! ଯଦି ଏକାଠି ଖାଇବାକୁ ପଡେ ଜଣ ପିଛା ଅନ୍ତତଃ ଗୋଟିଏ କଦଳୀ ଥିବା ନିହାତି ଦରକାର ।

ତା'ପରେ ମୁଣାରେ ପଶିଥିବା ହାତକୁ କଦଳୀଠୁ ଓହରେଇ ଆଣିଲି ସତ; କିନ୍ତୁ ପଦାକୁ କାଢି ପାରିଲି ନାହିଁ । ସୀତାଭୋଗରେ ଆସ୍ତେ ସାଉଁଳାଇ ଆଣିଲି । ଟିକିଏ ଇତସ୍ତତଃ କରି ପାକେଟ୍‌ଟିକୁ ଉଠେଇ ଆଣିଲି ଉପରକୁ । ହଁ, ଏଥିରୁ ଟେଳାଏ ଖାଇନେଲେ କ'ଣ ଏସବୁ ଅଇଁଠା ହେଇ ଯାଉଚି ? – ଦୋକାନୀ ତ ପୁଣି ଅନ୍ୟମାନଙ୍କୁ ଖାଇାବକୁ ଦେଉଚି ଏବଂ ବଳକାରୁ ବିକୁଚି ! ଛେନା ତିଆରି ସୀତାଭୋଗଟି ସିମେଇ ହାଲୁଆ ଭଳି, କିନ୍ତୁ ସଞ୍ଚ ପାଲୁଅ ଝରା ପାଖାପାଖି ଦେଖିବାକୁ ।

ସେଥିରୁ ଗୋଟିଏ ଗୁଳା ମୁଁ ପାଟିରେ ପକେଇ ଦେବାକୁ ହାତରେ ଧରିଛି – ଏତିକି ବେଳେ ଠପ୍‌କିନା ଆଲୁଅ ଚାଲିଗଲା ସେ ସମଗ୍ର ଅଞ୍ଚଳରୁ । ମୁଁ ଚମକିପଡିଲି । କେଡେ ବଡ ଅନ୍ଧାରଟା ମୋତେ ଛପ୍‌କିନା ଧରିନେଲା ! ସୀତାଭୋଗ ଦିଶୁ ନଥିଲା, କିନ୍ତୁ ତା'ର ସ୍ନିଗଧ କୋମଳ ସ୍ପର୍ଶ ମୁଁ ପାଉଥିଲି । ତା'ର ବାସ୍ନା ମୋ ନାକରେ ବାଜୁଥିଲା । ମୁଁ ସେ ଅନ୍ଧାରରେ ଟାଙ୍କୁରି ଉଠିଲି ଥରେ ଦି'ଥର । ଏଇ ତ ପ୍ରକୃଷ୍ଟ ସମୟ ସେ ମହାର୍ଘ ପଦାର୍ଥକୁ ନିଶ୍ଚିନ୍ତ ଭୋଗିବା ପାଇଁ । ମୁଁ ଲାଳାୟିତ ହୋଇଉଠିଲି । ମୋର ଇଚ୍ଛା ହେଲା ସେ ସମସ୍ତ ଅଧକିଲୋଗ୍ରାମ୍ ପଦାର୍ଥକୁ ଭୁଞ୍ଜିଯିବାକୁ । ମୁଁ ହାତ ଉଠାଇଲା ବେଳକୁ କାହିଁକି କେଜାଣି ନନାଙ୍କ କଥା ମନେପଡିଗଲା । ସେ କହୁଥିଲେ, "ଆରେ ରହ ! ଅନ୍ଧାରରେ ଖା'ନା । ତୋ କାନ୍ଧରୁ ଓହଳି ରହି ପିଶାଚ ଖାଇଯିବ ସେ ସବୁ !" – ମୁଁ ଅନ୍ଧାରରେ ଶୀତେଇ ଗଲି । ମୋ ହାତରୁ ସୀତାଭୋଗ ଖସି ପଡିଲା ।

ଆଲୁଅ ବି ଆସିଗଲା । ମୁଣା ମୁହଁ ବନ୍ଦ କରି ମୁଁ ସ୍କୁଟର ଧରିଲି । ଶାଲା ବାଆଜୀର ଭାଗ୍ୟ

କି ତେଜ୍! ତା'ର ଏତେ ଟିକିଏ କିଛି ହେଲେ ବଙ୍କା ଧରୁ ନାହିଁ । ...ହଉ, ଦେଖାଯାଏଗା!

ଘରେ ପହଞ୍ଚିଲା ବେଳକୁ ସବୁ ଚୁପ୍‌ଚାପ୍ । ସବୁ ବଖରାରେ ଆଲୁଅ । ବାଟ ଘରେ ସୋଫା ଉପରେ ମୋ ସ୍ତ୍ରୀ ବସିଥାନ୍ତି । ଗାଧୋଇ ପକେଇଥାନ୍ତି ବୋଧେ । ଖୁବ୍ ପରିଷ୍କାର, ସଜଫୁଲ ପରି ତାଜା ଦେଖାଯାଉଥାନ୍ତି ।

ମୁଁ ପ୍ରୟୋଜନରୁ ଅଧିକ ମିନିଟିଏ ଚାହିଁ ଠିଆହେବାରୁ, ସେ ହସି କହିଲେ, "ଏମିତି କ'ଣ ନଦେଖିଲା ପରି ଅନେଇଚ ? ଦେଖି କ'ଣ ମିଳିଲା ?"

ମୁଁ ତାଙ୍କ ହାତକୁ ବେଗ୍‌ଟା ବଢ଼େଇଦେଇ ପାଖ ସୋଫାରେ ଦୁମ୍ କିନା ବସିଗଲି । ଖାଇବା ଟେବୁଲ ପାଖରୁ ସେ କହିଲେ – ଭାରି ସୁନ୍ଦର କଦଳୀ ହେଇଚି – ଆଉ ଗୋଟିଏ ଆଣିଲ ନାଇଁ! ଏମିତି କଦଳୀ ସେ ଭାରି ଭଲ ପାଆନ୍ତି । ମୁଁ କିଛି କହିଲି ନାହିଁ । ଏ କଦଳୀ ତ ସମସ୍ତେ ଭଲପାଆନ୍ତି । ସେ ଭଲପାଇବାଟା କ'ଣ ଏଠି ଗୁରୁତ୍ୱପୂର୍ଣ୍ଣ । ମୁଁ କ'ଣ ଭଲ ପାଏନାହିଁ ? ଚାରୋଟି ଯାକ କଦଳୀ ଖାଇଦେଇଥିଲେ ସତେ ଭଲହେଇଥାନ୍ତା । ଗୋଟାଏ ଅରମାନ ମେଣ୍ଟିଯାଇଥାନ୍ତା ।

କହିଲି – "ଏ ତିନିଟି କଦଳୀ କ'ଣ କମ୍ ହେଲାଣି! ଓଜନ କଲେ ସାତଶ ପଚାଶ ଗ୍ରାମ୍ ଉପରେ ହେବ – ଏ ତିନୋଟି ଖାଇଦେଲେ ରାତିରେ ଆଉ କିଛି ଖାଇବା ପ୍ରୟୋଜନ ନାହିଁ ।"

ଏ କଥାରେ ବି ମୋ ସ୍ତ୍ରୀ କୌଣସି ଉତ୍ତର ଦେଲେ ନାହିଁ ।

"କିଓ, ରାତି ଆସି ଦଶଟା ହେବାକୁ ଯାଉଛି – କାହାନ୍ତି ତମ ସାଧୁବାବା ? ଆମେ ପୁଣି ଖିଆପିଆ କରିବା ନା ତାକୁ ଚାହିଁ ବସିଥିବା ?"

ମନେହେଲା ସତେ ବା ଶିବ ଦର୍ଶନ ନ କରିବା ଯାଏଁ ଜଳ ସ୍ପର୍ଶ କରିବା ମନା । ଅବଶ୍ୟ ଅପେକ୍ଷା କରିବା ଦାୟିତ୍ୱ ମୋ ସ୍ତ୍ରୀକୁ ଛାଡି ଦେଇ ମୁଁ ଏକୁଟିଆ ଖାଇ ଦେଇ ଶୋଇ ପାରିଥାନ୍ତି । କିନ୍ତୁ କେଜାଣି କାହିଁକି ମୁଁ ସେତେ ସାହସ କରିପାରି ନଥିଲି । ଧରାଯାଉ ମୁଁ ଏଗାରଟା ବାରଟା ବେଳକୁ ଶୋଇ ଯାଇଚି । ସେ ସାଧୁ ଆସି ପହଞ୍ଚିଚି । ଗେରୁଆ ନିଶ୍ଚୟ ପିନ୍ଧିଥିବ । ଦାଢ଼ି ରଖିଥିବ, କଳା ମଚ ମଚ । ଆଖି ଗୁଡାକ ଦାଉ ଦାଉ । ଦାନ୍ତ ଦାଉ ଦାଉ । ଗେଟ୍‌ମା ଗୋରା ଚଉକସ୍ ମଣିଷଟା । ବୟସ ଦେଖିଲେ ପଁଚିଶ୍ ଚାଳିଶ – କିନ୍ତୁ ଭକ୍ତମାନେ କହୁଥିବେ ଯେ, ତାଙ୍କୁ ଏ ଫଗୁଣକୁ ତେୟାନବେ ପୂରିଯିବ । କାହିଁ କେଉଁ କାଳର ସିଦ୍ଧ ପୁରୁଷ । ଆଜନ୍ମ ବ୍ରହ୍ମଚାରୀ । ଅନେକ ନାରୀଭକ୍ତଙ୍କ ଭିଡ ହେଉଥିବ । ସେ ଗହଳି ଭିତରେ ମୋ ସ୍ତ୍ରୀ ପାତଳ ଛିଟ ଶାଢୀ ପିନ୍ଧି ବାରି ହୋଇଯାଉଥିବ । ମୋର ଗର୍ବ, ତା' ଭଳି ଚେହେରା ହଜାରକେ ଗୋଟିଏ ମିଳିବା କଷ୍ଟ ।

ସେଥିପାଇଁ ସାଧୁବାବା ଆମ ଘରେ ଅତିଥି ହେବାକୁ ମନ କରିଥାଇ ପାରନ୍ତି ।

"ଆଚ୍ଛା, ଆମେ ଚାଲ ଖାଇ ନେବା । ତାଙ୍କ ପାଇଁ ତ ଫଳ, ମିଠା ଅଛି, ସେ ଆମ ସାଙ୍ଗେ ଖାଇବାର କୌଣସି କାରଣ ନାହିଁ । ସେ କ'ଣ ଏକୁଟିଆ ଆସିବେ ନା ଆଉ କିଏ ଆସିବେ! ସେ ତ ଖିଆପିଆ କରି ଫେରିଯିବେ ବସାକୁ ନା ଏଇଠି ରାତ୍ରିଯାପନ କରିବାର ଯୋଜନା କରିଛନ୍ତି ?"

ମୁଁ ବିନା କାରଣରେ କଥା ମଝିରେ ଖେଁ ଖେଁ ହସି ଛିଡା ହେଲି । ମୋ ସ୍ତ୍ରୀଙ୍କ କାନ୍ଧରେ

ହାତ ଉଠାଇ ଟାଙ୍କୁ ଡାଇନିଂ ଟେବୁଲ ଆଡକୁ ଚଳେଇ ନେଲି । କହିଲି, 'ଖାଇଦେଲେ ଭକ୍ତି ଊଣା ହୋଇଯାଏ ! – ଚାଲ, ଖାଇଦେବନାହିଁ !'

ସେ ନୀରବ ରହି ପ୍ଲେଟ ଥୋଇଲେ । ମନେହେଲା ସେ ହୁଏତ ବାଧ ହୋଇ କୌଣସି କାର୍ଯ୍ୟ କରୁଛନ୍ତି – ସେଥିରେ ତାଙ୍କର ଆଦୌ ମନ ନାହିଁ । ଦେଖାଗଲା ଯେ ସେ କେବଳ ମୋ ପାଇଁ ବାଢିବା ବ୍ୟବସ୍ଥା କରୁଛନ୍ତି ।

"କିଓ ତମେ ଖାଇବ ନାଇଁକି ?" ସେ ଅଳ୍ପ ହସି ଉଦାସ ଢଙ୍ଗରେ କହିଲେ, 'ତମେ ଖାଇନିଅ । ତୁମର ଖାଇବା ବେଳ ବି ଗଡି ଗଲାଣି ।" ତା'ପରେ ମୋ ଆଖିକୁ ଚାହିଁ ଭିନ୍ନ ସ୍ୱରରେ କହିଲେ, "ତମେ ଟିକିଏ ଭୋକ ଆତୁରିଆ ତ" । – ଆଉ ଦିନେ ହୋଇଥିଲେ ମୁଁ ତା'ର ଉତ୍ତର ଦେଇଥାନ୍ତି । ମୁଁ ହାତ ଆଙ୍ଗୁଠିକୁ ଜୋର୍‌ରେ ଛନ୍ଦି ପାଟି ପାଖରେ ଦାବି ରଖିଲି ଏବଂ ଚାହିଁ ରହିଲି ଛେନା ମଟର ପରଷୁଥିବା ତାଙ୍କର ସୁନା କଙ୍କଣ ପିନ୍ଧା ଚିକ୍‌କଣ ହାତକୁ ।

ବାଢିସାରି ସେ ସାମନା ଚୌକିରେ ବସିଲେ ଏବଂ ମୁଁ କୌଣସି ଦ୍ୱିଧା ନରଖି ରୁଟି ତର୍କାରି ଖାଇଗଲି । ମୋତେ ଭୋକ ତ' କରୁଥିଲା । ଆମ ଭିତରେ କିଛି କଥାବାର୍ତ୍ତା ହୋଇପାରିଲା ନାହିଁ । ମଝିରେ ସେ ଆଉଥରେ ତର୍କାରି ବାଢିଦେଲେ । ମୁଁ ସେତକ ବି ଖାଇଗଲି । ସତେବା ମୋ ସ୍ୱୀ ପାଇଁ ଆଉ କିଛି ଅଛି ନଅଛି ବୁଝିବା ମୋର ଦାୟିତ୍ୱ ନୁହେଁ – ସେ ଖାଇବା ନଖାଇବା ମୋର ଦାୟିତ୍ୱ ନୁହେଁ । ମୁଁ ହାଉଁ ହାଉଁ ଖାଇଯାଉଥିଲି, ଭୋକରେ, କ୍ରୋଧରେ, ଅଭିମାନରେ, ଦଣ୍ଡଦେବା ଭଙ୍ଗୀରେ ! ଗୋଟିଏ ସମୟରେ ସେ ଚନ୍ଦନପୁରୀ କଦଳୀ କଥା ମୋର ମନେପଡିଥିଲା – ମୁଁ ଖାଇସାରି ସେମିତି ନୀରବ ହାତ ଧୋଇ ଏବଂ ଟାୱେଲରେ ମୁହଁ ପୋଛି ଆଗେଇ ଗଲି ଶୋଇବା ବଖରା ଆଡକୁ । ଆଶା କରୁଥିଲି ଯେ ସେ ବୋଧେ ପଛରୁ ନିଶ୍ଚୟ ଡାକିବେ, କିନ୍ତୁ ନା' – ସେ ମାଇକିନା କାହିଁକି ସତେ ଡାକିଥାନ୍ତା ? ସେ ତ ଆଉ ଗୋଟିଏ ନିଶାରେ ମସ୍‌ଗୁଲ ଥିଲା !

ମୁଁ ନିଜେ ଫେରିଆସି ସୋଫା ସାମ୍‌ନାରେ କହିଲି, "ଆଚ୍ଛା, ସେ କ'ଣ ମୋତେ ଖୋଜିପାରନ୍ତି ?"

ମୋ ସ୍ୱୀ କୌଣସି ଉତ୍ତର ନଦେଇ ଉଦାସ ଭଙ୍ଗୀରେ ଚାହିଁ ରହିଲେ ଗୋଟିଏ ଦିଗକୁ ।

ମୁଁ ପୁଣି ବେଖାତିର୍ ପାଦ ବଢାଇଲି ଭିତର ଘରକୁ । ସାଢେ ଏଗାରଟା ଆମ ଘରେ ଢେର୍ ରାତି ।

ଘଣ୍ଟି ବାଜି ଉଠିଲା । ମୁଁ ଯେଉଁଠି ସେଇଠି ଥମିଗଲି । ମୋ ସ୍ୱୀ ବୋଧେ ଚମକି ଉଠିପଡିଲା । ଧଡପଡ ଯାଇ କବାଟ ଖୋଲିପକାଇଲେ । କି ଆତୁର ପ୍ରତୀକ୍ଷା ସେ କରିଥିଲେ ସତେ ! ସେ କ'ଣ ମୋ ପାଇଁ କେବେ ସେପରି ଅପେକ୍ଷା କରିଛନ୍ତି ଆମର ଦଶବର୍ଷର ସମଗ୍ର ବିବାହିତ ଜୀବନରେ – ମୁଁ ଥରେ ଘଣ୍ଟିମାରି କେତେବେଳେ ଦୁଆର ଖୋଲିବାର ମୋର ମନେନାହିଁ ତ !

ମୁଁ କେଜାଣି କେମିତି ଚାରିଖୋପାରେ ମୋ ସ୍ୱୀ ପଛରେ ଯାଇ ଠିଆହୋଇଗଲି – କବାଟ ଫିଟିଥିଲା । ବାରନ୍ଦା ଆଲୁଅରେ ପଚିଶ ତିରିଶ ବର୍ଷର ତରୁଣ । ଧଳା ଧୋତି ଆଉ ଚାଦର ।

ବୋଧେ ଶିଷ୍ୟ ହେଇଥିବ । ବେକୁବ୍ କାହାଁକା ?

"ଆଜି ବୈଦ୍ୟନାଥଜୀ ଆସିପାରିବେ ନାହିଁ । ଯଦି ସମ୍ଭବ, ରାତିଟା ତାଙ୍କ ପାଖେ ରହିବାକୁ..."

"ଷ୍ଟୋପବେ..." ମୋ ଭିତରୁ ଗୋଟାଏ ଗର୍ଜନ ବାହାରି ଆସିଲା ମୋର ଅଣାୟତ୍ତରେ । ସେ ଦୁହେଁ ଚମକି ପଡିଲେ । ମୁଁ ଜ୍ୱାଳାମୁଖୀ ପରି କମ୍ପିତ ଘର୍ମାକ୍ତ ହୋଇଯାଇଥିଲି ମୁହୂର୍ତ୍ତକରେ ।

ସେ ପୂର୍ବ ପରି ସ୍ଥିର ସ୍ୱରରେ କହିଲେ – ରାତିଟା ତାଙ୍କ ପାଖେ ରହିବାକୁ ମୋତେ ଫେରିଯିବା ପାଇଁ କହିଛନ୍ତି...ଆଉ ଏ ପ୍ରସାଦ ତୁମ ଦୁହିଁଙ୍କ ପାଇଁ ପଠାଇ ଦେଇଛନ୍ତି । ପଛକରି ରଖିଥିବା ହାତ ସାମ୍ନାକୁ ଆଣି ସେ ଚାରିଟି ଚନ୍ଦନପୁରୀ କଦଳୀ ବଢାଇଦେଲା ।

ମୋ ସ୍ତ୍ରୀକୁ ଏବଂ ମୋତେ ସ୍ୱତନ୍ତ୍ର ଭାବରେ ହାତ ଯୋଡି ନମସ୍କାର କରି ଅଳ୍ପ ହସିଦେଇ ରାସ୍ତାକୁ ଓହ୍ଲେଇଗଲା । ବଟୀଖୁଣ୍ଟ ପାରି ହୋଇ ଅନ୍ଧକାରକୁ ପଶିଗଲା । ପଛକୁ ଫେରି ଚାହିଁଲାନାହିଁ ।

ମୋ ସ୍ତ୍ରୀ ମୋ ସାମ୍ନାରୁ ଆସ୍ତେ ମୋତେ ଆଡ ହୋଇ ଘୁଞ୍ଚିଗଲେ ଘରେ ଭିତରକୁ । ମେଲା ଦ୍ୱାର ବୋଧେ ମୋତେ ହିଁ ବନ୍ଦ କରି ଭିତରୁ ଅର୍ଗଳ ଦେବାପାଇଁ ଛାଡିଦେଇଗଲେ ।

ମୁଁ କିଛି ସମୟ ସେଇଠି ସେମିତି ଠିଆ ରହିଗଲି । ମୋ ଭିତର ମନ୍ଥି ହୋଇ ପାଣି ଟଳମଳ କରୁଥିଲା ଆଖି ଦାଢରେ । ନାକପୁଡା ଜଳୁଥିଲା, ଓଠ ବିନ୍ଧୁଥିଲା । ମୋର ସାହସ କୁଳଉ ନଥିଲା ମୋ ସ୍ତ୍ରୀଙ୍କୁ ସାମ୍ନାସାମ୍ନି ଚାହିଁବା ପାଇଁ ।

ଦ୍ୱାର ସେମିତି ମେଲା ରଖି ମୁଁ ଟଳମଳ ପାଦରେ ଟେବୁଲ ପାଖକୁ ଗଲି । ମୋ ସ୍ତ୍ରୀ ତିନୋଟି କଦଳୀ ଛଡାଇ ସାରିଥିଲେ ଗୋଟିଏ ପ୍ଲେଟ୍‌ରେ । ଚତୁର୍ଥଟି ଧରିଥିଲେ । ମୁଁ ଯାଇ ଦୁଇ ହାତରେ ତାଙ୍କ ହାତକୁ ଜାବୁଡି ଧରିଲି । ମୋ ଆଖିରୁ ଅବାଧ ଅଶ୍ରୁଧାର ଝରିଯାଉଥିଲା । ବହୁ କଷ୍ଟରେ କହିଲି, "ମୁଁ ମୋ ଆଚରଣ ପାଇଁ ଲଜ୍ଜିତ 'ସୁମି' – ମୋତେ ମାଫ୍ କରିଦିଅ ।"

ସେ କିଛି ନକହି ମୋ ମୁହଁକୁ ଚାହିଁ ପୂର୍ବପରି ମୁଚ୍‌ମୁଚ୍ ହସିଲେ । କେମିତି ଗୋଟାଏ ସର୍ବଜାଣ ହସ । ସବୁ କୁତ୍ସିତ, ବିରୂପ, ନଗ୍ନତାକୁ ଘୋଡେଇ ଦେଲାଭଳି ଅତି ଉଦାର ନରମ ସେ ହସର ରେଶମି ଚାଦର । ମୁଁ ସେମିତି ଲୁହ ସରସର ମୁହଁରେ ତାଙ୍କ ହାତରୁ ହିଁ ସେ କଦଳୀଟିକୁ ପୁନର୍ବାର ଖାଇଥିଲି । ଅନ୍ୟ ତିନୋଟିରୁ ସେ ମୋତେ ବା ମୁଁ ତାଙ୍କୁ ଭୁଞ୍ଜାଇବାରେ କେତେ ଯେ ସ୍ନେହାପ୍ଳୁତ ମୁହୂର୍ତ୍ତ କଟିଯାଇଥିଲା !! ମୋ ଭିତରେ ମଝିରେ ମଝିରେ ରହି ରହି ଗୋଟିଏ ବାକ୍ୟ ଗୁଞ୍ଜରୁ ଥିଲା, 'ମୋତେ କ୍ଷମାକର', 'ମୋତେ କ୍ଷମାକର' ।

ଖୋଲା ଦ୍ୱାର ବାଟେ ଖୁବ୍ ଥଣ୍ଡା କଅଁଳ ପବନ ଘର ଭିତରକୁ ପଶି ଆସୁଥିଲା । ସୋଫା ଉପରେ ମୁଁ ମୋ ସ୍ତ୍ରୀଙ୍କ କାନ ପାଖେ ଆସ୍ତେ କହିଥିଲି "ସେ ମହାପୁରୁଷ ଆମ ଘରକୁ ନିଶ୍ଚୟ ଆସିବେ – ନିଶ୍ଚୟ ଆସିବେ ।"

ତା' ଆରଦିନ ସକାଳ ପାହୁ ପାହୁ ମୁଁ ତାଙ୍କ ବସା ଘରକୁ ଯାଇ ନିରାଶ ଫେରିଆସିଲି । ସେ ପାହାନ୍ତା ମେଲ୍ ଗାଡିରେ ଦକ୍ଷିଣକୁ ଚାଲିଯାଇଥିଲେ ।

ଗଲାବେଳେ କୁଆଡେ ତାଙ୍କର ଶିଷ୍ୟଙ୍କୁ କହିଥିଲେ, ସେ ପୁଣିଥରେ ଜନ୍ମନେବେ ।

ଶିଷ୍ୟମାନେ କହୁଛନ୍ତି – ସେ ସେଇଠାରୁ ହିଁ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ତାଙ୍କୁ ଆଉ ଏ ପାଞ୍ଚବର୍ଷ ଭିତରେ କେହି ଦେଖିନାହାନ୍ତି କି ତାଙ୍କ ଠିକଣା ବି ପାଇନାହାନ୍ତି ।

'ପ୍ରସାଦ'କୁ ଏଇ ପାଞ୍ଚବର୍ଷ ପୂରିଗଲା । ତାକୁ ମୁଁ ଅନେକ ସମୟରେ ଆଚମ୍ବିତ ଚାହିଁରହେ । ସଂଭ୍ରମରେ ଟେକି ନେଇ କାନ୍ଧରେ ବସାଏ । ମୋ ସ୍ତ୍ରୀଙ୍କୁ ସଂଭ୍ରମରେ ବାଟ ଛାଡି ଆଡ ହୋଇଥାଏ ।

ମୋର ତଥାପି ଭାରି ଗର୍ବ । ମୁଁ ପାଟି ଖୋଲି ଏଯାଏଁ ମୋ ସ୍ତ୍ରୀଙ୍କୁ ମୋ ମନ ଭିତରର ଅପରାଧ ସ୍ୱୀକାର କରିନାହିଁ । ପୁଅ ଜନ୍ମ ହେବାରୁ ସେ ମୋତେ ଅନୁନୟ କରିଥିଲେ, 'ତାଙ୍କ ପ୍ରସାଦ ଆମେ ପାଇବେ । ପୁତ୍ର ସମ୍ପତ୍ତି ପାଇବେ । ତା' ନା ପ୍ରସାଦ ରଖିବା ।'

ମୁଁ ରାଜି ହେଇଯାଇଚି ! – ସେତିକି କ'ଣ ଯଥେଷ୍ଟ ନୁହେଁ ? ।



## ଉଠ୍ ଭୁବନେଶ୍ୱର !

ଏଠି ଚଢେଇ ବୋଧେ ପ୍ରଥମେ ଡାକେ । ତା'ପରେ ମସ୍‌ଜିଦ୍‌ର ମୁଲ୍ଲା । ଗୋଟାଏ ଗୋଟାଏ ଅଞ୍ଚଳରେ ନଗରକୀର୍ତ୍ତନ ମଧ ହୁଏ । ପାହାନ୍ତିଆର ମିଠା ମିଠା ନିଦ ସହିତ ପକ୍ଷୀ ଡାକ ସ୍ୱପ୍ନପରି ମିଶିଯାଏ । ଜଣାଯାଏ ରାଜଧାନୀର ଧାଡା ଧାଡି କରଞ୍ଜ ଗଛ ସବୁ ନିଦରୁ ଉଠି ଅଳସ ଭାଙ୍ଗୁଛନ୍ତି । ପାଖରେ ଶୋଇଥିବା ଆର ଗଛକୁ ଆସ୍ତେ ଛୁଇଁଦେଇ କଳରବ କରୁଛନ୍ତି । – ଲୁଗା ଖସିଯାଉଥିବା ଚିକ୍‌କଣ ଲମ୍ବା ଲମ୍ବା ହାତ ଗୋଡପରି ରାଜଧାନୀର ପାହାନ୍ତା ପହରର ନିରୋଳା ରାସ୍ତା ସବୁ ଭାରି ସୁନ୍ଦର । ଖରାଦିନର ଛୋଟ ରାତି । ପାହାନ୍ତା କାକର ପାଇ ନିଦେଇ ଯାଇଛି ଭୁବନେଶ୍ୱର । ତାକୁ ଏମିତି ଚୁପ୍‌ଚାପ୍ ନିଶ୍ଚିନ୍ତ ଚିତ୍‌ମାତ୍ ଶୋଇଥିବା ଦେଖିଲେ ଭାରି ଭଲଲାଗେ – ସେ ନିଶ୍ୱାସ ମାରୁଥାଏ ଦକ୍ଷିଣରୁ ଉତ୍ତରକୁ । ଭାରି କାକର ନିର୍ମଳ ପବନ । ବାରିପାରିଲେ ଜାତି ଜାତି ଫୁଲର ବାସ୍ନା । କାନେଇଲେ ଜାତି ଜାତି ପକ୍ଷୀର ଡାକ ତା' ଭିତରେ ମିଶି ରହିଥାଏ ।

ଏ ପହରଟାକୁ ରାତି କହିଲେ ବି ଚଳିବ । କାରଣ ଚରିଆଡେ ବେଶ୍ ଅନ୍ଧାର ଥାଏ । ଗୋଟାଏ ଗାଡି ସେ ମୁଣ୍ଡରୁ ଏଇଆଡେ ମୁହାଁଇଲା ବୋଧେ; ଓ ସେଇ ଗୋଲାପୀ ଦୋତାଲା କୋଠାର ବାବୁ ହେଇଥିବ, ଗାଡି କେମିତି ଧୀରେ ଧୀରେ ନାଆ ପହଁରିଲା ପରି ବେପରୁଆ ଏ ଚୌଡା ରାସ୍ତା ଉପରେ ଗଡିଆସୁଚି ଦେଖୁନ ! ଟଳମଳ ମାଲିକ; ଟଳମଳ ଗାଡି ! କୋଉଠି ଯାଇ ସେ ବାବୁଟା ଏମିତି ରାତି କଟାଇଦିଏ କେଜାଣି, ପାହାନ୍ତିଆ ଆଗରୁ ସମସ୍ତଙ୍କୁ ଲୁଚିଲା ପରି ସେ ତା' ଘରକୁ ଫେରିଆସେ । କୌଣସି ପ୍ରକାରେ ଗାଡି ରଖିଦେଇ ଥପ୍ ଥପ୍ ପାହୁଣ୍ଡ ସଜାଡି ସଜାଡି ସେ ଘରେ ପଶିଯାଏ । ଧଡାସ୍‌କିନା କବାଟ ପକାଇଦିଏ । ସେ କବାଟ କେତେବେଳେ ଫିଟେ କେଜାଣି । ପୁଣି ଏମିତି ସଞ୍ଜବେଳର ମାଛି ଅନ୍ଧାରକୁ ଫିଟୁଥିବ କି କ'ଣ! ଏତେବଡ ଲୋକ । ଏତେବଡ କୋଠା ! ଗାଡି, ପଇସା, ପାବାର୍ । ବେଳେବେଳେ ଦେବୀ ପ୍ରତିମା ପରି କିଏ ସବୁ ସେ ଘରୁ ବାହାରନ୍ତି ସକାଳୁ । ତା'ରି ପରିବାର ଲୋକ ହେଇଥିବେ ତ' । କେତେ ସୁନ୍ଦର ! ତଥାପି କିନ୍ତୁ ସେ ବାବୁ କାହିଁକି ନିଶାଚର ପରି ରାତିସାରା ବାହାରେ ବୁଲୁଥାଏ । ସକାଳ ଖରାରେ ସେ ଦେବୀ ପ୍ରତିମା, ସେ ଡେଙ୍ଗୀ ସୁନାରଙ୍ଗ ଝିଅ, ଆଉ ସେ ଗୋଲାପଫୁଲିଆ ପୁଅକୁ ସେ ବାବୁ ଦେଖିଛି ନା ନାହିଁ । ତାକୁ ଥରେ ନିଶା ନିଦରୁ ଉଠାଇ ଦେଖେଇଦେଲେ କେମିତି ହୁଅନ୍ତା ।

ସେମାନଙ୍କ ସୁନ୍ଦର ମୁହଁଟିମାନ କାହିଁକି ବିରସ ଦେଖାଯାଉଚି ବୋଲି ପଚାରିଲେ ସେ କ'ଣ ଜବାବ୍ ଦିଅନ୍ତା ?

ଛାଡ, ସେଥିରେ ନବଘନର କ'ଣ ଅଧିକାର ଅଛି ପାଟି ଫିଟେଇବାକୁ ? ନବଘନ ସେ କୋଠା ତଳ ସର୍ବପ୍ରଥମେ ସଫା କରି ଆଣେ; ସେଇଠି ବିସ୍କୁଟ୍ ଡବା, ପାଉଁରୁଟି କାଗଜ, ମିଠା ପ୍ୟାକିଂ କାଗଜ ଖୋଳ, ଲହୁଣୀ ଡବା ପଡିଥାଏ । ବେଳେବେଳେ ସୁନ୍ଦରିଆ ବୋତଲ ବି ପଡିଥାଏ । ନବଘନ ତାକୁ ଆଡେଇ ଦେଇଥାଏ ଅନ୍ୟମାନଙ୍କ ପାଇଁ । ତା'ର ସେଗୁଡା କ'ଣ ହବ ? ତା' ଲୋକମାନେ ସେଇ ଅନ୍ଧାର କଟିଲା ବେଳକୁ ଆସି ପହଞ୍ଚଯାଆନ୍ତି । ଏବେ ତିର୍ଲାମାନେ ସାଇକେଲ ପଛରେ ବସି ଚାଲିଆସୁଛନ୍ତି । ଭେଣ୍ଡିଆ ଟୋକା ମାଧବ, ତା' ମା' ମାଇପ ଉଭୟଙ୍କୁ ବସାଇ ନେଇଆସେ । ମା'କୁ ସାମ୍ନା ଦଣ୍ଡାରେ ବସାଇ ଆଣେ । ମାଇପକୁ ସେମିତି ବାହୁ ବେଢା ଭିତରେ ବସେଇବାକୁ ଲାଜ ମାଡେ କି କ'ଣ ! ମାଧବଟା ବଢିଆ ପିଲା । ତା' ମା'ଟା କିନ୍ତୁ ଭାରି ମିଛେଇ, କ'ଣ ସବୁ ଫନ୍ଦି କହିଦିଏ ସେ ଜମାଦାରକୁ ଯେ ସେ ତାକୁ ବଡ ଭାଗ ଦିନ ଛୁଟି ଦେଇଦିଏ । କହେ, 'ତୁ କାମ ନକର; କିନ୍ତୁ ଏଠୁ ଘରକୁ ଯାଇପାରିବୁ ନାହିଁ । ବେଣୁଆ ଜମାଦାର ବି କମି ଲୋକ ନୁହେଁ । ସେ ଜାଣିଚି ଏ ସମସ୍ତଙ୍କୁ; ହେଲେ ନବଘନକୁ ସେ ଭାରି ଇଜ୍ଜତ କରେ । ନବଘନର ବୟସ ବି ଢେର୍ । ସେ ସରକାରୀ ଖାକି ସିବା ଆଉ କିଛି ପିନ୍ଧେ ନାଇଁ । ଘରେ ଖଣ୍ଡିଏ ଖଦଡ ଧୋତି ଆଉ ଖଣ୍ଡିଏ ଗାମୁଛା ପିନ୍ଧି ରହିଥାଏ । ଦିନ ତିନିଟାକୁ ହାତରେ ରାନ୍ଧି ଗୋଟାଏ ବକତ ଖାଏ, ସନ୍ଧ୍ୟାରେ ଡିବି ଆଲୁଅରେ ଅଧାୟେ ଜଗନ୍ନାଥ ଉବାଚ ବୋଲେ । ନବଘନିଆ ରାଜଧାନୀ ମ୍ୟୁନିସିପାଲିଟି ମେହେନ୍ତର । ବେଣୁଆନବଘନ ଉପରେ ସବୁ ପ୍ରାୟ ଛାଡି ଦେଇଥାଏ । ତାହାରି ପାଇଁ ବେଣୁଆ ଜମାଦାର ଖୁବ୍ ପ୍ରଶଂସା ବି ଶୁଣେ । ତା' ବସ୍ତିରେ ରାସ୍ତାର କାହାରି ଦୁଆରେ ଏମିତି କୁଟାଟିଏ ମଧ ଦେଖିବାକୁ ମିଳେନାହିଁ – ଖୁବ୍ ସଫା ଭାରି ସୁନ୍ଦର । ନବଘନ କହେ, ଦେଖ ଭାଇମାନେ – ଯେତେସବୁ ଶୋଇଛନ୍ତି ସେମାନେ ସରକାରୀ କୁଣିଆ । ସେମାନେ ଉଠିବେ, ଡେରିରେ । ତାଙ୍କ ଆଗରୁ ଉଠିବ ସୂର୍ଯ୍ୟ । ସେ ବି ଜାଣ ବାହାର ଲୋକ । ସେ ଆସି ଦେଖିଲା ବେଳକୁ ଏ ଜାଗା ଖଣ୍ଡ ଯେମିତି ଗାଧେଇ ପାଧେଇ ନିର୍ମଳ ଠିଆହେଇଥିବ । ତେଣିକି ଏ ଘରମାନଙ୍କର ନିଦ ଭାଙ୍ଗିବ । ଆଖି ଫିଟେଇବେ ଏମାନେ । ତାଙ୍କ ଭିତରୁ ବାବୁମାନେ ବାହାରିବେ । ଜୋତା ମୁଜା ପିନ୍ଧି ବସ୍ତାନି ଧରି ବାହାରିବେ କୁନି କୁନି ସାହେବ ଛୁଆ ସବୁ । ଘରୁ ବାହାରୁ ବାହାରୁ ଗଦାଏ ଗୋବର ଭିତରେ ପାଦ ବୁଡିଗଲେ କ'ଣ ହବ କହିଲୁ ?

ସମସ୍ତେ କହନ୍ତି – ସତକଥା ସତକଥା । ତା'ପରେ ଧୂଳି ଉଡେ କାମ ଚାଲେ । ଅସଫା, ଅସୁନ୍ଦର, ମଇଳା, ବିଶୃଙ୍ଖଳ ସବୁ ଏକାଠି ଜମା ହେଇଯାଏ । ଜମାଦାର ତା'ର ବିଡି ନିଆଁରେ ଅଳିଆ ଗଦାକୁ ଜାଳିଦିଏ । ଖରା ପଡିଲା ବେଳକୁ ଧୂଆଁ ଉଠୁଥାଏ ଗଛ ଶିଖ ଉପରକୁ ।

ନବଘନ ସବୁଦିନ ରାସ୍ତା ମଝିରୁ ଗୋଟିଏ ପରିବାରକୁ ଉଠାଏ । ସେ କହେ ସେଇଟା ରାଜ ପରିବାର । ତାଙ୍କୁ ନ ଉଠାଇଲେ ନଚଳେ ।

ସେଦିନ ତାକୁ ଭାରି ଅଡୁଆ ଲାଗିଲା । କାରଣ ସେ ରାଜ ପରିବାରଟି ସେଇଠି ନଥିଲା । ସବୁଦିନ ସେ ଛକ ଉପରେ ଅନ୍ତତଃ ଦୁଇ ଡାଲା ଗୋବର ପଡିଥାଏ । ପରିସ୍ରା ଗଡି ଯାଇଥାଏ ରାସ୍ତା କଡକୁ, ସେ ଦାଗ ରାସ୍ତାରୁ ଲିଭି ନଥାଏ । କିନ୍ତୁ ସେଦିନ ସବୁ ଖାଲି ।

ସେ ପ୍ରଥମେ ଯାଇ ଅଳ୍ପ ବୟସର ନୂଆ ଶିଙ୍ଗ ଗଜଉଥିବା ଛଟାମାନଙ୍କୁ ଉଠାଏ । ସେମାନେ ଅମଙ୍ଗ ହେଲାପରି ଘାଲେଇ ଯାଆନ୍ତି । ଏମିତି ଆଖିବୁଜି ପାକୁଳି କଲାବେଳେ କିଏ ଏଇଟା ଅଭଦ୍ର ଆସି ଅଯଥା ହଇରାଣ କରୁଛି । ନବଘନ ତା'ପରେ ରାଣୀମାନଙ୍କ ପିଠିରେ ଥାପୁଡି ମାରେ । କିଏ ସିନ୍ଧି, କିଏ ହରିଆନା, କିଏ ଦେଶୀ, ଦୋମିଶା ମଝିରେ ଉଷୁଆଁ ହାଣ୍ଡିପରି ମୁଣ୍ଡଟେକି ଘୁମଉଥିବା ପ୍ରବଳ ପ୍ରତାପୀ ମହାମହିମ ସମ୍ରାଟ ! ସେ ହେଉଛନ୍ତି ହରିଆନା ଜାତୀୟ ବୃଷଭରାଜ । ଏଡେବଡ ଷଣ୍ଢ, ରାଜଧାନୀରେ କେହି କେବେ ଦେଖି ନଥିଲେ । ଧଳାରେ ଈଷତ୍ ଇଟା ରଙ୍ଗ ବୁଣିଦେଲେ ଯେମିତି ହବ ସେଇ ରଙ୍ଗ – ଚିତେ ଉଞ୍ଚପିଠି । ମୂଳା-ଶିଙ୍ଗା ପର୍ବତାକାର ବୃଷଭ । ସେ ଯେଉଁଆଡେ ମୁହାଁଇବ ସେଇଆଡେ ଛାମୁଛାଡ । କୌଣସି ବାଧାକୁ ଖାତିର ନକରି ମଣିଷକୁ ମାଛି ଜ୍ଞାନ କରି ସେ ବଜାର ଭିତରେ ପଶି ଗଲାବେଳେ ପରିବା ବେପାରୀଙ୍କ ଭିତରେ ଗୋଳ ଉଠେ – 'ଇରେ ହେଇ କରମଣ୍ଡଳ ଆସିଗଲା ।' – ନବଘନ ତାକୁ ଭାରି ଖାତିର୍ କରେ । କିନ୍ତୁ ତାକୁ ବାରଜାତି ମାଇକିନାଙ୍କ ସାଙ୍ଗରେ ଅସନା ମସନା ହେଇ ଗୋବରରେ ଲଟେଇ ପଟେଇ ହେବାର ଦେଖିଲେ ସେ ସହିପାରେ ନାହିଁ । ତାକୁ ଉଠେଇ ଠିଆକରେ । ତାକୁ ପାଣିରେ ଧୋଇ ସଫା କରେ । ଝାଡିଜୁଡି ଦିଏ ଏବଂ ପିଠିରେ ହାତ ମାରି କହେ, "ଉଠ ଭୁବନେଶ୍ୱର; ତୁ ତୋର ରାସ୍ତା ମଝିରେ ଠିଆହୋଇଗଲେ ଲକ୍ଷେ ଟଙ୍କା । ବାସୁଆ ବଳଦ ପରି କଉଡିମାଳ ଆଉ ମୟୂର ଚୂଳ ପିନ୍ଧିବା ତୋର ଦରକାର ନାହିଁ । ତୁ ସେମିତି ଲଙ୍ଗଳା ଠିଆହେଲେ ବି ଦେବତାପରି ଦିଶୁ । ଆସ୍ତେ ପାହୁଣ୍ଡ ପକେଇଲେ ଏ ପୃଥ୍ୱୀ ସୁନ୍ଦର ଦିଶେ; ତୁ ପୁଣି କାହିଁକି ଗୋବର ଗଦାରେ ଲଟେଇ ହେଉଛୁ ? କାହିଁକି ଜାଣିଶୁଣି ଏମିତି ଅସୁନ୍ଦର ଦିଶୁଛୁ ?"

ନବଘନ ଛକ ଉପରେ ଗୋବର ଗୋଠ ଦେଖିଲା ନାହିଁ; ତା'ର ପ୍ରିୟ ବୃଷଭକୁ ମଧ ଦେଖିଲା ନାହିଁ । ତାକୁ କାମ କରିବାକୁ କାହିଁକି କେଜାଣି ଆଉ ଇଚ୍ଛାହେଲା ନାହିଁ, ଖାଲି ଖାଲି ଲାଗିଲା । ଆଜି ଭୁବନେଶ୍ୱର ନାହିଁ, ରାଜଧାନୀର ଶୋଭା ନାହିଁ । ଭୁବନେଶ୍ୱର ଗଲା କୁଆଡେ ? ନବଘନ ଚହିଁଲା ଜାଣିବାକୁ, କିନ୍ତୁ ଉଠିଯାଇ ଖୋଜିବାକୁ ବି ତା'ର ମନ ନାହିଁ । ଭୁବନେଶ୍ୱର ଉପରେ ସମସ୍ତଙ୍କର ଆଖି, ସମସ୍ତଙ୍କର ଲୋଭ । ନିଜ ଦୁଆରେ ଏମିତି ହାତୀଭଲି ଜନ୍ତୁଟିଏ ଭଲା କିଏ ବାନ୍ଧି ରଖିପାରିବ ? କାହାର ଏମିତି ହିମ୍ମତ ? ନବଘନ ସେଇ ବଙ୍କା ନିମ୍ବ ଗଛମୂଳେ ଯାଇ ବସିଲା । ଯେଉଁଠି ଫକୀରା ଭାଇ ଉଠା ଚ଼ା ଦୋକାନଆଣି ବେଳ ଘଡିକୁ ହାଜର ହୋଇଯାଏ । ନବଘନ ଆଉ ତା' ସାଙ୍ଗର ସବୁ ସେଇଠି ଲାଗୁଆଣି ଚ଼ା ଖାଆନ୍ତି । ସେ ମାସକୁ ଦଶଟଙ୍କା ନିଏ । ଏଇ ଟିକକ ନବଘନର ନିଶା କହ, ବିଳାସ କହ, ଯାହା କହ – ଏତକ ନହେଲେ ତା' ଦେହ ମୁଣ୍ଡ ଭିଡି ହୁଏ । ଫକୀରା କ'ଣ ପାଗ କରିଥାଏ କେଜାଣି ଆଉ କାହା ପାଖରେ ଚ଼'ଟା ଏମିତି ପିଉ

ପିଉ ମିଜାଜ୍‌ଟାକୁ ସୁଧାରି ପାରେ ନାହିଁ ।

ସେଇ ଗଛ ମୂଳୁ ନବଘନ ସାମ୍ନା ଘର ଗୁଡାକୁ ଚାହିଁଲା । ନିଦେଇ ଥିବା କୋଠାମାନ । ସବୁଗୁଡାକ ଫିଟିଗଲେ ହରରଙ୍ଗୀ ଜିନିଷ । ସବୁଗୁଡାକ ଦୋକାନ । କିଏ ଖାଲି ବହି ବିକେ, କିଏ ଓଷୁଧ । କିଏ ଜୋତା ତ କିଏ କପଡା – କାହା ଦୋକାନରେ ଲୁହା ଲକ୍‌ଡ, କାହା ପାଖରେ ତେଲ ସାବୁନ । ଇସ୍ କେତେ ଜିନିଷ ବିକିବାକୁ ଆଉ କେତେ ମଣିଷ କିଣିବାକୁ ? ସେମାନଙ୍କ ଗହଳି ଆରମ୍ଭ ହେଲା ବେଳକୁ ନବଘନ ଆଉ ତା' ସାଙ୍ଗମାନେ ଚରିଆଡୁ ଓହରିଆସି ଫକୀରା ଦୋକାନ ପାଖରେ ଗୁଣ୍ଡ ହେଇ ବସିଯାନ୍ତି – ଦୁଆର ମୁହଁର ଝାଡୁ ଦାଗ ଉପରେ କେତେ କିସମର ଜୋତା ଦାଗ ସବୁ ପଡେ । ବାବୁମାନେ ସିଗ୍ରେଟ୍ ଖାଇ ଖୋଳ ଫୋପାଡି ଦିଅନ୍ତି, ପାନ ଖାଇ ଏଠି ସେଠି ଛେପ ପକାଇଯାନ୍ତି । ସେଗୁଡାକ ସବୁ ସେମିତି । ନା'କୁ ସିନା ବାବୁ – ନହେଲେ ଭାରିଅସନା ଲୋକଗୁଡାକ ।

ନବଘନ ଅନେଇଲା ଆରପାଖ ଘରଗୁଡାକୁ । କାହିଁକି ସବୁ ଘର ତାକୁ ଏକାପରି ଦିଶେ କେଜାଣି ? ସବୁଗୁଡାକର ଗଢଣ ସମାନ । ଆଗ କୌଣସି ଚିହ୍ନ ନଥିଲା ବାରିବାକୁ । ଏବେ କାହାଦ୍ୱାରେ ପଣସ ଗଛ, କାହା ଦୁଆରେ ରାଧା ତମାଳ ଗଛମାନ ଘର ସାମ୍ନାରେ ଜଗି ଠିଆହୋଇଛନ୍ତି । ଚିହ୍ନଟ କରିବାକୁ କିଛି ଅସୁବିଧା ନାହିଁ । ସେ ପଣସ – ଗଛିଆ ବାବୁ ଜଣକ କ'ଣ ସେମିତି ବଡ ଅଫିସର ହେଇଥିବ । ଆଉ ଟିକକୁ ଖରା ପଡିଗଲେ ନାନା ଜାତି ଗାଡି ଆସି ତାଙ୍କ ଦୁଆରେ ଲାଗିଯିବ । ଗୋଟାଏ ମଟର ସାଇକଲ ତ' ନିଶ୍ଚେ ଆସିବ । ସେ ତା' ଟବା ଭିତରୁ ରୋହି ପଦ୍ମପତ୍ର ଗୁଡାଇ ଟେକି ନିଏ ଘର ଭିତରକୁ । ହାତେ ପାଖ ପା' ଲମ୍ବ ମାଛ । ସେ ଆଇଁଷ ଲାଗୁଆଣି ଦଉଥିବା କେତେ ମାଛ ସତେ ଏ ବାବୁମାନେ ଖାଇ ଜୀର୍ଣ୍ଣ କରି ଦିଅନ୍ତି ?...ଆଉ ଗୋଟାଏ ଆସେ ପାଉଁରୁଟି ଗାଡିରେ ରୁଟି, ଅଣ୍ଡା, ଆଉ ମିଠା ଟବାଦେଇ ସେ ଚାଲିଯାଏ । ତା' ଉତ୍ତାରୁ ଜଣେ ଆସେ କାଗଜ ପତ୍ର ନେଇ । ସେ ବେଳେ ବେଳେ ଦୁଆରେ ନାକେଇ ଥାଏ । ବହୁତ ବେଳଯାଏଁ ସେମିତି ଘର ଭିତରକୁ ନପଶି ଫେରି ବି ଯାଏ । ମାଧବ ମା' କହୁଥିଲା, ସେ ବାବୁ ଜଣକ କୁଆଡେ ଶୋଇଥାଏ । ଘରର ଅର୍ଦ୍ଦଳୀ ଥରକୁଥର ଆସି ସେଇକଥା ସମସ୍ତଙ୍କୁ କହିବାର ସେ ଶୁଣିଚି, ମାଧବ ଖେଁ ଖେଁ ମାରି ହସେ । ସେ ବାବୁଟା ସେମିତି କ'ଣ ଶୋଇଥାଏ ମ ! ସେଇଟା ଘୁଷୁରି ନା ମଣିଷ, ନା 'ନବା' ଦାଦିର ଷଣ୍ଢ । – ସମସ୍ତେ ହସି ଉଠନ୍ତି । ନବଘନ ତାଙ୍କୁ ଦାଗିଦ୍ କରେ – ଆରେ ତମେ ଗୁଡା 'ହୁଣ୍ଡା । ତେମେ କ'ଣ ଜାଣିଚ ସେ ବାବୁ ଶୁଏ କେତେବେଳେ ? ରାତି ଅଧ ଯାଏ କାଗଜପତ୍ର କାମ କରୁଥିବ । ଲୋକବାକ ଆସୁଥିବେ । ସେମାନଙ୍କ ରୀତି କ'ଣ ଆମଭଳି ହେଇଚି ? ଆମେଗୁଡା ଏଇ ଗଛଭଳି, ହେ ସେଇ ଚଢେଇ ଭଳି । ଅନ୍ଧାର ହୋଇଗଲା ତ' କିଚିରି ମିଚିରି ହେଲୁ, କ'ଣ ଖାଇଲୁ ନଖାଇଲୁ ଶୋଇଗଲୁ । ଉଠିଲୁ ସେଇ ଚଢେଇଙ୍କ ସାଙ୍ଗରେ । ଏମାନେ ନିଆରା...

କିନ୍ତୁ ଦିନେ ନବଘନ ସାଙ୍ଗେ ସେ ବାବୁର ମୁହାଁମୁହିଁ ହେଇଯାଇଥିଲା ତା' ଦୁଆରେ । ସେ

ଗରି ଚକରେ ବାହାରିବା କଥା । ଏମିତି ଦି'ଗୋଡରେ ଚାଲିଆସୁଥିଲା । ନବଘନ ହାତଯୋଡି ଆଡ ହୋଇଗଲା । ସେ ବାବୁଟା ଲେଉଟି ପଡି ଖେଁକିଲା ପରି କହିଲା, "ଏଠି କାହିଁକି ପହଁଚିଗଲୁ କିବେ ? ତତେ ତ ମ୍ୟୁନିସିପାଲଟି ବିନା କାମରେ ବେତନ ଦେଇ ପୋଷିଚି, ଏଠି କ'ଣ ଦିନ୍ ବକସିସ୍ ଥୁଆହେଇଚି । ଯା ଭାଗ୍ । କିଛି ମିଳିବ ନାଇଁ ।" ନବଘନ ଆଶ୍ଚର୍ଯ୍ୟ ହେଇ ଚାହିଁରହିଲା ସେ ଲୋକଟିକୁ ପଛଆଡୁ । ସେ ଲୋକଟାର ନିଦ ବୋଧେ ଭାଙ୍ଗି ନଥିଲା; ନହେଲେ ଏମିତି କାଇଁ ବାଉଳୁ ଚାଉଳୁ କଥା କହିଥାନ୍ତା ? ନବଘନ କ'ଣ ତାକୁ କେବେ ବକସିସ୍ ମାଗିଚି ନା ଆଉ କାହାକୁ ମାଗିଚି ?

ହେଇ ଆଉ ଦିନେ ସେ ସିନ୍ଧି ଦୋକାନ ଆଗରେ ନବଘନ ଠିଆହୋଇଥିଲା । କାଚ ବାଡ ଭିତରେ ନାନା ଜାତି ଜିନିଷ ଦେଖିବାକୁ ତାକୁ କଉତୁକ ଲାଗୁଥିଲା । କିଛି ସମୟ ପରେ ସେ ଦୋକାନ ଭିତରୁ ଗୋଟାଏ ଦଶ ପଇସି ଆସି ତା' ପାଖରେ ପଡିଲା । ସେଇ ଭିତରେ ଗଦି ଉପରୁ କିଏ ଗୋଟାଏ କହିଲା, "ଉଠାଓ ଔର ଭାଗ୍ ଯାଓ !" ନବଘନ ଦଶପଇସିଟାକୁ ଚାହିଁଲା । ସେ ଭିତର ଲୋକର ମୁହଁଟାକୁ ଚାହିଁଲା । ତାକୁ ଯୋଡାକଯାକ ସମାନ ଦେଖାଗଲା । ସେ କିଛି ନକହି ଆସ୍ତେ ସେଇଠୁ ଚାଲିଆସିଲା । ଦଶପଇସିଟା ପଡିରହିଲା ଯୋଉଠି ସେଇଠି । ସେ ଦୋକାନୀ କାହିଁକି ସେମିତି କହିଲା ? ନବଘନ କ'ଣ ସେ ଦୋକାନଭିତରେ ପଶି ଜିନିଷଟାଏ କିଣି ପାରିବ ନାହିଁ? ବୋଧହୁଏ ପାରିବ ନାହିଁ । ମାଧବ ଯାଇଥିଲା ଗୋଟାଏ ବାସ୍ନା ତେଲ କିଣିବାକୁ । ସେତେବେଳେ ତା'ର ନୂଆ ବିଭା ସମୟ । ସେ ଦୋକାନୀ ତାକୁ ଥଟ୍ଟାକରି ତଡିଦେଲା – ଆରେ ତୁ ଲଗେଇବା ତେଲ ଏଠି ମିଳେ ନାଇଁ । ହାଟରୁ କିଣିନବୁ ଯା – । କାଇଁ ସେଇଠୁ ଦେଇଥିଲେ କ'ଣ ମାଧବ ପଇସା ଦେଇପାରି ନଥାନ୍ତା, ନା ମାଧବର ପଇସା, ପଇସା ନୁହେଁ ? ମାଧବ ରାଗ ଅପମାନରେ କାନ୍ଦୁଥିଲା । ନବଘନ ତାକୁ କେତେବେଳ ବସି ବୋଧେଇଥିଲା ।

ନିମ୍ବ ଗଛ ମୂଳେ ନବଘନ ଆଗ ପଛ ଅନେକ କଥା ଭାବି ଯାଉଥିଲା । ମାଧବ ମା' ଆସି ପାଖରେ ବସିଲା । କଥା ଫଟେଇ ହେଲା । ନବଘନର ଜମା ମନ ନଥାଏ ତା' କଥା ଶୁଣିବାକୁ । ଭାରି ବାଜୁରି, ମିଛେଇ ମାଇକିନା । 'ଆରେ ନବା, ତୁଟା କ'ଣ ଦିନକୁଦିନ ଚୋକା ଦିଶୁଛୁ ବା' ! କାଲି କ'ଣ ଖିଅର ହେଇପଡିଛୁ କି ? ...ଯାହା କହ, ତୋର ଦୁଃଖ କଥା ମନେପଡିଲେ ମୁଁ ସମ୍ଭାଳି ପାରେନାଇଁ । ମତେ କାନ୍ଦ ମାଡେ । ...ରାଧା ତୋ ମାଇପ ହବା ଆଗରୁ ମୋ ସାଙ୍ଗ ପରା – ଯେମିତି ଯୋଡି ହୋଇଥିଲ ନା ! ଶତ୍ରୁ ହେଲେ ଘଡିଏ ଚାହିଁରହୁଥିଲା । ପୋଡପାଡଙ୍କର ଆଖିପଡିଗଲା । ବିଧି ସହିଲା ନାହିଁ ।

ନବଘନ ଚୁପ୍ ।

– ଆରେ କ'ଣ ହେମିତି ଅନେଇ ବଇଚୁ ବା ? ତୋ ଦିହ ପା' ଅସୁଖ ହେଇଚି କି ?

ମାଧବ ମା' ନବଘନର ବୁକୁରେ କପାଳରେ ହାତ ପିଠି ରଖି କାଢି ଆଣିଲା ।

– ନାଇଁବା କିଛି ଜରଫର ନାଇଁ । ତୋମନ ବିରସ ହେଇଚି । ଆଜି କ'ଣ ତିଅଣ କରିବୁ

କହିଲୁ ? ତୁ ତ' ମତେ ଡାକିଲେ ମୁଁ ରାନ୍ଧିଦିଅନ୍ତି । ମାଧବ ତା' ଘର କଲାଦିନୁ ମତେ ଆଉ କିଛି ଭିଡ ପଡୁନାହିଁ! କ'ଣ କହୁଚୁ – ଆଜି ଯାଇ ରାନ୍ଧିଦେବି!

"ଆଲୋ କାଇଁ – କାଲୁରୁ କାଲୁରୁ ହଉଚୁ! ତୁ ଗଲୁ ଏଇଠୁ । ମୋ ମନ ଭଲ ନାହିଁ । ତୁ ଯା ତୋ କାମକୁ ।"

"କାଇଁ ତୁ ଯାଉଁନୁ!"

ନବଘନ ଧଡ୍‌କିନା ଉଠି ସିଧା ଚାଲିଗଲା ରୋଡ୍ କଡେକଡେ, ଛକଯାଏ । ମାଧବ ମା' ତଳକୁ ମୁହଁ କରି ବାଲିରେ ଗାର କାଟୁଥିଲା । ନବଘନର ମନ ସେ ତା' ଭୁବନେଶ୍ୱରକୁ ଖୋଜି ବାହାର କରିବ । କୁଆଡେ ଗଲା ସେ ମନୁଆ ।

ଡାହାଣେ ମୋଡିଲା ବେଳକୁ ସିଧା ରାସ୍ତା ରାଜଭବନ ଯାଏଁ । ଇସ୍ ଏ ରାସ୍ତାଟା କେଡେ ସୁନ୍ଦର ନ ହେଇଚି । ଏଇଠି କାମ କଲେ କେଡେ ତ୍ରିପୁଟି ମିଳନ୍ତା । ଏଠି ସବୁ ଆହୁରି ବଡ ବଡ ଲୋକ ରହୁଚନ୍ତି । ଏ ଘରଗୁଡାକ ବଡ ବଡ । ସମସ୍ତଙ୍କ ଘର ଆଗରେ ଫୁଲବଗିଚା । ଭିତରେ କୁକୁର, ନୌକର, ଚାକର, ରୋଷେୟା, ଅର୍ଦ୍ଦଲୀ! ଏମାନେ ସବୁ କେମିତି ହେଇଥିବେ କେଜାଣି! ୟାଙ୍କର କବାଟ ଡାଟି କେତେବେଳକୁ ଫିଟୁଥିବ ? ଏଇଲାଗେ ସମସ୍ତେ ନିଘୋଡ ନିଦରେ ଶୋଇଥିବେ । ସୂର୍ଯ୍ୟ ଉଇଁ ସାରିଲେଣି । ଖରା ପଡିଗଲାଣି; ଅଥଚ କାହାକୁ ଜଣାନାହିଁ । ୟା'ପରେ ଆହୁରି ଯେଉଁସବୁ ବଡ ଘରବାଲା ଅଛନ୍ତି, ସେମାନେ ବୋଧେ ଜମା ଉଠନ୍ତି ନାହିଁ – ଶୋଇବା ବି ତ ଗୋଟାଏ ପ୍ରକାର ସାମର୍ଥ୍ୟ । ସେମାନେ ସେମିତି ଖାଇପିଇ ସୁସ୍ଥ ସବଳ ଅଛନ୍ତି ବୋଲି ସେମିତି ଶୋଇପାରୁଛନ୍ତି । ନିଦ ନ ହେଲେ କ'ଣ ଶୋଇହୁଏ ?

ନବଘନ ସବୁ ଘର ଫାଟକ ବାଟେ ଭିତରକୁ ଅନେଇ ଅନେଇ ଯାଉଥିଲା । ତା'ର ମନେହେଉଥିଲା – ହୁଏତ ତା' ଭୁବନେଶ୍ୱର ସେଇ ଭିତରେ ପଶି ଶୋଇଯାଇଛି ଏବଂ ସେ ତାକୁ ଡାକି ଡାକି ଚାଲିଛି ।

ଗଛ ସବୁ ପତ୍ର ଠିଆ ଠିଆ କରି ଜାଗିରହିଥାନ୍ତି । ଫୁଲ ଦୋହଲାଉଥାନ୍ତି ପାହାନ୍ତା ପବନରେ । ଦୂବପତ୍ର ବର୍ଚ୍ଛା ଫାଳକରି ସଳଖି ରହିଥାନ୍ତି । ଚାରିଆଡେ ଜାଗ୍ରତ, ସତେଜ । ନବଘନ ସେସବୁ ଦେଖି ଦେଖି ଯାଉଥାଏ ।

ସେ ଅଞ୍ଚଳର ତା' ସାଙ୍ଗସାଥି ତାକୁ ଦେଖି ଚାଲିଆସିଲେ, "କିରେ ନବଘନିଆ, ତୁ କୁଆଡେ, ତୋର ଏ ୱାର୍ଡକୁ ବଦଳି ହେଲା କି ବେ ?"

"ଯାହାହଉ ନବାଭାଇ ଆସିଲେ ଆମର ବେଶ୍ ଜମିବ!"

"କ'ଣ ଜମିବ ? ନେଫେଡା ? ଏଇଟା ତ ସନ୍ନ୍ୟାସୀଟାଏ – ବକଟେ ହବିଷ ଖାଏ! ହଉ ଛାଡ । କହିଲୁ ନବାଭାଇ ତୁ ଏଣେ କୁଆଡେ ଚାଲିଚୁ ?"

"ମୋର ଗୋଟେ ଦୋସ୍ତକୁ ଖୋଜିବାକୁ ବାହିରିଚି ।"

"ଆବେ ନଖରା ଦେଖ! ଶଳା ହିନ୍ଦୀ ଝାଡୁଚି । ହବେ ଦୋସ୍ତ କ'ଣ! ତୁ ଶଳା କୋଉ

ମାଇକିନା ପାଲରେ ପଡିଗଲୁ କିବେ ? ସେଇ ତତେ ବାଉଳା କରିଚି ?"

– ଆରେ ସେ କଥା...ଆଉ ନବାଭାଇ !

– ରାମ ରାମ ! ସେ ଆଉ କାହାକୁ ଖୋଜୁଥିବ !

– କାହାକୁ ଖୋଜୁଚ ମ 'ନବଭାଇ ? କିଏ ହଜିଚି ?'

– ଆରେ, ତମେ ତମ କାମ କର । ସେଥିରୁ ତମକୁ କ'ଣ ମିଳିବ ?

– ଇଏ ଗୋଟେ କଥା ତମେ କହିବ ନା ନବାଭାଇ ! ଆମେ ପୁଣି ତ ତମ ଲୋକ । ଜାଣିଥିଲେ ସାହାଯ୍ୟ କରିବୁ ନାଇଁ ?

– ମୁଁ ମଣିଷ ହଜିଲେ ଖୋଜନ୍ତି ନାହିଁ । ମୋର ସେମିତି କାହାସାଙ୍ଗରେ ଭାବ ଦୋସ୍ତି ଆଉ ନାଇଁ ।

– ତା'ହେଲେ କ'ଣ ଜାନୁଆର ହଜିଚି ?

– ହଁ ଏକ ପ୍ରକାର ଠିକ୍ ! ସେ ମୋ ଦୋସ୍ତ । ମୋରି ଉଚ୍ଚ, ନାଲି ଋ' ଧଳା ରଙ୍ଗ । ଏତେ ବଡ ମୁଣ୍ଡ ।

– ଆରେ ଆରେ – ତୁ ସେ କରମଣ୍ଡଳକୁ ଖୋଜୁନାହୁଁ ତ !

– ହଁ ସେଇ ।

– ଆବେ ନବାଭାଇ ସକାଳୁ ସକାଳୁ ଷଣ୍ଢଖୋଜି ବାହାରିଚି ! ହେଁ ହେଁ ହେଁ ହେଁ...ହାସ୍ୟରୋଳ ଭିତରେ ନବା ଆଗେଇ ଯାଉଥିଲା । ଜଣେ କହିଲା – ନବାଭାଇ, ଏ ସାହି ଶେଷ ମୁଣ୍ଡକୁ ଗୋଟେ ଗେରେଜ ନାଇଁ – ତା' ପାଖକୁ ଗୋଟାଏ ମେଲା ଜାଗା । ଭାରି ଅସନା ଅପନ୍ତରା । ସେଇଠି ସେ ଷଣ୍ଢଟା ଋରି କାତ ଛାଡି ପଡିଥିଲା ପରି ମତେ ଲାଗିଲା ।

ଆଉ ଜଣେ କଥା ବୁଝିବାକୁ ମଝିରେ ପଶି କହିଲା, 'ଆରେ ଜାଣିନାହଁ କି ? କାଲି ପରା ଏ ସାହି ଟୋକାଯାକ, ତାକୁ ପାଚିଲା କଦଳୀ ଭିତରେ କ'ଣ ସବୁ ଜବ୍‌ବର ନିଶା ଖୁଆଇ ଦେଇଚନ୍ତି । ...ଏବେ ଯଉଁ ନୂଆ ନିଶା ସବୁ ବାହାରି ନାଇଁ – କ'ଣ ଧରପଗଡ ହଉଚି ଶୁଣିପକେଇ ଯାହା ଯେଉଁଠିଥିଲା ସବୁଯାକ ଆଣି ସେ ବାସୁଆକୁ ଗିଳେଇ ଦେଇଚନ୍ତି । ସେଥିରେ ତା' ଅବସ୍ଥା ଢିଲା । ସେତେ ବଡ ଜନ୍ତୁ ସେ ଖଣ୍ଡକଯାକ ମନ୍ଥି ଦେଇଗଲା କାଲି ଗୋଟାଏ ଓଳି । ତା' ଉତାରୁ ତ ପଡିଚି ଆଉ କମ୍ପୁଚି । ମରିଯିବ ନା କଣ !'

'ମରିଯିବ ? ?...' ନବଘନ ଦୌଡିଲା ଏକମୁହାଁ ସେଇ ଅସନା ଅପନ୍ତରା ଜାଗାକୁ । ଇସ୍ ଏତେ ଅସନା, ଏତେ ଅସୁନ୍ଦର ରାଜଧାନୀ ! ଏତେ କୁତ୍ସିତ ଏ ତୀର୍ଥଭୂଇଁ ? ?

ଅଳିଆଗଦା ଭିତରେ ହାତୀ ଶୋଇଲା ପରି ପଡିଥିଲା ଭୁବନେଶ୍ୱର ସତକୁ ସତ । ଆଖି ଖୋସିଦେଇ କମ୍ପୁଥିଲା । ବିଷ ଖାଇଦେଇ ଥରୁଥିଲା । ଦେହରୁ ଝାଳ ବାହାରି ସେ ଗାଧେଇପଡିଥିଲା । ତା' ଦେହସାରା ଅସନା ଲାଖିରହି ତା' ରଙ୍ଗ ଜଣାପଡୁନଥିଲା ।

ନବଘନକୁ ବୁଦ୍ଧି ଦିଶିଲା ନାହିଁ । ସେ ଗେରେଜ୍‌ବାଲାଙ୍କ ବାଲଟି ନେଇ ପାଣି ବୋହି

ଆଣିଲା । ମୁଣ୍ଡରେ ଅଜାଡି ଦେଲା ପାଣି । ଲିଙ୍ଗରାଜଙ୍କୁ ଜଳଶାୟୀ କଲାପରି । ତା' ଉତ୍ତାରୁ ଦେହସାରା ପାଣି ଢାଳି ଧୋଇଲା । ଭୁବନେଶ୍ୱର ସେମିତି କମ୍ପୁଥାଏ । ନବଘନ ତା' ବେକକୁ ଧରି ଗାଲ ଥାପୁଡି କହୁଥାଏ 'ଉଠ୍ ଭୁବନେଶ୍ୱର – ତୁ କ'ଣ ଏଥିକି ଯୋଗ୍ୟ!'

ଛକ ଉପରେ ।

ଭୁବନେଶ୍ୱରକୁ ବେଢ଼ି ରହିଥିବା ସେ ସିନ୍ଧି ଜର୍‌ସି, ଦେଶୀ, ଦୋ'ମିଶା ରାଣୀମାନେ ନଥିଲେ, କୁମାରୀମାନେ ନଥିଲେ । ଭୁବନେଶ୍ୱର ଏକାକୀ ଲଢୁଥିଲା । ଛଟପଟ ହେଉଥିଲା । ସେତେବେଳକୁ ରାଜଧାନୀର ପାହାନ୍ତାପହର । ପାତଳ ଗୁମ୍‌ସୁମ୍ ନିଦର ପହର । ସେ ଦୃଶ୍ୟ ଦେଖିବାକୁ ବିରାଡି ପିଲାଟିଏ ବି ନଥିଲା – ଗେରେଜର ଏଗାରବର୍ଷିଆ ଟୋକା ଫୁଙ୍ଗୁଳା ଦେହରେ କୋଟଟ ପେଣ୍ଟ ପିନ୍ଧି ଅନେଇଥିଲା । ତାକୁ କଉତୁକ ଲାଗିବାରୁ ଦାନ୍ତ କାଢି ହସୁଥିଲା । ତା' ଦୋସ୍ତର ବିପୁଳ ବପୁ ଉପରେ ନବଘନ ବିକଳରେ ହାତ ବୁଲାଇ ଆଣୁଥିଲା । ଲାଙ୍ଗୁଡଟିକୁ ଆଉଁସି ଦେଉଥିଲା ।

ସମସ୍ତଙ୍କୁ ଯେଉଁ ବିଷ ଜାଳି ଦେଇଥାନ୍ତା ତାକୁ ଖାଇଦେଇ ଭୁବନେଶ୍ୱର ଟଳୁଥିଲା । ନବଘନ ହୁଏତ ଆଶା କରୁଥିଲା ଯେ ସେ ନିଶ୍ଚେ ତାକୁ ଜୀର୍ଣ୍ଣ କରିଦେବ । ତା' କଣ୍ଠ ନୀଳ ପଡିଯିବ । ମୁଣ୍ଡରୁ ଜଟା ଓହଳି ଯିବ । କିନ୍ତୁ ସେ ଉଠିବ ନିଶ୍ଚୟ ।

ନବଘନ ଆସ୍ତେ ତା' କାନ ପାଖେ ମୁହଁ ରଖି ଡାକୁଥିଲା – 'ଭୁବନେଶ୍ୱର'!! ଭୁବନେଶ୍ୱର! ତୁ ଚାହିଁଲେ ଉଠିପାରିବୁ । ଉଠ୍! ଉଠ୍ ଭୁବନେଶ୍ୱର!



# ସବୁଠାରୁ ଦୀର୍ଘରାତି

## ସବୁଠାରୁ ଦୀର୍ଘରାତି

ମୁଁ କିନ୍ତୁ ତାକୁ ସକାଳେ ହିଁ ଦେଖୁଥିଲି । ତା' ମୁହଁ ଝାଳରେ, ଲୁହରେ ଜକେଇ ଯାଇଥିଲା । ଆଖି ଚାରିପଟେ ଗହୀର କଳାଦାଗ ବାରିହେଉଥିଲା । ଖୋର୍ଦ୍ଧା ଗେରୁଆ ଗାମୁଛା ବେଢେଇହେଇଥିବା ତା' ମେଲା ଦେହରେ ଏଠିସେଠି ଧୂଳିମଳି ଲାଗିଥିଲା । ପେଟ ଦି'ଭାଗ ହେଇଯାଉଥିଲା । ତା' ଘର ଭିତରୁ କାନ୍ଦଣା ଶୁଭୁଥିଲା ।

ଲୁଗା ଘୋଡେଇ କେହି ଜଣେ ଛୋଟ ପିଲାଟିକୁ କାନ୍ଧରେ ପକେଇ ବାହାରିଆସିଲା । ତା' ପଛରେ ଆଉ ଜଣେ ଏବଂ ଆଉ ଜଣେ । ସେ ପାଚେରୀକୁ ଆଉଜି ଆଖି ବୁଜି ନେଇଥିଲା । ସେ ମୋତେ ବୋଧହୁଏ ଦେଖିନାହିଁ କି ଚିହ୍ନି ନାହିଁ । କିମ୍ବା ମୁଁ ତାକୁ କିଛି ପଚାରିବାକୁ ସେତେବେଳେ ସାହସ କରିନାହିଁ ।

ମୁଁ ସକାଳୁ ବୁଲିସାରି ଫେରୁଥାଏ । ମୁଁ ସବୁଦିନେ ସେଇବାଟେ ସେତିକିବେଳେ ଫେରେ । ତାକୁ ପ୍ରାୟ ଭେଟେ ନାହିଁ । ସେଦିନ ସେପରି ଭେଟିବି ବୋଲି ମଧ ଭାବିନଥିଲି । କାରଣ ରାଜୁ ସଞ୍ଜବେଳେ ମୋତେ ଘରେ ଛାଡି ଗାଡି ନେଇ ଚାଲିଆସିଥିଲା । କେନ୍ଦୁଝର ବାଟେ ଜୋଡାକୁ ନେଇଥିଲା ଏବଂ ଆଣିଥିଲା । ସେଇଠୁ ବାହାରିବା ଆଗରୁ ଗାଡିର ମିଟର ଖୋଲି ସଂଖ୍ୟାଗୁଡାକ ପଛୁଆ କରି ଦେଇଥଲା । ମାଲିକକୁ ଠକି କିଛି ପଇସା ସଞ୍ଚିଥିଲା । ଜାଣିଥିଲା ଯେ ମୁଁ ହୁଏତ ପ୍ରତିବାଦ କରିବି ନାହିଁ, କାରଣ ମୁଁ ପଇସା ଦେଉନଥିଲି – ମୋତେ ଅନ୍ୟମାନେ ଅତିଥି କରି ନେଇଥିଲେ । ଟାକ୍ସି ପଇସା ବି ସେମାନେ ଦେଇଥିଲେ । ରାଜୁ ଟାକ୍ସି ଚଲାଏ । ଧଳା ଆମ୍ବାସେଡର ଡିଜେଲ ଗାଡିଟି ଭଲ ଚଳାଏ । ମୁଁ ଯେଉଁଆଡେ ଗଲେ ସେ ନିଏ ।

ପାଚେରୀକୁ ସେ ଆଉଜି ଠିଆହେଇଥିଲା । ତା' ଘର ଭିତରୁ କାନ୍ଦଣା ଶୁଭୁଥିଲା । ଛୋଟ ପିଲାଟିକୁ ସେମାନେ କନା ଗୁଡେଇ ନୀରବରେ ବାହାରିଯାଇଥିଲେ । ମୋ ଦେହ ମୁଣ୍ଡ ଝିମ୍ ଝିମ୍ ଲାଗିଲା । ମୁଁ ଆସ୍ତେ ଘୁଞ୍ଚିଯାଇଥିଲି ।

ସେ ଦିନସାରା କିନ୍ତୁ ରାଜୁ ମୋତେ ଆଚ୍ଛନ୍ନ କରି ରଖିଥିଲା । ମୁଁ ଯେଉଁଆଡେ ଚାହିଁଲେ ଆଖିବୁଜି ପାଚେରୀକୁ ଆଉଜିଥିବା ରାଜୁର ମେଲା ଦେହ ଦିଶିଯାଉଥିଲା । ମୋତେ ଅସୁସ୍ଥ ଲାଗୁଥିଲା । ତାକୁ ସେ ଦୁଃଖବେଳେ ସଙ୍ଖୋଳି ପାରିଲି ନାହିଁ ବୋଲି ଦୋଷୀ ଦୋଷୀ ଲାଗୁଥିଲା ।

ରାଜୁକୁ ବୟସ ଏଇ ଚାଳିଶ ପଇଁଚାଳିଶ । ତା' ପିଲାଟିଏ କ'ଣ ପାଠଶାଠ ପଢିଲାଣି । ତାକୁ କୋଉଠି ଲଗେଇଦେବାକୁ ସେ ମୋତେ କହୁଥିଲା । ସେ କୁଆଡେ ଆଉ ପଢିବ ନାହିଁ, ରାଜୁ ବି ଆଉ ପଢେଇପାରିବ ନାହିଁ ।

ବାଟରେ ହାଟ ଦେଖି ରାଜୁ ମୋ ପାଇଁ ଶସ୍ତାରେ ପରିବା କିଣିଦେଇଥିଲା । ନିଜ ପାଇଁ କଖାରୁଟିଏ ଆଣିଥିଲା । କୁଟୁମ୍ବୀ ଘର । ଆଳୁ କଖାରୁ ଖୁବ୍ ଖର୍ଚ୍ଚ ହୁଏ ବୋଲି କହୁଥିଲା ।

ଆଉ ବି କହୁଥିଲା ଯେ ତା' ସବା ସାନ ପୁଅଟାର ଦେହ ଭଲ ନଥିଲା । ଗାଡି ନ କାଢିଲେ ତ ଖାଇବାକୁ ମିଳିବ ନାହିଁ – ସେଥିପାଇଁ ଘରେ ରହି ବାଧିକା ପଡିଥିବା ପିଲାଟି କଥା ବୁଝିବା ତା' ପକ୍ଷରେ ସମ୍ଭବ ନଥିଲା ।

ଆମେ ଜୋତା ଯିବା ବାଟରେ ସେ ଚୁପ୍‌ଚାପ୍ ଗାଡି ଚଳାଉଥିଲା । ସେ ବୋଧହୁଏ ବୁଡିରହିଥିଲା ଗଭୀର ଚିନ୍ତାରେ । ବଡପୁଅ, ସାନପୁଅ, ସାରା କୁଟୁମ୍ବ ଭୋକଶୋଷ ରୋଗ ଏବଂ ଅସହାୟ ଦୁଃଖ ଚିନ୍ତାରେ ।

ମୁଁ ମଝିରେ କ'ଣ ପଚାରୁଥିଲେ ପଦେକରେ ଉତ୍ତର ଦେଇଦେଉଥିଲା ।

ମୁଁ ଭାବିଥିଲି ଯେ, ତା'ର ମନ ବୋଧେ ଭଲନଥିଲା । ତାକୁ ତା' ଦୁଃଖରେ ମଜ୍ଜି ରହିବାକୁ ନଦେଇ ମୋର ଅନ୍ୟ ଚାରା ନଥିଲା ।

ସେଠି ପହଞ୍ଚି ଭଲ ଖିଆପିଆ କଲାପରେ ରାତି ପାଇଲାବେଳକୁ ସେ ଚେଙ୍ଗାହୋଇଯାଇଥିଲା । ଖୁବ୍ ଫୁର୍ତ୍ତି, ଖୁବ୍ ସତେଜ ଦେଖାଯାଉଥିଲା । ଘରମୁହାଁ ଫେରୁଥିଲା ବୋଲି ବୋଧେ ସେ ସେମିତି ଉଲ୍ଲସିତ ଦେଖାଯାଉଥିଲା ।

ଆମେ ଏ ସହର ସୀମା ଛୁଇଁଲା ବେଳକୁ ବେଶ୍ ଅନ୍ଧାର ହୋଇଯାଇଥିଲା । ସେ ମୋତେ ଦୁଆର ମୁହଁରେ ଓହ୍ଲେଇଦେଲା । ପରିବାପତ୍ର କାଢିଦେଲା । ନମସ୍କାର କରି ବିଦାୟ ନେଇଗଲା । ମନେହେଲା ତାକୁ ତର ସହୁନଥିଲା । ମୁଁ ତା' ମନକଥା ବୁଝି ତାକୁ ଆଉ ମୁହୂର୍ତ୍ତେ ପାଇଁ ସୁଦ୍ଧା ଅଟକାଇ ରଖିବାକୁ ଚାହିଁନଥିଲି ।

କିନ୍ତୁ ରାତିଟା ଭିତରେ ଏସବୁ କ'ଣ ହେଇଗଲା ? କେତେ ଶ୍ରୀହୀନ ଦିଶୁଥିଲା ରାଜୁ । ସେ ବୋଧେ ପହଞ୍ଚିଲା ବେଳୁ ସଂଗ୍ରାମ ଆରମ୍ଭ ହୋଇଯାଇଥିଲା । ଡାକ୍ତର, ଔଷଧ, ପୁଣି ଡାକ୍ତର, ପୁଣି ଇଞ୍ଜେକ୍‌ସନ୍...ରାତି ସାରା ଥାକ ଥାକ ହୋଇ ଗୋଟେଇ ହୋଇଯାଇଥିଲା ଦୁଃଖ ଏବଂ ଯନ୍ତ୍ରଣା । ସକାଳ ପାହିଲା ବେଳକୁ ସାନ ପଞ୍ଜୁରୀଟିକୁ ଖାଲିକରି ପକ୍ଷୀ ଉଡିଯାଇଥିଲା ।

ମୁଁ ଦିନସାରା ଏଇ କଥା ଭାବୁଥିବା ବେଳେ ଆନମନା ବସିରହିଥିବା ଅନ୍ୟମାନେ ଲକ୍ଷ୍ୟ କରିଛନ୍ତି । ମୁଁ କିନ୍ତୁ ରାଜୁ ପାଇଁ ସତରେ ଭାରି ଅଥୟ ବୋଧକରୁଥିଲି ।

କୌଣସି ପ୍ରକାରେ ପାଞ୍ଚଟା ବେଳକୁ ମୁଁ ତା' ଦୁଆରେ ପହଞ୍ଚିଲି । ସେ ତା' ପେଣ୍ଟ ସାର୍ଟ ହଳକ ପିନ୍ଧି କାନ୍ଧରେ ସେଇ ଗାମୁଛାଖଣ୍ଡ ପକାଇ ବାହାରି ଆସୁଥିଲା । କୁଆଡେ ସେ ବାହାରିଥିଲା ସେପରି ଦିନଟାରେ ? ଭାରି ଭାରି ବିପଣିରେ ଟଳମଳ ନାଆ ପରି ତା' ଗୋଡ ଅସ୍ଥିର ପଡୁଥିଲା ।

ବୋଧହୁଏ ମନ୍ଦେ ନିଶାପାଣି ପିଇଦେଇଥିଲା । ବୋଧହୁଏ ଚାହୁଁଥିଲା ତା' ଭିତରେ ଜଳୁଥିବା ନିଆଁକୁ ସେଇଭଳି ଲିଭେଇ ଦେବାପାଇଁ ।

ମୋତେ ଦେଖି ଅପ୍ରତିଭ ହେଲା ନା କ'ଣ – ନମସ୍କାର କରି ଦାନ୍ତ ନେଫେଡେଇ ଠିଆହେଲା ।

"ଆଉ କୁଆଡେ ଗାଡି ଯିବ କି ସାର୍ ?"

"ତୁ କ'ଣ ଏଇନା ଗାଡି ନେଇ ବାହାରିବୁ ?"

"କିଛି ଅସୁବିଧା ନାଇଁ ସାର୍, ଷ୍ଟିଅରିଂ ଧରି ବସିଗଲେ ତେଣିକି ସବୁ ଠିକ୍ ।"

"ମୁଁ କ'ଣ ସେ କଥା କହୁଚି ? ଆଜି ପରା ତୋର..."

"ଓ... ତାକୁ ଆଉ କ'ଣ କରାଯାଏ ସାର୍ ? ସେଥିପାଇଁ ଦୁଃଖ କରି ବସିଲେ ବାକି ସବୁ ଖାଇବେ କ'ଣ ? ଦୁଃଖ କରିବାକୁ ଆମକୁ ବେଳ କାଇଁ ସାର୍ ? ଯେ ଗଲା ସେ ଗଲା । ଭାଗ୍ୟ ସହିଲା ନାଇଁ ସାର୍ । ନହେଲ ସେ ଟୋକାଟା ଗୋଟାଏ କ'ଣ ବଡଲୋକ ହୋଇଥାନ୍ତା । ଅଢେଇବର୍ଷର ପିଲା । ତା' କଥା ଶୁଣିଲେ ଆପଣ ଛାନିଆ ହୋଇଥାନ୍ତେ । ତା' ଚେହେରା ବି ନିଆରା ।" ସାମାନ୍ୟ ଆନମନା ହେଇ ଗୋଟାଏ ଆଡକୁ ଚାହିଁ ରହିଲା ରାଜୁ । ଅଗାଧ ସ୍ୱପ୍ନ ଓ ନିରାଶାର ଛାଇ ମାଡିଯାଇଥିଲା ତା' ଆଖି ଉପରେ ।

ସେ ଚମକିଲା ପରି ମୋତେ ଚାହିଁ ଦାନ୍ତ ନେଫେଡେଇଲା ।

"ଚାଲନ୍ତୁ ସାରେ, କୁଆଡେ ଯିବା ପରା ?"

"ଆରେ ନାଇଁ, ମୁଁ ଖାଲି ତତେ ଦେଖିବାକୁ ଚାଲିଆସିଲି !" ସେ ସେମିତି ଦାନ୍ତ ନେଫେଡେଇ ଚାହିଁଥାଏ । ତା' ଓଠ ସାମାନ୍ୟ ଥରିଉଠିଲା । ଆଖି କୋଣ କୁଞ୍ଚ କୁଞ୍ଚ ହୋଇଗଲା । ସେ ଲୁଚେଇପାରୁନଥିଲା ତା' କୋହଟାକୁ ।

ମୁଁ ତା' ମାଲିକ ଗେରେଜ ଆଡକୁ ତାକୁ ବାଟ କଢେଇଲା ପରି ଆଗେଇ ଗଲି । ସେ ମୋ ସାଙ୍ଗେ ସାଙ୍ଗେ ଚାଲିଲା ।

ଏମିତି ନୀରବ ଚାଲିଥାଉ ।

"ଆପଣ ସ୍କୁଟର ଆଣି ନାହାନ୍ତି ସାର୍ ?"

"ଆଣିଚି । ଗଜି ପାଖରେ ଦେଇ ଆସିଚି ଲାଇଟ୍‌ଟାକୁ ସଜାଡିବା ପାଇଁ ।"

"ମୋ ପାଖକୁ ଆଣିଲେନି ସାର୍, ମୁଁ ତାକୁ ଠିକ୍ କରିଦେଇଥାନ୍ତି । ସେ ଗଜିଟା କ'ଣ ଜାଣେ ?"

"ତୁ ବୋଧେ ମୋତେ ନେଇନଯାଇଥିଲେ ଏ ବିପତ୍ତି ପଡିନଥାନ୍ତା । ତୁ ଏଠି ଥିଲେ କଥା ଅନ୍ୟ ପ୍ରକାର ହୋଇଥାନ୍ତା । ତୁ ରାତିଟାରେ କ'ଣ ଆଉ କରିପାରିଥିବୁ ? ତୁ ମତେ ଖବର ଦେଲୁ ନାଇଁ !"

"କାଇଁକି କହିବି ସେ କଥା ସାରେ – ମୁଁ ପରା ଆସି ପାହାନ୍ତିଆରେ ଘରେ ପହଞ୍ଚିଲି ।

ସେତେବେଳକୁ କଥା ସରିଗଲାଣି ।"

ମୁଁ ଫାଇଁକିନା ରାଗିଗଲି ।

"କ'ଣ ହେଲା ? ତୁଟା ଗୋଟାଏ ନାଲାଏକ, ଶଇତାନ୍ କାହାଁକା ! ଘରେ ପୁଅ ବେମାର ପଡିଚି ଅଥଚ ତୁ ପଳେଇଲୁ ଖଟିକି ! କ'ଣ ନା ମିଟର ମୋଡି ଯୋଉ ଦି'ପଇସା ରୋଜଗାରିକରିଥିଲୁ ଟାକୁ ପିଇ ଦବା ପାଇଁ ?"

ସେ କିଛି ନକହି ମୋ ରାଗରୋଷକୁ ସହିସହି ଚାଲିଥାଏ ।

"କଥା ଶୁଣୁନାହାନ୍ତି ସାରେ..."

"କ'ଣଟା ଆଉ ଶୁଣିବି... ନେଫେଡା ? ରାତିସାରା ତ ମାଲପାଣି ପିଇ ସେଇଠି ଗଡିଥିବୁ ।"

"ନାଇଁ ସାରେ, କାଲି ରାତି କଥା ମୁଁ ଆପଣଙ୍କୁ କ'ଣ ଆଉ କହିବି । ଯୋଗ ତ – ମୁଁ କ'ଣ ଜମା ଘରକୁ ଫେରିପାରିଲି କି ?"

ମୁଁ ସେମିତି ଟିକାଗଲାରେ ପଚାରିଲି – "କାଇଁକି କ'ଣ ହେଲା ?"

ସେ ଗେରେଜ୍ ଫିଟେଇ ଭିତରକୁ ଗଲାନାହିଁ, ବରଂ କବାଟରେ ଆଉଜି ଠିଆହୋଇ ତଳକୁ ଚାହିଁରହିଲା । କହିଲା... "ମୁଁ ଯଦି ତାକୁ ଡାକ୍ତରଖାନା ନେଇ ନଥାନ୍ତି ସେ ମରିଯାଇଥାନ୍ତା । ମୁଁ ଆପଣଙ୍କ ଘରୁ ଫେରିଲାବେଳକୁ ଭାବିଲି ଯେ, ରୋଗିଣା ପିଲାଟା ପାଇଁ ସେଉ ଅଙ୍ଗୁର କିଛି ନେଇଯିବି । ବାଟ ଭାଙ୍ଗି ବଜାରଆଡେ ବାହାରିଗଲି । ଟାଉ ଟାଉ କିଣିଦେଲି । ଚଞ୍ଚଳ ଘରକୁ ଯିବାକୁ ମନ । ପିଲାଟା ଆଖିରେ ଆଖିରେ ନାଚୁଥାଏ । ତଳ ରାସ୍ତାରେ ଆସୁଚି ହଠାତ୍ ବ୍ରେକ୍ କଷିଦେଲି । ଗୋଟାଏ ନିଆଁ ହୁଳା ମୋ' ତାଳୁରୁ ତଳିପାଯାଏଁ ଖସିଗଲା । ଗୋଟାଏ ଆଠଦଶ ବର୍ଷର ଝିଅ ଗୋଟେ ସୂତାରେ ବଞ୍ଚିଗଲା । ନହେଲେ ତା' ଉପରେ ଗାଡି ମାଡିଯାଇଥାନ୍ତା । ସେ ରାସ୍ତା କାଟି ଆର ପାଖକୁ ଧାଇଁ ଯାଇଥିଲା । ମୁଁ ଖୁବ୍ ଚିଡିଯାଇ ଗାଡିରୁ ଓହ୍ଲେଇଗଲି – ତା' କାନମୋଡି ତା' ବାପ ମା' ପାଖରେ ଠିଆକରିବାକୁ ।"

"ତୋର ଏମିତି ରାସ୍ତାଘାଟରେ କାହିଁକି ଅଭିଭାବକପଣ ବାହାରିପଡେ ? ତୁ ତ ଝରକା ବାଟେ ପଦେ କ'ଣ ଶୋଧିଦେଇ ବାହାରି ଆସିଥାନ୍ତୁ । ଏତେ କଥା କିଏ ଦେଲା ?"

ରାଜୁ ମୋ କଥାକୁ ସତେ ବା ଶୁଣିନାହିଁ । କହିଲା – ମୁଁ ଓହ୍ଲେଇ ଡାକପକେଇଲି – ହେ, ହେ, ଚଗଲୀ ଟୋକି – ଶୁଣିଲୁ ୟାଡେ ।

ସେ ବତୀଖୁଣ୍ଟ ପାଖେର ଛାନିଆ ହେଲାପରି ଠିଆହୋଇଗଲା । ମୁଁ ତା' ପାଖକୁ ଚିହିଁକି ଗଲି । ଦେଖିଲା ବେଳକୁ ଝିଅଟି କାନ୍ଦୁଥିଲା । ମୋତେ ଦେଖି କହିଲା – ମୋ ବୋଉ ମରିଯିବ – ଆମ ଘରେ କେହି ନାହାନ୍ତି – ମୋ ବୋଉ ମରିଯିବ ।

ସେ ଆଖି ମନ୍ଥି କାନ୍ଦିଲା । ମୁଁ ଉଞ୍ଚେଇବା ହାତ ତଳକୁ କରି ଠିଆହେଲି । କ'ଣ କରିବି ଭାବିପାରୁନଥିଲି । ଏତିକିବେଳେ ବାଙ୍ଗୁରା ହେଇ ବୁଢୀଟିଏ ଠିକ୍ ମୋ ବୋଉ ପରି ସେଇଆଡୁ

ଆସି ପହଞ୍ଚିଲା ।

"ପଦୁଅାଁ କିଲୋ... ଚାଲିଲୁ, ଚାଲ୍ ଯିବା ଚାଲ, ପୁଅ... ଆଗରୁ ଟିକିଏ ଅଇଲା ନାଇଁ... ଆସ ଆସ" କହି ମୋ ଆଗେ ଆଗେ ରାସ୍ତାକାଟି ଚାଲିଗଲା । ମୁଁ ତା' କଥା କାଟିପାରିଲିନାହିଁ । ସେ ମତେ ସେମିତି କାହିଁକି ଡାକିଲା, ତା' ବି ବୁଝିପାରିଲି ନାଇଁ । ଘରେ ପଶିଲା ବେଳକୁ ଚମରି ଆମିରିମାନଙ୍କ ଘର ପରି ଦରିଦ୍ର ଘର । ଅବ୍ୟବସ୍ଥା – କୋଉଠି କ'ଣ ସବୁ ପଡିଛି... ଆଉ ପଦୁଅାଁର ବୋଉ ଖଟ ଉପରେ କାନ୍ଥକୁ ଆଉଜି ବସିଛି । ତା' ନିଶ୍ୱାସ ତୋଳୁଛି । ପାଣିହାଣ୍ଡିପରି ଟଳମଳ ଗର୍ଭାବସ୍ଥା ।

ବୁଢୀ ମାଉସୀ ପାଣି ଦି'ଟଳା ମୁହଁକୁ ମାରି କାନିରେ ତା' ମୁହଁକୁ ପୋଛିଦେଲା ।

"ଚାଲେ, ଏ ପରା ଆଇଛନ୍ତି । ମୁଁ ତୋ ସାଙ୍ଗରେ ଯିବି । ପଦୁଅାଁ, ତୁ ଭାଇକି ନେଇକି ଥା' – ତୋ ବାପା ଅଇଲେ ଡାକ୍ତରଖାନା ପଠେଇଦେବୁ । ଉପରେ ମାଲିକ ଅଛି ଆମ ଦୁଃଖୀ ଲୋକଙ୍କୁ ସମ୍ଭାଳିବାକୁ । ଗଲୁ ପଦୁଅାଁ, ଏ ବିଶିଆ ମା'କୁ ଡାକିଦବୁ । ମୁଁ ଏକୁଟିଆ ୟାକୁ ନେଇପାରିବି ନାଇଁ ।"

ମୁଁ ପାଟି ଫିଟେଇପାରିଲି ନାଇଁ । ସତ କଥା, ମାଲିକ ଅଛି ସବୁ କଥାକୁ । କାହା ବିପତ୍ତି ବେଳେ କାହାକୁ ଆଣି ଖଞ୍ଜି ଦଉଚି ।

"ତାକୁ ତା'ହେଲେ ତୁ ଡାକ୍ତରଖାନା ନେଇକରି ଗଲୁ ?"

"ଶୁଣୁନାହାନ୍ତି... ସେ ମାଉସୀ ଆଉ ବିଶିଆ ମା' କୌଣସିମତେ ଧରାଧରି କରି ଗାଡି ଭିତରେ ତାକୁ ବସେଇଦେଲେ । ପାଖରେ ଗୋଟେ କନା ବୁଜୁଲା ଧରି ମାଉସୀ ବସିଲା । ବିଶିଆ ମା' ଆର ପାଖକୁ ବସିଲା । ବୁଢୀ କହିଲା – "ଚାଲିଲୁ ପୁଅ । ବେଗି ଟିକିଏ ନେଇଯିବା । ମୁଁ ନେଇ ପହଞ୍ଚିଲାବେଳକୁ ରାତି ସାଢେ ଆଠଟା ପାଖାପାଖି । ସେମାନେ ତାକୁ ଓହ୍ଲେଇ ନେଲେ ମୁଁ ଚାଲିଆସନ୍ତି; କିନ୍ତୁ ମାଉସୀ କହିଲା – ମରଦ ଲୋକ ଜଣେ ଥିଲେ ପରା କେତେ ବଳ । ଯିବୁଟି ପୁଅ ଟିକିଏ ଡାକ୍ତର ସାଙ୍ଗରେ କଥା ହେଇ ବୁଝିଦିଅ, କୋଉଠିକି ନବା ।"

ମୁଁ ପଡିଲି ମହାସଙ୍କଟରେ । ଯେଉଁ ବିଶ୍ୱାସରେ ମାଉସୀ କଥା କହୁଥାଏ, ତାକୁ ଏଡେଇ ଯିବା ସହଜ ନୁହେଁ । ମୁଁ ବାଧ ହେଇଗଲି ।

ଡାକ୍ତର ଆଉ ଡାକ୍ତରଖାନା କଥା ତ ଆପଣ ଜାଣନ୍ତି । ତେବେ ଗୋଟାଏ ସୁବିଧା ହେଲା ଯେ ଆମ୍ଭାସେଡରରେ ଆସିଥିବା ରୋଗୀ ପାଇଁ ସେମାନେ ଟିକିଏ ତରକିଲେ – କେଜାଣି କିଛି ହେଇଥିବ ।

ଡାକ୍ତର ଆଉ ମେଟ୍ରନ୍ କହିଲେ 'ଆଣନ୍ତୁ ।'

ମୁଁ ମାଉସୀ ଆଉ ବିଶିଆ ମା' ସାହାଯ୍ୟରେ ତାକୁ ନେଇଗଲି ପରୀକ୍ଷା ପାଇଁ ।

ଦୁହେଁ ଦେଖୁ ଦେଖୁ କହିଲେ – "ସାଙ୍ଗେ ସାଙ୍ଗେ ଡେଲିଭରି ହବ । ସେଥିପାଇଁ ଏଇ ଏଇ ଇଞ୍ଜେକ୍‌ସନ୍ ସାଲାଇନ୍ ଆଉ କ'ଣ କଣ ସବୁ ଦରକାର । ଡାକ୍ତରଖାନାରେ ଦବା କଥା – ସରିଯାଇଚି । ଚଞ୍ଚଳ ଚଞ୍ଚଳ ତାକୁ ଷ୍ଟ୍ରେଚରରେ ପକେଇ ନେବାପାଇଁ ଡାକ୍ତର ହୁକୁମ ଦେଲାବେଳେ

ମତେ ଦେଖି ଚିଡିଲାପରି କହିଲେ – ଆରେ ଦେଖୁଛନ୍ତି କ'ଣ ? ଏ ଚିଠା ଧରି ଶୀଘ୍ର ଯାଆନ୍ତୁ ବନଓ୍ୱାରିଲାଲ୍ ମେଡିକାଲ୍‌ରୁ ଚଞ୍ଚଳ ନେଇ ଆସିବେ ।"

ଡାକ୍ତର, ମେଟ୍ରନ ଲାଗିଗଲେ ତାଙ୍କ କାମରେ । ମାଉସୀ କହିଲା ଯାଉନୁ ପୁଅ, ଦେଖୁଚୁ କ'ଣ ବା... କି ଆଶ୍ଚର୍ଯ୍ୟ । ଚିଠାଟାକୁ ମୁଁ ବିଣ୍ଡାକରି ତା' ଆଗରେ ଫୋପାଡି ଚାଲିଆସିଥାନ୍ତି । କିଓ ବାଟରେ ଚାଲିଗଲା ଲୋକକୁ ଡାକିଆଣି ଏତେ ଅଧିକାର କ'ଣ ? ପଇସା କୋଉଠୁ ଆସିବ ? କ'ଣ ହବ ?

ଏତିକିବେଳେ ପଦୁଆଁ ମା' ତା' ପହରିଲା ପହରିଲା ଆଖିରେ ମତେ ଚାହିଁ ରହିଥିବାର ମୁଁ ଦେଖିଲି । ପଦୁଆଁର କାନ୍ଦଣା ମନେପଡିଲା – ମୋ ମା' ମରିଯିବ... ମୋ ମା' ମରିଯିବ ।

ମୁଁ ସାଙ୍ଗେ ସାଙ୍ଗେ ବୁଲିପଡି ଗାଡି ଧରି ବାହାରିପଡିଲି । ଦୁଇଶ' ଟଙ୍କା ଉପରେ ପଡିଲା ସେ ସବୁ । ତାକୁ ନେଇ ପହଞ୍ଚେଇଲି । ଭିତରେ ଡେଲିଭରି ।

ବାହାରେ ମୁଁ । କେମିତି ବା ପଳେଇ ଆସିବି ? କାଳେ କେତେବେଳେ କ'ଣ ପୁଣି ଲୋଡା ପଡିପାରେ – ଆଉ କିଏ ଅଛି ?

ମୁଁ ରୋଡ ଉପରୁ ପାନ କିଣି ଚୋବେଇଲି । ବିଡି ଟାଣିଲି । କିନ୍ତୁ ବାହାରେ ସେଇ ବେଞ୍ଚଟାରେ ବସିରହିଲି । ମୁଁ ଜାଣୁଛି ସାର୍, ଭାରି ଅକଳିଆରେ ମୁଁ ପଡିଗଲି କ'ଣ ଆଉ କରିଥାନ୍ତି କହିଲେ ?

ମୁଁ ରାଜୁକୁ ଚାହିଁଥାଏ । ତା'ର ସେ କଦମ୍ବଫୁଲିଆ ଠିଆ ଠିଆ ଛୋଟ ବାଳ, ମଝିରେ ମଝିରେ ପାଚିଯାଇଥାଏ । ପାନପଚା ଦାନ୍ତ ଅସନା ଦିଶୁଥାଏ । ହେଲେ ତା' ଆଖି କଥାକଥାକେ ଥମ ଥମ ହେଇଯାଉଥାଏ, ବଙ୍କେଇଯାଉଥାଏ ।

– ରାତି ବାରଟା ଦଶ ବେଳକୁ ପୁଅହେଲା । ଧାଈଟିଏ ଆସି ମତେ ହସି ହସି ଖବର ଦେଲା – ସତେବା ପୁଅଟି ମୋର ।

ମାଉସୀ ଆସି ମୋ ପାଖରେ ପହଞ୍ଚିଲା । ଯାହା ହଉ ପୁଅ ଉଦ୍ଧାର ହେଇଗଲା । ତୁ ଏଇନା ଘରଆଡେ ଯିବୁଟି, ସେ ଟୋକୀଟା ଏକୁଟିଆ ଡରୁଥିବ । ମୁଁ ମଧ ଖଣ୍ଡେ ପାଲଟି ପକାନ୍ତି । ସକାଳୁ ଆସିଲେ ବିଶିଆ ମା' ପଛେ ଯାଆନ୍ତା ।

ମୁଁ କିଛି କହିଲି ନାହିଁ । କ'ଣ ବା କହିଥାନ୍ତି ? ମାଉସୀକୁ ନେଇ ପଦୁଆଁ ଘର ଆଗରେ ଓହ୍ଲେଇ ଦେଲି । ଗାଡିରେ ବସିଲା ବେଳକୁ ସେ କହିଲା –

"ତୁ କୁଆଡେ ପୁଣି ବାହାରିଲୁ ? ଘରକୁ ଯାଉନୁ !"

ମୁଁ ମୋ ଘରକୁ ଯାଉଚି ।

ତୋ ଘରକୁ କ'ଣ ବା ?...ତୁ ପରା ପଦୁଆଁର କକେଇ । ତତେ ସେମାନେ ଚିଠି ଦେଇଥିଲେ । ତୁ ପଦ୍ମପୁରରୁ ଆସିଚୁ ? ପଦୁଆଁ ବାପଟା ତ ପାଞ୍ଚ ମାସ ହେଲା କୁଆଡେ ଯାଇଚି ତା'ର ଖବର ନାହିଁ । ତୁ ପଦୁଆଁ କକେଇ ନୁହଁ ?

ନାଇଁ ମାଉସୀ, ମୁଁ ପଦୁଅାଁର କେହି ନୁହେଁ । ଏଇ ବାଟରେ ଗାଡି ରଖିଥିଲି । ତୁମେ ଡାକିଲାରୁ ତମ କଥା କାଟିପାରିଲି ନାଇଁ । ହଉ ମୁଁ ଆସେ ।

ବଟୀଖୁଣ୍ଟ ପାଖେ ବୁଢୀ ଗାଲରେ ହାତଦେଇ ହାଁକରି ଚାହିଁରହିଥିଲା ।

ମୁଁ ତେବେ ବି ସାଢେ ବାରଟାରେ ଘରେ ପହଞ୍ଚିପାରିଥାନ୍ତି; କିନ୍ତୁ ଯୋଗ ତ ମତେ ଘରେ ପହଞ୍ଚେଇ ନଦବା ପାଇଁ ।

"ଆଉ କ'ଣ ସେମିତି କିଛି ଅକଳିଆରେ ପଡିଲୁ ନା କ'ଣ ?"

"ନାଇଁ ସାରେ, ସେ ଆଉ ପ୍ରକାରେ କଥା । ବୁଲାଣି ବାଟେ ଆସୁଥାଏ ତ – ସରକାରୀ ବଗିଚା ପାଖ ସାଇଆଡେ ବହୁଦିନ ହେଲା ଯାଇନଥିଲି । ସେ ସାଇରେ ମୋର ପିଉସା ଲେଖା ହବ, ଲକ୍ଷ୍ମଣ ପିଉସା ରହେ । ମୁଁ ଅନେଇ ଅନେଇ ଆସୁଚି । ଦେଖିଲା ବେଳକୁ ସେଦିନ ରାତିରେ ପିଉସା ଦୁଆରେ ଲୋକ ପୁଞ୍ଜି ପୁଞ୍ଜି । କିରେ କଥା କ'ଣ ? ଲକ୍ଷ୍ମଣ ପିଉସାର କାଳ ହେଇଗଲା । ସଜିଲ କରୁଛନ୍ତି ମଡା ଉଠେଇବେ । ମୁଁ ଗାଡି ରଖି ଓହ୍ଲେଇଲି । ସୁଦାମ ତାଙ୍କ ପୁଅ – 'ଭାଇନା' ବୋଲି ରଡିଟାଏ ଛାଡି ମୋତେ ଆସି କୁଣ୍ଢେଇ ଧଇଲା । ପୁଣି ପଡିଲି ଫାନ୍ଦରେ ।"

କୋକେଇ ଉଠିବ । ମତେ ପୁଣି କାନ୍ଧ ଦବାକୁ ହବ । ମଶାଣିରେ ପହଞ୍ଚିଲା ବେଳକୁ ରାତି ତିନିଟା । ମୁଖାଗ୍ନି ଦେଇ ତୁଠରୁ ଫେରିଲା ବେଳକୁ ଫର୍ଚ୍ଚା ହେଇଗଲାଣି । ମୁଁ ସେଇ ଓଦା ଗାମୁଛା ଗୁଡେଇ ହେଇ ପଳାଇ ଆସିଲି । ଆସି ଘରେ ଦେଖିଲାବେଳକୁ କିଛି ବାକି ନାଇଁ ।

ରାଜୁ ତଳକୁ ଚାହିଁ ଠିଆହେଇଥିଲା । ବେକୁବ୍ କାହାଁକା – ଏତେ ବଡ ଦୀର୍ଘ ରାତି କ'ଣ ଏମିତି ପାରି ହେବାକୁ ହୁଏ ?

ଗାଡି ମାଲିକ ତା' ହିସାବ ନେଇଗଲା ପରେ ଆଉ କିଛି ବଳକା ରହିଲା ନାଇଁ । ଶହେ ଟଙ୍କା ମଶାଣିରେ ଲାଗିଗଲା । ରାତିରେ ଘର ଖର୍ଚ୍ଚକୁ କିଛି ନାଇଁ ।

"ଆପଣଙ୍କର କୁଆଡେ ଯିବାର ନାଇଁ ସାର୍ ?"

ଆଖି ଟେକି ମୋତେ ଚାହିଁଲା ।

ମୁଁ ରାଜୁ ଆଖିକି ଚାହିଁପାରିଲି ନାଇଁ । ତଳକୁ ମୁହଁ ପୋତିଦେଲି ।

ସତେ ବା ରାଜୁ ପାଦତଳେ ଅପରାଧୀ ଈଶ୍ୱର ଚିକିଚିକି ହୋଇ ଭାଙ୍ଗିପଡୁଥିଲେ ।



# ନିମ୍ନ ପାହାଚ

ଆମେ ସମସ୍ତେ ଏକା ଏକା ଯିବାକୁ ଅମଙ୍ଗ ହେଉଥିଲୁ, ବୋଧହୁଏ ଡରୁଥିଲୁ । ବୋଧହୁଏ ସେ ନିଘଞ୍ଚ ଅନ୍ଧାରକୁ ହିଁ ଡରୁଥିଲୁ । ଓଦା ଓଦା ପାହାଡପରି ନିସ୍ତବ୍ଧ ଅନ୍ଧାର । ଆକାଶ ଆଉ ପୃଥିବୀକୁ ଘୋଟି ରହିଥିବା ଅନ୍ଧାରର ତୃତୀୟ ପାଦପାଇଁ ମେଦିନୀ ନିଅଣ୍ଟ ହେଉଥିଲା । କାହାର ସାହସ ତା' ପାଇଁ ମୁଣ୍ଡ ପତେଇଦେବ ?

ସମୟ ଅପରିମେୟ ମନେହେଉଥିଲା । କେହି ଯଦି କହିଥାନ୍ତା ସେତେବେଳେ ସତେଇଶ ହଜାର ବଜିଛି ବୋଲି ମୁଁ ବିଶ୍ୱାସ କରିଥାନ୍ତି – ଘଣ୍ଟାରେ କିନ୍ତୁ ଦଶଟା ତିରିଶ । ଆମେ ଶହ ଶହ ଲୋକ ଆସିଥିଲୁ – ପ୍ରମୋଦ ଘରେ ଭୋଜି ଖାଇବାକୁ ସାତଟା ତିରିଶରେ । ପ୍ରମୋଦ ତା' ପୁଅର ଜନ୍ମବାର୍ଷିକୀ ଉତ୍ସବ କରୁଥିଲା । ଭୋଜିଭାତ, କୁକୁଡା, ପଲଉ, ଖିରି ମିଠା... ଗହ ଗହ ଆଲୁଅ, ଚହ ଚହ ସଙ୍ଗୀତ । ଆମେ ସବୁ ବିଭିନ୍ନ ବୟସର – ଟୋକା, ଦରବୁଢା, ବୁଢା, ପାକଲାବୁଢା, ଡେପୁଟି, ଇନ୍ସପେକ୍ଟର, ଅଧ୍ୟାପକ, ପୋଲିସ, ବେପାରୀ, ଡାକଘର, ବିଜୁଳିଘରର ଲୋକମାନେ – ପ୍ରମୋଦର ସାଙ୍ଗ ସହୋଦର, ଶୁଭେଚ୍ଛୁ ।

ଆମେ ଆଣିଥିଲୁ ଫୁଲତୋଡା, ରୂପାଗିନା, ସୁନାହାର, ମୁଦି, ବଳା, ଜାମା, ଜୋତା... ସବୁ ମୁଲାଏମ୍, ସାବ୍ଜା, ଛୋଟ ଛୋଟ ।

ଆକାଶରେ ମେଘ ଜମିଥିଲା । ଚିକ୍‌ଚିକ୍ କରୁଥିଲା ନିସ୍ତବ୍ଧ ନାଶାଚର ପକ୍ଷୀପରି ଘମାଘୋଟ ଅନ୍ଧାର । ଆମେ ଅନେକ ଆଲୁଅ ଜାଳି ତାକୁ ଉପହାସ କରୁଥିଲୁ, ଅରଣ୍ୟ ନାଭିରେ ବାମନଗୁଡିଏ ହୁଳାଟେକି ସେ ଅମାପ ଗହୀରକୁ ଚାହିଁଲାପରି ।

ଡକ୍ଟର ଘୋଷାଲ ମୋ ପାଖରେ ଚରିକାତ ମେଲି ଉପରକୁ ଚାହିଁ ସିଗ୍ରେଟ୍ ଶୋଷୁଥିଲେ । ଆରପଟେ ଗୋଟାଏ ପେଟ୍ରୋମେକ୍ସ ଥୋଇଦେଇ ଦରି ଉପରେ ବ୍ରିଜ୍ ଖେଳୁଥିଲେ ବ୍ରଜବାବୁ ଆଉ ତାଙ୍କ ସାଙ୍ଗମାନେ । ମଝିରେ ମଝିରେ ପାଟିତୁଣ୍ଡ କରୁଥିଲେ ।

ତା'ପରେ ହଠାତ୍ ଥମିଯାଉଥିଲେ ।

ଏତିକିବେଳେ କିଏ ଜଣେ ଗୋଟାଏ ଟର୍ଚ୍ଚ ଧରି ଚରିଆଡେ କାହାକୁ ଖୋଜିଲା, ଆସି ଡାକ୍ତର ଘୋଷାଲଙ୍କୁ ଖପ୍‌କିନା ଡେଣାଧରି ବସେଇଦେଲା । ଡାକ୍ତର ସନ୍ଧ୍ୟାରେ ସାମାନ୍ୟ

ନିଶାଖାଇ ମସଗୁଲ୍ ଥିଲେ । ଭାରି ସଉକିନ୍ ମଣିଷ । ଝିଙ୍କାଖାଇ ବିରକ୍ତ ହେଲେ । ହାତରୁ ସିଗ୍ରେଟ୍ ଖସିପଡିଲା । ଟର୍ଚ୍ଚ ଧରିଥିବା ଲୋକଟା କହିଲା – 'ଉଠନ୍ତୁ, ଆସନ୍ତୁ ଚଞ୍ଚଳ'...

ଗୋଟାଏ ହାଣ୍ଡିଭିତରୁ ଫିସ୍ ଫିସ୍ କଥା କେମିତି ଭାରି ଭାରି ଜଣାଯାଉଥିଲା ।

ମୁଁ ପଚାରିଲି, – 'କ'ଣ ହେଇଚି ?'

ତାସ୍ ଖେଳ ପାଖରୁ ଶୁଭିଲା, 'ଥ୍ରୀ ହାର୍ଟସ !'

ଡାକ୍ତର ଘୋଷାଲ ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଘର ଭିତରକୁ ପଶିଯାଉଥିଲେ । ମୋତେ କେମିତି ଅସ୍ଥିର ଲାଗିବାରୁ ମୁଁ ଉଠିପଡିଲି । ଏପଟ ସେପଟ ହେଲି ।

ରାସ୍ତା ପାଖକୁ ଟୋକାଗୁଡିଏ ଟେପ୍‌ରେକର୍ଡରରେ ଡିସ୍କୋଗୀତ ଶୁଣୁଥିଲେ । ଗୋଟାଏ ସେଥିରୁ ହାତ ଗୋଡ ଅଣ୍ଟା ଚମକାଉଥିଲା । ରନ୍ଧାଶାଳ ପାଖାପାଖି ଟିଣ ଚୌକିମାନଙ୍କରେ ଚଦର ଘୋଡିହେଇ ବୟସ୍କମାନେ ବସିଥିଲେ – ବୋଧହୁଏ କଥା ହେଉଥିଲେ ପଦେ ପଦେ । ତାଙ୍କ କଥାଗୁଡାକ ସନ୍ଧାରେ ବଡ ଭାଗ ଶୂନ୍ୟ ପଶିଯାଇଥିଲା ।

ଏତିକିବେଳେ ପ୍ରମୋଦ ଦେଖାଦେଲା । ତା' ମଲମଲ ଜାମା ଝାଳରେ ଲାଖିଯାଇଥିଲା । ତା' ପଛେର କିଏ ଗୋଟାଏ ଗୋଡାଉଥିଲା । ପ୍ରମୋଦ ଆସିଲେ ଦନ୍ତାପରି ମାଡିଆସେ । ଖେଳୁଆଡ ଟୋକା । ସେ ଆସି ମୋ ସାମ୍ନାରେ ଠିଆହେଇ ତା' ଢଙ୍ଗରେ କହିଲା – 'ଚାଲ୍ ଭାଇ, ସମସ୍ତଙ୍କୁ ଡାକି ବସେଇଦେ । ଫାଷ୍ଟ୍ ବେଚ୍ ନଉଠିଲେ ବିଳମ୍ବ ହେଇଯିବ । ମେଘଟା ପରା ଟେକି ରଖିଚି ।'

ଉଠ ଉଠ... ବସ, ବସ, ଶୁଣାଗଲା ଚତୁର୍ଦ୍ଦିଗରୁ । ଦରି ଲମ୍ବାବାଗେ ଚଉଡାହେଇ ପଡିଗଲା । ଧାଡି ଧାଡି, ଜାତି-ଜାତି ଲୋକେ ତକାତକିହେଇ ବସିଗଲେ । ମାତ୍ର ଦଶ ମିନିଟ୍ ଭିତରେ ପତ୍ରପଡିଗଲା । ଗୋଟାକ ପରେ ଗୋଟାଏ ମହକ ଏବଂ ସ୍ୱାଦର ପଟୁଆର ପତ୍ରରୁ ପତ୍ରକୁ ଆଗେଇଗଲା । ପତ୍ରରୁ ବାମ୍ଫଉଠିଲା, ବାସ୍ନାଉଠିଲା, କଥାବାର୍ତ୍ତା ହଠାତ୍ ଥମିଗଲା ।

ସମସ୍ତେ ମୁହଁପୋତି ଖାଇବାରେ ଲାଗିଗଲେ । ପ୍ରମୋଦ ଗୋଟାଏ ବଡ ପରାତରେ ମାଂସ ଆଉ ଜଣଙ୍କ ହାତରେ ଧରେଇ ଆସି ପହଞ୍ଚିଲା । ସମସ୍ତଙ୍କ ପତ୍ରରେ ବାଛି ବାଛି ବଡ ବଡ ଖଣ୍ଡ ଦେଇ ଦେଇ ଆସୁଥାଏ । ଆଉ ଦୁଇଜଣଙ୍କୁ ପାରିହେଇ ସେ ମୋ ପାଖକୁ ଆସିଯିବ – ଏତିକିବେଳେ କାକର ପବନ ବହିଲା । ଦୁଇ-ଚାରି ଟୋପା ପାଣି ମୋ କାନ୍ଧରେ ପିଠିରେ ପଡିଲା । ବରଫପରି ଥଣ୍ଡା । ମୋତେ ଅସୁସ୍ଥ ଲାଗିଲା ।

କେମିତି କେଜାଣି ଉଦ୍‌ବିଗ୍ନ ଲାଗିଲା । କୌଣସି ପ୍ରକାରେ ହାତଟେକି ଉଠିଯିବାକୁ ଇଛାହେଲା ।

ପ୍ରମୋଦ ମୋ ପାଖଲୋକ ପାଖେ ପହଞ୍ଚିଥାଏ । ବଡ ଚାମଚରେ ମାଂସ ଲେଉଟାଉଥାଏ ବାଛି ବାଛି ଦେବାପାଇଁ । ସେଇ ଟର୍ଚ୍ଚ ଧରିଥିବା ଲୋକଟି ଟାଉଟାଉ ଆସି ତା' ସାମନାରେ ଠିଆହେଲା ।

– 'ଆପଣ ଭିତରକୁ ଆସନ୍ତୁ ।'

ମାଂସ ଉପରୁ ନଜର ନଟେକି ପ୍ରମୋଦ ଥଙ୍ଗାଳିଆ ସ୍ୱରରେ କହିଲା, 'କିବେ କାହିଁକି ? କ'ଣ ବିପତ୍ତି ପଡିଲାପରି ଡାକୁଚୁ!'

ସେ କିଛି ନକହି ପ୍ରମୋଦର ପରସୁଥିବା ହାତର ମଣିବନ୍ଧକୁ ଧରିପକେଇଲା । ପ୍ରମୋଦ ତା' ମୁହଁକୁ ଚାହିଁବାରୁ କହିଲା – 'ପିଲା ଦେହ ଖରାପ... ସିରିଅସ୍ – ଆପଣ ଆସନ୍ତୁ ।'

'ଆରେ ଡକ୍ଟର ଘୋଷାଲକୁ ନେଇଯା । ସେ ସେ କାମ ସମ୍ଭାଳିବ ।'

'ନାଇଁ ଆପଣ ଆସନ୍ତୁ ।'

ପ୍ରମୋଦ ଆଉ କିଛି ନକହି ଉଠିପଡିଲା । ଖୁବ୍ ଭିତରେ ବିରକ୍ତିଟାକୁ ଲୁଚେଇ କହିଲା – 'ଚାଲ୍ ଚାଲ୍ ମୁଁ ଯିବି । କ'ଣ ହେଇଚି ଦେଖିବା ।' କିଛି ସମୟ ପରେ ଆହୁରି ଦମକାଏ କାକର ପବନ ଭୋଜିଖାଉଥିବା ଲୋକଙ୍କ ଉପର ଦେଇ ବହିଗଲା ।

ବାମ୍ଫ ଛାଡୁଥିବା ଭୋଜିପତ୍ରଯାକ ହିମଜର୍ଜର ମନେହେଲା । ମୁଁ ମାଂସ ଖଣ୍ଡେ ପାଟିରେ ପୂରେଇ ଜମା ଢୋକିପାରିଲିନାହିଁ । ଏକଦା ଗୋଟିଏ ପୋଷା ମୟୂରୀକୁ ଡାହାଳକୁକୁର ଧରିନେଇଥିଲା । ମୋର ମନେହେଲା, ସେ ମୟୂରୀର କ୍ଷୁରଧାର ପରି ଶାଣିତ ଆର୍ତ୍ତନାଦ ପବନକୁ ଖିନ୍‌ଭିନ୍ କରି ଚିରିଦେଲା ।

ପ୍ରମୋଦର ସ୍ତ୍ରୀ କାନ୍ଦୁଚି ବୋଲି କିଏ ଗୋଟାଏ ଫିସ୍ ଫିସ୍ କରି କହିଲା ।

କିଏ ପୁଣି କହିଲା – ଯାହାପାଇଁ ସେ ଉତ୍ସବ ହଉଥିଲା ସେ ଚାଲିଗଲା । ତେଣିକି କେବଳ ବର୍ଷା ବତାସିର ସମୟ । ଦୀପ ସବୁ ଲିଭିଯିବାର ବେଳ । ଦଳ ଦଳ ହୋଇ ଫେରିଯାଉଥିବା ଅର୍ଦ୍ଧଭୁକ୍ତ ମଣିଷଙ୍କର ପଟୁଆର ଅନ୍ଧାରରେ ଲୀନହୋଇଯାଉଥିବା ଦୃଶ୍ୟକୁ ଚାହିଁରହି ଅପେକ୍ଷା କରିବାର ଅମାପ ସମୟ ।

ରାତି ଦଶଟା ତିରିଶ୍ । ଆମେ ଛ'ଜଣ ଶେଷକୁ ରହିଥାଉ । ପ୍ରମୋଦର ଘର ଆଗରେ ସେ ନିମ୍ବ ଗଛଟା ଏତେ ଉଚ୍ଚ ଆଉ ଭୟାବହ ବୋଲି ମୁଁ ଆଗରୁ କେବେ ଭାବି ନଥିଲି । ଆମେ ତା'ରି ମୂଳରେ ଠିଆହେଇଥାଉ । ବର୍ଷା ସେମିତି ଟୋପି ଟୋପି ପକାଉ ଥାଏ । ପବନ ବହୁଥାଏ – କେତେବେଳେ ଛେଚିଦେବ ଠିକଣା ନାହିଁ ।

ଆମେ ସମସ୍ତେ ଦୂରଦୂରାନ୍ତରୁ ଆସିଥାଉ । ପ୍ରମୋଦ ଗୋଟାଏ ଭ୍ୟାନ୍‌ରେ ଆମକୁ ଗୋଟେଇଆଣିଥିଲା । ସେଇ ଭ୍ୟାନ୍‌ଟା ଯାଇଥିଲା ଭୋଜିପାଇଁ ମିଠା ଆଣିବାକୁ । ଫେରିଲେ ଆମକୁ ନେଇ ଛାଡିଦେବ ବୋଲି ଆମେ ଅପେକ୍ଷା କରିଥାଉ ।

ଡାକ୍ତର ଶାମାପ୍ରସାଦ ଘୋଷାଲ ପେଣ୍ଟ୍ ମୁଣାରୁ ଛୋଟ ବୋତଲଟିଏ କାଢି ପୁଣି ରଖିଦେଉଥାଏ । ସିଗ୍ରେଟ୍ ଶୋଷୁଥାଏ ଗୋଟାକ ପରେ ଗୋଟାଏ ।

ଅଳକା ବହିଦାର, ସ୍କୁଲ ଡେପୁଟି ଇନ୍ସପେକ୍ଟର । ପ୍ରମୋଦର ବାନ୍ଧବୀ । ଗୋଟିଏ ଟିଣ ଚୌକିରେ ବସି ତଳକୁ ଚାହିଁରହିଥାଏ । ବାରମ୍ବାର ଗୋଡ ଉପରେ ଗୋଡ ବଦଳ କରୁଥାଏ । ମୁରାରୀ ବାରିକ ପୋଷ୍ଟମାଷ୍ଟର ଆଉ ଗୋଟିଏ ଚୌକିରେ ବସିଥାଏ ! ଚନ୍ଦା ମୁଣ୍ଡକୁ ଆଉଁସୁଥାଏ

ଏବଂ ହାଇମାରୁଥାଏ ।

ସୁରେନ୍ଦ୍ର ସାହାଣି ସଙ୍ଗୀତ ମାଷ୍ଟର । ତା'ର ଲମ୍ବା ପଞ୍ଜାବୀ ଆଉ ପାଇଜାମା । ନିମ୍ବଗଛକୁ ଆଉଜି ଠିଆହୋଇ ରହିଥାଏ । ମଝିରେ ମଝିରେ ତା'ର ଦୀର୍ଘଶ୍ୱାସ ଶୁଭୁଥାଏ । ଅଖତାର୍ ଅଲି ବହିଦୋକାନୀ । ସବୁଠୁ ଅଧିକ ଡରକୁଳା – ଛାନିଆ ମଣିଷ । ତା'ର ସାଦିକୁ ଦୁଇବର୍ଷ ପୂରି ଯାଇଥିଲା । ତା'ର ପିଲାପିଲି କିଛିନାହିଁ । ସେ ଛନ୍‌ଛନ୍ ହଉଥାଏ । ମୋ ପାଖ ଛାଡୁନଥାଏ ।

"ୟା ଆଲ୍ଲା, କ'ଣ ସତେ ହେଇଗଲା କୁମାର ବାବୁ! ୟା ଆଲ୍ଲା!"

ମୁଁ କୁମାର ସାମନ୍ତରା । ପ୍ରମୋଦର ଖେଳ ସାଙ୍ଗ । ମୋତେ ଲାଗୁଥାଏ କ'ଣ ସବୁ ମୋ ଭିତରେ ରୁନ୍ଧିହୋଇଯାଉଥିଲା । ମୁଁ ସେଠି ରହିବାକୁ ଆଦୌ ଚାହୁଁ ନଥିଲି; ପ୍ରମୋଦକୁ ଆଦୌ ଭେଟିବାକୁ ଚାହୁଁନଥିଲି । କିନ୍ତୁ ପ୍ରମୋଦ ଲଣ୍ଠନଟାଏ ଧରି ଘରୁ ବାହାରିଆସିଲା । ଭୋଜିପତ୍ରମାନଙ୍କରେ କୁକୁର ବେଢିଯାଇଥିଲେ ।

ଅଳକା ବହିଦାର ଉଠି ଠିଆହେଲା । ପୋଷ୍ଟମାଷ୍ଟର ବି ।

ପ୍ରମୋଦ ଗୋଟାଏ ଚୌକିରେ ଲଣ୍ଠନ ଥୋଇ ମୋତେ ତା'ର ପରିହାସ ଢଙ୍ଗରେ କହିଲା – "the rascal had no manners..." ମୁଁ ତା' ପାଇଁ ଭୋଜି ଦେଲାବେଳେ ଚାଲିଗଲା । ମୋ ସାଙ୍ଗମାନେ ମୋ ଘରୁ ଅଧାଖିଆରେ ଉଠି ଚାଲିଗଲେ ।"

ମୁଁ ଜାଣିପାରୁଥିଲି, ତା' ଭିତରେ କ'ଣ ଘାରିହେଉଥିଲା । ମୁଁ ତାକୁ କୁଣ୍ଢେଇ ଧରି ପିଠି ଆଉଁସିଦେଲି । ମୋ କାନ୍ଧରେ ମୁହଁ ରଖି ସେ ଲୁହ ଗଡେଇଦେଲା । ସେ ମୋ' ଜାମା ଉପରେ ହିଁ ମୁହଁ ଘସିନେଲା । ମୋତେ ଚାହିଁ ଅଳ୍ପ ହସିଦେଲା ।

ଏତିକିବେଳେ ମିଠା ବୋଝେଇ ଭ୍ୟାନ୍ ଆସି ପହଞ୍ଚିଲା । କ'ଣ ଭାବିଲା କେଜାଣି; କହିଲା – "ଚାଲ୍ ମୁଁ ତତେ ତୋ ଘରେ ଛାଡିଦେଇ ଆସିବି ।"

ମୁଁ ଆସିଥାଏ ସବୁଠୁ ଦୂର ଜାଗାରୁ । ବି.ଡି.ଓ. କଲୋନିରେ ମୁଁ ରହୁଥାଏ । ପ୍ରାୟ ଛ'କିଲୋମିଟର ବାଟ ସେଇଠୁ । ବସ୍ ଆସିଯିବାରୁ ଆମେ ତରବରରେ ଭିତରକୁ ଜାକିଜୁକି ହେଇ ବସିଗଲୁ । ଆମ ଦିହିଁଙ୍କ ମଝିରେ ଅନ୍ଧାରରେ ଅଳକା ବହିଦାର ବସିଯାଇଥିଲା । ମୋ ଆରପାଖେ ଅଖତାର୍ ମିଆଁ ।

ଖାଲ-ଢିପ ରାସ୍ତା । ଘମାଘୋଟ ଅନ୍ଧାର । ଆଉ ଝର୍‌ଝର୍ ବର୍ଷା । ଗାଡି ଛେଚିକାଚି ହେଉଥାଏ । ଆମେ ଜଣକ ଉପରେ ଜଣେ ଅଜାଡିହେଇପଡୁଥାଉ । ଗୋଟାଏ ମୋଡ ପାଖରେ ଅଳକା ବହିଦାର ପ୍ରମୋଦ ଉପରେ ବାଡେଇ ହେଇଗଲା । ସେ ପଡିଯିବ ବୋଲି ଆମେ ତାକୁ ଧରିନେଲୁ । ସେ ଅନ୍ଧାର ଭିତରେ ମୋର କିମ୍ଭୁତ ଗୋଟାଏ ବିକଟାଳ ଅନୁଭବ ହେଲା ।

ତା'ପରେ ଆସିଲା ସ୍କୁଲ ଛକ । ସେଇ ପାଖରେ ଅଳକା ବହିଦାର ଓହ୍ଲେଇଯିବା କଥା ।

ପ୍ରମୋଦ ଉପରଦେଇ ସେ ଓହ୍ଲେଇଗଲା । ପ୍ରମୋଦ ଘୁଞ୍ଚିଆସିଲା ମୋ ପାଖକୁ ।

ବାହାରେ ବର୍ଷା । ଡ୍ରାଇଭର୍ ପାଖରୁ ଛତା ନେଇ ପ୍ରମୋଦ କହିଲା "ରହନ୍ତୁ, ମୁଁ ଆପଣଙ୍କୁ

ଘରେ ଛାଡିଦେଇ ଆସିବି ।" ପ୍ରମୋଦ ଓହ୍ଲେଇଲାବେଳେ ମୁଁ କେଜାଣି କାହିଁକି କହିଲି – 'ଆଚ୍ଛା ତୁ ବରଂ ଏଠିଥା । ମୁଁ ଗାଡି ପଠେଇଦଉଚି । ଡ୍ରାଇଭର, ଗାଡି ଛାଡ ।'

ଘଟଣାଟି ଆସ୍ତେ ସମସ୍ତଙ୍କୁ ସେଇ ଅନ୍ଧାରରେ ଚିପମାରି ଛୁଇଁଲାବେଳକୁ ମିଆଁର ବସା ଆସିଗଲା । ସେ ନଇଁପଡି କହିଲା – "ରୋକୋ, ରୋକୋ ।"

ମୋ ଉପର ଦେଇ ଲେସିହେଇ ଓହ୍ଲେଇଲାବେଳେ କହିଲା – "ତୁ ପ୍ରମୋଦକୁ ସେଠି ଓହ୍ଲେଇଦେଲୁ କାହିଁକି ?"

ସେ ଓହ୍ଲେଇଗଲା । ଗାଡି ଆଲୁଅରେ ସେ ଚିପେଇ ଚିପେଇ ଧାଇଁଗଲା ତା' ପିଣ୍ଡା ପର୍ଯ୍ୟନ୍ତ । ତା' ଶୋଇବା ବଖରାରେ ଆଲୁଅ ଜଳୁଥିଲା ।

ତା' ଉତ୍ତାରୁ ଶାଳବଣ । ସେଇଠି ଘରଦ୍ୱାର କିଛି ନାହିଁ । ମୋ ଧାଡିରେ ମୁଁ ଏକୁଟିଆ ବସିଥାଏ । ମୋତେ ଦିଶୁଥାଏ ଗୋଟିଏ ଛାତତଳେ ପ୍ରମୋଦ ଆଉ ଅଳକା ରାସ୍ତାରୁ ଓହ୍ଲେଇ ଗଲେ । ଦିଶୁଥାଏ ଅଳକା ବୋଧେ ପ୍ରମୋଦର ଅଣ୍ଟାରେ ହାତ ବେଢେଇ ଥିଲା ।...

ପୋଷ୍ଟମାଷ୍ଟର ବୁଢା ଓହ୍ଲେଇଯିବା କଥା । ସେ ଅନ୍ଧାରରେ କହିଲା – "ରଖ ହେ, ସେ ଖୁଣ୍ଟ ପାଖରେ । ଭାରି ବର୍ଷା... ଛତାଟା ତ ରହିଗଲା !"

ଓହ୍ଲେଇଲାବେଳେ ମୋତେ ଲକ୍ଷ୍ୟ କରି କହିଲା – "ଏଇଟା ଠିକ୍ କଥା କଲ ନାହିଁ କୁମାରବାବୁ !"

ମୁଁ ତାକୁ ବି କିଛି କହିଲି ନାହିଁ...

ତା'ପରେ ଡାକ୍ତରଖାନା ଛକ ପଡିବ । ଡାକ୍ତର ଘୋଷାଲ ମୋ ପାଖକୁ ଉଠିଆସି ବସିଲା । ତା' ମୁହଁରୁ ନିଶା ବାସ୍ନା । ସେ ମୋ କାନ୍ଧରେ ହାତରଖି ମୋ କାନ ପାଖରେ କହିଲା – "you did the best thing"... ମୋ କାନ୍ଧରେ ସେମିତି ହାତରଖି ସେ ବସିରହିଲା ।

ଓହ୍ଲେଇଲାବେଳେ ମୋ ପିଠି ଥାପୁଡେଇ ଦେଇ ଚାଲିଗଲା । ବର୍ଷାରେ ବି ଘୋଷାଲ ସେମିତି ଲମ୍ବା ପାହୁଣ୍ଡ ପକେଇ ତା' ମର୍ଯ୍ୟଦାରେ ଚାଲି ଚାଲି ଗଲା । ଓଦା ହେଇଯାଇଥିବ ନା କ'ଣ !

ହାଟ ପାଖରେ ସଙ୍ଗୀତ ମାଷ୍ଟରର ବସା ।

ସେ ସେମିତି ଆର ହାତ ମେଲେଇ ବସିଥାଏ ।

ଓହ୍ଲେଇଗଲାବେଳେ ମୋ ଜଙ୍ଘ ଉପରେ ଥାପୁଡିମାରି କୁର୍‌କୁର୍ ହସିଲା । ମୋ ଦିହ ଶୀତେଇ ଉଠିଲା ସେ ହସ ଶୁଣି ।

"ମୁଁ କାଲି ଅଳକା ପାଖରୁ ସବୁ ବୁଝିନେବି ।"

ମୁଁ ଚମକିଗଲାପରି ଡ୍ରାଇଭର ଆଡିକି ଘୁଞ୍ଚିଗଲି । ଝର୍ ଝର୍ ବର୍ଷା । କିଟି କିଟି ଅନ୍ଧାର । ମୋ ଦେହ ମୁଣ୍ଡରେ ଗୋଟାଏ ବୁଢୀଆଣି ଜାଲ ଲାଗିଲାପରି ମୁଁ ଅନୁଭବ କରିବାରୁ ହାତରେ ମୁଣ୍ଡଠୁ ଗୋଡଯାଏ ଝାଡିହେଇଗଲି ।

ଗାଡି ଘାଇଁ ଘାଇଁ ଚାଲିଥାଏ ।

ବି.ଡି.ଓ. କଲୋନୀରେ ମୋଡ ଭାଙ୍ଗିଲାବେଳକୁ ମୁଁ ଡ୍ରାଇଭରକୁ କହିଲି – "ଥଣ୍ଡା ପାଗ ହେଇଚି । କଫି କପେ ଖାଇଦେଇ ଯାଅ ।"

"ବାବୁଙ୍କୁ ଯାଇ ପହଞ୍ଚାଇବାକୁ ହବ – ଡେରି ହେଇଯିବ ।"

ମୁଁ ହସି କହିଲି – "କିଛି ଚିନ୍ତାନାହିଁ – ମୁଁ ସେ କଥା ବୁଝିବି ।"

ଡ୍ରାଇଭର କଫି ପିଇସାରି କହିଲା – "ସାଇବ ଛୁଆଟାପରି ସେ ପିଲା ଭାରି ସୁନ୍ଦରଟିଏ ହେଇଥିଲା ସାର୍ ।"

ମୋ ଅଜାଣତରେ ମୋ ଆଖି ଜକେଇଗଲା । ବୁକୁ ଭାରିଲାଗିଲା ।

ମୁଁ ତା' ଆରଦିନ ସୁରେନ୍ଦ୍ର ସାହାଣୀଠୁ ଶୁଣିଲି ଯେ ଗାଡି ପହଞ୍ଚିଲାବେଳକୁ ପ୍ରମୋଦ ବର୍ଷାରେ ଧାଇଁ ଧାଇଁ ଘରେ ପହଞ୍ଚିସାରିଥିଲା । ସେ ଭୁଲିଯାଇଥିଲା ଛତାଟା ଅଳକା ବହିଦାର ଘରେ ।



## ଏଇ ବୋଧେ ଶେଷ ଦୁଃଖ

ମୁଁ ସ୍ଥିର କରିପାରୁନଥିଲି ଘରୁ ଗୋଡ କାଢି ଯିବି ନା ନାହିଁ ? ନାଗଫେଣୀ କଣ୍ଟା ଉପରେ ଗୋଡ ଥାପି ବସିରହିବା ମଧ୍ୟ ସମ୍ଭବ ନଥିଲା । କୌଣସି ଦିଗକୁ ସାହସରେ ଚାହିଁ ମୁକାବିଲା କରିବାକୁ ଦମ୍ଭ ନଥିଲା ।

ସକାଳ ପହରଟାରେ ଲାଗୁଥିଲା ଯେମିତି ଗୋଟାଏ ବାଲିସରସର ଅଠାଳିଆ ଜାଲ ଘେରି ରହିଛି ଚତୁର୍ଦ୍ଦିଗ । ପିଠି ମଝିଟାରେ ଲାଖିଯାଇଛି; ଫୋଡି ହେଉଛି ସରୁ ସରୁ ସହସ୍ରେ ଛୁଞ୍ଚିପରି । ହାତପାଉନାହିଁ । ହାତରେ ଜାଲ ବେଢିରହିଛି, ଆଙ୍ଗୁଠି ଫିଟୁନାହିଁ । ଗୋଡ ଛନ୍ଦିହୋଇଯାଇଛି – ଘୁଞ୍ଚିପାରୁନାହିଁ ।

ମୁଁ ରାଗରେ କୁହୁଳୁଥିଲି । କାହା ଉପରେ ରାଗୁଥିଲି କେଜାଣି; କିନ୍ତୁ ହାତ ମୁଠାକରି ଗୋଡ ବାଡଉଥିଲି ଭୂଇଁରେ । ଧପ୍‌ଧପ୍ ଚାଲିଯାଇ କାନ୍ଥକୁ ଘୁସି ମାରିଥିଲି ମାଗୁଣି ମିଶ୍ର ଭାବି ।

...ମାଗୁଣିଆ...ଗଦ୍‌ଦାର ଶାଲା, ରାସ୍କେଲ, ହାରାମିକା ବଚ୍ଚା ! ତୋ ନାକ ଫଟେଇ ଦେବି ! ତୋ ଦାନ୍ତ ଝାଡିଦେବି !...ଚୁ...ଚୁ ହାତ କାଟିଲା । ଆଖିରେ ଲୁହ ଭରିଗଲା । ମାଗୁଣି ଘୁଞ୍ଚିଗଲା ଆକାଶକୁ । ତା' ଦପ୍ତରକୁ – ସେଇଠି ସେ ପୁଣି ରାଜଗାଦି ଉପରେ ମାଡିବସିଲା । ହାତ ଗୋଡ ପାଉନଥିବା, ପିଆଦା ସନ୍ତ୍ରୀ ଜଗିଥିବା ଅଗମ୍ୟ ଆକାଶିଆ ଅଞ୍ଚଳ । ମୁଁ ତଳେ ଥାଇ ଛଟପଟ ହେଲେ ତା'ର କ'ଣ ଯାଏ ଆସେ ? ସେ ପୁଣି ମୋ ଇଜ୍ଜତ୍‌କୁ ଦି'କଡାର କରି ଗୋଇଠା ମାରିପାରେ !

ମୋ ଭିତର ପୁଣି ଟକମକ ଫୁଟିଲା । ମୁଁ ଦାନ୍ତ କାମୁଡି ମାଡିଗଲାବେଳେ ସେ ମୋ ଝରକା ବାଟେ ପାରିହଉଥିଲା... ମାନେ ମାଗୁଣି ମିଶ୍ର ନୁହେ – ଆଉ ଜଣେ କିଏ ।

ମୁଁ ତାକୁ କେବେ ଦେଖିନଥିଲି । ସେ ଅଞ୍ଚଳକୁ ସେ ପ୍ରଥମେ ବୋଧେ ଆସିଥିଲା । ପ୍ରାୟ ମୋ'ରି ବୟସ ହବ ନା' କ'ଣ ! ଏଇ ପଇଁତ୍ରିଶରୁ ଚାଳିଶ । ହାରାମ୍‌ଜାଦା କେଡେ ବଢିଆ ନିଶ ବାଗେଇଚି ! କେମିତି ବେପରୁଆ ପୃଥ୍ୱୀ ଜୟ କଲାପରି ଚାଲିଛି ! ଖାଟିର୍ ନାଇଁ !

ସେ ସେମିତି ମୁରୁକି ମାରୁଚି କାହିଁକି ? ଶାଲା କ'ଣ ଭାବିଚି ସବୁ ଦୁଃଖ... ସବୁ ଜ୍ୱାଳା ମୋର, ଆଉ ସବୁ ଛେନା ସରପୁଳି ତା'ର ? ଏଇଠୁ ଯାଉ ଯାଉ ଆର ଛକରେ କ'ଣ ତାକୁ ଗାଡିଟାଏ ଧକ୍‌କାମାରି ଗଡେଇ ଦବନାଇଁ ! ତା'ର ଡାହାଣ ଗୋଡର ନଳି ହାଡ ଭାଙ୍ଗି ଦି'ଖଣ୍ଡ ହୋଇଯିବନାହିଁ । ଶାଲା, ହସୁଚି କ'ଣ !

ତା' ମା' ଗାଁକୁ ଧାନ ଅମଳ ପାଇଁ ଯାଇ ସେଇଠି ଆମ୍ବଗଛ ମୂଳେ ମରିଯିବ ନାଇଁ ! ଗାଁଲୋକେ ମିଶି ଜମି ଡିହ ତା'ଠୁ ମିଛ ଦଲିଲରେ ଟିପଚିହ୍ନ ମାରି ନେଇଯିବେନାଇଁ ?

ଶାଳା, ବେକୁବ୍ କାହାଁକା ! ହସୁଚୁ କ'ଣ ବେ ? ମୋ ସୁକୁଟ ଦେଖି ହସୁଚୁ ?

ମୁଁ ତାକୁ କଟମଟ କରି ଚାହିଁରହିଥାଏ । ସେ ସେମିତି ମନକୁ ମନ ହସି ହସି ଚାଲି ଯାଉଥାଏ ।

ତା' ମୁହଁ ଦର୍ପଣପରି ଜଳୁଥାଏ । ଫୁଲ ଫୁଟି ଝରିଯାଉଥାଏ ଅଜସ୍ର । କ'ଣ ଗୋଟାଏ ଗୁପ୍ତଧନ ପାଇଗଲାପରି ସେ ଦିଶୁଥାଏ । ପରମ ତୃପ୍ତିରେ ସାରା ସାମ୍ରାଜ୍ୟଟା ପାଦତଳେ ଲୋଟିପଡିବାର ଦେଖି ସେ ମୁଚୁକି ମାରୁଥାଏ !

ମୋ ହାତ ଜଳିଲା ତାକୁ ଦେଖି । ମୁଁ ତାକୁ ତା' ସଂସାର ସଙ୍ଗେ ଏକାଠି ଜାଳି ଦେବାକୁ ଇଛାକଲି । ସେ ସେମିତି ଆକାଶରେ ନୂଆ ମେଘପରି ଭାସିଚାଲିଗଲା ।

ତା'ପରେ ରିକ୍ସା ଟଣର ଟଣର କରି ମୋତ ପାଖରେ ବୁଲିପଡିଲା ଭୀମା । ତା' କପାଳରୁ ଝାଳ ଛିଟିପଡୁଥାଏ । ବହୁଦୂରରୁ, ବୋଧେ ଷ୍ଟେସନ୍‌ରୁ ଭଡା ନେଇ ଆସିଥାଏ ।

ତାକୁ ତା' ମାଇପ ସବୁଦିନ ସଞ୍ଜବେଳେ ବକେ । ସେ ମହୁଲି ଗନ୍ଧରେ ଟଳି ଟଳି ଯାଇ କାନ୍ଥକୁ ଆଉଜି ବସିପଡେ । ଦାନ୍ତ ନିକୁଟି ଗାଳି ଶୁଣେ । ତା' ମାଇପ ବୁକୁ ବାଡେଇ ବାହୁନି ବାହୁନି କାନ୍ଦେ ! ଭୀମା କିଛି କହେ ନାହିଁ । ତା' ଆଖିରୁ ତବ ତବ ପାଣି ନିଗିଡିଯାଏ ।

ତା'ର ଗୋଟିଏ ବୋଲି ଝିଅ । ପାଞ୍ଚବର୍ଷର କଣେଇ । ତାକୁ ରିକ୍ସାରେ ବସେଇ ସେ କନ୍‌ଭେଣ୍ଟରେ ପଢଉଥିଲା । ଦିନେ ରାସ୍ତା ହଣା ହୋଇଥିଲା । ଭୀମା ରୋକିପାରିଲା ନାହିଁ । ସେଇଠି ସେ ଛିଟିକିପଡିଲା । ସେଇଠି ମରିଗଲା ।

ଭୀମାକୁ ମୁଁ ଜାଣିଛି । ଭୀମା ନିଶା ଖାଇଲେ ବି ସେମିତି ହସିପାରିବନାହିଁ । ତା' ଭିତରେ ଘା' ଏବେ ବି ଲସା ଝରଉଚି ।

ସେ ତୁରଙ୍ଗମୁହାଁ କଣ୍ଟ୍ରାକ୍ଟର ବେଣୁ ପ୍ରଧାନ । ତା'ର ଏବେ ନୂଆ ଗାଡି ତିନିଟା ଆସିଲା । ସେ ତା' ବାଘୁଣୀ ମାଇପକୁ ତାଲାଦେଇ ପଦାକୁ ବାହାରେ । ତା' ଦୁଃଖ ସେ ବାଣ୍ଟିପାରେନାହିଁ । ବର୍ଷକୁ କୋଟିଏ ଟଙ୍କା ଉପାର୍ଜନ କଲେ ସୁଦ୍ଧା ସେ ସେମତି ହସିପାରିବନାହିଁ ।

ଆର୍ମି ଅଫିସର ଜେନା – ସେ ବି ସେଇଆ । ତା' ପୁଅକୁ ବ୍ଲଡ କେନ୍‌ସର୍ ।

ଆଉ ସବୁ ଯେତେ ଅଛନ୍ତି ମୋ ପୃଥିବୀରେ ସମସ୍ତେ ସେଇଆ । ପାଇକରାୟର ବିଧବା ସ୍ତ୍ରୀ...ଶ୍ରୀପତି ଗୋସ୍ୱାମୀ...ମାନୁ ମହାନ୍ତି...ଅମ୍ବିକା ଦାସ...ଓଗେର୍ ଓଗେର୍ ।

ସେ ସେମିତି ହସିଦେଇ ଚାଲିଗଲାପରେ ମୁଁ ଥମ୍ ହେଇ ରହିଗଲି କିଛି ସମୟ ।

ଆଉ ବଖରାରୁ ସକ୍ ସକ୍ କାନ୍ଦଣା ଶୁଣାଗଲା । ମନୋରମା ବୋଧେ କାନ୍ଦୁଥିଲା । ମନୋରମା ମୋ ସ୍ତ୍ରୀ । କାହିଁକି ସେ ବେକୁବ୍ ମାଇକିନା କାନ୍ଦୁଥିଲା ?... ତା' ଚାକିରି ଚାଲିଗଲା ବୋଲି ? ଛୁଟିରେ ଯାଇଥିବା ଲୋକଟା ଫେରିଆସିଲା । ଯାକୁ ଆଉ କୋଉ ହିସାବରେ ସେ ମାଗୁଣି ମିଶ୍ର କାମରେ ରଖିଥାନ୍ତା ?

...ରଖିଥାନ୍ତା, ଯଦି ମନୋରମା ତା' ହିସାବକୁ ଆସିଥାନ୍ତା । ମୁଁ ପୁଣି ଫାଉଁକିନା ରାଗରେ

ଜଳିଗଲି । ପାଉଁଶର ଛାଞ୍ଚଟି ସେମିତି ଠିଆହୋଇ ରହିଥିଲା । ତା' ଗାଲ ଲୁହରେ ଓଦା ସରସର ହୋଇଗଲା । ମୁଁ ସେଇଦିନ ଜାଣି ହାରିଯାଇଥିଲି । ମୋର ସମସ୍ତ ଟାଣପଣ ଭାଙ୍ଗିଯାଇଥିଲା ।

ମନୋରମା ଚାକିରି କରିବା ନିହାତି ପ୍ରୟୋଜନ । କାରଣ ତିନିଟା ଝିଅ ପାଠ ପଢିବେ । କନ୍‌ଭେଣ୍ଟରେ ପଢିବେ । ମନୋରମାର ଅରମାନ ଥିଲା ଡ୍ରେସ୍, ଟାଇ, ଜୋତା ପିନ୍ଧି ପଢିବାକୁ ଯାଇଥାନ୍ତା । ସାଇବି ଇଂରାଜୀ କହିଥାନ୍ତା । ସେଇଟା ଏବେ ଝିଅଙ୍କଠି ମେଣ୍ଟିବା ଦରକାର । ତା'ହେଲେ ଚାକିରି ନକରି ଗତି କାହିଁ ?

ମୋ ମା' ଗାଁକୁ ଯାଇ ଆଉ ଫେରିଲା ନାହିଁ । ଆମ୍ବତୋଟା ପାଖରେ ବସି ମରିଗଲା । ବାପକୁ ଦେଖିବାର ମୋର ମନେନାହିଁ । ମୋର ଭାଇ ଭଉଣୀ କେହି ନାହାନ୍ତି ।

ମା'କୁ ମନୋରମା ସହିପାରୁନଥିଲା । ମନୋରମା ଚାକିରି କରିବା ମା'କୁ ସୁଖ ଲାଗୁନଥିଲା । ମୋ ଜାଣିବାରେ ନଜାଣିବାରେ ସେମାନଙ୍କର ବହୁବାର ଝଗଡା ହେଉଥିଲା । ମୋ ପାଇଁ ପକ୍ଷ ଗ୍ରହଣକରିବା ସମ୍ଭବ ନଥିଲା, ଗ୍ରହଣ ନକରି ଉପାୟ ବି ନଥିଲା । ମା' ଗାଁକୁ ଗଲା ଏବଂ ଫେରିଲା ନାହିଁ ।

କ'ଣ ବା ଚାକିରି ମନୋରମାର ? ମୁଁ କେତେ କହିଲି ଛାଡିଦେବାକୁ – ଶୁଣିଲା ନାହିଁ । ଶେଷକୁ ଏମିତି ଚଡାଖାଇବାକୁ ଯୋଗ ଥିଲା ।

ଆମେ କରଜ କରି ଚଳୁ – ଲୁଗାପଟା, ଚାଉଳ ଡାଲି, ପରିବାପତ୍ର, ମାଛ ଅଣ୍ଡା ସବୁ । ମାସକୁ ମାସ ଦରମା ସେଥିରେ ଅଜାଡି ଦେବାପରେ ପୁଣି ଦାନ୍ତ ନିକୁଟି ବାକିଆ ଆଣିବାକୁ ପଡେ । ଦୋକାନୀମାନେ ଦୟାକଲାପରି ଜିନିଷ ଦିଅନ୍ତି । କାହାକୁ ତୁଟି କରି ପଦେ କହିହୁଏନାହିଁ – ସହି ବି ହୁଏ ନାହିଁ ।

ଝିଅମାନେ ବୁଝିଲେଣି । ସେମାନେ ବି ବଟିଆ ଦୋକାନୀ ପାଖରେ ଝୋଲା ଧରି ଠିଆହୋଇରହନ୍ତି ତା'ର ନଗଦି ଗରାଖଙ୍କ ଭିଡ ଭାଙ୍ଗିବା ପର୍ଯ୍ୟନ୍ତ ।

ବଡଝିଅ ଗଲେ ତା' ମୁଣ୍ଡରେ ଦି'ଟା ଅଧିକା ପରିବା ସେ ପକାଇଦେବା କଥା ମୁଁ ଶୁଣିଲିଣି । ଝିଅକୁ ଦୋକାନ ବାସନ୍ଦ କରିହେବନାହିଁ । ଏଣେ ସେ ଶାଳା ବଟିଆକୁ ବି ଛାଡିହେବନାହିଁ । ମୁଁ ଦେଖିବି ଯଦି ଆଉଥରେ କ'ଣ ସେମିତି ହେଇଚି, ମୁଁ ସେ ଗୋଧିକୁ ଦୁଇଫାଳ କରି ଚିରିଦେବି । କାଲି ସେ ବାକି ପଇସା ମଗେଇପଠେଇଥିଲା – ସାତଶ' ତେପନ ଟଙ୍କା । ସେ କିଛି ନହେଲେ ପାଞ୍ଚଶ ଟଙ୍କା ନପାଇଲେ ଆଉ ପଇସାଟାର ବାକିଆ ଦବନାଇଁ ।

ଭାବୁଥିଲି ଗୋଟାଏ ମାସ କୋଉଠୁ ଟଙ୍କା ତିନି ହଜାର ମିଳିଗଲେ ସବୁ ଶୁଝିଦେଇ ଯାହାହେଲା ଦୁଃଖେସୁଖେ ନଗଦରେ ଚଳିଯାନ୍ତୁ; କିନ୍ତୁ ସେ ମିଳୁଚି କାହୁଁ ? ମିଳନ୍ତା ଯଦି ମୁଁ ମାଗୁଣି ମିଶ୍ର ହେଇଥାନ୍ତି । ଚାକିରି ଯିବା ଆଗରୁ ମନୋରମା ସାହସ ଦେଇ କହୁଥିଲା ତା'ର ଏକମାତ୍ର ସୁନାମାଳିଟିକୁ ବନ୍ଧାଦେଇ ଟଙ୍କା ଆଣି ବାକିଆ ଶୁଝିଦେବାକୁ । ସେ କ'ଣ ଗୋଟାଏ କଥା ! ଆରେ ସେ ବନ୍ଧକବାଲା ପରା ମାସକୁ ମାସ ସୁଧ କଷିଦବ ! ଶେଷକୁ ମାଳିଟିକୁ ମୁକୁଳେଇବାକୁ ବଳ

ନଥିବ ! କ'ଣ କରିବା ? ଆଜି ବଟିଆ ପଇସା ନପାଇଲେ ପରିବାପତ୍ର ଦବନାହିଁ । ଓଳିଏ ଚଳିଯିବାକୁ ମୁଣ୍ଡି ବାଇଗଣଟାଏ ବି ନାହିଁ ।

ଆମ ଗାଁ ଜମିପାଇଁ କଚେରୀରେ ତାରିଖ – ଛୁଟି ନେଇ ସେଇଠି ହାଜର ହବାକୁ ପଡିବ । ଓକିଲ ସାମସୁଲ ମିଆଁକୁ ତା' ଫିସ୍ ନଦେଲେ ଆରପକ୍ଷ ଆଡେ ସବୁ ମୋଡିଦବ । ତା' ଆଖି ପେଚୁଆ, ଦୃଷ୍ଟି ସ୍ଥିର, ସେ ଝିଟିପିଟି ପରି ଦିଶେ – ନିଶ୍ଚଳ, ବିପଜ୍ଜନକ ! ଗୋଟାଏ ଝାମ୍ପରେ ସେ ପତଙ୍ଗକୁ ଧରିନେଇ ପୁଣି ସ୍ଥିର ହୋଇଯାଏ । ପତଙ୍ଗ ଫଟ୍ ଫଟ୍ ହଉଥାଏ ପ୍ରାଣ ଥିବାଯାଏଁ ।

ସେ ପଚାଶ ଟଙ୍କା ନଧରିଲେ କୋର୍ଟରେ ଠିଆହେବନାହିଁ । ଜମି ମୋର । କ'ଣ ବାପାଙ୍କ ନାଁରେ କରଜ କାଗଜଟାଏ ଦେଖାଇ ସେ ଟାଉଟର ଦଳ ପାଞ୍ଚମାଣ ହଡପ କରିବାକୁ ବସିଛନ୍ତି । ନ୍ୟାୟ ମାଗିଲେ କିଏ ଦଉଚି ? ପଚାଶ ଟଙ୍କା କିଏ ଦବ ? ସୁବୁଦ୍ଧିର ହାତଉଧାରି ଦୁଇଶ ତିରିଶ ଟଙ୍କା । ଆଉ ସତୁରି ମାଗିଲେ ତିନିଶ ହେଇଥାନ୍ତା, ସେ କ'ଣ ରାଜିହବ ?

ଆଜି ମାଗୁଣି ମିଶ୍ରର ତାଗିଦା – ଗୋରୁମୁଣ୍ଡ ଗଣତି କାଗଜଟାଏ କଣ ତିଆରି ନକଲେ ଆସେଂବ୍ଲିରେ ମନ୍ତ୍ରୀ ଉତ୍ତର ଦେଇପାରିବନାହିଁ । ଆଜି ସମସ୍ତଙ୍କୁ ଛୁଟିନେବା ମନା । ମୋ କାମ ସେଥିରେ କିଛି ନାହିଁ; ହେଲେ କାହିଁକି ଭୋଳି ମହାପାତ୍ର ଆସିନାହିଁ ବୋଲି ହୁରିପଡିଯିବ । ଗୋଟାଏ ଡାକ୍ତରୀ ସାର୍ଟିଫିକେଟ୍ ଦେଇ ରହିଯିବି ।

ସକାଳୁ ବାଷଠି ଥର ତରଳ ଝାଡା ହେଲେ କ'ଣ କିଏ ଅଫିସ୍ ଯାଇପାରେ ? କାଳି ସାହୁ ଡାକ୍ତର ବର୍ମାଫେରନ୍ତା । ସବୁ ମିଛ ଖଚ ଲେଖି ମୋହର ମାରିଦବ । ନବ ତିନି ଟଙ୍କା...ନେଲେ ନଉ ପଛେ ସେଥିରୁ ଖଣ୍ଡେ କାଗଜ ନଯୋଡିଲେ ଦରଖାସ୍ତ ଖାରଜ କରିଦବ ମାଗୁଣିଆ । ହେଲେ ସେ ବୁଢା ଖଚୁଆ ତା' ଦୋକାନରେ ଅଛି ନା ନାହିଁ କେଜାଣି ? ଗାଁରେ କ'ଣ ନୂଆ ଜମି କିଣିଚି ବୋଲି କହୁଥିଲା । ତା' ପଛରେ ଲାଗିଥିବ ଯଦି ସକାଳୁ ଉଠି ଚାଲିଯିବଣି – ତେବେ... !

ହଁ, ଘରବାଲା ନୋଟିସ୍ ଦେଲାଣି ଖାଲି କରିବାକୁ । ସେ ଆସୁଚି ନିଜେ ରହିବ । ଶାଲା, ଆଉ କୋଉଠି ତତେ ମଶାଣି ମିଳିଲା ନାହିଁ ? ପଇସା ତ ନଉଚୁ କୋଉ ମାହାଳିଆ ଘର ଦେଇଚୁ କି ?

ଆଜିକାଲି ଭଡାଟିଆ ଘର ଛାଡୁନାହାନ୍ତି । କୋର୍ଟ କଚେରୀ କଲେ ଭଡାଟିଆ ଜିଣୁଚନ୍ତି । ଭଡା ଦବାଯାଏ ତାକୁ କେହି ତଡିପାରିବେନାହିଁ । ହେଲେ ସୁଗ୍ରୀବ ଦଣ୍ଡାସି କ'ଣ ସେମିତି ମାନିଯିବ । ସେ ଯେଉଁ ତିନିଜଣ ମାଗୁରନିଶିଆ ଭେଣ୍ଡିଆ ନୋଟିସ୍ ଧରି ଆସିଥିଲେ – ତାଙ୍କୁ ଦେଖିଲା ପରେ କୋଉ ସାହସରେ ଘର ଜବରଦଖଲ କରି ରହିହବ ? ଏ ଅଞ୍ଚଳରେ ଆଉ ଘର ବା କାହିଁ ? ବର୍ଷାକାଳ । ଦିନେ ଛାଡନାହିଁ – ମେଘ ଘୋଟିରହିଛି ସବୁବେଳେ ।

ମନୋରମା କାନ୍ଦୁଚି । ମୋର ସାରା ସଂସାର ସକ୍ ସକ୍ କାନ୍ଦୁଚି ।

ମୁଁ ଗୋଡ କାଢି ବାହାରିପାରୁନାହିଁ । କୁଆଡେ ଯିବି ? ମୋର ମନ ଦେହ ପ୍ରାଣ ଶିଝୁଛି ପ୍ରବଳ ଉତ୍ତାପରେ । ଏତିକିବେଳେ ଝରକାବାଟେ ଦେଖିଲି ସେ ହସ ହସ ବଦନ... ଶାଳା ଇଡିଅଟ୍

ଫେରୁଚି । ମୁଁ ଋରି ଖେପାରେ ରାସ୍ତା ଉପରକୁ ଋଲିଗଲି ଠିକ୍ ଘର ସାମ୍ନାସାମ୍ନି ।

ସେ କିଛି ନକହି ମୋତେ ଋହିଁ ଆସ୍ତେ ଟିକିଏ ହସିଦେଲା । ଆଃ, କି ଦାନ୍ତ ଶଳାର! ମୁକ୍ତାପରି ଚକ୍ ଚକ୍ । ସେ ଆଡହୋଇ ଋଲିଗଲାବେଳେ ମୁଁ ବାଟ ଜଗିଲାପରି ଠିଆ ହେଇଗଲି । ଋହିଁଲି ତା'ର ମୁଚୁକି ମାରୁଥିବା ଆଖିକି ।

– "ଆପଣ କିଏ ? ଏ ଅଞ୍ଚଳକୁ କାହିଁକି ଆସିଥିଲେ ?"

ସେ ବୋଧେ ତାଚ୍ଛଲ୍ୟରେ, ଅବହେଳାରେ ଟିକିଏ ହସିଦେଲା । ମୋର ପ୍ରଶ୍ନ କରିବା ଅଧିକାରକୁ ହସିଦେଲା । ଆଡ ହୋଇ ଋଲିଯିବାକୁ ବସୁଥିଲା, ମୁଁ ଯିବାକୁ ଦେଲି ନାହିଁ, ବାଟ ଜଗି ଠିଆହେଲି । ଅଶିଷ୍ଟଚାର, ଅଭଦ୍ରତା, ଅନଧିକାର! ତଥାପି ମୁଁ ସେ ହସର ରହସ୍ୟକୁ ଭେଦିବାକୁ ଋହୁଁଥିଲି ।

ସେ ମୋ ଆଖିକୁ ଋହିଁ ପଋରିଲା, 'ମୋତେ ଆପଣ ଜାଣିବାରେ ପ୍ରୟୋଜନ କ'ଣ ?'

"ନାଇଁ ଏମିତି, ଆପଣଙ୍କୁ ଦେଖି ଆପଣଙ୍କ ପରିଚୟ ପାଇବାକୁ ଭାରି ଇଚ୍ଛା ହେଲା । ଆପଣଙ୍କ ଭଳି ଏଠି କେହି ନାହାନ୍ତି ।"

ସେ ଦାନ୍ତକାଢି ହସିଲା । ଦାନ୍ତରେ ଖରାପଡି ହୀରାଖଣ୍ଡ ପରି ଝଟକିଲା – "ଆପଣଙ୍କ ଭଳି ବି ନାହାନ୍ତି ।"

'ଆପଣ ବୋଧେ ଥଟ୍ଟା ମଣିଲେ । ମୁଁ କିନ୍ତୁ ସତ କହୁଚି ଯେ, ଆପଣ ଆମ ସମସ୍ତଙ୍କଠାରୁ ଭିନ୍ନ । କାରଣ, କାରଣ...ଆପଣ କିଛି ମନେ କରିବେ ନାଇଁ... ଆମର ଏଠି କେହି ଆପଣଙ୍କ ଭଳି ହସନ୍ତି ନାଇଁ...ହସିପାରନ୍ତି ନାହିଁ – ହସି ଜାଣନ୍ତି ନାହିଁ ।'

"ଏଇଆ କହିବାକୁ କ'ଣ ଆପଣ ମୋତେ ବାଟ ଜଗି ଅଟକାଇଛନ୍ତି ?"

ମୁଁ ଅପ୍ରତିଭ ହେଲାପରି ଆଡ ହେଇଗଲି । ସେ କିନ୍ତୁ ଆଡହେଇ ଋଲିଗଲେ ନାହିଁ ବରଂ ଠିଆହୋଇ ମୋତେ ସେମିତି ଋହିଁରହିଲେ ।

"ମୁଁ ଜଣକୁ ଖୋଜି ଖୋଜି ଏଠି ପହଞ୍ଚିଛି, ଘରପାଉନାହିଁ, ଆପଣ ଜାଣିବେ କି ?"

"କାହାକୁ ଖୋଜୁଛନ୍ତି ।"

"ମାଗୁଣି ମିଶ୍ରଙ୍କୁ! ଆପଣ ତାଙ୍କୁ ଜାଣନ୍ତି ?" ମୁଁ ହାଁକରି ଋହିଁ ରହିଲି । ମୋର ସବୁ ଯେମିତି ଶୂନ୍ ମାରିଗଲା ।

ମୁଁ ପଋରିଦେଲି, "ଆପଣ ମାଗୁଣି ମିଶ୍ରଙ୍କୁ କେମିତି ଜାଣିଲେ ?"

"ସେଇଟା ଶୁଣି ଆପଣଙ୍କର ଲାଭ କ'ଣ ? ବାଟ ଜାଣିଥିଲେ କହିଦିଅନ୍ତୁ – ମୁଁ ଯାଏ ।"

"ହଁ ମୁଁ କହିଦେବି, କାରଣ ମୁଁ ତାଙ୍କୁ ଖୁବ୍ ଭଲଭାବରେ ଜାଣେ । ସେଥିପାଇଁ ଆଶ୍ଚର୍ଯ୍ୟ ଲାଗୁଛି ଯେ ଆପଣଙ୍କ ଭଳି ଜଣେ ଲୋକ ତା' ସହିତ କେମିତି ମିଶିପାରିଲେ ?"

ସେ କିଛି ନକହି ସେମିତି ମୁଚୁକିମାରି ଋହିଁରହିଲେ ।

"ଆପଣ ତାଙ୍କ ବିଷୟରେ କିଛି ଜାଣିଥାଇପାରନ୍ତି; କିନ୍ତୁ ମୋ ବିଷୟରେ ଆପଣ କ'ଣ

ଜାଣନ୍ତି ?"

ମୁଁ ସାମାନ୍ୟ ଅପ୍ରସ୍ତୁତ ହେଲାପରି କହିଲି – "କିଛି ଜାଣିନାହିଁ ନିଶ୍ଚୟ; କିନ୍ତୁ ଯେତିକି ଜାଣିଛି ତାହା ଯଥେଷ୍ଟ ।"

"ଆଚ୍ଛା ହଉ, ସେକଥା ପରେ ଦେଖିବା । ଏବେ ମାଗୁଣି ମିଶ୍ରଙ୍କ ଘର ଠିକଣା କହିଲେ ମୁଁ ଟିକିଏ ସେଠିକି ଚଞ୍ଚଳ ଯିବାକୁ ଚାହୁଁଛି ।"

"ମୁଁ ଆଉ କହିବି କ'ଣ, ଚାଲୁନାହାନ୍ତି ମୁଁ ଆପଣଙ୍କ ସାଙ୍ଗରେ ଯାଇ ଦେଖେଇ ଦେବି । ଟିକିଏ ରୁହନ୍ତୁ – ମୁଁ ଖାଲି ସାର୍ଟଟା ଗଳେଇଦେଇ ଆସେ ।"

ମୁଁ ଜାଣିଥିଲି ଯେ ମୁଁ ସେ ଅଦୃଶ୍ୟ ଜାଲରୁ ଖସିଯିବାକୁ, ବିନା କାରଣରେ ଗୋଟାଏ ଆଳ ଦେଖାଇ କିଛି ସମୟ ମୁକୁଳିଯିବାକୁ ଚାହୁଁଥିଲି । ତଥାପି ବାହାରିଲି ।

ଆମେ ସାଙ୍ଗହୋଇ ଗଲୁ କିଛି ବାଟ । ସେ ହିଁ ଆଗ ପାଟିଫିଟାଇଲେ – "ମୁଁ ଜାଣୁଚି ଆପଣ ଜଣେ ଅସାଧାରଣ ଲୋକ । ନୂଆ ଜାଗାରେ ଅପରିଚିତ କାହାକୁ ଏମିତି ସାହାଯ୍ୟ କରିବା ସାଧାରଣ କଥା ନୁହେଁ । ଆପଣଙ୍କ ନାଁ ?"

"ଭୋଳି ମହାପାତ୍ର...ମାନେ ଭୋଳାନାଥ ମହାପାତ୍ର ।"

"କ'ଣ କରନ୍ତି ?"

"ହେଇ ଏମିତି ଛୋଟ ଚାକିରିଟିଏ କରେ ।"

କିଛି ସମୟ ପରେ ମୁଁ କହିଲି – "ଆପଣଙ୍କ ପରିଚୟ ?"

ସେ ଆଗଭଳି ହସିଦେଇ ମୋତେ ଚାହିଁଲେ – "ଆପଣ ଯାହା ଜାଣିଛନ୍ତି ସେତିକି ଯଥେଷ୍ଟ ପରା !"

ମୁଁ ବି ସଂକ୍ରମିତ ହେଲାପରି ହସିଦେଲି । ଭାବିଲି, ବେଶ୍ ଚାଲକ୍ ତ ! ଜମା ନିଜ ନାଁ ଗାଁ କିଛି କହୁନାହିଁ । ପଚାରିଲି – "ଆପଣଙ୍କ ନାଁ ଜାଣିପାରେ କି ?"

"ନାଁ ଜାଣି କ'ଣ କରିବେ ?"

ଆରେ ତା'ହେଲେ ତ ୟା ଉପରେ ସବୁ ବିପଦ ପଡିବା ଉଚିତ୍ । ଏଇଟା ଗୋଟାଏ ପୁରୁଣା ଜୁଆଚ୍ଚୋର ! ମୁଁ ଅଯଥା ଏତେ କଷ୍ଟପାଉଛି ଏଇଟାପାଇଁ । ଯାଉ ଏଇଟା ଯୁଆଡେ ସିଆଡେ । ତାକୁ ଏଇଠି ଛାଡିଦେଲେ ପୁଅ ପାଠ ଶିଖିଯିବ ।

ଏତିକିବେଳେ ଦେଖିଲି ଯେ ମାଗୁଣି ମିଶ୍ର କୋଠା ସାମ୍ନାରେ ଆମେ ପହଞ୍ଚିଯାଇଛୁ । 'ଏଇ ମାଗୁଣି ମିଶ୍ରଙ୍କ ଘର' କହି ମୁଁ ଫକ୍‌କିନା ବୁଲିପଡୁଥିଲି ।

"ଆରେ ରହନ୍ତୁ ନା' – ମୁଁ ଆପଣଙ୍କୁ ମାଗୁଣି ମିଶ୍ରଙ୍କ ସହିତ ପରିଚିତ କରାଇ ଦେବି ।"

ମୋର ସେ ପରିଚୟ ଲୋଡା ନାଇଁ । ମୁଁ ଚାଲିଲି । ପଛରୁ ଶୁଭିଲା – "ଆରେ ଭୋଳିବାବୁ କି ? ଆସନ୍ତୁ !"

ବୁଲି ଚାହିଁଲି । ମାଗୁଣି ମିଶ୍ର ମଠା ପିନ୍ଧି ମେଲା ଦିହରେ ଠିଆହେଇଚି ।

"କେବେ ତ ଆସନ୍ତି ନାହିଁ, ଏତେ ପାଖରେ ଥାଇ ମୁଁ ବି ଯାଇପାରୁନାହିଁ । ଆସନ୍ତୁନା' – ଆପଣଙ୍କ ସଙ୍ଗେ କଥା ଅଛି ।"

ଅଗତ୍ୟା ଫେରିଲି । ସେ ଜଣକ ସେମିତି ମୁଚୁକିମାରୁଥାଏ – ଆମୋଦିତ ହେଉଥାଏ ନିଶ୍ଚୟ । ମୁହଁ ପୋଡୁନି ଶଳାଟାର – ଅନ୍ୟଆଡେ ଚାହିଁରହିଲି । ସେ ଦି'ଜଣ ବୋଧହୁଏ ଖୁବ୍ ଘନିଷ୍ଠ - କ୍ଷୀରନୀର – ସେ ସାଙ୍ଗହେଇ ଘର ଭିତରକୁ ପଶିଗଲେ ।

ମୁଁ ବୈଠକ ଘରେ ବସିରହିଲି । ମାତ୍ର ଦୁଇ-ତିନି ମିନିଟ୍ ପରେ ମାଗୁଣି ମିଶ୍ର ଆସି ପାଖ ସୋଫାରେ ବସିଲା । ସେ ବି ପ୍ରାୟ ସେମିତି ହସୁଥିଲା – "ଆଉ କ'ଣ ଭୋଳିବାବୁ, କେମିତି ଏଆଡେ ଚାଲିଆସିଲେ ? ଆପଣଙ୍କର ସବୁ ଭଲ ତ' ?"

"ମୁଁ ଏଇ...ମାନେ..."

"ମୁଁ ବୁଝିଗଲି – କ'ଣ କରିବା କୁହନ୍ତୁ ? ଲିଭ୍ ଭେକ୍‌ନସିରେ ତାକୁ ଆଉ ରଖିହେଲା ନାହିଁ; କିନ୍ତୁ ଆଜି ଗୋଟେ ପୋଷ୍ଟ ଆସିପାରେ । ତାଙ୍କର ତ ଆଗରୁ ଇଣ୍ଟରଭ୍ୟୁ ହେଇଯାଇଛି – ଦେଖିବା ।"

ମୋ ଭିତର ଓଲଟପାଲଟ ହେଉଥିଲା । ମାଗୁଣି ମିଶ୍ର କ'ଣ ବିନା ମତଲବରେ ଏତେ ସବୁ କରିପକେଇବ ? ସେ ବୋଧେ ଏବାଗେ ପାଲରେ ପକେଇବାକୁ ଚେଷ୍ଟା କରୁଛି । ...ଶାଲା ! ମୁଁ ନିଆଁ ଖଣ୍ଡପରି ତଳୁ ମୁହଁଟେକି ଚାହିଁଲି ।

ମାଗୁଣି ମିଶ୍ର ମଠା ପିନ୍ଧି ଆଉ ପ୍ରକାରେ ଦିଶୁଥିଲା । ତା' ପାଖରେ ସେ ସେମିତି ମତେ ଅନେଇ ରହିଥିଲା । ତା' ଆଖିକୁଣରେ କୁଞ୍ଚ କୁଞ୍ଚ ହସ । ସେ ଆମୋଦିତ ହେଉଥିଲା । ମୋ ଭିତର ବୋଧହୁଏ ତା' ଆଖିକୁ ଦିଶିଯାଉଥିଲା ନା କ'ଣ !

ମୁଁ ନରମିଗଲି । କ'ଣ କହିବାକୁ ଯାଉଥିଲି, ଜିଭ ଲେଉଟିଲା ନାହିଁ । ଆସ୍ତେ ଉଠିଲି । ମାଗୁଣି ମିଶ୍ର ମୋ ଆଖିକୁ ଅନେଇ ବିଶ୍ୱାସ ଦେଲାପରି କହିଲା – "କିଛି ଚିନ୍ତା କରିବାର ନାହିଁ । ସବୁ ଠିକ୍ ହେଇଯିବ ବୋଲି ମୁଁ ଭାବୁଛି ।"

ମହାପ୍ରତାପୀ ମାଗୁଣି ମିଶ୍ର ଯାହା ଚାହିଁଲେ ତାହା ହେଇଯିବ । ଏଇଟା କି ଛାର କଥା ! କିନ୍ତୁ କାଇଁକି ?

"ମୋତେ ମିସେସ୍ ମହାପାତ୍ର ସବୁ କଥା କହିଛନ୍ତି...ଆପଣ କିନ୍ତୁ ଚା' ଖାଇଯିବେ ।"

'ନା, "ମୁଁ ବରଂ ଆସୁଛି । ମୁଁ କେବଳ ଏଇ..."

ସେ ଲୋକଟା ବିଷୟରେ ଏଥର ବି ମୋତେ ସେ କୁହାଇ ଦେଲାନାଇଁ । ମଝିରୁ କହିଲା – "ମୁଁ ଜାଣେ...ଆପଣ ନିଶ୍ଚିନ୍ତ ରହନ୍ତୁ..." । ସେ ଲୋକଟି ହସୁଥିଲା ।

ମୁଁ ଅଗତ୍ୟା ସାମାନ୍ୟ ହସିଦେଇ ରାସ୍ତା ଉପରକୁ ଚାଲିଆସିଲି । ମୋତେ ହଠାତ୍ ମନେହେଲା ଯେ କ'ଣ ଗୋଟାଏ ଅସାଭାବିକ ଘଟିଗଲା, ଅଥଚ ମୁଁ କଥାଟାକୁ ଠିକ୍ ସମୟରେ ଜାଣିପାରିଲି ନାହିଁ । ଆଚ୍ଛା, ମୁଁ ଯାହାକୁ ଘର ଦେଖେଇବାକୁ ଆସିଥିଲି ସେ ତ ଏ ପର୍ଯ୍ୟନ୍ତ ମାଗୁଣି

ମିଶ୍ର ଯାଙ୍କରେ ପଦଟିଏ ବି କଥା ହେଲାନାହିଁ । ମାଗୁଣି ମିଶ୍ର ବି ତାଙ୍କୁ ଥରେ ହେଲେ ଚାହିଁଲା ନାହିଁ । ମନେହେଲା ସତେବା ସେ ସେଇଠି ଥିଲେ ନଥିଲେ କିଛି ଯାଏ ଆସେ ନାହିଁ । ସେମାନେ କ'ଣ ଏତେ ଘନିଷ୍ଠ ଯେ ସାମାନ୍ୟ ସମ୍ଭାଷଣର ମଧ୍ୟ ପ୍ରୟୋଜନ ନାହିଁ ? ସତେବା ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଦେଖା ସାକ୍ଷାତ୍ ଏବଂ ଏକାଠି ରହିବାର ଅନୁଭବ ଏତେ ପ୍ରଗାଢ଼ ଯେ ହଠାତ୍ ଦେଖାହୋଇଯିବାର ପ୍ରତିକ୍ରିୟା ବି ହେଉନାହିଁ...ଆଉ ଯଦି ସମ୍ପର୍କ ଏତେ ନିବିଡ଼ ତେବେ ସେ କେମିତି ତା' ଘର ଠିକଣା ପର୍ଯ୍ୟନ୍ତ ଜାଣିନାହିଁ ? ମାଗୁଣି ମିଶ୍ର ଏ ସରକାରୀ ଘରେ ରହିବାର ପ୍ରାୟ ତିନିବର୍ଷ ହେଇଯିବ । ୟା ଭିତରେ ସେ ଅନ୍ତତଃ ଥରେ ଆସିଥିବାର ଲକ୍ଷଣ ନାହିଁ, ଆସିଥିଲେ ତ ସେ ବଳେ ଘର ଖୋଜି ପହଞ୍ଚିଯାଇଥାନ୍ତେ !

ଚାଲିବା ବାଟରେ ମୋ ପାଦ ଅଟକିଗଲା ।

ତେବେ ? କିଏ ସେ ଲୋକଟା ? ମୋତେ ନାଁ ଗାଁ ଠିକଣା କିଛି ହେଲେ କହି ନାହିଁ । ଅଥଚ ମୋର ସବୁ କଥା ଆଦାୟ କରିନେଇଛି । ଗୋଟାଏ ଅସାମାନ୍ୟ ଇଙ୍ଗିତରେ ମୁଁ ଶିରଶିରେଇଗଲି ।

ମୋର ମନହେଲା ସେଇଠୁ ଫେରିଯାଇ ମାଗୁଣି ମିଶ୍ରଙ୍କୁ ତା' ବିଷୟରେ ପଚାରିବି ! ପୁଣି ମନହେଲା ଯେ ସେଭଳି କୌଣସି ପ୍ରୟୋଜନ ନାହିଁ । ଆଜି ଅଫିସ୍‌ରେ କ'ଣ ହଉଚି ଆଗ ଦେଖାଯାଉ – ତା'ପରେ ବୁଝିବା ।

ଘର ଦୁଆର ମୁହଁରେ ଆସି ପହଞ୍ଚିବାମାତ୍ରେ ସେ ସେଇଠି ଠିଆହୋଇ ରହିଥିବାର ଅନୁଭବ ହେଲା । ଅସମ୍ଭବ ହାଲୁକା ମନେହେଲା । କୌଣସି ସମସ୍ୟା ଆଉ ଅସାଧ୍ୟ ମନେହେଲାନାହିଁ ।

ମୁଁ ଘର ଭିତରକୁ ପଶିଗଲି । ମୋ ସ୍ତ୍ରୀ ଗାଧୋଇବାକୁ ଯାଉଥିଲେ । ମୋତେ ଦେଖି ମୋ ମୁହଁକୁ କିଛି ସମୟ ଚାହିଁରହିଲେ । କୌଣସି କାରଣରୁ ଉନ୍ମୁଖ କଢ଼ଟିଏ ପରି ସେ ପାଖୁଡ଼ା ମେଲିଯିବାର ମୁଁ ଅନୁଭବ କଲି ।

– 'ତୁମେ କାନ୍ଦୁଥିଲ କି ?'

ସେ ଭୃରୁ କୁଞ୍ଚେଇ କହିଲେ – 'ମୁଁ ? କାନ୍ଦୁଥିଲି ? କାହିଁକି ?'

– 'ମଲା, ମୁଁ ପରା ବାଟଘରେ ଥାଇ ତୁମ କାନ୍ଦଣା ଶୁଣିଛି ।'

– 'ତୁମର ପୁଣି ଗୋଟେ କ'ଣ ବିଗିଡ଼ିଲାଣି ଦେଖୁଛି । କିଓ କାହିଁକି ? ମୁଁ ତ ବସି କୋବି କାଟୁଥିଲି । ପୁଞ୍ଜାଏ କୋବି ଆଉ ପନିପରିବା ତିରିଶଟଙ୍କାର ତା' ଟୋକା ହାତରେ ପଠେଇଦେଇଚି । ତମେ ତାଙ୍କୁ କହିଥିଲ କି ?'

– 'ତମ ମୁଣ୍ଡ ବିଗିଡ଼ିନାଇଁ ତ ! କିଓ ବଟିଆ ପରା ଟାକିବସିଛି ତା'ର ବାକିଆ ପଇସା ନପାଇଲେ ସେ ଆମକୁ କିଛି ହେଲେ ଦବନାଇଁ ! ତମେ କାହା ହାତରେ ଖବର ଦେଇଥିଲ କି ?'

– 'ଶୁଣ, କିଓ ମତେ ବେଳ କାହିଁ ଖବର ଦବାକୁ ? ଦେଖ, ତମେ ଏ ନବରଙ୍ଗ ଲଗେଇଚ – ଲୋକ ହାତରେ ପରିବା ପଠେଇ ଆଉକି ଚତୁରେଇ ହଉଚ ଏଠି । ମୋର ବେଳ ନାଇଁ – ସେ

ହସିଦେଇ ଗାଧୁଆଘରକୁ ପଶିଗଲେ । ମୋ କାନ୍ଧ ଉପରୁ ପନ୍ଦର ବର୍ଷର ବୋଝ ଖସିପଡ଼ିଲା । ମନୋରମା ଦେଖାଗଲେ ଅପୂର୍ବ !

କିନ୍ତୁ ମୁଁ ଜମା କିଛି ବୁଝିପାରୁନଥିଲି । ମୋ ଉପରୁ ପର୍ବତ ଓହ୍ଲେଇ ଯିବାର ହାଲୁକାପଣରେ ମୋ ବୁକୁ ଭରିଯାଉଥିଲା । ପୁଅ ଆଉ ଘରୁ ଆସି ଚିଠିଟାଏ ବଢ଼େଇ ଦେଲା ହାତକୁ । କହିଲା – 'କିଏ ଜଣେ ଏ ଚିଠି ତମକୁ ଦବାକୁ କହି ଚାଲିଗଲେ ।'

ମୋ ବୁକୁ ଦାଉଁଦାଉଁ ହେଲା । କିଏ କାହିଁକି ଚିଠିଦେଲା ? ଖୋଲିଦେଲାବେଳକୁ ଲେଖାଅଛି – 'ମୁଁ ଆପଣଙ୍କଭଳି ଭଦ୍ରଲୋକଙ୍କ ମନରେ କଷ୍ଟଦେଇ ଦୁଃଖିତ । ମୋର ଆଉ ଦୁଇ ବର୍ଷ ଯାଏ ଚାକିରି ବଢ଼ିଯିବାରୁ ମୁଁ ମୋ ଘରକୁ ଯିବାର ପ୍ରଶ୍ନ ଉଠୁନାହିଁ । ଆପଣ ଦୟାକରି ଅନ୍ୟ ବ୍ୟବସ୍ଥା ବାତିଲ୍ କରି ମୋ ଘରେ ରହିବାର ଅନୁଗ୍ରହ କରିବେ କି ? ଇତି । ସୁଗ୍ରୀବ । ମୋ ଆଖି ବାମ୍ଫରେ ତରଳିଗଲା ଇଟାକାନ୍ଥ ଆଉ ଛାତ...ମୁଁ ବିଭୋର–ବିମୂଢ଼ ।'

ଝିଅ ଆସି କହିଲା – 'ଆଜି କଚେରିରେ କେସ୍ ନାହିଁ – ଘୁଞ୍ଚିଗଲା । ଓକିଲଙ୍କ ଲୋକ ଆସି କହିଦେଇଗଲା ।' ମୋ ବଗିଚାଯାକ ବିଭିନ୍ନ ରଙ୍ଗର ଗୋଲାପ ଫୁଟିଗଲା । ଆକାଶ ନଇଁ ଆସିଲା ନୀଳପଦ୍ମପରି ।

'ଏ ପାର୍ଶଲଟା ନିଅ ବାପା' – କହି ଆଉ ଝିଅ ମୋତେ ଗୋଟାଏ ସରକାରୀ ଖାମ୍ ବଢ଼େଇଦେଲା ।

ଖୁବ୍ ମୋଟା ଲାଗୁଥିଲା । ସେଥିରେ କ'ଣ ସତକୁ ସତ ମୁଁ ଯାହା ଭାବୁଛି ତାହା ଥାଇପାରେ ?

ଇସ୍ ! ଏଗୁଡ଼ାକ ତ ଶହେଟଙ୍କିଆ ନୋଟ୍ । କ'ଣ ହେଲା ? ପାଞ୍ଚ ହଜାର ଟଙ୍କା ! କିଏ ଲେଖିଛି...ଓ, ଗୋବିନ୍ଦ ଟାଉଟର ! କ'ଣ ନା ମୋ ଜମିର ଫସଲ ଏତେ ବର୍ଷ ଭୋଗ ଦଖଲ କରିଥିବାରୁ ଏ ଟଙ୍କା ଆଂଶିକ ପଇଠଦେଉଛି – ଆଉରି ଦବ ! ଆଉରି...

ମୋର ମନେହେଲା ମୋ ମୁଣ୍ଡ ଯାଇ ଛାତକୁ ଛୁଇଁଯାଉଛି । ଆଉ ପରବାଏ ନାଇଁ । ମୁଁ ଏଣିକି ନିଧଡକ ବଞ୍ଚିପାରିବି । ସିଧାସଳଖ ଚାହିଁପାରିବି । ମୋ ପିଲାଏ ଭଲ ପିନ୍ଧି ପାରିବେ । ମୁହଁଟେକି ହସିପାରିବେ । ଓଃ...ମୋ ଆଗରେ ସେମିତି ମୁରୁକି ମାରି ହସୁଥିବା ସେ ମୁହଁ ଦିଶିଗଲା । ମୁଁ ତା' କାନ୍ଧକୁ ଜୋର୍‌ରେ ଧରି ଝୁଙ୍କିଦେଲି – ତୋରି ସବୁ ହୁନ୍ଦର ! କହ ତୁ କିଏ ? କହ... କହ...

ମୋ ସାମ୍ନାରେ ଖୁବ୍ ନିକଟରେ ମୋ ବାଟ ରୋଧି ସେଇ କାନ୍ଥଟା ଛିଡ଼ାହେଇଚି । ମୁଁ ତାକୁ ମାଗୁଣି ମିଶ୍ର ଭାବି ଘୁସିମାରି ଠିଆହେଇଛି । ଏବେ ତାକୁ ହଲାଇ ପଚାରୁଚି – ତୁ କିଏ ?

ଆର ବଖରାରୁ ମନୋରମାର କାନ୍ଦ ଶୁଭୁଛି ।

ଆକାଶ ସାରା ଜାଲ ଗୁନ୍ଥି ହୋଇ ରହିଛି । ମୁଣ୍ଡ ଉପରେ ପାହାଡ଼ ମଡେଇ ହୋଇ ରହିଛି । ଆଖି କୁଣରେ ଟଳମଳ ଲୁଣସମୁଦ୍ର । ମୁଁ ତଥାପି ଝରକା ବାଟେ ଲୁଚେଇ ଲୁଚେଇ ଚାହିଁଦଉଛି ରାସ୍ତାକୁ...ବେକୁବ୍ କାହାଁକା ।



# ଘର ନିଲାମ ହଉଚି

ଆପଣ ଡାକିଥାନ୍ତେ କି ?

ଚାଲୁନାହାନ୍ତି । ଏଇଠୁ ଏ ବଡ ରାସ୍ତାରେ ଡାହାଣେ ମୋଡିଗଲେ ସରକାରୀ କୁକୁଡା ଫାର୍ମ । ତା'ପରେ କିଛି ବୁଦୁବୁଦୁକିଆ ଅନାବାଦି ଜମି ପାରିହୋଇଗଲେ ପୁରୁଣା ଆମ୍ବତୋଟା । ତା' ପାଖକୁ ତ ଲାଗଛି ସେ ଦେଢଏକର ଜାଗା ଉପରେ ବଗିଚା ଆଉ କୋଠା । ରାସ୍ତାକୁ କିଛି ବାଟ ଛାଡି ପାଚେରୀ । ତା' ସାମ୍ନାରେ ଦୁଇଧାଡି ଇଉକାଲିପ୍‌ଟସ୍ । ଗେଟ୍ ପାଖରେ ସାମ୍ନା ଘର । ଗାଡି ଯିବାକୁ ଗୋଲେଇ ରାସ୍ତା । ମଝିରେ ଲନ୍ – ଦୁଇପାଖେ ନଡିଆ ଗଛ – ଫୁଲ ବଗିଚା । ଘରଟା ବଙ୍ଗଳା ଢଙ୍ଗରେ ତିଆରି । ବେଶ୍ ପ୍ରଶସ୍ତ ଖୋଲା ଖୋଲା – ନୂଆ ରଙ୍ଗ ଦିଆହୋଇଥିବାରୁ ଛବିଭଳି ସୁନ୍ଦର ଦେଖାଯାଉଛି । ଭିତରେ କାର୍ପେଟ, ସୋଫା, ଆଲମାରି, ପଲଙ୍କ ସବୁ ମହଜୁଦ୍ ଅଛି । ପୋଛାପୋଛି ହୋଇ ଚକ୍ ଚକ୍ ।

ସହରଠଉଁ ଟିକିଏ ଦୂରରେ ନିଶ୍ଚୟ – କିନ୍ତୁ ନିଛାଟିଆ ନୁହେଁ । ତା' ପାଚେରିକୁ ଲାଗି ବଉଳପୁର । ବେଶ୍ ପାଖ ଘର ବସ୍ତି । ଦୋକାନ ବଜାର...ସେଇଟା ବି ଏ ମ୍ୟୁନିସିପାଲିଟି ଭିତରକୁ ଆସିଯାଉଛି ଅଳ୍ପ ଦିନ ଭିତରେ । ଆମ୍ବତୋଟା ଉପରେ ଗୋଟାଏ ହୋଟେଲ ହଉଛି । ଦେଣନେଣ ସରିଗଲାଣି – କାମ ଆରମ୍ଭ ହେବା ଉପରେ । ଆଉ ସେ ଅନାବାଦୀ ଜମିଖଣ୍ଡକରେ ଷ୍ଟାଡିୟମ୍ ହେବାର ଯୋଜନା ସରିଲାଣି । ଆଉ ତା'ହେଲେ କ'ଣ ରହିଲା ? ସେଇଆଡକୁ ସହର ବଢିଚାଲିଛି । ସେ ଘର ଆଉ ଡିହ ପନ୍ଦର-କୋଡିଏ ଲକ୍ଷ ଟଙ୍କାର ସମ୍ପତ୍ତି । ଏମିତି ଅଳ୍ପକେ ନିଲାମରେ ଉଠିଯାଉଛି । ଯଦି ଚାହୁଁଛନ୍ତି ଉଠନ୍ତୁ ଯିବା । କିଛି ନହେଲେ ଦେଖି ତ ଆସିବା – କିଏ ଏତେ ବଡ ସମ୍ପତ୍ତିର ମାଲିକ ହେଇଯିବ ଆଉ କେତେ ଘଣ୍ଟା ଭିତରେ ।

ଠିକ୍ କଥା । ଏତେ ଚମତ୍କାର ଘରକୁ ନିଲାମରେ ବିକ୍ରିକରି ଦେଉଥିବା ମାଲିକ ନିଶ୍ଚୟ ବେକୁବ୍ । ସେଇଟା ଖାଲି ଆପଣ ନୁହନ୍ତି, ଯେ କେହି ଲୋକ କହିବ । କାରଣ ଆପଣ ତ ତାକୁ ଜାଣନ୍ତିନାହିଁ, କେମିତି ପରିସ୍ଥିତିରେ ପଡି ସେ ଏଭଳି ନିଷ୍ପତ୍ତି ନେଇଛି ତା' ବି ଜାଣନ୍ତି ନାହିଁ । ସେଥିପାଇଁ ଆପଣ ଉପରଠାଉରିଆ ସେମିତି ମନ୍ତବ୍ୟ ଦେବା ଆଦୌ ଅସ୍ୱାଭାବିକ ନୁହେଁ । ମୁଁ ତାକୁ ଜାଣିଛି କି ବୋଲି ଆପଣ ପଚାରୁଛନ୍ତି ? ସେକଥା ଜାଣିବା ନଜାଣିବାରେ ଆପଣଙ୍କର

ଲାଭ କ'ଣ ? ଅବଶ୍ୟ ଯେକୌଣସି ଗରାଖର କିଛି କିଛି ଜାଣିବାର ଅଧିକାର ଅଛି । ସେ ଘରେ କୌଣସି ଦୁର୍ଘଟଣା ଘଟିଯାଇ ନାହିଁ ତ ? ସେ ଘରେ ଆଉ କୌଣସି ଦୁର୍ଭାଗ୍ୟ ଜଡିତ ହୋଇ ରହି ନାହିଁ ତ ? ଏତେ ସୁନ୍ଦର ଘର କରି ଜଣେ ସେଇଠି ରହିବ ନାହିଁ – ଘରଛାଡି, ଗାଁଛାଡି କାହିଁ କୁଆଡେ ରହିବ । ସେଇଠୁ ତା' ଓକିଲ ଜରିଆରେ ଘରଟାକୁ ନିଲାମ କରାଇଦେବ – ଏଇଟା ଯାହାକୁ ହେଲେ କେମିତି ଅଡୁଆ ଲାଗିବା କଥା ।

ରହସ୍ୟ କିଛି ନାହିଁ – ଯଦି ବା ଥାଏ ମୁଁ ସଂପୂର୍ଣ୍ଣ ଜାଣିନାହିଁ । ହଁ, ମୁଁ ଅବଶ୍ୟ ଏପରି କେତେ କଥା ଜାଣିଛି ଯେଉଁଥିରୁ ଆପଣ ବାକି ଅନୁମାନ କରିନେଇପାରିବେ । ଆପଣ ଖୋଲାମନ ନେଇ ନିଲାମ ଡାକିବାକୁ ଯାଇଥିଲେ ବରଂ ଭଲ ହେଇଥାନ୍ତା । ଆପଣ ଯଦି କିଣନ୍ତି କୋଠାଟାକୁ ହିଁ କିଣିବେ, ତା' ମାଲିକକୁ ତ ନୁହେଁ ! ତେବେ ଆପଣ ଯଦି ନିହାତି କଟାଳ କରୁଛନ୍ତି ତା'ହେଲେ ଶୁଣନ୍ତୁ ସେ ରାମପୁର କୋଠିର ଇତିହାସ – ଅନ୍ତତଃ ମୁଁ ଯେତିକି ଜାଣେ ।

ତା'ର ମାଲିକ ହେଉଛନ୍ତି ରାମପୁର ଜମିଦାର ସରାଜ ସରୂପ ସିଂହ । ସେ ମୋଠୁ ବେଶୀ ନୁହେଁ – ଏଇ ଚାରି-ପାଞ୍ଚ ବର୍ଷ ସାନ । ମୁଁ ବି.ଏ. ପଢୁଥିବାବେଳେ ସେ ମାଟ୍ରିକ୍ ଛାତ୍ର । ମୁଁ ତାଙ୍କ ଟିଉସନମାଷ୍ଟର । ତାଙ୍କୁ ଗଣିତ ପଢଉଥିଲି – ବିଶେଷକରି ଜ୍ୟାମିତ ଆଉ ଆଲ୍‌ଜେବ୍ରା । କଲେଜରୁ ଘରକୁ ଫେରିବା ରାସ୍ତାରେ କିଛି ବୁଲାଣି ପଡୁଥିଲା । ମୁଁ ସିଧା ତାଙ୍କ ପିଉସୀ ଘରକୁ ଯାଉଥିଲି । ସେ ସେଇଠି ରହି ପାଠ ପଢୁଥିଲେ । ମୁଁ ପହଞ୍ଚିବାମାତ୍ରେ ହସି ହସି ମୋତେ ପାଛୋଟିନେଉଥିଲେ । ଟେବୁଲରେ ଦୁଇଟି ରସଗୋଲା ଏବଂ ଗ୍ଲାସେ ପାଣି ନିଶ୍ଚୟ ଥୁଆରହୁଥିଲା । ଗୋଟିଏ ଛୋଟ କଳାପଟା, ଚକ୍, ଡଷ୍ଟର ପ୍ରସ୍ତୁତ ରହୁଥିଲା । ଯାହା ବୁଝେଇଲେ ସେ ଖୁବ୍ ଚଞ୍ଚଳ ବୁଝିପାରୁଥିଲେ । ମୋତେ ପରିଶ୍ରମ କରିବାକୁ ପଡୁନଥିଲା । ମୁଁ ସେତେବେଳୁ ତାଙ୍କୁ ଗଭୀରଭାବରେ ଭଲପାଇ ଯାଇଥିଲି । ମୁଁ ଚାହିଁଥିଲେ ସେ ତାଙ୍କ ପରିବାରର ଟିକିନିଖି କଥା କହିଦେଇଥାନ୍ତେ ବୋଲି ବିଶ୍ୱାସ କରୁଛି । କିନ୍ତୁ ସେ ବୟସରେ ଏସବୁ ଜାଣିବାକୁ ମୋର ଆଦୌ ଆଗ୍ରହ ନଥିଲା ।

କିନ୍ତୁ ଦିନେ ଏମିତି ବଜାରରେ ହଠାତ୍ ଦଖାହେଇଗଲା । ମୁଁ ତାଙ୍କ ଆଡକୁ ଖୁବ୍ ଆତ୍ମୀୟତାରେ ପାଖେଇଯାଇ ତାଙ୍କ ସ୍ଥିର ଆଖିକୁ ଚାହିଁ ଚମକିପଡିଥିଲି । ସେ ମୋତେ ଚିହ୍ନିବାର କୌଣସି ଲକ୍ଷଣ ପ୍ରକାଶ କଲେ ନାହିଁ । ମୋତେ ଦେଖିବାମାତ୍ରେ ତାଙ୍କ ନିଜ ଢଙ୍ଗରେ ସେ ହସି ହସି ନମସ୍କାର କରିବେ ବୋଲି ଆଶା କରିଥିଲି । କିନ୍ତୁ ସଂପୂର୍ଣ୍ଣ ଅପରିଚିତ ଭଳି ପାଟିଚିପି ଠିଆହୋଇ ରହିବାରୁ ମୁଁ ଭାରି ଅପ୍ରତିଭ ବୋଧକଲି । ତଥାପି ପଚାରିଲି – ଯେଉଁ କଷ୍ଟ କଷ୍ଟ ଦୁଇଟି ତ୍ରିଭୂଜ ଅଙ୍କନ ତା' ପୂର୍ବଦିନ ବୁଝାଇଥିଲି ସେ ତାକୁ ମନେ ରଖିଛନ୍ତି ନା ନାହିଁ । ତଥାପି ସେ ମୋତେ ନଚିହ୍ନିଲାପରି ଚାହିଁରହିବାରୁ ମୁଁ ଅପମାନିତ ବୋଧକଲି ଏବଂ ମୁହଁ ବୁଲାଇ ଚାଲିଗଲାବେଳେ ସ୍ଥିରକଲି ଯେ, ଆଉ ନୁହେଁ – ତା' ବଡଲୋକି ତା' ଘରେ । ତା' ଜମିଦାରି ତାକୁ ବଡ – ମୋର ସେଥିରେ କ'ଣ ଥାଏ ?

ସେ ମୋତେ ସେତିକିବେଳେ କହିଲେ – 'ଆପଣ ବୋଧହୁଏ ଭାଇଙ୍କ କଥା କହୁଛନ୍ତି ।

ମୁଁ ଆଜି ଘରୁ ଆସିଛି । ମୁଁ ଆପଣଙ୍କୁ ଜାଣିପାରୁନଥିବାରୁ ମୋତେ ଆପଣ ମାଫ୍ କରିବେ । ଏମିତି ଭୁଲ୍ ଅନେକ ସମୟରେ ହୁଏ । ମୋ ନାଁ ସାଧୀନ ସ୍ୱରୂପ ସିଂହ । ଆମେ ଦୁହେଁ ଯାଆଁଳା ।'

ମୁଁ ହାଁକରି ଅନେଇରହିଲି । ଗୋଟିଏ ଛାଞ୍ଚରେ ତିଆରି ଦୁଇଟି ଜାପାନୀ କଣ୍ଢେଇ ଭଳି ଅବିକଳ ଚେହେରା । ଅଳ୍ପ ଗଜେଇ ଆସିଥିବା କଅଁଳ ନିଶ, ଠିଆନାକ, ବଡ ବଡ ଟାଣିଲା ପରି ଆଖି, ପ୍ରଶସ୍ତ କପାଳ । ସେମିତି ଶ୍ୟାମଳ ବର୍ଣ୍ଣ । ନାକ ବାଁ ପାଖେ ସେମିତି ତିଳ ଚିହ୍ନ – ସେମିତି ଧୋତି ପାଇକଛା ପିନ୍ଧା, ସେମିତି ସିଲ୍କ ପଞ୍ଜାବିରେ ସୁନା ବୋତାମ । କାହାର ଶକ୍ତି ଅଛି ଚିହ୍ନଟ କରିଦେବ ? କଥା, ସ୍ୱର, ଚେହେରା, ହସ ଏତେ ଟିକେ ବୋଲି ଫରକ୍ ନାହିଁ ।

ମୁଁ ଏକଥା ଶୁଣି ଖୁବ୍ ହାଲୁକା ବୋଧକଲି । ଖୁବ୍ ଖୁସିହେଇଗଲି । ଏମିତି କ'ଣ ଟିକେ ଶିଷ୍ଟାଚାର ଆଳାପ ପରେ ଚାଲିଗଲି ।

ସ୍ୱରାଜ ଆଉ ସାଧୀନ । ଏମାନଙ୍କୁ ତାଙ୍କ ମା' ସୁଦ୍ଧା ବାରିପାରୁଥିଲେ କି ନା ସନ୍ଦେହ । ମୋର ଭାରି କୌତୂହଳ ହେଲା ତା' ଆରଦିନ ଦୁହିଁଙ୍କୁ ଏକାଠି ଦେଖିବାକୁ । ମୁଁ ସହଳ ସହଳ ପହଞ୍ଚିଗଲି । କିନ୍ତୁ ଶୁଣିଲି ଯେ ସାଧୀନ ଗାଁକୁ ଚାଲିଯାଇଥିଲେ ।

– 'ଆଚ୍ଛା, ତମେ ଦୁହେଁ ଏମିତି ଅବିକଳ ନକଲ ଯେ କେହି ନଦେଖିଲେ ବିଶ୍ୱାସ କରିବ ନାହିଁ । ମୁଁ ତ କାଲି ବେକୁବ୍ ବନିଗଲି ।'

ସେ ମୃଦୁ ମୃଦୁ ହସି ମୋତେ ଚାହିଁରହିଥାନ୍ତି ।

– 'ଗାଁରେ, ଘରେ ସମସ୍ତଙ୍କୁ ଅସୁବିଧା ହଉଥିବ ତ ?' ମୁଁ ପରିହାସରେ ପଚାରିଲି ।

– 'ସେମାନେ ଜାଣିଗଲେଣି ତ, ସେଥିପାଇଁ ପ୍ରଥମେ ସେମାନେ ଆମକୁ ଚାହିଁରହନ୍ତି । ନାଁ କହିଲେ କଥା ଆରମ୍ଭ କରନ୍ତି – ନହେଲେ ପ୍ରାୟ ଭୁଲ୍ କରିପକାନ୍ତି । ପ୍ରଥମେ ପ୍ରଥମେ ସାଧୀନ ଭାରି ଚିଡୁଥିଲା । ମୁଁ ତାକୁ ବୁଝେଇଥିଲି ଅନ୍ୟମାନଙ୍କର ଅସୁବିଧା; କିନ୍ତୁ ମା'ଙ୍କୁ କେବେ ବି ଅସୁବିଧା ହେଇନାହିଁ । ସେ ଆମଆଡେ ନଚାହିଁ ଠିକ୍ ଚିହ୍ନିଯାଆନ୍ତି ।'

– 'ଆଚ୍ଛା, ତାଙ୍କର କ'ଣ ଗୋଟାଏ ଚିହ୍ନଟ କରିବାର ଉପାୟ ଥିବ ନା ।'

– 'ସେ କହୁଥିଲେ ଯେ, ଆମର ପାଦଶବ୍ଦ କୁଆଡେ ଅଲଗା – ସେ ସେଇଥିରୁ ଜାଣିଯାଆନ୍ତି । ସେଇଟା ମୁଁ ବି ଲକ୍ଷ୍ୟ କରିଛି । ଆମେ ଦୁହେଁ ଏକାଠି ଚାଲିଲେ ସାଧୀନକୁ ଟିକେ ଅଡୁଆ ଲାଗେ । ତା'ର ପାହୁଣ୍ଡଗୁଡାକ ଟିକିଏ ଲମ୍ବା । ସେ ଚାରିପାହୁଣ୍ଡ ଗଲେ ମୋତେ ଛ'ପାହୁଣ୍ଡ ଯିବାକୁ ହୁଏ ।'

– 'ଭାରି ଇଣ୍ଟେରେଷ୍ଟିଂ ! ଆଉ କ'ଣ ତଫାତ୍ ଅଛି ? ଆମେ ବି କିଛି ଜାଣିଥିଲେ ଭବିଷ୍ୟତକୁ କାମରେ ଲାଗିପାରେ ।'

– 'ଏମିତି ତ ଅନେକ ଟିକିଟିକି ଫରକ ସବୁ ଅଛି । ସେ ମୋଠୁ ପାଞ୍ଚ-ଛ' ପାଉଣ୍ଡ ଓଜନରେ ବେଶି । ଖୁବ୍ ଲକ୍ଷ୍ୟକଲେ ସେ ମୋଠୁ ସାମାନ୍ୟ ବଡ ଦେଖାଯାଏ; ଯଦିବା ସେ ଦୁଇଘଣ୍ଟା ସାନ ।'

ମୁଁ ହସିପକାଇଥିଲି । ଦୁଇଘଣ୍ଟା ସାନ ବଡ କଥା ମୁଁ ସେଯାଏଁ ଶୁଣି ନଥିଲି ।

– 'ସେ ଆଉ କେବେ ଆସିବେ ? ସେ କ'ଣ ପାଠ ପଢୁ ନାହାନ୍ତି ?' ଏ ପ୍ରଶ୍ନ ଏମିତି ଖାଲି କୌତୂହଳରେ ପଚାରିଦେଇଥିଲି । ସରୋଜ ସିଂହ ସେଥିରେ ଖୁବ୍ ବିଚଳିତ ଜଣାଗଲେ । ଖୁବ୍ ଗମ୍ଭୀର ହୋଇ ଗୋଟାଏ ଆଡେ ଚାହିଁରହିଥିଲେ ।

ଅନିଚ୍ଛାସତ୍ତ୍ୱେ ତାଙ୍କୁ ବୋଧହୁଏ କହିବାକୁ ପଡିଲା ଯେ – ସେ ପଢିବାକୁ ଚାହିଁଲେ ନାହିଁ । ତା'ହେଲେ ସାଧୀନ ଏମିତି କ'ଣ ଟିକିଏ ଗାଁରେ ଓଡିଆ ପଢାପଢି ପରେ – ସେଇଠି ରହି ଜମିଦାରି ବୁଝାବୁଝି କରନ୍ତି ।

ସେଦିନ ଆମେ ଆଉ କିଛି ଅଙ୍କକଲୁ । ତା'ପରେ ସେ ପରୀକ୍ଷାପାଇଁ ପ୍ରସ୍ତୁତ ହେଲେ । ମୁଁ ବି । ଉଭୟେ ପରୀକ୍ଷାରେ ଭଲକରିଥିଲୁ । ମୁଁ ଚାଲିଗଲି ଆହ୍ଲାବାଦ । ସରୋଜ ବୋଧହୁଏ ବାହାରକୁ କୁଆଡେ ଗଲେ । ସାଇନ୍‌ସ ପଢି ଇଂଜିନିଅରିଂ କରି ଆସିଲେ । ତା'ପରେ ମୋର ତାଙ୍କ ସଙ୍ଗେ ଦେଖାହେଇନଥିଲା ।

ଦିନେ ହଠାତ୍ ବସ୍‌ଷ୍ଟାଣ୍ଡରେ ସେ ନମସ୍କାର କରି ଠିଆ ହେବାରୁ ମୁଁ ଖୁସି ହେଇଗଲି । କହିଲି – 'ତୁମେ ଚାଲିଲେ ସିନା ଜାଣିବି ତୁମ ପାହୁଣ୍ଡ ଛୋଟ ନା ଲମ୍ବା ।'

ସେ ପାଟି ଘୋଡେଇ ଖୁବ୍ ମର୍ଯ୍ୟାଦାରେ ହସିଲେ ।

ମୁଁ ସେତେବେଳକୁ ଅଧ୍ୟାପକ; ଦଶବର୍ଷ ଚାକିରି । ମୋ ସହିତ ମୋ ସ୍ତ୍ରୀ, ଦୁଇ ପୁଅ । ସେ ନିଜ ଗାଡିରେ ଆସିଥିଲେ – ଏକୁଟିଆ ।

– 'ମୁଁ ବି ଯାଉଛି ରାଜଧାନୀ । ସେଇଠି କାମ ଅଛି – ଏଇ ବସ୍‌ରେ ଚାଲିଯିବି । ଗାଡି ଘରକୁ ଫେରିଯିବ ।'

– 'ତା'ହେଲେ ବେଶ୍ ସମୟ ମିଳିବ ଗପିବାକୁ । ଭାରି ବଢିଆ ହେଲା ।'

ସେମାନେ ମା' ପୁଅ ମିଶି ଗୋଟାଏ ଦି'ଟିକିଆ ସିଟ୍‌ରେ ବସିଗଲେ । ତା' ପଛ ସିଟ୍‌ରେ ମୁଁ ଏବଂ ସରୋଜ ।

ବସ୍ ଛାଡିଲାବେଳକୁ ବାହାରେ ଅନ୍ଧାର । ମୁଁ ଝରକା ପାଖକୁ ବସିଥାଏ । ଗୋଟାଏ ଖବରକାଗଜ ଉପରେ ଆଖି ରଖି ଖୁବ୍ ସହଜ ଏବଂ ଅନନ୍ତକାଳ ହାତରେ ଥିବା ଢଙ୍ଗରେ ପଚାରିଲି – 'ଆଉ କ'ଣ ସରୋଜ – ତୁମର ସବୁ ଭଲ ତ ?'

– 'ହଁ ସାର୍, ପ୍ରାୟ ସବୁ ଭଲ ।'

– 'ସବୁ ଏକ୍‌ସଲେଣ୍ଟ୍ ବୋଲି କହୁନ । ଏମିତି କାହିଁକି ଅସନ୍ତୋଷିଆ କଥାକହୁଛ ? ଭାବିଲ ଟିକିଏ – ତୁମଭଳି କେତେ ଜଣ ଅଛନ୍ତି ? ତୁମର କ'ଣ ନାହିଁ ? ସମ୍ପତ୍ତିବାଡି, ଗାଡିଘୋଡା, ନଉକର-ଚାକର-ଅଭାବ କ'ଣ ତୁମେ ଜାଣିନାହଁ । ତଥାପି କ'ଣନା, ପ୍ରାୟ ସବୁ ଭଲ । ଆଶ୍ଚର୍ଯ୍ୟ ! ଆଉ କ'ଣ ହେଲେ ସ୍ପଷ୍ଟଭାବରେ କହିପାରିବ 'ଭଲ ଅଛି' ।

– 'ଠିକ୍ କହିଛନ୍ତି ସାର୍; କିନ୍ତୁ ଏଗୁଡା ସବୁ ରିଲେଟିଭ୍ କଥା । ମୁଁ ଯେଉଁ ପରିସ୍ଥିତିରେ ଅସନ୍ତୁଷ୍ଟ ବୋଧ କରୁଛି, ଆଉ ଜଣେ ହୁଏତ ଖୁବ୍ ଖୁସିରେ ସେଥିରେ ରହିପାରିବ ।'

– 'ମୁଁ ବୁଝୁଚି, ତେବେ ଗୋଟିଏ କଥା ଚିନ୍ତାକରି କହିବ । ତୁମେ ଯେଉଁ ପରିସ୍ଥିତିରେ ବର୍ତ୍ତମାନ ଅଛ, ତା'ର କୌଣସି ବିକଳ୍ପ ଅଛି କି ?'

– 'ସେଇଠି ମୁଁ ପହଞ୍ଚିଯିବା ପରେ ହୁଏତ ନାହିଁ । କିନ୍ତୁ ତା' ପୂର୍ବରୁ ତ ଅନେକ ଅଲ୍‌ଟରନେଟିଭ୍ ଅଛି । ଏମିତି ନହୋଇ କଥାଟା ଆଉ ହଜାରେ ପ୍ରକାର ହୋଇପାରିଥାନ୍ତା ।'

ମୁଁ ମନେ ମନେ ତାରିଫ୍ କଲି । କହିଲି – 'ଆଚ୍ଛା, ମୁଁ ବୁଝିଲି । କିନ୍ତୁ ଆମେପରା ଘଟିସାରିଥିବା ଘଟଣା ଆଉ ଏଇ ଉପସ୍ଥିତି ଉପରେ ମନ୍ତବ୍ୟ କରୁଛେ ।'

– 'ହଁ ସାର୍ ! କିନ୍ତୁ ନିଜ ଚାହିଦା ଅନୁସାରେ ନହୋଇ ଆଉ ଅନ୍ୟପ୍ରକାର ହୋଇଥିବାରୁ ଗୋଟାଏ ଅବଶୋଷ ତ ରହୁଛି – ସେଥିପାଇଁ ଖୋଲାଖୋଲି ଏ ପରିସ୍ଥିତିକୁ ଗ୍ରହଣ କରିହେଉନାହିଁ ।'

– 'ବାଃ, ବଢିଆ ଯୁକ୍ତି । ମୁଁ ଦେଖୁଚି, ତମେ ଇଂଜିନିଅରିଂ ଅପେକ୍ଷା ଡାଇଲେକ୍ ଟିକ୍‌ସ ପଢିଆସିଛ ନା କ'ଣ ।'

ତା'ପରେ ଆମେ ଚୁପ୍‌ଚାପ୍ ଅନେକ ସମୟ ବସିରହିଲୁ । ଗାଡି ଚାଲିଥାଏ । ପିଲାଏ ଶୋଇଯାଇଥାନ୍ତି ନା କ'ଣ । ରାତି ଦଶଟା...ଗୋଟାଏ ଜାଗାରେ ଗାଡି ରହିଲା । ଖାଇବାପାଇଁ କଣ୍ଡକ୍ଟର କହିଦେଇ ଚାଲିଗଲା ।

– 'ଆଚ୍ଛା ସରାଜ, ତୁମେ କ'ଣ ଖାଇବ ତ ?'

– 'ନାଇଁ ସାର୍, ମୋର ଖାଇବାର ନାଇଁ ।'

ସେ ଜମା କିଛି ନକହିବାରୁ ମୁଁ ବି ଆଉ କିଛି କଥା ଉଠାଇଲିନାହିଁ ।

ରାତି ବାରଟାରେ ଗୋଟାଏ ଛୋଟ ଜାଗାରେ ପୁଣି ବସ୍ ରହିଲା । ଆମେ ଉଭୟେ ଓହ୍ଲାଇଗଲୁ । ନିରୋଳା ଦେଖି ସେ ମୋ କାନ ପାଖରେ ଆସ୍ତେ କହିଲାପରି ଲାଗିଲା – ମୁଁ ଖୁବ୍ ସଙ୍କଟରେ ପଡିଛି ସାର୍ ।

ମୁଁ ଚମକିପଡିଲି । ତା' ପିଠିରେ ହାତରଖି ଆଖିକୁ ଚାହିଁଲି ।

– 'ମୋ ଭାଇ ସାଧୀନ...ମନେହେଉଛି ସାର୍ ?'

– 'ହଁ କହ, କହ ।' ମୁଁ ହଠାତ୍ ଅନୁଭବ କଲି ଯେ, ସେ ଗୋଟାଏ କ'ଣ ପାହାଡ ପରି କଥା କହିନପାରି ଟଳମଳ ହେଉଛନ୍ତି ।

ମୋଠାରୁ ଉତ୍ସାହ ପାଇ ସେ ଆସ୍ତେ କହିଲେ – ମୋର ମନେହେଉଛି, ହୁଏତ ସେ ବଞ୍ଚିବ କିମ୍ବା ମୁଁ ବଞ୍ଚିବି । ଆମେ ଦୁହେଁ ବୋଧହୁଏ ଏକାଠି ବଞ୍ଚିପାରିବୁନାହିଁ ।

– 'କ'ଣ କହୁଚ ସରାଜ ?'

– 'ମୁଁ ଠିକ୍ କହୁଛି ସାର୍ ଏବଂ ଏଇ କିଛିଦିନ ମାତ୍ର ମୁଁ ସମୟ ନେଇଛି, ତା'ପରେ ଫଇସଲା ହେଇଯିବ ।'

– 'କ'ଣ କିଛି ମାଲିମକଦ୍ଦମା କଥା ପଡିଛି କି ?'

'ନା ସାର୍ – ସେମିତି ହେଇଥିଲେ ତ ମୁଁ ମୋର ଭାଗତକ ତାକୁ ଦେଇ ଚାଲିଯାଇଥାନ୍ତି

ଖୁସିରେ ।'

– 'ତେବେ କାହିଁକି ଏମିତି ତୁମ ଦୁହିଁଙ୍କ ପାଇଁ ଏଭଳି କଥାଟାଏ ଉଠିଲା ?'

– 'କଥା କ'ଣ କି ସାର୍ – ମୁଁ ଆପଣଙ୍କୁ ଯଥେଷ୍ଟ ସମ୍ମାନ କରେ, ସେଥିପାଇଁ କହିଦେବାକୁ ଇଚ୍ଛା ହେଉଛି – ଏକୁଟିଆ ଆଉ ସମ୍ଭାଳି ହେଉନାହିଁ । ମୋ ସ୍ତ୍ରୀ ଛନ୍ଦା – ହଁ ସାର୍ ମୋର ବିବାହ ହୋଇଯାଇଛି – ମୁଁ ତାକୁ ଭଲପାଇ ବିଭାକରିଛି । ସେ ହିନ୍ଦୁସ୍ଥାନୀ ଝିଅ । ଘର ଭାଗଲପୁର ।' ଛନ୍ଦା ସେମିତି କିଛି ବୋକୀ ନୁହଁ – କିନ୍ତୁ ସେ ପ୍ରଥମେ ହତବତେଇ ଗଲା ସାଧୀନକୁ ଦେଖି । ଅବିକଳ ମୋରି ନକଲ ଦେଖି ସେ ହାଁକରି ଚାହିଁରହିଥିଲା । ସାଧୀନ ବି ତାକୁ ଚାହିଁରହିଲା । ତା'ପରେ ସବୁ ସହଜ ହେଇଗଲା । ହସଖୁସି ଭିତରେ କିଛି ଦିନ ଗଲାପରେ ମୁଁ କେତେଗୁଡାଏ କଥା ଲକ୍ଷ୍ୟକଲି । ମୁଁ ଆଉ ବାହାରକୁ ନିଧଡକ ଯାଇପାରିଲିନାହିଁ । ମୋତେ କେମିତି କେମିତି ଲାଗିଲା । ଆଉ ଆସ୍ତେ ମୋର ସନ୍ଦେହ ପ୍ରମାଣିତ ହେଇଗଲା ।

ବସ୍ ଷ୍ଟାର୍ଟ ହେବାରୁ ଆମେ ଉଠିଆସିଲୁ । ମୋତେ ଭାରି ଉଦାସ ଲାଗିଲା । ଆଉ କିଛି ଶୁଣିବାକୁ ଇଚ୍ଛାହେଲାନାହିଁ । ମୁଁ ସତେବା ତେଣିକି ବାକିସବୁ ବୁଝିଗଲି ।

ମୁଁ ପ୍ରଥମ ଦିନ ହିଁ ବନ୍ଧୁକ ଉଠାଇଥିଲି ଉଭୟଙ୍କୁ ଏକାଠି ଗୁଳିକରିଦେବାକୁ; କିନ୍ତୁ ପାରିଲି ନାହିଁ । ନିଜକୁ ଗୁଳି କରିବାକୁ ଚେଷ୍ଟା କଲି । ପାରିଲି ନାହିଁ । ମୁଁ ଚିତ୍କାର ବି କରିପାରିଲିନାହିଁ । କିନ୍ତୁ ଜନ୍ତୁଟାଏ ଭଳି ସାଧୀନ ଖେଁ ଖେଁ ହସୁଥିଲା । ମୁଁ ବଗିଚାକୁ ଓହ୍ଲେଇଯାଇଥିଲି । ସାରାରାତି ମୁଁ ସେଇଠି ବନ୍ଧୁକ ହାତରେ ବସିରହିଥିଲି । ସ୍ଥିର କରିପାରୁନଥିଲି କ'ଣ କରିବି ?

ମୁଁ ସରାଜ ପିଠିରେ ହାତରଖି କିଛି କହିପାରିଲିନାହିଁ । ସେ କିନ୍ତୁ ଟିକିଏ ସ୍ଥିର ହେଲାପରେ କହିଲେ – 'ମୋର ଅସୁବିଧାଟା ହେଲା ଯେ, ମୁଁ ସାଧୀନକୁ ମୋଠୁ ଅଲଗା କରି ଚିନ୍ତାକରିପାରୁନାହିଁ । ଆମକୁ ପ୍ରାୟ କଥାହେବାକୁ ପଡେ ନାହିଁ । – ଆମେ ପରସ୍ପରକୁ ଏମିତି ବୁଝିଯାଉ । ଆମେ ଏକାଠି ଏକା ପ୍ରକାର କାମ କରୁ । ମୁଁ ଯାହା ଭାବେ, ସେ ବି ସେଇଆ ଭାବେ । ତା'ର ପାଠ ହେଲାନାହିଁ । ମୋର ବି ହେଇନଥାନ୍ତା । ମୁଁ ବି ସେମିତି ହୁଣ୍ଡାହୋଇ ରହିବାକୁ ଏବେ ବି ଚାହୁଛି । ଏହି ପାଠ ପଢା ହିଁ ଶେଷକୁ ଆମ ଦୁହିଁଙ୍କୁ ଅଲଗାକରିଦେଲା । ମୁଁ ଦୂରରେ ରହିଗଲି । ସେ ଗାଁରେ ରହିଲା । ତେବେ ସାଧୀନ ତ ମୋର ଫାଳେ । ଆମର ଜୋତା, ଜାମା, ଧୋତି ଚାଦର ବାରଣ ନଥାଏ । ଯେ ଯେତେବେଳେ ଯାହା ପିନ୍ଧିପାରିଲା ସ୍ୱାଭାବିକ ଅଧିକାରରେ । ସାଧୀନ ଅବିକଳ ସେଇ ଢଙ୍ଗରେ ଛନ୍ଦାକୁ ବି ନିଜର ବୋଲି ଭାବିବା କିଛି ବିଚିତ୍ର ନୁହେଁ ।'

ସରାଜ ପୁଣି ଚୁପ୍ ହୋଇଗଲେ କିଛି ସମୟ ।

'ଛନ୍ଦା ତ ପ୍ରତିବାଦ କରିଥାନ୍ତା – ସେ କ'ଣ ଜାଣିପାରିଲା ନାହିଁ ? ସେ ଠିକ୍ ଜାଣିଚି । ସାଧୀନ ମୋଠୁ ସାମାନ୍ୟ ଭାରି । ତା' ପାହୁଣ୍ଡ ଲମ୍ବା । ସେ ମୋଠୁ ସାମାନ୍ୟ ବେଶୀ ବଲୁଆ । ମୁଁ ଛନ୍ଦାକୁ ଖୁବ୍ ଭଲପାଏ । ସେ ଜାଣିଶୁଣି ଆମକୁ ନେଇ ଖେଳୁଛି । ମୁଁ ତାକୁ ମାଫ୍ ଦେବିନାହିଁ । ମୁଁ ସାଧୀନକୁ ବି ମାଫ୍ ଦେବିନାହିଁ ।'

ସେ ମନକୁମନ ବିଡ଼ବିଡ ହେଲାପରି ଶୁଭିଲା । ମୁଁ ଆଉ ଶୁଣିନାହିଁ । ସେ ହୁଏତ ଆଉ କ'ଣ କହିଥିବେ । ମୁଁ ଢୋଳେଇପଡିଥିଲି ।

ପାହାନ୍ତିଆକୁ ମୁଁ ସାଧାରଣତଃ ଉଠିଯାଏ । ଆଖି ଖୋଲିଲାବେଳକୁ ରାଜଧାନୀରେ ବସ୍ ପହଞ୍ଚିସାରିଥିଲା । ମୁଁ ଆଉ ସରାଜକୁ ଦେଖିପାରିଲିନାହିଁ । ପିଲାଙ୍କୁ ନେଇ ବ୍ୟସ୍ତ ରହିଗଲି । ସେ ବି ବୋଧେ ଅନ୍ୟମନସ୍କ ହୋଇ ଚାଲିଗଲେ ।

ଏ ହେଲା କୋଡିଏ ବର୍ଷ ତଳର ଘଟଣା ।

ତା'ପରେ ଆପଣ ମନେପକାନ୍ତୁ । ସେ ସମୟରେ ସତୁରି ମସିହା ପାଖାପାଖି ଗୋଟାଏ ଖବର ବାହାରିଥିଲା ପତ୍ରିକାରେ । ଭାରି ରୋମାଞ୍ଚକର ଆଉ ରହସ୍ୟମୟ –

...'ବିବାହିତା ସ୍ତ୍ରୀର ଅଦ୍ଭୁତ କାଣ୍ଡ! ସ୍ୱାମୀଙ୍କୁ ହତ୍ୟା କରିବାକୁ ଯାଇ ପ୍ରେମିକକୁ ଗୁଳିକରିଦେଲା ଏବଂ ଭୁଲ୍ ବୁଝିପାରି ନିଜକୁ ହତ୍ୟାକଲା । ତା' ଗର୍ଭରୁ ଜିଅନ୍ତା ସନ୍ତାନଟାଏ ଉଦ୍ଧାର କରାଗଲା ।'

ମୋର ମନେହୁଏ ସେଇ ବୋଧେ ଏ ରାମପୁର ପରିବାରର ଘଟଣା – ସେତେବେଳେ ଘରୋଇ ଇଜ୍ଜତ୍ ପଦାରେ ନପଡିବା ପାଇଁ କାହାରି ନାଁ ବାହାରି ନଥିଲା । ବାହାରିଥିଲେ ମୁଁ ନିଶ୍ଚୟ ଜାଣିଥାନ୍ତି ।

ତା'ପରେ ଏବେ ଯେଉଁ ନିଲାମ ନୋଟିସଟାକୁ ବି ଆପଣ ପଡିଥିବେ – ସେଥିରେ ଲେଖାଅଛି ଯେ, ମାଲିକ ନିରୁଦ୍ଦିଷ୍ଟ । ବକେୟା ଋଣ ଆଦାୟ କରିବାକୁ ଏ ନିଲାମ ଡାକରା । ମୋର ମନେହୁଏ, ସରାଜ ସିଂହ ନିରୁଦ୍ଦିଷ୍ଟ ନୁହନ୍ତି; କିନ୍ତୁ କୌଣସି କାରଣରୁ ସେ ଅଜ୍ଞାତ ରହିବାକୁ ଚାହାନ୍ତି ଏବଂ ଯା ପରେ ସେ ସତକୁସତ ଦେଶାନ୍ତର ଚାଲି ଯାଇପାରନ୍ତି ।

ହୁଏତ ସେ ଜୀବନରେ ଦୁଃଖର ନଈ ଲଂଘିପାରୁ ନାହାନ୍ତି ।

ହୁଏତ ସେ ନିଜେ ସେ ଦୁଇଟିଯାକ ହତ୍ୟା କରିଛନ୍ତି ଏବଂ ନିଜ ପାଖରେ ନିଜେ ଲୁଚିପାରୁ ନାହାନ୍ତି । ସେ ହୁଏତ ପ୍ରାୟଶ୍ଚିତ କରିଛନ୍ତି । ସେ ପିଲାଟାକୁ ପାଳନ କରିବାରେ । ଯା ପରେ ତ ସେ ସତଃ ତା' ନାଁରେ ସବୁ ସ୍ଥାବର ଅସ୍ଥାବର ସମ୍ପତ୍ତି କରିଦେଇ ବାନପ୍ରସ୍ଥରେ ଚାଲିଯାଇପାରନ୍ତି !

କିନ୍ତୁ ଯାକୁ ସେ ନିଲାମ କରୁଥିଲେ କାହିଁକି ?

ହୁଏତ ସରାଜ ସତକୁସତ ଋଣ ଶୁଝିନପାରି ଲୁଚି ପଳେଇଛନ୍ତି । ସ୍ୱାଧୀନର ହତ୍ୟା ପରେ ସେ ଭାରସାମ୍ୟ ହରେଇ ଉଚ୍ଛୃଙ୍ଖଳ ହୋଇଯାଇଛନ୍ତି । ପିଲାଟାକୁ ହୁଏତ ବାହାରକୁ ପଠେଇ ଦେଇଛନ୍ତି ପାଠ ପଢିବା ପାଇଁ । ନିଜେ ଅନ୍ଧାର ଭିତରେ ଭୟଙ୍କର ଗୁଳିଖିଆ ଜନ୍ତୁ ଭଳି ବଞ୍ଚିଛନ୍ତି । ପିଲାଟାକୁ ନିଜର କରିପାରୁନାହାନ୍ତି – ଦୂରେଇ ବି ପାରୁନାହାନ୍ତି । ସେ ଫେରିବା ପୂର୍ବରୁ ଏ ଘର ଛାଡି ଚାଲିଯାଇଛନ୍ତି । ସବୁ ପଇସା ହୁଏତ ନିଶା ଖାଇଦେଇଛନ୍ତି, ଜୁଆ ଖେଳିଦେଇଛନ୍ତି । ଏ କୋଠା ଉପରେ ଋଣ ନେଇ ଉଡେଇଦେଇଛନ୍ତି ।

କିନ୍ତୁ ଏ କୋଠାଟାକୁ ରାଜଧାନୀ ପାଖରେ ସେ ତୋଳିଲେ କେତେବେଳେ ଏବଂ କାହିଁକି ?

ଏ କୋଡିଏ ବର୍ଷ ଭିତରେ ତ ଥରେହେଲେ କାଁ ଭାଁ ତାଙ୍କ ସଙ୍ଗେ ଭେଟ ହେଇ ଯାଇଥାନ୍ତା । କିନ୍ତୁ ତାଙ୍କୁ ମୁଁ ଜମା ଦେଖିନାହିଁ ।

କୋଠାଟା ନୂଆ । ଏଇ ଦଶ-ବାରବର୍ଷ ଭିତରେ ତୋଳା ହେଇଛି । ସୁନ୍ଦର ଡିଜାଇନ୍ । ଘରର ଆସବାବପତ୍ର ଅତି ଦାମୀ । ଖୁବ୍ ରୁଚିପୂର୍ଣ୍ଣ । ମନେହେଉଛି ସତେ ବା ସରାଜ ତାଙ୍କର ସବୁ ଇଂଜିନିଅରିଂ ବୁଦ୍ଧି, ସବୁ ଅର୍ଥ, ଆଉ ସବୁ ସ୍ୱପ୍ନକୁ ନେଇ ଏଇ କୋଠାଟାକୁ ତୋଳେଇଛନ୍ତି । ସେ ହୁଏତ ସନ୍ନ୍ୟାସୀଭଳି ଅପେକ୍ଷା କରିଛନ୍ତି ଏଇଠି ସେ ପାଳିତ ପୁଅଟିର ନୀଡ ରଚନା କରିବା ପାଇଁ । ଘର, ଜମିଦାରିଠାରୁ ଦୂରରେ ଭୟଙ୍କର ଅତୀତର ଛାୟାକୁ ଏଡେଇଦେବାପାଇଁ ସେ ରହିଛନ୍ତି ।

ହୁଏତ ସେ ନିରାଶ ହେଇଯାଇଛନ୍ତି । ପୁଅ ଆମେରିକାରେ ମିନେସୋଟାରୁ ଆଉ ଫେରିନାହିଁ । ସେଇଠି ହୁଏତ ରାତି ଦି'ଟାରେ ଗାଡି ଚଳେଇ ଆସୁଥିବାବେଳେ ଦୁର୍ଘଟଣାରେ ମରିଯାଇଛି ।

ତା'ପରେ ଆଉ କ'ଣ ଥାଏ ? ଓକିଲ ଜରିଆରେ ତାଙ୍କର ଶେଷ ସ୍ୱପ୍ନକୁ ନିଲାମ କରିବାର ସେ ବାଧ ହେଇଛନ୍ତି । ସେ ହୁଏତ ଦେବପ୍ରୟାଗ ପାଖରେ ଏକ ବିତସ୍ପୃହ ସନ୍ନ୍ୟାସୀ । ସେଇଠି ଥାଇ ସେ ଶେଷବନ୍ଧନ ଛିନ୍ନ କରିଛନ୍ତି । ମୁକ୍ତହେବାକୁ ଶୁଭ୍ର ହିମପାତ୍ରେ ଏ ପୃଥିବୀ ଉପରୁ ସବୁ ଲୁହଲହୁର ଦାଗ ଘୋଡେଇଦେବାକୁ ।

ତେବେ କୋଉ କଥାଟା ଏଥିରୁ ଠିକ୍ ବୋଲି ଜାଣିବା ? ମୋଟ ଉପରେ କୋଡିଏ ବର୍ଷ ତଳର ସେ ଖବରଟା ବି ଏ ପରିବାରର ନହୋଇଥାଇପାରେ । ମୁଁ ସିନା ଅନୁମାନ କରିନେଲି । ତା'ହେଲେ ତ କଥା ସଂପୂର୍ଣ୍ଣ ଆଉ ପ୍ରକାର ବି ହେଇପାରେ ।

ସେ ଯାହାହେଉ ଆପଣଙ୍କର ସେଥିରେ କ'ଣ ଥାଏ ? ଆପଣ ତ ନିଲାମ ଡାକିବା ଲୋକ । ଥରେ ଡାକ ଦେଇ ପାରିଲେ ଘରର ମାଲିକାନା ଆପଣଙ୍କ ମୁଣ୍ଡ ଉପରେ ଟଳମଳ ଝଟକିବ; ଆଉ ଜଣେ ଆପଣଙ୍କୁ ବେଦଖଲ ନକଲା ପର୍ଯ୍ୟନ୍ତ ସେମିତି ଘରକୁ ସାମନାରେ ଦେଖି ଆପଣ କ'ଣ ନଡାକି ରହିପାରିବେ ?

ନା, ମୁଁ ଡାକିବି ନାହିଁ, କାରଣ ମୁଁ ଡାକିପାରିବି ନାହିଁ । ମୋର ସାହସ କୁଳଉ ନାହିଁ ।



# ସେ ତୁମ ମା' ପରା !

ଜହ୍ନରାତିରେ ଧଳା, ଗୋଲାପୀ, କେଶର ରଙ୍ଗର ବେଶ୍ ଭଦ୍ର ଇଜ୍ଜତ୍‌ଦାର୍ ଏକତାଲା ଦି'ତାଲା କୋଠାମାନ ଖୁବ୍ ମନ ଉଣା କଲାପରି ପରସ୍ପରକୁ ଉଦାସ ଭଙ୍ଗୀରେ ଚାହିଁରହନ୍ତି । ସହରର ଏ ଅଭିଜାତ ଅଞ୍ଚଳରେ ସତେବା ସେମାନଙ୍କୁ ଖୁବ୍ ବାଧୁଛି; ମର୍ମାହତ ମ୍ରିୟମାଣ ବୋଧକରୁଛନ୍ତି ସେମାନେ ।

ଏଇଆଡୁ ତିନିଟା ଘର ଛାଡି ଗୋଟାଏ ଅଳମ୍ବୁଷା ନଅତାଲା କୋଠା ମୁଣ୍ଡଟେକି ଉଠିଛି । ଇଟା ସିମେଣ୍ଟର ଗୋଟାଏ ଅଶ୍ଳୀଳ ଅତିବୃଦ୍ଧି । ଯେତେପ୍ରକାର କୁଟିକମ ହୋଇପାରେ ତା' ଦେହସାରା ଖଞ୍ଜା ଚାଲିଛି । କାମ ସରିନାହିଁ । ଗୁଡାଏ ଚର୍ବିଳ ମାଂସ ଖାଇଦେଇ ମେଦବହୁଳ ରାକ୍ଷସଟାଏ ସତେବା ଜହ୍ନ ଆଲୁଅରେ ହାଇ ମାରୁଛି । ତା'ର ଏଭଳି ବିଷମାନୁପାତିକ ଆକାର ଏବଂ ଆକୃତିରେ ପାଖଆଖ ବାକୀ ସମସ୍ତେ ଦଳିଚକଟି ହେଲାପରି ନ୍ୟୁନ ଅନୁଭବ କରୁଛନ୍ତି ।

ପାହାନ୍ତା ପହରକୁ ଗୁଡାଏ ସିମେଣ୍ଟ ବୋଝେଇ ଟ୍ରକ୍ ଏଇ ଛୋଟ କୋଠାମାନଙ୍କ ସାମ୍ନାରେ, ସେମାନଙ୍କର ଛାଇନିଦଭାଙ୍ଗି ଗର୍ଜି ଯାଉଛନ୍ତି ସେ ପଥରଘର ପାଖକୁ । କେତେ ଗୋଡି, କେତେ ବାଲି, କେତେ ଲୁହାଛଡ ବୁହାହୋଇ ଆସୁଛି, ତା'ର କଳନା ନାହିଁ ।

କେତେ ବାଟ ଆଉ ତୋଳାହବ ? କ'ଣ ଅଠରତାଲା ହବ ? ବାକିସବୁ ଭୂଇଁ ଭିତରେ ପଶିଯିବେ ତା'ର ପ୍ରାଦୁର୍ଭାବରେ ? ଏଇଟା କ'ଣ ଘର ? ଏଠି କ'ଣ କିଏ ରହୁଛି ? କିଏ ଯାର ମାଲିକ ? କ'ଣ କରିବ ସେ ଏତେ ରାକ୍ଷସୀ ଘର କରି ?

ଆମେ କ'ଣ ଜାଣୁ ସେ କ'ଣ କରିବ ? କିଏ କହୁଥିଲା ସେ ଏଇଟାକୁ ହୋଟେଲ କରିଦେବ । ଏଠି ସବୁ ବାରଜାତି ଲୋକ ସଞ୍ଜହେଲେ ଗରାକ ସାଜି ଆସିବେ । ଯାକୁ ଉପଭୋଗ କରିବାକୁ ଘଣ୍ଟା ଗଣତିରେ ପଇସା ଦେବେ । ଓ, ତାହାଲେ ସେକଥା କହୁନ...

ଛୋଟ ଛୋଟ ଇଜ୍ଜତ୍‌ଦାର କୋଠାମାନ ଆଶ୍ୱସ୍ତବୋଧ କଲେ । ସତେବା ଏଣିକି ସେଇଟା ଯେତେ ବଡ ହେଲେ ବି ଏମାନଙ୍କର ସେଥିରେ ନ୍ୟୁନ ଅନୁଭବ କରିବାର କିଛି ନାଇଁ । ଖାଲି ଏତିକି ଯେ, ତା' ବ୍ୟବସାୟ ପାଇଁ ସେ କାହିଁକି ଏ ଅଭିଜାତ ଗଳିଟିକୁ ବାଛିଲା ? ସେ ଯାଇଥାନ୍ତା ଜନପଥକୁ, ଷ୍ଟେସନ ରୋଡ ବା ବିଚ୍ ରୋଡକୁ, ସେଇଠି ଜାତି ବେଉସା ପାଇଁ ତହୁଁ ବଳି ତହୁଁ ବଳି କୋଠା । ଗରାକ ବି ଅନେକ । ତେବେ କିଛି କହି ହଉନାଇଁ । ଏଇଟାତ ତ ଆଉରି ତୋଳା ଚାଲିଛି । ସେ ଯାହାହଉ ତେଣିକି, ଏମାନେ ନିଜ ମହତ ଜଗି ଚଳିଗଲେ ହେଲା ।

କୋଠା ସାମ୍ନାରେ ଲନ୍ ଫୁଲ ଫଗିଚା । ଧାଡି ଧାଡି ଦେବଦାରୁ । କୋଠା କାନ୍ଥରେ ରାଜାରାଣୀଆ ପଥର ଛାଉଣୀ । ମୁଖଶାଳାରେ କାରୁକାର୍ଯ୍ୟ । କାରିଗର ସବୁ ଲାଗିଛନ୍ତି । ଭିତରେ

ସମଗ୍ର କୋଠା ଏୟାର କଣ୍ଡିସନ କରିବାର ପ୍ରସ୍ତୁତି । ଭିତର କେମିତି ସଜାହବ ସେଥିପାଇଁ ଜାତି ଜାତି ଡିଜାଇନ୍ । ନୂଆ ନୂଆ ବିନ୍ୟାସ, କାଗଜ କଲମରେ ଚିତ୍ରକରି ଖୁବ୍ ଜାଣିବା ଲୋକ ମୁଣ୍ଡ ଖଟେଇ ଚାଲିଛନ୍ତି ।

'ପଇସାକୁ ପରବାଏ ନାହିଁ ।'

"ଏମିତିକରି ଗଢିବ ଯେ, ଦେଶରେ କେହି ତା'ର ମୁକାବିଲା କରିପାରିବେ ନାହିଁ ।"

'ଏ ଯୁଗର କୋଣାର୍କ; ବେଜୋଡ – ବିଉଟିଫୁଲ୍' ଏ ଉଦ୍‌ବୋଧନ ଦେବା ଲୋକଟି ବୋଧେ ଚିଫ୍ ଡିଜାଇନର୍ । ତା' ଟିକିଏ ଛାଡି ଯେ ଛିଡାହୋଇଛି ସେ ବାଙ୍ଗରା କାଳିଆ ମଣିଷଟା...ସେ କିଛି ନକହି କେବଳ ଶୁଣୁଚି । ମଝିରେ ମଝିରେ ଛାତକୁ କାନ୍ଥକୁ ଅନେଇ ଆଖି ଫେରେଇ ଆଣୁଚି । ପାଇପ୍‌ରୁ ଧୂଆଁ ଛାଡୁଚି ।

'ଆଉ ଦେଖ, ଏଇଟା ହେଲା ରିସେପ୍‌ସନ୍ ହଲ୍ । ତଳେ ତ ମାର୍ବଲ ରହିବ, କିନ୍ତୁ ଭିତରକୁ ପଶିଗଲେ ଲାଗିବ ଯେମିତି – ମାନେ ଲାଗିବ ଗୋଟାଏ ଗୋଟାଏ...'

'ମନ୍ଦିର ପରି ।' – ବାଙ୍ଗରା ମାଲିକର ନିଷ୍ପତ୍ତି ।

"ୟେସ୍ ସାର୍, ୟେସ୍ ସାର୍ – ମନ୍ଦିର ମାନେ ଟେମ୍ପଲ୍ ପରି !" ଚିଫ୍‌ଡିଜାଇନ୍‌ରଙ୍କ ନୂଆ ଯୋଜନାରେ ବାରୁଦ ଲାଛି ହୋଇଗଲା – ସେ ଡେଇଁ ଡେଇଁ ଉତ୍ତେଜିତ ସ୍ୱରରେ କହିଚାଲିଲେ ।

"ଏଇଠି ଛାତରୁ ଲମ୍ବିଆସିବ ବଡ ବଡ ପିତଳର ଘଣ୍ଟି । ଏଇଠି କାନ୍ଥରେ ଲାଗିବ ପାର୍ଶ୍ୱଦେବତାମାନଙ୍କର ମୂର୍ତ୍ତି । ସେଇ ସାମ୍ନାରେ ଦେବୀଙ୍କ ମୂର୍ତ୍ତି; ତା' ପାଖରେ ସବୁବେଳେ ଇଲେକଟ୍ରିକ୍ ଦୀପ ଜଳୁଥିବ । ଧୂଆଁ ଉଠିଲା ପରି ଦିଶୁଥିବ; ଅଥଚ ଧୂଆଁ ଉଠୁନଥିବ । ସବୁ ନାଚୁରାଲ – ନାଚୁରାଲ – କିନ୍ତୁ ପ୍ଲାଷ୍ଟିକ୍ ପେଣ୍ଟ୍‌ରେ କାରିଗରମାନେ ଫିନିସ୍ କରିବେ । ଏଠି କାର୍ପେଟ୍ ପଡିବ; କିନ୍ତୁ ପ୍ଲେନ୍ ପଥର ରଙ୍ଗର କାର୍ପେଟ୍; ସ୍ପେସାଲ ଅର୍ଡର ଦିଆଯିବ – ଆଉ ଦେବୀଙ୍କ ମୁହଁ ଆଗରେ ବାର୍ । ଡାହାଣପାଖକୁ ଲାଉଞ୍ଜ ସାହେବମାନେ ମୂର୍ତ୍ତିକୁ ଦେଖିବେ, ଦୂରରୁ ପାଖରୁ ! ସେମାନଙ୍କୁ ମନ୍ଦିର ଭଳି ଏଠି ବାରଣ ନଥିବ । ସେ ଦେବୀକୁ ଛୁଇଁ ପାରିବେ; ଯୋଉଠି ମନ ସେଇଠି ସାଉଁଳି ପାରିବେ, ତାଙ୍କ ହାତରେ ଟିକିଏ ଯେମିତି ମଇଳା ନଲାଗେ !!

ପାଇପ୍‌ର ଧୂଆଁ ଛାଡି ମାଲିକ ପଚାରିଲେ – "ମୂର୍ତ୍ତିକାମ କେତେ ବାଟ ଗଲା ?"

"ସବୁ ବଡ ବଡ ଆର୍ଟିଷ୍ଟମାନଙ୍କ କୋଟେସନ୍ ଆସିଯାଇଛି ସାର୍ ! ବମ୍ବେର କୁଳକର୍ଣ୍ଣି – କଲିକତାର ଚୌଧୁରୀ ମାଡ୍ରାସ୍‌ର ସନ୍‌ମୁଖମ୍ – ସମସ୍ତେ ବିଖ୍ୟାତ କାରିଗର ! ପଥର ବ୍ରୋଞ୍ଜ ପିତଳ ଯେଉଁଥିରେ ଚାହିଁବେ ସେମାନେ କରିଦେବେ । ଖାଲି ମୂର୍ତ୍ତିର ଚାରିଟା କି ଛ'ଟା କି ଦଶଟା ହାତ ହବ ତାକୁ ଠିକ୍ କରି ଆଗରୁ କହିଦବାକୁ ପଡିବ ।"

"ଏଠି ଗୋଟେ କୈଳାସ ମହାରଣା କିଏ ଭଲ ପଥର କାଟୁଛି ତାକୁ ଦେଖା କରିଛ ?"

"ମହାରଣା ଫହାରଣା କ'ଣ ଏଠି କାମ କରି·ପାରିବେ ସାର୍ ? ତାଙ୍କର ତାଲିମ୍ କାହିଁ ? ଡିଗ୍ରୀ କାହିଁ ?"

ପାଇପ୍‌ରୁ ଧୂଆଁ ଛାଡି ମାଲିକ ପାଦ ବଢ଼ାଇଲେ ଯିବାପାଇଁ, ପାଇପ୍ ଧୂଆଁରେ ନିଷ୍ପତ୍ତି ଦେଇଗଲେ – "ଏ କାମ କୈଳାସ ମହାରଣା କରିବ ।"

ଚିଫ୍ ଡିଜାଇନର୍ ସ୍ତବ୍‌ଧ ହୋଇଗଲେ ମିନିଟିଏ । ତା'ପରେ ରୁମାଲରେ ମୁହଁ ପୋଛିଦେଇ ଅନ୍ୟମାନଙ୍କୁ ଚାହିଁ କହିଲେ – "ମୁଁ ମୂଳରୁ ପରା ଚାହୁଁଥିଲି ସେଇଆ । ଖାଲି ସେ ମେନେଜର୍ ଅଡିବସିଲେ ବୋଲି । ମୁଁ କିନ୍ତୁ ଜାଣେ ସାର୍ ଠିକ୍ ଧରିଦେବେ । କୈଳାସ ମହାରଣା ଗୋଟାଏ ପ୍ରତିଭା, ତାକୁ କେହି ଜାଣିଲେ ନାହିଁ । କି ଦୁର୍ଭାଗ୍ୟ ! ଏଇଥର କିନ୍ତୁ ତା' କପାଳ ଫିଟିଲା ! ସେ ଏ ଦେବୀ ମୂର୍ତ୍ତି କରିଦେଲେ ସାରା ବିଦେଶରେ ବିଖ୍ୟାତ ହୋଇଯିବ । ବାକି ଖାଲି ନାମ ବଡ । ଆର୍ଟିଷ୍ଟ ଡାକ । ସେମାନେ କୈଳାସର କୋଉ ପାସଙ୍ଗରେ ପଡିବେ ?"

ସେ କୈଳାସ ମହାରଣା ପାଖକୁ ପ୍ରଥମ ସାକ୍ଷାତ ପାଇଁ ବାହାରିଲେ ।

"ଆପଣ କୈଳାସ ମହାରଣା ?"

ପଇଁଚାଳିଶ ବର୍ଷର ପ୍ରୌଢ । ଦରପାଚିଲା ଦାଢି । ବାବୁରି ବାଳ । ମେଲା ଲୋମଶ ଦେହ ।

"ଆପଣଙ୍କୁ ଗୋଟାଏ ବଡଧରଣର କାମ ଦେବାକୁ ଆସିଛି ।"

କୌଣସି ଉତ୍ତର ନାହିଁ ।

"କଥା କ'ଣ କି ରାଜଧାନୀରେ ଭାରତବର୍ଷର ସବୁଠାରୁ ବଡ ହୋଟେଲ ତିଆରି ଚାଲିଛି । ସେଇଠି ଗୋଟାଏ ଦେବୀ ମୂର୍ତ୍ତି ଦରକାର ପଡୁଛି କଳା ମୁଗୁନିରେ ହବ । ଚାରିଟା କିମ୍ବା ଛଟା ହାତ ହେଲେ ଭଲ । ମୁହଁଟା ଖୁବ୍ ସୁନ୍ଦର ଦେହ...କଟି..."

"ବାଆସ୍ – ମୁଁ କରିପାରିବିନାହିଁ ।"

ଡିଜାଇନ୍‌ର ପରିସ୍ଥିତି ଅନୁପାତରେ ସଂପୂର୍ଣ୍ଣ ସ୍ୱର ଢଙ୍ଗ ବଦଳେଇ ହାତମନ୍ଥି କହିଲେ ।

"ଆପଣଙ୍କ ଖ୍ୟାତି ସାରା ଦେଶରେ ବ୍ୟାପିଯାଇଛି । ମତେ ପରା ଖୋଦ୍ ମାଲିକ ପଠାଇଛନ୍ତି ! ତାଗିଦା କରିଛନ୍ତି ଯେ ସେ କଲିକତା ବମ୍ବେଇ କାରିଗର କେହି କାମ ପାରିବେ ନାହିଁ । ଏ କାମ କେବଳ ଆପଣ କରିବେ । ଦେବୀ ମୂର୍ତ୍ତି ଆପଣଙ୍କ ହାତରେ ଜୀବନ୍ତ..."

"ମୁଁ କରିବି ନାହିଁ । ହୋଟେଲରେ ମୋର କ'ଣ କାମ ? ଦେବୀ ପ୍ରତିମାର ବା କ'ଣ କାମ ? ଆପଣ ଆଉ କୋଉଠି ବରାଦ ଦିଅନ୍ତୁ ।"

"କାମ ଦେଖି ଏଥିରେ ପଚାଶ ହଜାର ଯାଏଁ ମୂଲ୍ୟ ଦବାକୁ ଆମ ମାଲିକ ପ୍ରସ୍ତୁତ ଅଛନ୍ତି । ଆପଣ ଖାଲି ରାଜିହେଲେ ହେଲା ।"

"ମୁଁ କହିଲି ପରା କରିବି ନାହିଁ । ମୁଁ ମନ୍ଦିର କାରିଗର । ପୁରୁଣା କାଳିଆ । ଆପଣଙ୍କ ମନଲାଖି ମୋ ପାଖରେ କାମ ନାହିଁ । ଦେବୀ ପ୍ରତିମା ମନଇଚ୍ଛା ଗଢିହେବନାହିଁ । ଦେବୀ ଜାଣି ଆୟୁଧ, ସେଇଭଳି ଭୁଜ । ଆପଣଙ୍କ ପାଇଁ ଚାରି ହଉ ଛ'ହଉ ଭୁଜଥିବା ଗୋଟାଏ କ'ଣ କଣ୍ଢେଇ ଦରକାର । ମୁଁ ତା' କରିପାରିବି ନାହିଁ ।"

"ଓ ମୋର ଭୁଲ୍ ହେଇଗଲା – ହେଇ କାନ ଧରୁଚି । ଆପଣଙ୍କ ଭଳି କାରିଗରଙ୍କୁ ମୋର

ସେପରି କହିବାର ନଥିଲା । ଆପଣ ଯେମିତି ଚାହିଁବେ ସେମିତି ଗଢନ୍ତୁ – ଆଉ ଏ ମୂର୍ତ୍ତି ହୋଟେଲ ପାଇଁ ନୁହେଁ । ସେଇ ଭିତରେ ଗୋଟାଏ ମନ୍ଦିର ରହିବ । ସେଇଠି ଉପରୁ ଘଣ୍ଟି ଓହଳିବ । କାନ୍ଥରେ ପାର୍ଶ୍ୱଦେବତା ରହିବେ । ସିଂହାସନରେ ଦେବୀ ବିଜେ ହେବେ । ସବୁବେଳେ ଧୂପ-ଦୀପ ଜଳିବ ।"

"ମାନେ ?"

"ହଁ ଆଜ୍ଞା, ପୂରାପୂରି ମନ୍ଦିର !"

"ଆଚ୍ଛା, କି ମନ୍ଦିର ? କାହା ମନ୍ଦିର ?"

"ହୋଟେଲ ବିକ୍ରମର ମନ୍ଦିର – ଅମର ଯୋଷୀଙ୍କ ନଅତାଲା ହୋଟେଲର ମନ୍ଦିର ।"

"ଆହେ ତା' ନୁହେଁ – କାହା ମନ୍ଦିର ମାନେ ବିମଳା, ମଙ୍ଗଳା, ଦୁର୍ଗା ନା ସରସ୍ୱତୀ – କାହା ମନ୍ଦିର ?"

"ଓ...ସେଥିରେ କିଛି ଯାଏ ଆସେ ନାହିଁ । ଆପଣ ଯେମିତି ଚାହିଁବେ... ଦେବୀ ମନ୍ଦିର ସେମିତି ହବ !"

କୈଳାସ ମହାରଣା ହସିଲେ । କୌଣସି କାରଣରୁ ଗୋଟାଏ ଚଉରସ୍ ମୁଗୁନି ଉପରେ ହାତ ସାଉଁଳି ଆଣି କହିଲେ – "ହଉ ଦେଖିବା, ଆପଣ ଆଉ କିଛିଦିନ ଛାଡି ବୁଝାବୁଝି କରି ଆସନ୍ତୁ ।"

"ଆଉ ବୁଝିବାର କିଛି ନାହିଁ । ଆପଣ ଏଇ ପାଞ୍ଚହଜାର ଅଗ୍ରିମ ରଖନ୍ତୁ ଏବଂ ତୁରନ୍ତ କାମ ଆରମ୍ଭ କରିଦିଅନ୍ତୁ । ଆପଣଙ୍କ ଖ୍ୟାତି ଏଣିକି ଦେଶବିଦେଶରେ ପହଞ୍ଚିବ । ସବୁ ବାହାରୁ ଆସିବା ଲୋକେ ତା'ର ଚିତ୍ର ନେଇ ପ୍ରଦର୍ଶନୀ କରିବେ – ଆପଣ ବିଖ୍ୟାତ ହେଇଯିବେ । ଏଇ ଗୋଟିଏ ମୂର୍ତ୍ତିରେ ।"

କୈଳାସ ମହାରଣା କେବଳ ସ୍ଥିର ଦୃଷ୍ଟିରେ ଚାହିଁଲେ ଗୋଟଏ ଦିଗକୁ । ଚିଫ୍ ଡିଜାଇନ୍‌ର ସନ୍ତର୍ପଣରେ ସେଇଠୁ ଆସ୍ତେ ଖସିଗଲେ ।

ତେଣିକି ମହାରଣା ସବୁଦିନ ସେଇ ପଥର ଦାଢରେ ସମୁଦ୍ରକୁ ଅପେକ୍ଷା କଲେ, କେବେ ଢେଉ ଆସି ତାଙ୍କୁ ଓଦା କରିବ । ନହେଲେ ସେ ନିବୁଜ ମୁଗୁନିରେ ନିହାଣ ଦାଗମାରିବେ କିପରି ? ତାଙ୍କୁ ଦେବୀ ରୂପ ଦିଶିଲେ ସିନା ! ଦେବୀଭାବ ଆସିଲେ ସିନା ! ସେ ବାବୁ ଜଣକ ତିନି ଚାରିଦିନ ଛାଡି ଆସି ପଚାରିଯାଉଥାନ୍ତି । କାମ ହେଉନଥିବାରୁ ହାତ ମନ୍ଥି ବିରକ୍ତ ହେଉଥାନ୍ତି । କିନ୍ତୁ କିଛି ତୁଟି କହିଦେବାକୁ ବଳପାଉନଥାନ୍ତି ।

ଶେଷରେ ଦିନେ ପାହାନ୍ତିଆ ପହର ହେଇଥାଏ । ମହାରଣା ଦୂରରୁ ଦେଖୁଥିଲାବେଳେ କଜଳପାତିଟାଏ ସେ ମୁଗୁନି ପଥର ଉପରେ ବସି ଚମକୁଥିଲା । ରାବୁଥିଲା କ'ଣ ସବୁ ତା' ଭାଷାରେ । ମହାରଣାଙ୍କୁ ହଠାତ୍ କଣଟାଏ ଦୃଶ୍ୟ ହେଇ ଉଭେଇଗଲା । ପୁଣି ଦିଶିଲା, ପୁଣି ଉଭେଇଗଲା । ସେ ଏକଲୟରେ ଚାହିଁଥାନ୍ତି । ଦିଗମ୍ବରୀ ମହାକାଳୀ, ଚର୍ତୁଭୂଜା, ଉଗ୍ରା, ଅତି ପ୍ରାଞ୍ଜଳରୂପେ ଦେଖାଦେଲେ । ମହାରଣା ବହୁ ସମୟ ଧରି ସେ ପଥରଟିକୁ ଏକଲୟରେ ଚାହିଁରହି

ବିନମ୍ର ପ୍ରଣାମକଲେ ।

ସେଇ ଦିନଠାରୁ ଜାରିହେଲା ମନର ରେଖା ସହିତ ପାଷାଣର ରେଖାକୁ ମିଶାଇବାର ଅଖଣ୍ଡ ପ୍ରୟାସ ।

ଲୋକ ଆସି ଦେଖିଦେଇ ଚାଲିଗଲେ । ପ୍ରଥମେ କିଛି ବୁଝିପାରିଲେ ନାହିଁ । ପରେ ପରେ ରୂପ ଉକୁଟି ଆସିଲା । ଅଧିକ ଅଧିକ ଲୋକ ଆସିଲେ । ସାହିଟୋକା ପାଖ ଛାଡିଲେ ନାହିଁ । ଯିବା ଆସିବା ଲୋକ ଘଡିଏ ଠିଆହୋଇ ଦେଖିଲେ ।

ସମସ୍ତେ କିନ୍ତୁ ଫିସ୍ ଫିସ୍ କଥା ହେଉଥିଲେ । ମହାରଣାଙ୍କ ପିଠିର ଧାର ଧାର ଝାଳ, ଚମକୁଥିବା ମାଂସପେଶୀ, ନିହାଣ ମୁଗୁରର ମାଡ – ଦେଖି କେହି ନକହିଲେ ବି ଚୁପ୍‌ଚାପ୍ କିଛି ସମୟ ପରେ ଚାଲିଯାଉଥିଲେ ।

ସେ କାମରୁ ବିଶ୍ରାମ ନେଲାବେଳେ ମୁଗ୍ଧହୋଇ ଚାହିଁ ରହୁଥିଲେ ମୂର୍ତ୍ତିକୁ । ପାଦ ପେଣ୍ଡା, ଜଂଘ, କଟି, ବକ୍ଷ ଗ୍ରୀବା, ଲଲାଟରେ ଅପୂର୍ବ ରୂପ ଫୁଟିଉଠୁଥିଲା । ମନେହେଉଥିଲା ଯେମିତି ସେ ଉଗ୍ରରୂପ ତହ ତହ ତାତିଛି – କମ୍ପୁଛି କ୍ରୋଧରେ । ବାଁ ହାତରେ କଟାମୁଣ୍ଡ, ଡାହାଣରେ ଖପରକାମ । ସରିଆସିଲାବେଳକୁ ଚାହିଁ ସହିଲା ନାହିଁ; ମୁହଁ ଘୋଡେଇ ଦିଆଗଲା । ହୋଟେଲର ଲୋକେ ଆସି ଫେରିଯାଉଥିଲେ । ଅନେକ ଦୂର ଗଲାପରେ କଥା ହେଉଥିଲେ, ହସି ହସି ଗଡିଯାଉଥିଲେ – ଇସ୍ କି ହେଇଚିବେ !

– ଖାଲି ଚରିଟା ହାତ କରି ବିଗାଡିଦେଲା ।

ଦିନେ ଚିଫ୍-ଡିଜାଇନର୍ ଆସି ମୂର୍ତ୍ତିଟିକୁ ନେଇଗଲେ ପାଦରୁ ମୁଣ୍ଡଯାଏ ଲୁଗା ଘୋଡେଇ...ବାକି ଟଙ୍କା ମହାରଣା ହାତକୁ ବଢେଇଦେଇ ରସିଦ୍ ନେଇଗଲେ । ଗାଡି ଚାଲିଯିବାଯାଏଁ କୈଳାସ ମହାରଣା ମୂର୍ତ୍ତି ଚାରିପାଖେ ଗଦାହେଇଥିବା ପଥର ଗୁଣ୍ଡକୁ ମୁଠା ମୁଠା କରି ବସିରହିଲେ ଅନେକବେଳଯାଏ । ତାଙ୍କ ପାଖରେ କାମ କରୁଥିବା ଟୋକା ଲେମ୍ବୁପଣା ଧରି ଠିଆହୋଇରହିଥାଏ । ବେଳ ଗଡ ଗଡ ସମୟ ।

ମହାରଣାଙ୍କୁ ସମସ୍ତେ ଜାଣିଛନ୍ତି । ସେ ସେଇ ଦିନେ ନୁହଁ, କିଛିଦିନଯାଏ ସେମିତି ଉଦାସ ରହିବେ । ସେଇଠି ବସି ପଥରଗୁଣ୍ଡକୁ ମୁଠା ମୁଠା କରୁଥିବେ, କେହି ଡାକିଲେ ଶୁଣିବେ ନାହିଁ ।

ହୋଟେଲରେ ରିସେପ୍‌ସନ୍ ହଲ୍‌କୁ ଲାଗି ପ୍ରଶସ୍ତ ଲାଉଞ୍ଜ । ତା'ର ଗୋଟାଏ ପାଖକୁ ବାର୍ । ସେ ବି ମନ୍ଦିର ଡିଜାଇନ୍ – ଆରପାଖେ ଈଷତ୍ ଆଲୁଅରେ ମୁଗୁନି ମୂର୍ତ୍ତି ! କଳା ମଚ୍‌ମଚ୍ – ଚିକ୍‌କଣ – ଚିକ୍‌ଚିକ୍ ।

ବିଦେଶୀ ବିଦେଶିନୀଙ୍କ ଭିଡ ସେଇଠି । ବାଁ ହାତରେ ଗ୍ଲାସ୍‌ଧରି ଡାହାଣ ହାତରେ ପାଞ୍ଚଫୁଟ ଚାରିଇଞ୍ଚର ମୂର୍ତ୍ତିକୁ ସାଉଁଳିବା ସେମାନଙ୍କ ପାଇଁ ଏକ ଅଦ୍ଭୁତ ରୋମାଞ୍ଚକର ସମ୍ଭୋଗ ।

ବିଦେଶୀଙ୍କ ପରି ଆଚରଣରେ କାଣିଚାଏ ଊଣାପଡୁନଥିବା ମିଷ୍ଟର ମିସେସ୍ ଦାସ, ଚୌଧୁରୀ, ମଲ୍ଲିକ, ମହାପାତ୍ରମାନଙ୍କର ବି ଭିଡ । ମିସେସ୍‌ମାନେ ବେଶୀ ସମୟ ଚାହିଁ ନପାରି

ଚାଲିଆସନ୍ତି । ମିଷ୍ଟରମାନେ ପଥରର ଉତ୍ତାପ ଶୋଷୁଥାନ୍ତି ଅନେକ ସମୟ ପର୍ଯ୍ୟନ୍ତ ।

ତାଙ୍କ ଦୃଷ୍ଟିର ନିଆଁ ମୁଗୁନି ପଥରକୁ ନରମ କରିଦେଉଥାଏ । ହୋଟେଲ ବିକ୍ରମର ଏ ନୂତନ ଆକର୍ଷଣର ଅନେକ ଫଟୋଚିତ୍ର ସହ ବିଜ୍ଞାପନମାନ ଛପାହୋଇଗଗଲା ।

ଭିଡ ଜମିଲା । ବ୍ୟବସାୟ ତେଜିଲା । ବାର୍‌ରେ ତୃଷାର ମାତ୍ରା ବେଶି । ଲାଉଞ୍ଜରେ ଉତ୍ତାପ ବେଶି ଦିନୁଦିନ ବଢିବାରେ ଲାଗିଲା ।

ପାଖଆଖ ଅଭିଜାତ କୋଠା ମାନଙ୍କରେ ଦିହସୁହା ହେଇଗଲା । ଆସ୍ତେ ଆସ୍ତେ ସେମାନେ ଉତ୍ତପ୍ତ ଅନୁଭବ କଲେ । ତାଙ୍କ ପରିବେଶରେ ଛୋଟ ଛୋଟ ବିପଣୀ ଗଢିଉଠିଲା । ଦାଣ୍ଡ ବଖରାରେ କାଚ, ମୁଦି, ମାଳି ବିକ୍ରୀପାଇଁ ସଫା ଦାନ୍ତ ସଫା ଚମତାର ଝିଅମାନେ ନିଯୁକ୍ତହେଲେ । ସାରା ସାହିରେ ସଞ୍ଜବେଳେ ବଜାର ବସିଗଲା ।

ମାତ୍‌ଲାମି ସୌଖୀନ୍ ଆଚରଣରେ ସ୍ୱାଭାବିକ ମନେହେଲା । ନଅତାଲା କୋଠାର ରାତିସାରା ଜଳୁଥିବା ରୋଷଣି ଦିନବେଳେ ବି ଲଜ୍ଜିତ ହେଲାନାହିଁ ।

ସକାଳ ପହରଟା – କିନ୍ତୁ ସେ ଅଞ୍ଚଳ ଶୂନ୍‌ଶାନ୍ ।

ଖାଲି ରାସ୍ତାରେ ସକାଳ ଖରା ଭାରି ନିରୀହ, ଏକାକୀ, ଆଚମ୍ବିତ ପିଲାଟିଏ ପରି ଅସହାୟ ।

ସେଦିନ କିନ୍ତୁ ସୂର୍ଯ୍ୟ ଉଇଁ ଆସିଲାବେଳକୁ ହୋଟେଲ ବିକ୍ରମ ପାଖରେ ଘାଇଁ ଘାଇଁ ଜିପ୍ ଗାଡିମାନ ଆସି ଲାଗିଗଲା । ପୋଲିସ୍ କୁକୁର ଜିଭ ଲହ ଲହ କରି ଓହ୍ଲେଇ ଆସିଲା । ଖପ୍ ଖାପ୍ ଓହ୍ଲେଇଗଲେ ଖାକି ପୋଷାକ ଆଉ ପିତଳ ବୋତାମମାନେ ।

ଭିଡ ଆସ୍ତେ ବଢିଲା । ପଚରାପଚରି ହେଲା । ହୋଟେଲ ବିକ୍ରମର ପଥର ମୂର୍ତ୍ତିକୁ କିଏ ଚୋରେଇ ନେଇଛି । ମାଲିକ ଅମର ଯୋଷୀ ସ୍ୱୟଂ ସେଇଠି ଉପସ୍ଥିତ ରହି ପୋଲିସ୍ ଅଫିସରଙ୍କ ସାଙ୍ଗେ ଆଲୋଚନା କରୁଛନ୍ତି ।

"ମୋ ସାଙ୍ଗରେ ମୋର ପବ୍ଲିକ୍ ରିଲେସନ୍ ଅଫିସର ସମସ୍ତେ ଲଗେଇଛନ୍ତି ପ୍ରାୟ ମାସେ ହେଲା ଯେ ବିଦେଶୀ ଗରାଖଙ୍କୁ ସନ୍ତୁଷ୍ଟ କରିବାକୁ ହେଲେ ସେ ମୂର୍ତ୍ତିର ଉପର ଦୁଇଟା ହାତ କାଟିଦେବାକୁ ହବ । ସେମାନଙ୍କୁ ସେ ମୂର୍ତ୍ତି ପାଗଳ କରିଛି । କିନ୍ତୁ ଚାରିଟା ହାତ ସେମାନଙ୍କୁ ଅଡୁଆ କରୁଛି । କେତେକ କୁଆଡେ କହିଛନ୍ତି ଯେ, ଛ'ଟା ଗୋଡ ହାତ ଥିବାରୁ ସେଇଟା ବିରାଟ ମାଙ୍କଡସା ପରି ଦିଶିଯାଉଛି । ସାମାନ୍ୟ ନିଶା ଲାଗିଲାବେଳେ ଅନେକେ ଭୟରେ ପ୍ରଳାପ କରିଛନ୍ତି । ଦୌଡି ପଳାଇ ଯାଇଛନ୍ତି । ବ୍ୟବସ୍ଥା ନକଲେ ବ୍ୟବସାୟରେ ଆଞ୍ଚ ଲାଗିପାରେ । ଏଣୁ ମୁଁ ହଁ କରିଦେଇଥିଲି ହାତ ଦି'ଟା କାଟି ଦେବାକୁ । ଆଜି ସେ କାମ ହେଇଥାନ୍ତା । ସ୍ପେସାଲ କରତ ନେଇ କଲିକତି କାରିଗର କାଲି ସଞ୍ଜବେଳେ ପହଞ୍ଚିଯାଇଛନ୍ତି । ଆଜି ଦେଖିଲାବେଳେ ଅବସ୍ଥା ଏଇଆ ।"

ସେ ମୁଣ୍ଡରେ ହାତଦେଇ ଗୋଟାଏ ଚୌକିରେ ବସିପଡିଲେ । କୁକୁର ସେଇଠି ଘେରା ଘେରା ବୁଲିଲା ।

ସିମେଣ୍ଟ ପିଣ୍ଡି ଉପରୁ ଆସ୍ତେ ମୂର୍ତ୍ତିଟାକୁ କିଏ ସବୁ ମିଶି ଟେକିନେଇଛନ୍ତି । ଅନ୍ତତଃ ମଜବୁତ୍ ଚାରିଜଣ ନହେଲେ ଏ କାମ ସହଜ ନୁହେଁ – ଏଇଟା ଜଣକର କାମ ନୁହେଁ । ଜଗୁଆଳି ମୁଣ୍ଡରେ ମାଡ ହେଇଛି । ଚେତା ବୁଡିଥିବା ଅବସ୍ଥାରେ ତାକୁ ଡାକ୍ତରଖାନା ଟେକି ନିଆହେଇଚି ।

ଜଣାଯାଉଚି ଗୋଟାଏ ମୁଗୁରରେ କିଏ ତା' ଖପୁରି ଫଟେଇ ଦେଇଚି । ସେ ବଞ୍ଚିବ କି ନାହିଁ ଜଣାନାହିଁ ।

ଜେରା ଚାଲିଲା – ରୋଷ ଶାଳରେ – ବେହେରା ଶାଳରେ । ପାଖଆଖ ଚାରିଆଡେ । ଜଣାଗଲା ଆଠନମ୍ବର ବେହେରା କୈଳାସ ମହାରଣାର ପିଉସୀ – ପୁଅ – ଭାଇ । ଜଣାଗଲା ରୋଷଶାଳର ଛ'ନମ୍ବର ଖାନ୍ ସାମାର ତିନି ନମ୍ବର ମସାଲଚି, ଝାଡୁଦାର ଦୁଇଜଣ ଆଉ ଦୁଇ ନମ୍ବର ଗେଟ୍‌ର ରାତି ଡ୍ୟୁଟି ଓ୍ୱାଚମେନ୍ ସବୁ ସେଇ ବେହେରାର ପାଖଆଖ ଗାଁଲୋକ । ଛୁଟିହେଲେ ଏମାନଙ୍କର ବେଳେ ବେଳେ ଏକାଠି ତାସ୍‌ଖେଳ ଜମେ ଖିଆପିଆ ବି ହୁଏ ।

ଜଣାଗଲା ଦିନେ କୁଆଡେ ସେଇ ଆଠ ନମ୍ବର ବେହେରା ସାଙ୍ଗରେ କୈଳାସ ମହାରଣା ଆସିଥିଲା ।

ଜଣାଗଲା ସେଦିନ ସକାଳୁ ଜେରା ଆରମ୍ଭ ହେଲାବେଳକୁ ସେମାନେ ସମସ୍ତେ ଶୋଇଥିଲେ – ବାକୀ ସମସ୍ତେ ହାଜର୍ ଥିଲେ । ସେମାନଙ୍କୁ ଉଠେଇ ଅଣାଯାଇଥିଲା ।

ବିଚକ୍ଷଣ ପୋଲିସ ଅଫିସର ବଳିଆରସିଂହ ଅଚାନକ କୈଳାସ ମହାରଣାଙ୍କ ପାଖରେ ଜିପ୍ ନେଇ ପହଞ୍ଚିଗଲେ ।

"ତମେ କୈଳାସ ମହାରଣା ?"

"ହଁ"

"ତମେ ହୋଟେଲ୍ ବିକ୍ରମ ପାଇଁ ସେ ମାଇକିନା ମୂର୍ତ୍ତିଟା କରିଥିଲ ?"

"ମୁଁ କୌଣସି ମାଇକିନା ମୂର୍ତ୍ତି କେବେ କରେ ନାହିଁ ।"

"ସେଇଟା ତା'ହେଲେ କ'ଣ ?"

"ସେଇଟା କ'ଣ ଚିହ୍ନେଇବାକୁ ପଡିବ ? ହାତକେ ଖର୍ପର, ହାତକେ କଟାମୁଣ୍ଡ, ମୁକ୍ତକେଶ । ଚତୁର୍ଭୁଜା ସେ ଉଗ୍ରରୂପ କାହାର ମତେ ବୁଝେଇବାକୁ ପଡିବ ?"

"ଅଡୁଆ ତ ସେଇଠି । ତମ ମନେମନେ ତମେ ଦେବୀ ମୂର୍ତ୍ତି କରିଛ – ହୋଟେଲ ଗରାଖଙ୍କ ପାଇଁ ସେଇଟା ଲଙ୍ଗଳା ମାଇକିନା । ତାଙ୍କୁ କଟାମୁଣ୍ଡ ବା କଟୁରୀକୁ ପରବାଏ ନାହିଁ । ସେ ଆଉ ଦି'ଟା ହାତ ତାଙ୍କୁ ଅଡୁଆ କରିଛି । ସେ ଦି'ଟାକୁ ମାଲିକ କଟେଇ ଦେଇଥାନ୍ତା । କାରିଗର ଆସିଥିଲେ । ଏତିକିବେଳେ ସବୁ ଭଣ୍ଡୁର ହେଇଗଲା ।"

କୈଳାସ ମହାରଣା ତଳକୁ ମୁଣ୍ଡପୋତି କାଠହୋଇଯାଇଥାନ୍ତି । ଦାନ୍ତଜାକି, ହାତମୁଠାକରି ସହିଯାଉଥାନ୍ତି, ବଜ୍ରପାତ ।

"ସେ ଚୋରି ବିଷୟରେ ତମେ କ'ଣ ଜାଣିଚ ?"

କୌଣସି ଉତ୍ତର ନାହିଁ ।

"ଶୁଭୁଚି ନା ନାହିଁ ?" ପାଟିକଲା ରାଜଶକ୍ତି ।

"ମୁଁ କିଛି ଜାଣି ନାହିଁ ।" ଗମ୍ଭୀର ପଥର ମୂର୍ତ୍ତିର ଉତ୍ତର ।

"ବସ୍ – ଗାଡିରେ ଥାନାକୁ ଚାଲ ।"

ବେଳ ରାତ ରାତ ସମୟ । ଖଣ୍ଡେ ଚାଦର ଗୋଡଠୁଁ ମୁଣ୍ଡଯାଏଁ ଘୋଡେଇ ହୋଇଥିବା କୈଳାସ ମହାରଣାଙ୍କୁ ଗାଡିରେ ବସେଇ ସେମାନେ ନେଇଗଲେ । ସହରଠାରୁ ବାହାରିଥିବା ଉପରମୁହଁ । ଜାତୀୟ ରାଜପଥ । ତା' ଉପରେ ଶାସନ, ଅପଶାସନ, ଦେଶୀ-ବିଦେଶୀ ପର୍ଯ୍ୟଟନ ଦିନରାତି ଚାଲିଥାଏ । ନଈ ପୋଲ କମ୍ପୁଥାଏ ଗାଡିମାନଙ୍କର ଦୁମୁକାଣିରେ । ନଈ କୂଳେ କୂଳେ ଗାଁ ରାସ୍ତା । ସାଇକେଲ, ଶଗଡ, ବେଳେବେଳେ ଦୁମୁକାଣିରେ । ନଈ କୂଳେ କୂଳେ ଗାଁ ରାସ୍ତା । ସାଇକେଲ, ଶଗଡ, ବେଳେବେଳେ ଜିପ୍ ପ୍ରୟୋଜନ ହେଲେ ଚାଲେ, ନହେଲେ ନଈପରି ନିଛାଟିଆ ସେ ରାସ୍ତା ।

କିଛି ବାଟ ନଈକୁ ସାକ୍ଷୀକରି ଚାଲିଗଲେ ପୁରୁଣା ପାଟଣା । ଏଇ ମାତ୍ର ତିନିଶ ଘର ବସ୍ତି । ଗାଁ ମୁଣ୍ଡେ ବରଗଛ । ଗଛମୂଳେ କିଛିଦିନ ହେବ ମେଳା ଗହଳି । ଆଗକୁ ରକ୍ତପକ୍ଷ, ଦେବୀପୂଜା ।

ଗାଁ ପଧାନ କହୁଛି ଦେବୀ ଶୂନ୍ୟରୁ ଆବିର୍ଭୂତା ହେଇଛନ୍ତି । କଳା ମଚମଚ ମୁଗୁନି ପଥରର ଚତୁର୍ଭୁଜା କାଳୀମୂର୍ତ୍ତି । ସିନ୍ଦୁର ଆଉ ମନ୍ଦାର ମାଳରେ ମଣ୍ଡି ହେଇଛନ୍ତି । କାଛେଣି କରି ପିନ୍ଧିଛନ୍ତି କଳାଛିଟ । ଲୋକେ କହୁଛନ୍ତି ସେ ଦେବୀ ଡାକିଲେ ଓଳଗୁଛି । ଦେହୁରୀ କହୁଛି ଅଙ୍ଗ ଛୁଇଁ ଦେବାକୁ ଡର ମାଡୁଛି । ମନେହେଉଛି ନିଆଁ ଖଣ୍ଡପରି ତାତିଛି ଦେବୀଙ୍କ ଦିହ ।

କି ସେ ମୁହଁ । ସେ ତରାଟି ଥିବା ଆଖି, ସେ ଲହ ଲହ ଜିଭ ! ସେ କଟାମୁଣ୍ଡ ! ଆଉ ସେ କଟୁରୀ ! ବାବାରେ, ମା' କାଳୀ କରାଳୀ ରକ୍ଷାକର ମା'; ଏ ଅଧମ ଅକ୍ଷମକୁ ରଖିଯା' ତୋ ପାଦତଳେ ।

ଝୁଣା ଧୂପ କୁହୁଳୁଛି । ଚୂଆ ଚନ୍ଦନ ମହକୁଚି – ଘଣ୍ଟ, ଶଙ୍ଖ ମହୁରୀ ବାଜୁଛି –

କିଏ କହୁଥିଲା – ଏ ମହାଷ୍ଟମୀ ଦିନ ବଳିପଡିବ ।

କହୁଥିଲା କିଏ ଜଣେ କୈଳାସ ମହାରଣା ସଙ୍କଟରେ ପଡି ଗଜାମୁଆଁ, ନଡିଆ, ମନ୍ଦାରମାଳ ପଠେଇଚି ।

ଏ ଠାକୁରାଣୀ ଡାକିଲେ ଓଳଗୁଛି । ସମସ୍ତଙ୍କର ଆର୍ତ୍ତି ଦୂରହେବ । ଅବଶ୍ୟ ଦୂରହେବ !

ମେଘ ଘେରିଛି । ବଟଗଛ ସନ୍ଧିରେ ଅନ୍ଧାର ଭରିରହିଛି । ଗୁମ୍ ହେଇଯାଇଛି ଆକାଶ । ବିପନ୍ନ ବୋଧକରୁଛନ୍ତି ଗାଁଲୋକେ । କ'ଣ ହେଇଯିବ ରାତିଟା ଭିତରେ କେଜାଣି ।

କିନ୍ତୁ ଦେହୁରି କହୁଛି କିଛି ଡରିବାର ନାହିଁ । ଏ କାଳରାତ୍ରି ପାରିହେଇଯିବ । ୟାରି ଉପରେ ସବାର ହେଇ ପରା ମା' ଆମ ପାଖକୁ ଆସିଛି ! ଏଇଟା ତା' ବାହନ ! ଆଦେଶ ପାଇଲେ ସେ ବଳେ ଘୁଞ୍ଚିଯିବ ନାଇଁ । ହେଇପାରେ ଦେହୁରି ଠିକ୍ କହୁଛି !



# ଠିଳିଛ ମହାପାତ୍ର

ଠିଳିଛ ମହାପାତ୍ରଙ୍କ ମଥାରେ କୁମ୍ଭ ପରି ଶ୍ରୀମନ୍ତ ଜୁଡ଼ା । ସେଥିରେ ଦରଫୁଟା ଯୋଡ଼ିଏ ଚମ୍ପା । ଦୁଧ ପିଠଉ ପରି ଦେହରେ ଡାଳିମ୍ବ ରଙ୍ଗର ପାଟ ପାଛୋଡ଼ି । ଓସାର ବୁକୁ ଉପରେ ଲମ୍ବମାନ ଦୁଇସୋରା ରୁଦ୍ରାକ୍ଷମାଳ । ଦର୍ପଣ ପରି କପାଳରେ ଚନ୍ଦନ ଟୋପା । ତରବର ହୋଇ ପଶିଯାଉଛନ୍ତି ଶ୍ରୀମନ୍ଦିର ସିଂହଦ୍ୱାର ଭିତରେ ପ୍ରଭୁଙ୍କ ଅଙ୍ଗଲାଗି ସେବକ । ସକାଳ ନୀତି ବଢ଼ିବାକୁ ଆଉରି ଘଡ଼ିଏ ବାକି । ମାଳ ସେବକ ଆଉରି ଧଣ୍ଡା ନେଇ ପହଞ୍ଚି ନାହିଁ । ଉଛୁର ହେଇଯାଉଛି ସେବା । ପହୁଡ଼-ଭଙ୍ଗା କୀର୍ତ୍ତନ । ଜଗମୋହନରୁ ଉଠିନାହାନ୍ତି । ଠିଳିଛ ମହାପାତ୍ରେ ସାତ ପାବଛ ବାଟେ ଚଢ଼ିଗଲାବେଳକୁ ମନରୁ ଶଙ୍କା ଓହ୍ଲେଇ ଦେଲେ – "ମୁଁ ଛାର କିଙ୍କରର ଅପ୍ରାଧ କ୍ଷମା ହୋଇଯାଉ ମଣିମା ! ମୁଁ କି ବୁଝେ ତୋର ଅନନ୍ତ ଗତି । ରତ୍ନପୀଢ଼ା ଉପରୁ ଯାହାକୁ ଯେଭଳି ଆଜ୍ଞା ମିଳିବ ସେଇଭଳି ସିନା ଇନ୍ଦ୍ର କୁବେର ଖଟିବେ । ଶ୍ରୀଅଙ୍ଗ ସେବାକୁ ମୁଁ କାହୁଁ ଭାଜନ ଠାକୁରେ, ମଣିମା ଖଟଣିକୁ ମୁଁ କାହୁଁ ସମର୍ଥ ? ମନହେଲା ଟେକିନେଲୁ । ଏ ଅଧମକୁ କୃତାର୍ଥ କଲୁ । ନହେଲେ କି ଏଭଳି ଭାଗ୍ୟ କାହାକୁ ମିଳେ ?" ଗରୁଡ଼ ପଛରୁ କରଯୋଡ଼ ହୋଇ ଦୁଃଖ ଜଣାଉଥାନ୍ତି – ଠିଳିଛ ମହାପାତ୍ରେ । ମନରେ ବିକଳ୍ପ ଆଉ ନାହିଁ, ଉଦ୍‌ବେଗ ନାହିଁ । ସେ କ'ଣ ବୁଝିବେ ଜଗନ୍ନାଥଙ୍କ ନୀତି ? ଛୋଟ ମୁହଁରେ ବଡ଼କଥା । ଚଉଦ ବ୍ରହ୍ମାଣ୍ଡ ଯା'ର ନିଶ୍ୱାସରେ ଆତଯାତ ସେ କ'ଣ ୟାଙ୍କୁ ଚାହିଁ ବସିଚି ? ତା' କଥା ସେ ନିଜେ ସମ୍ଭାଳିବ । ନ ହେଲେ କି ଏମିତି ବିଶାଳ ଭୂଜ ଲମ୍ବେଇ ତୁଚ୍ଛାକୁ ବସିଛି ? ମହାପାତ୍ରଙ୍କ ଆଖି ଜକେଇ ଗଲା । ନାକପୁଡ଼ା ଜଳିଲା ଲୁହରେ । ସେ ନିଶ୍ଚିନ୍ତ ମନରେ ଆଉଜି ପଡ଼ିଲେ ପ୍ରଭୁର ଅଘଟନ-ଘଟନ-ପଟୀୟସୀ ଇଚ୍ଛା ଉପରେ । ଯାହା ସେ ଚାହିଁବ, ତାକୁ କାହାର ଆୟତ୍ତ ଅଛି ?

ଝାଞ୍ଜ, ଖୋଳ ଟେକି କୀର୍ତ୍ତନିଆ ଉଠିଗଲେ । କାଁ-ଭାଁ ଗଣ୍ଡେ ଲୋକଙ୍କୁ ଛାଡ଼ିଦେଲେ ଗରୁଡ଼ଖମ୍ବଠଉଁ ରତ୍ନବେଦୀ ଯାଏଁ ଏଡେ ବଡ଼ ଶ୍ରୀମନ୍ଦିର ମେଲା । ଉପରେ ବସିଛି ମାଲିକ । ନିରାଭରଣ ଶ୍ରୀଅଙ୍ଗକୁ ମହାପାତ୍ରେ ଚାହିଁପାରୁନାହାନ୍ତି । ମାଳଲାଗି ବାପୁଡ଼ାକୁ ଟିକିଏ ଦକ ଥିଲେ ସିନା ହୁଅନ୍ତା । ତା' ପିଲା ମାଇପଙ୍କ ପାଇଁ ଅନ୍ନବସ୍ତ୍ର ମିଳିଗଲେ ହେଇଗଲା । ବେଳ ସହଳ ନିଜେ ଗଣ୍ଡିଏ ଉତ୍ତମ ପକେଇଦେଇ, ଖରାପିଠିଆ କୁସୁମା ଶିଳ ଠେଇଁ ଝାଙ୍କି ହେବାରେ ହେଳା ନାହିଁ ।

ଏଣେ ଠାକୁରଙ୍କ ନୀତି ହୁଡିଗଲେ କ'ଣ ହେଇଯାଉଚି ? ଦି'ଟା ଫୁଲ ଆଣିଦେଲେ ମାଜଣା ଉତ୍ତାରୁ ଅଙ୍ଗଲାଗି ହୁଅନ୍ତା ! ଚଣ୍ଡାଳ ଏତେବେଳଯାଏ ସାହି ଛାଡିଲା ନାହିଁ । କ'ଣ ଆଉ କରାଯାଏ ? କ'ଣ ଆଉ ତାଙ୍କର ଆୟତ୍ତ । ଏଠି ଏ ଢେଗାଆଖିଆ ଫାତୁଙ୍ଗା ପାଟି ମେଲେଇ ଦେଇ ବସିଚି । ଯାହାକୁ ଦେଖିଲେ ତ ହସ ବୋହିପଡୁଛି । ଏଗୁଡାକ ଉତ୍ପାତ ହେଲେ କିଏ କ'ଣ କରିବ ? ବାଙ୍କାବଟ ଆଡିକି ଗ୍ୱହିଁ ଏମିତି ଭାବନା କରୁଥାନ୍ତି ମହାପାତ୍ରେ । ଶାମାକାଳୀଙ୍କ ଆଡୁ ସେ ସବୁଦିନ ଆସେ ଧଣ୍ଡା ନେଇ । ସେଇଆଡେ ସେ ରହେ । କ'ଣ ହେଲା ସେ ବନମାଳିଆର ? ଭାରି ଛନ୍ ଛନ୍ ହେଉଥାନ୍ତି ମହାପାତ୍ରେ । ଠାକୁର ଶ୍ରୀଅଙ୍ଗରେ ଫୁଲଲାଗିହେଲା ନାହିଁ କେତେ କୃତ୍ୟ ହେଲା ? ବିପତ୍ତି ପଡିଯିବ । ଅଗ୍ନେନକ ଚଡକ ଖସିପଡିବ । କ'ଣ କରି ପାଇଲ କି ତାକୁ ? ଓହ୍ଲେଇ ଯାଉଥିଲେ ବଟମୂଳଯାଏଁ, ପୁଣି କ'ଣ ଭାବି ପାହାଚ ଚଢି ଜଗମୋହନକୁ ପଶିଆସିଲେ । ଖମ୍ବ ଉହାଡରୁ ଝଲମଲ ଆଖି ଯୋଡିକୁ ଗ୍ୱହିଁ କରଯୋଡ ହେଲେ, "ଅଶରଣକୁ ଶରଣ, ବିପଦ ବାରଣ ହରି, ତୋର ଯାହା ଇଚ୍ଛା ।" ତାଙ୍କ ମନକୁ ପାପ ଛୁଇଁଛି । ଯେତେ ବୁଝାଇଲେ ମଧ ଅକାରଣ ଭୟରେ ମଙ୍କ ଥରିଯାଉଛି । ଏଭଳି କେତେ ଅପ୍ରାଧ ଭଲା ନଘଟିଛି । କେତେ ନୀତି ପାଇଁ କେତେ ବିଳମ୍ବ ନହୋଇଛି । ହେଲେ, ଏମିତି ଡର ତାଙ୍କୁ କେବେ ମାଡିନାହିଁ । କ'ଣ ଅଘଟଣ ଘଟିଯିବ କି ? ମହାପାତ୍ରଙ୍କୁ ଛନକା ଘୋଟିଛି, ସେ ଏଣେ ତେଣେ ଗ୍ୱହିଁ ଲାଗିଛନ୍ତି ।

ସିଂହଦ୍ୱାର ଆଡୁ ଗହଳିଟାଏ ଶୁଭିଲା । କ'ଣ ହେଲା ବୋଲି ସେ ସାତ ପାହାଚ ଆଡକୁ ମୁହେଁଇଲା ବେଳକୁ ଛାମୁ ଛାଟିଆ ଆସି ଠିଆହେଇଗଲା । ରଙ୍ଗ ଟହ ଟହ ଆଖି ! ମୋଟା ବଗଡା ନିଶ କାନମୂଳେ ଖୋସା ହେଇଛି । ନାଲି ପାଟ ଜାମା ଫାଟି ପଡୁଛି ପାହାଡ ପରି ଢିମା ବୁକୁ ଉପରୁ । ଗୁଳା ଗୁଳା ଲୁହା ଖମ୍ବ ପରି ଡେଣା ଦିହରେ ବାଜି ଶାଳ ଶିଳ ଛତୁ ହେଇଯିବେ । ମହାପାତ୍ରଙ୍କୁ ଦେଖିବାମାତ୍ରେ କରଯୋଡ ହୋଇ କହିଲା – "ଠାକୁର ଦର୍ଶନକୁ ଖୋଦ୍ ମଣିମା ମହାର୍ଜା ବିଜେ ହେଉଛନ୍ତି ସାଆନ୍ତେ ।"

ତିଳିଛ ମହାପାତ୍ରଙ୍କୁ ଅତର୍ଛ ଲାଗିଲା । ସେଇଟା ଛାଟିଆ ନୁହେଁ ଯମଦୂତ । ଏଥର ଆଉ ଏ ମୁଣ୍ଡ ଖଣ୍ଡ ରହିବ ନାହିଁ । ରଜା ମାଡିଯିବ ପୋଖରୀଆ ଦର୍ଶନକୁ । ସେଇଠି ଦେଖିବ ତା' ଠାକୁର ଲଙ୍ଗଳା ! ପାଖୁଡେ ଛଡା ଫୁଲକୁ ମଧ ସେ ଯୋଗ୍ୟ ହେବନାହିଁ । ସେ କି ଆଉ ତିଳିଛ ମହାପାତ୍ରଙ୍କୁ ଏ ପୁରେ ରଖିବ । "ଆହେ ପ୍ରଭୁ, ବିପଦଭଞ୍ଜନ, ବିପଦତାରଣ, ଜଗନ୍ନାଥ –" କହି ଏକା ନିଶ୍ୱାସକେ କଳା ପାବଚ୍ଛ, ଭିତର ଅର୍ଗଳ ପାରିହୋଇ ସିଂହାସନ ଉପରେ ମୁଣ୍ଡ ଥୋଇ ଦେଲେ ମହାପାତ୍ରେ । "ସରିଗଲା ପ୍ରଭୁ, ରାଜ-କ୍ରୋଧରୁ ମୁକୁଳିବା ନାହିଁ । ଗୋଜା-ହାବୁଡେ ପଡିଲେ ସାତ ଖଣ୍ଡ । ଆଜି କି ବୋଲି ତାକୁ ଭକ୍ତି ଝାଙ୍କିଲା । ମୋତେ ହାଣ ମୁହଁରେ ଦେବାକୁ ଏ ସବୁ ଘଟଣା ।"

ତଳେ ଠିଆହୋଇ ଗ୍ୱହିଁଲେ ବଳିଆର ଭୁଜକୁ – ଡରମାଡିଲା । ଏ ଯଦି ମାରିବ, ତେବେ ରଖିବ କିଏ ? ଗ୍ୱହିଁଲେ ଆଖିକୁ । ମହାଶୂନ୍ୟରେ ଅନନ୍ତ ବ୍ରହ୍ମାଣ୍ଡକୁ କଳିଯାଉଛି ସେ ବର୍ତ୍ତୁଳ ଡୋଳା । ସେ କି ଗ୍ୱହିଁଛି ତିରିଛ ମହାପାତ୍ର ପନ୍ଦର ଗଣ୍ଡା ମଲେ କେତେ ଗଲେ କେତେ । ଗ୍ୱହିଁଲେ ନାଲି

ଜର ଜର ଓଠକୁ । ହସରେ ଫାଟିପଡୁଛି ଠାକୁର । ତାଙ୍କ ଅତର୍କ୍ଷାପଣକୁ ହସୁଛି, ଅବୁଝାପଣକୁ ହସୁଛି । କିରେ, ତୋର କିଏ କ'ଣ କରିପାରିବ ? ମୋ ଶରଣରେ ଥାଉ ଥାଉ କୋଉ ରଜା ତୋର କ'ଣ ବିଗାଡିବ ?

ଦମ୍ଭ ଗଡିଆସିଲା ମହାପାତ୍ରଙ୍କ ଦେହକୁ, ମନକୁ, ବୁକୁ ଭିତରକୁ । ସେ ଚାରିଆଡକୁ ଚାହିଁଲେ । ପ୍ରଭୁର ଛଡାଫୁଲ ତଳେ ପଡିଥିବ, ସେଥିରୁ ଦି'ଟା ହାତରେ ଧରି ରତ୍ନସିଂହାସନ ଉପରେ ଠିଆ ରହିଯିବେ । ଗଜପତି ହାତ ବଢେଇଦେଲେ ତାକୁ ଥୋଇଦେବେ ତା' ଆଞ୍ଜୁଳାରେ । ...ସର୍ବନାଶ ! ଏତେ ଟିକେ ବୋଲି ଛଡାଫୁଲ କୋଉଠି ନାହିଁ । ସବୁ ପୋଛିପାଛି ସଫା କରିନେଇଛି ! କ'ଣ କରିବେ ତିଳିଛ ମହାପାତ୍ରେ ? ସାତ ପାହାଚ ଠେଇଁ ରଜା ପହଞ୍ଚିଗଲାଣି । ଗରୁଡ ଖମ୍ବ ଉପରେ ମୁଣ୍ଡ ଲଗେଇ ଦେଇ ସିଧା ମାଡି ଆସିବ । ଆଉ ବେଳ କାହିଁ ? ପ୍ରାଣ ବିକଳରେ ସେ ଚଢିଗଲେ ରତ୍ନ-ସିଂହାସନ ଉପରକୁ । ପ୍ରଭୁ ଭୁଜତଳେ ଶରଣ ପଶିଯିବେ । ବଡ ବାଡ ଖମ୍ବ ପଛପଟେ ଲୁଚିଯିବେ ।

ତାଙ୍କ କପାଳରୁ ଝାଳ ଛିଡିପଡୁଥାଏ । ତାଙ୍କୁ ଟାହୁଲିଆ ଢଙ୍ଗରେ କିଏ ଫୁସ୍ ଫୁସ୍ କରି କହିଲା ପରି ଲାଗିଲା – "ତୋ' ମୁଣ୍ଡରୁ ଚମ୍ପାଫୁଲ କାଢି ରଜାକୁ ଦେଇଦେ ।" ତାଙ୍କ ମନରେ ଭୂତ ପଶି ଏଇଆ କରୁଛି । ମୁଣ୍ଡ ଯାହା ଟିକିଏ ବଙ୍କାରେ ଛିଣ୍ଡିଥାନ୍ତା, ଏମିତି କଲେ ସଳଖେ ଛିଣ୍ଡିଯିବ । କେଡେ ଅପ୍ରାଧ କଥା ! ପ୍ରଭୁ ପ୍ରସାଦରେ ଛଳ ଆଚରଣ କଲେ ଆଉ କି ରକ୍ଷାଅଛି ? ପୁଣି ଶୁଭିଲା ପରି ଲାଗିଲା, ଆଉ ବେଳ ନାହିଁ ବେଗି ବେଗି । ଠକ୍ ଠକ୍ ଥରିଲା ହାତରେ ସେ ପ୍ରଭୁର ଭୁଜକୁ ଧରିପକେଇଲେ, ବାଁ ହାତରେ ନିଜ ମୁଣ୍ଡରୁ ଚମ୍ପା ଯୋଡିକ ଭିଡି ଆଣିଲା ବେଳକୁ ରଜା କଳାପାବଚ୍ଛ ପାରି ହେଇ ଆସୁଛି । ହାତଟି ବଳେ ଚାଲିଗଲା ପ୍ରଭୁ ମୁଣ୍ଡ ଉପରକୁ । ସେ ଭୁଲିଗଲେ ଯେ ତାଙ୍କ ଉଗରା ଫୁଲ ନେଇ ସେ ଠାକୁରଙ୍କୁ ମଣ୍ଡିଦେଲେ । ତାଙ୍କୁ ସପ୍ନରେ ପହଁରିଲା ପରି ଅନୁଭବ ହେଉଥାଏ । କେତେବେଳେ ରଜା ଆସି ମୁଣ୍ଡ ଲଗେଇ ଠିଆହେଲା, ରଞ୍ଚିଯାଇ ହାତ ପତେଇଲା, ତା' ଆଞ୍ଜୁଳାରେ କେତେବେଳେ ସେ ପ୍ରଭୁର ଛଡା ଫୁଲ ଥୋଇଦେଲେ ଏବଂ ସେ ପଛେଇ ପଛେଇ ଆଡ ହେଇଗଲା ମହାପାତ୍ରେ ସଂପୂର୍ଣ୍ଣ ଚେତା ରହି ଜାଣି ପାରିଲେ ନାହିଁ । ତାଙ୍କର ଦେହ ମୁଣ୍ଡ ଥୟ ହେଲା । ସେ ଗାମୁଛାରେ ଦେହମୁହଁ ପୋଛିଲେ । ଚାହିଁଲେ ଭୁଜ ଉପରୁ ଶ୍ରୀମୁଖକୁ । ମହୁ ଝରିଲାପରି ଓଠରୁ ଥୋପି ପଡୁଛି ହସ । ଆଖିରେ ତା' ଢଙ୍ଗରେ ସେ ତେରେଛେଇ ଚାହିଁ ହସୁଛି । ତାଙ୍କ ଆତ୍ମା ଉପରେ ଅମୃତ ବର୍ଷିଗଲା ! ଅପ୍ରାଧ ଭାବ ଆଉ କୁହୁଳିଲା ନାହିଁ ! ପ୍ରଭୁ କହିଲା, ସେ ଦେଲେ ! – ସେଥିରେ ଦୋଷ କୋଉଠି ?

ଲସରପସର ହେଇ ମାଳ ଲାଗି ସେବକ ଆସି ପହଞ୍ଚିଲା । ତାକୁ ଚାହିଁଲେ ମହାପାତ୍ରେ । ଠାକୁରଙ୍କୁ ଚାହିଁଲେ । ଅଳ୍ପ ହସିଲେ । ଦଣ୍ଡେ ଆଗରୁ ଆସିଥିଲେ ଏମନ୍ତ ହିନସ୍ତାରୁ ତ ତିଳିଛ ମହାପାତ୍ର ବଞ୍ଚିଯାଇଥାନ୍ତା । ହଉ, ହଟିଆ ଠାକୁର, ହଟ ଲଗେଇବାକୁ ଚାହିଁଲୁ ଲଗେଇଦେଲୁ ।

ପରମ ଯତ୍ନରେ ମହାପାତ୍ରେ ମଣ୍ଡିଦେଲେ ବିପୁଳ ଭୁଜ ଉପରେ ଚମ୍ପା ଆଉ ତୁଳସୀର

କେରି କେରି ମାଳ । ଚୂଳରେ ଜାଣି ଶୁଣି ଖଂଜିଦେଲେ ଖାଲି ଚମ୍ପା ଆଉଚମ୍ପା । ଭିତର ଅର୍ଗଳ ଠଉଁ ଗରୁଡ ଖମ୍ବ ଯାଏ କେତେ ଭକ୍ତ ଆସି କୁଆଡୁ ଗୁଣ୍ଡ ହେଇ ଗହଁଥାନ୍ତି, ଠାକୁର ସେ ଦିନ ଦିଶୁଥାନ୍ତି ନାହିଁ ନ ଥିବା ସୁନ୍ଦର ।

ମହାପାତ୍ରେ ଓହ୍ଲେଇଲେ ପିଢା ଉପରୁ । ଆଡ ଆଡ ହେଇ ଚାଲିଗଲେ ଗରୁଡ ପଛକୁ । ଚାହିଁଦେଲାରୁ ଆଖିରୁ ଧାର ଧାର ଲୁହ ନିଗିଡଗଲା । ଏଭଳି ମନୋହର ମଣ୍ଡଣୀ, ଏମିତି ଚୂଳ, ଏମିତି ମାଳ, ତାଙ୍କ ଦିହକରେ ସେ କେବେ ଦେଖି ନ ଥିଲେ । ସାଷ୍ଟାଙ୍ଗ ପ୍ରଣିପାତ ହେଇ ସେ ସେଇଠି ପଡିରହିଲେ ଅନେକ ବେଳଯାଏ ।

ସେ ଚାଲ ଚାଲ ହେଇ ଆନନ୍ଦବଜାର ଆଡେ ବାହାରିଲେ । ତାଙ୍କୁ ବେଢିଗଲେ ଯାତ୍ରୀ । କିଏ ପାଦଛୁଇଁଲା କିଏ ମୁଣ୍ଡିଆ ମାଇଲା । କିଏ ପାଦ ଉପରେ ଥୋଇଲା ଟଙ୍କା । ମହାପାତ୍ରେ ଶୋଲ ପରି ଉଶ୍ୱାସ ବୋଧକରୁଥାନ୍ତି । ସବୁ ଦେଖୁଥାନ୍ତି । ଶୁଣୁଥାନ୍ତି, ଶୁଣୁ ନ ଥାନ୍ତି । କେମିତି ଟିକିଏ ବିଭୋର ବିଭୋର ଭାବ । ଏତିକିବେଳେ ଦେଖିଲେ ଯେ କଳା ଘୋଡାଟାଏ ପରି ଖେପାକେ ପାହାଚେ ଧାଇଁ ଆସୁଛି ଛାଟିଆ । ଆଗ ଅପେକ୍ଷା ବେଶି ବାଘୁଆ ଦିଶୁଛି ତା'ର ମୁହଁ । ମହାପାତ୍ରଙ୍କୁ ଠିଆ ଭଂଙ୍ଗିରେ କେମିତି ଟିକିଏ ଓଳଗି ଠାରିଦେଇ ଗର୍ଜିଲା ପରି କହିଲା – "ହାଦେ, ମଣିମା ଗଜପତି ମହାର୍ଜାଙ୍କ ଶ୍ରୀଛାମୁରେ ଆପଣଙ୍କୁ ବିଜୁଳୀ ମାର୍ଗେ ପହଞ୍ଚେଇବାକୁ, ସାଙ୍ଗରେ କଢେଇ ନେବାକୁ ଆଜ୍ଞା ଘେନି ଆମେ ଆସିଛୁ । ଆପଣ ଆମ ସହିତ ଏଇମାତ୍ର ଚାଲିବା ହେବେ ।"

ତିଳିଛ ମହାପାତ୍ରେ କଥାକୁ କଥା ଯୋଡି ପାରିଲେ ନାହିଁ ପଛକୁ ଫେରିଲେ ନାହିଁ । ଦୋସତା ଖଣ୍ଡି ଜାକିଜୁକି ଘୋଡେଇ ହେଇ ପାହାଚ ପାହାଚ ହେଇ ଖସିଗଲେ ବଡଦାଣ୍ଡକୁ । ଓହ୍ଲେଇଗଲେ ନୀଳାଚଳରୁ ରଜାନଅର ଆଡେ । ତାଙ୍କର ମନ୍ଥର ଚାଲି ସାଙ୍ଗରେ ପାହୁଣ୍ଡ ପକେଇ ବାଗ ଦଉଡି ଭିଡା ହେଇଥିବା ବଳଶାଳୀ ଘୋଡା ପରି ରଜା ପିଆଦା କୁନ୍ଥଉଥାଏ । ଛାଡିଦେଲେ ଆଖି ପିଛୁଳାକେ ଇନ୍ଦ୍ରଲୋକକୁ ମାଡି ଯାଆନ୍ତା । ହୁକ ପାଇଲେ ମହାପାତ୍ରଙ୍କୁ ଗୋଟେଇନେଇ ଧାଇଁଯାଆନ୍ତା ।

ରଜା ନଅରରେ କାନ୍ଥ ଲଗାତ୍ ଛାନିଆ ଜଣାଗଲା । ସିଂହଦ୍ୱାର ଜଗୁଆଳିମାନଙ୍କ ମୁହଁ ଭୟରେ ଶେତାପଡିଯାଇଥିଲା । ବାହାର ପିଣ୍ଡା ଉପରେ ବାଘ ପରି ଗଜପତି ପଇଁତରା କାଟୁଥାଏ । ତିଳିଛ ମହାପାତ୍ରଙ୍କୁ ଦେଖିବା ମାତ୍ରେ ତାଙ୍କୁ ଆଉ ତର ସହିଲା ନାହିଁ ।

ମେଘ ରଡିଲା ପରି ଶୁଭିଲା – "କିହେ ! ମହାପାତ୍ରେ, କେତେ ସାହାସ ତୁମର, ନାଗ ସାପ ଲାଙ୍ଗୁଡରେ ହାତ ମାରିଦେଲ । ଆମ୍ଭେ ବିଶ୍ୱାସରେ ଜଗନ୍ନାଥଙ୍କ ଆଗରେ ଆଞ୍ଜୁଳା ପତେଇ ଦେଲୁ ବୋଲି ତୁମର ଏତିକି ବହପ, ନିଜ ମୁଣ୍ଡରୁ ଫୁଲଟାଏ ଫୋପାଡି ଦେଲ ।"

ମହାପାତ୍ରଙ୍କ ବୁକୁ ଭିତରୁ ସବୁ ରକ୍ତ ନିଗିଡିଗଲା । ଭୂଇଁ ଉଭେଇ ଗଲା ପାଦ ତଳକୁ । ପାଟିରେ କଥା ନାହିଁ । ଆଖିରେ ପଲକ ନାହିଁ । ଆଗରେ ଲହ ଲହ କ୍ରୋଧରେ ଜଳୁଛି ଗଜପତି ସମ୍ରାଟ । ପଛରେ କଟୁଆଳ । ଏପାଖେ ଭାଲା । ସେପାଖେ ଖଣ୍ଡା ! "ହରି ହରି – ତ୍ରାହି ତ୍ରାହି –

ଜଗନ୍ନାଥ" ଡାକିଲା ମହାପାତ୍ରଙ୍କ ଅନ୍ତରାତ୍ମା ।

"ଠାକୁର ପ୍ରସାଦକୁ ମୁଣ୍ଡରେ ବୋହି ଆସି ଉଆସରେ ଦେଖିଲା ବେଳକୁ କ'ଣ ନା' ଚମ୍ପାଫୁଲ ଦେହରେ ବାଳ ଗୁଡେଇ ହେଇଚି । ଠାକୁର ଫୁଲରେ ବାଳ ଆସିଲା କାହୁଁ?" ଗର୍ଜିଲା ଗଜପତି, "କେବଠୁଁ ଜଗନ୍ନାଥଙ୍କ ମୁଣ୍ଡରେ ବାଳ ଉଠିଲାଣି ହେ ତିଳିଛ ମହାପାତ୍ରେ ?"

"ଅଛି ମଣିମା; ଠାକରଙ୍କ ମୁଣ୍ଡରେ ବାଳ ଅଛି !" ନିଜ ତୁଣ୍ଡକୁ ନିଜେ ବିଶ୍ୱାସ କରି ପାରିଲେ ନାହିଁ ମହାପାତ୍ରେ । କ'ଣ ସେ କହିପକେଇଲେ ସତେ ? କେମିତି କହିଲେ ? ଗଜପତିର ଆଖି ତରାଟି ହେଇ ଖସିପଡିବ ସତେ ବା ! "ହଉ ମହାପାତ୍ରେ, ତୁମ କଥାକୁ ଆମକଥା ! କାଲି ଅବକାଶ ଦର୍ଶନ ବେଳେ ଆମ୍ଭେ ଠାକୁରଙ୍କ କେଶ ନ ଦେଖିଲେ ତୁମ ଅବସ୍ଥା ଗାଆଣି ଗାଇବ ନାହିଁ – ଯାଅ ! ମନେରଖ ପ୍ରତାପରୁଦ୍ର ସାଙ୍ଗରେ ପିଲାଖେଳ ଚଳିବ ନାହିଁ ।"

"କେଡ ହୁବ ! କେତେ ସାହସ ! କେତେ ମିଛ ।" ମହାପାତ୍ରଙ୍କୁ ଏଭଳି ଶବ୍ଦର ହାବୁକା ପିଆଦାମାନେ ମାରି ବଡଦାଣ୍ଡରେ ଛାଡିଦେଲେ । ସେଇଠି ଛତ୍ରଚିରାଳକୁ ଚାହିଁଦେଇ ମୁହଁ ଘୋଡେଇ କାନ୍ଦିପକେଇଲେ ମହାପାତ୍ରେ । "ଏତିକି କଦର୍ଥନା କପାଳରେ ଥିଲା ! ଯାହା ସେବାରେ ଖଟିଥିଲି ତା'ରି ନାଆଁରେ ମିଛ କହି ଦ୍ରୋହ ଆଚରଣ କରି ମଲି । ଏ ଜୀବନ ଆଉ ରହିବା ବୃଥା । ଗ୍ଲାନି ପରାଭବ କ୍ଷୋଭରେ ତିଳିଛ ମହାପାତ୍ରେ ବଡଦାଣ୍ଡରେ ମୁଣ୍ଡଟେକି ଚାଲିପାରୁନାହାନ୍ତି । ସିଂହଦ୍ୱାର ପାଖରେ ପହଞ୍ଚି ଭିତରକୁ ପଶିବାକୁ ପାଦ ଘୁଞ୍ଚିଲା ନାହିଁ । ଆଉ କ'ଣ ଅଛି ସେବାର ମୂଲ୍ୟ ? ଲାଜରେ ସେ ମୁହଁ ଟେକି ଚାହିଁଲେ ନାହିଁ । ବାଟଭାଙ୍ଗି, ଖରା ଲଇଁ ଆସିଲା ବେଳକୁ ବସାରେ ପହଞ୍ଚିଲେ । କାହାକୁ କିଛି କହିଲେ ନାହିଁ । ଦେହ ଅସୁଖ ଅଛି ବୋଲି ପିଣ୍ଡାରେ କାନିପାରି ଶୋଇଗଲେ । ରାତି ପାହିଲେ ତିଳିଛ ମହାପାତ୍ର ଆଉ ନଥିବ । ସରିଯିବ ତା'ର ବ୍ୟର୍ଥ ଜୀବନ – ଦି'କଡାର ହାନିମାନ ଜୀବନ ।"

ସଞ୍ଜ ହେଲା । ଗୋଡ ହାତ ଧୋଇ ଦିଅଁ ଘରେ ମୁଣ୍ଡିଆଟିଏ ମାରି ଉଠି ଆସିଲେ । ସେଇ ବାହାର ପିଣ୍ଡାଟିରେ ମୁଣ୍ଡରେ ହାତରଖି ବସି ରହିଲେ ଅନ୍ଧାରରେ । ଭାବିଲେ, "ଭଲହେଲା, ଯାହାହେଲା । ଅଧମମାନଙ୍କର ଏଭଳି ବିନାଶ ନହେଲେ ତାଙ୍କ ହୁବ ବଢିଯିବ ନାଇଁ ? ଛୋଟ ଲୋକଙ୍କୁ ବଡ ଅଧିକାର ଦେଲେ ସେମାନେ ଏମିତି ମୁଣ୍ଡରେ ଚଢନ୍ତି । ନିଜ ମୁଣ୍ଡର ଫୁଲକୁ ଠାକୁର ପ୍ରସାଦ କରିବାରେ ଯାହା ଅପରାଧ ହୋଇଥିଲା ଏମିତି ଧରାପଡି ନଥିଲେ ଖସିଯାଇଥାନ୍ତା । ଏବେ ଠାକୁର ମୁଣ୍ଡରେ ବାଳ ଅଛି ବୋଲି ଡାହାମିଛ କହିବାରେ ମରଣ ଓଷୁଅ ବେକରେ ବନ୍ଧାହେଲା । ଏଥିରୁ ତ୍ରାଣ କାହିଁ ? ରଜା ଆଗରେ ଅପଦସ୍ଥ ହବା ଆଗରୁ ବିଷଖାଇ ପ୍ରାଣ ହାରିଦେବା ଭଲ ।"

ବହୁ ଦୁଷ୍ଚିନ୍ତାରେ ମୁଣ୍ଡ ବୋଝପରି ଭାରିଲାଗିଲା । ଆଖିବୁଜି ବସିଥିଲେ ମହାପାତ୍ରେ, ସେମିତି ଶୋଉ ଶୋଉ ଶୋଇଗଲେ । ଅନ୍ଧାର ଘୋଡେଇ ହେଇଗଲା ଭିତରେ ବାହାରେ । ଢଉଁକିନା ଲାଗିଲା ମହାପାତ୍ରଙ୍କୁ । ହାଲୋଳମୟ ହେଇଗଲା ତାଙ୍କ କନ୍ଦରା । ସେଇଠି ମୁହୂର୍ତ୍ତେ ଦାଉ ଦାଉ

ହୋଇ ଦିଶିଗଲେ ଚକାଡୋଳା । ସେମିତି ନିଦରେ କରଯୋଡ ହୋଇ କାନ୍ଦିଲେ ମହାପାତ୍ରେ । ଲାଜରେ ସଢିଗଲେ । ତାଙ୍କୁ ଶୁଭିଲା ଠାକୁରେ ହସୁଚନ୍ତି – ଅତି ମଧୁରିଆ ହସ । କହୁଛନ୍ତି, "କିହୋ ତିଳିଛ ମହାପାତ୍ର, ତତେ କିଏ କହିଲା ଆମ୍ଭେ ଲଣ୍ଡା ବୋଲି ? ରଜା ଆମ୍ଭର କେଶ ଦେଖିବ କହୁଛି ? ସେଥିକୁ ତୁ ଚିନ୍ତା କାହିଁକି କରୁଛୁ ? ସେ ଯେଭଳି ଚାହୁଁଛି ସେଭଳି ଦେଖିବ । ତୁ ଭୋକ ଉପାସରେ ଶୋଇଲେ ଆମ୍ଭର ମଣୋହି ହୋଇପାରୁନାହିଁ ।" ପୁଣି ମଧୁର ହସ ହସି ଆଡହେଇଗଲେ ।

ଚମକିଉଠିଲେ ମହାପାତ୍ରେ । ସତପରି ବୋଧହେଲା ସ୍ୱପ୍ନ । ପିଣ୍ଡାର ଯେଉଁ ଦାଢରେ ଠାକୁର ଉଭାହେଇଥିଲେ ତାକୁ ବାରମ୍ବାର ସାଉଁଟି ଆଣି ମଥାରେ ବୋଳିଲେ । ଦେହ କମ୍ପିଲା । ରୋମଟାଙ୍କୁରିଲା । ସେ ଭାବ ବିହ୍ୱଳ ହୋଇ ହାଉଁ ହାଉଁ କାନ୍ଦିଲେ । "ଆହା, ମୋ ସହଣୀକ ଠାକୁର, କି ଛାର ସେବାକାରୀ ପାଇଁ କେତେ ପ୍ରଭୁପଣ ? ମୁଁ ପରା କିଙ୍କର ପାଇଁ କେତେ ମମତା, କେତେ ସ୍ନେହ ! ମୁଁ ନଖାଇଲେ ମୋ ପ୍ରଭୁର ମଣୋହି ହଉନାହିଁ !" ସେଇଠୁ ଉଠି ଛଳଛଳ ଆଖିରେ ଲୁଣିଆ ଲୁହମିଶା ଅନ୍ନ କିଛି ସେବା କଲେ ମହାପାତ୍ରେ । ସାଗରାତି ଅଶ୍ରୁ ପୁଲକରେ ବିତିଗଲା ।

ସକାଳ ପାହୁ ପାହୁ ତରବରରେ ଗାଧୁଆ ସାରି ତିଳିଛ ମହାପାତ୍ରେ ସିଂହଦ୍ୱାରେ ପହଞ୍ଚିଲା ବେଳକୁ ରଜା ନଅରରେ କାହାଳିଆ ଛାମୁଛଡ ଫୁଙ୍କୁଛି । ରଜାକୁ ମଧ ରାତିଯାକ ନିଦ ନାହିଁ । ମୁଣ୍ଡିଆମାରି, ମହାପାତ୍ରେ କରଯୋଡି ଠିଆ ହେଇଛନ୍ତି କି ନାହିଁ ଗଜପତି ଆସି ପହଞ୍ଚିଗଲା । ଚାହିଁଲା କଟମଟ ମହାପାତ୍ରଙ୍କୁ । ଗାଧୋଇପାଧୋଇ ପ୍ରଭୁ ସେବକ ଝଟକୁଥାନ୍ତି । ମୁହଁରେ ଅଖଣ୍ଡ ବିଶ୍ୱାସର ମୃଦୁ ମଧୁର ହସ । ତାଙ୍କ ଟୁମା ଟୁମା ଆଖି, ଦାଉ ଦାଉ ମୁହଁ, ରଜା ଦେଖି ଚମକିପଡିଲା । ସ୍ୱର ବଳେ ନରମି ଗଲା "ଚାଲ ମହାପାତ୍ରେ, ଠାକୁରଙ୍କୁ ଦର୍ଶନ କରାଅ ।"

କୋଲପ ଫିଟିଲା । ରାଜା ଆଦେଶରେ ଦିହୁଡି ଲାଗିଲା । ଗମ୍ଭିରାକୁ ବିଜେ କଲେ ଗଜପତି ପରମ ସନ୍ଦେହରେ ଏବଂ ତିଳିଛ ମହାପାତ୍ରେ ଗଭୀର ବିଶ୍ୱାସରେ । ଗଜପତିର ବୁକୁ ଉଦ୍‌ବେଗରେ ଧଡଧଡ ପଡୁଥାଏ ଉଠୁଥାଏ । ମହାପାତ୍ରେ କିନ୍ତୁ ନିଶ୍ଚଳ । କୌଣସି କେନ୍ଦ୍ରରେ ଟିକିଏ ହେଲେ କମ୍ପନ ନାହିଁ । ଦିହୁଡି ଟେକାହେଲା । ଗଜପତି ଠାକୁରଙ୍କ ପଛପଟେ ରହି ଚାହିଁଲା । ଆଖି ମିଟିକାମାରି ପୁଣି ଚାହିଁଲା । କଳା ଭଅଁରଠୁ ବଳି ମହମହ ବାସୁଥିବା ଗୋଛାଏ କେଶ ପ୍ରଭୁଙ୍କର କଟି ଦେଶ ପର୍ଯ୍ୟନ୍ତ ଲମ୍ବିଥିବାର ଦେଖି ଗଜପତି ସ୍ଥାଣୁପରି ଘଡିଏ ଠିଆରହିଗଲା ! ମହାପାତ୍ରେ ଥରେ ଚାହିଁଦେଇ ଆଖି ବୁଜିଦେଲେ । ହୃଦୟର ଆବେଗ, କୃତଜ୍ଞତା, ଆନନ୍ଦ ଦର ଦର ହେଇ ବୋହିଗଲା । ସେ ଆଉଜିଗଲେ ବାଡ ଉପରକୁ । ମାନଉଦ୍ଧାରଣ ରୂପ ସଚକ୍ଷୁରେ ଦେଖି ତାଙ୍କ ପ୍ରାଣ ପୁଲକି ଉଠୁଥାଏ । ଉଲୁସି ଉଠୁଥାଏ ହିଆ ।

ଗଜପତି ପୁଣି କେମିତି କାଠେଇ ଗଲା ଏଇଟା ଜଉ କରାଳରେ ଖଞ୍ଜା ବାଳ ନୁହେଁ ତ ? ହାତ ବଢେଇଲା ପରୀକ୍ଷା କରିବାକୁ ଅବିଶ୍ୱାସୀ ରଜା । ଅଧମ, ଝିଙ୍କି ଦେବ କି ଆଉ !

"ଆହା, ଆହା" – କହି ଚିତ୍କାର କରିଉଠିଲେ ତିଳିଛ ମହାପାତ୍ରେ । ପୁଞ୍ଜିଏ କେଶ ଉପାଡି

ଆଣି ହାତରେ ଧରି କାଠପରି ଠିଆ ହେଇଗଲା ଗଜପତି । ଥରିଲା ଠକ ଠକ ହେଇ । ଆଖିରେ ମଟକା ନ ପକେଇ ଚାହିଁରହିଲା ଶ୍ରୀମୁଖକୁ । ଚିତା ପାଖରୁ ଧାରେ ରକ୍ତ ବୋହିଆସୁଛି କପାଳ ପାରିହେଇ ଚକାଡୋଳା ଉପରକୁ ।

"କି କଲୁରେ ଅଧମ – କହି ହାଉଳିଖାଇ କାନ୍ଦିପକାଇଲେ ମହାପାତ୍ରେ । ଗଭୀର ଯନ୍ତ୍ରଣାରେ, ନିର୍ବାକ୍ ଗଜପତି ଠିଆରହିଲା । ହାତ ମନ୍ଥି, ବେକ ନୁଆଁଇ ଠକ୍ ଠକ୍ ଥରୁଥିବା ଦୋଷିଟିଏ ।"

"ଅପ୍ରାଧ କଲି ମଣିମା । ଅଜ୍ଞାନରେ, ଦର୍ପରେ ଦ୍ରୋହ ଆଚରିଲି ।" ତଳକୁ ମୁହଁ ପୋତି ମନକୁମନ ସକସକ ହେଉଥାନ୍ତି ପ୍ରତାପରୁଦ୍ର । ଅନୁତାପରେ ଛିଣ୍ଡିପଡୁଥାନ୍ତି ଖଣ୍ଡ ଖଣ୍ଡ ହୋଇ । ଠାକୁର ମଥାରେ ରକ୍ତ ଦେଖି ତିଳିଛ ମହାପାତ୍ରଙ୍କୁ ଦଶଦିଗ ଅନ୍ଧାର ଦିଶିଲା । ସେଇଠି ନିଜ ବୁକୁ ବିଦାରିଦେଇ ଲୋଟିପଡିବାକୁ ସେ ବିକଳ ହେଉଥାନ୍ତି । "ମୋ ଛାର ଅଧୀନ ପାଇଁ କ'ଣ ନ ହେଲା ଆଜି ।"

ଅଧା ହାଣଖିଆ ମୃଗ ଶିଶୁ ପରି ଛଟପଟ ହେଉଥାନ୍ତି ମହାପାତ୍ରେ ।

କେତେବେଳକେ ଅବସ୍ଥା ସମ୍ଭଲା ପଡିଲା । ଗଜପତି ମୁହଁ ଟେକି ଚାହିଁଲା ଶ୍ରୀମୁଖକୁ । ରକ୍ତର ଧାର ଆଉ ଦିଶିଲା ନାହିଁ । ବୁଲି ଚାହିଁଲା । କଳା ଭଅଁର ପରି ସେ କେଶଗୁଚ୍ଛ ଆଉ ଦିଶିଲାନାହିଁ । ସେ ଗଭୀର ଆଶ୍ୱସ୍ତି, ଆନନ୍ଦ ଏବଂ କୃତଜ୍ଞତାରେ ଆଣ୍ଠୁ ମାଡି ମୁଣ୍ଡ ଲଗେଇଲା ରତ୍ନସିଂହାସନରେ । ମହାପାତ୍ରେ ଚାହିଁଲେ । ଝଲମଲ, ନିର୍ମଳ, ଶ୍ରୀମୁଖରେ ମୃଦୁମୃଦୁ ହସ । ରକ୍ତର ଚିହ୍ନ ନାହିଁ । ବୋଝ ଓହ୍ଲେଇଗଲା ବୁକୁ ଉପରୁ । ସେ ବାହୁ ଟୋଳି ଉନ୍ମତ୍ତ ହୋଇ ନାଚିଉଠିଲେ । ଜାଣିପାରିଲେ ନାହିଁ କେତେବେଳେ ଗଜପତି ତାଙ୍କ ଆଗରେ କରଯୋଡ ହୋଇ ଠିଆହୋଇଛି ।

ପୋଖରୀଆ ଭିତରୁ ଉଠି ଆସିଲେ ଉଭୟେ ଜଗମୋହନକୁ । ଏ କ'ଣ – ମହାପାତ୍ରଙ୍କ ଦର୍ପଣ ପରି ପ୍ରଶସ୍ତ କପାଳ ଉପର ଦେଇ ଝରିଆସିଛି ଧାରେ ରକ୍ତ । ଗୋଟାଏ ମୁହୂର୍ତ୍ତରେ ତାଙ୍କୁ ଦିଶିଗଲା ଭକ୍ତ-ଭଗବାନଙ୍କର ଅଭେଦ ରୂପ । ସେ ମହାପାତ୍ରଙ୍କ ପାଦ ଧରି ପଡିଗଲେ । ମହାପାତ୍ରଙ୍କୁ ସବୁ ଭେଳିକି ପରି ଲାଗୁଥାଏ । ଏଇ କ'ଣ ସେଇ ଗଜପତି ଯେ କାଲି ଗର୍ଜୁଥିଲା ? ଏ କ'ଣ ସେଇ ତିଳିଛ ମହାପାତ୍ର ଯେ ସଢି ଯାଉଥିଲା ଗ୍ଲାନି, ଅପରାଧ, ମିଥ୍ୟାରେ ! ଚାହିଁଲେ ରତ୍ନ ସିଂହାସନ ଉପରେ ମାନଉଦ୍ଧାରଣ ଭକ୍ତଜନବାନ୍ଧବ ଶରଣସୋଦରଙ୍କୁ । ଭାବ ପୁଲକରେ ଦେହ କମ୍ପିଲା । ତାଙ୍କୁ ମନ ଭିତରେ ଶୁଭିଲା – "ମୋତେ ଆଉଜି ଜାଣିଲେ ମୁଁ ସମ୍ଭାଳିବାକୁ ସମର୍ଥ । ମୋ ସେବକର ମାନ ରକ୍ଷା ପାଇଁ ମୁଁ ପଣ କରିଛି । ତାକୁ ଆଢୁଆଳ କରିବାକୁ ମୋ ଚକ୍ର, ତା'ର କୀର୍ତ୍ତି ଉଡେଇବା ପାଇଁ ମୋ ବାନା । ମୁଁ ଗୋଟିପଣେ, ତା'ରି ତା'ରି !"

ଅବକାଶ ପାଇଁ ମୃଦଙ୍ଗ କାହାଳୀ ଖୋଳ କରତାଳର ତୁମୁଳ କୀର୍ତ୍ତନରେ ମହାପାତ୍ରଙ୍କ ଆଖି ଘୋଟେଇ ହୋଇ ଆସିଲା ।



## ଦୀନବନ୍ଧୁ ଦାସ

ସେଦିନ ଦାସଙ୍କ ଘରେ ବିପତ୍ତି କହିଲେ ନ ସରେ । ଏଡେ ଗୁଣବନ୍ତ ପୁଅ – ଜିଅନ୍ତେ ପୋଷିଥାନ୍ତା, ମରନ୍ତେ ପାଣିଦେଇଥାନ୍ତା । କ'ଣ ନା, ଠୋ କିନା ମରିଗଲା ! ତାକୁ ସାପ ଦଂଶିଦେଲା । ଘରେ ଦିହୁଡି ଜଳିଲା ପରି ଭୁଆଷୁଣୀ ବୋହୂ । ସଂସାର କ'ଣ ଜାଣିବା ଆଗରୁ ତା' ମୁଣ୍ଡରୁ ସିନ୍ଦୂର ଲିଭିଗଲା । ଗର୍ଭଧାରଣୀ ମା' ଅନେଇଥିଲା ବଡ ପୁଅ ପିଣ୍ଡକୁ କାରଣ ହେବ । ସାନପୁଅ ଆସି ଭେଣ୍ଡାହେଲାଣି । ଭାଇକୁ ନଦେଖିଲେ ପାଟିରେ ପାଣି ଦେବନାହିଁ । ଅଂଧାର ରାତିରେ ବାଘ ହାବୁଡିଗଲା ପରି ଦୀନବନ୍ଧୁ ଦାସ ତାଟକା ହେଇଗଲେ । ତାଙ୍କ ଜ୍ଞାନ ହଜିଗଲା । ଦରିଦ୍ର ଜୀବନରେ କେତେ କଷ୍ଟ ପାରି ନ ହେଇଛି ତାଙ୍କ ଦିହକରେ ! ହେଲେ କଷିଲା ଠେଇଁ କ'ଣ କେବେ ହେଲେ ଦୟା ନାହିଁ ? ଏଡେ ବଡ ବିପତ୍ତି ପୁଣି ଭାଗ୍ୟରେ ଲେଖାଥିଲା ? ବନ୍‌ସି କଣ୍ଟାର ଶୋଲ ପରି ତାକୁ ସୁଅ ତଡି ନେଇଗଲା କେତେ ବାଟ । ତୋଟି ପର୍ଯ୍ୟନ୍ତ ଟେକି ଆଣିଲା ଶୋକର ସମୁଦ୍ର । ହେଲେ ଗୋଟିଏ ସୂତାରେ ଟାଣି ହୋଇ ରହିଗଲେ ଦାସେ ସେଇ ଶୋଲ ପରି । ସଂସାରର ପ୍ରବଳ ବଢିପାଣିରେ ଉଜାଣି କାଟିଲେ । ଧର୍ମକୁ ଆଶ୍ରିତ ଏ ପରିବାର କେବଳ ଗୋଟିଏ ମାତ୍ର ଭରସାରେ ବଞ୍ଚିଛନ୍ତି । ସେ ହେଲେ ଠାକୁରେ । ସୁଖ ଦୁଃଖ, ମାନ ଅଭିମାନ, ସଂପଦ ବିପଦରେ ସେଇ ମାତ୍ର ଜଣେ । ତାରି ବଳରେ ହମାପେଲି ଆସିଛନ୍ତି ଦୀନବନ୍ଧୁ ଦାସ ଆଜକୁ ପଞ୍ଚାଶ ବର୍ଷ ହେଲା । ଚଢେଇ ଛୁଆ ମୁହଁରେ ଆହାର ଦେଲାପରି ଦୁଇଟି ପୁଅଙ୍କୁ ସେ କେତେ କଷ୍ଟରେ ପାଳି ଆଣିଥିଲେ ତା'ର ସାହାପକ୍ଷ ଉପରେ । ଯେତେ ଗରିବ ହେଲେ ମଧ ଗୃହୀ ହେଲାଠୁ ତାଙ୍କ ଧର୍ମ ସେ କେବେ ହୁଡିନାହାନ୍ତି । ତାଙ୍କ ଦୁଆରୁ ଅଭ୍ୟାଗତ କେବେ ଫେରିନାହାନ୍ତି । କେତେଥର ଭଲା, ସେଇପୁଅ ସେଇ ବୋହୂ, ତାଙ୍କ ସ୍ତ୍ରୀ, ସେ ନିଜେ ଓପାସରେ ଶୋଇ ଭୋକିଲା ଅତିଥି ମୁହଁରେ ଆହାର ଯୋଗେଇ ନାହାନ୍ତି ? କିନ୍ତୁ ଆଜି ତାଙ୍କ ବଡପୁଅକୁ ସାପ ଦଂଶିଦେଲା ! ଏଇଆ କ'ଣ ପ୍ରଭୁଙ୍କ ଇଚ୍ଛା ?... ଦାସଙ୍କ ଦେହ ବାମ୍ଫେଇଗଲା କୋହରେ ।

"ବିପତ୍ତି ଦେଲ ପ୍ରଭୁ – ତୁମ ଇଚ୍ଛା, ହେଲେ ବଳ ଦିଅ ଜଗନ୍ନାଥ, ନ ହେଲେ ଭାସିଗଲି । ବଳଦିଅ । ବଳ ଦିଅ । ମନ ଦୃଢ କରିଦିଅ । ବୁକୁ ପଥର କରିଦିଅ ।" ଏଭଳି ଜପ କରିକରି ଦାସେ ଘରେ ପଶିଲେ । କ'ଣ ବୋଲି କାହାକୁ ବୋଧ କରିବେ ? କାହା ମୁହଁକୁ ଚାହିଁବାକୁ ଆଖି ଟେକି

ପାରିଲେ ନାହିଁ । କେତେ ସହସ୍ର ଥର ସେମାନଙ୍କୁ ସେ ବୁଝେଇଛନ୍ତି ଶାସ୍ତ୍ର କଥା । ଏ ସଂସାର ଗୋଟାଏ ଖେଳଘର । କେହି କାହାର ନୁହନ୍ତି । ସମସ୍ତେ ବାଟୋଇ । ମନ ଛନ୍ଦିବାକୁ ଏକାଠି ଗୋଠ ବାନ୍ଧି ବସିଛୁ – ବାପ, ଭାଇ ପୁଅ ମାଇପ । ହେଲେ ଆଖି ଉପରକୁ ଘୋଡେଇ ହୋଇ ଆସୁଛି ଧାରା ଶ୍ରାବଣର ମେଘ । କିଛି ଆଉ ଦିଶୁନାହିଁ । ନିଜେ ଟଳମଳ ହେଉଛନ୍ତି ଦାସେ – ଆଉ କାହାକୁ କ'ଣ ବଳଦେବେ ? ସେ ଏକମୁହାଁ । ଠାକୁରଘରେ ଯାଇ ହାମୁଡି ପଡିଲେ ।

କେତେବେଳକେ ଧୂଆଁ ଓହ୍ଲେଇଗଲା । ମନ ଦମ୍ଭ ଧରିଗଲା । ଦାସେ ଆଖି ଟେକି ଚାହିଁଲେ । ଠାକୁରେ ତାଙ୍କ ଫାଡୁଙ୍ଗା ପାଟି ମେଲେଇ ହସୁଛନ୍ତି । ତାଙ୍କ ଆତ୍ମା ଶୀତଳ ହୋଇଗଲା । ସେ ମୁହଁ ବୁଲେଇଲେ । ଆଖିରୁ ଲୁହ ପୋଛି କେତେବେଳେ ଆସି ତାଙ୍କ ପଛରେ ବସିଛନ୍ତି ତାଙ୍କ ସ୍ତ୍ରୀ, ବୋହୂ, ସାନପୁଅ । ସେମାନେ ଓହଳିଛନ୍ତି ସେଇ ଗୋଟିଏ ସୂତା ଉପରେ । ଧନ୍ୟ ଏ ପୁଣ୍ୟାତ୍ମାମାନେ । ଏ ରୂପ ନେଇ ତାଙ୍କ ଘରେ ଆସି ପରିବାର ଗଢିଛନ୍ତି । ସେମାନେ ନିର୍ମଳ ଆଖିରେ ଚାହାଁଚାହିଁ ହେଲେ । କଥା କହିଲେ ବନ୍ଧ ଭାଙ୍ଗିଯିବ ବୋଲି ସମସ୍ତଙ୍କର ଭୟ । କିଛି ବେଳ ବସିଲେ ଠାକୁରଙ୍କ ବାହୁ ଛାୟାର ବଟଗଛ ମୂଳେ ।

ଏତିକିବେଳେ ତାଙ୍କର ଗାଁ ମୁଣ୍ଡ ନିରୋଳା କୁଡିଆଟିକୁ ଚମକେଇଲା ପରି ଶୁଭିଲା – 'ଆହେ, କିଏ ଅଛ ଦାତା ଏ ଘରେ – ମୁଠାଏ ଖାଇବାକୁ ଦିଅ – ଭୋକରେ ପ୍ରାଣ ଉଡିଯାଉଛି ।'

ଜାଗ୍ରତ ହୋଇଉଠିଲେ ଦାସଙ୍କ ଅବଶିଷ୍ଟ ପରିବାର । ଦାସେ ଶୁଣିଛନ୍ତି, ସେମାନେ ମଧ ଶୁଣିଛନ୍ତି, ସନ୍ଥମାନଙ୍କ ମୁହଁରୁ ଯେ ମନ ଦୃଢ ଥିଲେ ଦିନେ ପ୍ରଭୁ ଆସି ଅତିଥି ରୂପରେ ଦୁଆରେ ଉଭାହେଇଯିବେ । ପୂର୍ବକାଳରେ ଦେବତାମାନଙ୍କୁ କୁହା ହେଇଥିଲା ଅସୁରମାନଙ୍କୁ ଦମନ କର, ନହେଲେ ଦର୍ପୀ ଅହଂକାରୀ ହେଇଯିବ । କୁହା ହେଇଥିଲା – ଦୟାକର, ନହେଲେ ନିଷ୍ଠୁର ହିଂସ୍ର ହେଇଯିବ । ମଣିଷମାନଙ୍କୁ କୁହାଗଲା – ଦାନକର, ନହେଲେ ସାଙ୍କୁଡିଯିବ, ଜନ୍ତୁ ହୋଇଯିବ । ଦୁର୍ଲଭ ମଣିଷ ଜନ୍ମ ସାର୍ଥକ ହେବ । ତୁମ ଦୁଆରେ ସେ ଅଜ୍ଞାତ ଅତିଥି କିଏ ତୁମେ ଜାଣନା । ତୁମକୁ ଡାକୁଛି ଉଦ୍ଧାରକରିବାକୁ । ତାକୁ ନମସ୍କାର ହୁଅ । ଅତିଥି ଦେବ ଭବ ।

ଦୀନବନ୍ଧୁ ଦାସ ତରବର ହୋଇ ଦୁଆରକୁ ଗଲାବେଳେ ମୁହୂର୍ତ୍ତେ ଠିଆହେଇ କହିଲେ, "ଏ ସଂସାରକୁ ଆସିବା ଯିବା ମାଲିକର ଇଛା । ତା'ର ମାଣକ ପୁରିଗଲା ସେ ଚାଲିଗଲା । ଆମେ ରହିଗଲେ । ଥିବାଯାଏଁ ସାଧମତେ ବଞ୍ଚିବା । ଧର୍ମ ହୁଡିବା ନାହିଁ । ଦୁଆରେ ଅତିଥି ରୂପରେ ଆଜିପରା ଦିନରେ କିଏ ଆସିଛି କିଏ କହିବ ?"

ସମସ୍ତେ ପ୍ରଭୁ ସ୍ମରଣ କରି ମନକୁ ଦୃଢକଲେ । ସତକଥା – ଯେ ଗଲା ସେ ତ' ଆଉ ଫେରିବ ନାହିଁ । ଯାହା ବ୍ରତ କରି ମାନି ନେଇଛନ୍ତି, ସେଥିରେ କାହିଁକି ଅବହେଳା କରିବେ ? କିଏ ଜାଣେ ଆଜି ଯେ ଅତିଥି ଆସିଛନ୍ତି ସେ କିଏ ?

ଦାସେ ଦୁଆରେ ପହଞ୍ଚି ଦେଖିଲେ ଜଣେ ସନ୍ୟାସୀ ଠିଆ ହେଇଛନ୍ତି । ବାରମ୍ବାର ପ୍ରଣିପାତ ହୋଇ ଦାସେ ନିସ୍ତରିଲି ନିସ୍ତରିଲି କହି ତାଙ୍କୁ ଚାହିଁଲେ । କୌପୀନବନ୍ତ ସନ୍ନ୍ୟାସୀ । ହାତରେ

କେବଳ ଖଣ୍ଡିଏ ଦଣ୍ଡ ଧରିଥାନ୍ତି । ପାଣିରେ ପଦ୍ମପତ୍ର ପରି ସଂସାରରେ ଢଳ ଢଳ ହେଉଛନ୍ତି ସେ ନିଷ୍ପାପ ରୂପ ।

"ଆମେ ପରିବ୍ରାଜକ । ବହୁ ଦୂରରୁ ଆସିଛୁ । ଆମକୁ ଗଣ୍ଡିଏ ଖାଇବାକୁ ଦେଇ ପାରିବ ?"

"ଯଥାଶକ୍ତି ଆପଣଙ୍କ ସେବା କରିବି ।" ବନ୍ଧାଞ୍ଜଳି ହୋଇ ଦାସେ ଏତକ କହିଲା ବେଳେ ମନରେ ଛାଇଟାଏ ପହରିଗଲା । ଘରେ ମୃତାହ ଅଶୁଚି । ଅନ୍ନ ଛୁଇଁଲେ ମାରା । କିଭଳି କଥା ଗୋପନରଖି ଏ ପବିତ୍ର ପୁରୁଷଙ୍କୁ ଖାଇବାକୁ ଦେବେ ?

ମନରେ ଦୋଦୋପାଞ୍ଚ ହୋଇ ଦାନ କଲେ ଫଳ ମିଳେନାହିଁ । ସନ୍ନ୍ୟାସୀ ତାଙ୍କ ଭିତରର ଦ୍ୱନ୍ଦ୍ୱ ବୁଝି ଉତ୍ତର ଦେଲା ପରି ଶୁଭିଲା । ସେ ସ୍ଥିର ସଂକଳ୍ପ ହୋଇ ପିଣ୍ଡା ଉପରେ ଅତିଥିଙ୍କ ପାଇଁ ଆସନ ନିର୍ଦ୍ଦେଶ କରି ଭିତରକୁ ଯାଉଛନ୍ତି, ପଛରୁ ଶୁଭିଲା –

"ଆଉ ଶୁଣ, ବହୁଦିନରୁ ଆମିଷ ଖାଇବାକୁ ଆମର ଇଚ୍ଛା । ଆଜି ତୁମ ଘରେ ଖାଇବା । ଆମିଷ ନ ହେଲେ ବରଂ ଆମେ ଯାଉଛୁ ।"

ଦାସଙ୍କ ଭୃରୁ କୁଞ୍ଚେଇଗଲା । ଘୋର ଅନୀତି କଥା । ଘରେ ମଡା ପଡିଛି । ଚୂଲା ଲାଗିବା ବିଧି ନୁହେଁ । ସେଥିରେ ପୁଣି ଆମିଷ ରନ୍ଧା ହେବ ?

"ତା'ହେଲେ ଆମେ ଯାଉଛୁ !"

"ନାଇଁ ନାଇଁ, ଆପଣ ଆସି ମୋ ଦୁଆରୁ ନିରାଶ ହୋଇ ଫେରିଗଲେ ଆମେ ବଞ୍ଚି ଆଉ କି ଲାଭ ! ଆପଣଙ୍କ ଇଚ୍ଛା ପୂରଣ ହେବ ।"

"ଆମେ ତୁମକୁ କଲ୍ୟାଣ କରୁଛୁ । ତୁମର ସର୍ବଶୁଭ ହେବ । ତୁମେ ଶୀଘ୍ର ଭୋଜନ ପ୍ରସ୍ତୁତ କର ।"

ଘର ଭିତରକୁ ଯାଇ ଦୀନବନ୍ଧୁ ଦାସ ସବୁ ବିସ୍ତାର କରି କହିଲେ । ବୁଝାଇଦେଲେ ଯେ ଅତିଥି ଫେରିବେ ନାହିଁ । ସମସ୍ତେ ବୁଝିଗଲେ । ଦାସଙ୍କ ପରିବାରରେ କେହି ସେଭଳି ନାହିଁ ଯେ ଏ ପୁଣ୍ୟ କାର୍ଯ୍ୟର ବିରୋଧ କରିବ । ତା' ବାହାରେ କିଏ ଜାଣେ, ଆଜିର ଅତିଥି ରୂପରେ କିଏ ବିଜେ କରିଛନ୍ତି ?

ମଲାପୁଅକୁ ପଟି ଖଣ୍ଡିକରେ ଗୁଡେଇ ଦାସେ ଗୋଟାଏ କୋଣକୁ ଲୁଚେଇ ରଖିଦେଲେ । ଘର ଧୂଆଧୋଇ ହୋଇଗଲା । ଚଞ୍ଚଳ ଶୌଚହେଇ ଶାଶୁ ବୋହୂ ରନ୍ଧାଘରେ ପଶିଲେ । ପୁଅ ଗଲା ଆମିଷ ପାଇଁ । ଦାସେ କଦଳୀ ପତ୍ର କାଟିବା ପାଇଁ ବାଡିକୁ ଗଲେ ।

ଯଥା ସମୟରେ ସବୁ ପ୍ରସ୍ତୁତ ହେଇଗଲା । ମନ ଭିତରେ ବାଘ ଶୋଇଲା ପରି ଲୁଚିରହିଥାଏ ପୁତ୍ରଶୋକ । ମାତିଗଲେ ସେ ଲହୁଲୁହାଣ କରିପକେଇବ । କିନ୍ତୁ କେମିତି କେଜାଣି ସେ ଜମା ଉଠୁନଥାଏ । ଘରେ କେବଳ ଦୀନବନ୍ଧୁ ଦାସ ନୁହନ୍ତି ଆଉ ସମସ୍ତଙ୍କୁ ମଧ ଲାଗୁଥାଏ ଯେ ବଡପୁଅ ଶୋଇଚି । କେହି ଆଉ ସେ ଆଡକୁ ମନ ଦେଉ ନଥାନ୍ତି । ନିଜେ ନିଜେ ବିସ୍ମିତ ହେଉଥାନ୍ତି ସମସ୍ତେ ଏ ଘଟଣାରେ । ଦୌବାତ୍ ପଟି ଗୁଡା ହୋଇଥିବା ମଡାଟିକୁ ଦେଖି ଦେଲେ ମଧ ବିଶ୍ୱାସ

ହେଉନଥିଲା ଯେ ସେ ସତକୁସତ ମରିଯାଇଛି । କାଲୁଆ ବଧିରା ହୋଇଯାଇଥାଏ ଭିତର । ସପ୍ନପରି ଲାଗୁଥାଏ । ସମସ୍ତେ ସେଇଭଳି ପହରୁଥାନ୍ତି । କାମ ଚାଲିଥାଏ । ଦାସେ ପାଣିଢାଳ ଧରି ପିଣ୍ଡାକୁ ଗଲେ । ସନ୍ନ୍ୟାସୀ ସ୍ଥିର ହୋଇ ଆଖିବୁଜି ବସିଥାନ୍ତି । ଦାସେ ଚାହିଁଲେ ସେ ମୁହଁକୁ, ସେ ଦେହକୁ । ତାଙ୍କୁ ଅପୂର୍ବ ପରି ଲାଗିଲା । କିଏ ଏ ଅତିଥି ? ଏଭଳି ଭାବନା ମନକୁ ଆସିଛି ନା ନାହିଁ ଆଖି ଫିଟିଗଲା । ସେ ଦାସଙ୍କୁ ଚାହିଁ ଅଳ୍ପ ହସି ପଚାରିଲେ –

"କ'ଣ ଭୋଜନ ପ୍ରସ୍ତୁତ ହୋଇଗଲା ?"

"କିବା ଭୋଜନ ଏ ଅଧମ ଆପଣଙ୍କ ସେବାରେ ଦେଇପାରିବ ? ମୁହଁ ଧୋଇ ବିଜେ ହେବା ହୁଅନ୍ତୁ ।"

"ଆମେ ସଦାଶୁଚି – କିଛି ଧୋଇବା ପ୍ରୟୋଜନ ନାହିଁ । ଚାଲ କୋଉଠି ଭୋଜନ ଥୋଇଛ ।"

ଦାସେ ବାଟ କଢେଇ ନେଲେ । ରନ୍ଧାଘରକୁ ଲାଗି ପା' ଭାଗରେ ଠାଆ ହୋଇଥାଏ ।

ଦେଖିବାମାତ୍ରେ ସନ୍ନ୍ୟାସୀ କହିଲେ – "ଏ କ'ଣ ଅନ୍ନଶାଳା – ଯେଉଁଠି କଉଡି ଦେଇ ଅନ୍ନ କିଣାଯାଏ ? ଏ ପରା ଗୃହସ୍ଥର ଯଜ୍ଞଶାଳା । ଏଠି ସମସ୍ତେ ଏକାଠି ବସି ଭୋଜନ କରିବା ବିଧି ।" ଅଳ୍ପ ହସି ପୁଣି କହିଲେ – "ଆହାରରେ ବିଷ ପ୍ରୟୋଗ କରିବାକୁ ଥିଲେ ଏଇଭଳି ଜଣକୁ ଅଲଗା କରି ଖାଇବାକୁ ଦିଆଯାଏ ?"

କଥାଶୁଣି ସମସ୍ତେ ଚାହାଁଚାହିଁ ହେଲେ । ନିରୁପାୟ ପରିବାର ଅଗତ୍ୟା ଆଉ ଚାରୋଟି ପତ୍ର ବାଢି ଅତିଥିଙ୍କ ସହିତ ବସିଲେ ।

ଗଭୀର ସନ୍ତୋଷରେ ସନ୍ନ୍ୟାସୀ ଚାହିଁଲେ । ହଠାତ୍ କହିଲେ – "ତୁମେ ଆମ ସହିତ କପଟ କରୁଛ ! ଆମେ ଅନ୍ନ ସ୍ପର୍ଶ କରିବୁ ନାହିଁ । ତୁମେ ନିଜ ପତ୍ରରେ କାହିଁକି ଆମିଷ ବାଢି ନାହଁ ?"

ଆମିଷ ବଢାହେଲା । କିନ୍ତୁ ଦାସେ ମନରେ ଏତେ ଦୃଢ ଆଉ ରହିପାରିଲେନାହିଁ । ଅତିଥି ସେବା ଅବଶ୍ୟ ତାଙ୍କ ଧର୍ମ । ଘରେ ବଡପୁଅ ମରିପଡିଥିଲେ ସୁଦ୍ଧା ସେ କର୍ତ୍ତବ୍ୟ କରିଛନ୍ତି । ହେଲେ କ୍ରିୟା ନକରି କେମିତି ସେ ଏତେ ବଡ ଅନୀତି କରିବେ ? ଆତ୍ମାର ସଦ୍‌ଗତି ପାଇଁ ସତ୍କାର କରିବା ବିଧି । ସେ ହାତ ଟେକି ବସିଥାନ୍ତି ।

ଶେଷକୁ ଆଉ ସମ୍ଭାଳିପାରିଲେ ନାହିଁ । କହିଲେ – "ହେ ଅତିଥିଦେବ ! ଆପଣଙ୍କୁ ଶତ ଶତ ପ୍ରଣାମ । ଆପଣଙ୍କ କୃପାରୁ ଆମେ ବିପତ୍ତିରେ ବିହ୍ୱଳ ନହୋଇ ଆପଣଙ୍କ ସେବା କରିପାରିଛୁ ଏହା ପରମ ଭାଗ୍ୟର କଥା । କିନ୍ତୁ ସାମାଜିକ ବିଧାନ ରହିଛି, ଆମେ ଆମିଷ ଭୋଜନ କରିପାରିବୁ ନାହିଁ । ଆଜି ସକାଳୁ ଆମର ବଡପୁଅକୁ ସାପ କାମୁଡି ଦେଇଛି । ତା'ର ଶବ ସତ୍କାର ହୋଇନାହିଁ ।"

ମୁଣ୍ଡ ତଳକୁ ପୋତି ଚାରିଜଣ ବସିରହିଲେ । ହୁତା ହୁତା ହୋଇ ପାରିହୋଇଗଲା / କଳା କଳା ମେଘ । ସନ୍ନ୍ୟାସୀ କହିଲେ – "ଏକଥା ଏଯାଏଁ କାହିଁକି ନକହି ରହିଥିଲ ? ତାକୁ ଆଣ –

ଆମେ ଦେଖିଲେ ସିନା ବିଶ୍ୱାସ ଯିବା ।"

ଦାସଙ୍କ ଆତ୍ମା-ପଞ୍ଜୁରୀ ଦୋହଲିଲା । ସେ କାତର ହୋଇ ମନେମନେ ଡାକି ଲାଗିଲେ, ଏମିତି କ'ଣ ପରୀକ୍ଷା କରାଯାଏ ପ୍ରଭୁ ! ଅଜ୍ଞାନ ମଣିଷ । ଦୁର୍ବଳ ମନ । ହୃଦୟ ବିଦାରି ହୋଇଯିବ । ଦମ୍ଭ ଧରି ରହିହେବନାହିଁ । ସମ୍ଭାଳି ଯାଅ ପ୍ରଭୁ ! ଶକ୍ତି ଦିଅ !

ପିଣ୍ଡଟିକୁ ଆଣି ଶୁଆଇ ଦିଆହେଲା । ପଟି ଫିଟିଗଲାରୁ ଯେ ଯାହା କୋହ ସମ୍ଭାଳି ବସିରହିଲେ । ଆଶ୍ରୟ ନେଲେ ବିଶ୍ୱାସରେ । ହଠାତ୍ ଆଖିକୁ ଆସିଲା ନୂଆ ଦୃଷ୍ଟି । ମନକୁ ଆସିଲା ନୂଆ ବଳ । ଶବ ଦିଶିଲା ଶବପରି । ଯାହା ସବୁ ଦୋହଲୁଥିଲା ସ୍ଥିର ହୋଇଗଲା । ମେଘାଚ୍ଛନ୍ନ ଆକାଶ ନିର୍ମଳ ହୋଇଗଲା । କ'ଣ ହେଲା, କେମିତି ହେଲା, କାହାକୁ ଜଣାଗଲାନାହିଁ । ସମସ୍ତେ ଦେଖିଲେ ଯେ ସନ୍ନ୍ୟାସୀ ତାଙ୍କୁ ଚାହିଁ ଅଳ୍ପ ଅଳ୍ପ ମଧୁରିଆ ହସ ହସୁଛନ୍ତି ।

କଟୁ ପରିହାସ କଲାପରି ଶୁଭିଲା – "ତୁମେ ପରା ବାପ ! ବଡ ପୁଅ ମରିଶୋଇଛି । ତୁମେ ଏତେ ନିର୍ମମ, ଏଟିକି ନିଷ୍ଠୁର ଯେ ଆମିଷ ଅନ୍ନ ଭୁଞ୍ଜିବସିଛ ! ତୁମ ତୁଣ୍ଡକୁ ହାତ ଯାଆନ୍ତା କିପରି ?"

ଏଭଳି ପରିହାସରେ ଆହତ ହେଲେ ନାହିଁ ଦୀନବନ୍ଧୁ ଦାସ । ତାଙ୍କୁ ବାଧିଲା ନାହିଁ । ସେ ଧୀର ସ୍ଥିର ହୋଇ ସନ୍ୟାସୀଙ୍କ ମୁହଁକୁ ଚାହିଁ କହିଲେ – "ମୁଁ ଜ୍ଞାନୀ ନୁହେଁ । ଏ ସଂସାର ବେଭାର ବଡ ବିଚିତ୍ର । ଏ ରହସ୍ୟ ବୁଝିବା ମୋ ଆୟତ୍ତରେ ନାହିଁ । ମୋତେ ଯାହା ଦିଶୁଛି ଶୁଣନ୍ତୁ । ଫଗୁଣ ମାସରେ ଆମ୍ବ ବଉଳେ । ପତ୍ର ଦିଶେ ନାହିଁ । ତା' ଋତୁରେ ବଉଳ ଆସେ । କୋଟି କୋଟି ଫୁଲ କଢ଼ରୁ କିଏ ରହେ କିଏ ଯାଏ । ଯେ ଡେମ୍ଫରେ ଲାଗିରହିଲା ତାକୁ ଗଛ ବାରଣ କରେ ନାହିଁ । ଯେ ପବନରେ ଝଡିଗଲା, କୁହୁଡିରେ ମଉଳିଗଲା, ତାକୁ ରଖିପାରେନାହିଁ । ଗଛର ଅଣାୟତ୍ତରେ ଯେମିତି ବଉଳ ଆସିଥିଲା, ସେମିତି ଅଣାୟତ୍ତରେ ଝଡିଗଲା । ସେଥିରୁ ଗଛର କିବା କର୍ତ୍ତବ୍ୟ ? ଗଛ ତ ଗଛ ହୋଇ ରହିବ ।"

ସନ୍ନ୍ୟାସୀ ସେମିତି ହସି ହସି ଚାହିଁଲେ ମା'କୁ । କହିଲେ – "ତୁମେ ଗର୍ଭଧାରିଣୀ । ଦଶମାସ ବୋହିଛ । ରକ୍ତ ମାଂସ ଦେଇ ଏ ପିଣ୍ଡ ଗଢ଼ିଛ । ତୁମର ହୃଦୟ କିପରି ସମ୍ଭାଳିଲା । ବଡପୁଅ ମରି ଶୋଇଛି, ତୁମେ ଆମିଷ ଭାତ ବାଢ଼ି ବସିଛ, ଖାଇବ ବୋଲି । ସଂସାରରେ ଲୋକେ କ'ଣ କହିବେ ।"

ସେ ଚାହିଁଲେ ସନ୍ନ୍ୟାସୀଙ୍କୁ । ସ୍ଥିର ଆଖି । ନିଷ୍କମ୍ପ ସ୍ୱର । କହିଲେ – "ହେ ଅତିଥି ତୁମକୁ ନମସ୍କାର । ଲୌକିକ ବ୍ୟବହାରରେ ସେ ମୋ ପୁଅ ମୁଁ ତା' ମା' । କିନ୍ତୁ ଏଠି କିଏ କାହାର ? ଯେ ଯାହା ବାଟରେ ଆସନ୍ତି ଏଠି ଖେଳ ସାରି ଚାଲିଯାନ୍ତି । କୁମ୍ଭାରଚକ ବୁଲୁଥାଏ । ସେ କଞ୍ଚା ମାଟି ପିଣ୍ଡରୁ ଘଟି କଳସୀ ଗଢେ । ଲାହି କାଟିଲାପରି ତାକୁ ଆଣି ଅଲଗା ଥୋଇଦିଏ ସେ । ସେଥିରୁ କିଏ ସେଇଠି ଭାଙ୍ଗିଯାଏ । ଆଉ କିଏ ଶୁଖିବା ଯାଏଁ ରହେ – ପୁଣି ଭାଙ୍ଗିଯାଏ । କିଏ ପୋଡ ଖାଇ ବାହାରେ, ତେବେ ସୁଦ୍ଧା ଭାଙ୍ଗିଯାଏ । ଚକ ଉପରୁ କାଟିନେଲା ଉତ୍ତାରୁ ଘଟି କଳସୀ ଯେ ଯାହା ଭାଗ୍ୟ ନେଇ ବାହାରିଗଲେ ସେଥିରେ କୁମ୍ଭାରଚକର କ'ଣ ଥାଏ ?"

ସନ୍ନ୍ୟାସୀଙ୍କ ଆଖି ମୁହଁ ଉଜ୍ଜଳିଉଠିଲା । ସେ ଭାଇକୁ ଚାହିଁ କହିଲେ – "କିହେ, ତୁମେ ପରା ସହୋଦର ! କେତେ ସ୍ନେହ ଆଦର ସେ ତୁମକୁ ନଦେଇଛି – ତୁମେ କେମିତି ସେସବୁ ଭୁଲିଗଲ ? କେମିତି ମଲା ଭାଇକୁ ଆଡ କରିଦେଇ ବସିଛ ଅନ୍ନ ଖାଇବାକୁ ?"

ଅଳ୍ପ ବୟସର ତରୁଣ ଗମ୍ଭୀର ହୋଇ ଚାହିଁଲା ମୃତପିଣ୍ଡକୁ । ଚାହିଁଲା ସନ୍ନ୍ୟାସୀଙ୍କୁ । କହିଲା – "ହାଟ ଭିତରେ ସହସ୍ର ଲୋକ । ପାଖେ ପାଖେ ପସରା ମେଲି ବସିଲେ, ଅଚିହ୍ନା ବେପାରୀ ମଧ୍ୟ ଭାଇ ଭାଇ ଡକାଡକି ହୁଅନ୍ତି । ପସରା ଉଠିଗଲେ ସେ ଭିତରୁ ଜଣେ ତା' ବାଟରେ ଚାଲିଯାଏ । ଆଉ ଜଣକର ଉଠିବାକୁ ତରା ନଥାଏ । ତା' ପସରାକୁ ଜଗି ସେ ବସିରହେ । ତା'ର ଆଉ ଉପାୟ କ'ଣ ?"

ସନ୍ନ୍ୟାସୀ ଚାହିଁଲେ ବୋହୂ ମୁହଁକୁ । କ୍ଲାନ୍ତ ଅଥଚ ଧୀର ଗମ୍ଭୀର ମୁହଁଟିଏ । ଆଖିରେ ପ୍ରାଞ୍ଜଳ ଦୃଷ୍ଟି । ସନ୍ନ୍ୟାସୀ କହିଲେ – "ପ୍ରଥମ ଯୌବନରେ ସ୍ୱାମୀଙ୍କୁ ହରାଇବା ଭଳି ଦୁର୍ଭାଗ୍ୟ ସ୍ତ୍ରୀ ପକ୍ଷରେ ଆଉ କିଛି ନାହିଁ । ସ୍ତ୍ରୀ ସହଧର୍ମିଣୀ । ସ୍ୱାମୀ ତା'ର ସର୍ବସ୍ୱ । ଦାମ୍ପତ୍ୟ ପ୍ରେମଠାରୁ ବଳି ଘନିଷ୍ଠ ସମ୍ପର୍କ ଆଉ ନାହିଁ । ଏହା ବଡ ଆଶ୍ଚର୍ଯ୍ୟର କଥା ଯେ ପତି ବିୟୋଗରେ ତୋ ମନରେ କୌଣସି ଦୁଃଖ ନାହିଁ । ସ୍ୱାମୀର ଶବ ସତ୍କାର ପର୍ଯ୍ୟନ୍ତ ମଧ୍ୟ ଧୈର୍ଯ୍ୟ ନରଖି ତୁ ଆମିଷାନ୍ନ ଭୋଜନ କରିବାକୁ ବସିଛୁ ।"

ଖୁବ୍ ସରଳ ନିରାଡମ୍ବର ଢଙ୍ଗରେ ଯୁବତୀ କହିଲା – "ହେ ମହାତ୍ମା, ତୁମେ କିଏ ଆଜି ଅତିଥି ରୂପରେ ଆସି ବିଜେ କରିଛ ମୁଁ ଜାଣେନାହିଁ । ତୁମକୁ ଏଠି ପାଇଲା ଭଳି ସବୁ ସମ୍ପର୍କ ଏ ସଂସାରରେ ଆକସ୍ମିକ । ପ୍ରବଳ ନଦୀ ସ୍ରୋତରେ ଦୁଇଖଣ୍ଡି କାଠ ଲଗାଲଗି ଭାସିଯାଉଥାନ୍ତି । ବାଟରେ ସେଥିରୁ ଖଣ୍ଡିଏ ଲତା ଜାଲରେ ଛନ୍ଦି ହୋଇଯାଏ, ଅନ୍ୟଟି ଭାସିଯାଏ ସ୍ରୋତରେ । କେହି କାହାପାଇଁ ଦାୟୀ ନୁହନ୍ତି । କେହି କାହାପାଇଁ ଅପେକ୍ଷା କରନ୍ତି ନାହିଁ ।"

ସନ୍ନ୍ୟାସୀଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇଉଠିଲା । ସେ କାହାକୁ କିଛି ନକହି ଉର୍ଦ୍ଧ୍ୱକୁ ସ୍ଥିର ଦୃଷ୍ଟିରେ କିଛି ସମୟ ଚାହିଁଲେ । ଆଖି ଦୁଇଟି ତାଙ୍କର ଅଦ୍ଭୁତ ଶୀତଳ ଆଲୋକରେ ଭରିଗଲା । ସେ ନୀରବ ଅମୃତ ଦୃଷ୍ଟି ବର୍ଷିଗଲେ ମରି ଶୋଇଥିବା ବଡ ପୁଅ ଉପରେ । ଥରି ଥରି ଜୀବନ ପଲ୍ଲବି ଆସିଲା । ନିଶ୍ୱାସ ବୋହିଲା । ଆଖି ଫିଟିଗଲା । ନିଦରୁ ଉଠିଲା ପରି ସେ ଉଠିବସିଲା । ଚାହିଁଲା ବିସ୍ମୟରେ ସମସ୍ତଙ୍କୁ । ସମସ୍ତେ ତାକୁ ଚାହିଁରହିଲେ ନିଷ୍ପଲକ । ସନ୍ନ୍ୟାସୀ ମୃଦୁମଧୁର ହସଭିତରେ ପଚାରିଲେ – "ଆଚ୍ଛା ଦେଖ, ତୁମ ପରିବାର କ'ଣ କରୁଥିଲେ ? ଆଜି ସକାଳୁ ତୁମକୁ ସର୍ପାଘାତ ହେବାପରେ ତୁମର ମୃତ୍ୟୁ ହୋଇଥିଲା । ତୁମର ନିର୍ଜୀବ ଦେହକୁ ଲୁଚାଇଦେଇ ଏମାନେ ସମସ୍ତେ ଏକାଠି ଆମିଷାନ୍ନ ଭୋଜନ କରିବାକୁ ବସିଛନ୍ତି – ତୁମେ କ'ଣ ଏମାନଙ୍କୁ ଏବେ ମଧ୍ୟ ସ୍ୱଜନ ବୋଲି ବିଶ୍ୱାସ କରୁଛ ?"

ଅଚିହ୍ନା ପ୍ରବାସୀ ନୂଆ ରାଜ୍ୟରେ ତଟସ୍ଥ ହେଲାପରି ସେ ଚାରିଆଡକୁ ଚାହିଁଲା । ତା' ଆଖିରୁ ନିଦ ଓହ୍ଲେଇନଥାଏ । କହିଲା – "ସ୍ୱଜନ କିଏ ? ସହଯାତ୍ରୀ ବା କିଏ ? ଗଛ ଛାଇରେ

ହାଲିଆ ମାରିବାକୁ ବାଟୋଇମାନେ ଏକାଠି ବସନ୍ତି । ଯେ ଯାହା ଗରଜ ବେଳ ଦେଖି ଉଠି ଚାଲିଯାଏ । ଗୋଟି ଗୋଟି ହୋଇ ସବୁ ବାଟୋଇ ଉଠିଯାନ୍ତି, ପୁଣି ନୂଆ ବାଟୋଇ ଆସନ୍ତି । ସେମାନେ ବି ଯାଆନ୍ତି । ଏମିତି ଚାଲିଥାଏ – ଗଛ ଥାଏ, ଗଛ ଛାଇଥାଏ – ସଂସାର ଥାଏ । ଆମେ ବାଟୋଇ – ଆସୁ ଏବଂ ଯାଉ ।"

ସନ୍ନ୍ୟାସୀ ପ୍ରସନ୍ନ ମୁଦ୍ରାରେ ଦୀନବନ୍ଧୁ ଦାସଙ୍କର ଅକ୍ଷୁର୍ଣ୍ଣ ପରିବାରକୁ ଦୁଇହାତ ଟେକି ଆଶୀର୍ବାଦ ଦେଲେ । ଆନନ୍ଦ ଗଦ୍‌ଗଦ କଣ୍ଠରେ କହିଲେ – "ତୁମେ ସମସ୍ତେ ଜୀବନ୍ମୁକ୍ତ । ତୁମ ହୃଦୟରେ ଯେଉଁ ଦିବ୍ୟଜ୍ଞାନ ବିକଶିତ ହୋଇଛି ତାକୁ ସ୍ମରଣ ରଖ । ତାହାହିଁ ତୁମର ଗୁରୁମନ୍ତ୍ର । ଯେତେଦିନ ସଂସାରରେ ଥିବ ତୁମକୁ ସଂସାର ଘାରିବନାହିଁ । ତୁମ ଦୃଷ୍ଟି ନିର୍ମଳ ରହିବ, ମନ ସ୍ଥିର ରହିବ । ପରମାଶ୍ରୟ ପାଇ ତୁମେମାନେ ଧନ୍ୟ ହୋଇଛ । ଆମ୍ଭେ ତୁମ୍ଭକୁ ପରୀକ୍ଷା କରୁଥିଲୁ । ତୁମପରି ନିର୍ମଳଆତ୍ମା ସଂସାରରେ ଦୁର୍ଲଭ ।"

ସନ୍ନ୍ୟାସୀଙ୍କ ସ୍ୱର ଆସ୍ତେ ଅପସରିଗଲା । ରୂପ ଲିଭିଆସିଲା । ଦୀନବନ୍ଧୁ ଦାସଙ୍କ ଧ୍ୟାନ ଭଙ୍ଗହେଲା । ସେ ଚମକିପଡି ପ୍ରଣିପାତ ହେଲେ । ସମସ୍ତେ ସ୍ୱପ୍ନରୁ ଉଠିଲା ପରି ଚଞ୍ଚଳ ସଚେତନ ହୋଇ ପ୍ରଣିପାତ ହେଲେ ।

ଆନନ୍ଦରେ ଦୀନବନ୍ଧୁ ଦାସଙ୍କ ଆଖି ଛଳଛଳ । ବାପ-ମା' ପୁଅ-ବୋହୂ ସମସ୍ତେ ବିଭୋର ହୋଇ କୋଳାକୋଳି ହେଲେ । ଜୀବନ ସାର୍ଥକ ମଣିଲେ । ସବୁ ଜଣାଗଲା ଅଖଣ୍ଡ ସ୍ୱପ୍ନ ପରି । ସାକ୍ଷାତ୍ ପ୍ରଭୁ ଦର୍ଶନ ପାଇ ଆନନ୍ଦ ପୁଲକରେ କ୍ରନ୍ଦନ କଲେ । କେତେବେଳ ଏଭଳି ବିତିଯିବା ପରେ ପରସ୍ପର ପଚରାପଚରି ହେଲେ – ସତେ କ'ଣ ପ୍ରଭୁ ଅଜ୍ଞାତ ଅତିଥି ରୂପରେ ଆସିଥିଲେ ? ସତେ କ'ଣ ଆମ ମୁହଁରୁ ସେପରି ପରମ ଜ୍ଞାନ ସ୍ଫୁରିଲା ? ସେ ଯେ ପୁଅ ଅଚେତ ହୋଇ ପଡିଥିଲା – ସେଇଟା ମୃତ୍ୟୁ ନା ନିଦ୍ରା ? ଯାହା ଦଂଶନ କଲା ବୋଲି ଆମେ ଭାବିଥିଲେ, ତାହା ସାପ ନା ଦଉଡି ? ଏହିପରି ବିଶ୍ୱାସର ପ୍ରଶ୍ନ, ଏହିପରି ପ୍ରଭୁ ଦର୍ଶନର ସ୍ମୃତି, ଆନନ୍ଦ, ତାଙ୍କର ଅବଶିଷ୍ଟ ଜୀବନକୁ ଆଛନ୍ନ କରିରଖିଲା । ଶରଣାପନ୍ନ ପରିବାର ଏହିପରି ସଂସାର କାଟିଲେ ।



## ଅର୍ଦ୍ଧସତ୍ୟ

ମୋଟ ଉପରେ ମୁଁ କାହିଁକି ସେଭଳି କଥା ଚିନ୍ତାକରିଥାନ୍ତି ? ମୋର ପରିପୂର୍ଣ୍ଣ ଜୀବନରେ ସବୁ ଯେ ଯାହା ସ୍ଥାନରେ ଖଞ୍ଜିହୋଇ ରହିସାରିଥିଲେ । କିଛି ବେଖାପ ବେମତଲବ ମନେହେଉନଥିଲା । ପରିବାରର ସମସ୍ତେ ଯେ ଯାହା କକ୍ଷରେ ବୁଲୁଥିଲେ । କୌଣସି ବ୍ୟତିକ୍ରମ ନାହିଁ କିମ୍ବା ବିଶୃଙ୍ଖଳା ନାହିଁ ।

ତେବେ ସେଦିନ ଅପରାହ୍ନରେ ମୁଁ ସେ ବଖରାରେ ଏକୁଟିଆ ଠିଆରହିଥିବା ବେଳେ ଉପରକୁ ଚାହିଁଥିଲି ଏବଂ କୌତୂହଳରେ ଚାହିଁରହିଥିଲି ସେ ଲୁହା ଫାନ୍ଦଟାକୁ କିଛି ସମୟ ପାଇଁ । ସେଇଠି ପଙ୍ଖା ଲଗେଇବା ପାଇଁ ବ୍ୟବସ୍ଥା ଥିଲା – କିନ୍ତୁ ଲାଗିନଥିଲା । ସେଇ ଲୁହାଫାନ୍ଦଟା ଛାତ ଭିତରେ ବୁଡିରହିଥିଲା । ଖୁବ୍ ମଜବୁତ ଦିଶୁଥିଲା । ସେଥିରେ ଯାହା ମନ ତାହା ଝୁଲେଇ ଦେଲେ ସେ ସମ୍ଭାଳି ନେଲାଭଳି ଦିଶୁଥିଲା । ସେ ଫାନ୍ଦ ଭିତରେ କ'ଣ ମୋ କାନ୍ଧରେ ପଡିଥିବା ଗାମୁଛାଟା ଗଳିଯାଇପାରିବ ? ନିଶ୍ଚୟ ପାରିବ । ତାକୁ ମାଇଫାଶ ପକେଇ ଟାଣିଦେଲେ ସେ ତାକୁ ଜାବୁଡି ଧରିବ, ଜମା ଫିଟିବ ନାହିଁ । ତା'ପରେ ଗାମୁଛାର ଏ ମୁଣ୍ଡରୁ ଓହଳି ଝୁଲିଲେ ବି କିଛି ହବନାହିଁ ।

ସତେନା ? କିଛି ହବନାଇଁ ? ଦେଖିବା କି ଚେଷ୍ଟାକରି ?

ମୁଁ ବେଳେବେଳେ ଏମିତି ଚୁଲଚୁଲିଆ କାମ କରେ । ହାତରେ ଖୁଚୁରା ସମୟ ଥିଲେ ଏମିତି ଖଳବଳ ଲାଗେ, ଯେଉଁଆଡେ ଖିଆଲ ମାତିଗଲା ସେଇଆଡେ ମୁଁ ମାତିଯାଏ ।

ଗାମୁଛାଟାକୁ ବାନ୍ଧି ସେଥିରେ ଝୁଲିବାର ମତଲବ କ'ଣ ? କିଛି ନାହିଁ, ଖାଲି ଏମିତି ! ମୁଁ ଗୋଟାଏ ଷ୍ଟୁଲ୍ ଯୋଗାଡକରି ଗାମୁଛାକୁ ସେ ଫାନ୍ଦରେ ଗଳେଇ ଫାଶ ପକେଇଲା ବେଳକୁ ଗୋଟାଏ କିଲିବିଲିଆ ରଡିରେ ହାତ ଛାଡିଗଲା । ଇସ୍, କିଏ ସେଇଟା ସବୁ ଭଣ୍ଡୁର କରିଦେଲା ?

ମୁଁ ଭୟଙ୍କର ଚିଡିଗଲି । ତା'ପରେ କିନ୍ତୁ ଗାମୁଛାର ଦୁଇମୁଣ୍ଡକୁ ଏକାଠି କରି ତାକୁ ଟାଣି ପରୀକ୍ଷା କରୁଥିଲି – ସେ ଲୁହା ଫାନ୍ଦଟାର ବଳ କେତେ ? ଏ ଗାମୁଛାର ଟାଣ କେତେ ? ଏତିକିବେଳେ ଦୁମ୍ ଦାମ୍ ପାଦଶବ୍ଦ ସବୁ ଶୁଣାଗଲା । ଘରର ସମସ୍ତେ ଏକାଠି ଆସି ସେ ବଖରା ଦୁଆରେ ଗୁଣ୍ଡହୋଇଗଲେ । ଧାଇଁଆସିଥିବାରୁ ଧଇଁସଇଁ ହେଉଥିଲେ । ଯାହା ଦେଖୁଥିଲେ ସେଥିରେ ବିଶ୍ୱାସ ହୋଇପାରୁନଥିବାରୁ ତାକୁ ଏତେଟାମାନ ଆଖିକରି ଅନେଇ ରହିଥିଲେ ।

ଗୋଟାଏ ସେଥିରୁ ଷ୍ଟୁଲ୍ ପାଖକୁ ଚାଲିଆସିଲା, କହିଲା – "ଓହ୍ଲାଅ, ଓହ୍ଲାଅ ଚଞ୍ଚଳ – ଇଏ କି ଅଭାଗ୍ୟ କଥା ! ଓହ୍ଲାଅ, ତୁମକୁ ମୋ ରାଣ ! କ'ଣ ଟିକିଏ କଥା କଟାକଟି ହେଇଗଲା ବୋଲି ତମେ ଏତେବଡ କାଣ୍ଡ କରିବାକୁ ବସିଚ ? ଓହ୍ଲାଅ, ନହେଲେ ତମରି ଆଗରେ ମୁଣ୍ଡ ପିଟିଦେବି !"

କ'ଣ କହୁଚି ସେ ମାଇକିନା ? ମୁଁ ଜମା ବୁଝିପାରୁନଥିଲି ଯେ କାହିଁକି ସେମିତି ହାଉଳି ଖାଉଥିଲା । କାହିଁକି ସେ ସମସ୍ତଙ୍କୁ ଗଡିଛାଡି ଡାକୁଥିଲା – ପୁଅ ବୋହୂ ଝିଅମାନଙ୍କୁ !

ସେମାନେ ବି ଧାଇଁ ଧାଇଁ ଆସି ଧଇଁସଇଁ ହେଲେ । ଗୋଟାଏ ସେଥିରୁ କହିଲା – "ତମେ ଯାହା କହିଥିଲେ ତ ଆମେ କରିଦେଇଥାନ୍ତୁ । ତମର କ'ଣ ଅଭାବ ଥିଲା ? ତମେ କାହିଁକି ଏମିତି କରିବାକୁ ଯାଉଥିଲ ?"

ସେମାନେ ମୋ ହାତ ଧରି ଟାଣିଲେ । ଗୋଡଧରି ଟାଣିଲେ । ଚାରିଆଡେ ପାଟିଗୋଳ କଲେ । ଶେଷରେ ସମସ୍ତେ ଗଡିଛାଡି କାନ୍ଦିଲେ ।

ମୁଁ ସେତିକିବେଳେ ବୁଝିଲି ଯେ, ସେମାନେ ଆଉ ପ୍ରକାରେ ଭାବିନେଇଥିଲେ । ମୁଁ ଆସ୍ତେ ଗାମୁଛାଟିକୁ ସେ ଫାନ୍ଦରୁ ହୁଗୁଳେଇ ଆଣିଲି । ଝାଡିଦେଇ କାନ୍ଧରେ ପକେଇଲି ଏବଂ ତଳକୁ ଚାହିଁ ଅଳ୍ପ ହସିଲି ।

ମୁଁ ଷ୍ଟୁଲ୍‌ରୁ ଓହ୍ଲେଇଗଲା ପରେ ମୋତେ ସେମାନେ ଘେରିଗଲେ । ଜଣେ କିଏ ମୋ କାନ୍ଧରୁ ଗାମୁଛାଟା ନେଇଗଲା । ମନେହେଲା ସେମାନେ ଖୁବ୍ ରାଗିଯାଇଥିଲେ । ମନେହେଲା ସେମାନେ ମୋତେ ଦଣ୍ଡ ଦେବାକୁ ହିଁ ବାଟ କଢେଇ ନେଉଥିଲେ । କଇଦି ଭଳି ମୁଁ ମଝିରେ ଯାଉଥାଏ । ମୋତେ ଏକ ପ୍ରକାର ଆମୋଦିତ ଲାଗୁଥାଏ । ଖୁସି ଲାଗୁଥାଏ ଯେ, ମୋର ଏତେବଡ ପରିବାର ମୋତେ କେତେ ତୀବ୍ର ଭାବରେ ଭଲପାଏ ।

ମୋତେ ଗୋଟାଏ ସୋଫା ଉପରେ ବସାଇ ସେମାନେ ବେଢିଗଲେ । ଛୋଟ ପିଲାମାନଙ୍କୁ ଦୂରକୁ ଆଡେଇ ଦେଇ ସେମାନେ ମୋତେ ଅସୁସ୍ଥ ମଣୁଥିଲେ । ମୋର ସେବାକରୁଥିଲେ । କେହି ଜଣେ ମୋତେ ଚା' ବଢେଇଦେଲା । ମୁଁ ବୋଧେ ଆସ୍ତେ ଆସ୍ତେ ଖୁବ୍ ଗମ୍ଭୀର ହୋଇଯାଉଥିଲି । ମୋତେ ସେମାନେ ଜେରା କରିବା ଆରମ୍ଭ କରିଦେଲେ ।

– ଆମକୁ ସବୁ ମନ ଖୋଲି କହିଦିଅ । ଆଜି ସକାଳେ ତ ସବୁ ଠିକ୍ ଥିଲା । ତମେ ଠିକ୍ ସମୟରେ ଖିଆପିଆ କରିଛ । ଖାଇସାରି ଶୋଇଛ । ଖବରକାଗଜ ପଢିଛ । ଟି.ଭି. ଦେଖିଛ । କ'ଣ ତମ ମନ ଭିତରେ ଥିଲା – ତମେ କାହିଁକି ଏତେ ଅଭାଗ୍ୟ କଥା କରିବାକୁ ଯାଉଥିଲ ?

– ଋଣ ତ ଶୁଝା ହଉଚି । ଆଉ କିଛି ବର୍ଷରେ ଶୁଝା ହେଇଯିବ । ଜମି ବାବଦର ମକଦ୍ଦମା ତ ତଳ କୋର୍ଟରେ ଆମ ସପକ୍ଷରେ ହୋଇଚି । ଦିଗମ୍ବର ସେକଥା ବୁଝୁଛି – ସେଥିରେ ତୁମକୁ କିଛି କରିବାକୁ ପଡୁନାହିଁ । ତୁମକୁ କିଏ କ'ଣ କହିଲା କି ? କାଲି କାହାକୁ ନକହି ଡାକ୍ତର ପାଖକୁ ଯାଇଥିଲ – ସେ କ'ଣ କହିଲା କି ? ସେଇଟା କ'ଣ ଜାଣେ ? ଆମେ ଆଉ ବଡ ଡାକ୍ତର ପାଖକୁ ଯିବା, ଯାହା ହବ ଚିକିତ୍ସା କରିବା ।

ମୁଁ ଦେଖିଲି, ସେ ସମସ୍ତଙ୍କ ଜ୍ୱାଳାରୁ ବଞ୍ଚାଇବାକୁ ଗୋଟାଏ କ'ଣ କରିବାକୁ ପଡିବ । ମୁଁ ବଡପାଟିରେ କହିଲି – "ଗେଟ୍‌ଆପ୍!"

ସାନପିଲାମାନେ ଚମକିପଡିଲେ । ବଡ ସମସ୍ତେ ତାବ୍‌ଦା ହେଇଗଲେ । ବାଆସ୍! ଶାଳା... କ'ଣ ବୋଲି ପାଇଛନ୍ତି ମତେ ?

ତା'ପରେ ସେମିତି ଚଢାଗଳାରେ କହିଲି – "ମୋ ମନ ମୁଁ ଯାହାକଲି, ସେଥିରେ ତମର କ'ଣ ଗଲା ? ମୁଁ କ'ଣ ତମକୁ ସବୁ ପଚାରି ଯାହାହେଲେ କରିବି ? ମୋ ମନ ହେଲା ମୁଁ ସେ ଫାନ୍ଦରେ ଗାମୁଛା ବାନ୍ଧି ଝୁଲିବାକୁ ଚାହିଁଲି ।"

'ନାଇଁ' ବୋଲି ପାଟି କରି ଦୁଇ ତିନିଜଣ ମୁହଁ ଘୋଡେଇ କାନ୍ଦିଲେ ।

"ଆବେ ଗେଟ୍‌ଆପ୍! ମୁଁ କ'ଣ ବେକରେ ଫାଶ ଲଗେଇ ଝୁଲିଥାନ୍ତି ? ମୁଁ ସେମିତି ହାତରେ ଧରି ଓହଳିଥାନ୍ତି । ଦେଖିଥାନ୍ତି ଗାମୁଛା ସମ୍ଭାଳୁଚି ନା ନାହିଁ ? ସେ ଲୁହାଫାନ୍ଦ ସମ୍ଭାଳୁଚି ନା ନାହିଁ ?"

"କାହିଁକି ?"

"କାହିଁକି ମାନେ ଏମିତି" – ମୁଁ ଦେଖିଲି ଲୁହା ଫାନ୍ଦଟାଏ ଅଛି । କାନ୍ଧରେ ଗାମୁଛାଟା ଅଛି । ଇଚ୍ଛା ହେଲା ତା' ଭିତରେ ଗଳେଇ ପରୀକ୍ଷା କରିବାକୁ । ମୋ ଇଚ୍ଛା ହେଲା ମୁଁ କଲି । ତମେ କ'ଣ ଭାବୁଛ ମୁଁ ବେକୁବ୍ ଭଳି ବେକରେ ଲଗେଇ ଝୁଲିଥାନ୍ତି !

ନାତିଟୋକାକୁ ପାଖକୁ ଡାକିଲି । ସେ ଡରିଲାପରି ଚାହିଁଲା । ସେ ବୋଧେ ଭାବୁଥିଲା, ଜେଜେକୁ କ'ଣ ରୋଗବାଗ ହେଇଚି ଯେ, ତାକୁ ସମସ୍ତେ ଏମିତି ଘେରି ବସିଚନ୍ତି ।

ମୁଁ ସମସ୍ତଙ୍କୁ ଗୋଟାଏ ଘୁଡୁକାରେ ବିଦା କରିଦେଲି । "ଯାଅ ସବୁ । ଗୋଟେ ନବରଙ୍ଗ ଲାଗିଚି – ଯାଅ ।" ସମସ୍ତେ ଉଠି ଚାଲିଗଲେ । ବୋଧେ ତାଙ୍କୁ ସବୁଦିନ ଭଳି ମୋଠୁ ସେମିତି ପାଟିଟାଏ ଶୁଣିବାକୁ ଭଲଲାଗୁଥିଲା – ସ୍ୱାଭାବିକ ଲାଗୁଥିଲା ।

ସେମାନଙ୍କ ସାଙ୍ଗରେ ନାତିନାତୁଣୀ ବି ଚାଲିଗଲେ । ମୁଁ କିନ୍ତୁ ସ୍ୱାଭାବିକ ହୋଇପାରିଲିନାହିଁ । ଚୁପ୍‌ଚାପ୍ ବସିରହିଲି ଏକୁଟିଆ ।

ଭାବିଲି, ଧର ସତକୁ ସତ ଯଦି ମୁଁ ଗଳାରେ ଫାଶ ଲଗେଇ ଦେଇଥାନ୍ତି କ'ଣ ହେଇଥାନ୍ତା ? ମତେ ହିଁ ନିଃଶ୍ୱାସ ନେବାର କଷ୍ଟ ହେଇଥାନ୍ତା । ଝୁଲିବା ପାଇଁ ଷ୍ଟୁଲ୍‌ଟାକୁ ମୁଁ ଗୋଡରେ ଆଗକୁ ପେଲିଦେଇଥାନ୍ତି । ଗୋଡ ତଳେ ଲାଗୁନଥାନ୍ତା । ନିଃଶ୍ୱାସ ନେବାକୁ ଛଟପଟ ହେଲାବେଳେ ଫାଶ ଆହୁରି ଅଧିକ କସିହେଉଥାନ୍ତା । ତା'ପରେ ମାଛଟିଏ କୂଳରେ ଛାଟିପିଟି ହେଇ ଶୋଇଗଲା ପରି ମୁଁ ବି ନିଶ୍ଚେଷ୍ଟ ହୋଇ ଝୁଲି ରହିଥାନ୍ତି ।

ମୁଁ ହଠାତ୍ ଠିଆହୋଇପଡିଲି । ମୁଁ ଯେ ସେମିତି ଝୁଲିନାଇଁ ଏ ଅନୁଭବ ଆଣିବାକୁ ତଳେ ଦୁମ୍ ଦୁମ୍ ଗୋଡ ବାଡେଇଲି, ହାତ ବି ଛାଟିଲି । ବେଶ୍ ଖାସା ସୁସ୍ଥଥିବାରୁ ମନକୁମନ ହସିଲି । ମୁଁ କାହିଁକି ସେମିତି ଗୋଟାଏ ବେକୁବ୍ ଭଳି ଝୁଲିଥାନ୍ତି ।

ଏତିକିବେଳେ ଖୁସ୍‌ଫୁସ୍ ଶବ୍ଦ ଶୁଭିଲା । ଦୁଆର ପାଖରେ ପରଦା ସେପଟୁ ମୁହଁମାନ

ଗଳେଇ ମୋତେ କିଏ ସବୁ ଦେଖୁଥିଲେ । ମୁଁ ସେଇଆଡେ ଚାହିଁବାରୁ ଦୌଡି ପଳେଇଲେ । ସେମାନେ ବୋଧହୁଏ ମୋତେ ଆଉ ବିଶ୍ୱାସ କରିପାରୁନଥିଲେ – ମୋତେ ସ୍ୱାଭାବିକ ମଣୁନଥିଲେ ।

ମୋତେ ସେଥିପାଇଁ ନଜରବନ୍ଦୀ କଲାପରି ଜଗି ରହିଥିଲେ – ବେକୁବ୍! ଜଗନ୍ତୁ – ସେଥିରେ ମୋର କ'ଣ ଥାଏ ? ମୁଁ କ'ଣ ଆଉ କେବେ ସେ ଫାନ୍ଦରେ ଗାମୁଛା ଗଳେଇବି ନା କ'ଣ ?

ତେବେ ମୋର ଅନୁଭବ ହେଲା ସେମାନେ ମୋ ପଛରେ ଛାଇପରି ଲାଗିଛନ୍ତି । ମୁଁ ଆଉ ଏକୁଟିଆ କୁଆଡେ ଯାଇଆସିପାରିଲିନାହିଁ । ଯେକୌଣସି ଆଳରେ କେହି ହେଲେ ମୋ ପିଛା ଧରି ନେଉଥିଲା । ସେଥିରେ ଅସୁବିଧା ହେଲା ଢେର୍ । ମୁଁ ବଜାର ରାସ୍ତାରେ ମଦନା ଦୋକାନରେ ବସି ଛେନାପୋଡ ଖଣ୍ଡେ ଖାଇପାରିଲିନାହିଁ । ସେ ନାଲାଏକ୍ ଡାକ୍ତର ଏମାନଙ୍କ ସାମ୍ନାରେ ମୋତେ ମିଠା ଖାଇବାକୁ ମନାକରିଦେଇଥିଲା, ହେଲେ ମୁଁ ମଝିରେ ମଝିରେ ଏମିତି ଟିକିଏ ବେନିୟମ କରିଦେଉଥିଲି – ସେଇଟା ସମ୍ଭବ ହେଲା ନାହିଁ । ତେଣିକି ମୁଁ ସେମାନଙ୍କ ଆଖିରେ ଧୂଳିଦେଇ ଲୁଚିବାକୁ ଚାହିଁଲି । 'ଏଇଠି ଟିକିଏ ଆସୁଚି' – କହି ଦି'ଘଣ୍ଟା ବଜାରଆଡେ ବୁଲିଚାଲି ଆସୁଥିଲି ।

ଆସିଲା ପରେ ମୋତେ ଗୋଟାଏ ଟନଖି ହେଉଥିଲା । ମୋ ସ୍ତ୍ରୀ ପଚାରୁଥିଲା – "ପାନ କୋଉଠି ଖାଇଲ ?"

– "ମୁଁ ଯୋଉଠି ଖାଇଲି ତୋର କ'ଣ ଗଲା ?"

– "ନାଇଁ ଯେ, ଜଳଖିଆ ଖାଇ ପାନ ଖାଇଲ ନା ଏମିତି ?"

– "ମୁଁ ଦେଢକିଲୋ ରସଗୋଲା ଗିଳିଛି – ତୁ କ'ଣ କରିବୁ କର !"

– "ଏମିତି କାଇଁକି ରାଗୁଛ ଯେ ? ତମେ କାଇଁକି ଏତେ ବଦଳିଯାଉଚ ? ତମେ ତ ଏମିତି ରାଗୁନଥିଲ ?"

– "ରାଗୁନଥିଲି ବୋଲି କେବେ ରାଗିବି ନାଇଁ ଏମିତି କ'ଣ ଲେଖାହେଇଚି ? ମୁଁ ରାଗିବି – ତମେ ସମସ୍ତେ ମିଶି ରଗଉଚ ।"

ମୋ କାନରେ ପଡୁଥାଏ ମଝିରେ ମଝିରେ । ବୋହୂ କହୁଥାଏ – "ନାଇଁ ବାବୁଲା; ଜେଜେଙ୍କୁ ଡିସ୍ଟର୍ବ କରିବୁ ନାଇଁ । ଜେଜେଙ୍କ ଦେହ ଭଲନାଇଁ ! ଦିଗମ୍ବର ତା' ବୋଉ ସାଙ୍ଗେ ଚୁପ୍‌ଚାପ୍ ଖୁବ୍ ଗମ୍ଭୀର ଆଲୋଚନା କଲାବେଳେ ମୋ ଆଡକୁ କଣେଇ ଚାହୁଁଥାଏ । ମୁଁ ଖବରକାଗଜ ଉପରୁ ଲକ୍ଷ୍ୟ କଲାପରେ ତାକୁ ସିଧାସଳଖ ଚାହିଁ ଦେବାରୁ ସେ କେମିତି ଚମକିଲା ପରି ମୋ ପାଖକୁ ଧପାଲି ଆସିଲା ଏବଂ କ'ଣ ଗୁଡାଏ ମନଭୁଲାଣିଆ ଉପରଠାଉରିଆ କଥା କହିଲା – "ଆଜି ବଜାରରେ ନୂଆ ଫୁଲକୋବି ପଡିଗଲାଣି । ଗୋଟାକ ଚାରିଟଙ୍କା ହେଇଚି । ସେଇକଥା ବୋଉକୁ କହୁଥିଲି । ଆଜି ଉପରଓଳି ନେଇଆସିବା ।"

ସେ ଆଦୌ ସେକଥା ତା' ବୋଉକୁ କହୁନଥିଲା । ମୁଁ ବି ଆଦୌ ପ୍ରତିବାଦ କଲିନାହିଁ ।

କୌଣସି ପ୍ରତିକ୍ରିୟା ମଧ୍ୟ ଜଣାଇଲି ନାହିଁ । ସାଧାରଣତଃ ସେଭଳି ଖବର ଆସି ପହଞ୍ଚିଲେ ମୁଁ ଗୁଡ଼ାଏ ଉତ୍ସାହିତ ହୋଇଯିବା କଥା ।

ମୁଁ ଆସ୍ତେ ନୀରବରେ ଖବରକାଗଜ ଉଠାଇଲି । ଦିଗମ୍ବର ପାଦ ଟିପି ଟିପି ବାହାରିଗଲା । ମୁଁ ଅନୁଭବ କଲି ଯେ, ମୋ ଉପରେ ସର୍ବଦା କେହି ନା କେହି ନଜର ରଖିଚି । ସମସ୍ତେ ମୋତେ ନଜଣାଇ ଖୁବ୍ ଉଦ୍‌ବିଗ୍ନ ବୋଧକରୁଚନ୍ତି ।

ଦିନେ ରାତିରେ ମୁଁ ପରିସ୍ରା ଯିବାକୁ ଉଠିଥାଏ । ବାଥ୍‌ରୁମ୍‌ରୁ ବାହାରିଆସିଲା ବେଳକୁ ମୋ ସ୍ତ୍ରୀ ଠିଆହୋଇଥିବା ଦେଖି ଚମକିପଡ଼ିଲି । ତା'ପରେ ଭାବିଲି, ସେ ବୋଧେ ଉଠିଥିବ ? କିନ୍ତୁ ମୋର କେମିତି ମନେହେଲା ସେ ବୋଧେ ନିଶ୍ଚିନ୍ତରେ ଶୋଇପାରୁନାହିଁ । ମୋ ଉପରେ ତା'ର ଆଉ ବିଶ୍ୱାସ ରହୁନାହିଁ । ମୁଁ କେତେବେଳେ ହୁଏତ କ'ଣ କରିଦେଇପାରେ !

ମୁଁ ଏମିତି ଛକାପଞ୍ଝା ଭିତରେ ଅସୁସ୍ଥ ବୋଧକଲି ଏବଂ ଦିନେ ସମସ୍ତଙ୍କୁ ଭଲରେ ଭଲରେ ପାଖରେ ଡାକି ବସେଇଲି –

"ଦେଖ ପିଲାମାନେ, ତମେ କାହିଁକି ଏମିତି ମୋ ଉପରେ ଅବିଶ୍ୱାସ କରୁଛ ମୁଁ ଜାଣିପାରୁଛି । ମୁଁ ଜମା ବେକରେ ଗାମୁଛା ବାନ୍ଧି ଝୁଲିବାକୁ ଋହେଁନାହିଁ । ସେଦିନ ଖାଲି ଏମିତି କୌତୂହଳ ହେବାରୁ ସେ ଗାମୁଛାଟାକୁ ଲୁହାଫାନ୍ଦରେ ଗଳେଇ ଦେଇଥିଲି । ସେଥିରୁ ଏତେ କଥା ହବ ବୋଲି ମୋର ଧାରଣା ନଥିଲା । ତୁମେମାନେ ନିଶ୍ଚିନ୍ତ ରହ । ମୋତେ ମଧ ଏମିତି ଭ୍ରେର ଜଗିଲା ପରି ଜଗନାହିଁ । ଯାଅ, ବଜାର ମୁଣାଟା ପଠେଇଦିଅ । ମୁଁ ଯାଉଚି ଆଜି ଗୁରୁବାର ହାଟରୁ ପରିବାପତ୍ର ନେଇଆସିବି ।"

"ନାଇଁ ବାପା, ଆପଣ କାହିଁକି କଷ୍ଟ କରିବେ, ମୁଁ ସାନୁକୁ ପଠେଇଦେଲିଣି । ସେ ବୋଧହୁଏ ଋଲିଆସିବ ।"

"ଠିକ୍ ଅଛି, ତା'ହେଲେ ମୁଁ ଯାଏ ଟିକିଏ ବୁଲିଆସେ । ତୁମେ ସବୁ ଯାଅ ଆଉ ଏ ନାଟକ ବନ୍ଦକର ।"

ମୁଁ ସେଇ କଥା ହିଁ ଭାବି ଭାବି ଯାଉଥାଏ । ସେଇ ଗାମୁଛା ଏବଂ ଲୁହାଫାନ୍ଦ ମୋ ମନରୁ ଆଦୌ ଘୁଞ୍ଚିନଥାଏ ଏବଂ ଯାହା ହେଲା ନାହିଁ ଅଥଚ ହେଇପାରିଥାନ୍ତା ଏବଂ ନିଶ୍ଚୟ ହେବାକୁ ଯାଉଥିଲା ବୋଲି ମୋ ପରିବାରର ସମସ୍ତେ ଭାବି ନେଇଥିଲେ ତାହାରି ପ୍ରାଞ୍ଜଳ ଦୃଶ୍ୟ ମୋତେ ସବୁଆଡେ ଦିଶିଲା । ଅଳ୍ପ ଛାପଛାପୁଆ ଅନ୍ଧାର । ସେ ବଖରାରେ କାନ୍ଥ ପାଖକୁ ଷ୍ଟୁଲ୍‌ଟାଏ ଲେଉଟିପଡିଛି ଏବଂ ଘର ମଝିରେ ଚିପୁଡ଼ା ଓଦାଲୁଗା ପରି ମଣିଷଟାଏ ଝୁଲିଛି ଛାତରୁ । ବେକଠୁ କେମିତି ବେଢଙ୍ଗିଆ ହୋଇ ଗୋଟାଏ ପାଖକୁ ଭାଙ୍ଗିଯାଇଛି – ସେଇ ଗେରୁରଙ୍ଗର ଖୋର୍ଦ୍ଧା ଗାମୁଛାଟା ହିଁ ବେକ ଋରିପଟେ କସି ହୋଇ ରହିଛି । କେତେ ବଡ ଭାର ସତେ ସମ୍ଭାଳିଛନ୍ତି ସେ ଗାମୁଛା ଆଉ ସେ ଲୁହାଫାନ୍ଦ ? ଟିକିଏ ହଲିଗଲେ ପୁଣି କଟକଟ ହେଇ କସି ହେଇଯାଉଚି ଗାମୁଛାଟା ।

ରାସ୍ତା ଉପରେ ମୁଁ ଠିଆରହିଯାଇଥିଲି । ମୋ ବେକଟାକୁ ବାଁ ହାତରେ ସାଉଁଳୁଥିଲି । ଗୋଟାଏ ସ୍କୁଟର ପାରିହୋଇ ଚାଲିଗଲା । ମୁଁ ଆଖି ମଟକାମାରି ଚାହିଁଦେଲି । ସେଇଟା ବୋଧହୁଏ ଦିଗମ୍ବରର ନା କ'ଣ! ସେ ତା'ହେଲେ ମୋତେ ଏଠି ଠିଆହେବାର ଦେଖିଥିଲା – ମୁଁ ବେକକୁ ସାଉଁଳିବାର ଦେଖିଥିଲା ।

ଧେତ୍‌ତେରି, କାହିଁକି ଏଗୁଡାକ ମୋ ପଛରେ ଏମିତି ଲାଗିଛନ୍ତି ? ମୁଁ ପୁଣି ଚାଲିଲି । ମନେମନେ ଭାବିଲି ନାନା କଥା । କିନ୍ତୁ ମୋ ଅଜାଣତରେ ପୁଣି କେତେବେଳେ ସେଇ ବିଷୟରେ ପହଞ୍ଚି ସାରିଥିଲି । ଆଚ୍ଛା କନା ହେଇଥିବାରୁ ଗାମୁଛାଟା କଅଁଳ । କିନ୍ତୁ ହେମ୍ପରେ ଯେଉଁ ଦଉଡି ଏଥିପାଇଁ ସ୍ୱତନ୍ତ୍ର ଭାବରେ ତିଆରି ହୁଏ ସେଇଟା ବୋଧହୁଏ ମାଂସକୁ ବିଦାରି ଦଉଥିବ । ସେ ବେକୁବ୍ ମାନେ ଏମିତି ଗାମୁଛା କାହିଁକି ଇସ୍ତେମାଲ କରୁନାହାନ୍ତି ?

ମୁଁ ମନକୁମନ ଏ ପରିହାସରେ ଆମୋଦିତ ହେଲି । ଫେର୍ ମନ ସେଇଆଡକୁ ଗଲା । ଗାମୁଛାଟା ସତେ ଏଇଥିପାଇଁ ହେଇଚି ବୋଧେ! ତାକୁ ଠିକ୍ ବୁଝିନପାରି ଲୋକେ ତା'ର ଅପବ୍ୟବହାର କରୁଚନ୍ତି । ଗାମୁଛାରେ ବେକ ଗଳେଇଦେଲେ କାଟିବ ନାହିଁ । ବେଶ୍ ନରମ ପାପୁଲିରେ ତଣ୍ଟିଟାକୁ ସେ ଚିପି ଧରିବ । ମୁଁ ପୁଣି ଠିଆହେଇଯାଇଥିଲି ରାସ୍ତା ଉପରେ । କିଛି ସମୟ ପରେ ସ୍ୱପ୍ନରୁ ଉଠିଲା ପରି ଧଡପଡ ଚାଲିଲି ଘରଆଡେ ।

ମୋ ବୈଠକଘରକୁ ଯାଇ ବିନା କାରଣରେ ମୁଁ ପଙ୍ଖାଟାକୁ ହାଁ ଚାହିଁଲି । ସେଇଠି ବସି ମୋ ମୁଣ୍ଡବାଳକୁ ମୁଠା ମୁଠା କଲି । ଚା' ପାଇଁ ବରାଦ କଲି ଏବଂ ମନକୁମନ ହସି ହସି ତାକୁ ଥଟ୍ଟାରେ ଉଡାଇଦେବାକୁ ଚେଷ୍ଟାକଲି ।

ଚା' ଆସିଲା । ଚୁପ୍‌ଚାପ୍ କିଛି ସମୟ ବସିଲା ପରେ ମୋର ମନେହେଲା ଯେ, ମୋର ସବୁ ପୁଅଝିଅ ଏକାଠି ହୋଇଗଲେ । ମୋ ଘରେ ଜାଗା ହେଉନାହିଁ । କେମିତି ସତେ ଏକାଠି ଚଳିବେ ? ନୂଆକରି ଆଉ ଚାରି ବଖରା ତୋଳିଲେ କେମିତି ହୁଅନ୍ତା ? ଚାରି ବଖରା ଘର ପ୍ରାୟ ଛ'ଶହ ବର୍ଗଫୁଟ । ଏବକା ହିସାବରେ ନବେ ହଜାରରୁ ଲକ୍ଷେ ଟଙ୍କା ଲାଗିଯିବ ।

ବାଯ୍ଯା ହେଲୁ ମଦନା (ମୋ ନାଁ ମଦନଗୋପାଳ) ଜେନା ତୁ କାହିଁକି ସେ କାଠଗଡାରେ ମୁଣ୍ଡ ଗଳଉଚୁ ? ତୋ ହାତରେ ଯାହା ହେଲା ତ କରିଦେଇଛୁ । ଆଗକୁ ସତେଇଶ ପୁରୁଷରେ ଯେଉଁ ଦେଢହଜାର ତୋ କୁଳରେ ଜନ୍ମିବେ ସମସ୍ତଙ୍କ ପାଇଁ କ'ଣ ବଖରେ ଲେଖା ତୋଳିବାକୁ ବସିଚୁ ? ମୋ ପିଲାମାନେ ବଡହେଇ ଯେ ଯାହା କଥା ବୁଝିଲେଣି । କେବେ ବା ଆସୁଚନ୍ତି ? ସେ କଥା ନୁହେଁ ।

ବରଂ ଯାହା ଅଛି ତାକୁ ଗୋଟାଏ ଉଇଲ୍‌ନାମା କରିଦେଲେ ହୁଏ । ହଁ, ଏଇ ଯେ ଠିକ୍ କଥା । ମୁଁ ଚୁପ୍‌ଚାପ୍ ଯାଇ ଧର୍ମାନନ୍ଦ ଓକିଲ ପାଖରେ ପହଞ୍ଚିଲି । ସେ କହିଲା – "ଆପଣ କାହିଁକି ଏକଥା ଏଇନା ଭାବୁଚନ୍ତି ? ଆପଣ ତ ବେଶ୍ ଭଲ ଅଛନ୍ତି । ଆପଣଙ୍କ ସ୍ୱାସ୍ଥ୍ୟ ଭଲ ଅଛି । ଆଉ ଥରେ ଭାବନ୍ତୁ ।"

ଚିଡିଲା ଭଳି ସ୍ୱରରେ ମୁଁ ଜବାବ ଦେଲି, "ଦେଖନ୍ତୁ ଧର୍ମାନନ୍ଦବାବୁ, ଏ ପଇସା, ଘରଦ୍ୱାର ମୋର ଉପାର୍ଜିତ ସମ୍ପତ୍ତି ମୁଁ ଯାହାକୁ ଯାହା ଦେବାରେ ଆପଣଙ୍କର କ'ଣ ଆପତ୍ତି ଥାଇପାରେ ?"

"ନା କିଛି ଆପତ୍ତି ନାହିଁ । ଆସନ୍ତୁ କାଗଜପତ୍ର ଠିକ୍ କରିଦେବା । ଏବଂ ଉଇଲ୍‌ନାମା ହେଇଗଲା । ଘରଟା ସ୍ତ୍ରୀ ନାଁରେ, ତା'ପରେ ପୁଅ ନାଁରେ । ଝିଅ ନାଁରେ ବ୍ୟାଙ୍କରେ ଥିବା ସମସ୍ତ ଟଙ୍କା । ନାତି ନାଁରେ ଗୋଟାଏ କୋଡିଏ ବର୍ଷିଆ ଜମା – ଏମିତି ଏମିତି ସବୁ ବାଣ୍ଟିଦେଇ ସାରିବା ପରେ ମୋତେ କେମିତି ଗୋଟାଏ ହାଲୁକା ଲାଗିଲା । ଲାଗିଲା ଯେ, ମୁଁ ଗୋଟାଏ କ'ଣ ମାତ୍ କରିଦେଇଛି ।"

ଘରେ କ'ଣ କେହି ଜାଣିପାରିଲେ ନାହିଁ ? ଆଚ୍ଛା, ସତେ ତ, ଦିଗମ୍ବର କ'ଣ ନଜାଣି ରହିଥିବ ? ସେ ତ ମୋ ପଛରେ ଛାଇଭଳି ଲାଗିଥିଲା – ସେ କ'ଣ ଧର୍ମାନନ୍ଦ ପାଖରେ ପହଞ୍ଚି ନଥିବ ? ତା'ହେଲେ... ତା'ହେଲେ ଆଉ କ'ଣ ? ସେମାନେ ସବୁ ଜାଣିଛନ୍ତି ଏବଂ ଚୁପ୍‌ଚାପ୍ ରହିଛନ୍ତି ! ବୁଢାମାନଙ୍କୁ ପାଇଚି ଯଦି ଏ ଭଲ କାମ ବରଂ ହେଇଯାଉ । ସେଥିରେ ପଚରାଉଚୁରା କରିଦେଲେ କାଳେ ଭଣ୍ଡୁର ହେଇଯିବ । କାଳେ ମୁଁ ଚିଡିଯାଇ ସେ ଉଇଲ୍‌ନାମାଟିକୁ ରଦ୍ଦ କରିଦେବି । ତା'ହେଲେ ଭାରି ଅଡୁଆ କଥା ନୁହେଁ କି ?

ଏଣିକି ମୁଁ ଯାହା କଲେ ବି ବୋଧହୁଏ କିଛି ଯାଏଆସେ ନାହିଁ । ଛପକିନା ବୁଢା ପଛଆଡୁ ଝାମ୍ପଦେଲାପରି କଥାଟା ମନକୁ ଆସିଗଲା । ମୁଁ ଏଣିକି ସତକୁସତ ସେ ଗାମୁଛା ବେକରେ ବାନ୍ଧି ଓହଳିଗଲେ ବି କିଛି ଯାଏଆସେନାହିଁ ।

ମୋତେ ସେ ସମ୍ଭାବନାଟିକୁ ହସି ଉଡେଇ ଦେବାକୁ ଇଚ୍ଛା ହେଲାନାହିଁ । ମୁଁ ବରଂ ଖୁବ୍ ସହଜବୋଧକଲି । ଧର ଯଦି ତାହା ହୁଏ ମନ୍ଦ କ'ଣ ? ଏମାନେ ବୋଧହୁଏ ଆଉ ପ୍ରତିବାଦ କରିବେ ନାହିଁ, କାରଣ ଆଉ ତ ଜଗାଜଗି ସେତେ କଲାଭଳି ମନେ ହେଉନାହିଁ !

ତା' ବାହାରେ ହାତଗୋଡ ଅଚଳ ହେଲା ପର୍ଯ୍ୟନ୍ତ ଏମିତି ବସି ରହିବାର ଅର୍ଥ କ'ଣ ? ପ୍ରକୃତରେ ସ୍ୱାଧୀନ ଲୋକଟିଏ ହିଁ ଏମିତି ସ୍ୱେଚ୍ଛାରେ ଏଇଠୁ ବିଦାୟ ନେଇପାରେ । ମୋ ସମ୍ପତ୍ତିକୁ ମୁଁ ଯେମିତି ବାଣ୍ଟିଦେଇପାରିଲି ସେମିତି ଏ ଦେହଟିକୁ ମଧ୍ୟ ଝୁଲେଇଦେଇପାରେ !

ଭାରି ଅଜବ୍ କଥା ତ ! ମୋତେ ନିଶାଭଳି ଏଇଟା ଘାରି ରଖିଛି କାହିଁକି ? ମୁଁ ସତକୁସତ ଝୁଲିଯିବି କି ଆଉ ?

ମୁଁ ଦିନେ ବସି ଖୁବ୍ ସାହସରେ ଏବଂ ସହଜରେ ସବୁ କଥା ଆମୂଳଚୂଳ ଭାବିଗଲି । ମଝିରେ ନିଶ୍ୱାସ ରୁନ୍ଧିଲା ପରି ଲାଗିଲା । ମୁଁ କିନ୍ତୁ ବାରମ୍ବାର ସେଇ ଚିନ୍ତାରେ ବୁଡି ରହିବାକୁ ଚାହିଁଲି ।

ମଝିରେ ମୋ ସ୍ତ୍ରୀ ଆସି ଝିଅ ପାଇଁ ଶାଢୀ ଚୂଡି କିଣିବାକୁ ପଇସା ମାଗିଛି । ପୁଅ ଆସି କ'ଣ ଘର ଟାକ୍ସ କଥା ପଚାରିଛି । ମୁଁ ମୋର ସବୁ ଭଲ ଭଲ ପୋଷାକ ଦେଇ ଦେଇଛି – କେହି କିଛି ସନ୍ଦେହ କରିନାହାନ୍ତି । ଆଗଭଳି ଜେରା କରିନାହାନ୍ତି । ସେମାନେ ବୋଧେ ଭୁଲିଗଲେଣି

ଅଥବା ସେମାନେ ବୋଧେ ଜାଣିଗଲେଣି । ସେମାନେ ହୁଏତ ଋହିଁଲେଣି !

ମୁଁ ସେ ବଖରାଆଡେ ଯିବାଆସିବା କଲେ କେହି ଆଉ ମୋ ପଛେ ପଛେ ଆସୁନାହିଁ । ମୁଁ ସେଇଠି ଠିଆହେଇ ସେ ଲୁହାଫାନ୍ଦକୁ ଋହିଁ ରହିଲେ କେହି ସେମିତି ଚମକୁ ନାହିଁ ।

ଠିକ୍ ଅଛି ତା'ହେଲେ ! ଗୋଟାଏ ଦିନ ବାର ବେଳା ବାଛିବାକୁ ପଡିବ । ମୁଁ ପାଞ୍ଜି ଫିଟେଇ ପତ୍ର ଲେଉଟାଇବା ସମସ୍ତେ ଦେଖିଛନ୍ତି । ମୁଁ ଦିଗମ୍ବରକୁ ପଋରିଛି ଦଶ ତାରିଖ ତା'ର କ'ଣ କିଛି ଅସୁବିଧା ଅଛି କି ? ସେ ବିସ୍ମିତ ହୋଇନାହିଁ । ମୋତେ କାହିଁକି ବୋଲି ପଋରି ନାହିଁ । ବରଂ କହିଛି, ଅନ୍ୟମନସ୍କ ଥିଲା ପରି – "ନାଇଁ ବାପା, ସେଦିନ ମୋର କିଛି ଅସୁବିଧା ନାହିଁ ।"

ତା'ହେଲେ ହେଲା ପକ୍‌କା !

ପାହାନ୍ତିଆ ପହରଟା ବଢିଆ । ସେତିକିବେଳେ ସବୁ ନୀରବ ଥାଏ । ବେଶ୍ ଚୁପ୍‌ଋପ୍ । କ'ଣ ଗୋଟାଏ ବିଶିଷ୍ଟ ଘଟଣା ଘଟିବାକୁ ଅପେକ୍ଷା ଥାଏ । ମୋ ନିଦ ଠିକ୍ ସେଇ ସମୟକୁ ସବୁଦିନ ଭାଙ୍ଗିଯାଏ । ଦଶତାରିଖ ପାହାନ୍ତିଆ । ମୁଁ ମୋର ନିତ୍ୟକର୍ମ ସାରି ପ୍ରସ୍ତୁତ ହୋଇଗଲି ।

ସତେ କ'ଣ ସେଭଳି ବେକୁବ୍ କର୍ମ୍ମ କରିବି ନା କ'ଣ ! ଆବେ ବେକୁବ୍ କାମ କ'ଣ ? ପୃଥିବୀରେ କେତେବେଶ୍ ବଡଲୋକ ଏ କାର୍ଯ୍ୟ କରିଛନ୍ତି । ହଉକି ନହଉ ଥରେ ସେ ବଖରାଆଡେ ବୁଲି ଆସିଲେ କ୍ଷତି କ'ଣ ?

ମୋ ବୁକୁ ଧଡଧଡ ହେବାର ମୁଁ ଅନୁଭବ କଲି । ମୁଁ ସେ ବଖରା ପାଖରେ ଠିଆ ହୋଇ ରହିଲି । କବାଟରେ ହାତ ମାରିବାରୁ ଫିଟିଗଲା । ତା'ପରେ ମୁଁ ଯାହା ଦେଖିଲି ଦେଖି ଚମକିପଡିଲି । ଲୁହାଫାନ୍ଦରୁ ଗାମୁଛାଟା ଓହଳିଥିବାର ଦେଖି ମୋ ଦେହସାରା କମ୍ପିଲା ।

ମୋତେ କ'ଣ ସେମିତି ଭ୍ରମ ହେଉଥିଲା ! ମୁଁ ସେ ଗାମୁଛାଟାକୁ ଛୁଇଁବାକୁ ସାହସ କରିପାରିଲିନାହିଁ ପ୍ରତିଟି ମୁହୂର୍ତ୍ତ ଲୁହାଗୋଟାଳି ପରି ଗଡିଯାଉଥିଲା । ନା ସେଇଟା ଭ୍ରମ ନଥିଲା, ଗାମୁଛା ନିଶ୍ଚୟ ଟଙ୍ଗା ହେଇଥିଲା । ତା'ର ତଳମୁଣ୍ଡରେ ଫାଶ ବି ପଡିଥିଲା । ଆଶ୍ଚର୍ଯ୍ୟ ! ତା'ହେଲେ ଆଗରୁ ସବୁ ପ୍ରସ୍ତୁତ ହୋଇ ରହିଛି । କିନ୍ତୁ ପ୍ରସ୍ତୁତ କରିଛି କିଏ ?... କିଏ ?... କିଏ ?

ଯିବି କି ସେମାନଙ୍କ କବାଟ ବାଡେଇ ତାଙ୍କୁ ଉଠେଇବି ? ପଋରିବି କିଏ ଏମିତି କରି ରଖିଛି...ଲାଭ କ'ଣ ?

ବୁଝାଗଲା ଯେ, ସେମାନେ ବି ଏଇଆ ଋହାଁନ୍ତି । ମୁଁ ବଖରା ମଝିକୁ ଯାଇ ସେ ଗାମୁଛାରେ ହାତ ମାରିଲି । ସେଇଟା ଗୋଟାଏ ତଳମୁହାଁ ଅହିରାଜ ପରି ଝୁଲିଗଲା । ବାବା କି ସୁନ୍ଦର !

ତା'ପରେ ଆପଣ ଯାହା ଶୁଣିଛନ୍ତି ସେକଥା ସମସ୍ତେ ଶୁଣିଛନ୍ତି । ଖବରକାଗଜରେ ବି କୁଆଡେ ବାହାରିଥିଲା । ସେମାନେ କହୁଛନ୍ତି ଯେ, ଦଶତାରିଖ ଶନିବାର ଦିନ ସକାଳୁ ସେମାନେ ଦେଖିଲେ ଯେ ପଙ୍ଖାପାଇଁ ରହିଥିବା ଲୁହାଫାନ୍ଦରେ ଗାମୁଛା ବାନ୍ଧି ମୁଁ ଝୁଲିଯାଇଥିଲି । ସେମାନେ ଖୁବ୍ ପାଟିତୁଣ୍ଡ କଲେ । ଯଥାବିଧି କନ୍ଦାକଟା କଲେ । କ୍ରିୟାବିଧି କଲେ, ସତ୍କାର କଲେ । ଆଉ କ'ଣ କରିଥାନ୍ତେ ବିଚରାମାନେ ?

ତା'ହେଲେ ଆପଣ ବି ସେମାନଙ୍କ କଥାରେ ବିଶ୍ୱାସ କରିଗଲେ ? ଆସି ଘେରାଏ ବୁଲିଗଲେ ନାହିଁ – ସବୁ ଜାଣିପାରିଥାନ୍ତେ । ଆପଣ ଆସିଥିଲେ ମୁଁ ହିଁ କବାଟ ଫିଟାଇ ଆପଣଙ୍କୁ ପାଛୋଟି ନେଇଥାନ୍ତି। ଆପଣ ତାଟକା ହୋଇ ଚାହିଁଥାନ୍ତେ । ହୁଏତ ଆପଣଙ୍କ ଭିତରୁ କେହି ଜଣେ ସାହସ କରି ମୋ ଦେହରେ ଚିପମାରି ପରଖିଥାନ୍ତେ । କିନ୍ତୁ କେହି ସେପରି ଆସିନାହାନ୍ତି କି ପରଖ କରିନାହାନ୍ତି । ଏପରିକି ଆପଣ ଭାବିନାହାନ୍ତି ଏଇଟା କେମିତି ଧରିତ୍ରୀ ଜନ୍ମବିଶେଷାଙ୍କରେ ଗଳ୍ପ ବିଭାଗରେ ଛପାହେଲା ଏବଂ ଆପଣ ତାକୁ ପଢିଲେ ? କିଏ ଦେଲା ଏ ଗଳ୍ପ ସେମାନଙ୍କୁ ?

ଯେ ଯାଇଥିଲା ଆଣିବାକୁ ତାକୁ ଆପଣ ପଚାରନ୍ତୁ ସେ କାହା ହାତରୁ ଗଳ୍ପ ନେଇଛି ।

ମୁଁ ହିଁ, ତାକୁ ବଢେଇଦେଇଥିଲି । ଡେରିହେଲା ବୋଲି ଦୁଃଖ ପ୍ରକାଶ କରିଥିଲି । ସେ ଅବଶ୍ୟ ମୋତେ ସେମିତି ନିଠେଇ ଚାହିଁ ନାହିଁ ବୋଲି ଆପଣ କହିବେ – ନହେଲେ ସେ ନିଶ୍ଚୟ ଜାଣିପାରିଥାନ୍ତା । ସେ ମୋତେ ଚିପ ମାରିନାହିଁ – ନହେଲେ ନିଶ୍ଚୟ ଜାଣି ପାରିଥାନ୍ତା । ଆପଣ ତା'ହେଲେ ଭାବୁଛନ୍ତି ଏଇଟା ସମ୍ଭବ ! ମୁଁ ଦଶ ତାରିଖ ଶନିବାର ପରେ ମଧ୍ୟ ଗଳ୍ପଟାଏ ଲେଖିପାରେ ଏବଂ ନିଜ ହାତରେ ଜଣକୁ ବଢାଇଦେଇପାରେ ?

ଯଦି ନୁହେଁ, ତାହାଲେ ମିଥ୍ୟା ରଚନା ହେଇଚି । ସେ ଦଶ ତାରିଖ ଘଟଣା ସବୁ ମିଛ । ଗାମୁଛାରେ ଓହଳିଥିବା ମଣିଷକୁ ଓହ୍ଲେଇ ଆଣି ତା'ର ସତ୍କାର ଆଦି କରିବା – ଏତେ କନ୍ଦାକଟା କରିବା – ସବୁ ମଛି ।

ଆପଣ କ'ଣ ଠିକ୍ କଥାଟା ଜାଣିବାକୁ ଚାହୁଁଛନ୍ତି ? ତା'ହେଲେ ଆସୁନାହାନ୍ତି ବସି କଥାବାର୍ତ୍ତା ହେବା । ନହେଲେ ଯଦି ଆପଣ ଚାହାଁନ୍ତି ମୁଁ ଆସିବି ଆପଣଙ୍କ ପାଖକୁ । କହୁନାହାନ୍ତି କେବେ ଆସିବି ?

ଆପଣ ଡରୁଚନ୍ତି କି ? ସେସବୁ କିଛି ନୁହେଁ । ମୋତେ ଡରନ୍ତୁ ନାହିଁ । ମୋତେ ଆପଣ ସେମିତି ଦେଖିଛନ୍ତି ଆଉ ଥରେ ସେମିତି ଦେଖିନେଲେ ହିଁ ତ ଆପଣଙ୍କର ସବୁ ସନ୍ଦେହ ତୁଟିଯିବ !

ହଁ ଗୋଟାଏ କଥା – ମୁଁ ଯେଉଁଠି ରହୁଥିଲି, ମାନେ ମୋର ପରିବାର ଯେଉଁଠି ରହୁଛନ୍ତି, ମୋତେ ସେଇଠି ଆପଣ ପାଇବେ ନାହିଁ । ସେଇଠି ପହଞ୍ଚିଲେ ସେମାନେ ଆପଣଙ୍କୁ ସେଇ ଦଶ ତାରିଖ ଘଟଣା ହିଁ ପୁଣିଥରେ ଲୁହ କୋହ ମିଶେଇ ଶୁଣେଇବେ ।

ଆପଣ ବରଂ ଅନ୍ୟ ଜାଗାରେ ମୋତେ ଭେଟନ୍ତୁ । ସନ୍ଧ୍ୟାବେଳେ, ମେଘାସନ ଉପରେ ସୂର୍ଯ୍ୟ ବୁଡିଯାଉଥିଲା ବେଳେ, ବାରିପଦା ପାଣିଟାଙ୍କି ପାଖରେ ଉଚ୍ଚ ହୁଡା ଉପରେ ମୁଁ ବସିଥିବି । ଆପଣ ଆସି ମୋ ବାଁ ପାଖେ ବସିବେ । ଏକାଠି ଆମେ ସୂର୍ଯ୍ୟାସ୍ତ ଦେଖିବା । ସେଇଠୁ ଚିପଟ୍ ପୋଲ ଦିଶୁଥିବ । ମୁଁ ଆପଣଙ୍କୁ ସବୁକଥା କହିବି ।

ନତୁବା ଅସରାଏ ବର୍ଷାହେଇ ଛାଡିଯାଇଥିବ । ଜୟପୁର ନାକଟି ଡଙ୍ଗର ମୋଡ ପାଖରେ କୋରାପୁଟ ଘାଟି ଉଠାଣି ପାଖରେ ଓଦା ଓଦା କୁନ୍ଦଫୁଲ ଫୁଟିଥିବ । ଏମିତି ଉପରଓଳି ସମୟ । ଖୁବ୍ ନିରୋଳା ଭାରି ଗମ୍ଭୀର । ଦୂରନ୍ତ ଦିଶୁଥିବ ଘାଟିତଳର ଜଙ୍ଗଲ । ସେଇ କୁନ୍ଦଫୁଲ ତୋଳୁଥିବା

ବେଳେ ମୋତେ ଆପଣ ପଛରୁ ଡାକିବେ ନାହିଁ । ପାଖରେ କିଛି ସମୟ ଠିଆହେଲେ ମୁଁ ଜାଣିଯିବି । ତା'ପରେ ଆପଣ ଚାହିଁଲେ ନିଜେ କିଛି ଫୁଲ ତୋଳିପାରନ୍ତି । ମୋ ସାଙ୍ଗେ ସୁଖ ଦୁଃଖ ହୋଇପାରନ୍ତି ।

ସକାଳ ବେଳା ପୁରୀ ବେଳାଭୂମିକୁ ଆସୁନାହାନ୍ତି – ସେଇଠି ଦେଖାହେବ ! ସୂର୍ଯ୍ୟ କଅଁଳା ବାଛୁରୀଟିଏ ପରି ସମୁଦ୍ରକୁ ଡେଇଁପଡିଲା ବେଳକୁ ମୁଁ ଏକଲୟରେ ଚାହିଁ ଠିଆ ହୋଇଥିବି ଓଦା ବାଲି ଉପରେ । ପାଦଟେକି ଘୁଞ୍ଚିଗଲେ ଖୁବ୍ ଗହୀର ପାଦ ଚିହ୍ନ ଉପରେ ସମୁଦ୍ରର ଫେଣମିଶା ପାତଳ ଚଦର ପରି ଲହରି ମାଡିଯିବ । ପାଦଚିହ୍ନ ଲିଭିଯିବ – ମୋର ବି – ଆପଣଙ୍କର ବି ! ହୁ-ହୁ ପବନ ବହୁଥିବ । ନୋଳିଆ କାଠଡଙ୍ଗା ଠେଲି ନେଉଥିବେ ଅମାନିଆ ସମୁଦ୍ରକୁ । ଉପରେ ମାଛରଙ୍କା ଚଢେଇମାନେ ଉଡି ବୁଲୁଥିବେ । ଶଙ୍ଖମାଳି ବିକାଳି ଟୋକା ଆମକୁ ନଚାହିଁ ଚାଲିଯିବ ।

ଯଦି ଡେରିହୋଇଯାଏ ଆପଣଙ୍କୁ ତା'ହେଲେ ମୁଁ ଅରୁଣଖମ୍ବ ପାରିହେଇ ବାଇଶିପାହାଚ ଉଠୁଥିବି – ମୋତେ ଆପଣ ପଛରୁ ଚିହ୍ନିଯିବେ । ଯଦି ନିହାତି ଚାହାନ୍ତି ତା'ହେଲେ ମୋ ସାଙ୍ଗରେ ଆପଣବେଢା ବୁଲି ଆସିବାକୁ ହେବ । ନୀରବରେ ଗରୁଡ ପଛରୁ ଠାକୁର ଦର୍ଶନ କରିବାକୁ ହେବ । ସେଇଠୁ ଆନନ୍ଦବଜାର ପାରିହୋଇ ସ୍ନାନମଣ୍ଡପ ଉପରେ ଏକାଠି ବସିବା । ସେଇଠୁ ବଡଦାଣ୍ଡ ଦିଶୁଥିବ । ମୁଁ ଢେରକଥା ବି ଜାଣିଯିବି ।

ମାଈ ସଞ୍ଜବେଳେ ବିଜୁଳି ଆଲୁଅ ଲାଗିସାରିଥିବ । ପାନପୋଷ ଛକ ପାଖରେ ବାଁ ଡାହାଣ ସ୍ଥିର କରିନପାରି ମୁଁ ଦୋଦୋପାଞ୍ଚ ହୋଇ ଠିଆ ହେଇଥିବି ଏକୁଟିଆ । ଆପଣ ମୋତେ ଚିହ୍ନି ମୋ ପାଖକୁ ଆସିବାମାତ୍ରେ ମୁଁ ବୁଝିଯିବି । ଆପଣଙ୍କ ସାଙ୍ଗରେ ତେଣିକି ଯୋଉଆଡେ ଚାହିଁବେ ମୁଁ ଯିବାକୁ ପ୍ରସ୍ତୁତ । ନିରୋଳାରେ ପାନ ବରାଦକରି ଗଛମୂଳେ ଅଳ୍ପ ଅନ୍ଧାରରେ ମୁହାଁମୁହିଁ ଠିଆହେଲା ପରେ ଆପଣ ଯାହା ପଚାରିବେ ମୁଁ କହିବି ।

ନତୁବା ଧନୁପାଲି ପୋଲ ପାଖରେ ଦେଖାହେଇପାରେ । ଜିରା ନଦୀ ପୋଲ ପାରିହେଇ ସୋହେଲା ମୋଡ ପାଖରେ ଦେଖାହେଇପାରେ । ମଲ୍ଲୀକାଶପୁରରେ ସେନାପତିଙ୍କ ସ୍ମୃତିପୀଠ ପାଖକୁ ମୁଁ ବେଳେବେଳେ ଯାଏ ଶୀତରାତିରେ । ଖରାଦିନ ସଂଜବେଳେ ମନୋହରପୁର ରାସ୍ତାରେ ରାଣୀ-ସାଗର ହୁଡା ଉପରେ ବାମ୍ଫୁଆ ପବନରେ ବସିରହେ ଅନେକ ସମୟ ।

ୟା ବାହାରେ ଆପଣ ଯୋଉଠି ଚାହିଁବେ ପାରଳା, ବ୍ରହ୍ମପୁର, କଟକ ଏପରିକି ଭୁବନେଶ୍ୱରରେ ବି ମୁଁ ସେଠି ଆସି ଆପଣଙ୍କୁ ଦେଖାକରିପାରେ । ମୋର ଗୋଟିଏ ଉଦ୍ଦେଶ୍ୟ ଆପଣଙ୍କର ପ୍ରତ୍ୟୟ ଆଣିଦେବା ଯେ ସେ ଦଶ ତାରିଖ ଘଟଣା ସବୁ ମିଛ । ମୋ ପାଇଁ ସେ କାର୍ଯ୍ୟଟି ସଂପୂର୍ଣ୍ଣ ହାସ୍ୟାସ୍ପଦ । ମୁଁ ତା' କଦାପି କରିପାରିବିନାହିଁ । କିନ୍ତୁ ତା' ଘଟିଛି ବୋଲି ପ୍ରବଳ ଜନରବ । ସେଥିପାଇଁ କହୁଛି ଆପଣଙ୍କ ସହିତ ଥରେ ନିହାତି ସାକ୍ଷାତ ହେଇଯିବା ଉଚିତ । ଅବଶ୍ୟ ଗୋଟିଏ ଅନୁରୋଧ – କୌତୁହଳରେ ବି ଆପଣ ମୋତେ ଛୁଇଁବାକୁ ଚାହିଁବେ ନାହିଁ । କାରଣ – ଆପଣ କାରଣ ଜାଣିବାକୁ ଚାହାନ୍ତି ? କାରଣ ଛୁଇଁଦେଲେ ମୁଁ ଉଭାନ ହୋଇଯାଇପାରେ । □

# ବର୍ଷକ ଏକ ଋତୁ : ଋତୁକ ତିନି ଦିନ

ଝର୍କା ଆରପଟେ ମୋ ଅଲକ୍ଷ୍ୟରେ ସମୟ ଢଳିଯାଉଥିଲା । ମୁଁ ଆନମନା ବସି ରହିଥିଲି ଏକୁଟିଆ । ଅଫିସରେ କାମ ନଥିଲା ।

ମୋତେ ଅଜବ ଧରଣର ଭାରଶୂନ୍ୟତା ଅନୁଭବ ହେଉଥାଏ । ଖୁସ୍‌ଖୁସିଆ ଲାଗୁଥାଏ, ଉଶ୍ୱାସ ଲାଗୁଥାଏ ଫୁଲପରି । ଅକାରଣ ଉଲ୍ଲାସ ଲାଗୁଥାଏ । ପବନ ଲାଗୁଥାଏ ରେଶମପରି ନରମ । ଖୁବ୍...ଖୁଉବ୍ ହାଲୁକା । ତା'ହେଲେ କ'ଣ ବସନ୍ତ ଆସିଗଲା ? ଏତେ ଚଞ୍ଚଳ...ଏଇ ଜାନୁଆରୀ ମାସଟାରେ ? ଚଞ୍ଚଳ ଆଉ କ'ଣ ? ହେଇପରା ମକର ଆସିଗଲା ! କୋଡିଏ ତାରିଖରେ ବସନ୍ତପଞ୍ଚମୀ । ଓ...ସତେତ ! ବସନ୍ତ ଆସିଗଲା ତା'ହେଲେ !

ଝରକାବାଟେ ମୋତେ ଦିଶିଗଲା ଉଦ୍ୟାନ ବିଭାଗର ବଗିଚାରେ କଲମି ଆମ୍ବଗଛ ଭିତରୁ ଗୋଟାଏ ମୁକୁଟ ପିନ୍ଧିଲାପରି ବଉଳରେ ଲଦିହେଇରହିଛି ।

ମୁଁ ଝର୍କା ପାଖକୁ ଉଠିଯାଇଥିଲି । ଛ'ତାଲା ଉପରୁ ଚାହିଁଥିଲି ଡେଣା ମେଲିଥିବା ନୀଳ ଆକାଶକୁ । ପବନରେ ଛୋଟ ଛୋଟ ଦୁଷ୍ଟାମି ସବୁ ଉଡିବୁଲୁଥିଲେ । ବେପରୁଆ କାହାର ବାଳ କେରାଏ ମୁହଁ ଉପରକୁ ଫୁଙ୍କିଦେବା ଭଳି, ଦେହରୁ ଲୁଗା ଗହଳେଇ ଦେବାଭଳି ମୁଲାଏମ୍ ଅପରାଧ କରିବାର ଇଚ୍ଛା ପହଁରି ବୁଲୁଥିଲା ପବନର ଢେଉରେ ।

ମୋତେ ଉସତ ଲାଗୁଥିଲା । ହାତ ମନ୍ଥି ଭାବୁଥିଲି ଫେରିଲାବେଳେ କ'ଣ ନେଇ ଘରକୁ ଯିବି ! ଗଜରା ମାଳଟିଏ ନେଲେ ବଢିଆ ହୁଅନ୍ତା ! ରାତି ସାରା ମହକୁଥାନ୍ତା ଘର ସାରା ।

ଧୁତ୍... ମୁଣ୍ଡ ଖରାପ ନା କ'ଣ ? ପଞ୍ଚାବନ ବର୍ଷ ବୟସରେ ଫୁଲ କିଣିବାକୁ ବେଳ ଅଛି ? ତୁମ ଝରକା ନଥିବା ରନ୍ଧାଘରେ ଚୁଲ୍ଲୀଧାସରେ – ଆମିଷ ନିରାମିଷ ସିଝା ଗନ୍ଧରେ – କେତେବେଳେ କେଉଁ ଋତୁ ପାରିହୋଇଯାଏ କ'ଣ ଜଣାପଡେ ? ପିଲାଙ୍କ ଜଞ୍ଜାଳରେ ଗଜରା ପିନ୍ଧିବାକୁ ତର କାହିଁ ?

ଛାଡ, ବରଂ କିଛି ମଟର ଆଉ ଫୁଲକୋବି ନେଇଯିବା । ମାଛକୁତ ଏତେ କାଳେ କ'ଣ ରୋଗ ଗ୍ରାସିଚି ଯେ, ସେ ପାଖ ପଶିବା ମନା – ନହେଲେ ବା କିଛି କଟାରୋହି ନେଇ ପହଞ୍ଚିଥିଲେ ଉସ୍ତବ ଉସ୍ତବ ଲାଗିଥାନ୍ତା ।

ଏତିକିବେଳେ ସେଥିରୁ ଯୋଡାଏ କବାଟ ଠେଲି ପଶିଆସିଲେ – "ସାରେ, ଚଞ୍ଚଳ ଆସନ୍ତୁ । ଡାଇରେକ୍ଟରଙ୍କ ଫୋନ୍‌ରେ ଆପଣଙ୍କୁ ଦିଲ୍ଲୀରୁ କିଏ ଡାକୁଚନ୍ତି । ଡାଇରେକ୍ଟର ନିଜେ ଫୋନ୍

ଧରି କହିଲେ – ଯାଅ, ଦୌଡ଼ିକରି ଡାକି ଆଣିବ ସେନାପତିବାବୁଙ୍କୁ ।"

ମୋ ନାଁ ନିଶାକର ସେନାପତି । ସରକାରୀ ବିଭାଗରେ ଉପନିର୍ଦ୍ଦେଶକ । ଅବସର ନେବାକୁ ଦି'ବର୍ଷ ଚାରିମାସ ।

"ଦିଲ୍ଲୀରୁ କିଏ ମୋତେ ଡାକିବ ? କାହିଁକି ଡାକିବ ? ଆରେ ସେଇଟା ଆଉ କା'ର ହେଇଥିବ । ଭଲକରି ବୁଝିଚ ନା ନାଇଁ ।"

"ହଁ ସାର୍ ! ଡାଇରେକ୍ଟର ପରା ଫୋନ୍‌ରେ ଇଂରାଜୀରେ ପଚାରିଲେ, – କ'ଣ ନିଶାକର ସେନାପତିଙ୍କୁ ଖୋଜୁଛନ୍ତି ? ହଁ ଅଛନ୍ତି, ଆପଣ ଧରିଥାନ୍ତୁ ମୁଁ ଡକେଇ ଦଉଚି ।"

ଦିଲ୍ଲୀରୁ ମତେ କାହିଁକି କିଏ ଡାକିବାକୁ ଯିବ ? ତଥାପି ଡାଇରେକ୍ଟର ଫୋନ୍ ଧରି ଡକେଇଛନ୍ତି ଯେହେତୁ ନଯାଇ ଉପାୟ ନାହିଁ ।

ମୁଁ ଅଫିସ୍‌ରେ ପଶୁ ପଶୁ ଡାଇରେକ୍ଟର ତାଙ୍କ ଅଣାୟତ୍ତରେ ଚୌକୀରୁ ଅଧେ ଉଠିପଡ଼ିଲେ । ମୋ ପ୍ରତି କେମିତି ଗୋଟାଏ ଅସ୍ୱାଭାବିକ ସମ୍ଭ୍ରମ ଓ ଆପଣାପଣ ମିଶିଥିଲା ତାଙ୍କ କଥାରେ, ଆଚରଣରେ ।

"ଆପଣଙ୍କୁ ଆହୁଜା ସାହେବ ଡାକୁଛନ୍ତି ।"

ଆହୁଜା... ?

ମୁଁ ଫୋନ୍ ଉଠେଇଲି – "ସେନାପତି ସ୍ପିକିଂ ।"

ସେଆଡୁ ଟହ ଟହ ହସ ଶୁଭିଲା – "ଆବ୍‌ବେ ସ୍ପିକିଂକେ ବଚ୍ଚେ... ମେ ଜ୍ଞାନ୍ ବୋଲ୍ ରହା ହୁଁ ।"

ହଠାତ୍ ଦିଶିଗଲା ଗୋଟାଏ ଗୋରା ତକ୍‌ତକ୍ ମୁହଁ ଏବଂ ଅସଂଖ୍ୟ ଚିତ୍ର ତିରିଶ ବର୍ଷ ତଳର । ମୁଁ ବୋଧେ ସ୍ଥାନକାଳ ଭୁଲିଗଲି – "ଆବ୍‌ବେ ତୁ ଜ୍ଞାନ୍ ବୋଲ୍ ରହାହେ ? କହାଁ ସେ ?"

"ଜହନ୍ନୁମ୍ ସେ । ତୁମ୍ କୋ ଉସେ କ୍ୟା ମତଲବ୍ ହେ । ଅବ୍ ଶୁନ୍ କାମ୍‌କି ବାତ୍ । ତୁ କହାଁ ମରଗୟା ଥା ଇତ୍‌ନେ ଦିନ୍ । ଖୈର, ମେ କଲ୍ ଆରହାହୁଁ, ମର୍ଣ୍ଣିଂ ଫ୍ଲାଇଟ୍ ସେ । ସାଥ୍ ଧରମ୍ ପତ୍ନୀ ଭି ଆରହିହେ । ତୁମ୍‌ହାରେ ଘର୍ ପହୁଚେଙ୍ଗେ । ମାନୋ ନ ମାନୋ ମେହେମାନ୍ ।"

"କ୍ୟା ବାତ୍ କର୍ ରହାହେ ୟାର୍ ? ୟେ ତୋ ହାମାରି ଖୁଦ୍ କିସ୍‌ମତ୍ ସମଝେଙ୍ଗେ ! ହାଁ ୟେ ଜରୁର୍ ହେ କି ତୁମ୍‌ହାରେ ଲାୟକ ୟହାଁ କୁଛ୍ ମିଲେଗାହି ?"

"ୟୁ ସଟ୍ ଅପ୍ ! ତୋ ଫିର୍ ଦୋସ୍ତ କାଲ୍ ମିଲତେ ହେଁ । ୟେ ହମାରି ଅଫିସଏଲ୍ ଭିଜିଟ୍ ହେଁ । ଓ ଲୋଗ୍ କୁଛ ନ । କୁଛ୍ ଜରୁର୍ କରେଙ୍ଗେ । ମଗର୍ ହମ୍ ରହେଙ୍ଗେ ତୁମ୍‌ହାରେ ଘର୍ !"

ଫୋନ୍ ଥୋଇ ମୁଁ ଚାହିଁଲି । ଡାଇରେକ୍ଟର ଠିଆହୋଇ ରହିଥିଲେ । ଆଉ ତିନିଜଣ ଅଫିସର ଆସି ଠିଆରହିଥିଲେ । ଖୋଦ୍ ମୁଖ୍ୟମନ୍ତ୍ରୀ ସେମାନଙ୍କୁ ପଠେଇଥିଲେ । ଚିଫ୍ ସେକ୍ରେଟେରୀଙ୍କ ହୁକୁମ ନେଇ ଆସିଥିଲେ ।

"ଆଜ୍ଞା ନମସ୍କାର । ଆମେ ଦିଲ୍ଲୀରୁ ଖବର ପାଇ ଆସିଛୁ । ଆହୁଜା ସାହେବ ଆସୁଛନ୍ତି ।

ତାଙ୍କ ସାଙ୍ଗରେ ଆଉ ସାତଜଣ ଅଫିସର । ତାଙ୍କର ତିନିଜଣଙ୍କ ରହଣି ପାଇଁ ସବୁ ବନ୍ଦୋବସ୍ତ ସରିଚି । ହୋଟେଲ ଓବେରାଇରେ ରିଜର୍ଭେସନ୍ ହେଇଯାଇଛି । ସେ କିନ୍ତୁ ତାଙ୍କର ଜଣେ ଦୋସ୍ତଙ୍କ ଘରେ ରହିବେ ବୋଲି ଚାହୁଁଛନ୍ତି ।"

"ନିଶାକରବାବୁ ପରା ଆହୁଜା ସାହେବଙ୍କର ଘନିଷ୍ଠ ବନ୍ଧୁ ।" ଉପରେ ପଡି କହିଲେ ଡାଇରେକ୍ଟର ।

"ବସନ୍ତୁ ସାର୍ !" କହି ଆସିଥିବା ଅଫିସର ମୋ ପାଇଁ ଚୌକୀ ଟାଣିଦେଲେ । ମୁଁ ବସିବାଯାଏଁ ସମସ୍ତେ ଠିଆହେଇରହିଥାନ୍ତି ।

ଡାଇରେକ୍ଟର ବେଲ୍‌ମାରି କଫି ପାଇଁ ଅର୍ଡର ଦେଲେ ଏବଂ କୃତକୃତ୍ୟ ହେଲାପରି ମୋର ଗୁଣବାନ କରି ଚାଲିଲେ । ମୁଁ ସକାଳ ଓଳି ଗୋଟାଏ ଫାଇଲ୍ ବିଷୟ ଆଲୋଚନା କରିବାକୁ ଆସି ଫେରିଯାଇଥିଲି, କାରଣ ଡାଇରେକ୍ଟର ସାହେବ ଗୋଡ ଲମ୍ବେଇ ଫୋନ୍‌ରେ ଦୁଃଖସୁଖ ହଉଥିଲେ ଆମେରିକାରେ ତାଙ୍କ ଝିଅ ସାଙ୍ଗରେ ।

"ଆପଣଙ୍କର ଆଉ କିଛି ଅସୁବିଧା ନାହିଁ । ନିଶାକରବାବୁ ଆହୁଜା ସାହେବଙ୍କୁ ଟିକିଏ ବୁଝେଇ ଦେଲେ ହେଲା । ଆପଣ ସେଇ ଲାଇନ୍‌ରେ ନିଶାକରବାବୁଙ୍କୁ ବଟେଇ ଦିଅନ୍ତୁ ।"

"କଥା କ'ଣ କି ସାର୍, ଆହୁଜା ସାହେବ ହେଉଛନ୍ତି ମୂଳ ଲୋକ । ସେ ଯାହା କହିବେ, ତାହା ହେଇଯିବ । ଆମେ ବନ୍ୟାପାଇଁ ପ୍ରସ୍ତାବ ଦେଇଥିଲୁ । ପରେ ହିସାବ କରି ଦେଖିଲୁ ଯେ ସେ ଫିଗରଟା ଠିକ୍ ନୁହଁ । ସବୁ ହେଡ୍‌ରେ ଡିଷ୍ଟ୍ରିବ୍ୟୁଟ୍ କରିନେବାରୁ ଅଣ୍ଟୁନାହିଁ । ସେଥିପାଇଁ ଆଉ ଅନ୍ତତଃ କିଛି ନହେଲେ ଦଶ କୋଟି ବଢେଇବା କଥା । ସେକଥା ଯେ ଆହୁଜା ସାହେବଙ୍କୁ କହିବ ତାକୁ ସେ କଞ୍ଚା ଖାଇଯିବେ । ତାଙ୍କ ହାବୁଡରେ ଯେ ଥରେ ପଡିଛି ସେ ଜାଣେ ।"

"ରହନ୍ତୁ ସାମଲବାବୁ – ମୁଁ କଥାଟା ସାର୍‌ଙ୍କୁ ବୁଝେଇ ଦିଏ । ସେସବୁ କିଛି ନୁହେଁ ସାର୍ ! ଆହୁଜା ସାହେବ ଆପଣଙ୍କ ଦୋସ୍ତ । ଆପଣ ଖାଲି କହିଦେବେ ଯେ ସେ ଟିକିଏ ରିଭାଇଜଡ୍ ଏଷ୍ଟିମେଟ୍‌ଟିକୁ ଆଖିପକେଇବେ । ମୁଁ ଗୋଟିଏ କପି ଆପଣଙ୍କୁ ଦେଇଦଉଚି – ଆପଣ ତାଙ୍କୁ ଦେଖେଇଦେବେ । ସେ ଦେଖୁ ଦେଖୁ ଜାଣିଯିବେ । ଯଦି କ'ଣ ପଚାରିବାକୁ ଚାହାନ୍ତି, ମୁଁ...ମାନେ...ନିରଞ୍ଜନ ଖୁଣ୍ଟିଆ ସେଇଠି ମହଜୁଦ୍ ଥିବି ।"

ଡାଇରେକ୍ଟର କହିଲେ – "ଆପଣ ସାର୍ ନିଜେ ନଗଲେ..."

"ରହ ହେ, ତମେ କ'ଣ ଜାଣିଚ ? ମୁଁ ନିଜେ ନରହିଲେ କେହି ଆହୁଜାଙ୍କୁ ଫେସ୍ କରିପାରିବେନାହିଁ ।"

"ତା'ପରେ ମୋ ଆଡକୁ ଚାହିଁ "ତାହେଲେ ସାର୍ ଚାଲନ୍ତୁ, ଆଗରୁ ବୁଲି ସବୁ ପ୍ରୋଗ୍ରାମ ଠିକ୍ କରିନେବା ।"

ମୁଁ ଡାଇରେକ୍ଟରଙ୍କୁ ଅନୁମତି ପାଇଁ କହିଲି – "ମୁଁ ସାର୍ ଯିବି ?"

"ସାର୍-ସାର୍, ଆପଣ ଯାଆନ୍ତୁ । ଏଇଟା ପରା ଦେଶ କାମ ।"

ମୁଁ ମୋ କାନକୁ ବିଶ୍ୱାସ କରିପାରିଲିନାହିଁ । ସେ ବୋଧେ ଖୁଣ୍ଟିଆବାବୁଙ୍କୁ ହିଁ କହିଲେ ନା କ'ଣ ? ମୋ ଗୋଡ ହୁଗୁଳିଗଲା ପରି ଲାଗିଲା । ମୋତେ ସେମାନେ ଶୂନ୍ୟେ ଶୂନ୍ୟେ କୁଆଡେ ଟେକିନେଲାପରି ଲାଗିଲା ।

ଓବେରୋଇରେ ବସେଇ ସେମାନେ ତାଲିମ୍ ଦେଉଥାନ୍ତି । ମୁଁ ଓଲୁଙ୍କ ପରି ଚାହିଁଥାଏ, ସବୁ କଥାକୁ ହଁ ମାରୁଥାଏ ।

ଟେବୁଲ୍‌ରେ ଗୋଟାଏ ବୋତଲ ଏବଂ ଚାରିଟା ଗ୍ଲାସ ଆସି ପହଞ୍ଚିଲା । ମୁଁ ପିଏନାହିଁ ବୋଲି କହିବାରୁ ଖୁଣ୍ଟିଆ ସାହେବ ପାଟିକରି ଉଠିଲେ – "କିଏ ମଗେଇଲା ଡ୍ରିଙ୍କ୍ ! ସାର୍ ଛୁଅନ୍ତି ନାହିଁ ବୋଲିଜାଣିନା ? ମୁଁ ସାର୍ ଆଦୌ ପିଏନାହିଁ । ଏମିତି ପାର୍ଟି ଫାଟିରେ କେତେବେଳେ କେମିତି...ହେ ହେ...ଆବେ ଏଗୁଡାକ ଉଠା ! ଏ ଟେବୁଲ୍‌କୁ ପୋଛ୍ । କିଛି ମନେକରିବେ ନାହିଁ ସାର୍... ଏଗୁଡାକ ଅଭ୍ୟାସରେ ଏମିତି କରିପକାନ୍ତି ।"

"ଆଚ୍ଛା ଖୁଣ୍ଟିଆ ସାହେବ, ମୁଁ ତା'ହେଲେ କପିଟା ନଉଚି । କାଲି ଆପଣଙ୍କ ଆହୁଜା ସାହେବଙ୍କୁ ଦେଖେଇଦେବି ।"

ଖୁଣ୍ଟିଆ ହସି ହସି ମେଞ୍ଚା ହୋଇଗଲେ । ତାଙ୍କ ଦେଖାଦେଖି ଆଉ ଦୁଇଜଣ ମଧ ସେଇଆ କଲେ । ମୁଁ କାବାହେଇ ଚାହିଁଥାଏ ।

ଖୁଣ୍ଟିଆ ସେଇ ହସ ଭିତରେ କହିଲେ – "ସାର୍ କେମିତି ଜୋକ୍ କଲେ ଦେଖିଲନା ନାଇଁ । "ଆପଣଙ୍କ ଆହୁଜା ସାହେବଙ୍କୁ ଦେଖେଇବି ।" ବୁଝିଲ ନା ନାଇଁ ସାମଲବାବୁ ? ଆମକୁ ସିନା ଆହୁଜା ସାହେବ...ସାର୍‌ଙ୍କର ପରା ଦୋସ୍ତ ! ଶୁଣିଲ ନା ନାଇଁ ଫୋନ୍‌ରେ "ଷ୍କାନ, ତୁ" ବୋଲି କହୁଥିଲେ ।"

ସମସ୍ତେ ଏକା ସାଙ୍ଗରେ ଉଠିପଡିଲେ । ଖୁଣ୍ଟିଆ କହିଲେ – "ମୁଁ ସାର୍ ଆପଣଙ୍କ ବିନାନୁମତିରେ ଡିନର ପାଇଁ ଅର୍ଡର ଦେଇଦେଇଛି ।"

ମୁଁ ଜାଣିଥିଲି ସେ ସେପରି କିଛି କହିନଥିଲେ । କାରଣ ମୂଳରୁ ମୁଁ ସେଇଠି ଥିଲି । କେଜାଣି ଆଗରୁ ଯଦି କହିଥିବେ ।

"ଆଇ ଆମ୍ ସରି । ମୁଁ ଟିକିଏ ଆଗରୁ ନଗଲେ କାଲିପାଇଁ କିଛି ଏରେଞ୍ଜମେଣ୍ଟ୍ ହେଇପାରିବନାହିଁ ।"

ସାମଲବାବୁ କହିଲେ – "ଠିକ୍ କଥା !"

ଖୁଣ୍ଟିଆ ଚିଡିଯାଇ କହିଲେ – "ହ୍ୱାଟ୍ ଠିକ୍ କଥା । ସାର୍ କ'ଣ ଏରେଞ୍ଜ କରିବେ, ଆମେ ଥାଉ ଥାଉ ? ସାର୍, କ'ଣ କରିବାକୁ ହେବ କହନ୍ତୁ – ଆମେ କରିଦେବୁ ! କାଲି ପାଇଁ ଲଞ୍ଚ୍ ଏଠୁ ନେଇଗଲେ କେମିତି ହୁଅନ୍ତା ସାର୍ ! ମାନେ ଆହୁଜା ସାହେବଙ୍କ ରୁଚି ଅନୁସାରେ ଯାହା ଚାହିଁବେ –"

"ଏଗୁଡା କ'ଣ ସାର୍‌ଙ୍କୁ ପଚାରୁଛନ୍ତି ମ ! ଆମେ ଏଣ୍ଟାୟାର ଫାମିଲି ପାଇଁ ନେଇଯିବା ।

ଘରୋଇ ଡିସ୍ ତିଆରି କରିବାକୁ କହିବ ଯେମିତି ଜଣାପଡିବ ନାହିଁ ହୋଟେଲ ଜିନିଷ ବୋଲି ଆଜିଠଉଁ 5271 ଗାଡିଟା ସାର୍‌ଙ୍କ ଡିସପୋଜାଲ୍‌ରେ ତିନିଦିନ ରଖିଦିଅ । ବିଶ୍ୱାଳ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିଅରଙ୍କୁ କହିଦିଅ ଜିପ୍ ନେଇ ଡ୍ୟୁଟିରେ ରହିବ ତା'ର ଦୁଇଜଣ ଷ୍ଟାଫ୍ ନେଇ । ସେ ବି.ଡି.ଓ. ଆସିଛି ପରା । ତାକୁ ରେସନ୍ ଆଦି ଯୋଗାଇ ଦେବାପାଇଁ ଇନ୍‌ଷ୍ଟ୍ରକ୍‌ସନ୍ ଦେଇଦିଅ ।"

ମୁଁ କହିଲି ଧୀରେ ଅଥଚ ଦୃଢ଼ତାର ସହିତ – "ଆପଣ ମୋତେ ଟିକିଏ ଘରେ ଡ୍ରପ୍ କରିଦେଇପରିବେ କି ? ଆଉ କିଛି କରିବା ଦରକାର ନାହିଁ । ତା'ପରେ ଯଦି ପାରନ୍ତି କାଲି ଏରୋଡ୍ରମ୍ ଗଲାବେଳେ ମୋତେ ପିକ୍ ଅପ୍ କରିନେଇପାରିଲେ ଭଲ ହୁଅନ୍ତା । ନହେଲେ ବି ମୁଁ ମୋର ବନ୍ଦୋବସ୍ତରେ ଯିବି; ସେଥିରେ ଯାଏଆସେ ନାହିଁ ।"

"ଆପଣ ବୋଧେ ରାଗିଲେ ସାର୍ ! ଆମେ ସେମିତି କିଛି ଅଫେନ୍‌ସ ମିନ୍ କରି ନଥିଲୁ ! ମୁଁ ସାର୍‌ଙ୍କୁ ନିଜେ ଘରେ ଯାଇ ଡ୍ରପ୍ କରିଦେଇଆସୁଛି ।"

"ନାଇଁ, ଆପଣ ବରଂ ଅନ୍ୟାନ୍ୟ କଥା ବୁଝନ୍ତୁ ଆଉ, ଯେଉଁ ସାତଜଣ ଅଫିସର ଆସୁଛନ୍ତି ତାଙ୍କ ପାଇଁ ବନ୍ଦୋବସ୍ତ କରନ୍ତୁ । ଡ୍ରାଇଭରକୁ କହିଦେଲେ ସେ ମୋତେ ନେଇଯିବ ।"

5271 ଗାଡିକୁ ଡକାଇ ଖୁଣ୍ଟିଆ କହିଲେ – "ଆରେ ସୁଦାମ, ତୁ ସାର୍‌ଙ୍କ ପାଖରେ ଡ୍ୟୁଟି କରିବୁ । ବନଓ୍ୱାରୀ ପାଖରୁ ତୋର ଯାହା ତେଲ ନେବାକଥା ନେଇଯିବୁ ।"

ମୁଁ ଗାଡିରେ ବସି ଭାବିଗଲି, "ଜ୍ଞାନପ୍ରକାଶ ଆହୁଜା, ତୁ ଶାଲା କେତେ ପାବାର୍ ରଖିଚୁବେ ହାତରେ ? ତତେ ଘରେ ରଖିବା ଯାହା ମହାବଳକୁ ରଖିବା ତାହା । ଏମାନେ ସବୁ ତାଜୁବ୍ ହେଇଗଲେଣି ଏବଠୁ – କାଲି କ'ଣ ହେବେ କେଜାଣି ?"

"ସୁଦାମ ଚାଲ ଟିକିଏ ବଜାର ବାଟଦେଇ ଯିବା ।"

ନିରୋଳା ରାସ୍ତାରେ ସେଇ ହାଲୁକା ହାକୁକା ପବନ । ସେଦିଗେ ଡେଣା ମେଲିଥିବା ନୀଳ ଆକାଶ ।

ଫୁଲକୋବି, ମଟର, ଟମାଟୋ ଆଉ କିଛି ଧନିଆଁ ପତ୍ର – ମନ୍ଦ ହବନାଇଁ ।

କାଲି କଥାତ ସ୍ୱତନ୍ତ୍ର । ଘରେ ବସି ପରେ ଖସଡା ତିଆରି କରିବାକୁ ହେବ ।

ମାଛି ଅନ୍ଧାର ବେଳକୁ ପ୍ରଚୁର ବସନ୍ତର ଉଲ୍ଲାସ ନେଇ ମୁଁ ଘରେ ପହଞ୍ଚିଲି । କଥା ପ୍ରସଙ୍ଗ ପକେଇ ଆହୁଜା ଆସିବା କଥାଟି କହିଲି । ପିଲାଏ ବିଶ୍ୱାସ କରିପାରୁନଥାନ୍ତି ଯେ ଦିଲ୍ଲୀରୁ କିଏ ତାଙ୍କ ଘରକୁ ଆସୁଛନ୍ତି ।

ରୁଗ୍‌ଣ ମୋ ସ୍ତ୍ରୀ କିନ୍ତୁ ମୁଣ୍ଡରେ ହାତଦେଇ ତଳକୁ ଚାହିଁ ବସି ଶୁଣୁଥାନ୍ତି । କୌଣସି କଥାର ଜବାବ ନାଇଁ । କିଛି ହେଲେ ଉତ୍ସାହ ବା ଆଗ୍ରହର ଲେଶ୍ ନାହିଁ ।

"କିଓ ତମେ କ'ଣ କହୁନା କାହିଁକି ? କାଲି କ'ଣ କେମିତି ହବ କହିଲେ ସିନା ତା' ପାଇଁ ବ୍ୟବସ୍ଥା ହେବ ।"

"କ'ଣ ଆଉ କହିବି ? ତମେତ ଆ ବଳଦ ମତେ ବିନ୍ଧ୍ କାମଟି କରିଆସିଛ । ଏତେ ବଡ

ଲୋକଙ୍କୁ ତମ ଘରେ ଚର୍ଚ୍ଚା କରିବାକୁ କ'ଣ ଅଛିଟି ? କିଏ ବସେଇବ କୋଉଠି, ସେମାନେ ରହିବେ କୋଉଠି, ଖାଇବେ କ'ଣ, ତାଙ୍କ କଥା ବୁଝିବ କିଏ ? କ'ଣନା ରାତିରେ ଆସି ଦାନ୍ତ ଦେଖେଇଚ – ସକାଳେ ଆଣି ତାଙ୍କୁ ଠିଆକରେଇଦବ । ଏସବୁ ହବ କେମିତି ? ତମେ ତମର କ'ଣ କରୁଚ କର । ମତେ ଖଣ୍ଡେ ରିକ୍ସା ଡକେଇ ଦିଅ । ମୁଁ ଯାଏ ମାମୁଁଘରକୁ ତିନିଦିନ ଛୁଟିରେ । ସେ କେବେଠୁ ଡାକିଛନ୍ତି ।"

ମୋର ଝାଳ ଫିଟିଗଲା । ଆରେ ସତେ ତ, ଜିନିଷଟା ଯେତେ ସରଳ ଏବଂ ସହଜ ବୋଲି ମୁଁ ଭାବୁଥିଲି ପ୍ରକୃତରେ ତାହା ସେମିତି ନୁହଁ । ମୁଁ ଥ' ହେଇ ବସିଗଲି । ପିଲାମାନେ ଖୁସ୍‌ଖାସ୍ ଚାଲିଗଲେ । ଜାଣିଲେ ଯେ ଗୋଟାଏ ବଡ ବିପତ୍ତି କ'ଣ ଆସିଗଲା ।

ବହୁ କଷ୍ଟରେ ତାଙ୍କୁ ରାଜିକରେଇଲି, ଦୁହେଁ କଥାବାର୍ତ୍ତା ହେଲେ ଯୋଜନା କରିହେବ ।

"ଦେଖ, ଆହୁଜା ଯେତେ ବଡ ଅଫିସର ହେଲେ ସୁଦ୍ଧା ମୋ ସାଙ୍ଗ । ସେଥିପାଇଁ ତା' ସକାଶେ ସେମିତି କୌଣସି ବିଶେଷ ବନ୍ଦୋବସ୍ତର ପ୍ରୟୋଜନ ନାହିଁ । ମୋର ଭୟ ବରଂ ତା' ସ୍ତ୍ରୀକୁ ।"

"ସେ ଯାହାହେଉ ଘରକୁ ଆସୁ ଆସୁ ଟି' ଟିକିଏତ ଦବ । ତମର ଏ ବାରଜାତିଆ କପ୍ ପିଆଲା କ'ଣ ଚଳିବ ?" ମୁଁ ସାଙ୍କୁଡି ଗଲି ।

"କୋଉଠି ବସେଇବ ? ତମ ସୋଫାର ଗଦିକନାକୁ ଦେଖିଛ ? ତା' ଅବସ୍ଥା କ'ଣ ହେଲାଣି ? ମୁଁ ତ ଯେତେ କହିଲି ଶୁଣିଲ ନାହିଁ । ଏବେ ତମେ ହିନସ୍ତା ହେବନାଇଁତ ଦାଣ୍ଡ ଲୋକ ହେବେ ?"

"ଇସ୍, କ'ଣ କରିବା ତା'ହେଲେ ।"

"ଆଉ ଶୁଣ, ସେ ଟେବୁଲ୍ ଚୌକିରେ ଖାଇବାର ଅଭ୍ୟାସ ରଖିଥିବେ । ଆମ ଟେବୁଲର ଗୋଟାଏ ଗୋଡ ନାହିଁ । ସେଇଟା ଆସିବା ଦିନଠୁ ତା' ଉପରେ ଆଳିମାଳି ଗଦାହେଇଚି । ତଳେ ବାକ୍ସ ପେଟରା । ଚୌକି କୋଉକାଳୁ ଭାଙ୍ଗିରୁଜିଗଲାଣି । ପିଲାଏ କେତେଥର କହିଲେଣି ଡାଇନିଂ ଟେବୁଲ ପାଇଁ – କ'ଣ ଶୁଣିଲ ? ଏବେ କ'ଣ ତଳେ ଆସନପକେଇ ଖାଇବାକୁ ଦବ ? ଆସନ ବା କାହିଁ ? ହରିଆନା ହେଣ୍ଡ୍‌ଲୁମର ଦି'ଖଣ୍ଡ ଆସିଥିଲା ଦି'ବର୍ଷ ତଳେ । କୋଚଟିଆ ହେଇପଡିଛି ।"

ମୋ ମୁଣ୍ଡ ଘାଉଁରେଇ ଗଲା ।

"କ'ଣ ଖାଇବାକୁ ଦବ ? ସନ୍ତୁଳା, ବଡିଭଜା, ମାଛ ବେସର, ଭାତ ? ତାଙ୍କୁ ଦେଲେ କ'ଣ ସେ ଖାଇବେ, ତମେ ଜାଣିଚ ? ଜାଣିଲେ ବି କିଏ ତମର ଅଛି ପାଞ୍ଚ ପ୍ରକାର ରାନ୍ଧିବାଢି ଥୋଇବ ? ମୁଁ ତ ପାରିବିନାଇଁ । କୋଉଠି ଖାଇବାକୁ ଦବ ? କଂସା ଥାଳିରେ, ଚକା ଟ୍ରେ'ରେ ନା ଲମ୍ବା ଟ୍ରେ'ରେ ? ଏକାପରି ଦି'ଖଣ୍ଡ କିଛି ନାହିଁ ।"

ମୁଁ କାନ ଉପରେ ହାତ ମଡେଇ ଆଖି ବୁଜିଦେଲି । ଇଚ୍ଛା ହଉଥିଲା, ମୁଖରା ସ୍ତ୍ରୀର ମୁଣ୍ଡ ଫଟେଇଦବାକୁ । ଇଚ୍ଛା ହଉଥିଲା ମୁଣ୍ଡପିଟି ମରିଯିବାକୁ ।

ମୋ କପାଳରେ ଟୋପା ଟୋପା ଝାଳ ଜମିଗଲା । ଏ ଯାହା କହିଲାଣି, ଏ ତ ଏକବାରେ ଅସମ୍ଭବ ବ୍ୟାପାର । କୋଉ କଥା ସମ୍ଭାଳିବ ଏବଂ କେମିତି ସମ୍ଭାଳିବ ?

ମୋ କାନମୁଣ୍ଡା ତାତିଯାଇଥାଏ । କାନ ଭାଁ-ଭାଁ ଡାକୁଥାଏ । ସତେବା ମୋତେ ବର୍ତ୍ତମାନ ଚୂଡାନ୍ତ ଏଜଲାସ୍‌ରେ ମୃତ୍ୟୁଦଣ୍ଡ ଶୁଣାଇ ଦିଆଗଲା ! ମୁଁ ଏଇ ରାତିରେ ମରିଯା'ନ୍ତି କି ! ସକାଳୁ ଆହୁଜା ଫୁଲତୋଡା ଚଢେଇ ଚାଲିଯାନ୍ତା । ସବୁ କଥା ଲୁଚିଯାନ୍ତା ! ଇଜ୍ଜତ୍ ରହିଯାନ୍ତା !

"ମୋ କଥା ମାନ । କ'ଣ ଗୋଟାଏ ଆଳ କାଢ଼ି ତାକୁ ନେଇ ହୋଟେଲରେ ରଖିଦିଅ । ଏମିତି ଥରେ ଘରକୁ ବୁଲିଆସିଲେ ମୁଁ ପଡିଶା ମଙ୍ଗତାନି ଘରୁ କପ୍ ପିଆଲା ଆଣି ବିସ୍କୁଟ୍ ଫିସ୍କୁଟ୍‌ରେ କାମ ଚଳେଇଦେବି ।"

ମୋ ପାଟି ଖନିମାରିଗଲା । ମୁଁ ବହୁକଷ୍ଟରେ କହିଲି – "ସେମାନେ ଆମ ଘରେ ରହିବେ ।"

"କ'ଣ ହେଲା ! ଏଇଠି ରହିବେ ? କୋଉଠି ରହିବେ ଛାତରେ ନା ପାହାଚରେ ଏଠିତ ସବୁ ବଖରା ଆଲୁମାଲୁ ଜିନିଷ ଆଉ ମଣିଷରେ ବାନ୍ତି କରୁଛି । ପାଦପକେଇବାକୁ ଠା' ନାହିଁ । ଖଟ, ଶେଯ, ମଶାରୀ କାହିଁ ? ସେଥିରେ ପାଇଖାନା ଅବସ୍ଥା ଯାହା ! ସେମାନେ ଗାଧୋଇବେ କୋଉଁଠି ? ମୁହଁ ଧୋଇବେ କୋଉଠି ? ଭଲଗତି ଅଛି ତ ଏବେ ଯାଇ ତାଙ୍କ ପାଇଁ ଆଉ କ'ଣ ବ୍ୟବସ୍ଥାକରି ଆସ – ନହେଲେ କାଲି ଆସି ସେମାନେ ଦୁଆରେ ଓହ୍ଲେଇଗଲେ କୋଉ କୁଳର ହବନାହିଁ ।"

ମୁଁ ସତକୁସତ ବରଡାପତ୍ର ପରି ଥରିଲି । ମୋର ତଣ୍ଟି ଶୁଖିଗଲା । ଏମିତି ବୋଧେ ମୁଁ କେବେହେଲେ ନିଜକୁ ବିପଦଗ୍ରସ୍ତ ମଣିନଥିଲି ।

ଏତିକିବେଳେ ମୋର ମନେପଡିଗଲା, ଖୁଣ୍ଟିଆ କହିଚାଲିଛି – "ସାର୍ କ'ଣ ବ୍ୟବସ୍ଥା କରିବେ ଆମେ ଥାଉ ଥାଉ ? ଯାହା ଲୋଡା ସାର୍ ଆମକୁ କହିଦେଲେ ଆମେ କରିଦେବୁ ।" ମୁଁ ତାକୁ ପ୍ରତ୍ୟାଖ୍ୟାନ କରି ଆସିଛି । କୋଉ ମୁହଁରେ ମୁଁ ପୁଣି ତାକୁ ସାହାଯ୍ୟ ମାଗିବି ? କିନ୍ତୁ ନକହିଲେ ତ ରକ୍ଷାନାହିଁ ।

ମୁଁ କେତେବେଳେ ସୁଦାମ ଗାଡିରେ ଯାଇ ଓବେରେଇ ହୋଟେଲରେ ପହଞ୍ଚିଲି ମୁଁ ଜାଣେ ନାହିଁ । ମୋତେ ଚାରିଆଡ ଅନ୍ଧାର ଦିଶୁଥାଏ । କୌଣସି ପ୍ରକାରେ ଇଜ୍ଜତ୍ ବଞ୍ଚାଇବାକୁ ମୁଁ ଚାହୁଁଥାଏ । କିନ୍ତୁ ଗୋଟାଏ ପାଖରେ ନହାରିଲେ ଆର ପାଖରେ ବଞ୍ଚାଇବାର ଉପାୟ ନାହିଁ ।

ମୁଁ ସେ ସୁଇଟ୍ ଭିତରେ ପଶିଗଲି । ମୋତେ ଦେଖି ତିନିହେଁ ବିରକ୍ତ ହେବାର ମୁଁ ଜାଣିପାରୁଥିଲି । ସେମାନେ ସେଇ ବୋତଲଟି ଖୋଲି ପିଉଥିଲେ । ସେମାନେ ଅନିଚ୍ଛାସତ୍ତ୍ୱେ ଠିଆହେଲେ ।

"କ'ଣ ହେଲା ସେନାପତି – ମାନେ ସାର୍ ? ସାର୍, କିଛି ଅସୁବିଧା ହେଲାକି ?"

"ଦେଖନ୍ତୁ, ଆହୁଜା ସାହେବ ବରଂ ଏଇଠି ଅନ୍ୟମାନଙ୍କ ସାଙ୍ଗରେ ରହିଯିବା ଭଲ । ଆମ ଘରେ ରହିବା ଅସୁବିଧା ହେବ ।"

"ସେଇକଥାତ ଆମେ ଭାବୁଥିଲୁ ଏଇନା । ଆହୁଜା ସାହେବଙ୍କୁ ଆମେ ଦିଲ୍ଲୀରେ ଦେଖିଛୁ । ସେ ଯେଉଁ ଟିପ୍‌ଟପ୍ ଅଫିସର ବାବା, ଟିକିଏ ବଙ୍କା ହେଇଗଲେ ଖାଇଯିବେ । ତାଙ୍କୁ ଟଳେଇବା ଭାରି କଷ୍ଟ ।"

"ବୁଝିଲ ସାମଲ, ତୁମର କମନସେନ୍‌ସ ନାହିଁ । କିଛି ମନେକରିବେ ନାହିଁ ସାର୍ ! ସେ ଟିକିଏ ପିଇଦେଇଛନ୍ତି । ମୁଁ ସାର୍ ଏମିତି କମ୍ପାନୀ ପାଇଁ ବସିଥିଲି । କଥା କ'ଣ କି ଯଦି ଆହୁଜା ସାହେବ ଆପଣଙ୍କ ଘରେ ରହିବାକୁ ସ୍ଥିର କରିଛନ୍ତି, ସେଥିରୁ ସେ କେବେ ଘୁଞ୍ଚିବେ ନାହିଁ । ଆହୁଜାଙ୍କ ନିଷ୍ପତ୍ତି କେବେ ବଦଳେ ନାହିଁ । ସେଥିପାଇଁ ଘରେ କ'ଣ ଅସୁବିଧା ଅଛି କହିଲେ ତା'ର ବ୍ୟବସ୍ଥା କରିବା ।"

"ଅସୁବିଧା ଗୋଟିଏ ଥିଲେ ସିନା କହିବି । ସବୁଆଡୁ ଅସୁବିଧା – ରହିବା, ଖାଇବା, ଶୋଇବା, ଗାଧୋଇବା, ସବୁ ଅସୁବିଧା । ଘର ବି ସରକାରୀ, ଛାତରୁ ଲୁହାଛଡ ଦିଶୁଚି, କବାଟ ରଙ୍ଗ ଲାଗିନାହିଁ, କାନ୍ଥରେ ବର୍ଷାଦିନର ଛାପଛାପୁଆ ଦାଗ ଲିଭିନାହିଁ, ଝରକାରେ କାଚ ନାହିଁ, ପାଇଖାନାରେ ଫ୍ଲସ୍ ନାହିଁ, ପଙ୍ଖା ଚାଲୁନାହିଁ ।"

"ଓ ବୁଝିଲି ! ୟୁ ଆର୍ ରାଇଟ୍ ସାର୍ । ଆହୁଜା ସାହେବ ସେଇଠି ରହିପାରିବେ ନାହିଁ । ରହିଲେ ଆମ ସମସ୍ତଙ୍କ ମୁଣ୍ଡକାଟ୍ ହେଇଯିବ ।"

ସାମଲ ମୁଣ୍ଡ କୁଣ୍ଡେଇ କହିଲେ – "ସାର୍, ଆପଣଙ୍କ ଘରେ ରହିଲେ କିଛି ଅସୁବିଧା ହୁଅନ୍ତା ନାହିଁ ।"

ଖୁଣ୍ଟିଆ ଡେଇଁପଡି ଚୁଟ୍‌କି ଫୁଟେଇଲେ – "ଆଇଡିଆ, ସାମଲ ଆଇଡିଆ ! ଏ ତିନିଦିନ ପାଇଁ ସାର୍‌ଙ୍କୁ ସେ କ୍ୱାଟର୍ସଟା ଛାଡିଦିଆଯାଉ । ମୁଁ ସାର୍କିଟ୍ ହାଉସ୍‌କୁ ଉଠିଯିବି । ମୁଁ ତ ଏଇନା ଏକା ରହୁଛି – ସ୍ତ୍ରୀ ଯାଇଛନ୍ତି ଆସାମ ପୁଅ ପାଖକୁ – ଫେରୁ ଫେରୁ ମାସ ଶେଷ । ବଢିଆ । ବୁଝିଲେ ସାର୍, ଆପଣ ଆଉ କିଛି ନକରି ସିଧା ମୋ ଘରକୁ ଚାଲିଯାନ୍ତୁ । ସେଇଠି ଗୋଟାଏ ବବର୍ଚ୍ଚିକୁ ପିଅନ୍ କରି ରଖିଦବା । ସେ ରନ୍ଧାବଢା କରି ଯୋଗେଇଦବ । ବି.ଡି.ଓ. ସେଇଠି ରେସନ୍ ଦେଇଦବ ।"

– ପିଲାମାନେ ଗଲେ ଅସୁବିଧା ହବ ନାଇଁ ? ସେମାନଙ୍କର ବହିପତ୍ର, ପୋଷାକପତ୍ର, ଆମର ବ୍ୟବହାର ଜିନିଷ ?

– ନୋ ପ୍ରୋବ୍ଲେମ୍ । ତିନିଦିନ ପିକ୍‌ନିକ୍ ପାଇଁ ଆପଣ ଯାଉଛନ୍ତି ସାର୍ ! ସେଇ ଅନୁସାରେ ଜିନିଷ ପେକ୍ କରି ଯୋଡିଏ ବାକ୍‌ସରେ ନେଇଗଲେ ହେଲା । ଚାଲନ୍ତୁ ଚାଲନ୍ତୁ, ଆଉ ବିଳମ୍ବ କରନ୍ତୁ ନାହିଁ । ରାତିଟା ସେଇଠି ରହିଗଲେ ସକାଳୁ ଉଠି ରିସେପ୍‌ସନ୍ ଚିନ୍ତା କରିବେ ।

ମୁଁ କୃତଜ୍ଞତାରେ କ'ଣ କହିବି ଜାଣିପାରିଲି ନାହିଁ । "ଆପଣଙ୍କ ଋଣ ଶୁଝିପାରିବି ନାହିଁ ।"

"କି କଥା କହୁଛନ୍ତି ସାର୍, ଆପଣ ଆମକୁ ଜାଣିନାହାନ୍ତି । ଆମେ ଆପଣଙ୍କ ସେବାରେ ମାନେ ଆହୁଜା ସାହେବଙ୍କ ସେବାରେ ସବୁ କରିଦେଇପାରୁ ।"

ଖୁଣ୍ଟିଆଙ୍କ ଘରେ ଆମେ ରାତିରେ ଘଣ୍ଟାଏକାଳ କେବଳ ବୁଲିଲୁ । ଚକ୍‌ଚକ୍ ଟେବୁଲ, ଚକ୍‌ଚକ୍ ଆଇନା । ସୋଫା, ଗଦିଟିନିଟା, ବେଡ଼ୁରୁମ୍‌ରେ ଡନ୍‌ଲପ୍ ଗଦି, ଡ୍ରଇଂରୁମ୍‌ରେ ଗାଲିଚା ।

କେତେବଡ ବୋଝ ହାଲୁକା ହେଇଗଲା । ହାଲୁକା ଲାଗିଲା ପବନ । ଝରକାବାଟେ ବଗିଚାର ମହମହ ବାସ୍ନା ଭରିଗଲା ଘରସାରା । ବସନ୍ତର ଉଲ୍ଲାସରେ ଭରିଗଲା ମୋ ଦେହ ମନ ପ୍ରାଣ । ମୁଁ ଶୋଇପାରିଲିନାହିଁ ଏତେ ସୌଭାଗ୍ୟ ଆଉ ସମ୍ଭୋଗକୁ ନେଇ ।

ସକାଳ ପାହିଲା ବାସ୍ନା ଚା'ର ଉଷୁମ ବାମ୍ଫପରି । ବଦର୍ଚି ଚମତ୍କାର କପ୍-ପ୍ଲେଟ୍‌ରେ ଚା' ପରସି ଦେଲା ଶୋଇବାଘରେ । ପିଲାଏ ଏଠି କନକନ ହେଉଥିଲେ । ଆମେ ସମସ୍ତେ ସ୍ୱାଭାବିକ ହେବାକୁ କିଛି ସମୟ ଲାଗିଲା ।

ଘର ଚାରିପଟେ ଏତେ ବଗିଚା, ବଗିଚାରେ ଏତେ ଫୁଲ, ପବନରେ ଏତେ ବାସ୍ନା । ମୋର ମନେହେଲା ହୁଏତ ମୋର ଡେଣା ଗଜେଇଯିବ । ମୁଁ ପକ୍ଷୀହୋଇ ଉଡିଯିବି । ପିଲାମାନେ ପାଉଁରୁଟି ଅଣ୍ଡା ମଖନ୍ ଖାଇବାର ଦୃଶ୍ୟ । ନୂଆକଢି ସକାଳ ଖରାରେ ବିକଶି ଯିବାପରି ସେମାନଙ୍କ ମୁହଁ । ସକାଳୁ ଗାଧୋଇପାଧୋଇ ଚାରିଙ୍କର ଅଭିଜାତ ଆଭିଜାତ ଚେହେରା ସବୁ ସ୍ୱପ୍ନପରି ସୁକୁମାର ଆଉ ମନୋରମ ।

ଅପୂର୍ବ ଏକ ବସନ୍ତ ଭିତରେ ଏବଂ ବାହାରେ । ପଚାଶ ବର୍ଷରେ କେବେ ଏଭଳି ସ୍ପୃହଣୀୟ ଋତୁଟିଏ ଜୀବନରେ ପାଇ ହୋଇ ନଥିଲା । ମୁଁ ଜାଣିଥିଲି ଯେ ସେ ଋତୁରେ ତିନି ଦିନ ସମୟ । ଜାଣିଥିଲି ସେଥିରେ କିଛି ଛଳନା, କିଛି ଚୋରି ଚୋରି ଭାବ କୁଣବାଡରେ ଲୁଚିରହିଥିଲା । ଜାଣିଥିଲି ଅନ୍ୟମାନଙ୍କ ରଙ୍ଗମଞ୍ଚରେ ଆମେ କେବଳ ଗୁଟିଏ ଚରିତ୍ର । କିନ୍ତୁ ବସନ୍ତର ଅନୁଭବ ତ ମିଥ୍ୟା ନଥିଲା । ତେବେ କିଛି ମାତ୍ରାରେ ଅବଶୋଷ ବି ଆସୁଥିଲା ମଝିରେ ମଝିରେ ଥୁଣ୍ଟାଗଛଟା ଏପରି । ଆମେ ମଧ୍ୟ ଏପରି ଘରେ ରହିପାରିଥାନ୍ତୁ । ଏପରି ଚିକ୍‌କଣ ଚକ୍‌ଚକ୍ ନିର୍ମଳ ଘରେ ଏମିତି ଟେବୁଲ୍‌ରେ ପିଲାଙ୍କୁ ଏମିତି ବ୍ରେକ୍‌ଫାଷ୍ଟ ଦେଇପାରିଥାନ୍ତୁ । ଦୀର୍ଘଶ୍ୱାସଟି ହାଲୁକା ପବନରେ ମିଳେଇଯାଇଥିଲା । ତା'ପରେ ସ୍ନିଗ୍‌ଧ ବିମଳ ଋତୁ ବସନ୍ତ ଆଚ୍ଛନ୍ନ କରିଦେଉଥିଲା ଦେହକୁ ଏବଂ ମନକୁ ।

ୟା'ପରେ କ'ଣ ଆହୁଜା ସାହେବ ଆସିବା ଯିବା ସେମିତି କିଛି ଗୁରୁତ୍ୱପୂର୍ଣ୍ଣ ଘଟଣା ବୋଲି ଆପଣ ମନେକରୁଛନ୍ତି ? ମୁଁ ତିନିଦିନ ଟୁର୍‌ରେ ସେମାନଙ୍କ ସହିତ ଧଉଳି, କୋଣାର୍କ ବୁଲିବା, ଚଢେଇ ପରି ଫୁର୍ ଫୁର୍ ହେବା, ତିରିଶ ବର୍ଷ ଅତୀତକୁ ଏକା ପାହଣ୍ଡରେ ପାରିହୋଇଯିବା, ଗୁଡ଼ା ତିରିଶ ବର୍ଷ ତଳର ଚାପଲ୍ୟ ନେଇ ମୋ ସାମ୍ନାରେ ଠିଆହେବା କିଁଣ ଗୁରୁତ୍ୱପୂର୍ଣ୍ଣ ? ଆମେ ଯେ ଏକ ଉଦ୍‌ବେଳିତ ଉନ୍ମତ୍ତ ବସନ୍ତରେ ନିମଗ୍ନ ଥିଲୁ ଏତିକି ମାତ୍ର ସତ୍ୟ ।

ତିନୋଟି ଦିନରେ ବସନ୍ତ ଅପସରିଗଲା ଦିଗନ୍ତକୁ । ମୁଁ ଛ'ତାଲା କୋଠାରୁ ଚାହିଁଲାବେଳକୁ ନୀଳପକ୍ଷୀ ସୁଦୂର ଦେବଦାରୁ ଶିଖ ପାରିହୋଇଯାଉଥିଲା । ଝର୍କା ନଥିବା ରନ୍ଧାଘରେ ଋତୁହୀନ ଦୀର୍ଘ ପ୍ରହର ସବୁ ହୁଏତ ପାରିହେଉଥିଲେ ।



## କମଳେଶ୍ୱରୀ

ସମୟ ସତେବା ଘୁଞ୍ଚୁ ନାହିଁ । ଓହଳିରହିଛି ଶୂନ୍ୟରୁ ମଲା ସାପଟାଏ ପରି । ଆଉ ବି କିଛି ଘୁଞ୍ଚୁ ନାହିଁ କାହିଁ କୋଉଠି ।

ବହୁ ଦୂରରୁ ହୁଏତ କୋଳାହଳ ଶୁଭୁଚି । ରେରେକାର ଶୁଭୁଚି । ଆର୍ତ୍ତନାଦ ଶୁଭୁଚି । କବାଟ ଝର୍କା ବନ୍ଦକରି ଦିନ ଦି'ପହରେ ସାରା ସାହିର ଘରଗୁଡାକ ନିଶ୍ୱାସରୋଧି ରହିଛନ୍ତି । କେତେବେଳେ ନିଆଁ ଜଳିଉଠିପାରେ; ବୋମା ଗର୍ଜିପାରେ ଗୁଳିଚଳିପାରେ ।

ରାସ୍ତା ସେମୁଣ୍ଡରେ ବନ୍ଧୁକ ଭଳି ମଣିଷଟାଏ ଲୁହା ଟୋପି ପିନ୍ଧି ଠିଆରହିଛି । ତା' ପାଖରେ ଆଉ ଜଣେ, ପୁଣି ଜଣେ ସେମିତି ଠିଆରହିଛନ୍ତି । ଏମୁଣ୍ଡରେ ବି ସେମିତି ।

ସହରରେ କର୍ଫ୍ୟୁ ଚାଲିଛି । ଆଜକୁ ତିନିଦିନ ହେଲା କେହି ରାସ୍ତାକୁ ଓହ୍ଲାଇ ନାହିଁ । ଘର ଭିତରେ ସମସ୍ତେ ଚୁପ୍‌ଚାପ୍ ବସିଛନ୍ତି । ହାତ ଧରାଧରି ହୋଇ ଦେହକୁ ଦେହ ଲାଗି ବସିଛନ୍ତି । ଶୋଇଲେ ଏକାଠି ଗୋଟେ ବଖରାରେ ମଳାବାନ୍ଧି ଶୋଉଛନ୍ତି ବାରମ୍ବାର ବୟସ୍କମାନେ ଯାଇ ଦେଖିଆସୁଛନ୍ତି କବାଟରେ ଭିତରପଟୁ ଗେଡା ପଡିଚି ନା ନାହିଁ । ପିଲାମାନେ ଖେଳୁନାହାନ୍ତି – ହସୁ ନାହାନ୍ତି, ତବ ତବ ଆଖିରେ ବଡମାନଙ୍କୁ ଚାହିଁଛନ୍ତି ।

ଦାଣକବାଟ ସେପଟେ ବାଘ ଛପିଚି – ଫିଟେଇଦେଲେ ପଶିଆସିବ । ସେମାନେ କୁଆଡେ ଦଳ ଦଳ ହୋଇ ବୁଲୁଛନ୍ତି । ସେମାନଙ୍କ ଆଖି ଡହକୁଚି । ଦାନ୍ତ ଚିକ୍‌ଚିକ୍ କରୁଚି । ହାତରେ ଧାରୁଆ ଇସ୍ପାତ ଚିକ୍ ଚିକ୍ କରୁଚି । ସେମାନେ କଥା କହୁନାହାନ୍ତି । ମଝିରେ ମଝିରେ ଗର୍ଜୁଚନ୍ତି, ହେଣ୍ଡାଳୁଚନ୍ତି । ସେମାନଙ୍କ ଦେହ ତହ ତହ ତାତିରହିଚି; ଠକ୍ ଠକ୍ ଥରୁଚି । ସେମାନେ ଠିଆହୋଇପାରୁନାହାନ୍ତି; ଚାଲିପାରୁନାହାନ୍ତି; ଟଳମଳ ଧାଉଁଚନ୍ତି ଶ୍ୱାପଦ ଭଙ୍ଗୀରେ ।

ସେମାନେ ଯିବା ବାଟରେ ନିଆଁ ଜଳିଉଠୁଚି । ଆର୍ତ୍ତନାଦ ଆକାଶ ଚିରିପକଉଚି । ସେମାନଙ୍କ ଉପରେ ଗୁଳି ବର୍ଷା ହେଉଚି । ସେମାନେ ଗଜ ଗର୍ଜି ଲୋଟିପଡୁଛନ୍ତି । ସେମାନଙ୍କ ହାତରେ ରକ୍ତ ଜୁଡୁବୁଡୁ ଇସ୍ପାତ୍ ତଥାପି ଚମକୁଚି । ସେମାନଙ୍କ ଦାନ୍ତ ଚମକୁଚି, ଆଖିରୁ ନିଆଁ ଖସିପଡୁଚି । ସେମାନେ ଚାରିକାତ ମେଲେଇ ପଡିଯାଉଚନ୍ତି ଶ୍ୱାପଦ ଭଙ୍ଗୀରେ ।

ଏ ସାହିରେ ଏ ପର୍ଯ୍ୟନ୍ତ ରେରେକାର ଶୁଭିନାହିଁ । ଦି'ପହର ଖରା ନିଛାଟିଆ ଦାଣରେ

ଏକୁଟିଆ ଠିଆରହିଛି ସ୍ତବ୍ଧ ଚକିତ ହେଲାପରି; ଭୟରେ ଜଡସଡ, ନିସ୍ତେଜ ହେଲାପରି ।

ମାଧ ହଠାତ୍ ଉଠି ଠିଆହେଲା । ତା' ଉପରେ ସମସ୍ତଙ୍କ ଆଖି । କୁଆଡେ ଉଠୁଚି ସେ ଟୋକା । ସେ ଯାଇ ଝରକାବାଟେ ବାହାରକୁ ଅନାଇଲା । ବାହାରେ ସେଇ ପୁରୁଣା ଆତଙ୍କିତ ନୀରବତା । ସେ ଟପ୍ ଟପ୍ ଚାଲିଗଲା ଆଳୁମାଳୁ ରଖାହୋଇଥିବା ଷ୍ଟୋରଘରକୁ । ସେଇଠୁ ଦେଢହାତ ଲମ୍ବର ମୋଟା ଶାବଳଟାଏ ଧରି ଚାଲିଆସିଲା ।

– "ଜେଜେ, ଏଇଟା ତମର ?"

ଗୋଟାଏ କାଠକଟା ଟାଙ୍ଗିଆ, ଗୋଟାଏ କଟୁରୀ, ଦାଆ, କରତ, ପନିକି ଯାହା ପାଇଲା ଆଣି ଜମାଇଲା । ମାଇକିନା ମର୍ଦ୍ଦ ସମସ୍ତଙ୍କୁ ଗୋଟାଏ ଲେଖା ବଢେଇଦେଇ ନିଜେ ଗୋଟାଏ ଲୁହାଛଡ ଧରି ଠିଆହେଲା । କହିଲା – "ଶୁଣ, ଏମିତି ମୂଷାଙ୍କ ଭଳି ଗାତରେ ମେଞ୍ଚାହେଇ ଥରିବାର ଅର୍ଥ କିଛିନାହିଁ । ଅନ୍ଧାର ହେଲେ ସେମାନେ ନିଶ୍ଚୟ ଆସିବେ । ସେମାନଙ୍କୁ ଏ ବନ୍ଧୁକବାଲା ରୋକିପାରିବେନାହିଁ । ସେମାନେ କାହିଁକି ବା ସେ ଝାମେଲାରେ ପଶିବେ ? ତାଙ୍କୁ କୁହାଯାଇଛି ରାସ୍ତାମୁଣ୍ଡରେ ଟୋପିପିନ୍ଧି ଠିଆହେବାକୁ । ସେମାନେ ଠିଆହୋଇଥିବେ ରାତିସାରା । ଏ ସାଇ ହୁତ୍ ହୁତ୍ ଜଳୁଥିବାବେଳେ ବି ସେମାନେ ତାଙ୍କ ଥାନରୁ ଘୁଞ୍ଚିବେ ନାହିଁ । ସେଥିପାଇଁ ଆମକୁ ପ୍ରସ୍ତୁତ ହେବାକୁ ପଡିବ ।"

ଜେଜେ କିଛି ନକହି କେବଳ ଶୂନ୍ୟକୁ ଚାହିଁ ବସିଥାନ୍ତି । ସେ ଖଣ୍ଡେ ଚାଦର ଓଢଣା ପକାଇଲାପରି ଘୋଡେଇହୋଇଛନ୍ତି । ତାଙ୍କୁ ବୋଧେ ଶୀତକରୁଚି ।

ମାଧ ତାଙ୍କ ବଡନାତି । କଲେଜ ପାଠ ସାରିଦେଲାଣି । କ'ଣ ସବୁ ପରୀକ୍ଷା ଦଉଚି । ତା' ବାପ ରାଉରକେଲାରେ ଚାକିରି କରେ । ସେ ଖବର ପାଇଚି – ଆସିପାରୁନାହିଁ । ହଠାତ୍ ଚାରିଆଡୁ ଏଠିକି ଯିବାଆସିବା ରାସ୍ତା ବନ୍ଦ ହୋଇଯାଇଛି ।

ତିନିଦିନ ତିନିରାତି ଘରର ସମସ୍ତେ ସେମିତି ମେଞ୍ଚାଟିଏ ହୋଇ ମଝି ବଖରାରେ ବସିଛନ୍ତି । ଅଣ୍ଟା କାଟିଲେ ଜେଜେ ତଳେ ଗଡିପଡୁଛନ୍ତି । ବାକିମାନେ ଯାଉଛନ୍ତି ଆସୁଛନ୍ତି ଭୟରେ ଜଡସଡ ହୋଇ । ଭାତ, ଆଳୁ, ଆଚାର ଖାଉଚନ୍ତି । ପିଲାଙ୍କର କ୍ଷୀର ନାହିଁ । ସାନଝିଅ ସାବିତ୍ରୀ – ଦୁଇଦିନ ହେଲା ଜର ଭୋଗୁଛି – ତା' ପାଇଁ ଔଷଧ ନାହିଁ । ମାଧ ତଳ ଭଉଣୀ ହେମା – କଲେଜରେ ଶେଷ ବର୍ଷ କରୁଚି । ତା'ର ପରୀକ୍ଷା । ସେ ପଢିପାରୁନାହିଁ । ଜେଜେଙ୍କ ଦେହ ଆଗରୁ ଅସୁସ୍ଥ ଥିଲା । ସେ ଏବେବି ଅଜାଣତରେ କୁନ୍ଥଉଛନ୍ତି । କିନ୍ତୁ କହୁନାହାନ୍ତି କ'ଣ ହେଉଚି ବୋଲି ।

ମାଧ ସମସ୍ତଙ୍କୁ ବଳ ଦଉଚି । ତା'ର ଗଜରା ନିଶ । ଚିକ୍ ଚିକ୍ ଆଖି । ଠିଆନାକ ଦେଖି ସମସ୍ତଙ୍କ ମନରେ ଦମ୍ଭ ଆସିଯାଉଚି । ତା' ମା' କେବଳ କ'ଣ ଭାବି ତା' ମୁଣ୍ଡ ପିଠି ଆଉଁସି ଦେଉଛନ୍ତି । ତାଙ୍କ ଆଖିରୁ ଲୁହ ଝରିଯାଉଚି ।

ସାଇପଡିଶା କବାଟ ତାଟି ପକେଇ ରହିଯାଇଛନ୍ତି । ଗତକାଲି ପଡିଶାଘରୁ କିଏ ଗୋଟାଏ ରାତିରେ ଚିର୍‌ଚିରେଇ ଉଠିଲା । ଏମାନେ ସମସ୍ତେ ଚମକିପଡିଲେ । ବୁକୁ ଦାଉଁ ଦାଉଁ ପଡିଲା ।

ବୋଧହୁଏ ସୁନିଆଁ ସେମିତି ପାଟିକରିଥିଲା । ଆଠବର୍ଷର ଝିଅ ସୁନିଆଁ । କନ୍‌ଭେଣ୍ଟରେ ପଢ଼େ । ବଢ଼ିଆ ଇଂରାଜୀ କହେ । ଗୀତ ଗାଏ, ନାଚେ ବି ।

ମାଧ ଉଠିପଡୁଥିଲା ଯାଇ ବୁଝି ଆସିବାକୁ । ତାକୁ ସମସ୍ତେ ମିଶି ମାଡିବସିଲେ । ନା', ନା', ନା', ନା' – ଏଠି କେହି କାହାକୁ ସାହାଯ୍ୟ କରିବା ମନା । ସମସ୍ତେ ଏଠି ଏକାକୀ – ବଞ୍ଚିବାକୁ ଆଉ ମରିବାକୁ ।

ଆଉ ଚିତ୍କାର ଶୁଭିଲା ନାହିଁ । କ'ଣ ହେଲା କେଜାଣି !

ଆସ୍ତେ ଦି'ପହର ଖରା ମଳିନ ପଡି ଆସିଲା । କିଛି ସମୟ ପରେ ସଂଧ୍ୟା ହୋଇଯିବ । ତା'ପରେ ରାତି । ସ୍ତୁପ ସ୍ତୁପ ଅନ୍ଧାର, ଆତଙ୍କ, ଉଚ୍ଛୃଙ୍ଖଳ ରାତି । କେତେବେଳେ କିଏ ଚିତ୍କାର କରିଉଠିବ, କେତେବେଳେ କିଏ ଛିନ୍ନଛତ୍ର ହେଇଯିବ, ଜଳିଯିବ, ବିଦୀର୍ଣ୍ଣ ହେଇଯିବ ସେ ରାତିରେ ।

ମାଧକୁ ଖୁବ୍ ଅସହାୟ ଲାଗୁଥାଏ, ବିପଦ ପାଇଁ ସେତିକି ନୁହେଁ ଯେତିକି ତା'ର ଅସହାୟତା ପାଇଁ । ସେ ଏକୁଟିଆ କ'ଣ କରିପାରିବ ସତେ ? ସେ ଦକ୍ଷିଣପାଖ ଝରକା ପାଖକୁ ଅସୁମାରି ଥର ଯାଇ ଦେଖି ଆସୁଥାଏ ମହଲଣ ଆଲୁଅରେ ସେ ନିଛାଟିଆ ରାସ୍ତାକୁ । ରାସ୍ତା ସେମୁଣ୍ଡେ ଲୁହାଟୋପି ମୁଣ୍ଡେଇ ଦୁଇଚାରିଟା ଜବାନ୍ ଠିଆ ହୋଇଥାନ୍ତି ବନ୍ଧୁକ ଧରି ।

କିଛି ଗୋଟାଏ ଘଟୁନାହିଁ କାହିଁକି ? ବଜ୍ର ହେଉ ବିଦ୍ୟୁତ୍ ହେଉ କଉଡି ହୋଇପଡିଲେ କାମ ସରିଯାନ୍ତା । ମାଧ ବୋଧେ ତା' ଅଜାଣତରେ ସେପରି ଘଟଣାକୁ ମନେ ମନେ ଚାହୁଁଥିଲା । ପୁଣି ଆଉବାଗେ ନିଜକୁ ପ୍ରବର୍ତ୍ତାଇଥିଲା ପ୍ରାର୍ଥନା କରିବାକୁ ଯେ ସେପରି କିଛି ନଘଟୁ ।

ସେ ସନ୍ତ୍ରୀମାନଙ୍କୁ ଏକଲୟରେ ଚାହିଁ ରହିଥାଏ । ଯେତେବେଳେ ତଳବଜାର ଆଡୁ ଲଟପଟ୍ ଇସ୍ପାତ୍ ପରି ସେ ମଣିଷମାନେ ଧାଇଁଆସିବେ ? ଏମାନେ କ'ଣ ସତକୁସତ ସେମାନଙ୍କୁ ଗୁଳିକରି ଉଡାଇ ଦେଇପାରିବେ ? ହୁଏତ ପାରିବେ । ଅଥବା ସେମାନେ ଏତେ ସଂଖ୍ୟାରେ ଆସିବେ ଯେ ଏମାନଙ୍କୁ ବୁଦ୍ଧିବାଟ ଦିଶିବ ନାହିଁ । ଏମାନେ ନିଜକୁ ବଞ୍ଚାଇବାପାଇଁ ଗୁଳି କରିକରି ପଛେଇ ପଛେଇ ତଳଛକକୁ ପଳେଇବେ ତାଙ୍କ ଛାଉଣିକୁ । ଆମକୁ ଛାଡିଦେଇ ଯିବେ ବାଘମୁହଁରେ । ତେଣିକି ଛୁରୀ, କଟୁରୀ, ନିଆଁ ହୁଳାସାଙ୍ଗରେ ଆମେ ହିଁ ମୁକାବିଲା କରିବୁ, ଅଥବା ନିପାତ ହୋଇଯିବୁ ।

ମାଧର ହାତ ମୁଠା ମୁଠା ହୋଇଯାଉଥାଏ । ଭୃରୁ କୁଞ୍ଚେଇଯାଉଥାଏ । କପାଳରେ ଗିବ୍ ଗିବ୍ ଝାଳ ଜକେଇଯାଉଥାଏ ।

– ଆଚ୍ଛା, ସେ ଯେଉଁ ଉଚ୍ଚ ଦେବଦାରୁ ଗଛ ଧାଡି ଦେଖାଯାଉଛି ସେଇଠି ମାଧର ସାଙ୍ଗ ନିତ୍ୟାନନ୍ଦ ଥାଏ । ସେ ଜୁଡୋରେ ବ୍ଲାକ୍‌ବେଲଟ । ଭାରି ଟାପିନ୍ । ସେ କ'ଣ ସହଜରେ ହାର ମାନିଯିବ ? ସେ ଦି'ଚାରିଟାକୁ ନିଶ୍ଚେ ଗଡେଇଦେବ । ତା'ପରେ ହୁଏତ ପଲ ପଲ ଘାତକ ତାକୁ ଘେରିଯିବେ । ଶ୍ୱାପଦଙ୍କ ଭିଡ ଭିତରେ ନିତେଇ ଆଉ ଦିଶିବ ନାହିଁ ।

ମାଧ ଗୋଟାପଣ ଶୀତେଇଗଲା । ତାକୁ ଦିଶିଗଲା ନିତେଇର ଚେହେରା । ତା' ଘର,

ତା' ଫୁଲବଗିଚ୍ଚ, ଲନ୍ ଆଉ ଚିତ୍ର ପରି ସୁନ୍ଦର ତା' ସାନ ଭଉଣୀ ଲୀନା । ଲହୁଣୀ ପେଣ୍ଡୁଳାଟିଏ ପରି ତା' ମା' ଏବଂ ଚଷମା ଭିତରୁ ଆଖି ମିଚ୍ ମିଚ୍ କରି ହସୁଥିବା ବାପା । କେତେ ଭଲମଣିଷ ସେମାନେ, କେତେ ସୁନ୍ଦର ଅଭିଜାତ ପରିବାର !

ଛକ ପାଖକୁ ଲାଗି ତାଙ୍କ ଘର । ସେଇଠି ହୁଏତ ସେମାନେ ପ୍ରଥମେ ପଶିବେ । ପାଚେରୀ ଡେଇଁ, ଗେଟ୍ ଭାଙ୍ଗି, ଫୁଲବଗିଚ୍ଚ ମର୍ଦ୍ଦି ଧସେଇ ପଶିବେ ଝାଳ ସରସର ରକ୍ତ ସରସର ଶ୍ୱାପଦ ପରି ମଣିଷମାନେ । କାଚ ଝରକା ଚୂରମାର କରିଦେବେ । ପେଟ୍ରୋଲ ଫୋପାଡି ଘର ଭିତରେ ନିଆଁ ଲଗେଇଦେବେ ।

ନିଆଁରୁ ମୁକୁଳିବାକୁ ହୁଏତ ବାଡି କବାଟ ଫିଟେଇ ନିତେଇ ସମସ୍ତଙ୍କୁ ଆବୋରି ବାହାରିଆସିବେ । ସେମାନେ ଝପଟି ଆସିବେ କାହିଁ କୁଆଡୁ ।

ଓଃ, ତା'ପରେ... ତା'ପରେ...

ମାଧର ନିଶ୍ୱାସ ତୋଳି ହେଲା । ବୁକୁ ଧଡଧଡ ହେଲା । ସେ ଆଖି ତରାଟି ଗୋଟିଏ ବିକଟାଳ ଚିତ୍ରକୁ ମୁହୂର୍ତ୍ତେ ଚାହିଁଦେଇ ମୁହଁ ଘୋଡେଇପକେଇଲା ।

ନିତେଇ କେନାଫୁଲ ଉପରେ ମେଞ୍ଚା ହୋଇ ପଡିଛି । ପାହାଚ ଉପରେ ରକ୍ତ ଜୁଡୁବୁଡୁ ହୋଇ ପଡିଛନ୍ତି ତା' ବାପା । ଭଙ୍ଗା ଚଷମାର ଫାଳେ ପଡିଛି ଘାସ ଉପରେ । ମୁହଁମାଡିପଡିଛନ୍ତି ତା' ମା' । ହାତଟିଏ ପପି ଫୁଲକୁ ଆଉଁସିଦେଲା ପରି ଲୋଟିପଡିଛି ।

– ଆଉ ଲୀନା ? ବିଦୀର୍ଣ୍ଣ ମନ୍ଦାର ପରି ପାଖୁଡା ପାଖୁଡା ହୋଇଯାଇଛି । ଘର ଜଳୁଚି ହୁତ୍‌ହୁତ୍ ।

ମାଧ ଝରକା ରେଲିଂ ଉପରେ ମୁଣ୍ଡରଖି କିଛି ସମୟ ସ୍ଥାଣୁ ହୋଇ ରହିଗଲା । ତା'ପରେ ତାକୁ ଭାରି ଦୁର୍ବଳ ଲାଗିଲା । ସେ ଟଳିଲା ପରି ଫେରିଆସି ଖଟ ଉପରେ ଲଥ୍‌କିନା ବସିପଡିଲା । ମା', ଭଉଣୀ, ଜେଜେ ସମସ୍ତେ ତା' ପାଖକୁ ଉଠିଆସଲେ । ତାକୁ ଆଉଁସିଦେଇଗଲେ । କିଏ ପାଣି ଗ୍ଲାସେ ଆଣି ଧରେଇଦେଲା ।

ମାଧ ପାଣି ପିଇଲା ସତ, କିନ୍ତୁ ଗ୍ଲାସଟାକୁ କାମୁଡି ବିଜୁଳୀ ପରି ଠିଆହୋଇପଡିଲା ।

– "ମୁଁ ନିତେଇ ଘରକୁ ଯିବି...ଏଇଲାଗେ ଯିବି ।"

– "କିରେ କାହିଁକି ?"

– "ତୁ କାହିଁକି ଏମିତି ଅବୁଝା ହଉଚୁ ?"

– "ତୁ ଗଲେ ଆମେ କାହା ଭରସାରେ ରହିବୁ ?"

ବିପରି, ଆତଙ୍କ ଆଉ ନିରାପତାର ସରମାନଙ୍କୁ ସେ ଆଡେଇ ଦେଲା । ଭୟକୁ, ମୃତ୍ୟୁକୁ ଆଡେଇଦେଲା । ଗୋଡ ବଢେଇଲା ଯିବାକୁ । ଜେଜେ ଆସି ବାଟ ଜଗି ଠିଆହୋଇଗଲେ । ଜେଜେ ତା' ଆଖିକୁ ଅନେଇ କହିଲେ – "ନିତେଇ ଭଲା ତୋ ପାଖକୁ ଆସୁଚି ? ଯେ ଯାହା ବଳ ବୁଦ୍ଧି ଖଟେଇ ନିଜ ନିଜ କଥା ସମ୍ଭାଳି ରହିଛନ୍ତି । ତୁ ସେଇଠି ଯାଇ କ'ଣ କରିବୁ ? ତାଙ୍କ ଦାୟିତ୍ୱ

ବଢ଼େଇବୁ ?"

ମାଧର ହୋସ୍ ଆସିଲା । ସେ ଯେଉଁ ବିକଟାଳ ଦୃଶ୍ୟ ଦେଖୁଥିଲା ସେଇଟା କେବଳ ତା' ମନର ଭ୍ରମ । ପ୍ରକୃତରେ ନିତେଇର ବା ତା' ପରିବାରର କାହିଁକି କ'ଣ ହେବ ? ସେମାନେ ନିଶ୍ଚୟ ଭଲ ଅଛନ୍ତି । ଲୀନା ଭଲଅଛି । ସେମାନେ ହୁଏତ ଆମଭଳି ଡ୍ରଇଂରୁମ୍‌ରେ ମଳାବାନ୍ଧି ବସିଛନ୍ତି; ବିପନ୍ନ ବୋଧ କରୁଛନ୍ତି । ଗମ୍ଭୀର ନୀରବ ହୋଇବସିଛନ୍ତି; କିନ୍ତୁ ଅଛନ୍ତି ବର୍ତ୍ତମାନ ସୁଦ୍ଧା ନିରାପଦ ।

ସେ ଆସ୍ତେ ଫେରିଆସିଲା । ସମସ୍ତେ ଆଶ୍ୱସ୍ତ ବୋଧ କଲେ । ସହଜରେ ନିଃଶ୍ୱାସ ପ୍ରଶ୍ୱାସ ଚଳପ୍ରଚଳ ହେଲା । ହେମା ଆଣି କଫି ପହଞ୍ଚେଇଦେଲା । ସେ ରୋଷଘରେ ଟ୍ରେ ଥୋଇଦେଇ ଧାଇଁଆସିଥିଲା ମାଧକୁ ପଛରୁ ଭିଡିଧରିବାକୁ ।

କଫି ପିଇଲା ପରେ ସମସ୍ତଙ୍କ ପାଟିରେ ବାକ୍ୟ ସ୍ଫୁରିଲା । ଜେଜେ କହିଲେ – "ଏମିତି ମୋ ଦିହକରେ କେବେ ହୋଇନଥିଲା । ଆମେ ଶୁଣିଥିଲୁ ଜଙ୍ଗଲରେ ବଳିଆ କୁକୁରମାନେ ବାଘ୍ୟା ହୋଇଗଲେ ନିଜନିଜକୁ କାମୁଡି ଖାଇଯାଆନ୍ତି । ମଣିଷ କ'ଣ ସେମିତି କରିପାରିବ ? ମୁଁ ସେ ତଳ ସାହିରେ ସମସ୍ତଙ୍କୁ ଜାଣେ । ସେଇଠି ମୁଁ ପିଲାବେଳେ ଖେଳିଚି । ଟୋକା ବୟସରେ ସାଙ୍ଗ ସୁଖ ମିଶି ମେଳା ମଉଛବ କରିଚୁ । ଏବେ କ'ଣ ନାଁ ଏଠୁ ଯାଇ ଲୋକେ ସେମାନଙ୍କୁ ହାଣି ପକାଇଲେ ! ସେମାନେ ଏପଟେ ଆସି ସେମିତି ହାଣିପକେଇଲେ !"

ହେମା ଜେଜେଙ୍କ ଗୋଡ ଚିପିଦେଇ କହିଲା – "ସେମାନେ ତ ଆସିବେ...ଆସିଲେ ଆମେ କ'ଣ କରିବା କହ ?"

ଏ ପ୍ରଶ୍ନ ତ ସମସ୍ତଙ୍କୁ ମଡେଇ ହୋଇରହିଥିଲା । ମହଣ ମହଣ ଲୁହାରେ ତିଆରି ସେ ପ୍ରଶ୍ନ ଚିହ୍ନ ଚଟାଣରୁ ଛାତଯାଏଁ ଘୋଟି ରହିଥିଲା । କାହା ପାଖରେ ତା'ର କିଛି ଉତ୍ତର ନଥିଲା ।

କାହିଁକି ହେମା ସେଭଳି ପ୍ରଶ୍ନଟାକୁ ଦୋହରାଉଥିଲା ? ସମସ୍ତେ ଚୁପ୍ ହୋଇଗଲେ । ନିଜ ନିଜ ଢଙ୍ଗରେ ସେ ପ୍ରଶ୍ନ ଭାରରେ ପେଶିହୋଇଗଲେ ।

ଏତିକିବେଳେ ତାତିଲା କାଚଘଡି ପରି ଫାଟିଗଲା ଚତୁର୍ଦ୍ଦିଗର ନୀରବତା । ସମସ୍ତେ ଚମକିପଡିଲେ । କୋଉଠି କେଜାଣି ଗୋଟାଏ ଛୋଟ ପିଲା ଚିରିଚିରେଇ କାନ୍ଦିଉଠିଲା । ତା' ଉପରେ ବୋଧେ ହାତୀ ଖୋଜ ମାଡିପଡିଥିଲା ।

ମାଧ ଧଡାସ୍‌କିନା ଉଠି ପୁଣି ସେଇ ଝରକା ପାଖକୁ ଧାଇଁଗଲା । ସେଇଠୁ ଜଣାପଡିଲା କମଳୀ ରହୁଥିବା ଏକ ବଖୁରି ଟିଣ ଛାତ ଘରୁ ସେ ଚିତ୍କାର ଆସୁଚି । ତା' ଝିଅ ବୋଧେ ସେମିତି ବୋବାଳି ଛାଡୁଚି ।

ମାଧ ପଛରୁ ତା' ମା' ଖୁବ୍ ଦବାଗଳାରେ କହିଲେ – "କମଳୀ ତା' ପିଲାକୁ ବାଡଉଚି । ଘରେ କିଛି ଖାଇବାକୁ ନଥିବତ କ'ଣ ଆଉ କରିବ ?"

ଏତିକିବେଳେ ସେ ଘରଭିତରୁ ତିନିବର୍ଷର ଲଙ୍ଗଳା ଝିଅଟିଏ ଛାନିଆରେ ରଡି ରଡି ଦାଣ୍ଡକୁ

ଦୌଡିଆସିଲା ।

ସୂର୍ଯ୍ୟ ଅସ୍ତହୋଇଥିବା, ଅନ୍ଧାର ହୋଇଆସୁଥିବା ନିଛାଟିଆ ଦାଣ୍ଡକୁ ସେ ଅବୁଝା ଝିଅଟି ଆନ୍ଦୋଳିତ କରିଦେଉଥିଲା । ମନ୍ଥିପକାଉଥିଲା ସାରା ଆକାଶକୁ ସେ ଚିତ୍କାର ।

ମାଧ ଦେଖିଲା ସାହିର ସବୁ ଝରକା ଗୋଟା ଗୋଟା ହୋଇ ଫିଟିଗଲା । ଉଦ୍‌ବିଗ୍ନ ମଳିନ ମୁହଁମାନ ଚାହିଁରହିଲେ ଦାଣ୍ଡକୁ ଏବଂ ରାହାଟେକି କାନ୍ଦୁଥିବା ସେ ଝିଅଟିକୁ ।

ରାସ୍ତା ସେକଡରୁ ଲୁହାଟୋପି ପିନ୍ଧା ବନ୍ଧୁକମାନେ ମଧ୍ୟ ମୁହଁ ବୁଲେଇ ଚାହିଁଲେ ।

ପାଖ ଘର ଦାଣ୍ଡକବାଟ ହଠାତ୍ ଫିଟିଗଲା । କିଏ ଜଣେ ଧାଇଁଆସି ପାଉଁରୋଟିଟାଏ ସେ ଝିଅକୁ ଧରେଇବାକୁ ଚେଷ୍ଟାକଲା – ନନେଲାରୁ ରାସ୍ତାରେ ପକେଇ ଧାଇଁ ଚାଲିଗଲା । ସ୍ତ୍ରୀ ଲୋକଟିଏ । ବିକଳ ଅଥଚ ଭୟାର୍ତ୍ତ ମା'ଟିଏ ହୁଏତ!

ତା'ପରେ ଆଉ କବାଟମାନ ଫିଟିଲା । ସେମିତି ଧାଇଁଆସି କିଏ କ'ଣ ପକେଇଲେ । ତା'ପରେ କେହି ଆଉ ଧାଇଁ ଫେରିଗଲା ନାହିଁ । ପୁରୁଷ ସ୍ତ୍ରୀ ଦଶ ପନ୍ଦର ଜଣ ସେ ଝିଅଟିକୁ ଘେରିଗଲେ ନୀରବରେ । ସେ ଝିଅ ତଥାପି ଆକାଶକୁ ଚିରିପକାଉଥାଏ ଚିତ୍କାରରେ ।

କେତେବେଳେ ସେ ସମସ୍ତେ ମାଧ ଘର ସାମ୍ନାକୁ ଚାଲିଆସିଲେ, କେତେବେଳେ ସେମାନଙ୍କ ଦାଣ୍ଡ ଦୁଆର ଫିଟିଗଲା ଆଉ ମାଧ ଯାଇ ସେ ଝିଅ ପାଖରେ ଠିଆହେଇଗଲା କେହି କହିପାରିବେନାହିଁ । ମେଲା କବାଟ ପାଖରେ ମାଧର ସମଗ୍ର ପରିବାର ଠିଆ ରହିଥିଲା ।

ଏକ ବଖୁରି ଘରୁ କମଳୀର ଚିତ୍କାର ଶୁଭି ନୀରବ ହେଇଗଲା । କେହି ଜଣେ ବୋଧେ ତା' ପାଟିକୁ ଚାପିଧରୁଥିଲା ।

ପୁଣି ଶୁଭିଲା – "ଛାଡି ଦେ ମତେ!"

ସମସ୍ତେ ଚିତ୍ରାର୍ପିତ ପରି ଠିଆ ହୋଇଗଲେ । ହାଉଁ ହାଉଁ ଭୁସ୍ ଭୁସ୍ ଶବ୍ଦ କ'ଣ ଶୁଭିଲା । କମଳୀ ରଡି ରଡି ସେ ଘର ଭିତରୁ ବାହାରି ଆସିଲା । ବାଳ ମୁକୁଳା । ଉଦ୍‌ବସ୍ତ୍ରା । ହାତରେ ଗୋଟାଏ ପନିକି । ସେ ଚିତ୍କାରକରି ଲୋକ ଗହଳିଆଡକୁ ମାଡିଆସିଲା । ସମସ୍ତଙ୍କ ରକ୍ତ ପାଣି ହୋଇଗଲା ତା' ଚିତ୍କାରରେ । ସମସ୍ତେ ଆଡ ହୋଇଗଲେ ।

କମଳୀ ଝାମ୍ପିପଡିଲା ତା' ଝିଅ ଉପରକୁ । ତାକୁ କୁଣ୍ଢେଇ ଧରି କାଳେସି ଲାଗିଲା ପରି କହିଲା । ତା' ହାତରେ ଧରିଥିବା ପନିକି ରକ୍ତ ସାଲୁବାଲୁ, ହାତ କମ୍ପିଲା ବରଡାପତ୍ରପରି ।

ହଠାତ୍ ସାରାସାହିରୁ ଭୟ ଓହ୍ଲେଇଗଲା । ସମସ୍ତେ ସହଜବୋଧକଲେ । କଥାବାର୍ତ୍ତା ହେଲେ । ମାଧ ନିଜେଇ ଆଉ ସାତ ଆଠଜଣ ଗଜା ଟୋକା ମିଶି ମସୁଧା କଲେ । ବୁଢାମାନେ ବିଚାରକଲେ କେମିତି ସେ ରାତିର ମୁକାବିଲା କରିବେ ।

କମଳୀ ଝିଅକୁ କାଖେଇ ଠିଆହେଲା । ସେମିତି ବାଳମୁକୁଳା ଉଦ୍‌ବସ୍ତ୍ରା । ହେମା ଶାଢୀଟାଏ ଆଣି ଖୁବ୍ ସାହସରେ ତା' ଅଣ୍ଟାରେ ଗୁଡେଇଦେଲା । କିଏ ଜଣେ ତା' ଝିଅକୁ ପାଉଁରୁଟି ସ୍ଲାଇସଟିଏ ଧରେଇଦେଲା । ସେ ଧକେଇ ଧକେଇ ଲୁହ ସିଙ୍ଘାଣି ମିଶେଇ ତାକୁ ଚୋବେଇଗଲା । କମଳୀ

ସେମିତି ସଁ ସଁ ହେଉଥାଏ ।

ଲୁହାଟୋପି ପିନ୍ଧା ଦୁଇଜଣ ଆସି ପହଞ୍ଚିଗଲେ । ସମସ୍ତେ ଆଉଜିଗଲେ ମେଞ୍ଚା ମେଞ୍ଚା ହୋଇ ।

କମଳୀ ଝପଟିଗଲା – "କିଏରେ ତୁ ଆଇଲୁ ? ହାଣି ଦେବି ପନିକିରେ । ତୁ ଆସିଚୁ ମୋ ମହତ ନବାକୁ ? ଆଉ ପାଦେ ଆଗେଇଲେ ତୋ ପ୍ରାଣ ରଖିବି ନାଇଁ ।"

ମାଧ ତା' ସାଙ୍ଗମାନଙ୍କୁ ନେଇ ସାମ୍ନାକୁ ବାହାରି ଆସିଲା । ସନ୍ତ୍ରୀମାନଙ୍କୁ କହିଲା – "ଆପ୍ ଲୋଗ୍ ଜାଇୟେ । ହମ୍ ଇନ୍ କୋ ସମ୍ଭଲ୍ ଲେଙ୍ଗେ ।" ଟିକିଏ ରହି ଅଧିକ ଜୋର୍ ଦେଇ କହିଲା, "ହମ୍ ଖୁଦ୍ କୋ ଭି ସମ୍ଭଲ ଲେଙ୍ଗେ । ଆପ୍‌କି କୋଇ ଜରୁରତ୍ ନେହିଁ ହେ ।"

ସନ୍ତ୍ରୀ କହିଲା – "ଆପ୍ ଲୋଗ୍ ଜଲଦ୍ ହି ଜଲଦ୍ ଅପନେ ଅପନେ ଘର୍ ଚଲେ ଯାଇଏ ।"

"ହାଁ ଯା' ରହେ ହେଁ ।"

କିଏ ଜଣେ କହିଲା – "କଲ୍ ସେ କର୍ଫ୍ୟୁ ଉଟ୍‌ଜାଏଗା, ଆଜ୍ ରାତ୍ କୋ ଭି କୋଇ ଜରୁରତ୍ ନହିଁ ହେ । ରେଡିଓ ମେ ବତାୟା ହେ ।"

ସନ୍ତ୍ରୀମାନେ ପାଦରେ ପାଦ ମିଳେଇ ଠକ୍ ଠକ୍ ଚାଲିଗଲେ ରାସ୍ତାର ସୀମାନ୍ତକୁ ।

ସମସ୍ତେ କେମିତି ଉଶ୍ୱାସ ବୋଧକଲେ । ପବନ, ଅନ୍ଧାର, ରାତି ତାଙ୍କ ନିଶ୍ୱାସରେ ସହଜରେ ଯାତାୟାତ କଲା । ଶିରାପ୍ରଶିରା ହୁଗୁଳିଗଲେ । ଚିତ୍ରପ୍ରତିମାଗୁଡିକ ହଲ୍ ଚଲ୍ ହେଲେ ।

କମଳୀ ପନିକିଖଣ୍ଡ ପକେଇଦେଲା । କହିଲା – "ବାବୁମାନେ, ମା'ମାନେ ଘରକୁ ଯାଅ, କବାଟ ପକାଇଦିଅ । ଅନ୍ଧାର ମାଡିଆସୁଚି । ମୁଁ ତମକୁ ଜଗିଚି । ମତେ ଡରଭୟ ନାହିଁ । ମୁଁ ଏ ରାସ୍ତାରେ ରାତିସାରା ପହରାଦେବି । ମତେ କେହି କିଛି କରିପାରିବେନାଇଁ । ମୋ ପାଖ ପଶିଲେ ମୁଁ ପନିକିରେ ହାଣିଦେବି ।" ସେ ପୁଣି କାଳେସି ଲାଗିଲାପରି କହିଲା ।

କେହି କେହି ସ୍ତ୍ରୀଲୋକ ସାହସ କରି ତା' ପିଠିରେ ହାତ ରଖିଲେ । ତାକୁ ଥୟ କରେଇଲେ । ସେ କାହିଁକି ତା' ଘରେ ଚିତ୍କାର କଲା, କାହିଁକି ରକ୍ତ ସାଲୁବାଲୁ ପନିକି ଧରି ଲଙ୍ଗଳାହୋଇ ଧାଇଁଆସିଲା । କ'ଣ ହେଲା ସେ ଘରେ କେହି ସାହସକରି ପଚାରିପାରୁନଥିଲେ ।

କମଳୀ ଥୟପଡିଲା । ସକ୍ ସକ୍ କାନ୍ଦିଲା । କହିଲା – "ବାବୁମାନେ, ମା'ମାନେ, ମତେ କିଏ ଚାଉଳ ଅଡେ ଦେଇପାରିବ ! ଦି'ଖଣ୍ଡ ଜାଳ, ଆଉ ମାଟି ହାଣ୍ଡିଟାଏ ! ମୁଁ ଏଇଠି ଇଟା ଥୋଇ ରାନ୍ଧିଦେବି । ଏଇ କାନି ଚିରି ଏ ପିଲାଟାକୁ ଶୁଆଇଦେବି ! ମୁଁ ଜମା ମରିବିନାଇଁ ବାବୁ, ଏ ପିଲାବି ମରିବନାଇଁ, ଆମର ଭାରି ଚେମେଡା ଜୀବନ... । ରାତି ପାହିଲେ ମୁଁ ତମ ଘରେ ଅଇଁଠା ମାଜିଦେବି, ଘର ଝାଡୁ କରିଦେବି, ଲୁଗା କାଚିଦେବି । ତୁମ ଚାଉଳ ଶୁଝିଦେବି, ଜାଳ ଶୁଝିଦେବି, ଲୁଗା ଶୁଝିଦେବି ।"

କିଏ ଜଣେ ଆସ୍ତେ କହିଲା – "ତୋ ଘରକୁ ଯାଉନୁ ।"

କମଳୀ ଖେଁ-ଖେଁ ଏଡେ ପାଟିରେ ହସିଲା । ବିକଟାଳ ହସ । ସମସ୍ତଙ୍କ ପଞ୍ଜରା ଥରିଗଲା ।

ସେ ଘରେ ପରା ମୁର୍ଦ୍ଧାର !

ଓଃ, ସେ ତା'ହେଲେ କାହାକୁ ହତ୍ୟା କରିଚି ? ସେ କ'ଣ ତା' ମଦୁଆ ଗେରସ୍ତ ? ନା ଆଉ କିଏ ? ସେ ଲଢିଚି, ପନିକିରେ ହାଣିଚି, ମୁକୁଳି ଆସିଚି । ଇସ୍ !

ସମସ୍ତେ ବୋଧକଲେ ସେମାନଙ୍କ ଘରେ ବି ମୁର୍ଦ୍ଧାର । ସେମାନେ ବି ମୁକୁଳି ଆସିଚନ୍ତି । ସେମାନେ ଆଉ ଘର ଭିତରକୁ ପଶିଲେ ନାହିଁ ।

ରାତିସାରା କମଳୀର ଇଟା ଚୂଲୀରେ ନିଆଁ ଜଳିଲା । ସମସ୍ତେ ଜାଗିରହିଲେ ରାତିସାରା । ମଝିରେ ମଝିରେ କମଳୀ ହିଁ ରେରେକାର କରି ଚିତ୍କାର କରୁଥିଲା । ତା' ଝିଅ ଟିକିଏ କ'ଣ ଖାଇଦେଇ ଶୋଇଯାଇଥିଲା ରାସ୍ତାରେ ।

ରାତିପାହି ସକାଳ ହେଲା । ରାସ୍ତା ସେମୁଣ୍ଡେ ଲୁହାତୋପି ଦିଶୁନଥିଲା । ପବନ ଭାରି ଲାଗୁନଥିଲା । ପକ୍ଷୀମାନେ ଡାକୁଥିଲେ ଆକାଶରେ ।

ଓଃ, କେଡେ ବଡ ବିପତ୍ତି ପାରି ନହେଲା ସତେ ! ପାହାନ୍ତା ଆଲୁଅରେ କମଳୀ ଲୁଗାଖଣ୍ଡ ଭଲକରି ଗୁଡେଇହୋଇ ଜଡସଡ ଠିଆହେଲା ।

"ମତେ ଚିହ୍ନେଇଦିଅ ବାବୁ – କିଏ ମତେ ଗଉଳ ଦେଲ, ଜାଳ ଦେଲ । ମତେ ଚିହ୍ନେଇ ଦିଅ ସେ ମୁର୍ଦ୍ଧାର କାହାର !"



# ପ୍ରଶ୍ନବାଚକ

ଖୁବ୍ ଗୁଡାଏ ଦୂର ନୁହେଁ । ହେଇ ଆମ ଘରଠୁ ସିଧା ଯାଇ ପ୍ରଥମ ବାଁ ମୋଡ ନେଇଗଲେ ଡାହାଣ ପାଖ ତୃତୀୟ ଘରଟା କଥା କହୁଛି । ତା' ସାମ୍ନାରେ ପୋର୍ଟିକକୁ ଲାଗି ଛୋଟ ଚିନିଚମ୍ପାଗଛରେ ସବୁଜ ବର୍ଣ୍ଣର ଫୁଲ ଭର୍ତ୍ତି । ପୋର୍ଟିକୋ ଉପର ସାରା ମଧୁମାଳତୀ । ବାଁ କୁଣକୁ ଆକାଶଛୁଆଁ ପ୍ରକାଣ୍ଡ ଝାଉଁଗଛ ।

ପାଚିଲା ପାଟକମଳା ରଙ୍ଗର ଦୋତାଲା କୋଠା ଉପରେ ବେଳବୁଡ ଖରା ପଡିଲେ ଅସମ୍ଭବ ସୁନ୍ଦର ଦେଖାଯାଏ । ଧଳାରଙ୍ଗର ହାଲୁକା ଲୁହାଗେଟ୍ ଉପରେ ସରୁପଟାରେ ନାଁ ଲେଖାଥିଲା 'ସୁଧା କୁସୁମ' – ଇଂରେଜୀରେ । ଟିକିଏ ତଳକୁ ସେମିତି ଇଂରାଜୀରେ ଲେଖାଥିଲା – 'ବାଘକୁ ସାବଧାନ!'

'ମାନେ ?...ତା' ଭିତରେ ବାଘ ବୁଲୁଥିଲା ନା କ'ଣ ? ହୋଇପାରେ । ସେଇଠି ଯାହା ମନ ତାହା ବୁଲିବା କିଛି ବିଚିତ୍ର କଥା ନୁହେଁ ।

ଘରଟା ବି ନିଛାଟିଆ । ପରିବେଶ ବି ନିର୍ଜନ ।

ମୁଁ ଏବେ ରହୁଥିବା ଏ ଭଡାଘରକୁ ନୂଆ ଆସିଥାଏ । ଏକୁଟିଆ ରହୁଥାଏ । ସହରର ଏ ମୁଣ୍ଡେ ଏବେ ବି ବିଶେଷ ଘରଦ୍ୱାର ହାଟ-ବଜାର ଗହଳି ହୋଇନାହିଁ – ସେତେବେଳେ ତ ଆହୁରି ନିରୋଳା ।

ସକାଳ ଦଶଟାରେ ଅଫିସ ଗାଡି ଆସି ମୋତେ ନେଇଯାଉଥାଏ ପ୍ରାୟ ଦଶ କିଲୋମିଟର ଦୂରକୁ । ସେଇଠି ଅଫିସ, ସେଇଠି ଦ୍ୱିପ୍ରହର ଖିଆପିଆ । ଫେରିଲାବେଳେ ଗୋଟାଏ ଢାବାରୁ ରୁଟି ଆଉ ତଡ୍‌କା, ବେଳେବେଳେ ମାଂସ ଦୋପିଆଜି ନେଇ ଆସୁଥାଏ ହଟ୍ କେସ୍‌ରେ ରାତିପାଇଁ ।

ସେଦିନ ମୋ କାମ ସରିଗଲା ଖୁବ୍ ଚଞ୍ଚଳ । ପ୍ରାୟ ଚାରିଟାବେଳକୁ ଗାଡି ଅନ୍ୟ କାମରେ ଆସୁଥିଲା । ମୁଁ ସେଥିରେ ଫେରିଆସିଲି । ଢାବାରେ କିଛି ମିଳିଲା ନାହିଁ । ଏଣୁ ରାତିରେ ଓପାସ ଶୋଇବା ଏକରକମ ଅନିବାର୍ଯ୍ୟ । ମନେମନେ ସ୍ଥିରକରିନେଲି ଯେ ଏଥର ଯାଇ ପିଲାଙ୍କୁ ନେଇ ନଆସିଲେ ରକ୍ଷାନାହିଁ । ସେଇଟା ଆଉ ବାଗେ ମଧ ଅନିବାର୍ଯ୍ୟ ହୋଇଯିବ ବୋଲି ମୁଁ ଜାଣିନଥିଲି ।

ଘର ସାମ୍ନାରେ ମୁଁ ଚୁପ୍‌ଚାପ୍ ଓହ୍ଲେଇଗଲି ଖାଲି ହଟ୍ କେସ୍‌ଟି ହାତରେ ଧରି । ଗାଡି

ଡ୍ରାଇଭର ସଲାମ କରି ଚାଲିଗଲା । ମୁଁ ଘରକୁ ମୁହେଁଇ ଗଲାବେଳକୁ ଦେଖିଲି କେହି ଜଣେ ଭିତର ଗ୍ରିଲ୍ ଗେଟ୍ ପାଖରେ ଠିଆହୋଇ କଲିଂ ବେଲ୍ ଚିପୁଚି । ତାକୁ ଏଡେବଡ ତାଲାଟା ଦିଶୁନାହିଁ ନା କ'ଣ ?

ମୁଁ ଗଳା ସଫାକରି ଜଣାଇଦେଲି ଯେ ମୁଁ ଆସିଗଲି ।

– "କାହାକୁ ଖୋଜୁଛନ୍ତି ?"

– "ୟହାଁ ସୁନିଲ୍ ଶ୍ରୀବାସ୍ତବ ହେଁ ?"

– "ସୁନିଲ ଶ୍ରୀବାସ୍ତବ ? ସେଭଳି କେହି ଏଠି ନାହାନ୍ତି ତ ?"

– "ଓଃ, ଆଇ ଏମ୍ ସରି !" କହି ଯେ ପାହାଚ ଓହ୍ଲେଇ ବାହାର ଗେଟ୍‌ଆଡକୁ ପାଖେଇ ଆସିଲା ତାକୁ ସୁନ୍ଦରୀ ନକହି ଉପାୟ ନାହିଁ ।

ପାଇଜାମା, ପଞ୍ଜାବୀ ଦୁପଟ୍ଟା । ଠିଆ ନାକ । ଟଣା ଟଣା ଭୂରୁ । କାଶ୍ମୀରର ସ୍ଥିର ହ୍ରଦ ଆଉ ଅସୁମାରି ଫୁଲର ଉବବନ ସତେବା ସେ ନାରୀମୂର୍ତ୍ତିର ଉପାଦାନ । ମୁଁ ଆଡ ହୋଇ ବାଟ ଛାଡିଦେଲି । ଭୁରୁଭୁରୁ ବାସ୍ନାଟିଏ ମୋ ସାମ୍ନାଦେଇ ପାରିହେଇଗଲା ।

ମୁଁ ଉପରେ ପଡିଲାପରି ପଚାରିଲି – "ଆପଣଙ୍କର କିଛି କାମ ଥିଲା କି ସୁନିଲ ଶ୍ରୀବାସ୍ତବଙ୍କ ପାଖରେ ? ସେ ବୋଧେ ମୋ ଆଗରୁ ଏଇଠି ରହୁଥିଲେ ।... ମୋ ନା ଅରୁଣ ମିଶ୍ର । ମୁଁ ଆପଣଙ୍କର କୌଣସି ସାହାଯ୍ୟ କରିପାରିବି ଯଦି କହନ୍ତୁ ।"

– "ନୋ ଥାଙ୍କସ୍ !"

ତେଣିକି ଆଉ କିଛି କହିବା ନିଶ୍ଚୟ ଅଭଦ୍ରତା । କିନ୍ତୁ ସେ ପରିସ୍ଥିତିରେ ଭଦ୍ରତା ରଖିବା ସମ୍ଭବ ନଥିଲା । ମୁଁ କଥା ବଢେଇଲି – "ଆପଣ କ'ଣ ଏଇଠି ଥାଆନ୍ତି ?"

ସେ ଉତ୍ତର ଦେଲାନାହିଁ । କେବଳ ସେ ଝାଉଁଗଛଟାକୁ ଆଙ୍ଗୁଠି ଟେକି ଦେଖାଇ ଦେଲା ।

ମୋ ଅଜାଣତରେ ମୁଁ ସତର୍କ ହୋଇଯାଉଥିଲି । ନୂଆ ଜାଗା । ସେ ହିନ୍ଦୀ କହୁଥିବା ତରୁଣୀ ଏଠି ବିଦେଶିନୀ । ବୋଧେ ତା' ପରିବାର ସାଥିରେ ସେଇ ଝାଉଁଗଛିଆ ଘରେ ଭଡାରେ ରହୁଛି... ବୋଧହୁଏ ଏଇଠି କିଛିଦିନ ନଥିଲେ । ନହେଲେ ଶ୍ରୀବାସ୍ତବ ଏବେ ମଧ ଏଠି ରହୁଛି ବୋଲି ସେ କାହିଁକି ଭାବିଥାନ୍ତା ?

ମୁଁ ସେମିତି ସେଇଠି ଠିଆରହି ସେ ଅପସରିଯାଉଥିବା ଲମ୍ବା ବେଣୀଟିର ଦୋଳନକୁ ଚାହିଁରହିଲି ରାସ୍ତାର ବାଁ ମୋଡ ପାଖରେ ଲୁଚିଯିବା ପର୍ଯ୍ୟନ୍ତ ।

ଘର ଭିତରେ ପଶି ପ୍ରଥମେ ଫୋନ୍ ଉଠେଇଲି –

– "କିଏ ପଣ୍ଡା କହୁଚ ?"

– "ସାର୍ କହୁଚି । କ'ଣ ଅସୁବିଧା ହେଲା କି ସାର୍ ?"

– "ନାଇଁ କିଛି ଅସୁବିଧା ନାଇଁ । ଆଚ୍ଛା ଏ ଘରେ ମୋ ଆଗରୁ କିଏ ଥିଲା କହିପାରିବ ?"

– "ଆମେ ତ ସାର୍ ଏ ଘରଟା ନୂଆ ନେଇଛୁ କମ୍ପାନୀ ତରଫରୁ । ଘରର ମାଲିକ

କୈଳାସ ମହାପାତ୍ର । ସେ ଯା ଆଗରୁ କାହାକୁ ଦେଇଥିଲେ କହିପାରିବିନାହିଁ । ତାଙ୍କର ଫୋନ୍ ଅଛି, ପଚାରିବି କି ସାର୍ ?"

– "ନା ଥାଉ, ମୁଁ ବୁଝୁଛି ।"

– "ହଲୋ, ମିଷ୍ଟର ମହାପାତ୍ର କହୁଛନ୍ତି ?"

– "କହୁଛି ।"

– "ଆଜ୍ଞା, ନମସ୍କାର ! ମୁଁ ଆପଣଙ୍କ ଘରେ ନୂଆ ଭଡାରେ ଅଛି ।"

– "ଓ, ମିଶ୍ରବାବୁ ! ଆଚ୍ଛା, କହନ୍ତୁ କ'ଣ କିଛି କାମ ଥିଲା ?"

– "ମୋ ଆଗରୁ ଯେ ସୁନିଲ ଶ୍ରୀବାସ୍ତବ ଏଠି ଥିଲେ ତାଙ୍କ ବିଷୟରେ କ'ଣ କିଛି କହିପାରିବେ କି ?"

– "ମାଇଁ ଗଡ୍ ! ଆପଣ ବି ସେ ଝିଅକୁ ଭେଟିଲେ ନା କ'ଣ ?"

– "କୋଉ ଝିଅ ?"

– "ସେଇ କାଶ୍ମୀରି ଝିଅ ଯେ ଆସି ସୁନିଲ ଶ୍ରୀବାସ୍ତବ କଥା ପଚାରେ ଏବଂ ଚାଲିଯାଏ ସେ ଝାଉଁଗଛିଆ ଘରକୁ ?"

– "ମାନେ, ଆପଣ କ'ଣ କହିବାକୁ ଚାହାନ୍ତି ?"

– "ଏଇଆ ଯେ ସେ ଘରେ ସୁନିଲ ଶ୍ରୀବାସ୍ତବ ନାଁର କୌଣସି ଲୋକ ରହିନାହିଁ । ମୁଁ ଜମା ସେ ବିଷୟରେ କିଛି ଜାଣେନାହିଁ; କିନ୍ତୁ ମୋର ସବୁ ଭଡାଟିଆଙ୍କ ପାଖରେ ଏ ଘଟଣା ନିଶ୍ଚୟ ଘଟିଆସୁଚି । ଦିନେ ଜଣେ ତରୁଣୀ ଆସି ସୁନିଲ ଶ୍ରୀବାସ୍ତବ କଥା ପଚାରି ଦେଇ ଚାଲିଯାଉଛି ।"

– "ଆପଣ କ'ଣ ଏକଥା ନିଜେ ତଦନ୍ତ କରି ବୁଝିନାହାନ୍ତି ?"

– "ବୁଝିଛି, କିଛି କିଛି; କିନ୍ତୁ ମୁଁ ଆପଣଙ୍କୁ କେବଳ ସତର୍କ କରିଦେବାକୁ ଚାହେଁ ଯେ ଆପଣ କଦାପି ସେ ଝାଉଁଗଛିଆ ଘରକୁ ଯିବେନାହିଁ ।"

– "ଗଲେ କ'ଣ ବିପଦ ଆପଦ ଅଛି ନା କ'ଣ ?"

– "ମୁଁ ସେକଥା କହିବିନାହିଁ । କିନ୍ତୁ ସେଠିକି ଆପଣ ଜମା ଯାଆନ୍ତୁନାହିଁ ଏବଂ ଆପଣ ମୋତେ ଭୁଲ୍ ବୁଝିବେ ନାହିଁ । ଯଦି କହିବି ଆପଣ ଚଞ୍ଚଳ ପରିବାର ନେଇଆସନ୍ତୁ । ମୁଁ ସୁବିଧାହେଲେ କାଲି ସକାଳେ ଆପଣଙ୍କ ପାଖକୁ ଆସିବି ।"

କୈଳାସ ମହାପାତ୍ର ଫୋନ୍ ଥୋଇଦେବା ପରେ ମୁଁ ପ୍ରାୟ ଆତଙ୍କିତ ବୋଧ କରୁଥିଲି ଏବଂ ଭାବିପାରୁନଥିଲି କ'ଣ କରିବି ? ଧର ଯଦି ରାତିହେଲେ ସେ ଝିଅ ପୁଣି ଚାଲିଆସେ ? ମୁଁ ଗୋଟାପଣେ ଶୀତେଇଗଲି । ଠିଆହୋଇପଡି ଦେହରୁ ମନରୁ ବୁଢିଆଣୀ ଜାଲ ପୋଛିପକେଇଲି – "ଧେତ୍, ଏମିତି ଦିନବେଳଟାରେ ଅଲୌକିକ ଘଟିଯିବ ନା କ'ଣ ?"

ଟପ୍ ଟପ୍ ପିଣ୍ଡାଯାଏ ଚାଲିଆସିଲି । କଲିଂ ବେଲ୍ ପାଖରେ ସେ ଯେଉଁଠି ଠିଆହେଇଥିଲା

ସେଇଠିକି ଚାହିଁରହିଲି । କାହିଁକି କେଜାଣି ମୋ ମଝି ଶିରା ହାଡ କିଣ୍ କିଣ ଡାକଦେଲା । ଈଷତ୍ କମ୍ପିଗଲା ସାରା ଦେହ । ମୁଁ ଭୂଇଁରେ ଜୋର୍‌ରେ ଲାତଟାଏ ମାରି ମେରୁଦଣ୍ଡଟାକୁ ଟାଣକରିନେଲି ଏବଂ ହଠାତ୍ ନିଷ୍ପତ୍ତିନେଲି ଯେ ମୁଁ ସେ ଝାଉଁଗଛିଆ ଘରକୁ ଅଲବତ୍ ଯିବି ଏବଂ ଏଇ ସାଙ୍ଗେ ସାଙ୍ଗେ ଯିବି ।

ଘରେ ତାଲାପକେଇ ମୁଁ ରାସ୍ତାକୁ ଆସିବାମାତ୍ରେ ମୋ ଆଗରେ ସେ ଝିଅ ଝଲମଲ ଦେଖାଗଲାପରି ଲାଗିଲା । ମୁଁ ସତେବା ତା' ପଛେ ପଛେ ଯିବାକୁ ସେ ଇଙ୍ଗିତ କରୁଥିଲା ।

ମୁଁ ସେ ଦୁଆରେ ପହଞ୍ଚି ଆଗ ତା'ର ପରିବେଶଟାକୁ କଳିବାକୁ ଚେଷ୍ଟାକଲି । ଚମ୍ପାଗଛ, ମଧୁମାଳତୀ, ଝାଉଁଗଛ, ଲୁହାଗେଟ୍‌ରେ ନାମଫଳକ ଏବଂ ତା' ତଳକୁ ଇଂରାଜୀରେ "ବାଘକୁ ସାବଧାନ !"

ସେଇଠି ମୋ ପାଦତଳିପା ସିର୍ ସିର୍ କଲା । ସତେବା ମୁଁ ଝାଉଁଗଛର ଶିଖତାଳରୁ ତଳକୁ ଚାହିଁଦେଇଛି ! ଝାଉଁଗଛ ଦୋହଲୁଛି ପବନରେ । ଘର ଭିତର ଶୂନ୍‌ଶାନ୍ । ତା'ର ଚାରିପାଖ ଶୂନ୍‌ଶାନ୍ । ସତେବା ମୁଁ ବାଘଗୁମ୍ଫା ସାମ୍ନାରେ ଠିଆହୋଇଯାଇଛି ! କିନ୍ତୁ କୋଉଠି ଧୂଳିମଳିଟିକିଏ ନାହିଁ । ଘରଟି କାଚପରି ନିର୍ମଳ, ଚକ୍ ଚକ୍ ।

ମୁଁ ଗେଟ୍ ଫିଟେଇବା ପାଇଁ ଉପର କଡାଟାକୁ ଟେକିଲି । ମୋ ହାତ ସାମାନ୍ୟ କମ୍ପୁଥିଲା । କଡା ଟେକିବାର ସେ ହାଲୁକା ଶବ୍ଦରେ ସାରା ପରିବେଶ କମ୍ପିଗଲା ।

ମୁଁ କିନ୍ତୁ ଗେଟ୍ ନଫିଟେଇ ସେଇ କଡାଟାକୁ ହିଁ ଦୁଇଥର ବାଡେଇଲି । ଯେ ସେ ଶବ୍ଦରେ ଘରୁ ବାହାରିଆସି ପୋର୍ଟିକୋରେ ଠିଆହେଲା ତାକୁ ଦେଖି ମୋ ପିଳେହିପାଣି । ପ୍ରକାଣ୍ଡ ମଣିଷ । ମୁଣ୍ଡରେ ଟାଆଁସା କସରା ବାଳ । ଗହମରଙ୍ଗର ଆଫଗାନି ଚେହେରା । ଲୁଙ୍ଗି ଆଉ ପଞ୍ଜାବୀପିନ୍ଧା ସେ ଲୋକଟା ମୋତେ ସେଇଠୁ କଟ୍‌ମଟ୍ କରି ଚାହିଁରହିଲା ।

ମୋଆଡୁ ମୁଁ କହିଲି – "ଗୁଡ୍ ଇଭ୍‌ନିଂ । ମୁଁ ୟା ଉପର ଲେନ୍‌ର ୧୩୨ ନମ୍ବର ଘରେ ରହେ ।"

ସେ ଚର୍କିଲା ନାହିଁ । ଉତ୍ତର ନଦେଇ ସେମିତି କଟ୍‌ମଟ୍ ଚାହିଁରହିଲା । ବୋଧହୁଏ ମୁଁ କାହିଁକି ଆସିଛି ନଜାଣିବାଯାଏ ସେ ସେମିତି ନିବୁଜ କାନ୍ଥପରି ଠିଆରହିବ ।

– "ଆପଣଙ୍କ ଘରୁ ଜଣେ ସୁନିଲ ଶ୍ରୀବାସ୍ତବଙ୍କୁ ଖୋଜି ମୋ ଘରେ ପହଞ୍ଚିଥିଲେ ।"

– "ଓ ହୋ, ହୋ, ହୋ..."

ତା'ର ସେ କୁହାଟରେ ମୁଁ କୁଢେଇ ହେଇପଡିଥାନ୍ତି ।

"ଆଇଏ, ଆଇଏ"... କହି ସେ ଆସି ଗେଟ୍ ଖୋଲିଦେଲା ।

ମୁଁ ବାଘ୍ଣି ଭୟରେ ଏଣେତେଣେ କନକନ ହେଇ ଅନଉଥିଲି । ସେ ନିର୍ବିକାର ଯାଇ ବୈଠକଘର ଚୌକିରେ ସୋଫାରେ ବସିପଡି ମୋତେ ବି ବସିବାକୁ କହିଲା ।

– "ଆଚ୍ଛା ତୋ ଫିର୍ ଆପ୍ ହେଁ ସୁନିଲ ଶ୍ରୀବାସ୍ତବ ?"

ମୁଁ କୌଣସିପ୍ରକାରେ ନିଜକୁ ସମ୍ଭାଳିଗଲି ଏବଂ ତୁରନ୍ତ ତାକୁ ସଂଶୋଧନ କରିବାକୁ କହିଲି – "ନା, ନା, ମୁଁ ସୁନିଲ ଶ୍ରୀବାସ୍ତବ ନୁହେଁ – ମୋ ନାଁ ଅରୁଣ ମିଶ୍ର, ଅରୁଣ ମିଶ୍ର!"

– "ହମ୍ ସମଝଗୟେ ସୁନିଲ ଶ୍ରୀବାସ୍ତବ ସାବ୍!"

ମୁଁ ହଠାତ୍ କୌଣସି ଯନ୍ତାରେ ପଡିଗଲାପରି ଅନୁଭବ କଲି ଏବଂ ପ୍ରତିବାଦରେ ବାହାରିଯିବାକୁ ଠିଆହେଇଗଲି।

ସେ ବାଘଭଳି ଝାମ୍ପିପଡିଲା। ତା' ମୁଠାଭିତରେ ମୋ ବାଁ ଡେଣାଟି ମଲାଗଡିଶାପରି ନିଶ୍ଚେଷ୍ଟ ଓହଳି ରହିଲା – "ଆରେ, ଯବ୍ ଆ ହି ଗୟେ ହେଁ, ଅବ୍ କାହାଁ ଯାଇୟେଗା ?"

ସେ ଆସ୍ତେ ମୋତେ ପୁଣି ସୋଫାରେ ବସେଇଦେଲା।

– "ଆପ୍ ମାନେ ୟା ନ ମାନେ, ହମାରେଲିଏ ତୋ ଆପ୍ ହି ସୁନିଲ ଶ୍ରୀବାସ୍ତବ।"

ପାଗଳ ନା କ'ଣ! ମୋ ଦେହରୁ ଝାଳ ଫିଟିଗଲା। ସେଇଟା ନିଶ୍ଚେ ଗୋଟାଏ ପାଗଳାଗାରଦ। ସେଇଠି ଯେ ଯାହା ଚାହିଁବ କରିନେଇପାରିବ। ସେଠୁ କୌଣସିପ୍ରକାରେ ଖସିନଗଲେ ରକ୍ଷାନାହିଁ।

ମୁଁ ଉପସ୍ଥିତବୁଦ୍ଧି ପ୍ରୟୋଗକରି କହିଲି – "ଠିକ୍ ଚିହ୍ନିଛନ୍ତି। ମୁଁ ଭାବିଥିଲି ଆପଣ ଚିହ୍ନିପାରିବେନାହିଁ। ମୁଁ ସୁନିଲ ଶ୍ରୀବାସ୍ତବ।"

– "ଦାଟ୍‌ସ ଲାଇକ୍ ଏ ଗୁଡ୍ ବୟ! ଆପ୍ ବୈଠୌ, ମେଁ ଡଲିକୋ ବୁଲାତା ହୁଁ।"

ସେ ଉଠିଯିବାରୁ ମୋର ପ୍ରବଳ ଇଚ୍ଛାହେଲା – ସେଇଠୁ ଦୌଡି ପଳାଇ ଆସିବାକୁ। ଚାରିଆଡ ଛପ୍ ଛପ୍ ଲାଗୁଥାଏ। କୋଉ ଦିଗରୁ କ'ଣଟାଏ ହୁଏତ ଝାମ୍ପିପଡିବ ଏଭଳି ଆତଙ୍କ ମଡେଇହୋଇପଡୁଥାଏ। ତଳିପେଟରୁ ତଳିପା ପର୍ଯ୍ୟନ୍ତ ଶୀତକଣ୍ଟା ମାରିଯାଉଥାଏ। ବାହାରେ ସଂଧ୍ୟା ନଇଁଆସିଥାଏ। ମେଘ ଗର୍ଜୁଥାଏ ଗୁମୁଗୁମୁ ବହୁପୂର୍ବରୁ। ମୁଁ ତଥାପି ବସିଥାଏ, କାରଣ ଖେଳରେ ଗୋଡ ବଢେଇ ଦେବା ପରେ ଆଉ ଘୁଞ୍ଚିବା ସହଜ ନୁହେଁ। ତା' ବାହାରେ ଡଲିକୁ ଆଉଥରେ ଦେଖିବାକୁ ଲୋଭବି ହେଉଥାଏ।

ମୃଦୁ ପାଦଶବ୍ଦ ପାଖେଇ ଆସିଲା। ମୁଁ ଅସୁସ୍ଥ ଉଦ୍‌ବିଗ୍ନ ବୋଧକଲି। ପରଦା ଆଡେଇ ଚା' ଟ୍ରେ ଧରି ପଶିଆସିଲା ସଲୱାର ପଞ୍ଜାବୀ ଦୁପଟ୍ଟାରେ ଶୋଭିତା ଆଉ ଜଣେ। ପ୍ରକାଣ୍ଡ ଚେହେରା – ପାଖାପାଖି ଛ'ଫୁଟ ଉଚ୍ଚ। ଓଜନ ଆକାର ସେହିପରି। ନାରୀରୂପରେ ହସ୍ତିନୀଟିଏ। ଆଉ ଜଣଙ୍କର ଏଇ ବୋଧେ ମଣିକାଞ୍ଚନ ଯୋଡି।

ମୋ ଜିଭ ଭିଡିନେଲା। ମୁଁ ଆଉରି ଘାବରେଇଗଲି। ରସିକପଣିଆ କାହିଁ କୁଆଡେ ଉଭେଇଗଲା।

– "ନମସ୍ତେ ଶ୍ରୀବାସ୍ତବ ସାବ୍!"

ମୁଁ ହାତଯୋଡି ନିରୂପାୟ ଭାବରେ ଉତ୍ତରଦେଲି – "ନମସ୍ତେ।"

– "ମୁଝେ ମାଲୁମ୍ ହେ ଆପ୍ ଚାୟମେ କମ୍ ସକ୍‌କର ପସନ୍ଦ କରତେ ହେଁ। ମେ ତୋ

ଓ୍ୱହି ପୁରାନେ ଆଦତ୍ ସେ ଢାଇଗ୍ୟମଚ ଲେତି ହୁଁ ।"

ତା'ପରେ ଭୂତଳ କମ୍ପିଲାପରି ଦୁଲ୍‌ଦୁଲ୍ ହସ ।

ମୁଁ ଚ୍ୟ' ଉଠାଇଲାବେଳେ ମୋ ହାତ ଈଷତ୍ କମ୍ପୁଥାଏ । ମୁଁ ଭାବିପାରୁନଥାଏ ତେଣିକି କ'ଣ ହବ ?

– "ଆପ୍ ଅକେଲେ ହେଁ, ତକ୍‌ଲିଫ୍ ଉଠାତେ ହେଁ । ଆଜ୍ ରାତ୍ କୋ ୟହିଁ ଖାନା ଖାଇଏଗା ।"

– "ଆରେ ନାହିଁ, ନାହିଁ । ମୋ ପାଇଁ ଆପଣ କାହିଁକି ଏତେ କଷ୍ଟ କରୁଛନ୍ତି ?"

– "ଅଭି ଭି ଆପ୍ ଓ୍ୱହି ମଜାକ୍ କରତେ ହେଁ । ଆରେ, ଆପ୍ ଅପନି ବୋଲି ମେ ବାତ କିଜିୟେ । କ୍ୟା ଗଡର୍ ଗଡର କର୍ ରହେ ହେଁ!"

ଭାବିଲି ବୋଧେ ତେଣିକି ମୃତ୍ୟୁ ସୁନିଶ୍ଚିତ । ମୁଁ ହିନ୍ଦୀ କହିବା ଆରମ୍ଭ କରିଦେଲେ ଅଭିନୟ ସରିଯିବ । ଅଳ୍ପ କଥା ଆଉ ଠାର ମିଶାଇ ଯେତେଦୂର ସମ୍ଭବ ଚଳେଇ ନେବାକୁ ସ୍ଥିରକଲି ।

– "ଆଜି ଡିନର୍ କ୍ଲବରେ ଅଛି – କାଲି ଦେଖିବା ।"

ପୁଣି ଦୁଲୁଦୁଲୁ ହସ ।

– "ସଚ୍‌ମୁଚ୍ ଆପ୍ ଏ ଗଡର୍ ମଡର୍ ବହୁତ୍ ଅଚ୍ଛି ତରହ ବୋଲ୍‌ତେ ହେଁ – ବିଲ୍‌କୁଲ୍ ଇହ ମୁଲ୍‌କେ ଲୋଗୌଁକେ ତରହ ।" ମୁଁ ହସିବା ପାଇଁ ଦାନ୍ତ ନେଫେଡି ରଖିଲି ଏବଂ ଚ୍ୟ' ପିଇବ ଭିତରେ ଖସିବାର ଉପାୟ ଚିନ୍ତାକରୁଥିଲି ।

ମଝିରେ ସେ ଗର୍ଜିଲେ – "ଓ ଜି ଶୁନ୍‌ତେ ହୋ..."

ପାଲଟା ଗର୍ଜନ ଶୁଭିଲା – "କ୍ୟା ହେ ?"

"ଏଠୁ ଶୁଭିଲା – "ଜରା ଆଓ ତୋ ।"

ସେ ଭୀମକାୟ ଲୋକଟି ଆସି ଠିଆହେଲା, "ବୋଲୋ, କ୍ୟା ହେ ?"

– "ଆଜ୍ ରାତ୍‌କୋ ଶ୍ରୀବାସ୍ତବ ହମାରେ ୟହାଁ ଖାନା ଖାଏଙ୍ଗେ ।"

– "ମୁଝେ ମାଲୁମ୍ ହେ । ମେଁ ଉସ୍‌କି ତୈୟାରି କର ରହା ଥା ।"

ମୁଁ ଜାଣିଗଲି ଯେ ମୋର ମୃତ୍ୟୁ ସୁନିଶ୍ଚିତ – ସେ ମୋ ପାଇଁ ଡିନର୍ କରୁନଥିଲା ମୋତେ ହିଁ ଡିନର୍ କରିବାର ବ୍ୟବସ୍ଥା କରୁଥିଲା । ଏଇଟା ତାଙ୍କର ଯୋଜନା ଭିତରେ ଥିଲା କେହି କାହାକୁ ପଚାରିବା ଦରକାରନାହିଁ । ସେମାନେ ମୋତେ ମାରିବାର ଉପାୟ ବୋଧେ ଖଞ୍ଜିରଖିଛନ୍ତି । ମୋତେ ବଳାତ୍କାର କ'ଣ ଖୁଆଇ ବେହୋସ କରିଦେଲା ପରେ ବାକି କାର୍ଯ୍ୟ ତାଙ୍କ ଢଙ୍ଗରେ ସେମାନେ କରିଯିବେ ।

ମୁଁ ଚ୍ୟ' କପ୍ ଥୋଇଦେଇ ଉଠିଲି – 'ଚ୍ୟ' ପାଇଁ ଧନ୍ୟବାଦ । ନମସ୍ତେ । ମୁଁ ଆସୁଚି !"

..."ଆରେ କହାଁ ଜାଇଏଗା ? ଆପ୍‌କୋ ଖାନା ଖାକର୍ ହିଁ ଜାନା ପଡେଗା ଜି ।"

ଏତିକି କହି ସେ ମୋ ଆଡକୁ ପାଦେ ଆଗେଇଆସିବାରୁ ମୁଁ ନଥିକିନା ଚୌକିରେ ପୁଣି

ବସିପଡିଲି ।

– "ଦାଟସ୍ ଲାଇକ୍ ଏ ଗୁଡ୍ ବୟ ।"

ସେ ଦୁହେଁ ପରସ୍ପରକୁ ଚାହିଁ ହସିଲେ ଏକାପରି । ଏତିକିବେଳେ ଗୋଟାଏ ପୋଡ଼ା ଫୁରୁକୁଟିଆ ଗନ୍ଧ ମୋ ନାକରେ ବାଜିଲା । ମୁଁ ରୁମାଲ ନାକରେ ଦେବା ଦେଖି ସେ ମାଇକିନା ସେ ମର୍ଦ୍ଦକୁ ଚାହିଁଲା । ଲୋକଟା ବିଜୁଳି ବେଗରେ ସେଇଠୁ ଚାଲିଗଲା । କୁଆଡେ ଗଲା, କାହିଁକି ଗଲା – କହିବା କଷ୍ଟ । କିନ୍ତୁ ମୋର ହଠାତ୍ ମନେପଡିଗଲା ଯେ, ବାଘ ଯନ୍ତା ପାଖରେ ଏମିତି ଗନ୍ଧହୁଏ । ପୋଡ଼ା ମାଂସର ଫୁରୁକୁଟିଆ ଗନ୍ଧ । ମୋ ଦେହରୁ ଯମଝାଳ ବୋହିଗଲା । ଏଠି ତା'ହେଲେ ସତକୁସତ ବାଘ ପୋଷାହେଇଚି !

ଚା' ପିଇସାରି ସେ ହିଡିମ୍ବୀ ମୋ ଆଡକୁ ଏକଲୟରେ ଚାହିଁରହିଲା । କୌଣସି ଥଟ୍ଟା ପରିହାସ ନାହିଁ । ହସ ହସ ନାହିଁ । ଏଡେ ମୁହଁ କରି କିଛି ସମୟ ବସିଲା ପରେ ଚାଲିଗଲା । ମୁଁ ଆହୁରି ବିପଦ ମଣିଲି । ଏଣିକି କ'ଣ ହେବଟି ? ଏତିକିବେଳେ ସେ ସୁନ୍ଦରୀ ଝିଅଟି ଆସିଯାଆନ୍ତା ଭଲା ? ଏ ଘନୀଭୂତ ବିପଦବେଳରେ ତାକୁ ଥରେ ଦେଖିଦେଲେ ସବୁ ଦୁଃଖ ଭୁଲିହୋଇଯାନ୍ତା । ସେ ପ୍ରକୃତରେ କିଏ ? ସେ କ'ଣ ଏମାନଙ୍କ ଝିଅ ? ଏ ଅସୁର ଦମ୍ପତି କ'ଣ ସେପରି ସୁଶ୍ରୀ ଦେବକନ୍ୟାକୁ ଜନ୍ମଦେଇପାରନ୍ତି ?

କିନ୍ତୁ ଏ ଦୁହେଁ କ'ଣ ସତରେ ପତି-ପତ୍ନୀ ନା ଆଉ କିଛି ?

ୟା' ଭିତରୁ ଏ 'ସୁଧା କୁସୁମ'ଟି କିଏ ? କାହାର ସେ ନାମଫଳକ ଗେଟ୍‌ରେ ରାଗିଛି ?

ମୁଁ କୌଣସି ପ୍ରଶ୍ନର ଉତ୍ତର କାହା ପାଖରୁ ଜାଣିପାରିବିନାହିଁ । ମୋ ଭିତରେ ସେତେବେଳେ କୌତୂହଳ ଅପେକ୍ଷା ଭୟ ହିଁ ବେଶୀ କାମକରୁଥିଲା । ମୁଁ ଚାରିଆଡକୁ ଚାହାଁଚାହିଁକରି ଆସ୍ତେ ଉଠିଲି । ମୋ ଭିତର ପ୍ରବୃତ୍ତି ମୋତେ କେତେବେଳେ ପୋର୍ଟିକୋ ପାଖରେ ଠିଆକରାଇଦେଇଥିଲା – ସେଇଠୁ ରାସ୍ତା ଗେଟ୍ ମାତ୍ର ତିରିଶ ପାହୁଣ୍ଡ କଥା ।

ବାଟରେ ହୁଏତ ବାଘ ଝାମ୍ପି ନେବ । ନେଲେ ନଉ – ସେ ବରଂ ଭଲ; ନହେଲେ ବାଘଠାରୁ ଆହୁରି ଭୟଙ୍କର ଜୀବମାନେ ମୋତେ ଡିନର ଟେବୁଲରେ ପକେଇ କଞ୍ଚା ଖାଇଯିବେ ।

ମୁଁ ନିଶ୍ୱାସ ରୋଧିନେଲି । ଆଖିବୁଜି କ୍ଷେପିଗଲି ଗେଟ୍‌ଯାଏଁ । କେଜାଣି କେମିତି ଗେଟ୍ ଭିତରେ ମୁଁ ଗଳିଗଲି ରାସ୍ତା ଉପରକୁ । ଦେଖିଲାବେଳକୁ ସେ କାଶ୍ମୀରୀ ସୁନ୍ଦରୀ ଗେଟ୍ ଖୋଲି ଠିଆହୋଇଚି । ଅଳ୍ପ ହସି ପଚାରୁଚି – ଅବ୍ ଡିନର ନେହିଁ ଲେଙ୍ଗେ ?

ମୋର ଗୋଡଠଉଁ ମୁଣ୍ଡଯାଏ ଠକ୍ ଠକ୍ ଥରୁଥାଏ, ଝାଳରେ ବୁଡିଯାଉଥାଏ ।

ଡିନର୍ ? ଆରେ ବାପ୍‌ରେ !!

ମୁଁ ପ୍ରାଣବିକଳରେ ସେଇଠୁ ଯୋଡିଛାଡିଲି । ମୋ ପଛରେ ଝାଉଁଗଛରୁ ପକ୍ଷୀଟିଏ ଡାକିଲା କୁଲ୍ କୁଲ୍ । ହୋଇପାରେ ସେ ଝିଅଟି ବୋଧେ ସେମିତି ହସୁଥିଲା ।

ଘରବାରଣ୍ଡା ଦାଡରେ ଠିଆହେଇ ଧକେଇଲି କିଛି ସମୟ । ସାମନା ବତୀଖୁଣ୍ଟରୁ ଆଲୁଅ

ପଡୁଥାଏ । ମୁଁ ସେଇଠି କଲିଂବେଲ୍ ତଳକୁ ପାହାଚରେ ବସିପଡିଲି । ମୋତେ ସେ ଅର୍ଘା ଅର୍ଘା ମାଇକିନା ଅଣ୍ଡିରା ଦିଶିଯାଉଥାନ୍ତି ଦୁଃସ୍ୱପ୍ନପରି । ଧର ଯଦି ସେମାନେ ଏପର୍ଯ୍ୟନ୍ତ ମାଡିଆସିବେ !

ମୁଁ ଧଡାସ୍‌କିନା ଉଠିପଡି ତାଲା ଫିଟେଇ ଘରେ ପଶିଗଲି । ଭିତରୁ ତାଲାପକେଇ ଗ୍ରିଲ୍‌ବାଟେ ବାହାରକୁ ଚାହିଁଲି । ଅନ୍ଧାର ଘନୀଭୂତ ହେଉଥାଏ ରାସ୍ତାରେ – ଆକାଶରେ ଝାଉଁଗଛ ଶିଖରେ ।

ରାସ୍ତାରେ ଦୁଇଟା ରିକ୍‌ସା ଯିବା ଆସିବା କଲା । କଥାବାର୍ତ୍ତା ହୋଇ ମୋ ସାଧାରଣ କାଟର ମଣିଷମାନେ ବାଁରୁ ଡାହାଣକୁ ଚାଲିଗଲେ । ମୋତେ ଅନେକ ପରିମାଣରେ ଦମ୍ଭଲାଗିଲା । ରାସ୍ତାକୁ ପଛକରି ଘର ଭିତରେ ପଶିଲି ।

ମୋ ପିଠିସାରା ଶୀତକଣ୍ଟା ମାରିଗଲା । ଖୁବ୍ ମୃଦୁ ଅଥଚ ସ୍ୱଷ୍ଟ ମଧୁର ସ୍ୱରରେ ଶୁଭିଲାପରି ଲାଗିଲା – "ଯହାଁ ସୁନିଲ ଶ୍ରୀବାସ୍ତବ ହେଁ ?"

ମୁଁ ଧଡକିନା ବୁଲିପଡିଲି – କେହି କୁଆଡେ ନଥିଲେ । ମୁଁ ଘରର ସବୁଯାକ ଆଲୁଅ ହାଉ ହାଉ ଜାଳିଦେଲି । ସବୁ ବଖରାର ଅନ୍ଦିକନ୍ଦି ଦେଖିଦେଲି । ଏପରିକି ଖଟତଳ ସୁଦ୍ଧା ତନଖିକରିନେଲି ।

ମୋ ମଞ୍ଜ ଦୋହଲି ଯାଇଥିଲା । ମୁଁ ଚକାପକେଇ ବସି ବଡପାଟିରେ ଗୀତା ପଢିଲି । ମଝିରେ ମୋ ବାଁ ଡେଣାଟାକୁ କିଏ ପୁଣି ଧରି ଦେଉଥାଏ ତା' ପଞ୍ଝାରେ । ମୁଁ ନିଶ୍ୱାସ ରୋଧି ଏଣେ ତେଣେ ଚାହୁଁଥାଏ – ପୁଣି ଅଧାରେ ଛାଡିଥିବା ପଦକୁ ଦୋହରାଉଥାଏ ।

ରାତି ପ୍ରାୟ ନ'ଟା ବେଳକୁ କଲିଂବେଲ୍ ବାଜିଉଠିଲା । ମୋ ହାତରୁ ଗୀତା ଖସିପଡିଲା । କଲିଜା ଆସି ତଣ୍ଟି ପାଖରେ ବାଡେଇହେଲା । ଏଥର ସେମାନେ ନିଶ୍ଚେ ଆସିଗଲେ ! ଆଉ ରକ୍ଷାନାହିଁ !

ବେଲ୍ ପୁଣି ବାଜିଲା । ମୁଁ ମୋର ସବୁ ବଳ ଖଟେଇ ପାଟିକଲି "କିଏ ? ହୁ ଇଜ୍ ଦେଆର ? କୌନ୍ ହେ ? ?"

ତିନିଟା ଭାଷାରେ ଏ ଛୋଟ ପ୍ରଶ୍ନଟିକୁ ଏତେ ଜୋର୍‌ରେ ମୁଁ କାହିଁକି ପଚାରିଲି କହିପାରିବିନାହିଁ ।

"ସାର୍, ମୁଁ ବୁରୁନ୍ଦା !"

ମୋତେ କିଛି ସମୟ ଲାଗିଲା ଠଉରେଇବାକୁ ଯେ ସେ ହେଉଛି ଅଫିସ୍ ପିଅନ୍ ବୃନ୍ଦାବନ – ଡାକ ନାଁ ବୁରୁନ୍ଦା !

ମୁଁ ଆଶ୍ୱସ୍ତ ହେଲି ଅନେକ । ଖୁସି ହେଇଗଲି ତା'ଠୁ ବେଶୀ; କିନ୍ତୁ ସେମିତି ତେଜା ଗଳାରେ ପଚାରିଲି –

– "କ'ଣ ଦରକାର ? ରାତି ଅଧରେ ଆସି କାହିଁକି ଡିଷ୍ଟର୍ବ କରୁଚୁ ?"

– "ସାର୍, ପଣ୍ଡାବାବୁ ଆପଣଙ୍କ ପାଇଁ ଖାଇବା ପଠାଇଛନ୍ତି ।"

– "କାହିଁକି ?"

ସେ ଶଙ୍କିଯାଇ କହିଲା, "ସାର୍, ଡ୍ରାଇଭର କହିଲା ଯେ ସାର୍ ଆଜି ପଞ୍ଜାବୀ ଢାବାରୁ କିଛି ଆଣିନାହାନ୍ତି ରାତିରେ ଖାଇବାକୁ । ପଣ୍ଡାବାବୁ ସେଥିପାଇଁ ମତେ ଟିଫିନ୍ କେରିଅର୍ ଦେଇ ପଠେଇଲେ ।"

– "ହୁଁ ।"

ମୋର ମିଜାଜ୍ ଥଣ୍ଡାପଡିଗଲା । ଭିତର ସ୍ଥିରହେଇଗଲା । କିଛି ନହେଲେ ଜଣକୁ ଦି'ଜଣ ହେଇଗଲେ କେତେ ବଳ !

ମୁଁ ତାଲା ଫିଟେଇ ବୁରୁନ୍ଦାକୁ ଆସିବାକୁ କହିଲି । ସେତେବେଳେ ବର୍ଷା ଆରମ୍ଭ ହେଇଯାଇଥିଲା । ମୋତେ ଭୋକ ବି କରୁଥିଲା । ମୁଁ ଟିଫିନ୍ କେରିଅର ଖୋଲି ଦେଖିଲି – କିଛି ପରଟା, ମାଂସ, ଆଳୁଦମ୍ ଆଉ ଡବାଏ ଭାତ ।

ମୁଁ ଡାକିଲି ବୁରୁନ୍ଦାକୁ – "ଆରେ ତୁ ତ ଖାଇନଥିବୁ ।" ତାକୁ ଭାତ ଆଳୁଦମ୍ ବଢେଇଦେଇ ମୁଁ ବସିଗଲି ଖାଇବାରେ । ପେଟରେ ଅନ୍ନ ପଡିବାରୁ ପଞ୍ଚପ୍ରାଣ ସ୍ଥିର ହୋଇଆସିଲା । ବୁରୁନ୍ଦା ଆର ବଖରାରେ ଥିବାରୁ ଖୁବ୍ ଦମ୍ଭ ବି ଲାଗିଲା ।

ଖାଇଦେଇ ମୁଁ କହିଲି, "ଦେଖ୍ ବୁରୁନ୍ଦା, ଏ ବର୍ଷା ଅନ୍ଧାର ରାତିରେ ତତେ ଦଶ କିଲୋମିଟର ଯିବା ଦରକାର ନାଇଁ । ତୁ ଏଇଠି ଶୋଇଯା, କାଲି ସକାଳୁ ଯିବୁ ।"

ସେ ଉଁ ଚୁଁ କିଛି କଲାନାଇଁ । ସାଇବଙ୍କ ଆଦେଶ !

ମୁଁ ଫୋନ୍ ଲଗେଇଲି କୈଳାସ ମହାପାତ୍ରକୁ । କେହି ଉଠେଇଲେ ନାହିଁ । ପୁଣି ଲଗେଇଲି । ଫୋନ୍ ଉଠିଲା ।

– "ଆଜ୍ଞା କିଏ କହୁଛନ୍ତି ?"

– "ବୁଡ୍‌ବକ୍ ! ଆରେ ମହାପାତ୍ରବାବୁଙ୍କୁ ଫୋନ୍ ଦେ ।"

– "ସାରେ, ବାବୁ ମା' ସମେତ ଏଇନା କଲିକତା ବାହାରିଗଲେ ପା ! ଫୋନ୍ ଆଇଲା । କଲିକତାରେ ତାଙ୍କ ଝିଅର ଆକ୍‌ସିଡେଣ୍ଟ ହେଇଚି ।" ସେ ଫୋନ୍ ଥୋଇଦେଲା ।

ମୁଁ ଶୂନ୍ୟକୁ ଚହିଁରହିଲି କିଛି ସମୟ ।

– "ଠିକ୍ ଅଛି । ମୁଁ ନିଜେ ଯିବି କାଲି ସକାଳୁ ! ଦିନବେଳେ ବାଘ ବା ଫାଗ ! ପୋଲିସ୍‌କୁ ଖବରଦେବି । ସାରା ଘର ଖାନ୍‌ତଲାସ କରିଦେବି । କିଏ ସେସବୁ ଏଠି ଆସି ନବରଙ୍ଗ ଲଗେଇଛନ୍ତି ! କ'ଣ ନା' ସୁନିଲ ଶ୍ରୀବାସ୍ତବ ଯେ ମନ ସେ !"

ନିଜ ହାତ ପାପୁଲିରେ ମୁଖିମାରି କହିଲି – "ହମ୍ ଦେଖିଲେଙ୍ଗେ !"

ସାରା ରାତି ମୋପାଇଁ ଏକ ଅସରନ୍ତି ଦୁଃସ୍ୱପ୍ନ । ରୀତିମତ ବାଘ ସାଙ୍ଗେ ଲଢେଇ । ଆତଙ୍କ ଭିତରେ ମନମୋହିନୀର ମାୟା ଗୁନ୍ଥି ହୋଇ ରହିଥାଏ ଲୁହା ତା'ର ବାଡରେ ରଙ୍ଗଣିଲତାପରି । ସପ୍ତଫେଣିର ଅରଣ୍ୟ ଭିତରେ ମୁଁ ବୃନ୍ତହୀନ ଗୋଲେଲିଟିଏ ଆଡକୁ ହାତ

ବଢ଼େଇଚି । ମୋତେ ଘେରିଆଡୁ ବେଢ଼ିରହିଥିବା ଦୀର୍ଘ କଙ୍କାଳମାନଙ୍କ ଭିତରେ ପ୍ରଜାପତିଟିଏ ଉଡ଼ିବୁଲିଚି ପଞ୍ଜରା ହାଡ଼ମାନଙ୍କ ସନ୍ଧିରେ । କିଟିକିଟି ଅନ୍ଧାର ଗୁମ୍ଫା ଭିତରେ ବହୁଦୂରରୁ କିଏ ଡାକିଚି... "ସୁନିଲ ଶ୍ରୀବାସ୍ତବ !"...ଏବଂ ଗୁମ୍ଫା ଭିତରେ ସେ ଅଜବ ନାଁ କାନ୍ଥରୁ କାନ୍ଥକୁ ବାଡ଼େଇହେଇ ଗୁମୁରିଚି । ଭୂଇଁ ଟଳମଳ ହେଇଚି ।

ମୋତେ ବାରମ୍ବାର କଲିଂବେଲ୍ ବାଜିବାର ଶୁଭିଛି । ରାତିସାରା ଘରଯାକ ହାଉ ହାଉ ଆଲୁଅ ଜଳୁଥିବାବେଳେ ମୁଁ ବାରମ୍ବାର ଯାଉଛି ପିଣ୍ଡା ପର୍ଯ୍ୟନ୍ତ । ପିଣ୍ଡାରେ ବୁରୁନ୍ଦା ଘୁଙ୍ଗୁଡ଼ି ମାରିବାର ଶୁଣି ଫେରିଆସିଛି । ରାତିରେ ପାଣି ପିଇଛି ଅନେକଥର । ବାହାରେ ଟୁହାକୁ ଟୁହା ବର୍ଷା ଛେଚିଚି ରାତିସାରା ।

ବୁରୁନ୍ଦା ଡାକରେ ମୁଁ ଚମକିପଡ଼ିଲି । ଚୌକିଟା ଉପରେ ପାହାନ୍ତା ପହରକୁ ମୋତେ ବୋଧେ ନିଦଲାଗିଯାଇଥିଲା ।

– "ଚ଼ା' ଆଣିଦେବି କି ସାର୍ ?"

– "ନା' ତୁ ଏଇଠି ଥା, ମୁଁ ଆସୁଛି ।"

ସେତେବେଳକୁ ବେଶ୍ ଆଲୁଅ ହୋଇଗଲାଣି । ମୁଁ ସେ ଝାଉଁଗଛିଆ ଘର ଆଗରେ ପହଞ୍ଚିଗଲି । ମୋତେ ତଥାପି ଛନଛନ ଲାଗୁଥାଏ । ମଡେଇପଡ଼ିଲା ପରି ଲାଗୁଥାଏ ।

ଗେଟ୍‌ରେ ତାଲା । 'ସୁଧା କୁସୁମ' ନାମ ଫଳକ ନାହିଁ କି 'ବାଘକୁ ସାବଧାନ' ପଟା ଖଣ୍ଡକ ନାହିଁ । ମୁଁ ଘରଟାକୁ ଚ଼ାହିଁଲି । ଆଖି କାନ ବୁଜି ନିବୁଜ ହେଇଯାଇଛି – ସତେ ବା କେହି କେତେବେଳେ ସେଠି ନ ଥିଲେ ।

ସେସବୁ କ'ଣ ତା'ହେଲେ ? ସେ ମାୟାବିନୀ, ସେ ଅର୍ଘା ଅର୍ଘା ଅଣ୍ଡିରା ମାଇକିନା, ଅନ୍ତରାଳରେ ସେ ବାଘ...ଆଉ ସେ ନାଁଟା ସୁନିଲ ଶ୍ରୀବାସ୍ତବ ?

ମୁଁ ଫାଉଁକିନା ଜଳିଉଠିଲି ରାଗରେ । ମୋ ନିଜ ଉପରେ । ମୁଁ ସେ ଗେଟ୍‌ଟାକୁ ବା ଡାହାଣ ଗୋଇଠା ମାରିଦେଇଗଲି ।

ଗୋଟାଏ ବାଙ୍ଗରା ନେପାଳୀ ଆସି ଟାଟକା ହୋଇ ମୋତେ ଚ଼ାହିଁଲା । ତା' ମନକୁ କହିଲା – "ଓ ସବ୍ ଚଲେଗୟେ ସା'ବ୍ ! ଅଭି ଅଭି ଗାଡ଼ିମେ ସାମାନ୍ ଲୋଡ୍ କରକେ ଚଲେଗୟେ ।"

– "କିଏ ସେମାନେ ।"

– "ହମେ ନହିଁ ମାଲୁମ୍ ସା'ବ୍ ।"

ନେପାଳୀଟି ଡରିଲା ଡରିଲା ଆଖିରେ ସେ ଘରଆଡ଼େ ଚ଼ାହିଁଦେଇ ସେଇଠୁ ଚ଼ାଲିଗଲା ।

ତାକୁ ମୁଁ ଆଉଥରେ ପାଇଥିଲେ ବି ପଚ଼ାରିଥାନ୍ତି – ପାଇଲି ନାହିଁ । ଖୋଜିବାକୁ ମୁଁ ଚ଼ାହିଁଲିନାହିଁ । ଆଉ ଯାହାକୁ ପଚ଼ାରୁଚି କେହି କିଛି କହିପାରୁନାହାନ୍ତି ।

ଆଉ ସେ ମହାପାତ୍ରକା ବଚ୍ଚା – ସେ ହାରାମି କଲିକତାରୁ ଏଯାଏଁ ଫେରିନାହିଁ । ତା'

ଠିକଣା ବି କାହାକୁ ଜଣାଇନାହିଁ । ମୋ ଉପରେ ଘରଭଡା ଜମାହୋଇ ଚାଲିଛି । ମୁଁ ପ୍ରାୟ ଦିନ୍ ଖବର ନଉଚି । ସେହି ତ କହିପାରିବ ସୁନିଲ ଶ୍ରୀବାସ୍ତବ କିଏ ? ତା'ପରେ ସବୁ ଗଣ୍ଠି ଫିଟିଯିବ ଗୋଟିକ ପରେ ଗୋଟିଏ ।

ମୋ ମନ ଭିତର କହୁଛି କୈଳାସ ମହାପାତ୍ର ନିଶ୍ଚୟ ଜାଣିଛି ସବୁକଥା । କିନ୍ତୁ କୈଳାସ ମହାପାତ୍ର କାହିଁ ? କାଲି କିଏ କହୁଥିଲା ଯେ ସେ ଝାଉଁଗଛିଆ ଘରଟା ବି କୈଳାସ ମହାପାତ୍ରର ! ମାଇଁ ଗଡ୍ !!



# ଅନ୍ତିମା

## ହିସାବ ନିକାଶ

ସେ ଗାଁ ନାଁ ବି ପାତ୍ରପୁର !

ସେଇ ନାଁରେ ଆଉ ଶହେ ଦୁଇଶ' କୁଆଡେ ଦେଶସାରା ବୁଣି ହେଇ ରହିଥିବେ ଛୋଟବଡ ଗାଁ ।

ମଣିଷ ଗୁଡାକ ବି ସେମିତି ଯାହାକୁ ଯୋଉ ନାଁରେ ଡାକିଦେଲେ ଚଳିବ । ଶୁକୁରା, ମକରା, ଟିକିରା । ନୁଖୁରା ମୁଣ୍ଡିଆ, ଗୁଡିଆ, ଭକୁଆ ମୁହାଁ, କାନ୍ଦୁରା କାନ୍ଦୁରା ଲୋକଗୁଡିଏ । ଶିରାଳ ହାତରେ ବଡ ବଡ ପାପୁଲି... କୌଣସି ଗୋଟାଏ ପାପୁଲିରେ ଭାଗ୍ୟରେଖା ନାହିଁ । ଆଉ ଅନ୍ୟ ରେଖା ବି ଲିଭି ଯାଇଚି ନା କ'ଣ । ଖାଲି ଗୋଟାଏ ଲଙ୍ଗଳଗାର ପରି ଜୀବନ ରେଖାଟାଏ ପାପୁଲିକୁ ଦୁଇଭାଗ କରି ଚିରି ଦେଇଛି ।

ମାଇପି ସବୁ ସେଇଭଳି ନୁଖୁରି ମୁଣ୍ଡି, ଏକ ବସ୍ତ୍ରୀ, ହାଡୋଇ । ଚିତାକୁଟା ଡେଣା, ମୁଣ୍ଡାକାଚ କଚଟି, ରସ ମୁଦି ହାତ । ସେଇ ପାଇଚିଆଳି ହାତରେ ଫାଟକୁଡା ପାପୁଲି । ମୋଟା ଗଣ୍ଠିଆ ଆଙ୍ଗୁଠିରେ ଅସନା ମଲାନଖ । ୟାଙ୍କୁ ବି ଯାହାମନ ତାହା ଡାକିଲେ ଚଳିବ... ପୁନେଇ, ସୁନେଇ, ଫୁଲ, ସୁଲ, ଦ୍ରୁପଦି ।

ପିଲାଗୁଡାକ ଲଙ୍ଗଳା, ଚିମିରି ପେଟିଆ, କାଛୁଆ ଅସନା ଭୋକିଲା ହିଞ୍ଜିହିଞ୍ଜିଆ । ଦୁକୁଦୁକି ପଞ୍ଜୁରୀ, ଗାତୁଆ ଆଖି ଚାରିକଡେ ପୁଞ୍ଜି ପୁଞ୍ଜି ଝାଳ । କପାଳ ବେକ ଅଠା ଅଠା ।

ଗୋଟଠଉ ମୁଣ୍ଡଯାଏ ସବୁ ମାଇପି ମରଦ ପିଲାଙ୍କର ଗୋଟାଏ ରଙ୍ଗ – ମାଟି ରଙ୍ଗ । ଦିହ ସାରା ଧୂଳି ମଳି । ପେଟରେ ପାଟିରେ ଆଖିରେ ଅମାପ ଭୋକ । ସମସ୍ତଙ୍କ ପାଇଁ ଗୋଟିଏ ମାତ୍ର ଅକୁହା କଥା – ଦୁଃଖ ।

ଏଭଳି ଗାଁ ଏଇ ପାତ୍ରପୁର !

ଏଠି ପୁଣି ପଦୁଅଁ ଫୁଟିବ । ଏଠି କୁଆଡେ ହାତୀ ପଲାସିବ ! ! ସଜନା ଗଛରେ ଶିଙ୍ଘୁ ବାଡରେ ଏଠି ସେଠି କଥା ବାଡେଇ ହଉଚି ଯେ ମନ୍ତ୍ରୀ ଆସିବେ ! !

ସମସ୍ତଙ୍କୁ ଆକ୍‌ଟା ଆକ୍‌ଟା ଲାଗୁଚି ।

ଅଣନିଃଶ୍ୱାସି, ଆଫା ଆଫା ଲାଗୁଚି ।

ଧାଡି ଧାଡି ଗାଡି ଆସି ପହଞ୍ଚି ଯାଉଛନ୍ତି ତାଳବଣିଆ ପାଖରେ । ଏଣିକି ସେ ସାନ ସାନ ନରମା ସୁକୁମାରିଆ ଚକ ଆସିପାରିବେ ନାହିଁ । ଆବଡା ଖାବଡା ପାଣି କାଦୁଅରେ ଛେଚି କଚି ହେଇ ଶଗଡ ବୋଲି ଯାଉଚି । ତାକୁ ହଡା ବୋଲି ଟାଣୁଛନ୍ତି । ନ ହେଲେ ମଣିଷ କେମିତି ଯିବା ଆସିବା କରନ୍ତା ? ଜିପ୍ ଗାଡିଆ ବାବୁ କ'ଣ ଶଗଡରେ ଆସିବାକୁ ରାଜି ହେବେ ? ମନ୍ତ୍ରୀଙ୍କୁ ନ ହେଲା ପାଲିଙ୍କିରେ ବସେଇ ନେଇ ଆସିବା !

ମନ୍ତ୍ରୀ ସତେ ଏ ଅସନା ମସନାକୁ କାଇଁ ଆସୁଛନ୍ତି ଯେ ! କ'ଣ ଦେଖିବେ ଏଇଠି ?

ଏଇଠି କିଏ ଗୋଟେ ମରନ୍ତା ହେଲେ ? ମରଣ ତ' ମନ୍ତ୍ରୀଙ୍କ ଆଖିକୁ ନୂଆ ଲାଗନ୍ତା । ଖୁସି ହେଇ ଯାଆନ୍ତେ । ନ ହେଲେ ଏଠି କ'ଣ ଆଉ ଅଛି ?

ଆଉ ଦୁଇଶ ପାତ୍ରପୁରରେ ଯାହା, ଏଇଠି ବି ସେଇଆ । ତାଳବଣିଆ ପାଖରୁ ଗୋଟେ ଲଙ୍ଗଳା ଟୋକା ଖାଲ ଢିପ ଡେଇଁ ଦୌଡି ଆସିଲା ଗାଁକୁ, ଗୋଟେ ନିଶ୍ୱାସରେ । ଭାରି ଟାଣୁଆ ଟୋକା । ନିତିଦିନ ଗଣ୍ଡେ କ'ଣ ଖାଇବାକୁ ପାଇଲେ ସେଇଟା ସର୍କସରେ ମିଶିଯାନ୍ତା ।

ଆସି ବହେ ଧକେଇଲା । ହାତରେ ଠାରିଲା ଏ ପାଖ ସେପାଖ । ସେଇଠୁ କହିଲା, "ମଁତିରି,...ମଁତିରି ଆସିଗଲେ ।"

ଇଲୋ ବୋପାଲୋ । ମନ୍ତ୍ରୀ ଆସିଗଲେ ? କ'ଣ କରିବେ, ନିପାରିଲା, ମଳିମୁଣ୍ଡିଆ ପାତ୍ରପୁରିଆ ? ହାଉଯାଉ ହେଲେ । ଧନ୍ଦାଳି ହେଇଥିବା ପଙ୍କ ପୋଖରୀର ନିର୍ଜୀବିଆ ମାଛ ପରି । ତାଙ୍କ ଗୋଡହାତ ଚଳିଲା ନାହିଁ । ପାଟି ଫିଟିଲା ନାହିଁ । ଆଖିରେ ପଲକ ପଡିଲା ନାହିଁ ।

କିଏ ଗୋଟେ କହିଲା, "ଆରେ ଫୁଲମାଳ କାଇଁ ? ବେକ ଉଛୁଳେଇଲା ପରି ଚାରି ଛ'ଟା ଫୁଲମାଳ ନ ହେଲେ କେମିତି ହବ ?"

"ଏ ଦହି, ଦୁଧ, ସର, ଲହୁଣୀ, ମାଛ କଇଁଛ କାହିଁ ? ମନ୍ତ୍ରୀ କ'ଣ ମଣୋହି କରିବେ ?"

"ଶଙ୍ଖ, ମହୁରୀ ବାଇଦ କାହିଁ ? ନାଚ ଗୀତ କାହିଁ ? କ'ଣ ଦେଖି ମନ୍ତ୍ରୀ ମୁରୁକିବେ ?"

ଆବେ ଏ ଗାଁଟାରେ ଚାଲିବାକୁ ବାଟ କାହିଁ ? ଗୋବର କାଦୁଅ ଖାଲ ଖଣ୍ଢା ! ଲୁଗା ଟେକି କ'ଣ ସେ ତୁମ ପରି ଯାଇ ପାରିବେ ? – ଗୋଡ କାଦୁଅ ହେଲେ ଧୋଇବାକୁ ପାଣି କାହିଁ ? ସବୁ ଘରୁ ମାଟି ହାଣ୍ଡି ଖାଲି କରି ଏକାଠି କଲେ କ'ଣ ମନ୍ତ୍ରୀ ପାଦ ଧୋଇବାକୁ ଅଣ୍ଟିବ ?

ମନ୍ତ୍ରୀ ଆସିଛନ୍ତି, ଭାଷଣ ଦେବାକୁ ଚାହିଁଲେ ଲୋକ କାହାନ୍ତି ? ଆଜିକ ହେଲେ ଅଳପଇଷେ ଯାଇ ନଥାନ୍ତେ ଜାଳ ଗୋଟାଇବାକୁ, ଗୋଡି ଖଟିବାକୁ ।

"ଇସ୍, ମରିଯାଆନ୍ତ ହେଲେ ପାତ୍ରପୁରିଆ – ପିଲା ବୁଢା ମାଇକିନିଆ ଯେତେ ଅଛ । ଗାଁଟାରେ ଗୋଟାଏ ହେଲେ ଜିଅନ୍ତ ନାହିଁ । ସବୁ ମୁର୍ଦ୍ଦାର ଦେଖିଲେ ବୋଲି ମନ୍ତ୍ରୀ ଫେରି ଯାଇ କହନ୍ତେ ।"

ଯେ କହୁଥିଲା ସେ ଆସି କେତେବେଳୁ ଗାଁରେ ପହଂଚି ଯାଇଥିଲା । ସେ ତିନିଖଣ୍ଡ ଗାଁ ସେପାରିର ଗ୍ରାମ ସେବକ । ନାଁ ନକୁଳ ନାହାକ । ତା'ର ଫାଳକେ ଗୋଟାଏ ରଂଗ । କଥାକେ

ଯୋଡାଏ ବାଙ୍କ । ସେ ଆସି ଏମିତି ହାଇ ପାଇଁ ହେଲାଣି ଯଦି, ତେବେ ମନ୍ତ୍ରୀ ନିଶ୍ଚେ ଆସିଗଲେ ।

ଆରେ ଆସିଲେ କ'ଣ । ସେ ପରା ସେଇ ତାଳବଣିଆ ପାଖରେ ଗାଡିରୁ ଓହ୍ଲେଇ ଠିଆ ହୋଇଛନ୍ତି ! ସେଇଠୁ ଯେମିତି ସବୁ ହାକିମ ବାବୁ ପାତ୍ରପୁରକୁ ଆଖି ଟେକି ଚାହିଁ ଦେଇ ଚାଲିଯାନ୍ତି, ମନ୍ତ୍ରୀ ସେମିତି ଚାହିଁ ଫେରି ଯାଉ ନାହାନ୍ତି କାହିଁକି ? କ'ଣ ଗରଜ ପଡିଚି ଗାଁରେ ପଶିବାକୁ ?

"ଆହେ, ମନ୍ତ୍ରୀ ଉପରେ ଆହୁରି ଆହୁରି ବଡ ନେତା ନାହାନ୍ତି କି ? ତାଙ୍କରି ହୁକୁମ ହେଇଥିବ ପରା !!!"

ନକୁଳ ନାହାକ କହୁଚି ଯଦି ତା'ହେଲେ ସେଇଆ ହେଇଥିବ ।

ମନ୍ତ୍ରୀ ତା'ହେଲେ ନିଶ୍ଚେ ବିଜେ ହେବେ ।

ଗାଁଟି ଯାକ ଲୋକ ଆସି ଗାଁ ମୁଣ୍ଡ ଫାଳିକିଆ ବରଗଛ ମୂଳେ ଠିଆ ହୋଇଗଲେ । ଗଛର ଆର ଫାଳକ ଦି'ପୁରୁଷ ତଳେ ଚଡକ ପଡି ଜଳି ଯାଇଥିଲା ।

ନକୁଳ ନାହାକ ୟାକୁ ଠେଲି ତାକୁ ଭିଡି ଧାଡି ସଳଖିଲା । ବେକରେ ଗାମୁଛା ଓହଳେଇ ଚାଲିଗଲା କିଛିବାଟ । ତେଣିକି କାଦୁଅ, ଏଠି ସେଠି ପଥର । ତାଳବଣିଆ ହୁଡା ପାଖରୁ ଗୋଟାଏ ହିଡିହିଡିଆ ଗଡାଣି ।

ମନ୍ତ୍ରୀ ହୁଡା ଉପରେ ଠିଆ ହୋଇ ଅନେଇଲେ । କ'ଣ ପାଖ ଲୋକକୁ କହି ପାଦ କାଢିଲେ ଆଗକୁ । ହାକିମ ବାବୁମାନେ, ଫଟୋ ଉଠାଳିମାନେ ତାଙ୍କ ଆଗକୁ ଗଡି ଆସିଲେ । ଗୋଟେ ଦି'ଟା କାଦୁଅରେ ପଡିଲେ । ଆହା, ଆହା କେଡେ କଥା ହେଲା । ଜନ୍ମଯାକ ଭୂଇଁରେ ଚାଲି ନଥିବା ପାଦ ପୁଣି କାଦୁଅରେ ପଡିଗଲା ।

ମନ୍ତ୍ରୀ ଓହ୍ଲେଇବେ କେମିତି ?

ତାଙ୍କ ଦି'ପାଖେ କାନ୍ଧ ଦେଖେଇ ଲୋକ ଠିଆ ହୋଇଗଲେ । ଚାହିଁଲେ ମନ୍ତ୍ରୀ ହାତ ଥାପିଦେବେ । ଆହୁରି ଲୋକ କାଦୁଅକୁ ଓହ୍ଲେଇଗଲେ । ମନ୍ତ୍ରୀଙ୍କ ପାହୁଣ୍ଡ ପଡିବା ଜାଗାରେ ପଥର, ଇଟା ଥୋଇବାପାଇଁ । ପହଣ୍ଡି ବିଜେ କଲା ପରି ମନ୍ତ୍ରୀ ଝୁଲି ଝୁଲି ଆଉଜି ଆଉଜି, ସେ କାଦୁଅ ଗୋହିରୀ ପାରି ହେଉଥାନ୍ତି । ନିର୍ବିକାର କାଦୁଅରେ ଚକଟି ଚାଲିଥିବା ଚନ୍ଦା, ବାଙ୍ଗୁରା, ପେଟା, ମୁହଁ ଫଣଫଣିଆ, ଗୋରା ଟକଟକ ହାକିମମାନଙ୍କୁ ଅତି ସନ୍ତୁଷ୍ଟ ହେଲାପରି ଚାହୁଁଥାନ୍ତି ?

କହୁଥାନ୍ତି ସତେବା, "ତୁ କି ବର ମାଗିବୁ ମାଗ୍ ।"

ହାକିମ ପାନଖିଆ ଦାନ୍ତ ଦେଖେଇ ମନ୍ତ୍ରୀଙ୍କୁ ଅନେଇ ଆଖି ତଳକୁ କରି ନେଉଥାନ୍ତି ବିନୟରେ । ନୀରବରେ ବୁଝେଇ ଦଉଥାନ୍ତି, "ଆଣ୍ଠୁଏ କ'ଣ ସାରେ, ବେକେ କାଦୁଅରେ ପଶ୍ କହିଲେ ପଶିବାକୁ ହାଜର୍ ଅଛି । ଖାଲି ଖଚୁଆକୁ କାନ ଦେବେନାଇଁ ସାର୍ । ମୁଁ କ'ଣ କାମରେ ଠକି ପାରେ, ମୁଁ କ'ଣ ଲାଞ୍ଚ ମିଛରେ ବୁଡିଥିଲା ପରି ଦେକାଯାଉଛି ସାରେ ?"

ନକୁଳ ନାହାକ ଏ ପାଖେ ଥାଇ ଖଲ ଖଲ ହଉଥାଏ । ସେ ଚାହୁଁଥାଏ କାଦୁଅରେ ଶୋଇପଡି ପାଛୋଟି ଆଣନ୍ତା ତା' ସାଇବକୁ । କହନ୍ତା ମୋ ଉପରେ ଚାଲି ଆସନ୍ତୁ ସାର୍ । ଆଉ ଯଦି ହାକିମଙ୍କ

ପଛେ ପଛେ ମନ୍ତ୍ରୀ ତା' ଉପରେ ପାଦ ଥାପି ଦିଅନ୍ତେ ସେ ଧନ୍ୟ ହୋଇ ଯାଆନ୍ତା । କାରଣ ତେଣିକି ଏଇତକ ପୁଞ୍ଜିକରି ସେ କେତେ କ'ଣ ଦୁହିଁଆଣନ୍ତା ମନ୍ତ୍ରୀଙ୍କ ନିଜଲୋକ, ପାଖଲୋକ ହୋଇ ।

ତେବେ ନକୁଳ ନାହାକ କି ଛାର ମଣିଷ । ଯଦି ଏଡେ ଏଡେ ମୁଣ୍ଡ କାଦୁଅରେ ଲଟପଟ ହଉଛନ୍ତି, ସେ ବା ତାଙ୍କ ସାଙ୍ଗରେ କୋଉ ସାହସରେ ଟକ୍‌କର ଦବାକୁ ଯିବ । ଟାଙ୍ଗରା ଭୂଇଁରେ ଯେତିକି ଭାଗ୍ୟ ତେଜିଲା ସେତିକି ।

ମନ୍ତ୍ରୀ ଏ ମୁଣ୍ଡେ ଆସି, ସମସ୍ତଙ୍କୁ ଛାଡି ଠିଆ ହେଲେ । ଓହୋ କି ଦୁର୍ଗମ ଅଂଚଳକୁ ଗ୍ରସ୍ତ ନ କଲେ ମନ୍ତ୍ରୀ ? ହାକିମ ପାଖକୁ ଲାଗିଆସି କହିଲେ ।

"ଏ ପାତ୍ରପୁରକୁ କୌଣସି ମନ୍ତ୍ରୀ, ଅଫିସର ହାକିମ କେହି କେବେ ଆସି ନଥିଲେ ସାର୍ ।"

ମନ୍ତ୍ରୀଙ୍କ ଓସାର ମୁହଁରେ ଓସାର ହସ ! କ'ଣ ମନ ପାଇଲା କେଜାଣି ପଚାରିଦେଲେ, "କିନ୍ତୁ ତମେ ନିଶ୍ଚେ ଆସିଥିବ ଭୂୟାଁ ବାବୁ ।"

"ଭୂୟାଁ ବାବୁ ଚାରିଆଡକୁ ଥରେ ଚାହିଁଦେଲେ । ମୁହୂର୍ତ୍ତକରେ ଭାବିନେଲେ ଯେ ସତ କହିଦେଲେ ଲାଭ ଅଛି ।"

"ନାଇଁ ସାର୍, ମୁଁ କହିଲି ପରା ଆପଣ ସର୍ବ ପ୍ରଥମେ ଏ ଗାଁକୁ ଆସିଛନ୍ତି । ତା' ପୂର୍ବରୁ ମୁଁ କ'ଣ, ଆଉ କେହି ଆସିନାହାନ୍ତି ।"

"ଆଚ୍ଛା, ଆଚ୍ଛା ! ଚାଲ ଗାଁକୁ ଯିବା !"

ଫାଳିକିଆ ବରଗଛ ମୂଳେ ମାଟି ରଙ୍ଗର ସ୍ଥିର ପ୍ରତିମାଗୁଡିକ ତାଙ୍କୁ ସ୍ପଷ୍ଟ ଦେଖାଗଲେ । ଏଇମାନେ ତା'ହେଲେ ଗାଁର ଭାଇ ଭଉଣୀ ।

ମନ୍ତ୍ରୀ ଚାରିଆଡକୁ ଚାହିଁଲେ । ଜଣେ ଅର୍ଥ କଲା ମନ୍ତ୍ରୀ ରିସେପ୍‌ସନ୍ ଚାହୁଁଛନ୍ତି । ମୁଁ କହୁ ନଥିଲି ଆଗରୁ କିଛି ବ୍ୟବସ୍ଥା ହୋଇନାହିଁ । ଏଥର ସମ୍ଭାଳ । ଏଥିପାଇଁ ଦୁଇଚାରିଟା ମୁଣ୍ଡ ଗଡି ଯାଇପାରେ ।

ଆଉ ଜଣେ ଅର୍ଥ କଲା ଗୋଟାଏ ଥର ଦେଖିଦେଲେ ମନ୍ତ୍ରୀ ସବୁ ବୁଝି ଯାଆନ୍ତି । ସେ ଗାଁଟାକୁ ଏମିତି କଳିନେଲେ ।

ଭୂୟାଁବାବୁ ବୁଝିଲେ ଯେ ମନ୍ତ୍ରୀ ଫଟୋଗ୍ରାଫରକୁ ଖୋଜୁଛନ୍ତି ।

ସେ ଇଙ୍ଗିତ କରିବାରୁ ଫଟୋ ଉଠାଳି ଦଳ ମନ୍ତ୍ରୀଙ୍କ ଆଗକୁ ଦୌଡିଗଲେ । ମନ୍ତ୍ରୀଙ୍କ ଓସାର ମୁହଁକୁ ଓସାର ହସ ଫେରିଆସିଲା ।

ମନ୍ତ୍ରୀ ନଇଁ ପଡିବାରୁ ଫଟୋ ଉଠାଳି ନଇଁ ପଡିଲେ । ହାକିମବାବୁମାନେ ମନ୍ତ୍ରୀଙ୍କ ପଛରେ ସଜାଡି ହୋଇଗଲେ ବିଭିନ୍ନ ଭଙ୍ଗୀରେ, ବ୍ୟସ୍ତ ଥିଲାପରି ସାହାଯ୍ୟ କଲାପରି ଫଟୋ ଉଠୁଛି ବୋଲି ନ ଜାଣିଲା ପରି ।

ମନ୍ତ୍ରୀ ଗୋଟାଏ ହାଡ ଗୁଜଗୁଡିଆ ଟୋକାକୁ କୋଳକୁ ଟାଣିନେଲେ ତାଙ୍କ ବାହୁ ଘେର

ଭିତରେ ଆଉ ପୁଞ୍ଜାଏ ଖଣ୍ଡେ ସେପରି ଟୋକା ରହିଥିଲେ ମଧ୍ୟ ଜଣା ପଡି ନଥାନ୍ତା ।

ସେଇ ଟୋକା ତାଳବଣିଆରୁ ଖେପାମାରି ଦୌଡି ଆସିଥିଲା ଗାଁକୁ ମନ୍ତ୍ରୀ ଆସିବା ଖବର ନେଇ । ଭାରି ଟାଣୁଆ ଟୋକା । ଗଣ୍ଡେ ଖାଇବାକୁ ପାଇଲେ ସର୍କସରେ ମିଶିଯାନ୍ତା ।

"କିରେ ତୋ ନା' କ'ଣ ?" ତା' ଚିବୁକ ଟେକି ଅତି ଗେହ୍ଲାରେ ପଚାରିଲେ ମନ୍ତ୍ରୀ ।

ସେ ଟୋକା ସେତେବେଳକୁ ଝାଳେଇ ଯାଇଥିଲା ।

ତା' ବେକ ପାଖ ନାଡ ଡେଉଁଥିଲା । ବୁକୁ ଦାଉଁ ଦାଉଁ ପଡିବା ଦିଶୁଥିଲା ।

ସେ କିଛି କହିପାରିଲା ନାହିଁ ।

ଖାଲି ଟିକିଏ ମାତ୍ର ମୋଡିହେଲା ମୁକୁଳି ଆସିବାକୁ ।

ଗାଁ ବାଲାଙ୍କ ଆଖି ଜକେଇ ଆସିଥିଲା । ତାଙ୍କର ପୁଣି ଗୋଟାଏ ଗାଁ । ସେ ଗାଁର ପୁଣି ବାରବୁଲା ଟୋକା ସପନି – ତାକୁ ପୁଣି ମନ୍ତ୍ରୀ ଗେଲକରି ପଚାରୁଛନ୍ତି, "ତୋ' ନାଁ କ'ଣ ?" କାନ୍ଧୁରା ଲୋକେ ଲୁହ ଥନ୍ ଥନ୍ ଆଖିରେ ଚାହିଁଥାନ୍ତି ତେଣିକି କ'ଣ ହବ ଦେଖିବାକୁ ।

ଲଇଁ ପଡି ଭୂୟାଁବାବୁ ସଂଗ୍ରହ କରିଥିବା ଖବର ଉପରେ ତା' ମୁଣ୍ଡରେ ହାତ ସାଉଳି ଆଣି କହିଲେ, "ଆରେ କହି ଦଉନୁ ସପନି ବୋଲି, ମନ୍ତ୍ରୀ ପଚାରୁଛନ୍ତି ପରା ।"

ମନ୍ତ୍ରୀ ଚାହିଁଲେ ଭୂୟାଁଙ୍କୁ, ସାବାସ୍ ଅଜାଡିଦେବା ଭଙ୍ଗୀରେ । ଭୂୟାଁବାବୁ ଅଳ୍ପହସି ଆଖି ନୁଆଁଇଦେଲେ ନିସ୍ତରିଲି ନିସ୍ତରିଲି କହିବା ଭଙ୍ଗୀରେ ।

"ତୋ' ନାଁ' ସପନି ?"

ସପନି ତା' ନୁଖୁରା ମୁଣ୍ଡ ଟୁଙ୍ଗାରି ଦେଲା ।

"ଭଲ ନାଁ ତ । ତୋ ଘର କୋଉ ସାଇ ?"

ପାତ୍ରପୁର୍ ବୋଧେ ପଲ୍ଲଟି ଗଲା । ଗାଁ ଲୋକେ ଚାହାଁଚାହିଁ ହେଲେ । ଏଠି ସାଇ କାଇଁ ? ଏଠି ତ' ଗାଁ ଦାଣ୍ଡ ଦି'ପାଖେ ଦି'ଧାଡି କୁଡିଆ । ମନ୍ତ୍ରୀ କହିଲେଣି ଯଦି, ଏଣିକି ସାଇ ହୋଇଯିବ । ବାଁ ସାହି, ଡାହାଣ ସାହି । ନ ହେଲେ ଉତ୍ତର ସାହି, ଦକ୍ଷିଣ ସାହି ।

ସପନି ମୁହଁ ଟେକି ଗୋରୁ ଠାରିଲା ପରି ଠାରି ଦେଲା ଉତ୍ତର ସାହିକୁ ।

ମନ୍ତ୍ରୀ ଉଠିଲେ । ସପନିର ଡେଣାଟାକୁ ଧରିଥାନ୍ତି । ଫଟୋ ଉଠା ଚାଲିଥାଏ । ମନ୍ତ୍ରୀଙ୍କ ଧଳା ଫର ଫର ପଞ୍ଜାବୀ ମସିଆ ହୋଇ ଯାଇଥାଏ ।

ଗାଁ ଲୋକଙ୍କୁ କହୁଣେଇ ଆସିଥିବା ଧୋବ ଧାଉଳିଆ ମଣିଷମାନେ ଆଗକୁ ମାଡିଗଲେ । ଫଟ ଉଠାଳି ସବା ଆଗରେ ପଛେଇ ପଛେଇ ଚାଲିଥାଏ ।

ଗାଁ ବାଲାଏ ଆସ୍ତେ ସମସ୍ତଙ୍କ ପଛେ ପଛେ ଚାଲିଲେ । ତାକୁ ଭାଳେଣି ପଡିଗଲା । ସପନି ଘରକୁ ମନ୍ତ୍ରୀ କେମିତି ଯିବେ । ତା' ସାନ ଭାଇଟା ବାଧିକା ପଡିଚି, ବାପର ଦେଖା ନାଇଁ ଦି'ମାସ ହୋଇଗଲା । ମା' ମୁଲ ଲାଗି ପାରୁ ନାହିଁ । ଦି'ଦିନ ହେଲା ତା' ଘରେ ଚୁଲୀ ଜଳିନାହିଁ ।

ଗାଁ ଦାଣ୍ଡ ଅସନା ମସନା । ଅଳିଆ ଗଦା, ଗୋବର ଗଦା । ପାଣି କାଦୁଅ ପଚର ପଚର ।

ଫଟୋ ଉଠାଳି ଯା ପିଣ୍ଡା ତା' ପିଣ୍ଡା ଚଢ଼ି ଫଟୋ ଉଠାଉଥାନ୍ତି । ମନ୍ତ୍ରୀଚାଲିଥାନ୍ତି ସପନି ତେଣା ଧରି ତା' ଘରକୁ । ଭୂୟାଁବାବୁ ଠାରି ଦେବାରୁ ଲୋକ ଖବର ନେଇ ଖେପିଗଲେ ।

ଆଗକୁ ଯାଇ ସେ କୁଡ଼ିଆଟି ଆଗରେ ଠିଆ ହୋଇଗଲେ ଫଟୋ ଉଠାଳି ଦୁଆର ମୁହଁରୁ ମନ୍ତ୍ରୀଙ୍କ ଆସିବା ଦୃଶ୍ୟ ଉଠାଇ ନେଲେ । ମନ୍ତ୍ରୀଙ୍କ ଓସାର ମୁହଁରେ ଓସାର ହସ ସମେତ ।

ସପି ମା' ଛାନିଆ ହେଇଯାଇଥିଲା । ତା' ମସିଆ କସ୍ତାଟାକୁ ଦିହ ଲୁଚେଇ ଚିରା ଲୁଚେଇ ଜଡ ସଡ ଠିଆହେଲା । ତଳେ ମୁଣ୍ଡ ଲଗେଇ ଓଳଗି ହେଲା ।

ମନ୍ତ୍ରୀ ନୂଆଁଣିଆ ଚାଳ ପାଖରେ ନଇଁଲେ, ଫଟୋ ଉଠାହେଲା । ଦୁଆର ବାଟେ ଆଡ ହେଇ ପଶିଲେ । ଫଟୋ ଉଠିଲା । ଘର ଭିତରେ ଫଟ ଉଠାଳି ତା' ଆଲୁଅ ଜାଳି ଦେବାରୁ ନଡା ଚାଳରୁ ଥୋଲା ଥୋଲା ଅଳନ୍ଧୁ ଦେଖାଗଲା । ଗୋଟାଏ କୁଣକୁ ହାଣ୍ଡି ମାଠିଆ ଦି'ଖଣ୍ଡ ଦିଶିଲା । ରସ ଡେକ୍‌ଚି ଲୋଟା ଦିଶିଲା । ଅଳଗୁଣିରେ ସେଇ ଅଳନ୍ଧୁ ରଙ୍ଗର ଦି'ତିନିଖଣ୍ଡ  କ'ଣ ସବୁ ଓହଳି ଥିଲା । ମୁନ୍ଦୁରା ଉପରେ ଚିରାକନାରେ ଘୋଡେଇ ହେଇ ଶୁଖିଲା ମୁହଁଟିଏ ଦିଶୁଥିଲା । କୋରଡିଆ ଆଖି ଠାପୁଆ ଗାଲ, ଦୁହିଁ ହେଇ ଯାଉଥିବା ଶଂଖି ଦିଶୁଥିଲା ।

ସେ ଦୃଶ୍ୟ ପାଇଁ କେହି ପ୍ରସ୍ତୁତ ନଥିଲେ । ସ୍ଥିର ହେଇଗଲା ସବୁ, କିଛି ସମୟପାଇଁ । ଭୂୟାଁ ବାବୁ ଆସି ସାହସ କରି କହିଲେ, "ସାର୍ ଗାଁ ବୁଲିବାକୁ ଅଛି ।"

ମନ୍ତ୍ରୀ ଶୁଣି ନ ଶୁଣିଲା ପରି ଚାହିଁ ରହିଲେ ।

ଭୂୟାଁ ବାବୁ ଆଉ ଅନ୍ୟ ହାକିମମାନେ ଛନ୍ ଛନ୍ ହେଲେ । କାଳେ ମନ୍ତ୍ରୀ କହିଦେବେ, ଅନାହାର ମୃତ୍ୟୁ କଥା । କାଳେ ପଚାରି ଦେବେ ସୁଲଭ ଦୋକାନ କଥା; ଶସ୍ତା ଚାଉଳ କଥା । କାଳେ ପଚାରି ଦେବେ ଡାକ୍ତର କିଏ । ଔଷଧ ଆସୁଚି ନା ନାହିଁ –

ମନ୍ତ୍ରୀ ବୋଧେ ଦୁଃଖ ଦେଖି ବିହ୍ୱଳ ହୋଇଯାଇଛନ୍ତି । ଏଇନା ଚାହିଁ ପାରନ୍ତି ପାଞ୍ଚଶ ଟଙ୍କା ଦବା ପାଇଁ । ତାଙ୍କ ପ୍ରାଇଭେଟ ସେକ୍ରେଟାରୀ ମୁଣା ଦରାଣ୍ଡି ପକାଇଲେ । ବିଡିଓ କାନରେ ଫୁସ୍ ଫୁସ୍ ହେଲେ । କ'ଣ ସବୁ ଏ ହାତ ସେ ହାତ ହେଇଗଲା ।

ମନ୍ତ୍ରୀ ପଚାରିଲେ, କ'ଣ ହୋଇଛି ?

ପ୍ରଶ୍ନଟି ଚାରିଆଡୁ ବୁଲିଆସିଲା ଭୂୟାଁ ବାବୁ ପାଖକୁ ।

ଆଉ କାହାକୁ ଅବା ମନ୍ତ୍ରୀ ପଚାରି ପାରିବେ ?

ଭୂୟାଁ ବାବୁ କହିଲେ, "ଏବେ ସାର୍, ଋତୁ ପରିବର୍ତ୍ତନ ଚାଲିଛି – ଯୋଉଆଡେ ଦେଖିବେ ଏମିତି ଜର ଲାଗି ରହିଛି । ଗୋଟାଏ ପ୍ରକାର ଭାଇରାଲ୍ ଫିଭର ।"

ଇସ୍ କି ବିଚକ୍ଷଣ ବୁଦ୍ଧି । ନ ହେଲେ କି ଭୂୟାଁ ମାଡି ବସିଥାନ୍ତେ ଏଡେ ବଡ ଗଦି !

'ଦେଖ ଭୂୟାଁ, ତମର ବୁଝିବା ଢଙ୍ଗ ବଦଳିଲା ନାହିଁ । ତୁମେ ଭାବୁଛ ଯାକୁ କିଛି ଇନ୍‌ଜେକ୍‌ସନ୍ ଫୋଡି ଔଷଧ ଗିଳେଇ ଦେଲେ ଭଲ ହେଇଯିବ । – ତୁମେ ମୂଳ କଥାଟି ବୁଝି ପାରୁ ନାହଁ । କେବେ ବୁଝି ପାରିବ ନାହିଁ । ତୁମେମାନେ ତ' ଆମଭଳି ଲୋକଙ୍କ ସାଙ୍ଗରେ ମିଶି

ନାହିଁ ।'

ଆଲୁଅ ଆଡକୁ ନୋଟ ଖାତା ଟେକି ଜଣେ ଟିପି ପକଉଥାଏ ସବୁ ଶବ୍ଦ ।

ମନ୍ତ୍ରୀ ଘରିଆଡକୁ ମୁହଁ ବୁଲେଇ ଆଣିଲେ । ଫଟୋ ଉଠିଲା । ସମସ୍ତେ ଅଜ୍ଞ ଅବୋଧ ଦେଖାଗଲେ । କେହି ମୂଳକଥା ଜାଣି ନାହାନ୍ତି । ଏଇଠି ମନ୍ତ୍ରୀ ତାଙ୍କର ଗୋଟିଏ ବହୁ ପରୀକ୍ଷିତ ମହାବାକ୍ୟ ପ୍ରୟୋଗ କରି ଦେବା ସବୁ ଦିଗରୁ ଉଚିତ ହେବ ବୋଲି ବଗ୍ଭରିଲେ ।

କହିଲେ, "ଏ ପିଲାଟିର ରୋଗ ଭାଇରାଲ ଫିଭର ନୁହେଁ – ଏହାର ରୋଗ ହେଉଛି ଦାରିଦ୍ର୍ୟ!"

ସେଇ କୁଡିଆ ଘର ଉଛୁଳାଇ ହଠାତ୍ ତାଲିମାଡ ହେଲା । ମନ୍ତ୍ରୀ ମୃଦୁ ମୃଦୁ ହସି ଅପେକ୍ଷା କଲେ ତାଳିମାଡ ସରିବା ଯାଏଁ । ଫଟୋ ଉଠିଲା ।

ସବୁ ସ୍ତବ୍ଧ । ରୋଗିଣା ପିଲା, ଆଉ ତା' ମା' ଉପରେ ଆଲୁଅ ପଡିଗଲା । ସେମାନେ ବି ଆଶ୍ଚର୍ଯ୍ୟ ହୋଇ ଶୁଣିଲେ ।

ମନ୍ତ୍ରୀ କହିଲେ "ଏଇ ଦାରିଦ୍ର୍ୟ ସହିତ ସଂଗ୍ରାମ କରିବାକୁ ଆମ ସରକାର ଦୃଢ ସଂକଳ୍ପ । ଦାରିଦ୍ର୍ୟ ହେତୁ ଏ ପିଲାଟି ଖାଇବାକୁ ପାଉ ନାହିଁ । ତେଣୁ ୟାର ଏ ଅବସ୍ଥା ।"

ପ୍ରାଇଭେଟ ସେକ୍ରେଟାରୀ ମୁଣ୍ଡାରେ ହାତ ମାରି ନେଲେ ।

ମନ୍ତ୍ରୀ କହିଲେ "ପିଲାମାନେ ଆମର ଭବିଷ୍ୟତ । ସେମାନେ ଯଦି ଦୁର୍ବଳ ରୋଗିଣା ହୋଇଯିବେ, ଆମେ ଆଉ କେମିତି ସୁନାର ଭାରତ ଗଢି ପାରିବା ? ସେଥିପାଇଁ ମୁଁ ପଣ କରିଛି, ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଗ୍ଭଲି ଯାଆନ୍ତୁ ପିଠିରେ" ପୁଣି କରତାଳି ।

"ଭୂୟାଁ ବାବୁ ତମକୁ ପଗ୍ଭରିଲେ ତମେ କହିବ ଏ ପିଲାଟାକୁ କ୍ଷୀର ପିଆଇଲେ ସେ ସ୍ୱାସ୍ଥ୍ୟବାନ ହୋଇଯିବ । ତମେ ଘୋଷାପାଠ ଜାଣିଛ । ଆମ ଐତିହ୍ୟ ସଂସ୍କୃତି ତୁମକୁ ଜଣାନାହିଁ । ଆମେ ବି ପଢିଛୁ । ଦୁଗ୍ଧ ପାନ କଲେ ବଢଇ ଶକ୍ତି । କିନ୍ତୁ ତୁମେ ଜାଣ, କ୍ଷୀରସାର କାହାକୁ କହନ୍ତି । କ୍ଷୀରସାର ବୋଇଲେ ଦୁଧସର । ସେଇଟା ହେଲା କ୍ଷୀରର ବଳ । ପାଞ୍ଚଲିଟର କ୍ଷୀରରୁ ଯାହା ମିଳିବ, ତା' ଉପର ସରଟାରେ ତାହା ମିଳିବ । ସେଥିପାଇଁ ଆଗକାଳେ ସେଇ ସରଟାକୁ ଟରଳେଇ ଘୃତ କରି ହୋମ ଯଜ୍ଞମାନଙ୍କରେ ଦେବତାଙ୍କୁ ଦିଆ ହଉଥିଲା । ତା'ର ଅର୍ଥ ହେଲା ଯେ ଘିଅ ଖାଇଲେ ହିଁ ଦେହର ଚଞ୍ଚଳ ବଳ ଗ୍ଭଲି ଆସିବ । ଏ ତଥ୍ୟଟାକୁ କେହି ଜାଣି ନାହାନ୍ତି । ମୁଁ ତାକୁ ଗବେଷଣା କରି ପ୍ରମାଣ କରିଛି । ନିଜେ ମଧ ଅଭ୍ୟାସ କରୁଛି । ମୁଁ କ୍ଷୀର ଛୁଁଏ ନାହିଁ । କିନ୍ତୁ ଘିଅ ନ ହେଲେ ନ ଚଳେ । ଦେଶ ସେବାରେ ଲାଗି ରହିଲେ କ୍ଷୀର ପିଇ ଶକ୍ତି ସଂଚୟ କରିବାକୁ ବେଳ କାହିଁ ?"

ପୁଣି ତାଳିମାଡ ।

ମନ୍ତ୍ରୀଙ୍କ ମୁହଁରୁ ବେକରୁ ଝାଳ ନିଗିଡିବାରେ ଲାଗିଲା । ଦେଶସେବାରେ ନିଶ୍ଚୟ ଝାଳ ନିଗିଡବାକୁ ପଡେ । ମନ୍ତ୍ରୀଙ୍କର ସେଥିରେ କାର୍ପଣ୍ୟ ନାହିଁ ।

ଏତିକିବେଳେ ତାଙ୍କ ହାତ ଘଣ୍ଟା କିଣି କିଣି ହେଇ ବାଜି ଉଠିଲା । ସେ ଘଣ୍ଟାକୁ ଦେଖି

କହିଲେ,

"ଆଚ୍ଛା, ତାହାଲେ ଶୁଣ, ଏ ପିଲାଟି ପାଇଁ ଦଶ ପନ୍ଦର ଲିଟର ଭଲ ଗୁଆଘିଅ ପଠାଇ ଦିଅ । ସରକାରଙ୍କ ସ୍ୱାସ୍ଥ୍ୟ ଯୋଜନାରେ ଏଇଟାକୁ ସାମିଲ କର । ନହେଲେ ଦେଶର ସ୍ୱାସ୍ଥ୍ୟ ଆଣିପାରିବ ନାହିଁ ।"

ମନ୍ତ୍ରୀ ମୁହଁ ପୋଛି ପୋଛି କଣେଇ ହୋଇ ଦୁଆରେ ଗଳିଗଲେ । ମୁଣ୍ଡ ନୁଆଁଇ ଚାଳ ତଳେ ପାରି ହୋଇଗଲେ ଦାଣ୍ଡକୁ । ସପନି କଥା ମନେ ନାହିଁ ଆଉ କାହାକଥା ମନେ ନାହିଁ । ଘଣ୍ଟା ବାଜିଗଲା ପରେ ମନ୍ତ୍ରୀଙ୍କୁ ଆଉ ରୋକିବା କଷ୍ଟ ।

ସେ ଟାଉଟାଉ ଚାଲିଲେ ।

ଅନ୍ୟମାନେ ସେହିପରି ଚାଲିଲେ ।

ଫଟୋଉଠାଳି ଦୂରରୁ ଯାଇ ବୋତାମ ଟିପିଲେ । ମନ୍ତ୍ରୀଙ୍କ ଓସାର ମୁହଁରେ ଆଉ ଥରେ ଓସାରହସ ଦିଶି ଲିଭିଗଲା ।

ଗାଁ ଯାକ ମଣିଷ ପୁଣି ଫାଳିକିଆ ବଟତଳେ ଠିଆ ହୋଇ ଚାହିଁଥାନ୍ତି । କାଦୁଅ ଗୋହିରୀ ପାରିହୋଇ ଧୋବଧାଉଳିଆମାନେ ତାଳବଣିଆ ହୁଡା ଚଢିଗଲେ । ଗାଡି ସବୁ ଘାଇଁ ଘାଇଁ ବୁଲିପଡିଲେ ।

ପାତ୍ରପୁରିଆ ଆଖି ଫେରାଇ ଚାହିଁଲେ ଚାରିଆଡେ, ନକୁଳ ନାହାକ ମଧ ସେଇଠି ନଥିଲା ।

ସେମାନେ ଖାଲି ସପନିକୁ ଆଉଁସି ଦେଇଗଲେ ।

ସଂଧ୍ୟା ନଇଁ ଆସିଲା ପାତ୍ରପୁରକୁ ।

ସେମାନେ କଥାବାର୍ତ୍ତା ହେଲେ ମନ୍ତ୍ରୀ କହିଛନ୍ତି ସପନି ଭାଇ ପାଇଁ ଦଶ ପନ୍ଦର ଲିଟର ଖାଣ୍ଟି ଗୁଆ ଘିଅ ପଠାଇ ଦେବେ । ପିଲାଟାର ଭାଗ୍ୟ ଫିଟିଗଲା ଜାଣ ! ମନ୍ତ୍ରୀଙ୍କ ଖାତା ପତ୍ରରେ ତା' ନାଁଟା ଉଠିଯିବ । ଆଉ ତା'ର ଦୁଃଖ ନାହିଁ ।

ଜଣେ କିଛି ହିସାବ କରି କହିଲା ଜାଣିଚ ମଉସା ସେତକ ଘିଅ କେତେ ପଇସା ହବ ? ଲିଟର ଶହେ ତିରିଶ ଟଙ୍କା ହେଲେ ଦଶ ଲିଟରକୁ ତେରଶହ ଟଙ୍କା । ପରେ ହେଲେ ତ ଆଉରି ବେଶୀ । ସେଥିରୁ ସେ ଅଧେ ବିକି ଦେଲେ ତ' କାହିଁରେ କ'ଣ !

ତେଣିକି ସବୁଦିନ ପାତ୍ରପୁରରେ ଚର୍ଚ୍ଚାର ବିଷୟ ହେଲା ଗୁଆ ଘିଅ । ସେଇଟା କେମିତି ସୁନାଗୁଣା ପରି ଦିଶେ । ଟୋପାଏ ପଡିଲେ ଶୁଖିଲା ଭାତ ଖାଇ ହେଇଯାଏ ବିନା ଶାଗ ତର୍କାରିରେ । କିଏ କେତେ ଘିଅ ଖାଇଛି । ମନ୍ତ୍ରୀ ଦିନକୁ କେମିତି ପାଞ୍ଚ ଲିଟର ଘିଅ ପିଉଥିବେ । ଏସବୁ କଥା ହେଇ ସମସ୍ତେ ଚିକଣିଆ ଦେଖାଗଲେ ।

ପାଖଆଖ ଗାଁରେ ଖବର ଲାଗିଗଲା ଯେ ପାତ୍ରପୁରକୁ ଘିଅ ଆସୁଛି । ସରକାରୀ ଖାଣ୍ଟି ଗୁଆ ଘିଅ ।

ସପନି, ସପନି ମା' ଆଉ ତା'ର ସାନପୁଅ ସୁନିଆକୁ ସବୁଦିନ ଗାଁ ମାଇପେ ଯାଇ ଦେଖି

ଆସିଲେ, ପେଜପାଣି ପହଞ୍ଚେଇଲେ । ମନ ନେଇଥିଲେ କେତେବେଳେ କ'ଣ ! ଗାଁରୁ ଫେରିବାବେଳେ ପ୍ରାଇଭେଟ ସେକ୍ରେଟେରୀ ବି.ଡି.ଓ.ଙ୍କୁ ଫିସ୍ ଫିସ୍ କ'ଣ କହିଲେ । ସେ ହସି ହସି ମୁଣ୍ଡ ଟୁଙ୍ଗାରିଲେ । ଉଭୟଙ୍କୁ ଚାହିଁ ଭୂୟାଁ ସାହାବ ବୁଝିଗଲେ ।

ବି.ଡି.ଓ. ହୁକୁମ୍ ଦେଲେ 'ନାଥୁ' କଣ୍ଟ୍ରାକ୍ଟରକୁ ସେ ବଡ ବଡ ଦୁଇଟିଣ ଘିଅ ଯୋଗାଡ କରି ପହଞ୍ଚେଇବ । ଖୋଦ୍ ମନ୍ତ୍ରୀଙ୍କ ବରାଦ୍ ।

ନାଥୁ ଦୁଇଟିଣ ମହମହ ବାସୁଥିବା ଘିଅ ଆଣି ଥୋଇଲା । ତା' ଆର ଦିନ ସକାଳୁ ଚାଲାଣ କରିବ ବି.ଡି.ଓ.ଙ୍କ ଗାଡିରେ ରାଜଧାନୀ । ରାତିରେ ନାଥୁଆଣି ପରଠା ସେକିବାକୁ ଟୋପାଏ ଭଲ ଘିଅ ଆଣିବାକୁ ଯାଇ ଦୁଇ ଟିଣରୁ ଦୁଇ ଲିଟର ଲେଖା କାଢିନେଲା । ସେଥିରେ ନିର୍ମଳ ପାମୋଲିନ୍ ଚାରିଲିଟର ମିଳେଇ ଦେଇ ଠିପି ମାରିଦେଲା । ନାଥୁ ଜାଣିଲା । କିଛି କହିଲା ନାହିଁ । ଆଜିକାଲି ସବୁଠି ତ' ଏମିତି ଟିକିଏ ଭେଜାଲ୍ ହେଇଯାଇଛି, କ'ଣ କରାଯାଏ ।

ପ୍ରାଇଭେଟ୍ ସେକ୍ରେଟେରୀଙ୍କ ଘରେ ପହଞ୍ଚିବାରୁ ସାମଲବାବୁ – ତାଙ୍କ ନାଁ ପଦ୍ମନାଭ ସାମଲ-ଫୋନ୍ କଲେ ଭୂୟାଁ ସାହେବଙ୍କୁ ।

"ସାର୍ ଭଲ ମାଲ୍ ହେଇଚି । ମନ୍ତ୍ରୀଙ୍କ ପାଖକୁ କିଛି ଗଲାଣି । ଆପଣ ଟିକିଏ ଟେଷ୍ଟ କରିଥାନ୍ତେ ସାର୍ । ହେଇ ପାଞ୍ଚ ଦଶଲିଟର !... ହଉ ସାର୍ । ମୁଁ ଜାଣେ ସାର୍ ଆପଣ ଏ ବିଷୟରେ ଭାରି ସଚ୍ଚୋଟ – ହଁ ସାର୍ ଏଇଟା କିଛି ନୁହେଁ ସାର୍ ଏମିତି ଖାଲି-ହଉ ସାର୍ ଏଇ ଦଶମିନିଟ୍ ଭିତରେ ପଠାଇ ଦେବି ।"

ବି.ଡି.ଓ ଅପେକ୍ଷା କରିଥାନ୍ତି ପ୍ରାଇଭେଟ ସେକ୍ରେଟାରୀ ଗୋଟିଏ ଛୋଟିଆ ଚାରିକେଜିଆ ଟିଣରେ କିଛି ଘିଅ ଆଣି ଥୋଇଲେ । "ଏଇଟା ଆପଣ ନିଅନ୍ତୁ ସେ ଗାଁକୁ କ'ଣ ଟିକେ ପଠାଇ ଦେବେ ।"

"ହଉ ସାର୍ ! ମନ୍ତ୍ରୀ ଏ ଘିଅ ବାସ୍ନାଟା ଭାରି ପସନ୍ଦ କରିବେ । କହିବେ ସାର୍ ଆଉ ଦରକାର ହେଲେ ଯାଉଁଳି ବି.ଡି.ଓ.ଙ୍କୁ କହିଦେଲେ ଆସିଯିବ ।"

"କିଓ, ମନ୍ତ୍ରୀଙ୍କ ପାଖକୁ ଯିବାକୁ ମାଲ କାହିଁ । ଭୂୟାଁବାବୁ, ମାଲହୋତ୍ରାବାବୁ, ଡିଙ୍ଗଲବାବୁ – ଏମିତି ଟିକିଏ ଟିକିଏ ବାଣ୍ଟିଦେଲେ, ମୋ ପାଇଁ ଟିଣଟା ରହି ଯିବ ଶୁଙ୍ଘିବାକୁ । – ମନ୍ତ୍ରୀଙ୍କୁ କ'ଣ ଘିଅ ଅଭାବ ହେଇଚି ଯେ ତୁମ ଘିଅ ସେ ଖାଇବେ ? ଦେଖିବା ପରେ । ମୁଁ କହି ଦେବି ଯେ ବି.ଡି.ଓ.କୁ କୋଡିଏ ଲିଟର ଘିଅ ପାତ୍ରପୁରରେ ପହଞ୍ଚାଇବାକୁ ଦିଆ ଗଲା ।" ସେ ଖୁସି ହୋଇଯିବେ । ମୁଁ ଏକଥା ଖବର କାଗଜରେ ମଧ ବାହାର କରାଇ ଦଉଚି ।

ବି.ଡି.ଓ. ଆଉ କିଛି ନ କହି ସେ ଚାରି କେଜିଆ ଟିଣଟିକୁ ଉଠାଇ ବାହାରି ଆସିଲେ । ତାଙ୍କୁ ମନେହେଲା ଟିଣଟା ଅଧା ଖାଲି ଥିଲା ।

ପାତ୍ରପୁରଠାରେ ଲୋକେ ଚାହିଁ ରହିଥାନ୍ତି । କେବେ ଖାଣ୍ଟି ଗୁଆଘିଅ ପହଞ୍ଚିବ । ସୁନିଆ ଦେହ ଆହୁରି ବିଗିଡି ଚାଲିଥାଏ । ଖାଇବାକୁ ଦାନା ନାହିଁ । ଔଷଧପାନେ ଦବାକୁ ପଇସା ନାହିଁ ।

ତା' ଆଖି ଆହୁରି ଆହୁରି ଗଭୀରକୁ ପଶି ଯାଉଥାଏ ।

ଦିନେ ପାହାନ୍ତା ପହରରୁ ସପନି ମା'ର କାନ୍ଦଣା ଶୁଭିଲା । ଗାଁ ସାରା ଜାଣିଗଲେ ଯେ, ପିଲାଟା ଚାଲିଗଲା । ସକାଳୁ ପାତ୍ରପୁର ଝାଉଁଳି ଯାଇଥିଲା । ଚିରା ସଅପଟି ଗୁଡେଇ ହେଇ ଶୋଇଥିଲା ସୁନିଆଁ ।

ମସୁଧା ଚାଲିଥିଲା କିଏ ନେବେ ପିଲାଟାକୁ ସଂସ୍କାର ପାଇଁ ।

ଏତିକି ବେଳେ ନକୁଳ ନାହାକ ଧପାଲି ଆସିଲା ।

"ଭାଇମାନେ, ମୁଁ ନେଇ ଆସିଛି ପହିଲି କିସ୍ତି । ମୁଁ କ'ଣ ଛାଡିଲିକି; ଯୁଝିଗଲି ନା ! ହାଁରେ ହାଁ, ମନ୍ତ୍ରୀ ଖୋଦ୍ କହିଛନ୍ତି, ଗାଁଟା ଯାକ ଲୋକ ଶୁଣିଛନ୍ତି । ପାତ୍ରପୁରରେ ଯେ କୌଣସି ପ୍ରକାରେ ଘିଅ ନ ପହଞ୍ଚିଲେ ନୁହେ । – ବି.ଡି.ଓ.ଙ୍କ ପାଖରୁ କହିବୋଲି ଏତକ ନେଇ ଆସିଚି । ଏତ ସାଧାରଣ ଘିଅ ନୁହେଁ । ଏଥିରୁ ଚାମଚେ ଔଷଧ ଭଳି ଖାଇଲେ ପନ୍ଦରଦିନ ଯିବ । ତା'ପରେ ପୁଣି ଦେଖିବା ।"

ଗୋଟିଏ ସରୁ ନଳିଆ ଚାରି ଆଙ୍ଗୁଳିଆ ଶିଶି କାଢିଲା ।

କେହି କିଛି କହିଲେ ନାଇଁ । ବସିଲାଠଉ ଉଠିଲେ ନାଇଁ ଦେଖି ନକୁଳ ନାହାକର ହୋସ୍ ଆସିଗଲା ।

ସେ ଚାରିଆଡକୁ ନଜର ପକାଇ ଜାଣିଗଲା ଘଟଣାଟା କ'ଣ ? "ଇସ୍, କେତେ କଥା ହେଲା । ଟୋକାଟା ବଞ୍ଚିଥିଲେ, ତା'ରି ନାଆଁରେ ଏ ପାଞ୍ଚଖଣ୍ଡ ଗାଁକୁ ମୁଁ ଘିଅରେ ବୁଡେଇ ଦେଇଥାନ୍ତି । କ'ଣ କରାଯାଏ, ଆମକୁ ଭାଗ୍ୟ ସହିଲା ନାହିଁ । ତମେ ପିଲାଟାକୁ ଆଉ ଗୋଟାଏ ଓଳି ବଞ୍ଚେଇ ରଖିଥିଲେ ସେ ମରି ନଥାନ୍ତା । ଏ ବିଶଲ୍ୟକରଣୀ ମଲା ଲୋକକୁ ବଞ୍ଚେଇ ଦବ । ଶୁଖିଲା କାଠରେ ଗଜା କାଢି ଦବ ।"

ତା'ପରେ ନକୁଳ ନାହାକ କ'ଣ ଗୋଟାଏ ହାତ ପାହାନ୍ତାରେ ପାଇଗଲା ଭଳି ସପନିକୁ କହିଲା ।

"ଦେଖିଲୁ ପୁଅ, ଚାମଚଟା ଆଣିବୁ" – ପୁଣି କ'ଣ ଭାବି କହିଲା "ନହେଲେ ଆଉ ଗୋଟାଏ କ'ଣ ଆଣ, ସରୁ ମୁନିଆ ଗୋଟେ ଡାମ୍ଫଣ ପାଇଲେ ଆଣ୍ ।"

ଗାଁ ଲୋକେ ସେମିତି ଅବସନ୍ନ ହୋଇ ବସିଥାନ୍ତି ।

ସପନି ସତକୁ ସତ ଡାମ୍ଫଣଟାଏ ନେଇ ଆସିଲା । ତା' ବାପ ବସ୍ତା ସିଲେଇ କରିବାକୁ ଗଲାବେଳେ ତାକୁ ନଉଥିଲା –

ନକୁଳ ନାହାକ ଗୁଡା ହୋଇଥିବା ସଅପ ପାଖରେ ଟିପେଇ ବସିଲା, "ପିଲାଟିର ମୁହଁ କାଢିଲା !"

କିଏ ସଅପଟାକୁ ଖୋଲି ଦେଲା । ଜନା ଆଡେଇ ଦବାରୁ ସ୍ଥିର ଦରବୁଜା ଆଖି ଯୋଡିକ ଚାହିଁ ରହିଥିଲା । ନକୁଳ ନାହାକର ମଧ ଦେହ ହାତ କମ୍ପିଗଲା ।

ତଥାପି ସେ ଡାମ୍ଫଣ ଅଗରେ ଘିଅ ଟେକି ଧରିଲା । ଈଷତ୍ ମେଲା ହୋଇଥିବା ସେ ଶୁଖିଲା

ଓଠ ପାଖରେ ।

କିଏ କହୁଛନ୍ତି ଠୋପାଏ ପଡିଲା, କିଏ କହୁଛନ୍ତି ପଡିନାହିଁ । ମୁହଁ ଘୋଡେଇ ଦିଆଗଲା । ସଅପ ଗୁଡେଇ ଦିଆଗଲା ।

ଶିଶିଟିକୁ ଯତ୍ନରେ ଠିପି ମାରି ନକୁଳ ନାହାକ ତା' ମୁଣାରେ ପୁରେଇଲା ।

ତାମ୍ପଣଟିକୁ ଜଣକ ନାକ ପାଖରେ ଧରି କହିଲା "ଶୁଙ୍ଘ, ଘିଅର ମହକଟା କେମିତି ।" ନିଅ ଏଇଟାକୁ ସମସ୍ତଙ୍କୁ ଶୁଙ୍ଘାଇ ଦବ । ମୁଁ ଆସୁଛି ।

ନକୁଳ ନାହାକ ଲମ୍ବ ଲମ୍ବ କ୍ଷେପାରେ ସକାଳ ସୂର୍ଯ୍ୟକୁ ଗ୍ରାସିଲା ପରି ଅପସରି ଗଲା ପୂର୍ବ ଦିଗକୁ ।



## ଦାୟାଦ

କ'ଣଟା ମିଳେ ନିଆଁରୁ, ଧୂଆଁରୁ ଅଥବା ସକ୍ ସକ୍ କାନ୍ଦଣାରୁ ଯେ ନିର୍ମଳ ସାଆନ୍ତା ଗୋଟେଇ ରଖିଥାନ୍ତା ବାପର ସନ୍ତକ ବୋଲି ?

ଆସ୍ତେ ଆସ୍ତେ କିନ୍ତୁ ଗୋଟିଏ ପରେ ଗୋଟିଏ ଆସ୍ତରଣ ଅପସରି ଗଲା । ନୀରବି ଆସିଲା ଶୁଦ୍ଧ ଶ୍ରାଦ୍ଧ ଘର । ବନ୍ଧୁ ପରିଜନ, ଦୂର ନିକଟ ଆତ୍ମୀୟ ସ୍ୱଜନମାନେ କ'ଣ ସବୁ କହି କହି ଘୁଞ୍ଚିଗଲେ କେଜାଣି କୁଆଡେ ।

ଗୋଟାଏ ଥମଥମ ବିଶାଳ ସଂଧ୍ୟା ନଇଁ ଆସିଲା ଅରଣ୍ୟ କୁହୁଡି ପରି ନୀରବ ବଗିଚାକୁ । ଘରଟାରେ ଏତେ ଗୁଡାଏ ଖାଲି ଯାଗା, ଏତେ ନିଶ୍ଚଳ ନୀରବତା ତାକୁ ଏମିତି ଆବୋରି ଯିବ ବୋଲି ସେ ଭାବି ନଥିଲା ।

ବାପାଙ୍କ ପୁରୁଣା ଚୌକିରେ ବସି ସେ ଟେବୁଲ୍‌ରେ ହାତ ବୁଲେଇ ଆଣିଲା । ଝର୍କା ରେଲିଂ ଦେଇ ସୋରା ସୋରା ଆକାଶକୁ ଚାହିଁଲା । କେଜାଣି କେମିତି ତା' ବୁକୁ ଉଛୁଳେଇ, ଆଖି ଉଛୁଳେଇ ଶୋକର ଧାରା ଝରିଗଲା । ନୀରବରେ ପ୍ରଥମଥର ପାଇଁ ସେ ଅନୁଭବ କଲା ସେ ଅଗାଧ ଅତଳ ଶୂନ୍ୟତା...

"କିରେ କାନ୍ଦୁଚୁ କ'ଣ ମାଇଚିଆଟା ! ଏ ପରୀକ୍ଷାରେ ଭଲ ହେଲା ନାଇଁ ବୋଲି କ'ଣ ସବୁ ଅଶୁଦ୍ଧ ହେଇଗଲା । ଆଉଥରେ ଦବୁ । ଯା' ବୋଉ ଚକୁଳି କରିଛି ଖାଇପକା ।"

ଆଉ ପରୀକ୍ଷାରେ ସତକୁ ସତ ନିର୍ମଳ ଶହେରେ ଅଶୀ ନମ୍ବର ରଖି ମ୍ୟାଟ୍ରିକ୍ ପାଶ୍ କରିଥିଲା । ତା' ଉତ୍ତାରୁ ସବୁ ପରୀକ୍ଷା ପରେ ବାପା ତା' ପିଠିରେ ହାତ ମାରି ଦିଅନ୍ତି । ତାକୁ ଚାହିଁ ମୁଚ୍ ମୁଚ୍ ହସି ଦିଅନ୍ତି । ସେଇ ତାଙ୍କର 'ସାବାସ୍' କହିବା ଢଙ୍ଗ । ବାପାଙ୍କ ବଡପଣ ତାଙ୍କ କଥା କହିବା ଅପେକ୍ଷା, ନୀରବ ରହିବା ଭଙ୍ଗୀରେ, ନିଶ୍ଚଳ ଠିଆ ହୋଇ ମୁକାବିଲା କରିବା ଢଙ୍ଗରେ; ବାଘକୁ ହେଉ ଅଥବା ବଜ୍ରକୁ – ଯେମିତି ସେ ଚୁପ୍‌ଚାପ୍ ପଥର ମୂର୍ତ୍ତିପରି ଠିଆ ହୋଇଥିଲେ ମା' ଚାଲିଗଲା ବେଳେ ।

ସମସ୍ତେ ହାଉଜାଉ ହେଉଥାନ୍ତି ।

କିନ୍ତୁ ଦୁର୍ଲଭ ସାଆନ୍ତା ସେମିତି ନିଶ୍ଚଳ ଚାହିଁ ରହିଥାନ୍ତି ।

ଆଖିରେ ପଲକ ପଡୁ ନଥାଏ ।

କେତେବେଳେ ମନ ହେବାରୁ ଆସ୍ତେ ମୁହଁ ବୁଲେଇ ତଳକୁ ମୁଣ୍ଡପୋତି ଚାଲିଗଲେ । ସେଇ ବୋଧେ ତାଙ୍କ କାନ୍ଦିବା ଢଙ୍ଗ ।

ସେ ନହେଲେ ମାଇଚିଆ ପରି ଲୁହ ଗଡେଇ କାନ୍ଦି ଥାନ୍ତେ ନା' କ'ଣ! –

ନିର୍ମଳ ଖୁବ୍ ଅନୁରୋଧ କରିଥିଲା ତାଙ୍କୁ ନେଇ ପାଖରେ ରଖିବାକୁ ।

ବାପା କେବଳ ତା' କାନ୍ଧରେ ହାତ ଥୋଇ ମୁହଁକୁ ଚାହୁଁଥିଲେ ।

ଅଳ୍ପ ହସି ବାଁ ହାତରେ ନିଶ ଟେକି ଦେଉଥିଲେ ।

ତା'ର ଅର୍ଥ ହେଲା "ନୋ, ଥାଙ୍କ୍ସ!"

ଗୋଟେ ଥର ନିର୍ମଳ ବାପାଙ୍କ ପାଇଁ ଚମତ୍କାର ଶାନ୍ତିପୁରି ଧୋତି ଆଉ ପଞ୍ଜାବୀ ଆଣିଥିଲା କଲିକତାରୁ ।

ବାପା ମଣିଷକୁ ଯେମିତି ଲୁଗାକୁ ସେମିତି ଛୁଇଁ ଦେଇ ଭଲ ପାଇଯାଉଥିଲେ । ତାଙ୍କ ମୁହଁରୁ ଆଖିରୁ ଜଣାଗଲା ଯେ ସେ ଲୁଗା ହଳକ ପସନ୍ଦ କରିଥିଲେ ।

ହଠାତ୍ କହିଲେ "ଆରେ ବୋହୂକୁ ପଚାରି ଆଣିଚୁ ତ!"

ନିର୍ମଳକୁ ଏ ବାକ୍ୟଟି ଶୁଣି ଭାରି ଅସୁସ୍ଥ ଲାଗଥିଲା । ବାପା ବୋଧେ ମନେ ମନେ ଆଉ କ'ଣ ଭାବୁଥିଲେ । ବୋଧେ ରଞ୍ଜନା ତାଙ୍କୁ ଆପଣାପଣର ବିଶ୍ୱାସ ଦେଇପାରୁ ନଥିଲା ।

ବାପା ବୋଧେ ସେଥିପାଇଁ ତା' ପାଖରେ ରହିବାକୁ ରାଜି ହେଉ ନଥିଲେ । କିନ୍ତୁ ବବ୍ଲୁକୁ ବାପା ପ୍ରଗାଢ ସ୍ନେହ କରୁଥିଲେ ।

ସେ ଟୋକାର ସାହସ ଦେଖି ନିର୍ମଳ ତାଜୁବ୍ ହେଇ ଯାଉଥିଲା । ସେ ସିଧାସଳଖ ବାପାଙ୍କ ନିଶ ଉପରେ ହାତ ମାରି ଦେଉଥିଲା । ସେ ଲମ୍ବା ନାକଟାକୁ ଧରିବାକୁ ତାକୁ ବୋଧେ କୌତୁକ ଲାଗୁଥିଲା – "ଆରେ ବାପ୍‌ରେ ବାପା ଯଦି ଗର୍ଜି ଉଠନ୍ତି ।"

ନିର୍ମଳର ରକ୍ତ ପାଣି ପାଣି ହେଇଯାଉଥିଲା । କିନ୍ତୁ ବାପା ଆଦୌ ସେମିତି କିଛି କରୁ ନଥିଲେ । ବରଂ ଓଲଟି ବବ୍ଲୁର ନାକ ଧରି ଟାଣୁଥିଲେ । ତା' ସାଙ୍ଗରେ କଥା ହେଉଥିଲେ । ତା'ରି କଥାକୁ ନକଲ କରି ତାକୁ ଚିଡଉ ଥିଲେ ।...

ଝରକା ସେପଟେ ଅଂଧାର ଜମି ଯାଉଥିଲା ।

ନିର୍ମଳ ଅନୁଭବ କଲା ଯେ ତା' ପାଖରେ କେହି ଜଣେ ଠିଆ ହେଇଚି । ସେ ବୁଲି ଚାହିଁଲା ବେଳକୁ ରଂଜନା ।

ରଂଜନା ବି ଉଦାସ ଦେଖାଯାଉଥିଲା ।

"ଚା' ଖାଇବ ?"

ଉହୁଁ ।"

"ବବ୍ଲୁ ଅବେଳଟାରେ ଶୋଇଗଲା । କିଛି ଖାଇ ନାହିଁ । ଏଠି ଦଶ ଦିନ କାଳ

ଅଣଦେଖାଜଗତରେ ସେ କେତେ ଝଡ଼ି ଗଲାଣି ।"

ନିର୍ମଳ ଚାବୁକ୍ ଖାଇଲା ପରି ଚୌକିରୁ ଉଠିଗଲା । ଚାଲିଗଲା ବଗିଚାକୁ ଓ ଘନେଇ ଆସୁଥିବା ନିର୍ଜନ ଅଂଧାରକୁ ।

ସେ ବାଦାମ ଗଛକୁ ଆଉଜି ଠିଆ ହେଲା । ଆଖିବୁଜି ରହିଲା ଅନେକ ବେଳଯାଏଁ ।

– ଗଛରେ ଏବର୍ଷ ଫଳ ଲାଗିଛି । ବବ୍‌ଲୁ ଏଯାଏଁ ଗଛଚଢ଼ା ଜାଣିନାହିଁ ।

ବାପା ଏ ଗଛ ଲଗେଇବା ଦିନ କହୁଥିଲେ ନା "ଆରେ ଏ ଗଛ ଫଳିଲା ବେଳକୁ ତୋ ପୁଅ ବଡ ହେଇ ଗଛ ଚଢ଼ା ଶିଖିଥିବ । ଏମିତି ଲାଜଉଚୁ କ'ଣ ? – ତୁ ବିଭା ହବୁ ନାଇଁକି ?"

ନିର୍ମଳ ଗଛଟିକୁ ଆଉଁସି ଦେଇ ଆଡ ହୋଇଗଲା । ବଗିଚାର ସିମେଣ୍ଟ ବେଞ୍ଚ ଉପରେ ବସି ଆକାଶକୁ ଚାହିଁ ରହିଲା ଅସଂଖ୍ୟ ତାରାକୁ । କେଉଁ ଅସଂଖ୍ୟ ତାରାରୁ ଗୋଟିଏ ତା'ର ମାନନୀୟ ଆଉ ଆତ୍ମୀୟ ?

ସେ ବଗିଚା ବାଟ ଦେଇ ଘରେ ପଶିଲା । ସେଇବାଟେ ହିଁ ବାପା ଯିବାଆସିବା କରୁଥିଲେ । ଦାଣ୍ଡପାଖଟା ଏମିତି କିଏ ଆସିଲେ ଗଲେ ବ୍ୟବହାର ହେଉଥିଲା ।

ଓଃ ଘରଟା ଏମିତି ନିସ୍ତବ୍ଧ ହେଇଥିଲା ଯେ ନିର୍ମଳ ତା' ନିଶ୍ୱାସ ଶୁଣି ପାରୁଥିଲା ।

ଭିତର ବଖରାରେ ରଞ୍ଜନା ପୁଅ ପାଖରେ ଶୋଇ ଯାଇଥିଲା । ସେ ବି ଆଉ କ'ଣ କରିଥାନ୍ତା ? ତା'ର ଦାୟିତ୍ୱ ଆଉ ପରିଶ୍ରମ କିଛି କମ୍ ନଥିଲା ସେ ଦଶଦିନ ।

ନିର୍ମଳ ମନରୁ ଅବଶୋଷ ଘୁଞ୍ଚୁ ପାରୁ ନଥିଲା । ସେ ଟେଲିଗ୍ରାମ୍ ପାଇ ଆସୁ ଆସୁ ଦୁଇଦିନ ଲାଗିଗଲା । ପହଞ୍ଚିଲା ବେଳକୁ ଜୁଇ ଲିଭି ସାରିଥିଲା । ଘରେ ଭିଡ ଜମି ଆସୁ ଥିଲା । ତା'ପରେ ଦିନ ରାତି ଟଣା ଓଟରା, ଘୋ ଘୋ ଭିତରେ ଛିନ୍‌ଛତ୍ର ହେଇ ଯାଉଥିଲା ନିର୍ମଳ । ବେଳ କାହିଁ ଚାହିଁବାକୁ ନିଜକୁ ବା ଅପରକୁ । ବେଳ କାହିଁ ହିସାବ କରିବାକୁ କ'ଣ ଗଲା କ'ଣ ରହିଲା ?

ସେ ରଞ୍ଜନାକୁ ଉଠାଇଲା ନାହିଁ । ସେମିତି ଆସ୍ତେ ପହରିଲା ପରି ଚାଲିଗଲା ବାପାଙ୍କ ବୈଠକକୁ ।

ଦାଣ୍ଡ ଦୁଆର କବାଟ ଫାଳେ ଆଉଜେଇ ହେଇଗଲା । ଥମ୍ ହେଇ ଠିଆ ହେଇଗଲା ନିର୍ମଳ । ଚାହିଁ ରହିଲା ମେଲା ଫାଳକ ବାଟେ ଅଂଧାର ବାରଣ୍ଡାକୁ ।

ସେ କେଜାଣି କାହିଁକି ଡାକିଦେଲା, "ବାପା !"

ପବନଟା ପଶି ଆସିଲା ଘର ଭିତରକୁ । ଖୋଲା ଝରକା ପିଟିହେଲା ବାହାର କାନ୍ଥରେ । ନିର୍ମଳ ଛନ୍‌ଛନ୍ ହେଇ ଚାହୁଁଥାଏ ଏପାଖ ସେପାଖ ।

ସେ ଦେଖିଲା ଟେବୁଲ ଉପରେ ବାପାଙ୍କ ବଡ ଫଟଟା ପୁଣି ଥୁଆ ହେଇଚି । ଦୁଇଟି ମଲ୍ଲିଫୁଲ ଫଟ ପାଖେ ସଜଡା ହେଇଚି । ଧୂପଦାନୀରେ କଟେଜ ଇଣ୍ଡଷ୍ଟ୍ରିଜ୍‌ର ତେର ନମ୍ବର କାଠିଟିଏ ଜଳି ଜଳି ପ୍ରାୟ ସରି ଆସିଲାଣି ।

ଏଇଟା କ'ଣ ରଞ୍ଜନା କରିଚି ? ସେ କ'ଣ ମୋତେ ଖୁସି କରିବାକୁ ଏମିତି ଦେଖେଇ

ହେଇଚି, ନା ସେ ବାପାଙ୍କୁ ହୁଏତ' ୟା ଭିତରେ କିଛି ଭଲ ପାଇ ଯାଇଛି । ତା' ବାହାରେ ବର୍ତ୍ତମାନ ଭଲ ପାଇବାରେ କ୍ଷତି କ'ଣ ? କିଛି ଦବାକୁ ତ' ପଡୁନାହିଁ ।

ନିର୍ମଳର ଦାନ୍ତ ଜାବି ହେଇଗଲା । ଆଖି ସରୁ ସରୁ ହେଇଗଲା । ନାକପୁଡା ଫୁଲି ଉଠିଲା ।

ତା'ର ମନେ ପଡିଗଲା ଟେଲିଗ୍ରାମ୍ କଥା । ସେ ଅଫିସ୍‌ରୁ ଆସି ଜଳଖିଆ ଖାଇ ଅନେକ ବେଳ ଗଲା ପରେ ପଚାରିଥିଲା "କ'ଣ ଚିଠି ପତ୍ର ଆସିଚି କି ?"

"ନାଇଁ ! – ହଁ ସେଥିରୁ ଗୋଟେ ଟେଲିଗ୍ରାମ୍ ଆସିଚି !"

"ଟେଲିଗ୍ରାମ୍ ଆସିଚି, ଅଥଚ ତମେ ମତେ କହିନାହଁ ।"

"କୋଉ ନୂଆ କଥା ଯେ କହିବି । ସେଇ ବାପାଙ୍କ ଦେହ ଖରାପ ।" ନିର୍ମଳ ଟେଲିଗ୍ରାମ୍ ପଢି ସାରିଥିଲା ।

"ବୁଢା ହେଲେ ତ' ଏଇଆ ଚାଲିଥିବ । ଶୁଣ, ଏଥର କାହା ହାତରେ ଟଙ୍କା ପଚାଶ ଶହେ ପଠେଇ ଦିଅ । ସେ ନ ନେଲେ ବି ତାଙ୍କ ପାଖରେ ଥୋଇ ଦେଇ ଆସୁ । ନ ହେଲେ ତମ ଗାଁର ଯୋଉ ଲୋକ ନା', କହିବେ ପୁଅ ପଚାରିଲା ନାହିଁ ।"

ନିର୍ମଳ ମନେ ମନେ ରଞ୍ଜନାକୁ ରାଗରେ ଖଣ୍ଡ ଖଣ୍ଡ କରି ପକେଇଥିଲା । କିନ୍ତୁ ଯାହା କରିବାକୁ କହିଥିଲା, ତାହାହିଁ କଲା ।

ରଂଜନାକୁ ଲୁଚେଇ ଦୁଇଶ ଟଙ୍କା ପଠେଇ ଥିଲା ନିର୍ମଳ । ଟଙ୍କା ଫେରିଆସିଲା, ଚିଠି ଫେରିଆସିଲା ।

ଖବର ପହଞ୍ଚିଲା ଯେ ବାପା ଚାଲିଗଲେ ।

ନିର୍ମଳ ନିଜକୁ ନିଜେ କ୍ଷମା କରି ପାରୁନଥାଏ ।

ବାପା ଶେଷ ମୁହୂର୍ତ୍ତଯାଏଁ ନିଶ୍ଚୟ ଚାହିଁଥିବେ ତାକୁ ଦେଖିବାକୁ । ବବ୍‌ଲୁକୁ ଦେଖିବାକୁ । ଅଥଚ ଚାରି ଦିଗରେ ଅପରିଚିତ ମୁହଁମାନଙ୍କୁ ଦେଖି ଆଖି ବୁଜି ଦେଇଥିବେ ।

ନିର୍ମଳ ପୁଣି ବାପାଙ୍କ ଚୌକିରେ ବସି ତାଙ୍କ ଫଟକୁ ଚାହିଁଲା – ଟେବୁଲ ପାଖକୁ ଲାଗି ତାଙ୍କ ବହିଥାକ । ଗୁଡିଏ ଡାଏରୀ, କିଛି ଖାତା । କ'ଣ ସବୁ ଲେଖୁଥିଲେ କେଜାଣି ?

ନିର୍ମଳର ହଠାତ୍ ମନେ ପଡିଗଲା ଯେ ରାତି ପାହିଲେ ସେ ନିଜେ ପ୍ରସ୍ତୁତ ହେବ କାନପୁର ଯିବାପାଇଁ । ରଂଜନା, ବବ୍‌ଲୁକୁ ଧରି ଯିବ ତା' ବାପଘରକୁ । ଏ ଘରେ କୋଲପ ପଡିବ । ଫିଟିଲେ କେହି ଜଣେ ଭଡା ରହିବ ।

ତା' ମନ ବିଚଳିତ ହେଇଗଲା । କାନପୁର... ଦେଶପାଣ୍ଡେ, – କହୁଥିଲା ତା' ମା'କୁ ନେଇ ସେ ଦିଲ୍ଲୀରେ ଦେଖାଇବ । ଅଲ୍‌ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟରେ । ୟା ଭିତରେ ହୁଏତ ସେ ଦେଖାଇ ଆସି ସାରିବଣି । ଯୋଗ୍ୟ ପୁଅ, କାହିଁକି ନ କରିବ ?

ନିର୍ମଳ କ୍ଷୋଭରେ ଖଣ୍ଡ ଖଣ୍ଡ ହୋଇ ଯାଉଥାଏ ।

ରଂଜନା ପଛରୁ ପଚାରିଲା, "ରୁଟି ଖାଇବ ?"

ପ୍ରୟୋଜନରୁ ଅଧିକ ଜୋର୍‌ଦେଇ ନିର୍ମଳ କହିଲା "ନା"–

ରଂଜନା ସାମ୍‌ନାକୁ ଆସି ଠିଆ ହେଲା ।

"ଏମିତି କାହିଁକି ହଉଚ ? ତମେ ଭୋଖେ ଶୋଇଗଲେ ବାପା ଚାଲି ଆସିବେ ନା କ'ଣ ? – ଚାଲ ମୁହଁ ହାତ ଧୋଇ ପକାଅ ! ମୁଁ ରୋଟି ସନ୍ତୁଳା ବାଢି ଦଉଚି । କ୍ଷୀର ଅଛି ସକାଳର, ଖାଇବ ଯଦି... ।"

"ତମେ ଖାଇ ନିଅ । ବବ୍‌ଲୁକୁ ଖୁଆଇ ଦିଅ । ମୋତେ ଭୋକ ନାହିଁ ।"

"ବବ୍‌ଲୁ ଖାଇଲାଣି । ମୁଁ ତମକୁ ଅପେକ୍ଷା କରିଛି । ଯଦି ଖାଇବ ନାହିଁ, ତା'ହେଲେ ମୁଁ ବା କାହିଁକି ଖାଇବି ?"

ନିର୍ମଳ ରଂଜନାକୁ ଚାହିଁଲା । ତାକୁ ଲାଗିଲା ସେ ଖାଇ ପିଇ ସାରିଛି । ଅନେକ ସମୟରେ ଘରକୁ ଫେରିବାକୁ ତା'ର ବିଳମ୍ବ ହେଲେ ସେ ସେମିତି ଖାଇନିଏ । ନିର୍ମଳ ହିଁ ତାକୁ କହି ରଖିଛି ନ ଜଗିବାକୁ । କାରଣ ସ୍ୱୀଟା ତ' ରାନ୍ଧୁଣୀ ନୁହେଁ ଯେ ସେ ସମସ୍ତଙ୍କୁ ଖୁଆଇ ସାରିଲା ପରେ ଯାହା ବଳିଲା ତାକୁ ଖାଇ ଏ ଘରେ ବଞ୍ଚିବ –

ରଂଜନା ବୋଧେ ନିର୍ମଳର ଚାହାଣିରୁ ବୁଝିଗଲା ସେ କ'ଣ ଭାବୁଛି । କହିଲା, ତମେ ଡେରିରେ ଫେରିଲେ ସବୁବେଳେ ଏକା ବସି ଖାଇଚି । କିନ୍ତୁ ସେଦିନ ଆଉ ଆଜିର ଦିନ ଭିତରେ ଅନେକ ତଫାତ୍ । ଆଜି ଅନ୍ତତଃ ତୁମେ ଏକୁଟିଆ ଖାଇବସିବ ନାହିଁ ବୋଲି ମୁଁ ମନେ ମନେ ସ୍ଥିର କରିଛି ! ମୁଁ ବସିବି ତୁମ ସାଙ୍ଗରେ । ତେଣିକି ତୁମ ଇଚ୍ଛା । ଯଦି ତୁମେ ଏତେ ଦିନପରେ ଆଜି ନିହାତି ଶୋକ ମନାଇବାକୁ ଚାହୁଁଥାଅ ଠିକ୍ ଅଛି – ମୋର ସେଥିରେ କିଛି କହିବାର ନାହିଁ ।

ନିର୍ମଳ କିଛି କହି ପାରିଲା ନାହିଁ ।

ରଂଜନା ସତେ ତା'ର ଏକୁଟିଆ ପଣକୁ କେତେ ବୁଝି ପାରିଥିଲା । କିନ୍ତୁ ବାପାଙ୍କୁ ବୁଝିବାରେ ତା'ର ଏତେ ଅସୁବିଧା କାହିଁକି ?...

ରଂଜନା କିଛି ନ କହି ଆସ୍ତେ ନିର୍ମଳର ହାତ ଧରି ବାଟ କଢେଇ ଆଣିଲା ଖାଇବା ପାଖକୁ । ସେମିତି ଚୁପ୍‌ଚାପ୍ ପରଠା ତବା ଖୋଲିଦେଲା । ସେ ଖୁବ୍ ଜାଣେ ମଇଁଷି ଘିଅର ପରଠା ନିର୍ମଳକୁ କେତେ ଭଲ ଲାଗେ । ମୂଳା ସନ୍ତୁଳାରେ କାଙ୍କଡ ପଡିଲେ ସେ କେତେ ଭଲ ପାଏ ।

ନିର୍ମଳ ତଳକୁ ମୁହଁ ପୋତି ବସିଥାଏ ।

ରଂଜନା ପାଖରେ ଠିଆ ହୋଇ ତା' ପିଠିରେ ହାତ ରଖି କହିଲା "ଖାଅ ।"

ନିର୍ମଳ ବୁଝିଯାଇଥିବା ଅଝଟ ପିଲାଟାଏ ପରି ଖାଇବା ଆରମ୍ଭ କଲା । ମୁଣ୍ଡ ସେମିତି ତଳକୁ । ଆଖି ଥମ୍ ଥମ୍, ମୁହଁ ଥମ୍ ଥମ୍ ।

ରଂଜନା ଆଉ ଗୋଟେ ଥାଳିଆରେ ସନ୍ତୁଳା ଆଣି ବସିଲା । ଖଣ୍ଡିଏ ପରଠା ନେଇ ଚୁପ୍ ଚାପ୍ ଖାଇଲା । ରାଗ ରୋଷ ନାହିଁ । କଳି ତକରାଳ ନାହିଁ । ଅଥଚ କ'ଣଟାଏ ଦି'ଜଣଙ୍କ ମଝିରେ, ସେମାନଙ୍କୁ ଆଚ୍ଛନ୍ନ କରି ଢଳଢଳ ହେଉଥିଲା । ସେମାନଙ୍କର ପାଟି ଫିଟୁ ନଥିଲା ।

ରଂଜନା ହିଁ ପ୍ରଥମେ ଉଠିଲା । ଆଉବେଳ ହୋଇଥିଲେ ନିର୍ମଳ ଗୁଟିତବା ତା' ଆଡକୁ ଘୁଞ୍ଚେଇ ଦେଇ କହିଥାନ୍ତା ଆଉ ଖଣ୍ଡେ ଖାଉନ ।

କିନ୍ତୁ ସେ କିଛି କହିଲା ନାହିଁ ।

ତାକୁ ପରଠା ବି ଲୁଣିଆ ଲାଗୁଥାଏ । ସନ୍ତୁଳା ଲାଗୁଥାଏ ସେଠୁଆ । ଢୋକିଲା ବେଳକୁ କୋଉଠି ଗୋଟା ଅଟକି ଯାଉଥାଏ ।

ସେ ଉଠିଲା ବେଳକୁ ରଂଜନା ବିଛଣା ପକେଇ ସାରିଥିଲା ।

"ତୁମେ ଶୋଇଯାଅ । ମୋତେ ସବୁ ବନ୍ଧା ଛନ୍ଦା କରିବାକୁ ପଡିବ ।"

ନିର୍ମଳ ଡବଡବ ଆଖିରେ ରଂଜନାକୁ ଚାହିଁଲା ।

ରଂଜନା ବୁଝିଲା ପରି କହିଲା "ତମେ ବ୍ୟସ୍ତ ହୁଅ ନାହିଁ । ମୁଁ ବାପାଙ୍କ ଜିନିଷ ପାଇଁ ମଧ ବ୍ୟବସ୍ଥା କରିବି ।"

ତା'ପରେ ନିର୍ମଳ ପିଠିରେ ହାତ ରଖି ବିଛଣା ପର୍ଯ୍ୟନ୍ତ ବଳେଇ ନେଇଗଲା ।

ପାହାନ୍ତା ପହରକୁ ନିର୍ମଳର ନିଦ ଭାଙ୍ଗିଗଲା ।

ସେ ଦେଖିଲା ମା'ପୁଅ ଶୋଇଛନ୍ତି । ଦାଣ୍ଡ ବଖରାକୁ ସପ୍ନରେ ପହଁରିଲା ପରି ଚାଲିଗଲା ।

ବଖରାରେ ଆଲୁଅ ନଥିଲା ।

ପବନ ବି ନଥିଲା । ନିଦା ପଥରଟାଏ ପରି ଗୁନ୍ଧି ହେଇ ରହିଥିଲା ବଖରାଟା ।

ନିର୍ମଳ ତାକୁ ଭେଦି ଦାଣ୍ଡ ଦୁଆର କବାଟ ପାଖକୁ ଯାଇ ପାରିଲା ନାହିଁ । ସେଇଠି ଆଲୁଅର ସିଚ୍ ଟିପି ପାରିଲା ନାହିଁ ।

ତାକୁ ନିଶ୍ୱାସ ନେବା କଷ୍ଟ ହେଉଥିଲା ।

ସେଥିପାଇଁ ବୋଧହୁଏ ଭିଡିହେଲା ପରି ବାହାରି ଆସିଲା ବଖରାରୁ । ବାହାରେ ପାହାନ୍ତା ପହରର ଝାପ୍‌ସା ଆଲୁଅ, ହାଲୁକା ପବନ, ଆକାଶରେ ଅସଂଖ୍ୟ ତାରା ।

ନିର୍ମଳ ଯେବେ ବି ସେ ପହରଟାରେ ଉଠିଛି, ବାପାଙ୍କୁ ଦେଖିଛି ବଗିଚାରେ । ତା'ର ବିଶ୍ୱାସ ହେଉଥିଲା ଯେ ସେତେବେଳେ ସେ ଗଛ ଗହଳରେ ନିଶ୍ଚୟ ବୁଲୁଥିବେ ନିଃଶବ୍ଦରେ । ନିର୍ମଳ ଅଗଣାକୁ ମୁହଁକରି ବାରଣ୍ଡାରେ ବସି ଥାଏ । ଦୃଶ୍ୟ ପରେ ଦୃଶ୍ୟ ଫିଟି ଯାଉଥାଏ । ତା' ଆଖି ଆଗରେ ।

ସେ ସାମ୍‌ନାରେ ବାପାଙ୍କୁ ଠିଆ ହେବାର ଦେଖି ଚମକି ପଡିଲା । ସେ ମଟମଟ ଚାହିଁ ଦେବାରୁ ଦେଖିଲା ବେଶ୍ ଆଲୁଅ ହୋଇଯାଇଥିଲା । କିନ୍ତୁ ସେ କ'ଣ ବାପାଙ୍କୁ ସପ୍ନ ଦେଖିଲା ? ଏତେ ପରିଷ୍କାର ଆଉ ଜିଅନ୍ତା କ'ଣ କେହି ଦେଖାଯାଏ ସପ୍ନରେ ? ସେ ଆଖି ବୁଜିଦେଲା । ଅଳ୍ପ ସମୟ ପାଇଁ ଏବଂ ଉଠିଲା । ଦାଣ୍ଡ ବଖରାରେ କବାଟ ଝରକା ଫିଟେଇ ଦେଲା ।

ବାକ୍‌ସପତ୍ର ସବୁ ବନ୍ଧାଛନ୍ଦା ହୋଇ ଥୁଆହୋଇ ଥିଲା । ବାପାଙ୍କ ଫଟ ଟାଙ୍କ ଟେବୁଲ ଉପରେ ନଥିଲା । ତାଙ୍କ ଆଲମାରୀରେ ବହିପତ୍ର କଲମଦାନୀ ବଡ ଆଲବମ୍ ଆଦି କିଛି ନଥିଲା ।

ସେସବୁ ବୋଧେ ଗୋଟାଏ ସତନ୍ତ୍ର ବାକ୍ସରେ ରଂଜନା ସଜାଡି ରଖି ସାରଥିଲା । ସାଙ୍ଗରେ ନେବା ବାକ୍ସ ମେଳରେ ବାପାଙ୍କ କାନପୁରୀ କୁମ୍ଭୀର ଚମଡାର ସୁଟ କେଶ୍‌ଟା ମଧ ଥିଲା । ସେଇଥିରେ ବୋଧେ ବାପାଙ୍କ ଜିନିଷ ଯାକ ରହିଗଲା ।

ଆଉ ଗୋଟାଏ ଡାବଲ ବି ଥିଲା । ରଂଜନା ବୋଧେ ଆଲୁମାଲୁ ଅଥଚ ବ୍ୟବହାର ଜିନିଷପତ୍ର ସେଇଥିରେ ଭର୍ତ୍ତିକରି ଦେଇଥିଲା । କେତେବେଳେ ସେ ଏତେ କାମ କଲା ? – ସେ ରାତିସାରା ଶୋଇ ନାହିଁ ନା କ'ଣ !

ଏଥର ଦିଲ୍ଲୀରୁ ସେ ଗୋଟାଏ ମେଗ୍‌ନମ୍ ଭିଆଇପି ବାକ୍ସ ଆଣି ଆସିଥିଲା । ସେଇଟା ଚକ ଉପରେ ଗଡି ଯାଏ । ଭାରି ସୁନ୍ଦରଟାଏ । ସେଇଟାରେ ନିର୍ମଳର ଲୁଗାପଟା ସବୁ ରହି ଆହୁରି ଜାଗା ବଳକା ରହିଥିବ । ଏକାଠି କାନପୁର ଯାଇଥିଲେ ସମସ୍ତଙ୍କ ଜିନିଷ ତା' ଭିତରେ ଆସି ଯାଇଥାନ୍ତା । ରଂଜନା ବାପଘରକୁ ଯିବ ବୋଲି ଆଗରୁ କହି ଆସିଛି । ସେଥିପାଇଁ ଏ ଡାବଲରେ କ'ଣ ସବୁ ସଜିଲ କରି ରଖିଥାଇପାରେ । ଆଉ ରହିଲା ସେ ବଡ ଟ୍ରଙ୍କଟା । ମନ୍ଦ ନୁହେଁ, ଯିବା ଆସିବା ଛେଚ଼ କଚ଼ କରିବାକୁ ବେଶ୍ ହୋଇଛି । ସେଇଟା ରଂଜନା ବାପ ଘରୁ ଆଣିଥିଲା । ସେଇ ନିଜେ ସବୁବେଳେ ତାକୁ ବାପଘରକୁ ନେଇଯାଏ । ଏବେ ସେଇଟା ପୁରୁଣା ଘଷରା ଦେଖାଗଲାଣି –

ତା'ହେଲେ ବେଡିଂ ଖଣ୍ଡ ସଜିଲ କରିଦେଲେ ହେଲା । ଯାତ୍ରାପାଇଁ ସବୁ ଠିକ୍‌ଠାକ୍ ହେଇଗଲା । ରଂଜନା ଯିବ ଦଶଟା ରାତିରେ । ନିର୍ମଳର ଗାଡି ଟାଇମ୍ ଏଗାରଟା ପନ୍ଦର । ଏକାସାଙ୍ଗେ ସବୁ ନେଇ ଷ୍ଟେସନ ଚ଼ାଲିଗଲେ ସୁବିଧା ।

ବାପାଙ୍କ ଆଲମାରୀ, ଖଟ, ଚୌକି, ଟେବୁଲ ସେ ସିଡି ପାଖ ଘରେ ପୁରେଇ ତାଲା ପକେଇ ଦେଲେ ବାକି ଭଡା ଲାଗିଯାଇ ପାରିବ ।

ଏଣିକି ଏଠିକି ରଂଜନା, ବବ୍‌ଲୁ ବୋଧହୁଏ ଆସିବେ ନାହିଁ । କାହିଁକି ଆସିବେ ? କେବଳ ନିର୍ମଳ ଆସି ଘେରାଏ ବୁଲି ଦେଇ ଯାଉଥିବ । ବଗିଚ଼ାର ଗଛମାନଙ୍କୁ ଚ଼ାହିଁ ଦେଉଥିବ । ଘର ବାହାରୁ ଏ ବଖରାମାନଙ୍କୁ ଚ଼ାହିଁ ଦେଉଥିବ । ଭଡା ଟଙ୍କା ନେଇ ରଂଜନା ହାତକୁ ବଢେଇ ଦେଉଥିବ ।

ସ୍ମୃତି ଆସ୍ତେ ପାତଳ ଧରିଯିବ ।

ଗତକାଲି ରାତିଠୁ ଏବେ ସକାଳୁ ନିର୍ମଳକୁ କେତେ ହାଲୁକା ଲାଗିଲାଣି । –

ରଂଜନା ଧଡପଡ ହେଇ ଉଠି ପଡିଲା । ଦାଣ୍ଡ ବଖରାକୁ ଆସି ନିର୍ମଳକୁ ଚ଼ାହିଁ ଅଳ୍ପ ହସି କହିଲା । "ସବୁ କାମ ସହଳ ସାରି ସଜ ହେଲେ ସିନା ଯିବ । ମୁଁ ତମ ପାଇଁ ଚ଼ା କରି ଆଣୁଚି ।"

ନିର୍ମଳ ତେଣିକି ଖୁବ୍ ସହଜ ବୋଧ କଲା । ସ୍ୱାଭାବିକ ଭାବରେ ଚଳପ୍ରଚଳ କଥାବାର୍ତ୍ତା । ବବ୍‌ଲୁ ସାଙ୍ଗରେ ଗେଲ ଗୌରବ ହେଲା । ଗଳା ଖେଚେଡି ସାଙ୍ଗକୁ ସଜ ଦହି ଆଣି ଖୋଇଦେଲା ରଂଜନା ନଅଟା ବେଳକୁ । ସେ ଆଗକୁ ଯୋଜନା କରି ରଖିଥିଲା । ଦହି ପକେଇ ଥିବ । ମୁଗଡାଲି ଚ଼ାଉଳ ରଖିଥିଲା –

ରଂଜନା ଖୁବ୍ ହିସାବୀ । ନହେଲେ କ'ଣ ନିର୍ମଳ ତା'ର ଘର ସଂସାର ଚଳେଇ ପାରନ୍ତା ?

ସାଢେ ନ'ଟାକୁ ଟେକ୍ସି ଆସି ପହଞ୍ଚିଲା । ଜିନିଷ ସବୁ ଚଢିଗଲା । ବଡ ଭିଆଇପି ଏବଂ ବାପାଙ୍କ କୁମ୍ଭୀର ଚମଡା ବାକ୍ସକୁ ରଂଜନା ଡିକିରେ ନରଖି ପଛ ସିଟ୍ ଉପରେ ରଖିଲା । ନିର୍ମଳକୁ ଆଗରେ ବସିବାକୁ କହି ବହୁ ଯତ୍ନରେ ସେ ଜିନିଷକୁ ସମ୍ଭାଳି ପଛରେ ବସିଲା ।

ନିର୍ମଳ କୃତ୍ୟକୃତ୍ୟ ବୋଧକଲା ।

ଘରେ ତାଲା ପକେଇ ଆସଲା ବେଳକୁ ଦୀର୍ଘଶ୍ୱାସଟିଏ ତା' ମନକୁ ତା' ବୁକୁ ଭିତରୁ ବାହାରି ଗଲା । ନିର୍ମଳ କେବଳ ଘଣ୍ଟାକୁ ଅନେଇ ଦେଇ ଛାଟ ଖାଇଲାପରି ଆସି ଗାଡିରେ ବସିଗଲା ।

ପନ୍ଦର ମିନିଟ୍‌ର ରାସ୍ତା । ତେବେ ଅଫିସ୍ ସମୟ । ଭାରି ଭିଡ । ବାଟ କାଟି କାଟି ଷ୍ଟେସନରେ ପହଞ୍ଚିଲା ବେଳକୁ ରଞ୍ଜନାର ଗାଡି ପାଇଁ ମାତ୍ର ପାଞ୍ଚମିନିଟ୍ ସମୟ ଥାଏ ।

ତେବେ ଧାଁ ଦଉଡ ଭିତରେ ନିର୍ମଳ ଶୁଣିଲା ଯେ ଗାଡି ପନ୍ଦର ମିନିଟ୍ ଲେଟ୍ ଚାଲିଛି । ସେ ଟ୍ରଙ୍କ ଉପରେ ବସି ମୁହଁରୁ ଝାଳ ପୋଛିଲା । ରଂଜନା ବହି ଦୋକାନରୁ ଫିଲ୍ମି ଫେୟାର ଭଳି ଦି'ତିନିଖଣ୍ଡ ଚିତ୍ର ମାଗାଜିନ୍ କିଣି ଆଣିଲା । ନିର୍ମଳକୁ ଖଣ୍ଡେ ଯାଚିଲା । ରଂଜନା ଢାବଲ ଉପରେ ବସି ପତ୍ର ଲେଉଟାଉ ଥାଏ । ଆଗରେ ନୂଆ ଭିଆଇପି ଏବଂ କୁମ୍ଭୀର ଚମଡାର ବାକ୍ସ ପୋଛାପୋଛି ହୋଇ ଚକ୍ ଚକ୍ କରୁଥାଏ । – ବହୁଲୋକ ବାପାଙ୍କ ବାକ୍ସଟାକୁ ଚାହିଁ ଚାହିଁ ଯାଉଥାନ୍ତି ଦେଖି ନିର୍ମଳ ନିଜକୁ ବେଶ୍ ଦାମୀ ଦାମୀ ମନେ କରୁଥାଏ । ଲାଇନ୍ କ୍ଲିଅର ହେଇ ଗାଡି ଆସିଗଲା । ନିର୍ମଳ ବବ୍‌ଲୁକୁ କାଖକରି କୁଲିକୁ ଦେଖେଇ ଦେଲା ଟ୍ରଙ୍କ ଆଉ ଢାବଲ ।

ରଂଜନା ନିର୍ମଳ ଆଡେ ନଚାହିଁ କହିଲା ।

"ନା, ନା, ସେ ଭିଆଇପି, ଆଉ ଚମଡା ସୁଟ୍‌କେଶ୍ ଉଠା ।"

ନିର୍ମଳ ଆନମନା ହେଇ କହିଲା "ଆରେ ବାପାଙ୍କ ବାକ୍ସରେ ବାପାଙ୍କ ଜିନିଷ, ଫଟ ଆଦି ତୁମେ ନେଇ କ'ଣ କରିବ ? ଆଉ ସେ ଭିଆଇପିରେ ମୋର ଜାମାପଟା ଅଛି ପରା ?"

ରଂଜନା ରେଳ ଡବା ଆଡେ ଚାହିଁ କହିଲା "ସେ ଚମଡା ସୁଟ୍‌କେଶରେ ବବ୍‌ଲୁର ଜିନିଷ, ଆଉ ଭିଆଇପିରେ ମୋର ଲୁଗାପଟା ସବୁଅଛି ।"

ରେଳ ଉପରକୁ ଜିନିଷ ଉଠିଲା । ରଂଜନା ଉଠିଲା । ବବ୍‌ଲକୁ ନିର୍ମଳ ପାଖରୁ ନେଇ ସେ ଗୋଟିଏ ସାଇଡ୍ ସିଟ୍‌ରେ ବସିଗଲା ।

ନିର୍ମଳ ଉଠିଲା ବେଳକୁ କହିଲା, "ବାହାରେ ଜିନିଷ ଅଛି, ତୁମେ ଝରକା ପାଖକୁ ଚାଲିଆସ ।"

ନିର୍ମଳ ଉପରେ ସାରା ରେଳଟା ବୋଧେ ମଡେଇ ହୋଇ ଯାଉଥିଲା । ସେ ଝରକା ପାଖକୁ ଯାଇ ରଂଜନାକୁ ପଚାରିଲା ବାପାଙ୍କ ଜିନିଷ କୋଉଠି ରହିଲା ?

"ସେ ଢାବଲରେ ରଖିଦେଇଚି । ପୁରୁଣା ଜିନିଷ ତ' ଖୁବ୍ ଯତ୍ନରେ ଗୋଟାଏ ପାଖକୁ ସଜାଡି ରଖି ଦେଇଛି ।"

"ସେଥିରେ ଆଉ କ'ଣ ଅଛି ?"

"ସେମିତି କିଛି ଦାମୀ ଜିନିଷ ନାହିଁ । ତୁମର ଚପଲ ବବ୍‌ଲୁର ଭଂଗା ଖେଳନା, ପୁରୁଣା ଜୋତା, ମୋର ହଳେ ଚପଲ ।"

ନିର୍ମଳ ବୋଧେ ବୋମା ଫୁଟିଲା ପରି ଗର୍ଜି ଉଠିଥାନ୍ତା, କିନ୍ତୁ ତା' ମୁହଁ ଫଣଫଣ ହେଇ ଉତୁରି ପଡିଲା । ଆଖି ତରାଟି ହେଇଗଲା । ସେ ରେଳ ଝରକାର ରେଲିଂଟାକୁ ବୋଧେ ଉପାଡି ଆଣିଥାନ୍ତା । କିନ୍ତୁ ହାତ ମୁଠା ମୁଠା କରି ଦାନ୍ତ ଜାବି ନେଲା ।

ରଂଜନା ଖୁବ୍ ଅବିଚଳିତ ଭାବରେ କହି ଚାଲିଥିଲା, "ମୁଁ ଜାଣେ ତମେ ଭାରି ସେଣ୍ଟିମେଣ୍ଟାଲ । ସେଥିପାଇଁ ବାପାଙ୍କ ବଡ ଫଟଟା ତୁମ ମଠା ଜାମା ଭିତରେ ଟ୍ରଙ୍କରେ ରଖି ଦେଇଛି । ସେଇଟାକୁ ଡାବଲରେ ରଖି ହେଲା ନାହିଁ ତ' । ଜାଗା ନଥିଲା ।"

ରେଳ ଘୁଞ୍ଚିବା ଆରମ୍ଭ ହେବା ଦେଖି କହିଲା "କାନପୁରରେ ଦେହ ପା'କୁ ଜଗି ଚଳୁଥିବ ! ଆଉ ଶୁଣ, ଏ ଯେଉଁ ପୁରୁଣା କୁମ୍ଭୀର ଚମଡା ସୁଟକେଶଟା ନୁହେଁ, ଏଇଟା ଏଇଠୁ ଦେଖି ବାପା ଆମ ଘରେ କେତେଥର ପ୍ରଶଂସା କରିଛନ୍ତି । ମୁଁ ତାଙ୍କୁ ଏଇଟା ଦେଇଦେବି ଭାବିଚି । ତୁମେ କିଛି ଖରାପ୍ ଭାବିବ ନାହିଁ ତ' । ବାପା ଭାରି ଖୁସି ହେବେ ।"

ନିର୍ମଳ ଆଖିର ନିଆଁରେ ବୋଧହୁଏ ରେଳଟା ସାରା ଜଳି ଯାଇଥାନ୍ତା । ନିର୍ମଳ ନିଜେ ନିଜକୁ ବୋଧେ ନିଆଁ ଲଗେଇ ଦେଇଥାନ୍ତା ।

କିନ୍ତୁ ଟ୍ରଙ୍କ ଉପରେ ସେ ମୁହଁ ଘୋଡେଇ ବସି ପଡିଲା । ଆଖିରୁ ନିଆଁ ନୁହେଁ ତ, ପାଣି ଗୁଡେ ଡବ ଡବ ଝରିଗଲା ।

ଆରେ କାନ୍ଦୁଚୁ କ'ଣ ? ମାଇଚିଆଟା !!



# ମାୟାଯୁଦ୍ଧ

"ମଇଦାନ ଉପରେ ସିନା ମୁକାବିଲା । ତେମେ ବାବୁ ଅଇନା ଅତର୍ଛ ହେଲେ କ'ଣ ହବ ? ମୁଁ ପରା କହୁଛି ଏଇଥର ଫଇସଲା ହେଇଯିବ । କଥା ଆଉ ମଣିଷ ହାତରେ ନାଇଁ । ଆମ ଖଗ୍ ଜାନ୍–ତାକୁ ତେମେ ଜାଣିଚ ନା ନାଇଁ – ସେଇ ମ' ଯିଏ ପେଶାଓ୍ୱାର ଯାଇଚି ଦଶ୍ ଦଫା । ସବୁଥର ଖାଲି ପେସ୍ତା ଅଖରୋଟ୍ ଆଣିଚି ବସ୍ତା ମୁହଁରେ – ସେଇ କରିମ ମିଆଁ କ'ଣ ମିଛ କହିବ ? ସେ କହୁଥିଲା ଯେ ପରିଛା ଘର ଖାଲି କମ୍ପୁଛି । ସେ ବାଟ ଦେଇ ଗଲାବେଳେ ଭିତରୁ ହରଦମ୍ ହୁଂକାର ଶୁଭୁଚି । ପାଁଚ୍‌ମୁଖା ହନୁମାନ୍ ବାବାକୁ ପୂଜାରେ ବସେଇଚି ସିଏ । ମାଳ ଅଞ୍ଚଳରୁ ଗୁଣିଆ ଦିଶାରି ଆସି ଦିନ୍‌ରାତ୍ ପୂଜା ଚଳେଇଚି । ଏଇବାର୍ ପାଁଚ୍‌ମୁଖା ହନୁମାନ୍ ତା'ର କରାମତି ଦେଖେଇ ଦେବ । ଜାତିରେ ସିନା ବନ୍ଦରା, ହେଲେ ଜନମ୍ ବହରମ୍‌ଚରୀ ଥବ, ଦିନ୍‌ରାତ କସ୍‌ରତ୍ କରୁଥବ, ପାହାଡ ଟେକୁଥବ, ସମୁନ୍ଦର୍ ଡେଉଁଥିବ ତେବେ ନା' ବୀର ବଜରଙ୍ଗ୍ ବଲି । ୟେ ପୁଣି ପାଁଚ୍‌ମୁଖ୍ । ସେନ୍ଦୁର ଲଗେଇଚି ବସ୍ତାଏ । ଦଶଟା ରୂପା ଆଖି ଜଳୁଚି । ସେଇ ପରା ଦାନ୍ତ କଡମଡ୍ କରୁଚି । ରାଗରେ ଥରୁଚି ଆଉ ହୁଂକାରୁଚି । ତାକୁ ସେ ଦିଶାରି ସଁଭାଳି ରଖିଚି । ଲେକିନ୍ ଯୋଉଦିନ କହିବ "ମାଡି ଯା' ସେଇଦିନ ତମ ଗାଁ, ରାସ୍ତା, ମକାନ୍ ସବୁ ସମୁଦର ଭିତରେ ପକେଇ ଦବ ।"

"ବୁଝିଲୁ ମିଆଁ ପୁଅ, ତୋ ବୁଦ୍ଧି ଆଉ କେତେ ? ତମର ସେ ଆଦିବାସୀ ପଲସ୍ତରା ମିସ୍ତୀ ଗୁଣିଗାରେଡି କରେ ଯେତେ, ତା'ଠୁ ଠକେ ଶହେ ଗୁଣ । ତାକୁ ପୂଜା ଧଜା କିଛି ମାଲୁମ୍ ନାଇଁ । ସେଇ ଗଞ୍ଜେଇ ଟାଣି ତା' ଭିତରେ ହୁଂକାରୁଚି । ତମେ ଓଲୁ ପଞ୍ଚାଏ କହୁଚ କ'ଣ ନା' ହନୁ ହୁଂକାରୁଚି । ହଇବେ, ସେ ପରା ଏଇ ଶନିବାର ହାଟରୁ ମାଟି ପିତୁଳାଟାଏ କିଣିଚି । ସିନ୍ଦୁର ବୋଲି ପାଞ୍ଚଟା କୁଣ୍ଡି ଖଞ୍ଜିଦେଲେ ସେ କ'ଣ ହେଇଗଲା ପଞ୍ଚମୁଖା ହନୁମାନ୍ ? ଆବେ, ତା' ଇଲମ ସେ କ'ଣ ଜାଣିବ ? ଆମେ ଗାଁ ଜାତିଆ ବ୍ରହ୍ମାକୁ ପଚାରିଲେ ସେ କହିବ । ହଉ, ଶୁଣ୍ ! ସେ ହଗୁରା ହନୁମାନ କଥା ଆଉ ବଖାଣିବା ଦରକାର ନାଇଁ । ତମ ବେଳକାଳ ପୂରିଲା ଜାଣ । ପାଇକରା ପୁଅ ବସେଇଚି କାଳୀ । ଲହଲହ ଜିହ୍ୱା ମାଗୋ ସିନ୍ଦୁରେ ମୁଖ ମଣ୍ଡି । ଦେଖିଦେଲେ ଭେଟେଣା ହେଇଯିବୁ । ଦି'ମୁହଁ ଫାଟିଯିବ । ସେଇ ବ୍ରହ୍ମାର ପୁତୁରା ମଶାଣିରେ କାଳୀ ସାଧନା କରି ପାଇକରା ଘରେ ତାକୁ ଆଣି ବସେଇଚି । ସେ ଯେଉଁ କରାଟ ପରିକା ଆଖି, ଦେଢହାତ ଲମ୍ବା ଜିଭ ଆଉ

ସେ କଟୁରୀ, ମୋ ବୋଉ କିଲୋ, କିଳିକିଳା ରଡି ଛାଡି କାଳୀ କରାଳି ମାଡି ଆସିଲେ ତମ ଗାଁ ଆଖି ପଛୁଳାକେ ଜଳିଯିବ । ପ୍ରଳୟ ହେଇଯିବ ଅଗ୍ନନକ ରାତି ଅଧରେ । ତମେ କ'ଣ ପରିଛା ପରିଛା ହେଇ ତା' ପଛରେ ମାତିଚ ? ହଗୁରା ହନୁମାନକୁ ପରା 'ରାମ' 'ରାମ୍' ଦି'ଥର କରିଦେଲେ ସେଇଟା ତଳେ ପଡି ଗଡିବ ତା' ମନକୁ । ଆଉ ଏଇଠି, ମୋ ବୋପାଲୋ, ମହାକାଳୀ ମାଡି ଆସିଲା ବେଳେ ଖୋଦ୍ ତାଙ୍କ ଗେରସ୍ତ ବାଟ ଆଗୁଳିଲେ ବି ସେ ଚକଟି ମାଡିଯିବ ! ମା ! ମାଲୋ ! ରକ୍ଷା କରି ଯା !"

ନଈକୂଳ ହାଟପଦା ପାଖ ପୋଲ ଉପରେ ବସିଲେ ସଞ୍ଜବେଳେ ତଳମୁଣ୍ଡରୁ ପବନ ବହେ । ନଈ ଏ କୂଳେ ପରିଛାଙ୍କ ଗାଁ, ଆରକୂଳେ ପାଇକରାଙ୍କର । ମଝିରେ ଯାଆଁଳ ନଈ । ବର୍ଷାଦିନେ ଘୁ ଘୁ ବିପତ୍ତି । ଖରାଦିନେ ବାଲି ପଡିଆ । ଦୁଇଟି ଯାକ ବସ୍ତିଲୋକେ ମେଳା ମଉଛବକୁ ଯେମିତି ଉତୁରି ପଡନ୍ତି । ହୁଲସ୍ଥୁଲ ହୁଏ ସେ ଖଣ୍ଡମଣ୍ଡଳ । ସେମିତି ପୁଣି ମେଳା ସରିଗଲେ ବିରାଡି ପିଲାଟିଏ ସୁଦ୍ଧା ତାକେ ନାହିଁ କୋଉଠି । ଯେ ଯାହା ଦୁଃଖରେ ହଜିଯାନ୍ତି । ନଈକୂଳେ ବସିଗଲେ ଝିଣ୍ଟିକା ଉଡିବା ଶୁଣାଯାଏ । ଶୁଖିଲା ପତ୍ର ଖସିବା ଶୁଣାଯାଏ । ଦୁଇଟା ଗାଁ ସାରା ଲୋକେ ମରିଯାଇଛନ୍ତି କି ଆଉ !

ଏଇ କେତେଦିନ ହେଲା ମାତି ଉଠିଛନ୍ତି ସମସ୍ତେ । ଅଗ୍ନନକ ପାଟିଟାଏ ଶୁଭି ଯାଉଛି ଅବେଳରେ । ରାତି ହେଲେ ଆହୁରି ବେଶୀ । ବଡଭାଗ ଘରେ ପିଲାଏ ନୂଆଜାମା ପିନ୍ଧିଛନ୍ତି । ଯୋଡିଏ ଦୋକାନ ଯାଆଁଳ ନଈ ଏପାଖେ, ସେପାଖେ । କିଶୋର ପାତ୍ରକୁ ଭୋଳି ପାତ୍ର । ତାଙ୍କ ପାଖରେ ଏବେ ଦିନକୁ କୋଡିଏ ତିରିଶଖଣ୍ଡ ଶହେ ଟଙ୍କିଆ ନୋଟ ପହଞ୍ଚି ଯାଉଛି । ଲୋକେ ଭଳି ଭଳି ଜିନିଷ କିଣୁଛନ୍ତି । ଅଭ୍ର ପାହାଡରେ ଘସି ହେଉଥିବା ନଈ ପାଣିରେ ସୁନା ଚମକିଲା ପରି ଗାଁ ସାରା ଟଙ୍କା ଚମକୁଚି । ନ କହିଲେ ବି ସମସ୍ତେ ଜାଣୁଛନ୍ତି । ପଞ୍ଚାଏ ଛକିଛନ୍ତି କେଉଁ ଡାଳ ପକ୍ଷୀ କେଉଁ ଆଡକୁ ଉଡୁଛନ୍ତି ଡନଖିବାକୁ । ତାକୁ କେମିତି ଫାଶ ପକେଇ ଧରିବାକୁ ହେବ ତା'ର ଉପାୟ ଚିନ୍ତା କରୁଛନ୍ତି ଆଉ ପଞ୍ଚାଏ । ଖୋଲାଖୋଲି ଏପକ୍ଷ ସେ ପକ୍ଷ ହୋଇ ଠିଆ ହେଇ ଯାଇଛନ୍ତି । ଗାଳି ଫଜିତ୍ କରୁଛନ୍ତି । ଠେଙ୍ଗା ଭୁଜାଲି ଧରି ଫୁ ଫୁ କାର କରୁଛନ୍ତି ଭିଡିଯିବାକୁ । ବାକି ଯେଉଁ ବଡଭାଗ ଲୋକ ରହିଲେ, ତାଙ୍କୁ ଏ ସବୁ କଉତୁକ ପରି ଲାଗୁଛି ।

ପାଇକରାଙ୍କ କିଲା । ଚୂନ ଯୋଡେଇ କାନ୍ଥ । କଡି ବର୍ଗା ଛାତ । ଭିତରେ ହାତୀଶାଳ, ଘୋଡାଶାଳ, ପାଇକ ପୋଇଲି ପରିବାରକୁ ନେଇ ଖାନ୍‌ଦାନ୍ । ଭ୍ରମରବର ପାଇକରା ଦୀପାବଳି ଉତ୍ସବରେ ଦଶହଜାର ଟଙ୍କାର ବାଣଧରି ଠିଆ ହେଇଛନ୍ତି ଛାତରେ । ଚାଲିଛି ରାତିସାରା ଉତ୍ସବ । ଗାଁ ସାରା ପିଲାବୁଢା ତାଟକା ହେଇ ଅନେଇଛନ୍ତି ଭଳି ଭଳି ଫୁଲଝରି ହାବେଳି, ଚନ୍ଦ୍ରଉଦିଆକୁ । ତୋପ ଗର୍ଜନରେ ହାଡ ପଞ୍ଜୁରୀ ଥରି ଯାଉଛି । ଯାଆଁଳ ଆରପାଖରୁ କୌଣସି ଉତ୍ତର ମିଳିନାହିଁ । ଲଙ୍କାଗଡ ଜିଣିଲାପରି ପାଇକରା ପାହାନ୍ତା ପହରକୁ ପହୁଡ ଯାଇଛନ୍ତି । ଗାଁ ଲୋକେ ବେଳ ଦୁଇ ଘଡିକୁ ଉଠିଛନ୍ତି । "ପରିଛାର ବଳ କାହିଁ ହୋ ? – ସେ କି ମୁକାବିଲା କରିବ ?" ଗାଁ ଲୋକେ

କଥା ହେଉଛନ୍ତି ।

ଯାଆଁଳ ଆରପାଖ ସେଇ ରାତିରେ ପରିମଳ ପରିଛା ଦଶ କୋଡିଏଟା ଗ୍ୟାସ୍ ଲାଇଟ ଆଲୁଅରେ ଗାଁ ସାରା ଲୋକଙ୍କୁ ଶୀତ ଲୁଗା ବାଣ୍ଟିଛନ୍ତି । ପୁଡାଏ ଲେଖା ମିଠେଇ ବାଣ୍ଟିଛନ୍ତି । ସମସ୍ତଙ୍କ ଦୁଆରେ ଦୀପ ଜାଳି କାଉଁରିଆ କାଠିର ହୁଳା ଟେକି ବଡବଡିଆଙ୍କୁ ଡାକିଛନ୍ତି । ଗାଁ ଲୋକେ ନଈ ଆରପାରିକୁ ଗର୍ଜୁଥିବା ତୋପ ଶୁଣିଛନ୍ତି । ଭଳି ଭଳି ଆଲୁଅ ଚହଟିବାର ଦେଖୁଛନ୍ତି ।

ସକାଳୁ ଗାଁ ଲୋକେ ଶୀତ ଲୁଗା ଘୋଡି ହୋଇ ଦାଣ୍ଡକୁ ବାହାରିଛନ୍ତି । ପାଇକରା ଟଙ୍କା ଗୁଡାକ ଯାହା ପୋଡି ପକେଇଲା । ତା'ର ବା ବୁଦ୍ଧି କେତେ ?

ଏଇଟା ଦିନ ଓଳିକର କଥା ନୁହେଁ । ବୁଢାମାନେ ମନେ ପକାଇ ପାରୁଥିବା କାଳରୁ ଏ ମୁକାବିଲା ଜାରି ରହିଛି । କଥାକଥାକେ ଜିଦାଜିଦି । ସେଥିରେ ଗାଁ ଲୋକେ ଫଇସଲା କରି ଆସିଛନ୍ତି । କିଏ କେତେବେଳେ ଜିଣିଛି ।

ବେଳ ଉଣ୍ଡି ପାଇକରା ବ୍ୟବସାୟ ଧନ୍ଦାରେ ପଶି ଯାଇଛନ୍ତି । ତାଙ୍କର ତିନି ନମ୍ବର ସିନେମା ଘର ତୋଳା ଚାଲିଛି । ଅମାପ ପଇସା । ଖାଇଲେ ବୋହିଲେ ସରୁ ନାହିଁ । ରାଜଧାନୀରେ ସବୁଠୁ ବଡ ଜାଗା ପାଇଁ କାଗଜପତ୍ର ଚାଲିଛି ।

ପରିମଳ ପରିଛାଙ୍କ ଢଙ୍ଗ ଅଲଗା । ତାଙ୍କର କୌଣସି କାମ ଅଟକି ଯାଏନାହିଁ । ସେଇଠି ନଡିଆର କେଉଁ ଶିରାରେ ପାଣି ପଶେ କେହି ଜାଣି ପାରେ ନାହିଁ । ତାଙ୍କୁ ବାହାରୁ ଦେଖିଲେ କିଛି ଠଉରେଇ ହେବ ନାହିଁ ।

ଏବେ ପଡିଚି ଚୂଡାନ୍ତ ମୁକାବିଲା । ଜୀବନ ମରଣ ସମସ୍ୟା ପାଇକରା ଦୁଇଥର ଇଲେକ୍ସନ୍ ଜିଣି ସାରିଲେଣି । ତାଙ୍କ ଗାଁକୁ ବିଜୁଳୀ ନେଲେଣି, ରାସ୍ତା ମରାମତି କଲେଣି । ପରିଛା ପଟେ କିଛି ସେମିତି ନାହିଁ । ସେ ଗୋବର ଗ୍ୟାସ୍ କରେଇଛନ୍ତି । ଶ୍ରମଦାନରେ ରାସ୍ତା ଗଢିଛନ୍ତି ।

ପରିଛାଙ୍କ ପଇସା ବଳ ନାହିଁ । ତାଙ୍କ ପିଲାଙ୍କ ଜାମା ମଇଳା । ଘରେ ପାଞ୍ଚବର୍ଷ ହେଲା ଚୂନ ଧଉଳା ହୋଇ ନାହିଁ । ସେ ନିଜେ ଯେଉଁ ମୋଟା ବଗଡିଆ କୁର୍ତ୍ତାଟା ପିନ୍ଧନ୍ତି – ତା'ବି କାଖପାଖ ଚିରା । ଲୋକେ ଦେଖନ୍ତି, ବୁଝନ୍ତି, ଜମ୍ମା ପାଖ ଛାଡନ୍ତି ନାହିଁ ।

ପାଇକରା କାଳୀ ବସେଇଛନ୍ତି ସର୍ବ ଶୁଭରେ ଯୁଦ୍ଧ ଜିଣିବାକୁ, ଶତ୍ରୁକ୍ଷୟ, ଧନଲାଭ ଓ ଯଶଲାଭ କାମନା କରି । ପୂଜା ଚାଲିଛି । ସବୁଦିନ ପାଟପିନ୍ଧି ସେ ସମସ୍ତଙ୍କ ଆଗରେ ଦେବୀଙ୍କୁ ମନ୍ଦାରମାଳ ଲାଗି କରାନ୍ତି । ତଳେ ପଡି ସାଷ୍ଟାଙ୍ଗ ପ୍ରଣିପାତ ହୁଅନ୍ତି । କାଳୀ ମା'ଙ୍କ ଜୟଜୟକାର ହୁଏ । ସିନ୍ଦୂର କଲି କାଟି ସେଇଠୁ ଖେଦିଯାନ୍ତି ଦଶଦିଗକୁ ତାଙ୍କ ବଟସ୍ୱରମାନେ । ଚାହିଁଲେ ମୁଣ୍ଡ ହାଣି ଆଣିବେ । ଚାହିଁଲେ ପାହାଡ ଟେକି ଆଣିବେ । ପରିଛା ଗାଁ ଭିତରେ ସେମାନେ ଦୁମ୍ ଦୁମ୍ ହେଇ ଚାଲନ୍ତି । ପାଟି ଫିଟାନ୍ତି ନାହିଁ । ଫିଟେଇଲେ ସେ ଗାଁ ଭେଣ୍ଡା ଭିଡି ଆସିବେ ।

ସାରା ଅଞ୍ଚଳ ଏମିତି ଛକାପଞ୍ଝା ଚାଲିଛି । କହି ହେଉ ନାହିଁ ମୁକାବିଲାରେ କାହାଆଡେ ଫଇସଲା ହେବ ।

ବ୍ରହ୍ମାଙ୍କ ପୁଅ ଯଜମାନଙ୍କୁ ଆଶୀର୍ବାଦ ଫୁଲ ଦେଲାବେଳେ ପାଇକରାଙ୍କ ପଛୁଆମାନେ କଥା ହେଉଥିଲେ ।

"ସେଥିରୁ ଗୋଟେ ମାଙ୍କଡ ପୂଜା କଲେ କ'ଣ ହବ ? ସେ ତ' ନିଜେ ନଙ୍ଗଳା, ଆଉ ଜଣଙ୍କ ପାଖେ ଭୃତ୍ୟ । ସେ କ'ଣ ଦେଇପାରିବ ?"

"ଆମ ମିଆଁ ଭାଇଯାକ କିନ୍ତୁ ଲାଗି ଯାଇଛନ୍ତି ହନୁମାନ ସେବାରେ । ମାଙ୍କଡ ତ' ହିନ୍ଦୁ କି ମୁସଲମାନ ନୁହନ୍ତି ।"

ବ୍ରହ୍ମା ସମ୍ଭାଳି ପାରିଲେ ନାହିଁ ।

"କିରେ, କ'ଣ ସେଥିରୁ ଗୁଡେ ମାଙ୍କଡ ହଉଚ ? ହନୁମାନ ଜି କ'ଣ ମାଙ୍କଡ ? ତମେ ସେମିତି ଦେବତା ନିନ୍ଦା କର ନାହିଁ ବିପତ୍ତି ପଡିଯିବ ।"

ପାଇକରା ଅସ୍ୱସ୍ଥ ବୋଧ କଲେ ।

"ଆରେ ତୁମେ ସେମିତି କ'ଣ କହୁଚ ? ଆଚ୍ଛା ପୁରୋହିତ ମହାଶୟେ, ଏ ହନୁମାନ ପୂଜା କଲେ କ'ଣ କିଛି ଫଳ ଅଛି ?"

ଟାଙ୍କୁ ସମସ୍ତଙ୍କୁ ତାଜୁବ କରି ଉତ୍ତର ଆସିଲା –

"କରି ଜାଣିଲେ ସବୁ ସଂକଟ ମୋଚନ ହୋଇଯିବ । ତାଙ୍କ ନାଁ ସେଥିପାଇଁ ସଂକଟମୋଚନ । ଆଉ ତନ୍ତ୍ରରେ ପଞ୍ଚମୁଖୀ ହନୁମାନ ପୂଜା କରି ସନ୍ତୁଷ୍ଟ କରି ପାରିଲେ ଅସାଧ ସାଧନ ହୋଇପାରିବ । ତାଙ୍କୁ ରୁଷ୍ଟ କଲେ ସେ ଛାରଖାର କରିଦେବେ ।"

ପାଇକରା ସେଇଠୁ ଚୁପ୍‌ଚାପ୍ ଚାଲିଗଲେ । ଖାଉନ୍ଦଙ୍କୁ ଗମ୍ଭୀର ହେବାର ଦେଖିଲେ ଅନ୍ୟମାନେ କେମିତି ଅବା କଥାବାର୍ତ୍ତା ହୋଇଥାନ୍ତେ ? ପୁରୋହିତ ରହିଁ ରହିଲେ ନୀରବରେ । କାଳୀଙ୍କ ଆଗରେ ଗୁଗ୍ଗୁଳ କୁହୁଳୁଥିଲା ।

ଟା' ଆର ଦିନ ଦଶଟା ଭାରୁଆ ଯାଆଁଳ ପାରି ହୋଇ ପରିଛାଙ୍କ ଗାଁକୁ ଯିବାର ଦେଖାଗଲା । କଦଳୀ, ନଡିଆ, ଲଡୁ ବୋଝେଇ ନେଉଥାନ୍ତି ପାଇକରାଙ୍କ ପାଞ୍ଚଜଣ ଲୋକ ।

"ଆବ୍‌ବେ, ରହମାନ୍, ଏ ଲୋଗ୍ କିଧର ଲେଟା ହେ ଏତନା ଲଡିଆ ?"

"କି ଜାନେ !"

"ଆବ୍‌ବେ ୟେ ତୋ ଗାଓଁ କେ ଭିତରେ ଘୁସ୍‌ତା ହେ ।"

"ହାଁ, ହାଁ, ସଚ୍ଚି, କାହାଁ ଚଲତା ହେ ରେ ? ଚଲୋ ନ ଦେଖିଥତେ ହେଁ !"

ଡକା ହକା ହେଇ ଭାର ପଛେ ପଛେ ପିଲା ବଡ ସବୁ ଚାଲିଲେ ।

ଭାର ଯାଇ ରହିଲା ପରିଛାଙ୍କ ଘର ଆଗରେ । ସମସ୍ତେ ତାଜୁବ ।

ତୋବା, ତୋବା, ଆରେ ଗଜବ୍ ହୋଇଗଲାରେ !

ଦୁଷ୍ମନ୍ କୋ ଲଡିଆ ? – କ୍ୟା ବାତ୍ ହେ ? ?

ପରିଛାଙ୍କ ଘରୁ ଲୋକ ବାହାରି ପଚାରିଲେ, "ଆରେ ଏଠି କାହିଁ ଭିଡ କରୁଛ ଦୁଆର

ମୁହଁଟାରେ ?"

ପାଇକରା ପକ୍ଷର ମୁଖିଆ ଆଗେଇ ଆସିଲା – ବେକରେ ଗାମୁଛା ଓହଳେଇ କହିଲା

"ଆମେ ହନୁମାନ ଜିଉଙ୍କ ପାଇଁ ଫଳମୂଳ ଘେନି ଆସିଛୁ । ଭ୍ରମରବର ପାଇକରା ଜିଉଙ୍କୁ ପ୍ରଣାମି ପଠାଇଛନ୍ତି ।"

ସେମାନେ ପରସ୍ପରକୁ ଚାହିଁଲେ । ସେମାନେ ଭାର ଭାର ନଡିଆ କଦଳୀ ଆଉ ଲଡୁ ହାଣ୍ଡିକୁ ମଧ୍ୟ ଚାହିଁଲେ ।

ପରିଛା ଦେଖିଲେ କ'ଣ କରିବେ ଟି ! ସେ ବୋଧେ ଘଉଡେଇ ଦେବେ । ସେମାନେ କିଏ ଆମ ଦିଅଁଙ୍କୁ ଭୋଜନ ପଠାଇବାକୁ ? ସେ କହିବେ ତ' ଦି ଚାରିଗଣ୍ଡା ଛେଳି କୁକୁଡା ଆମେ ଏଇଠୁ ପଠେଇ ଦବା କାଳୀ ମାତାଙ୍କ ପାଖକୁ !

ପରିଛାଙ୍କ ଲୋକଟି ଘାବରେଇଲା ପରି କହିଲା –

"ମୁଁ ପଚାରି ଆସୁଛି ।"

ଗାଁ ଲୋକେ ଜାଣିଛନ୍ତି ଯେ ଘରେ ପରିଛା ନାହାନ୍ତି । ଆଉ ମଧ୍ୟ ଜାଣିଛନ୍ତି ଯେ ଏ ପୂଜାପାଠ ତାଙ୍କର ନୁହେଁ । ତାଙ୍କ ଘରବାଲି ଚାହିଁବାରୁ ଆଉ ଗାଁ ଲୋକଙ୍କ ମନ ନେବାକୁ ରାଜି ହେଇ ଯାଇଛନ୍ତି ।

"ହାମର ପରିଛା ବାବୁ ଯେସା ସଚ୍ଚା ନୋକ ଆଉ ଅଛି ନା' କ'ଣ ?"

"ଯାଉ ନ'ଭାଇ ଜାନ୍ ! ଥେଲା ନା ଥବ !"

ଲେକିନ୍ ଏ ସବୁ ସାମାନ୍ କାହେକୁ ପଠାୟା, ପାଇକରା ?

"କା ଜାନେ !"

"ଆରେ ମତଲବ୍ ଥବ ନା ! ସେଥିରେ କ'ଣ ପଠଇଥବ କା' ମାଲୁମ୍ !"

"ପହିଲେ କାଉ କବୁତର କୋ ଖିଲା କର ତବ୍ ଖାନା ଚାହିୟେ ।"

"ସଚ୍ଚି, ସଚ୍ଚି !"

"ତେମେ କହୁନ' ଲଛମନ୍ ଭାଇ, ତେମେ ତ' ଭାରି ସମଝଦାର ନୋକ ।"

"କଥା କ'ଣ କି, ମିଆଁ ପୁଅ, ଆମ ଗାଁ ବାଲା ଭାରି ସରଳ । ସେ ଗାଁ ବାଲାଙ୍କ କପଟ ବୁଝିବା ସହଜ ନୁହେଁ । ହେଲେ ମତେ ଦି'ଟା କଥା ଦିଶୁଚି । ଆମ ହନୁମାନ ତାକୁ ରାତିରେ ସପନେଇଛନ୍ତି । ତାକୁ ଅତଙ୍କ ଲାଗିବାରୁ ସେ ସକାଳୁ ଏ ସଞ୍ଜା ସରଞ୍ଜାମ ପଠାଇ ଦେଇଛି ।"

"ହାଁ ହାଁ ୱହି ବାତ୍ ଠିକ୍ ।"

"ନହେଲେ ଆଉ ପ୍ରକାରେ ହେଇଥିବ । ସେ ଭାରି ଚାଲାକ୍ ଲୋକ ଟ' । ଆମ ଗାଁରେ ରାତିରେ ଲୁଚି ଲୁଚି ଟଙ୍କା ବାଣ୍ଟୁଛି ବୋଲି ଗୁଜବ । ପଇସା ପାଇଲେ ଗରିବ ଲୋକ ଆତ୍ମା ବିକିଦେବେ । ଏଇଟା ଜାଣି ହନୁମାନଙ୍କୁ ଲାଞ୍ଚ ପଠେଇଚି । ଲାଞ୍ଚ ପାଇଗଲେ ହନୁମାନ ଆଉ ହୁଂକାରିବେ ନାହିଁ । ପରିଛାଙ୍କ ପକ୍ଷ ଦୁର୍ବଳ ହେଇଯିବ ।"

"କ୍ୟା କହା ! ତୋବା, ତୋବା !! ହିଁଆ ପର୍ ଭି ଘୁସ୍ ଆ ଗିଆ ! ତେମେ ଲଛମନ୍ ଭାଇ

ଅସ୍‌ଲି ବାତ୍ କହିଛ । ଯେ ଶାଲା ଘୁସ୍ କା ମାଲ୍ ।"

ଆସ୍ତେ କଥା ବ୍ୟାପିଗଲା ଯେ ହନୁମାନକୁ ଲାଞ୍ଚଦେଇ ହାତ କରିବାକୁ ପାଇକରା ନଡିଆ କଦଳୀ ପଠେଇଚି ।

ଘର ଭିତରୁ ପରିଛାଙ୍କ ଲୋକ ଆସି ଠିଆହେଲା । ସମସ୍ତେ ଚୁପ୍ ରହିଗଲେ ।

"ମା'ଙ୍କ ହୁକୁମ ହେଲା ଯେ ଭୋଗ ଲାଗିବ । ଠାକୁର୍ କ'ଣ ଜଣଙ୍କର ? ସେ ସମସ୍ତଙ୍କର ।"

"ବ୍ୱାଃ, ବ୍ୱାଃ, କା ବାତ୍ କହି । ଠାକୁର୍ ସବ୍‌କା ହୈ ।"

ଭୋଗ ଲାଗିଲା । ଫାଳ ଫାଳ ନଡିଆ କଦଳୀ ନଡୁ ପାଇକରା ଲୋକଙ୍କୁ ପହିଲେ ଦିଆଗଲା । ଗାଁ ସାରା ଯେ ଆସିଲା ଭୋଗ ନେଇଗଲା ।

ପାଇକରା ଶୁଣି କିଛି କହିଲେ ନାହିଁ ।

ତା' ପରଦିନ ଠାକୁରାଣୀଙ୍କ ଭୋଗ ପରିଛାଙ୍କ ଗାଁରେ ବଣ୍ଟା ହେଲା । କାଳୀ ମା' କ'ଣ ଜଣଙ୍କର ? ସେ ସମସ୍ତିଙ୍କର !

ଖୁବ୍ ଯିବା ଆସିବା ଚାଲିଲା ଦୁଇ ଗାଁ ଭିତରେ । ପୂଜା ପାଖରେ ଭିଡ ଜମିଲା ।

ପରିଛା ଯାଇଥାନ୍ତି ଚାରିଦିନ ଗସ୍ତରେ । ତାଙ୍କ ପାଖ ଲୋକଙ୍କୁ କଥାଟା କେମିତି ବେବାଗିଆ ଲାଗିବାରୁ ସେମାନେ ଖବର ପଠାଇ ଦେଲେ ପରିଛାଙ୍କୁ ।

ସେ ଆସି ଦେଖନ୍ତିତ' ପାଇକରା ଗାଁ ଲୋକ ତାଙ୍କ ଦାଣ୍ଡରେ ହୁରି କରୁଛନ୍ତି, "ହନୁମାନ ଜି କି ଜୟ । ଜୟ ବଜରଙ୍ଗବାଲି କି ଜୟ ।"

ସେ କଟମଟ ସେମାନଙ୍କୁ ଚାହିଁଲେ । କାହାକୁ କିଛି ନ କହି ଘରେ ଯାଇ ଗୁମ୍ ହେଇ ବସିଗଲେ । ତାଙ୍କ ସ୍ତ୍ରୀ ଆସ୍ତେ ପଚାରିଲେ ।

"ମୁହଁ ହାତ ଧୋଇ ପକାଅ ! କ'ଣ ଟିକିଏ ଖାଇବ ନାହିଁ ?"

ପରିଛାଙ୍କ ମୁଣ୍ଡବାଳ ନୁଖୁରା । ମୁହଁରେ ଦି ଦିନର ଦାଢି । ସେ କିଛି ନ କହି ଖଣ୍ଡେ ସିଗ୍ରେଟ୍ ଲଗେଇ ଟାଣିଲେ ଚୁପ୍‌ଚାପ୍ ।

ତାଙ୍କ ସ୍ତ୍ରୀ ପାଖକୁ ଆସି କହିଲେ –

"ପାଇକରା ଘର ପଅର ଦିନ ସକାଳୁ ଦଶଭାର ନଡିଆ କଦଳୀ ଭୋଗ ପଠାଇଥିଲେ । ମୁଁ ତୁମକୁ କହିଛି ସଂକଟ ମୋଚନ ହନୁମାନ ଭାରି ପ୍ରତ୍ୟକ୍ଷ । ସେ ସନ୍ତୁଷ୍ଟ ହେଲେ ଆମ ଦୁଃଖ ରହିବ ନାହିଁ । ଏ ଦୁଇଦିନ ଆଗକାଳ ପରି ସମସ୍ତେ କେମିତି ମିଶିଗଲେ ଦେଖୁନ' ! ପୂଜା ପର୍ବ ପରି ଲାଗୁଛି । ଲୋକେ କହୁଛନ୍ତି ତାଙ୍କ କାଳୀ ମେଢ ଭାରି ବଢିଆ ହେଇଚି । ଥରେ ଦେଖିଗଲେ କ'ଣ ନୋକସାନ୍ ହୁଅନ୍ତା ।"

ଧୂଆଁ ପଛରେ ପରିଛାଙ୍କ ଆଖି ନିଆଁ ରଡ ପରି ଦହକି ଗଲା । ତାଙ୍କ କପାଳରେ ଝାଳ ଚିକ୍ ଚିକ୍ କରୁଥିଲା । ସେ ପ୍ରୟୋଜନରୁ ଅଧିକ ଜୋର୍‌ରେ ସିଗ୍ରେଟ୍ ଟାଣୁଥିଲେ । ସିଗ୍ରେଟ୍‌ର ମୂଳଟାକୁ ସେ ଚେବେଇ ପକେଇଥିଲେ ।

ସେ ଭୁସ୍ କିନା ଉଠି ଧସେଇ ଗଲେ ପୂଜା ଘରକୁ । ସେଇଠି ଦିଶାରି ଧୂପ, ଧୂଆଁ ଆଉ ନାନା ପ୍ରକାର ସାମଗ୍ରୀ ଭିତରେ ବସି ଝୁଲୁଥିଲା ଏବଂ ହୁଂକାରୁଥିଲା । ସେ ତା' ସାମ୍ନାରେ ହାତ ମୁଠା ମୁଠା କରି ତାକୁ କଟମଟ ଚାହିଁଲେ । କିନ୍ତୁ ଫଡ୍ କିନା ବୁଲି ପଡି ଆସ୍ଥାନ ଉପରୁ ହନୁମାନ ପିତୁଳାକୁ ଟେକି ଧରିଲେ ।

ଧାଇଁଗଲେ ଦାଣ୍ଡକୁ । ତାଙ୍କ ସ୍ତ୍ରୀ ନଥ୍ କିନା କୁଢେଇ ହେଇ ପଡିଲେ । ବୋବାଳି ଛାଡିଲେ ବିପତ୍ତି ପଡିଲା ପରି ।

ଦୁଆରେ ଅନେକ ଲୋକ ଜମା ହୋଇଥିଲେ । ତାଙ୍କ ଭିତରେ ଧସେଇ ପଶିଗଲେ ପରିମଳ ପରିଛା !

"ଦେଖ, ଦେଖ ଭାଇମାନେ ! ଏଇଟା ଗୋଟେ ମାଟି କଣ୍ଢେଇ । ଏଗୁଡା ଖାଲି ସିନ୍ଦୂର । ଏ ଭିତରେ ନା' ହନୁମାନ ନା କାଳୀ ! ଏ କଣ୍ଢେଇକୁ ଚାଲ ଡମରି ଆଗରେ ନଈରେ ପକେଇ ଦେବି । ଏଇଠି ୟାକୁ ଛେଚି ଦିଅନ୍ତି । କିନ୍ତୁ ତା' କରିବି ନାହିଁ । କାରଣ ଠିକ୍ ହେଉ, ଭୁଲ୍ ହେଉ ଶହ ଶହ ଲୋକ ଗୋଟାଏ ପିତୁଳାକୁ ବିଶ୍ୱାସ କରି ମୁଣ୍ଡିଆ ମାରିଛନ୍ତି । ଏ ପିତୁଳାକୁ ଅପମାନ କରିବା ଅର୍ଥ ସେ ସବୁ ଲୋକଙ୍କୁ ଅପମାନ କରିବା । ମୁଁ ମଣିଷଙ୍କୁ ଅପମାନ କରି ପାରିବି ନାହିଁ । ତାଙ୍କ ଅପମାନ ସହି ପାରିବି ନାହିଁ ।"

ଏତକ କହି ସେ ଏକମୁହାଁ ନଈଆଡେ ଧାଇଁଲେ । ଲୋକେ ଧାଇଁଲେ ତାଙ୍କ ପଛେ ପଛେ ।

"ଆରେ, ଗଜବ ହୋଇଗିଆ ! ପରିଛା ହନୁମାନ ଜିଉକୁ ପାନି ମେ ଗିରାନେ କୋ ଲେ ଗୟା । ଆରେ, ଆରେ ତୋବା ତୋବା !!"

ଲୋକ ଗୁଣ୍ଡ ହୋଇଗଲେ । ନୂଆ ବର୍ଷାର ଗୋଳିଆ ପାଣି । ପୁରୁଣା ଆମ୍ବଗଛ ମୂଳେ ଭଉଁରି କାଟୁଥିଲା । ପରିଛା ହନୁମାନଙ୍କୁ ମୁଣ୍ଡ ଉପରକୁ ଟେକି ଜୋର୍‌ରେ ପାଣି ଭିତରକୁ ଫିଙ୍ଗି ଦେଇ ସମ୍ଭାଳି ନ ପାରି ହାମ୍ବୁଡି ପଡିଲେ ଆଗକୁ ।

ଲୋକେ ରୋକି ନେଲେ । ନ ହେଲେ ସେ ପାଣିକୁ ଗଳି ପଡିଥାନ୍ତେ ।

ସେ ହାତରୁ ଧୂଳି ଝାଡି ଫଁ ଫଁ ହଉଥାନ୍ତି ।

ନିଶ ଠିଆ ହୋଇଥାଏ । ଆଖିରୁ ନିଆଁ ଝୁଲ ଖସୁଥାଏ ।

କାହାକୁ କିଛି ନ କହି ସେ ଟାଉ ଟାଉ ଚାଲିଗଲେ ଘରଆଡେ । ଭିତରୁ କବାଟ ପକେଇ ଦେଲେ । ଯେତେ ସବୁ ଯାଇଥିଲେ ତଳକୁ ମୁଣ୍ଡ ପୋତି ରହିଲେ କିଛି ସମୟ ।

ଭିତରୁ ଅସ୍ପଷ୍ଟ କାନ୍ଦଣା ଶୁଣା ଯାଇଥିଲା ।

"ଆରେ ପରିଛା, ଏସା ପାଗଲ୍‌କା ମାଫିକ କ୍ୟୁ ହୁଆରେ ?"

"ଓ ଆଦମି ଏସା ହି ହେ ।"

"ପାଠଶାଠ ପଢ଼ିଚି ଲୋକଟା ତ' । ତା'ର ବୁଦ୍ଧି ଅଲଗା । ଦେଖିଲ ନାଇଁ ଯେଉଁ ଦି ପଦ ଏଇଠି କହିଲେ କେମିତି ଗହୀର କଥା ? – "ମଣିଷଙ୍କ ଅପମାନ ମୁଁ ସହି ପାରିବି ନାହିଁ ! – ବା,

ଏଇ ଯେ ଲୋକ!!"

"ଆରେ ଲଛମନ୍ ଭାଇ ଓ ବାତ୍ ତୋ ସଚ୍ଚି। ଲେକିନ୍ ହନୁମାନ ବାବା କୋ କ୍ୟୁ ଏସା କିଆ? – ୟେ ତୋ ବଦ୍ କିସ୍‌ମତ୍ କି ବାତ ହେ।"

"ଠିକ୍ ବୋଲ୍‌ତା ହେ ତୁ! ହମ୍‌କୋ ଲଗତାହେି କି କାଲୀ ମୈୟା କା ପାବାର୍ ଜାଦା ହୋଗିଆ। ଓ୍ୱହି ହନୁମାନ କୋ ଉଠାକେ ପାନି ମେ ଫେଁକ୍ ଦିଆ।"

"ଛୋଡୋ! ଅବ୍ କ୍ୟା ହୋଗା?"

"କା ଜାନେ।"

ଗାଁରେ ସେ ଦିନ ସମସ୍ତେ ଯେ ଯାହା ଘରୁ ଆଉ ବାହାରିଲେ ନାହିଁ। ପୁଣି ନଈକୂଳରୁ ପକ୍ଷୀଡାକ ଶୁଣାଗଲା। ପତ୍ର ପଡିବା ଶବ୍ଦ ଶୁଣାଗଲା।

ଉପର ଓଳି ପରିଛା ପୁଣି ବାହାରିଲେ। ପାଖଲୋକଙ୍କୁ ଡାକି କହିଲେ –

"ଜଗିଥିବ। ପାଇକରା ଓସ୍ତାଦ୍ ଖେଳୁଆଡ। ସେ କେତେବେଳେ କେଉଁ ଚାଲ୍ ଚାଲିବ ଜାଣିବା ମୁସ୍କିଲ୍ ତାକୁ ମୁଁ ଅନ୍ୟଆଡେ ଦେଖୁଚି। ତୁମେ ଏଇଠି ଜଗି ଥା। ଦିନରାତି, ଲଢିବାକୁ ହେବ।"

ସେ ତ' ପଇସା ପାଣି ପରି ବୁହାଇ ଦଉଚି। ରାତିରେ ଆମ ଗାଁରେ ପଶି ଆସ୍ତେ କବାଟ ଠୁକ୍ ଠୁକ୍ କରୁଛନ୍ତି ତାଙ୍କ ଲୋକ। ବାହାରିଲେ ହାତରେ ଝମଝମ ଟଙ୍କା ପକେଇ ଦଉଛନ୍ତି।

ତେଇଁପଡି ପରିଛା ସେମାନଙ୍କ ସାମ୍ନାରେ ଗର୍ଜିଲେ – "ଫିଙ୍ଗି ଦେଉନାହାନ୍ତି ସେମାନଙ୍କ ମୁହଁକୁ କାହିଁକି? ଏ ଶାଲା ଲୋଚ୍ଚ ଲୋକଙ୍କୁ ମୁଁ କେତେ ଆଉ କହିବି? ତା'ର ଟଙ୍କା ଅଛି ବୋଲି ଆମେ ଆମ ଇଜ୍ଜତ୍ ବିକି ଦବା?"

"ସେ କଥା ନାଇଁ ଯେ, ହେଲେ ଗରିବଙ୍କ କଥା ବୁଝୁ ନାହାନ୍ତି ସାର୍। ଟଙ୍କା କୋଡିଏଟା ପାଇଲେ ପାଞ୍ଚଦିନ ତ' ଚଳିଯିବ। ଆମ ଆଡୁ କିଛି ହେଲେ ପାଉଥିଲେ କଥା ନିଆରା ହେଇଥାନ୍ତା।"

"ତମକୁ ଆଗ କେତେ ଟଙ୍କା ଦରକାର କହ। ତାଙ୍କ କଥା ପଛେ ବୁଝିବା।"

"ଦୁଃଖ କହିଲେ ତ' ଆପଣ ରାଗିବେ। ଆମେ ଆଉ କ'ଣ କରିବୁ କହିଲେ? ଭୋଟ୍ ରହିଲା ଆଉ ଚାରିଦିନ। ପଥର ଦିନଠୁ ପାଟିତୁଣ୍ଡ ବନ୍ଦ। ଯୋଡାଏ ଦିନକୁ ଅନ୍ତତଃ ଏଇ ଗାଁରେ ଆଉ ପାଇକରା ଗାଁରେ ଟଙ୍କା ଦଶହଜାର ନ ବାଣ୍ଟିଲେ ନ ଚଳେ। ସେ ତ' ପାଣି ବୁହାଇ ଦଉଚି।"

"ଷ୍ଟେପ୍। ମୁଁ ସେମିତି ଟଙ୍କା ବାଣ୍ଟିବାରେ ବିଶ୍ୱାସ କରି ନାହିଁ। କିଣା ଭୋଟର ମୂଲ୍ୟ ନାହିଁ। ସେମାନେ ଯଦି ମୋତେ ବିଶ୍ୱାସରେ ଦେବେ ତ' ଦେବେ, ନ ଦେଲେ ନାହିଁ। ତମେ ନିଅ ତୁମ ଚା ପାଣି ଖାଇବାକୁ ହଜାରେ ଟଙ୍କା। ଠିକ୍ ଭାବରେ ସେମାନଙ୍କୁ ବୁଝେଇବ ଆଉ ଜଗିବ। ମୋ ଇଜ୍ଜତ୍ ହଉଚି ଗାଁର ଇଜ୍ଜତ୍, ତୁମ ଇଜ୍ଜତ୍।"

ସେ ଜିପ୍‌ରେ ବସି ଆଗେଇଗଲେ।

ଧୂଳି ଭିତରେ ସେମାନେ ତଳକୁ ମୁଣ୍ଡ ପୋତି ଠିଆ ହେଲେ। ଜଣେ ଗାରୁ ଗାରୁ ହେଲା।

"ଏମିତି ସଚ୍ଚା ହେଲେ ବାଆଜି ହେଇ ଯାଉନ ? ମନ୍ତ୍ରୀ ହବାକୁ କାଇଁ ସଜ ସଜ ହଉଚ ? ହାତୀକୁ ପାନଖିଲ ପରି ଏ ମୁହାଣ ମେଲା ଭିତରେ ଟଙ୍କା ହଜାରେ କୋଉ କାମକୁ ଆସିବ ? ଛାତ ଯାଙ୍କର ତ' ପୁଞ୍ଜି ଶେଷ, ଯେ ଲଢ଼ିବେ ଆଉ କ'ଣ ?"

ତା' ଆରଦିନ । ପାଇକରା ବସ୍ତିରେ ବାଜା ବାଜିଲା । ଭୂଇଁ ଦୁଲିକିଲା । ସକାଳୁ ସକାଳୁ ଗୋଟାଏ ଖରଖେଚ ପଟୁଆର ଏ ଗାଁ ଆଡେ ଆଗେଇ ଆସିଲା ।

ନଈକୂଳ ସେଇ ପୁରୁଣା ଆମ୍ବଗଛ ପାଖରେ ସେମାନେ ଥମିଲେ । ମେଢ ସହିତ କାଳୀଙ୍କ ବିଗ୍ରହ ସେଇଠି ରଖି ଘଣ୍ଟ ପିଟିଲେ । କ'ଣ ନାଁ ପାଇକରା କହିଛନ୍ତି "ଦେବତା ସମସ୍ତିଙ୍କର । ସେଥିରେ କିଛି ବିରୋଧ ନାହିଁ । ସେଥିପାଇଁ ମା'ଙ୍କ ଚଳନ୍ତି ପ୍ରତିମାକୁ ଏ ଗାଁକୁ ପଠେଇ ଦେଇଛନ୍ତି । ଏଇଠି ଏ ରହିବେ । ପୂଜାପାଠ ରୀତିମତ ହେବ । ସବୁ ଖର୍ଚ୍ଚ ପାଇକରାଙ୍କର । ଆଜି ରାତ୍ରିରେ ଜନ୍ତାଳ ହେବ । ସବୁ ମିଶି ଖିଆପିଆ କରିବେ ।"

"କରିମ୍ ମିଆଁ ଯେ ତୋ ଗଜବ୍ ହେଇଗଲା ମ । ଏଇ ଜାଗା ସେ କାଲ୍ ହନୁମାନ ବାବାକୋ ପରିଛା ପାନିମେ ଫେଁକ୍ ଦିଆ । ଔର ଏ ଦେଖୋ । କାଲୀ ମୈୟା ଓ୍ୱହିଁ କେ ଓ୍ୱହିଁ ବିଜେ ହୋ ଗଇ ।"

"ବଡି ତାଜୁବ୍ କି ବାତ୍ ହେ ।"

"ମେ ତୋ ଶୋଚତା ହୁଁ ହନୁମାନ ବାବା ଜାନମୁଚ୍ କର ହମ୍ କୋ ଛୋଡ ଗୟା । ହନୁମାନ ଥା ସଚ୍ଚା ବରହମ୍‌ଚରୀ । ଔର "କାଲୀ ମୈୟା ଠହରି ଓ୍ୱରତ୍ । ହନୁମାନ ଜି ଇସିଲିଏ ଚଲାଗୟା ।"

"ମୋର ଖୈୟାଲ୍ ସେ ଓ୍ୱହ ଡର ଗୟା । ଥା' ତୋ ଶାଗ୍ ପତ୍ତା ଓ୍ୱର ଫଲ୍ ଖାନେ ବାଲା । ଉସ୍‌କୋ ତାକତ୍ ଔର ଯୋସ୍ କହାଁ ସେ ମିଲେଗା । ଇଧର ଦେଖୋ କାଲୀ ମୈୟା । ହର ବଖତ୍ ଖୁନ୍ ସେ ନାହାତି ହେ । ତାକ୍‌ତ୍ ସେ ଥରଥରାତି ହେ ।"

"କିହେ, ମିଆଁ ପୁଅ, କ'ଣ ସବୁ ଦେଖୁଚ ତ ! ମୁଁ କହୁ ନଥିଲି, ଏଇନା ମଣିଷଙ୍କର ଆଉ ହାତ ନାଇଁ । ଏ ଖାଲି ଦେବତାଙ୍କ ମର୍ଜି ଉପର କଥା । ତାଙ୍କ ଭିତରେ ଯାହା ମୁକାବିଲା ।"

ସଞ୍ଜବେଳେ କାଳୀମେଢ ପାଖରେ ଭିଡ । ଗାଁ ମାଇପିକୁ ନେଇ ନିଜେ ପରିଛାଙ୍କ ସ୍ତ୍ରୀ ମଧ ଯାଇ ମୁଣ୍ଡିଆ ମାରି ଆସିଲେ । ଜନ୍ତାଳ ପାଇଁ ଘମାଘୋଟ ଆୟୋଜନ ହେଲା । ରାତି ଦଶଟା ବେଳକୁ ପାଇକରା ଆସି ପହଞ୍ଚିଲା । ଆଳତି ମୁଣ୍ଡରେ ବୋଳି ହୋଇ ଶହେ ଟଙ୍କା ନୋଟ୍‌ଟିଏ ଥାଳିରେ ଥୋଇବାର ସମସ୍ତେ ଦେଖିଲେ । ପାଞ୍ଚ ପଇସି, ଦଶ ପଇସି ମେଳରେ ସେ କାଗଜ ଖଣ୍ଡ ମହର୍ଗ ବିଦେଶୀଟିଏ ପରି ଦିଶୁଥିଲା ।

ତାଙ୍କ ଲୋକ ତାଙ୍କୁ ଠାରି ଦେଲେ ଯେ କିଲା ମାତ୍ ହେଇଗଲା । ତାଙ୍କ ଆଗରେ ସାରା ଗାଁ ଲୋକ । ଏକାଠି "କାଳୀ ମା' କି ଜୟ" ଧ୍ୱନି ବାରଂବାର ଦେବାକୁ ଲାଗିଲେ ।

"ପାଇକରାଙ୍କ ଜୟ" କହିଦେଲେ ଅଯଥା କଥାଟା ପଦାରେ ପଡିଯିବା ଭୟରେ ତାଙ୍କ ଲୋକେ ସର୍ତକ ହେଇଗଲେ ।

ପାଇକରା ପାଖରେ ତୁହାକୁ ତୁହା ଖବର ପହଞ୍ଚିବାରେ ଲାଗିଲା ଯେ ସାପକୁ ଗଦ ଶୁଙ୍ଘେଇଲା ପରି ପାଇକରାଙ୍କ ପଇସା ବଣ୍ଟାଳିମାନେ ରାଜ୍ୟ ଜୟ କରି ଚାଲିଛନ୍ତି ।

ପରିଛା ଭଲ କହୁଛି, ସତ କହୁଛି । ହେଲେ ଲୋକତ ଯୋଉଆଡେ, ଭୋଟ ସେଇଆଡେ ।

ରାତିରେ ତାଙ୍କର ହଠାତ୍ ମନ ହେଲା ପରିଛାଙ୍କୁ ସଙ୍ଖୋଳି ଆସିବାକୁ ।

ପରିମଳ ପରିଛା ତାଙ୍କ ସମବୟସ୍କ । ଏକାଠି ପାଠପଢା ଏକାଠି ସବୁ । ପରିଛାଟା ସବୁବେଳେ ତାଙ୍କଠାରୁ ଆଗରେ ଥିବା ତାଙ୍କର ମନେ ପଡିଗଲା ।

ପରିଛା ଚମତ୍କାର ଚିତ୍ର ଆଙ୍କୁଥିଲା । ପାଇକରାଙ୍କୁ ପରୀକ୍ଷାରେ ପକ୍ଷୀଚିତ୍ର ଆଙ୍କି ଦେଇ ନିଜେ ଶୂନ ପାଇଥିଲା । ଭରା ଯାଆଁଳ ନଦୀରେ ପାଇକରା ପାକୁ ପାକୁ ହୋଇ ପାଣି ଦୁଇଢୋକ ପିଇ ଗଲା ପରେ ପରିଛା ଡେଇଁ ପଡିଥିଲା ନଈ ଭିତରକୁ । ତାକୁ ତୁଠରେ ପହଞ୍ଚେଇଲା ବେଳକୁ ଆଉ କେହି ସେଇଠି ନଥିଲେ । ପାଇକରାଙ୍କୁ ସେଦିନ ସେ ବଞ୍ଚାଇ ନ ଥିଲେ ଏ ସବୁ କିଏ ସତେ ଭୋଗିଥାନ୍ତା ?

ପାଇକରା କିନ୍ତୁ ପ୍ରଚାର କରିଦେଲେ ଯେ ପରିଛା ହିଁ ବୁଡି ଯାଉଥିଲା । ତାକୁ ସେ ଓଟାରି ନ ଆଣିଥିଲେ ସେ ଏ ଯାଆଁଳ ପାଣିରେ ହିଁ ଲିଭି ଯାଇଥାନ୍ତା ।

ପରିଛାକୁ ଏ ଦଶବର୍ଷରେ ସେ ଦଶଥର ଆମନ୍ତ୍ରଣ କରିଛନ୍ତି ତାଙ୍କ ମେଣ୍ଟକୁ । ଦଶ ପ୍ରକାର ଉପାର୍ଜନର ପନ୍ଥା ଦେଖାଇଛନ୍ତି । ପରିଛା କିନ୍ତୁ ଲୋକଙ୍କୁ ମତେଇ ନିଜେ ମାତିଛି । ପାଇକରାଙ୍କ ବିରୋଧୀ ଆସିଛନ୍ତି ତାକୁ କିଣିବାକୁ । ସେ ଧରା ଦେଇ ନାହିଁ । ସେ ଚାହିଁଛି ନିଜେ ନିଜେ ଜଗତ୍ ଜିଣିବାକୁ । ବେକୁବ୍ ।

ତା' ସ୍ତ୍ରୀ ପାଇକରାଙ୍କ ଶଶୁରଘର ଗାଁ ଝିଅ । ପରିଛାର ପିଲାଗୁଡାକ ଦେଖିବାକୁ କି ସୁନ୍ଦର । କିନ୍ତୁ ସେ ସମସ୍ତଙ୍କୁ ଶସ୍ତା ଧଳା କନା ପିନ୍ଧାଇବାର ଅର୍ଥ କ'ଣ ?

ପରିଛାଟା ଢେର୍ ପଢା ପଢି କରିଛି । ଢେର୍ କଥା ଜାଣେ । କିନ୍ତୁ ସେ ଗୁଡାକ କ'ଣ ଦରକାର ରାଜନୀତିରେ ? ଗୁଡାଏ ବକ୍‌ବାଜି କରି ଲୋକଙ୍କୁ ବୁଝେଇବାକୁ କ'ଣ ଦରକାର ? ପଦେ କଥା ନ କହି କିଛି ଚରା ବୁଣିଦେଲେ ସବୁ କବୁତର ସେଇଠି ଜମିଯିବେ ।

ପରିଛା ମୁକାବିଲା କରି ପାରୁନହିଁ । ତଥାପି ସେ ମୋ ପ୍ରିୟ । ମୋ ବିଶ୍ୱାସ, ମୋ ଆଦର୍ଶ । ମୋର ପରାଜୟ, ମୋ ବିଜୟ !!

ପାଇକରା ଏଇଭଳି ଭାବ ନେଇ ଠିଆ ହୋଇଥାନ୍ତି । ପରିଛାଙ୍କ ପରିବାର ମେଢରୁ ଫେରିଲେ ତାଙ୍କ ସାମ୍ନା ଦେଇ । ନମସ୍କାର ହେଲେ ।

ପାଇକରା କହିଲେ, "ପରିଛାଟା ମୋ ସାଙ୍ଗ । ହେଲେ ରାଜନୀତିରେ ବକଟେ ପିଲା । ଘର ଆଡେ ଦୃଷ୍ଟି ନଦେଇ କ'ଣ ରାଜନୀତି କରାଯାଏ ?"

ହେମଲତା ପରିଛାଙ୍କୁ ଶୁଣିବାକୁ ସୁଖ ଲାଗିଲା ନାହିଁ । କିନ୍ତୁ ସତକଥାକୁ ପ୍ରତିବାଦ ମଧ କରିହେଲା ନାହିଁ । ତଳକୁ ମୁହଁ ପୋତି ଚାଲି ଯାଉଥିଲେ ।

ପାଇକରା ଆଗକୁ ଯାଇ କହିଲେ, "ଆପଣ ଆମ ଶଶୁର ଗାଁ ଝିଅ । ପରିମଳ ସିନା ମୋ ପ୍ରତିଦ୍ୱନ୍ଦ୍ୱୀ । କିନ୍ତୁ ଆପଣତ' ଆମ ନିଜ ଲୋକ । ଆପଣଙ୍କୁ ମୋର ଅନୁରୋଧ, ରକ୍ଷା ହେଲେ କହିବି ।"

ହେମଲତା କିଛି ନ କହି ଅପେକ୍ଷା କଲେ ।

"ଏଇ ମୋ ସେକ୍ରେଟେରୀ ଆପଣଙ୍କୁ ଦେଖା କରିବ । ମା'ଙ୍କ ଆଶୀର୍ବାଦ ଫୁଲ ନେଇ ଆପଣଙ୍କ ପଛେ ପଛେ ଯାଇ ଭେଟିବ । ଆପଣ ଫେରାଇବେ ନାହିଁ ତ' ?"

ହେମଲତା ନୀରବରେ ଚାଲିଗଲେ ।

ପାଇକରା ତାଙ୍କ ଲୋକଟିକୁ ଡାକି ତା' ହାତକୁ କ'ଣଟାଏ ବଢ଼େଇ ଦେଲେ । କ'ଣ ସବୁ ଆସ୍ତେ ବୁଝେଇ ଦେଲେ ।

ହେମଲତା ପରିଛା ଦୁଆର ମୁହଁରେ ପଛକୁ ଚାହିଁଲା ବେଳକୁ ସେକ୍ରେଟେରୀ ପାର୍ଶଲଟି ବଢ଼େଇ ଦେଲା । ପିଲାଙ୍କ ପାଇଁ ଛୋଟ ଉପହାରଟିଏ ପଠେଇଛନ୍ତି ପାଇକରା । ନେବା ହୁଅନ୍ତୁ । ହାତକୁ ବଢ଼େଇ ଦେଇ ସେ ଚାଲି ଆସିଲା ।

ଫେରିଆସି ପାଇକରାକୁ ଠାରି ଦେଲା ଯେ କାମ ହେଇଗଲା ।

ପାଇକରା ହାତ ମନ୍ଥି କାଳୀ ମେଢର ଆଲୁଅରେ କୋଳାହଳ କରୁଥିବା ଜନଗହଳିକୁ ଚାହିଁ ମନକୁ ମନ କହିଲେ –

"ଟଙ୍କା ଦଶହଜାର କିଛି ବଡ କଥା ନୁହେଁ!"



## ତଳ ପାହାଚ

ସହର ହେଉ କି ଜଙ୍ଗଲ ହଉ ସେଥିରେ କିଛି ଯାଏ ଆସେ ନାହିଁ । ଏଗାରଟା ବାଜିଲେ ହିଁ ଜନ୍ତୁ ବାହାରିବେ ।

ତଫାତ୍ ହେଲା ଯେ, ଅନ୍ଧାର ରାତିରେ ମେଘ ଝିପ୍ ଝିପ୍ ବର୍ଷୁଥିଲେ ଜଙ୍ଗଲି ଜାନୁଆରମାନେ ଅସୁସ୍ଥ ବୋଧ କରନ୍ତି । ଏଠି ସେଠି ଆଶ୍ରାଲୋଡି ଜାକିଜୁକି ହେଇ ଗୁମ ଟାଙ୍କୁରାଇ ବସିଯାନ୍ତି ।

କିନ୍ତୁ ସହରରେ ସେଇଟା ହିଁ ତାଙ୍କ ପାଇଁ ବଡ ମୌକା । ରାସ୍ତାଘାଟ ସବୁ ସଫା । ଡାକହାକ ନାହିଁ । ଧାଁ ଦଉଡ ନାହିଁ । ବର୍ଷାରେ ଶିକାର ବି ଘୁମେଇ ଯାଇଥାଏ । ସବୁଆଡୁ ସୁବିଧା ।

ବେଳା ଅନୁସାରେ ସେମାନେ ଆସନ୍ତି । ଆହାର ଗୋଟେଇ ଚାଲିଯାନ୍ତି ।

ଗତକାଲି ଆମ ଏଠୁ ଚାରିଘର ଛାଡି ବିଶ୍ୱାଳବାବୁଙ୍କ ଦି'ତାଲା କୋଠାରେ ସଶସ୍ତ୍ର ଡକାୟତି ହେଇଗଲା ।

ସେମାନେ ଆମରି ଘରବାଟେ ଜିପ୍ ନେଇ ରାତି ଗୋଟାଏ ବେଳେ ପାରି ହଉଥିଲେ । ମୁଁ ଜାଣେ ସେତେ ରାତିରେ ସେମିତି ଗୋଟାଏ ଜିପ୍ ଯିବା ନିହାତି ସାଧାରଣ ଘଟଣା ନୁହେଁ । ତେବେ ବି ମୁଁ ଘରୁ ଗୋଡ କାଢି ବାହାରିଲି ନାହିଁ । ଆଉ କେହି ବି ବାହାରିଲେ ନାହିଁ ।

ବିଶ୍ୱାଳବାବୁଙ୍କ ଅସ୍ପଷ୍ଟ ପାଟିତୁଣ୍ଡ ଶୁଭୁଥିଲା । ବର୍ଷା ଲାଗି ରହିଥିଲା ରାତିସାରା ।

ସେମାନେ ପାଳିକରି ରାତିକୁ ଗୋଟାଏ ଘର ଲୁଣ୍ଠନ କରି ପାରନ୍ତି । ବାଡ ଭିତରେ ଅପେକ୍ଷା କରିଥିବା ଛେଳି ଗୋଠରୁ କଂସେଇ ଥରକୁ ଗୋଟାଏ ବାଛି ନେଲାପରି ।

ସେଇ କ୍ରମରେ ହୁଏତ ଆଉ ତିନିଦିନ ପରେ ମୋ ପାଳି ପଡିପାରେ ।

ମୋ କବାଟ ଭାଙ୍ଗିଲାବେଳେ କ'ଣ ବର୍ଷା ରାତିରେ କାହାକୁ ଶୁଣାଯିବ ? ସେମାନେ ଘର ଭିତରକୁ ପଶିଆସି ପିସ୍ତଲ ଆଉ ଛୁରୀମାନଙ୍କୁ କୋଷମୁକ୍ତ କରି ଆମକୁ ଅନେଇବେ ।

ଆମେ ବୋଧେ ଆଗକୁ କ'ଣ ହେବ ଜାଣି ନ ପାରି ସାଙ୍କୁଡି ଠିଆହୋଇଥିବା ଛେଳି ପରି ପାଗୁଳି କରୁଥିବୁ ।

ସେମାନଙ୍କର ସର୍ଦ୍ଦାର ଡ୍ରଇଂରୁମର ସୋଫା ଉପରେ ଛେଚି ହେଲାପରି ବସିଯିବ । ଗୋଟାଏ ବୁଟ୍‌ପିନ୍ଧା ଗୋଡକୁ ଟେକି ସୋଫା ଟେବୁଲ ଉପରେ ମାସ୍ତୁଲଭଳି କଚିଦବ ।

ଚିରୁଡା ଚିରୁଡା ହେଇଯିବ ଆମ ମୁହଁ ସେଇ କାଚପରି ।

ସେ ହିଁ କହିବ, "ଆବେ ଅନଉଚୁ କ'ଣ ? ପାଞ୍ଚକପ୍ ଚା କରି ଆଣ୍ ।"

ମୁଁ ହୁଏତ ନ ବୁଝିଲାପରି ଘୁଞ୍ଚିବି ।

ସେ ନିର୍ଘାତ ରଡି ଛାଡି କହିବ – "ଆବେ, ତୁ କେଣେ ଯାଉଚୁ ? ସେ ମାଇକିଣାକୁ ପଠା । ଯା'ବେ ମାଇକିଣା ଚା କରି ଆଣ୍ ।"

ଚାରିଜଣ ଭିତରୁ ଜଣେ ପଶିଯିବ ରନ୍ଧାଘରକୁ ।

ତେଣିକି ସେ ବୋଧେ ମୋ ସ୍ତ୍ରୀର ପାଟି ଜାବି ଧରିବ ।

ତେଣିକି ସେ ବୋଧେ ତା' କାନଫୁଲକୁ ଟାଣିନେବ ।

ହାତରୁ କଙ୍କଣ କାଢିନେବ ।

ତେଣିକି ସେ ତାକୁ ବିବସ୍ତ୍ରା କରିଦବ ।

ବେକରୁ ହାର କାଢିନେବ ।

ତେଣିକି ବୋଧେ ସେ...

ମୁଁ ଚମକି ଡେଇଁପଡିବି ।

ସର୍ଦାର ଚିହିଁକିଉଠିବ – 'ଆବେ ଶାଲା, ତୁ କିଧର ଜାତା ହୈ ?'

ମୋ ବେକଷଣ୍ଢାରେ ହାତ ଦେଇ ମୋତେ ଆଣି ଆଉ ଜଣେ ଗାଲିଚା ଉପରକୁ ପେଲିଦବ । ମୁଁ ହାମୁଡେଇ ପଡିବି ଏବଂ ପଡିରହିଯିବି ।

କପ୍ ଠଣ୍ ଠଣ୍ ବାଜିବ ।

ମୁଁ ତଳୁ ଉଠି ବସିବି । ମୋ ସ୍ତ୍ରୀ ଟ୍ରେରେ ପାଞ୍ଚକପ୍ ଚା ଆଣି ଟେବୁଲରେ ଥୋଇଲାବେଳକୁ ତା' ହାତ କଂପୁଥିବ, ଦେହ କଂପୁଥିବ । ମୋର ସାହସ ନଥିବ ଚାହିଁଦେବା ପାଇଁ ତା' ବୁକୁରେ ହାର ଅଛି କି ନା, ଜାଣିବାକୁ ।

ସେମାନେ ଥଟ୍ଟା ପରିହାସ ହେବେ ।

"କ'ଣ ମଉସା କେତେ ମାଲ ରଖିଚୁ ?"

"ସବୁ ସେଇ ଆଲମାରୀରେ ଅଛି ନା ବେଙ୍କ ଫେଙ୍କ୍‌ରେ ଥୋଇଦେଇଚୁ ବେ ?"

ସେମାନେ ହଠାତ୍ ଚୁପ୍ ହେଇଯିବେ ।

ବାହାର ଗେଟ୍‌ରେ ଖୁଟ୍‌କିନା ସାମାନ୍ୟ ଆବାଜ୍ ଶୁଭିବ ।

ସର୍ଦାର ଚାହିଁବ ।

ବିଜୁଳି ପରି ଜଣେ ଚାଲିଯିବ ଝରକା ଆଡକୁ ।

ସେଇଠୁ ଗୋଡ ବାଡେଇ ବାଡେଇ ଆସି ଦୁମ୍‌କିନା ସୋଫାରେ ବସିଯିବ ।

କହିବ, "ଶାଲା ପବନ ଠେଲୁଚି ଗେଟ୍‌କୁ ।"

ତା'ପରେ ସେମାନେ ତରବରିଆ ଉଠିବେ ।

ବାକ୍‌ସ, ଆଲମାରୀ, ଶେଯତଳ ସବୁ ଖିନ୍‌ଭିନ୍ କରି ପକାଇବେ ।

ଗୋଟାଏ ଡାକଘରି ବସ୍ତାରେ ଜିନିଷ ବୋଝେଇ କରିବେ ।

ମୋର ଛୋଟ ଟ୍ରାନ୍‌ସିଷ୍ଟର, ହାତଘଣ୍ଟା, କଲମ, ଯାହା ମନ ପାଇଲା ସବୁ ଭର୍ତ୍ତି କରିଯିବେ । କିଛି ପାଟ, ମୋ ସ୍ତ୍ରୀର ଛୋଟ ଅଳଙ୍କାର ବାକ୍ସ ଟେକି ନେବେ ।

ଶେଷକୁ ଚମଡା ବନ୍ଧେଇ ସେ ସୁନ୍ଦର ମୋଟା ଆଲବମ୍ ଟାକୁ ବି ଭର୍ତ୍ତିକରି ନେବେ ।

ସେଥିରେ ଆମର ସମସ୍ତ ଅତୀତ ଲୁଣ୍ଠିତ ହେଇଯିବ ।

ସର୍ଦ୍ଦାର ସେ ବସ୍ତାଟାକୁ ଗୋଟାଏ ଲାତ ମାରିବ । କହିବ, "ଆବେ, ଏ ଶଳା ପାଖରୁ ଆମ ଭଡା ଉଠିଲା ନାହିଁ । ପୋଡିଦିଅ ଶଳାକୁ ।"

"ଆଉ ଏ ମାଇକିଣା ?"

"ତାକୁ ଟେକିନିଅ ଆଉ ବଖରାକୁ ।"

"ନା!!!"

ସାରା ଘର ମୋ ଚିତ୍କାରରେ ଦୁରୁ ଦୁରୁ ହେଲା ।

ମୋ ସ୍ତ୍ରୀ ଦଉଡି ଆସିଲେ ରନ୍ଧାଘରୁ ।

ମୋ ସାମ୍ନାରେ କ୍ଷୌର ସଜ ।

ପାଖରେ ଗରମ ଚ'। ସକାଳ ଆଠଟାବେଳେ ବାହାରେ ଝିପି ଝିପି ବର୍ଷା...

"କିଓ ଏମିତି କ'ଣ ପାଟିଟାଏ କଲ ?"

ମୁଁ ଝାଳେଇ ଯାଇଥିଲି । ତାଙ୍କୁ ଦେଖି ଅପ୍ରତିଭ ବୋଧ କଲି ।

ସେ ପାଖରେ ବସି ମୋ ମୁଣ୍ଡ ଆଉଁସିଦେଲେ । ପିଠି ଆଉଁସି ଦେଲେ, "କିଛି ଅସୁସ୍ଥ ଲାଗୁଛି କି ?"

ମୁଁ ଭୁସ୍‌କିନା ଉଠି ପଡିଲି ।

ତାଙ୍କ ବୁକୁରେ ହାର ଥିଲା, କାନରେ ଫୁଲ ଥିଲା । ସୋଫା ଟେବୁଲ ଉପର ଅକ୍ଷୁର୍ଣ୍ଣ କାଚ ପିଣ୍ଡାରୁ ଢଳ ଢଳ ଦେଖାଯାଉଥିଲା ।

ମୁଁ ସଳଖି ଯାଇ ତାଙ୍କୁ କହିଲି । "ମୁଁ ଆଜି ଗୋଟାଏ ପିସ୍ତଲ କିଣିବାକୁ ଯିବି । ଚୋରାରେ ଗୁଳି ବି ମିଳୁଛି ।"

ସେ ଅବାକ୍ ମୋତେ ଚାହିଁ ରହିଥିଲେ ।

"କିଓ ଏମିତି କ'ଣ କହୁଚ ? କ'ଣ ହେଇଚି ତମର ?"

"ନା, ମୁଁ ଛେଳିଭଳି ସେ ଜାନୁଆରଙ୍କ ହାତରେ ମରିବାକୁ ଚାହେଁନା । ମୁଁ ମୁକାବିଲା କରିବି । ମାରିବି ନ ହେଲେ ମରିବି ।"

"କିଏ ? କାହା ହାତରେ ଆମେ କାହିଁକି ମରିବା ?"

"ଜାଣିଚ, ଗତକାଲି ବିଶ୍ୱାଳ ଘରେ କ'ଣ ହେଲା ? ତା'ର ସର୍ବସ୍ୱ ସେମାନେ ଲୁଟିନେଲେ ।"

"ମୁଁ ଶୁଣିଚି । ସେମାନେ କୁଆଡେ ସାଇପଡିଶାକୁ ଡାକିଲେ । କେହି ଶୁଣିଲେ ନାଇଁ ।

ବିଶ୍ୱାଳବାବୁ ଫୋନ କଲେ ପୁଲିସ୍‌କୁ । ପୁଲିସ୍ କୁଆଡେ ଫୋନ୍ ଉଠାଇଲା ନାହିଁ । କିଛି ସମୟ ପରେ ପୁଣି ବିକଳରେ ଫୋନ କଲେ । ଡକେଇତମାନେ କୁଆଡେ ନିଶରେ ହାତମାରି ହସୁଥାନ୍ତି ।"

ସେଆଡୁ କିଏ କହିଲା, "ଡକାଇତି ହେଲେ ଆମେ କ'ଣ କରିବୁ ? ଆମର ଲୋକ ନାହାନ୍ତି । ଯାହା କହିବାର ଅଛି ଏଠିକି ଆସି ଲେଖି ଦେଇଯାଅ । ଡକେଇତମାନେ କବାଟ ତାଡି ପଶିଥିଲେ । ସେ ମେଲା କବାଟବାଟେ ସବୁ ଜିପ୍‌ରେ ବୋଝେଇକରି ନେଇଗଲେ ।"

"ତଥାପି ତୁମର କିଛି ଭୟହେଉ ନାହିଁ ?"

"କିଓ ମୋର ସେଥିରେ ଭୟ କରିବାର କ'ଣ ଅଛି ?"

ମୁଁ ତାଙ୍କ ସାହସ ଦେଖି ବିଶେଷ ଉତ୍ସାହିତ ବୋଧକଲି ନାହିଁ । କାରଣ, ମୁଁ ଜାଣିଥିଲି ମାଇକିନା ବୁଦ୍ଧିରେ ସେ ବିପଦକୁ କଳନା କରିପାରୁ ନଥିଲେ ।

"ତୁମ ଘରେ ସେମାନେ ସେମିତି ପଶିଆସିଲେ କ'ଣ କରିବ ?"

ଅପ୍ରତ୍ୟାଶିତ ଭାବରେ ମୋ ସ୍ତ୍ରୀ ଖେଁ ଖେଁ ହସିଲେ ।

"କିଓ ତୁମକୁ ଏଇଟା ଥଟ୍ଟାକରି ଲାଗୁଚି ନା କ'ଣ ?"

"ନା, ଥଟ୍ଟା ନୁହେଁ ଯେ ! ହେଲେ ସେଗୁଡା କ'ଣ ତମ ଭଳି ବେକୁବ୍ ହେଇଛନ୍ତି ? ସେମାନେ କାହିଁ ଆମ ଘରେ ପଶିବେ କହିଲ ? ସେମାନେ କ'ଣ ଜାଣି ପାରୁ ନାହାନ୍ତି, କୋଉଠି ଚର୍ବି ଲାଗିଚି, କୋଉଠି ନାହିଁ ? – ସେ ଏଠୁ କ'ଣ ପାଇବେ ? ଆମ ଘରେ ଡକେଇତି ହବନାହିଁ ଏକଥା ନିଶ୍ଚିତ, ତଥାପି ତୁମେ ପିସ୍ତଲ କିଣିବାକୁ ବାହାରିଚ ଦେଖି ହସ ମାଡିଲା ।"

କଲ୍ୟାଣୀଙ୍କ ଯୁକ୍ତି ମନ୍ଦ ନୁହେଁ । ହଁ ମୋ ସ୍ତ୍ରୀଙ୍କ ନାଁ କଲ୍ୟାଣୀ; ମୁଁ ଭୁଲିଯାଇଥିଲି କହିବାକୁ ।

ଆମେ ଦିହେଁ ବଜାର ଗଲାବେଳେ ଆମ ଖାକି ରଂଗର ମୁଣା, ଆମ ଗୋଡରେ ହାୱାଇ ଚପଲ୍ ମୋର ଢିଲା ପୁରୁଣା ପେଣ୍ଟ ଆଉ ମୋ ସ୍ତ୍ରୀଙ୍କ ଛିଟ ଶାଢୀରୁ ବୋଧହୁଏ ଆମେ ଚିହ୍ନା ପଡିଯାଉଚୁ ।

ଆମର ଗାଡି ନାହିଁ, ଖାନସାମା ନାହିଁ, ବବର୍ଚି ଦରବାନ ନାହାନ୍ତି ! ଆମ ଘର ଆଗରେ ଅଷ୍ଟ୍ରେଲିଆନ୍ ଘାସର ଗାଲିଚା ନାହିଁ । ଜାତି ଜାତି ଫୁଲ ଫୁଟି ନାହିଁ । ଆମ ନଡିଆ ଗଛରୁ ପଇତ କାନ୍ଧି ଓହଳି ନାହିଁ । ଆଉ ସର୍ବୋପରି ଆମର ବାଘ ଭଳି ଆଲ୍‌ସେସିଆନ୍ ନାହିଁ ।

"କିଓ ଏମିତି ଠିଆଟା ହେଇ କ'ଣ ଭାବୁଚ ? ଆସ ଚା ଖାଇବ ।"

ମୁଁ ଚୁପ୍‌ଚାପ୍ ଚାଲିଆସିଲି ବୈଠକ ଘରକୁ ।

ଚା' ପିଆ ପର୍ବଟି ପ୍ରାୟ ନିରବ ରହି କଟିଗଲା । ଆମେ ଦିହେଁ ଯେ ଯାହା ପୃଥିବୀରେ ନିମଗ୍ନ ଥିଲୁ ।

ମୋତେ ହଠାତ୍ ଶୁଭିଲା – "ଆଚ୍ଛା, ଆମର ଖଣ୍ଡେ ଗାଡି ହୋଇ ପାରନ୍ତାନି ?"

ଏଥର ହସିବା ପାଳି ମୋର ।

ଚୌକି ପଛକୁ ବେକ ଭାଙ୍ଗି ମୁଁ କିଛିବେଳ ଯାଏ ବେଶ୍ ହସିଲି । ଆଖି ଜକେଇଗଲା ଲୁହରେ ।

ମୋ ସ୍ତ୍ରୀ ଖୁବ୍ ଅପ୍ରତିଭ ଜଣାଗଲେ । ସତେବା ସେ ବିଚ୍ ବଜାରଟା ଉପରେ ଗୋଟାଏ କ'ଣ ନଗ୍ନ ଅଶ୍ଳୀଳ କଥା କହି ଦେଇଛନ୍ତି ।

"ଶୁଣ କଲ୍ୟାଣୀ ! ଗାଡିଟାଏ ମୋ ଜୀବନସାରା ମୋ ଆଗେ ଆଗେ ଗଡିଚାଲିଚି । ରଙ୍ଗ ବଦଳୁଚି, ନାଁ ବଦଳୁଚି, ସହସ୍ର ଥର । କିନ୍ତୁ ମୁଁ ତା' ଦେହରେ ଟିପ ଦେଇପାରୁ ନାହିଁ । ସୁନାର ହରିଣ ପରି ମୋ ସାମ୍ନାରୁ ସେ ଦୃଶ୍ୟ ବି ଲିଭି ଯାଉ ନାହିଁ କଦାପି ।"

ମୋ ସ୍ତ୍ରୀଙ୍କ ମୁହଁ ଥମ୍ ଥମ୍ ହୋଇଯିବାର ମୁଁ ଲକ୍ଷ୍ୟ କଲି ।

ସେ ଚା କପ୍ ନେଇ ଉଠିଲାବେଳେ କହିଲେ, "ନାଇଁ ମ, ମୁଁ ଏମିତି ଖାଲି କହିଦେଲି ନା ।"

ମୁଁ ତାଙ୍କ ପଛେ ପଛେ ରନ୍ଧାଘରଯାଏ ଯାଇ କହିଲି, "ଆଚ୍ଛା ସତରେ କ'ଣ ତମେ ଗାଡିଟାଏ ଚାହୁଁଛ ? ସେଇଟା ସେମିତି କିଛି ବଡ କଥା ନୁହଁ ମ । ନୂଆଟାଏ ସିନା କିଣି ହବ ନାଇଁ; ହେଲେ ଭଲ ଦେଖି ପୁରୁଣାଟିଏ ହେଲେ କ୍ଷତି କ'ଣ ?"

"ନା, ପୁରୁଣା ଗାଡି ଆମର ଆସିବ ନାଇଁ, କି ନୂଆ ବି ଆସିବ ନାଇଁ । ଗାଡି ଆଣିଲେ ରଖିବ କୋଉଠି ଶୁଣେ ? ତମେପରା ଗ୍ୟାରେଜ୍ କରିନାହଁ ଜାଣିଶୁଣି, କ'ଣନା ତୁମେ ଜାଣିସାରିଛ ଆମର ଗାଡି ହବନାଇଁ । ଏବେ କାଇଁ ଆଉ ସେ କଥା ପଡିଚି ?"

"ଓହୋ, ଗ୍ୟାରେଜ କରି ନାହିଁ ବୋଲି କ'ଣ ଏବେ କରି ଦେଇପାରିବି ନାଇଁ ? ସେଇଟା ବଳେଇଯିବ ନାଇଁ ।"

କିନ୍ତୁ ମନେ ମନେ ସାଙ୍କୁଡି ଗଲି । ସତେ ତ, ଆଗ ଗ୍ୟାରେଜ୍ ନା ଆଗ ଗାଡି ? ଛାଡ ସେ ବୋଧେ ଆମ ପାଇଁ ନିଷିଦ୍ଧ ଅଞ୍ଚଳ ।

କଲ୍ୟାଣୀ କିନ୍ତୁ ସେଇ ରାଜ୍ୟର ନିଆଁ ଧାସରେ ଝଲସୁ ଥିଲେ । – କହିଲେ, "ଧର ଯଦି ତମେ ଗ୍ୟାରେଜ କରି ଗାଡିଟାଏ ଆଣିଲ, ସେଥିରେ ଚଢିବ କିଏ ? ତମେ ନା ମୁଁ ? ତମର ସେ ମସିଆ ପଞ୍ଜାବୀକୁ ଗାନ୍ଧି ଚପଲ । ମୋର ସେ ଛିଟ ଶାଢୀକୁ ହାୱାଇ ? ଏମିତି ମଣିଷମାନେ କ'ଣ ଗାଡି ଚଢନ୍ତି ?"

ମୋ ଅଣାୟତରେ ମୋ ପଞ୍ଜରା ଭିତରୁ ଗୋଟାଏ କୋଉ କାଳରୁ ସଞ୍ଚିତ ରହିଥିବା ଦୀର୍ଘଶ୍ୱାସ ବାହାରିଗଲା । ଛାଡ, ଆମ ଅପହଞ୍ଚ ରାଜ୍ୟ ଚିରକାଳ ଅପହଞ୍ଚ ହିଁ ରହିଗଲା ।

କଲ୍ୟାଣୀ କିନ୍ତୁ ଖିଅ ଛାଡୁ ନଥାନ୍ତି ।

"ଗାଡିରୁ ଓହ୍ଲେଇ କୋଉବାଟେ ଘରକୁ ପଶିବ ? ଘାସର ଗାଲିଚା କାହିଁ ? ଜାତି ଜାତି ଫୁଲ କାହିଁ ?"

ପ୍ରାୟ ମୋର ମନ କଥା ହିଁ ସେ କହୁଥିଲେ ।

"ଘରକୁ ପଶିଆସିଲେ ବସିବ କୋଉଠି ? ଗାଲିଚା କାହିଁ ? ଏଇଟା ନଡିଆ କତାର ପଟି, ଏ କ'ଣ ଗାଲିଚା ? ତମ ବେତ ବୁଣେଇ ପୁରୁଣା ସାନବଡ ଚୌକି ଗଣ୍ଡାକ କ'ଣ ସୋଫା ?"

ଓଃ, ଗ୍ଲାନିରେ ମୁଁ ପ୍ରାୟ ପାତାଳକୁ ଚିପିହେଇ ଯାଉଥିଲି; ତଥାପି ମୋ ଉପରେ ନିର୍ମମ

ପାହାଡ ମଡେଇ ହେଇ ଚାଲିଥାଏ ।

"ତମେ ଏ ପୁରୁଣା ପ୍ଲାଷ୍ଟିକ୍ ଟ୍ରେରେ ମୋଟା ବଗଡିଆ କପ୍‌ରେ ଚା ଆଣି ପିଇବା ଲକ୍ଷଣ ଅଲଗା । ତୁମ କଂସା ଗିନା, ଥାଳି ଥାଳିଆ – ଫଟା ଗଦି, ମଇଳା ମଶାରି, ଆଲଣା ସବୁ ଆଉ ଗୋଟାଏ ଅଲଗା ନମୁନା । ଦେଖିଦେଇ ଯେ କେହି କହି ଦବ ଆମେ କୋଉ ସ୍ତରର ମଣିଷ ।"

ରହିଯାଅ ଭଲା ! ଜୀବନଯାକର ସବୁ ପରାଜୟ, ସବୁ ଗ୍ଳାନି କ'ଣ ଏକାଥରେ ଅଜାଡି ଦିଆଯାଏ ? କିନ୍ତୁ ଉଜାଣି ଉଠିଲେ କଲ୍ୟାଣୀ କ'ଣ କାହାକୁ ମାନିବା ଜନ୍ତୁ ।

"ତମେ ଖାଅ କ'ଣ, ବଞ୍ଚ କେମିତି ? ତମ ଘରେ ମାସରେ କେତେଥର ମାଂସ ରନ୍ଧାହୁଏ ? କେବେ ତମେ ଲୁଚି ଛାଣି ଖାଇଚ ? ସହରର ଦୁଇ ତିନିଟା ବଡ ହୋଟେଲକୁ ବାହାଘର ଭୋଜି ଖାଇ ଯାଇଚ ସିନା, ନିଜେ କେବେ ସାହସ କରି କୌଣସି ହୋଟେଲରେ ପଶିଲଣି ?"

ମୁଁ ଆଉ ସମ୍ଭାଳି ପାରିଲି ନାହିଁ । ମୋର ଆହତ ଅହଙ୍କାର କ୍ରୋଧରେ ଫାଟି ପଡିଲା । ମୁଁ ଗର୍ଜି ଉଠିଲି ।

"ବାସ୍, ଚୁପ୍ କର । ମୁଁ ଏସବୁ ସହସ୍ର ଥର ଶୁଣି ଆସିଲିଣି । ଆଉ ଶୁଣିବାକୁ ଚାହେଁ ନାହିଁ । ମୋ ହାତରେ ଯାହା ହେଲା ମୁଁ କରିଚି । ସେଥିପାଇଁ ମୋର କୌଣସି ଲଜ୍ଜା ସଙ୍କୋଚ ବା ଅବଶୋଷ ନାହିଁ । ଅନ୍ୟମାନଙ୍କ ଭଳି ମୁଁ ଲାଞ୍ଚ ମିଛରେ ଉପାର୍ଜନ କରିନାହିଁ, ବୁଝିଲ ।"

କଲ୍ୟାଣୀ କଥାଟାକୁ ଉଚ୍ଚବାଚକୁ ନେଲେ ନାହିଁ ସତ; କିନ୍ତୁ ତାଙ୍କ କପ୍ ପ୍ଲେଟ୍ ଥୋଇବାର ସଶବ୍ଦ ଢଙ୍ଗରେ ଝିଙ୍ଗାସ ଜାରି ରହିଥିଲା । ମୁଁ ବୈଠକ ଘରେ ବସି ଅନେଇ ରହିଲି ଦଶଥର ଆମୂଳଚୂଳ ପଢିଥିବା ସେ ଖବର କାଗଜଟାକୁ ।

ଆମର ଟେଲିଭିଜନ ନାହିଁ, ଆଖି ଖରାପ ହେଇଯିବ ବୋଲି । ଫ୍ରିଜ୍ ମଧ ନାହିଁ, ଥଣ୍ଡା ପାଣିରେ ଟଣ୍ଟି ଧରିବ ବୋଲି । ରେଡିଓ ନିଶ୍ଚୟ ଅଛି, ପୁରୁଣା ମଡେଲ ଜି ଇ ସି କାଠ କ୍ୟାବିନେଟ୍, ଡବଲ ସିକର – ବଢିଆ ଆବାଜ ।

ମନ କିନ୍ତୁ ଆଦୌ ମାନୁ ନଥାଏ ଭଳି ହେବା ପାଇଁ ।

ମୋ ଉପରେ କେଜାଣି କାହିଁକି ମୋ ମର୍ମକୁ ବାଧି ଯାଇଥାଏ । ଲାଗୁଥାଏ ସତେବା ମୁଁ ନିହାତି ପରାସ୍ତ ବିବର୍ଣ୍ଣ ପଦାତିକଟିଏ । ଚାଲି ଚାଲି ଥକିଯାଇଚି, କୌଣସି ଯୁଦ୍ଧ ଲଢି ନାହିଁ; କୌଣସି ଯୁଦ୍ଧ ଜିଣି ନାହିଁ ।

ଏ ସମାଜରେ ମୁଁ ଏକ ନଗଣ୍ୟ ନାଗରିକ, ଯାହାର ନାଁ କେହି ଜାଣନ୍ତି ନାହିଁ । ଅଛି ତ ଅଛି, ଗଲେ ଗଲି । ସେଥିରେ କାହାର କିଛି ଯାଏ ଆସେ ନାହିଁ । ବଞ୍ଚିଛି, ଚାଲବୁଲ କରୁଛି । ୟାଙ୍କ ଆଖିରେ ପଡୁଛି ପରିଚିତ ବସ୍ତୁଟିଏ ପରି ।

ମୋଡ ଉପରେ ପାନ ଦୋକାନୀକୁ ପଚାରିଲି ହୁଏତ ସେ ମୋ ପରିଚୟ ଦେଇପାରିବ ।

"ହେ, ସେଇବାବୁ, ଚଷମା ପିନ୍ଧି ହାବାଇ ଚପଲରେ ଏଇବାଟେ ସବୁଦିନ ଯାଆନ୍ତି । ହାତରେ ବଜାର ଝୋଲା; ପୁରୁଣା, ଗାନ୍ଧି ମୁଣ୍ଡ ଚିତ୍ରଥିବା ଅଖାମୁଣା ।"

ଏଇଟା କ'ଣ ଗୋଟାଏ ନିର୍ଦ୍ଦିଷ୍ଟ ବ୍ୟକ୍ତିର ପରିଚୟ ?

ସେ କାହିଁକି ଜାଣିବାକୁ ଯିବ ମୁଁ ଅମୁକ ବିଭାଗରେ ଥିଲାବେଳେ ସୃଷ୍ଟି ଟାଳି ପକେଇଚି; ଏସା କରିଚି, ତେସା କରିଚି । ସଚ୍ଚୋଟ ପଣର ବିଗ୍ରହ ମୁଁ ନୀଳମାଧବ ପଟ୍ଟନାୟକ । ପତ୍ନୀ କଲ୍ୟାଣୀ ପଟ୍ଟନାୟକ । ଘର ନମ୍ବର ସତଚାଳିଶ ।

ତା' ଦୋକାନରୁ ତ ଏଯାବତ୍ ଦି'ଖଣ୍ଡ ପାନ କିଣାହେଲା ନାହିଁ । ତା' ନାଁ ସୁଦ୍ଧା ତ ମୋତେ ମାଲୁମ୍ ନାହିଁ । ସେ ମୋତେ କାହିଁକି ଜାଣିବ ? ସେ ନ ଜାଣିଲା ନାହିଁ । ଆମ ପଡୋଶୀ ବିଶ୍ୱମ୍ଭର ଦାସ, ଆରପାଖ ପଡୋଶୀ ବୀରେନ୍ ଚକ୍ରବର୍ତ୍ତୀ, ଗୋକୁଳାନନ୍ଦ ଷଡଙ୍ଗୀ ଆଉ ଶ୍ରୀହରି ବିଶ୍ୱାଳ – ଏମାନେ ଭଲା କିଏ ମୋ ନାଁ ଜାଣିଛନ୍ତି ?

ନ ଜାଣିବାର କାରଣ ମାତ୍ର ଗୋଟିଏ ।

ତାଙ୍କ ସମସ୍ତଙ୍କ କୋଠା ଆମ ଘର ଅପେକ୍ଷା ଢେର୍ ବଡ । ସବୁଗୁଡାକ ଦୋତାଲା । ଆମେ ହିଁ କେବଳ ଏକତାଲାବାସୀ ନିମ୍ନମାନର ନାଗରିକ ଏ ସାଇରେ ତ' ।

ଆବେ ଯା ! ମୁଁ ନୀଳମାଧବ ପଟ୍ଟନାୟକ, ମୁଁ ବି ତାଙ୍କୁ ଖାତିର କରି ନାହିଁ । ଫଣା ଟେକି ବଞ୍ଚୁଛି; ସେମିତି ନାକ ନିଶ ଠିଆ ରଖି ମରିବି ।

କିନ୍ତୁ ମୋ ଘରେ ଧର ଯଦି ସେ ଡକେଇତିଟା ହେଇଥାନ୍ତା, ସେମାନେ ସମସ୍ତେ ସକାଳୁ ଏଇ ଦୁଆରେ ଧାଡିବାନ୍ଧି ଠିଆ ରହିଥାନ୍ତେ । ସେ ପାନଦୋକାନୀ ମଧ ମୋ ନାଁ ପଚାରି ବୁଝିନେଇଥାନ୍ତା ।

ସମସ୍ତେ ଚାହିଁ ରହିଥାନ୍ତେ । ମନେ ମନେ ଖୁବ୍ ଗୋପନରେ ଈର୍ଷାରେ ଜଳୁଥାନ୍ତେ ତ' । "ଆଚ୍ଛା, ଏଇଠି କାଇଁ ସେ ଡକେଇତ ପଶୁଥିଲେ – ବେକୁବ୍ କାହାଁକା !"

ଖବରକାଗଜରେ ବାହାରିଥାନ୍ତା । ପୋଲିସ୍ କୁକୁର ଆସିଥାନ୍ତା । ଦୁଆର ମୁହଁରେ ଗହଳି ଲାଗିରହିଥାନ୍ତା । ପୋଲିସ ସାଇବ ଆସି ତଦନ୍ତ କରିଥାନ୍ତେ । କ'ଣ କଣ ଜିନିଷ ସେମାନେ ନେଇଛନ୍ତି ବୋଲି ଛତିଶଥର ପଚାରି ତାଲିକା ତିଆରି କରିଥାନ୍ତେ । ମୁଁ ସିନା ସେପରି କରି ନଥାନ୍ତି, କିନ୍ତୁ ଏଇ ମୌକାରେ ଘରେ ନଥିବା ଜିନିଷର ଗୋଟାଏ ମହାର୍ଘ ତାଲିକା ମଧ ଦିଆଯାଇ ପାରିଥାନ୍ତା ।

ଏଇ ଲୋକ ହୁଏତ କହିଥାନ୍ତେ, "ଇସ୍ କେତେ ବଡ ଡକେଇତି ହେଇଗଲା ସତଚାଳିଶ ନମ୍ବର ଘରେ । ମାନେ ନୀଳମାଧବ ପଟ୍ଟନାଏକଙ୍କ ଘରେ ।"

କିନ୍ତୁ କ'ଣ ହବ ? ଆମ ଘରେ ପରା ଡକାୟତ ପଶିବେ ନାଇଁ – କଲ୍ୟାଣୀ କୁଆଡେ ଠିକ୍ ବୁଝିଛି । – ଧେତ୍‌ତେରି, ଗୋଟାଏ ସମ୍ଭାବନାକୁ ଏମିତି ଚୁର୍‌ମାର୍ କରିଦେବା କଲ୍ୟାଣୀର ପୁରୁଣା ଅଭ୍ୟାସ ।

ମୋର ସେତେବେଳେ ମନହେଲା, ମୋ ପୁରୁଣା ସୁଟ୍‌ଟାକୁ କାଢି ପିନ୍ଧନ୍ତି । ଟାଇ ଭିଡନ୍ତି । ପର୍ସରେ ଶହେଟଙ୍କା ନୋଟ କେଇଖଣ୍ଡ ରଖି ଜୋର୍‌ରେ କାଢନ୍ତି । କଥା କାନକୁ କାନ ହେଇ

ଡକାୟତ ପାଖରେ ପହଞ୍ଚନ୍ତା । ସତଚାଳିଶ ନମ୍ବରବାଲା ମାଲଦାର ହେଇପାରେ । ବାହାରକୁ ସିନା ମାଖରା ଦିଶୁଚି; କିନ୍ତୁ ବେଳେବେଳେ ସୁଟ ପିନ୍ଧି ଶହେଟଙ୍କା ତ ପୁଣି କାଢୁଛି ।

କିନ୍ତୁ ସେ ସୁଟ ଲୋଖକୋଚା ହେଇ ବାକ୍ସ ତଳେ ପଡିଥିବ । ଟାଇ ବୋଧେ ନାହିଁ । ତା' ବାହାରେ ସୁଟ ସାଙ୍ଗକୁ ଯୋତା ବା କାହିଁ ?

ଯଦି ଧର ଯୋଗାଡ ହେଇଗଲା, ସେପରି ଜଣେ ମାତବର ଲୋକ କ'ଣ ଚାଲି ଚାଲି ବଜାର କରି ଯିବ ?

ନାଃ, ପୁଣି କଲ୍ୟାଣୀ କହିଥିବା ମୂଳ କଥାକୁ ସବୁ ଫେରି ଆସିଲା । ତାଙ୍କ ଝିଙ୍ଗାସ ବାକ୍ୟ ପୁଣି ମୋ ଭିତରସାରା କୋରି ପକାଇଲା ।

ତାକୁ ପ୍ରତିବାଦ କରିବାକୁ ମୋ ପାଖରେ କୌଣସି ଯୁକ୍ତି ବି ନଥିଲା ।

ସେ ଦିନସାରା ଆମର ମୁହଁ ଫୁଲାଫୁଲି ଚାଲିଥାଏ ।

ମୁଁ ରାଗିଥାଏ । ସେ ବି ରାଗିଥାନ୍ତି । ଦୁହେଁଯାକ ରାଗିଥାଉ ଆମ ନିପାରିଲା ପଣ ଉପରେ, ଆମ ଅଯୋଗ୍ୟତା ଆମ ନଗଣ୍ୟତା ଉପରେ । ସଂସାର ଉପରେ, ଭାଗ୍ୟ ଉପରେ, ଭଗବାନଙ୍କ ଉପରେ ସାଇପଡିଶାଙ୍କ ଉପରେ, ସବୁଠୁ ବେଶୀ ସେ ଶଳା ଡକେଇତଙ୍କ ଉପରେ ।

କ'ଣ ନା, ସେମାନେ ମାଛି ମାରି ହାତ ଗନ୍ଧେଇବେ ନାହିଁ! ହୁଁ!!

ମୁଁ ସେତେ ଜୋର୍‌ରେ କେବେ ରେଡିଓ ବଜାଏ ନାହିଁ; ବଜେଇଲି ।

ସେ ସେତେ ଜୋର୍‌ରେ ରସ ଡେକ୍‌ଚିରେ ଚଟୁ ଚଳାନ୍ତି ନାହିଁ; ଚଳେଇଲେ ।

ଏମିତି ରାଗିମାଗି ଆମେ ପରସ୍ପରକୁ ଜାବୁଡା ମରାମରି ହେଲୁ ରାତି ଦଶଟାଯାଏଁ ।

ବିପଦ ପଡିଲା ଭଳି ସେ ସଶବ୍ଦେ କ'ଣ କାଢିନେଇ ଯୁଦ୍ଧକୁ ଡାକିଲାପରି ଡାକିଲେ, "ଖାଇବ ଆସ ।"

ମୁଁ ବି ସେମିତି ସେଆଡେ ନ ଚାହିଁ ପାଟିକଲି, "ଭୋକ ନାହିଁ ।"

ସେ ଚାଲିଗଲେ ଶୋଇବା ଘରକୁ ।

ମୁଁ ଏପାଖ ସେପାଖ ଚୌକିରେ କତ ବଦଳେଇ ରେଡିଓଟାକୁ ଭୁସ୍‌କିନା ବନ୍ଦ କରିଦେଲି ।

ନିଃଶବ୍ଦ ଘରେ ପାହୁଣ୍ଡଯାକ ଖାଲରେ ପଡିଲାପରି ଲାଗିଲା । ଯାଇ ଖାଇନେଲି ଅଭ୍ୟାସରେ । କ'ଣ ଖାଇଲି ଜାଣିପାରିଲି ନାହିଁ ।

ଡ୍ରଇଂରୁମ୍‌ରେ ପୁଣି ସେ ହାରାମି ପତ୍ରିକାଟାକୁ ଦ୍ୱାଦଶ ଥର ପଢିବାକୁ ଟେକିଲି । ସେ ମୁଖସ୍ଥ ପୃଷ୍ଠାଟାକୁ ଦେଖିବା ମାତ୍ରେ କାନ୍ଥକୁ ଫୋପାଡିଦେଲି – ପଳେଇଲି ଦାଣ୍ଡ ବାରଣ୍ଡାକୁ ।

ପାହାଚକୁ ଗୋଡ ଲମ୍ବେଇ ବସିଥାଏ । କଲ୍ୟାଣୀ ଖାଇବାର ଶବ୍ଦ ଶୁଭିଲା । ଆଶ୍ୱସ୍ତ ବୋଧକଲି, ରାଗ ବି ଆସ୍ତେ ଥମିଆସିଲା । ଚାରିଆଡୁ ଶବ୍ଦମାନ ଆସ୍ତେ ଆସ୍ତେ ଘୁମେଇ ପଡିଲେ । କେତେ ସମୟ ସେଇଠି ସେମିତି ବସିରହିଲି ଜାଣେ ନାହିଁ ।

ଉଠିଲାବେଳକୁ ମୋ ହାତଗୋଡ ପଥର ପରି ଭାରି ଲାଗୁଥାଏ । ବୋଧହୁଏ ମୁଁ ଘୁମେଇ

ଯାଇଥିଲି । ଏମିତି କ'ଣ ଅନ୍ୟମାନେ ଘୁମେଇ ପାରନ୍ତେ । ନିଜ ଉପରେ ପୁଣି ଗୁଡାଏ ରାଗିଲି । ଧେତ୍‌ତେରି, ତୋ ଘରେ କେବେ ଡକେଇତି ହବ ନାଇଁ, ତୁ ଜାଣୁ ବୋଲି ସିନା ଗେଟ୍‌ରେ କୋଲପ ନ ପକେଇ, ଘର ଠିଆମେଲା ରଖି ଏମିତି ଘୁମେଇ ପଡୁଚୁ !

ମୋ ଆଖିରୁ ନିଦ ଓହ୍ଲେଇଗଲା । ଏଇ ବୋଧେ ଡକେଇତଙ୍କ ବେଳା ଆସିଗଲା । ମୁଁ ଚାହିଁଲି ନାହିଁ, ସାମ୍ନା ଫାଟକରେ ତାଲା ବନ୍ଦ କରିବାକୁ । ଥାଉ ଖୋଲା ରାତିଏ ।

ଘରକୁ ଯାଇ ଆଲୁଅ ଲିଭାଇ ଦେଲି । କବାଟ ପାଖରେ ବାହାରକୁ ଚାହିଁ ଠିଆହେଲି କିଛି ସମୟ । ରାସ୍ତାରେ ସମସ୍ତଙ୍କ ଘର ଆଗରେ ଆଲୁଅ । କେବଳ ଆମ ଅଞ୍ଚଳଟା ଅନ୍ଧାର ।

ମୁଁ ନିଜକୁ ନିଜେ ଶୋଧିବାକୁ ଭଲ ଲାଗିଲା । ଦାଣଘର କବାଟଟାକୁ ଭିତରୁ ବନ୍ଦ କଲାବେଳକୁ ଜାଣିଶୁଣି ଆଉଜେଇ ଛାଡିଦେଲି ।

ରେଡିଓର ଉପର କନାଟାକୁ କାଢିନେଲି । ଚୌକି ଟିକେ ଭଲ ଦିଶିଲା ଭଳି ସଜାଡି ଦେଲି ।

ଚାରିଆଡକୁ ଚାହିଁ ଲାଇଟ୍ ଲିଭେଇ ଦେଲି ।

ନିଜ ବିରୁଦ୍ଧରେ ନିଜେ ଷଡଯନ୍ତ୍ର କରୁଥିବାରୁ ଗୋଟାଏ କେମିତି ଭୟମିଶା ଆନନ୍ଦ ମିଳୁଥିଲା ।

ମୁଁ ଶେଯକୁ ଗଲି ସିନା; ମୋ ଆଖିରେ ଆଉ କଷା ପଡିଲା ନାହିଁ । ସେମିତି ଅନ୍ଧାରରେ ତଗ ତଗ ଚାହିଁ ରହିଲି ।

ରାସ୍ତାରେ ଗୋଟାଏ ମୋଟର ସାଇକେଲ ପାରି ହୋଇଗଲା । ବୋଧହୁଏ ପୁଲିସ୍ ।

ନ ହେଲେ ଆଜିକାଲିକାର ୟାମାହାରେ ତିନିଜଣିଆ ଡକେଇତ ଦଳ ବି ହୋଇପାରେ । କିନ୍ତୁ ବୁଲେଟ୍‌ର ଆବାଜଟା ଅଲଗା । ଚାଲି ତ ଗଲା, ଯାହା ମନ ତା'ହେଲେ କ'ଣ ଯାଏ ଆସେ ।

ରାତିସାରା ଛପ୍ ଛପ୍ ଲାଗୁଥାଏ ।

ଅଧେ ନିଦରେ ଅଧେ ଚେଇଁରହି ମୁଁ ଦେଖୁଥାଏ ନାନା ଜାତିର ନାନା ରଂଗର ନାନା ଆଚରଣର ଭଳି ଭଳି ଡକେଇତ । ସେମାନେ କେତେବେଳେ ମନ୍ତ୍ରୀପରି ତ କେତେବେଳେ ପୁଲିସପରି ପୋଷାକରେ ଦେଖାଦେଉଥିଲେ ।

କେତେବେଳେ ବା ମୋଟା ମୋଟା ହରି ବିଶ୍ୱାଳ ଭଳି ଦିଶୁଥିଲେ ।

ସମସ୍ତେ କିନ୍ତୁ ମୋତେ ପ୍ରିୟ ପ୍ରିୟ ଲାଗୁଥାନ୍ତି ।

ମୁଁ ପ୍ରାୟ ସମସ୍ତଙ୍କୁ ପାଛୋଟି ଆଣୁଥାଏ ଦୁଆର ମୁହଁରୁ । ସେମାନେ ଆସିଗଲେ ନିଜକୁ ସାର୍ଥକ ମଣୁଥାଏ । ଆମେ କ'ଣ କମ ଲୋକ, ଆମ ଘରେ ଡକେଇତ ପଶିଛନ୍ତି ପରା !

ଗୋଟାଏ ପରିଚିତ ଶବ୍ଦରେ ମୋ ନିଦ ଭାଙ୍ଗିଗଲା ।

ମିଷ୍ଟର ଦାସର ବାଡି ଆଡକୁ ଦି' ବଖରାରେ ହଳେ ମଜୁରିଆ ରହିଛନ୍ତି । ତାଙ୍କର ଚାରିଟା ମାଈ, ଗୋଟାଏ ଅଣ୍ଡିରା କୁକୁଡା । ସେଇ ହମ୍‌ହମିଆ ବଜାତ୍ ଅଣ୍ଡିରା ରଙ୍ଗମୁହାଁ କୁକୁଡାଟା କୁହାଟୁଥିଲା ଅନ୍ଧାରରେ । – ମୋର ବିଭିନ୍ନ ଭୂମିର ପ୍ରସ୍ତ ପ୍ରସ୍ତ ସପ୍ନ ଚୁରମାର କରିଦେଲା ସେ ତଗତଗା ହାଣ ମଙ୍ଗଳ ।

ଉଠିଲି ଭିଡିମୋଡି ହେଇ ।

ଗୋଡ ଲଡବଡ ହଉଥାଏ । ବୈଠକ ଘରକୁ ଆଗ ମୁହାଁଇଲି । ଅନ୍ତତଃ ରେଡିଓଟା ନିଶ୍ଚୟ ନ ଥିବ । କି ବେକୁବ୍ କାମ ନକଲି ସତେ ।

କିନ୍ତୁ ଦେଖିଲା ବେଳକୁ ଯାହା ସବୁ ଯୋଉଠି ଥିଲା ସେଇଠି । କବାଟଟା ରାତିସାରା ସେମିତି ଆଉଜା ହେଇ ରହିଥିଲା । ପବନ ସୁଦ୍ଧା ପଶିନାହିଁ ଏ ଶଳା ଘରେ ।

ଡକେଇତି ନ ହେଲା ନାଇଁ, ଅନ୍ତତଃ ଛୋଟ କାଟିଆ ଚୋରିଟିଏ ତ ଖୁବ୍ ସହଜରେ ହୋଇ ପାରିଥାନ୍ତା । ସେତିକି ବି ନୋହିଲା ଆମ ନିଅଣ୍ଟିଆ ଭାଗ୍ୟକୁ ।

ମୁଁ ବାହାର ପିଣ୍ଡାକୁ ଯାଇ ଚାରିଆଡେ ଚାହିଁଲି । କେହି କୁଆଡେ ଦିଶୁ ନଥିଲେ । ଦୂର ବତୀଖୁଣ୍ଟ ଆଲୁଅ ଚାରିପେଟ ଅସଂଖ୍ୟ ପୋକ ଘୂରି ବୁଲୁଥିଲେ । ରାସ୍ତାଘାଟ ଶୂନ୍‌ଶାନ୍, ନୀରବ ।

ମୋ ଭିତରୁ ଇଟାଟାଏ ଖସିପଡିଲା । ଫାଟକଟା ଠିଆ ମେଲା ଯେ!

"ଇସ୍ ତା'ହେଲେ ସେମାନେ ପଶିଥିଲେ ନା କ'ଣ!"

ମୁଁ ସନ୍ତର୍ପଣରେ ଗେଟ୍‌ଯାଏ ଗଲି । ଏଡେତେଣେ ୟାସୁସ୍ ଢଙ୍ଗରେ ନିଘାକଲି ।

ଦେଖିଲି ଜିନିଆ ଫୁଲଗଛ ଗଣ୍ଡାକ ଆଉ ଦିଶୁ ନଥିଲା । ସେଇଆଡକୁ ଗୋଡ କାଢିଲାବେଳକୁ ଗଦାଏ ଗୋବର ଭିତରେ ଗବ୍‌କିନା ମୋ ବାଁ ପାଦଟା ବୁଡିଗଲା ।

ମୋ ଦାନ୍ତ ପାଟି ଜାବି ହେଇଗଲା । ହାତ ମୁଠା ମୁଠା ହେଇ ଟାଣି ହୋଇଗଲା ଦେହସାରା । ଆଖି ବୁଜିଦେଲି । ଫିଟିଲେ ଅଗ୍ନି ବର୍ଷିଯିବ ନତୁବା ଅଶ୍ରୁ ।

ମୁଁ ଆଶା କରି ନଥିଲି ଏତିକିବେଳେ ଦାଣ୍ଡ ପିଣ୍ଡାର ଆଲୁଅ ଜଳିଉଠିବ ।

ଜାଣି ନଥିଲି ଯେ, କଲ୍ୟାଣୀ ଆଲୁଅ ତଳେ ଠିଆହେଇ ଝୁଲି ରହିଥିବା ଶବଟାକୁ ଚାହିଁଲା ପରି ମୋତେ ଚାହିଁ ରହିବ ସେଇ କେତୋଟି ଦୁର୍ବିସହ ମୁହୂର୍ତ୍ତ ପାଇଁ ।

ମୁଁ ଦ୍ରବି ଯାଉଥିଲି, ସ୍ରବି ଯାଉଥିଲି ରସାତଳକୁ ପରାସ୍ତ ଅଙ୍ଗାର ଖଣ୍ଡ ପରି ।

ଜାଣିପାରିଲି ନାହିଁ ମୋର କପାଳକୁ ଛୁଇଁଦେଇ ପାହାନ୍ତା ପହରର କାକର ପବନ ସେ ମିତ୍ର କହିଲା, କି କଲ୍ୟାଣୀ ଡାକିଲା

"ଆସ ଚା ଖାଇବ!"

ମୋର ବିଶ୍ୱାସ ହେଉ ନଥାଏ ମୁଁ ମୋର ସତେଇଶ ପୁରୁଷକୁ ନେଇ ସେ ଗୋବର ଗଦାରୁ କେବେ ଉଠିଆସି ପାରିବି ବୋଲି ।



# ପିତୃପୁରୁଷ

ସଂଧ୍ୟାବେଳଟା ମାଡି ମାଡି ପଡୁଥିଲା ! ରାସ୍ତାଘାଟ ନିକାଞ୍ଚନ । ଗଛଡାଳରେ ପକ୍ଷୀ ବି ଜବ୍‌ଦି ଯାଇଥିଲେ ।

ରିକ୍ସାବାଲା ଡରିଲା ଡରିଲା ପରି ଗାଡି ଚଳଉଥିଲା । କ'ଣଟାଏ ଭୟାନକ କବନ୍ଧ ପରି ଓହଳି ରହିଥିଲା ଆକାଶରୁ ।

ସିଦ୍ଧନାଥ ସକାଳ ବେଳେ ଖବର ପାଇ କାଠ ପାଲଟି ଗଲେ । ତୁଣ୍ଡରୁ କଥା ବାହାରିଲା ନାହିଁ । ଘରେ ସ୍ତ୍ରୀଙ୍କୁ କେବଳ କହିଲେ, "ଭାରି ଜରୁରୀ ! ମୁଁ ଗାଁକୁ ଯାଉଛି । ପିଲାଙ୍କୁ ସମ୍ଭାଳି ରଖିଥିବ ।"

ଗାଁକୁ ଯିବା କଥା ସେ ବିଶ୍ୱାସ କରି ପାରିଲେ ନାହିଁ । କିନ୍ତୁ ସିଦ୍ଧନାଥଙ୍କ ମୁହଁକୁ ଚାହିଁ କିଛି ପଚାରି ବି ପାରିଲେ ନାହିଁ ।

ସିଦ୍ଧନାଥ ଖଣ୍ଡେ ଝୋଲା କାନ୍ଧରେ ପକେଇ ବାହାରି ଆସିଲେ । ବସ୍‌ରେ ଆସୁଥିଲାବେଳେ ରହି ରହି ତାଙ୍କ ଦେହ ଥରି ଉଠୁଥିଲା । ସେ ବାରଂବାର ଗୋଟାଏ ବିକଟାଳ ଦୃଶ୍ୟକୁ ତାଙ୍କ ଅନିଚ୍ଛା ସତ୍ତ୍ୱେ ମନେ ମନେ ଦୋହରାଉଥିଲେ ।

ଭୋବନି ଗନ୍ତାୟତ୍ କିଛି ଏମିତି ସେମିତି ଲୋକ ନୁହନ୍ତି । ତାଙ୍କୁ ପୁଣି ଲୋକେ ଦିନବେଳଟାରେ ରାସ୍ତା ଉପରେ ହାଣି ପକେଇଲେ । ସେ କୁଆଡେ ବିକଳରେ ଧାଉଁଥିଲେ । ତାଙ୍କୁ ସେମାନେ ଗୋଡେଇ ଗୋଡେଇ ହାଣି ଦେଇ ଯାଉଥିଲେ । ଶେଷକୁ ମୁଣ୍ଡ ଗଣ୍ଡି ଦି'ଗଡ କରିଦେଲେ !...

ଇସ୍ ! ସିଦ୍ଧନାଥ ପୁଣି ହାତ ମୁଠା ମୁଠା କରି ଝାଳେଇ ଗଲେ ।

ରିକ୍ସା ବାଙ୍କ ମୋଡିଲା ।

ଛାଇ ଅଂଧାରରେ ତାଙ୍କ ଘର ସାମ୍ନାରେ ବହୁ ଲୋକ ଠିଆ ହୋଇଥିବାର ଦେଖାଗଲା ।

ସେ ରିକ୍ସାକୁ ବିଦାକରି ଦେଇ ପାଦ ବଢେଇ ପାରୁ ନଥାନ୍ତି । ତାଙ୍କ ଗୋଡ ଆଡୁ ଶୀତକଣ୍ଟା ମାରି ଆସୁଥାଏ । ଜିଭ ଭିଡି ନଉଥାଏ ଶୋଷରେ ।

ତାଙ୍କୁ ଓହ୍ଲେଇବାର ଦେଖି କେତେଜଣ ତାଙ୍କ ଆଡକୁ ଧାଇଁ ଆସିଲେ ।

ଦେଖୁ ଦେଖୁ ସମସ୍ତେ କୁହାକୁହି ହେଲେ, "ସିଦ୍ଧନାଥ ଗନ୍ତାୟତ୍ ଆସିଗଲେ, ସିଦ୍ଧନାଥ

ଆସିଗଲେ ।"

ସମସ୍ତଙ୍କ ଦୃଷ୍ଟି ତାଙ୍କ ଉପରେ ।

ଦୁଆର ମୁହଁରେ ଖଣ୍ଡେ ଚୌକିରେ ପୁଲିସ୍ ଇନ୍ସପେକ୍ଟର । ଘର ଜଗିଆଡେ କନଷ୍ଟବଲ ।

ସିଦ୍ଧନାଥ ପହଞ୍ଚିବାରୁ ଇନ୍ସପେକ୍ଟର ଠିଆ ହୋଇ ପଡିଲେ ।

"ଆପଣ ସିଦ୍ଧନାଥ ଗନ୍ତାୟତ ?"

"ଆଜ୍ଞା ।"

"ଆମେ ଆପଣଙ୍କୁ ଓ୍ୱାୟାରଲେସ୍ ପଠାଇଥିଲୁ ।"

"ହଁ ସେଠାରେ ଥାନାବାବୁ ମୋତେ ଖବର ଦେଲେ ।"

ପଡିଶାରୁ କେହି ଜଣେ ବେତ ଚୌକିଟିଏ ଆଣି ଥୋଇଲା ।

କେହି ଜଣେ କହିଲା, "ବସନ୍ତୁ !!"

ଇନ୍ସପେକ୍ଟର କହିଲେ, "ବସନ୍ତୁ !"

"ଭୁବନେଶ୍ୱର ଗନ୍ତାୟତ୍ ଓରଫ୍ ଭୋବନି ଗନ୍ତାୟତ୍ – ଆପଣଙ୍କର ବାପା ?"

"ଆଜ୍ଞା ।"

"ତାଙ୍କ ହତ୍ୟା ବିଷୟରେ ଆପଣ କ'ଣ କାହାକୁ ସନ୍ଦେହ କରୁଛନ୍ତି ?"

ସିଦ୍ଧନାଥ ନୀରବ ରହିଗଲେ ।

ଜଣେ ମୁରବି ସେ ଗହଳି ଭିତରୁ କହିଲେ, "ଆଜ୍ଞା", ସେ ତ ସାତବର୍ଷ ପରେ ଏଇମାତ୍ର ଆସି ପହଞ୍ଚିଛନ୍ତି । ସେ କ'ଣ କହିବେ ?

"ମୁଁ ଆପଣଙ୍କୁ ପଚାରି ନାହିଁ । ଆପଣମାନେ ଦୟାକରି ନୀରବ ରହିବେ ।"

ସିଦ୍ଧନାଥ ସ୍ୱୀକାର କଲେ, "ନିଧି କକା ଯାହା କହିଛନ୍ତି ତା' ଠିକ୍ !"

"ପାରିବାରିକ ଗଣ୍ଡଗୋଳରୁ ମୋତେ ଅଲଗା ରହିବାକୁ ପଡିଥିଲା ।"

"ତା'ହେଲେ ଏ ବିଷୟରେ ଆପଣଙ୍କର କହିବାର ନାହିଁ ?"

"ଆଜ୍ଞା ନା ।"

"ଆପଣ ନ ଥିବା ଅବସ୍ଥାରେ ଆମେ ଏ ଘର ସିଲ୍ କରିଛୁ ।"

"ଆପଣ ଥାଇ କରି ତଦନ୍ତ ହବ । ବର୍ତ୍ତମାନ ଆପଣ ଆମ ସହିତ ଥାନାକୁ ଆସି ଯାହା କହିବା କଥା କହିବେ । ସେ ସବୁ ରେକର୍ଡ ହବ । ଆମେ ଯେଉଁମାନଙ୍କୁ ଗିରଫ୍ କରିଛୁ ସେମାନଙ୍କୁ ଚିହ୍ନଟ କରିବେ । ଘ୍ୟା ଭିତରେ ଡାକ୍ତରମାଇନା ସରି ଯାଇଥିଲେ ଆପଣ ଲାସ୍‌ର ଦାୟିତ୍ୱ ନେବେ । ଏ ଘରେ ଆଉ କେହି ରହନ୍ତି କି ?"

"ନା"

"ତା'ହେଲେ ଆସନ୍ତୁ । ଆରେ ରାଉତ୍, ତମେ ଦୁହେଁ ଏଠି ଡ୍ୟୁଟିରେ ଥାଅ । ବନମାଳୀକୁ କହ ଜିପ୍ ଆଣିବ । ଆସନ୍ତୁ ସିଦ୍ଧନାଥ ବାବୁ ।"

ବିଷୟଟା ତ' ଏତେ ସହଜରେ ଛିଣ୍ଡିବା କଥା ନୁହେଁ । ତଥାପି ସିଦ୍ଧନାଥ ସେତେବେଳକୁ କାଲୁଆ ହୋଇ ଯାଇଥାନ୍ତି । ଯାହା ହେଲେ ବି କିଛି ଆଉ ପ୍ରତିକ୍ରିୟା ହେବାର ନାହିଁ ।

ବାଟରେ ଇନ୍ସପେକ୍ଟର କହିଲେ, "ମୁଁ ଜାଣେ ସିଦ୍ଧନାଥ ବାବୁ, ଆପଣଙ୍କ ପାଇଁ ଏଇଟା ଗୋଟାଏ ବିରାଟ ଶକ୍ । ତା' ବାହାରେ ଆପଣଙ୍କ ଖାନ୍‌ଦାନ୍, ଭୋବନିବାବୁଙ୍କ ଇଜ୍ଜତ୍, ଏସବୁ ତ ପୁଣି ଆମକୁ ବିଚାର କରିବାକୁ ପଡୁଛି । ଆପଣ ପୁଣି ତାଙ୍କ କ୍ରିୟାକର୍ମ କରିବେ । ମୁଁ କାଲି ସକାଳୁ ଆପଣଙ୍କ ଘରେ ପହଞ୍ଚିବି । ସବୁ ଠିକ୍‌ଠାକ୍ କରିଦେବା । ଲାସ୍ ଦେହରୁ ମିଳିଥିବା ଚାବି ଆଉ ମୁଦି, ମୁଁ ରିପୋର୍ଟରେ ଦେଖାଇନାହିଁ । ଆପଣ ସରକାରୀ ଅଫିସର । ଆପଣ ଜାଣନ୍ତି, ସେଇଟା ଆମ ହେପାଜତକୁ ଆସିଗଲେ ଆପଣଙ୍କୁ କେସ୍ ଫଇସଲା ନ ହେବା ଯାଏ ମିଳିବନାହିଁ । କିନ୍ତୁ ଚାବି ନ ହେଲେ ଆପଣ କେମିତି କ'ଣ କରିବେ ? ସେଥିପାଇଁ ମୁଁ ଏବେ ଥାନାରୁ ଆପଣଙ୍କୁ ଦେଇଦେବି । ଆଉ କାଲି ବାକି ସବୁ ଠିକ୍ କରିଦେବା !"

ସିଦ୍ଧନାଥ ସେ ଝଡ ବତାସି ଭିତରେ ବି ଇନ୍ସପେକ୍ଟରଙ୍କ ସରଗ ଇଙ୍ଗିତ କଛି ବୁଝିଗଲେ । ମୁହୂର୍ତ୍ତ ମୁହୂର୍ତ୍ତରେ ବୋଟ୍ ଗଡେଇଲା ବେଳେ କାଲି କଥା ତ କାହିଁ କେତେ ଦୂର । ସେତେବେଳେ ଦେଖିବା ।

ସିଦ୍ଧନାଥ କେବଳ ଇନ୍ସପେକ୍ଟରକୁ ଚାହିଁଲେ । ଆଖିରେ ବୋଧେ ପ୍ରତିବାଦ ନ ଥିଲା ।

ସିଦ୍ଧନାଥ ଫେରିଲା ବେଳକୁ ଅଧରାତି ପାରି ହୋଇ ଯାଇଥିଲା ।

ଦୁଆର ମୁହଁ କୋଲପ ଫିଟେଇଲାବେଳେ କଷ୍ଟହାତରେ ପଡୁ ନ ଥାଏ । ସିଲ୍ ଭାଙ୍ଗିବାରୁ କିଏ ଗୋଟିଏ କ'ଣ କାଗଜ ଦେଖାଇ ତାଙ୍କ ଦସ୍ତଖତ ନେଇଗଲା ।

ପୁରୁଣା ଗୋବବସା ପଥର ପରି କବାଟ ଋଟଋଟ ଡାକି ଫିଟିଲା ।

ସିଦ୍ଧନାଥ ଭିତରକୁ ପାଦ ବଢାଇଲେ ।

ଗୋଟାଏ ପଟେ କଳରବ କରି ଫଡ୍ ଫଡ୍ ଡେଣା ଝାଡି ପଶି ଆସୁଥିବା ଗୁଡିଏ ଅବୋଧ ସ୍ମୃତି !

ଆରପଟେ ଅଖା ଭିତରେ ଥଲଥଲ କରୁଥିବା ନୀରବ କବନ୍ଧ, ଟଳମଳ କଟାମୁଣ୍ଡ ।

ଦି'ଖଣ୍ଡ ବାଉଁଶରେ ଦଉଡି ବନ୍ଧା ହୋଇଥିବା ସେ ମେଦପିଣ୍ଡ ସେଦିନ ସକାଳ ପର୍ଯ୍ୟନ୍ତ ଭୋବନି ଗନ୍ତାୟତ୍, ଜିଦ୍‌ଖୋର ପ୍ରତାପୀ ଜମି ମାଲିକ – ଏ ଘର ଦ୍ୱାର ବାଡି ବଗିଚାର ଏକଛତ୍ର ଅଧିପତି !

ଅଗଣାରେ ଶବାଧାର ଥୋଇ ଦେଇ ସେମାନେ ଚାଲିଗଲେ । ରାତି ଅଧରେ ଅଂଧାର ଅଗଣା ଅପରିଚିତ ମନେ ହେଉଥିଲା ।

ସିଦ୍ଧନାଥ ବୁଲି ଚାହିଁଲା ବେଳକୁ ଲଣ୍ଠନ ହାତରେ ନିଧିକଳା ଆଉ ତିନିଜଣ ସାଇଲୋକ ଗାମୁଛା ଘୋଡେଇ ହେଇ ନିଃଶବ୍ଦ ପହରି ଆସୁଥିଲେ ।

ଅଗଣାରେ ଚାରିଟା କମଳା ଗଛରୁ ଆଉ ଗୋଟିଏ ବି ନଥିଲା । ଖାଁ ଖାଁ ଖୁଆଡ୍ ଖୁଆଡ୍

ଘରେ କେହି କୁଆଡେ ନ ଥିଲେ । କମଳା ଗଛଟାଏ ଥିଲେ ବା କ'ଣ ଅଧିକ ହେଇଥାନ୍ତା !

"ବୁଝିଲୁ ପୁଅ ନିଧି ।"

ଅଂଧାର ହଠାତ୍ କଥା କହିଲେ ଭାରି ଭୟଙ୍କର ଶୁଭେ । ଆରପୁରରୁ ଶବ୍ଦ ଗୁମୁରି ଆସିଲା ପରି ଶୁଭେ ।

ପିଣ୍ଡାରେ ଗୋଟାଏ ଖୁଣ୍ଟକୁ ଆଉଜି ମୁଣ୍ଡରେ ଠେକାଭିଡି ନିଧିକକା ବସିଗଲେ । ତଳକୁ ଚାହିଁ କହିଲେ –

"ଭୋବନି କି ଧର୍ମ ଛାଡିଗଲା । ତତେ ଏ ଘରୁ ଅନ୍ତର କଲା ଦିନୁ ଏ ଘରର ଶ୍ରୀ ତୁଟିଗଲା । ସେ ଯାହା ଅନାଚାର କଲା ତତେ ଆଉ କ'ଣ କହିବି । ଲୋକଙ୍କ ଖାଇବା ଭାତରେ ଧୂଳି ପକେଇଲା । ଭିଟାମାଟି ଛଡେଇ ନେଲା । କାହା ନାଁରେ ମାଲି ମକଦମା ନ କରିଚି ନୁହେଁ । ଆମ ବାଡିରୁ ଖଣ୍ଡେ ବାଡ ପକେଇ ମାଡି ବସିଲା । ସବୁବେଳେ ଦଶ ପଚିଶ ବାଉରୀ ଟୋକାଙ୍କୁ ଠେଙ୍ଗା କଟୁରି ଧରେଇ ପାଖରେ ରଖିଲା । ଶେଷକୁ ସେଇମାନେ ଏଇଆ କଲେ, ବହୁଲୋକଙ୍କ ନିଃଶ୍ୱାସ ପଡିଗଲା ।"

ସିଦ୍ଧନାଥ ଆର ପାଖ ପିଣ୍ଡାରେ ଥକା ହେଇ ବସି ପଡିଲେ । ମୁଣ୍ଡକୁ ଦି'ହାତରେ ଚିପିଧରି ଆଖି ବୁଜିନେଲେ କିଛି ସମୟ । ଖୁବ୍ କ୍ଷୀଣସ୍ୱରରେ କହିଲେ,

"ଏବେ କ'ଣ କରିବା, ନିଧିକକା, ତମେ କହ ।"

"ତୁ ନ ଆସିଥିଲେ କଥା ନିଆରା ହେଇଥାନ୍ତା । ଲୋକେ ଯେମିତି ଟାଟି କରିଥିଲେ କେହି ଦୁଆର ମାଡି ନ ଥାନ୍ତେ । ଡାକ୍ତରଖାନାରୁ ଏ ଶବ ବି ଆସି ନ ଥାନ୍ତା । ...ହେଲେ ତୁ ଚିନ୍ତା କରନା । ଭୋବନି ମରିଗଲା ଉତ୍ତାରୁ ଆଉ ଅହନ୍ତା ଗୋଟାଏ କ'ଣ ? ତା' କ୍ରିୟାକର୍ମ କ'ଣ ନ ହେଇ ରହିଯିବ ? ତୁ କୋଲପ ଫିଟେଇ ଘର ଟିକିଏ ତଦାରଖ କରି ପକା । ମୁଁ ଯାଉଚି ମାଲଭାଇ ଯୋଗାଡ କରିବାକୁ । ଆଜି ରାତିରେ ସତ୍କାର କରିଦବା । ନ ହେଲେ ବାସିମଡା ହେଇଯିବ । କିଛି ପଇସା ଯୋଗାଡ କରିଥା । ଖର୍ଚ୍ଚ ହବ ।"

"ଠିକ୍ ଅଛି ନିଧିକକା ତମେ ମତେ ଯେମିତି କହିବ ସେମିତି ହବ ।"

ଏଣିକି ବୋଧେ ସିଦ୍ଧନାଥ କୌଣସି ଘଟଣାରେ ଆଉ ବିଚଳିତ ହେବାର ଅବସ୍ଥାରେ ନ ଥିଲେ ।

ଅଗଣାରେ କୋକେଇ ଉପରେ ପଡିଥିବା ସେ ମେଦପିଣ୍ଡ ସତେ ବା, ତାଙ୍କ ପାଇଁ ଏକ ଅପରିଚିତ ବସ୍ତୁ । ଘରେ ବାହାରେ ଜମି ରହିଥିବା ଅଂଧାର, ନିଜ ନିଃଶ୍ୱାସକୁ ଶୁଣିପାରୁଥିବା ସେ ନୀରବତା, ପିଣ୍ଡା ଉପରେ ସାରା ଅତୀତର ଆକାଶକୁ ଦୀପ ଟେକିଥିବା ସେ ଲଣ୍ଠନ; ସିଦ୍ଧନାଥଙ୍କ ସତ୍ତାକୁ ଏସବୁ ଶୋଷି ନଉଥିଲେ ଚାରିଆଡୁ । ସେତିକିବେଳେ ଯାହା କିଛି ଅଲୌକିକ ତାଙ୍କ ଆଖି ଆଗରେ ଘଟି ଯାଇଥିଲେ ସେ ତାକୁ ବିଶ୍ୱାସ କରିଥାନ୍ତେ ।

ସେ ଅମାପ ଗଭୀର ମୁହୂର୍ତ୍ତରେ କଟାମୁଣ୍ଡ ଯୋଡିହୋଇ ଯାଇଥିଲେ ଏବଂ ସେ ଅଖା ଚିରି

ଭୋବନି ଗନ୍ତାୟତ୍ ବାହାରି ଆସିଥିଲେ ସିଦ୍ଧନାଥ ମୂର୍ଚ୍ଛା ଯାଇ ନ ଥାନ୍ତେ ।

ସେପରି କିଛି ହେଲାନାହିଁ ।

କିନ୍ତୁ ସିଦ୍ଧନାଥଙ୍କର ମନେହେଲା ଯେ ଚାରିଆଡୁ ଆଗରୁ ପଛରୁ, ତଳୁ ଉପରୁ କ'ଣଟାଏ ତାଙ୍କୁ ନିଘଞ୍ଚ ଗୁନ୍ଧି ରଖିଥିଲା । କେହି ଜଣେ ସେଇଠି ବିଚରଣ କରୁଥିଲା । ହୁଏ ତ ଆଖିବୁଜି ହାତ ହଲେଇଲେ ତା', ଦେହରେ ବାଜିଯିବ । ହାତ ଆଞ୍ଜୁଳା କରିଦେଲେ ଓଳିପାଣି ପରି ତା' ରକ୍ତ ନିଗିଡି ଆସିବ, ଉଛୁଳିଯିବ ଆଞ୍ଜୁଳା ।

ସିଦ୍ଧନାଥ ଦେହ ସାରା ଝିଙ୍କ କାଠି ପରି ରୁମ ଟାଙ୍କୁରି ରହିଥାଏ । ଆଖିରେ ପଲକ ପଡୁନଥାଏ ।

ସତେ କ'ଣ ଭୋବନି ଗନ୍ତାୟତ୍ ହାଣଖାଇ ସେଇଠି ଶୋଇଥିଲେ !! ଯାହାଙ୍କଠାରୁ ଜୀବନସାରା ପଦେ ଆଦର କଥା ସିଦ୍ଧନାଥ ଶୁଣିନାହାନ୍ତି; ଯେ, ତାଙ୍କୁ ଦେଖିବା ମାତ୍ରେ ବାଟ ଭାଙ୍ଗି ଚାଲି ଯାଉଥିଲେ, କୁକୁରକୁ ଭାତ ଦେଲା ପରି ଯେ ସିଦ୍ଧନାଥଙ୍କ ପଢାଖର୍ଚ୍ଚ, ବାଟଖର୍ଚ୍ଚ ତଳେ ଥୋଇଦେଇ ଚାଲିଯାଉଥିଲେ, କାନ୍ଥ ବାଡକୁ କହିଲା ପରି କହୁଥିଲେ, 'ଶୁଣ ସିଧିଆ, ତୁ ମୋ ପାଖକୁ ଆସିବା ଦରକାର ନାଇଁ । ତୁ ଯେ ପରିବାର ପୋଷିବୁ ତୋ ପେଟ ପୋଷିବୁ । ତୁ ମୋ ଘରେ ଜନ୍ମ ହେଇଚୁ ସେଇ ଯଥେଷ୍ଟ । ଟଙ୍କା ଉଠେଇ ନେ । ଯା କୁଆଡେ ଯାଉଚୁ ପାଠ ପଢିବାକୁ ।'

ସିଦ୍ଧନାଥଙ୍କ ହାତ ମୁଠା ମୁଠା ହେଇ ଯାଉଥାଏ । ଭିତରୁ ନିଆଁଟାଏ ଜଳି ଉଠୁଥାଏ ଆଖି ପର୍ଯ୍ୟନ୍ତ । ଦେହ ଝାଳେଇ ଯାଉଥାଏ ।

ସାତ ବର୍ଷର ମା' ଛେଉଣ୍ଡ ପିଲା ଏଭଳି ବାପ ପାଖରେ ବଞ୍ଚିଗଲା ଏଇ ଯଥେଷ୍ଟ । ମରି ଯାଇଥିଲେ ମଲା ଚଢେଇଟାକୁ ଫୋପାଡିଲା ପରି ଭୋବନି ଗନ୍ତାୟତ୍ ତାକୁ କାନ୍ଥ ଡିଆଁଇ ଦେଇଥାନ୍ତେ ।

କିନ୍ତୁ କାହିଁକି ? – ଏ ବିରାଟ ପ୍ରଶ୍ନର ସମାଧାନ ସିଦ୍ଧନାଥ ପାଇଁ ନ ଥିଲା । ଏଣିକି ପାଇବାର ମଧ ଆଶା ଆଉ ନ ଥିଲା ।

ତଥାପି ଦେଶାଚାର, କୁଳାଚାର ତାଙ୍କ ଉପରେ ପଥର ବୋଝ ପରି ମଡେଇ ହେଇ ପଡୁଥିଲା । ଯେଉଁ ମୁହଁକୁ ସେ ଥରେ ହେଲେ ଭଲରୂପେ ଚାହିଁ ନ ଥିଲେ ସେଥିରେ ମୁଖାଗ୍ନି ଦେବାର ମୁହୂର୍ତ୍ତ ନିକଟେଇ ଆସୁଥିଲା ।

ପିଣ୍ଡାରେ ସିଦ୍ଧନାଥ ବସି ପଡି ନିଜକୁ ସାଉଁଟିବାକୁ ଯତ୍ନକଲେ । ତାଙ୍କ ମନରୁ କେମିତି କେଜାଣି ସବୁ ଭୟ, ସବୁ କ୍ରୋଧ ସବୁ ମାନ ଅପମାନ ଘୃଣା ଓହ୍ଲେଇ ଗଲା । ନିଧିକକା ଆସିଲେ । ରାଧୁ ତିଆଡି ଆସିଲେ । ମାଲ ଭାଇ ଆସିଲେ । କୋକେଇ ଉଠିଲା । ଘଟ ଥାପନ ହେଲା । ଖଇକଉଡି ବୁଣା ହେଲା ।

ଚିତାରେ ନିଆଁ ଲଗେଇଲା ପରେ ସେଇ ଧାସରେ ଦିନରାତି ଠିଆ ହୋଇ ରହିଲେ ସିଦ୍ଧନାଥ ଏକଦଶାହ ଯାଏଁ । ଝାଉଁଳି ଗଲେ । ଲଣ୍ଡା ମୁଣ୍ଡରେ ରୁମାଲଟିଏ ଭିଡି ଅପରିଚିତ ଦେଖାଗଲେ ।

ମଝିରେ ଗୋଟାଏ ଦିନ ପାହାନ୍ତା ପହରରୁ ଯାଇ ପ୍ରେତକର୍ମ କଲାବେଳେ ରନ୍ଧାହାଣ୍ଡିରେ ଦୀପ ଜାଳି ତାକୁ ପାଣିରେ ଭସାଇଦେଲେ । ଆଣ୍ଠୁଏ ପାଣିରେ ପଶି ପୋତଖୁଣ୍ଟରେ ସେ ହାଣ୍ଡିକୁ ବାଡେଇ ଭାଙ୍ଗିଦେଲେ । ମାଟିହାଣ୍ଡି ଖପରା ହେଇ ବୁଡିଗଲା । ଦୀପ ଲିଭିଗଲା ମୁହୂର୍ତ୍ତକରେ ।

ମନେହେଲା ଏମିତି ସବୁ ଦୀପ ଲିଭିଯାଏ । ସବୁଘଟ ଏମିତି ଭାଙ୍ଗିଯାଏ ।

ବାରଦିନ ପରେ ଘର ଖାଲି ହେଇଗଲା । ଗହଳି ଭାଙ୍ଗିଗଲା । ତାଙ୍କ ପରିବାର ସପ୍ତାହେ ପୂର୍ବରୁ ଆସି ସାରିଥିଲେ । ପିଲାଙ୍କୁ ସେ ପ୍ରଶସ୍ତ ଘର ଆଉ ଅଗଣା ବୋଧେ ଖୁବ୍ ଭଲ ଲାଗିଥିଲା । ରନ୍ଧାଘର, ଶୋଇବା ଘର, କୂଅମୂଳ ସ୍ତ୍ରୀଙ୍କ ମନକୁ ପାଇ ଯାଇଥିଲା ।

କେବଳ ସିଦ୍ଧନାଥ ଅସୁସ୍ଥ ବୋଧ କରୁଥିଲେ ।

ସକାଳ ପହର ହୋଇଥାଏ । ନିଧିକକା ଆସି ପହଞ୍ଚିଲେ । ଚକୁଳି ଚା ଖାଇଲେ । "ସିଧୁ, ଗୋଟେ କଥା କହିବାକୁ ଆସିଲି । କଥା କ'ଣ କି ତୁ ତ ଚାକିରିଆ । ଏଠି ରହି ପାରିବୁ ନାହିଁ । ବର୍ଷକୁ ବର୍ଷ ଶ୍ରାଦ୍ଧ ବି କରିପାରିବୁ ନାହିଁ । ସେଥିପାଇଁ ମାସ ନ ପୁରୁଣୁ ଗୟାରେ ପିଣ୍ଡ ପକେଇ ଦିଅନ୍ତୁ ଯଦି ପିତୃଋଣ ଶୁଝିଯାନ୍ତା । ତୋ ମା'ର ଅସ୍ଥି ପଚିଶବର୍ଷ ହେଲା ସେମିତି ପଡିଚି । ମୁଁ ଭୋବନି ଭାଇନାକୁ କେତେ କହିଲି । ଶୁଣିଲା ନାହିଁ ।"

ସିଦ୍ଧନାଥଙ୍କୁ କିଛି କହିବାର ନ ଥିଲା ।

"ତା' ବାହାରେ ଗୟାରେ ପିଣ୍ଡ ଦେଲେ ପିତୃପୁରୁଷ ତାକୁ ପ୍ରତ୍ୟକ୍ଷରେ ପାଆନ୍ତି । ମୁଁ ଶୁଣିଚି, ଦେଖିନାଇଁ, ସେମାନେ ବେଳେବେଳେ ପ୍ରକଟ ହେଇଯାନ୍ତି । ମୁଁ ମୋ ନନାଙ୍କ ଅସ୍ଥି ଗଂଗାରେ ବିସର୍ଜନ କରିବାକୁ ଯାଇଥିଲି । ଭୋବନି ଭାଇନା ଦଦେଇଙ୍କ ଅସ୍ଥି ନେଇ ଯାଇଥିଲା ଯୋଉବର୍ଷ ତା'ର ତିନିବର୍ଷ ଉତ୍ତାରୁ । ବିସର୍ଜନ କଲି । ଗୟାରେ ପିଣ୍ଡ ଦେଲି, ମାତ୍ର କିଛି ସେପରି ଘଟିଲା ନାହିଁ । ବେଳେବେଳେ ସେପରି ହୁଏ । ତୁ ଯଦି ଯିବୁ ଟଙ୍କା ଯୋଗାଡ କର । କାମ ବଢେଇ ଦେଲେ ଆଗକୁ ଜଞ୍ଜାଳ ନ ଥିବ ।"

ସିଦ୍ଧନାଥ ହିସାବ କଲେ ସମୟ, ବାଟଖର୍ଚ୍ଚ, ସେଠିକା ଖର୍ଚ୍ଚ । ସ୍ଥିର ହେଲା ଯେ ମଙ୍ଗଳବାର ଦିନ ସକାଳୁ ବାହାରି ଯିବେ, ମା' ବାପ ଉଭୟଙ୍କର ଅସ୍ଥି ବେକରେ ଓହଳେଇ । ଗଂଗାରେ ବିସର୍ଜନ କରିବେ, ଗୟାରେ ପିଣ୍ଡ ଦେବେ । ପ୍ରଥା ଅଛି ତ ବହୁକାଳରୁ, ମାନି ନେଲେ କ୍ଷତି କ'ଣ ? ୟା'ପରେ ତ ଆଉ କିଛି କରିବାର ନାହିଁ । ଏଇଟା ହିଁ ଶେଷକୃତ୍ୟ ।...

ପ୍ରୟାଗରେ ହେଉ ଅଥବା ଗୟାରେ, ଲଣ୍ଡାମୁଣ୍ଡିଆ ଛେଉଣ୍ଡକୁ ଠଉରେଇବା ପାଇଁ ସେମାନଙ୍କୁ ସମୟ ଲାଗେ ନାହିଁ । ନାନା ବାହାନାରେ ତାକୁ ଜାଲରେ ପକେଇବାକୁ ବି ସମୟ ଲାଗେ ନାହିଁ ।

ସେ ସେତେବେଳେ ପରାସ୍ତ ଦେଖା ଯାଉଥାଏ; କାଲୁଆ ପଡି ଯାଇଥାଏ । କୌଣସି ଦୁଃଖକୁ ଦୁଃଖ ବା ସୁଖକୁ ସୁଖ ମଣିବା ଅବସ୍ଥାରେ ସେ ନ ଥାଏ । ସବୁ କଥାକୁ କେବଳ, ଯୋଡିଏ କ୍ଳାନ୍ତ ଆଖି ଟେକି ଅନାଏ, ବୁଝି ବୁଝେନାଇଁ ।

ଅସ୍ଥି ବିସର୍ଜନ ପାଇଁ ସିଦ୍ଧନାଥ ଗୟା ଷ୍ଟେସନ୍‌ରେ ପହଞ୍ଚିଲା ବେଳକୁ ତାଙ୍କର ପ୍ରାୟ ସେଇ

ଅବସ୍ଥା । ସେଇଠି ଯେଉଁ ପଣ୍ଡା ଗୁମାସ୍ତାମାନେ ଥୋପ ରଖି ଜଗିଥାନ୍ତି, ତାଙ୍କଠୁ ମୁକୁଳିବା ସହଜ ନୁହେଁ ।

ଓଡିଶା ନାଁ ଠିକଣା ଶୁଣିଲା ପରେ ଜଣଏ ତାଙ୍କ ଡେଣା ଧରି ଆଉ ଜଣକୁ ସମର୍ପି ଦେଲା । ସେ ଜଣକ ଥିଲା ଗୁମାସ୍ତା । ପଣ୍ଡାପୁରୋହିତ ଅଲଗା । ସେମାନେ ଏତେବାଟ ଷ୍ଟେସନ୍‌କୁ ଆସନ୍ତି ନାହିଁ । ହଁ, ସେମିତି ରାଜା ରାଜୁଡା ଯଜମାନ ଆସିଲେ ଆଗରୁ ତାଙ୍କ ପାଖକୁ ଖବର ଦିଆ ଯାଇଥାଏ । ସେମାନେ ପାଟ ଯୋଡ ପିନ୍ଧି ହାଜର ରହିଥାନ୍ତି ।

ଗୁମାସ୍ତା ତାଙ୍କୁ ଗୋଟିଏ ଘୋଡା ଗାଡିରେ ବସେଇଲା । ଅପର୍ଛନିଆ ଗାଡି, ଫୁରକୁଟିଆ ଗନ୍ଧ ।

ସେ ଯେଉଁଠି ଯାଇ ଓହ୍ଲେଇଲେ ସେଇଟା ଗୋଟାଏ ପୁରୁଣା ଦି'ତାଲା କୋଠା । ବଡ ବଡ ପଥର ଖୁଣ୍ଟି; ପଥର ଚଟାଣ । ଖୁବ୍ ପୁରୁଣା ଖାନ୍‌ଦାନ୍, ସେହିପରି ପୁରୁଣା ବ୍ୟବସାୟ । ବାଟଘରଟି ମୁସାଫିରଖାନା ପରି । ଖଣ୍ଡିଏ ଚୌକି, ଗୋଟିଏ ତକ୍ତା, ଗୋଟିଏ ବେଞ୍ଚ । ଯେ ଯୋଉଠି ବସିଗଲା ।

ଅଗଣା ଆଡୁ ମାଲିକଙ୍କ ପାଟି ଶୁଭିଲା ।

"ଆରେ ଓ ମିଶରବା କଉନ ମୁଲକ୍ କେ କହିନ୍ ରେ ?"

"ଉରିସା ପଣ୍ଡିତ ଜୀ ଜଗଦୀଶ ଧାମ୍‌କା !"

ସାଲୁକନାରେ ଗୁଡିଆ ହେଇଥିବା ହଳଦିଆ କାଗଜର ପାଞ୍ଜି ବିଡା । ମାରବାଡିଆ ଖାତା ପରି ଲମ୍ବା । ତାକୁ ଧରି ଅଧାଡିଆ ମଣିଷଟିଏ ଆସି ଠିଆ ହେଲେ । ସେଇ ବୋଧେ ପଣ୍ଡିତ ଜୀ । ଘିଅଖିଆ ଗୋଟାଳ ଚେହେରା, ପାନଖିଆ ପାଟି, ଚକାମୁହଁ ।

ସିଦ୍ଧନାଥ ହାତଯୋଡି ଠିଆହେଲେ ।

ପଣ୍ଡିତ ଜୀ ଗୁମାସ୍ତାକୁ ଗ୍ୱହିଁଲେ । ଉଭୟେ ଗ୍ୱହିଁଲେ ସିଦ୍ଧନାଥଙ୍କୁ ପାଦଠୁଁ ମୁଣ୍ଡଯାଏଁ ।

ଗୁମାସ୍ତା ବୁଝିଗଲା ପରି କହିଲେ –

"ଆରେ ପଣ୍ଡିତ ଜୀ ଆହି ରାଇନ୍ । ପାଓଁଲାଗି ହୋ ବାବୁ ।"

ସିଦ୍ଧନାଥ ନଇଁ ପଡି ସେଇ ଦିଗରେ ହାତ ବଢେଇଲେ ।

ପ୍ରସନ୍ନ ମୁଦ୍ରାରେ ପଣ୍ଡିତ ଜୀ ତାଙ୍କ ମୁଣ୍ଡ ଉପରେ ହାତ ବୁଲେଇ ଦେଇ ପଟା ଖଟ ଉପରେ ଚକାପକେଇ ପାଞ୍ଜି ଫିଟେଇଲେ ।

"ଆପ୍‌କେ ସ୍ୱର୍ଗବାସୀ ପିତାକା ନାମ କ୍ୟା ବତାୟା ?"

"ଭୁବନେଶ୍ୱର ଗନ୍ତାୟତ !"

"ଆଚ୍ଛା ।"

ପତ୍ର ପରେ ପତ୍ର ଲେଉଟିଲା । ଗୋଟାଏ ଚିହ୍ନ ଠଉ ପୁଣି ଫେରି ଆସିଲା ମୂଳକୁ ।

ସିଦ୍ଧନାଥଙ୍କ ଶଙ୍କା ହଉଥିଲା ତାଙ୍କ ବାପାଙ୍କ ନାଁ ଧର ଯଦି ସେ ପାଞ୍ଜିରେ ନ ମିଳେ ?... ନମିଳୁ । ନୂଆ କରି ଖାତା ଖୋଲାଯିବ ।

କିନ୍ତୁ ସିଦ୍ଧନାଥ ଶୁଣିଛନ୍ତି ତାଙ୍କ ପିଲାଦିନେ ଯେ ବାପା ମା' ଦି'ଜଣ ଆସିଥିଲେ ଗୟା । ଏଠି ପିତୃଶ୍ରାଦ୍ଧ କରି ଫେରିଲା ପରେ ସିଦ୍ଧନାଥ ଜନ୍ମ ହେଇଥିଲେ ।

"ହାଁ, ୟେ ରହି – ଭୁବ୍‌ନେସର ଗାଁଟତ୍, ବାପ୍ ପୀତ୍‌ବାସ ଗାଁଟତ୍ ଗାଁଓ ଲଛିପୁର, ୟହି ହେ ନ ?"

"ଜୀ ହାଁ ।"

ପରମ ସନ୍ତୋଷରେ ଟହଟହ ପାନଖିଆ ହସ !

"ଅରେ ୟେ ତୋ ଚିତ୍ରଗୁପ୍ତ କି ପଞ୍ଜି ହେ । ୟହା ନ ମିଲ୍‌ବେ କଇସେ ? ଅବ୍ ଆପ୍‌କା ନାମ୍ ଚଢେଗା ଇକ୍‌ତିଶ ସାଲ କେ ବାଦ୍ ।" ଠିକ୍ କଥା । ସିଦ୍ଧନାଥକୁ ବର୍ତ୍ତମାନ ତିରିଶ ଚାଲିଛି ।

"ଅବ୍ ଆଇୟେ ୟଜ୍‌ମାନା । ଆପ୍‌କୋ କମରା ଦିଖା ଦେତେ ହେଁ । ଅରେ ମିଶର ବା ୟେ ତୋ ନୌକରୀ କରତେ ହେଁ ନ, ଅଫିସର ହେଁ । ଇନ୍‌କୋ ନଉ ନମ୍ବର ମେ ରଖନେ କା ବନ୍ଦୋବସ୍ତ କର ଦୋ ।"

ନ' ନମ୍ବର ବଖରା । ଗୋଟିଏ ପଂଖା । ଗୋଟିଏ ଲାଇଟ୍ । ଗୋଟିଏ ଖଟ । ଛୋଟିଆ ବଖରାଟିଏ । ଝଡାଝଡି ହେଇ ବେଶ୍ ପରିଷ୍କାର ।

ଗଦି ଚାଦର ତକିଆ ଜଣେ ଆଣିଦେଲା । ବାଲ୍‌ତି ଲୋଟା ଆଣିଦେଲା । ରାତିରେ କ'ଣ ଖାଇବା କଥା ବୁଝି ଦେଇଗଲା ।

ବେଶ୍ ବଢିଆ ତ ! – ମନ୍ଦ କ'ଣ ?

କବାଟ ବନ୍ଦ କରିଦେଲେ ନିବୁଜ୍ ହାଣ୍ଡିପରି ସେ ବଖରା । ଆଶ୍ଚର୍ଯ୍ୟ କଥା ଖଟରେ ପଡୁ ପଡୁ ସିଦ୍ଧନାଥ ଖୁବ୍ ନିଶ୍ଚିନ୍ତ ବୋଧକଲେ । କୋଉଠି କିଛି ପାଟିତୁଣ୍ଡ ନାହିଁ । ପୁରୁଣା ପଙ୍ଖାରୁ ଅଳ୍ପଟିକିଏ ଆବାଜ୍ ବିଶେଷ ଅସୁବିଧା କରୁ ନଥିଲା । ମନେହେଲା ସିଦ୍ଧନାଥ ମୁଣ୍ଡ ଉପରୁ ଖୁବ୍ ବଡ ବୋଝଟିଏ ଓହ୍ଲେଇ ଗଲା । ରାତି ପାହିଲେ ସବୁ ଅଡୁଆ ଛିଣ୍ଡିଯିବ !...

ଏଇଭଳି ତାଙ୍କ ବାପମା ବୋଧେ ଆସିଥିବେ । ଏଇଠି କୋଉଠି ରହିଥିବେ । "ଆଚ୍ଛା ସେମାନେ ଏଇ ନ' ନମ୍ବର ବଖରାରେ ଥିଲେ କି ଆଉ ?" କେଜାଣି ! ସିଦ୍ଧନାଥଙ୍କ ମନ ପ୍ରାଣ ଶରୀର ସ୍ଥିର ଲାଗୁଥିଲା । ତାକୁ ବହୁକାଳ ଅନ୍ତେ ସତେ ବା କିଏ ଲାଳନ କରୁଥିଲା । କଥାକଥାକେ କୋଳେଇ ନେଉଥିବା, ଆଦର କରୁଥିବା, ଲୁହରେ ଓଦା ସରସର ଦୁଃଖିନୀ ନାରୀ ମୂର୍ତ୍ତିଟିଏ ତାଙ୍କର ମନେ ପଡିଲା । ପୁଣିଥରେ ମା' ବୋଲି ଡାକିବାକୁ ଇଚ୍ଛା ହେଲା । କିନ୍ତୁ କଥା କଥାକେ ଜଳି ଉଠୁଥିବା, ଦେଖିବା ମାତ୍ରେ ବାଡଉଥିବା, ଗର୍ଜୁଥିବା, ଦୁମ୍‌ଦୁମ୍ ଚାଲୁଥିବା, ଗୋଟାଏ ଷଣ୍ଢା ମଣିଷ ମନେପଡିଲା । ମନେ ପଡିଲା ବାରମ୍ବାର ଆଖି ଭିତରେ ଟଳମଳ ହେଉଥିବା କବନ୍ଧ ଓ କଟାମୁଣ୍ଡ । ଅସୁସ୍ଥ ଲାଗିଲା । ଡର ମାଡିଲା । ଇଚ୍ଛା ହେଲାନାହିଁ ବାପ ବୋଲି ଡାକିବାକୁ ।

ଏମିତି ଏମିତି ନିଆଁରେ ପାଣିରେ କିଛି ସମୟ ପହଁରିଲା ପରେ ସିଦ୍ଧନାଥ ଶୋଇଗଲେ । ବୋଧହୁଏ ଦୁର୍ଘଟନାର ଖବର ପାଇବାପରେ ପ୍ରଥମ ଥର ପାଇଁ ସେ ଶୋଇଗଲେ । ଗଭୀର ଶାନ୍ତିର

ନିଦ ।

ସକାଳୁ ଗଦାଧରଙ୍କୁ ସ୍ମରଣ କରି ଉଠିଲେ । ଗଦାଧର ଗୟାର କ୍ଷେତ୍ରାଧିପତି । ନିତ୍ୟକର୍ମ ସରିଲା । ସିଦ୍ଧନାଥ ଖୁବ୍ ହାଲୁକା, ଖୁବ୍ ପ୍ରସନ୍ନବୋଧ କରୁଥାନ୍ତି । ଗାଧୋଇ ସାରି ଧୋତି ପିଂଧି ମୁଣ୍ଡରେ ଓଦା ଗାମୁଛା ପକେଇ ସେ କୂଅମୂଳେ ପାଣି କାଢୁଥାନ୍ତି । ଗୁମାସ୍ତା ଆସି ତାଙ୍କ ପାଖରେ ଠକ୍ କିନା ଠିଆ ରହିଗଲା । ତାଙ୍କୁ ଅନେଇ ରହିଲା କଟମଟ ।

ସିଦ୍ଧନାଥ ତାକୁ ଚାହିଁ ଅଳ୍ପ ହସିଲେ । ସେ ଛାନିଆ ହେଲା ପରି ତରବର ବୁଲିପଡି ଚାଲିଗଲା ।

ବଡ ବିଚିତ୍ର ଜୀବ ଗୁଡିଏ ଏମାନେ ଭାବିଲେ ସିଦ୍ଧନାଥ । କିଛି ସମୟ ପରେ ଗୁମାସ୍ତା ଆଉ ଜଣକୁ ସାଙ୍ଗରେ ନେଇ ଆସି ପହଞ୍ଚିଲା । ସେମାନେ ସିଦ୍ଧନାଥଙ୍କୁ ଦେଖୁଥାନ୍ତି । ତାଙ୍କ ଭିତରେ କ'ଣ କଥା ହଉଥାନ୍ତି । ତାଙ୍କର ଭାରି କୌତୁହଳ ହେଲା ।

ପଚାରିଲେ, "କ୍ୟା ବାତ୍ ହୈ"

"ଅରେ କୁଛ୍ ନହି, କୁଛ ଭି ନହିଁ । ହମ୍ ଦେଖ୍ ରହେଥେ ୟେ ଧୋତି ମେ ଆପ୍ କିତ୍‌ନେ ଅଚ୍ଛେ ଲଗ୍‌ତେ ହୈ! ଆପ୍ ତୋ ବଙ୍ଗାଲି ଜୈସା ପହନ୍ ତେ ହୈଁ । ହମ୍ ଜୈସେ ପହନେ ତୋ ଔର ଅଚ୍ଛେ ଲଗେଙ୍ଗେ ।"

"ଅରେ, ପହନାଇ ଦୋ ନାଁ ।"

ସିଦ୍ଧନାଥଙ୍କୁ ଗୁମାସ୍ତା ଡାହାଣ କଚ୍ଛା ମାରି ପିନ୍ଧିବା ବତେଇ ଦେଲା । ଦୁହେଁ ତାଙ୍କୁ କାବା ହେଲାପରି କିଛି ସମୟ ଚାହିଁ ରହିଲେ, ତା'ପରେ କିଛି ନ କହି ଚାଲିଗଲେ ।

ସିଦ୍ଧନାଥଙ୍କୁ କଥାଟା କେମିତି ଅସାଭାବିକ ମନେହେଲା । ହେଲେ ବେଳ କାହିଁ ଭାବିବାକୁ ?

ସେମାନେ ସହଳ ବାହାରି ପଡିଲେ । ଯଜମାନ, ପୁରୋହିତ ଆଉ ଗୁମାସ୍ତା । ହଜାରେ ପ୍ରକାର ଜିନିଷର ତାଲିକା । ହଜାରେ ଆୟୋଜନ କିନ୍ତୁ ସବୁ ଖଞ୍ଜି ହୋଇ ରହିଥାଏ ଯେମିତି । କୋଉଠି କିଛି ଅଭାବ ନାହିଁ ।

ମନେ ହେଉଥାଏ ସେଦିନ ଗୁମାସ୍ତା ତାଙ୍କୁ ଟିକିଏ ଅଧିକ ଖାତିର କରୁଥାଏ । ପଣ୍ଡିତ ଜୀ କଥା କଥାକେ ପିଠିରେ ହାତ ପକେଇ ଆପଣାପଣ ପ୍ରକାଶ କରୁଥାନ୍ତି । ଯେତେବେଳେ ଦେଖିଲେ ସେ ଦୁହେଁ ତାଙ୍କୁ ଅନାଇଁ ରହିଥାନ୍ତି ।

ଘାଟକୁ ଯିବା ଆଗରୁ ପଣ୍ଡିତ ଜୀ ସିଦ୍ଧନାଥଙ୍କ ଡେଣାଧରି ଭିତର ଆଡେ ମୁହାଁଇଲେ ।

ତାଙ୍କ ଖାସ୍ ବୈଠକଖାନାରେ ଗାଲିଚା ଗଦ୍‌ଦି ଖୁବ୍ ଦାମୀ । କାନ୍ଥରେ ତୈଳଚିତ୍ର ଗୁଡିକ ଖୁବ୍ ଦାମୀ ।

"ଆପ୍ ଜରା ୟହିଁ ବିରାଜିଏ । ହମ୍ ଅଭି ଆଏ ।"

ସିଦ୍ଧନାଥଙ୍କ ସାମ୍ନା କାନ୍ଥରେ ଯେଉଁ ତୈଳଚିତ୍ରଟି ଥିଲା, ଦେଖୁ ଦେଖୁ ତାଙ୍କୁ ଭଲ ଲାଗିଗଲା । ପ୍ରାୟ ଚାଳିଶ ପଞ୍ଚାଳିଶ ବର୍ଷର ଜଣେ ଭାରି ତେଜୀୟାନ୍ ପୁରୁଷ । ଚମତ୍କାର ଚେହେରା । ଚମତ୍କାର ବ୍ୟକ୍ତିତ୍ୱ ।

ପଣ୍ଡିତ ବି ଆସି ସିଦ୍ଧନାଥଙ୍କୁ ବୁଝାଇବା ପାଇଁ କହିଲେ,

"ୟେ ହୈ ହମାରେ ପିତୃଦେବ । ୟେ ଚିତ୍ର କରିବ୍ ତିଶ୍ ସାଲ୍ ପୁରାନା । ଓ ହାଲ୍ ହିଁ ମେ ଗୁଜର୍‌ଗୟେ ।... ତୋ ପଧାରିୟେ ଯଜମାନ୍ ଅବ ଚଲେଁ ।"

ସିଦ୍ଧନାଥ ବୈଠକଖାନା ଦୁଆର ମୁହଁରୁ ପୁଣିଥରେ ଲେଉଟି ସେ ଚିତ୍ରଆଡେ ଚାହିଁଦେଲେ । ସେ ଜାଣିପାରିଲେ ନାହିଁ ଯେ ଗୁମାସ୍ତା ତାଙ୍କୁ ଲକ୍ଷ୍ୟ କରୁଥିଲା ।

"ଘାଟ ଉପରେ ପଣ୍ଡିତ ଜୀ ପାଟଧୋତି ଦୋସଡା, ଦୁଇସୋରା ବଡ ପଗଡ ରୁଦ୍ରାକ୍ଷ କପାଳରେ ତ୍ରିପୁଣ୍ଡ୍ର ମାରି ଆସନରେ ବସି ଗଲାରୁ ସିଦ୍ଧନାଥଙ୍କ ମନେହେଲା ଯାହାଙ୍କୁ ପୂର୍ବଦିନ ପାଞ୍ଜି ଫିଟେଇବା ଦେଖିଥିଲେ ସେ ଏ ନୁହନ୍ତି । ଏ ଘାଟ ଉପରେ ଯେ ଆସନରେ ଚକା ପକାଇ ବସିଛନ୍ତି ସେ ଆଦେଶ ଦେଲେ ପିତୃପୁରୁଷ ଓହ୍ଲେଇ ଆସିବେ, ଇନ୍ଦ୍ର ଚନ୍ଦ୍ର ଓହ୍ଲେଇ ଆସିବେ ।"

ଶ୍ରଦ୍ଧାରେ ସିଦ୍ଧନାଥଙ୍କ ମୁଣ୍ଡ ନଇଁଗଲା ।

ପତ୍ରମାନଙ୍କରେ ଅଟା ଗୋଟାଳି ରଖା ହେଉଥାଏ । ପାତ୍ରୀରେ ପାଣି ଟେକା ଯାଉଥାଏ । ଚନ୍ଦନ ଫୁଲ ଛିଞ୍ଚା ଯାଉଥାଏ । ଗହ ଗହ ମନ୍ତ୍ରପାଠ ହେଉଥାଏ । ଏ ସମସ୍ତ ଲୌକିକ କର୍ମ ସେ ନାଦ-କମ୍ପନ ଭିତରେ ଅଲୌକିକ ମନେ ହଉଥାଏ ।

ସେତେବେଳକୁ ବେଶ୍ ଖରା ହୋଇ ସାରିଥାଏ । ପଣ୍ଡିତଜୀଙ୍କ କପାଳ, ବେକ, ବୁକୁ, ତ୍ୱଚାରୁ ଝାଳ ନିଗିଡି ଯାଉଥାଏ । ସିଦ୍ଧନାଥଙ୍କ ଦୋସଡା ଓଦା ହୋଇ ସାରିଥାଏ ।

କେଜାଣି କାହିଁକି ସିଦ୍ଧନାଥ ଖୁବ୍ କ୍ଲାନ୍ତ ବୋଧ କରୁଥାନ୍ତି । ତାଙ୍କୁ ଶୋଷ କରୁଥାଏ । ଦେହରୁ ସାର ନିଗିଡି ଗଲା ପରି ଲାଗୁଥାଏ ।

ପଣ୍ଡିତଜୀ କହିଲେ, "ଯଜମାନେ ଅବ୍ ଆପ୍‌କେ ସ୍ୱର୍ଗବାସୀ ପିତୃଦେବ କେ ସ୍ମରଣ କରକେ ଏ ଜଲ୍‌ତିଲ ଉଠାଇଏ । ମେରେ ସାଥ୍ କହିଏ ଶାଣ୍ଡିଲ୍ୟ ଗୋତ୍ରସ୍ୟ ଅସ୍ମତ ପିତା ଭୁବନେଶ୍ୱର ଗଁତୟତ୍" ସିଦ୍ଧନାଥଙ୍କ ଓଠ କମ୍ପୁଥାଏ; ହାତ କମ୍ପୁଥାଏ । ତାଙ୍କୁ କେବଳ ସେ କବନ୍ଧ ଭର୍ତ୍ତି ହୋଇଥିବା ଅଖା ହିଁ ଦିଶୁଥାଏ । ତାଙ୍କ ଭିତରେ କେମିତି ଲେଉଟିଲା ପରି ଲାଗିଲା । ଅଇ ଟେକିଲା । ଅନ୍ଧାର ମାଡିଗଲା... ଆଖି ଉପରକୁ । ମୁହୂର୍ତ୍ତକର ସ୍ୱପ୍ନ ପରି ବୈଠକଖାନାର ସେ ତୈଳଚିତ୍ର ଦିଶିଗଲା । ଝଲମଲ ଜୀବନ୍ତ ।

ପଣ୍ଡିତ କହିଲେ "ଜଲ୍‌ତିଲ୍ ଡାଲ୍ ଦିଜିଏ ।"

ତମ୍ବା ପାତ୍ରୀରୁ ପାଣି ଢାଳିଲାବେଳେ ସିଦ୍ଧନାଥଙ୍କୁ ସେ ତୈଳଚିତ୍ର ହିଁ ଆବିଷ୍ଟ କରି ରଖିଥାଏ ।

ପିଣ୍ଡଦାନ ବେଳେ ସିଦ୍ଧନାଥଙ୍କୁ ବାରମ୍ବାର ଏପରି କହିବାକୁ ପଡିଲା । କିନ୍ତୁ ତାଙ୍କ ମାନସ କଳ୍ପନାରେ ବାରମ୍ବାର ମଡେଇ ହୋଇ ପଡୁଥିଲା ସେ ଚିତ୍ର । ତାଙ୍କୁ ଦୁର୍ବଳ ଲାଗୁଥିଲା । ଯାହା ହେଲେ ବି ପ୍ରତିବାଦ କରିବାର ବଳ ଖଟୁ ନଥିଲା ।

ମା'ଙ୍କୁ ସ୍ମରଣ କରି ପୁଣି ପିଣ୍ଡଦାନ କ୍ରିୟା ଆରମ୍ଭ ହେଲା । ଅତ୍ୟନ୍ତ ପ୍ରାଞ୍ଜଳ, ଚଳପ୍ରଚଳ ହେଲାପରି ମା' ମନେ ପଡିଯାଉଥିଲା । ସିଦ୍ଧନାଥଙ୍କ ରୋମ ଟାଙ୍କୁରି ଯାଉଥିଲା । ସେଇ କେତେ

ସମୟ ମା' ତାକୁ ଚାହିଁ ରହିଥିଲା – ତା' ଆଖିରୁ ଲୁହଧାର ଝରି ଯାଉଥିଲା । ସିଦ୍ଧନାଥ ପାତ୍ରୀରେ ଜଳତିଳ ଟେକି ଦଉଥିଲେ, ପିଣ୍ଡଟେକି ଦଉଥିଲେ...

"ଅବ୍ ଉଠିୟେ ଯଜ୍‌ମାନ୍ । କର୍ମ ସମାପ୍ତ ହୁଆ ।"

ଗୁମାସ୍ତା ସେ ପାଖରେ ନଇଁ ପଡି ଖୁବ୍ ସନ୍ତର୍ପଣରେ କହିଲା, "ଦକ୍ଷିଣା ଦେକର ପାଁଓ ଲାଗି ହୋଇଏ"

"ଅରେ ଇନ୍‌କୋ ୟେ ସବ୍; କେୟାଁ ବତାତେ ହୋ ? ୟେ ତୋ ହମାରେ ଅପ୍‌ନେ ହି ସମ୍‌ଝେ ।"

ସିଦ୍ଧନାଥ ଚମକିଲା ପରି ଅଣ୍ଟାରୁ ଗୋଟିଏ ଶହେଟଙ୍କି ନୋଟ୍ ପଣ୍ଡିତଙ୍କ ପାଦ ଉପରେ ରଖି ମୁଣ୍ଡିଆ ମାରିଲେ ।

ପଣ୍ଡିତ ମୁଣ୍ଡ ଉପରେ ହାତ ରଖି 'ଉଠୋ ଯଜମାନ୍, ହମ୍ କୋ ଆପ୍‌ସେ କୁଛ ନହିଁ ଲେନା ହୈ । ଆଜ୍ ତୋ ଏ ଶ୍ରାଦ୍ଧ ମେ ହମାରେ ପିତୃପୁରୁଷ ହି ତୃପ୍ତି ନଜର ଆତେ ହୈ ।'

ଘାଟରୁ ଫେରିବା ରାସ୍ତାରେ ସିଦ୍ଧନାଥ ଏକୁଟିଆ ଗୋଟିଏ ରିକ୍ସାରେ ବସିଥାନ୍ତି । ଆସ୍ତେ ତାଙ୍କ ଉପରୁ କୁହୁଡିଟାଏ ଘୁଞ୍ଚିଗଲା ପରି ଲାଗିଲା । ସେ ମୋହ ନିଦ୍ରାରୁ ଉଠିଲା ପରି ବୋଧକଲେ । ଆଖି ମଟମଟ କରି ଚାହିଁଲେ । ସବୁ ମନେ ପଡିଲା । ତାଙ୍କ ବୁକୁ ଦାଉଁ ଦାଉଁ ପଡିଲା । ସକାଳୁ ସେତେବେଳଯାଏଁ ଯାହା ଯାହା ଘଟିଥିଲା, ସବୁ ହଠାତ୍ ଯୋଡି ହୋଇଗଲା ।

ନିଧିକକାଙ୍କ ସ୍ୱର ଶୁଭିଲା "ଗୟାରେ ପିଣ୍ଡ ଦେଲେ ପିତୃପୁରୁଷ ତାକୁ ପ୍ରତ୍ୟକ୍ଷରେ ପାଆନ୍ତି... ସେମାନେ ବେଳେବେଳେ ପ୍ରକଟ ହୋଇଥାନ୍ତି ।"

ସେ ତୈଳଚିତ୍ର ତେବେ କାହାର ? ?

ସିଦ୍ଧନାଥଙ୍କ ଭିତରେ ମନ୍ଥି ହୋଇ ଯାଉଥିଲା । ଆଖିରୁ ଧାର ଧାର ନିଆଁ ଝରି ଯାଉଥିଲା । ସେ ମୁହଁ ଘୋଡେଇ ତାଙ୍କ ଜୀବନର ଆଦି ପ୍ରଶ୍ନକୁ ଏଡାଇ ପାରୁନଥିଲେ । ଜୀବନର ଅସଂଖ୍ୟ ରହସ୍ୟମୟ ଘଟଣା ଦୁର୍ଘଟଣାର ଏତେ ସହଜ ସମାଧାନକୁ ମଧ ସାହସରେ ଚାହିଁ ପାରୁ ନଥିଲେ ।

ଆକାଶରେ ମଧାହ୍ନ ସୂର୍ଯ୍ୟ ଜଳୁଥିଲା । ସିଦ୍ଧନାଥ ଅଗ୍ନିସ୍ନାନ କରୁଥିଲେ ନୀରବ, ଅସହାୟ ।



## ପ୍ରାରବ୍ଧ

ମିଶନ କଲୋନୀର ପରିଚିତ ଘର, ବଗିଚ଼ା ଓ ଆମ୍ବଗଛକୁ ଅପରିଚିତ ଭଙ୍ଗୀରେ ସେ ଦେଖନ୍ତି ନାହିଁ । ସେମିତି କେହି ବି ଦେଖନ୍ତି ନାହିଁ ।

କିନ୍ତୁ ତାଙ୍କୁ ସେହିଭଳି ଦେଖାଯାଏ ।

ସବୁବେଳେ ନୁହେଁ, କେବେ କେମିତି ନିରୋଳା ଦ୍ୱିପ୍ରହର ଧୂପକାଠି ପରି କୁହୁଳୁ ଥିବା ବେଳେ ତାଙ୍କ ଚ଼ାରିପାଖେ ସବୁ କେମିତି ତରଳି ଗଲା ପରି ରୂପାନ୍ତରିତ, କଳାନ୍ତରିତ ହୋଇଯାଏ ।

ସେ ନିଜେ ବି ଆଉ ଜଣେ କିଏ ହୋଇଗଲା ପରି ଅନୁଭବ କରନ୍ତି । ତେଣିକି ହୁଏତ ଆଉ କୋଉ ଦେଶରେ, ଆଉ କୋଉ କାଳରେ କେବେ ନ ଦେଖିଥିବା, କେବେ ନ ଚିହ୍ନିଥିବା ଲୋକ ସବୁ ତାଙ୍କୁ ଆସି ବେଢ଼ି ଯାଆନ୍ତି ।

ସେ ଜାଣିଛନ୍ତି ଯେ ସେପରି ଯାହା ଘଟେ ସେଇଟା ଅସ୍ୱାଭାବିକ ।

ଶହେବର୍ଷ ତଳେ ସେଇ ଘରେ ଫାଦର ଉଇଲିୟମ୍ ରହୁଥିଲେ । ସେ ଏବେ କାଗଜପତ୍ର ଘାଣ୍ଟି ସେ କଥା ବାହାର କରିଛନ୍ତି ।

କିନ୍ତୁ ଫାଦର୍ ଉଇଲିୟମ୍ ଏଠି ରହି କେମିତି କ'ଣ କରୁଥିଲେ କେହି ଜାଣନ୍ତି ନାହିଁ ।

କେବଳ ସେ ହିଁ ଜାଣନ୍ତି । କାରଣ ଯେତେବେଳେ ସେ ଅସ୍ୱାଭାବିକ ଘଟଣା ଘଟେ ସେତେବେଳେ କାନ୍ଥବାଡ ଆସବାବ ପତ୍ର ସବୁ ବଦଳିଯାଏ । ଘର ସାମ୍ନାରେ ଖାଲି ଜାଗାଟାରେ ମଧମ ଧରଣ ତେନ୍ତୁଳି ଗଛଟାଏ ଦେଖାଯାଏ ଏବଂ ସେ ନିଜେ ସେ ଗଛଟାକୁ ଲୋକ ଲଗେଇ ହଣେଇବାର ଦେଖାଯାଏ । ଫାଦର ଉଇଲିୟମ୍ ହିଁ ତାକୁ ହଣାନ୍ତି । ସେ ସେତେବେଳେ ଅନୁଭବ କରନ୍ତି ଯେ ସେ ହିଁ ଫାଦର୍ ଉଇଲିୟମ୍ ।

ଅତି ସ୍ୱଚ୍ଛ ପ୍ରାଞ୍ଜଳ ଦୃଶ୍ୟ । ପ୍ରାଞ୍ଜଳ ଅନୁଭବ । ସେ କଥା ସେ କାହାକୁ ଖୋଲି କହି ପାରନ୍ତି ନାହିଁ । ତାଙ୍କର କିନ୍ତୁ ଅସ୍ୱୀକାର କରିବାର ଉପାୟ ନାହିଁ ଯେ ସେ ହିଁ ଶହେ ବର୍ଷ ତଳେ ଫାଦର ଉଇଲିୟମ୍ ରୂପରେ ଏଇ ଘରେ ଥିଲେ ।

ସେଥିପାଇଁ ତ ତାଙ୍କ ପାଇଁ ଏମିତି ଦୁର୍ନିବାର ଆକର୍ଷଣ !

କିନ୍ତୁ ସେ କେମିତି କହି ପାରିବେ ଯେ ତାଙ୍କର ପୁନର୍ଜନ୍ମ ହୋଇଛି ଏବଂ ପୂର୍ବଜନ୍ମରେ ସେ ଫାଦର୍ ଉଇଲିୟମ୍ ଥିଲେ ।

ନାଥାନିଏଲ୍ ସ୍ଲୋନ୍ ଅତ୍ୟନ୍ତ ଧର୍ମଭୀରୁ । ଧର୍ମଗ୍ରନ୍ଥ ଯାହା କହିଛି ତାହା ତାଙ୍କ ପାଇଁ ଅକାଟ୍ୟ । କିନ୍ତୁ ସେ ଅନୁଭବ । ତାକୁ ବା କେମିତି ସେ ଅସ୍ୱୀକାର କରି ପାରିବେ ?

ସେ ଯେତିକି ପରିମାଣରେ ଡାକ୍ତର ସ୍ଲୋନ୍ ସେତିକି ପରିମାଣରେ ଫାଦର ଉଇଲିୟମ୍ । ତାଙ୍କ ପାଇଁ ଉଭୟ ପ୍ରତ୍ୟକ୍ଷ ପ୍ରାଞ୍ଜଳ ଅନୁଭବ ।

ସେ ନିଜେ ଜଣେ ସାଇକିଆଟ୍ରିଷ୍ଟ । ତାଙ୍କର ଅନେକ ସମୟରେ ଇଚ୍ଛା ହେଇଛି ସେ ସମସ୍ତ ଅସ୍ୱାଭାବିକ ଅନୁଭବକୁ ଗବେଷଣା ନିବନ୍ଧ ଆକାରରେ କୌଣସି ପତ୍ରିକାରେ ଛାପି ଦେବେ । ପାରି ନାହାନ୍ତି ।

ଶେଷରେ ସ୍ଥିର କରିଛନ୍ତି ଯେ କେତେ ଜଣ ହିନ୍ଦୁଙ୍କୁ ନେଇ ୟା' ଉପରେ ପରୀକ୍ଷା କରିବେ । ହିନ୍ଦୁମାନେ ଅତି ସହଜ ଭାବରେ ପୁନର୍ଜନ୍ମରେ ବିଶ୍ୱାସ କରନ୍ତି ।

ସେଇ ସଂକ୍ରାନ୍ତରେ ଶଶଧର ବାବୁଙ୍କ ସହିତ ତାଙ୍କ ସମ୍ପର୍କ ।

ଶଶଧର ବାବୁ ମଧ ଜଣେ ଡାକ୍ତର । ଅସ୍ଥି ବିଶାରଦ । ସେ ଏମିତି ହଠାତ୍ ଦିନେ ତାଙ୍କ ମନକୁ ଡାକ୍ତର ସ୍ଲୋନଙ୍କ ପାଖରେ ଆସି ପହଞ୍ଚିଲେ ।

ପଚାଶ କିଲୋମିଟର ଦୂରରୁ ବସ୍‌ରେ ଆସି ବାଟ ପଚାରି ପଚାରି ମିଶନ୍ କଲୋନୀରେ ପହଞ୍ଚିଲା ବେଳକୁ ସେ ଖୁବ୍ କ୍ଲାନ୍ତ ଦେଖା ଯାଉଥାନ୍ତି ।

କୌଣସି କାରଣରୁ ଉଦ୍‌ବିଗ୍ନ ବି ଦେଖାଯାଉଥାନ୍ତି ।

ଡାକ୍ତର ସ୍ଲୋନ ପ୍ରାରମ୍ଭିକ ଶିଷ୍ଟାଚାର ପରେ ତାଙ୍କୁ ବୈଠକ ଘରେ କିଛି ସମୟ ଅପେକ୍ଷା କରିବାକୁ କହି ଘର ଭିତରକୁ ଚାଲିଗଲେ ।

ଘରେ ତାଙ୍କର କାମ ନଥିଲା ।

ସେ କେବଳ ତାଙ୍କ ଶୋଇବା ଘର ସୋଫା ଉପରେ ବସି ରହିଲେ ।

ମଝିରେ ମଝିରେ କେବଳ ଘଣ୍ଟାକୁ ଚାହୁଁଥିଲେ ।

ବାହାରେ ସେ ନିରୋଳା ବଗିଚା, ଜାତି ଜାତି ଗଛର ନୀରବ ଉପସ୍ଥିତି, ରହି ରହି ରାବୁଥିବା ପକ୍ଷୀର ଡାକ ଶଶଧର ବାବୁଙ୍କ ଦେହ ମନପ୍ରାଣରୁ କିଛି ଉତ୍ତାପ ଓହ୍ଲେଇ ଦେବ – ଏଇ ଆଶାରେ ସେ ତାଙ୍କୁ ବସେଇ ଦେଇ ଆସିଥିଲେ ।

ପ୍ରାୟ ପନ୍ଦର ମିନିଟ ପରେ ଡ୍ରଇଁ ରୁମ୍‌କୁ ଆସି କହିଲେ (ଇଂରାଜୀରେ ହିଁ କହିଲେ ଯାହାର ପାଖାପାଖି ଓଡିଆ ତର୍ଜମା କରାଯାଇପାରେ) –

"ଡାକ୍ତର ପ୍ରଧାନ, ମୋତେ କ୍ଷମା କରିବେ । ମୋ ପାଇଁ ଆପଣଙ୍କୁ ଅନେକ ବେଳ ଅପେକ୍ଷା କରିବାକୁ ପଡିଲା ।"

"କିଛି ଯାଏ ଆସେ ନାହିଁ, ଡାକ୍ତର ସ୍ଲୋନ୍। ମୁଁ ବେଶ୍ ଆରାମରେ ବସିଥିଲି। ମୋର କୌଣସି ଅସୁବିଧା ହୋଇ ନାହିଁ।"

ଶଶଧର ବାବୁଙ୍କ ମୁହଁ ଆଉ ଆଗଭଳି ଫଣ ଫଣ ଦେଖାଯାଉ ନଥିଲା କି କାନମୁଣ୍ଡା ଉପେର ଶିର ଟଣକି ନଥିଲା।

ଡାକ୍ତର ସ୍ଲୋନ ଖୁବ୍ ସହଜ ଆତ୍ମୀୟ ଢଙ୍ଗରେ ଆଳାପ ଆରମ୍ଭ କରିଥିଲେ।

"ଆପଣ ଚା କଫି କ'ଣ ନେଇଥାନ୍ତେ କି ?"

"ନା' ମୁଁ ଆଗ ଆପଣଙ୍କୁ କହିଦିଏ ମୁଁ କାହିଁକି ଆସିଛି। ଆପଣ ଓଡିଆ ବୁଝିବାରେ ଅସୁବିଧା ହେବ କି ?"

ଡାକ୍ତର ସ୍ଲୋନ୍‌ଙ୍କ ଭୂରୁ ମୁହୂର୍ତ୍ତକ ପାଇଁ କୁଞ୍ଚେଇ ଗଲା, କିନ୍ତୁ ହସର ପଦ୍ମ ପାଖୁଡା ମେଲିଯିବାରୁ ପୁଣି ସହଜ ସ୍ୱାଭାବିକ ହୋଇଗଲା।

"ନା ନା, ଆପଣ କହନ୍ତୁ।"

"ମୁଁ ଜାଣେ, ଆପଣ ଜଣେ ପ୍ରବୀଣ ସାଇକିଆଟ୍ରିଷ୍ଟ। ସେଥିପାଇଁ ମୁଁ ଆପଣଙ୍କ ସାହାଯ୍ୟ ନେବାକୁ ଆସିଛି। – ମାନେ, ମୁଁ ଜାଣିବାକୁ ଚାହୁଁଛି..."

"ହଁ, କହନ୍ତୁ!"

"ଜାଣିବାକୁ ଚାହୁଁଛି କାଳେ ମୋ ଅବଚେତନାରେ କ'ଣ ଲୁଚି ରହିଚି ଯୋଉଥିପାଇଁ ମୁଁ ଏତେ ଦୁଃଖ ଭୋଗୁଚି। ମୋର ଅଶାନ୍ତି, ଆଉ ଦୁଃଖର ସୀମା ନାହିଁ, ଡାକ୍ତର। ମୁଁ, ମାନେ... ରୀତିମତ ଅତ୍ୟାଚରିତ, ମାନେ ଟରଚର୍ଡ ଅନୁଭବ କରୁଚି... ମାନେ... କ'ଣ କହିବି..."

"ଆଛା, ଆଛା, ଆପଣ ପ୍ରଥମେ ଖୁବ୍ ସହଜ ଆଉ ନିଶ୍ଚିନ୍ତ ଅନୁଭବ କରନ୍ତୁ। ଆଦୌ ତରବର ହେବାର ନାହିଁ। ଆପଣ ଆଜି ମୋର ଅତିଥି। ଆମ ହାତରେ ପ୍ରଚୁର ସମୟ ଅଛି। କଥାବାର୍ତ୍ତା ହବା।"

"ଆପଣଙ୍କର ଏ ପରିବେଶ... ଆଉ, ମାନେ... ଆପଣଙ୍କ ଶାନ୍ତ ଚେହେରାକୁ ଦେଖିଲାପରେ ହିଁ ମୁଁ ଅନେକ ସୁସ୍ଥ ବୋଧ କରୁଚି।"

"ଶୁଣି ଖୁସି ହେଲି। ଆପଣ ତା'ହେଲେ ସହର ବଜାର ଗହଳି ଭଲ ପାଆନ୍ତି ନାହିଁ।"

"ହଁ, ପ୍ରାୟ ଭଲ ପାଏ ନାହିଁ।"

"ପିଲା ଦିନୁ ଗାଁରେ ରହିଗଲେ ବୋଧେ।"

"ପିଲା ଦିନ କଥା ଆପଣଙ୍କୁ ଆଉ କ'ଣ କହିବି, ଡାକ୍ତର ସ୍ଲୋନ୍। ସେଇଠାରୁ ହିଁ ମୋ ଦୁଃଖ ଆରମ୍ଭ।"

ତା'ପରେ ପ୍ରାୟ ତଳକୁ ଚାହିଁ, ବଗିଚା ଗଛଆଡେ ଚାହିଁ, ମନକୁ ମନ କଥା ହେଲା ପରି ଶଶଧର ବାବୁ ବଖାଣି ଗଲେ ଯାହା ମନେ ପଡିଲା।

ସେ ସମସ୍ତଙ୍କୁ ସଜାଡି ନେଲେ ପ୍ରାୟ ଏହିପରି ଗୋଟିଏ ଚିତ୍ର ମିଳିଥିଲା ଡାକ୍ତର ସ୍ଲୋନ୍‌ଙ୍କୁ ।

ଶଶଧର ବାବୁ ତାଙ୍କର ପିଲାଦିନ ସାବତ ମା' ପାଖରେ ବିତେଇ ଥିଲେ । ସେଗୁଡିକ ତାଙ୍କର ଗଭୀର ଉଦ୍‌ବେଗ ଓ ଆତଙ୍କର ଦିନ । ସେ ଦିନରାତି ଡରୁଥିଲେ ଏବଂ ଦୁର୍ବଳ ଚଢେଇଟିଏ ପରି ଆଶ୍ରା ଲୋଡୁଥିଲେ ।

ତାଙ୍କୁ ସବୁବେଳେ ଭୋକ କରୁଥିଲା, ଶୀତ କରୁଥିଲା, ଡର ମାଡୁଥିଲା ।

ସାବତ ମା'ର ଚେହେରା ମନେ ନାହିଁ । କିନ୍ତୁ ଗୋଟାଏ ରାଉ ରାଉ ସ୍ୱର ମନେ ଅଛି । ସେଇଟା ହିଁ ବୋଧହୁଏ ସାବତ ମା' ।

ଡାକ୍ତର ସ୍ଲୋନ୍‌ଙ୍କ ନୀଳ ରଙ୍ଗର ଆଖି ଯୋଡିକରେ ଶଶଧର ବାବୁ ବଖାଣୁଥିବା ଦୁଃଖ ପ୍ରତିବିମ୍ବିତ ହେଉଥିଲା ।

"କିନ୍ତୁ ଡକ୍ତର ସ୍ଲୋନ୍ । ମୋର ଦୁଃଖ ସେଇଠି ନଥିଲା । ଥିଲା ଆଉ ଠାଏ । ତାହା ଏବେ ବି ମୋ ପାଇଁ ଏକ ଅଭିଶାପ । କିନ୍ତୁ କ'ଣ କରି ହେବ ସେ ବିଷୟରେ ।"

"ଶଶଧର ବାବୁଙ୍କ ସ୍ୱରର ଅସହାୟତା ।

ସ୍ଲୋନ୍‌ଙ୍କ ସଂବେଦନଶୀଳ ମୁହଁରେ ପ୍ରଶ୍ନ ।

ମୋର ବାପା ହିଁ ମୋ ସମସ୍ୟା ।"

– ସେତେବେଳେ ଯେମିତି, ଏବେ ବି ସେମିତି । ...ମୁଁ ଜାଣେ ଡାକ୍ତର, ସେ ମୋତେ ଭଲ ପାଆନ୍ତି ନାହିଁ । କିନ୍ତୁ କାହିଁକି ଭଲ ପାଆନ୍ତି ନାହିଁ ତାହା ମୋ ପାଇଁ ଏବେ ବି ଏକ ଅସମାହିତ ପ୍ରଶ୍ନ । ...ଆଉ ବି ମୁଁ ଜାଣେ ନାହିଁ କେମିତି ମୋ ମା' ମରିଗଲା । ...ସେ ଯାହା ହେଉ, ମୁଁ ଆପଣଙ୍କୁ ସବୁ କହି ବସିଲେ ତ ପୁରାଣଟାଏ ହବ । ମୋଟା ମୋଟି ଭାବରେ କହୁଛି । ମୋର ଦୃଢ ଧାରଣା ଯେ କୌଣସି ଏକ ଅଜ୍ଞାତ କାରଣରୁ ବାପା ମୋତେ ଅନ୍ତରରୁ ଘୃଣା କରନ୍ତି । ମୁଁ ତାଙ୍କର ପୁଅ ନୁହେଁ ବୋଲି ହୁଏତ ସେ ସନ୍ଦେହ କରି ପାରନ୍ତି । ତାହା ହୋଇଥିଲେ ମୋ ମା' ମରିବାର ଏବଂ ମୋତେ ସେ ଏତେ ଘୃଣା କରିବାର ଗୋଟାଏ ସମାଧାନ ମିଳି ଯାଆନ୍ତା । କିନ୍ତୁ ସେ ସେପରି ସନ୍ଦେହ କରିବାର କୌଣସି ଉପାୟ ନାହିଁ । କାରଣ ଚେହେରାରେ ମୁଁ ବାପାଙ୍କର ଅବିକଳ ନକଲ ।

– ତାହେଲେ, ଏଭଳି ପରିସ୍ଥିତିରେ ସାଧାରଣତଃ ଯାହା ଆମେ ଶୁଣିବାକୁ ପାଇଥାଉ, ସେଇଟା ମୋ କେସ୍‌ରେ ଲାଗୁ ହୋଇପାରିବ ନାହିଁ ।

ଶଶଧର ବାବୁ ଅତ୍ୟନ୍ତ ଆହତ ଓ ବ୍ୟଥିତ ଜଣା ଯାଉଥିଲେ ।

ସ୍ଲୋନ୍ କିନ୍ତୁ ଆଗ ଅପେକ୍ଷା ଅଧିକ ଆଗ୍ରହୀ ଆଉ ଗମ୍ଭୀର ଦିଶୁଥିଲେ ।

"ଆପଣ ଜାଣନ୍ତି ଡାକ୍ତର, ମୋ ବାପା ଜାଣିଶୁଣି ମୋ ପରୀକ୍ଷା ଫିସ୍ ମୋ ସାବତ ଭାଇକୁ ଦେଇଦେଲେ । ସେଥିପାଇଁ ମୁଁ ଜୀବନ ସାରା ବର୍ଷେ ପଛେଇଗଲି ପଢାରେ, ଚାକିରିରେ । ମୁଁ ସେଥିପାଇଁ ତାଙ୍କୁ କ୍ଷମା ଦେଇ ପାରୁନାହିଁ ଡକ୍ତର । ଏ ଅନ୍ୟାୟ ମୁଁ କେବେହେଲେ ଭୁଲି ପାରୁନାହିଁ ।"

ତା'ପରେ ଡକ୍ଟର, ବାପା ତାଙ୍କର ସେ କାର୍ଯ୍ୟ ପାଇଁ କେବେହେଲେ ଦୁଃଖ ପ୍ରକାଶ କରିନାହାନ୍ତି । ଓଲଟି ସାବତ ଭାଇ ପାଇଁ ମୁଁ କିଛି କଲିନାହିଁ ବୋଲି ସବୁବେଳେ ଅଭିଯୋଗ ।...

ଶଶଧର ବାବୁ ଡାକ୍ତର ସ୍ଲୋନ୍‌ଙ୍କୁ ଚାହିଁ ଅଳ୍ପ ହସିଲେ । ଅତି ତିକ୍ତ ଦୁର୍ବହ ଗ୍ଲାନିର ହସ ।

"ତା'ପରେ ଶୁଣନ୍ତୁ ଡାକ୍ତର, ମୋ ସ୍ତ୍ରୀ କଥା । ଯଦି ପୃଥିବୀରେ ପରସ୍ପରକୁ ଭଲ ନ ପାଉଥିବା ଦମ୍ପତିର ଉଦାହରଣ ଆପଣ ନେବାକୁ ଚାହାନ୍ତି ତା'ହେଲେ ଆମ ଦୁଇଜଣଙ୍କୁ ନିଅନ୍ତୁ । ମୁଁ ତାକୁ ବିବାହ ଆଗରୁ ଜାଣି ନଥିଲି କି ଦେଖି ନଥିଲି । ବାପା ହିଁ ସବୁ ସ୍ଥିର କରିଥିଲେ । ବିବାହ ଦିନଠାରୁ ଏ ପର୍ଯ୍ୟନ୍ତ ଆମେ ନାଁକୁ ମାତ୍ର ପତିପତ୍ନୀ..."

ଶଶଧର ବାବୁ ହାବୁକେଇ ଉଠୁଥିବା କୌଣସି ଆବେଗକୁ ଜୋର କରି ଦବେଇ ରଖୁଥାନ୍ତି ।

"ଆମର ପ୍ରତିଦିନ ଝଗଡା ଲାଗି ରହିଛି । ମୁଁ ପ୍ରାୟ ତା'ର ଅତ୍ୟାଚାର ସହି ଚାଲିଛି, କେବଳ ଲୋକ ଲଜ୍ଜା ଡରରେ । ...ଏବେ ଦିନେ ସେ ସେନାପତି ଇଞ୍ଜିନିୟର ସାଙ୍ଗେ ବାହାରି ଗଲା ବୁଲି ଆସିବ ବୋଲି । ମୋ କଥାକୁ ଖାତିର କଲା ନାହିଁ । ବାପା କିଛି କହିଲେ ନାହିଁ । ଶୁଣିଲି ସେ ଇଞ୍ଜିନିଅର ସହିତ ଫରେଷ୍ଟ ଡାକବଙ୍ଗଳାରେ ତିନିଦିନ ରହିଲା..."

ଶଶଧର ବାବୁଙ୍କ ମୁହଁ ରଙ୍ଗ ଜରଜର ଦେଖା ଯାଉଥିଲା । ଆଖିରେ ନିଆଁ ପାଣି ମିଶି ଧୂଆଁ ମାଡି ଯାଉଥିଲା ।

"ସେଇଠୁ ଆସି ସେ ମୋତେ ଚାଲେଞ୍ଜ କଲା – ଯଦି ମର୍ଦଟାଏ ହେଇଚୁ ମତେ ଛାଡପତ୍ର ଦେଇ ଦେ । ତା' ଯଦି ପାରୁନାହୁଁ ପାଟି ଫିଟା ନା !"...

ଶଶଧର ବାବୁ ସମ୍ଭାଳି ନପାରି ସକ୍ ସକ୍ କାନ୍ଦି ପକାଇଲେ ।

ଡାକ୍ତର ସ୍ଲୋନ୍ ବ୍ୟଥିତ ବୋଧକଲେ, କିନ୍ତୁ ଅପେକ୍ଷା କଲେ ।

"ମୁଁ ତାକୁ ପ୍ରଚୁର ଘୃଣା କରେ ଡାକ୍ତର... ଏପରିକି ମୁଁ ତାକୁ ହତ୍ୟା ମଧ କରି ଦେଇପାରେ । କିନ୍ତୁ କିଛି କରିପାରେ ନାହିଁ । କାହିଁକି, ଜାଣନ୍ତି ଡକ୍ତର ? ଏଥିପାଇଁ ଯେ ବାପା ତାକୁ ସବୁବେଳେ ଜଗି ରହିଥାନ୍ତି । ସେ ମୋତେ ବେଜ୍ଜିତ୍ କଲାବେଳେ ପାଟି ଫିଟାନ୍ତି ନାହିଁ । ବରଂ ମୋତେ ଲାଗେ ଯେ ସେ ମୋ ଯନ୍ତ୍ରଣାରେ ଗୋଟାଏ ପ୍ରକାର ଖୁସି ହେଉଥାନ୍ତି... ।"

ଶଶଧର ବାବୁ ହାତ ମୁଠା ମୁଠା କରି ଚୌକି ବାହା ଉପରେ ବିଧା ବସେଇଲେ ।

"ମୁଁ ସେ ବାପଟାକୁ ବି ହତ୍ୟା କରି ଦେଇପାରେ, ଡକ୍ଟର । ସେ ମୋ ବାପ ନୁହେଁ, ମୋ ଶତ୍ରୁ । ସେ ମୋ ମା'କୁ ହୁଏତ ମାରି ଦେଇଚି । ସେ ମୋ ଜୀବନ ସାରା ମୋତେ ଯନ୍ତ୍ରଣା ଦେଇ ଚାଲିଛି । ମୁଁ ଏବେ କେତେ ଦିନ ହେବ ହତ୍ୟା ହିଁ ଦେଖୁଛି ଭିତରେ ବାହାରେ । ମୁଁ ଖୁନ୍ କରିବା ଆଗରୁ ଅକଥ୍ୟ ଯନ୍ତ୍ରଣା ଭୋଗ କରୁଚି ଡକ୍ଟର । ମୋତେ ଆପଣ ବଞ୍ଚାନ୍ତୁ । ନ ହେଲେ ମୁଁ ପାଗଳ ହେଇଯିବି ।"

"ମୁଁ ଭୟରେ ଘୃଣାରେ ଅଥୟ ବୋଧ କରୁଚି । ମୁଁ କାହାକୁ ଡରୁଚି କହି ପାରିବି ନାହିଁ ।

କିନ୍ତୁ ଉଣା ଅଧିକ ସମସ୍ତଙ୍କୁ ବୋଧହୁଏ ଡରୁଚି, ଘୃଣା କରୁଚି, ଅବିଶ୍ୱାସ କରୁଚି । ରାତିରେ ଶୋଇ ପାରୁନାହିଁ । ଦୁଃସ୍ୱପ୍ନ ଦେଖି ଉଠି ବସୁଚି ଝାଳ ସରସର ହୋଇ । ଔଷଧ ଖାଇଲେ ବି ନିଦ ହଉ ନାହିଁ । – ନା, ମୋର ରକ୍ତଚାପ ଆଦି କିଛି ନାହିଁ । ମୁଁ ପରୀକ୍ଷା କରେଇଥିଲି । କିନ୍ତୁ ମୋର ଅଳ୍ପଦିନ ଭିତରେ ହିଁ ହୁଏତ ମୃତ୍ୟୁ ହେଇ ଯାଇପାରେ ।"

"କାଳେ ମୋ ଅବଚେତନାରେ କ'ଣ ଥାଇ ପାରେ । ନହେଲେ ଏପରି ଘୃଣା, ଏପରି ଭୟ, ଅବିଶ୍ୱାସ କୁଆଡୁ ଆସନ୍ତା ? ମୁଁ ସେଇ ରହସ୍ୟ ଫିଟେଇବା ଲାଗି ଆପଣଙ୍କ ପାଖକୁ ଆସିଚି, ଡକ୍ଟର ।"

ଡକ୍ଟର ସ୍ଲୋନ୍ ତଥାପି ଏକ ଲୟରେ ଚାହିଁ ରହିଥାନ୍ତି ଶଶଧର ପ୍ରଧାନଙ୍କୁ ।

ହଠାତ୍ ଅମାୟିକ ହସ ଭିତରେ ଡକ୍ଟର ସ୍ଲୋନ୍ କହିଲେ, "ଆମେ ବର୍ତ୍ତମାନ କପେ ଲେଖାଁ କଫି ପିଇଲେ କେମିତି ହୁଅନ୍ତା, ଡକ୍ଟର ପ୍ରଧାନ ?"

ଉତ୍ତରକୁ ଅପେକ୍ଷା ନରଖି ସେ ପରଦା ଟେକି ଘର ଭିତରକୁ ପଶିଗଲେ । ପାଞ୍ଚ ସାତ ମିନିଟ୍ ଭିତରେ ବାମ୍ପ ବାହାରୁଥିବା ଦୁଇ କପ୍ କଫି ନେଇ ଚାଲି ଆସିଲେ ।

ଶଶଧର ବାବୁ ଠିଆ ହେଇ ପଡିଲେ । ଖୁବ୍ ଅପ୍ରତିଭ ହେଲାପରି ଜଣାଗଲେ ।

"ଆରେ, ଆପଣ ମୋ ପାଇଁ କାହିଁକି ଏତେ କଷ୍ଟ ସ୍ୱୀକାର କରୁଥିଲେ ?"

ତାଙ୍କ ହାତରୁ କଫି କପ୍ ନେଇ କହିଲେ –

"ଆପଣ ଡକ୍ଟର ସ୍ଲୋନ୍... ଆପଣ ବସନ୍ତୁ ପ୍ଲିଜ୍ ।"

କଫି ପିଆ ଭିତରେ ଖୁବ୍ ସହଜ ଭାବରେ ପ୍ରସଙ୍ଗ ବଦଳାଇ ଡକ୍ଟର ସ୍ଲୋନ୍ ପଚାରିଲେ –

ଆଉ କହନ୍ତୁ ଡକ୍ଟର ପ୍ରଧାନ, ଆପଣଙ୍କ ଡାକ୍ତରୀ ବ୍ୟବସାୟୀ କେମିତି ଚାଲିଛି ?

ଶଶଧର ବାବୁ ପ୍ରଶ୍ନଟିର ଉତ୍ତର ଦେବା ପ୍ରୟୋଜନ ମଣିଲେ ନାହିଁ, କାରଣ ତାଙ୍କୁ ସେଇଟା ଅପ୍ରାସଙ୍ଗିକ ମନେ ହେଲା ।

ତଳକୁ ନିଷ୍ପଲକ ଚାହିଁ ସେ କଫି ପିଉଥାନ୍ତି । ସେଇ ଭିତରେ କହିଲେ –

"ମୋତେ ବର୍ତ୍ତମାନ ବି ଅସୁସ୍ଥ ଲାଗୁଚି । ମୁଣ୍ଡ ଖୁବ୍ ଭାରି ଭାରି ଲାଗୁଚି । କ'ଣଟାଏ ମଡେଇ ହେଇ ରହିଲା ପରି ଲାଗୁଚି ।"

ଡକ୍ଟର ସ୍ଲୋନ କଫି କପ ରଖିଦେଇ ଶଶଧର ବାବୁଙ୍କ ଡେଣାଧରି କହିଲେ,

"ଆପଣ ଆସନ୍ତୁ ସାମାନ୍ୟ ରେଷ୍ଟ ନେବେ । ମୋର ମନେ ହେଉଚି ଆପଣଙ୍କ ମେଣ୍ଟାଲ ଟେନ୍‌ସନ୍ ବଢିଯିବାରୁ ସେମିତି ଲାଗୁଚି ।"

"ନା' ନା' ମୁଁ ଠିକ୍ ଅଛି"

ଡାକ୍ତର ସ୍ଲୋନ କିଛି ନ କହି କେବଳ ତାଙ୍କୁ ଠିଆ କରେଇ ଦେଲେ ଏବଂ ବାଧ୍ୟ ଶିଶୁଟି ପରି ପାଖ ବଖରାକୁ କଢେଇ ନେଇଗଲେ ।

ସେତେବେଳେ ସେ ଶଶଧର ବାବୁଙ୍କୁ ଖୁବ୍ ତୀକ୍ଷ୍ଣ ଦୃଷ୍ଟିରେ ଏକାଗ୍ର ଚାହିଁ ରହିଥିଲେ । କଥା କହିଲାବେଳେ ମଧ୍ୟ ସେଥିରେ ଆଉ କ'ଣ ମିଶି ଆଦେଶ ପରି ଶୁଭୁଥିଲା ।

ଶଶଧର ବାବୁ ମଧ୍ୟ ସେମିତି ବିନା ପ୍ରତିବାଦରେ ସବୁ ମାନି ନେବାକୁ ଭଲ ପାଇଲେ । ତାଙ୍କୁ ଲାଗିଲା ଯେ ସେ ଜଣକ ଉପରକୁ ନିଶ୍ଚିନ୍ତ ଆଉଜି ଯାଇ ପାରିବେ ।

ଡକ୍ଟର ସ୍ଲୋନ୍‌ଙ୍କ ହାତମୁଠାରେ ସେ ଗଭୀର ପ୍ରତ୍ୟୟ ଅନୁଭବ କଲେ । ନିଜକୁ ବେଶ୍ ନିରାପଦ ଅନୁଭବ କଲେ ।

ବଖରାଟି ପ୍ରଶସ୍ତ । ଖୁବ୍ ସଫା ତକିଆ ଚାଦର ଲାଗିଥିବା ଖଣ୍ଡିଏ ଖଟ । ପାଖରେ ଗୋଟିଏ ଟେବୁଲ୍ । ଟିକିଏ ଦୂରରେ ଖଣ୍ଡେ ଚୌକି ।

ଶଶଧର ବାବୁଙ୍କୁ ଜଣାଗଲା ଯେ ସେଇଟା ବୋଧହୁଏ ଡକ୍ଟର ସ୍ଲୋନଙ୍କ କ୍ଲିନିକ । ବେଶ୍ ଭଲ ତ ।

ଡକ୍ଟର ସ୍ଲୋନ ସେଇଭଳି ଚାହିଁଥାନ୍ତି । ଶଶଧର ବାବୁଙ୍କୁ ଅତି ଯତ୍ନରେ ଅଥଚ ଅନିବାର୍ଯ୍ୟ ଭାବରେ ନେଇ ସେ ଖଟରେ ଶୁଆଇ ଦେଲେ ।

ଶଶଧର ବାବୁ ଜୋତା ଫିଟାଇ ଗଡି ପଡିଲେ । ଡକ୍ଟର ସ୍ଲୋନ ତାଙ୍କର ଉଷୁମ ପାପୁଲିକୁ ଆସ୍ତେ ଶଶଧର ବାବୁଙ୍କ ଆଖି ଓ କପାଳ ଉପରେ ରଖି ଖୁବ୍ ସ୍ପଷ୍ଟ ଅଥଚ ଧୀର ସ୍ୱରରେ କହିଲେ –

"ଆପଣ କିଛି ସମୟ ଶୋଇଯାଉ ନାହାନ୍ତି ! ହାତ ଗୋଡ ଢିଲା ଛାଡି ଦିଅନ୍ତୁ ।... ଆଖି ସ୍ଥିର କରନ୍ତୁ । ନିଃଶ୍ୱାସ ପୂରା ନିଅନ୍ତୁ । ଛାଡନ୍ତୁ । ବାଆସ, ଆପଣ ବର୍ତ୍ତମାନ ଶୋଇ ଯାଉଛନ୍ତି । ଖୁବ୍ ଗଭୀର ନିଦରେ ଶୋଇ ଯାଉଛନ୍ତି..."

ସତକୁ ସତ ଶଶଧର ବାବୁଙ୍କ କପାଳରୁ ଚିନ୍ତାରେଖା ଲିଭିଗଲା । ସେ ଖୁବ୍ ପ୍ରଶାନ୍ତ ଦେଖାଗଲେ । ଦେଖୁ ଦେଖୁ ସତକୁ ସତ ଶୋଇଗଲେ ।

ଡାକ୍ତର ସ୍ଲୋନ ହାତ ଆସ୍ତେ ଉଠାଇ ନେଇ ତାଙ୍କୁ ଚାହିଁ ରହିଲେ । ତା'ପରେ ସେଇ ଖଟତଳୁ ଡ୍ର ଭିତରୁ ଗୋଟିଏ ଟେପ୍ ରେକର୍ଡର ବାହାର କରି ସେ ଟେବୁଲରେ ରଖିଲେ । ଖୁବ୍ ନିଃଶବ୍ଦରେ ତା'ର ବୋତାମ ଦେଲେ ।

ଗଭୀର ଆସ୍ଥା ଆଣିଲା ଭଳି ଧୀର ସ୍ପଷ୍ଟ ସ୍ୱରରେ କହିଲେ ।

"ଆପଣ ନିଶ୍ଚିନ୍ତ ଶୋଇ ରହନ୍ତୁ । ସହଜ ହୋଇଯାନ୍ତୁ । ମୁଁ ଅଛି, କିଛି ଚିନ୍ତା କରନ୍ତୁ ନାହିଁ ।"

ଶଶଧର ବାବୁଙ୍କ ଆଖିପତା ଆଉ ବିଶେଷ ଥରିଲା ନାହିଁ । ନିଃଶ୍ୱାସ ଖୁବ୍ ହାଲୁକା ବୋଧ ହେଲା ।

"କାଲି ଆପଣ କ'ଣ କରୁଥିଲେ ?"

ଶଶଧର ବାବୁଙ୍କ ଆଖି ଚଞ୍ଚଳ ହୋଇ ଉଠିଲା । ନିଃଶ୍ୱାସ ପତନ ବଢିଗଲା । ସେ ସେମିତି

ଶୋଇରହି ଭୁରୁ କୁଞ୍ଚେଇଲେ । ତାଙ୍କ ନାକପୁଡ଼ା ଫୁଲିଲା ।

ତା'ପରେ ସେ କେମିତି ସାମାନ୍ୟ ନିଦୁଆ ଗହିରିଆ ସରରେ କହିଲେ, –

"ହେ, ସେ ଝିଅଟା ଆସୁଚି, ଡାକ୍ତରଖାନା ଲୋକ ଗହଳି... । ତା' ମା' ସାଙ୍ଗରେ..."

"କିଏ ଗୋଡଉଚି ?"

"ଏଇ ଲୋକଟା... ଏଇ କିଛି ଆଲୁଅ ତା' ମୁହଁରେ ପଡିଲା କୋଉଠୁ ? ଓ, ଏଇଟା ତ ମୋ ବାପା । ସେ କ'ଣ ମତେ ହତ୍ୟା କରିବାକୁ ଗୋଡଉଛନ୍ତି ? ତାଙ୍କ ହାତରେ ସେଇଟା ବୋଧହୁଏ ଛୁରୀ । ...ସେ ତା'ହେଲେ ମତେ ଖୁନ୍ କରିବାକୁ ସେମିତି ମୋ ପଛରେ ଧାଉଁଛନ୍ତି ।... ମତେ ଆହୁରି ଡର ମାଡୁଚି । ...ମୁଁ ଚିତ୍କାର କରି ପାରୁନାହିଁ ।"

"ଆହୁରି ପଛକୁ ଫେରି ଯାଆନ୍ତୁ ।"

ଡକ୍ଟର ସ୍ଲୋନ୍ ପୂର୍ବାପେକ୍ଷା ଅଧିକ ସତର୍କ ହେଲାପରି ଜଣାଗଲେ ।

ଶଶଧର ବାବୁ ଧୀରେ ଧୀରେ କହିବାକୁ ଲାଗିଲେ –

"ଇସ୍... ଭାରି ଅନ୍ଧାର । ସରୁ ରାସ୍ତା ଗୋଟାଏ ସୁଡଙ୍ଗ ଭଳି । ନିଃଶ୍ୱାସ ରୋଧି ହୋଇ ଯାଉଚି । ଆଃ... ଖୋଲି ଗଲା ସେ ଯେଉଁ ଗୋଟି ବାନ୍ଧିଥିଲା ।"

"କ'ଣ ଦେଖି ପାରୁଛନ୍ତି ?"

"ଗୋଟାଏ କୋଠା...ପୁରୁଣାକାଳିଆ ଜମିଦାରିଆ କୋଠା...ଖୁବ୍ ବଡ ଅଗଣା...ମାଟିର ଉଚ୍ଚ ପାଚେରୀ...ପାଚେରୀ ଉପର ଖପର ଛାତ । ...ଶୀତ ଦିନ ସକାଳ । ମୁଁ ଗୋଟାଏ ବଡ ଗଦି ଲାଗିଥିବା ଚୌକିରେ ବସିଚି । ମୋ ପାଖରେ ମୋର ଚାକର ବାକର ବେଢ଼ି ରହିଛନ୍ତି । ମୋ ସାମ୍ନାକୁ ଗୋଟାଏ ଲୋକକୁ ଅଣାଯାଉଚି । ସେ ମତେ ଦେଖୁ ଦେଖୁ ଉତ୍ତେଜିତ ହୋଇ ଉଠୁଚି । ସେ କମ୍ପୁଚି ରାଗରେ । ତା' ଆଖି ଦପ୍ ଦପ୍ କରୁଚି । ତା' ପାଟିରୁ ଜାବ ବାହାରୁଚି । ସେ ଓଟାରି ହଉଚି, ଉହୁଙ୍କି ଆସୁଚି । ତାକୁ ଅନ୍ୟମାନେ ଟାଣି ଧରିଛନ୍ତି ।

ମୁଁ ତାକୁ ଚାହିଁ ପାନ ପିକ ପକଉଚି । ଗର୍ଜୁଚି... ।

ଡକ୍ଟର ସ୍ଲୋନ୍ ଟେପ୍‌ରେକର୍ଡରକୁ ଆଉ ଟିକିଏ ଶଶଧର ବାବୁଙ୍କ ତକିଆ ପାଖକୁ ଘୁଞ୍ଚାଇ ଦେଇ କହିଲେ –

"ଆପଣ ତାକୁ ଶୁଣନ୍ତୁ । ସେ କ'ଣ କହୁଛି ।"

"ସେ ଗର୍ଜୁଛି । କହୁଚି, ତତେ ମୁଁ ଛାଡିବି ନାହିଁ – ଛୋଟରାୟ । ତତେ ମୁଁ ଟିକିଟିକି କରି କାଟିଦେବି । ତୁ ମୋ ଝିଅକୁ ବଳାତ୍କାର କଲୁ । ତା' ଗେରସ୍ତକୁ ଲୋକ ଲଗେଇ ମାରିଦେଲୁ । ମୋ ଝିଅକୁ ଆଣି ଘରେ ପୋଇଲି ପରି ରଖିଲୁ...ମୁଁ ତତେ ହାଣି ଦେବି ବେ ଶଳା...ତୁ ଜମିଦାର ହେଲୁ ବୋଲି କ'ଣ ଝିଅ ବୋହୂ ମାନିବୁ ନାହିଁ ।"

"ତା' ଝିଅ କିଏ ? ତାକୁ କେମିତି ଆପଣ ଆଣିଲେ ?"

"ଇସ୍, ଝିଅଟା ତ ହୀରାଖଣ୍ଡେ । ତାକୁ ଦେଖିବା ମାତ୍ରେ ଆଣିବାକୁ ଚାହିଁଲି । ମୁଁ ତ ମାଲିକ... କ୍ଷେତରେ ଫସଲ ଉଠିଲେ ମୋର... ଗାଁରେ ଝିଅ ବଡ ହେଲେ ମୋର । କ'ଣ ହେଲା ସେଥିରୁ ଗୋଟାଏ ଅଯୋଗ୍ୟ ତାକୁ ବାହା ହେଇଗଲା ବୋଲି ? ଖାଲି କ'ଣ ମୁଁ? ମୋ ଖାନ୍‌ଦାନ୍ ଏମିତି କୋଉ କାଳୁ ଭୋଗି ଆସିଚନ୍ତି । ପ୍ରଜାମାନେ ପୂଜା କରି ଆସିଚନ୍ତି । ମୁଁ ସେ ଝିଅଟାକୁ ଆଣିବାକୁ କହିଲି । ସେ ବେକୁବ୍ କଟୁରୀ ଧରି ବାହାରିଲା ଲଢିବ, ତା' ମାଇପକୁ ବଞ୍ଚେଇବ । ଆମ ଲୋକେ ତାକୁ ଧରିନେଲେ । ତାକୁ ଆୟତ୍ତ କରୁ କରୁ ତା' ପ୍ରାଣ ଚାଲିଗଲା । ସେଇଟା ଭାଗ୍ୟ କଥା – କିନ୍ତୁ ସେ ବୁଢାଟା – ମାନେ ତା' ବାପ ଏମିତି କାହିଁ ହଉଚି ?"

"ତା'ପରେ କ'ଣ ହେଲା ?"

"ସେ ବୁଢାକୁ ହାତକଡି ବାନ୍ଧି ନେଇ ଯିବାକୁ ମୁଁ ହୁକୁମ ଦଉଚି । ସେ ଗଲାବେଳେ ପଛକୁ ଚାହିଁ ଚାହିଁ କ'ଣ ସବୁ ଶୋଧି ଶୋଧି ଯାଉଚି । ମୋଟ ଉପରେ ମତେ ସେ ଭୟଙ୍କର ଭାବେ ଘୃଣା କରୁଚି । ମୁଁ ଅନୁଭବ କରି ପାରୁଚି ।"

ସେ ବୁଢାଟା ତା' ଆରଦିନ ମରିଯାଇଚି ।

"ତା'ପରେ ?"

"ତା' ଝିଅ ମୋ ଉପରେ ବାପ ଭଳି ଗାଳି ବର୍ଷା କରୁଚି । କହୁଚି... କହୁଚି – ସେ ମତେ ଖାତିର୍ କରେ ନାହିଁ । ସେ ଯାହାକୁ ମନ ତାକୁ ଗେରସ୍ତ କରିପାରେ । ମତେ ନୁହେଁ ।"

"ସେ ଝିଅକୁ ଆପଣ କ'ଣ ବିଭା ହଉଚନ୍ତି ?"

ଶଶଧର ବାବୁ ବିଚିତ୍ର ଢଙ୍ଗରେ ହସିଲେ । ତାଙ୍କର ନିଦୁଆ ସ୍ୱରରେ ଭାରି ବିକଟାଳ ଶୁଭିଲା ।

"ମୁଁ ଯେତେ ମାଇକିନା ଆଣିଚି, ସମସ୍ତଙ୍କୁ ବିଭା ହେବି ନା କ'ଣ ? ବିଭା ତ ଥରେ ହେଇଚି । ଏଇଟା ସେମିତି ରହିବ । ଆଉ ଅଠର ଜଣଙ୍କ ପରି... ।"

"ତା'ପରେ..."

"ମୋର ମନେ ପଡିବାରୁ ମୁଁ ସେ ମାଇକିନା ପାଖକୁ ଯାଇଚି... ତା' ପାଖରେ ଆଉ ଜଣେ କିଏ ଅଛି । ଲୁଚି ଯାଇଛି... ସେ ମାଇକିନା ମତେ ନିଶା ଖୁଆଇଚି...ମତେ ଗୋଟେ ଚୌକିରେ ବସେଇ ଦଉଚି । ଗୋଟେ ଲୋକ ଆସି ମୋତେ ତୁଣ୍ଡି ବାନ୍ଧି ଦଉଚି...ଦୁହେଁ ମିଶି ଚୌକିରେ ମତେ ବାନ୍ଧି ଦଉଚନ୍ତି–"

ଶଶଧର ବାବୁଙ୍କ ବୁକୁ ଧଡଧଡ ହେଲା । ମୁହଁ ବିମର୍ଷ ହୋଇଗଲା ।

ଡକ୍ଟର ସ୍ଲୋନ ସେମିତି ସ୍ଥିର ସ୍ୱରରେ କହିଲେ, "ତା'ପରେ...ତା'ପରେ କ'ଣ କୁହନ୍ତୁ ?"

"ସେ ମାଇକିନା... ମୋ ମୁହଁକୁ ଚାମ୍ପି ଦେଇଗଲା । ମୋତେ ବିଧା ଲାତ ମାରିଲା । ମନ ଇଚ୍ଛା ମୋ ମୁହଁରେ ଛେପ ପକେଇଲା । କହିଲା, ତୁ ଶହେ ଜନ୍ମରେ ମୋ ଗିରସ୍ତ ହୋଇ ପାରିବୁ ନାହିଁ । ମତେ ବିଭା ହେଲେ ବି ମୁଁ ତତେ ଶହେଥର ଛାଡି ଆଉ ଜଣକୁ ଭଜିବି । ଦେଖ୍ ତୋ

ଆଖିରେ ଦେଖି ମର । ସେ ସେଇ ଲୋକଟାକୁ ମୋ ସାମ୍ନାରେ ଲଙ୍ଗଳା କରି ପକେଇଲେ । ନିଜ ଲୁଗା କାଢ଼ି ଫିଙ୍ଗିଦେଲା – ମୁଁ ଆଖି ବୁଜି ଦେଲି...ଆଃ – ମୁଁ ସେ ଦୁଇଜଣଙ୍କୁ ଏକାଠି ଜାଳି ଦେବି...ମୁଁ ଖାଲି ମୁକୁଳି ଯାଏ–ତା'ପରେ ମୋ ମୁଣ୍ଡ ଉପରେ କିଏ କଣଟାଏ ଭାରି ଜୋର ପିଟି ଦେଲା । ମୁଁ ଆଖି ଫିଟେଇଲି – ସେ ଲଙ୍ଗଳା ମାଇକିନା ଗୋଟାଏ ଟାଙ୍ଗିଆରେ ମୋ ମୁଣ୍ଡକୁ ଆଉଥରେ ହାଣିବାକୁ ଉଞ୍ଚେଇଚି – ତା'ପରେ ଅନ୍ଧାର ହୋଇ ଯାଉଚି – ବହଳିଆ ଥୋଲା ଥୋଲା ରକ୍ତ ପରି ଅନ୍ଧାର–"

ଡକ୍ଟର ସ୍ଲୋନ ଶଶଧର ବାବୁଙ୍କ କପାଳରେ ପାପୁଲି ରଖି ନିଜେ ଆଖି ବୁଜି ନେଲେ । ତାଙ୍କ ବୁକୁରୁ ଏକ ଦୀର୍ଘଶ୍ୱାସ ଓହ୍ଲେଇ ଗଲା ।

ଶଶଧର ବାବୁ, ସହଜ, ଶାନ୍ତ ହୋଇଗଲେ ।

ଡକ୍ଟର ସ୍ଲୋନ କିଛି ସମୟ ଅପେକ୍ଷା କରି କହିଲେ,

"ଡକ୍ଟର ପ୍ରଧାନ, ଆପଣ ବର୍ତ୍ତମାନ ଉଠନ୍ତୁ ।"

ଶଶଧର ବାବୁ ଆଖି ଖୋଲି ମଟମଟ ଚାହିଁଆଡେ ଅନେଇଲେ । ...ଖଟ ଉପରେ ବସି ମୁଣ୍ଡଟାକୁ ଚାପି ଧରିଲେ ।

"ମୁଁ ଭୟଙ୍କର ଦୁଃସ୍ୱପ୍ନ ଦେଖିଲି, ଡକ୍ଟର । କିନ୍ତୁ ସେଇଟା ତ ସ୍ୱପ୍ନ ନୁହେଁ – ନୁହେଁ । ମୁଁ ତାକୁ ସ୍ୱପ୍ନ କହି ପାରିବି ନାହିଁ । ସେଇଟା ଏତେ ସ୍ପଷ୍ଟ । ...ମୁଁ ଆପଣଙ୍କୁ କ'ଣ କହିବି ?"

"କିଛି କହିବାର ଦରକାର ନାହିଁ । ଆପଣ ସବୁ କହି ସାରିଛନ୍ତି । ଆପଣଙ୍କ ଜୀବନରେ ଯେଉଁ ଦୁଇଜଣଙ୍କୁ ନେଇ ଆପଣ ସଂକଟାପନ୍ନ ସେମାନଙ୍କ ସହିତ ଆପଣଙ୍କ ସମ୍ପର୍କ ଅନେକ ପୁରୁଣା ।"

"ମାନେ ? ଆପଣ କ'ଣ କହିବାକୁ ଚାହାନ୍ତି ମୁଁ ଯାହା ଦେଖିଲି ସେଇଟା ସବୁ ସତ ?"

ଡକ୍ଟର ସ୍ଲୋନ ମୃଦୁମୃଦୁ ହସି ତାଙ୍କ ମୁଣ୍ଡ ଉପରେ ହାତ ରଖି କହିଲେ, "ସେ ସବୁ ଏକ ରହସ୍ୟ । ଆସନ୍ତୁ କଫି ପିଇବା, କଥାବାର୍ତ୍ତା ହେବା ।"

କିଛି କଫି ବିସ୍କୁଟ ଖାଇଲା ପରେ ଶଶଧର ବାବୁ କିଛିଟା ସୁସ୍ଥ ବୋଧ କଲେ । ଆଶ୍ୱସ୍ତ ମଧ ବୋଧ କଲେ ।

କୌଣସି ଏକ ବିରାଟ ସଂକଟରୁ ମୁକୁଳି ଆସିଲା ପରି ଅନୁଭବ କଲେ ।

"ଆଚ୍ଛା ଡକ୍ଟର ସ୍ଲୋନ୍, ମୁଁ ଦେଖିଥିବା ଦୁଃସ୍ୱପ୍ନ ଶୁଣିବାକୁ ଆପଣଙ୍କର ଆଗ୍ରହ ନାହିଁ ।"

"ଆପଣ ପରା ସବୁ କହି ସାରିଛନ୍ତି । ମୁଁ ଆପଣଙ୍କୁ ରିଗ୍ରେସନ କରାଇ ନେଇଥିଲି । ଆପଣ ପିଲାଦିନ କଥା କହି ସାରିଲା ପରେ ଜାଣିଶୁଣି ଆହୁରି ପଛକୁ ଯିବାକୁ କହିଥିଲି । ଆପଣ ମଝିରେ ଗୋଟାଏ ଅନ୍ଧାର ଉପତ୍ୟାକା ପାରି ହେବା ପରେ ପୁଣି ସବୁ ସ୍ପଷ୍ଟ ଦେଖି ପାରିଥିଲେ । କିନ୍ତୁ ଯାହା ଦେଖିଲେ ସେ ସମ୍ପୂର୍ଣ୍ଣ ଆଉ ଏକ ସମୟ ଏବଂ ବ୍ୟକ୍ତିର କଥା – କିନ୍ତୁ ଆପଣ କ'ଣ କହୁଚନ୍ତି ସେ

ଜମିଦାର ଆଉ କିଏ ?"

"ଆଦୌ ନୁହେଁ, ଡକ୍ଟର ସ୍ଲୋନ । ବରଂ ମୁଁ ଭାବୁଛି ମୁଁ ହିଁ ସେଇ ଜମିଦାର । ସେତେବେଳେ ଯାହା ପରିଶୋଧ ହୋଇ ପାରିନାହିଁ, ସେଇଟା ଏବେ ହେଲା ଭଳି ଲାଗୁଚି । ଏଇଟା କିନ୍ତୁ ଆଉ ଦୁଇଜଣଙ୍କୁ ଏହିପରି ରିଗ୍ରେସନ କରେଇ ନେଇ ପାରିଲେ ସତମିଛ ପରୀକ୍ଷା ହୋଇଯାଇ ପାରନ୍ତା । ସେ ଦୁଇଜଣ ହେଲେ ମୋ ବାପା ଆଉ ମୋ ସ୍ତ୍ରୀ । ସେମାନେ ଯେ ମୁଁ ବର୍ତ୍ତମାନ ଦେଖିଥିବା ଚରିତ୍ର ଏ କଥା କେମିତି ଜାଣିବା ?"

"ଆପଣ ଠିକ୍ କହିଛନ୍ତି ।"

"ଆପଣ ଡକ୍ଟର ସ୍ଲୋନ, କ'ଣ ଭାବୁଛନ୍ତି ଏ ଅଦ୍ଭୁତ ବିଷୟରେ ? ଏଇଟା କ'ଣ ପୂର୍ବଜନ୍ମ କଥା । ଏମିତି କ'ଣ ପ୍ରସ୍ତ ପ୍ରସ୍ତ ଜୀବନ ଆମେ ବଞ୍ଚୁଚେ ?"

ଡକ୍ଟର ସ୍ଲୋନ କିଛି ନ କହି ଅଳ୍ପ ହସି ରହିଁ ରହିଲେ କେବଳ ।



## ଲୁଚକାଳି – ଏକ ପିଲାଖେଳ

ସେଦିନ ଅଚାନକ ମୋତେ ମୋର ବାଲ୍ୟକାଳ ହିଁ ଆବୋରି ରହିଥିଲା ଚତୁର୍ଦ୍ଦିଗରୁ । ପଚାଶ ବର୍ଷ ତଳର ପୃଥିବୀ ଆକାଶ, ପବନ ଓ ପଦ୍ମପୋଖରୀ ମୋତେ ଶୋଷି ନେଲେ ତାଙ୍କ ଗର୍ଭକୁ ।

ସହସା ଜୀବନର ଶ୍ୱାସପତନ ସରଳ, ସହଜ, ଗ୍ରନ୍ଥିବିହୀନ ହୋଇଗଲା । ପରିଚିତ ମୁହଁମାନଙ୍କର ଆପଣାପଣର ହସ ଚହଟି ଗଲା ।

ମୁଁ ଚାହିଁଥିଲି କି ଆଖି ବୁଜି ଦେଖୁଥିଲି ମନେ ନାହିଁ । କିନ୍ତୁ ଆଉ ଗୋଟାଏ ପୃଥିବୀକୁ ପହଁରି ଯାଇଥିଲି କିଛି ସମୟ ପାଇଁ । ସେଇଠି ଖୁବ୍ ଉଚ୍ଚ ଉଚ୍ଚ ଦେଖା ଯାଉଥିଲେ ମଣିଷମାନେ । ମେଘ ଉହାଡରେ ଦଉଡୁଥିବା ଜହ୍ନ ଥୋପି ପଡୁଥିଲା ଛାତରେ ମାଡିଥିବା କାକୁଡି ଫୁଲ ଉପରକୁ ।

ଭାରି ନିବିଡ ସାନ୍ଦ୍ର ନିଷ୍କପଟ ପୃଥିବୀ । ଧୂଳିରେ ପାଣି ପଡିଲେ ବାସୁଥିଲା ମା'ପରି । ତା' ଉପରେ ଲୋଟିପଡିଲେ ଲାଗୁଥିଲା ଉଷ୍ଣମ କୋଡ ପରି । କୌଣସି ପକ୍ଷୀର ନାଁ ନଥିଲା ସନ୍ଧ୍ୟାର କାକଳି ଭିତରେ । କୌଣସି ଫୁଲର ନାଁ ନଥିଲା ସକାଳର ମହକ ଭିତରେ ।

ମେଣ୍ଢାଛୁଆ କାନ ପରି କଅଁଳ ନରମ ପଳାଶପତ୍ର । ଗାଲରେ ବାଜିଲେ ଦେହସାରା ରୁମ ଟାଙ୍କୁରି ଉଠୁଥିଲା । ସଜ ଗୋଲାପର ବାସ୍ନାରେ ବିଭୋର ହୋଇ ତାକୁ ଦାନ୍ତେଇବାକୁ ମନ ଡାକୁଥିଲା । ଝରଣାର ଝିଲିମିଲି ପାଣି ଭିତରେ ଝିଲିମିଲି ମାଛ । ପାଣିରେ ଟିପ ବାଜିଗଲେ ଉଭାନ୍ ।

ରଜା କର୍କଟର ଲମ୍ବା ଲାଙ୍ଗୁଡକୁ ଟିପରେ ଧରିବା ପାଇଁ ଅରମା ଅସନା ଖାଲଢିପ ଚକୁଣ୍ଡାବଣ ପାରି ହେଉଥିଲା ଛୋଟ ଛୋଟ ଦୁଇଟି ଖାଲିପାଦ, କଅଁଳ ପାପୁଲିର ସରୁ ସରୁ ଆଙ୍ଗୁଠି, ଝାଳ ସରସର ପିଠି, ବେକ, ବୁକୁ ଆଉ ତରା ପରି ଦାଉ ଦାଉ ହଳେ ଆଖି । ମୁଁ ଆଖି ମଟମଟ କରି ଅନାଇ ଦେଲି । ସାବୁନ୍ ଫେଣର ବିରାଟ ଝଲମଲ ଫୋଟକା ଚଟ୍‌କିନା ଲିଭିଗଲା । ମୁହଁରେ, ବୁକୁରେ ବୁଣି ହୋଇଗଲା କେତୋଟି ସିକର ବିନ୍ଦୁ ।

ମୁଁ ପୁଣି ମୋର ଏଇ ଅପ୍ରିୟ ପୃଥିବୀକୁ ଫେରି ଆସିଲି । ଆଖି ବୁଜିଲେ ବି ଏହାର ଅନାତ୍ମୀୟ ଦିଗ୍‌ବଳୟ ମୋତେ ଘେରି ରହିଲା । ଉଭେଇ ଯାଇଥିଲା ସପ୍ନକାଳ । ଅନ୍ତର୍ହିତ ହୋଇ ସାରିଥିଲା ଅପୋଗଣ୍ଡ ପୃଥିବୀ ।

ମୁଁ ଏଇଠି ମୋ ଚାରିଆଡେ ଏକ ଅଦୃଶ୍ୟ ବାଡ ପଡିଥିବାର ଅନୁଭବ କରେ । ହାତ ବଢେଇ କାହାକୁ ଛୁଇଁପାରେ ନାହିଁ, କେହି ବି ମୋତେ ଛୁଇଁ ପାରନ୍ତି ନାହିଁ ।

ମୁଁ ଜନଗହଳି ଭିରେ ନିତାନ୍ତ ଏକୁଟିଆ ରହିଥାଏ । ଏଇଠି ନିଜ ନିଜ ସ୍ୱପ୍ନରେ ନିମଗ୍ନ ଗୁଡିଏ ରେଳଯାତ୍ରୀ ଦୈବାତ୍ ଗୋଟିଏ ଡବାରେ ଏକାଠି ବସି ଯାଇଛନ୍ତି । ପଇ ସାଙ୍ଗରେ ଚକର ମାଡ ହେଲାବେଳେ ଏକାଠି ସ୍ପନ୍ଦିତ ହେଉଛନ୍ତି । କିନ୍ତୁ ଯେଝା ରାଜ୍ୟ ତା'ର; ଯେଝା ଦୁଃଖ ତା'ର ।

ସେମିତି ମୋ ଦ୍ୱିତୀୟପକ୍ଷ ସ୍ତ୍ରୀ ଓ ତା'ର ପିଲାମନେ, ମୋ ପ୍ରଥମ ସ୍ତ୍ରୀର ପୁଅ, ଝିଅ, ମୋ କକେଇ ଦଦେଇ ପୁଅ, ଭାଇମାନେ । ତାଙ୍କଠୁ ତ ଆଉ ଆପଣାର ବୋଲି ମୋର କେହି ନାହିଁ । ଅଥଚ...

ମୁଁ ମନକୁ ମନ ବୁଝାଏ । ସେମାନଙ୍କ ମନ ନେଲା ଭଳି କଥା କହେ, ଅଭିନୟ କରେ । ସେମାନେ ବି ଅଭିନୟ କରନ୍ତି । ମଞ୍ଚ ଉପରୁ ଓହ୍ଲେଇଗଲେ ଆମେ କାଚ ଆଖିରେ ଚାହିଁରହୁ ଅଚିହ୍ନା ଭଳି ପରସ୍ପରକୁ ।

ଜରାୟୁରୁ ଜରା ଯାଏଁ ଯେଉଁ ଉଷୁମ ଟିକକ ପ୍ରାଣକୁ ବେଢି ରହେ ବୋଲି ବସ୍ତୁ ହୁଏ, ସେଇଟା ଆସ୍ତେ କାକର ପଡିଯାଏ । ଶୀତ ମାଡିଆସେ ଚତୁର୍ଦ୍ଦିଗରୁ ।

ସେଦିନ ବାହାର ବଖରାରୁ ହାସ୍ୟରୋଳ ଶୁଭୁଥିଲା । ମୁଁ ପହଞ୍ଚିବା ମାତ୍ରେ ଥମିଗଲା । ସେଇଠୁ ଜଣ ଜଣ ହୋଇ ସେମାନେ ଉଠି ଚାଲିଗଲେ । ନ ଯିବେ କେମିତି ? ମୋ ପ୍ରତି ଯେ ସେମାନଙ୍କର ଅଗାଧ ଭକ୍ତି ଆଉ ସମ୍ମାନ ।

ମୁଁ ଓହ୍ଲେଇ ଗଲି ରାସ୍ତା ଉପରକୁ । ଭାବିଥିଲି ବାଲ୍ୟକାଳ ହିଁ ମୋ ସାଙ୍ଗରେ ଓହ୍ଲେଇ ଯିବ । ଆମେ ହାତ ଧରାଧରି ହୋଇ କିଛି ବାଟ ଚାଲିବୁ । କିନ୍ତୁ ତା' ନ ହୋଇ ମୋ ସାଙ୍ଗରେ ଓହ୍ଲେଇଗଲା ଏକ ଦୀର୍ଘଶ୍ୱାସ ।

"ଠିକ୍ ହେ, କୋଇ ବାତ୍ ନହିଁ ।" – ମୁଁ ଦଶ କୋଡିଏ ପାହୁଣ୍ଡ ବେଶ୍ ଜୋର୍‌ରେ ଚାଲିଗଲି ।

ବଜାରର ଜନଗହଳି କ୍ରମଶଃ ପାଖେଇ ଆସିଲା । ତା'ରି ଭିତରେ ମୋର ମନେ ହେଉଥାଏ ମୁଁ କ'ଣ ଜଣକୁ ଚିହ୍ନି ପାରୁଛି । ସେ ଯେ କାତୁଆମୁଣ୍ଡା ମଣିଷଟି ଧୋତି ପଞ୍ଜାବୀ ପିନ୍ଧି ଚାଲି ଯାଉଛି, ସେ ଫକୀର ନୁହେଁ ତ ।... ବେସାଇଜ୍ ଗେଞ୍ଜି ଆଉ ପାଇଜାମା ପିନ୍ଧିଥିବା ମଣିଷଟି 'ଫେଲୁ' ନୁହେଁ ତ ! ମୋର ବାଲ୍ୟବନ୍ଧୁମାନଙ୍କୁ ଅନ୍ୟ ଏକ ସମୁଦ୍ରରେ ଖୋଜିବା ମୋର ଭ୍ରମ । ତଥାପି ସେମିତି ବୋକାମି କରିବାକୁ ମୋତେ ଭଲ ଲାଗୁଥାଏ ।

ସେ ଲୋକାରଣ୍ୟ ଭିତରେ ମୁଁ କାହାକୁ ଜାଣେ ନାହିଁ; ମୋତେ କେହି ଜାଣେ ନାହିଁ । ଅଥଚ ଦେହକୁ ଦେହ ଘସି ହେଉଛି । ଶ୍ୱାସ ପ୍ରଶ୍ୱାସ ବାରି ହେଉଛି ନିକଟରୁ ।

ଏତିକିବେଳେ ମୋର ମନେ ହେଲା ଯେ ମୋ ପଛକୁ କେହି ଜଣେ ଲାଗି ଆସିଛି । ମୁଁ ଛିଡା ହେଇଗଲି । ଲୋକ ସବୁ ମୋତେ ଝୁଣ୍ଟିଲେ, ପଥରଖମ୍ବ ମନେକରି ଆଡହେଇ ଚାଲିଗଲେ ।

ମୁଁ ଚଟ୍‌କିନା ପଛକୁ ଚାହିଁଦେଲି; କେହି ନାହିଁ ।

ବାଲ୍ୟକାଳର ସ୍ମୃତି ହେଇଥିବ ବୋଲି ଦରାଣିଲି । 'ନୀଳ ଦାଢ଼ି'ର ଟହଟହ ହସୁଥିବା କଟା ମୁଣ୍ଡମାନ ମନେ ପଡିଲା । ଅବରୁଦ୍ଧ କବାଟ ମନେ ପଡିଲା । ଦେହସାରା ଶୀତକଣ୍ଟା ମାରିଗଲା ।

ମୁଁ ଗହଳି ଭିତରୁ ଆଡ ହେଇଗଲି । ରାସ୍ତା କଡକୁ । ଗଛମୂଳେ ପରିସ୍ତ୍ରା କଲି । ମନେହେଲା ସେ ମୋ ପଛରେ ଠିଆ ହେଇଚି । କିଏ ବୋଲି ଲେଉଟି ପଡିଲି । କେହି ନାହିଁ, ପାଦତଳ ମାଟିଠାରୁ ମୁଣ୍ଡ ଉପର ଆକାଶ ଯାଏ । ମଝିରେ କୋଠାବାଡି, ବଜାର, ଗାଡି ମଟର, ମଣିଷଙ୍କ ଭିଡ ଚଳଚ୍ଚିତ୍ର ପରି ।

'ନୀଳ ଦାଢ଼ି' ଅର୍ଥାତ୍ ବ୍ଲୁ ବିଅର୍ଡ ! ଏତେକାଳ ପରେ ପଛରେ ରହି ଏମିତି ଡରେଇବାର କ'ଣ ମତଲବ ? ମୁଁ କ'ଣ ଆଉ ସେ କଙ୍କି ଧରୁଥିବା ପିଲା ହେଇ ରହିଚି ?

ମୁଁ ମାନୁଛି ମୋତେ ତୁମ ହସ ମନେ ପକେଇଲେ ଡର ମାଡୁଚି । ବାଲ୍ୟକାଳ ସାଙ୍ଗରେ ତୁମେ ଏମିତି ଗୁନ୍ଥି ହେଇ ରହିଛ ବୋଲି ମୋର ଧାରଣା ନ ଥିଲା ।

କିନ୍ତୁ ତୁମେ ଜାଣିଚ କି ନାହିଁ କେଜାଣି – ଏବେ ମୁଁ ବି ତୁମ ଭଳି ଏକ ଦାଢିଆ ମଣିଷ । ତଫାତ୍ ଏତିକି ଯେ ମୋ ଦାଢ଼ିଟା ନୀଳ ନୁହେଁ, କି ମୁଁ ତୁମ ଭଳି ସେମିତି ଟହଟହ ହସି ପାରିବି ନାହିଁ ।

ତୁମେ ବୋଧେ ଦୂର ପାହାଡରେ ରହ, ଆକାଶରେ ବିଚରଣ କର ବୋଲି ତୁମେ ନୀଳ ! ନା କ'ଣ କହୁଚ ?

ତୁମେ ମୋ ସାମ୍ନାକୁ ଚାଲି ଆସୁନ । ମୋ ସାଙ୍ଗେ ଦୋସ୍ତି କରିବାକୁ କ'ଣ ତୁମକୁ ଡର ମାଡୁଚି ? –ହେଇ, ଆସ, ମୋ ହାତ ଧର ! ତୁମ ହାତ ଯେତେ ଥଣ୍ଡା ହେଇଥିଲେ ବି କିଛି ଯାଏ ଆସେ ନାହିଁ । ଚାଲ ସାଙ୍ଗ ହେଇ ସାମ୍ନା କାଠ କେବିନରୁ ଚା ଖାଇବା । ମୋର ମନେ ହେଉଚି, ତୁମକୁ ଆଉ 'ନୀଳଦାଢ଼ି' ଡାକିବା ଠିକ୍ ହେବ ନାହିଁ । ତୁମକୁ ବରଂ ଈଶ୍ୱର ଡାକିଲେ କେମିତି ହୁଅନ୍ତା ?

ମୋତେ ଖୁବ୍ ହସ ମାଡିଲା ! – ତା'ହେଲେ କ'ଣ ଏ ନୀଳଦାଢ଼ି ହିଁ ମୋ ଈଶ୍ୱର ? – ବ୍ଲୁ ବିଅର୍ଡ ହେଉଚି ଗଡ୍ ? ବାଃ ଏତେକାଳ ସେ ଗୁମର ଧରା ପଡିଲା ।

ମୁଁ ପୁଣି ରାସ୍ତାକୁ ଓହ୍ଲେଇଲି । କିନ୍ତୁ ମୋ ପଛରେ ଆଉଜଣେ କିଏ ଲାଗି ରହି ଥିବାର ସ୍ପଷ୍ଟ ଅନୁଭବ କଲି । ବେଳେବେଳେ ମୋର ମନେ ହେଉଥିଲା ଯେ ସେ ମୋ ବାଁ କଡେ ଅସ୍ପଷ୍ଟ ରହି ଚାଲିଥିଲା । ମୁଁ ମୋ ଆଖି କୋଣରୁ ଝାପ୍‌ସା ଦେଖି ପାରୁଥିଲି । କିନ୍ତୁ ମୁହଁ ବୁଲେଇ ଚାହିଁଦେଲେ କେହି ନାହିଁ ।

ମୁଁ କାଠ କେବିନର ବେଞ୍ଚ ଉପରେ ବସି ଚା ବରାଦ କଲି ଦୁଇକପ୍ । ଚା ବିକାଳି ମୋ ଆଗପଛକୁ ଚାହିଁ ପଚାରିଲା,

"ଆଜ୍ଞା, କ'ଣ ଦୁଇକପ୍ ?"

କାହିଁକି ସେମିତି ବରାଦ କଲି କେଜାଣି ? ମୁଁ କ'ଣ ଆଶା କରୁଥିଲି ବ୍ଲୁ ବିଅର୍ଡ ମୋ ପାଛରୁ

ପଚାଶ ବର୍ଷର ଗହୀର ତଳୁ ଉଠି ଆସି ମୋ ସହିତ ଚା ଖାଇବ ?

ମୁଁ ମୋ ୱାକିଂ ଷ୍ଟିକ୍ ଉପରେ ଗୋଟାଏ ଗୋଡ ଥୋଇ ଅପେକ୍ଷା କରିଥାଏ । ମୁଣ୍ଡରୁ ଟୋପି କାଢି ବେଞ୍ଚ ଉପରେ ରଖିଥାଏ । ମୋର ଭାରି ଇଚ୍ଛା ହେଉଥାଏ ଆଉ ଜଣେ କିଏ ମୋ ସାଙ୍ଗରେ ବସି ଚା ଖାଉ ।

ଛୋଟ କାଚ ଗ୍ଲାସ୍‌ରେ ହାଉ ବାହାରୁଥିବା ଦୁଇଟା ଚା ଆଣି ମୋ ପାଖରେ କିଏ ଥୋଇ ଦେଲା । ମୁଁ ସେମିତି ମୋ ୱାକିଂଷ୍ଟିକ୍ ଉପରେ ଗୋଡ ହଲେଇ ବସିଥାଏ । ଚାହିଁଥାଏ ସାମ୍ନାକୁ । ବୋଧହୁଏ ଶୂନ୍ୟକୁ ।

ହଠାତ୍ ମୋ ଡାହାଣ ପାଦ ସଲସଲ ଲାଗିଲା ।

ମୁଁ ତଳକୁ ଅନେଇ ଦେଲା ବେଳକୁ ଗୋଟେ ଶୁ' ସାଇନ୍ ଟୋକା ମୋ ଜୋତାକୁ ଟାଣୁଚି । ମୁଁ ଚଟ୍‌କିନା ପାଦ କାଢିନେଲି । ସେ ସେମିତି ଭୂଇଁ ଉପରେ ବସି ସଲାମ କରି କରି ସାକୁଲେଇଲା –

"ବାବୁ, ଜୁତା ଚମ୍‌କାଦେଙ୍ଗେ । ଲାଓନା ବାବୁ !"

ତା' ଧୂଳି ସରସର, ମଳି ସରସର ଦେହ, ନୁଖୁରା ଭୂତୁରା ମୁଣ୍ଡ । କିନ୍ତୁ ମୁହଁଟିର ଗଢଣ କି ସୁନ୍ଦର । ଆଖି ଦାଉ ଦାଉ । ଦାନ୍ତ ଚକ୍‌ଚକ୍ । ନାକ ଠିଆ ।

ମୁଁ ତାକୁ ଚାହିଁ ଆମୋଦରେ ପଚାରିଲି, "କ୍ୟା ପୈସା ଲେଗା ?" ମୁଁ ଖାଲି ଅଭ୍ୟାସରେ ପଚାରିଲି ସିନା, ସେ ଯାହା ମାଗି ଥିଲେ ମୁଁ ଦେଇଥାନ୍ତି ।

"ଏକ୍‌କୋ ରୁପିଆ ।"

ମୋର ତା' ସହିତ କୌତୁକ କରିବାକୁ ଇଚ୍ଛା ହେଉଥାଏ ।

"ଆରେ, ନହିଁ, ଆଧାରୁପିଆ ଲେଗା ?"

ସେ ମୋ ପାଦରୁ ଜୋତା ଫିଟେଇବା ପାଇଁ ପୁଣି ଟାଣିଲା ।

"ନହି ବାବୁ, ଏକ୍‌କୋ ରୁପିଆ ଦେଓ !"

ମୁଁ ପାଦ ଛଡେଇବାର ବାହାନା କରି ତାକୁ ଜୋତା କାଢିବାରେ ସହଯୋଗ କଲି ।

ସେ ଜୋତା ହଳକ ଖଟୁଳିରେ ରଖିଲା ପରି ନିଜ କୋଳରେ ଥୋଇଲା । ଭୂଇଁରେ ଚକା ପକେଇ ଝୋଲା ଫିଟେଇଲା । ମୋତେ ଚାହିଁ ଦାନ୍ତ କାଢି ହସିଲା ।

ତା'ରି ବୟସର ମୋର ଗୋଟେ ନାତି ଟୋକା ଅଛି । ସେଇଟା ଏକଦମ୍ ସାଇବ ଛୁଆ ! ଏମିତି କଉତୁକ ହବାକୁ ତା' ପାଖରେ ବେଳ କାହିଁ ? ସେ ଇଂରାଜୀ ପଢେ ଇଂରାଜୀ କହେ ! ସେ ଶଳା ନାତି ଟୋକା କ'ଣ ବୁ ବିଅର୍ଡ ପଢେ ?

ମୁଁ ଚୁପ୍ କିନା ଜବ୍‌ଦି ଗଲି । ମୋ ପଛରେ ସେ କିଏ ? "ଆସୁନ, ସାଙ୍ଗ ହେଇ ଚା ଖାଇବା !"

ମୁଁ ବୋଧେ କ'ଣ କହି ପକେଇଲି ।

ଶୁ'ସାଇନ୍ ଟୋକା ପଚାରିଲା, "କ୍ୟା ବୋଲା ଆପ୍ ?"

ମୋ ମୁହଁରେ ହସରେ ବକି ସବୁ ଆପଣାପଣ, ଭାବଦୋସ୍ତି ଦେଖି ଥଙ୍ଗେଇଲା ପରି ସେ ତା' ଫୁଙ୍ଗୁଳା ସାନ ହାତଟି ବଢେଇ ଚା ଗ୍ଲାସ୍‌ଟିକୁ ଧରିନେଲା ।

ମୋ ମୁହଁକୁ ଚାହିଁ ଅଜସ୍ର ମହମହ ଫୁଲ ଅଜାଡି ଦେଲା ତା'ର ନିର୍ମଳ ପରିତୃପ୍ତ ହସରେ ।

ଆମେ ଦୁହେଁ ଏକା ସାଙ୍ଗରେ ଏକା ଛନ୍ଦରେ ଚା ଶୋଡକୁଥିଲୁ । ମୁଁ ତାରି ଭଳି ଶୋଡକିବାର ଶବ୍ଦ କରିଥିଲି । ମୋର ମନ ହେଉଥିଲା ତା' ସାଙ୍ଗରେ ତଳେ ଚକା ପକେଇ ବସିବାକୁ । ମନ ହେଉଥିଲା ତାକୁ ଟାଣି ଆଣି ମୋ ସହିତ ବେଞ୍ଚରେ ବସେଇବାକୁ । ତା' କାନ୍ଧରେ ହାତ ପକେଇ ତା' ମୁହଁକୁ ଚାହିଁବାକୁ । ତା' ସାନ ଗୋଡ ଯୋଡିକ ସେ ଦୋଳେଇଲା ବେଳେ ମୋ ଗୋଡ ତା' ସାମ୍ନାରେ ରଖି ତାକୁ ଚିଡେଇବାକୁ, ତା' ଗାଲ ଚିପି ଦେବାକୁ, ତା' ମୁଣ୍ଡ ସଲସଲ କରି ଦେବାକୁ ।

ସେ କେତେବେଳୁ ଚା ପିଇସାରି ଜୋତାକୁ ବ୍ରସ୍ ମାରି ଲାଗିଥାଏ ।

ପୁଣି କେତେବେଳୁ ମୋତେ ଜୋତା ପିନ୍ଧେଇ ଦେଇ ମୋ ସାମ୍ନାରେ ହାତ ପତେଇ ଠିଆ ହୋଇଥାଏ ।

ମୁଁ ତାକୁ ଟଙ୍କାଟିଏ ବଢେଇ ଦେବାରୁ ସେ ହସି ଦେଇ ଉଭାନ୍ ହେଇଗଲା ।

ଚା' ଦୋକାନୀ ପାଟିକଲା, "ଆବେ, ହେ ଟୋକା, ଗ୍ଲାସ୍ ଧୋଇଦେଇ ଯା' ।"

କେହି ଶୁଣିଲେ ନାହିଁ । ସେ ମୋ ଉପରେ ରଗ ରଗ ହେଲା ।

"ହେ, ବୁଢାବାବୁ, ଏ ଗ୍ଲାସ୍ ଏଇନା ଧୋଇବ କିଏ ?"

ମୁଁ କିଛି ନ ଭାବି କହିଲି, "ମୁଁ ଧୋଇ ଦେବି !"

ଚା' ବିକାଳି କେବିନ୍‌ରୁ ଓହ୍ଲେଇ ଆସିଲା ।

"କ'ଣ ହେଲା, ଆପଣ ଧୋଇବେ ? ଆମେ କ'ଣ ମରିଗଲୁ ? ଆପଣ ଗରାକ, ଆପଣ ଆମ ଲକ୍ଷ୍ମୀ !"

ଏମିତି କ'ଣ ସବୁ କହି କହି ଦୁଇଟି ଗ୍ଲାସ୍ ଗୋଟେଇ ନେଲା ।

ମୁଁ ଠିଆ ହେଇ ପଚାରିଲି, "କେତେ ହେଲା ?"

ସେ ଅସ୍ୱାଭାବିକ ଢଙ୍ଗରେ କହିଲା, "ଆପଣ ଯାହା ଦେବେ ।"

ମୁଁ ତାକୁ କ'ଣ ବଢେଇ ଦେଲି । ସେ ସଲାମ୍ ମାରି ଆଡ ହେଇଗଲା । ମୁଁ ଆସ୍ତେ ରାସ୍ତା ଉପରକୁ ପାଦ ବଢେଇଲି ।

ଭିଡ ଭିତରେ ପୁଣି ଏକାକୀ; ପୁଣି ପଛରେ କିଏ ଲାଗି ରହିଥିବାର ଅନୁଭବ ।

"କିଏ ମହାପାତ୍ର ବାବୁ କି ?"

ମୁଁ ଚମକି ପଡିଲି । ଓଃ, ତା'ହେଲେ ଏ ଜନ ସମୁଦ୍ରରେ କେହି ଜଣେ ତ ମୋତେ ଚିହ୍ନିଲା ।

ମୁଁ ଚାହିଁଲା ବେଳକୁ ଜଣେ ଅଚିହ୍ନା ବ୍ୟକ୍ତି ହସି ହସି ପାଖେଇ ଆସୁଛି । ମୋ ପାଖକୁ ଆସି ସେ ଆଉ ମୋତେ ଚାହୁଁନାହିଁ । ମୋତେ ଭେଦି ଆଉ କାହାକୁ ଅନଉଚି ।

ପଛରୁ ଶୁଭିଲା, "ଆରେ, ଦୋରା ବାବୁ ଯେ ।"

ଅପ୍ରତିଭ କାନ୍ଥଟିଏ ପରି ମୁଁ ମଝିରେ ଛିଡା ହୋଇ ଯାଇଛି । ସେମାନେ ମୋତେ ବସ୍ତୁଜ୍ଞାନ କରି ଚାହୁଁନାହାନ୍ତି ।

ତା'ହେଲେ ମୋ ପଛରେ ଏ ମହାପାତ୍ରଟା ହିଁ ଠିଆ ହେଇଥିଲା । ମୋ ବେକଷଣ୍ଢା ଉପରେ ନିଃଶ୍ୱାସ ମାରୁଥିଲା, ଅଥଚ ମୋତେ ଜାଣିବାକୁ ଚାହୁଁ ନଥିଲା । ଯାଃ, ଶଳା, ଗଲା ଯେ ଭଲ ହେଲା ।

ମୁଁ ଚାହିଁଲି ବେଖାତିର୍ । ଏଠି ମୋତେ କିଏ ଜାଣିଚି ଯେ ମୋର କ'ଣ ବିଗାଡି ପକେଇବ ?

ତଥାପି ମୋତେ ବାରମ୍ବାର ସେଇ ଅପରିଚିତ ସ୍ୱରରେ ଶୁଭୁଥିଲା, "କିଏ, ମହାପାତ୍ର ବାବୁ କି ?" କେତେ ଖୁସି ଲାଗି ନଥାନ୍ତା ଯଦି ସତକୁ ସତ ମୁଁ ଏଇଠି ଏକମାତ୍ର ମହାପାତ୍ର ହୋଇଥାନ୍ତି । ମୋତେ ହିଁ ଠଉରେଇ ନେଇ ଲୋକେ ବାରମ୍ବାର ଆନନ୍ଦ ବିସ୍ମୟରେ ପଚାରୁଥାନ୍ତେ, "ଆରେ ମହାପାତ୍ର ବାବୁ କି ?"

ମୁଁ ଅନ୍ୟମନସ୍କ ଚାଲୁ ଚାଲୁ ଗୁଡାଏ ବାଟ ଚାଲିଗଲି । ସେଇଟା କଚେରୀ ରାସ୍ତା । କଚେରୀ ପରେ ଆଉ କିଛି ନାହିଁ । ରାସ୍ତା କିନ୍ତୁ ବଢି ଯାଇଛି ଆଗକୁ, ପୃଥିବୀର ସବୁ ସହରକୁ ।

ମୁଁ ଗୋଟେ ପୋଲ ଉପରେ ବସିଲି କିଛି ସମୟ । ସେଇ ବିଚିତ୍ର ଅନୁଭବ ମଝିରେ ମଝିରେ ଆସି ଯାଉଥାଏ । କେହି ଜଣେ ମୋ ପଛରେ ଠିଆ ହୋଇ ରହିଛି ସତେବା ।

ଖୁବ୍ ନିରୋଳା ଜାଗା । ମୁଁ ପାଟି ଖୋଲି ପଚାରିଲି –

"ଆଚ୍ଛା ତୁମେ ଯଦି ସତରେ କେହି ହୋଇଥାଅ, ସାମ୍ନାକୁ ଚାଲି ଆସୁନାହଁ କାହିଁକି ?"

ମୋର ମନେ ହେଲା ସେ ଅସୀମ ଶିଷ୍ଟାଚାର ଦେଖାଇ ମୋ ପଛରେ ହିଁ ଠିଆ ହୋଇରହିଛି । ଅପେକ୍ଷା କରିଚି । ଯଥା ସମୟରେ ସାମ୍ନାକୁ ଆସି କୁର୍ଣ୍ଣିସ୍ କରିବ, ନିମନ୍ତ୍ରଣ କରିବ ତା' ଘରକୁ ଯିବା ପାଇଁ ।

ସେ କ'ଣ ବ୍ଲୁ ବିଅର୍ଡ ନା ଗଡ୍ ?

ମାଛି ଅନ୍ଧାରକୁ ମୁଁ ପୁଣି ସେଇ ରାସ୍ତାରେ ଫେରିଲି । ମଝିରେ ଖଣ୍ଡେ ନିଛାଟିଆ ଜାଗା ।

ସେଇଠି ଜାଣି ମୋତେ ପ୍ରଥମଥର ପାଇଁ ଡର ମାଡିଲା ।

ଲାଗିଲା, ମୋ ପଛରେ ଯେ ଅଛି, ସେ ମଣିଷ ନୁହେଁ, ବାଘ !

ମୋ ପାଦ ତଳିପା ସିର୍‌ସିର୍ ହେଲା ।

ତଳିପେଟ ଅଣ୍ଡକୋଷ ସାଙ୍କୁଡିଗଲା ।

ମଝିପିଠିରେ ବିଛାଟାଏ ଚଢି ଆସିଲା ବେକମୁଣ୍ଡା ଯାଏଁ ।

ମୁଁ ଥମ୍ ହେଇ ଠିଆ ହେଇଗଲି । ମୋ ନିଃଶ୍ୱାସ ଜବ୍‌ଦି ଗଲା । କପାଳରେ ଝାଳ ଜକେଇ ଗଲା । ମୁଁ ହଠାତ୍ ପଛକୁ ବୁଲି ପଡିଲି ।

ନାଃ । – କେହି ନାହିଁ । ମୁଁ ଖୁବ୍ ଚିଡି ଗଲି । ବକିଲି ଅଭାଷିଆ, ଅଶ୍ଳୀଳ ଶବ୍ଦରେ ଯାହା ମନକୁ ଆସିଲା । ଖୁବ୍ ପାଟି କରି ସେପରି ଶବ୍ଦମାନ ମୁଁ କେବେ ହେଲେ ଜୀବନରେ ଉଚ୍ଚାରଣ କରି

ନଥିଲି ।

ଆଶ୍ଚର୍ଯ୍ୟ ଲାଗିଲା ଯେ ଏତେ କାଳ ମୋର ନାବାଳକି କଟି ନଥିଲା । ମୁଁ ବେଶ୍ ସୁସ୍ଥ, ସ୍ଥିର ବୋଧକଲି । ମୋ ମନରୁ ଭୟ ଘୁଞ୍ଚିଗଲା । ବୋଧହୁଏ ସେ ବି ଡରିଲା ଅଶ୍ଳୀଳ ଶବ୍ଦର ନିର୍ବାଧର ବିସ୍ଫୋରଣକୁ ।

ମୋ ଚାଲିବା ବେଗ ବି ଅନେକ ବଢିଗଲା ।

ସେଥିପାଇଁ ଚଞ୍ଚଳ ପହଞ୍ଚିଗଲା ବଜାର ।

ସେଇଠି ପୁଣି ସେଇ ଅଶ୍ୱସ୍ତିକର ଅନୁଭବ । ଭୟ, ଅସହାୟ, କ୍ରୋଧ, ବିରକ୍ତି, ଘୃଣା, ଜିଘାଂସା ସବୁ ମିଶାମିଶି ଗୋଟାଏ ଅସହ୍ୟ ଅନୁଭବ ।

ମୁଁ ବଜାର ଭିତରେ ଏଣେ ତେଣେ ଘୁରି ବୁଲିଲି । ଗୋଟାଏ ଦୋକାନର କାଚ ଆଲମାରି ପାଖରେ ମୁଁ ଠିଆ ହୋଇଥାଏ । ମୋ ଡାହାଣରୁ କେହି ଜଣେ ଛପ୍ କିନା ବାହାରି ଆସିଲା । ମୋତେ ଲାଗିଲା ସେ ମୋ ଠିକ୍ ପଛରୁ ହିଁ ବାହାରି ଆସିଲା ।

ସେ ପିନ୍ଧିଥିଲା ଗୋଟାଏ କଳା ସୁଟ୍ । ମୁଁ ତା' ବାଁ ପାଖ ପ୍ରୋଫାଇଲ୍‌ଟା ହିଁ ଦେଖି ପାରୁଥିଲି । ପିଠି ପାଖ ଦେଖି ପାରୁଥିଲି । କିନ୍ତୁ ମୁହଁଟା ଦିଶୁ ନଥିଲା ।

ସେ ଚଟ୍ କିନା ଡାହାଣେ ବୁଲିପଡି ଚାଲିଗଲା ତରତର ହେଇ ।

ସେ ଚାଲିଗଲା ପରେ ମୁଁ ସଚେତନ ହେଲି ଯେ ସେ ଚାଲିବାରେ କିମ୍ବା ଚଳପ୍ରଚଳ ହେବାରେ ବୋଧେ ଆଦୌ କିଛି ଶବ୍ଦ ହେଉ ନ ଥିଲା । ସତେବା ଛାଇଟାଏ ।

ମୁଁ ସାଙ୍ଗେ ସାଙ୍ଗେ ସେଇ ଦିଗରେ ମୋଡିଗଲି । ଜାଣିବାକୁ ଚାହିଁଲି ସେ କଳାସୁଟ୍ ପିନ୍ଧା ଲୋକଟା କିଏ । ମୋ ଠିକ୍ ପଛରେ କିଏ କାଶିଲା କି ?

ମୁଁ ଚମକି ପଡି ବୁଲି ଦେଖି ନେଲି । କେହି ନ ଥିଲା । ମୁଁ ଗହଳି ଭିତରେ ତାକୁ ଠାବ କରି ପାରିଲି ନାହିଁ । କଳାସୁଟ୍ ପିନ୍ଧିଥିବା କେହି ହେଲେ ଆଖିରେ ପଡିଲା ନାହିଁ । ସେ କ'ଣ ଉଭାନ ହେଇଗଲା ?

କିଏ ସେ ଲୋକଟା ? କାହାର ମୃତ୍ୟୁରେ ଶୋକପାଳନ କରିବାକୁ ସେ ସେଇ କଳାସୁଟ୍‌ଟା ପିନ୍ଧିଥିଲା ?

ଅଯଥା ଅଠାହାଣ୍ଡିରେ ଗୋଡ ବୁଡିଗଲା ପରି ମୋତେ ଲାଗୁଥିଲା । ରାତି ଆଗେଇ ଆସୁଥିଲା ।

ମୁଁ ସ୍ଥିର କଲି, ଯେତେ ଅସୁଖକର ହେଉପଛେ ମୁଁ ସେଇ ଘରକୁ ଫେରିଯିବି । ସେଇଠି ଅନ୍ତତଃ ଚିହ୍ନା ମୁହଁ ତ ଦେଖିବାକୁ ମିଳିବେ । ଆପଣାପଣ ତ ଗୋଟେ ଛାଇ । କେତେବେଳେ କେଉଁ ମୁହଁ ଉପରେ ମଡେଇ ହୋଇଯାଏ । ସବୁବେଳେ ସବୁଠି ତାକୁ କାହିଁକି ଆଶା କରିବା ?

ଦୁଆର ମୁହଁରେ ସମସ୍ତେ ଉଦ୍‌ବିଗ୍ନ ହୋଇ ଚାହିଁ ରହିଥିଲେ । ସେଦିନ ବି ମୁଁ ଘରେ ପହଞ୍ଚିଲା ବେଳକୁ ସତକୁ ସତ ସମସ୍ତେ ଠିଆ ହୋଇଥିଲେ । ସତକୁ ସତ ସମସ୍ତେ ଉଦ୍‌ବିଗ୍ନ ଜଣା ଯାଉଥିଲେ ।

ମୋ ସ୍ତ୍ରୀ ସମସ୍ତଙ୍କ ଆଗରେ ମୋ ହାତ ଧରି ପକେଇ ପଚାରିଲେ, "ତମେ ଏମିତି ଧଇଁସଇଁ ହଉଚ କାହିଁକି ? ତୁମ ମୁଣ୍ଡରୁ, ମୁହଁରୁ ଏତେ ଝାଳ କାହିଁକି ନିଗିଡି ଯାଇଚି ?"

ମୋର ଅପରିଚିତ ପରିବାର ମୋ ଚାରିଆଡେ ଖୁବ୍ ନିବିଡ ହୋଇ ବେଢିଗଲା ।

ମୋ ସାମ୍ନାରେ ସେ ନାତି ଟୋକା ।

ମୁଁ ତାକୁ ଚାହିଁ କହିଲି, "ବଲ୍ ଖେଳୁଥିଲି, ଡେରି ହେଇଗଲା ।"

"ତମେ ବଲ୍ ଖେଳୁଥିଲ ? ନୋ, ୟୁ ଆର୍ ଜୋକିଙ୍ଗ୍ ।"

ମୋତେ ସମସ୍ତେ ନେଇ ସୋଫାରେ ବସେଇ ଦେଇଥିଲେ । ମୋର ଓ୍ୱାକିଂ ଷ୍ଟିକ୍ ନେଇ ଯାଇଥିଲେ । ମୋ ପାଦରୁ ଜୋତା କାଢି ନେଇଥିଲେ । ଜଣେ କିଏ ମୋ ଜାମାର ବୋତାମ ଫିଟାଇ ମୋ ଝାଳ ପୋଛି ଦେଇଥିଲା ।

ମୁଁ ସେଇ ନାତି ଟୋକାକୁ ପାଖକୁ ଡାକି ବସେଇଲି, ତା' ମୁଣ୍ଡ ସଲସଲ କରିଦେଲି । ତା' କାନ୍ଧରେ ହାତ ରଖି ତା' ମୁହଁକୁ ଚାହିଁଲି । "ଆରେ ନୋ ଜୋକିଙ୍ଗ୍! ମୁଁ ବ୍ଲୁ ବିଅର୍ଡ ସାଙ୍ଗରେ ବଲ୍ ଖେଳୁଥିଲି । ସେଇଟା ଡରୁଆଟାଏ । ମୋ ସାମ୍ନାକୁ ଜମା ଆସୁ ନଥାଏ ।"

ମୋ ପୁଅ, ସ୍ତ୍ରୀ କ'ଣ ସବୁ ଫିସ୍ ଫିସ୍ କଥା ହଉଥାନ୍ତି । ବଡ ପୁଅ ତରତର ହେଇ କୁଆଡେ ବାହାରିଗଲା । ଆର ପୁଅ କହିଲା "ବାପା, ତମେ ଅସୁସ୍ଥ । ତମେ ବେଡରୁମ୍‌କୁ ଚାଲ ।" ସେ ମୋ ବୁକୁ ଉପର ହାତ ରଖି ଉଦ୍‌ବିଗ୍ନ ହୋଇ କହୁଥିଲା ।

ମୋ ବୁକୁ ଦାଉଁ ଦାଉଁ ତା' ହାତ ପାପୁଲିରେ ବାଡେଇ ହେଉଥିବାର ମୁଁ ଅନୁଭବ କଲି । ମୋତେ ନିଃଶ୍ୱାସ ଜୋର୍‌ରେ ନେବାକୁ ପଡୁଥିଲା ।

ମୁଁ ବୁଝି ପାରୁ ନଥିଲି ସେମାନେ କାହିଁକି ଏତେ କାତର ହୋଇ ପଡୁଥିଲେ ।

ଆରେ ବଲ୍ ଖେଳିଲେ ହାଲିଆ ହେବାକୁ ପଡେ – ତା' ପୁଣି ବ୍ଲୁ ବିଅର୍ଡ ସାଙ୍ଗରେ !

ମୁଁ ନାତି ଟୋକା ମୁହଁକୁ ଚାହିଁ ଆଖି କୁଞ୍ଚେଇ ହସିଲି । ମୋ ସ୍ତ୍ରୀଙ୍କୁ କହିଲି, "ଟୁ କପସ୍ ପ୍ଲିଜ୍! ଦୁଇ କପ୍ ଚା ଆଣ । ମୁଁ ଆଉ ଇଏ ମିଶି ପିଇବୁ । – ମାନେ ମୁଁ ଆଉ ଶୁ ସାଇନ୍ ବୟ । ...ମାନେ ମୁଁ ଆଉ ବ୍ଲୁ ବିଅର୍ଡ !... ମାନେ, ମୁଁ ଆଉ ଗଡ୍ !!"

ତା'ପରେ ମୋତେ ସବୁ କେମିତି ଝାପ୍‌ସା ଦେଖା ଯାଇଥିଲା । ମୁଁ ପରେ ଜାଣିଲି ଯେ ସେ ରାତି ସାରା ଖୁବ୍ ଧାଁ ଦଉଡ ଚାଲିଥିଲା । ଡାକ୍ତର ଆସି ବସିଥିଲା । ମୁଁ କୁଆଡେ ଯାଉ ଯାଉ ରହିଗଲି ।

ଆଜି ଚାରିବର୍ଷ ପରେ ମୁଁ ଏ କଥା ଲେଖିଲା ବେଳକୁ ପୁଣି ମୋତେ ମୋର ବାଲ୍ୟକାଳ ଆଚ୍ଛନ୍ନ କରି ଆସୁଚି । ବ୍ଲୁ ବିଅର୍ଡ ସାଙ୍ଗେ ଏଥର ଦେଖା ହେଇଯିବ କି ସାମ୍ନା ସାମ୍ନି ?

□

## ପ୍ରସ୍ତ ପ୍ରସ୍ତ ଆବରଣ

ସେ ଲୋକଟାକୁ ଦେଖିଦେଲେ ହିଁ ଅସୁବିଧା ।

ତା' ଆଖିକୁ ମୁହଁକୁ ଚାହିଁଲେ ଯେ କୌଣସି ସାପର ଫଣା ନଇଁ ଯିବ । ସେମିତି ଗୋଟାଏ କିଛି ତେଜସ୍ୱୀ ମୁହଁ ତା'ର ନୁହେଁ, ଝଟ୍ ଝଟ୍ ଚମକୁ ଥିବା ବ୍ୟକ୍ତିତ୍ୱ ମଧ ତା'ର ନାହିଁ । ନୁଆଣିଆ କପାଳ ନୁଆଁଣିଆ ଥମ ଥମ ଆଖି । ମୁଣ୍ଡରେ ଛୋଟ ଛୋଟ ବାଳ ଅଧେ ପାଚିଲା ଅଧେ କଞ୍ଚା ।

କିନ୍ତୁ କେମିତି କେଜାଣି ତାକୁ ଦେଖିଲେ ହିଁ କ'ଣଟାଏ ମଡେଇ ପଡିଲା ପରି ଲାଗେ ।

ସତେବା ଚିନ୍ତା ନାଏକ ଏ ଅକଳନ୍ତି ଦୁଃଖର ପାହାଡ ।

ତା'ର ଉଦାସ ମୁହଁରେ ଆଖି ଯୋଡିକ ଚିକ୍ ଚିକ୍ କରୁଥାଏ । ନିର୍ବାକ ଓଠରେ ପଥରବନ୍ଧ ପରି ସଂକଳ୍ପ । ପାଟି ଫିଟିଲେ ଦୁଃଖର ଲୁଣାପାଣି ମାଡିଯିବ ସଚରାଚର କିମ୍ବା ନିଆଁ ଲାଗିଯିବ ବନସ୍ତରେ । କିନ୍ତୁ ଚିନ୍ତା ନାଏକ ଚୁପ୍‌ଚାପ୍ ଠିଆହୁଏ । ସତେବା ଏ ପୃଥିବୀରେ ତା'ର କାହାକୁ କିଛି କହିବାର ନାହିଁ । ଅଥଚ ସେ ହିଁ ପାଟିଖୋଲି ଏ ସଂସାରକୁ ଜାଳି ଦେବା କଥା ।

ତାକୁ ଦେଖିଲେ ଏମିତି ଲାଗେ ।

ସତକୁ ସତ ତା' ଜୀବନର ସୁଖ କେତେ ଦୁଃଖ କେତେ କେହି ଜାଣନ୍ତି ନାହିଁ ।

ସେ କାହାକୁ କହେ ନାହିଁ ।

କହେ କେବଳ ଅନ୍ୟମାନଙ୍କ କଥା ।

ହେଇ ସେଦିନ ଘଣ୍ଟି ବାଜିଲା । ମୁଁ କବାଟ ଫିଟେଇ ଦେଖିଲା ବେଳକୁ ଚିନ୍ତା ନାଏକ ।

"କିରେ ଚିନ୍ତା ତୁ କୁଆଡେ ? କ'ଣ କାହାରି ଅସୁବିଧା ହେଉଚି କି ?"

"ନାଇଁ ସାର୍, ସେମିତି କିଛି ଜରୁରୀ ନୁହେଁ । ହେଲେ ଆପଣଙ୍କୁ ଟିକିଏ କଷ୍ଟ ଦବାକୁ ଆସିଲି । କିଛି ମନେ କରିବେ ନାହିଁ । – ଏମିତି ଆପଣଙ୍କ ଉପରେ ଭରସା ଥିଲା ବୋଲି ମୁଁ କହିଦେଲି ଆପଣଙ୍କୁ ପଚାରିବାକୁ, ବସିର ମିଆଁକୁ ବାଂଲାଦେଶୀ ବୋଲି ପୁଲିସ୍ ତାକୁ ତଡି ଦେବାକୁ ବସିଛି । ସେ ଏଠିକାର ବାସିନ୍ଦା ବୋଲି ଯେତେ କହିଲେ ମାନୁ ନାହିଁ । ଆପଣଙ୍କୁ ପଚାରିବାକୁ ମୁଁ କହିଲି । ଆପଣ ତାକୁ ଜାଣିଛନ୍ତି ବୋଲି କହିଦେଲେ ସେ ବଞ୍ଚିଯାନ୍ତା ।"

"ଆରେ ବସିର୍ ମିଆଁକୁ ତ' ମୁଁ କେବେ ଦେଖିନାହିଁ । ଦେଖିଥିଲେ ବି ଜାଣିନାହିଁ ।" –

ମୋର ସ୍ୱର ଓ ବାକ୍ୟରେ କାର୍ପଣ୍ୟ ଘୋଡେଇ ହୋଇ ରହିଥିଲା । ଏ ସବୁ ମହା ଝାମେଲା କଥା । ପୁଲିସ୍ କୋର୍ଟ କଚେରୀ ମାମଲାରେ କାହିଁକି ଜାଣିଶୁଣି ପଶିବି । ମୁଁ ଜାଣିଚି କହିଲେ ସେ ପଚାରିବେ କେମିତି ଜାଣିଚି, କେତେ ବର୍ଷ ହେଲା ଜାଣିଚି, ତା' ପରିବାରର ଆଉ ସମସ୍ତଙ୍କୁ ଜାଣିଚି କି ନାହିଁ –

ମୋର କୁଣ୍ଠିତ ସ୍ୱରରୁ ଚିନ୍ତା କ'ଣ କିଛି ଅନୁମାନ କରିନେଲା । ସେ ମୁହଁ ଆଡକରି ତଳକୁ ଚାହିଁଲା ।

"ହଉ ସାର୍ ମୁଁ ତା'ହେଲେ ଆସୁଚି, ଆପଣଙ୍କୁ କଷ୍ଟ ଦେଲି ବୋଲି କିଛି ଭାବିବେ ନାହିଁ ।"

ସେତିକିବେଳେ ମୁଁ ଅନୁଭବ କଲି ଯେ ଚିନ୍ତା ନାଏକ ତା' ସହଣିକ ପଣିଆରେ ମୋତେ କ୍ଷମା କରୁଚି ! ଭାବୁଚି ହୁଏତ ମୋତେ ସେ ଭୁଲ ବୁଝିଥିଲା । ମୁଁ ଯାହା ଦିଶେ ପ୍ରକୃତରେ ମୁଁ ତା'ଠୁ ଢେର ଛୋଟ ଗୋଟାଏ ମଣିଷ । ମୋଠୁ' ସେ ଅଯଥା ଗୁଡାଏ ଆଶା କରି ଭୁଲ୍ କରିଥିଲା ।

ଇସ୍ । ଚିନ୍ତା ନାଏକ ପାଖରେ ମୁଁ କେତେ ସାଙ୍କୁଡି ଗଲି ।

ଡାକିଲି, "ଆଚ୍ଛା ସେମାନେ କେବେ ପଚାରିବାକୁ ଆସିବେ ?"

ଚିନ୍ତା ସେମିତି ଆଗକୁ ପାଦ ବଢାଇ ଥମି ଗଲା । ସେ ଠିକ୍ ଶୁଣୁଚି ତ' । ମୁଁ ଦୋହରାଇଲି । "ସେମାନେ କେବେ ଆସିବେ ପଚାରିବାକୁ ?" "ଆଜିଠୁ ଯେ କୌଣସି ସମୟରେ ସେମାନେ ଆସି ପାରନ୍ତି ସାର୍ ।" ସେ ସେହିପରି ଅବିଶ୍ୱାସରେ ଅପେକ୍ଷା କଲା । ଶୁଣିବାକୁ ମୁଁ କ'ଣ କହୁଚି ତେଣିକି ।

"ଶୁଣ ଚିନ୍ତା, ମୁଁ ସତରେ ବସିରକୁ ଜାଣେ ନାହିଁ । ତୁ ହିଁ ଜାଣିଚୁ । ମୁଁ ତୋ ସୁପାରିଶ୍‌ରେ ହିଁ ତାକୁ ଜାଣିଚି ବୋଲି କହି ଦେଇ ପାରେ । କିନ୍ତୁ ତା' ବିଷୟରେ ମୋତେ ଯାହା ଜାଣିଚୁ କହ । ଆଉ ସମ୍ଭବ ହେଲେ ତାକୁ ଆଣି ମୋ ସହିତ ପରିଚୟ କରେଇ ଦେ ।"

ଚିନ୍ତା ନାଏକ ବୁଲି ପଡି ପୁଣି ମୋ ସାମ୍ନାରେ ଆସି ଠିଆ ହେଲା । ତା'ର ସେ ଆଖି ଯୋଡିକ ଛଳଛଳ ଦେଖାଗଲା । ସେ କେବଳ କହିଲା, "ମୁଁ ଆପଣଙ୍କଠାରୁ ଏହାହିଁ ଆଶା କରୁଥିଲି ସାର୍ ।"

ସେଦିନ ତିନିଟାରୁ ଚାରିଟା ଭିତରେ ମୋ ଦୁଆରେ ଆସି ଚିନ୍ତା ହାଜର ହେଇଗଲା । ସାଙ୍ଗରେ ବସିର ମିଆଁ । ମୁଁ ଆମ ବଗିଚାର ଓ୍ୱିଲୋ ଗଛତଳେ ସିମେଣ୍ଟ ବେଞ୍ଚରେ ବସିଥାଏ, ସେ ଦୁହେଁ ମୋ ପାଖକୁ ଆସି ଘାସ ଉପରେ ବସିଗଲେ ।

"ଏଇ ସାର୍ ବସିର ମିଆଁ । ୟା ସାଙ୍ଗରେ ଆପଣ ଓଡିଆରେ ହିଁ କଥା ହେବେ । କାରଣ ବସିର୍ ଆଉ କୌଣସି ଭାଷା ଜାଣି ନାହିଁ ।"

ସତକୁ ସତ ବସିର ଖାଣ୍ଟି ଗାଉଲି ଓଡିଆ କହିଲା । ମୋର ଷୋଳ ଅଣା ବିଶ୍ୱାସ ଆସିଗଲା ଯେ ସେ କଦାପି ଅଣ ଓଡିଆ ନୁହେଁ । ଏଣୁ ସେ ବାଂଲାଦେଶୀ କଦାପି ନୁହେଁ ।

"ଠିକ୍ ଅଛି ଚିନ୍ତା ମୁଁ ବର୍ତ୍ତମାନ ବିନା ଦ୍ୱିଧାରେ ବସିରକୁ ଏ ଅଞ୍ଚଳର ବାସିନ୍ଦା ବୋଲି

କହିପାରେ । ମୁଁ ତାକୁ ଦେଖିଚି ଓ ଜାଣିଚି ବୋଲି ମଧ କହିପାରେ ।"

ଚିନ୍ତା ମୋତେ ଧନ୍ୟବାଦ ଦେବାପରେ ଆସ୍ତେ କହିଲା –

"ଆପଣ ବୋଧେ ଜାଣନ୍ତି ନାଇଁ ସାର୍ ବସିର ମିଆଁର ଦୁଃଖ । ସେ ଚାଉଳ ବେପାର କରୁଥିଲା । ତା'ର ଭଲ ରୋଜଗାର ହଉଥିଲା । ଦିନେ, ତା' ଚାଉଳ ଗୋଦାମରେ ନିଆଁ ଲାଗିଗଲା । କିଏ ସବୁ ଅସହଣିକ ଲୋକ ତାକୁ ଜାଳି ଦେଲେ । ବସିର୍ ଏ ସହରକୁ ଚାଲିଆସିଲା । ଅଳ୍ପ ପଇସା ଆଣିଥିଲା । ପରିବା ଦୋକାନରେ ଖଟେଇ ଦେଲା । କେହି କିଛି କିଣିଲେ ନାହିଁ । ସବୁ ପରିବା, ଶୁଖା ପୋଚାରେ ଗଲା । ସେ ତେଣିକି ଖଣ୍ଡେ ଟ୍ରଲି ରିକ୍ସାରେ ମାଲ ବୋହିଲା ସେଥିରେ ସେମାନେ ଚଳିଗଲେ । ସହରଗଳିରେ କୁଡିଆ କରି ବସିର୍ ମିଆଁ ରହିଲା ତା' ପିଲାପିଲିଙ୍କୁ ନେଇ ।..."

ମୋର ଧୈର୍ଯ୍ୟହାନି ହେଉଥାଏ । କିନ୍ତୁ ଚିନ୍ତା ନାଏକ କହିବା ଢଙ୍ଗଟି ଏତେ ଚମତ୍କାର ଯେ ତାକୁ ନ ଶୁଣି ଉପାୟ ନାହିଁ । ସେ ମୋ ଚେହେରାରୁ କ'ଣ ଇସାରା ପାଇଗଲା ବୋଧେ ଠୋ କିନା କଥା ସାରିଦେଲା ।

"ତା' ବିବି ମରିଗଲା ଯକ୍ଷ୍ମାରେ । ତା' ଝିଅ ଚାଲିଗଲା ଗୋଟାଏ ଟୋକା ସାଙ୍ଗରେ । ସେ ଏଇନେ ଏକୁଟିଆ ।"

ଏତକ କହି ଦେଇ ସେ ଉଠିଲା । ବସିର ଉଠିଲା କଳ କଣ୍ଢେଇ ପରି । ଦୁହେଁ ଆଗପଛ ହେଇ ଚାଲିଗଲେ ।

ସତକୁ ସତ ପୁଲିସ୍ ପକ୍ଷରୁ ଦୁଇଜଣ ସାଦା ପୋଷାକଧାରୀ ମୋ ପାଖରେ ଆସି ପହଞ୍ଚିଲେ ତା'ର ଦି ଦିନ ପରେ ।

ପ୍ରାରମ୍ଭିକ ଶିଷ୍ଟାଚାର ପରେ ଜଣେ କାଗଜ କଲମ ନେଇ ସଜ ହେଲେ । ମୁଁ ସଜ ହେଲି ବସିର୍ ମିଆଁ ବିଷୟରେ କହିବାକୁ ।

ସେ ଠୋ କିନା ପଚାରିଲେ, 'ଆପଣ ଚିନ୍ତା ନାହାକକୁ ଜାଣନ୍ତି ?' ମୁଁ ହଠାତ୍ ଅଚମ୍ବା ଖାଇଗଲି । ସେ ଏମିତି ପଚାରିବେ ବୋଲି ମୁଁ ଆଦୌ ପ୍ରସ୍ତୁତ ନଥିଲି । ନିଜକୁ ସମ୍ଭାଳିବାକୁ ସାମାନ୍ୟ ସମୟ ଲାଗିଲା । ଏଣୁ ମୁଁ ପଚାରିଲି – "କାହାକୁ ?"

"ଚିନ୍ତା ନାହାକ, ବୟସ ଅନ୍ଦାଜ ପଞ୍ଚତିରିଶ । ଛୋଟବାଳ ଛୋଟ କପାଳ । ନୂଆଁଣିଆ ଆଖି । ରଙ୍ଗ ସାବନା । ଉଚ୍ଚତା ପାଞ୍ଚଫୁଟ ସାତ ଇଞ୍ଚ ।"

ମୁଁ କହିଲି, "ଜାଣେ ।" କିନ୍ତୁ ମୋ ସ୍ୱରରେ ଆଦୌ ଜୋର୍ ନଥିଲା । ଧମକେଇ ଦେଇଥିଲେ ହୁଏତ ଜାଣେ ନାହିଁ ବୋଲି ମଧ କହି ଦେଇ ପାରିଥାନ୍ତି । ଏମିତି ଦୁର୍ବଳ ଦୋଦୋପାଞ୍ଚ ଉତ୍ତର ମୁଁ କାହିଁକି ଦେଲି କେଜାଣି । ପୋଲିସ୍ ପଚାରୁଚି ବୋଲି ବେଶୀ ସତର୍କ ହେଇଗଲି କି ସେତକ ମୋର ଚରିତ୍ର ଦୋଷ କହି ପାରୁ ନାହିଁ । ତା'ପରେ କିନ୍ତୁ ମନେ ମନେ ନିଜକୁ ଧିକ୍କାରିଲି ଆଉ ଟାଣେଇ ଗଲି ।

"କେମିତି ଜାଣନ୍ତି, କେତେ ଦିନ ହେଲା ଜାଣନ୍ତି ?"

"ଢେର୍ ଦିନ ହେଲା ଜାଣେ ।" – ସ୍ୱର ଏଥର ଖୁବ୍ ସ୍ପଷ୍ଟ ଓ ଦୃଢ଼ ।

"ସେ କ'ଣ କରେ ଏବଂ ଆପଣଙ୍କ ପାଖକୁ କାହିଁକି ଆସେ ?"

"ମାନେ, ସେ ମୋତେ ସମ୍ମାନ କରେ । – ବେଳେବେଳେ ଆସେ ଅନ୍ୟମାନଙ୍କ ପାଇଁ ସାହାଯ୍ୟ ମାଗିବାକୁ ।"

ପୋଲିସ୍ ଦୁଇ ଜଣ ପରସ୍ପରକୁ ଚାହାଁଚାହିଁ ହେଲେ ।

"ଆପଣ ତାଙ୍କୁ କେବେ ସନ୍ଦେହ କରିଛନ୍ତି – ମାନେ, ତା'ର ଗତିବିଧି ଚାଲିଚଳଣ କଥାବାର୍ତ୍ତାରେ ବିଶେଷ କିଛି ଲକ୍ଷ୍ୟ କରିଛନ୍ତି କି ?"

"ସନ୍ଦେହ କାହିଁକି କରିବି ? ତେବେ ମାନୁଛି ଯେ ତା' ବିଷୟରେ ମୁଁ ବିଶେଷ କିଛି ଜାଣି ପାରି ନାହିଁ । ତା'ର କାରଣ ହେଲା ଯେ ମୁଁ ତାକୁ ପଚାରି ନାହିଁ କି ସେ ବି ମୋତେ କିଛି କହି ନାହିଁ । ଆପଣ ତା' ବିଷୟରେ ମୋତେ କାହିଁକି ଜେରା କରୁଛନ୍ତି ?"

"ତା' ପାଖରୁ ହିଁ ଆପଣଙ୍କ ଖବର ମିଳିଲା ତ' । ଚିନ୍ତା ନାହକର ନିଜର ଉପାର୍ଜନ ନାହିଁ ଅଥଚ ସେ ଭଲ ଖାଇ ପିନ୍ଧି ଚଳେ । ଘରଟାଏ ବି ନେଇଚି ଭଡାରେ । କୋଉଠୁ ପଇସା ପାଏ ? ସେ ୟା ନାଁରେ ତା' ନାଁରେ ପଇସା ଚାନ୍ଦା କରେ । ସେଥିରେ କିନ୍ତୁ ସେ ସେମିତି ଚଳିପାରନ୍ତା ନାହିଁ । ସେ ଏଇଠି ବହୁ ପ୍ରକାର ଲୋକଙ୍କ ଘରକୁ ଯାଏ ଏବଂ ବେଳେବେଳେ କୁଆଡେ ହଠାତ୍ ଚାଲିଯାଏ ଆଠଦଶଦିନ ପାଇଁ । ଆମେ ତା' ବିଷୟରେ ଅଧିକ ଜାଣିବାକୁ ଚାହୁଁଛୁ । ତା'ର ଚାଲିଚଳଣ ଆମକୁ ସନ୍ଦେହଜନକ ମନେ ହେଉଛି ।"

ମୁଁ ସେମାନଙ୍କୁ ଆଉ କିଛି କହିବା ଉଚିତ୍ ମଣିଲି ନାହିଁ ।

ସେମାନେ ଚାଲିଗଲେ ।

ବସିର ମିଆଁ କଥା ତ' କାହିଁ ଆଦୌ ଉଠେଇଲା ନାହିଁ ?

ଚିନ୍ତା ନାହାକ ଉପରେ ତା'ହେଲେ ପୁଲିସ୍‌ର ଦୃଷ୍ଟି ଅଛି । ସେଇଟା କ'ଣ ତା'ହେଲେ ଯାହା ଦିଶେ ତାହା ନୁହେଁ । ତା' ଚେହେରା, ତା' କହିବା ଭଙ୍ଗୀ ଗୋଟାଏ ଖୋଳ ?

ସେ କ'ଣ ବିଦେଶୀ ଗୁପ୍ତଚର ?

ସେ କ'ଣ ସନ୍ତ୍ରାସବାଦୀ ? ସ୍ମଗ୍ଲର୍ ?

ସତେ ତ' ! ତା'ର ଉପାର୍ଜନ କ'ଣ ସେ କେମିତି ଚଳୁଚି ? ତାକୁ ମୁଁ ବା କେତେଦିନ ହେଲା ଜାଣିଚି ? ଏଇ ପାଞ୍ଚ ଛ' ମାସ ! ତା' ପୂର୍ବରୁ ସେ କୋଉଠି ଥିଲା ମୁଁ କହିପାରିବି ନାହିଁ । ତା' ସାଙ୍ଗେ ତ' ମୋର ଦେଖା ହେଇନାହିଁ । ମୁଁ କହିବି କେମିତି ?

ତଥାପି ଲୋକଟାକୁ ଟିକିଏ ଦୂରରେ ରଖିଲେ ଭଲ ।

ତା'ର ଦୁଇଦିନ ପରେ ସେ ପୁଣି ହଠାତ୍ ଆସି ପହଞ୍ଚିଲା । ମୋତେ କିଛି ସମୟ ଧରି ଚାହିଁଲା ନୀରବରେ ।

ମୁଁ ତା'ର ସେ ମୁହଁକୁ ଚାହିଁ ପୁଣି ଦ୍ରବିଭୂତ ହେଲି । ସେ ବୋଧେ ସେତକ ପାଇଁ ଅପେକ୍ଷା କରିଥିଲା ।

କହିଲା, "ପୁଲିସ୍ ଆପଣଙ୍କୁ ଆସି ହଇରାଣ କଲେ ସାର୍, ମୁଁ ସେଥିପାଇ କ୍ଷମା ମାଗୁଛି । ସେମାନେ କିନ୍ତୁ ବସିର୍ ମିଆଁକୁ ନେଇଗଲେ ସାର୍, କୁଆଡେ ନେଲେ କହିପାରିବି ନାହିଁ ।"

ମୁଁ ପଚାରିଥିଲି, "ଆରେ ବସିର୍‌କୁ ସେମାନେ କାହିଁକି ନେଲେ ?" ଚିନ୍ତା ଚଟ୍‌କିନା ମୋ' ଆଖିକୁ ଚାହିଁ ତଳକୁ ମୁହଁ କରିନେଲା ।

"କେଜାଣି ସାର୍ । ଆପଣ ତାଙ୍କୁ କ'ଣ କହିଲେ ବୋଧେ ।"

"ଆରେ ମୁଁ ତାଙ୍କୁ କ'ଣ କହିବି, ସେମାନେ, ତା' କଥା ମୋତେ ପଚାରିଥିଲେ ସିନା କହିଥାନ୍ତି ।"

"ଓ, ମୁଁ ଭାବିଥିଲି ସେମାନେ ଆପଣଙ୍କୁ ତା' କଥା ପଚାରିବାକୁ ଆସିଥିଲେ ।"

ମୋ ମନେ ହେଲା ଚିନ୍ତା ଟିକିଏ ଉଦ୍‌ବିଗ୍ନ ଜଣାଗଲା ।

ମୁଁ ଅତର୍କିତ ଭାବରେ ପଚାରିଲି, 'ଆଛା ଚିନ୍ତା ! ତୁ' କରୁ କ'ଣ ? ଚଳୁ କେମିତି ?

ସେ କିଛି ନ କହି ମୋ ମୁହଁକୁ କେବଳ ଚାହିଁଲା ।

"ତୁ ଏଠିକି ଆସିବା ଆଗରୁ କୋଉଠି ଥିଲୁ ? – ତୁ ମଝିରେ ମଝିରେ କୁଆଡେ ଆଠଦଶ ଦିନ ପାଇଁ ଚାଲି ଯାଉଛୁ ?"

ସେ କିଛି ନ କହି ଆସ୍ତେ ତଳକୁ ଚାହିଁ ପାଦ କାଢିଲା ।

"ଆରେ କିଛି କହିଲୁ ନାଇଁ ଯେ ।"

"ଥାଉ ସାର୍, ମୋ' ବିଷୟରେ ଜାଣି ଆପଣଙ୍କ ଲାଭ କ'ଣ ? ମୁଁ ବସିର୍ ମିଆଁକୁ ଖୋଜିବାକୁ ଯାଉଛି । ନିର୍ଦ୍ଦୋଷକୁ ସନ୍ଦେହ କରିବା, ତାକୁ ଅସହାୟ ଦେଖି ଦଣ୍ଡ ଦେବା କ'ଣ ଆପଣମାନଙ୍କର ବିଧି ?"

ମୁଁ ପୁଣି ତା' କଥାରେ ପରାସ୍ତବୋଧ କଲି, ଚହଲି ଗଲି ।

"ଆରେ ମନ କଷ୍ଟ କଲୁକି ଚିନ୍ତା ମୁଁ ଖାଲି ଏମିତି ଜାଣିବାକୁ ଚାହିଁଥିଲି ?"

"ନାଇଁ ସାର୍ ! ଆପଣ କାହିଁକି ଜାଣିବାକୁ ଚାହୁଁଛନ୍ତି ମୁଁ ବୁଝି ପାରୁଛି । ଆମଭଳି ଛୋଟ ମଣିଷଟିଏ ବଞ୍ଚିଯିବା ଭାରି କଷ୍ଟ । ବଞ୍ଚିଗଲେ ଆପଣମାନଙ୍କୁ ସବୁବେଳେ ତାକୁ କୈଫିୟତ ଦବାକୁ ପଡୁଥାଏ ସେ ବଞ୍ଚିଲା କାହିଁକି ଓ କେମିତି ?"

"ଆରେ ନାହିଁ, ମୁଁ ତତେ କୌଣସି କୈଫିୟତ୍ ମାଗୁନାହିଁ ।"

"ମାଗନ୍ତୁ ସାର୍ ! ମାଗିବା ଆପଣଙ୍କ ଅଧିକାର । ଆପଣଙ୍କୁ ସନ୍ତୁଷ୍ଟ କରିବା, ସନ୍ତୁଷ୍ଟ କରି ରଖିବା ଆମର ଦାୟିତ୍ୱ । ଶୁଣନ୍ତୁ ସାର୍, ଗୋଟିଏ କୈଫିୟତ୍ । ମୁଁ ମଝିରେ ମଝିରେ ସୁବର୍ଣ୍ଣପୁର ଯାଏ । ସେଇଠି ମୋ ଧରମ ମା' ଅଛି । ତା' କଥା ବୁଝାବୁଝି କରିଦେଇ ଆସେ । ଏଇଠି ବିଡି ବଳିବା କାମ କରେ, ରାତିରେ । ଦିନବେଳେ ଅନ୍ୟ କାମ ଲାଗିଯାଏ, ବେଳ ଅଣ୍ଟେ ନାହିଁ । – ମୁଁ

ନିଜେ ନିଆଁରେ ଜଳି ଜଳି ପୋଡଖୁଣ୍ଟା ହୋଇଯାଇଚି । ଆଉ କାହା ଦୁଃଖ ଦେଖିଲେ ସହିପାରେ ନାହିଁ ।"

କେଜାଣି କାହିଁକି ମୁଁ ତା' ପିଠିରେ ହାତ ରଖିଦେଲି । ଆସ୍ତେ କଢେଇ ନେଲି ବଗିଚାକୁ । ଓ୍ୱିଲୋ ଗଛ ତଳର ବେଞ୍ଚ ପାଖକୁ । ସେ ଘାସରେ ହିଁ ବସିଗଲା ।

ମୁଁ ସିମେଣ୍ଟ ବେଞ୍ଚରେ ନ ବସି ତା' ସାମ୍ନାରେ ଘାସ ଉପରେ ବସିଲି । ସେ ପ୍ରଥମେ ସଙ୍କୋଚ କଲା । ତା'ପରେ ସହଜ ହୋଇଗଲା ।

'ମୁଁ ତୋ' ମନରେ ଆଘାତ ଦେବାପାଇଁ ପଚାରି ନଥିଲି । ମୁଁ ତତେ ଏକ ପ୍ରକାର ଭୁଲ୍ ବୁଝି ଯାଇଥିଲି ।

ସେ ମୋ' ଆଖିକୁ ଚାହିଁଲା । ମୁଁ ଚୁପ୍ ହେଇଗଲି ।

"ମୋର ନିଜର ମା'ଟିଏ ଥିଲା, ଭଉଣୀଟିଏ ଥିଲା । କଂକ୍ରିଟ୍‌ର ହ୍ୟୁମ୍ ପାଇପ୍‌ଟାଏ ଭିତରେ ଆମେ ରହୁଥିଲୁ । ଦିନେ ସକାଳୁ ଦେଖିଲା ବେଳକୁ ମୋ ମା' ସେଇଠି ନଥିଲା । ମୋତେ ପାଞ୍ଚବର୍ଷ, ମୋ ଭଉଣୀକୁ ତିନି ବର୍ଷ । ଆମେ ଖୁବ୍ କାନ୍ଦିଲୁ । ଖୁବ୍ ଡାକିଲୁ କେହି ଶୁଣିଲେ ନାହିଁ ।"

ସେ ଥମି ଗଲା । ତା' ସ୍ୱର ତେଣିକି ଖୁବ୍ ଦୂରରୁ ଶୁଣାଗଲା ।

"ଦିନେ ମୋ' ଭଉଣୀ ବିନିକୁ ଜର । ସେଦିନ ହୋଟେଲ ବନ୍ଦ । ବାହାର ଅଇଁଠା ଡ୍ରମରେ କୁକୁର ବେଢି ରହିଥାନ୍ତି । କିଛି ଖାଇବାକୁ ନ ଥାଏ । ମୁଁ ଭାବୁଥାଏ ଯେ ବିନିକୁ କେବଳ ଭୋକ କରୁଚି । ଟିକିଏ ଖାଇଦେଲେ ସେ ଭଲ ହେଇଯିବ । ମୁଁ ଏମିତି ରାସ୍ତାକୁ ଚାହିଁଲା ବେଳକୁ ଗୋଟାଏ ବାବୁ ପଇଡ ପିଇ ଫୋପାଡି ଦେଲା । ମୁଁ ଦୌଡିଗଲି ଗୋଟେଇବାକୁ । ସେତେବେଳକୁ ଆଉ ଦୁଇଟି ପିଲା ଝପଟି ଆସିଲେ । ମୁଁ ସେମାନଙ୍କ ସାଙ୍ଗରେ ପ୍ରାଣପଣେ ଲଢିଲି । ସେମାନେ ମୋ'ଠୁ ଛଡେଇ ପାରିଲେ ନାହିଁ । ମୋତେ କିନ୍ତୁ ରାମ୍ପୁଡି ବିଦାରି ପକେଇଲେ । ପଇଡବାଲା ଖେଙ୍କି ଆସିବାରୁ ପଳେଇଲେ । ମୁଁ ସେ ପଇଡକୁ ଆଣି ପଥରରେ ଛେଚିଲି । ଛେଚି ଛେଚି ହାଲିଆ ହେଇଗଲି । ତା' କଣାରେ ଟିପ ଗଳେଇ ଦେଖିଲି ଯେ ସେ ଭିତରେ ଶସ ଅଛି । ମୁଁ ଲାଗିପଡି ତାକୁ ଫଟେଇଲି, ତା' ଭିତରୁ ଲହୁଣୀ ଭଳି ଥୋଲାଏ ବାହାରିଲା । ତାକୁ ରାମ୍ପି ଆମି ବିନି ପାଟିରେ ଦେଲି । ବିନି ତାକୁ ଖାଇ ମୋତେ ଚାହିଁ ହସିଲା । ସେଇ ରାତିରେ ବିନି ମରିଗଲା ।"

ମୁଁ ତାକୁ ସେଇଠି ତା' କନା ଘୋଡେଇ ଦେଇ ଚାଲିଗଲି ।

ମୁଁ ତିନିଦିନ ନଖାଇ ନପିଇ ବୁଲିଲି ଆଉ କାନ୍ଦିଲି । ଏଇ ସୁବର୍ଣ୍ଣପୁର ମା' ମତେ ଖାଇବାକୁ ଦେଲା । ପାଖରେ ରଖିଲା । ପାଳିଲା । ସେ ଏବେ ଅପାରଗ ହୋଇଗଲା । ମୁଁ ତା' କଥା ବୁଝିବାକୁ ଚାଲିଯାଏ ।

ମୋ ଉପରେ ସେତେବେଳକୁ ପାହାଡ ମଡେଇ ହୋଇ ଯାଇଥାଏ ।

ମୁଁ ଚିନ୍ତା ନାହାକକୁ ଚାହିଁ ପାରୁ ନଥାଏ ।

ସେ ବି ଚୁପ୍ ହେଇଯାଇଥାଏ । ଆମ ମୁଣ୍ଡ ଉପରେ ଓ୍ୱିଲୋ ଗଛର ଡାଳ ଲୁହ ଥୋପା ପରି

ଓହଳି ରହିଥାଏ ।

ମୁଁ ମନେ ମନେ ସ୍ଥିର କରୁଥାଏ ଯେ ଯଦି ସେ ପୁଲିସ୍‌ବାଲା ପୁଣି କେବେ ଆସନ୍ତି ତାକୁ ସବୁ କହି ତାଙ୍କ ଭ୍ରମ ଦୂରକରିବି – ସେମାନଙ୍କୁ ଭଲ କରି ଦି ପଦ ଶୁଣାଇ ଦେବି । ନାଲାଏକ ଲୋକ ଗୁଡାକ, ବିନାକାରଣରେ ଗୋଟାଏ ନିର୍ଦ୍ଦୋଷ ମଣିଷ ପଛରେ ଲାଗିଛନ୍ତି ।

ଚିନ୍ତା ନାହାକ ମୋ ମନ କଥାଜାଣିଲା ପରି କହିଲା ।

"ଏଠି ଓ ସହରରେ ଲୋକଙ୍କୁ ଚିହ୍ନିବା କଷ୍ଟ । ସେମାନେ ଘଡି ଘଡି କେ ଆନ ଆନ ଦେଖାଯାନ୍ତି । ମୋ ଆଖିରେ କେତେ କଥା ପଡିଚି । ବଡ ଲୋକଙ୍କ କଥା ସେମିତି ହେଇଥିବ ପରା ଭାବି ମୁଁ ଦେଖି ନ ଦେଖିଲା ପରିଥାଏ । ରାତିରେ ପିଣ୍ଡାରେ ବସି ବିଡି ବଳିଲାବେଳେ ମୁଁ ଦେଖିଚି ନିର୍ଜନ ରାସ୍ତାରେ କିଏ ଯାଏ କିଏ ଆସେ । ରାତି ଅନ୍ଧାରରେ ସେମାନେ ଲୁଚି ଲୁଚି ଢେର୍ କଥା କହନ୍ତି । – ମୁଁ ସେତେବେଳେ ଚୋରକୁ ଦେଖିଚି । ପୁଲିସ୍‌କୁ ବି ଦେଖିଚି । ଦୁହିଁଙ୍କୁ ଏକାଠି ଗଛମୂଳ ଅନ୍ଧାରରେ ଠିଆ ହେବାର ଦେଖିଛି । ମୋର ଅଭ୍ୟାସ ହେଇ ଗଲାଣି ମୁଁ ଆଖି ବୁଜି ବିଡି ବଳି ପାରେ । ଅନ୍ଧାରରେ ହିଁ ମୁଁ ବସି କାମ କରୁଥାଏ ସେଇଠୁ ମୁଁ ସବୁ ଦେଖେ । ମୋତେ କହି ଦେଖି ପାରନ୍ତି ନାହିଁ । ସେ ଦିନ ଗୋଟାଏ ବିଡି ପିଇବାକୁ ମୁଁ ଲଗେଇଦେଇଚି ସେ ପୁଲିସ୍ ବାବୁ ଝପଟି ଆସିଲା । ମୋତେ ଥାନାକୁ ଭିଡିନେଇ ନାନା କଦର୍ଥନା ଦେଲା । ତା'ର ଡର ମୁଁ କୁଆଡେ ତା' ଗୁମର ଅନ୍ୟ କାହାକୁ କହିଦେବି । ସେ ମୋ ପିଛା ଲାଗିଛି ମୋ ମୁହଁ ବନ୍ଦ କରିବା ପାଇଁ ।"

ଚିନ୍ତା ନାହାକ ମନକୁ ମନ ହିଁ କଥା ହଉଥିଲା ସେମିତି । ସେ କାହାକୁ କିଛି କହେ ନାହିଁ । ମତେ ବି କିଛି କହି ନଥିଲା । କିନ୍ତୁ ସେ ଦିନ କଥା ନିଆରା ।

ସେ ଉଠିଲା । ବସିର୍ ମିଆଁକୁ ଠାବ କରିବ । ତାକୁ ମୁକୁଳେଇବ ଏଇଟା ହିଁ ଚିନ୍ତା ନାହାକର ସଂକଳ୍ପ ।

ସେ ଚାଲିଯିବା ପରେ ବି ମୁଁ ସେଇଠି ବସି ରହିଲି ଅନେକ ବେଳ ଯାଏଁ – ବାରମ୍ବାର ତା' କଥା ମନେ ପଡିଲା, ବାରମ୍ବାର ମୁଁ ବିଚଳିତ ବୋଧ କଲି । ଘରକୁ ଆସିବା ପରେ ମଧ ମୋ ଚେତନା ଆଚ୍ଛନ୍ନ ଥିଲା ପରି ମୋର ବୋଧହେଲା ।

ମୁଁ ତା' ଆର ଦିନ ସ୍ଥିର ରହି ପାରିଲି ନାହିଁ । ଉପର ଓଳି ଫୋନ୍ କଲି । କହିଲି 'ମୁଁ ଗୌରାଙ୍ଗ ରାୟଗୁରୁ । ମୋ ପାଖକୁ ଦୁଇଜଣ ସାଦା ପୋଷାକଧାରୀ ପୁଲିସ୍ ଚିନ୍ତା ନାହାକ ବିଷୟରେ ଜେରା କରିବାକୁ ଆସିଥିଲେ । ମୁଁ ସେମାନଙ୍କୁ କହିବାର ଅଛି ।'

ଆର ପାଖରୁ କିଏ ଜଣେ କହିଲା – "ଆଚ୍ଛା ଠିକ୍ ଅଛି । ଆପଣ ଅଧଘଣ୍ଟା ଅପେକ୍ଷା କରନ୍ତୁ ।"

ସତକୁ ସତ ଅଧଘଣ୍ଟା ଭିତରେ ଗୋଟାଏ କଳାକାଚ ଲାଗିଥିବା କଳା ଆମ୍ବାସେଡର ଗାଡି ଆମ ଦୁଆରେ ଆସି ଲାଗିଲା । ସେଥିରୁ ଦୁଇଜଣ ପୁଲିସ୍ ପୋଷାକରେ ଓହ୍ଲେଇ ଗଲେ । ଗାଡି ଚାଲିଗଲା ନିଃଶବ୍ଦରେ ।

ସେମାନେ ମୁଣ୍ଡରୁ ଟୋପି କାଢି ଅଭିବାଦନ ଜଣାଇଲେ ।

ମୁଁ ସେମାନଙ୍କୁ ଚିହ୍ନିଲି । ଆଶ୍ୱସ୍ତ ବୋଧ କଲି ।

ସେମାନେ ବସୁ ବସୁ ଆରମ୍ଭ କଲେ –

"ଆପଣ ବସିଲ୍ ମିଆଁର ସନ୍ଧାନ ପାଇଲେ କି ?"

ମୁଁ ବୋଧେ ଆକାଶରୁ ଖସି ପଡିଲି । ଏ ପୁଣି କିଏ ?

ମୁଁ ଆବାକାବା ହେଇ ତାଙ୍କୁ ଅନେଇବାର ଦେଖି ସେମାନେ ପରସ୍ପରକୁ ଚାହିଁଲେ । ଜଣେ ଜଣକୁ ବୋଧହୁଏ ଆଖିରେ ଠାରି ଦେଲା ।

ସେ ମୋ ପାଖକୁ ଲାଗି ଆସି ଫିସ୍ ଫିସ୍ କହିଲା,

"ଚିନ୍ତା ନାହାକ ହିଁ ବସିର୍ ମିଆଁ । ଚିନ୍ତା ନାହାକ ତା'ର ଛଦ୍ମନାମ ।"

ମୋ ନିଃଶ୍ୱାସ ବନ୍ଦ ହେଇଗଲା । ପାଟି ଓହଳି ଗଲା । ଆଖି ତରାଟି ହୋଇଗଲା ।

ମୋ ତୁଣ୍ଡରୁ ଗୋଟାଏ ଶବ୍ଦ ବାହାରି ଗଲା, "ଇମ୍ପସିବଲ୍ ।"

କହିବା ଲୋକଟି ଅଳ୍ପ ହସି ଘୁଞ୍ଚିଗଲା ।

ସେମାନେ ବୋଧେ ଏଇଭଳି ପ୍ରତିକ୍ରିୟା ପାଇଁ ପ୍ରସ୍ତୁତ ଥିଲେ ।

ଆରଜଣକ ସ୍ୱାଭାବିକ ସ୍ୱରରେ କହିଲା, "ଏବେ ଆପଣ ଚିନ୍ତାନାହାକ ବିଷୟରେ କ'ଣ କହିବାକୁ ଚାହାଁନ୍ତି କୁହନ୍ତୁ ।"

ମୋତେ ଆଫା ଆଫା ଲାଗିଲା । ମୋ ତୁଣ୍ଡରୁ ବଚନ ସ୍ଫୁରିଲା ନାହିଁ । ମୁଁ କେବଳ ଦୋହରାଇଲି, "ଇମ୍ପସିବଲ୍ ।"

ସେ ଦୁହେଁ ଖୁବ୍ ଆମୋଦିତ ବୋଧ କରୁଥିଲେ ।

ମୁଁ କିଛି ସମୟ ଦମ୍ ନେଲାପରେ କହିଲି । "ଆପଣମାନେ ବୋଧହୁଏ ଭୟଙ୍କର ଭୁଲ୍ କରି ବସିଛନ୍ତି । ଚିନ୍ତା ନାହାକ ଓଡିଆ ପିଲା । ଜୀବନରେ ଖୁବ୍ କଷ୍ଟ ପାଇଛି । ସେ ଅନ୍ୟର ଦୁଃଖ ଦେଖିଲେ ସହିପାରେ ନାହିଁ । ବସିର୍ ମିଆଁକୁ ଆପଣ କୁଆଡେ ନେଇ ଯାଇଛନ୍ତି । ସେ ତାକୁ ମୁକୁଳେଇବାକୁ ଚାହେଁ । ସେ ଖୁବ୍ ଇମାନଦାର ପିଲା । ରାତିରେ ବିଡି ତିଆରି କରି ରୋଜଗାର କରେ । ସୁବର୍ଣ୍ଣପୁରରେ ତା' ପାଳିତା ମା'କୁ ଦେଖିବାକୁ ଯାଏ । ତା'ର ସମସ୍ତଙ୍କୁ ସେ ହରାଇଛି ।"

ସେମାନେ ମୋତେ ଚାହିଁ ମୁଚୁ ମୁଚ୍ ହସିବାରୁ ମୁଁ ନିରୁତ୍ସାହିତ ବୋଧ କଲି । ଆଉ କିଛି କହି ପାରିଲି ନାହିଁ ।

ତାଙ୍କ ଭିତରୁ ଜଣେ କହିଲା, "ତା' ଭଉଣୀ ବିନି ମରିଯିବା କାହାଣୀ ଆପଣ ଜାଣି ନାହାନ୍ତି ନା' କ'ଣ । ଖୁବ୍ ପାୱାର ଫୁଲ କାହାଣୀ । ସେ ଅଇଁଠା ପଇଡ କଥା ବାକି ବ୍ଲା ବ୍ଲା ?"

ମୁଁ ସଂପୂର୍ଣ୍ଣ ବିମୂଢ ହୋଇ ତାଙ୍କୁ ଚାହିଁଥାଏ । ମୋ ଭିତରେ କ'ଣ ସବୁ ବିଧ୍ୱସ୍ତ ହୋଇ ଯାଉଥାଏ ଭୂମିକମ୍ପରେ ।

"ଶୁଣନ୍ତୁ ରାୟଗୁରୁ ସାହାବ । ଆମେ ବସିର୍ ମିଆଁ ବିଷୟରେ ଅନେକ ଖବର ନେଇ ସାରିଛୁ ।

ସେ ହୁଏତ ଆପଣଙ୍କୁ କହିଥିବ ଯେ ତାକୁ ବାଂଲାଦେଶୀ ବୋଲି ଆମେ ସନ୍ଦେହ କରୁଛୁ । ପ୍ରକୃତରେ ତା' ନୁହେଁ । ସେ ଉତ୍ତର ବାଲେଶ୍ୱର ବାସିନ୍ଦା । ସେ ଏଠି ବାଂଲାଦେଶ ତରଫରୁ ଗୋପନ କର୍ମ କରୁଛି ବୋଲି କିଛି କିଛି ଅନୁମାନ କରାଯାଇଛି ।"

ମୁଁ ବାଧା ଦେଲା ପରି କହିଲି, "ସେ ବସିର ମିଆଁ ମୋ ସାଙ୍ଗରେ ସାକ୍ଷାତ୍ ପରିଚୟ କରାଇଛି । ମୁଁ ତାକୁ ଦେଖିଛି, ତା' ସାଙ୍ଗେ କଥା ହେଇଚି ।"

"ସେ ଲୋକଟା ତା'ର ସହଯୋଗୀ ।' ସେ ନିଜେ ହିଁ ବସିର୍ ମିଆଁ ।" ମୋ ପାଟି ଅଠାଅଠା ହୋଇଯାଉଥାଏ । ଆଦୌ ବିଶ୍ୱାସ ହେଉ ନଥାଏ ସେମାନଙ୍କ କଥାରେ । ଚିନ୍ତା ନାହାକର ଚେହେରା ତା' ସର ମନେ ପଡୁଥାଏ, ମନ୍ଥି ହୋଇଯାଉଥାଏ ଭିତର ।

"ଶୁଣନ୍ତୁ, ସେ ବୋଧହୁଏ ଆପଣଙ୍କ ପାଖକୁ ଆସନ୍ତା କାଲି ସଞ୍ଜବେଳେ ଆସିପାରେ । ସଶସ୍ତ୍ର । ଆପଣ ସାବଧାନ ଥିବେ । ଆମକୁ ଫୋନ୍ କଲାପରେ କବାଟ ଖୋଲିବେ । କାଲି ବୋଧେ ଏ ନାଟକର ଶେଷ ଦୃଶ୍ୟ ।"

ସେମାନେ ଚାଲିଗଲେ ।

ମୁଁ କ୍ଳାନ୍ତ ଘର୍ମାକ୍ତ ହୋଇ ସୋଫା ଉପରେ ପଡି ରହିଲି ସନ୍ଧ୍ୟାବେଳ ଯାଏ ।

ଜଣା ଯାଉଥିଲା ମୋତେ ସେ ସମସ୍ତ ବ୍ୟାପାର ।

ଗୋଟିଏ କଥା ମୋତେ ବାରମ୍ବାର ବ୍ୟଥିତ କରୁଥିଲା । ଚିନ୍ତାନାହାକ ଓରଫ୍ ବସିଲ୍ ମିଆଁ କାହିଁକି ମୋତେ ବାଛିଲା ତା' ସହିତ ଜଡିତ ହେବା ପାଇଁ ? ମୁଁ ତାକୁ ବିଭିନ୍ନ ସମୟରେ ଚନ୍ଦା ଦେଇଛି । କେବେ କାହା ରୋଗିଣା ପିଲା ପାଇଁ ଔଷଧ ଦେଇଛି । କେବେ ବେଓ୍ୱାରିସ୍ ଶବ ସତ୍କାର ପାଇଁ ମଶାଣି ଖର୍ଚ୍ଚ । କେବେ କାହାଝିଅ ବିଭାରେ ଭୋଜି ଖର୍ଚ୍ଚ । ଏମିତି କେତେ କ'ଣ ?

ଧରାଯାଉ ସେ ପଇସା ସେ ଠକି ନେଇଚି ।

ଏତେଦିନ ପରେ ସେ ତା' ଜୀବନର ଦୁଃଖ କାହାଣୀ କହିଲା ।

ଜଣେ କ'ଣ ମନଗଢା ଏମିତି କାହାଣୀ କହିପାରେ ?

ଏତେ ଜୀବନ୍ତ ଅଭିନୟ କରିପାରେ ?

ଏ କାହାଣୀ ସେ ଆଉ କାହାକୁ ବି ନିଶ୍ଚୟ କହିଚି । ନ ହେଲେ ପୁଲିସ୍ କେମିତି ଜାଣିଥାନ୍ତା ?

ମୁଁ ବେଳକୁ ବେଳ ବେଶୀ ଅସ୍ୱସ୍ତି ବୋଧ କଲି । ବସିର୍ ମିଆଁ କାହାଣୀ ମୋତେ ହତବାକ୍ କରି ଦେଇଥିଲା । ମୁଁ ଦୁଇଭାଗ ହୋଇ ଯାଇଥିଲି । ଗୋଟାଏ ଭାଗ ଚିନ୍ତା ନାହାକ ପାଇଁ ବେଦନାର୍ତ୍ତ, ଅନ୍ୟ ଭାଗଟି ପୋଲିସ୍ କାହାଣୀରେ ବିମୂଢ ଚକିତ ।

ଏତେ ଉତ୍କଣ୍ଠା ନେଇ ମୋତେ ଆଉ ୨୪ ଘଣ୍ଟା ବଞ୍ଚିବା ଅସମ୍ଭବ ମନେ ହେଉଥିଲା । ମୁଁ ବୋଧେ ବିଦୀର୍ଣ୍ଣ ହୋଇଯିବି । ମୁଁ ପୁଅ ପାଖକୁ ଫୋନ୍ କଲି । ତା' ମା'କୁ ନେଇ ଆରଦିନ ସକାଳୁ ଆସିବାକୁ । ଏକୁଟିଆ ରହିବାକୁ ମୋର ସାହସ ହେଲାନାହିଁ । କେଜାଣି କ'ଣ ହେଇଯିବ କାଲି ସନ୍ଧ୍ୟା ପୂର୍ବରୁ ।

ତା' ଆର ଦିନ ଘୋର୍ ଉଦ୍‌ବେଗର ସନ୍ଧ୍ୟା ଆସିଲା । କିନ୍ତୁ ପୁଅ କିମ୍ବା ତା' ମା' ଆସିଲେ ନାହିଁ । କ'ଣ ହେଲା କେଜାଣି ।

ମୁଁ ସ୍ଥିର ହୋଇ ରହିପାରୁ ନଥାଏ । ନାଁ ଘରେ ନାଁ ବାହାରେ । ଟିକିଏ ଶବ୍ଦରେ ଚମକି ପଡୁଥାଏ । –

ଆସ୍ତେ ଅନ୍ଧାର ଘନେଇ ଆସିଲା ।

ଖୁବ୍ ଦୂରରେ ମେଘ ଗୁମୁରେଇ ଡାକିଲା ।

ସ୍ତବଧ ହୋଇଗଲା ବଗିଚ୍ଚ ଘର ଆଉ ଚତୁର୍ଦ୍ଦିଗ ।

ମୋ' କପାଳରୁ ଟପ୍ ଟପ୍ ଝାଳ ନିଗିଡିଗଲା । ମୁଁ ବହୁତ କଷ୍ଟରେ ଫୋନ୍ ପାଖ ଚୌକିରେ କଣ୍ଟାଗଦାରେ ବସିଲା ପରି ବସିଥାଏ ।

ଖୁବ୍ ଦୂରରୁ ବସ୍ତି ସେ ମୁଣ୍ଡରୁ ଗୋଳ ଶବ୍ଦପରି କ'ଣ ଶୁଣାଗଲା । ଅସ୍ପଷ୍ଟ କିନ୍ତୁ, ଶ୍ୱାପଦର ପାଦଶବ୍ଦ ପରି ରୋମାଞ୍ଚକାରୀ ।

ତା'ପରେ ଶୁଭିଲା ସେହିପରି ନିଆଁଳିଭାଳୀ ଗାଡିର ଘଣ୍ଟି । କୋଉଠି ବୋଧେ ନିଆଁ ଲାଗିଗଲା ।

ମୁଁ ଉତ୍କଣ୍ଠିତ ବୋଧ କଲି ।

ମୋର କାହିଁକି ମନେହେଲା ଯେ ଯାହା ଘଟିବାର ଥିଲା ବୋଧହୁଏ ଘଟିଗଲା । ଏଇଠି ଆଉ କିଛି ହେବାର ନାହିଁ, କିମ୍ବା କେହି ଏଠିକି ଆସିବାର ନାହିଁ ।

ମୁଁ ଚଟାପଟ୍ ପିନ୍ଧାପିନ୍ଧିକରି ବାହାରି ପଡିଲି ।

ଦାଣ୍ଡ କବାଟରେ ତାଲା ଦେଲା ବେଳକୁ ମୋର ମନେହେଲା କେହି ଜଣେ ଛପକିନା ମୋ ପାଖରେ ଠିଆ ହୋଇଗଲା ।

ମୁଁ ତାଲାରୁ ଚାବି କାଢିବା ଅବସ୍ଥାରେ କାଠ ହୋଇଗଲି ।

ହଠାତ୍ ବୁଲିପଡି ଦେଖିଲି କେହି ନାହିଁ ।

କବାଟକୁ ଆଉଜି ବୁକୁ ଦମଦମ୍‌ଟାକୁ ସମ୍ଭାଳିଲି ।

ତା'ପରେ ରାସ୍ତାକୁ ଟାଉଟାଉ ଆଗେଇ ଗଲି ।

ମୋ ପଛଟା ମୋତେ ମଡେଇ ହେଲାପରି ଲାଗୁଥାଏ । ମୁଁ ବାରଂବାର ଲେଉଟି ଚାହୁଁଥାଏ ।

ଗୋଟାଏ ରିକ୍‌ସା ବତୀଖୁଣ୍ଟ ପାଖକୁ ଆସିଲା ।

ମୋ ତାଳୁରୁ ତଳିପା ଯାଏ ବିଜୁଳୀ ମାରିଦେଲା । ଚିନ୍ତା ନାହାକ ?

ନାଁ ସେ ନୁହେଁ । କିନ୍ତୁ ଅଧାଛାଇ ଆଲୁଅରେ ସେ ଅବିକଳ ସେମିତି ଦେଖାଗଲା । ବସ୍ତି ସେ ମୁଣ୍ଡକୁ ଚଞ୍ଚଳ ଚଲେଇବାକୁ କହିଲି ।

ରିକ୍ସା ଗହଳି ଭିତରେ ପଶିଲା । ରାସ୍ତାକାଟି ଚାଲିଥାଏ । ବଜାର ଭିତରେ ମୋତେ କିଛି ଦିଶୁ ନଥାଏ ।

ମୋଡ ବୁଲିଲା ବେଳକୁ ନିଆଁଧୂଆଁ ଆକାଶକୁ ଚହଟି ଉଠୁଥିବା ଦେଖାଗଲା ।

ତଳବସ୍ତିରେ ହିଁ ନିଆଁ ଲାଗିଥିଲା ।

ଝାଟିମାଟି ବାଉଁଶପଟିର ଝୁମ୍ପୁଡି ବସ୍ତି । ଜଳିପୋଡି ପାଉଁଶ ହୋଇ ଯାଇଥିବ ।

ଏଥିରେ ବସିର୍ ମିଆଁ ରହୁଥିଲା । ସେ କ'ଣ ନିଜେ ନିଆଁ ଲାଛି ଦେଲା ? ଚିନ୍ତା ନାହାକ, ତା'ର ନୁଆଣିଆ ଛଳଛଳ ଆଖି – ସେ କ'ଣ ଏମିତି କରିଦେଇ ପାରିଲା ?

ଜଳାପୋଡା ପାଖକୁ ରିକ୍ସା ଯାଇ ପାରିଲା ନାହିଁ ଆଗକୁ ଅଳ୍ପ କିଛି ବାଟ ଥିଲା; ମୋତେ ଓହ୍ଲେଇ ଦେଲା । ମୁଁ ସେଆଡକୁ ଟାଉଟାଉ ଚାଲିଲି ।

ନିଆଁ ଲିଭାଳି ଲାଗି ସାରିଥିଲେ ।

ମହୋତ୍ସବ ସରି ସାରିଥିଲା ।

ଗୋଟାଏ ପାଖରେ ଗହଳି ଦେଖି ସେଇ ଆଡକୁ ଗଲି ।

ପୁଲିସ୍‌ବାଲା ଘେରି ରହିଥିଲେ ।

ମଝିରେ ଯେ ଭୂଇଁରେ ପଡିଥିଲା ତାକୁ ଦେଖି ମୁଁ ଚମକି ପଡିଲି ।

ସେଇତ ଚିନ୍ତା ନାହାକ ।

ତା' ମୁହଁଟା ଏମିତି ରକ୍ତରେ ଲତପତ କାହିଁକି ହୋଇଥଲା ?

ଶୁଣିଲି ତାକୁ ସେମାନେ ଗୁଳିକରି ଦେଲେ ।

ଶୁଣିଲି ସେ ଜଳନ୍ତା ଘରୁ ଗୋଟେ ଛୋଟ ଝିଅଟାକୁ ଧରି ବାହାରି ଆସୁଥଲା । ସେ କୁଆଡେ ହାତରେ ଗ୍ରେନେଡ୍ ଧରିଥିଲା । ପିଲାଟାକୁ ଆଡୁଆଳ କରିଥିଲା, ନିଜେ ବଞ୍ଚିବା ପାଇଁ ।

ଶୁଣିଲି, ପୁଲିସ୍ ପକ୍ଷରୁ ସନ୍ଦେହ କରାଯାଇଥିଲା ଯେ ବସିର୍ ମିଆଁ ଗୋଟାଏ ମୁଖା ପିନ୍ଧିଥିଲା ।

ମୁଖା କାଢିବାକୁ ତା' ମୁହଁଯାକ ସେମାନେ ଛେଲି ପକେଇଛନ୍ତି । ନିଆଁରେ ଝଲସି ଯାଇଥିବା ବାଳ, ଆଉ ରକ୍ତ ସାଲୁବାଲୁ ମୁହଁରେ ଚିନ୍ତା ନାହାକକୁ ମୁଁ ଚିହ୍ନିପାରୁ ନଥିଲି ।

ସେମାନେ କିନ୍ତୁ ଜୋର ଦେଇ କହୁଥିଲେ ଯେ ବସିର୍ ମିଆଁକୁ ସେମାନେ ଠିକ୍ ଚିହ୍ନିଛନ୍ତି । ତାକୁ ଗୁଳି କରିଛନ୍ତି । ତା' ହାତରୁ ଗ୍ରେନେଡ୍ ଉଦ୍ଧାର କରିଛନ୍ତି ।

ସତେ ?

ମୋତେ ସେମାନେ ରାଜସାକ୍ଷୀ କରି ଠିଆ କରେଇବେ । ମୁଁ କ'ଣ ସନାକ୍ତ କରିବି ? ମୁଁ କ'ଣ କହିପାରିବି ଯାହା ମୁଁ କହିବାକୁ ଚାହୁଁଛି ? ମୁଁ ହୁଏତ କହିବି ।

ଏ ରକ୍ତକୁ ଚିହ୍ନଟ କରୁଚି ଧର୍ମାବତାର । ଏଇଟା ଛେଳି ରକ୍ତ ନୁହେଁ ।

ସେ ଦରପୋଡା ବାଳକୁ ଚିହ୍ନଟ କରୁଚି, ନିଆଁକୁ ବି ଚିହ୍ନଟ କରୁଚି । –

ଏ ଗୁଳିକୁ ବି ଚିହ୍ନଟ କରୁଚି ଧର୍ମାବତାର । ଆପଣଙ୍କ ଏ ଶାନ୍ତିବାହିନୀକୁ ଚିହ୍ନଟ କରୁଚି ।

କିନ୍ତୁ ଏ ଲାୱାରିସ୍ ଲାସ୍‌କୁ ନୁହେଁ ।



# କ୍ରମଶଃ ଗଭୀର ନଈ

## ଅମାନତ୍

ଜାଣିବା ପୂର୍ବରୁ ବଜ୍ରପାତ ହୋଇସାରିଥାଏ । ଜାଣିବାକୁ ବେଳ କାହିଁ ?

ଅନ୍ୟମାନେ ଜାଣନ୍ତି । ନିଆଁହୁଳା ଚମକିବା ଦେଖନ୍ତି । ବଜ୍ର ଦମକିବା ଶୁଣନ୍ତି । ଦୌଡିଆସନ୍ତି ଦେଖିବାକୁ କେଉଁଠି ବିଦୀର୍ଣ୍ଣ ହୋଇଗଲା ପୃଥୀବୀ, ପାଉଁଶ ହୋଇଗଲା ତାଳଗଛ, ଧୂଳିସାତ୍ ହୋଇଗଲା ମଣିଷ !

କୁହୁଡିଆ ସଂଜବେଳେ ସେଦିନ ସେମିତି ଗୋଟାଏ ନିର୍ଘାତ ଶବ୍ଦ ହେଲା । ଝାମ୍ପୁ ଚମକି ଡେଇଁପଡିଲା ସାଇକେଲରୁ । ଠିକ୍ ତା' ସାମ୍ନାରେ ଯୋଡାଏ କାର୍ ମାଡ ହୋଇଗଲା । ଛତୁ ହୋଇଗଲା । ଜଳିଗଲା । କଣ ହେଲା ଜାଣିବା ପୂର୍ବରୁ ଝାମ୍ପୁ ଗୋଡରେ ସେଇଟା ପିଟି ହୋଇଗଲା । ହାତଟାଏ ନା ହୃତ୍‌ପିଣ୍ଡଟାଏ ?

କ'ଣ ବୋଲି ଜାଣିବାପୂର୍ବରୁ ଝାମ୍ପୁ ନଇଁପଡିଥିଲା । ତାକୁ ଗୋଟେଇ ନେଇଥିଲା । ବୁକୁମୁଣାରେ ଭର୍ତ୍ତିକରି ନେଇଥିଲା । ସାଇକେଲ ଉଠାଇ ଉଡିଯାଇଥିଲା । ନିର୍ଘାତ୍ ତଥାପି ଶୁଭୁଥିଲା । ନିଆଁ ଜଳି ଚାଲିଥିଲା । ଛିଣ୍ଡା ହାତଟାଏ ତଥାପି ଡେଉଁଥିଲା ।

ଲୋକେ ଆସି ନଥିଲେ । କୁହୁଡି ଛାଡି ନଥିଲା । କୁହାଟ ଶୁଭୁଥିଲା । ପାଦଶବ୍ଦ ଶୁଭୁଥିଲା । କଣ ହେଲା ଜାଣିବା ପୂର୍ବରୁ ଝାମ୍ପୁ ଉଭାନ୍ ହୋଇଯାଇଥିଲା ।

ଝାମ୍ପୁ ତା' ବସାଘରେ ଆଖି ବୁଜି ଧକଉଥିଲା । କବାଟ କିଳି ଖଟ ଉପରେ ବସି ଫଁ-ଫଁ ହଉଥିଲା । ଆଖି ଖୋଲି ଅନେଇପାରୁନଥିଲା । ବୁକୁ ପକେଟରେ ହାତ ମାରି ପାରୁ ନଥିଲା ।

କେଜାଣି କ'ଣଟାଏ ସେ ଭର୍ତ୍ତି କରି ନେଇଛି – ଛିଣ୍ଡା ପାପୁଲିଟାଏ, କି ହୃତ୍‌ପିଣ୍ଡଟାଏ ? କେତେବେଳେ ତା'ର ନିଶ୍ୱାସ ଘର ଧରିଲା । ବୁକୁ ଦମଦମ ଊଣା ହେଲା । ସେ ଆଖି ଖୋଲି ଚାହିଁଲା ଚାରିଆଡେ । ତା' ମସ୍ତିଷ୍କ ଭିତରେ କିନ୍ତୁ ରହି ରହି ସେ ବିକଟାଳ ଚଡକ ଛିଡି ପଡୁଥାଏ । ସେ ଆଖିକାନ ବୁଜି ଦେଉଥାଏ ।

ତା' ପାଦରେ ସାପ ବାଡେଇ ହେଲା ପରି କ'ଣଟାଏ ପିଟି ହେଇଯାଉଥାଏ । ତା' ପାଦ ଘୁଞ୍ଚିଯାଉଥାଏ । ସେ ଠିଆ ହୋଇ ଏପାଖ ସେପାଖ ବୁଲିଲା । ତା'ପରେ ଟେବୁଲ ପାଖରେ ଥିବା କାଠ ଚୌକିଟା ଉପରେ ବସିପଡିଲା ।

ନାକପୁଡା ଫୁଲିଉଠିଥାଏ । ବୁକୁ ଧପଧପ ହଉଥାଏ । ହାତ ସାମାନ୍ୟ ବୋଲ ମାନୁ ନଥାଏ । ସେ ବୁକୁ ପକେଟରୁ ସେଇଟାକୁ ଓଟାରି ଆଣି ଟେବୁଲ ଉପରେ ରଖିଦେଲା । ମେରୁନ୍ ରଙ୍ଗର ମୋଟା ପର୍ସଟାଏ ।

ନା, ନା, – ଝାମ୍ପୁ କେବେ କାହାର କୁଟାଖିଏ ମଧ ଛୁଏଁନାହିଁ । ତା' ଡାକ ନାଁ ସିନା ଝାମ୍ପୁ, ତା' ଭଲ ନାଁ ମାଧବ ବାହିନୀପତି । ଖାନ୍ଦାନ ଘର ପିଲା । ଗାଁରେ ଘରଦ୍ୱାର, ନଡିଆ ବଗିଚା, ଆମ୍ବ ତୋଟା । ସେ ଆସିଛି ସହରକୁ ଚାକିରି କରିବ, ଉପାର୍ଜନ କରିବ । ପାଠ ପଢି ଗାଁଟାରେ କେମିତି ସେ ରହିଥାନ୍ତା ? ଧୋତି ପିନ୍ଧି ଖେତହୁଡାରେ ବସିଥାନ୍ତା ?

ବାପ ହରିଶ ବାହିନୀପତି ଭାରି ଜଣାଶୁଣା ଲୋକ । ପୁଅର ବସାଘର ଖର୍ଚ୍ଚ ପଠାନ୍ତି । ପଢାଖର୍ଚ୍ଚ ପଠାଇଲା ପରି ମାସକୁ ମାସ ମନିଅର୍ଡର ଆସେ । ସବୁଥିରେ ଧାଡିଏ ତାଗିଦ କରି ଲେଖିଥାନ୍ତି, "ଦେଖିଚାହିଁ ଚଳିବୁ । ସହର ଜାଗା ।"

ଝାମ୍ପୁ ହସେ । "ଦେଖିଚାହିଁ ଚଳିବି କ'ଣ ?" – ସହରଟା କଣ ଜଙ୍ଗଲ ହୋଇଛି ? ସେଇଠି କଣ ସାପ, ବାଘ, ବଣ – ଭାଲୁ ବୁଲୁଛନ୍ତି ? ସେଦିନ ଝାମ୍ପୁ ହଠାତ୍ ଅନୁଭବ କଲା ଯେ ସହର ଆଉ ପ୍ରକାରେ ଜାଗା । ଏଠି ଅନେକ କଣ ସବୁ ଘଟିଯାଏ । ଏମିତି କଣ ଗାଁରେ ହୋଇପାରିଥାନ୍ତା ? ପର୍ସଟାଏ ଛିଟିକି ଆସି ତା' ଗୋଡରେ ବାଡେଇ ହୋଇଥାନ୍ତା ?

ସେ ବହି ଫିଟେଇଲା ପରି ପର୍ସଟାକୁ ଖୋଲିଲା । ଗୋଟାଏ ପାଖେ ଫଟୋଟାଏ । ତା' ତଳେ ହୁଏତ ତା' ନାଁ ଆଉ ଠିକଣା । ପର୍ସର ଦାନ୍ତ ଟେକି ଚାହିଁଲା । ଇସ୍... ଖାଲି ଶହେଟଙ୍କିଆ ଭର୍ତ୍ତି ହେଇ ରହିଛି । ସେ ଚଟ୍‌କିନା ପର୍ସଟାକୁ ଛାଡିଦେଲା । ମୁଣ୍ଡକୁ ଦୁଇ ହାତରେ ଚାପିଧରି ଆଖି ବୁଜିଦେଲା । ହଜାର ହଜାର ଟଙ୍କା – ଆଠ କି ଦଶ ହଜାର । ଏତେ ଟଙ୍କା ସେ କଣ କରିବ ? ଏ ଟଙ୍କା ତ ତା'ର ନୁହେଁ । ଏଇ ଯେ ନିଶୁଆ ମଣିଷଟା, ଯାହାର ନାଁ ଆଉ ଠିକଣା ଯା ତଳେ ଲେଖା ହେଇଛି, ତା'ରି ଟଙ୍କା । ଝାମ୍ପୁର ପାଟି ଶୁଖିଗଲା । କପାଳ ଜକେଇଗଲା । ତାକୁ ଛପ୍‌ଛପ୍ ଲାଗିଲା, ଛାନିଆ ଲାଗିଲା ।

ସେ ପର୍ସଟାକୁ ଗୋଟେଇଲା କାହିଁକି ? ତା' ଗୋଡରେ ଆସି ବାଡେଇହେଲା ବୋଲି କଣ ସେଇଟା ତା'ର ହେଇଗଲା ? ସେ ନିଶୁଆ ଯଦି ତା' ଆଗରେ ଠିଆହୋଇଥାନ୍ତା, ସେ କଣ ସେଥିରେ ହାତ ଦେଇପାରିଥାନ୍ତା ? ସେ କଣ ଗୋଟେଇଆଣି ତାକୁ ବଢେଇ ଦେଇ ନ ଥାନ୍ତା ? ସେ ମଣିଷଟା ଖଣ୍ଡ ଖଣ୍ଡ ହୋଇଗଲା, ଜଳିଗଲା ବୋଲି ସେ ପର୍ସଟାକୁ ଧରି ପ୍ରାଣମୂର୍ଚ୍ଛା ସାଇକଲ ଚଳେଇ ପଳେଇଆସିଲା ? ଚୋର ଆଉ କାହାକୁ କହନ୍ତି ? ମାଲିକର ଅଜାଣତରେ ତା' ଜିନିଷକୁ ଧରି ଚମ୍ପଟ ମାରିବା ତ' ଚୋରି ।

ଝାମ୍ପୁ ଚୌକି ଛାଡି ଉଠିଲା । ସୁରେଇରୁ ପାଣି ପିଇ ଏଆଡରୁ ସେଆଡ ଟହଲିଲା । ଓଦା ହାତ ମୁହଁ ଉପରେ ବୁଲେଇ ଆଣି ମନକୁମନ କହିଲା –

"ହଉ ହେଲା; ସେ ଠିକଣାରେ ନେଇ ଫେରେଇ ଦବା ? କିନ୍ତୁ ସେମାନେ ପଚାରିବେ,

'ତମେ କେମିତି ପର୍ସଟାକୁ ପାଇଲ ? ତୁମେ ତାଙ୍କ ମୁଣାରୁ ନ ନେଇଚ ବୋଲି ପ୍ରମାଣ କ'ଣ ? ହୁଏତ ତାଙ୍କ ହାତ ଘଣ୍ଟା, ସୁନାଚେନ୍, ମୁଦି ମଧ ତୁମେ ନେଇଛ ।'

ଝାମ୍ପୁ ପାଦତଳିପା ଶିରଶିର କଲା । ଆଣ୍ଠୁ ଦୁର୍ବଳ ଲାଗିଲା । ତା'ହେଲେ ସେ ପର୍ସଟାକୁ ନେଇ ଥାନାରେ ଦେଇଦେବ । ଥାନାବାବୁ ପଚାରିବ, 'ତୁମେ କୋଉଠୁ ପାଇଲ ? ଦୁର୍ଘଟଣାବେଳେ ତୁମେ କୋଉଠି ଥିଲ ? ପର୍ସ ସାଙ୍ଗରେ ଆଉ କଣ ସବୁ ଛିଟିକି ପଡିଥିଲା କି ? ସେ ବାବୁର ସ୍ତ୍ରୀ ମୁଣ୍ଡଟା ମିଳୁନାହିଁ । ଗଳାର ହାର ମିଳୁ ନାହିଁ । ହାତର ପାପୁଲି ମିଳୁନାହିଁ । ସୁନା ଚୁଡି ଦି'ଗୋଛା ମିଳୁନାହିଁ । ସେ ସବୁ କୋଉଠି ଅଛି କହିପାରିବ କି ?

ଝାମ୍ପୁକୁ ଲାଗିଲା, ସେ ଗୋଟାଏ ଗହୀର ଶୂନ୍ୟ କୂଅ ଭିତରକୁ ଗଳିପଡୁଛି, ତାକୁ ଅଣନିଶ୍ୱାସୀ ଲାଗୁଚି ।

ପୋଲିସବେଶରେ ତା' ସାଙ୍ଗ ନଳିନୀ ଦିଶିଗଲା – ବୋଧହୁଏ ନଳିନୀ ଏପରି କିଛି ସନ୍ଦେହ କରିବ ନାହିଁ । ସେ ହୁଏତ ଟଙ୍କାତକ କାଢି ଆସ୍ତେ ପର୍ସାଟାକୁ ହିଁ ଜମାନତ୍‌ରେ ନେଇଯିବ । ଟଙ୍କାତକ ଡ୍ର ଭିତରେ ଭର୍ତ୍ତି କରିଦବ । ଉପର ଅଫିସର ପଚାରିଲେ ହସି ହସି କହିବ – ନଳିନୀ ଚମତ୍କାର ହସି ଜାଣେ, – "ଟଙ୍କା କାହିଁ ସାର୍ ! ଏ ଖାଲି ମୁଣାଟା ଏ ବାବୁ ଆଣି ଦେଇଛନ୍ତି । ଟଙ୍କା କଥା ସେ ଜାଣିଥିବେ ।" ପୁଣି କିଛି ମିଠା ହସର ଶର୍କରା ବୁଣିଦେବ । ଝାମ୍ପୁ ବେକମୁଣ୍ଡାରେ ଗୋଟାଏ ଜାବ ଅନୁଭବ କଲା – ରୁମାଲ କାଢି ପୋଛିଆଣିଲା । ପୁଣି ଟହଲିଲା ଘରସାରା ।

"ମୁଁ ମାଧବ ବାହିନୀପତି, ହରିଶ ବାହିନୀପତି ପୁଅ । ମୁଁ କାହିଁକି ଏମିତି କଲି, କେମିତି କଲି ବୁଝିପାରୁନାହିଁ । ମୋ ଭିତରେ କଣ ଏଭଳି ଚୋରଟାଏ ଲୁଚିଥିଲା, ସଜ ଉଣ୍ଡୁଥିଲା ଝାମ୍ପିବାକୁ ? ମୋ ବାପ ଗୋସେଇଁବାପ ଭିତରେ କଣ ସେ ଲୁଚିଥିଲା ? ହରିଶ ବାହିନୀପତି ଶୁଣିଲେ ଛୁରୀ ମାରିଦବ । ଗାଁରେ ତ ଏମିତି ହୋଇ ନଥାନ୍ତା ।"

ତା' ଭିତରେ ଆସ୍ତେ ଶୁଭିଲା, ନଳିନୀ କହିଲା ପରି – 'ଆବେ ଓଲୁ, ଗାଁରେ ଏମିତି ସୁଯୋଗ କାହିଁ ? ଏଇଟା ଏଇ ସହରର ମାଟିରେ ଅଛି । ଏଠି ଅନେକ କିଏ ଧନ ପାଇଯିବ, କିଏ ଧନ ହାରିଯିବ । କିଏ ମରୁ ମରୁ ବଞ୍ଚିଯିବ, କିଏ ବଞ୍ଚୁ ବଞ୍ଚୁ ମରିଯିବ । ଆଉ ଦି'ହାତ ତୁ ମାଡିଯାଇଥିଲେ ନିଜେ ବାଡେଇ ହୋଇଥାନ୍ତୁ ମଟର ଦେହରେ । ତୋ ଗୋଡରେ ଆସି ଏ ପର୍ସ କାହିଁକି ବାଡେଇ ହୋଇଥାନ୍ତା ? ମଟରରେ ଯାଉଥିବା ଲୋକ ଧନୀ । ସେ ମରିଗଲା, ଖଣ୍ଡ ଖଣ୍ଡ ହୋଇଗଲା, ଜଳିଗଲା । ସାଇକେଲ୍‌ରେ ଯାଉଥିବା ମଣିଷଟା ହଠାତ୍ ଧନୀ ହୋଇଗଲା । ଏଥିରେ ଅସୁବିଧା କ'ଣ ? ତୁ' ଯଦି ଏମିତି ଲାଜେଇଯାଉଛୁ ତା'ହେଲେ ଯାଉନୁ ସେ ନିଆଁ ଭିତରକୁ ଟଙ୍କାମୁଣାଟା ଫିଙ୍ଗିଦବୁ । ବେକୁବ୍ !'

ଝାମ୍ପୁ ସତକୁସତ ଶୁଣିଲା ନା କଣ କିଏ ତାକୁ ବେକୁବ୍ କହୁଛି । ତା' କାନ ଠିଆ ହୋଇଗଲା । କାନ ଡେରି ହୋଇଗଲା ଶୁଣିବାକୁ । ପ୍ରକୃତରେ କିନ୍ତୁ ପାଖ ରାସ୍ତାରେ କିଏ କଥା ହୋଇ ଯାଉଥଲେ । ସେଥିରୁ ଜଣେ ତା' ବସା ସାମ୍ନାରେ କହିଲା – 'ବେକୁବ୍ ।'

ଝାମ୍ପୁ ସେ ପର୍ସଟାକୁ ଏଥର ଠିକ୍ ଧରିପାରିଲା । ତଥାପି ତା'ର ଶିରାପ୍ରଶିରା କେମିତି ପାତଳ କାଚ ପରି ଟାଣିରହିଥାନ୍ତି । ଗୋଡିଟିଏ ବାଜିଗଲେ ସେ ଝଣଝାଣ କୁଟେଇ ହୋଇପଡିଥାନ୍ତା ।

କଥା ସତ ନୁହେଁ କି ? ସେ କଣ ଚାହିଁଥିଲା ଯେ ଦୁର୍ଘଟଣାଟାଏ ହଉ ? ସେ ଭିତରୁ ହଠାତ୍ ଗୋଟାଏ ପର୍ସ ଆସି ତା' ପାଦପାଖରେ ବାଡେଇ ହଉ ? ହଁ, ସେ ଗୋଡ ଛାଟି ଦେଇ ସେଇଠୁ ପଳେଇ ଆସିପାରିଥାନ୍ତା । କିନ୍ତୁ କଣ ତ' ହୋଇଗଲା । ସେ ନଇଁପଡି ସେଇଟାକୁ ଗୋଟେଇ ନେଲା । ସେଥିରେ ସେ କଣ ପାପ କଲା କି ? ତାକୁ କଣ କିଏ କହିପାରିବ ସେ ହତ୍ୟା କରିଛି ଚୋରି କରିଛି ବୋଲି ?

ଇସ୍... ଯେଉଁ ସବୁ ଲୋକ ସେ କୁହୁଡି ଭିତରୁ ଆସିଥିବେ ପେଟ୍ରୋଲ ନିଆଁଧୂଆଁର ଟକଡାକୁ, ସେମାନଙ୍କ ଆଖି ତହକୁ ଥିବ । ସେମାନେ ଅଙ୍କାବଙ୍କା ଲୁହା ଆଉ ଭଙ୍ଗା କାଚ ସନ୍ଧିରେ ଅନେଇଥିବେ, ସେ ସ୍ତ୍ରୀଲୋକ ମୁଣ୍ଡଟା ହୁଏତ ସାମାନ୍ୟ ଲାଗିଥିବ କି ନା, ତାକୁ ଓଟାରି ଛିଣ୍ଡେଇଦେଇଥିବେ ସେ ସୁନାହାରଟା ପାଇଁ । ଆଉ କିଏ ସେ ମୁଦିପିନ୍ଧା ଗୋରା ଗୋରା ପାପୁଲିଯୋଡିକୁ ହାଣିନେଇଥିବ ।

ଝାମ୍ପୁର ଆଖି ତରାଟି ହୋଇ ରହିଥାଏ । ତାକୁ ଦିଶୁଥାଏ ବିକଟାଳ ଦୃଶ୍ୟ । ତା' ନିଶ୍ୱାସ ରୋଧି ହୋଇ ରହିଥାଏ । ବେକୁବ୍ !

ହୁଗୁଳିଗଲା ସବୁ ଗଣ୍ଠି । ଝାମ୍ପୁ ସେ ପର୍ସ ଭିତରୁ ଟଙ୍କାତକ କାଢି ଥୋଇଲା ଟେବୁଲ ଉପରେ । ସେଥିରେ ପାଞ୍ଚଶହ ଟଙ୍କିଆ ଦଶ ଖଣ୍ଡ; ଶହେ ଟଙ୍କିଆ ଷାଠିଏ ଖଣ୍ଡ ନୋଟ୍ । ଆଉ ଦଶ-ପାଞ୍ଚ ହୋଇ କିଛି । ଏତେ ଟଙ୍କା ନେଇ ସେ ଲୋକଟା କୁଆଡେ ଯାଉଥିଲା ? ସେ କଣ ଏମିତି ସବୁବେଳେ ଟଙ୍କା ଥାକ ଥାକ କରି ନେଇଯାଏ ?

ତା' ସ୍ତ୍ରୀ ସେ ଗାଡିରେ ଥିଲା ନା ନାହିଁ, କେଜାଣି ? ସେ ହୁଏତ ଏକୁଟିଆ ଯାଉଥିଲା । ହୁଏତ ସେତକ ତା'ର ସେ ଦିନର ଉପାର୍ଜନ । ହୋଇପାରେ ସେଇଟା ଗୋଟାଏ ଲାଞ୍ଚୁଆ ଅଫିସର । ଦୁଇଥାକରେ ଦି'ଜଣଙ୍କଠୁ ସେ ଟଙ୍କାତକ ନେଇଛି । ଉଭୟ ପକ୍ଷରୁ ଖାଇଛି । ଏଣିକି ସେ କାହାକୁ ବିକିଥାନ୍ତା ତା' କଲମ କେଜାଣି ?

ନହେଲେ ସେ ଗୋଟାଏ ଦଲାଲ । କାହାଠଉଁ ମାଲ ଆଣି ସରକାରକୁ ଦୁଇଗୁଣ ଦାମ୍‌ରେ ବିକିଥାନ୍ତା । ଅର୍ଡର ପାଇବାକୁ ମନ୍ତ୍ରୀକୁ, ଅଫିସରକୁ ସଂଜବେଳେ ଘରେ ଯାଇ ଲାଞ୍ଚ ଦେଇଥାନ୍ତା । ଡୋରି ଛିଣ୍ଡିଗଲା ।

ଝାମ୍ପୁ ଆସ୍ତେ ଅନୁଭବ କଲା ଯେ ସେ କୁହୁଡିଆ ସନ୍ଧ୍ୟାରେ ଏତେ ଟଙ୍କା ନେଇ ଯେ କେହି ଯାଉଥିଲା, ସେ ତାକୁ ଉପାର୍ଜନ କରି ନଥିଲା । ସହରରେ ମାସର ପହିଲା ଛ'ସାତଦିନ ଲୋକଙ୍କ ମୁଣାରେ ଟଙ୍କା ଥାଏ । ସେ ବି ଏତେ ନୁହେଁ । ମାସର କୋଡିଏ ଦିନ ଚାଲିଗଲା ପରେ କିଏ ଏତେ ଟଙ୍କା ଧରି ଯାଉଥାଇପାରେ ?

ଝାମ୍ପୁର ହଠାତ୍ ହୋସ୍ ଆସିଲା । ଆରେ, ଏଥିରେ ତା'ର ନାଁ ଗାଁ ଲେଖାଅଛି ନା କ'ଣ ?

ସେ ଫଟୋକୁ ଅନେଇଲା । ତା' ତଳେ ଥିବା ଛୋଟ କାର୍ଡଟାକୁ ଟାଣିଆଣିଲା । କାର୍ଡଟା ବାସୁଥିଲା ଚମତ୍କାର । ଇଂରାଜୀରେ ଲେଖାଥିଲା – "ସୁବ୍ରତ ଯୋଷୀ, ଜହୁରୀ ବଜାର, ବମ୍ବେ ।"

ତା'ହେଲେ ସେ ଲୋକଟା ଏଠାର ନୁହେଁ । ସେ କାହିଁକି ଏତେ ଦୂର ଆସିଥିଲା ? କଣ କରୁଥିଲା ଏଠି ? ଚୋରାଚାଲାଣ ନୁହେଁ ତ ? ଚରସ, ହିରୋଇନ୍, ନା ସୁନା ? – ତା' ପାଖରେ ଟଙ୍କାର କଣ ଅଭାବ ?

ହୋଇପାରେ ସୁବ୍ରତ ଯୋଷୀ ଏଠି ନାହିଁ । ତାକୁ ପକେଟ୍‌ମାର୍ କରି ଏ ଲୋକଟା ଚମ୍ପଟ୍ ମାରୁଥିଲା । ବାଟରେ ଜଳିଗଲା । ଏ ଟଙ୍କା ୟା'ର ନୁହେଁ । ସୁବ୍ରତ ଏଠି ନାହିଁ । ଥିଲେ ବି ତା'ର ନୁହେଁ ।

ଝାମ୍ପୁ ଟଙ୍କାତକ ସେ ପର୍ସ ଭିତରେ ରଖିଦେଲା, ଫଟୋ ଓ ଠିକଣା ଥିବା କାର୍ଡ ଆଉ ରଖିଲା ନାହିଁ । ଅନ୍ୟମନସ୍କ ଥିଲା ପରି ଖୁବ୍ ଆସ୍ତେ କିନ୍ତୁ ସ୍ଥିର ଢଙ୍ଗରେ ସେ ଦୁଇଟିକୁ ଟିକିଟିକି କରି ଚିରିଦେଲା । ସେମିତି ଦାନ୍ତୁକ ଦାନ୍ତ ଜାକି ତଳେ ରଖି ସେ କାଗଜଖଣ୍ଡମାନଙ୍କରେ ନିଆଁ ଲଗେଇ ପୋଡିଦେଲା । କାଗଜ ଅଙ୍ଗାରକୁ ଗୋଟେଇ ବାହାରକୁ ଛାଡିଦେଲା । ଚୌକି ଉପରେ ବସି ପର୍ସ ଆଡକୁ ଚାହିଁଲା । ଏଣିକି ଏଇଟା ଯା'ର ମନ ତା'ର ହୋଇପାରେ । ଧନ କାହାର ? ଯା ପାଖରେ ରହିଲା ସେଇ ସମୟ ପାଇଁ ତା'ର ।

ଝାମ୍ପୁ ହାତ ବଢେଇଲା ପର୍ସ ଆଡକୁ । ତା' ହାତ ପାପୁଲିଯାକ କଳା ଲାଗିଥିଲା ପ୍ରଚୁର ।

X X X X

ୟା' ଭିତରେ ଢେର୍ ଢେର୍ ଘଟଣା ଘଟିଗଲାଣି । କୋଡିଏ ପଚିଶ ବର୍ଷ କିଛି କମ୍ ସମୟ ନୁହେଁ । ଏବେ ତ' ଝାମ୍ପୁ ଓରଫ ମାଧବ ବାହିନୀପତିକୁ ଦେଖାକରିବା କାଠିକର ପାଠ । ତାଙ୍କ ଆଗରେ ମନ୍ତ୍ରୀ, ପଛରେ ଭିଜିଲାନ୍ସ । ସେ ଉଭୟଙ୍କୁ ଅକାତର ସନ୍ତୁଷ୍ଟ କରିଚାଲିଥାନ୍ତି । ତାଙ୍କର କୌଣସି କଥାକୁ ଖାତିର ନଥାଏ । ତାଙ୍କର ତିନି ନମ୍ବର ଗାଡିର ନୂଆ ଡ୍ରାଇଭର ଏବେ ଗୋଟାଏ ଲୋକ ମଡେଇଦେଲା । ବାବୁ ଲକ୍ଷେ ଟଙ୍କା ବୁଣିଦେଲେ । କଥା ଯୋଉଠି ସେଇଠି ଲୀନ ହୋଇଗଲା । ଗାଡି ଚକରୁ ରକ୍ତ ଧୋଇବାକୁ କେବଳ ଦଶମିନିଟ୍ ସମୟ ଲାଗିଥିଲା । ଆଜି ରାତି ଏଗାରଟା ବେଳେ ଗୋଟାଏ ଅଦ୍ଭୁତ ଘଟଣା ଘଟିଲା । ଦଶଟାରୁ ତାଙ୍କ ଅପେକ୍ଷାରେ ଯେଉଁମାନେ ସେ ଭିତର ବୈଠକଘରେ ବସିଥିଲେ, ସେମାନେ ପରସ୍ପର ସହିତ କଥାବାର୍ତ୍ତା ହଉ ନଥିଲେ । କେହି କାହାକୁ ହୁଏତ ଜାଣି ନଥିଲେ, ବା ଜାଣିବା ନିରାପଦ ଭାବୁ ନଥିଲେ । ସାଢେ ଦଶଟାରେ ଜଣେ ପାହାଚ ଓହ୍ଲେଇ ଆସି ଚୌକି ସଜାଡି ଦେଲା । ସମସ୍ତେ ଜାଣିଗଲେ ଯେ ମାଲିକ ଆସିଯିବେ । ମାଧବ ବାହିନୀପତି, ବୟସ ପଇଁଚାଳିଶି । ଅବିବାହିତ କୋଟିପତି । ସୁନା-ଫ୍ରେମ୍ ଚଷମା । ସିଲ୍‌କ ପଞ୍ଜାବିରେ ସୁନା ଚେନ୍ ବୋତାମ ! ଚେହେରା ଗମ୍ଭୀର, ମାନନୀୟ ।

ସମସ୍ତେ ଉଠି ସମ୍ମାନ ଜଣାଇଲେ । ସମସ୍ତଙ୍କୁ ଥରେ ଚାହିଁଦେଇ ସେ ବସିଲେ; ଅନ୍ୟମାନଙ୍କୁ ବସିବାକୁ ଇସାରା ଦେଲେ ।

"ବମ୍ବେର ନାଗ୍ କମ୍ପାନୀରୁ କିଏ ଆସିଛି ?"

ଜଣେ ଠିଆହେଲା । ମୁଣ୍ଡ ବାଳ ଧଳା । ବୟସ ଷାଠିଏ-ପଞ୍ଚଷଠି । ପୋଖତ୍ ଆଉ ପକ୍କା !

"ଆଚ୍ଛା, ଠିକ୍ ହେ ।"

ସେ ସେମିତି ସାମ୍ନାକୁ ଅନେଇ ବସିଗଲା ।

ମାଲିକ ତାକୁ ଅନେଇଥିବାର ଦେଖି ସେ ପୁଣି ଠିଆହୋଇଗଲା ଏବଂ ମନ୍ତ୍ରଚାଳିତ ପରି ଯାଇ ଟେବୁଲ ପାଖରେ ପହଞ୍ଚିଲା । ସାମାନ୍ୟ ଅପେକ୍ଷା କରି ବୁଝିଗଲା ଯେ ତାକୁ ମାଲ ପେଶ୍ କରିବାକୁ ହେବ । ସେ ଜର୍କିନ୍‌ର ଜିପରଟାକୁ ଟାଣି ଭିତର ପକେଟ୍‌ରୁ ଗୋଟାଏ ମୋଟା ପର୍ସ କାଢିଆଣିଲା ।

ମାଧବ ବାହିନୀପତିଙ୍କର ଭ୍ରୂ ହଠାତ୍ କୁଞ୍ଚେଇଗଲା । ସେ ଇସାରା କଲେ ପର୍ସଟାକୁ ଟେବୁଲ୍‌ରେ ରଖି ଖୋଲିବାକୁ । ଖୁବ୍ ପୁରୁଣା ଛାଇଟାଏ କାନ୍ଥ ଉପରୁ ଘୁଞ୍ଚିଆସିଲା । ସାକାର ହୋଇଗଲା । ପର୍ସରେ କଣ ଅଛି ନଅଛି ଜାଣିବାକୁ ନଚାହିଁ ମାଧବ ବାହିନୀପତି ତାଙ୍କ ହୀରାମୁଦିମଣ୍ଡିତ ପଞ୍ଝା ତା' ଉପରେ ମଡେଇ ଦେଇ ସେ ଲୋକଟା ଆଖିକୁ ଅନେଇଲେ, ପଚାରିଲେ "କ୍ୟା ନାମ ହୈ ତେରା ?"

ସେ ସେମିତି ସ୍ଥିର ଦୃଷ୍ଟିରେ ଆଗକୁ ଚାହିଁ ଉତ୍ତର ଦେଲା – "ସୁବ୍ରତ ଯୋଷୀ ।"

ମାଧବ ବାହିନୀପତିଙ୍କ ପଞ୍ଝା ସାମାନ୍ୟ ଚମକିଗଲା । ସେ ସେମିତି ତା' ଆଖିକୁ ଚାହିଁ ପଚାରିଲେ – "ଜହୁରୀ ବଜାର, ବମ୍ବେ ?"

ଏଥର ସେ ସ୍ଥିର ଚାହାଣି ବିଚଳିତ ହୋଇଗଲା । କାନମୁଣ୍ଡା ରୋମ ଠିଆହୋଇଗଲା । ରକ୍ତ ଉତୁରି ଆସିଲା ତ' ମୁହଁ ଉପରକୁ । ସେ ଆଖି ଆଗକୁ କରିନେଲା । କହିଲା – "ୟେସ୍ ସାର୍ ।"

ମାଧବ ବାହିନୀପତିଙ୍କ ହାତ ଅପସରିଯାଇଥିଲା । ପର୍ସଟା ସେମିତି ଖୋଲା ବହିଟାଏ ପରି ପଡିଥିଲା ଟେବୁଲ୍ ଉପରେ ।

ବାହିନୀପତି ଆସ୍ତେ ଉଠି ପାହାଚ ଚଢି ଯାଉଥିଲେ । ପ୍ରଥମଥର ପାଇଁ ସମସ୍ତେ ପରସ୍ପରକୁ ଚାହୁଁଥିଲେ, ନୀରବରେ । ସୁବ୍ରତ ଯୋଷୀର ମୁଣ୍ଡରୁ ଝାଳ ନିଗିଡିଯାଉଥିଲା ଧାର ଧାର । ଥୋପି ପଡୁଥିଲା ନାକ ଅଗରୁ, ଚିବୁକରୁ । ତାକୁ ପ୍ରାଣଦଣ୍ଡ ମିଳିଗଲା ସତେବା ।

ସେମାନେ ଆଉ ଅଧଘଣ୍ଟା ପରେ ନୀରବରେ ନିଜ ନିଜ ହୋଟେଲକୁ ଚାଲିଗଲେ । ଅପେକ୍ଷା କଲେ ଆଦେଶକୁ ।

ରାତିଯାକ କାହାକୁ ନିଦ ନାହିଁ । ପାହାନ୍ତା ତିନିଟା ତିରିଶ ବେଳକୁ ଫୋନ୍ ଆସିଲା । ସେକ୍ରେଟେରୀର ଫୋନ୍ ।

ସମସ୍ତେ ପୁଣି ଏକାଠି ହେଲେ । ସୁବ୍ରତ ଯୋଷୀ ମଧ୍ୟ । ସେକ୍ରେଟାରୀ ଗୋଟାଏ ଲଫାପା ଉପରେ ଲେଖାଥିବା ଆଦେଶ ପଢିଲେ ।

"ସମସ୍ତଙ୍କ ସାମ୍ନାରେ ଖୋଲି ପଢ଼ିବ ।"

ଚିଠି ଖୋଲାହେଲା । ଭିତରେ ଆହୁରି ଗୋଟାଏ ଖାମ ଥିଲା । ଚିଠିରେ ଲେଖାଥିଲା – "ମୁଁ ଅତ୍ୟନ୍ତ ଜରୁରୀ ପରିସ୍ଥିତିରେ ଯାଉଛି । ମୋ ପାଇଁ କେହି ଅପେକ୍ଷା କରିବ ନାହିଁ । ମୋର ଅନୁପସ୍ଥିତିରେ ଏ ସମଗ୍ର କାରଖାନା, କାରବାର ପରିଚାଳନାର ନିର୍ଦ୍ଦେଶ ଖାମ୍ ଭିତରେ ଲେଖାଅଛି ।"

ମନେହେଲା ସମସ୍ତଙ୍କ ହୃତ୍‌ପିଣ୍ଡ ପିଞ୍ଜରା ଭାଙ୍ଗି ବାହାରିଆସିବ । ଗଭୀର ରହସ୍ୟର ପ୍ରଗାଢ଼ ନୀରବତା ଅସହ୍ୟ ବୋଧ ହେଉଥିଲା । ସେକ୍ରେଟାରୀ ସ୍ୱୟଂ ଝାଳ-ସରସର ହୋଇଯାଇଥିଲା । ଖାମ୍‌କୁ ଚିରିଲାବେଳେ ତା' ହାତ କମ୍ପୁଥିଲା ।

ଖାମ୍ ଭିତରେ ଏକ ଦଲିଲ କାଗଜରେ ମାତ୍ର ଦୁଇ ଧାଡି ଲେଖାଥିଲା – 'ଆଜିଠାରୁ ମୋ ନାମରେ ଥିବା ଏ ସମସ୍ତ ସମ୍ପତ୍ତି ଓ କାରବାରର ଅଧିକାରୀ ସୁବ୍ରତ ଯୋଷୀ-ଜହୁରୀ ବଜାର, ବମ୍ବେ ।' – ମାଧବ ବାହିନୀପତି ।

କେହି କିଛି ଜାଣିବା ପୂର୍ବରୁ ବଜ୍ରପାତ ହୋଇସାରିଥିଲା । ଅନେକ ସମୟ ବିତିଗଲା ନୀରବତାରେ । ତା'ପରେ ସମସ୍ତ ଆସ୍ତେ ସୁବ୍ରତ ଯୋଷୀ ଆଡକୁ ପାଖେଇ ଆସିଲେ । ସୁବ୍ରତ ଯୋଷୀ ସ୍ୱପ୍ନରୁ ଉଠିଆସି ନିଦ-ମଳମଳ ଆଖିରେ ସମସ୍ତଙ୍କୁ ଚାହୁଁଥିଲା ।

ସେକ୍ରେଟେରୀ ହୁଏତ ଚାହୁଁଥିଲା ଆଉ ଥରେ ମାଲିକକୁ ଭେଟିଲେ ପଚାରନ୍ତା, "ସୁବ୍ରତ ଯୋଷୀ ତାଙ୍କ କିଏ ?" ସେଥିପାଇଁ କୌଣସି ସମ୍ଭାବନା ନ ଥିଲା । ଝାମ୍ପ ମୁକୁଳିଯାଇଥିଲା ଚିରକାଳ ପାଇଁ ।



# ଅରିନ୍ଦମର ଗଳ୍ପ

ପ୍ରଥମ ସର୍ତ୍ତ ହେଲା, ଅରିନ୍ଦମ କିଏ ବୋଲି ଆପଣ ଜାଣିବାକୁ ଚାହିଁବେ ନାହିଁ ।

ମୁଁ ବି ଜାଣେ ନାହିଁ ସେ କିଏ । ସେ ତା' ଗଳ୍ପ ସାଙ୍ଗରେ ନିଜର କୌଣସି ବିବରଣୀ ମୋ ପାଖକୁ ପଠାଇନାହିଁ । ଚିଠିଟିଏ ଦେଇଛି – ଖୁବ୍ ଛୋଟ; ଯାହା ପଢିଲେ ତା' ବିଷୟରେ କିଛି ଜାଣିହେଉନାହିଁ ।

ଆପଣ ନିଜେ ଦେଖନ୍ତୁ – "ରଥ ମହାଶୟ, ପାଞ୍ଚଜଣଙ୍କୁ ନେଇ ଧର୍ମଗୁଳା ପକେଇଲି । ଆପଣଙ୍କ ନାଁ ବାହାରିଲା । ସେଥିପାଇଁ ଏସବୁ ଆପଣଙ୍କ ଠିକଣାରେ ପଠାଇଦେଉଛି । ଆପଣ ଜଣେ ହିଁ ପଢିଲେ ମୋ ପାଇଁ ଯଥେଷ୍ଟ । ତା'ପରେ ଆପଣ ୟାକୁ ଜାଳିଦିଅନ୍ତୁ, ମୋର ଆପତ୍ତି ନାହିଁ ।"

ମୁଁ କାହିଁକି ୟାକୁ ଲେଖିଲି ବା ନଲେଖି ରହିପାରିଲି ନାହିଁ, ସେ କଥା କହିବି ନାହିଁ । ଆପଣ ବଳେ ବୁଝିଯିବେ । ମୋତେ ଠାବ କରିବାକୁ ଆପଣଙ୍କ ଇଚ୍ଛା ହେବ, ମୁଁ ଜାଣେ । ଆଦୌ ସେପରି ଚେଷ୍ଟା କରିବେ ନାହିଁ । ଦୁର୍ଭେଦ୍ୟ ପାଚେରି ଭିତରେ ଉଞ୍ଚ ଉଞ୍ଚ କୋଠା । ସେମାନଙ୍କର ପ୍ରଗାଢ ପ୍ରକାଣ୍ଡ ଛାଇରେ ହଜିଯାଇଥିବା ଗୋଟେ ମଣିଷର ଛାଇକୁ କାହିଁକି ଖୋଜିବେ ?

ଇତି ।। ଅରିନ୍ଦମ ।।

ଗୋଟିଏ ହାତରେ ତା' ଚିଠି, ଅନ୍ୟ ହାତରେ ତା'ର ପାଣ୍ଡୁଲିପି ଧରି ମୁଁ କିଛି ସମୟ ଶୂନ୍ୟକୁ ଚାହିଁ ଠିଆରହିଲି । ଫଳରେ ଅରିନ୍ଦମ, ଅରିନ୍ଦମ ନାମ ଉଚ୍ଚାରିତ ହେଲା ପରି ବୋଧକଲି – ଯେପରି ଖୁବ୍ ଦୂରରୁ ସାନ୍ଧ୍ୟ ଆକାଶରୁ କିଏ ସେ ନାଁ ଧରି ଡାକୁଛି । ଅସ୍ଥିର ପାଣିବିମ୍ବ ପରି ନାନା ରୂପସବୁ ଦିଶୁ ଦିଶୁ ଲିଭି ଲିଭି ଗଲେ ।

ମୁଁ ମୋ ବାଡିରେ ଥିବା ଚମ୍ପା ଗଛମୂଳେ ବସି ପାଣ୍ଡୁଲିପିଟି ଖୋଲିଲି । ଘର ଭିତରକୁ ଯିବାକୁ ସତେବା ବେଳ ନଥିଲା । ବଡ ବଡ ସ୍ପଷ୍ଟ ଅକ୍ଷର; କିନ୍ତୁ ପରୀକ୍ଷା ଖାତାରେ ସମୟ ସରିଗଲାବେଳେ ତରବର ଲେଖିଲା ପରି ଗୋଟାଏ ଉଦ୍‌ବେଗ ସେ ଅକ୍ଷରମାନଙ୍କରେ ମୋତେ ଅନୁଭବ ହେଲା । ଅରିନ୍ଦମ ହୁଏତ ରାତିଅଧବେଳେ କୋଉଠି ଲୁଚି ଲୁଚି ତାକୁ ଲେଖିଥିଲା । ଚାରିଆଡକୁ ଚାହୁଁଥିଲା । ଘଣ୍ଟାକୁ ଅନଉଥିଲା । କାନ ଡେରି ରଖିଥିଲା ପାଦଶବ୍ଦକୁ, ଝର୍କାବାଟେ

ସାଇଁସାଇଁ ପଶିଆସୁଥିବା ପବନକୁ ।

ସନ୍ଧ୍ୟାର ଲିଭିଆସୁଥିବା ଆଲୁଅରେ ମୁଁ ପଢିଗଲି – ଗଳ୍ପ ତ ନୁହେଁ, କାଠଗଡାରେ ସତ୍ୟପାଠ କରି ଠିଆ ହୋଇ ଅରିନ୍ଦମ ଜମାନବନ୍ଦି ଦେଉଛି, ଆପଣଙ୍କ ଇଜଲାସରେ ।

ଯେଉଁ ଯୁକ୍ତିରେ ଅରିନ୍ଦମ ମୋ ପାଖକୁ ତା' ବୟାନ ପଠାଇଦେଲା, ପ୍ରାୟ ସେଇ ଯୁକ୍ତିରେ ମୁଁ ସର୍ବସାଧାରଣରେ ପ୍ରକାଶ କରିଦେଉଛି ବା ପ୍ରକାଶ କରିବାକୁ ବାଧ୍ୟ ହେଉଛି ।

ନିଆଁକୁ ଅଣ୍ଟିରେ ପୂରେଇ ରଖିହେବ ନାହିଁ । ଅଣ୍ଟି ଜଳିଯିବ । ସେଥିପାଇଁ ମୁଁ ଆପଣଙ୍କ ଭିତ ଭିତରକୁ ପକେଇଦେଉଛି, ଏଇ ଭରସାରେ ଯେ କଞ୍ଚା କାଠରେ ସହଜେ ନିଆଁ ଧରିବ ନାହିଁ । ଯଦି କେଉଁଠି ଦୈବାତ୍ ଧରିଯାଏ, ମୁଁ ଜାଣେ, ଆପଣ ମୋ ଆଡକୁ ମାଡିଆସିବେ । ମୋତେ ଧରିନେବେ ।

ମୁଁ କିନ୍ତୁ ଅରିନ୍ଦମକୁ ଧରିପାରୁନାହିଁ । ସେଥାପାଇଁ ମୁଁ ତା' ବୟାନ ଆପଣଙ୍କୁ ଅବିକଳ ପେଶ୍ କରିଦେଉଛି । ଦେଶକାଳପାତ୍ର ଉହ୍ୟ ରଖୁଛି । ଆପଣ ବୁଝି ପାରିବେ ନାହିଁକି ! ତଥାପି ଯଦି ଆପଣ କଟାଳ କରନ୍ତି ଅରିନ୍ଦମକୁ ଠାବ କରିବାକୁ, ମୁଁ ଯେକୌଣସି ଦିଗରେ ଆଙ୍ଗୁଠି ଟେକି କହିଦେଇପାରେ 'ଏଇ ଅରିନ୍ଦମ' ।

ଆପଣ ହାତ ବଢେଇଲେ ସେ ଉଭାନ ହୋଇଯିବ । ଆପଣ କେବଳ ପରସ୍ପରକୁ ହାବୁଡିବେ । ମୋର ବିଶ୍ୱାସ, ଆପଣ ସେପରି କିଛି କରିବାକୁ କଦାପି ଚାହିଁବେ ନାହିଁ ।

ତା' ଲେଖାକୁ ସେ କୌଣସି ନାଁ ଦେଇନାହିଁ । ସେଥିପାଇଁ ମୁହଁ ମୁଣ୍ଡ ନଥିବା ଶବକୁ ସନାକ୍ତ କଲାଭଳି ନାଁଟାଏ ରଖୁଚି ଅରିନ୍ଦମର ଗଳ୍ପ ! ଏଣିକି ଶୁଣନ୍ତୁ ତା' ନିଜ କଥା –

"ସେ ମୋ ଘରକୁ ଆସିବା କଥା ନୁହେଁ । ମୋ ଠିକଣା ତାକୁ କିଏ ଦେଇଦେଲା କେଜାଣି ? କୋଉ ଗୋଟାଏ ନିମକହାରାମ ଦେଇଥିବ । ସେ ମାନେଜରିରେ କୋଉ ଜନ୍ତୁର ଅଭାବ କି ?"

ବର୍ଷା-ରାତିରେ ଗେଟ୍ ଫିଟିବାର ଶବ୍ଦ ଶୁଣି ଝରକାବାଟେ ଓହଟି ଚାହିଁଲି । ରାସ୍ତା ଆଲୁଅ ଓଦା କଳାରଙ୍ଗର ବର୍ଷାତି ଉପରେ ଚିକ୍‌ଚିକ୍ କରୁଥିଲା । କଳା ଜାଗୁଆରକୁ ଚିହ୍ନିବାରେ ଅସୁବିଧା ନଥିଲା । ମୁଁ ବିଜୁଳିବେଗରେ ଟେବୁଲରୁ କାଗଜପତ୍ର ସାଉଁଟି ଡ୍ରୟର ଭିତରେ ମାଡିଦେଲି । ବହିଟାଏ ଫିଟାଇଦେଲି ଟେବୁଲ ଉପରେ । ଭାବିଲି, ଲୁଚିଯିବ । ସାନପୁଅ କହିଦେବ ମୁଁ ଘରେ ନାହିଁ ବୋଲି । ମୋ ଦିମାଗ୍ ଅପେକ୍ଷା ତା'ର ପାହୁଣ୍ଡ ଆହୁରି ଚଞ୍ଚଳ କାମ କରିଗଲା । ମୁଁ ଚୌକିରୁ ଘୁଞ୍ଚିବା ପୂର୍ବରୁ ସେ ଦୁଆରମୁହଁରେ ଠିଆ ହୋଇଯାଇଥିଲା ।

ଜାଗୁଆରର ନଖ ପଞ୍ଝା ଦାନ୍ତ ତା' ମୁଣାମାନଙ୍କରେ ଲୁଚିରହିଥିଲା । ମୁହୂର୍ତ୍ତକରେ ସେ ହିଂସ୍ର ହୋଇପାରେ । ମୁହୂର୍ତ୍ତକରେ କାହାକୁ ହେଲେ ଭିଣିଦେଇପାରେ ।

ଏମିତି କିନ୍ତୁ ସେ ଆମ ମନ୍ତ୍ରୀଙ୍କ ପାଖଲୋକ । ସାଇବଙ୍କ ଜାଗୁଆର । ଏକା ଦପ୍ତରରେ ମୋର ସହକର୍ମୀ । ନାଁ... ସିଂ ।

ସେ ଚଟ୍‌କିନ ଭିତର ମୁଣାରୁ ହାତ କାଢିଆଣିଲା । ମୁଁ ଭାବିଲି ଛୁରୀଟାଏ – ସେଇଟା କିନ୍ତୁ

ଚିଠିଟାଏ । ଓଦା ଓଢଣା ତଳୁ ମତେ ଚାହିଁଲା କଟମଟ । ଦାନ୍ତସନ୍ଧାରୁ କହିଲା – 'କାମ ଏଇଭଳି ହବ ।' ଚିଠିଟା ଫୋପାଡିଦେଲା ଟେବୁଲକୁ ।

ମୁଁ ଆଖି ଫେରାଇଆଣିବା ଭିତରେ ତା' ହାତରେ ଆଉ ଗୋଟିଏ ପାକେଟ । ତାକୁ ମଧ ସେ ଟେବୁଲକୁ ପକେଇ ଦେଇ ବୁଲି ପଡିଲା । କିଛି କହିବା ପ୍ରୟୋଜନ ମଣିଲା ନାହିଁ । ବୁଲିପଡି ଚାଲିଗଲା ।

ଚଟାଣରେ କାଦୁଆ ପାଦଚିହ୍ନ ଚାରିପଟେ ନିଗିଡା ପାଣି ।

ଟେବୁଲ ଉପରେ ମୋର ଭାଗ୍ୟ ଓ ବିବଶତା ।

କଟା ପାପୁଲି ପରି ସାନ ମୁଣା ଭିତରୁ ଉଛୁଳି ଦିଶୁଥିବା ପଚାଶ ଟଙ୍କିଆ ନୋଟବିଡା ଥତ୍‌କିନା ପଡିଲାବେଳେ ମୋ ଛାତିରେ ପବନ ଅଟକିଗଲା । ବୁକୁ ଦାଉଁଦାଉଁ ହେଲା । ବିଛାଟାଏ ଚଢିଆସିଲା ପାଦତଳିପାରୁ ଗୁହ୍ୟଦ୍ୱାରଯାଏଁ ।

ମୋ ଆତ୍ମାଟି କୋଉକାଳୁ ମେଣ୍ଢାଛୁଆ ପରି ଭିଡିହଉଚି ବଳିପଡିବ ନାହିଁ ବୋଲି । ମୁଁ ବି କହୁଛି – ଧୟ ଧର, ତୋ ବେଳା ଆଉରି ଆସିନାହିଁ ।

ଏବେ ତା' ହାତ ବିକିଦେବି; କରିବାକୁ ଚାହିଁ ସେ କରିବ ନାହିଁ । ପାଦ ବିକିଦେବି; ଯିବାକୁ ଚାହିଁ ସେ ଯିବ ନାହିଁ । ଜିଭ ବିକିଦେବି, କହିବାକୁ ଚାହିଁ ସେ କହିବ ନାହିଁ । ଆଖି ଦେଖି ଦେଖିବ ନାହିଁ । କାନ ଶୁଣି ଶୁଣିବ ନାହିଁ । ୟାର ପୁଣି ପାଲଟା ବେପାର ଅଛି – ଆଖି ଯାହା ଦେଖିନାହିଁ ତା' ଦେଖିଛି ବୋଲି କହିବ । କାନ ଯାହା ଶୁଣିନାହିଁ ତା' ଶୁଣିଛି ବୋଲି କହିବ । ଜିଭ, ହାତ, ପାଦ – ସବୁ ବାରମ୍ବାର ବିକ୍ରି ହେଉଥିବେ । ଏମିତି ଝାଳରେ ମୂତରେ ଛେପରେ ଓଦା ନୋଟ୍‌ବିଡା ଜମାହଉଥିବ ଥାକ ଥାକ ।

ସେଇଟା ମୋ ଭାଗ୍ୟ କି ବିବଶତା ମୁଁ ଜାଣେ ନାହିଁ । ବେଳ ନାହିଁ । ପ୍ରୟୋଜନ ନାହିଁ ଜାଣିବାକୁ ।

ହାତରେ ରକ୍ତ ଲାଗିଲେ ପୋଛିଦେଇଛି । ଲୁହ ଲାଗିଲେ ପୋଛିଦେଇଛି ।

ପନ୍ଦର ବର୍ଷ ତଳର ସେ ଘଟଣା କଥା କହେ । ସେଇଟା ମୋର ଦୀକ୍ଷାଗ୍ରହଣ ।

ମୁଁ ସେ ନୋଟବିଡାକୁ ଆଉ ସେ ଚିଠିକୁ ଚାହିଁରହି ବସିଥାଏ । ଡ୍ରୟର ଖୋଲି କାଗଜଯାକ ବାହାର କରିବାର ହିମ୍ମତ ନଥାଏ । ଭେଜାଲ ଔଷଧ ଖାଇ ପଚାଶ ଲୋକ ମରିଯିବା ପରେ "ଲାଲ୍" କମ୍ପାନୀ ନାଁରେ ତଦନ୍ତ କମିଶନ ବସିବ । ସେଥିପାଇଁ ବିଭାଗୀୟ ରିପୋର୍ଟ ମୁଁ ପ୍ରସ୍ତୁତ କରୁଥାଏ ।

ମୁଁ ଜାଣେ, 'ଲାଲ୍'କୁ ଦୋଷୀ ସାବ୍ୟସ୍ତ କରିବା ପାଇଁ କୌଣସି ତଥ୍ୟର ଅଭାବ ନାହିଁ । ମୁଁ ନିଜେ ଦେଖି ଆସିଛି । ଦାମୀ କମ୍ପାନୀର ନକଲ ଯେଉଁ ଗମ୍ଭୀରା ଭିତରେ ହୁଏ, ମୁଁ ଦୈବାତ୍ ସେ ଭିତରେ ପଶିଗଲି ।

ସେମାନେ କହିଲେ – ସେଇଟା ଗୋଦାମ ।

ମୁଁ 'ଆଚ୍ଛା ଆଚ୍ଛା' କହି ସାଙ୍ଗେ ସାଙ୍ଗେ ବାହାରିଆସିଥିଲି । ନିଜେ ମାଲିକ 'ଲାଲ୍' ମୋତେ

ତା' ବୈଠକଘରକୁ ପାଛୋଟି ନେଇଥିଲେ ।

ଅଳ୍ପ କଥାରେ ସେ ମୋତେ ଜାଣିଗଲା । ମୁଁ ବି ତାକୁ ଜାଣିଗଲି । ତା' ପରଦିନ ଶୁଣିଲି, ସେ ଗୋଦାମକୁ ପଶି କେହି ଜିଅନ୍ତା ଫେରିନାହିଁ । ଓପରଓଳି ସାଇବ ଡକେଇଲେ ।

"କ'ଣ ଅରିନ୍ଦମ ! ଯାଇଥିଲ ? 'ଲାଲ୍' ଔଷଧ କାରଖାନାରେ କଣ ସବୁ ହେଉଚି, ସରକାର ପ୍ରଥମେ ଜାଣିବାକୁ ଚାହୁଁଛନ୍ତି ।"

କାଚ ପେପରୱେଟକୁ ହାତରେ ଖେଳାଇ ମୋତେ ଆଡଆଖିରେ ହସି ଚାହିଁଲେ, "ତୁମଭଳି ସଚ୍ଚୋଟ ଅଫିସର ଆଉ କାହିଁ ? 'ଲାଲ୍' ଭାବିଛି ସେ ମନ୍ତ୍ରୀଙ୍କ ଭିତର ମହଲ ଲୋକ ବୋଲି ଖସିଯିବ ? ହେଁ, ହେଁ, ହେଁ ।"

ମୁଁ ସାଇବକୁ ଏମିତି ହସିବାର ଦେଖି ନଥିଲି । ମୋ ନାଡା ସାଙ୍କୁଡି ଗଲା । ପାଦତଳ ଶିରଶିର କଲା ।

ସାଇବ କହିଲେ, "ମନ୍ତ୍ରୀ ତୁମ ଉପରେ ଭାରି ଖୁସି । ଏଇଠୁ ଗଲାବେଳେ ଟିକିଏ ଦେଖାକରିନେବ ।"

ମନ୍ତ୍ରୀଙ୍କ ପ୍ରାଇଭେଟ ସେକ୍ରେଟେରୀ ମୋତେ ଗମ୍ଭୀର ହୋଇ ଚାହିଁଲେ, "ଓ, ଅରିନ୍ଦମ ବାବୁ ! ଟିକିଏ କିନ୍ତୁ ମୁଁ ସାର୍‌ଙ୍କୁ ଖବର ଦିଏ ।" ପାଞ୍ଚ ମିନିଟ ଭିତରେ ମନ୍ତ୍ରୀଙ୍କ ଖାସ୍ କାମେରାରୁ ସମସ୍ତେ ବାହାରିଆସିଲେ ।

"ଯାଆନ୍ତୁ ଅରିନ୍ଦମ ବାବୁ ! ସାର୍ ଅପେକ୍ଷା କରିଛନ୍ତି ।"

ମୋତେ ପାଛୋଟିବାକୁ ମନ୍ତ୍ରୀ ଠିଆହୋଇପଡିଲେ । ସେକ୍ରେଟେରୀକୁ କହିଲେ – "ଆରେ, ଅରିନ୍ଦମ ବାବୁ ପ୍ରଥମ ଥର ପାଇଁ ଆସିଛନ୍ତି; କଣ ଟିକିଏ ବ୍ୟବସ୍ଥା କର । ବସନ୍ତୁ ଅରିନ୍ଦମ ବାବୁ !"

"ଆଉ କଣ ସବୁ ଚାଲିଛି ? ଆପଣଙ୍କ ଦୁଇ ପୁଅ ଭାରି ବ୍ରିଲିଆଣ୍ଟ । ତାଙ୍କୁ ଦିଲ୍ଲୀରେ ପଢାନ୍ତୁ । ସେମାନେ ଆମ ରାଜ୍ୟର ଗୌରବ । ସେଥିପାଇଁ ଯାହା ପଇସା ପଡିବ ଯୋଗାଡ କରିଦବା ।"

ପାନଖଣ୍ଡିଏ ଡବାରୁ କାଢି ପାଟିରେ ପୁରେଇଲେ । ଗୁଆକୁ ଦାନ୍ତେଇ ରସିକତା କରି କହିଲେ – ଆପଣଙ୍କର ଝିଅ ତ ନାହିଁ-ନ-ଥିବା ସୁନ୍ଦରୀ !

ମୋ ହାତ ମୁଠା ମୁଠା ହୋଇଗଲା । ଭୃରୁ କୁଞ୍ଚେଇଯିବା ଦେଖି ସେ ସୁର ବଦଳେଇଦେଲେ । "ମାନେ, ଆପଣ ଅଭିଜାତ ଘରେ ବାହାହେଇଛନ୍ତି । ମା'ର ରୂପ ଗୁଣ ତା' ଝିଅ ପାଇବ । ଆପଣ କେବେ ପିଲାଙ୍କୁ ନେଇ ଆମ ଆଡେ ଆସନ୍ତୁ । ସୁବିଧା ଦେଖି ଆମେ ମଧ ଆସିବା ।"

"ମୁଁ ଆପଣଙ୍କୁ ଆଉ ଗୋଟିଏ କଥା କହିବାକୁ ଡକେଇଛି । ସେ ଯେଉଁ 'ଲାଲ୍ ଔଷଧ ବେପାରୀ' ସେ ଲୋକଟା ମନ୍ଦ ନୁହେଁ । ସେ ପରା ଆମ ବଡଭଉଣୀଙ୍କ ସାନ ଦିଅର । ମୁଁ ତାକୁ ଜାଣେ । ସେ ଭାରି ସରଳ । ଆଉ କିଏ ଭେଜାଲ ଔଷଧ ଆଣି ମିଶାଇଦେଇଛି; ତା' ମୁଣ୍ଡରେ ଅଠା ବୋଳିଦେଇ ନିଶ୍ଚିନ୍ତ ବସିଛି । ସେ କଣ ଆପଣଙ୍କ ଆଖିରେ ଧୂଳି ଦେଇପାରିବ ? ଆପଣ

ସେଇ ସତ୍ୟକୁ ବାହାର କରନ୍ତୁ । ଆପଣଙ୍କ ରିପୋର୍ଟ ଉପରେ ତଦନ୍ତ କମିଶନ ବସିବ – ବୁଝିଛନ୍ତି ନା ନାହିଁ ?"

ସେ ପୁଣି ଉଠି ଠିଆହେଇ କରମର୍ଦ୍ଦନ କଲେ । କଇଁନାଡ ପରି ମୋ ହାତରେ ଜିଅ ନ ଥିଲା ।

ସେଇ ଦିନ ରାତିରେ ଜାଗୁଆର ଆସିଥିଲା । ମୁଁ ରିପୋର୍ଟ ପରିବର୍ତ୍ତେ ଏକ ନିବନ୍ଧ ରଚନା କଲି । ସେଥିରେ କେବଳ ଭେଜାଲ ଔଷଧର ଭୟାବହ ପରିଣାମ ବର୍ଣ୍ଣନା କଲି ।

'ଲାଲ'କୁ ଦାୟିତ୍ୱମୁକ୍ତ କରିଦେଲି ।

ମୋ ହାତ ଯାହା ଲେଖିଥିଲା ସେ ସବୁ ବାଦ୍ ପଡିଗଲା । ସେମାନେ ପାଞ୍ଚ ହଜାର ଟଙ୍କାରେ ମୋ ପାପୁଲିଟାକୁ କିଣିନେଲେ । ପାଣିରେ ଘର କରି କୁମ୍ଭୀରକୁ ନ ଡରିବି କେମିତି ? ସାହେବ ମୋତେ କ୍ଲବ୍‌ରେ ମେମ୍ବର କରିବାକୁ ଖୁବ୍ ପ୍ରବର୍ତ୍ତାଇଲେ । ମୁଁ ଟାଳି ଗଲି । ମୁଁ ଜାଣୁଥିଲି ଯେ ହାରାମଜାଦାର ଆଖି କୋଉଠି ।

'ଅରିନ୍ଦମ! ତୁମ ପ୍ରମୋଶନ ଫାଇଲ ଆସିଛି । ତୁମେ ବଡ ଅଫିସର ହବ ନା ନାହିଁ? ତମର ତ ମଫ ଗୁଣ ଆଉରି ଗଲାନାହିଁ । ଏ ମାସ ଦଶ ତାରିଖେର କ୍ଲବ୍‌ରେ ବାର୍ଷିକ ଉତ୍ସବ ଡିନର୍ ହବ । ପିଲାଙ୍କୁ ନେଇ ଆସିବ ମୋ ଗେଷ୍ଟ ହିସାବରେ ।' ମନ୍ତ୍ରୀଙ୍କ ଭାରି ଆଗ୍ରହ ।

ମୁଁ ସ୍ଥିର କରିନେଲି କଣ କରିବାକୁ ହବ । ସେଇ ଦିନ ଜାଣି ମୋ ଭିତରେ ଗୋଟାଏ ଦାନବ ଜନ୍ମ ନେଲା ।

ମୁଁ ତା' ଆରଦିନ ମନ୍ତ୍ରୀ ପାଖକୁ ସିଧା ଗଲି । ଟିକିଏ ଏକାକୀ ସମୟ ମାଗିବାରୁ ସେ ତତ୍‌କ୍ଷଣାତ୍ ରାଜି ହେଇଗଲେ । ସହରକୁ ଲାଗି ଖଣ୍ଡେ ଦଶ ଏକର ଜମି ଆପଣ ବା ଆପଣଙ୍କ ନିଜ ଲୋକ କାହାରି ନାମରେ ନେବାକୁ ଚାହିଁବେ କି ?

"ଆରେ ଏଇଟା ପଚାରିବାକୁ ଅଛି । ଆପଣ କେମିତି ଜାଣିଲେ ?"

"ଅମୁକ ମନ୍ତ୍ରୀଙ୍କୁ ଆମ ସାହେବ ଫୋନ୍‌ରେ କହୁଥିଲେ ।"

"ଆଚ୍ଛା ! ମୁଁ ତମ ସାହେବକୁ କୋଉଦିନୁ କହିଛି ଖଣ୍ଡେ ଜାଗାପାଇଁ । ସେ ମତେ ନ କହି ମୋର ଶତ୍ରୁକୁ କହିବାର ଥିଲା !"

"ଆପଣ ଯଦି କହିବେ ମୁଁ ଚେଷ୍ଟାକରିପାରେ ।"

"ନିଶ୍ଚୟ ନିଶ୍ଚୟ, ଅରିନ୍ଦମ ବାବୁ, ମୁଁ ଆପଣଙ୍କ ପ୍ରମୋଶନ କଥା ବୁଝୁଛି ।"

ମୁଁ ଜାଣିଥିଲି ଆମ ସାହେବ ଆମ ମନ୍ତ୍ରୀଙ୍କ ପାଇଁ ଭିତରେ ଭିତରେ ଚେଷ୍ଟା ଚଳେଇଥିଲେ । ହେଇଗଲେ ସାବାସିଟା ମାରିନବ । ଆଗ ମନ୍ତ୍ରୀକୁ ଖବର ପହଞ୍ଚେଇଦେଲି – ଅସଲ ଜାଗା ଖଣ୍ଡେ କେମିତି ହାତଛଡା ହେଇଯାଉଛି ଏବଂ ଆର ମନ୍ତ୍ରୀ ନାଁରେ ବିଭିନ୍ନ ସ୍ତରରେ କହି-ବୋଲି ସର୍ବୋଚ୍ଚ କର୍ତ୍ତାଙ୍କୁ ବାଗେଇ ଦଶ-ବାରଦିନ ଭିତରେ କରେଇଦେଲି । ଦଶ ତାରିଖ ଡିନର୍ ପୂର୍ବରୁ ।

ସେଇଦିନ ମୋ ସ୍ତ୍ରୀ ଓ ଝିଅଙ୍କୁ ବେଢଙ୍ଗିଆ ବେଶ-ପୋଷାକ ପିନ୍ଧେଇ ନେଇଗଲି । ସାହେବକୁ

ଜମି ଚାଲିଯିବା କଥା କହି ଅଟକେଇଦେଲି । ସେ ପାଗଳ ପରି ବାରଲୋକଙ୍କୁ ସନ୍ଧ୍ୟା ଆଠଟାଯାଏଁ ଫୋନ୍ କରିଚାଲିଥାଏ । ମୁଁ ଆଗରୁ କ୍ଲବ୍ ଯାଇ ମନ୍ତ୍ରୀଙ୍କୁ ଶୁଭଖବରଟା ଦେଇଦେଲି । ସେ ରାଗିମାଗି ଲାଲ । ଆଉ କହିଦେଲି, ସେ ଜମିକୁ ଲାଗି ଆଉ ଦଶ ଏକର ନବାକୁ ସାହେବ ନିଜେ ଚେଷ୍ଟା ଚଳେଇଛି । ମନ୍ତ୍ରୀ ଚାହିଁଲେ ସେ ଖଣ୍ଡ ମିଳିଯିବ ।

ସାହେବ ବି ଆସି ପହଞ୍ଚିଲେ । ମନ୍ତ୍ରୀ ସାହେବର ଆଠ-ଅଙ୍କି ନମସ୍କାର ସୀକାର କଲା ନାହିଁ । ମୁହଁ ବୁଲେଇନେଲା । ମୁଁ ଦୂରରୁ ଲକ୍ଷ୍ୟ କରୁଥାଏ । ସାହେବ ମୋତେ ଠାବ କରି ଆସି ପହଞ୍ଚିଗଲା । "ଅରିନ୍ଦମ ଆସିଲ ଭଲ କଲ, ପିଲାମାନେ କାହାନ୍ତି ?"

ମୁଁ ଦେଖେଇଦେଲି ।

ସାଇବର ମୁଡ୍ ବିଗିଡିଗଲା । 'ହୁଃ...' କହି ସେ ସେଇଠୁ ଚାଲିଗଲା । ମନ୍ତ୍ରୀକୁ ମୋ ପିଲାଙ୍କ କଥା କହି ମୋର ସର୍ବନାଶ କର୍ତ୍ତାକୁ ଚାହିଁଲା ବୋଧହୁଏ । ମନ୍ତ୍ରୀ ବି ସେମାନଙ୍କ ଆଡକୁ ଅଳ୍ପ ଯାଇ ବିଗିଡିଗଲା । ତା'ପରେ ସାହେବ ଘୁଞ୍ଚିଗଲା ଗୋଟାଏ ଆଡକୁ ।

ମଉକା ଦେଖି ମୁଁ ପୁଣି ପାଖେଇଗଲି ।

"ଏଇଟା ଏମିତି ବୋଲି ମୁଁ ଜାଣି ନ ଥିଲି ।"

"ସାର୍, ଆଉ ବହୁତ କଥା ଅଛି, ଅଭୟ ମିଳିଲେ ସବୁ କହିବି ।"

"ଅରିନ୍ଦମ, ମୁଁ ଆପଣଙ୍କ ଉପେର ନିର୍ଭର କଲି !"

କୌଶଳରେ ତାକୁ ଏପରି ଜାଗାକୁ ନେଇଗଲି, ଯେଉଁଠୁ ସାହେବର ପରିବାର ଦେଖାଯାଉଥିଲା ।

ମନ୍ତ୍ରୀର ଆଖି ସେଇଆଡକୁ ବାରମ୍ବାର ଗଲା ଦେଖି ଆସ୍ତେ କହିଦେଲି, "ଆମ ସାହେବଙ୍କ ପିଲାମାନେ । ସେ ଲମ୍ବା ଝିଅଟି ତାଙ୍କ ଝିଆରୀ । ଆରଟି ଝିଅ ।"

"ସର୍ବୋଚ୍ଚ କର୍ତ୍ତାଙ୍କ ଆମ ସାହେବଙ୍କ ଉପରେ ଶୁଭଦୃଷ୍ଟି ରହିଛି ।"

"ଆଚ୍ଛା ?"

ସର୍ବୋଚ୍ଚ କର୍ତ୍ତା ଆମ ଟୋକା ମନ୍ତ୍ରୀ ଉପରେ ଭାରି ବିଶ୍ୱାସ ରଖନ୍ତି । ବାକି ସବୁ କରିବାକୁ ଅସୁବିଧା ହେଲାନାହିଁ ।

ସାହେବକୁ ଦିଲ୍ଲୀ ପଠାଇଦିଆଗଲା । ତା' ଝିଆରୀ ଦୁଇଦିନ ହରଣଚାଳ ହେଇଗଲା । ମହତ ଜଗିବାକୁ ସେ ଚୁପ୍ ରହିବାକୁ ବାଧ ହେଲା । ତା' ଜମି ଟୋକା ମନ୍ତ୍ରୀ ନିଜ ଶଳା ନାଁରେ କରେଇନେଲା । ପୁଣି ସଜ ଉଣ୍ଡି ଜାଗୁଆରର ବ୍ୟବସ୍ଥା କରିଦେଲି ।

"ସିଂ... ପୁରୁଣା ସାହେବର ଜାଗୁଆର । ସେ ପ୍ରୟୋଜନରୁ ଅଧିକ ଜାଣେ । ତା' ପାଖରେ ଆପଣଙ୍କ କଥାର ଟେପ୍ ଅଛି । ଡାକବଙ୍ଗଳାରେ ଲୁଚି ରହି ଇନ୍‌ଫ୍ରାରେଡ୍ ଲାଇଟ୍‌ରେ ନିଆଯାଇଥିବା ଫଟୋ ସବୁ ଅଛି । ସେ ଖୁଣ୍ କରିପାରେ । ସେ ଡକାୟତି କରିପାରେ । ମୋର କହିବାର କିଛି ନାହିଁ । ଟିକିଏ ସତର୍କ ରହିଥିବେ । ସେ କେତେବେଳେ କଣ କରିଦେଇପାରେ ।"

"ରାତି ନଅଟା ବେଳେ ବଡ କୋଠାର ତଳ ମହଲା । ବାଲକୋନି ପାଖରେ ତା' ବେକମୁଣ୍ଡାରେ ଦୁଇଟି ପାହାର ପଡିବାର ମୁଁ ଦେଖିଛି । ସେଇଠୁ ତାକୁ ତଳକୁ ଗଡେଇଦେବାର ମୁଁ ଦେଖିଛି ।"

"ନିଶା ଖାଇ ଉପରୁ ପଡି ତା' ବେକହାଡ ଭାଙ୍ଗିଗଲା । ମୁଁ ସଚ୍ଚୋଟ ଅଫିସର ମନ୍ତ୍ରୀଙ୍କ ଦପ୍ତରରୁ ଫେରିବାବେଳେ ଆଖିରେ ଦେଖିଛି, ପୋଲିସ୍‌କୁ ଡାକିଛି, ଡାକ୍ତରଖାନାକୁ ନେଇଛି । ତା'ର ପରିବାରକୁ ସାନ୍ତ୍ୱନା ଦେଇଛି । ତା' ପେନ୍‌ସନ୍ କରିଦେଇଛି ।" ଏସବୁ ମୋ ସାକ୍ଷୀ ବୟାନରେ ରହିଛି ।

ତା'ପରେ ଘାଇ ଭାଙ୍ଗିଯାଇଛି ।

– ଲାଲ ବିପକ୍ଷ ଯାହାକୁ କମିଶନ ଦୋଷୀ ଠଉରେଇବା ପାଇଁ ଚେଷ୍ଟା କରୁଥିଲା, ମୋ ପାଖକୁ ଇସାରା ପାଇ ଆସିଛି । ତାକୁ ମୁଁ ଢେର ତଥ୍ୟ ବିକିଛି । ଢେର୍ ଦାମ୍‌ରେ । କମିଶନ ଅଡୁଆରେ ପଡିଛି ।

ମନ୍ତ୍ରୀ କମିଶନ୍‌କୁ ସମୟ ଗଡେଇବାକୁ କହନ୍ତୁ ବୋଲି ମୁଁ ପରାମର୍ଶ ଦେଇଛି । ପତ୍ରକାରକୁ ଗୋପନ ତଥ୍ୟ ନାଁରେ ମନ୍ତ୍ରୀ ଓ କମିଶନଙ୍କୁ ସଲ୍ଲା କଥା କହିଛି – ମନ୍ତ୍ରୀ ମୋ ଗନ୍ଧ ବାରିବା ପୂର୍ବରୁ ମନ୍ତ୍ରିମଣ୍ଡଳ ଭାଙ୍ଗିବା ଗନ୍ଧ ମୁଁ ବାରିଦେଇଛି ।

ସିଂ...ପାଖରୁ କିଛି ଫଟୋ ଆଉ ଟେପ୍ ଗୋଟାଏ ଭଡାଟିଆ ହାତରେ ପଠାଇ ମନ୍ତ୍ରୀକୁ ବ୍ଲାକ୍‌ମେଲ୍ କରିଛି । ଢେର୍ ଟଙ୍କା ଝଡେଇଚି । ଭୂତ ହେଇ ଲାଗିଛି, ଗୁଣିଆ ହେଇ ଝାଡିଛି । ଭଡାଟିଆକୁ ଠିକଣା କରିବାକୁ ଭରସା ଦେଇଛି । ମନ୍ତ୍ରୀ ପୁଣି ପଇସା ଖର୍ଚ୍ଚ କରିଛି । ଶେଷରେ ସେ ଦଶ ଏକର ଜମିଟା ଯାଚିଛି; ତାକୁ ରକ୍ଷା କରିବାକୁ ।

ମୁଁ ରକ୍ଷା କରିଛି ।

ମନ୍ତ୍ରୀ କ୍ଷମତାରୁ ଗଲାବେଳେ ମୁଁ ତାକୁ ଦେଖାକରିନାହିଁ – ତା'ପରେ ସେ ଦେଖାକରିବାକୁ ଆସିଛି – ମୁଁ ଦେଖାଦେଇନାହିଁ । ମୁଁ ହାତୀ ଲଗେଇ ହାତୀ ଧରିଛି । ନିଜେ ଚିହ୍ନା ପଡିନାହିଁ । ମୋ ପାଖରେ ପଇସାର ଅଭାବ ନାହିଁ । କ୍ଷମତା ପ୍ରତିପତ୍ତିର ଅଭାବ ନାହିଁ । ସ୍ତାବକ, ବଚସ୍କର, ଭଡାଟିଆ, ଖୁଣୀଙ୍କର ଅଭାବ ନାହିଁ – ଏକଥା ସମସ୍ତେ ଜାଣନ୍ତି । ଆଡ ହୋଇ ରହନ୍ତି ବା ପାଖରେ ଗଳିପଶନ୍ତି । ମୁଁ ସେଗୁଡାକୁ ଧରେ, ବାନ୍ଧେ, ବିକେ । ନିଜେ ଧରାଦିଏ ନାହିଁ । ମୁଁ ଚିରକାଳ ସଚ୍ଚୋଟ, ବିଚକ୍ଷଣ, ପାରଦର୍ଶୀ ଅଫିସର ।

ମୁଁ ସରକାରରେ ରାଜନୀତି କରେ, ରାଜନୀତିରେ ସରକାର ଚଳାଏ । ମୋର ଶତ୍ରୁ ସମସ୍ତେ । ସ୍ତାବକ ସମସ୍ତେ ।

ମୁଁ ବଡ ବଡ ଦନ୍ତା କମ୍ପାନୀମାନଙ୍କୁ ବାନ୍ଧିରଖିଚି ଆଙ୍ଗୁଠି ଅଗରେ । ସେମାନେ ମନ୍ତ୍ରୀ ପାଖକୁ ଗଲେ ମତେ ଭେଟନ୍ତି; ଫେରିଲେ ମତେ ଭେଟନ୍ତି । ଶେଷ କାଗଜରେ ମୁଁ ଦସ୍ତଖତ କରେ ।

ମୁଁ ରାଜ୍ୟ ବିକିଦିଏ, ସରକାରୀ ଫାଇଲ ବିକିଦିଏ, ସରକାରକୁ ବିକିଦିଏ । ବଦଳରେ ଯାହା

ଚାହେଁ ତାହା ପାଏ ।

ଦି'ଚାରିଟା ଗୁରୁ କରିଛି । ମଉକା ଉପରେ କେତେବେଳେ କାହା ମଠରେ ଦେଖାଦିଏ । ସେମାନଙ୍କୁ ପଇସା ଦିଏ । ପ୍ରଶଂସା ପାଏ । ସମ୍ମାନ ପାଏ ।

ଶେଠଙ୍କ ପଇସାରେ ସ୍କୁଲ୍ କଲେଜ କରେଇଦେଇଛି । ଶେଠ ଜାଣିନାହିଁ । ସେମାନେ ମୋ ଫଟୋ ରଖି ଫୁଲମାଳ ପିନ୍ଧାନ୍ତି । ସେମାନେ ଜାଣନ୍ତି ନାହିଁ । ସେଇଠି କେହି ଅବାଧ ହୁଅନ୍ତି ନାହିଁ; ହେଲେ ମୁହଁ ଭାଙ୍ଗିଦିଆଯାଏ । ସବୁ ସୁନାମ ମୋର ।

ମୋର ଅବୈଧ ସନ୍ତାନ ଅନେକ । ମୁଁ ସେମାନଙ୍କ ପାଇଁ ପତି ଖଞ୍ଜିଦେଇଛି । ଗୋଟିଏ ଲେଖା ବାପ ଖଞ୍ଜିଦେଇଛି । ସେମାନଙ୍କର କାହାର କିଛି ଓଜର-ଆପତ୍ତି ନାହିଁ ।

ଦିଲ୍ଲୀରୁ ନେତା ଆସନ୍ତି । ବମ୍ବେରୁ ଡକାୟତ ଆସନ୍ତି । କଲିକତାରୁ ଚୋର ଆସନ୍ତି । ତୋରଣ ବନ୍ଧାହୁଏ । ସଭାମଞ୍ଚ ଗଢାହୁଏ । ବାକି ସବୁ ରାସ୍ତା ଘାଟ ବଙ୍ଗଳାରେ ବହୁବିଧ କାମ ହୁଏ ବୋଲି ବିଲ୍ ହୁଏ । ଡକାୟତମାନଙ୍କ ପାଇଁ ବ୍ୟାଙ୍କ୍ ଦରୱାନ୍ ଆଉ କିରାଣିକୁ କିଣିଦିଆଯାଏ । ସେମାନେ ପାଞ୍ଚକୋଟି ଲୁଟନ୍ତି । କୋଟିଏ ଏଇଠି ରହିଯାଏ । ଦେଶକାମରେ ଲାଗେ । ନେତାଙ୍କ କାମରେ ଲାଗେ । ଚୋର ମୂର୍ତ୍ତି ଚୋରାନ୍ତି, ନିରୋଳା ମନ୍ଦିରମାନଙ୍କରୁ, ଖୋପ ଭିତରୁ । ଭଲ ପଇସା ଦିଅନ୍ତି । ସେଇଟା ବି ନେତାଙ୍କ କାମରେ ଲାଗେ । ପାତିଚୋର ସାହାଯ୍ୟ କରନ୍ତି । ଭଲ ବକ୍‌ସିସ୍ ପାଆନ୍ତି ।

ଯାହା ଏଇଠି ଉପରକୁ ଦେଖାଯାଏ ସେଇଟା ପ୍ରଚାର ପାଇଁ, ଖବରକାଗଜ ପାଇଁ ତା' ତଳେ ଆଉ ଗୋଟିଏ ଜଗତ୍ । ସେଇଠି କିଣାବିକା ହୁଏ, ହଣାମରା ହୁଏ; ବଳ କଷାକଷି, ବୁଦ୍ଧି କଷାକଷି ହୁଏ ।

ତା' ତଳେ ପାତାଳ । ସେଇଠି କୁଢ କୁଢ ଟଙ୍କା, କୁଢ କୁଢ ବନ୍ଧୁକ, ଛୁରୀ, କଟୁରି, ମାଫିଆ ରାଜା ।

ମୋ ଘରେ ସବୁ ଆଡକୁ ବାଟ ଫିଟିଛି । ଅଫିମ, ହିରୋଇନ୍ ଚାଲାଣ ହବ, ସୁନା ବିସ୍କୁଟ୍ ଚାଲାଣ ହେବ । ଦଶ ଚାଲାଣ ହେଲେ ଏକ ଧରାପଡିବ । ଉଭୟ ପାଇଁ ବ୍ୟବସ୍ଥା କରାଯାଏ । ଧରାପଡିବାକୁ, ଫଟୋ ଉଠାଇବାକୁ, ଜେଲ ଯିବାକୁ ଆଗରୁ ପ୍ରସ୍ତୁତ ଥାନ୍ତି । ସେଥିପାଇଁ ସେମାନଙ୍କ ପରିବାରକୁ ସ୍ୱତନ୍ତ୍ର ଭତ୍ତା ଦିଆଯାଏ । ସେମାନେ ଆଗଭଳି ଚଳନ୍ତି । ଗାଡିରେ ବୁଲନ୍ତି – ଏମିତି ଏମିତି ଆହୁରି ଅନେକ କଥା । ସବୁ କହିବାକୁ ବେଳ ନାହିଁ । ପ୍ରୟୋଜନ ନାହିଁ ।

ଏ ମାସ ଶେଷକୁ ମୁଁ ଅବସର ନେବି । ସମସ୍ତେ ଜାଣିଛନ୍ତି । ଛକି ବସିଛନ୍ତି । ହୁଏତ ମୋର ପାଳିତ ପଶୁମାନେ ମତେ ଖାଇଯିବେ ବା ସେମାନଙ୍କୁ ଚିଟା କାଟି ମୁଁ ଅନ୍ତର୍ଦ୍ଧାନ ହୋଇଯିବି ।

ଆଜି ମତେ ଡର ମାଡୁଛି । ମୋ ନିଜ ହାତଗୋଡକୁ ସୁଦ୍ଧା ମୁଁ ବିଶ୍ୱାସ କରିପାରୁନାହିଁ ।

ମୋ ପଛରେ ମୋ ଛାଇ ଭଳି ଗୋଟାଏ କିଏ ଲାଗିଛି ମୂଳରୁ । ମୁଁ ଜାଣିପାରୁଛି; କିନ୍ତୁ ତାକୁ ଠଉରେଇପାରୁନାହିଁ ।

ସେ ମୋ ବିଷୟରେ ଟିକିନିକ ଜାଣେ ।

ସେଇ ବୋଧେ ଶେଷକୁ ମୋ ବାଟ ଜଗି ଠିଆହୋଇଯିବ । ମୁଁ ଗୁଳି ଖାଇବି କି ବିଷ ଖାଇବି ସେ କଥା ମୁଁ ଜାଣେ ନାହିଁ । ସେ ନିଷ୍ପତ୍ତି ମୋର । ମୋର ଏବେ ବି ଆଶା ଅଛି ଖସିଯିବି ବୋଲି ।

ସେଥିପାଇଁ ମୁଁ ବହୁଲୋକଙ୍କ ତୁଣ୍ଡି ବାନ୍ଧିସାରିଛି । ତଥାପି ଡର ମାଡୁଛି ।

ଏଇଥିପାଇଁ ଏ ଗଳ୍ପ ଲେଖିବସିଲି । ଗଳ୍ପ ସତ ନୁହେଁ । ଗୋଟାଏ ଗାଳ୍ପିକକୁ ଦେଇଦେବି ।

ଧର୍ମଗୁଳାରେ ଯାହା ନାଁ ମିଳିଲା । ଜଣକ ଆଗରେ କହିଦେଲେ, ସେ ତାକୁ ସର୍ବସାଧାରଣରେ କହିଦେବ । ମୋ ଭଳି ଆଉ ତଜନେ ଅଛନ୍ତି । ମୋ ଦର୍ପଣରେ ମୁଁ ମୋର ଭ୍ରାତାଙ୍କ ବଦନ ଭଲ କରି ଚିହ୍ନାଇଦବାକୁ ଚାହେଁ ।

ଉଦ୍ଦେଶ୍ୟ ମୁଁ ଯାହା କରିଛି, ସେମାନେ ନ କରନ୍ତୁ । ଅନୁତାପ ନୁହେଁ । ଦେଶପ୍ରୀତି ନୁହେଁ । ମୁଁ ମୋ ଢଙ୍ଗରେ ଅପରାଜିତ ରହିବାକୁ ଚାହେଁ ।

ଗାଳ୍ପିକ ଏତେ ମସଲା ଜିରେଇପାରିବେ ନାହିଁ । ଅବଶ୍ୟ ସେ ତାକୁ ବାହାରକରିଦବ । ଧୂଆଁ ଉଠିବ । କିଏ କିଏ ବୋଲି ଗୋଳ ଉଠିବ ।

ଧର ଧର ମାର ମାର ହେବେ ସମସ୍ତେ । ମୁଁ ଖସିଯିବି । କୋଉ କାଳର ରଜାଟା, ପାହାଡ କାଟି ଲେଖିଦେଲା ଲକ୍ଷେ ଲୋକଙ୍କୁ ହାଣିଚି ବୋଲି ।

ମୁଁ ମୋ ଯଶ ବଖାଣିଗଲି । ସେଥିରେ ଅସୁବିଧା କ'ଣ ?

ଏ ସବୁ ତଥାପି ଗାଲୁଗଳ୍ପ ।

ସେ ଯେ ଛାଇକଥା ମୁଁ କହୁଥିଲି, ସେ ଏଇ ଦୁଆର ପାଖରେ ଠିଆହୋଇଛି । ଚାରିବାହୁ ମେଲେଇ ଗୋଟେ ଅସର୍ପା ଭଳି ଜଗିଛି । ମୋତେ ଆଉ ମଉକା ନାହିଁ । ୟାକୁ ଢାବଲରେ ପକେଇ ମୁଁ ତା' ସାମ୍ନାରେ ଠିଆ ହୋଇ ଡାକିଦେବି "ମତେ ଧ... ପାରିବୁ ଯଦି ।"

"ୟା ପରକଥା ସେଇ ଗାଳ୍ପିକ କହିବ, ପାରିବ ଯଦି ।"

ମୁଁ ମାନୁଛି, ୟା ପରକଥା ମୁଁ କହିବି ନାହିଁ, କହିପାରିବି ନାହିଁ । କାରଣ ଅରିନ୍ଦମ ପରି ମୁଁ ଅନ୍ତର୍ଦ୍ଧାନ ହୋଇପାରିବି ନାହିଁ ।



# ହାରାକିରି

ଏତେ ବଡ ତିନିତାଲା କୋଠାର ମାଲିକ କିଏ, କେହି ଜାଣନ୍ତି ନାହିଁ । ଯେଉଁମାନେ ତା' ଭିତରେ ରହନ୍ତି ତାଙ୍କୁ ପଚାରିଲେ ସେମାନେ ଭୂରୁ କୁଞ୍ଚେଇ ଓଲଟି ପଚାରନ୍ତି, ମାଲିକ ? ସେ ପୁଣି କିଏ ?

– "ତୁମେମାନେ ତ କାହାକୁ ପଚାରି ଏଇଠି ରହିଥିବ !"

– "ପଚାରିବୁ କାହାକୁ ? କାହିଁକି ବା ପଚାରିବୁ ? ହଠାତ୍ ୟା ଭିତରେ ଦିନେ ପଶିଗଲାପରେ ରହିଯାଇଚୁ । ଏଇଠୁ ଯେ ଚାଲିଯାଏ ସେ ବି ଆଉ ଫେରେନାହିଁ । ଗଛ ଛାଇ ଭଳି ଏ ଆଶ୍ରା । ଗଛ ଯାହାର ହେଇଥାଉ, ଛାଇଟା ତ ତା'ର ନୁହେଁ । ଆମେ ସେଇ ଛାଇଟିକକ ପାଇଁ ଏଠି ରହିଛୁ ।"

– "କିନ୍ତୁ ଗଛଟା ନ ଥିଲେ ତ ଛାଇ ରହନ୍ତା ନାହିଁ । ଗଛଟାକୁ ବଞ୍ଚେଇରଖିଲେ ଛାଇ ଜାରି ରହନ୍ତା ତୁମ ପାଇଁ, ଅନ୍ୟମାନଙ୍କ ପାଇଁ । ସେଥିପାଇଁ ତମେ କିଛି କରିବା କଥା ଭାବିଛ କି ?"

– "ଯାଉନ – ଆମ କଥା ତ ଆମକୁ ଅଠାଅଠି – ଆମକୁ ଫୁରୁସତ୍ କାହିଁ, ଗଛରେ ପାଣି ଦେଇ ତାକୁ ବଞ୍ଚେଇବୁ ? ଆମେ ବଞ୍ଚିଲା ଭଳି ଗଛ ତା' ଦାୟିତ୍ୱରେ ବଞ୍ଚିବ, ଯେତେ ଦିନ ପାରିବ । ତା'ପରେ ମରିଯିବ । ସେଥିରେ ଆମର କିଛି କରିବାର ନାହିଁ । ଏଇ ଯେ କୋଠା କୋଉ କାଳୁ ଏମିତି ଠିଆହୋଇଛି, ୟାର ଦେହସାରା ହଜାର ଫାଟ ହେଲାଣି । କୋଉ ଦିନ ଭୁଶୁଡି ପଡିବ । ଅଛି ତ' ଅଛି, ଆମେ ବି ଅଛୁ । ଦିନେ ଯଦି କୁଢେଇ ହେଇ ପଡିବ – ପଡିବ; ଆମେ କଣ କରିବୁ ସେଥିପାଇଁ ?"

– "ତୁମେ ସବୁ ସେତେବେଳେ ୟା ତଳେ ଚାପି ହେଇ ମରିଯିବ ନାହିଁ ?"

– "କିଏ କହିଲା ମରିବୁ ନାହିଁ ? ମରିବୁ । ସେଥିପାଇଁ ବି ଆମର କିଛି କରିବାର ନାହିଁ ।"

ଏଭଳି ମୁଣ୍ଡକୁ ପାଣି ଛଡେଇ ଏଇଠି ରହିଥିବା ଲୋକଙ୍କୁ କଣ ବା କହିହବ ?

ସେମାନେ ବି ଶୁଣିବା ମତଲବ୍‌ରେ ନାହାନ୍ତି । ତାଙ୍କୁ ବେଳ ବି ନାହିଁ ।

ମୋଟାମୋଟି ଏ କୋଠାରେ ସମସ୍ତେ ମାହାଳିଆ ରହନ୍ତି । କାହାକୁ କିଛି ଦେବାକୁ ପଡେ ନାହିଁ । ପାଣି ପବନ ଆଲୁଅ ସବୁ ମାଗଣା ।

ଯାଉ, ସବା ଉପର ମହଲାରେ ସେଇମାନେ ରହନ୍ତି, ଯେଉଁମାନେ ଛ'ଧାପ ଶିଡି ଚଢ଼ି ଯାଇପାରନ୍ତି । ସେଇଠି ଟୋକାଟାକଳିଆ ରହନ୍ତି । ଗୀତ ନାଚ ଧୁମଧାମ ହୁଏ । ବେଳ ପଡିଲେ ପିଆପିଇ ମଧ ହୁଏ । ସେଇଠି ଦାଦାଙ୍କ ରାଜ୍ୟ । ଦାଦା ଉପରେ ସୁପର ଦାଦା ବି ଦି'ତିନି ଜଣ ଅଛନ୍ତି । ମୋଟ ଉପରେ ସେଇଠି ବୁଢ଼ା ନାହାନ୍ତି କି ପିଲା ନାହାନ୍ତି । ମଝି ତାଲାରେ ନିପାରିଲା ଓହଳ ନିଶୁଆ, ଅଧାତିଆ ଲୋକେ ରହନ୍ତି । ତାଙ୍କ ପାଖେ ପାଖେ ଭୋକିଲା ତିର୍ଲା ଆଉ ଲଙ୍ଗଳା ପିଲା ଘେରି ରହନ୍ତି । ସେମାନେ ଏକୁଟିଆ ରହନ୍ତି ନାହିଁ – ମନ୍ଦା ବାନ୍ଧି ରହନ୍ତି । ମଝିରେ ଦିକ୍‌ଦିକ୍ ନିଆଁ ଜଳୁଥାଏ ।

ସବା ତଳ ମହଲାରେ ସାପ, ବେଙ୍ଗ, ବୁଲା କୁକୁର, ବୁଲା ଗଧମାନଙ୍କ ସହିତ ଛୋଟା, କେମ୍ପା, କୋଢ଼ି, ଅନ୍ଧମାନେ ଚିରା ଅଖା, ଶୁଖିଲା ଡାଙ୍ଗି, ଚିଣ ଡବା, କୋଢ଼ି ଶଗୁଡ଼ି ଏକତ୍ର ବିଷମ ବସବାସ କରୁଛନ୍ତି ।

ଯା ଭିତରୁ କେହି କୋଠା ବିଷୟରେ ଚିନ୍ତା କରନ୍ତି ନାହିଁ । ଯେମିତି କୋଉକାଳୁ ଠିଆହୋଇଥିବା ପାହାଡ ବିଷୟରେ ବା ଅଙ୍କାବଙ୍କା ଝରିଆସୁଥିବା ଝରଣା ବିଷୟରେ କେହି ଚିନ୍ତା କରନ୍ତି ନାହିଁ; ଅଥଚ ପାହାଡକୁ ହାଣି ନେବାପାଇଁ, ଝରଣା ପାଣିରେ କାଦୁଅ ଧୋଇବା ପାଇଁ ସେମାନଙ୍କର ଅଧିକାର ରହିଛି ।

ସେଥିପାଇଁ କାନ୍ଥସାରା ତିନି ମହଲାଯାକ ଧାଡ଼ି ଧାଡ଼ି କଣ୍ଟା ମରାଯାଇଛି । ଝୋଲା, ସିକା ଅଲଗୁଣି, ମଶାରି ବାନ୍ଧି ଓହଳେଇବାକୁ । ତଳ ଖୋଳାହେଇଚି ଚୁଲି ଜାଳିବାକୁ । କାନ୍ଥସାରା କଳା ଅଳନ୍ଧୁ ବୋଳିହେଇଛି ଧୂଆଁ ଧାସରେ । ବହୁକାଳ ଅଯତ୍ନ ଅବହେଳାରେ ଫାଟ ଦେଲାଣି ଉରିଆଡେ ।

ତଥାପି ଉପର ମହଲାରେ ଚଟାଣ ଦୁଲୁକୁଚି ଦୁମ୍-ଦୁମ୍ ନାଚରେ । କାନ୍ଥ କମ୍ପୁଚି କଳବାଜଣାରେ, ପିଲା କାନ୍ଦଣାରେ, ତିର୍ଲା ଚିତ୍କାରରେ ।

ତା'ରି ଭିତରେ ହାଉଜାଉ ମଣିଷ । ତାରି ଭିତରେ ହସ, କାନ୍ଦ, କଳିତକରାଳ, ଆହାର ନିଦ୍ରା ଓ ମୈଥୁନ ।

ସବୁଥର ପରି ଏଥର ବି ମେଘ ଘୋଟିଆସିଲା ଭଣ୍ଡାର କୋଣରୁ । କାଠ କୁଢେଇଲା ପରି କୁଢେଇଲା ପାଣି ଦିନ ରାତି । ଦୁର୍ଦ୍ଦିନ ପଡିଗଲା ସେ ପୁରୁଣା ବିରାଟ କୋଠାରେ । ଉପର ମହଲାରେ ଛାତରୁ ପାଣି ଝରିଲା । ମୁଣ୍ଡ ଗୁଞ୍ଜିବାକୁ ଥାନ ମିଳିଲା ନାହିଁ । ସେ ନାଚ-ଗୀତନିଶାରେ ଟଳମଳ ଟୋକାଟୋକୀ ଦଳ ଓହ୍ଲେଇଆସିଲେ ଦୋତାଲାକୁ । ସେଇଠି ମଣିଷ ମନ୍ଦାମାନଙ୍କରେ ସେମାନେ ମିଶିପାରିଲେ ନାହିଁ । ପିଲାଙ୍କ ଏନ୍ତୁଡିଶାଳ ପରି ସବୁ ଗନ୍ଧେଇଲା ସେମାନଙ୍କୁ । ସେମାନେ କାନ୍ଥ ଆଉଜା ଦେଇ ଠିଆହୋଇ ରହିପାରିଲେ ନାହିଁ । ଦୋତାଲାରେ ପାଣି ଛିଞ୍ଚଡା ମାଡ, ଉତ୍ତରପଟୁ ସୁ-ସୁ ପବନ ସେମାନଙ୍କୁ ହାଡ ମଞ୍ଜଯାଏଁ ଓଦା କରିଦେଲା ।

ଦୋତାଲାରୁ ଆଉ ଅନ୍ୟମାନଙ୍କୁ ସାଙ୍ଗରେ ସେମାନେ ଏକତାଲାକୁ ଓହ୍ଲାଇ ଆସିଲେ । ସେଇଠି ପଶିବାକୁ ବାଟ ପାଇଲେ ନାହିଁ । ସେଇଠି ପୁରୁଣା ବାସିନ୍ଦାଙ୍କ ସହିତ ନୂଆ ପଶିଆସୁଥିବା ଉଦ୍‌ବାସ୍ତୁମାନଙ୍କର ଠେଲାପେଲା ଝଗଡା ଲାଗିଗଲା ।

"ଆରେ – ଏଇଟା କଣ ତମ ବୋପାର ଘର ? ତମେ କିଏ ଆମକୁ ମନା କରିବାକୁ ? ଆମେ ଏ ବର୍ଷାରେ କୁଆଡେ ଯିବୁ ? ?"

– "ତେମେ ନଗଲେ ଆମେ କୁଆଡେ ଯିବୁ ? ଆମେ ତମ ଆଗରୁ ଏଠି ଅଛୁ ।" ସକାଳେ ଆସିଥିବା ଲୋକ ସଙ୍ଗରେ ପଶୁଥିବା ଲୋକକୁ ବାଟ ଜଗି ଏକଥା କହିଲା । ଉପରୁ ସମସ୍ତଙ୍କୁ ଓହ୍ଲଉଥିବା ଦେଖି ବାହାରେ ଟିକ୍ରୁଥିବା ଲୋକ ଏକମୁହାଁ ଉପରକୁ ଉଠିବା ଆରମ୍ଭ କରିଦେଲେ । ଓହ୍ଲେଇବାକୁ ବି ବାଟ ରଖିଲେ ନାହିଁ । ଧସ୍ତାଧସ୍ତି ଚାଲିଲା । କେହି କାହା କଥା ଶୁଣିବାକୁ ବା ବୁଝିବାକୁ ପ୍ରସ୍ତୁତ ନ ଥିଲେ । କେହି କାହାକୁ ବିଶ୍ୱାସ କରିବାକୁ ମଧ ରାଜି ନ ଥିଲେ । କେବଳ ଗୋଟେ ହୋ ଉଠିଲା ଯେ ଉପର ମହଲା ମାନ ଖାଲି ହେଇଗଲା, ଯାଇ ମାଡିବସ ।

"ହେ, ହେ, ପାଣି ଗଳୁଚି ଛାତରୁ ?" – "କ'ଣ ହେଇଗଲା ସେଇଠୁ ? ବାହାରେ ତ' ପାଣି ଗଳୁଛି । ଏଇଠି ମୁଣ୍ଡ ଗୁଞ୍ଜିଦବାକୁ ଜେଗା ତ' ମିଳିବ ।"

ସେମାନେ ଉପରକୁ ଯାଇ ଦେଖିଲେ ଦୁଆରମୁହଁ ପର୍ଯ୍ୟନ୍ତ ଚୁଣ୍ଟି ହେଇଗଲେଣି ଲୋକ । ବାମ୍ଫ ବାହାରୁଚି ଭିତରୁ । ଛୋଟ ପିଲାଙ୍କ ଚିତ୍କାର ଶୁଭୁଚି । ମାଇକିନା ମର୍ଦଙ୍କ ପାଟିତୁଣ୍ଡ । ବାହାରେ ଅବିରାମ ବର୍ଷା ।

ମଝିରେ ମଝିରେ ଶୁଭୁଚି, 'ଓଃ, ଏଠି ଆଉ ବଷ୍ଟି ହେବ ନାହିଁ ।'

– "କୁଆଡେ ଆଉ ଯିବ ? – ଯାଉନ ।"

– "ଏଠି ହାରି-ଗୁହାରି ଶୁଣିବାକୁ କଣ କେହି ନାହିଁ ? ଏ କୋଠାର ମାଲିକକୁ କହିଲେ ସେ ଆସି କଣ ବ୍ୟବସ୍ଥା କରନ୍ତା ନାହିଁ ?"

– "ସେ ଶଳାଟାକୁ କେହି କଣ ଦେଖିଲାଣି କେବେ ? ସେହିଁ ତ ଆମର ଦୁର୍ଦ୍ଦଶା ପାଇଁ ଦାୟୀ ।"

– "ଠିକ୍ କଥା କହିଚ ଭାଇ । ସେଇ ହାରାମି ଯଦି ଏ କୋଠାଟିକୁ କଲା, ତା'ର ଭଲ ମନ୍ଦ ଆସି ବୁଝନ୍ତା କି ନାହିଁ ? ଛାତରୁ ପାଣି ଗଳିଲେ, କାନ୍ଥରେ ଫାଟ ଦେଲେ, କୋଠା ଧସିଆ-ମସିଆ ହେଇ ରହିବାର ଅଯୋଗ୍ୟ ହେଲେ, ସେ ତାକୁ ସଜାଡିବ ନା ନାହିଁ ?"

– "ତାକୁ ସାତଦିନିଆ ନୋଟିସ୍ ଦିଆଯାଉ । ଯଦି ସେ ନ ଆସିଲା ତା'ହେଲେ କର୍ତ୍ତବ୍ୟରେ ଅବହେଳା ଅଭିଯୋଗରେ ତାକୁ ଏ ଘର ମାଲିକାନାରୁ ବେଦଖଲ କରାଯାଉ । ସେଥିପାଇଁ କୋଠାଧିବାସୀମାନଙ୍କର ଭୋଟ ନିଆଯାଉ ।"

– "ଆରେ ବାବା, ଏତେ କଥା କାହିଁକି ? ଆମର ଦାଦା ସୁପରଦାଦାଙ୍କୁ ଲଗେଇଦେଲେ

ସେମାନେ ତାକୁ ଫୁଟିକିଆ ଛୁରୀ ଦେଖେଇ ଏଠିକି ଚଲେଇ ଆଣିବେ । ଏଇଠି ଜନତା ଇଜଲାସ୍‌ରେ ତାକୁ ଠିଆକରେଇ ଜେରା କରାଯିବ । ଦୋଷୀ ସାବ୍ୟସ୍ତ ହେଲେ ଦଣ୍ଡ ଦିଆଯିବ ।"

ଗୋଟାଏ ମୋଟା ଘାଗଡା ସ୍ୱର ଶୁଭିଲା । ସନ୍ଧ୍ୟା ପାରି ହୋଇଯାଉଥିଲା । କୋଠା ଭିତରେ ବାହାରେ ଅନ୍ଧାର ବହଳିଆ ଧରିଆସିଥିଲା – ଠେଲାଠେଲି ପାଟିତୁଣ୍ଡ ବି କମି ଯାଇଥିଲା । ଯେ ଯାହା ମୁଣ୍ଡ ଉପରେ ବାରିପାଟ ସହିତ ଅଭ୍ୟସ୍ତ ହୋଇ ଆସୁଥିଲେ । ପାଖରେ ଲେସି ହୋଇ ଠିଆହୋଇଥିବା ଅପର ଲୋକଟିକୁ ସ୍ୱୀକାର କରି ଆସୁଥିଲେ । ଅନ୍ଧାର ଅନୁପାତରେ ଅପରାଧ ବି ମୁହଁକାଢିଆସୁଥିଲା । ପାଖଲୋକ ପକେଟ୍‌ରେ ହାତ ପୁରୁଣା ଅଭ୍ୟାସରେ ଘଷିହୋଇଯାଉଥିଲା । ପାଖ ନାରୀଟିକୁ ସାମଗ୍ରୀ ପରି ଗୋଟେଇନେବାକୁ ଉତ୍ତପ୍ତ ଅଙ୍ଗପ୍ରତ୍ୟଙ୍ଗ ନିବିଡ ଭାବେ ଗୁଡେଇ ହୋଇ ଯାଉଥିଲା । ରୋଗିଣା ପିଲାର ଜର ବଢିଯାଉଥିଲା । କାସୁଆ କଫୁଆର ଛାତି ରୁନ୍ଧିହୋଇଯାଉଥିଲା । ଝାଳ, ମଳି, କାଦୁଅ, ପୂଜ, ଖଙ୍କାର ଉପରେ ପାଣି ପଡି ଆଇଁଷିଆ ଫୁର୍‌କୁଟିଆ ବାମ୍ପ ବାହାରୁଥିଲା ସେ ଗହଳି ଭିତରୁ । ତାକୁ ସେମାନେ ସହିଆସୁଥିଲେ ।

ମୋଟା ଘାଗଡା ସ୍ୱର ଶୁଭିଲା –

"ମୋ କଥା ଶୁଣ ସମସ୍ତେ । ଏ ଶାଲା କୋଠାର ମାଲିକ ନାହିଁ । ମୁଁ ପଚାଶ ବର୍ଷ ତାକୁ ଖୋଜିଚି ପାଇଲେ ଗୁଳି କରିଦେବାକୁ । ତା'ର ପତ୍ତା ନାହିଁ । ଶଳା ଗୋଟେ ପଞ୍ଜୁରି ଗଢିଦେଇ ଲାପତା ହେଇଯାଇଛି । ଏଠି ଆମ ଭଳି ଲୋକଙ୍କୁ ଆଶ୍ରା ଦେବା ଆଳରେ ଫାନ୍ଦି ଦେଇଛି । ଆମର ସବୁ ଦୁଃଖ, ସବୁ ଯନ୍ତ୍ରଣା, ସବୁ ହନ୍ତସନ୍ତ ପାଇଁ ସେ ଦାୟୀ । ଏଇଠି ମୋର ଷାଠିଏ ବର୍ଷ ବିତିଗଲା । ମୁଁ ମଣିଷରୁ ପୋକ ହେଇଗଲି । ମୁଁ ବୋଧେ ମଣିଷ ହେଇ କେବେ ଜନ୍ମି ନଥିଲି । ମା' ପେଟରେହିଁ ମୁଁ ପୋକ । ସେ ମତେ ଫୋପାଡି ଦେଇ ଚାଲିଗଲା । ବାପ ମୋ ସମେତ ମା'ଟାକୁ ଫିଙ୍ଗିଦେଇଥିଲା ବହୁ ଆଗରୁ । ଏଇଟା ଗୋଟାଏ ନର୍କକୁଣ୍ଡ । ଏଠି ପୋକ ମାଛି, ଚୁଚୁନ୍ଦ୍ରା, ବେଙ୍ଗ ରହନ୍ତି । ମତେ ମଣିଷର ଆକାର ପ୍ରକାର କିଏ ଦେଲା କେଜାଣି ? କିନ୍ତୁ ଏ କୋଠା କାନ୍ଥ ଭିତରେ ମୁଁ ପୋକ ହେଇଗଲି । ସେଥିପାଇଁ ଏ କୋଠା-ମାଲିକ ଶଳା ଦାୟୀ । ସେ ଏମିତି ଯାକୁ ବନେଇଚି, ଆଉ ଏମିତି ବାତ୍ରା କରିଦେଇଚି ଯେ ଏଠି ରହିଲେ ପୋକ ନ ହେଇ ଉପାୟ ନାହିଁ । ମୁଁ ସେ ହାରାମିକୁ ଏବେ ବି ପାଇଲେ ଖୁନ୍ କରିଦେବି ।"

ଆଉ କଣରୁ ଜଣକର କାଚ ଫାଟିଲା ପରି ଚଡଚଡ ହସ ଶୁଭିଲା – "ଆରେ, ତା' କଥା କେହି ଶୁଣ ନାଇଁ, ସେଇଟା ବାୟା ଶଙ୍କରା । ମୁଁ ସେଇଟାକୁ ଜାଣେ । ସେ ଗୋଟେ ଥନ୍ତରା ଛୁରୀ ଲୁଚେଇ ରଖିଛି । ସେଇଟାରେ ସାରୁ କାଟି ହେବ ନାଇଁ । କଳଙ୍କି ଲାଗିଗଲାଣି କୋଉକାଳୁ । ଶଳା କହୁଚି ଖୁନ୍ କରିବ...ହେଃ ।" –

– "ଆବେ, ଚୁପ୍ କର । ଶଙ୍କର ଭାଇ ଠିକ୍ କହୁଚି । ଏ କୋଠାଟାର ମାଲିକହିଁ ସବୁ ଗୋଳମାଳର ଗୋଡ । ଆବେ, ଯଦି ମାଲିକ ହେଇଚୁ ଏମିତି ଲୁଚିରହିଚୁ କାହିଁକି ? ମଝିରେ ମଝିରେ

ଆସି ତୋ'ର ମାଲିକପଣ ଦେଖଉନୁ । ହେ, ଗୋଟେ ଘୁ-ଘା କରନ୍ତୁ । ସମସ୍ତଙ୍କୁ ହକାରି କଣ ଗୋଟେ କହନ୍ତୁ । କୋଠାଟା ବାପଛେଉଣ୍ଡ ଭଳି ଅଣହେପାଜତ୍ ହେଇଯାଉଚି, ତାକୁ ଟିକିଏ ଝଡା ପୋଛା କରନ୍ତୁ । ତେବେ ସିନା ମାଲିକଟାଏ ଅଛି ବୋଲି ଆମେ ଜାଣନ୍ତୁ । କଣ ନା, କୋଠାଟାକୁ କରିଦେଇ ମାରିଛୁ ଉଡନ୍‌ଛୁ ଯେ ଏଯାଏଁ ଦେଖାନାହିଁ । ଏଇଟାକୁ କାହା ଜିମା ସେ ଦେଇଛି, ଶୁଣେ ! ଏ କାହାରି ଜିମା ଦେଇନାହିଁ । ଏଠି ଯେ ମନ ସେ ଆସି ରହିଗଲେ । ସବୁ ଉଦ୍‌ବାସ୍ତୁ ଫିଙ୍ଗା-ଫୋପଡା ମଣିଷ । କାହାକୁ ଜଣାନାହିଁ କୋଉଠୁ ଆସିଲେ ଆଉ କେଉଁଆଡେ ଯିବେ । ଏଥିରେ ଏ କୋଠା ଭୁଷୁଡିବ ନାଇଁ ତ କଣ ରହିବ ?"

ଜଣାଗଲା ଅଣବାସିନ୍ଦା ଜଣେ କିଏ କହୁଛି, ଭାରି ପାଠୁଆ ଜଣାପଡୁଚି – "ରାଇଟ୍ ! ଆମେ ସବୁ ଫିଙ୍ଗା-ଫୋପଡା ମଣିଷ । We are thrown into being । ଆଉ ଏ ମାଲିକ-ଫାଲକ କଥା ବି ଠିକ୍ କହୁଚ । ସେମିତି ଗୋଟେ କେହି କୋଉଠି ନାହିଁ । ସେଇଟା ଆମ ମନର ଭୂତ । ସେ ନାହିଁ ବୋଲି କେହି କହିପାରୁନାହାନ୍ତି ଡରରେ; ଅଥଚ କେହି ତାକୁ ଦେଖିନାହିଁ କି ଜାଣିନାହିଁ । ଜଣେ ସିନା ଡରିବ, ଆସ ସମସ୍ତେ ଏକାଠି କହିବା ଯେ ଏ କୋଠାମାଲିକ ଆମେ ନିଜେ । ଯଦି ସେ କୋଉଠି ଥାଏ, ତେଣିକି ତା' ଦାୟିତ୍ୱରେ ସେ ନିଜକୁ ଓ ନିଜର ମାଲିକାନାକୁ ପ୍ରମାଣିତ କରୁ । ଆମେ ଅପେକ୍ଷା କରିବୁ ।"

– "ୟେ କୋଉ କଥା ବା ! ଏଡେ ବଡ ତିନିମହଲା କୋଠାଟାଏ ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷରେ ଠିଆହେଇଚି । କଣ ନା ଏଇଟାକୁ କେହି ଗଢି ନାହିଁ, ୟାର ମାଲିକ କେହି ନାହିଁ ! ଆଉ ସେ ଆମକୁ ରହିବାକୁ ଛାଡିଦେଇଚି, ଆମକୁ ବାଡେଇ ତଡି ନାହିଁ ବୋଲି ସେ ମାଲିକ ନୁହେଁ ! କଣ ନା, ଆମେ ୟାର ମାଲିକ ! ଦେଖ ବାବୁ, ତମେ ଯାହା ମନ ତାହା କର – ମୁଁ ସେ ମାଲିକ ଆସିବାଯାଏଁ ଅପେକ୍ଷା କରିବି ।"

– "ବେଶ୍ ମୁହଁଫିଟା ମାଲିକନା ଟାଏ ତ । କିଏ ମ' ସିଏ ?"

– "ସେ ଯେ ମନ ସେ ହେଉ, ଏମିତି ୟା ଭିତରେ ଢେର୍ ମିଳିବେ । ଏମାନଙ୍କ ପାଇଁ ତ କିଛି କରି ହଉନାହିଁ । ନ ହେଲେ କୋଉକାଳୁ ସବୁ ବଦଳିସାରନ୍ତାଣି ।"

ଉପରମହାଲାର ଟୋକାଟାଏ ଧକ୍‌ଧକିଆ ଗୀତ ବୋଲି ଅଣ୍ଟାକୁ ଆଗପଛ ଛାଟିବାକୁ ଲାଗିଲା । ସେ ଅନ୍ଧାରରେ ଏଠିସେଠି ପାଳି ଧରିଲେ ଟୋକାଟୋକୀ । ସେମାନଙ୍କ ଆଖପାଖ ଅଧାଡିଆ ମଣିଷମାନେ ବି ଅଣ୍ଟାକୁ ଛାଟିଲେ । କିଏ କାହାକୁ ସବୁ ଧରିନେଲେ । ଚାଲିଲା ଶୃଙ୍ଗାର ଛନ୍ଦରେ ଧକଧକିଆ ଗୀତ ଆଉ ନାଚ ।

– "ଆରେ ଅଳପେଇଷ, ଯାଃ ସେଆଡେ ! ରଇଜନା ମୋ ଉପରେ ଏମିତି କାହିଁକି ଝାଙ୍କି ହଉଚୁ ?"

ତା'ପରେ ଠେଲାପେଲା ପାଟିତୁଣ୍ଡ । ଟପ୍‌ଟପ୍ ବର୍ଷା ଆଉ ଅନ୍ଧାର ।

ଏତିକିବେଳେ ସମସ୍ତଙ୍କ କାନ ତାବ୍‌ଦା କରି ଶୂନ୍ୟବାଣୀ ଶୁଭିଲା । କେହି ବୋଧହୁଏ ଡାକବାଜିରେ କହୁଥିଲା – "ତିନିମହଲା କୋଠାରେ ରହୁଥିବା ସମସ୍ତଙ୍କୁ ଜଣାଇ ଦିଆଯାଇଛି ଯେ, ଏ କୋଠା ନିରାପଦ ନୁହେଁ । ସେମାନେ ସକାଳ ପାହିଲେ ଏ ଘର ଖାଲି କରି ଦେବେ । ଏଠି ରହିବାକୁ କାହାରି ଅଧିକାର ନାହିଁ । ଏଣୁ ମାଲିକଙ୍କ ତରଫରୁ ସେମାନଙ୍କୁ ଏ ହୁକୁମନାମାଦ୍ୱାରା ବେଦଖଲ କରାଗଲା ।"

ମେଘ ଡାକିଲା ଗୁମ୍‌ଗୁମ୍ । କୋଠାର କାନ୍ଥ ଆଉ ଛାତ କମ୍ପିଲା ଦୁକ୍‌ଦୁକ୍ ହୋଇ । କୋଠା ଭିତରେ ଚିପିଚାପି ହୋଇ ଠିଆହୋଇଥିବା ଲୋକେ ହଠାତ୍ ଏ ଘଟଣାଟିକୁ ବିଶ୍ୱାସ କରି ପାରିଲେ ନାହିଁ । ମାଲିକ ନାହିଁ ବୋଲି ଘୋଷଣା କରୁ କରୁ ମାଲିକ ଗର୍ଜିଉଠିଲା । କାହିଁ ଥିଲା ସେ ମେଘମଣ୍ଡଳରେ ? ସେ କଣ ସବୁ ଶୁଣୁଥିଲା, ଦେଖୁଥିଲା ଅଲକ୍ଷ୍ୟରେ ?

– "ଆରେ ବାପ୍ପା ଶଙ୍କରା, ଶୁଣିଲୁ ତ ! ଯେତେ ସବୁ କୁହାକପିଲା ତୋ କଥାକୁ ପାଳି ଧରୁଥିଲେ, ସେମାନଙ୍କୁ କହୁନୁ, ଭୁରୁଡ଼ି ମାରିବେ । ହୁଁ, କଣ ନା' ମାଲିକ ନାହିଁ ! ଶୁଣିଲ ତ ସିଂହନାଦ – ଏବେ ସମ୍ଭାଳ । ସକାଳ ପାହିଲେ ଗୁଳିଶବ୍ଦରେ କାଉ ଉଡ଼ିଲା ପରି ସବୁ ଏଇଠୁ ଛିନ୍‌ଛତ୍ର ହେଇଯିବେ ।"

– "ମୁଁ କଣ କରିବିଟି ? ମୋ ରୋଗିଣା ଭୋକିଲା ପିଲାକୁ ନେଇ ଏ ଦୁରୁଦିନରେ ମୁଁ କୁଆଡ଼େ ଯିବି ?" ସକସକ କାନ୍ଦଣା ଭିତରେ ଶୁଭିଲା ଦୁଃଖିନୀ ମା'ଟିର ସ୍ୱର । ଅନ୍ଧ, ବଧିର, ନିପାରିଲା କୋଢ଼ି ବୋବାଳି ଛାଡ଼ିଲେ । ପାଡ଼ିଓ୍ୱେର, ପକେଟମାରୁ, ଜୁଆଡ଼ି, ନିଶାଖୋର, ଖଚୁଆ ମିଛୁଆ କନକନ ହେଲେ । ମୂଲିଆ ମଜୁରିଆ ଖଟିଖିଆ ଚିନ୍ତାରେ ପଡ଼ିଗଲେ । ଫୁଲାଫାଙ୍କିଆ ଟୋକାଟୋକୀ ଦଳ ଅଡ଼ୁଆରେ ପଡ଼ିଗଲେ । ସମସ୍ତଙ୍କ ପାଇଁ ଗୋଟିଏ ପ୍ରଶ୍ନ, 'ଆମେ ଯିବୁ କୁଆଡ଼େ ?'

– "ସକାଳ ପାହିଲେ ଆମ ପାଇଁ କଣ ଆଉ ଗୋଟେ କୋଠା ଠିଆହେଇଯିବ ?"

– "ଆମକୁ ଏଠୁ କାଢ଼ି ଫିଙ୍ଗିଦେବା ପାଇଁ ଯେ ଚାହୁଁଛି, ସେ କଣ ଭାବିବା ଉଚିତ ନୁହେଁ ଆମର କଣ ହବ ?"

– "ଆବେ, ଯାଉନ । ତମେ ଶଳେ କଣ ତା' ଗୋତ ନା ଗାତ ? ତମେ ଯାଉନ ଜହନ୍ନୁମ୍‌କୁ ! ସେଥିପାଇଁ ସେ କାହିଁକି ଚିନ୍ତା କରିବ ?"

ଗୋଟାଏ ଦାଦା ବୋଧେ ପାଟିକଲା – "ଆରେ ଯାଃ – ଅନ୍ଧାରରେ ଆସି ଭଡ଼ାଟିଆ ମାଇକ୍ ଲଗେଇ କିଏ ଗୋଟାଏ କଣ କହିଦେଲା; ସେଟା ମାଲିକ ବୋଲି ପ୍ରମାଣ କ'ଣ ? ସେ ଆସିଲା ନାଇଁ ଦିନବେଳେ... ଶଳା ସାଙ୍ଗରେ ମୁକାବିଲା ହେଇଥାନ୍ତା । ମତେ ଲାଗୁଛି ଆମକୁ ଚମକେଇବା ପାଇଁ ଆମ ଦୁଷମନ୍ ଦଳ ଏମିତି ଗୋଟେ ମଜା କରି ଚାଲିଗଲା ।"

ହଇ ହଇ ରାବ ଶୁଭିଲା । "ଦିବୁ ଦାଦା, ଜିନ୍ଦାବାଦ୍, ଜିନ୍ଦାବାଦ୍" ଶୁଭିଲା । ସତେବା ଉଠେଇଆସୁଥିବା କେତେ ବଡ ମେଘ ଫସର ଫାଟିଗଲା । "ହୁଁଃ, ଦିବୁକୁ ମୁକାବିଲା କରିବ କିଏବା'

ସେ ମାଲିକ ? ମାଲିକ ନା' ଫାଲିକ ?"

ଆଉ ଗୋଟେ ସ୍ୱର ତେଜିଲା । ଭାରି ମାମଲତ୍‌କାରିଆ ନାଲିସଖୋର ସେ ଗଞ୍ଜୋଡ । ତା' ଆଖି ଚିଲା । ଚିଲମ୍‌ରୁ ଧୂଆଁ ଶୋଷି ସେ ପାଟିବାଟେ ଛାଡିବାର କେହି ଦେଖିନାହାଁନ୍ତି । ତାକୁ ସେ ଢୋକି ଜୀର୍ଣ୍ଣ କରିଦିଏ । କେତେକ କହନ୍ତି, ସେଇ ଧୂଆଁଟାକୁ ସେ ଆଖିବାଟେ ଛାଡେ – ସେଥିପାଇଁ ତା' ଆଖି ସେମିତି ଧୂଆଁଳିଆ ହେଇଯାଇଚି । ତା' ଡାକ ନାଁ ମାଙ୍ଗା । ତାକୁ ଦାଦାମାନେ ବି ଖାତିର୍ କରନ୍ତି । ତା'ର ତିନିଟା ମାଇକିନା, ପିଲାପିଲି ନାଇଁ! ମାଙ୍ଗା କହିଲେ ତା' କଥାରେ ଗୋଟେ ଜୁ' ଅଛି । କହିଲା, "ଆରେ କୋଠାଟାଏ ଗଢିଦେଲେ କେହି ମାଲିକ ହୋଇଯାଏ ନାହିଁ । କୋଠାରେ ରହିଲେ ମାଲିକ । ଯେ ଏଠି ଦିନଟାଏ ରହିନାହିଁ ସେ କଣ ଆମକୁ ତଡିବ ? ତା' ଖାଲି କୋଠାରେ ଭୂତ ରହୁଥିଲେ, ଭୂତକୁ ତଡି ଆମେ ରହିଲୁଣି ପଚଶ ବର୍ଷ । ମାଲିକ ଆମେ ନା ସିଏ ?" ମାଙ୍ଗା କଥାରେ ସମସ୍ତେ ଚୁପ୍ ।

ଦମ୍ ନେଇ ସେ ପୁଣି କହିଲା, "ଆବେ, ଯା, କେହି ଏଠୁ କୁଆଡେ ଯିବେ ନାଇଁ । ସେ କଣ କରିବ କରୁ । କାଲି ସକାଳୁ ସେ ଆସିଲେ ମୁଁ ତାକୁ ପାଣିପିଆଇଦେବି । ସେ କଣ ମୋ ଆଗରେ କଥା କହିବ ? ଆବେ, ଏ କୋଠା ଆପଦ କି ନିରାପଦ, ସେ କଥା ଆମେ ଜାଣୁ । ଆମେ ସେକଥା ବୁଝିବୁ – ତୁଟା କିଏ ? ହଁ, ତୁ ଏଠି ଆମ ବିନା ଇଜାଜତ୍‌ରେ ପଶିପାରିବୁ ନାହିଁ । ପଚଶ କି ଷାଠିଏ ବର୍ଷ ତଳେ ତୁ ଇଟା ଚୂନ ଯୋଡେଇ ଏ ତିନିତାଲା କୋଠା କରିଥିଲୁ ବୋଲି ପ୍ରମାଣ ଦବାକୁ ହବ । ତୋ ଜାଗା, ତୋ ଇଟା, ତୋ ଚୂନ ବୋଲି ସାକ୍ଷ୍ୟ ପ୍ରମାଣ କାହିଁ ? ଆମେ ଏଇଠି ରହିଚୁ, ରହିଆସିଚୁ, ଆମ ଅଧିକାର ଜାରି ରହିଛି – ଏଥିପାଇଁ ପ୍ରମାଣ ଦରକାର ନାଇଁ । ସେ ଆସୁ, ଆଗ ମୁଁ ତାକୁ ଦେଖେ । ତାକୁ ଅକଲ ଆଇନ୍ ଦେଖେଇ ସାବାଡ୍ କରିଦେବି । ସେ କଣ ହୁକୁମ୍‌ନାମା ଜାରି କରିଚି । ତାକୁ ତା' ବାପା ନାଁ ୟାଦ୍ ରହିବ ନାହିଁ । ହୁଁଃ!"

"ସାବାସ୍! ସାବାସ୍! ମାଙ୍ଗା ଭାଇ! ମାଙ୍ଗା ଭାଇ, ଜିନ୍ଦାବାଦ୍, ଜିନ୍ଦାବାଦ୍– ।"

ୟା'ପରେ ପାଟି ଫିଟେଇଲା ଦିଗା ପହଲ୍‌ମାନ୍ । ସେ ସୁପର୍‌ଦାଦା । ଏବେ ଆଉ ଲଢାଲଢିରେ ପଶୁନାଇଁ । ଖାଲି ଚେହେରା ଦେଖେଇ ଠିଆହୋଇଗଲେ ଢେର୍ । ହେଲେ ଆଗ ତେଜ ମହଲଣ ପଡିଗଲାଣି । ତା' ବେଳେ ସେ ମଣିଷ ମୁଣ୍ଡଟାକୁ ରସଗୋଲା ପରି ଚିପି ଦହି କାଢିଦଉଥିଲା । ଅସୁମାରି ଲୋକଙ୍କୁ ଶୁଖୁଆ ଚିରିଲା ପରି ଦି' ଦି' ଫଡା କରିଦଉଥିଲା । ତା' ନାଁ ପରା ଦିଗମ୍ବର ବିଷମଗତି ମାନବେନ୍ଦ୍ର ଚହଟରାଏ ଚନ୍ଦ୍ରଉଦିଆ ମହାପାତ୍ର । ଇସ୍... ୟାକୁ ଭଲା କିଏ ମୁକାବିଲା କରିପାରିବ!

ଦିଗା ଷଣ୍ଢ ଭଳି ଡଙ୍କାରିଲା – "ମାଙ୍ଗା ଭାଇ ଭଲା କଥା ବଟେଇଲା । ଇମାନ୍ ସେ ମାଙ୍ଗା ଭାଇ! ତୁ ବେଫିକର ରହ । ସେ କିଏ ଆସିବ ଆସୁ । ସେ ଜାଣିନାଇଁ ଏଠି କିଏ ଅଛନ୍ତି । ହେ, ହେ ହେ ହେ ।"

ଦିଗା ମୁଣ୍ଡରେ ପାଣି କୁଢେଇ ହଉଥିଲା । ସେ ହସିଲାବେଳେ ପବନ ସାଙ୍ଗରେ ପାଣି ସୋତକି ହେଇଗଲା । ଦିଗା କାଶିଲା ଜୋର୍‌ରେ । ମୁହଁରେ ଅଜାଡି ହଉଥିବା ପାଣି ପୋଛି କହିଲା – "ଏ ଶଳା ଘରଟା ସତକୁ ସତ ନାଲାଏକ ହେଇଗଲା । ସେ ମାଲିକ ଆସିଲେ ତାକୁ ଏ ଘର ସଜାଡିବାରେ ଲଗାଇଦବା, ନା କଣ କହୁଚୁ ମାଙ୍ଗା ଭାଇ !"

ମାଙ୍ଗା କହିଲା, "ହଉ, ଯଦି ଦିଗା ଭାଇ ଚାହୁଁଚି, ସେ ମାଲିକପୁଅକୁ ଅନୁମତି ଦେଇଦବା । ୟା ଭିତରେ କାହାରି କିଛି ଅସୁବିଧା ନ କରି, ଏ ଘରଟାକୁ ମରାମତି କରିଦଉ । ମୂଳରୁ ଚୂଳଯାଏ ଯାହା ସବୁ ମଇଳା ଆବର୍ଜନା ରହିଛି ସବୁ ସଫେଇ କରୁ । ସେ ଆଗ ଆସୁ – କାଲି ସକାଳେ ଦେଖିବା । କେହି କୁଆଡେ ଯିବେ ନାଇଁ ।"

– "ନାଇଁ, ନାଇଁ !"

ଛିଣ୍ଡିଗଲା ମୁଣ୍ଡ ପୁଣି ଯୋଡିହୋଇଗଲା ପରି ଆଶ୍ୱସ୍ତି । ସାଧାରଣ ବିପତ୍ତି ଘୁଞ୍ଚିଗଲା । ବର୍ଷା ବି ଥମିଗଲା । ତଥାପି ମେଘ ଗୁମୁଗୁମୁ ଡାକୁଥିଲା; ତାକୁ ଆଉ କିଏ ପରୱା କରୁଚି । ତେଣିକି ଯେ ଯାହାର ସୁଖ-ଦୁଃଖକୁ ଫେରିଗଲେ । ଜର ମୁଣ୍ଡ, ଶୀତ, ଭୋକ ପୁଣି ଫେରିଆସିଲା । ଯୁଝିବାକୁ ହବ, ସହିବାକୁ ହବ । ମଣିଷ ଦେହର ଉଷୁମ ଆଉ ଅନ୍ଧାର ପେଣ୍ଟି ହେଇ ଜମିଗଲେ । ଜଡିଗଲେ ଜଣେ ଆଉ ଜଣଙ୍କ ସାଙ୍ଗରେ । ଆହାର ନାଇଁ, ଭୟ ବି ନାଇଁ । ଖାଲି ନିଦ୍ରା ଆଉ ମୈଥୁନକୁ ନେଇ ଦୀର୍ଘରାତି । ଦୁଃସ୍ୱପ୍ନ ପରି ସମ୍ଭାବ୍ୟ ସକାଳ ମନେପଡୁଥିଲା । ବୁକୁ ଦାଉଁଦାଉଁ ହଉଥିଲା – ମାଙ୍ଗା, ଦିଗା ମନେ ପଡିଯାଉଥିଲେ । ପୃଥ୍ୱୀ ଥୟ ଧରିଯାଉଥିଲା – ବଡଭାଗ ଚାହୁଁ ନ ଥିଲେ ରାତି ପାହୁ ବୋଲି ।

ତଥାପି ରାତି ପାହିଲା, ସକାଳ ହେଲା । ଓଦା ସରସର ନିର୍ମଳ ସକାଳ । ଅଳସ ଭାଙ୍ଗି ସବୁ ଭିଡିମୋଡି ହେଲେ । ତାଙ୍କୁ ପୁଣି ଭୟ ଗ୍ରାସିଗଲା । ବଜ୍ରନାଦ ମନେପଡିଲା । ଆଜି ସକାଳୁ ସେମାନେ କୋଠା ଛାଡି ଯିବାକୁ ଆଦେଶ ମନେପଡିଲା । ସେମାନେ ଛାନିଆ ହୋଇ ଏଣେତେଣେ ଚାହିଁଲେ । କେହି କୁଆଡେ ଦିଶୁ ନଥିଲେ । କାନ୍ଥକୁ ଆଉଜି ଦିଗା ଶୋଇଯାଇଥିଲା । ତା' ପାଦଯୋଡିକ ପାଣିରେ ସରବୁଡ । ମାଙ୍ଗା ଗୋଟେ କୁଣରୁ ମାଇକିନାଙ୍କ ଘେର ଭିତରୁ ଉଠିଲା । ଅଳସ ଭାଙ୍ଗି ଚାରିଆଡକୁ ଚାହିଁଲା । ତା' ଚିଲା ଆଖିରୁ ପୁଣି ଧୂଆଁ ବାହାରିଲା ପରି ଦିଶିଗଲା । ସେ ପାଠୁଆ ଲୋକଟା ଓଦା-ସରସର ହେଇ ଠିଆହେଇଥିଲା ଶିଡି ତଳେ । ତା' ପେଣ୍ଟ ଜାମା ତା' ଦିହରେ ଲାଖିରହିଥିଲା । ସେ ଛିଙ୍କିଲା ଲଗାତାର ଛ'ଥର । ସେଥିରେ ଆଖପାଖ ଲୋକଙ୍କ ଛାଇ ନିଦ ଭାଙ୍ଗିଗଲା । ତା' ନିଦ ବି ଭାଙ୍ଗିଗଲା । ତଳ ମହଲାରେ ଗାଈ ବାଛୁରୀ ହଳେ କୁଜକାଢି ଠିଆ ହେଇଥିଲେ । ପାଗୁଳି କରୁଥିଲେ ମଝିରେ ମଝିରେ । ସମସ୍ତଙ୍କ ନିଘା ସଦର ଦର୍ଜା ଆଡକୁ ବଳେ ଚାଲିଯାଉଥିଲା । ଦିଗା ମାଙ୍ଗା ସକାଳ ଆଲୁଅରେ ଛୋଟ ଆଉ ସାଧାରଣ ଦେଖା ଯାଉଥିଲା । ଶୂନ୍ୟମଣ୍ଡଳ ଓସାରି ହୋଇ ଯାଉଥିଲା । ଭୟ ଗ୍ରାସିଯାଉଥିଲା ବେଳକୁ ବେଳ । ଏତିକି ବେଳେ

ସେ ସଦରଦରଜା ପାଖେ ଆସି ଠିଆହେଲା । ତା' ଦିହରେ ସକାଳ ଖରା ପଡି ଉଜ୍ଜ୍ୱଳ ଦିଶୁଥିଲା ।

କୋଠା ଭିତରୁ ଫିସ୍‌ଫିସ୍ ଶୁଭିଲା, "ଏଇ ମାଲିକ ଆସିଗଲେ । ମାଲିକ ମାଲିକ ।"

"ଦେଖ ତାଙ୍କ ଚେହେରା – ଘିଅ, ଦୁଧ, ମହୁରେ ତିଆରି ସେ ଗୋରା ତକତକ ମୁହଁ, ଆଖି, ବୁକୁ, ମାଲିକ ଘରାନାର ଚେହେରା ।" କାହାରି ଆଖିରେ ପଲକ ପଡିଲା ନାହିଁ । ସବୁ ପ୍ରାୟ ବିହ୍ୱଳ ହେଲାପରି ଚାହିଁ ରହିଲେ ।

ତାଙ୍କ ମନରୁ ଡର ବି ଚାଲିଗଲା । ସେମାନେ ସେ ସୁନ୍ଦର ମଣିଷଟାକୁ ଭଲପାଇଗଲେ । ଏଣିକି ସେ ଯାହା କହିବ ତାହା ହିଁ ହବ । ଘର ଛାଡ କହିଲେ ଛାଡିଦେବେ; ପ୍ରାଣ ଛାଡ୍ କହିଲେ ଛାଡିଦେବେ !

– "ୟାକୁ ଭଲା କିଏ ଅମାନ୍ୟ କରିପାରେ ?" ସେ ଉପରକୁ ଚାହିଁରହିଲା କିଛି ସମୟ । ସେ କୋଠା ଛାତକୁ ଦେଖୁଥିଲା କି ତା' ଉପରେ ଥିବା ଆକାଶକୁ ଚାହିଁରହିଥିଲା କହି ହେବ ନାହିଁ ।

ସେ କୋଠା ଆଡକୁ ଗୋଡ ଚଢେଇଲା ବେଳକୁ ତିନିମହଲାରୁ କୌତୂହଳୀ ଲୋକେ ଆସି ପାହାଚମୁଣ୍ଡରେ ଜମାହୋଇଗଲେ ।

ଚାହିଁରହିଲେ ଏକଲୟରେ ସମସ୍ତଙ୍କଠାରୁ ଅଲଗା ଦିଶୁଥିବା ସେ ଆଗନ୍ତୁକକୁ । ତିନିଟା ଭଙ୍ଗା ଦନ୍ତୁଡା ପାହାଚ ଉଠି ମୂଷାମାଟି ଭଣଭଣ ଖଣ୍ଡିଆ ଦଦରା ପିଣ୍ଡାରେ ସେ ଠିଆହୋଇ ଚାରିଆଡକୁ ଚାହିଁଲା । ସେମାନଙ୍କର କାହାରି ହେଲେ ସନ୍ଦେହ ରହିଲା ନାହିଁ ଯେ ସେ ହିଁ ମାଲିକ । ତଳ ମହଲାର କିଏ ଗୋଟାଏ ଗୁହାରିଲା –

"ମାଲିକ ଆମକୁ, ଦୟା କର, ନିପାରିଲା ମଣିଷକୁ ଦୟା କର । ତୁମେ ଯାହା କହିବ ଆମେ ତାହା କରିବୁ । ଆମକୁ ତଡିଦିଅ ନାହିଁ । ଆମେ ନିଆଶ୍ରିତ ଲୋକ, ଏ ଦୁର୍ଦ୍ଦିନରେ କୁଆଡେ ଯିବୁ ?"

ତା'ର ପାଳି ଧରି ଆଉ ଅନେକ ସ୍ୱର ଶୁଭିଲା । କେହି କେହି ବେକରେ ଗାମୁଛା ଗୁଡେଇ ଗଡଘାଲି ଶୋଇଗଲେ । ଶରଣ ମାଗିଲେ । ଉପର ମହଲାମାନଙ୍କରୁ ଦୁମୁଦୁମୁ ପାଦଶବ୍ଦ ଓହ୍ଲେଇଆସିଲା । ସମସ୍ତଙ୍କୁ ଚୁପ୍ କରି ମାଙ୍ଗା ଆଗଭର ହୋଇ ଭିଡ ଠେଲି ଆସିଲା ।

– "ଆରେ ରହ । କାହିଁ ହେମ୍‌ତି ହଉଚ ।" – ତା'ପରେ ସାମ୍ନାକୁ ଚାହିଁ ପଚାରିଲା – "ତେମେ ବାବୁ କିଏ ! କାହିଁକି ଆସିଚ ଏଠିକି ?"

ହିମ୍ମତ ପାଇ ଅନ୍ୟମାନେ ପଛରୁ କହିଲେ, "କହ ତମେ କିଏ ? ତମେ କଣ ଏ କୋଠାର ମାଲିକ ?"

– "ବତାଓ ତୁମ୍ କୌନ୍ ହୋ !"

– "ଯଦି ତମେ ୟାର ମାଲିକ, ତା'ର ପ୍ରମାଣ କ'ଣ ?"

– "ତମେ କଣ କାଲି ସଞ୍ଜବେଳେ ଯେତେବେଳେ ପାଣି କୁଢଉଥିଲା, ହୁକୁମ ଜାରି କରିଥିଲ

– ଆଜି ସକାଳୁ ଆମେ ଏ କୋଠା ଖାଲି କରିଦେବାକୁ ?"

– "ଏମିତି ହୁକୁମ ଦେବାକୁ ତମର କଣ ଅଧିକାର ଅଛି – ବତାଅ !"

– "ହଁ, ହଁ ବତାଅ ! ଚଡିଦବ ସମସ୍ତଙ୍କୁ ? କଣ ଖେଳଘର ଲାଗିଚି ?"

ସେ ଘୋ-ଘା' କରୁଥିବା ଲୋକଙ୍କୁ କେବଳ ହାତ ଟେକି ବାରଣ କଲା । ସମସ୍ତେ ଚୁପ୍ ହୋଇଗଲେ ।

– "ତମ ଭିତରେ କେହି ଜଣେ ଅଛି କି – ଯେ ସମସ୍ତଙ୍କ କଥା ବୁଝିଛି – ଯେ ସମସ୍ତଙ୍କ ପାଇଁ କହିପାରିବ ?"

ସମସ୍ତେ ଅଡୁଆରେ ପଡିଲା ପରି ଏଣେତେଣେ ଚାହିଁଲେ । କିଛି ସମୟ କାହା ତୁଣ୍ଡରୁ କିଛି କଥା ବାହାରିଲା ନାହିଁ ।

ଜଣେ ସାହସ କରି କହିଲା – "ମାଙ୍ଗା ଭାଇକୁ ବାଟ ଛାଡ । ସେ କହୁ !"

ଆଉ ଜଣେ କହିଲା, "ଆରେ, ସେଇଟା ଆଗ ନିଜକଥା ବୁଝିଲାଣି ? ସେ ସମସ୍ତଙ୍କ କଥା କଣ କହିବ । ସେ ଖାଲି ଚାଲାକି କଲେ କଣ ଚଳିବ ? ବରଂ ଦିଗା ଭାଇକୁ ଏ ଭାର ଦିଆଯାଉ !"

ମାଙ୍ଗା ପକ୍ଷରୁ କିଏ ଗୋଟାଏ ହସିଲା – "ଆରେ, ଏ କଣ ପହିଲମାନି ଧନ୍ଦା ଚାଲିଚି କି – ଏଠି ପରା ଆଇନକାନୁନ୍ ମାମଲା । ଦିଗା ଭାଇ ସୁସ୍ଥରେ ଖାଇ ସୁସ୍ଥରେ ଶୋଇବା ଲୋକ ! ତା'ର ଏଇଠି କାମ ନାଇଁ, ବେଳ ପଡିଲେ ସେ ଲାଗିଯିବ ନାଇଁ ? ଏଇନେ ପରା ବୁଦ୍ଧିଶୁଦ୍ଧି କଥା ପଡିଚି !"

ଭିଡ ଭିତରୁ ସେ ପାଠୁଆ ଲୋକଟା କହିଲା, "ଆଗରୁ ଗୋଟାଏ ନିର୍ବାଚନ କରିଦେଇଥିଲେ ହେଇଥାନ୍ତା । ସେଇକଥା ଏ ବାବୁଜଣକ ପଚାରୁଚନ୍ତି – ତମର ପ୍ରତିନିଧି କିଏ ? ଏକାଠି ନ ହେଲେ ବି ତିନିମହଲାରୁ ତିନିଜଣ ନେତାଙ୍କୁ ବାଛିନେଇଥିଲେ ହେଇଥାନ୍ତା । ଏଇନା କଣ ହବ ?"

– "ହବ, ହବ ! କହ ଭାଇ, ତିନିମହଲାରୁ କିଏ ତମ ନେତା –"

ଟୋକାଟୋକୀ ଦଳ କହିଲେ – ଯୋଶୁ, ଯୋଶୁ । ସେ ଆମ ନେତା । ସେ ଆମକୁ ଗୀତ-ନାଚ ଶିଖାଏ, ଚରସ ଖାଇବା ଶିଖାଏ । ସେ ଗାଇଲେ ଆମେ ଗାଉ, ସେ ନାଚିଲେ ଆମେ ନାଚୁ ! ହେଲା ହେଲା – 'ଯୋଶୁ' ଉପର ମହଲାର ପ୍ରତିନିଧି ।

– "ମଝି ମହଲା ପାଇଁ ନାଁ କୁହ-"

– "ମାଙ୍ଗାଭାଇ ! ମାଙ୍ଗାଭାଇ ! ସେ ଆମ ନେତା । ତା' ପଛକୁ ଦିଗାଭାଇ !"

– "ନାଇଁ ନାଇଁ ! ଜଣେ ! ଜଣକ ନାଁ କୁହ !"

– "ତା'ହେଲ ମାଙ୍ଗା ଭାଇ !"

– "ଆଉ ତଲ ମହଲା ପାଇଁ କିଏ କହିବ ?"

– "ମାଗୁଣି ! ମାଗୁଣି, ସେଇଟା ଅନ୍ଧ ନୁହେଁ । ହେଲେ ସବୁ ଅନ୍ଧଙ୍କୁ ଚିଟା କାଟିଦବ, ସେ

ଚାହିଁଲେ ଛୋଟା, କେମ୍ପା, ଖନା ସବୁ ହେଇପାରିବ । ଏମିତିକି ଗୋରୁ କି ଗଧ ହବାକୁ ପଡିଲେ ସେ ହେଇଯିବ । ତା' ପାଖରେ ବେଶୀ ବୁଦ୍ଧି, ବେଶୀ ପଇସା ।"

– "ହେଲା, ହେଲା – ଯୋଗୁ, ମାଙ୍ଗା, ଆଉ ମାଗୁଣି - ଏଇ ତିନିଜଣ ଆମ କଥା କହିବେ ।"

ଆଗନ୍ତୁକ ଅପେକ୍ଷା କରି ରହିଥାଏ । ଏ ତିନିଜଣଙ୍କୁ ସାମ୍ନାରେ ଦେଖି ପଚାରିଲା – "ତୁମେ କଣ ଚାହଁ ?"

– "ଆମେ ଜାଣିବାକୁ ଚାହୁଁଚୁ, ତମେ କିଏ ?" କହିଲା ମାଙ୍ଗା, ଆର ଦି'ଜଣ ହଇହଇ କଲେ ।

– "ଏକଥା ମୋତେ ତମେ କାହିଁକି ପଚାରୁଛ ?"

– "ଆମେ ଜାଣିବାକୁ ଚାହୁଁଛୁ ତମେ ଏ କୋଠାର ମାଲିକ କି ନୁହେଁ ।"

– "ଜାଣିଲେ କଣ କରିବ ?"

– "ଆମେ, ଆମେ... ଯାହା କରିବୁ ସେଇଟା ପଛ କଥା । ଆଗ କହ, ତମେ ଏ କୋଠାର ମାଲିକ କି ନୁହେଁ ?"

"ଏ, ହେ, ହେ, ହେ !" ହାସ୍ୟରୋଳ ଉଠିଲା । ହଠାତ୍ କାହିଁକି କେଜାଣି ବନ୍ଦ ହେଇଗଲା ।

ବାୟା ଶଙ୍କରାର ପାଟି ଶୁଭିଲା, "ମୁଁ କହୁଚି ପରା, ଏ କୋଠାର ମାଲିକ କେହି ନାହିଁ, ମୁଁ ପଚାଶ ବର୍ଷକାଳ ଖୋଜିଚି, ପାଇନାଇଁ ।"

ଆଗନ୍ତୁକର ସ୍ପଷ୍ଟ ତୀବ୍ର ସ୍ୱର ଶୁଭିଲା – "କିଏ କହିଲା ମାଲିକ ନାହାନ୍ତି ବୋଲି ? ମାଲିକ ନିଶ୍ଚୟ ଅଛନ୍ତି । ମୁଁ ତାଙ୍କ ପ୍ରତିନିଧି ।"

ଛାଟ ଖାଇଲା ପରି ସମସ୍ତେ ଚୁପ୍ ହେଇଗଲେ । ମୂକ ଆତଙ୍କ ସମସ୍ତଙ୍କୁ ଗ୍ରାସ କରିଗଲା । ଓ ! ଏଇ ତା'ହେଲେ ମାଲିକର ପ୍ରତିନିଧି ! ଏ ଯାହା କହିବେ ତାହା ହବ !! କିଏ ତାକୁ ଆନ କରିପାରିବ !

ମାଙ୍ଗା ସହଜେ ଦବିବା ଲୋକ ନୁହେଁ । ପଚାରିଲା – "ପ୍ରମାଣ କ'ଣ ? ତମେ ପ୍ରତିନିଧି ବୋଲି ପ୍ରମାଣ କ'ଣ ?"

– "ତମେ କିଏ ପ୍ରମାଣ ଲୋଡିବାକୁ ?"

– "ଆମେ ? ଆମେ ଏ କୋଠାର ଅଧିକାରୀ । ଏ କୋଠା ଆମ ଅକ୍ତିଆରରେ ଅଛି, ଆମେ ଯା ତା' କଥାରେ ଯାକୁ ଛାଡିବୁ ନାହିଁ ।"

ଆଗନ୍ତୁକ ତା' ମୁଣାରୁ ଗୋଟାଏ ସରୁ ଲମ୍ବା କାଗଜ ନଳି କାଢି ଟେକିଧରିଲା । କହିଲା, "ଏଇ ହେଲା ଏ କୋଠାର କାଗଜାତ୍ । ଏଥିରେ ମାଲିକଙ୍କର ମାଲିକାନାର ହରେକ ପ୍ରମାଣ ରହିଚି ।"

ମାଙ୍ଗାର ଧୂଆଁଳିଆ ଆଖିରୁ ସଟକୁ ସଟ ଧୂଆଁ ବାହାରିଗଲା । ତା'ର ସାହସ ହେଲା ନାହିଁ

ସେ କାଗଜକୁ ହାତରେ ଧରି ପରୀକ୍ଷା କରିବାକୁ ।

ସମସ୍ତେ ତଳକୁ ମୁଣ୍ଡ ନୁଆଇଁ ଅପେକ୍ଷା କଲେ ।

ମାଙ୍ଗା ନରମା ଗଳାରେ କହିଲା, "ତା'ହେଲେ ତମେ ଆମକୁ ଏଠୁ ବେଦଖଲ କରିବାକୁ ଆସିଛ ?"

ଘରିଆଡୁ ସୁକ୍‌ସୁକ୍ କାନ୍ଦଣା ପୁଣି ଶୁଣାଗଲା ।

ମାଙ୍ଗାର ସାହସକୁ ମାନିବାକୁ ପଡିବ । ସେଭଳି ସଙ୍କଟବେଳେ ସେ ପୁଣି ଟାଣପଣ ରଖି ପଚାରିଲା – "ଆମେ ସ୍ଥିର କରିଛୁ ଯିବୁ ନାଇଁ । ଆମେ ନ ଗଲେ ତମେ କଣ କରିବ ?"

କାଗଜକୁ ମୁଣାରେ ରଖିବା ଭିତରେ ସେ ଅଳ୍ପ ହସି ଦୃଢତାର ସହିତ କହିଲା, "ତା'ର ଅନ୍ୟ ବ୍ୟବସ୍ଥା କରାଯିବ ।"

ମାଙ୍ଗାର ସାହସ ଆଉ କୁଳେଇଲା ନାହିଁ । ସେ ଖୁବ୍ ଦୁର୍ବଳ ସ୍ୱରରେ ପଚାରିଲା – "କ'ଣ ସେ ବ୍ୟବସ୍ଥା ଆମେ ଜାଣିପାରୁ କି ?"

ସମସ୍ତେ ସ୍ତବ୍ଧ ହୋଇ ଅପେକ୍ଷା କରିଛନ୍ତି ଶୁଣିବାକୁ ମାଲିକଙ୍କର ନିଷ୍ପତ୍ତି । ଏତିକିବେଳେ ଦିଗା ପାଟିଟାଏ କଲା – "ଆରେ, ଏତିକି ବୁଝୁନ । ସେ ଗୁଣ୍ଡା ଲଗେଇବେ । ଆମକୁ ଜବରଦସ୍ତି ଏଠୁ ଓଟାରି କାଢିନେବେ । ଆରେ ଯାଃ ! ଏଠି ଲଢେଇ ହେଇଯିବ । ଖୁନ୍ ଖରାବି ହେଇଯିବ । ଆମେ କଣ ଏଠି ହାତରେ ଚୂଡି ପିନ୍ଧି ବସିଚୁ ?"

ଆଗନ୍ତୁକର ଚାହାଣିରେ କଣ ଥିଲା କେଜାଣି, କାହାରି ସାହସ ହେଲା ନାଇଁ ପାଟି ଫିଟେଇବାକୁ । ଗହୀର ଗାଡିଆରେ ଗୋଡ ବୁଡିଗଲା ପରି ଜଗା ପହିଲମାନର ଢମକୁହା ନିରବ ହେଇଗଲା ।

ଆଗନ୍ତୁକ ପୂର୍ବପରି ଅତି ସ୍ପଷ୍ଟ ତୀବ୍ର ସ୍ୱରରେ କହିଲା – "ଏ କୋଠାର ମାପ ଅନୁସାରେ ତା'ର ଖଞ୍ଜିଦିଆଯିବ । ବିସ୍ଫୋରକ ଖଞ୍ଜିଦିଆଯିବ । ଦଶ ମିନିଟ୍‌ରେ ଖାଲି କରିବାକୁ ନୋଟିସ ଦିଆଯିବ । ଦଶ ମିନିଟ୍ ପୂରିଗଲେ ଦୂରରେ ଥାଇ ବୋତାମ ଟିପିଦିଆଯିବ । କୋଡିଏ ସେକେଣ୍ଡରେ ଏ ସମଗ୍ର କୋଠା ପାଉଁଶର କୁଢ ହେଇ ଧୂଳିରେ ମିଶିଯିବ ! ବିସ୍ଫୋରଣର ଶବ୍ଦ କିଛି ସମୟ ଧରି ଏ ଅଞ୍ଚଳକୁ ଥରହର କରିବ । ତା'ପରେ ସବୁ ଶାନ୍ତ ହୋଇଯିବ ।"

ସମସ୍ତେ ଛେପଢୋକି ଆଖିବୁଜି ଠିଆରହିଗଲେ । ତାଙ୍କ ପାଦତଳିପା ଶିରଶିର କଲା; ତାଙ୍କୁ ବୁଝାପଡିଗଲା ମାଲିକ ଚାହିଁଲେ କଣ କରିପାରେ !

ଯେଉଁମାନେ ପ୍ରଥମେ ବେକରେ ଗାମୁଛା ଗୁଡେଇ ଗଡଘାଲି ଶୋଇଥିଲେ, ସେମାନେ ଆଗେଇ ଆସି ଆଣ୍ଠେଇପଡିଲେ । କରଯୋଡି ହେଇ କହିଲେ – "ତମେ କଣ ଏତେ ନିଷ୍ଠୁର ହେଇପାରିବ ? ଆମକୁ ତଡିବାକୁ ଏତେ ବଡ କୋଠାଟାକୁ ଧୂଳିସାତ୍ କରିଦବ । ଦୋଷ ଆମର –

ଆମକୁ ଦଣ୍ଡ ଦିଅ – ଏ କୋଠା କଣ କଲା। ତମେ ତାକୁ ନିଜେ ଗଢ଼ିଛ; ତାକୁ ପୁଣି ନିଜ ହାତରେ ଧ୍ୱଂସ କରିଦବ ? – ନା ନା, ଏପରି କରନାହିଁ। ଆମେ ଏ କୋଠାକୁ ଆଦରିଯାଇଛୁ। ଆମେ ଯାର ମୃତ୍ୟୁ ଦେଖିପାରିବୁ ନାଇଁ। ଆମେ ଏଇନା କହିଲେ ଏଇଠ ବାହାରିଯିବୁ! ଏ କୋଠାକୁ ବଞ୍ଚାଅ!"

ସମସ୍ତେ ନିଶ୍ଚଳ, ନିରବ। ବୋଧହୁଏ ସେଇ ଏକା ପ୍ରାର୍ଥନା କରୁଥିଲେ ମାଙ୍ଗା ସମେତ! ସମସ୍ତଙ୍କ ପିଠି ଥାପୁଡେଇ ଆଶ୍ୱାସନା ଦେଲା ଭଳି ସେ କହିଲା – "ମୁଁ ସେଇଥିପାଇଁ ଏଠିକି ଆସିଚି। ଏ କୋଠାକୁ ସଜାଡି ପୁଣି ନୂଆ କରିବାକୁ।"

କେହି ନିଜ କାନକୁ ହଠାତ୍ ବିଶ୍ୱାସ କରିପାରିଲେ ନାହିଁ। ପ୍ରଥମେ ଟୋକାଦଳ ପାଟି କଲେ – "ହୁର୍‌ରେ! ହୁର୍‌ରେ!"

– "ତା'ହେଲେ ତମେ ଏ କୋଠାକୁ ମରାମତି କରିବାକୁ ଆସିଚ – ଆମକୁ ତଡିବାକୁ ନୁହେଁ ?"

– "ମରାମତି କରିବାକୁ ତମେ ଆମକୁ ତଡିବା କଣ ଦରକାର ? ଆମେହିଁ ତ ତମ ସାଙ୍ଗରେ ମିଶି ଯାର ମରାମତି କରିବୁ। ସାହାଯ୍ୟ କରିବୁ।"

ଆଗନ୍ତୁକ ମୁହଁରେ ସନ୍ତୋଷର ରେଖାଏ ହସ ଦିଶିଗଲା।

– "ଠିକ୍ ଅଛି, ଏ ପରୀକ୍ଷାଟା ବି କରିନିଆଯାଉ। ସର୍ବପ୍ରଥମେ କୋଠାର ମାନଚିତ୍ର ଦେଖି ତା'ର ଭଙ୍ଗାରୁଜା ଠାବ କରିବାକୁ ହେବ। ମରାମତି ପାଇଁ ଯାହା ସାମଗ୍ରୀ ଲୋଡା ହେବ ତା'ର ଗୋଟାଏ ତାଲିକା ପ୍ରସ୍ତୁତ ହେବ, ଖର୍ଚ୍ଚ ଅଟକଳ ପ୍ରସ୍ତୁତ ହେବ। ତା'ପରେ ପ୍ରତି ମହଲାରୁ ଦଶ ଜଣ ଲେଖା କର୍ମୀଙ୍କ ତାଲିକା ତିଆରି ହେବ। ପଇସାପତ୍ର ଦାୟିତ୍ୱ, ଜିନିଷପତ୍ର ଖରିଦ କରିବା ଦାୟିତ୍ୱ, କାମ ତଦାରଖ କରିବା ଦାୟିତ୍ୱ ବଣ୍ଟାଯିବ ଏବଂ କାମ ଆରମ୍ଭ ହେବ। ଥରେ ଆରମ୍ଭ ହେଲେ ଶେଷ ହେବ – ମଝିରେ ଆଦୌ ଅଟକିବ ନାହିଁ।"

କେହି କିଛି କହିବା ପୂର୍ବରୁ ମାଙ୍ଗା ଆରମ୍ଭ କରିଦେଲା – "ଆଜ୍ଞା ବାବୁ, କାମଟା ନିଶ୍ଚୟ ହେବା ଦରକାର। କାମ ପାଖରେ ନିଜେ ମାଲିକ ଠିଆ ନହେଲେ ହବ ନାହିଁ। ସେଥିପାଇଁ କାମ ତଦାରଖ ଦାୟିତ୍ୱ ତମର। ବାକି ପଇସାପତ୍ର ଝାମେଲା, ଯାକୁ ଦିଅ, ତାକୁ ଦିଅ, ଜିନିଷ କିଣ, ଧାଁ-ଦଉଡ କର, ଏ କାମଟା ଆଉ କିଏ ନ ନେଲେ ମୁଁ ବରଂ ମୁଣ୍ଡେଇବି। ମୋ ସାଙ୍ଗରେ ଯୋଗୁ ଆଉ ମାଗୁଣି ବି ରହନ୍ତୁ। କର୍ମୀ ତାଲିକା ତିଆରି କରି ସେମାନଙ୍କୁ ହାଜର କରିବା କାମ ଦିଗା ଭାଇଠୁ ଆଉ ଭଲ କିଏ କରିପାରିବ ନାହିଁ। ହଁ, ଆଉ ଗୋଟେ କଥା – କୋଠା-ବାସିନ୍ଦାଙ୍କ ତରଫରୁ ମାଲିକଙ୍କ ପ୍ରତିନିଧିଙ୍କୁ ମୋର କହିବାର ଅଛି। ଆଜିକାଲି ମଜୁରିଆ ଯେତିକି ହାରରେ କାମ କରୁଛନ୍ତି, ଆମ ଭାଇମାନେ ସେତିକି ପାଇବେ କି ନାହିଁ ? ବାହାର ଲୋକ ଲାଗିଲେ ତ' ସେଇ ପଇସା ଖର୍ଚ୍ଚ ହେବ। ଆମ ନିଜ ଲୋକଙ୍କୁ ସେଇଟା ଦେଲେ ସେମାନେ ଅଧିକ ମନ ଦେଇ କାମ

କରନ୍ତେ । ଦେଖନ୍ତୁ, ଏଥିରେ ମାଲିକଙ୍କ ମର୍ଜି ।"

ଚତୁର ମାଙ୍ଗା କଥାରେ ଯେ କେହି ପଡିଯିବ । ଚୋପ ଉପରେ ଏମିତି ତାଳପତ୍ର ଖଞ୍ଜିଥିବ ଯେ, ହାତୀ ବାରି ନ ପାରି ଗୋଡ ପକେଇଦବ, ଆଉ ଖଣା ଭିତରକୁ ଗଳିପଡିବ । ମାଲିକଙ୍କ ପ୍ରତିନିଧି ମଧ ବିପଦ ବାରିପାରିଲେ ନାହିଁ – ରାଜି ହୋଇଗଲେ ।

କାମ ତାଲିକା ତିଆରି କରିବାକୁ ସମସ୍ତଙ୍କୁ ନିଜ ନିଜ ମହଲାକୁ ପଠେଇ ଦିଆଗଲା । ଗୋଟାଏ ତିନିଗୋଡିଆ କାଠଚୌକି କୋଉଠୁ ଆଣି କାନ୍ଥକୁ ଲଗେଇ ମାଙ୍ଗା ଥୋଇଲା । ତାକୁ ଅତି ଆଦରରେ ଆଣି ସେଇଠି ବସେଇଦେଲା । କହିଲା, "ଏତେବଡ କାମ ହବ । ସର୍ବପ୍ରଥମେ ଗୋଟେ ଅଫିସ ହବା ଦରକାର । ସେଥିପାଇଁ ଗୋଟେ ଭଲ ଲୁହା ଟେବୁଲ୍ ଆଉ ଗୋଟେ ଦାମି ଚୌକି । ବାହାର ଲୋକଙ୍କ ପାଇଁ ଦିଖଣ୍ଡ ସାଧାରଣ ଚୌକି । ହଁ, ଆଉ ଗୋଟେ ଲୁହା ଆଲମାରି, ତା' ଭିତରେ କାଗଜପତ୍ର ଦଲିଲ ଡକ୍ୟୁମେଣ୍ଟ ଆଦି ରହିବ । ଟଙ୍କାପଇସା ପାଇଁ ସ୍ୱତନ୍ତ୍ର ଗୋଟିଏ ଚାବିପକା ଖୋପ ତା'ରି ଭିତରେ ରହିବ ।"

– "ତମେ ବାବୁ କେଡେ ବଡଲୋକ, ତମେ ଏମିତି ତିନିଗୋଡିଆ ଭଙ୍ଗା ଚୌକିଟାରେ ବସିବ – ଏକଥା ମୋ ଦିହ ସହୁ ନାହିଁ । ମତେ ଆଗ ଏ ଜିନିଷ କିଣିବା ପାଇଁ ଟଙ୍କା ଦଶ ହଜାର ଅଗ୍ରିମ ମଞ୍ଜୁର କରି ଦେଲେ ମୁଁ ବାକି ସବୁ ବୁଝିବି ।"

– "ଏତେ ପଇସା କଣ ଏଇଥିରେ ଲଗେଇବାକୁ ଆସିଚି ?"

– "ଶୁଣନ୍ତୁ ପ୍ରତିନିଧିବାବୁ, ସବୁ ଯୁଦ୍ଧରେ ଗୋଟାଏ ଲେଖା କମାଣ୍ଡର ତମ୍ବୁ ଥାଏ । ସେଇଠି ପ୍ରକୃତରେ ଯୁଦ୍ଧ ଚଳାଯାଏ – ବାକି ସବୁ ଲଢନ୍ତି ଆଉ ମରନ୍ତି । ତେମେ ଆପଣ ଆମ କମାଣ୍ଡର । ଆପଣଙ୍କର ଗୋଟାଏ ସୁବ୍ୟବସ୍ଥା ହବା ଦରକାର ନା ! ଭାବନ୍ତୁ, ମୁଁ ଯଦି କିଛି ଭୁଲ କହୁଥାଏ ତା'ହେଲେ ମୋ କାନ ମୋଡି ଚପୁଡା ମାରନ୍ତୁ !"

କ'ଣ କାମ ହେବ, କିଏ କରିବ, ଜିନିଷ କଣ ଲାଗିବ – ଏସବୁ କିଛି ହବା ପୂର୍ବରୁ ଘଣ୍ଟା କେଇଟା ଭିତରେ 'କମାଣ୍ଡ ରୁମ୍' ସଜିଲ ହୋଇଗଲା । କାମ ତାଲିକା, କର୍ମୀ ତାଲିକା ଆସିଲାବେଳକୁ ମଝି ମହଲାର ବାଟ ବଖରାରେ ମାଲିକଙ୍କ ପ୍ରତିନିଧି ଚୌକିରେ ବସିସାରିଥିଲେ ଏବଂ ଟେବୁଲ ଏପାଖେ ଗୋଟିଏ ଚୌକିରେ ମାଙ୍ଗା ବସିସାରିଥିଲା ଏବଂ ଅନ୍ୟାନ୍ୟ ହିସାବ ଫର୍ଦ ତିଆରି କରୁଥିଲା ।

ମାଙ୍ଗା ହିସାବ କରୁଥିଲା ପ୍ରତିନିଧି ଖାଇବେ କ'ଣ ? କୋଉଠୁ ଅଣାଯିବ, କେମିତି ଆଉ କିଏ ତାକୁ ଆଣିବ... ଏବଂ ସେ ବାବଦକୁ ମାସକୁ ଖର୍ଚ୍ଚ କଣ ହବ । ତା'ପରେ ପ୍ରତିନିଧି ରହିବେ ଶୋଇବେ ଗାଧୋଇବେ କୋଉଠି ? ତାଙ୍କ ପାଇଁ ଖଟ, ଶେଯ, ଚଦର, ମଶାରି ବାଡି – ଗାଧୋଇବାକୁ ବାଲ୍‌ତି, ମଗ-ଖାଇବାକୁ ପ୍ଲେଟ, ଚମଚ – ଏବଂ ସେ ବାବଦକୁ ଖର୍ଚ୍ଚ ! !

ଆଲମାରିର ସ୍ୱତନ୍ତ୍ର ଗୁମ୍ଫା ଭିତରେ ଯେଉଁ ବିଡା ବିଡା ନୋଟ ରଖାଗଲା, ତାକୁ ମାଙ୍ଗା

ତା' ଆକଳନରେ ଅନୁମାନ କରି ନେଇଛି । ବେଶ୍ ମୋଟା ରକମ । ମାଲିକ ନିଶ୍ଚେ ମାତବର, ନ ହେଲେ କଣ ଗୋଟାଏ ତିନିତାଲା କୋଠା କରି ଷାଠିଏ ବର୍ଷ ଭୁଲିଯାଇଥାନ୍ତେ । ତାଙ୍କ ଚୌଦ ବ୍ରହ୍ମାଣ୍ଡ ତେଣିକି ଝଲମଲ ହଉନଥିଲେ ଏଣିକି ଟ' ଥରେ ହେଲେ ନଜର ପଡିଥାନ୍ତା । ଏବେ ଖାଲି କାମ ଉଖାରିବାକୁ ଏତେ ଦରବ ପଠେଇଛନ୍ତି । ଆଗକୁ ଆଗକୁ କେତେ କଥା; ଖାଲି ଏ ଜଣକୁ କାବୁ କରି ନେଇପାରିଲେ ହେଲା, ମାଙ୍ଗାର ସ୍ୱର ଆଉ ଭାଷା ବଦଳିଗଲା –

– "ଆପଣ ସାର୍, ଯାହା ଚାହିଁବେ ମୋତେ ହୁକୁମ୍ କରିଦେବେ । ମୁଁ ସବୁ ସମ୍ଭାଳି ନେବି । ଏଇ ହେଲା ମରାମତି କାମର ତାଲିକା – ଏଥିରେ ଇଟା, ସିମେଣ୍ଟ, ବାଲି, ଲୁହାଛଡ ଲାଗିବ । ସେଥିପାଇଁ କିଛି ପଇସା..." ଅଳ୍ପ ହସି ମୁଣ୍ଡ ପଛପଟ କୁଣ୍ଡେଇବା ଭଙ୍ଗୀରେ ମାଙ୍ଗା ମହାପାତ୍ର ଛିଡାହେଲା ।

ଅନ୍ୟମାନଙ୍କୁ ଗାରଡେଇ ଚାହିଁ କହିଲା, "ଯାଅ ଏଥର, କାଲିଠଉଁ କାମରେ ଲାଗିଯିବ । ମାଲିକେ ରାଜିହେଇଗଲେ – ତମକୁ ପୂରା ମଜୁରି ମିଳିବ । ଏଣିକି ଘରେ ଥାଇ ଘରୋଇ ରୋଜଗାର । ଗାଈ ଦୁହିଁବାମାର୍ଗେ ପଇସା ଝରିଲା ଜାଣ ।"

– "ମାଙ୍ଗା ଭାଇ, ତମେ ଥିଲେ ଆମର ଆଉ ଦୁଃଖ କ'ଣ! ଆମେ କଣ କହୁଚୁ କି, ଦଶଜଣ ଲେଖା ମହଲା ପିଛା ନେଲ ଯେ ଆଉ ସବୁ କଣ ଭୋକେ ମରିବେ ? ଏଇଟା ନ୍ୟାୟ ହେଲା ନାଇଁ ।"

ମାଙ୍ଗା ନାକରେ ହାତ ଦେଇ 'ମାଲିକ'କୁ ଉଲ୍ଟତ କଲା ପରି ଖୁଁ ଖୁଁ ହସିଲା – "ଆରେ, ତେମେ ଗବା ଯୋଉ ମାଟିମୁଣ୍ଡିଆକୁ ସେଇ ମାଟିମୁଣ୍ଡିଆ ରହିଗଲ । ଆରେ, ମହଲା ପିଛା ଦଶଜଣ; କଣ ସବୁଦିନ ସେ ଦଶଜଣ ? ତାଲିକା ପରା ହରରୋଜ ବଦଳିବ । ସମସ୍ତେ ହପ୍ତାକୁ ଦି'ଦିନ ପାଇଲା ଭଳି ବେବସ୍ଥା ହବ । ବାକି ଦିନଯାକ ତମେ ତମର ଧନ୍ଦା କରିବ । ଏଠି ଟ' ଶଶୁରଘରେ ଅଛ, କଉଡିଟିଏ ଖର୍ଚ୍ଚ ନାହିଁ । ଆଉ କଣ ଚିନ୍ତା ? ଯାଅ ।"

ସେମାନେ ପ୍ରାୟ ବୁଝିଗଲାପରି ଖୁସି ଖୁସି ବାହାରିଗଲେ ।

– "ହଁ ସାରେ, ଜିନିଷ ପାଇଁ ଟ' କାଲିକି । ଏବେ ହାଲ୍ ଆର ତାଲିକାଟାକୁ ଟିକିଏ ବିଚାର କରନ୍ତୁ । ଆପଣ ଟ' ସୁବିଧାରେ ରହିଲେ ପୁଣି କାମ ହବ !"

ଯା'ପରେ ଦେଖାଗଲା ଯେ ଶଗଡରେ କିଛି ଭଙ୍ଗା ଇଟା ଆସି ଗଦାହେଲା, ବାଲି ଗୋଟି ସିମେଣ୍ଟ ଗଧ ପିଠିରେ ଯାଉଁଳି ବୋଝ ହୋଇ ଆସିଲା । ସକାଳୁ ଆସିଲେ ସଞ୍ଜକୁ ନିଅଣ୍ଟ ହୋଇଗଲା ।

ପ୍ରତିନିଧି ପଚାରିଲେ, "କି ହେ ମାଙ୍ଗା, ଏତେ ପଇସା ନଉଚ; ଟ୍ରକ୍‌ରେ ମାଲ୍ ଆଣି ଗଦା କରିଦଉନ ।"

ମାଙ୍ଗା ସେମିତି ନାକରେ ହାତ ଦେଇ ଖୁଁ ଖୁଁ ହସିଲା – ଆପଣଙ୍କୁ ଏଠାକାର ଦସ୍ତୁର

ମାଲୁମ ନାହିଁ, ଜଣାପଡିଲା । ମରାମତି କାମ ପାଇଁ କିଏ ଟ୍ରକ୍‌ରେ ମାଲ୍ ଆଣି ବରବାଦ କରନ୍ତି ନାଇଁ । କୋଠା ତୋଳାହେଲାବେଳ କଥା ଅଲଗା । ଆଉ ପଇସା କଥା ଯାହା ହୁକୁମ୍ କଲେ, ମାଙ୍ଗାରାମ ମହାପାତ୍ର ସେ ବିଷୟରେ ଦୋରସ୍ତ । ଖାତାରେ ସବୁ ପାହି ପାହି ହିସାବ ରହିଛି । ଯେତେବେଳେ ଚାହିଁବେ ଦେଖେଇଦେବି ।

– "ଦଶଦିନ କାମ ହେଇଗଲା, ଉପର ମହଲା ସରିଲା ନାଇଁ । ପଇସା ଅଧାଅଧି ସରିଗଲାଣି ।" ମାଙ୍ଗାର ଭ୍ରୁରୁ କୁଞ୍ଚେଇଗଲା ।

– "ସେଥିରେ ଆପଣଙ୍କର କଣ ଅଛି ସାର୍ – କଲମ ଗାରେ ଲେଖିଦେଲେ ସେଣୁ ପୁଣି ବଣ୍ଡିଲ୍ ଚାଲିଆସିବ ନାଇଁ ?"

– "ନା, ସେମିତି ବ୍ୟବସ୍ଥା ନାଇଁ । ଏତିକିରେ ଯାହା ହେଲା । ସବୁକାମ ପାଇଁ ହିସାବ କରି ଦିଆଯାଇଛି ।"

– "ଓ, ତାହାଲେ ପୁଞ୍ଜି ଏତିକି ।" ମାଙ୍ଗାର ସ୍ୱରଭଙ୍ଗୀ ପୁଣି ବଦଳିଗଲା – "ଆଜ୍ଞା, ମୁଁ ହେଲି ଜନପ୍ରତିନିଧି, ମୂଲିଆ-ମଜୁରିଆ ଆଶ୍ରିତଙ୍କ ଲୋକ । ଆପଣ ହେଲେ ମାଲିକଙ୍କ ଲୋକ । ଆଜ୍ଞା କହିବା କଥା ନୁହେଁ । ସାନ ତୁଣ୍ଡେ ବଡ କଥା ।" ଟିକିଏ ରହି କହିଲା, "କଥା କଣ କି, ଆଜିକାଲି ଲୋକ ସବୁ କାମଚୋର ! ଠାପୁଆ ! ସେମାନେ କଣ ଆମ କଥାକୁ କାନେଇବେ । ଆପଣ, ସାରେ, ଯଦି ସେଇଠି ଥରେ ଚୌକି ପକେଇ ବସିଯାନ୍ତେ, ଆଲୋ ବୋପାଲୋ ବୋଲି ଧାଇଁ ଧିପି କାମ କରନ୍ତେ – ମୁଁ, ସାରେ, ଏଠି ଏ କାଗଜପତ୍ର ଜଞ୍ଜାଳ ସମ୍ଭାଳିନିଅନ୍ତି ।"

ମାଲିକଙ୍କ ପ୍ରତିନିଧି ନିଜେ ଛତା ଧରି ଛାତରେ ଠିଆହୋଇ କାମ ଦେଖିଲେ । କ୍ରମେ ତାଙ୍କ ଉପରୁ ସେମାନଙ୍କ ଭୟ ଛାଡିଗଲା । ଦଶଜଣ ଜାଗାରେ ପାଞ୍ଚଜଣ କାମ କଲେ ଆଉ ପାଞ୍ଚଜଣ ବିଭିନ୍ନ ଆଳରେ ଛୁଟି ନେଇଗଲେ । ବେଳବୁଡକୁ ମଜୁରି ନେଲାବେଳେ ହାଜିରା ପକେଇଲେ ।

ଦିନେ ଦେଖିଲାବେଳକୁ ଗୋଟିଏ ମିସ୍ତ୍ରି କରଣି ଧରି ଠିଆହେଇଚି । ମସଲା, ଇଟା ବଢେଇବାକୁ କେହି ନାହାନ୍ତି ।

– "ଦେଖନ୍ତୁ ସାର୍, ଏମିତି ସବୁ ଢିଲା ହେଇଗଲେଣି । ମୁଁ ଯାଉଚି ସେମାନଙ୍କୁ ଡାକିଆଣିବି ।"

– "ନାହିଁ, ତୁ ଏକୁଟିଆ ଯାହା ପାରିବୁ, କର । ସେମାନେ ଆସିଲେ ମୁଁ ତାଙ୍କୁ ପଚାରିବି ।" ସେ କଡେଇରେ ମସଲା ଗୋଳିଲା, ନିଶୁଣି ଉପରୁ ହାତ ବଢେଇଲା ଇଟା ପାଇଁ । ହାତ ନ ପାଇବାରୁ ଓହ୍ଲେଇ ଖଣ୍ଡିଏ ଇଟା ନେଇ ମସଲା ଉପରେ ଥୋଇଲା ।

– "ଆରେ ରହ । ଏମିତି କଣ କାମ ହୁଏ ? ମୁଁ ଇଟା ବଢେଇଦଉଚି । ତୁ ଯୋଡେଇ କର ।" ମିସ୍ତ୍ରିର ହାଁ କରି ଅନେଇ ରହିଲା । "ଆପଣ ?... ଆପଣ ଇଟା ବଢେଇବେ ?" ସେ କିଛି ଉତ୍ତର ନ ଦେଇ ଇଟା ବଢେଇବାକୁ ଲାଗିଲେ । ଯୋଡେଇ ଚାଲିଥାଏ । ହଲିଝୁଲି ଦି'ଜଣ ଆସିଲେ ।

ଥମ୍ ହୋଇ ଠିଆହୋଇଗଲେ । ନିଜ ଆଖିକୁ ନିଜେ ବିଶ୍ୱାସ କରି ପାରିଲେ ନାହିଁ ।

ଡରରେ ଚିପେଇ ଚିପେଇ ବାହାରିଗଲେ । ସିଧା ଯାଇ ମାଙ୍ଗା ପାଖରେ ହାଜର । ସବୁ ଶୁଣିଲା ପରେ ମାଙ୍ଗାର ଚିଲା ଆଖି କୁଞ୍ଚେଇଗଲା – ଓଷୁଅ କାଟୁକଲା ତା'ହେଲେ । ଏଣିକି ଏହା ଜାରି ରହିବ ।

– "ଶୁଣ, ତୁମେ କାମକୁ ଯାଅ ନଯାଅ ତୁମକୁ ମଜୁରି ମୁଁ ଦେବି । ଯଦି ସେ ମାଲିକର ଗୁମୁସ୍ତା ନିଜେ ଖଟୁଚି, ଖଟୁ । କାମ ତ' ସେ କରିବାକୁ ହୁକୁମ ଅଛି ନା; ଆମେ ସାହାଯ୍ୟ କରୁଚୁ । ତମର ହପ୍ତାରେ ଦୁଇ ଦିନ ମଜୁରି ପାଇଁ ହିସାବ ସରିଚି । ସେ ପଇସା ତମକୁ ମିଳିଯିବ । ତୁମେ ଏବେ ଯାଅ ।"

ପ୍ରତିନିଧି ଗୋଟେ ହାତରେ ମସଲା କଡେଇ ଟେକିଧରିଲେ । ଆର ହାତରେ ଲଇଁ ଖଣ୍ଡିଏ ଲେଖା ଇଟା ବଢେଇଲେ ତଳୁ । ମିସ୍ତ୍ରି ଯୋଡେଇ କଲା । ଓଳମ ମାଗିଲେ ଇଟା ସିମେଣ୍ଟ ଥୋଇ ତାକୁ ଓଳମ ବଢେଇ ଦେବାକୁ ପଡିଲା, ନ ହେଲେ କାନ୍ଥ ସଳଖ ହବ ନାହିଁ ।

ସଞ୍ଜବେଳକୁ ହାଲିଆ ହେଇ ଓହ୍ଲେଇ ଆସି ଦେଖିଲେ ଅଫିସ ଘର ବାହାରୁ ବନ୍ଦ । ମଜୁରି ନେବା ପାଇଁଟିଆଳ ଜମିଗଲେ । ସେମାନଙ୍କୁ ସେ ଶୁଣାଇଦେଲେ ସଫା ସଫା ଯେ କେବଳ ଜଣେ ମିସ୍ତ୍ରିର ମଜୁରି ଆଜି ମିଳିବ – ଆଉ କାହାରିକୁ ମିଳିବ ନାହିଁ । ଜଣେ କହିଲା, "ମାଙ୍ଗା ଭାଇ ତ' କହୁଥିଲା ଯାହା ହେଲେ ବି ମଜୁରି ମିଳିବ । ସେଥିପାଇଁ ହିସାବ ସରିଚି ।"

– "ଆରେ ମାଙ୍ଗା କଣ କହିବ ? ସେ କଣ ମାଲିକ ?"

– "ସେ ନହେଲା ନାହିଁ । ତମେ କଣ ନିଜେ ମାଲିକ ?"

ତରବର ହେଇ ମାଙ୍ଗା କୁଆଡୁ ଆସି ପହଞ୍ଚିଗଲା । ଜବାବ୍ ଦଉଥିବା ଲୋକକୁ ଠୋ'କିନା ଚଟକଣାଟାଏ ପକେଇଲା । "ଆରେ ହେ, ତତେ କେମିତି କାହା ସାଙ୍ଗେ କଥା ହବାକୁ ଜଣାନାହିଁ । ଆବେ, ମାଲିକ କିଏ ? ମାଲିକଙ୍କ ପ୍ରତିନିଧି କିଏ ? ଏକା କଥା । ଆମ ପାଇଁ ଏଇ ପରା ମାଲିକ !"

ଲଇଁପଡି, ହାତ ଯୋଡି, କବାଟ ଫିଟାଇଦେଇ ମାଙ୍ଗା ଅନୁନୟ ହେଲା, "ସାରେ, ସିଆଡେ ମାଲ ଆସି ପହଞ୍ଚିଲା ବୋଲି ଓହ୍ଲେଇଯାଇଥିଲି । ସାର୍ ବାହାରେ ଅପେକ୍ଷା କଲେ ।"

– "ହଉ, ହଉ ! ଶୁଣ, ଆଜି କେହି କାମ କରିନାହାନ୍ତି । ଖାଲି ଗୋଟିଏ ମିସ୍ତ୍ରି ଥିଲା । ସେଇ ଜଣକ ମଜୁରି ପାଇବ,ଆଉ କେହି ପାଇବେ ନାହିଁ ।"

– "ହାତରେ ମାରନ୍ତୁ ସାର୍, ଭାତରେ ମାରନ୍ତୁ ନାଇଁ !"

– "ନାଇଁ, ମୁଁ କିଛି ଶୁଣିବି ନାହିଁ । ଏଠି କାମ ହବ । ସେମାନେ ନ କଲେ ବି ହବ ।"

– "ତା'ହେଲେ ଆପଣ ବି ଶୁଣନ୍ତୁ । ଆପଣ ନିଜେ ଏ ହପ୍ତାର ମଜୁରି ହିସାବରେ ଦସ୍ତଖତ କରିସାରିଛନ୍ତି । ଆଗତୁରା ସେମାନଙ୍କ ମଜୁରି ମଞ୍ଜୁର ହେଇଯାଇଛି । ଏବେ ତାକୁ କେମିତି କାଟିଦେବେ ?"

– "ମୁଁ ମଞ୍ଜୁର କରିଥିଲି, ମୁଁ କାଟିଦେବି । କାମ ପାଇଁ ମଜୁରି ଦିଆଯାଇଥାନ୍ତା । କାମ ନାହିଁ ତ ମଜୁରି ନାହିଁ ।"

– "ଠିକ୍ ଅଛି ସାର୍, ଆପଣ ଏଣିକି ସବୁ ସମ୍ଭାଳନ୍ତୁ । ଆମେ ଆଉ କାମକୁ ଆସିବୁ ନାଇଁ । ଆମ ମଜଦୁର ସଂଘ ଧର୍ମଘଟ କରିବ । କେହି ବାହାରୁ ଆସିପାରିବେ ନାହିଁ ।"

– "ନ ଆସନ୍ତୁ । କାମ ବନ୍ଦ ରହିବ ।"

– "ହଉ, ଆପଣ ମାଲିକ ପାଖରେ ଉତ୍ତର ଦେବେ । ଆପଣଙ୍କୁ କାମ କରିବାକୁ ସେ ପଠାଇଥିଲେ – କାମ ବନ୍ଦ କରିବାକୁ ନୁହେଁ ।"

– "ସେ କଥା ମୁଁ ବୁଝିବି ।"

ତା' ଆରଦିନ ସେ ସତକୁ ସତ ଗାମୁଛା ପିନ୍ଧି ନିଜେ କାମ କରିବାକୁ ବାହାରିପଡିଲେ । ଯେଉଁମାନେ ତାଙ୍କୁ ଦେଖିଲାମାତ୍ରେ ଭଲ ପାଇ ଯାଇଥିଲେ ସେମାନେ ତାଙ୍କୁ ଘେରିଗଲେ ।

– "ଆମେ ତମକୁ ଏକୁଟିଆ ଖଟିବାକୁ ନାହିଁ । ଆମେ ତମ ସାଙ୍ଗରେ କାମ କରିବୁ । ଆମର ମଜୁରି ଲୋଡା ନାହିଁ । ତୁମ କଥାରେହିଁ ଆମେ, ଯାହା କହିବ କରିବୁ ।"

କାହିଁ ଥିଲା ମାଙ୍ଗା ମହାପାତ୍ର ଝପଟି ଆସି ସେମାନଙ୍କୁ ଧକ୍କା ମାରି ଠେଲି ନେଇଗଲା । ତମେ ସବୁ ଭାଙ୍ଗୁଡିଆ ଲୋଗ୍ସ ଦଳ । ମାଲିକ ମଜଦୁରର ମୁକାବିଲା ଚାଲିଛି । ତମେ ଶଳେ ଲୁଙ୍ଗୁଡା, ଏଠି ଆସି ଶରଣ ପଶୁଚ । ଆରେ, ୟେ ତ' ପଡିଚି ହରଡଘଣାରେ ? ପଇସାଟକ ଉଡେଇଦେଲା – ମାଲିକ ପାଖରେ କହିବ କ'ଣ ? କାମ ତ' ସରିଲା ନାହିଁ । ସେ ସେଥିପାଇଁ ନିଜେ ଖଟିବ । କଣ ଦି'ପଇସା ବଳଖା ଥିବ, ତାକୁ ସେ ପେଜପାଣି କରି ଚଳିବ । ୟାକୁ ଖଟେଇ କାମ ଆଦାୟ କରିନବା । ତମେ କାହିଁକି ତା' ପାଇଁ ଉପରେ ପଡି ଏମିତି କଇଁକଇଁ ହଉଚ ? ତା' ଦୁଃଖ ସହି ନପାରିଲେ ଭିତରେ ଯାଇ କାନ୍ଥକୁ ମୁହଁକରି ବସ । ଏଇଠୁ ଯାଅ; ନ ହେଲେ ଦିଗା ଆଉ ତା' ଦଳ ଆସି ତମକୁ ଗୋଟି ଗୋଟି କରି ଫିଙ୍ଗିଦେବେ ।

"ଆଉ ଶୁଣ ପ୍ରତିନିଧି ବାବୁ, ସେ ଯେଉଁ ଦପ୍ତର କରିନଥିଲ, ସେଇଟା ଏବେ ମଜଦୁରମାନଙ୍କ ଅଫିସ ହବ । ଆମର କେତେ ମିଟିଙ୍ଗ୍ ହବ, ଆଲୋଚନା ହବ । ତମର କଣ ଅଛି ? ଏକୁଟିଆ ଲୋକ । ତା'ପରେ ତମର ଦିନଯାକ କାମ ବି ଲାଗିବ । ଆମେ ତଦାରଖ କରିବୁ – ତମେ ଆମର, ମାନେ, ଆମ ଘରର ସବୁ ମରାମତି କଲ ନା ନାହିଁ । ଯାଅ, ତମ କାମରେ ଲାଗିଯାଅ । ତମେ ଆମ ସାଙ୍ଗରେ ନ ଲାଗିଲେ ଆମେ ତମ ସାଙ୍ଗରେ ଲାଗିବୁ ନାହିଁ ।"

ଅନ୍ୟମାନେ ତାଟକା ହୋଇ ମାଙ୍ଗା କଥା ଶୁଣୁଥାନ୍ତି । ସେ କେମିତି ଘଡିଘଡି ରଙ୍ଗ ବଦଳଉଚି ଦେଖି କାବା ହୋଇ ଅନେଇଥାନ୍ତି । ତାଙ୍କର ବିଶ୍ୱାସ ହେଉ ନ ଥାଏ ଯେ, ଏ ମାଲିକ ଘରାନାର ଚେହେରାବାଲା, ଏସବୁ କେମିତି ସହିଯାଉଛି । ସେ ତ' ଗୋଟାଏ ରଡି ଦେଲେ ମାଙ୍ଗା ଛିନ୍‌ଛତ୍ର ହେଇଯାନ୍ତା ! କଣ ଗୋଟାଏ ବିଚିତ୍ର ଘଟନା ଘଟିଲା ପରି ତାଙ୍କୁ ଲାଗୁଥାଏ ।

ସେ କିଛି ନ କହି ସିମେଣ୍ଟ ବାଲି ଫେଣ୍ଟି ମସଲା ତିଆରି କରିବାରେ ଲାଗିଲେ । 'ଆଶ୍ଚର୍ଯ୍ୟ କଥା, କେବେ ଏ କାମ କରି ନଥିବା ଲୋକ ପୋଖତ ମଜୁରିଆଠୁ ବଳି ଭଲ କାମ କରିପାରୁଛି ।'

ସେ କରଣି ଧରି ମସଲା କଡେଇ ଟେକିନେଇ ତିନିତାଲା ଉପରକୁ ଗଲେ । କେହି କିଛି କହିଲେ ନାହିଁ, ଚୁପ୍‌ଚାପ୍ ଅନେଇ ରହିଲେ ।

ମନେହେଲା, ଅନ୍ୟ ସମସ୍ତଙ୍କ ଭାର ସେ ଏକାକୀ ମୁଣ୍ଡରେ ବୋହି ପାହାଚ ଚଢ଼ିଯାଉଛନ୍ତି । ଏ ସୁକୁମାର ମଣିଷ କଣ ଏ କାର୍ଯ୍ୟକୁ ସମର୍ଥ ? ଯେତେବେଳେ ଦେଖିଲେ ସେ ତଳେ ପଡିଥିବା ପଥର ଭାର ଉଠାଇବାକୁ ଓହ୍ଲେଇ ଆସୁଚନ୍ତି, କିମ୍ବା ସେ ଭାର ମୁଣ୍ଡରେ ଟେକି ପାହାଚ ପରେ ପାହାଚ ପାଦ ଥାପି ଉଠିଯାଉଛନ୍ତି । ଦିନରେ କେତେବେଳେ ସେ ଖାଉଛନ୍ତି ବା ରାତିରେ କେତେବେଳେ ଶୋଉଛନ୍ତି କେହି ଜାଣିପାରୁନାହାନ୍ତି ।

ପ୍ରଥମ ଦିନର ଅବିଶ୍ୱାସ ଆଉ ବିସ୍ମୟ ଦେଖୁ ଦେଖୁ ସମ୍ବେଦନାରେ ବଦଳିଗଲା । ସମ୍ବେଦନା ଦେଖୁ ଦେଖୁ ଗୋଟାଏ ପ୍ରକାର ସମ୍ଭ୍ରମ ଆଉ ଭୟରେ ବଦଳିଗଲା ।

ସେ ଗମ୍ଭୀର ଦେଖାଯାଉଥିଲେ । ତାଙ୍କ ମୁହଁରେ ଦାଢ଼ି ବଢ଼ିଯାଇଥିଲା । ସେ ଆଦୌ କଥା କହୁନଥିଲେ । ଆଦୌ ଠିଆ ହେଉନଥିଲେ କୋଉଠି ମୁହୂର୍ତ୍ତକ ପାଇଁ ।

ତିନି ତାଲା କୋଠା ଉପରଆଡୁ ସଫା ହୋଇଆସିଲା । ଭଙ୍ଗାରୁଜା, ଫାଟ ସବୁ ମରାମତି ହୋଇଗଲା ।

କାନ୍ଥରେ ହାତ ମାରିଲେ ଚିକ୍କଣ ଲାଗିଲା । ଚଟାଣରେ ଗୋଡ ମାରିଲେ ନିର୍ମଳ ଲାଗିଲା ।

କେଜାଣି କାହିଁକି, ଉପର ମହଲାର ଟୋକାଟୋକୀ ଅନେକ ଚୁପ୍‌ଚାପ୍ ହୋଇଗଲେ । ସେ ଉଚ୍ଚରେ କାମ କଲାବେଳକୁ ତାଙ୍କ ପାଦ ପାଖରେ ଶିଡି ସଜାଡିଦେଲେ । ସେମାନଙ୍କର ଭିଡ ବି ଢେର୍ କମିଗଲା । ଏତେ ସଫେଇ ଆଉ ନିରବତା ଭିତରେ ଯେଉଁମାନଙ୍କୁ ଅସୁସ୍ଥ ଲାଗିଲା, ସେମାନେ ଆସିଲେ ନାହିଁ । ଯୋଶୁର କାରବାର ମାନ୍ଦା ଧରିବାରୁ ସେ ବି ଆସିବା ବନ୍ଦକରିଦେଲା ।

ଦ୍ୱିତୀୟ ମହଲାରେ କବାଟ ଝରକା ଖିଲାଣ ସବୁ ସଜଡା ହେଇଗଲା । ବର୍ଷା ବତାସୀ ଆଉ ପଶିଲା ନାହିଁ । କୁଣ ବାଡରୁ ବୋଝ ବୋଝ ଅଳିଆ ସଫା ହେଇଗଲା । ଚୁଲ୍ଲୀ ପାଇଁ ଖୋଳାହେଇଥିବା ଚଟାଣ ମରାମତି ହେଇଗଲା । ଧାଡି ଧାଡି ସଜେଇ ଦେବାରୁ ଗୋଟିଏ ଗୋଟିଏ ମନ୍ଦା ଅଳ୍ପ ଜାଗାରେ ରହିଗଲେ । ମାଙ୍ଗାର ଟିକିଏ ଅଧିକ ଜାଗା ଦରକାର ପଡିଲା ।

ଦି' ମହଲାରେ ବି ସେମାନେ ସମ୍ଭ୍ରମରେ ଭୟରେ କଥାବାର୍ତ୍ତା ହେଲେ, "ଏ ଘର ଏମିତି ସଜଡା ହେଲେ କଣ ଆମେ ସେଥିରେ ରହିବାକୁ ଯୋଗ୍ୟ ? ଆମ ପାଇଁ କଣ ସେ ଏମିତି ପରିଶ୍ରମ କରୁଛନ୍ତି ?"

କେତେକଙ୍କୁ ବୋଝ ମତେଇହେଲା ପରି ଲାଗିଲା । ସେମାନେ ବି ଘୁଞ୍ଚିଗଲେ । ତଳ ମହଲାରେ ସବୁଠୁ ବେଶୀ କାମ । ସବୁଠୁ ବେଶି ଆବର୍ଜନା । ଖାଲ ଖମା, ଭଙ୍ଗା ରୁଜା ସବୁଠୁ ବେଶି ।

ସେ ସେମିତି ଏକାକୀ ଅନବରତ ଲାଗିଥାନ୍ତି । ମାଙ୍ଗା ପ୍ରଥମେ ଥଟ୍ଟା କଲା ଭଳି କହୁଥିଲା, "ବଢ଼ିଆ କାମ ! ଚଳେଇଥା, ଏମିତି । ସାବାସ୍ ରେ ମାଲିକ କା ବଚ୍ଚା !"

ଏବେ ସେ ବି ତାଙ୍କୁ ଚାହିଁପାରୁନାହିଁ । ସେ ଆଗଠୁ ଅନେକ ଝଡିଗଲେଣି । ଖୁବ୍ ମଳିନ ଦିଶିଲେଣି । ହେଲେ ମୁହଁର ତେଜ, ଆଖିର ତେଜ ଆଉରି ଯାଇନାହିଁ ।

ତଳ ମହଲା କାମ ସରିଲା, ପାହାଚ ବି ସଜଡା ହୋଇଗଲା ।

ପ୍ରଥମ ଥର ପାଇଁ ସେ ବାଲିଗୋଡି ପାଖରେ କଡେଇଟି ଉଗୁଡେଇ ଦେଇ ତା' ଉପରେ ବସିପଡିଲେ ।

କେହି ଜଣେ ତା' ପିଲାକୁ କାଖରୁ ଓହ୍ଲେଇ ଦେଇ ତାଙ୍କୁ ପାଣି ମୁନ୍ଦେ ପିଇବାକୁ ମଗ ବଢେଇଦେଲା ।

ସେ ତା' ମୁହଁକୁ ଚାହିଁଲେ, ଅଳ୍ପ ହସି ପାଣିମଗ ତା' ହାତରୁ ନେଇ ପିଇଦେଲେ । ଏତିକିବେଳେ ଦି ମହଲାରୁ ମାଙ୍ଗା, ଦିଗା ଆଉ ପନ୍‌ଝେ ଓହ୍ଲେଇଆସିଲେ । ଗୋଡ ଫରକଟେଇ ଠିଆ ହେଇ ମାଙ୍ଗା କହିଲା – "କାମ ସରିଗଲା ବୋଲି କଣ ଭାବିଲ କି ବାବୁ ? ଆସିଚ ପରା ଏ ପୁରୁଣା କୋଠାକୁ ନୂଆ କରିବାକୁ । ହେଲେ ଭୂଇଁ ଉପର ତକ ସିନା କଣ ଟିକିଏ ଏଠିସେଠି ସଜାଡି ଦେଲ । ଭୂଇଁ ତଳେ ତ' ସବୁ ପୁରୁଣା ଅସନା କୋଉ କାଳର ମଇଳା ଟାଙ୍କି ଉଛୁଳି ରହିଛି । ତାକୁ କିଏ ଉଖାଳିବ ? କିଏ ସଫା କରିବ ? ତମେ କି ସଫା କରିବ ଷାଠିଏ ବର୍ଷର ମଇଳା ! ହେ ହେ ହେ ।"

ସେ ଦଳକଯାକ ସେଇଠୁ ବାହାରକୁ ଚାଲିଗଲେ । ମାଙ୍ଗା ତାଙ୍କୁ ଡାକିନଉଥିଲା । ତା' ହାତରେ ଏବେ ଖୁବ୍ ପଇସା । କୋଉଠୁ ପାଇଲା କେଜାଣି ! ସେଇ ମା'ଟି ବିକଳ ହେଇ କହିଲା, "ନା, ତମେ ସେ 'ମାଙ୍ଗା' ଯୋଗିନୀଖିଆ କଥାରେ ପଡ ନାଇଁ । ଯା ପଛକୁ ସେଟା ନର୍କକୁଣ୍ଡ । କୋଉ କାଳୁ ସେମିତି ଭରଭରେଇ ରହିଛି । ତମେ ଜମା ସେଆଡେ ଯାଅ ନାହିଁ । ଏବେ ଯେତିକି କରିଚ, କୋଉ ମଣିଷ ତାହା କରି ପାରି ନ ଥାନ୍ତେ । ତମକୁ ଆମ ସମସ୍ତଙ୍କ ରାଣ, ତୁମେ ସେଆଡେ ଜମା ଯାଅ ନାହିଁ ।"

ସେ ତାକୁ ସେମିତି ଢଳଢଳ ଆଖିରେ ଚାହିଁରହିଲେ । ସାମାନ୍ୟ ହସିଲା ପରି ଦିଶିଲେ । ପଦେହେଲେ କିଛି କହିଲେ ନାହିଁ ।

ସେ କିନ୍ତୁ ଜାଣିଗଲା ଯେ, ସେ ଶେଷକୁ କେବେ ହେଇନଥିବା ସେଇ କାମ ବି କରିବାକୁ ଓହ୍ଲେଇପଡିବେ ।

ସେ କାନ୍ଦ କାନ୍ଦ ହେଇ ମୁହଁ ଫେରେଇନେଲା । ତା' ଭିତର ଦହି ଦଗ୍ଧି ହୋଇଯାଉଥିଲା – ଆମେ ମରିଯାନ୍ତୁ ହେଲେ, ସେ ଆମର ଏ ନର୍କକୁଣ୍ଡରେ ନ ପଶନ୍ତେ ।

ସନ୍ଧ୍ୟାର ଅନ୍ଧାର ନଇଁ ଆସିଲାବେଳକୁ ସେ ତିନିତାଲା କୋଠାର ଐଶାନ୍ୟ କୋଣରେ

ବସିରହିଲେ ନିଶ୍ଚଳ ।

ବୋଧହୁଏ ସଂକଳ୍ପ ସ୍ଥିର କରୁଥିଲେ । ବୋଧହୁଏ ସେ ଯାହା କରିବାକୁ ମାଲିକ ପାଖରେ ଜବାବ ଦେଇଥିଲେ ସେତକ ଶେଷ କରିବାକୁ ପ୍ରତିଜ୍ଞା କରୁଥିଲେ । ଅନ୍ଧାର ରାତିରେ ମଝିରେ ମଝିରେ ବର୍ଷା ହଉଥିଲା । ହେଲେ କୋଠା ଭିତରେ ସମସ୍ତେ ନିରାପଦ ରହିଥିଲେ । କାହା ଦେହରେ ଟୋପେ ହେଲେ ପାଣି ପଡୁନଥିଲା । ବାହାରେ ଝଙ୍କା ପବନରେ ଗଛ ଯୁଝୁଥିଲା ରାତିସାରା । ପବନ ଯୁଝୁଥିଲା ଅଟଳ ଅନ୍ଧାର ସାଙ୍ଗରେ । ସେ ଆଣ୍ଠୁଏ ଅସନା କାଦୁଅ ଭିତରେ ପଶି ଠାବ କରୁଥିଲେ କୋଉଠି ନିଶ୍ଚୟ ବାଟଟାଏ ଥିବ, ଏସବୁ ଖଲାସ କରିବାକୁ । ମାନଚିତ୍ର ମନେପକାଇ ଗୋଟାଏ ଦିଗ ନିର୍ଣ୍ଣୟ କଲେ ।

କୋଠା ସାମ୍ନାରେ ଗୋଟିଏ ବାଉଁଶରେ ବାନାଟିଏ ବନ୍ଧାହୋଇଥିଲା । ସେ ବାଉଁଶଟିକୁ ହୁଗାଳି ଆଣିଲେ । ବାନାଟିକୁ କାଢିଦେଲେ । ବାଉଁଶର ସରୁ ଭାଗଟାକୁ ସେଇ ରନ୍ଧ୍ରରେ ଦେବାକୁ ତାଙ୍କୁ ଘଡିଏ କାଳ ସଂଘର୍ଷ କରିବାକୁ ପଡିଲା । ଅସନା ଅନ୍ଧାର ଝିପିଝିପି ବର୍ଷା ଆଉ ଝଙ୍କା ପବନ ସଂଘର୍ଷ ଜାରି ରହିଲା ରାତିସାରା ।

ସକାଳୁକୁ ମଇଳା ଗାଡିଆ ସବୁ ନିଗିଡି ଯାଇଥିଲା । ବର୍ଷୁଥିଲା ଅସରାକୁ ଅସରା ।

କୋଠା ସାମ୍ନା ଖୋଲା ଜାଗାରେ ସକାଳେ ସେମାନେ ଦେଖିଲେ ତାଙ୍କୁ । ସେ ଚିତ୍‌ମାତ୍ ପଡିଯାଇଥାନ୍ତି ଚରିକାତ ମେଲେଇ । ଦେହସାରା କଳା କଳା ପୋଟ୍ରେ କାଦୁଅ ସଲବଲ ଆଉ ବିଷ୍ଠା-ଜର୍ଜର । ଝପ୍‌ଝପ୍ ବର୍ଷା ତାକୁ ଧୋଇଦେଉଥିଲା ।

ତିନିତାଲାର ଟୋକାଟିଏ ପ୍ରଥମେ ଓହ୍ଲେଇ ଆସିଲା । ସେ କିଛି କିଛି ଆଗରୁ ଦେଖିଥିଲା । କିଛି କିଛି ଶୁଣିଥିଲା ରାତିରେ, ହସ ତାହଲ୍ୟ ଭିତରେ । ସେ ପଛପଟ ବାଲ୍‌କୋନିରୁ ତଳକୁ ଡେହିଁ ଦେଇ ଦୌଡି ଓହ୍ଲେଇଆସିଥିଲା । ତାଙ୍କୁ ସେଭଳି ଚିତ୍‌ମାତ୍ ପଡିଥିବାର ଦେଖି ସେ କ୍ରୋଧରେ, ଗ୍ଲାନିରେ, ଦୁଃଖରେ ଜଳିଉଠିଲା ।

– "ଓ ନୋ ! ଉଇ ଡୋଣ୍ଟ୍ ଡିଜର୍ଭ ଇଟ୍ ! ତମେ ଏମିତି କଣ କଲ ? ଷ୍ଟୁପିଡ୍ ? ଓ ନୋ ! ତମେ କାହିଁକି ଏ କୋଠାକୁ ତା'ର ଖଞ୍ଜି ଉଡେଇ ଦେଲନାହିଁ ? ଆମକୁ ଦଶମିନିଟିଆ ନୋଟିସ୍ ନ ଦେଇ ଆମ ସମେତ ଏଇଟାକୁ ଉଡାଇ ଦେଇଥାନ୍ତ । କାହିଁକି ଏମିତି ନିଜକୁ ଖର୍ଚ୍ଚ କରିଦେଲ ?" ହାଇ, ହାଇ, ହାଇ ! ଏବଂ ସେ ଟୋକାଟି କାନ୍ଦୁଥିଲା, ସେମିତି କ୍ରୋଧରେ ଆଉ ଦୁଃଖରେ । ବେଶ୍ କିଛି ଲୋକ ଶୁଖିଲାରେ ଛିଡା ହେଇ ସେ ଦୃଶ୍ୟ ଦେଖୁଥିଲେ । "କିଏ ଏ ବାବୁ ଆସି ଏଇଠି ପହଞ୍ଚିଲେ ? ସେ ଆମକୁ ତଡିଦେଇପାରିଥାନ୍ତେ । ତା' ନକରି ଓଲଟି କୋଠାଟିକୁ ସଜବାଜ କରି ଆମକୁ ଅର୍ପିଦେଇଗଲେ । ଏ ବାବୁଜଣକ କାହିଁକି ଏମିତି ମୂଳରୁ ଚୂଳଯାଏ ସବୁ ଅସନା ଅଳିଆ ସଫା କଲେ ? ସଫା ହବାରୁ ବହୁ ଲୋକଙ୍କୁ ଅଡୁଆ ଲାଗିଲା । ସେମାନେ ପଳେଇଲେ ଅନ୍ୟ ଆଶ୍ରା ପାଇଁ ।"

– "ସେ ତ' ଚାହିଁଥିଲେ ଦଳେ ମଜୁରିଆ ଲଗେଇ ଏତକ କାମ କରିଦେଇପାରିଥାନ୍ତେ । ସେ ବୋଧହୁଏ ବାହାର ଲୋକଙ୍କ ହାତରେ ଏ କାମ କରେଇବାକୁ ଚାହୁଁ ନ ଥିଲେ । ଆମେ ନିଜେ ଏଥିରେ ମିଶିଥିଲେ କୋଠା ପାଇଁ ଆମର ଆପଣାପଣ ବଢ଼ିଥାନ୍ତା ବୋଲି ସେ ହୁଏତ ଭାବୁଥିଲେ । ଆମେ ନାହିଁ କରିଦେବାରୁ ନିଜେ ଏକୁଟିଆ ଖଟିଲେ ।"

– "କିନ୍ତୁ ଖଟିଲେ ବେକୁବ୍ ଭଳି । କଣ କରୁଛନ୍ତି, କାହାପାଇଁ କରୁଛନ୍ତି, କାହିଁକି କରୁଛନ୍ତି, ଜାଣିପାରିଲେ ନାହିଁ ।"

– "ଠିକ୍ କଥା, ଏଇଟା ଗୋଟେ ବେକୁବ୍ ।" କହିଲା ମାଙ୍ଗା । "ମୁଁ ତାକୁ ମୂଳରୁ ପଟିମାରି ଲଣ୍ଡା କରିଦେଲି । ସେ ଜାଣିପାରିଲା ନାହିଁ । ବେକୁବ୍ କାହାଁକା, ଆମ ପାଇଁ ସେ ଏତେ କାହିଁକି କଲା ? ସେ ତ ମାଲିକପଣରେ ଫାଉଁକିନା ଜଳିଉଠିଥାନ୍ତା । ତା'ର ଖଞ୍ଜିଦେଇଥିଲେ ଆମେ ଯେ ଯୁଆଡେ ପଳାଇଥାନ୍ତୁ; ତା' କୋଠା ସେ ଇଚ୍ଛା ହେଲେ ରଖିଥାନ୍ତା, ନ ହେଲେ ଉଡେଇ ଦେଇଥାନ୍ତା । ଏମିତି ଖଟିଲା କାହିଁକି ? ବେକୁବ୍... ବେକୁବ୍!" ମାଙ୍ଗା ରାଗିଯାଇ ଭୂଇଁକୁ ଲାତ ମାରି ନିଜ ପାପୁଲିରେ ବିଧା ବସେଇଦେଇଗଲା ।

ଉପରକୁ ମୁହଁ କରି ଗରିକାତ ମେଲେଇ ଶୋଇଥିବା ସେ ଲୋକଟି ଉପରେ ବର୍ଷା ପାଣି ପଡି ଅସନା ପଙ୍କ ଧୋଇଦେଉଥିଲା ।

ଗୋରା ତକତକ ମଣିଷଟା ଆସ୍ତେ ନିର୍ମଳ ଦିଶିଆସୁଥିଲା ।

"ଆରେ ଚାଲ ତାଙ୍କୁ ଉଠେଇ ଆଣିବା ।"

"ନା-ତାଙ୍କୁ ଆଉ ଏ ଭିତରକୁ ଆଣିବା ଦରକାର ନାହିଁ । ସେ ବାହାରକୁ ହିଁ ଯିବେ ଜୀବିତ ଅଥବା ମୃତ ! ରହିବା କେବଳ ଆମେ ଚିରକାଳ ଅଯୋଗ୍ୟଯାକ !" ସେ ପାଠୁଆ ଲୋକଟା ମନକୁ ମନ ଧିକ୍କାରି ହେଉଥିଲା ।



# ଏ ବସନ୍ତ ଋତୁ ନୁହେଁ

ଅଗିପୋଡାର ମାସେ ଆଗରୁ ବୋଧେ ଆକାଶରେ ଆଉ ପବନରେ ନିଆଁ ଲାଗିଯାଉଥିଲା । ନହେଲେ ଆମେ ସବୁ ଆମରି ଭଳି କଞ୍ଚା ଜାମୁଡାଳ ଭାଙ୍ଗି କାହିଁକି ଏକାଠି କରୁଥିଲୁ ? କଞ୍ଚା କଷି ଲାଗିଆସୁଥିବା, ନୂଆ ପତ୍ରରେ ମଣ୍ଡି ହୋଇଆସୁଥିବା ଜାମୁଡାଳରେ ନିଆଁ ଧରିବ ନାହିଁ । ନ ଧରୁ । ମାସେ ଖରା ଖାଇଗଲେ ବଳେ ଜିଅନ୍ତା ଡାଳରୁ ପାଣି ମରିଯିବ ନାହିଁ ? ପତ୍ରସବୁ ବି ଶୁଖିଯିବ । ମୋଡି ହୋଇଯିବ । ଅଗିପୋଡା ଦିନ ଏଇ ଡାଳ ଜଳିବ ସବୁଠୁ ବେଶି ହୁତ୍‌ହୁତ୍ ହୋଇ । ଏଇଆ ସେ ଆମକୁ କହୁଥିଲା । ଆମକୁ ଯେ ସେମିତି ମତଉଥିଲା, ଆଖିଠାରରେ ବତାସିଆ ଦି'ପହର ବେଳା ଘରୁ ଡାକିନଉଥିଲା, ତା' ନାଁ ବସନ୍ତ ।

ଡେଙ୍ଗାଳିଆ, ନରମ, ମାଇଅଂଶିଆ ଚେହେରା । ଈଷତ୍ କଅଁରା ବାଳ ସବୁବେଳେ ଭୁତୁରା । ଆଖି ଚିଲା । ଓଠ ଲାଲ ।

ଦାଣ୍ଡମଝିରେ ବସନ୍ତ ଆସି ଠିଆହୋଇଗଲେ ଆମକୁ ଆଉ କିଛି ଦିଶୁ ନଥିଲା । ସବୁ ଛାଡି ଘରୁ ଲୁଚି, ଠକି ବାହାରି ଆସୁଥିଲୁ । ଗୋଟାଏ ମୋଟା କୁଅ-ଦଉଡି ବ୍ୟବସ୍ଥା ହେଉଥିଲା । ଆଗେ ଆଗେ ବସନ୍ତ; ତା' ପଛକୁ ଆମେ ସାତ-ଆଠ ଜଣ ନିଶ ଗଜେଇ ନଥିବା, ଅଥଚ ଆଖିଚମକଉଥିବା, ବାହୁ ଉଲୁସଉଥିବା ଟୋକା ।

ଫଗୁଣ ମାସର ଉଶ୍ୱାସ ପବନ ।

ଗଛମାନଙ୍କର ଡାଳମାନଙ୍କରେ ଦିକଦିକ ଜଳୁଥିବା ନୂଆ ପତ୍ରର ଦୀପ । ଜାଳିଦବା ପାଇଁ, ଖୋଦ୍ ନିଜେ ଜଳିଯିବା ପାଇଁ ସବୁ ଉଛନ୍ନ । ବସନ୍ତ ଯେକୌଣସି ଗଛରେ ଅନାୟାସ ଚଢିଯାଉଥିଲା । ସେ ଗଛର ମୂଳକୁ କୁଣ୍ଢେଇଧରୁଥିଲା । ସେତିକିରେ ବୋଧେ ଗଛହିଁ ତାକୁ ଟୋଳିନଉଥିଲା ଉପରକୁ, ଡାଳ ପତ୍ର ଗହଳକୁ । ଆମକୁ ବି ଯଦି ସେ ସେମିତି ଧରିଥାନ୍ତା, ଆମେ ତାକୁ ଟେକିନେଇଥାନ୍ତୁ କାନ୍ଧ ଉପରକୁ ।

ସେତେ ଉପରେ ନିରୋଳା ଡାଳରେ ସେ ଯେତେବେଳେ ସଳଖ ଠିଆହୋଇଯାଉଥିଲା ଆମ ପାଦତଳିପା ଶିରଶିର କରୁଥିଲା । ଡାଳର ଅଗ ପାଖକୁ ସେ କୁଅଦଉଡିଟାକୁ ବାନ୍ଧିଦଉଥିଲା । ଉପରେ ଥାଇ ଆମକୁ ଦିଗ ଦେଖେଇଦଉଥିଲା । ସମସ୍ତେ ମିଶି ଦଉଡିକୁ ସେଇଆଡେ ଟାଣି ଧରୁଥିଲୁ । ସେ ଡାକ ଦଉଥିଲା ହୁମ୍...ହୁମ୍, ଆମେ ଏକାଥରକେ ଝଟକା ଦଉଥିଲୁ – ହୁମ୍ । ଡାଳ

ଲଇଁଆସୁଥିଲା । ପୁଣି ଟାଣିନଉଥିଲା ଆମକୁ । ବସନ୍ତ ପୁଣି ହୁଙ୍କାରୁଥିଲା । ଆମେ ଜୋର୍ ଲଗେଇଦଉଥିଲୁ । ମଟ୍ କିନା ଛୋଟ ଶବ୍ଦଟିଏ ହଉଥିଲା ।

ସେଇଟା ଆରପକ୍ଷ ହାରିବାର ଶବ୍ଦ । ବସନ୍ତ କିର୍‌କିରେଇ ଉଠୁଥିଲା । ଆମେ ଉଲୁସି ଉଠୁଥିଲୁ । ଦମ୍ ଲଗେଇ ଦି'ଗୁଣ ଜୋର୍‌ରେ ଝଟ୍‌କା ମାରୁଥିଲୁ ।

ମଡାଲ୍ କିନା ଶବ୍ଦ କରି ତାଳ ମୂଳରୁ ଛିଡିଯାଉଥିଲା । ଝପାସ୍ କିନା ଖସିପଡୁଥିଲା । ସେତେ ବଡ ତାଳ, ବୋଝ ବୋଝ କଅଁଳ ଚିକ୍କଣ ପତ୍ରର କୁଢ ।

ଗ୍ୱେପାଟା କିଛି ବାଟ ଚିରିଦଉଥିଲା ମା' ତାଳକୁ । ଲସା ଝରୁଥିଲା । ବସନ୍ତ ଗଛମୂଳକୁ କୁଣ୍ଢେଇ ଓହ୍ଲେଇଆସୁଥିଲା । ଗଛମୂଳେ ଠିଆ ହୋଇ ତାକୁ ଥାପୁଡି ଦଉଥିଲା । କେଜାଣି କାହିଁକି ?

ଦଉଡିକୁ ମୂଳରେ ବାନ୍ଧି ଆମେ ସେ କଞ୍ଚା ଜାମୁତାଳଟିକୁ ଘୋସାରି ନଉଥିଲୁ ।

କେହି କେହି କଅଁଳ ପତ୍ର ଉପରେ ବସିପଡୁଥିଲେ ଟାଣି ହୋଇ ଯିବାପାଇଁ ।

ଅଗିପୋଡା ପାଖରେ ଆମ ଆଗରୁ ବସନ୍ତ ପହଞ୍ଚିଯାଉଥିଲା । ସେଇଠି ଶୁଖିଲା, ଦରମରା, ଝାଉଁଳା ତାଳମାନଙ୍କୁ ଆମେ ଡେରି ରଖିଥିଲୁ । ନୂଆ ତାଳକୁ ସେଇଠି ଆଉଜେଇବାକୁ ଭିଡି ନଉଥିଲୁ । ତା' ପୂର୍ବରୁ ସେ ପତ୍ରମାନଙ୍କ ଉପରେ ବସନ୍ତ ଆମ ସାଙ୍ଗରେ ବସୁଥିଲା ।

ମନଇଚ୍ଛା ନୂଆ କଅଁଳ ପତ୍ର ଛିଣ୍ଡାଉଥିଲା । ଆମେ ବି ଛିଣ୍ଡାଉଥିଲୁ, ଦାନ୍ତଉଥିଲୁ । ଗାଲରେ ଘଷୁଥିଲୁ । ତାଳକୁ ଅଗି ଗଦାରେ ଥାପିଲାବେଳକୁ ମୁହଁସଞ୍ଜ ହୋଇଯାଉଥିଲା ।

ଏମିତି ଏମିତି ଦିନ ପରେ ଦିନ ଓହଳା ତାଳସବୁ ଆମେ ଭାଙ୍ଗି ଆଣୁଥିଲୁ ।

ବୁଢା ଗଛସବୁ ପେଟୁଆ ବହଳିଆ ନ ଦିଶି ସଳଖ ଆଉ ଲମ୍ବାଳିଆ ଦିଶୁଥିଲେ । ବୟସରେ ଢେର୍ କମ୍ ଦେଖାଯାଉଥିଲେ । ବସନ୍ତ ଏମିତି ଲାଗିଗଲେ ଗଛସବୁ ତରୁଣ ହୋଇଯାଉଥିଲେ । ଫଗୁଣର ପବନ ତେଜୁଥିଲା ।

ଆମଠୁ ଆହୁରି ବଡ ଆହୁରି ବଳୁଆ ଟୋକା ମିଶୁଥିଲେ । ଜହ୍ନପକ୍ଷ ବେଳକୁ ଆମ ଇଲାକାରେ ଆଉ ସାନବଡ ବାରଣ ନଥିଲା ।

ମୁହଁସଞ୍ଜବେଳେ ଆଉ ଘରକୁ ଫେରିବା ପ୍ରୟୋଜନ ହେଉ ନଥିଲା । ଚନ୍ଦ୍ରକଳା ଆକାଶରେ ବଢିଚାଲିଥିଲା । ଉତ୍ତାପ ବଢିଚାଲିଥିଲା ଆମ ବୁକୁରେ, ନିଃଶ୍ୱାସରେ ।

ରାତିରେ ତାଳ ଭାଙ୍ଗିବାର ମଟମଟ ଶୁଣିଲେ ଆମେ ସେଇଆଡେ ଧାଇଁଯାଉଥିଲୁ ।

ଗଛ ଉପରେ ବସନ୍ତହିଁ ସବାର ରହୁଥିଲା । ତାକୁ ନନେଲେ ସତେବା ତାଳଭଙ୍ଗା ହୋଇପାରିବ ନାହିଁ । ପୁନିଅଁ ଦିନ ଜଳିଯିବ ମାସଯାକର ସଞ୍ଚିତ ତାଳପତ୍ର । ଶାକର, ଚଣା, ଶୁଖିଲା ଫଗୁ ଘରେ ଘରେ ପୂଜା ହବ । ଦିଅଁ ଗ୍ୱେଟେରିରେ ବାହାରି ଭୋଗ ଖାଇବେ ସବୁ ଘରୁ । ଅଗି ପାଖରେ ଭୋଗ ଲାଗିବ । ବିଶିଆନ୍ନା କଦଳୀ, ଶାକର, ଚଣା ପୂଜା କରିବ । ପାଳବିଣ୍ଡାରେ ଦୀପ ନିଆଁ ଲଗେଇ ଅଗିଗଦା ଭିତରକୁ ମୁହାଁଇଦବ ।

ତେଣିକି ଚଡଚଡ ମଡମଡ ହେଇ ଜଳିଉଠିବ ନିଆଁ ।

ବିଶିଆନ୍ନାର ଗୋରା-ତକତକ ମୁହଁରେ ଭଅଁରକଳା ଦାଢି । ମେଲା ବୁକୁରେ ମୁଦା ମୁଦା ବାଳ । ଠିଆ ନାକ । ଦର୍ପଣ ପରି କପାଳ । ରାଉ ରାଉ ଭୂଲତା । ଦାଉଦାଉ ଆଖି । ଶ୍ଳୋକ ପଢିଲାବେଳେ ମଲ୍ଲୀକଢି ପରି ତା' ଦାନ୍ତରେ ଆଲୁଅ ପଡି ଚିକ୍‌ଚିକ୍ କରେ । ତା' ସରରେ ଗଛରୁ ତୋଳିଲା ପରି ଶବ୍‌ଦମାନ ଖସିଆସନ୍ତି ।

ସେତେବେଳେ ବିଶିଆନ୍ନା ଠିଆହେଲେ ଆମେ ତା' ବୁକୁଯାଏଁ ହଉଥିଲୁ । ସୁନ୍ଦର, ସୁଠାମ, ପାଞ୍ଚହାତିଆ ଭେଣ୍ଡା ବିଶିଆନ୍ନା । ପୋଖରୀରେ ସେ ଗୋଧେଇଲାବେଳେ ଆମେ ତାକୁ ଚାହିଁରହୁଥିଲୁ । ମାଇକିନା ତୁଠରୁ ସମସ୍ତେ ବେକଯାଏଁ ବୁଡି ତା' ଆଡକୁ ଚାହିଁରହୁଥିଲେ ।

ବିଶିଆନ୍ନା ଜାଫଡାରେ କଷ ହୋଇଥିବା ରଙ୍ଗ ଲୁଗା ଆଉ ଗାମୁଛା ପିନ୍ଧି, ଚିତା ତିଳକ କରି ଫୁଲଡାଲା ହାତରେ ମନ୍ଦିର ମୁହାଁ ଗଲାବେଳେ ଦାଣ୍ଡ ମଣ୍ଡିହୋଇଯାଉଥିଲା । ସମସ୍ତେ ଦୁଆରମୁହଁରୁ ଗଳି ଚାହୁଁଥିଲେ । ସେ ଏକମୁହାଁ ଚାଲିଯାଉଥିଲା ।

ତା' ମୁହଁରେ ଦିହରେ ସକାଳ ଖରା ପଡି ଝଟକୁଥିଲା । ବିଶିଆ-ମା' ଖଣ୍ଡାଖାଇ ଦୁର୍ଜନ । ସାହିର କାହା ସାଙ୍ଗରେ ସେ କଳି ନକରିଛି ବୋଲି କରିନାହିଁ । କଳାହୁଡି ସବାଖାଇ ରାଣ୍ଡ । ତା'ରି ଏକଇରବଳା ବିଶିକେଶନ ଏଇ ବିଶିଆନ୍ନା ।

ମଇଁଷି ପରି କାଳୀ-ଭୁର୍କୁଣୀ କୋଉଠୁ ଏମିତି ଦିବ୍ୟସୁନ୍ଦର ପୁଅ ପାଇଲା କେଜାଣି ?

ତା' ଗେରସ୍ତକୁ ଏଇଠି କେହି ଦେଖି ନଥିଲେ । ତା' ଆଗରୁ ସେ ସେଆଡେ କୁଆଡେ ମରିସାରିଥିଲା । ହେଲେ ବିଶିଆ-ମା' ପୁଅଲାଖି ଯେଉଁ ବୋହୂଖଣ୍ଡ କରିଛି, ସେ କୋଟିକେ ଗୋଟିଏ ।

ବିଶାଖା । ହଳଦିଗଣ୍ଠି ପରି ଗୋରା । ଫଣଫଣ ଉତୁରିପଡୁଥାଏ ମୁହଁ । ଆଖି ପଡିଗଲେ ଚାହିଁ ରହିଯିବା ପରି ସେ ଚେହେରା । ନଜର ଲାଗିଯିବ ବୋଲି ବିଶିଆ-ମା ବୋହୂକୁ ଘରୁ ବାହାର କରୁ ନଥିଲା ।

ମନ୍ତୁରା ତେଉଁରିଆ ବାନ୍ଧିଦେଇଥିଲା ବାହୁରେ । ସମସ୍ତେ କହୁଥିଲେ, ସେ ହଳକ କୋଉ ଗନ୍ଧର୍ବ ଗନ୍ଧର୍ବୀ ମଣିଷରୂପରେ ଏଇଠି ବିଚରଣ କରୁଛନ୍ତି !

ବିଶିଆ-ମା' କେବେହେଲେ ପୁଅ-ବୋହୂଙ୍କୁ ଏକାଠି ଦାଣ୍ଡକୁ କାଢୁ ନଥିଲା । ଡାଆଣୀ, ଶୋଷନୀ ଗାଁଯାକ ଭର୍ତ୍ତି ହେଇଛନ୍ତି । ବିଶିଆନ୍ନା ଘରକୁ ଫେରୁଥିଲେ ଦାଣ୍ଡଦୁଆରେ ବାଛୁରୀ ଲାଞ୍ଜରେ ତାକୁ ଝାଡୁଥିଲା ।

ବୋହୂ ଆସିବାର ବର୍ଷେ ଦିବର୍ଷ ପାଞ୍ଚବର୍ଷ ପରେ ସମସ୍ତେ ଚୁପ୍‌ଚାପ୍ ହେଲେ । ଠରାଠରି ହେଇ ହସାହସି ହେଲେ । ବିଶିଆ-ମା' ଘରେ ବେଳେବେଳେ ପାଟିତୁଣ୍ଡ ଶୁଭିଲା । କାନ୍ଦଣା ଶୁଭିଲା ।

ପଡିଶାଘର ଖଳବୀ ମାଇକିନା କହୁଥିଲା କୁଆଡେ ମା' ପୁଅ ମିଶି ବିଶାଖାକୁ ବାଡେଇବାର ସେ ଶୁଣିଛି । ମିଛେଇଟା ! ବିଶାଖାକୁ ଦେଖିଦେଲେ ଉଞ୍ଚେଇଥିବା ଖଣ୍ଡା ଖସିପଡିବ । କିଏ ପୁଣି ତାକୁ ବାଡେଇପାରେ ! ସେଇ ବର୍ଷ ଜାଣି ବସନ୍ତ ଆସିଥିଲା ଦକ୍ଷିଣରୁ । ତାଙ୍କ ଘର ବାପମା' ଭାଇଭଉଣୀ ଉଠିଆସିଥିଲେ କୁଆଡୁ । ସାହିମୁଣ୍ଡରେ ଚାଳିଘର କରି ରହିଲେ । ତାଙ୍କ ନତାଛପର

ପବନରେ ଫୁର୍‌ଫୁର୍ ହଉଥିଲା ।

ସେଇ ଭିତରୁ ବାହାରିଆସୁଥିଲା ବସନ୍ତ ।

ସ୍କୁଲରେ ଭର୍ତ୍ତିହେଇଥିଲା ଆମଠୁଁ ଦୁଇ କ୍ଲାସ୍ ଉପରେ । ତା' ଆର ବର୍ଷ ସେ ମ୍ୟାଟ୍ରିକ୍ ପରୀକ୍ଷା ଦେବା କଥା । ସେ ଆସିବାପରଠୁ ସବୁଠି ହୁରିପଡିଛି – ସେ ଯେଉଁଠି ପହଞ୍ଚିଛି ଚହଲେଇ ଦେଇଛି ।

ସ୍କୁଲରେ ଶୀତ ଛାଡି ଆସିଲାବେଳକୁ ସ୍ପୋର୍ଟସ ହେଇଛି । ବସନ୍ତ ଜିଣିଚି କମ୍; ଜିଣେଇଚି ବେଶି । ମାଟିଚି କମ୍; ମତେଇଚି ବେଶି । ସେଇ ପ୍ରଥମେ ଝିଅଙ୍କୁ ଧାଇଁବା ପାଇଁ ଡାକିଚି । ସାର୍‌ଙ୍କୁ କହିଚି । ଝିଅଙ୍କୁ ଉସ୍‌କେଇଚି ।

ତା'ର ସେ ଫୁର୍‌ଫୁର୍ ବାଳ, ଚିଲାଆଖି, ନାଲି ଓଠରେ କଣ ଥିଲା କେଜାଣି, ସମସ୍ତଙ୍କୁ ସେ ଟଟେଇ ଦେଇ ପାରୁଥିଲା । କେତେବା ଝିଅ ସେତେବେଳେ – ପାଞ୍ଚଟି ନା ଛ'ଟି । ସେମାନେ କିନ୍ତୁ ଧାଇଁଲେ । ଡେଇଁଲେ । ବସନ୍ତ ତାଙ୍କୁ କମଳା ବାଣ୍ଟିଥିଲା ।

ଯେଉଁ ଅଧାଡିଆ ବଅସର ସାର୍ ବାରଣ କରୁଥିଲେ, ବସନ୍ତ ତାଙ୍କୁ କଣ କିମିଆ କରିଦେଲା । ଶେଷକୁ ସେ ନିଜେ ଆଉ ସାର୍‌ମାନଙ୍କ ସାଙ୍ଗରେ ଧୋତିକୁ ମାଲକଛା ମାରି ଧାଇଁଲେ । ତାଳିମାଡରେ ପଡିଆ ଉଛୁଳିପଡିଥିଲା ।

ସ୍ପୋର୍ଟ୍ସ ପରେ ସମସ୍ତଙ୍କୁ ମତେଇଥିଲା ଗୁଡି ଉଡେଇବାର ପ୍ରତିଯୋଗିତା ପାଇଁ । ସବୁ କ୍ଲାସ୍ ନିଜ ନିଜ ଗୁଡି ଉଡେଇବେ । ସମସ୍ତେ ଉପରକୁ ଚାହିଁବେ । ସମସ୍ତଙ୍କୁ ନୂଆ ପବନ ଲାଗିବ । ଗୁଡି କଟାକଟି ହେବ । ଏମିତି ଜଣେ ବାହାରିବ ସମସ୍ତଙ୍କୁ କାଟି, ସବା ଉପରେ ଉଡିବାକୁ । ଜିତାପଟ ହବ ତା' କ୍ଲାସର । ପ୍ରଥମେ ହେଡ୍‌ମାଷ୍ଟ୍ରେ, ତା'ପରେ ଆଉ ସବୁ ସାର୍ ନାହିଁ କଲେ । ବସନ୍ତ ସେମାନଙ୍କୁ ଜଣ ଜଣ କରି ଦେଖାକଲା; ଖାଲି ତାଙ୍କ ପାଖେ ଠିଆହେଇ ତାଙ୍କୁ ଚାହିଁଲା । ସେମାନେ ତାକୁ ଚାହିଁଲେ କଣ ବିପଦ କଥା ହେଲେ ।

ଗୁଡିଉଡା ପର୍ବ ଆରମ୍ଭ ହୋଇଗଲା । ସବୁ ରବିବାର ଛୁଟିରେ ପଡିଆ ଉଛୁଳିଲା ।

ସେଇଠୁ ବସନ୍ତ ଲାଗିଲା ଆମ ସାଙ୍ଗରେ ଫଗୁଣ ପୁନିଅଁକୁ ଅଗି ପୋଡା ହବ । ତା' ବାସି ରଙ୍ଗଖେଳ । ରାତିସାରା ନିଆଁ ଜଳିବ । ସକାଳୁ ରଙ୍ଗରେ ଗାଧୋଇବେ ସମସ୍ତେ ।

ସାହିରେ ମନ୍ଦିର ରାସ୍ତାରେ ସକାଳୁ ବିଶିଆନ୍ନାଙ୍କୁ ଦେଖି ବସନ୍ତ ଠିଆ ରହିଗଲା । ବିଶିଆନ୍ନା ଠିଆ ରହିଗଲା ତାକୁ ଦେଖି । ହାତ ଯୋଡି ବସନ୍ତ ନମସ୍କାର ଜଣେଇଲା ।

– "କିରେ, ତୁ ଏତେ ସକାଳୁ କୁଆଡେ ?"

ବିଶିଆନ୍ନା ମୁହଁରେ ହସ । କିଛି ନ କହି ଚୁପ୍‌ଚାପ୍ ଠିଆ ରହିଲା ବସନ୍ତ । ଶିରଶିର ପବନ ବୋହିଲା ଗୋଟାଏ ଦିଗରୁ । ତା' ବାଳ ଉଡିଲା ଫୁର୍‌ଫୁର୍ ହୋଇ ।

– "ଆମ ଘର ଆଡେ ଆସିବୁ ।" ବସନ୍ତ ଆସ୍ତେ ମୁଣ୍ଡ ଟୁଙ୍ଗାରିଲା ।

ବିଶିଆନ୍ନା ମନ୍ଦିରଆଡେ ଚାଲିଗଲା । ବସନ୍ତ ସତକୁ ସତ ତା' ଘରଆଡେ ମୁହାଁଇଲା ।

ବିଶିଆ-ମା' କାହାକୁ ଆଦର କରିବା ଲୋକ ନୁହେଁ । ବସନ୍ତକୁ ଦେଖୁ ଦେଖୁ ତା' ପିଠି ଧରି କହିଲା, "କିରେ, ତୁ ସାଇମୁଣ୍ଡରେ ରହୁଚୁଟି ! ମୁଁ ତତେ ଦେଖୁଚି ! ଆସୁନୁ ଘରକୁ, ଆ ! ଆରେ, ଆ ବା !"

ତା' ହାତ ଧରି ବିଶିଆ-ମା' ଘରକୁ କଢେଇନେଲା ।

ବୋହୂକୁ ଡାକ ପକେଇଲା, "ଆଲୋ ଏ ବିଶାଖା, ଦେଖିଲୁ, କିଏ ଆମ ଘରକୁ ଆଇଚି ।"

ବିଶାଖାର ପାଖେଇଆସୁଥିବା ବାସ୍ନା, ତା' ଲୁଗାର ଖସ୍‌ଖସ୍, ତା' ପାଉଁଜିର ମୃଦୁ ଝମ୍‌ଝମ୍ ସେ ବାରିପାରୁଥିଲା । ବିଶାଖା ଆସି ତାକୁ ଚାହିଁ ଠିଆ ରହିଗଲା । ବିଶିଆ-ମା' କହିଲା, "ଏଇ ପରା ଆମ ସାଇକୁ ଆସିଚନ୍ତି ଯୋଉଁ ନୂଆ ଘର, ତାଙ୍କରି ପୁଅ । କେମିତି କୁନ୍‌ମୁନିଆ ହେଇଚି, ଦେଖିଲୁ ।"

ବସନ୍ତ ତଳକୁ ଚାହିଁ ବସିରହିଲା, ବିଶାଖା ପାଖକୁ ଆସି ତା' ଗାଲରେ ହାତ ମାରିଦେଲା । ଭାବିଲେ ସେ ଦିଅରଲେଖା ହବ ନାଇଁ କି । – ସେଇଆ ଭାବିଲା ବିଶିଆ-ମା' । ଖୁସି ବି ହେଲା । ବସନ୍ତ ଆଖି ଟେକି ଚାହିଁଲା ବିଶାଖାକୁ ।

ବସନ୍ତ ହସିଦେଲେ ଖୁବ୍ ଆପଣାର ଦିଶେ । ଭାରି ଲୋଭନୀୟ ! ବିଶାଖା ଚହଲିଗଲା ପରି ଠିଆ ହେଇ ପଡିଲା । ଖୁସିରେ ତା' ଫଣଫଣ ଉତୁରିପଡୁଥିବା ମୁହଁରେ ଫଗୁ ବୁଣିହେଇଗଲା ।

"ରହ, ମୁଁ ତମ ପାଇଁ କଣ ଟିକେ ଖାଇବାକୁ ଆଣିଦେଉଚି" କହି ବିଶାଖା ତରବର ହେଇ ଘର ଭିତରକୁ ଚାଲିଗଲା ।

ବସନ୍ତ ମୁହଁ ଫେରାଇଆଣି ସେମିତି ହସି ହସି ଚାହିଁଲା ବିଶିଆ-ମା'କୁ । ସେ ଖାଲି କୁରୁଳିଲା ।

ପାଖକୁ ଆସି ବସନ୍ତକୁ ସାଉଁଳିପକେଇଲା । ମୁହଁ ପାଖକୁ ଲଇଁଆସିଲା । ଜିଭ ଲଗେଇ ଚାଟିଦବକି ଆଉ !

ବସନ୍ତ କିଛି କଲା ନାହିଁ । କିଛି କହିଲା ନାହିଁ । ଖାଲି ତାକୁ ଚାହିଁଲା । ଅଳ୍ପ ଅଳ୍ପ ହସିଲା ।

– "ଆହା ମୋ ଧନ, ତୁ ସବୁଦିନ ଆସିବୁଟି ! ମୋ ରାଣ, ତୁ ଆସିବୁଟି !"

ବିଶାଖା ଗୋଟିଏ ଗିନାରେ ହାତ ଘୋଡାଇ କଣ ଆଣି ପହଞ୍ଚିଲା । ପାଖରେ ଲାଗି ବସିଲା । ବିଶାଖା-ମା' ପଚାରିଲା – "ଆଲୋ କଣ ଆଣିଲୁ ?"

ବିଶାଖା ଲାଜ ଲାଜ ହୋଇ ଗିନାଟିକୁ ବସନ୍ତ ଆଗରେ ଟେକିଧରି କହିଲା, "ଆଉ କିଛି ପାଇଲି ନାହିଁ । କ୍ଷୀର କଦଳୀ ଆଣିଚି । ନିଅ ଖାଅ ।"

– "ଆରେ, ଲାଜ କରୁଚୁ କ'ଣ ? ଖା ! ନେ ମ' ଖା !!"

– "ମୁଁ ଦିଟା ଖାଇବି ନାହିଁ, ତମେ ଗୋଟେ ନିଅ" କହି ସେ ଗିନାଟିକୁ ବିଶାଖା ଆଡକୁ ବଢେଇଦେଲା ।

– "କାଇଁକି ବା' ? ଦି'ଟା କଦଳୀ କେତେ କି ? ଖାଇଦେ !"

ବସନ୍ତ କିଛି ନ କହି ବିଶାଖାକୁ ଚାହିଁରହିଲା । ଗିନାଟିକୁ ସେମିତି ଟେକିଧରିଲା ତା' ଆଗରେ ।

– "ଆଲୋ, ନେ, ତୁ ଗୋଟେ ନେଇଯା' ନହେଲେ ।"

ବିଶାଖାର ଚମ୍ପାକଢ ପରି ଆଙ୍ଗୁଠିରେ କଦଳୀ ନେବା ଭଙ୍ଗୀକୁ ବସନ୍ତ ଚାହିଁରହିଲା ।

– "ମୁଁ ପରେ ଖାଇବି – ତମେ ଖାଅ !"

– "ତମେ ଖାଇବ ନି ?" – ଅତ୍ୟନ୍ତ ସହଜ ସରଳ ଢଙ୍ଗରେ ପଚାରିଲା ବସନ୍ତ ! ବିଶାଖା ଆଖି ତଳକୁ କରି ନେଲା ।

– "ଆଲୋ, ପିଲାଟା ଆଗରେ ଲାଜ କଣ ବା' ? ଖାଉନୁ !"

– "ଏଇଟା ତମେ ନିଅ ମାଉସୀ । ମୁଁ କ୍ଷୀରତକ ପିଇଦଉଚି । ମତେ କ୍ଷୀର ଭାରି ଭଲଲାଗେ ।"

– "ମୁଁ ମରିଯାଉଥେ ଟି ! ଆରେ, ତତେ ନଦେଇ ମୁଁ ଖାଇବି ! ନାଇଁ ନାଇଁ, ତୁ ଖା' । ଆଲୋ ବିଶାଖା, ତୁ ଖାଉନୁ ।"

ଏମିତି ଲାଜ ଲାଜ ହେଇ ବସନ୍ତ କଦଳୀଟିକୁ ଖାଇଲା । ବିଶାଖା ଲୁଚେଇ ଲୁଚେଇ ଖାଇବାର ଦେଖିଲା ମଝିରେ ମଝିରେ । କ୍ଷୀରଟିକକ ପିଇଦେଇ ଗିନା ତଳେ ଥୋଇବାପୂର୍ବରୁ ବିଶାଖା ତା' ହାତରୁ ନେଇଗଲା ।

ଶାଶୁ-ବୋହୂ ବସନ୍ତକୁ ଗେଲ-ଗଉରବ କରି ଦୁଆର ଯାଏଁ ବାଟେଇ ଦେଇଗଲେ । ଥରକୁ ଥର ରାଣ ପକେଇଲେ ଆସିବା ପାଇଁ । ବସନ୍ତ ଲେଉଟି ଚାହିଁ ହସିଦେଲା ।

ଏମିତି ଯିବା-ଆସିବା ହେଲା । ସେବାଟେ ଗଲାବେଳେ ତାକୁ ଡାକ ଶୁଭିଲା । ଖୁବ୍ ଆସ୍ତେ ଝରକାରେ ଟିପମାରିବାର ଶବ୍ଦ ଶୁଭିଲା । ବିଶିଆନ୍ନା ବସନ୍ତକୁ ପାଖରେ ବସେଇ ଆଦର କଲା । ବିଶିଆ-ମା' ତାକୁ ଘରେ ବସେଇ ଦେଇ ଜିନିଷ କିଣିବାକୁ ଗଲା । ଏମିତି ଏମିତି ଶୀତ ଛାଡିଗଲା ।

ହୁର୍‌ହୁରିଆ ପବନ ବହିଲା । ଆକାଶରେ ପବନରେ ନିଆଁ ଲାଗିଲା ନା' କ'ଣ !

ଆମେ ସବୁ କଣ୍ଟା ଜାମୁଡାଳ ଭାଙ୍ଗି ଜମା କରି ଲାଗିଲୁ । ଜହ୍ନପକ୍ଷର ଆଲୁଅ ଯେତେ ବଢିଲା ସେତିକି ଉତଲା ଲାଗିଲା ଆମ ସମସ୍ତଙ୍କୁ । ବସନ୍ତ ସେଦିନ ଚାରିଆଡେ ବୁଣି ହେଇ ଯାଇଥିଲା । ଯୋଉଠି ଦେଖିଲା ହୁରି ପଡୁଥିଲା ସେ ଟୋକାଟା ପାଇଁ । ପାଞ୍ଚ ସାତଟା ଜାଗାରେ ଅଗିଗଦା ସଜଡା ହେଇଥାଏ । ବସନ୍ତ ସେଦିନ ବି କଣ୍ଟା ଜାମୁଡାଳ ଭାଙ୍ଗିବାରେ ଲାଗିଥାଏ । ପ୍ରଚଣ୍ଡ ନିଆଁ ଲାଗିଲେ ଶୁଖିଲା କଣ୍ଟା ମାନିବ ନାହିଁ । ସବୁ ଜଳିଯିବ । ଶିରିଷ ଡାଳ ବେଶ୍ ମଟକା । ସେଥିରୁ କିଛି ଟଣା ହେଇ ଆସିଗଲା ।

ଅଗିଗଦାର ଆକାର ବଢିଚାଲିଥାଏ । ଗୋଟିଏ ସୁଡଙ୍ଗ ରଖାହୋଇଥାଏ ତା' ଗର୍ଭକୁ ନିଆଁଗୁଳା ଭର୍ତ୍ତି କରିବା ପାଇଁ ।

ସଞ୍ଜ ହଉ ହଉ ଏଡେ ଜହ୍ନ ଥାଳିପଟ ପରି ଦେଖାଦେଲା । ରଣିଫୁଲ ପରି ଜହ୍ନଆଲୁଅ । ସାନବଡ ସମସ୍ତେ ଦଳ ଦଳ ହୋଇ ହୁଲି ହାକ ଦେଇ ବାହାରିପଡିଲେ । ବାଡ, ଟାଟି, ଖୁଣ୍ଟ, କାଠ ଯାହା ବାଟରେ ପଡିଲା ଟେକିଆଣିଲେ ।

ସମସ୍ତେ ସେ ପବନରେ, ସେ ଆଲୁଅରେ, ସେ ନିଆଁରେ ମାତିଯାଇଥିଲେ ।

ନିଷିଦ୍ଧ ଶବ୍ଦମାନ ଲଙ୍ଗଳା ପିଲାଙ୍କ ପରି ରାସ୍ତାଘାଟ ଗହିଆଡେ ବୋଲିବାଣୀରେ ଆତଯାତ ହେଲେ । ଟୋକା ବୁଢ଼ା ସମସ୍ତେ ଉଚ୍ଛୃଙ୍ଖଳ ହେବାକୁ ଚାହୁଁଥିଲେ । ଭେଣ୍ଡା ଟୋକାଦଳ ଏତେ ପାଟିରେ ନଶୁଣିଲା କଥାମାନ ଗାଇ ଗାଇ ବୁଲିଲେ ।

ମାଇକିନା ମୁହଁ ଘୋଡାଉଥିଲେ ଲାଜରେ । କାନ ଖୋଲା ରଖିଥିଲେ ଆଉରି ଶୁଣିବାକୁ ।

ପବନ ଫୁର୍‌ଫୁର୍ ବହୁଥିଲା ।

ଅଗିଗଦା ପାଖରେ ଆଲୁଅ ଧରି ଲୋକ ପହଞ୍ଚିଲେ । ଭୋଗରାଗ, ଫୁଲଚନ୍ଦନ, ଧୂପଦୀପ ପହଞ୍ଚିଲା । ପିଢା ପକେଇ ବସିଗଲା ବିଶିଆନ୍ନା ।

ବଡବଡିଆ ବୁଢାବୁଢ଼ୀ ସବୁ ଆସିଲେ । ସାନପୁଅ, ଅଣ୍ଡିରିପୁଅ ସବୁ ଆସିଲେ ।

ବୋହୂ ଭୁଆସୁଣୀ ରହିଗଲେ ଘରମାନଙ୍କରେ । ବସନ୍ତର ଦେଖା ନାଇଁ । ସମସ୍ତେ ଚଣା ଶାକର ଆଣି ଗଦାକରୁଥାନ୍ତି । କେତେବେଳକୁ କୋଉଠୁ ଆସି ବସନ୍ତ ପହଞ୍ଚିଗଲା । ବିଶିଆନ୍ନାକୁ ଗୋଟେ ଜପାମାଳି ଦେଇ କହିଲା, "ଏଇଟା ନିଅ – ଘରୁ ପଠେଇଛନ୍ତି ।"

ବିଶିଆନ୍ନା ତାକୁ ଚାହିଁଲା । କିଛି କହିଲା ନାହିଁ । ବସନ୍ତ ପୁଣି ଅନ୍ତର୍ଧାନ ହେଇଗଲା । କିଛି ସମୟ ପାଇଁ ଗହିଆଡ ସ୍ତବ୍ଧ ହେଇଗଲା କେଜାଣି କାହିଁକି !

କ'ଣଟାଏ ଫିସ୍ ଫିସ୍ ଉଡିବୁଲିଲା ପବନରେ । ସମସ୍ତେ ଏକମୁହାଁ ଧାଇଁବାର ଦେଖାଗଲା । ଗୋଟାଏ ଶିରିଷ ଗଛମୂଳେ ସବୁ ଘେରି ରହିଥିଲେ – ଜହ୍ନ ଆଲୁଅରେ ସବୁ କୁହୁଡିଆ ଦେଖାଯାଉଥିଲା ।

ଶିଖ ଡାଳକୁ ଭାଙ୍ଗିବାକୁ ହୁଃ କରି ଚଢିଗଲା । ବଡ ଡାଳଟା ଟାଣି ହୋଇ ଭାଙ୍ଗିଯିବ ବୋଲି ସେ ଜାଣି ନଥିଲା । ସେତେ ଉଞ୍ଚରୁ ପଡି ତା' ବୁକୁ ଫାଟିଗଲା । ଗୋଲାପୀ ଜାମା ପିନ୍ଧିଥିବା ସେ ନରମ ମାଈଅଂଶିଆ ଟୋକାଟିକୁ ସେମାନେ ଟେକିଆଣିଲେ ।

ଅଗି ପାଖରେ ସବୁ ରାବ ନିରବିଯାଇଥିଲା । ପବନରେ ବସନ୍ତର ମୁଣ୍ଡବାଳ ଉଡୁଥିଲା । ପାତଳ ଗୋଲାପୀ ରଙ୍ଗର ଜାମା କୁଞ୍ଚକୁଞ୍ଚ ହଉଥିଲା । ନିଆଁ ପରି ଚହଟିଗଲା ବାର୍ତ୍ତା । ସବୁ ଧାଇଁଆସିଲେ । ବୋହୂ ଭୂଆସୁଣୀ ଲଗାତ୍ ଦାଣ୍ଡକୁ ବାହାରିଆସିଲେ । ବସନ୍ତର ମା' ବୋବାଳି ଛାଡିଲା ।

ଭାଇଭଉଣୀ ତା' ଉପରେ ଲୋଟିପଡିଲେ । ବିଶାଖା ତା' ପାଖରେ ଠିଆ ହୋଇ ଠକ୍‌ଠକ୍ ଥରୁଥିଲା, ଗଛ କାଟିଲା ପରି ପଡିଗଲା ସେଇ ପିଲାଙ୍କ ଉପରେ । ବିଶିଆ-ମା', ବିଶିଆନ୍ନା ତାକୁ ଡୋଳିଧରିଲେ । ପଡିଶାଘର ଖଳବୀ କହିଲା, "ଆରେ, ତାକୁ ସମ୍ଭାଳି କରି ନେଇଯାଅ । ପାଞ୍ଚବର୍ଷ ବାଂଝରେ ଗଛ ଫଳିଚି । ସାବଧାନରେ ନିଅ ।"

ଆଉ ସବୁ ବୁକୁ ବାଡେଇ ହାଉହାଉ ହେଲେ । ଯେ ଥରେ ବସନ୍ତକୁ ଦେଖିଥିଲା ସେ ବାହୁନି ହେଲା ।

ଆମ ବୁକୁରେ ପବନଟାଏ ଅଟିକଯାଇଥିଲା । ଭାରି ପଥରଟାଏ ପଞ୍ଜରା ଉପରେ ମଡେଇ

ହେଇ ପଡିଥିଲା । ଆମେ ବସନ୍ତକୁ ଘେରି ବସିଥିଲୁ । ନାଲି ଜାମାରେ ତା' ଗୋରା-ତକତକ ମୁହଁ ଜହ୍ନ-ଆଲୁଅରେ ଜିଅନ୍ତା ଦିଶୁଥିଲା ।

ସମସ୍ତେ ଧାଡି ବାନ୍ଧି ବସନ୍ତକୁ ତା' ଘରଯାଏଁ ନେଇଥିଲୁ । ଆମ ଇଲାକା ଅନ୍ଧାର ଦିଶୁଥିଲା । କାନ୍ଦୁଥିଲା ସଜସଜ ଜହ୍ନଆଲୁଅରେ । ଦୂର ସାହିମାନଙ୍କରେ ଅଗି ଆଲୁଅ ଆକାଶକୁ ଚହଟି ଦିଶୁଥିଲା । ଆମ ଅଗି ସେମିତି ଭୂତ ପାହାଡ ପରି ଠିଆହେଇଥିଲା ।

କିଏ ଜଣେ କହିଲା, "କେତେ କଥା ହେଲା ଆମ ସାଇରେ । ଏଥର ଅଗିପୋଡା ନାଇଁ କି ଆଉ କେବେ ହବ ନାଇଁ ।" ଏତିକିବେଳେ କେଜାଣି କେମିତି ଅଗି ପଡିଆ ଉପରେ ନିଆଁଟାଏ ଦିଶିଲା ।

ହୁତ୍‌ହୁତ୍ ହେଇ ଚହଟିଉଠିଲା ଅଗି । ଟୋକାଙ୍କ ପଛରେ ବଡ ମଣିଷସବୁ ଧାଇଁଲେ ଆଶ୍ଚର୍ଯ୍ୟ ହୋଇ । କେମିତି ନିଆଁ ଲାଗିଲା ? କିଏ ଲଗେଇଲା ? ବସନ୍ତ ପବନରେ କଣ ଏମିତି ନିଆଁ ଲାଗିଯାଏ ?



## ତାକୁ ବାରବାର କ୍ଷମାକର

ମୁଁ ତାକୁ ଦେଖିବାମାତ୍ରେ ଚିହ୍ନିନେଲି । ତା' ବାଁ ପାଖ କପାଳରେ ସେ ଅଲିଭା ଦାଗ ବଡ କଥା ନୁହେଁ । ମୋ ଭିତରେ ବାରମ୍ବାର ଘା' ଉପରେ ଘା' ହାଣିଥିବା ସେ ଲୋକଟାକୁ ଚେଷ୍ଟାକଲେ ସୁଦ୍ଧା ତ ଭୁଲିହେବ ନାହିଁ ।

ପରିସ୍ଥିତି ସେମିତି କିଛି ଗୁରୁତ୍ୱପୂର୍ଣ୍ଣ ନୁହେଁ । ତଥାପି ସେ ଯେ ବର୍ତ୍ତମାନ ବିପନ୍ନ, ଏଥିରେ ତିଳେହେଲେ ସନ୍ଦେହ ନାହିଁ । ତାକୁ ତିନିଟା ଷଣ୍ଢା ଟୋକା ଘେରିଯାଇଥାନ୍ତି । ବସ୍ ଭିଡ ଭିତରେ ସେ ଲୋକଟା ଆକ୍‌ତା-ମାକ୍‌ତା ହେଉଥାଏ । ଗୋଟାଏ ତା' ତଣ୍ଟି ପାଖରେ କଲର୍‌କୁ ଭିଡିଧରିଥାଏ । କଣ ନା, ସେ ତାଙ୍କ ମାଡାମ୍ ପ୍ରତି ଅସଦାଚରଣ କଲା । ମୁଁ ବି ସେଇଠି ସେ ଭିଡ ଭିତରେ ଠିଆହୋଇଥିଲି । ମାଡାମ୍‌ଜଣକ ସେ ଅଭଦ୍ରଟା ଉପରେ ଭୀଷଣ ଖପା ହେଇ ପାଟିକରିଦେବାରୁ ପିଲାଏ ପଛରୁ ମାଡିଆସି ତାକୁ ଘେରିଗଲେ ।

ମୁଁ ତାକୁ ହାଁ ହାଁ କରି ସମ୍ଭାଳିବାକୁ ଗଲାବେଳେ, ସେମାନେ ଖୁବ୍ ଦୃଢ ଅଥଚ ମର୍ଯ୍ୟାଦା ରକ୍ଷା କରି କହିଲେ, "ଆପଣ ଏ ରାସ୍କେଲ୍‌କୁ ଜାଣନ୍ତି ନାହିଁ ସାର୍ ! ଆପଣ ଆମକୁ ବାଧା ଦିଅନ୍ତୁ ନାହିଁ ପ୍ଲିଜ୍ ।"

ମାଡାମ୍ ମଧ ମତେ ଚାହିଁ ନିଷ୍ପତ୍ତି ନେଲାପରି କହିଲେ, "ଆପଣ ତୁନିପଡନ୍ତୁ ସାର୍ ! ଏ ଜାନୁଆରଗୁଡାଙ୍କୁ ଶିକ୍ଷା ମିଳିବା ଦରକାର ।" ମାଡାମ୍‌ଙ୍କ ଭୂରୁ କମ୍ପୁଥିଲା । ଓଠ ଥରୁଥିଲା ରାଗରେ ।

ସେ କିନ୍ତୁ ବିପତ୍ତିରେ ପଡି ମୋତେ ଚାହୁଁଥିଲା ଅସହାୟଭାବରେ । କଣ ଆଶା କରୁଥିଲା ମୋଠୁ ସେ ରାସ୍କେଲ – କିନ୍ତୁ ଜଣାପଡୁଥିଲା ଯେ ସେ ମୋତେ ଆଦୌ ଠଉରେଇ ପାରୁ ନଥିଲା । ଦୋ ଦୋ ଚିହ୍ନା ହେଉଥିଲା ହୁଏତ ! କିନ୍ତୁ ସେତେବେଳେ ତା' ମଗଜ ବି ବୋଧେ ଠିକ୍ କାମ କରୁ ନଥିଲା ।

ବେଶ୍ ଦିନ ତଳେ ସେ ମୋତେ ଏହିପରି ଚାହିଁରହିଥିଲା ଆଉ ଏକ ପରିସ୍ଥିତିରେ । ଜାତୀୟ ରାଜପଥ କଡରେ ଗୋଟିଏ ପେଟ୍ରୋଲ ପମ୍ପ ଆଗରେ ଆମେ ଠିଆହୋଇଥାଉ । ମୋର ସେତେବେଳେ ବି.ଏ. ପାଠ ସରିଥାଏ । ଘରେ ବିପତ୍ତି ଘନେଇ ରହିଥାଏ । ମୁଁ ଅଠାକାଠିରେ ଶୁଆଟିଏ ପରି ଫଡ୍‌ଫଡ୍ ହେଉଥାଏ । ମୋତେ ପୁଲିସ୍ ସେଠିକି ଧରିଆଣିଥାନ୍ତି ସରଜମିନ୍ ତଦନ୍ତ

ପାଇଁ । ଦିନ ଦଶଟା ପାଖାପାଖି ସମୟ ।

ପୁଲିସ୍ ସାଙ୍ଗରେ ଏଇ ଲୋକଟା ଆସିଥାଏ । ସେହି ସେମାନଙ୍କୁ ସେଠିକି ଆଣିଥାଏ । ମୋତେ ସେମାନେ ବଡ ଡାକ୍ତରଖାନାରୁ ଧରି ଆଣିଥାନ୍ତି । ୟାର ବୟାନ ଅନୁସାରେ ମୁଁହିଁ ତା' ବାପ ଉପରେ ଗାଡି ମଡେଇ ଦେଇଥିଲି ପୂର୍ବ ଦିନ ସନ୍ଧ୍ୟାରେ । ବୁଢାର ହୋସ ଚାଲିଯାଉଥିଲା । ମୁଁ ହିଁ କଣ କାଳେ ହୋଇଯିବା ଭୟରେ ତାକୁ ସେଇଠୁ ନେଇ ବଡ ଡାକ୍ତରଖାନାରେ ଭର୍ତ୍ତି କରିଥିଲି । ସେଇ ପେଟ୍ରୋଲ ପମ୍ପ ପାଖରେ ମୋର ଲୁନା ମୋପେଡ୍‌ଟି ଥୁଆହୋଇଥିବା ହିଁ ସମସ୍ତ ଘଟନାର ପ୍ରମାଣ ।

ମୋ କଥା କେହି ଶୁଣୁ ନ ଥାନ୍ତି । ମୁଁ ମୋ ଭଉଣୀ ବାହାଘର ପାଇଁ ଲୁଗା କିଣିବାକୁ ବାହାରିଥିଲି । ତା' ପୂର୍ବବର୍ଷ ବାପାଙ୍କ କାଳ ହୋଇଯାଇଥିଲା ବୋଲି ମୋ ଉପରେ ସବୁ ଦାୟିତ୍ୱ ପଡିଥିଲା । ବାପା ମୋ ଭଉଣୀକୁ ଜଣଙ୍କ ଘରେ ଦବାକୁ ସତ୍ୟ କରି ଦେଇଥିଲେ । ମହାପ୍ରସାଦ ଟେକିଦେଇଥିଲେ । ଏଣୁ ତାଙ୍କ ବର୍ଷିକିଆ ସରିଯିବା ପରେ ସେମାନେ ଆସି ବିଭାଘର ପାଇଁ କଟାଳ କଲେ ।

ସେଇ ପେଟ୍ରୋଲ ପମ୍ପ ପାଖରେ ତେଲ ସରିଯିବାରୁ ମୁଁ ଭିତରକୁ ମୁହାଁଇବାକୁ ଯାଉଛି, ଦେଖିଲି ରାସ୍ତାକଡରେ କିଏ ଜଣେ ପଡିଛି । ଦରବୁଢା ମଣିଷଟିଏ । ପାଟି ପାକୁପାକୁ କରୁଛି । ମୋ ଦିହ ଶିତେଇଗଲା । ମୋ ବାପାଙ୍କ ମୁହଁ ବାରମ୍ବାର ଦିଶିଗଲା । ମୁଁ ମୋ ଲୁନାଟିକୁ ସେଇଠି ରଖିଦେଇ ପାଣି ଧରି ଧାଇଁଲି । ବୁଢା ତୁଣ୍ଡରେ ପାଣି ଇଡିବାରୁ ସେ ଢୋକେ ପିଇଲା । ଆଉ ଢୋକ ପାଣି ବୋହିଗଲା ପାଟିରୁ ।

ମୁଁ ସେ ପେଟ୍ରୋଲ ଦଉଥିବା ଲୋକଟାକୁ ପଚାରିଲି; ସେ ମୋତେ କିଛି କହୁ ନଥିଲା । ବାରମ୍ବାର ପଚାରିବାରୁ କହିଲା, ସେ ସେଇଠି ଅଧଘଣ୍ଟା କାଳ ପଡିଛି । ଗୋଟେ ଗାଡି ତାକୁ ଧକ୍କା ମାରି ଚାଲିଗଲା । କେହି ଝାମେଲାରେ ପଡିବାକୁ ଚାହୁଁ ନାହାଁନ୍ତି ।

– "ଆରେ ବୁଢାଟାଏ ମରିଯିବ – ଅଥଚ ଝାମେଲାରେ ପଡିବାକୁ ଚାହୁଁ ନାହାଁନ୍ତି ।"

– "ଆରେ ବୁଢାଟାଏ ମରିଯିବ – ଅଥଚ ଝାମେଲାରେ ପଡିବ ବୋଲି ତାକୁ କେହି ଛୁଇଁବ ନାହିଁ ?"

– "ତମେ ବାବୁ କଣ କରୁଚ କର – ଆମେ ସେଥିରେ ହାତ ଦବୁ ନାହିଁ ।" ମୁଁ ଅତ୍ୟନ୍ତକାତର ବୋଧ କଲି । ବୁଢାକୁ କୌଣସି ପ୍ରକାରେ କାନ୍ଧ ଉପରକୁ ଟେକି ଉଠାଇଲି । ଭାବୁଥିଲି, ଏ ପେଟ୍ରୋଲ ପମ୍ପ ପାଖକୁ ଆଣି କଣ ହେଲେ ବ୍ୟବସ୍ଥା କରିବାକୁ । ଏତିକିବେଳେ ଗୋଟେ ଟ୍ରେକର ଆସି ପହଞ୍ଚିଲା ।

– "ଭାଇ, ୟା'କୁ ବଡଡାକ୍ତରଖାନା ନ ନେଲେ ସେ ମରିଯିବେ । ଟିକିଏ ନେଇଯାଆନ୍ତ ନାହିଁ ।"

– "ନାଇଁ ଆଜ୍ଞା, କିଏ ସେ ଝାମେଲା ମୁଣ୍ଡେଇବ ?" ସେ ଆଗେଇବାକୁ ବସିଲା ।

ମୁଁ ପ୍ରାୟ ତା' ବାଟ ଓଗାଳି ତାକୁ ନେହୁରା ହେଲାପରି କହିଲି ନେଇଯିବାକୁ । ସେ ଏଡେଇଯିବାକୁ କହିଲା, "ଦେଢଶ' ଟଙ୍କା ନେବି ।"

– "ଦେଢ ଶ' ?"

– "ହଁ, ଦବ ତ' ବସ; ନହେଲେ ବାଟ ଛାଡ ।"

ମୁଁ ଆଗ ପଛ ଆଉ ବିଚାରିପାରିଲି ନାହିଁ – ବସିଗଲି । ପୁଲିସ୍ ଅଫିସରଜଣକ ଖଙ୍କାରିଲା, "ଆରେ ଚୁପ୍ ରହ । ଏ କାହାଣୀ ଶୁଣି ଶୁଣି କାନ ବଧିରା ହେଇଗଲାଣି । ଏଇ ତ ବୁଢାବାବୁଙ୍କ ପୁଅ ଠିଆହେଇଛନ୍ତି । ବୁଢାକୁ ଖୋଜି ଖୋଜି ପୁଲିସ୍‌ରେ ଏତଲା କରି ସକାଳୁ ଆସି ହାସ୍‌ପାତାଳରେ ଠାବ କରିଛନ୍ତି । ତୋର ସେ ବୁଢାବାବୁ କଣ ବାପ ? ତୁ କାହିଁକି ତାକୁ ଟେକିନେଇ ସେଇଠି ପହଞ୍ଚିଲୁ ? ସେଇଠି ରାତିଯାକ, ରକ୍ତ କିଣିବାକୁ ଓଷୁଆ କିଣିବାକୁ ପଇସା ପାଣିପରି ବୁହାଇଲୁ... ? ତୋର ମତଲବ କ'ଣ ?"

ଏଇ ଲୋକଟା କହିଲା – ଆଜ୍ଞା ମତଲବ ଜାଣିପାରୁନାହାନ୍ତି ? ନିଜେ ଗାଡି ମଡେଇ ଦେଇ ଧରା ନ ପଡିବାକୁ ଏସବୁ ଫିକର ସେ କରିଚି ?

ମୁଁ ବେକୁବ୍ ଭଳି ଠିଆହୋଇଥାଏ ।

ପୁଲିସ୍‌ବାବୁ ହୁକୁମ କଲେ, "ଏ ଲୁନା ଗାଡିଟାକୁ ଜବତ୍ କର । ତା'ର ନମ୍ବରଫମ୍ବର ସବୁ ଟିପ, ନେଇଚାଲ ଦୁହିଁଙ୍କୁ । ତମେ ବାବୁ ଆମ ସାଙ୍ଗରେ ଆସ । ଏ କେଶ୍‌ଟାରେ ତୁମର ବୟାନ ନବାକୁ ହେବ । ଏ ଟୋକାକୁ ପାନେ ଦରକାର । ଥରେ ସଜା ହେଇଗଲେ ଲୁନା ଉଡେଇବାର ସଉକ ଛାଡିଯିବ ସବୁଦିନକୁ ।"

– "ମୋ ବାପାଙ୍କୁ ଏ ଗାଡି ମଡେଇଚି – ମୁଁ ୟାକୁ ଛାଡିବି ନା । ୟାକୁ ଆଇନ୍ ସଜା ଦେଇ ନପାରିଲେ ମୁଁ ଦେବି ।"

ଏତିକି କହି ସେ ମୋ ଉପରକୁ ହାତ ଟେକିଛି କି ନାହିଁ, କେହି ଜଣେ ତା' ଗାଲରେ ଢୋକିନା ଚଟ୍‌କଣାଟାଏ ବସେଇଦେଲା ।

ପୁଲିସ୍‌ବାବୁ ଘାବରେଇଲା ପରି ଦେଖି ଚିହ୍ନିଲେ, ସେ ଥିଲା ପେଟ୍ରୋଲ ଫର୍ମ ମାଲିକ; ତାଙ୍କ ମାମୁପୁଅ; ସେତେବେଳର ଚଳନ୍ତି ରାଜନୀତିରେ ମହାପ୍ରତାପୀ ।

ସେ ୟା ମୁଣ୍ଡବାଳକୁ ବାଁ ହାତରେ ମୁଠା କରି ଧରି ଆରହାତ ଉଞ୍ଚେଇ ରଖିଥାନ୍ତି, ଗର୍ଜୁଥାନ୍ତି – "ନିମକହାରାମ୍ । ଏ ବାବୁ ତୋ ବୋପାକୁ ବଞ୍ଚେଇଛନ୍ତି । ମୁଁ ଦେଖିଛି, ବୁଢାକୁ ଗୋଟିଏ ନୀଳରଙ୍ଗର ଆମ୍ବାସେଡୋର ମାଡି ଦେଇ ଚାଲିଗଲା । ସେ ସେଇଠି ଅଧଘଣ୍ଟାଏ କାଳ ଛଟପଟ ହେଉଥାନ୍ତି । ଏଇ ପୁଲିସ୍‌ବାବୁମାନଙ୍କ ଅଡୁଆ ବୁଝାମଣାକୁ ଡରି କେହି ତାକୁ ଛୁଇଁବାକୁ ସାହସ କରୁନଥାନ୍ତି । ଏ ବାବୁଜଣକ ଯାହା କହିଲେ ଅକ୍ଷରେ ଅକ୍ଷରେ ସତ । ମୁଁ ସବୁ ଦେଖିଛି । ପୁଲିସ୍‌ବାବୁ ମୋ ଷ୍ଟେଟ୍‌ମେଣ୍ଟ୍ ନବାକୁ ଚାହିଁଲେ ଦେବି । ତୁ ନିମକହରାମ୍ ତାଙ୍କ ଗୋଡ ଧରି କ୍ଷମା ମାଗ୍ । ସେ ତୋ ବାପା ପାଇଁ ଯାହା ଖର୍ଚ୍ଚ କରିଛନ୍ତି ସବୁ ପଇଠ କର୍ ।"

ସେତିକିବେଳେ ସେ ମୋ ଆଡକୁ ପ୍ରାୟ ଏମିତି ଅସହାୟ ହୋଇ ଚାହିଁଥିଲା । ମୁଁ ସେ ଖାପଚରୁ ଅଳ୍ପକେ ବର୍ତ୍ତିଗଲି ସିନା; ମୋର ଦେଢ ହଜାର ଟଙ୍କା ଆଉ ଫେରିପାଇଲିନାହିଁ । ମୋ ଭଉଣୀ ବାହାଘରକୁ ଲୁଗାକିଣା ଖର୍ଚ୍ଚ ସେଇ ପରିମାଣରେ ନିଅଣ୍ଟିଆ ହୋଇଗଲା । ମୁଁ ଯେ ବେକୁବ କାମ କରିଥିଲି ଏଇଟା ସବୁ ଲୋକଙ୍କ ମତ ।

ମୋତେ ଘରେ ଏବେ ବି କଥା ଶୁଣିବାକୁ ପଡେ । ମୁଁ କୁଆଡେ ହଠାତ୍ ଅଜଣା ଅଶୁଣା ଲୋକଙ୍କ ପ୍ରେମରେ ପଡିଯାଏ । ତାଙ୍କୁ ଉପରେ ପଡି ସାହାଯ୍ୟ କରେ – ଓଲଟି ତାଙ୍କଠୁ କାମୁଡା ଖାଏ । ମୋର ସେଥିପାଇଁ କାଣ୍ଡଜ୍ଞାନ ନାହିଁ ବୋଲି ବାରମ୍ବାର ଲାଞ୍ଛନା ସହିବାକୁ ପଡେ ।

ଆରେ, ମୁଁ କଣ ଏତିକି ବେକୁବ – ସାପକୁ ସାପ ବୋଲି ଜାଣିପାରୁନାହିଁ । ବାଘକୁ ବାଘ ବୋଲି ଜାଣିପାରୁନାହିଁ । ଏଇ ଯେ ଲୋକଟା ମୋ ଜୀବନରେ ବାରମ୍ବାର ଆସୁଛି ଯାକୁ କଣ କେହି କେବେ ଭଲ ପାଇପାରେ ? ସେ ଦିନ ସେ ପେଟ୍ରୋଲ ପମ୍ପ ପାଖରେ ହଠାତ୍ ମୋର ମନେପଡିଗଲା ଆଉ ଏକ ଘଟନା । ଆଉ ମୁଁ ଏ ନାଲାଏକଟାକୁ ପୁଣି ଚିହ୍ନଟ କରିଥିଲି ।

ସ୍କୁଲ୍ ଫାଇନାଲ୍ ପରୀକ୍ଷା ଚାଲିଥାଏ । ଅଙ୍କରେ ମୋର ଭଲ ହେଉଥାଏ । ସେଥିପାଇଁ ମୁଁ ଘଣ୍ଟାଏ ଆଗରୁ ସାରିଦେଇଥାଏ । ଗୋଟାଏ ଟୋକା କାନ୍ଥପାଖକୁ ମୋ ଧାଡିରେ ବସିଥାଏ । ତା'ର ହାଫ୍‌ସାର୍ଟର କାଖ ପାଖ ଚିରିଯାଇଥାଏ । ସେ ବାଁ ହାତରେ ଆଖିରୁ ଲୁହ ପୋଛୁଥାଏ । କିଛି ବୋଧେ ଲେଖି ନ ଥାଏ । ସେ ମୋ ଆଡେ ଯେଉଁ ଭଳି ଚାହିଁଲା ମୁଁ ସହିପାରିଲି ନାହିଁ । ତା' ବାଁ କପାଳରେ କଟାଦାଗ ସତେବା କଞ୍ଚା ଘା'ଟାଏ ଭଳି ମୋତେହିଁ ଛଟପଟ କରିପକେଇଲା ।

ସେ ଖୁବ୍ ଦବା ଗଳାରେ କହିଲା, "ଖାତାଟା ମୂଳରୁ ଟିକେ ଖୋଲିଦିଅ । ମୁଁ କିଛି ଟିପି ଦିଏ । ନହେଲେ ମୁଁ ମରିଯିବି ।"

ମୁଁ ସବୁ ଉତ୍ତର ଆଉ ଥରେ ଦେଖିବା ଆଳରେ ଖାତାଟାକୁ ମୂଳରୁ ଖୋଲି ଧରିଲି । ମୋ ଅକ୍ଷର ଅତି ସ୍ପଷ୍ଟ । ଆଉ ତା'ର ଦୃଷ୍ଟି ଭାରି ତୀକ୍ଷ୍ଣ । ସେ ମେସିନ୍ ଭଳି ଉତାରି ଦେଇଗଲା ।

ପୃଷ୍ଠା ପରେ ପୃଷ୍ଠା ସେ ଇସାରା ଦେଇ ଲେଉଟାଇବାକୁ କହୁଥାଏ । ମୁଁ ଲେଉଟାଇଚାଲିଥାଏ ।

ମୁଁ ଯାହା ଦେଢ ଘଣ୍ଟାରେ ଲେଖିଥିଲି, ସେ ଚାଳିସ ମିନିଟ୍‌ରେ ତାହା ଉତାରି ନେଇଗଲା ।

ତା' ଆଖି ଛଞ୍ଚାଣ ଆଖି ପରି ଚାରିଆଡକୁ ଥରେ ଚାହିଁନେଇ ମୋ ଖାତା ଉପରେ ଝାମ୍ପିପଡୁଥାଏ । ସେ ଏକା ରାହାକେ ଲେଖିଚାଲିଥାଏ । ଦେଖୁ ଦେଖୁ ମୋର ଶେଷ ପୃଷ୍ଠା ବି ସେ ଉତାରି ନେଲା ।

ସେତିକିବେଳେ ଦୈବାତ୍ ମୁଁ ମୋ ଉତ୍ତରର ଗୋଟିଏ ଗୁଣନ ଚିହ୍ନ ଅସ୍ପଷ୍ଟ ଥିବାରୁ ଦୋହରାଇ ଦଉଥିଲି ।

ପଛରୁ ଶୁଭିଲା, "କ'ଣ ଚାଲିଛି ?"

ମୁଁ ମଫସଲ ସ୍କୁଲ୍‌ର ପିଲା । ଟିକିଏ କଣ ହେଲେ ଛାନିଆ ହୋଇଯିବା କଥା । ମୁଁ ପ୍ରାୟ ଘାବରେଇଗଲି । ଯମଦୂତ ପରି ସେ ନିଶୁଆ ନିରୀକ୍ଷକଜଣକ ଆମ ଦୁହିଁଙ୍କ ମଝିରେ ଆସି

ଠିଆହୋଇଗଲେ ।

ଏତିକିବେଳେ ସେ ଟୋକା ଚଟ୍‌କିନା ଉଠି କାନ୍ଦ କାନ୍ଦ ହେଇ କହିଲା, "ସାର୍, ମୋର କିଛି ଦୋଷ ନାହିଁ ସାର୍; ସେ ମୋତେ ଖାତା ଖୋଲିବାକୁ କହି ନକଲ୍ କରୁଥିଲା ସାର୍! ଆପଣ ଉତ୍ତର ମିଳାଇ ଦେଖନ୍ତୁ ସାର୍!" ମୁଁ ଆକାଶରୁ ଖସିଲା ପରି ହତବାକ୍ ହେଇଗଲି । ନିଶୁଆ ନିରୀକ୍ଷକ ନିର୍ମମ ଗଳାରେ ମୋତେ କହିଲେ, "ମୁଁ ଦେଖିଛି ତୁ ଲେଖୁଥିଲୁ – ସେ ଖାତା ଖୋଲି ରଖିଥିଲା ।"

ସେ ଉଭୟ ଖାତା ମିଶାଇ ଦେଖିଲେ । ଅକ୍ଷରେ ଅକ୍ଷରେ ମିଶିଯିବା କଥା – ମିଶିଗଲା । ମୁଁ କାକୁତିମିନତି ହେଲି – "ମୁଁ ସବୁ ଘଣ୍ଟାଏ ଆଗରୁ ଲେଖିସାରିଥିଲି ସାର୍! ମୋତେ ବିଶ୍ୱାସ କରନ୍ତୁ । ସେ ମୋତେ ଖାତା ଖୋଲି ଦେଖାଇବାକୁ କହିଲା । ସେ ମୋ'ଠୁ ନକଲ କରିଛି ।"

ସେ ପାଟିକରି ଅଭିନୟ କଲା, "ମୁଁ କିଛି କରିନାହିଁ ସାର୍! ମୋତେ ଦଣ୍ଡ ଦେଲେ ମୁଁ ଆତ୍ମହତ୍ୟା କରିଦେବି ।"

ହୋ-ହଲ୍ଲା ଭିତରେ ବଡ ସାର୍ ଆସିଲେ । ମତେ ମଫସଲିଆ ଦେଖି ଦଣ୍ଡବିଧାନ କରିଦେଲେ । ମୁଁ ବର୍ଷଟିଏ ପାଇଁ ପରୀକ୍ଷାରୁ ବଞ୍ଚିତ ହେଲି ।

ପରୀକ୍ଷା ପୂର୍ବରୁ ତାକୁ ଜାଣି ନ ଥିଲି । ପରେ ବି ତାକୁ ଭେଟିବାର ଉପାୟ ନ ଥିଲା । ମୁଁ ଗାଁକୁ ଫେରିଯାଇଥିଲି । ଘରେ ବାପାଙ୍କର ଓ ସ୍କୁଲ୍‌ରେ ସାର୍‌ମାନଙ୍କର ଗଞ୍ଜଣା ମୋତେ ଆତ୍ମରକ୍ଷା କରିବାର ସୁଯୋଗ ବି ଦେଲା ନାହିଁ; ମୁଁ ଯେତେ କହିଲି, ମୁଁ କଦାପି ନକଲ କରିନାହିଁ, ବିଶେଷକରି ଗଣିତ ପରୀକ୍ଷାରେ, ଯେତେବେଳେ କହିଲେ ମୁଁ ଶହେରୁ ଶହେ ନମ୍ବର ରଖିପାରେ, ସେଇଠି ସହରରେ ମତେ ସେମାନେ ଅନ୍ୟାୟ କରି ବଳି ଚଢେଇ ଦେଇଛନ୍ତି, କେହି ଶୁଣିଲେ ନାହିଁ ।

ଖାଲି ମୋ ଗଣିତ ସାର୍ ପାଟି ଫିଟେଇ କହିଥିଲେ, "ମୁଁ ୟାକୁ ଜାଣେ, ସେ ଗଣିତରେ କଦାପି ନକଲ କରିବ ନାହିଁ । ତା' ବାହାରେ ଏଥର ଯେଉଁ ପ୍ରଶ୍ନପତ୍ର ପଡିଥିଲା ସେଥିରେ ୟା ପାଇଁ କିଛି ହେଲେ କଷ୍ଟ ନ ଥିଲା । ସେ କାହିଁକି କାହାଠୁ ନକଲ କରିଥାନ୍ତା ?"

କେହି ଶୁଣିଲେ ନାହିଁ । ଓଲଟି କହିଲେ, ଆପଣ ସେ ଟୋକାକୁ ଘଣ୍ଟ ଘୋଡାଇବାର ପ୍ରୟୋଜନ ନାହିଁ । ସେ ଚୋରି କରି ଧରାପଡିଛି । ସେ ଆମ ସ୍କୁଲର କଳଙ୍କ । ଏତିକି ଜଣ ସେଇଠି କେହି ବୁଝିପାରିଲେ ନାହିଁ, କିଏ କାହାଠୁ ନକଲ କରିଛି ? ଗଣିତ ସାର୍ ତଥାପି ଜୋର ଦେଇ କହୁଥାନ୍ତି, "ଆରେ, ଏ ଟୋକାର ରେକର୍ଡ ଦେଖ । ସବୁ ବିଷୟରେ ଯେ ଏତେ ଭଲ କରିଛି ସେ ଗଣିତରେ କାହିଁକି ନକଲ କରିବାକୁ ଯିବ ?" ମୁଁ ସେ ଅକ୍ଷର ଦେଖିଥିଲେ କହିଦେଇଥାନ୍ତି । ଯେ ନିଜେ ଲେଖିଥିବ, ତା' କଲମ ନିଷ୍କମ୍ପ । ଯେ ଚୋରି କରିଥିବ, ତା' ଅକ୍ଷରଗୁଡା ସେମିତି ଧରାପଡିଥିବା ଚୋର ପରି ଟରବରିଆ ଖସି ପଳେଇବାକୁ ଛନଛନ, ବଙ୍କାଟଙ୍କା; ତା' କଲମ ଥରଥର ।

କିନ୍ତୁ ଯାହା ହେବାର ହୋଇଗଲା । ଆର ପରୀକ୍ଷାରେ ମୁଁ ସ୍କୁଲ୍‌ରୁ ପ୍ରଥମ ନମ୍ବର ରଖି ପାଶ୍ କଲି । ଚାରିବର୍ଷ କଲେଜ ପାଠ ପଢିବା ଭିତରେ ଅନେକ ଘଟଣା, ଅନେକ ସୁଖଦୁଃଖ । ସବୁବେଳେ

ମୋର ଏ ବେକୁବିପଣ ପାଇଁ କିଛି କିଛି ମୋତେ ଗଞ୍ଜଣା ଭୋଗିବାକୁ ପଡିଛି ।

ତାକୁ ସେଦିନ ପେଟ୍ରୋଲ ପମ୍ପ ପାଖରେ ଦେଖି ମୋର ପୁରୁଣା ଯାତନା ପୁଣି ଫେରିଆସିଲା । ମୁଁ ଚାହୁଁଥିଲି ସେ ପେଟ୍ରୋଲ ପମ୍ପ ମାଲିକ ପରି ମୁଁ ସେ ଲୋକର ମୁହଁଟାରେ ମନଇଚ୍ଛା ପିଟିଦେଇଥାନ୍ତି । ବହୁଦିନରୁ ବାକିଆ ପଡିଥିବା ପ୍ରତିଶୋଧ ନେବାର ସୁଯୋଗ ନେଇଥାନ୍ତି ।

କିନ୍ତୁ ତା'ର ସେ ଚାହାଣି ମୋତେ ଦୁର୍ବଳ କରିଦେଲା । ସେ ଚାହାଣିରେ କଣ ଅଛି କେଜାଣି, ଯଦି ଭୋକିଲା ବାଘ ବି ସେମିତି ଚାହିଁ ଦେବ ମୁଁ ତାକୁ ସମ୍ଭାଳି ପାରିବି ନାହିଁ । ବାଘମୁହଁରେ ବେକ ଦେଇଦେବି । ମୋ ଆଖିରୁ ଲୁହ ଝରିଯିବ । ଏତେ ଅସହାୟ ହୋଇ ମୋତେ କେହି ଚାହିଁ ନାହିଁ । ମୁଁ ମୋ ବୁକୁ ଚିରି ରକ୍ତ ନିଗାଡିଦେବି ତୁମକୁ ସେ ଗଣ୍ଡ ଭିତରୁ ଓଟାରି-ଆଣିବାକୁ ।

ଯାର କାରଣ ବୋଧହୁଏ ମୋ ଭିତରେ କୋଉଠି ବୁଡା ମାରି ରହିଛି । ମୋର ବେଳେବେଳେ ମନେହୁଏ ଯେ ଖୁବ୍ ପିଲାବେଳେ ମୋ ସାନଭାଇ ସାଙ୍ଗେ ମୁଁ ଖେଳୁଥିଲି । ସେ କାଚ ଗୋଲିଟାକୁ ପାଟିରେ ପୂରେଇ ଦେଇ ହସୁ ହସୁ ଅଟକିଯାଇଥିଲା । ତା'ପରେ ଜାଲରେ ପଡିଥିବା ମାଛଟିଏ ପରି ସେ ଛାଟିପିଟି ହେଲା । ତା' ଦେହ ଝାଳରେ ତିନ୍ତିଗଲା । ସେ ବଲବଲ ଚାହିଁରହିଲା ଅତ୍ୟନ୍ତ ଅସହାୟ ହୋଇ । ତା' ଶ୍ୱାସନଳୀରୁ କାଚ ଗୋଲିଟାକୁ ଓଟାରି କାଢିଦେଇଥିଲେ ଭାଇ ବଞ୍ଚି ଯାଇଥାନ୍ତା । ମୋର ସେତେବେଳେ ଆୟତ୍ତ ନ ଥିଲା କିଛି କରିବାକୁ । ମୁଁ କେବଳ ତା'ର ସେ ଆଖିକୁ ଚାହିଁ ଚିତ୍କାର କରିଥିଲି । ସମସ୍ତେ ଜମା ହୋଇଯାଇଥିଲେ । ଲାଉଡଙ୍କ ପରି ସେ ଭାଇର ନିର୍ଜୀବ ଦେହଟାକୁ ଟୋଳିନେଇ ମୋ ବୋଉ ହାଉଳି ଖାଇ ବୋବେଇଥିଲା । ତା' ଆଖିଯୋଡିକ ପେଜୁଆ ଦରବୁଜା ହୋଇଯାଇଥିଲେ ସୁଦ୍ଧା ସେମିତି ସେ ଆକାଶ-ପବନକୁ ଚିରି ପକଉଥିଲା – କିଏ ଅଛ, କୋଉଠି ଅଛ, ମୋତେ ବଞ୍ଚାଅ, ମୋତେ ଟୋକେ ପବନ ଦିଅ ।

ମୁଁ ତାକୁ ବଞ୍ଚେଇ ପାରି ନଥିଲି । କିନ୍ତୁ ସେ ଚାହାଣିକୁ ବି ଭୁଲି ନ ଥିଲି । ସେମିତି ଚାହିଁ ମୋ ଆଗରେ କିଏ ଅଣ୍ଟି ପଟେଇଦେଲେ ମୁଁ ମୋ କଲିଜାଟା କାଢି ତା' କାନିରେ ଥୋଇଦେଇପାରେ । ସେଥିପାଇଁ ମୋର ଆୟତ୍ତ ନାହିଁ ।

ବସ୍ ଭିତରେ ସେ ଅକ୍ଷମଣୀୟ ଅପରାଧୀକୁ ମୁଁ ଅନେକ ଦିନପରେ ପୁଣି ଦେଖିଲି । ତାକୁ ସେ ପିଲାମାନେ ହୁଏତ ମୋଠାରୁ ବେଶି ଜାଣିଥିଲେ । ତାକୁ ସେମାନେ ଘୃଣା କରିବାର ଅନେକ କାରଣ ହୁଏତ ଥିଲା । ତା' ପୂର୍ବରୁ କଣ ସବୁ ସେ କରିଥିଲା ବୋଲି ସେମାନେ ସେମିତି ଉତ୍ତ୍ୟକ୍ତ ହୋଇପଡିଥିଲେ । ମୁଁ ବି ସେମାନଙ୍କ ସାଙ୍ଗରେ ମିଶି ସେ 'ଜାନୁଆର'ଟାକୁ ଚାରି ଜାବୁଡା ମାରିପାରିଥିଲେ ଆଶ୍ୱସ୍ତ ହୋଇଥାନ୍ତି ।

ସେ ନିଶ୍ଚୟ ଦଣ୍ଡନୀୟ । ମାଡାମ୍! ମୁଁ ଆପଣଙ୍କ ସହିତ ସମ୍ପୂର୍ଣ୍ଣ ଏକମତ । ଏ ଜାନୁଆରଟାକୁ ଦଣ୍ଡ ଦିଆଯାଉ । ସେଇଟା ନିଲଠାଟାଏ, ନିର୍ଲଜଟାଏ । ଏ ବୟସରେ ନୁଙ୍ଗୁରାପଣ ଛାଡିପାରୁନାହିଁ । ସେ ଅତ୍ୟନ୍ତ ସ୍ଥୂଳ ବୋଦା ପରି ଜନ୍ତୁଟାଏ । ସେ କଣ ଯେ ଅପରାଧ ନ କରିଥିବ, କହିହେଉ ନାହିଁ । ସେ ମାଡ ଖାଇ ଖାଇ ବଧିରା ହୋଇଗଲାଣି; ହେଲେ ତଥାପି ଆହୁରି ମାଡ ମୁଲୋଉଛି ।

ତାକୁ ମାଡ ଦିଆଯାଉ; ମୁଁ କିଏ ବାଧା ଦବାକୁ ? ମୁଁ ବି ତ ତାକୁ କମ୍ ଘୃଣା କରେନାହିଁ । ତା' ପ୍ରତି ମୋର କ୍ରୋଧର ସୀମା ନାହିଁ । ତା'ଭଳି ମୋର ଶିଙ୍ଗ ଲାଞ୍ଜ ଥିଲେ ମୁଁ ତାକୁ ଟିକିଟିକି ଭିଣିଦେଇଥାନ୍ତି କୋଉ କାଳୁ । ମୋ ଭିତରେ ଭିତରେ ମୁଁ ନିଶ୍ଚୟ ଚାହେଁ ଏ ଟୋକାମାନେ ତାକୁ ପଘାରେ ବାନ୍ଧି ଛେଚି ଦେଇଯାନ୍ତୁ । ସେ ରକ୍ତବାନ୍ତି କରିପକଉ । ସେ ମରିଗଲେ ବି କିଛି ଯାଏଆସେ ନାହିଁ; ବରଂ ପୃଥିବୀ ଉଶ୍ୱାସ ହେବ । ଏହିପରି ଗୁଡାଏ ନିଶାଚର ଯଜ୍ଞଶାଳାରେ ଘୁଷୁରି ପଶିଲା ପରି ପଶିଯାଇଛନ୍ତି ସବୁଠି । ସେମାନଙ୍କୁ ସଂଶୋଧନ କରି ନ ପାରିଲେ ସଂହାର କରିବାକୁ ହେବ । ଏଣୁ ଏଇଟାକୁ ଆପଣମାନେ ଯାହା ଚାହିଁବେ ମନଇଚ୍ଛା ଦଣ୍ଡ ଦିଅନ୍ତୁ ।

କିନ୍ତୁ ସେ ଦଣ୍ଡ ପାଇଲାବେଳେ ମୁଁ ତା' ଆଖିକୁ ଚାହିଁପାରିବି ନାହିଁ; ଚାହିଁଲେ ସମ୍ଭାଳି ପାରିବି ନାହିଁ । ସେଥିପାଇଁ ବୋଧେ ବିଧାତାପୁରୁଷ କାହାକୁ ଦଣ୍ଡ ଦିଏ ନାହିଁ; କ୍ଷମା କରିଦିଏ । ସବୁ ଅପରାଧ ପାଇଁ ଦଣ୍ଡବିଧାନ ହେଉଥିଲେ କିଏ ଭଲା ବର୍ତ୍ତିପାରନ୍ତା ?

ତା' ତଣ୍ଟି ପାଖର କଲରକୁ ଟାଣିଧରିବାରୁ ତା' ଆଖିରେ ମୁହଁରେ ସେଇ ଅସହାୟପଣ ଦିଶିଯାଉଥିଲା । ମୋତେ ଲାଗୁଥିଲା ତା' ଶ୍ୱାସନଳୀରେ କାଚ ଗୋଲିଟାଏ ଲାଖିଯାଇଛି । ସେ ଛଟପଟ ହେଉଛି, ଲଙ୍ଗଳା ନବଜିଆ ପିଲାଟିଏ ପରି । ତାକୁ ଛାଡିଦିଅ । ତାକୁ ଢୋକେ ପବନ ଦିଅ, କିଏ ଅଛ ଆକାଶରେ କି ସମୁଦ୍ରରେ । ନହେଲେ ସେ ଲାଉତଙ୍କ ପରି ଝାଉଁଳି ପଡିବ । ପେଜୁଆ ଦରବୁଜା ଆଖିରେ ସ୍ଥିର ହୋଇଯିବ ତା' ଦୃଷ୍ଟି ।

ମୁଁ ସତକୁ ସତ ପାଟି କରି ପକେଇଲି – "ଆରେ, ଛାଡିଦିଅ ତାକୁ । ନହେଲେ ସେ ମରିଯିବ ।"

ଏତିକିବେଳେ ବସ୍ ବି ରହିଗଲା । ଟୋକାଙ୍କ ଗଳଥା ଖାଇ ସେ କୁଢେଇ ହେଇ ପଡିଲା ରାସ୍ତା ଉପରକୁ । ସେଇଠୁ ମୋ ଆଡେ ଆଙ୍ଗୁଠି ଦେଖେଇ ଚିତ୍କାର କଲା – "ମୁଁ କିଛି କରିନାହିଁ । ସେଇ ଲୋକଟା ମୋ ପଛପଟୁ ହାତ ବଢେଇ କଣ କରିଥିବ । ମୁଁ ଜାଣିନାହିଁ ।" ସେତେବେଳେ ତା' ଆଖି ସାପଆଖି ପରି ଗୋଟାଳିଆ ଧରିଯାଇଥିଲା; ଚମକୁଥିଲା ନିଆଁରଡ ପରି ।

"ଇସ୍ ! ଶାଲା ଜାନୁଅର୍ କାହାଁକା ।" – କହିଲା ଗୋଟିଏ ଟୋକା । ପାଇଲେ ତା' ବେକ ମୋଡିଦେବ – ଏଇ ଭଙ୍ଗୀରେ ।

ମୁଁ ଦାନ୍ତ ଜାକି ମୁଣ୍ଡ ତଳକୁ କରିନେଲି – "ମୁଁ ପାରୁନାହିଁ ପ୍ରଭୁ, ତୁମେହିଁ ତାକୁ ବାରବାର କ୍ଷମା କର !"



## ସରିଯାଉଛି ରେ

ଗୋଟିଏ ହୁଡା ପଛଆଡୁ ସୂର୍ଯ୍ୟ ଉଇଁବାର ସେ ଦେଖିଛି । ଆଉ ଗୋଟିଏ ହୁଡା ପଛରେ ଅସ୍ତଯିବାର ବି ଦେଖିଛି । ଦି'ମୁଣ୍ଡେ ଦୁଇଟା ପୋଖରୀ । ଏ ଦି'ଟା ପୋଖରୀ ହୁଡାହିଁ ତା' ପାଇଁ ପୂର୍ବ ଆଉ ପଶ୍ଚିମ ।

ମଝିରେ ଅଳ୍ପ ଗହୀର, ଅଳ୍ପ ଗଡାଣିରେ ମାଲିକଙ୍କ ଅଖଣ୍ଡ ଧାନବିଲ ପୋଖରୀରୁ ପୋଖରୀଯାଏଁ । ଗୋରୁଙ୍କୁ ଜଗିବା ପାଇଁ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଲମ୍ବିଥିବା କଣ୍ଟାବାଡ । କଣ୍ଟାବାଡକୁ କୋଡିଏ ପଚିଶ ହାତ ଛାଡି ଉତ୍ତରମୁହାଁ ଛୋଟ ସାହିଟିଏ । ବର୍ଷାଦିନେ ଘରୁ ଗୋଡ କାଢିଲେହିଁ କାଦୁଅକୁ ଓହ୍ଲାଇବାକୁ ହୁଏ । ସେଇ କାଦୁଅରେ ମଣିଷର ପାଦଉଷୁମରେ ପାହୁଣ୍ଡ ପଡିଲା ପରି କାଦୁଅ ଟାଣେଇଯାଏ । ସେଇ ବାଟେ ତେଇଁଲା ପରି ଏପାଖକୁ ସେପାଖକୁ ବୁଲା ବାଙ୍କ କାଟି ପଶ୍ଚିମ ପୋଖରୀ କଡଦେଇ ଯାଇଥିବା ଉଚ୍ଚ ସଡକକୁ ଉଠିବାକୁ ପଡେ । ସଡକ କାଟି ପାରିହେଲେ ପୋଖରୀହୁଡା ।

ସାହିର ମାଇକିନା, ମର୍ଦ, ଭୁଆସୁଣୀ, ପିଲା ବୁଢା ସମସ୍ତେ ପୋଖରୀକୁ ଗାଧୋଇଯାଆନ୍ତି । ପୋଖରୀରୁ ପାଣି ନେଇ ଗରାକାଖରେ ଘରଣୀମାନେ ଖରା ବର୍ଷା ଭିତରେ ଉଚ୍ଚ ସଡକରୁ ରାସ୍ତାହୀନ କାଦୁଅକୁ ଓହ୍ଲେଇଆସନ୍ତି ।

ସଡକରୁ ଗଡିଆସିଲାବେଳକୁ ମସ୍ତବଡ ମହାଲିମ୍ବ ଗଛଟାଏ ଶାଖା ବିସ୍ତାରି ରହିଥାଏ । ଗଡାଣି କାଦୁଅରେ ଗୋଡ ଖସିଲାବେଳେ ତାକୁ ଧରି ସମ୍ଭାଳିଯିବାକୁ ହୁଏ । ଦିନେ ମଦନର ଭାଉଜ ଗରା କାଖେଇ ଓଢଣା ଟାଣି ଓହ୍ଲେଇଲାବେଳକୁ ଗୋଡ ଖସିଗଲା ।

ଆୟ ଅଳଂକାର ବୋଝେଇ ହୋଇଥିବା ଚମ୍ପାଗୋରୀ ଭୁଆସୁଣୀଟା ଛେଚି ହେଇ ପଡିଗଲା କାଦୁଅରେ । ପାଣିଗରାଟା ଭଲେ ତା' ଉପରେ ପଡିଲା ନାହିଁ । ମହତ ଘୋଡେଇବାକୁ ତରବରରେ ସେ ଉଠିପଡିଲା । କାଦୁଅରେ ଲଟପଟ ହେଇ ପୁଣି ଉଠିଲା ପୋଖରୀକୁ । ସେଇଦିନ ମଦନର ବଡଭାଇ, ତା' ବାପ, ସାଇର ସବୁ ଘରୁ ମୁରବିମାନଙ୍କୁ ଏକାଠି କରି ସଭା କଲେ ।

ସାହି ଆଗରେ ସଡକଟାଏ ନ ପଡିଲେ ଲୋକେ ଯିବେ ଆସିବେ କେମିତି ? ବର୍ଷାଦିନେ ତ ସେଠିକି ଯମ ପଶିପାରିବ ନାହିଁ । କେମିତି ପିଲା, ମାଇପୀ, ବୃଦ୍ଧ ନିପାରିଲାମାନେ ଚଳପ୍ରଚଳ

ହେବେ ?

ସମସ୍ତେ କହିଲେ ହଇ ହଇ । କିନ୍ତୁ କାହାରି ବଳ ନାହିଁ କଥା ନେଇ ହାକିମଙ୍କ ପାଖରେ ପହଞ୍ଚେଇବାକୁ ।

ସମସ୍ତଙ୍କ ଘରତିହ କୋଡିଏ ଫୁଟରେ ପଚାଶ ଫୁଟ । ନୁଆଁଣିଆ ଚାଳ । ମାଟିଝାଟି କାନ୍ଥ । ସମସ୍ତେ ଦୁର୍ବଳ ନିପାରିଲା ମଣିଷ । ଗୋଟିଏ ବକତରେ ଦିନ ଚଳୁଥିବା, ଗୋଟିଏ ଖଦିରେ ବର୍ଷ କାଟୁଥିବା ଅଭାବୀ ଅଥଚ ସରଳ ସନ୍ତୁଷ୍ଟ ଲୋକଗୁଡ଼ିଏ । ସାହିଟାରେ କିନ୍ତୁ ସମସ୍ତଙ୍କ ଘରେ ଦିଅଁପୂଜା ହୁଏ । ଓଷା, ବ୍ରତ, ଓସାପ ହୁଏ । ମାଣବସା ହୁଏ । କାଣିବାଉଁଶ ଗୋବରେ ଗୋବେ ଜମି କାହାରି ନାହିଁ । ହେଲେ ଲକ୍ଷ୍ମୀପୂଜା ପାଇଁ ମାର୍ଗଶିର ମାସ ଗୁରୁବାର ଦିନ ସାହିଯାକ ସମସ୍ତଙ୍କ ଘରେ ଆୟୋଜନ । ମଦନ ଭଳି ତା' ବୟସର ସବୁ ଗଲେଣି । କିନ୍ତୁ ସାହି ଆଗରେ କାଦୁଅ ଚକଟା ଚାଲିଛି । କାଦୁଅ ସେପାରି ମାଲିକଙ୍କ ଧାନକ୍ଷେତରେ ଶୀତ ସକାଳ ଫସଲ ଲହଡି ଭାଙ୍ଗୁଛି ।

କାଦୁଅ ପାଇଁ ମଦନ ଖାଲିପାଦରେ ସ୍କୁଲ୍‌କୁ ଯାଇଥିଲା । ସପ୍ତମ ପଢିଲାବେଳକୁ ତା' ବଡଭାଇ ତା' ପାଇଁ ହଳେ ଚପଲ ଆଣିଦେଲା ସହରରୁ । ବର୍ଷାଦିନେ ତାକୁ ହାତରେ ଧରି ମଦନ ସଡକଯାଏ ଯାଉଥିଲା । ପୋଖରୀ ପଥରରେ ପାଦ ଘଷି କାଦୁଅ ଛଡେଇଲା ଉତ୍ତାରୁ ଚପଲ ପିନ୍ଧି ସ୍କୁଲ୍‌କୁ ଯାଉଥିଲା ।

ସହରଟି ଖୁବ୍ ଛୋଟ; ହେଲେ ସୁନ୍ଦର । ଛବି କାଟିଲା ପରି ସଡକ । ସ୍କୁଲ୍, ଡାକ୍ତରଖାନା, ଛାପାଖାନା, ମନ୍ଦିର, ଥାନା, କଚେରି, ସ୍କୁଲ୍ ସବୁ, ଯେ ଯୋଉଠି ସୁନ୍ଦର ଖଞ୍ଜିହେଲାପରି ରହିଥାନ୍ତି । ସହରର ଶେଷ ମୁଣ୍ଡରେ ଏ ସାହି । ନହେଲେ ତ ପୋଖରୀରୁ ପୋଖରୀଯାଏଁ ଲମ୍ବିଥିବା ଏକଧାଡିଆ ଧାନବିଲହିଁ ସହରର ସାବଜା ସରହଦ ହୋଇଥାନ୍ତା । ସେଇଠି କାହିଁକି ସେ ସାହିଟା ବସିଲା ବୋଲି ମଦନ ଥରେ ତା' ବାପାଙ୍କୁ ପଚାରିଥିଲା । ସେ କହିଲେ ଯେ ଏ ସାହିର ସମସ୍ତେ ପ୍ରବାସୀ । କେହି ଏଠିକା ବାସିନ୍ଦା ନୁହଁନ୍ତି । ସେମାନଙ୍କୁ ଥଇଥାନ କରିଦେବାକୁ ମାଲିକ ଯେ ଏ ମୁଲକର ରଜା ନିଷ୍ପତ୍ତି ନେଲେ – ସେମାନେ ରହନ୍ତୁ; ହେଲେ ବାରିହେଲାପରି ସହର ବାହାରେ ରହନ୍ତୁ ।

ଆଉ କହିଲେ ଯେ, ଏ ସାହିଯାକ ସମସ୍ତେ ଦରିଦ୍ର ବ୍ରାହ୍ମଣ । ପାଠଶାଠ ପଢିଛନ୍ତି । ଯଜମାନି କରନ୍ତି । ହେଲେ ଦରିଦ୍ର ରହିଛନ୍ତି ପୁରୁଷ-ପୁରୁଷଧରି । ଏମାନଙ୍କ ସମ୍ପତ୍ତିବାଡି କୋଉଠି କିଛି ନାହିଁ । ଦିଅଁଘରେ ତାଳପତ୍ରପୋଥି କିଛି ସାଇତି ରଖିଛନ୍ତି । ପଢନ୍ତି ନାହିଁ; ଖାଲି ଖଟୁଲିରେ ରଖି ପୂଜା କରନ୍ତି ।

ଏବେ ସବୁ ପାଠଶାଠ ପଢି ପିଲାମାନେ ଚାକିରି କରିଗଲେଣି; ହେଲେ କେହି ଜଣେ ହେଲେ ବଡଲୋକ ହେଇପାରି ନାହିଁ । ଦୁର୍ଦ୍ଦଶା ଘୁଞ୍ଚିନାହିଁ କାହାରି ।

କାହାରି ଦୁଆରୁ କାଦୁଅ ଘୁଞ୍ଚି ନାହିଁ ଏଯାବତ୍ ।

ମଦନ ଷଡଙ୍ଗୀ ସେଇଦିନଠୁ କେଜାଣି କାହିଁକି ଭିତରେ ଭିତରେ ଜିଦ୍‌ଖୋର ହେଇଗଲା । ନିଜର ଏ ଦୁର୍ଦ୍ଦଶା । ଘୁଞ୍ଚେଇବାକୁ ସତେବା ସେ ଅଣ୍ଟା ଭିଡୁଥିଲା ମନେ ମନେ ।

ସେଇ ସମୟ କଥା । ତା'ର ସପ୍ତମ ଶ୍ରେଣୀ ପାଠପଢା ଚାଲିଥାଏ । ସାଙ୍ଗସୁଖଠୁ ପଢା ବହି ମାଗିଆଣି ଚଳଉଥାଏ; ହେଲେ ପଢୁଥାଏ ବଢିଆ । ପରୀକ୍ଷାରେ କେହି ତାକୁ ଟପି ପାରୁ ନଥାନ୍ତି । ଦିନେ ସେ ସ୍କୁଲ୍‌ରୁ ଫେରି ଦେଖିଲା ତା' ବାପା ପିଣ୍ଡାରେ ବସି ପାନ ଚୋବାଉଛନ୍ତି । ଭାରି ଖୁସି ଜଣାପଡୁଛନ୍ତି ।

ମଦନକୁ ଦେଖୁ ଦେଖୁ ସେ ଉଠିପଡି ତା' ଡେଣାଧରି ଧାନବିଲ ଆଡକୁ ମୁହାଁଇନେଲେ, "ଦେଖ୍ ଦେଖ୍ । କେମିତି ଆମ ଘର ସିଧା ନୂଆ ବାଟ ଫିଟିଗଲା । ଆଉ ଏଣିକି ବୁଲାଣିରେ ତତେ ଯିବାକୁ ହେବ ନାହିଁ । ସିଧା ଏଇ ବାଟେ ବାହାରିଯିବୁ ।"

ମଦନ ଦେଖିଲା ଯେ ତାଙ୍କ ଘର ସାମ୍ନାରେ ଥିବା ବଡ ଧାନ କିଆରିଟାକୁ ଦି'ଭାଗ କରି ମଝିରେ ଗୋଟେ ନୂଆ ହୁଡା ସେମାନେ ଟେକୁଛନ୍ତି । ସେଇଟା ତାଙ୍କ ଦୁଆରମୁହଁର ଠିକ୍ ସାମ୍ନାସାମ୍ନି ।

ମଦନ ବି ଖୁସି ହୋଇଗଲା । ଚାହିଁରହିଲା ଘଡିଏ । ସେମାନେ କୋଡି କାଦୁଅରେ ମାଟି କାଟି ହୁଡା ଗଢୁଥାନ୍ତି ।

ଘରକୁ ଉଭୟ ବାପପୁଅ ଫେରିଆସିଲେ । ନୂଆ କଣ ସାର୍ଥକତା ଜୀବନରେ ଉଇଁଆସିଲା ପରି ସେମାନେ ଅନୁଭବ କରୁଥିଲେ । ନୂଆ ଭାଗ୍ୟ ଫିଟିଗଲା ସତେବା । ବର୍ଷାଦିନେ ଆଉ କାଦୁଅରେ ପଶିବାକୁ ହବ ନାହିଁ; ହେଲେ ମାଟିହୁଡାଟା ଯେ କାଦୁଅ ହବ, ଏ କଥା ତାଙ୍କ ମନକୁ ସେ ଦିନ ଆସୁ ନଥାଏ ।

ଶୋଇବା ପର୍ଯ୍ୟନ୍ତ ସେମାନେ ନୂଆ ହୁଡା କଥା ବାରମ୍ବାର ମନେ ପକେଇ ପୁଲକିତ ହଉଥାନ୍ତି । ସତେବା, ବନ୍ଧ ବନ୍ଧା ହୋଇଗଲା । ସତେବା ମଦନ ପାଇଁ ଗୋଟାଏ ନୂଆ ମାର୍ଗ ଫିଟିଗଲା । ଡେଣିକି ହୁଏତ ନୂଆ ଭାଗ୍ୟ ନେଇ ସେ ନୂଆ ରାଜ୍ୟରେ ପହଞ୍ଚିବ । ସୂର୍ଯ୍ୟ ଉଇଁବାର ଦିଗ ବଦଳିବ ନାହିଁ ସତ; କିନ୍ତୁ ପୋଖରୀହୁଡା ପଛଆଡୁ ସେ ଉଇଁବାକୁ ବାଧ ହେବନାହିଁ ।

ତିନିଦିନ ଲାଗିଲା ନୂଆ ହୁଡାଟା ତିଆରି ହବାପାଇଁ ।

କାମକଲା ଲୋକ ମଦନଘରକୁ ଆସି ତା' ବାପାଙ୍କୁ କହିଲେ, "ଏଇଟା ଆପଣଙ୍କ ପାଇଁ ହେଲା ଗୋସେଇଁ ମହାପ୍ରୁ! ଆପଣ ଏଣିକି ଘରୁ ବାହାରିଲେ ଏଇ ବାଟେ ହାଟ ବଜାର ମନ୍ଦିର ଯିବେ ।"

ମଦନର ବାପ ଖୁସି ହେଇ ସେମାନଙ୍କୁ ଧୂଆଁ ଖାଇବାକୁ ପଇସା ଦେଇପକେଇଲେ । ସେଥିପାଇଁ ଦି'ପଦ ଗାଳି ଶୁଣିବାକୁ ହେଲା ଘରଣୀଙ୍କଠୁ – "ରଜାଘର କ୍ଷେତରେ ହୁଡା ପଡିଲା – ତେମେ କାଇଁ ଏମିତି ଉଷତ ହେଇ ଦାତାପଣ ଦେଖେଇହଉଚ ? ଏଠି ନ ହେଲେ ଆଉ କୋଉଠି ହୁଡା ଟେକିଥାନ୍ତେ ।"

– "ସେଇ କଥା ତ ! ଆଉ କୋଉଠି ନ ହେଇ ଏଇଠି କାହିଁକି ହୁଡାଟିଏ ପଡିଲା ? ଠିକ୍ ଆମ ଘର ସାମ୍ନା ? ଏଥିରେ ଖୁସି ହେବାର ନାହିଁ ? ମୁଁ ସେଥିପାଇଁ ଆଠ'ଣା ପଇସା ଦେଇଦେଲି, ସେମାନଙ୍କ ଧୂଆଁ ଖର୍ଚ୍ଚକୁ । କଣ ମନ୍ଦ କଲି ଯେ ତୁମେ ମୋତେ ଝିଙ୍ଗାସି ଦେଇଯାଉଛ ?"

ମୋଟାମୋଟି ଭାବରେ ଘରେ ସମସ୍ତେ ବୁଝିଗଲେ ଯେ ଏଇଟା ତାଙ୍କ ପାଇଁ ଏକ ବିଶେଷ ଅନୁଗ୍ରହ ହେଲା ପ୍ରଭୁଙ୍କର । ନହେଲେ ଘର ଆଗରେ ଏମିତି ନୂଆ ବାଟଟାଏ କଣ ଫିଟିଯାଇଥାନ୍ତା ? ତେଣିକି ସତକୁ ସତ ମଦନ ରାଜରାସ୍ତା ଭୁଲିଗଲା । ସେଇ ହୁଡାବାଟେ ଯିବା-ଆସିବା ପ୍ରତିଦିନ ତା'ର ବାଙ୍କ ମୋଡ, ଉଚ୍ଚ ନୀଚ ସାଂଗେ ପରିଚୟ ତାକୁ ଅତି ଆପଣାର କରିଦେଲା । ମନେହେଲା ହୁଡାଟା ତାଙ୍କ ଘରର ଡେମ୍ଫ । ଡେମ୍ଫ ଛିଣ୍ଡିଗଲେ ଫୁଲ ମଉଳିଯିବ । ଆଖି ବୁଜିଦେଲେ ସୁଦ୍ଧା ମଦନ ଏ ମୁଣ୍ଡରୁ ସେ ମୁଣ୍ଡ ଚାଲିଯାଇପାରିଥାନ୍ତା; ହୁଡାରୁ ପାଦ ଖସି ନ ଥାନ୍ତା ଥରେହେଲେ ।

ଧାନବିଲ ବେଉଷଣ ସମୟରେ କାଦୁଅ ହେଲା ବେଳେ, ସମତୁଲ କରିବାକୁ ମଇ ଚାଲିଲା ବେଳେ ହୁଡା ଉପରକୁ କାଦୁଅ ଆସିଯାଏ । ସେତେବେଳେ ମଦନ ବିନା ଜୋତାରେ ଟିପେଇ ଟିପେଇ ପାରିହୋଇଯାଏ । ଆଉ ମୁଣ୍ଡେ ଘାସ ଉପରେ ପାଣି ଚବକାରେ ଗୋଡ ଧୋଇ ଆଗକୁ ଚାଲିଯାଏ ।

ବାଉଁଶ ତଳେଇ ମୁଣ୍ଡେଇ ଧାଡି ଧାଡି ମୁଲିଆଣୀ ଧାନ ପଲାହ ରୋଇବାର ଦୃଶ୍ୟ ସେ ପିଣ୍ଡା ଉପରେ ଥାଇ ଦେଖେ । ମନ ହୁଏ କାଦୁଅରେ ପଶିଯିବାକୁ । ବର୍ଷାରେ ତିନ୍ତି ଯିବାକୁ । ବାପାଙ୍କ ବାରଣକୁ ଅମାନ୍ୟ କରିପାରେ ନାହି । ତଥାପି କୋଉ ଛୁଅରେ ପିଛାଧରି ହୁଡାବାଟେ ବଜାର ବାହାରିଯାଏ । ପାଖରୁ ଧାନ ଗୁଆ ଦେଖିବାକୁ ।

ଧାନଗଛ ଶୁଆପଖିଆ ରଂଗ ଧରି ଉଠିଆସେ । ପବନରେ ଲହରି ମାରେ । ଦେଖୁ ଦେଖୁ ତା'ର ଆଁଶୁଆଁଶୁଆ ପତ୍ର ହୁଡା ଉପରେ ଲୋଟିପଡେ । ଧାନ ଗର୍ଭ ଛାଡି ଫୁଲ ଧରେ । ଗଛମୂଳେ ଠିଆପାଣି । ଧାନଫୁଲ ଖାଇ ଦଳ ଦଳ କେରାଣ୍ଡି ଦଣ୍ଡିକିରି ମାଛ ଖେଳିଯାନ୍ତି । ମଦନ ଗଲା-ଆସିଲାବେଳେ ତାକୁ ଦେଖେ । ପାଦ ପଡୁଥାଏ ଅଭ୍ୟାସରେ ହୁଡା ଉପରେ ।

କାଦୁଅ ଛାଡିଯାଏ । ଧାନବିଲରୁ ପାଣି ନିଗିଡିଯାଏ । ଧାନଗଛ ଫଳଭାରରେ ଶୋଉଥାଏ । ଦିନେ କାକର ସକାଳୁ ଲୋକେ ଲାଗିଯାନ୍ତି ଧାନ କାଟିବାରେ । ଥୁଣ୍ଟା ନଡା ଚରିବାକୁ ସେ ଅଲକ୍ଷଣିଆ କିଆରିରେ ଗୋରୁଗୋଠ ପଶିଯାନ୍ତି । ସେଇଠି ଅଗି ପୋଡାହୁଏ । ସେଇଠି ପୁଣି ବର୍ଷାକୁ ଆଶା କରି କିଆରି ନିର୍ଧୂମ ଖରାରେ ଫଡାଫଡା ହେଇ ଫାଟି ଆକାଶକୁ ଅନାଏଁ । ମଦନର ଚେତନାରେ ଏମିତି ଋତୁଚକ୍ର ଘୂରିଆସେ । କିଆରିର ରୂପ ରଙ୍ଗ ବଦଳୁଥାଏ । ହେଲେ ସେ ହୁଡାଟି ଯେମିତି ସେମିତି ଲମ୍ବିଥାଏ ମଦନର ଦୁଆରମୁହଁରୁ ପୃଥିବୀର ସେମୁଣ୍ଡ ଯାଏଁ ।

ଦିନର ସଂଜବେଳେ ଜଣେ ପୁଲିସ୍ ବାବୁ ସେଇ ହୁଡା ଦେଇ ପାଖେଇ ଆସିଲେ । ତାଙ୍କ ପଛରେ ମୋଟିଆ ବାକ୍ସ ବେଗ୍ ଧରି ଆସିଲା । ମଦନଘର ସମସ୍ତେ ଦାଣ୍ଡଦୁଆର ପାଖରେ ଜମିଯାଇଥିଲେ ।

ଦେଖାଗଲା ସେ ମଦନର ବଡଭାଇ । ସାହିଯାକ ଲୋକେ ଯେ ଯାହା ଦୁଆରେ ଦେଖୁଥିଲେ । ସେ ଠପ୍ ଠପ୍ ପିଣ୍ଡାକୁ ଉଠିଆସିଲା । ମଦନର ଖୁସି କହିଲେ ନ ସରେ ।

ଆଉ ଦିନେ ମଦନ ଦାଣ୍ଡପିଣ୍ଡାରେ ମାଗିଆଣିଥିବା ବହି ଧରି ବେଳବୁଡେ ପଢୁଛି ।

ସେଇ ହୁଡାବାଟେ ଫେରଖୋସା ଧୋତି ଆଉ ମସିଆ ଗାମୁଛାରେ ଜଣେ ଥନ୍ତଲାପେଟା ସାବ୍‌ନା ରଙ୍ଗର ମଣିଷ ଆସି ଦୁଆରେ ଠିଆହେଲେ । ତାଙ୍କ ଆଖିଯୋଡିକ କୋଳି ପରି ଗୋଟାଳିଆ ଆଉ କାଚ ପରି ଝଲମଲ । ଛୋଟ ଛୋଟ ସୁସଜ୍ଜ ପାଚିଲା ଦାନ୍ତ । କାଖରେ ଏଡେବଡ ବଟୁଆ ।

ସେ ଅଳ୍ପ ହସି ମଦନକୁ ଚାହିଁଲେ । ଚେହେରାରୁ ଅନୁମାନ କରିନେଲେ । ପଚାରିଲେ, "କହିଲୁ ପୁଅ, ମୁଁ କିଏ ?"

ମଦନ ମୁହୂର୍ତ୍ତକେ କହିଦେଲା, "ତମେ ପରା ମାମୁ ।"

ସେ ତାଟକା ହେଇ ତାକୁ ଚାହିଁଲେ । ପିଣ୍ଡାରେ ବସିପଡି କହିଲେ, "ହଇରେ, ତୁ ମତେ ଜନ୍ମରୁ ଦେଖିନାହୁଁ । କେମିତି ଚିହ୍ନିଦେଲୁ ଦେଖୁ ଦେଖୁ ?"

ତାଙ୍କ କଥା ଶୁଣି ମଦନର ମା' ଆସି ପହଞ୍ଚିଗଲେ ।

ମାମୁ କହିଲେ, "ବୁଝିଲୁ ନାନି, ତୋର ଏ ପୁଅଟା ବୃହସ୍ପତି ପରି ବିଚକ୍ଷଣ ହେବ ।" ମଦନ ମାମୁଙ୍କ କଥା ଶୁଣି ବିହ୍ୱଳ ହୋଇଯାଉଥିଲା ।

କିଛିଦିନ ପରେ ମାମୁଙ୍କ ଓସାର ପିଠି, କାତୁଆ ମୁଣ୍ଡ, ବାଁ କାନ୍ଧରୁ ଓହଳିଥିବା ବଟୁଆ ଘୁଞ୍ଚିଗଲା ଦୂରକୁ ସେଇ ଅଙ୍କା-ବଙ୍କା ହୁଡା ଉପରଦେଇ ।

ଦାଢିଆ ଅଜା ବି ଆସିଲେ ଶୀତକୁ । କମ୍ବଳଟିଏ ଘୋଡେଇ ହୋଇ ସେ ପଛକୁ ଚାହିଁ ଚାହିଁ ଚାଲିଗଲେ । ଆଉ ଫେରିଲେ ନାହିଁ ।

ବର୍ତ୍ତମାନକୁ ଭବିଷ୍ୟତ ସାଙ୍ଗରେ, ସସୀମକୁ ଅସୀମ ସାଙ୍ଗରେ ଯୋଡୁଥିବା ଏ ହୁଡାଟି ମଦନର ଜୀବନରେ ଏକ ବିଶିଷ୍ଟ ଅଙ୍ଗ ହୋଇ ଚାଲିଥାଏ ।

ସେଇ ବାଟେ ସେ ନୂଆ ଜୋତା ପିନ୍ଧି କଲେଜରେ ପଢିବାପାଇଁ ଗଲା । ଆରମୁଣ୍ଡରୁ ଫେରି ଚାହିଁଥିଲା । ଦୁଆରମୁହଁରେ ବାପା, ମା, ଭଉଣୀ ଠିଆହେଇଥାନ୍ତି ତା' ଉପରେ ନିଘା ରଖି ।

କଲେଜରେ ତା'ର ଶେଷ ବର୍ଷବେଳକୁ ଭଉଣୀ ଉମାର ବାହାଘର ହେଲା । ଭୋଜିଭାତ ପରେ ତାକୁ ସେମାନେ ସକାଳୁ ଖଣ୍ଡେ ଧଳାରଙ୍ଗର ଗାଡିରେ ବସାଇ ନେଇଗଲେ । ଉମା ପଶ୍ଚିମମୁହାଁ ରାଜରାସ୍ତା ଆଡେ ଚାଲିଗଲା । ହୁଡାଟି ଚାହିଁରହିଥିଲା ବୋଧହୁଏ କୁନି କୁନି ପାଦରେ ଯେଉଁ ଝିଅଟି ତା' ଉପରେ ଡେଇଁ ଡେଇଁ ଯିବା-ଆସିବା କରୁଥିଲା ସେ ଏଥର ଗଲାବେଳେ ତା' ଆଡେ ଚାହିଁଲା ସୁଦ୍ଧା ନାହିଁ । କେଜାଣି, ଗାଡିର କାଚବାଟେ ସେ ହୁଏତ ଚାହୁଁଥିଲା । ଝରଝର ଲୁହରେ ଓଦା ଦିଶୁଥିଲା ସେ ହୁଡାଟି । ମଦନ କାନପୁରରେ ଚାକିରି କରିବାର ବର୍ଷକ ପରେ ତା' ଜୀବନରେ ମେରୁକଣ୍ଡି ସବୁ ଛିଣ୍ଡିପଡିଲେ ।

ବୈଶାଖ ମାସ ଗୁଡ୍ରାନ୍ତ ବେଳାରେ ସେଇ ହୁଡାଦେଇ ବାପାଙ୍କ କୋକେଇ କାନ୍ଧେଇ ମଦନ ଆଉ ତା' ବଡଭାଇ ମଶାଣିକୁ ଯାଉଥିଲେ; ଶୁଖିଲା ହୁଡା ଉପରେ ଖାଇ ବୁଣି ହୋଇ ରହିଥିଲା କ୍ରିୟା ସାରି ଫେରିବା ପର୍ଯ୍ୟନ୍ତ ।

ମନେହେଲା ସେ ଛୋଟ ତିନିବଖୁରି ଘରଠାରୁ ଦି'ଟା କାନ୍ଥ ଧସିଗଲା । ନୀରବ ଲୋକଗହଳି

ଭିତରେ କେତେ ନିଛାଟିଆ ଲାଗୁଥିଲା ସେ ଘର ।

ମଦନ ଦାଣ୍ଡପିଣ୍ଡାରେ ସଞ୍ଜବେଳଯାଏଁ ଆଗକୁ ଆଉ ଶୂନ୍ୟକୁ ଚାହିଁ ବସିଥିଲା । ଆଖିରୁ ପାଣି ଝରିଯାଉଥିଲା ଆପଣାଛାଏଁ । ମା'କୁ ଯେତେ ବୁଝେଇଲେ ବୁଝିଲା ନାହିଁ । ଲୁହରେ ବତୁରିଗଲା ଦିନୁ ଦିନ । ଫୁଟା ଡଙ୍ଗାଟିଏ ପରି ଲୁଣି ସମୁଦ୍ରରେ ଟଳମଳ ହେଲା । ସେଇ ବର୍ଷ ଶୀତକୁ ସମସ୍ତଙ୍କୁ କେବଳ ଥରଟେ ବଲବଲ ଅନେଇ ଦେଇ ମା' ଆଖି ବୁଜିଦେଲା । ବର୍ଷା ପାରି ହେଇ ଯାଉଥିଲା । ଧାନକ୍ଷେତରେ ଫସଲ ପୁଣି ଭରିଆସିଥିଲା । ମା'କୁ ଧାନପତ୍ର ଉପରେ ପାଦ ଥାପି ଥାପି ଦୁଇ ଭାଇ କୋକେଇରେ କାନ୍ଧେଇ ନେଇଗଲେ ।

ବାପାଙ୍କ ଜୁଇ ଦାଗ ପୋଡା ମାଟି ଉପରୁ ଲିଭି ନଥିଲା । ସେଇଠି ମା'କୁ ସେମାନେ ଦାହ କରିଦେଇ ଫେରିଲେ । ସେ ରାତିରେ ପ୍ରବଳ ଶୀତର ନାହିଁ ନ ଥିବା ପ୍ରକୋପ । ମଞ୍ଜ ଥରିଯାଉଥାଏ । ଧସିଯାଇଥାଏ ସବୁ କାନ୍ଥ ସେ ଛେଉଣ୍ଡ ଘରଠାରୁ । ମଦନ ଭାଇ ଭାଉଜଙ୍କଠୁ ବିଦାୟ ମାଗିଲାବେଳେ କେଜାଣି କାହିଁକି ତା' ପାଦତଳିପା ଶିରଶିର କରୁଥିଲା । କାନମୁଣ୍ଡା ଭାଁ-ଭାଁ ଡାକୁଥିଲା ।

ଲାଗୁଥିଲା ସତେବା "ସରିଯାଉଛି ରେ ଏହିଠାରୁ ମନୋରଥ ।" ଆଉ ହୁଏତ ଦେଖାହେବ ନାହିଁ । କିନ୍ତୁ କାହିଁକି ? – ସେ ସେତେବେଳେ କହି ପାରି ନ ଥାନ୍ତା କାନପୁରରେ ତାକୁ ଆଉ ଏକ ସମୁଦ୍ର ଘେରିଗଲା ।

କ'ଣ ଘଟୁଛି ବୋଲି ବୁଝିବା ପୂର୍ବରୁ ତାକୁ କାନାଡା ଯିବାପାଇଁ ଟଲବ ଆସିଗଲା । କମ୍ପାନୀ କାମ । ଆଗ ପଛ ବିଚାରିବାକୁ ବେଳେ ନାହିଁ ।

ଭାଇକୁ ଟେଲିଗ୍ରାମ କରି ସେ ଉଡିଚାଲିଗଲା ସାତ ସମୁଦ୍ର ସେପାରିକୁ । ତାକୁ ତଥାପି ମନେହେଉଥିଲା ଯେ ତାଙ୍କ ପୁରୁଣା ଘର ଆଗରେ ସେ କ୍ଷେତ ହୁଡାଟି ଏମିତି ଅନନ୍ତ ଆକାଶ ଭେଦ କରି ତାକୁ ନେଇଯାଉଛି କାହିଁ କୁଆଡେ । ଯାତ୍ରା ମାନେ ତ ସେଇ ହୁଡା ପାରିହେବା । ଜଣା ରାଜ୍ୟରୁ ଅଜଣା ରାଜ୍ୟକୁ । ସେତେବେଳକୁ ଢେର୍ ନୂଆ କଥା ହୋଇଯାଉଥିଲା ।

ଭାରତ ସ୍ୱାଧୀନ ହୋଇଯାଉଥିଲା । ରାଜୁତା ଶାସନ ସରିଯାଇଥିଲା । ଭାଇ ଚିଠି ଲେଖିଥିଲା ଯେ ତାଙ୍କ ଘର ସାମ୍ନାର କ୍ଷେତ ସରକାରୀ ଜମି ହେଇଗଲା । ଏଣିକି ସେଇଠି ଆଉ ଧାନବିଲ ରହିବ ନାହିଁ ।

ତା'ହେଲେ କଣ ରହିବ ? ଧାନକ୍ଷେତ ନ ରହିଲେ ସେ ହୁଡା ରହିବ କେମିତି ? କାନାଡା ତାକୁ ଥୋପ ଗିଳେଇଲା ପରେ ଏମିତି ଢୋକି ଦବ ବୋଲି ସେ ଜାଣି ନଥିଲା । ସେଇଠି ମଦନମୋହନ ଷଡଙ୍ଗୀ ହୋଇଗଲା ଏମ୍.ଏମ୍.ଷରଙ୍ଗୀ । ଖୁବ୍ କ୍ଷମତା, ପ୍ରତିପତ୍ତି, ସମ୍ମାନ । ପଇସା ଅଜାଡି ହଉଥିଲା ଚାରିମୁହଁରୁ । ସେ ଥଳକୂଳ ପାଉ ନ ଥିଲା । ଭାଇ ନାଁରେ ଢେର୍ ଟଙ୍କା ପଠାଇଲା ଦି'ବର୍ଷ ।

ତା'ପରେ ଆଲୁଅ ଅନ୍ଧାର ଭିତ ଭିତରେ କେତେବେଳେ ଆଲିସ୍ ତା' ବଳୟ ଭିତରକୁ ଚାଲିଆସିଲା । ସେ ଟାଣିହୋଇଗଲା ସେ ଭଦ୍ର, ଉଦାର ବିତଶାଳୀ କାନାଡିଆନ ପରିବାରକୁ ।

ଭାଇ ଲେଖିଲା ଦେଶକୁ ଫେରିଯିବା ପାଇଁ, ସେଇଠି ଭଲ ଝିଅଟିଏ ଦେଖି ବିଭା ହବାପାଇଁ। ମଦନ ଉତ୍ତର ଦେଇପାରିଲା ନାହିଁ। ତା'ର ସାହସ ହେଲା ନାହିଁ। ଭାଇ ପୁଣି ଲେଖିଲା ତା' ବିଭାଘରକୁ ଯିବାପାଇଁ। ମଦନ ଲକ୍ଷେ ଟଙ୍କା ପଠାଇଦେଲା; କିନ୍ତୁ ଗଲା ନାହିଁ, ଯାଇପାରିଲା ନାହିଁ।

କାନାଡାରେ ତା' ଚେର ବୁଡିଗଲା ଗହୀରରୁ ଗହୀରକୁ। ଆଲିସ୍‌କୁ ସେ ଖ୍ରୀଷ୍ଟିଆନ୍ ପ୍ରଥାରେ ବିଭା ହେବା ଦିନ ଅନେକ ଭାରତୀୟ ଆସିଥିଲେ ନିମନ୍ତ୍ରଣରକ୍ଷା କରି।

ସେମାନେ ସମସ୍ତେ ପ୍ରାୟ ତାରି ଭଳି କିରାତ ଜାଲରେ ପଡିଥିବା କପୋତ ପରି ଦେଖାଯାଉଥିଲେ। ସମସ୍ତେ ପୋଷାକପତ୍ର, ଚଲିଚଳଣି, କଥାବାର୍ତ୍ତାରେ ବାରି ହେଉ ନଥିଲେ ସେଠିକା ବାସିନ୍ଦା ଗହଣରେ। ଏମ୍.ଏମ୍.ସାରଙ୍ଗୀକୁ ସମସ୍ତେ ବଧେଇ ଜଣେଇ ଚକଚକ କରୁଥିବା ଗାଡିମାନଙ୍କରେ ଚାଲିଗଲେ। ନିଜେ ମଦନ ନୂଆ ଗାଡିରେ ଆଲିସକୁ ନେଇଆସିଲାବେଳେ ଆଲିସ ପରିବାର ହାତ ହଲେଇ ବିଦାୟ ଦେଉଥିଲେ। ଦୁଇଶହ କିଲୋମିଟର ମସୃଣ ରାସ୍ତା ପାରିହୋଇଗଲା ସେ ଗାଡି, ଅବାଧ ଆକାଶରେ ତୀର ପାରିହେଲା ପରି। ସନ୍ଧ୍ୟାର ପ୍ରଥମ ପ୍ରହରରେ ସେମାନେ ତାଙ୍କ ନିଜ ବଙ୍ଗଳାରେ ପହଞ୍ଚିଥିଲେ। ସେ ଅଞ୍ଚଳର ମାନ୍ୟଗଣ୍ୟ ଅତିଥି ଅପେକ୍ଷା କରିଥିଲେ। ଗୋଛା ଗୋଛା ଫୁଲ ଅଭିନନ୍ଦନ ଉଷ୍ଣମ କରମର୍ଦ୍ଦନ। ନୈଶ ଭୋଜି ଆଉ ନାଚର ମହୋତ୍ସବ ଭିତରେ ରାତି ଗଭୀର ହୋଇଚାଲିଲା।

ମଦନ ତା'ପରେ ମଜ୍ଜିଗଲା ଏକ ଅଭିନବ ଜୀବନପ୍ରବାହରେ। ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ଗୁନ୍ଥି ହୋଇ ରହିଥିଲା ଏକ କ୍ଷିପ୍ର କାମ ଯୋଜନା ଭିତରେ। ଭାବିବାକୁ, ପଛକୁ ଲେଉଟି ଚାହିଁବାକୁ ବେଳ ନ ଥିଲା। ତଥାପି ଗାଡିରେ ରାସ୍ତା ପାରିହେଲାବେଳେ, ନଗରରୁ ନଗରକୁ ଆକାଶମାର୍ଗରେ ଉଡିଗଲାବେଳେ ମଝିରେ ମଝିରେ ମେଘ ଫାଙ୍କରେ ଆକାଶ ଦିଶିଗଲା ପରି ତା'ର ଅତୀତ ଫେରିଆସୁଥିଲା। ସେ ଜାଣିଶୁଣି ମେଘକୁ ଓଟାରି ଆଣି ତାକୁ ଘୋଡେଇଦଉଥିଲା।

ଏମ୍.ଏମ୍.ସାରଙ୍ଗୀ ବିରାଟ କୋଟିପତି। ଗୋଟିଏ ମିନିଟ୍‌ରେ ଲକ୍ଷେ ଡଲାର ଉପାର୍ଜନ କରୁଥିବା ଏକ ବିଶାଳ ଶିଳ୍ପ ସାମ୍ରାଜ୍ୟର ସେ ମାଲିକ। ସେଥିରେ ସେ ମଜ୍ଜିରହିଥିଲା।

ପ୍ରବାହ ଉପରକୁ ମୁଣ୍ଡ ଟେକି ଚାହିଁଲାବେଳକୁ ତା' ବଡପୁଅ ଶୋଭନ୍ ଇଞ୍ଜିନିଅରିଂ କରିବାକୁ ବିଦେଶ ଯିବ। ସାନପୁଅ ସୁମନ୍ ଯିବ ବ୍ୟବସାୟରେ ଅଷ୍ଟ୍ରେଲିଆ। ଆଲିସ୍ ତା' ଆୟତ୍ତରେ ସେ ବିଶାଳ ସାମ୍ରାଜ୍ୟର ଗୋଟିଏ ବଡଭାଗ ସମ୍ଭାଳି ରହିଛି। ତାକୁ ବେଳ ନାହିଁ ସପ୍ତାହରେ ଥରେ ମଦନକୁ ଫୋନ କରିବାକୁ। ଶୋଭନର ଝିଅ ସାଙ୍ଗ ଅନେକ।

ସେ ସ୍ଥିର କରିସାରିଲାଣି କାହାକୁ ବାହା ହେବ। ସୁମନ ବି ଫୁର୍ତ୍ତି କରିଚାଲିଛି ଅଜସ୍ର ଧନ ବିନିମୟରେ।

ମଦନ ରାତିରେ ଦିନେ କ୍ଲବ୍‌ରୁ ଫେରିଆସି ନିତାନ୍ତ ଅସହାୟ ଏବଂ ଏକାକୀ ବୋଧ କଲା।

ସାଙ୍ଗେ ସାଙ୍ଗେ ଆଲିସ୍‌କୁ ଫୋନ୍ କଲା । କହିଲା ତାକୁ ଭଲଲାଗୁନାହିଁ । ବୋଧହୁଏ ସେ ଅସୁସ୍ଥ ହୋଇଯାଇପାରେ । ଆଲିସ୍‌କୁ ସକାଳ ଫ୍ଲାଇଟ୍‌ରେ ଚାଲିଆସିବାକୁ ଅନୁରୋଧ କଲା । ଆଲିସ୍ ତାକୁ ଥଟ୍ଟାରେ ଉଡାଇଦେଲା । "ଆରେ ବୋକାଙ୍କ ପରି କଣ ଏମିତି କହୁଚ ? ଏଗୁଡା ସବୁ ତୁମର ଇଣ୍ଡିଆନ୍ ସେଣ୍ଟିମେଣ୍ଟ୍ । ଦେଖ, ମୋର କାଲି ଏଠି ଖୁବ୍ ଜରୁରୀ କନ୍‌ଫରେନ୍ସ । ମୁଁ ଜମା ଆସିପାରିବି ନାହିଁ । ମୁଁ ବରଂ ଏଠୁ ଆମ ଫେମିଲି ଡକ୍ଟରକୁ ଫୋନ୍ କରିଦଉଚି । ସେ ସକାଳୁ ତୁମକୁ ଦେଖାକରିବେ ।"

ମଦନ ଯୁକ୍ତି କରିବାକୁ ଚାହିଁଲା ନାହିଁ । ଜାହିର କରିବାକୁ ଚାହିଁଲା ନାହିଁ । ଏକାକୀ ଚୁରୁଟ୍‌ଟିଏ ଟାଣି ସୋଫାରେ ବସି ରହିଲା ବହୁତ ରାତିଯାଏ । ତା'ର ମନେପଡିଲା କେମିତି ତାକୁ ଜର ହେଲେ ମା' ତା' ଖଟ ଉପରେ ବସି ତା' ମୁଣ୍ଡଟିକୁ କୋଳରେ ତୋଳିନଉଥିଲା । ଆଉଁସି ଦଉଥିଲା । ସେତିକିରେ ଜର ଉଣା ହେଇଯାଉଥିଲା ।

ତା'ପର ଦିନଠୁ ମଦନ କେମିତି ହଜିଲା ହଜିଲା ଆଖିରେ ସମସ୍ତଙ୍କୁ ଅନେଇଲା । ଦାୟିତ୍ୱ ବାଣ୍ଟିଦେଲା ଅନ୍ୟମାନଙ୍କୁ । ନିଜେ ଲାଇବ୍ରେରୀରେ ବସି କଫି ତିଆରି କରି ଖାଇଲା । ଚୁରୁଟ୍ ଶୋଷିଲା ଦିନସାରା ।

ମଝିରେ ମଝିରେ ଆଲିସ୍, ଶୋଭନ, ସୁମନ୍ ଫୋନ୍ କଲେ । କଥାବାର୍ତ୍ତା ହେଲେ । ପଇସାପତ୍ର କଥା ପଡିଲେ ମଦନ କେବଳ ସେମାନଙ୍କ ପ୍ରସ୍ତାବକୁ ବିନା ଯୁକ୍ତିରେ ମାନିନେଲା । ସେମାନେ ସାମାନ୍ୟ ଚକିତ ହେଲେ ନିଶ୍ଚୟ; କିନ୍ତୁ ତା' ଅପେକ୍ଷା ବେଶୀ ଆମୋଦିତ ହେଲେ, ଖୁସି ହେଲେ । ମଦନ ହଠାତ୍ ସେମାନଙ୍କୁ ଭାରତ ଯିବାକୁ ପ୍ରସ୍ତାବ ଦେଲା । ଆଲିସ୍ କହିଲା ସେ ଅତ୍ୟନ୍ତ ଖୁସିରେ ଯାଇଥାନ୍ତା ଯେ, ଏବେ ତା'ର ଗୁଡାଏ ଜଞ୍ଜାଳ ହାତରେ ଅଛି । ତାକୁ ନ ତୁଟେଇଲେ ସେ ଜମା ଘୁଞ୍ଚିପାରିବ ନାହିଁ ।

ଶୋଭନ ସେମିତି କହିଲା ତା'ର ପ୍ରେମିକା ଓ ତା'ର ଭାବୀ ପତ୍ନୀ ସହିତ ଭାରି ଗୁରୁତ୍ୱପୂର୍ଣ୍ଣ କଥାବାର୍ତ୍ତା ଚାଲିଛି । ଜୀବନର ଏ ଘଡିସନ୍ଧି ମୁହୂର୍ତ୍ତରେ ସେ କେମିତି ଭାରତ ଯାଇପାରିବ – "ଡାଡି ଏଇଟା ଏକେବାରେ ଅସମ୍ଭବ ।" ସୁମନ ପ୍ରସ୍ତାବ ଶୁଣୁ ଶୁଣୁ ଧେତ୍ କରିଦେଲା – "ହେଃ, ମୋର ଜମା ଇଚ୍ଛା ନାହିଁ, ତମ ଭାରତ-ଫାରତ ବୁଲିବା ପାଇଁ ମୁଁ ଜମା ଯାଇପାରିବି ନାହିଁ ।"

ମଦନ ସେମାନଙ୍କୁ କିଛି କହିଲା ନାହିଁ । ତା' ଆରଦିନ କେବଳ ଜଣାଇଦେଲା ଯେ, ସେ ସପ୍ତାହକ ପରେ ଭାରତ ଯାଉଛି ଏବଂ ଟିକେଟ୍ କିଣାସରିଛି ।

ମଦନ ଅନୁଭବ କଲା ଯେ, ସେ ଏଠି ନ ରହିଲେ କାହାରି କିଛି ଯାଏ-ଆସେ ନାହିଁ ।

ଦୁଆରମୁହଁରେ ଗାଡି ଠିଆ ହେଇଥାଏ । ସାରଙ୍ଗୀ ହାଉସ୍ ସେ ଅଞ୍ଚଳର ଏକ ଜଣାଶୁଣା ଦିଗବାରେଣି । ଭାରି ଇଜତ୍ । ମଦନ ପାହାଚ ଓହ୍ଲେଇ ଆସିଲା ବେଳକୁ ସୁମନ୍ ଆସି ପହଞ୍ଚିଗଲା । 'ହାଏ ଡାଡ୍ !' 'ହାଏ ସୁମନ୍ !' ସରିବା ପରେ ସୁମନ ଭାରି ବ୍ୟସ୍ତ ହୋଇ ଘର ଭିତରକୁ ପଶିଗଲା ।

ମଦନ ଆଉ ଦୁଇ ପାହାଚ ଓହ୍ଲେଇବା ଭିତରେ ଝଡପରି ବାହାରିଆସିଲା । ଥରକେ ଦୁଇ

ଦୁଇଟା ପାହାଚ ଡେଇଁ ଡେଇଁ ମଦନକୁ ପାରିହେଲାବେଳେ ପଛକୁ ନ ଚାହିଁ ବାଁ ହାତ ଟେକି 'ଟା ଟା ଡାଡି'! ହେଭ୍ ଏ ଗୁଡ୍ ଟାଇମ୍ ଇନ୍ ଇଣ୍ଡିଆ' କହି ବାହାରିଗଲା। ତଳେ ଅପେକ୍ଷା କରିଥିବା ତା' ସ୍ପୋର୍ଟିଂ କାରରେ ବସି ଆଖିପିଛୁଳାକେ ଉଭାନ୍ ହୋଇଗଲା। ଗାଡିରେ ଆଉ କିଏ ସବୁ ବସିଥିଲେ ଦେଖିବାକୁ ମଦନକୁ ତର ମିଳିଲା ନାହିଁ। ଚଷମା ଉପରକୁ ଧୂଆଁ ମାଡିଆସିଥିଲା।

ସଫର ଗାଡିର କବାଟ ଖୋଲି ଧରିଥାଏ। ମାଲିକ ଏମିତି ମାନ୍ଦା ଚାଲିବାର ସେ ବୋଧେ ଦେଖିନାହିଁ ଆଗରୁ। ଗାଡି ଭିତରକୁ ଯିବା ପୂର୍ବରୁ ମାଲିକ ଏମିତି ସାରଙ୍ଗୀ ହାଉସ୍‌କୁ ଥମ୍ ହେଇ ଚାହିଁରହିବାର ବି ସେ ଦେଖିନାହିଁ।

ଫ୍ଲାଇଟ୍ ସମୟ ପାଖେଇଆସୁଥାଏ। ଚାରି ପାଞ୍ଚ ମିନିଟ୍ ବିଳମ୍ବକୁ କାଟିବା ପାଇଁ ସେ ଅଭ୍ୟାସରୁ ଅଧିକ ଜୋର୍‌ରେ ଗାଡି ଚଳାଉଥାଏ। ମଦନ ବୁଝିପାରୁଥାଏ। ଓହ୍ଲେଇଗଲାବେଳେ ସେ ସଫର ହାତରେ ମୋଟା ଧରଣର ଅସାଭାବିକ ବକ୍‌ସିସ୍ ଗୁଞ୍ଜିଦେଲା। ତାକୁ ଚାହିଁ ଅଳ୍ପ ହସି ହଲେଇଦେଲା। ମୁହଁ ଫେରାଇ ଚାଲିଗଲା।

କଲିକତାର ପଞ୍ଚତାରକା ହୋଟେଲ। ରାତି କଟେଇ ତା' ଆରଦିନ ଭୁବନେଶ୍ୱର। ସେଇଠୁ କାର୍ ଯୋଗେ ଗାଁ।

ଗାଁମୁଣ୍ଡ ଛୁଇଁଲାବେଳକୁ ବେଳ ଗତଗତ। ସେ ତା' ଅଣାୟତ୍ତରେ ଗୋଟାଏ ଦୀର୍ଘ ଶ୍ୱାସରେ ପବନ ଶୋଷିନେଲା। ଝରକାବାଟେ କୌତୂହଳରେ ଅନେଇ ରହିଲା। ରାସ୍ତା ଆଗଭଳି ନିରୋଳା ନ ଥିଲା। ସମତୁଲ ନ ଥିଲା।

ମଦନର ମଞ୍ଜ ରହି ରହି ଥରିଯାଉଥିଲା। କେମିତି ସେ ପୋଖରୀହୁଡା ପାଖରୁ କାଦୁଆ ରାସ୍ତାକୁ ଓହ୍ଲେଇବ ? ଅବଶ୍ୟ ବର୍ଷାଦିନ ନୁହେଁ। ଶୁଖିଯାଇଥିବ ସବୁ।

କେମିତି ସେ ନୁଆଁଣିଆ ଖପରଲି ଘର ପାଖରେ ପହଞ୍ଚିବ ? କଣ କହିବ ଭାଇକୁ, ଭାଉଜକୁ ? ତା' ବୁକୁ ଦାଉଁଦାଉଁ ପଡୁଥାଏ।

ମଦନ କେବଳ ପୂର୍ବ ଧଡସରେ ବାଟ ବତେଇ ଚାଲିଥାଏ। କିନ୍ତୁ ଚିହ୍ନି ପାରୁ ନଥାଏ ସେ ସହରକୁ। କେତେ ଘର, କେତେ ଧୂଳି, କେତେ ଗହଳି ସତେ ସେ ଛୋଟ ସୁନ୍ଦର ସହରଟିକୁ ଗ୍ରାସି ଗଲାଣି।

ଏଇ ବୋଧେ ଶେଷ ମୋଡଣି। ଶିବମନ୍ଦିର ପାଖରେ ଡାହାଣକୁ। ଇସ୍, କେତେ ଛୋଟ ହେଇଯାଇଛି ସେ ମନ୍ଦିରଟି ଯା ଭିତରେ! ତା'ର ଆଖପାଖ କୋଠା ତାକୁ ଘୋଡେଇପକେଇଛନ୍ତି।

ଗାଡି ଚାଲିଛି। ମଦନ ଅନେଇରହିଛି ବାଁକୁ। କୋଉଠି ସେ ଧାନବିଲ ପଡିବ। ଦେଖୁ ଦେଖୁ କୋଠା ପରେ କୋଠା ପଡିଚାଲିଛି। ଡାହାଣେ ବି କୋଠା। ତା'ହେଲେ ପୋଖରୀ ହୁଡା କାହିଁ ?

ହୁଡା ଅଙ୍କ ଦିଶିଗଲା ଡାହାଣେ। ମଦନ ଧୀରେ ଗାଡି ଚଳେଇବାକୁ କହି ବାଁକୁ ଚାହିଁଥାଏ। ଦେଖୁ ଦେଖୁ ପୋଖରୀ ପାରିହେଇଗଲା।

– "ଆରେ ଆରେ, ଆଗେଇଗଲା ଅନେକ ବାଟ ଯେ ।" ସେ ଗାଡିକୁ ପଛେଇବାକୁ କହିଲା ।

ଦେଖିଲା ବାଁକୁ ଏକ ଉଷ୍ଣ ମୁରୁମ୍ ରାସ୍ତା ଦିଶୁଚି । ତା'ର ଦି ପାଖେ ଘର । ଏଇ କଣ ସେଇ କାଦୁଆ ରାସ୍ତା ଯାହା ଉପରେ ସେ ବର୍ଷ-ବର୍ଷଧରି ପୋଖରୀକୁ ଆସୁଥିଲା ?

ସେ ମହାଲିମ୍ବ ଗଛଟା କାହିଁ ?

ବାଁରେ ସେ ଧାନବିଲ କାହିଁ ? ଚିହ୍ନ-ବର୍ଣ୍ଣ ନାହିଁ ତା'ର ।

ତା' ଭିତରେ ବୁଡିରହିଥିବା ଗହୀର ସ୍ମୃତି ତାକୁ ବାଟ ଦେଖେଇ ନଉଥିଲା ।

ସେ ପ୍ରାୟ ଆଖିବୁଜିଲା ପରି ବସିଥିଲା । ଗୋଟେ ଜାଗାରେ କହିଲା, "ରୋକୋ ।" ଗାଡି ରହିଲା । ଦାମୀ ଗାଡି । ବଡ ଗାଡି ।

ସେ ସାହିଯାକ ଛୋଟ ବଡ କୋଠା । କୋଡିଏ ଫୁଟରେ ପଚିଶ ଫୁଟ ଡିହ ଉପରେ ଦୋତାଲା ଘର ଦେଖି ମଦନ ଚହିଁରହିଲା ସେଇଆଡେ ।

ଭାଇ ବୋଧେ ଏ କୋଠାଟା କରିଚି ।

ଜଣକୁ ପଚାରିଲା । ସେ କହିଲା, ମାଲିକ ନାହାନ୍ତି । ଏଇଟା ଭଡା ଲାଗିଛି । ତାଙ୍କ ନାଁ ରାମ ମୋହନ ଷଡଙ୍ଗୀ ।

ମଦନ କେବଳ ସେଇ ଘରଟାକୁ ଚହିଁ ଠିଆ ହେଇ ରହିଗଲା । ତାକୁ ଦିଶିଗଲା ସେ ଦାଣ୍ଡପିଣ୍ଡା, ନୁଆଣିଆ ଚାଳ । ପାନ ଖାଇ ବାପା ବସିଛନ୍ତି । କହୁଛନ୍ତି, ଆରେ ମଦନ ଦେଖ୍ ଦେଖ୍, କେମିତି ଆମ ଘରସିଧା ନୂଆ ବାଟ ଫିଟିଗଲାଣି... । ଯନ୍ତ୍ରପରି ମଦନ ଆସ୍ତେ ବୁଲିପଡିଲା । ତାକୁ ଦିଶିଲା କଣ୍ଟାବାଡଘେରା ସେ ଧାନବିଲ । ଆଉ କିଆରି ମଝିରେ ସେ ଅଙ୍କାବଙ୍କା ହୁଡା ।

କାନ ପାଖେ ବାପା, ଭାଇ, ମାମୁ ସମସ୍ତଙ୍କ ସ୍ୱର ଗୁଞ୍ଜରିଲା । ସେ ହୁଡା ପୁଣି ଜିଇଁଉଠିଲା ।

ସ୍ୱପ୍ନରେ ଚାଲିଲା ଭଳି ସେ ସେଇଆଡେ ଆସ୍ତେ ଆଗେଇଗଲା ।

ଗାଡିର ଡ୍ରାଇଭର ତାଜୁବ ହୋଇ ଅନେଇଥାଏ । ଏତେ ବଡଲୋକ । ଆମେରିକାରୁ ଆଇଚି । ଏମିତି କଣ ତା'ର ହେଇଗଲା ? କୁଆଡେ ଯାଉଛି ସେ ? କାହିଁକି ଆସିଚି ଏଠିକି ?

ପାହାଚରେ ଝୁଣ୍ଟିପଡି ମଦନର ସଂବିତ୍ ଫେରିଆସିଲା । ଆଖିକୁ ଦୃଷ୍ଟି ଫେରିଆସିଲା । ବଡ ବଡ ଅକ୍ଷରରେ ଲେଖା ହେଇଛି "ସାହୁ କ୍ଲିନିକ୍ । କାର୍ଡିଓଲଜିଷ୍ଟ ।" ଗାଡି ରହିବାବେଳୁ ସେମାନେ କୌତୁହଳରେ ଚହିଁରହିଛନ୍ତି ।

ପାହାଚ ପାଖରେ ଏତେବଡ ଗରାକକୁ ଦେଖି ବେକରେ ଷ୍ଟେଥୋସ୍କୋପ ଓହଳାଇଥିବା ଡାକ୍ତର ସାହୁ ହାତ ବଢେଇ ସ୍ୱାଗତ ଜଣାଇଲେ – "ହାଲୋ, ଆଇ ଏମ୍ ପରିମଲ୍ ସାହୁ । ଓ୍ୱେଲକମ୍ ।"

ମଦନ କୋଉ ଗହୀରରୁ କହିଲା, "ହାଲୋ ।"

ସେ ଛୋଟ କ୍ଲିନିକ୍‌ଟିର ଚୌକି ଉପରେ ଥକା ମାରି ବସିପଡିଲା । ତା' ମୁଣ୍ଡରୁ ଦେହରୁ ଝାଳ ବହିଯାଉଥିଲା ।

ଡାକ୍ତର ସାହୁ ତାଙ୍କ ବିଦ୍ୟାବୁଦ୍ଧି ଖଟେଇ ପରୀକ୍ଷା କରି ଲାଗିଲେ । କୌଣସି ଗୋଳମାଳ ତାଙ୍କ ନଜରକୁ ଆସିଲା ନାହିଁ ।

ପଞ୍ଝାତଳେ ଆଖି ବୁଜି କିଛି ସମୟ ବସିଲା ପରେ ମଦନ ଡାକ୍ତରଙ୍କୁ ଚାହିଁ ସାମାନ୍ୟ ଲଜ୍ଜିତ ହେଲା ପରି କହିଲା, "ଆଇ ଏମ୍ ସରି ଡକ୍ଟର, ଆଇ ବଦର୍ଡ ୟୁ ।"

ତା'ପରେ ପୁଣି ତା' ଭୂରୁ କୁଞ୍ଚେଇଲା । ସେ ଡାକ୍ତରଙ୍କୁ ପଚାରିଲା କ୍ଲିନିକ୍ ପଛରେ କଣ ଅଛି ଜାଣିବାକୁ ।

ଡକ୍ଟର କହିଲେ – "କିଛି ନାହିଁ, ପୁରୁଣା ଅନାବାଦୀ ସରକାରୀ ଜମି ପଡ଼ିଚି । ଏକଦା ଏଇଠି ଧାନବିଲ ଥିଲା ।"

ମଦନ ଧଡପଡ ହେଇ ଉଠିପଡି ତାଙ୍କୁ ଅନୁରୋଧ କଲା ବାଡିପଟ ଦେଖାଇବାକୁ । ଡାକ୍ତର ବିସ୍ମିତ ହେଲେ । ବିରକ୍ତ ବି ହେଲେ; କିନ୍ତୁ ଏତେ ବଡ ଗରାକକୁ ଅସନ୍ତୁଷ୍ଟ କରିବାକୁ ଚାହିଁଲେ ନାହିଁ ।

ଖିଆଲୀ କୋଟିପତି ହେଇପାରେ । କିଏ ଜାଣେ, କଣ ଏଇଠି ଅଜାଡି ଦବ ।

ବାଡିପଟେ ସଟକୁ ସଟ କିଛି ମେଲା ଜାଗା ପଡ଼ିଚି ।

– "ଏ ସବୁ ବିକ୍ରି ସରିଚି । ଏଠି ଏଇବର୍ଷ ଘର ତିଆରି ହେଇଯିବ ।"

ପୁରୁଣା ଧାନବିଲ ମଝିରେ ଏକ ଅସ୍ପଷ୍ଟ ହୁଡା ମୁହଁସଞ୍ଜ ଆଲୁଅରେ ବାରିହେଉଥିଲା । ମଦନର ଦେହସାରା ଶୀତକଣ୍ଟା ମାରିଗଲା । ସେ ଆସ୍ତେ ଆସ୍ତେ ସେ ଅସନା କୁଢ ପାରି ହେଇ ସେଇ ହୁଡା ଉପରେ ଧୀରେ ଧୀରେ ସେ ମୁଣ୍ଡ ପର୍ଯ୍ୟନ୍ତ ଚାଲିଗଲା ।

ଡାକ୍ତର ତାଟକା ହେଇ ଚାହିଁରହିଥାନ୍ତି । ସେ ମୁଣ୍ଡେ ସେ ବେଶ୍ କିଛି ସମୟ ସ୍ଥିର ହୋଇ ଠିଆ ହୋଇରହିଲା । ମୁହଁ ଘୋଡେଇ ଚୁପ୍‌ଚାପ୍ ଠିଆ ରହିଲା ।

ଡାକ୍ତର ଅଗତ୍ୟା ତା' ପଛରେ ଯାଇ ପହଞ୍ଚିବାରୁ ମୁହଁ ଫେରେଇ ପୁଣି ଲାଜ ଲାଜ ହୋଇ କହିଲା – "ଆଇ ଏମ୍ ସରି ଡକ୍ଟର !"

କ୍ଲିନିକ୍‌କୁ ଫେରିଆସି ସେମାନେ ଚୌକିରେ ପୁଣି ବସିଲେ ।

ମଦନ ଦୀର୍ଘ ନିଶ୍ୱାସଟିଏ ନେଇ ଭିତର ମୁଣାରୁ ଚେକ୍ ବହିଟିଏ କାଢ଼ିଲା । ଭାରତୀୟ ବ୍ୟାଙ୍କ୍‌ର କଲିକତା ଶାଖା ।

ଲକ୍ଷେ ଟଙ୍କାର ଚେକ୍‌ଟିଏ କାଟି ଡାକ୍ତରଙ୍କୁ ବଢେଇ ଦେଇ କହିଲା, "ୟୋର ଫିଜ୍ ପ୍ଲିଜ୍ । ଥାଙ୍କ୍ସ ଏ ଲଟ୍ । ଆଇ ମେ କମ୍ ଏଗେନ୍ ।"

ଡାକ୍ତରଙ୍କ ବିହ୍ୱଳ ଅବସ୍ଥା । ସେତେବେଳକୁ କ୍ଲିନିକ୍ ଆଗରେ କିଛି କୌତୂହଳୀ ଲୋକଙ୍କ ଭିଡ ହୋଇଯାଇଥାଏ ।

ମଦନ ସିଧା ଯାଇ ଡ୍ରାଇଭରକୁ ଗାଡି ବୁଲେଇନେବାକୁ କହିଲା । ଅଣଓସାରିଆ ରାସ୍ତାରେ ଗାଡି ବୁଲିଲାବେଳକୁ କ୍ଲିନିକ୍ ସାମ୍ନା ଭଡାଘର କଡଦେଇ ଘଷି ହେଲାପରି ପାରି ହୋଇଗଲା ।

ମଦନର ଭାରି ଇଚ୍ଛା ହଉଥିଲା ସେ କୋଠାଟିକୁ ଛୁଇଁଦବାକୁ । ଗାଡି ଚାଲିଗଲା ପରେ ଡାକ୍ତର କାହାକୁ ଘଟଣାର ଗୁମର କହିବାକୁ ଚାହିଁଲେ ନାହିଁ ।

ତାଙ୍କ ସହକାରୀ କିନ୍ତୁ ଜାଣିଥିଲା ଯେ ଏକ ଖିଆଲୀ କୋଟିପତି ତାଙ୍କ ବାଡିପଟେ ଗୋଟିଏ ପୁରୁଣା ହୁଡା ଉପରେ ଚାଲିବାକୁ ଲକ୍ଷେ ଟଙ୍କା ଦେଇ ଚାଲିଗଲା । ହୁଡା ସେମୁଣ୍ଡେ କଣ ଥିଲା ତା' ପାଇଁ କେଜାଣି ?



# ନିଜ ଇଜଲାସ୍‌ରେ

ସବୁଦିନ ଏ ମାଛିଅନ୍ଧାରକୁ ଫେରିଲାବେଳେ ମୋତେ ଉଦାସ ଲାଗେ । ଭିତରେ କୋଉଠି ଛିଦ୍ର ହୋଇ ଟପଟପ ଲୁଣି ପାଣି ଝରୁଥାଏ, ମୁଁ ଠଉରେଇ ପାରେ ନାହିଁ । ସମୁଦ୍ରକୂଳର ଏଇ ଛୋଟ ମାଛୁଆ ବସ୍ତିରେ ବଡଦିନ ଛୁଟି କାଟିବାକୁ ଆସି ପ୍ରତି ଥର ମୁଁ ଏମିତି ବିଡମ୍ବିତ ହୁଏ । କିନ୍ତୁ ନ ଆସି ରହିପାରେ ନାହିଁ ।

ଏଇଠି ଏମିତି ଆପଣାର ବୋଲି କହିବାକୁ କେହି ନାହାନ୍ତି । କିନ୍ତୁ ମୋର ମନେହୁଏ ମୁଁ ପ୍ରାୟ ସମସ୍ତଙ୍କୁ ଚିହ୍ନେ । ସେମାନେ ବି ମୋତେ ଚିହ୍ନନ୍ତି । ଅବଶ୍ୟ ଆଚରଣରୁ ସେମିତି କିଛି ଲକ୍ଷଣ ଦେଖିବାକୁ ମିଳେ ନାହିଁ ।

ମୁଁ ବେଳାଭୂମିରେ ମୋର ବାଲ୍ୟକାଳର ପାଦଚିହ୍ନକୁ ସାଉଁଟେ । ବାପା ମା'ଙ୍କ ସ୍ମୃତିକୁ ଆଉଡାଏ । ଆଖିଆଗରେ ସୂର୍ଯ୍ୟ ବୁଡିଯାଏ । ମୁଁ ଥାଏ ଅତୀତର ଝାଉଁବଣରେ । ସେଇଠି ସରସର ପବନ ବହୁଥାଏ । ଚମକି ଚହିଁଲାବେଳକୁ ଅନ୍ଧାର ନଇଁଆସିଥାଏ । ସମୁଦ୍ର ଗୁମୁରୁଥାଏ ତା'ର ପ୍ରାଚୀନ ସୁର୍‌ରେ ।

ହେଇ ଲୁଇ ରୋଡ ଆସିଗଲା । ଏଇ ବାଙ୍କ ପାଖରେ ଗିର୍ଜାଘର । ଗିର୍ଜା ଘଣ୍ଟି । ସଫା ସଫା ପୋଷାକ । ଖାଲି ଖାଲି କବରଖାନା । ଖୁବ୍ ନିରୋଳା । ଭାରି ଥଣ୍ଡା ।

ତା'ପରେ ମୀରା ଆଣ୍ଟି ଘର । ଏ ଛୋଟ ସହରର ଏକମାତ୍ର ଇଜତ୍‌ଦାର କୋଠା । ଅନେକ ଦିନ ତଳେ ବେଞ୍ଜାମିନ୍ ସାହେବ ଏଇଟା ତୋଳିଥିଲେ । ଗୋଟାଏ ଏକର ଜାଗା ପାଚେରି ବେଢାଇଥିଲେ । ଭିତରେ ଜାତି ଜାତି ଫଳଗଛ ଲଗାଇଥିଲେ । ସାମୁଏଲ ସିରୋଦ୍‌କର କାନପୁରରୁ ଆସି ସେଇଠି ରହୁଥିଲେ । ବେଞ୍ଜାମିନ୍‌ଙ୍କ ବ୍ୟବସାୟ ବୁଝୁଥିଲେ । ସେଇଠି ଖାନସାମା, ଖଲାସି, ଲସ୍କର ରହୁଥିଲେ । ଆମେ ଲିଚୁ ଲୋଭରେ ପାଚେରି ଉହୁଙ୍କି ଭିତରକୁ ଅନଉଥିଲୁ । ବାଘ ପରି ତିନିଟା କୁକୁର ଘାଉଁଘାଉଁ ହୋଇ ଝପଟି ଆସୁଥିଲେ । ଆମେ ପ୍ରାଣମୂର୍ଚ୍ଛା ଧାଇ ଯେ ଯୁଆଡେ ପଳାଉଥିଲୁ ।

ଏମିତି ଦିନେ ସେଇଠି କ'ଣଟାଏ ଘଟିଗଲା । ଏ ଛୋଟ ସହର ସାରା ସ୍ତବ୍ଧ ହୋଇଗଲା ।

କାହୁଁ କାହୁଁ ସବୁ ମଟର ଗାଡି ଆସି ଜମାହୋଇଗଲେ । ସାହେବ ସାଇବାଣୀମାନେ ଓହ୍ଲେଇଗଲେ । ଆଉ ସବୁ ତୋଫା ତୋଫା ପୋଷାକପିନ୍ଧା ଲୋକ ଓହ୍ଲେଇଗଲେ ।

ସେଦିନ ସଞ୍ଜବେଳେ ସମସ୍ତେ ନୀରବରେ ବେଞ୍ଜାମିନ୍ ସାଇବଙ୍କ କଫିନ୍ କାନ୍ଧେଇ ଗିର୍ଜାଘରଯାଏଁ ଯାଇଥିଲେ । ଏ ଅଂଚଳର ସବୁ ଲୋକ ଅଜାଡି ହୋଇ ପଡିଥିଲେ ଗିର୍ଜା ବେଢା ଭିତରର ନିରବ ଅନ୍ଧାର ଭିତରକୁ । କାହାରି ତୁଣ୍ଡରେ କଥା ନ ଥିଲା ।

ଆଜି ଭଳି, ଆଉ ଦିନ ଭଳି ସନ୍ଧ୍ୟାରେ ଭାରି ନିରବ ଆଉ ଉଦାସ ଲାଗୁଥିଲା । ଆଉ ଦି'ଚାରି ଦିନ ଭିତରେ ଗହଳି ଭାଙ୍ଗିଗଲା । ବଡ ବଡ ଦି'ଟା ଟ୍ରକ୍‌ରେ ଘର ଭିତରୁ କଣ ସବୁ ଆସି ବୋଝେଇ ହୋଇଗଲା । ତଳକୁ ଶୁଙ୍ଘି ଶୁଙ୍ଘି ଆସୁଥିବା ତିନିଟା ବଡ ବଡ କୁକୁରଙ୍କୁ ଖାନସାମା ଆଣି ଟ୍ରକ ପାଖରେ ପହଞ୍ଚେଇଲା । ସେମାନେ ଜିଭ କାଢି ଧକଉଥିଲେ । ତାଙ୍କ ଆଖିରୁ ଅଠା ଭଳି ବହଳିଆ ଲୁହ ଜକେଇ ବୋହିଆସିଥିଲା । ଖାନସାମାର ଆଖି ଓଦା ଓଦା ଦିଶୁଥିଲା ।

ତା'ପର ଦିନ ସିରୋଦ୍‌କର ସାମ୍ନା ଫାଟକରେ ବଡ ତାଲା ଲଗେଇ ଚାବିଟାକୁ ଚାହିଁଲେ । ମୁଣାରେ ପୂରେଇ ଗାଡିରେ ବସି ଚାଲିଗଲେ ।

ଆମେ ପାଚେରି ଡେଇଁ ବାଡିରେ ପଶିଥିଲୁ । ଲିଚୁ ଗଛରେ କଷିଟାଏ ବି ନ ଥିଲା । ସେଇଟା ଲିଚୁ-ଦିନ ନ ଥିଲା । ବାକି ଅନେକ ଅ]କେ ଗଛ । ଆମେ ସେ ଭିତରେ ଧାଁ-ଦଉଡ କରି, ପାଟିତୁଣ୍ଡ କରି ଖେଳୁଥିଲୁ । ମଝିରେ ହଠାତ୍ ସବୁ ଛପ୍‌କିନା ନୀରବ ହେଇଯାଉଥିଲା । ଆମକୁ ଡର ମାଡୁଥିଲା । ଆମେ ପୁଣି ପାଟିକରୁଥିଲୁ । ନ ହେଲେ ପାଚେରି ଡେଇଁ ପଳେଇ ଆସୁଥିଲୁ ! ଡର ମାଡୁଥିଲା ତା' ପାଖ ପଶିବାକୁ ।

ଏମିତି କେତେ ଦିନ ଗଡିଗଲା । ଦିନେ ପୁଣି ଦି'ଟା ଟ୍ରକ୍ ଆଉ ଗୋଟାଏ କାର୍ ଆସି ସେ ଦୁଆରେ ଠିଆହେଲା । ଦୁଆରେ ଶୁଖିଲା ପତ୍ର ଜମା ହୋଇଯାଇଥିଲା । ଚଲାବାଟ ଉପରେ ଘାସ ଉଠିଯାଇଥିଲା ।

ମୋର ମନେ ଅଛି । କାର୍ ଭିତରୁ ଯେ ଓହ୍ଲେଇଲେ ସେ ଫାଟକ ପାଖକୁ ଯାଇ ପକେଟ୍‌ରୁ ଚାବି କାଢିଲେ । ଚାବିଟିକୁ ଚାହିଁଲେ । ତା'ପରେ ଫାଟକ ଖୋଲି ଠିଆମେଲା କରିଦେଲେ । ସାମୁଏଲ ସିରୋଦ୍‌କର । ତିନିଟାଯାକ ଗାଡି ଭିତରକୁ ଚାଲିଗଲା ।

କିନ୍ତୁ କାର୍‌ରୁ ଜଣେ ଭଦ୍ରମହିଳା ଓହ୍ଲେଇଯାଇଥିଲେ । ସେ ଥିଲେ ସାମୁଏଲ ସିରୋଦ୍‌କରଙ୍କ ପତ୍ନୀ । ସେ ଖୁବ୍ ମୁଲାଏମ୍ ରଙ୍ଗର ପୋଷାକ ପିନ୍ଧିଥିଲେ, ଖୁବ୍ ସଫା ଦିଶୁଥିଲେ, ସାଇବାଣୀ ପରି । ସେ ଭାରି ସୁନ୍ଦର ଦିଶୁଥିଲେ । ସେ ଆମ ଆଡକୁ ଚାହିଁ ହସିଥିଲେ । ହାତ ହଲେଇ ଅଭିବାଦନ କରିଥିଲେ ।

ମୁଁ ସେଦିନ ତାଙ୍କୁ ଦେଖି ଖୁସି ହୋଇଯାଇଥିଲି । ତାଳି ମାରି ଡେଇଥିଲି । ସେ ମୋ ଆଡକୁ ଚାହିଁ ମୁଣ୍ଡ ହଲେଇଥିଲେ ।

ମୋ ଭଳି ଆଉ କେହି ତାଳି ମାରି ନଥିଲେ । ମୁଁ ଏହା ଅନୁଭବ କରିବାମାତ୍ରେ ଲାଜେଇ ଯାଇଥିଲି ।

ମିସେସ୍ ସିରୋଦ୍କର ଭିତରକୁ ଯିବା ବାଟରେ ମୋ ଗାଲକୁ ଆଉଁସି ଦେଇଥିଲେ । ମୋତେ ସମ୍ରାଟ୍ ସମ୍ରାଟ୍ ଲାଗିଥିଲା ।

ସେଇ ଦିନ ସମସ୍ତେ କୁହାକୁହି ହେଲେ ଯେ ଏଣିକି ସାମୁଏଲ ସିରୋଦ୍କର ସେ ସାଇବ କୋଠିର ମାଲିକ ।

ଆଖପାଖରୁ ଲୋକେ ଯାଇ ସେ କୋଠାରେ କାମ କଲେ । ପାଞ୍ଚଟା ମାଳି ଲାଗିଲେ ବଗିଚା ପାଇଁ । ସାମ୍ନା ପଟେ ଜାତି-ଜାତି ଫୁଲ । ବିରାଟ ଗୋଲେଇରେ ଘାସର ଗାଲିଚା ।

ହିସାବପତ୍ର ବୁଝିବା ପାଇଁ ପ୍ରାର୍ଥୀମାନଙ୍କୁ ସିରୋଦ୍କର ନିଜେ ବସି ଯାଞ୍ଚ କଲେ । କଣ ମନ ପାଇଲା କେଜାଣି ସେ ମୋ ବାପାଙ୍କୁ ବାଛିଲେ । ଆଉ ଦି'ଜଣଙ୍କୁ ମଧ ବାଛିଲେ ।

ସେଦିନ ଆମ ଘର ଉଛୁଳି ଉଛୁଳି ପଡିଲା ପରି ଲାଗୁଥିଲା । ସକାଳ ପାହିଲେ ସବୁଠୁ ଭଲ ପୋଷାକ ପିନ୍ଧି ବାପା ଯିବେ ବଡ କୋଠା ଭିତରକୁ । ମା' ଖୁସିରେ ମୋତେ ଗେଲ କରିପକଉଥାଏ । ଭାରି ଛନଛନ ହଉଥାଏ ।

ବାପାଙ୍କ କାମ ଆରମ୍ଭ ହେଇଗଲା ତା' ଆରଦିନ । ମୁଁ ଗେଟ୍ ପର୍ଯ୍ୟନ୍ତ ତାଙ୍କ ପଛେ ପଛେ ଯାଇଥିଲି । ସେ ଜାଣିପାରିଥିଲେ; ହେଲେ ପଛକୁ ଚାହିଁ ନ ଥିଲେ ଥରେ ହେଲେ । ଗେଟ୍ ପାଖରେ ସେ ଥମିଗଲେ । ଗଳା ସଫା କରି ଅଳ୍ପ ନଇଁଲା ପରି ସେ ପଶିଲେ ଭିତରେ । ମୋ ବୁକୁ ଦୁରୁଦୁରୁ ହଉଥିଲା । ବାପା ବି ବୋଧହୁଏ ଡରିଯାଇଥିଲେ; ଘାବରାଇ ଯାଇଥିଲେ କିଛି ମାତ୍ରାରେ ।

ସିରୋଦ୍କର ପରିବାରର ସବୁ ଘରୋଇ କାମ ବାପାଙ୍କୁ ବୁଝିବାକୁ ପଡୁଥିଲା । ସଞ୍ଜବେଳେ ବିଳମ୍ବରେ ଫେରୁଥିଲେ । ଆମେ ତାଙ୍କୁ ଅପେକ୍ଷା କରୁଥିଲୁ ଏକାଠି ଖାଇବା ପାଇଁ; ଖାଇବା ପାଖରେ ବାପାଙ୍କଠୁ ଢେର୍ କଥା ଶୁଣିବା ପାଇଁ ।

ମୀରା ସିରୋଦ୍କର ତାଙ୍କ ସ୍ୱାମୀଙ୍କୁ ଅସମ୍ଭବ ଭାବେ ଭଲପାଉଥିଲେ । ଦିନସାରା ତାଙ୍କରି ଖାଇବା, ପିନ୍ଧିବା, ହସିବା, ଖେଳିବା, କାମ କରିବା କଥା ନିଜେ ବୁଝୁଥିଲେ ।

ମୋଜା ସଫା ହବ । ଜାମା କିଣା ହବ । ପେଣ୍ଟ ଇସ୍ତ୍ରୀ ହବ । ସେଟର ବୁଣା ହବ । ନୂଆ ତରକାରି ରନ୍ଧା ହବ । ସେଥିପାଇଁ ସ୍ୱତନ୍ତ୍ର ଭାବରେ ମାଂସ ଆସିବ । ଏସବୁ ମୀରାଙ୍କ ବ୍ୟକ୍ତିଗତ ଦାୟିତ୍ୱ । ସେ ନିଜେ ସବୁ ତଦାରଖ କରୁଥିଲେ । ବବୁର୍ଚି ପାଖରେ ବସି ନିଜେ ତରକାରି ପ୍ରସ୍ତୁତ କରୁଥିଲେ ।

ସାମୁଏଲ ସିରୋଦ୍କର ମୀରାଙ୍କ ପାଇଁ ଏକମାତ୍ର ଧ୍ୟେୟ ।

ଖାଇବାକୁ ଆସିବାରେ ସାମାନ୍ୟ ବିଳମ୍ବ ହେଇଗଲେ ସେ ବିଚଳିତ ହେଇଯାଉଥିଲେ । ଲୋକ ପଠାଉଥିଲେ ଦପ୍ତରକୁ । ଦିନେ ଦିନେ ନିଜେ ଚାଲିଯାଉଥିଲେ । ତାଙ୍କ ଅଣ୍ଟାରେ ବାହୁ

ବେଢେଇ ଲୁଗା ବଦଳ ପାଇଁ ଡ୍ରେସିଂ ରୁମ୍‌କୁ ନେଇଯାଉଥିଲେ । ଦିନେ ତାଙ୍କ ମୁଣ୍ଡ କୁଣ୍ଢେଇ ସାରି ବୋକ ଖାଇଲାବେଳେ ବାପା କୁଆଡେ ଦେଖିପକାଇଥିଲେ ।

ସାମୁଏଲ ସିରୋଦ୍‌କରଙ୍କୁ ମୀରା ପାଳନ କରୁଥିଲେ ଅତ୍ୟନ୍ତ ଯତ୍ନରେ । ଯା ପଛରେ ଅଗାଧ ପ୍ରେମ ଥିଲା । କିଛି ରହସ୍ୟ ବି ଥିଲା । ସେ ଦୁହେଁ ଏଠିକି ଆସିଲାବେଳେକୁ ଉଭୟଙ୍କୁ ପଚାଶ ପାଖାପାଖି ବୟସ ବୋଲି ବାପା କହୁଥିଲେ । କିନ୍ତୁ ଦେଖିଲେ କେହି ସେମିତି କହିପାରିବ ନାହିଁ ।

ତାଙ୍କର ପୁଅ ଝିଅ ଦୁଇ ଜଣ ସାରା ବିଦେଶରେ । ସିରୋଦ୍‌କର ବେଞ୍ଜାମିନ୍ ସାହେବଙ୍କ ସୁପାରିଶରେ ସେମାନଙ୍କୁ ବିଦେଶ ପଠାଇଦେଇଥିଲେ ଅନେକ ଆଗରୁ । ଦୁଇ ପିଲାଙ୍କୁ ଏମାନେ ଅତ୍ୟନ୍ତ ଭଲପାଉଥିଲେ । ସେମାନଙ୍କ ପାଖକୁ ପ୍ରତି ଶନିବାର ଚିଠି ଲେଖୁଥିଲେ । ବାପା ସେ ଚିଠି ଡାକଘରେ ନେଇ ପକାଉଥିଲେ ।

କିନ୍ତୁ କେଜାଣି କାହିଁକି କିଛି ଉଦାସ ରହୁଥିଲେ ଦି'ଜଣ ସାରା । ପରସ୍ପରକୁ ଆଉଜି ରହୁଥିଲେ କୌଣସି ଅଜଣା ଦୁଃଖରେ ।

ଅନେକ ସମୟରେ ବଗିଚାରେ ଗୋଟିଏ ଦୋଳିରେ ବସିରହୁଥିଲେ ଚୁପ୍‌ଚାପ୍ । ନ ହେଲେ ସମୁଦ୍ରକୂଳରେ ଖୁବ୍ ଧୀରେ ଟହଲୁଥିଲେ କେବେ କେମିତି ସଞ୍ଜବେଳେ ।

ତାଙ୍କ ପିଲାମାନେ ସେଆଡୁ ଚିଠି ଦେଉଥିଲେ କି ନାହିଁ, ଜାଣିବାର ଉପାୟ ନ ଥିଲା । କିନ୍ତୁ ବର୍ଷ ବିତିଗଲା ପରେ ସୁଦ୍ଧା ସେମାନେ ଆସିଲେ ନାହିଁ । ବଡଦିନ ଛୁଟିରେ ବି ନୁହେଁ ।

ଆସ୍ତେ ବାପା ଜାଣିଗଲେ ଆଉ ଆମେ ବି ଜାଣିଗଲୁ ଯେ ସିରୋଦ୍‌କର ପରିବାର ଖୁବ୍ ଧନୀ; କିନ୍ତୁ ସୁଖୀ ନୁହନ୍ତି । ପିଲାବେଳୁହିଁ ମୋତେ ସେମାନେ ଖୁବ୍ ଚୁପ୍‌ଚାପ୍, ଖୁବ୍ ଉଦାସ ଜଣାଯାଉଥିଲେ ।

X X X X

ତା'ପରେ ଗୋଟାଏ ଦିନ ବଜ୍ରପାତ ହେଲା ।

ଆମ ଘର ସେଇ ଆଘାତରେ ସୋରାସୋରା ହୋଇଗଲା । ଧୂଳିସାତ୍ ବୋଉ ବେହୋସ ହୋଇଗଲେ ।

ମୀରା ସିରୋଦ୍‌କର ଆମ ଘରେ ବାପାଙ୍କ ଖଟ ପାଖରେ ଚୌକି ପକାଇ ବସିରହିଲେ । ସିରୋଦ୍‌କର ଗାଡିରେ ଚାଲିଗଲେ ସହରକୁ ଡାକ୍ତର ଡାକିବାକୁ ।

ରାତିସାରା ମୋ ନିଦ ଉହାଡରେ ଅସଂଖ୍ୟ ଛାଇ ଯାତାୟାତ କରୁଥିଲେ । ଗୋଟାଏ ଚଟକ ପରି ଚିତ୍କାରରେ ମୁଁ ଚମକି ଆସିଥିଲି ମୋ ବଖରାରୁ ।

ମୋତେ ମୀରା ସିରୋଦ୍‌କରଙ୍କର ପିଠି ଦିଶୁଥିଲା ଦୁଆର ପାଖରୁ । ମା' ହାଉଳି ଖାଇ ଚିତ୍କାର କରୁଥିଲା । ଡାକ୍ତର ଆଉ ସିରୋଦ୍‌କର ମୁଣ୍ଡପୋତି ଠିଆ ରହିଥିଲେ ।

ରାତି କେତେ ହେବ କେଜାଣି – ବାପା ଚାଲିଗଲେ ।

ମୋ ହାତଗୋଡ ଫଟ୍‌ଫଟ୍ ଥରୁଥିଲା । ଜିଭ ଭିଡିନଉଥିଲା ଶୋଷରେ । ମୁଁ ଝୋଲା ମାରିଲା ପରି ଟଳମଳ ହେଲାବେଳେ କେହି ଜଣେ ମୋତେ ଧରିନେଲେ । ସେ ଥିଲେ ମୀରା ସିରୋଦ୍‌କର ।

ସେ ମୋତେ ଆଉଜେଇ ନେଇଥିଲେ ନିଜ ଉପରକୁ । ସେତେବେଳେ ମୋ ବୟସ ଚଉଦ ବର୍ଷ । ସ୍କୁଲ୍‌ରେ ଦଶମ ଶ୍ରେଣୀ । ମୁଁ ସମ୍ଭାଳିଗଲି । କିନ୍ତୁ ମା' ପାରିଲା ନାହିଁ । ସେ କାତର ପକ୍ଷୀଟିଏ ପରି ବେଶି ସମୟ ଶୂନ୍ୟକୁ ଚାହିଁରହୁଥିଲେ । ମୋତେ ଦେଖିଲେ ତା' ଆଖିରେ ଲୁହ ଟଳମଳ ହୋଇଯାଉଥିଲା ।

ଆମ ଘରର ଯାବତୀୟ କଥା ବୁଝୁଥିଲେ ମୀରା ସିରୋଦ୍‌କର । ମାସକୁ ମାସ ବାପାଙ୍କ ଦରମା ଆଣି ଜଣେ ଦେଇଯାଉଥିଲା । ମଝିରେ ମଝିରେ ସେ ନିଜେ ଆସି ବୁଲିଯାଉଥିଲେ । ମୋତେ ପ୍ରାୟ ସବୁଦିନ କୋଠାକୁ ଡକାଇନେଉଥିଲେ ।

କାଚଗିନାରେ ଛେନା, ଆପଲ ଚକି ଚିନି ଆଉ ଦୁଧସର ମିଶାଇ ଖାଇବାକୁ ଦଉଥିଲେ । କହୁଥିଲେ, ମନ ଦେଇ ପାଠ ପଢ଼ିବାକୁ ।

ମୁଁ ମାଟ୍ରିକ୍ ପାଶ୍ କରିଗଲି ।

ମୀରା ଆଣ୍ଟି – ସେତେବେଳକୁ ସେ ଜିଦ୍ କରି ମୋ ଆଣ୍ଟି ହୋଇସାରିଥିଲେ – ଘରକୁ ଆସି ମା'କୁ ଅନେକ ସମୟ ବୁଝାଇଲେ । ମୋତେ ସେ ସହରରେ ପାଠ ପଢ଼ିବାକୁ ପଠାଇବେ । ସବୁ ଖର୍ଚ୍ଚ ଦେବେ । ମା' କଥା ବୁଝିବେ ।

ମା' କେବଳ ଚୁପ୍ ରହି କାନ୍ଥକୁ ଚାହିଁରହିଲା । କୌଣସି ଉତ୍ତର ଦେଲା ନାହିଁ । ମୁଁ ବି କିଛି କହିପାରିଲି ନାହିଁ । ମୋତେ ଡର ମାଡୁଥିଲା । କ'ଣଟାଏ ଉପୁଡି ପଡିଲା ପରି, ଶିଖରୁ କ'ଣଟାଏ ଛିଣ୍ଡି ପଡିଲା ପରି ଲାଗୁଥିଲା ।

କିନ୍ତୁ ମୁଁ ଗଲି ସହରରେ ପାଠ ପଢ଼ିବା ପାଇଁ । ମା' ଚାଲିଗଲା ମୀରା ଆଣ୍ଟିଙ୍କ କୋଠା ଭିତରେ ରହିବା ପାଇଁ । ତାଙ୍କୁ ସାହାଯ୍ୟ କରିବା ପାଇଁ । ଏକୁଟିଆ ବେଳେ ତାଙ୍କ ପାଖରେ ବସିବା ପାଇଁ ।

ପ୍ରଥମେ ପ୍ରଥମେ ପ୍ରତି ରବିବାର ସକାଳେ ଆସି ମୁଁ ପହଞ୍ଚିଯାଉଥିଲି ।

ଗୀର୍ଜାଦିନ । ମୀରା ଆଣ୍ଟି ମା'କୁ ସାଙ୍ଗରେ ନେଇ ଯାଉଥିଲେ । ସାମୁଏଲ୍ ସିରୋଦ୍‌କର କେବେ କେମିତି ବାହାରୁଥିଲେ । ତାଙ୍କ ଢଙ୍ଗ ଟିକିଏ ଅଲଗା । କଥା ପଡିଲେ କହୁଥିଲେ, "ଓ୍ୱର୍କ ଇଜ ଓରସିପ୍ । କାମ୍ ହି ଈଶ୍ୱର କା ଆରାଧାନା ହେ । ଅଥକ୍ କାମ ସେ ପରମପିତା ଖୁସ୍ ହୋତେ ହେଁ ।"

ମୁଁ କ୍ରମଶଃ ସହରରେ ରହିବା ଅଭ୍ୟାସ କରିନେଲି । ଛୁଟିରେ ଆସୁଥିଲି । ଲେଖୁଥିଲି ଚିଠି ନିୟମିତ ଭାବରେ । ମା' ପାଖକୁ ଓଡିଆରେ, ଆଣ୍ଟି ପାଖକୁ ଇଂରାଜୀରେ ।

X          X          X          X

ଆଉ ଦିନେ । ମୋର ବି.ଏ. ଅନର୍ସ ପରୀକ୍ଷା ଚାଲିଥାଏ । ଘରକୁ ଫେରିଆସିବାକୁ ମୁଁ ଆଉଟୁପାଉଟୁ ହଉଥାଏ । ମୋତେ ଭାରି ଘାଣ୍ଟି ଲାଗୁଥାଏ ।

ପରୀକ୍ଷା ସରିଲା ଦିନ ଗୋଟାଏ ବେଳେ । ମୁଁ ସାଙ୍ଗେ ସାଙ୍ଗେ ହଷ୍ଟେଲରୁ ଜିନିଷ ଗୋଟେଇ ବାହାରିପଡ଼ିଲି । ମୋତେ ଖୁବ୍ ଉଦ୍‌ବିଗ୍ନ ଲାଗୁଥାଏ । ବିନା କାରଣରେ ଡର ମାଡୁଥାଏ ।

ପନ୍ଦରଦିନ ଯାଏ କୌଣସି ଚିଠି ଆସି ନଥାଏ । ମୁଁ ବି ଲେଖି ପାରି ନ ଥାଏ । ଘାଣ୍ଟି ଲାଗୁଥାଏ । ଭାତ ଖାଇବାକୁ ମନ ହେଲା ନାହିଁ । ବାଟରେ ପିଆଜି ଚା ଖାଇନେଲି । ଅନମନସ୍କ । ଉଦ୍‌ବିଗ୍ନ ।

ମୁଁ ଆସି ପହଞ୍ଚିଲି ରାତି ଏଗାରଟା ବେଳେ । ମୋ ବୁକୁ ବୋଲ ମାନୁ ନ ଥାଏ । ଧଡ଼୍‌ଧଡ଼୍ ପିଟିହଉଥାଏ ପଞ୍ଜରାରେ ।

କୋଠା ଫାଟକରେ ପଶିଲା ବେଳେ ଜଗୁଆଳି ଗୋର୍ଖା ଅସ୍ୱାଭାବିକ ଗମ୍ଭୀର ଜଣାଗଲା । ମୁଁ ଆହୁରି ଡରି ଗଲି । ତାକୁ କିନ୍ତୁ କିଛି ପଚାରିଲି ନାହିଁ ।

ଆଉଟ ହାଉସ୍‌କୁ ସିଧା ଚାଲିଗଲି । ସେଇଠି ମା' ରହୁଥିଲା । ଯାଇ ଯାହା ଦେଖିଲି ମୋ ରକ୍ତ ପାଣି ହେଇଗଲା ।

ମା' ବିଛଣାରେ ଲାଖିଯାଇଛି । ପାଖରେ ମୀରା ଆଣ୍ଟି ଚୌକିରେ ବସିଛନ୍ତି । ଅନେକ ଶୀର୍ଣ୍ଣ ଦେଖାଯାଉଛନ୍ତି । ମୁଣ୍ଡବାଳ ଅନେକ ଧଳା । ଆଉ ସବୁ ଦି'ଚାରିଜଣ କିଏ ଠିଆହେଇଛନ୍ତି । ତା' ଭିତରୁ ଜଣେ ଡାକ୍ତର ।

ମୁଁ ଖଟ ଉପରକୁ ହାମୁଡି ପଡି ମା' ମୁହଁକୁ ଚାହିଁଲି । ତା' ଆଖି କାହିଁ କୋଉ ଭିତରକୁ ପଶିଯାଇଥାଏ ।

ସେ ମୋତେ ବାରିପାରିଲା । ଚାହିଁଲା ତା' ହାତ ଫଡ଼୍‌ଫଡ଼୍ ହେଲା । ଉଠିପାରିଲା ନାହିଁ ମୋ ମୁଣ୍ଡ ଉପରକୁ ।

– "କ'ଣ ଏମିତି ହେଇଗଲା ମୋ ମା'ର ? ମୋତେ କାହିଁକି ଆପଣମାନେ ଖବର ଦେଲେ ନାହିଁ ?"

କେହି କିଛି କହିଲେ ନାହିଁ । ମୁଁ ଜଣକ ପରେ ଜଣକ ମୁହଁକୁ ଚାହିଁଥାଏ ବଲବଲ । ମୋତେ ସବୁ ଜଳାର୍ଣ୍ଣବ ଦିଶୁଥାଏ ।

ମୀରା ଆଣ୍ଟି ମୋ ପିଠିରେ ହାତ ରଖିବାର ମୁଁ ଅନୁଭବ କଲି ଏବଂ ବୁଝିଗଲି ଯେ ମୋତେ ସମ୍ଭାଳିବାକୁ ହେବ ।

ମା'କୁ ଟାଇଫଏଡ୍ ହୋଇଥିଲା । ସେତେବେଳେ ତା'ର ଔଷଧ ନ ଥିଲା । କୌଣସି ଚିକିତ୍ସାକୁ ଶୁଣିଲା ନାହିଁ ।

ମା' ନିଜେ କୁଆଡେ ବଞ୍ଚିବାକୁ ଚାହୁଁ ନ ଥିଲା । ବାପା ଚାଲିଗଲାଦିନୁ ସବୁବେଳେ ସବୁ

ଚିଠିରେ ସେଇ ଗୋଟିଏ କଥା – ସେ ମରିଯିବାକୁ ଚାହୁଁଥିଲା ।

ଡାକ୍ତର ଔଷଧ ଦେଲେ । କିନ୍ତୁ ମା'କୁ ବଞ୍ଚେଇ ପାରିଲେ ନାହିଁ ।

ମୁଁ ଓହଳିରହିଥିବା ଏକମାତ୍ର ଡାଳ ଛିଣ୍ଡିପଡିଲା ।

ତେଣିକି ମୁଁ ଛେଉଣ୍ଡ ହେଇଗଲି । ପୃଥିବୀରେ ମୋ ରକ୍ତର ଉସ ଲିଭିଗଲା । ମୁଁ ଏମିତି ଉପୁଡିପଡିଥିଲା ବେଳେ ମୀରା ସିରୋଦ୍କର ମୋତେ ଆପଣେଇ ନେଇଥିଲେ ।

ମୋତେ ପଠେଇଲେ ଏମ୍.ଏ. କରିବାକୁ । ମୁଁ ତାଙ୍କୁ ଆଶ୍ରି ଗଲି । ସେ ଯାହା କହିଲେ, ସେଥିରେ ନାହିଁ କରିବାର ଉପାୟ ନ ଥିଲା ।

ମୋ ପାଖକୁ ନିୟମିତ ଟଙ୍କା ପଠାଇବା, ବେଳ ଜାଣି ଛୋଟ ଛୋଟ ପାର୍ଶଲରେ ରୁମାଲ, କଲମ, ଚକଲେଟ ପଠାଇବା ମୋତେ ତାଙ୍କର ସମ୍ପୂର୍ଣ୍ଣ ଅନୁଗତ କରିଦେଲା ।

ମୀରା ସିରୋଦ୍କର ଏତେ ଅନାବିଳ ସ୍ନେହ କରିପାରନ୍ତି, ଏତେ ଆପଣାର କରିନେଇପାରନ୍ତି ଯେ, ଅରଣ୍ୟର ଜନ୍ତୁ ସୁଦ୍ଧା ତାଙ୍କର ପୋଷା ମାନିଯିବ ।

କ୍ରମଶଃ ସାମୁଏଲ୍ ସିରୋଦ୍କର ବି ମୋତେ ଅସମ୍ଭବଭାବେ ଭଲପାଇବସିଲେ । ଯେତେ ଥର ମୁଁ ଛୁଟିରେ ଆସିଲି, ମୋ ପାଇଁ ସେତେ ଥର ନୂଆ ଡ୍ରେସ୍ କିଣା ହୋଇ ଥୁଆହେଉଥିଲା । ପହଞ୍ଚିଲା ବେଳଖୁ ଉଭୟେ ବାହାର ଡ୍ରଇଂ ରୁମ୍‌ରେ ମୋ ପାଇଁ ଅପେକ୍ଷା କରି ବସୁଥିଲେ । ମୋତେ ଦେଖି ସେମାନେ କେତେ ଖୁସି ନ ହେଉଥିଲେ ସତେ !

ମୀରା ଆଣ୍ଟି ତାଙ୍କ ନରମ ଆଖିରେ ମୋତେ ଚାହିଁରହୁଥିଲେ । ସଜଫୁଟା ପଦ୍ମ ପରି ତାଙ୍କ ମୁହଁ ମୁକୁଳିଯାଉଥିଲା ।

ନୂଆ ଜାମା ପିନ୍ଧି ମୁଁ ସାମୁଏଲ ସିରୋଦ୍କରଙ୍କୁ ମୁଣ୍ଡିଆ ମାରିଲାବେଳେ ସେ ମୋତେ ଟରବର ଉଠେଇ ନେଇ ବୁକୁରେ ଜାକିଧରୁଥିଲେ । ତାଙ୍କ ଆଖି ଛଳଛଳ ହେଇଯାଉଥିଲା ।

ଏମିତି ଥରେ ଛୁଟିରେ ଆସି ପହଞ୍ଚିଲାବେଳକୁ ଘର ଶୁନ୍‌ଶାନ୍ ଲାଗିଲା । ବୁଝିଲି ଯେ ଦୁଇଜଣସାରା ଚାରି-ପାଞ୍ଚ ଦିନ ହେବ ଜରରେ ପଡିଛନ୍ତି । ଡାକ୍ତର ଦେଖି ଔଷଧ ଦେଉଛନ୍ତି । ଜର ଯେମିତି ସେମିତି ରହିଛି ।

ମୁଁ ବ୍ୟସ୍ତ ହେଇପଡିଲି । ମୀରା ଆଣ୍ଟିଙ୍କ କପାଳରେ ହାତ ମାରିବାରୁ ସେ ଆଖି ଫିଟେଇ ଚାହିଁଲେ । ମୋ ହାତରେ ବୋକ ଖାଇ ଛାତି ଉପରେ ଚାପିଧରିଲେ । ତାଙ୍କ ଆଖିରୁ ଲୁହ ନିଗିଡିଗଲା ।

– "ରମୁ, ତୁ ଆ ଗୟା ! ଆଛା ଲଗା ! ଉନ୍ କୀ ତବିୟତ୍ କୈସି ହେ ? ସୁବହ ଦୋ ଖୁରାକ୍ ଦବା ଖାୟେ ୟା ନହିଁ ? ଉନ୍‌କୋ ସନ୍ତରେ କି ରସ୍ ପସନ୍ଦ ନାହିଁ । ଉନ୍‌କେ ଲିଏ ଅନାର କୀ ରସ୍ ରଖି ଥି । ଲିୟେ କି ନହିଁ ? ମୈ ଖୁଦ୍ ଦେଖ୍ ନହିଁ ପା ରହି ହୁଁ !"

ଘରର ଖାନ୍‌ସାମା, ମୋତେ ଠାରି ଜଣାଇଦେଲେ ଯେ ନିୟମିତ ଭାବରେ ସବୁ ଦିଆଚାଲିଛି ।

ମୁଁ ତାଙ୍କୁ ନିଶ୍ଚିନ୍ତ ରହିବାକୁ କହିଲି । ସବୁ ଠିକ୍ ହୋଇଯିବ ବୋଲି ଭରସା ଦେଲି । ଜର ଚାର୍ଟ ଦେଖିଲି । ଥର୍ମୋମିଟରରେ ଜର ଦେଖି ଲେଖିଦେଲି ଜର ଶହେ ଦୁଇ ଦେଖାଉଥିଲା ।

ସପ୍ତାହେ କାଳ ଯୁଦ୍ଧ ଜାରି ରହିଲା । ଔଷଧ, ପଥ୍ୟ, ଜରଦେଖା, ଡାକ୍ତର ଆସିବାଯିବା । ଘରର ସବୁ ନୌକର ଚାକରଙ୍କ ଦିନରାତି ପହରା ।

ଶେଷକୁ ରବିବାର ଦିନ ସକାଳୁ ଦୁଇଜଣଙ୍କ ଜର ନର୍ମାଲ୍ । ନିଜକୁ ବିଶ୍ୱାସ ଦେବା ପାଇଁ ମୁଁ ଦୁଇ ଦୁଇ ଥର ଥର୍ମୋମିଟର ଝାଡି ଜର ଦେଖିଲି ଏବଂ ଅତ୍ୟନ୍ତ ଆଶ୍ୱସ୍ତବୋଧ କଲି ।

ଥକା ହୋଇ ଚୌକି ଉପରେ ବସିପଡି କହିଲି, "ଆଜ୍ ବୁଖାର୍ ନହିଁ ହୈ ।" ଆକାଶରୁ କଳାମେଘ ଘୁଞ୍ଚିଗଲା । ସମସ୍ତଙ୍କ ମୁହଁରେ ସଜଫୁଟା ସକାଳର ସତେଜତା ।

ଦୁଇଦିନ ଉତ୍ତାରୁ ମୀରା ତାଙ୍କ ଦାୟିତ୍ୱ ସମ୍ଭାଳିବା ଆରମ୍ଭ କରିଦେଲେ । ହାତଯୋଡିକ ଶୀର୍ଣ୍ଣ । ଗୋଡଯୋଡିକ ଦୁର୍ବଳ, ଅସ୍ଥିର । କିନ୍ତୁ ମୁହଁରେ ଗଭୀର ସନ୍ତୋଷ ଓ ଆତ୍ମବିଶ୍ୱାସ ।

ତାଙ୍କର ଏକମାତ୍ର ଦାୟିତ୍ୱ ସାମୁଏଲ ସିରୋଦ୍‌କରଙ୍କ ଶୁଶ୍ରୂଷା ।

ସେଇ ସମୟର କଥା ।

ମୋର ଛୁଟି ଆଉ ଦୁଇଦିନ ଥାଏ ସରିବାକୁ । ଦି'ପହର ଖିଆପିଆ ସରିଥାଏ । ସିରୋଦ୍‌କରଙ୍କୁ ତାଙ୍କ ଶୋଇବା ଘରେ ବିଶ୍ରାମ କରାଇ ସେ କବାଟ ଆଉଜାଇ ଆଣୁଥାନ୍ତି । ମୋତେ ଦେଖି ଅଳ୍ପ ହସିଦେଲେ । କାହିଁ କେତେ ଦିନପରେ ସେ ହସ ମୋତେ କୋଟିନିଧି ପାଇଲା ପରି ଲାଗିଲା ।

ସେ ଡ୍ରଇଂ ରୁମ୍‌କୁ ଆସିଲେ । ମୁଁ ତାଙ୍କ ପଛେ ପଛେ ଆସିଲି । ମୋର ମନେହେଲା ସେ କିଛି କହିବାକୁ ଚାହୁଁଥିଲେ ।

ଆମେ ସାମ୍ନାସାମ୍ନି ବସିଲୁ । କିଛି ସମୟ ପଛକୁ ଆଉଜି ସେ ଆଖି ବନ୍ଦ କରିନେଲେ । ମୁଁ ଭାବିଲି ସେ ବୋଧହୁଏ ଖୁବ୍ କ୍ଳାନ୍ତ । କିଛି ବିଶ୍ରାମ ନେବା ଭଲ ହେବ ।

– "ଆପ ଥକ୍ ଗୟି ମାଲୁମ୍ ପଡତି ହୈଁ । କହେଁଗି ତୋ ବିସ୍ତରା ଲଗା ଦୁଁ ।"

ସେ କେବଳ ମୁଣ୍ଡ ହଲାଇ ନାହିଁ କଲେ । ଚୁପ୍‌ଚାପ୍ ପଡିରହିଲେ ଚୌକି ଉପରେ । ମୁଁ ଅପେକ୍ଷା କଲି ।

ସେମିତି ଆଉଜି ରହି କହିଲେ, "ରମୁ, ତୁହ୍ମାରି ଛୁଟି ପରସୌଁ ଖତମ୍ ହୋ ରହି ହୈ ନ ?"

– "ସୋ ତୋ ହେ । ମଗର ମୈ ଔର ଦୋ ଚାର୍ ଦିନ୍ ରୁକ୍ ଯାଉଁ ତୋ କୋଇ ନୁକ୍‌ସାନ୍ ନହିଁ ହୋଗା ।"

– "ଇସ୍ କି କୋଇ ଜରୁରତ୍ ନହିଁ ହୈ । ତୁ କ୍ୟୁଁ ଅପନି ପଢାଇ ବରବାଦ୍ କରେଗା । ହମ୍ ତୋ ଅବ ଠିକ୍‌ଠାକ୍ ହେଁ ।"

ଟିକିଏ ରହି ସଳଖି ବସିଲେ । ମୋତେ ଚାହିଁ ହଠାତ୍ କହିଲେ, – "ଦେଖୋ ବେଟେ, ହମ୍ ତୋ ଅବ୍ ବୁଢେ ହୋ ଚଲେ । ଅବ୍ ଐସି ସିକାୟତ୍ ହୋତି ରହେଗି । ଇସ୍‌କେ ବାଦ୍ ଏକ ଦିନ୍

ବୁଲାଓ୍ୱା ଆ ଯାଏଗା ।"

ମୁଁ ବିଚଳିତ ବୋଧ କଲି । ମୋ ଅଣାୟତ୍ତରେ ବୁକୁ ଭରିଗଲା କୋହରେ । କଥାଟାକୁ ପ୍ରତିବାଦ କରିବାର କିଛି ନ ଥିଲା । କିନ୍ତୁ ହଠାତ୍ ମାନିନେବାକୁ ହିମ୍ମତ୍ ନ ଥିଲା ।

ତାଙ୍କ ଆଖିକୁ ମୁଁ ବୋଧେ ଦିଶୁ ନ ଥିଲି । ସେ କେମିତି ଗୋଟାଏ ସ୍ୱରରେ ଖୁବ୍ ସ୍ପଷ୍ଟ ଆଉ ଦୃଢ଼ ଭାବରେ କହିଲେ – "ମଗର ମୈ ଚାହତି ହୁଁ କି ଓ୍ୱହ ମେରେ ସେ ପହିଲେ ହି ଚଲେ ଯାଏଁ ତୋ ଆଚ୍ଛା ହୋଗା । ଇସିଲିଏ ମୈଁ ଈଶ୍ୱର କୋ ଦୁଆ ମାଁଗତି ହୁଁ ।"

ମୁଁ ବିସ୍ମୟରେ ଚମକି ପଡ଼ିଲି । ମୁଁ ଠିକ୍ ଶୁଣିପାରୁଥିଲି ତ ? ମୀରା କଣ ସତେ ଏ କଥା ଚିନ୍ତା କରିପାରୁଛନ୍ତି ? ସାମୁଏଲ ସିରୋଦ୍କର ତାଙ୍କ ପ୍ରାଣ । ସେ ଦିନ ରାତି କେବଳ ତାଙ୍କରି କଥାହିଁ ଚିନ୍ତା କରି ଆସିଛନ୍ତି । ସେ ଏବେ କେମିତି ତାଙ୍କ ପ୍ରିୟତମ ବ୍ୟକ୍ତିଙ୍କ ମୃତ୍ୟୁ କାମନା କରିପାରୁଛନ୍ତି ?

ମୋ ଭିତରେ କଣ ସବୁ ଓଲଟପାଲଟ ହେଇଗଲା । ଭାଙ୍ଗିରୁଜି ଛାରଖାର ହେଇଗଲା । ମୁଁ ଅସ୍ଥିର ହୋଇପଡ଼ିଲି । ସେ ବୋଧହୁଏ ମୋ ମନକଥା ବୁଝିଗଲେ । କହିଲେ, "ଅଗର ମୈ ପହିଲେ ଚଲିଯାଉଁଗି ତୋ ଉନ୍‌କୋ ବହୁତ୍ ଖଲେଗା । ଓ୍ୱହ ଅକେଲା ନହିଁ ଚଲ୍ ପାଏଁଗେ ! ଉନ୍‌କୋ କଭି କୁଛ୍ ତକଲିଫ ହୋତି ହେ ତୋ ଓ୍ୱହ ମୁହଁ ନହିଁ ଖୋଲତେ । ଉନ୍‌କେ ଚେହେରେ ପର୍ ସବୁ ଦିଖାଇ ପଡ଼ତା ହେ । ଐସେ ଔର୍ କୌନ୍ ହେ ଜୋ ସମଝ ସକେଗା ! ମୈ ଚଲି ଯାଉଁଗି ତୋ ଉନ୍‌କୋ ବହୁତ୍ କଷ୍ଟ ଝେଲନା ପଡ଼େଗା । ଇସ୍‌ଲିଏ ଓ୍ୱହ ପହିଲେ ଚଲେଯାଏଁ ତୋ ଆଚ୍ଛା ହେଁ । ମୈ ଉନ୍‌କି ୟାଦ୍ କି ସହାରେ କୁଛ ଦିନ ଗୁଜାର୍ ଲୁଁଗି । ଓ୍ୱହ ନହିଁ ସକେଁଗେ !"

ମୁଁ ତାଙ୍କ ମୁହଁକୁ ଆଖି ଟେକି ଚାହିଁଲି । ଭାରି ଅସହାୟ ଉଦାସ ଦିଶୁଥିଲେ ମୀରା ସିରୋଦ୍କର । କିନ୍ତୁ ଭାରି ମହନୀୟ କରୁଣାର୍ଦ୍ର ଦେଖାଯାଉଥିଲେ । ନିଜର ବିଚ୍ଛେଦ ଦୁଃଖ ପ୍ରିୟତମକୁ ନ ଦେବା ପାଇଁ ସେ ସ୍ୱୟଂ ତାଙ୍କ ବିଚ୍ଛେଦକୁ ମୁଣ୍ଡପାତି ସହିଯିବାକୁ ପ୍ରସ୍ତୁତ ଥିଲେ ।

କେଜାଣି କାହିଁକି ମୋ ବନ୍ଧ ଭାଙ୍ଗିଗଲା । ମୁଁ ଦୁଇ ହାତରେ ମୁହଁ ଘୋଡ଼େଇ କାନ୍ଦିପକେଇଲି । ମୋ ଭିତରୁ ତୁହାକୁ ତୁହା କୋହ ଉଠୁଥିଲା ।

ସେ ତାଙ୍କ ଚୌକିରୁ ଉଠିଆସି ମୋ ପିଠି ଆଉଁସି ଦେଲେ । ମୁଁ ତାଙ୍କ ଗୋଡଯୋଡ଼ିକୁ ଜାବୁଡ଼ି ଧରି ବହୁ ସମୟ ପର୍ଯ୍ୟନ୍ତ କାନ୍ଦିଥିଲି ।

ସତକୁ ସତ ମୋର ଏମ୍.ଏ. ଫଳ ବାହାରିବାର ମାସକ ପରେ ଦିନେ ସାମୁଏଲ୍ ସିରୋଦ୍କର ମୀରାଙ୍କ କୋଳରେ ମୁଣ୍ଡ ରଖି ଆରପୁରକୁ ଚାଲିଗଲେ !

ଆକାଶରୁ ସବୁ ଆଲୁଅ ଲିଭିଗଲେ ସେ ଅମାପ ଶୂନ୍ୟକୁ ଚାହିଁ ହୁଏ ନାହିଁ । ମୀରାଙ୍କ ନୀରବତାକୁ ବି ଚାହିଁ ହେଲା ନାହିଁ ।

କଳା ପୋଷାକରେ ମୀରା ଗୋଟିଏ ଛାଇ ଭଳି ନିଃଶବ୍ଦ ପହଁରି ଯାଉଥିଲେ କୋଠରିରୁ

କୋଠରିକୁ । ସୂତା କଟିଗଲା ପରେ ଗୁଡି ଯେମିତି ହଲି ହଲି ଖସିଯାଏ, ଘୁଞ୍ଚିଯାଏ ପବନ ମୁହଁରେ ଦୂରକୁ ଦୂରକୁ ।

ମତେ ଦେଖିଲେ କେବଳ ଢଳଢଳ ଆଖିରେ ଚାହିଁରହୁଥିଲେ । ମୁଁ ମୁଣ୍ଡ ନୁଆଁଇଦେଲେ ସେଇଠୁ ଚାଲି ଯାଉଥିଲେ । ତାଙ୍କର ଆଗଭଳି ଆଉ ଧରାବନ୍ଧା କାର୍ଯ୍ୟ କିଛି ନ ଥିଲା ।

ତା'ପରେ ସେ ଆସ୍ତେ କଥା କହିଲେ । କାଗଜପତ୍ର ଦେଖିଲେ । ମତେ ଦାୟିତ୍ୱ ଦେଲେ ସମସ୍ତଙ୍କ ହିସାବ ବୁଝି ତୁଟେଇ ଦେବାକୁ । ଯେତେ ଲୋକ ଥିଲେ ସମସ୍ତଙ୍କୁ ଚାରିମାସର ଦରମା ଏକାଠି ଦିଆଗଲା ।

ମୀରା ନିଜେ ସେମାନଙ୍କୁ ନୂଆ ଜାମାପଟା ଦେଇ ବିଦାୟ ଦେଉଥିଲେ । କହୁଥିଲେ, "ଈଶ୍ୱର ଆପ୍ କୋ ସୁଖୀ ରଖେଁ । ଆପ୍ ହମେ ମାଫ୍ କର ଦିଜିୟେ । ହମ୍ ଔର ଆପକେ କାବିଲ୍ ନହିଁ ରହେ ।"

ସମସ୍ତେ କାନ୍ଦିପକଉଥିଲେ । ବୁଝିପାରୁଥିଲେ ସବୁ କଥା । ମୁଣ୍ଡ ନୁଆଁଇ ସକସକ ହେଇ ଚାଲିଯାଉଥିଲେ ।

ସେଦିନ ସକାଳୁ ମୁଁ ଉଠିଲାବେଳକୁ –

ଡ୍ରଇଁ ରୁମ୍‌ରେ ସେ ମୋ ପାଇଁ ଅପେକ୍ଷା କରି ବସିଥିଲେ । ନିଜ ହାତରେ ଚା କରି ଟେବୁଲ୍‌ରେ ଥୋଇଥିଲେ ।

– "ରମୁ, ଆଓ ବୈଠୋ । ମେ ତେରେ ଲିଏ ଚାୟ ବନାଇ ହୁଁ ।"

ମୁଁ ଅତ୍ୟନ୍ତ ସଙ୍କୋଚ ସମ୍ଭ୍ରମରେ କହିଲି – "ଆଣ୍ଟି, ମୈ ତୋ ଚାଏ ବନା ଲେତା ହୁଁ । ଆପ୍ ହମେ କ୍ୟୁଁ ନହିଁ ବୁଲାୟା ?"

ବହୁଦିନ ପରେ ମୀରା ଆଣ୍ଟି ମୋତେ ଚାହିଁ ପୂର୍ବ ଭଳି ଉଶ୍ୱାସରେ ହସିଲେ । କିନ୍ତୁ ଚା ପିଇବା ଭିତରେ ପିଆଲା ଉପରେ ଆଖି ରଖି କହିଲେ – "ରମୁ ବେଟେ, ଇସ୍ ଶନିବାର କୋ ମୈଁ ଜା ରହି ହୁଁ ।"

ମୋ ଲଡବଡ ହାତରୁ ପିଆଲା ଖସିପଡିଥାନ୍ତା । କୌଣସି ପ୍ରକାରେ ତାକୁ ଟେବୁଲ ଉପରେ ଥୋଇ ମୁଁ ତାଙ୍କୁ ତ୍ରସ୍ତ ହେଲା ପରି ଚାହିଁଲି ।

କହିଲି, "ଆପ୍ ଜାଏଗି ? କିଧର ? କ୍ୟୁଁ ?"

– "ମୁଝେ ଜାନା ପଡେଗା ରମୁ! ୟେ ଘର ବେଚା ଜା ଚୁକା ହେ । ତୁହ୍ମାରେ ଅଙ୍କଲ ବେଞ୍ଜାମିନ୍ ସାହାବ କି ଅମାନତ୍ ସଁଭାଲେ ଥେ । ଉନ୍‌କି ବସିୟତ୍‌ନାମା କେ ମୁତାବିକ୍ ନୟେ ମାଲିକ୍ ଏ ମକାନ୍ ବେଚ୍ ଦିଏ ହେଁ । ଖରିଦ୍‌ଦାର ଆନେ ସେ ପହିଲେ ହମେ ଚଲେଜାନା ହେ ।" ଅତଳ କୂଅ ଭିତରକୁ ଚାହିଁଲା ପରି ମୋ ପାଦତଳିପା ଶିର୍‌ଶିର୍ କରୁଥିଲା । ଆତଙ୍କମଡେଇ ହୋଇ ପଡୁଥିଲା ହେମାଳ ଶୀତରତୁ ପରି ।

ମୁଁ ଓଠ ଚାଟି ପଚାରିଲି, "ଆପ କହାଁ ଜାଏଗି ? ଅକେଲି ?"

ସେ କୌଣସି ଉତ୍ତର ନ ଦେଇ କେବଳ ଚାହିଁରହିଲେ । ମୁଁ ଆହୁରି ଅଥୟ ବୋଧକଲି । ପଚାରିଲି ପୁଣି ସେଇ କଥା – ଏଥର ଆଉରି ଉଦ୍‌ବିଗ୍ନ ହୋଇ ଘାବରେଇଲା ପରି ।

ସେ ମୋତେ ଚାହିଁ ପୁଣି ଅଳ୍ପ ହସିଲେ ।

– "ଜହାଁସେ ଆଇ ଥି ୱହିଁ ଚଲି ଜାଉଁଗି ।"

ମୁଁ ପ୍ରଥମ ଆବେଗରେ କହିପକାଇଲି "ମେ ଭି ଚଲୁଗାଁ ଆପ୍‌କେ ସାଥ ।"

ସେ ମୋତେ ସେମିତି ଅମାପ ସ୍ନେହରେ ଚାହିଁରହି ନୀରବରେ ମୁଣ୍ଡ ହଲାଉଥିଲେ ।

– "ନହିଁ ରମୁ, ମୁଝେ ଅକେଲେ ହି ଜାନା ହୋଗା ।"

– "ମେଁ ଅକେଲା ୟହାଁ କ୍ୟା କରୁଁଗା ?" ମୋ ତୁଣ୍ଡରୁ ସତଃ ବାହାରିଗଲା । ସତେବା ସେ ମୋର ଚିରକାଳ ଆଶ୍ରୟ ହୋଇ ରହିଥିବେ । ଆଶ୍ରା ପାଇ ଆଉଜିଯାଇଥିବା ଛେଉଣ୍ଡ ପିଲାଟା ତ !

ମୋତେହିଁ ତାଙ୍କ ପାଇଁ ସବୁ ଯୋଗାଡ କରିବାକୁ ପଡିଥିଲା । ଶୁକ୍ରବାର ଦିନ ରାତି ଢେର ହୋଇଗଲା ଶୋଇବା ବେଳକୁ ।

ମୀରା ଆଣ୍ଟି ମୁଁ ଧରିଥିବା କଫି କପରେ ଚିନି ଚାମଚ ପକାଇ ଗୋଳି ଦେଇଥିଲେ ।

ମୁଁ ଉଠିବା ପୂର୍ବରୁ ପାହାନ୍ତିଆରୁ ମୀରା ଆଣ୍ଟି ଚାଲିଯାଇଥିଲେ ନିଃଶବ୍ଦରେ । ଦରୱାନକୁ ମନାକରିଥିଲେ ମୋତେ ଉଠାଇବାକୁ ।

ମୋ ପାଇଁ ଚିଠିଟିଏ ଲେଖି ଦେଇଥିଲେ –

"ପ୍ୟାରେ ରମୁ, ହମେ ଅଲବିଦା ଦେନେକି କଷ୍ଟ ତୁହ୍ମେ ଦେନେ କି ହିମ୍ମତ ନହିଁ ହୁଇ । ତୁମ୍ ଅବ୍ ଅପନେ କୋ ସମ୍ହାଲ ସକୋଗେ । ନହିଁ ତୋ ସମହଲନା ଶିଖ ଜାଓଗେ । ତୁମ୍ହାରେ ଘର୍ କେ ବାଜୁ ମେ ଏକ ପ୍ଲଟ୍ ଥା । ତୁମ୍ହାରେ ଲିଏ ଖରିଦ୍ ଲିଆ ହେ ପହିଲେ ସେ । ତୁଝେ ବତାୟା ନହିଁ ଥା । ୱାହ ଦଲିଲ୍ ଇସ୍ ମେ ହେ । ଏକ୍ ଚେକ୍ ଭି ହେ । ତୁଝେ ଦୋ ବାତ୍ କେ ଲିଏ ମନା କରତି ହୁଁ । ଏକ୍ ତୋ ମୁଝେ ଢୁଁଡ୍‌ନା ନହିଁ । ଦୁସରି – ଘର୍‌କି ଚାବି ନୟା ମାଲିକ କୋ ଦେନେ ବିନା ମକାନ୍ ଛୋଡନା ନହିଁ । ତୁମ୍ହାରି ମୀରା ଆଣ୍ଟି ।"

ମୁଁ ତାଙ୍କ ଅନୁଜ୍ଞା ପାଳନ କରିଛି । ବନ୍ଧାପଡିଛି ଏ ଛୋଟ ମାଛୁଆ ବସ୍ତିରେ ।

ମୋତେ ମାଲିକାନା ମିଳିଛି । କିନ୍ତୁ ସମୁଦ୍ରମୁହାଁ ତେତେବଡ ଭୂଖଣ୍ଡକୁ ପାଚେରି ବେଢେଇ ମୋର ବୋଲି କହିବାକୁ ହୁବ ପାଉନାହିଁ । ମୀରା ଆଣ୍ଟିଙ୍କ ଠିକଣା ମିଳିଛି । ଯାଇପାରୁ ନାହିଁ । ବାରଣ ଲଙ୍ଘିପାରୁନାହିଁ । ଚିଠି ବି ଲେଖିପାରୁନାହିଁ; କାରଣ ସେ ଚିଠି ଲେଖିବାକୁ ମୋତେ ଅନୁମତି ଦେଇନାହାନ୍ତି ।

ମୁଁ ଛଟପଟ ହେଉଛି । ଜାଣିପାରୁନାହିଁ ମୁଁ ତାଙ୍କୁ ଠିକ୍ ବୁଝିଛି ବୋଲି ।

ସେ କଣ ସତରେ ଚାହୁଁଥିଲେ ମୁଁ ତାଙ୍କୁ ନ ଖୋଜେ ବୋଲି !

ମୁଁ ଅକୃତଜ୍ଞ ନୁହେଁ । କିନ୍ତୁ ଭାରି ଦୁର୍ବଳ, ଅସମର୍ଥ, କ୍ଷୁଦ୍ରପ୍ରାଣ ମଣିଷଟିଏ ମୁଁ । ମୋତେ କ୍ଷମା କର ହେ, ଈଶ୍ୱର! ମୋତେ ସାମାନ୍ୟ ଶକ୍ତି ଦିଅ ମୁଁ ମୀରା ଆଣ୍ଟିଙ୍କ ଆଦେଶକୁ ଅମାନ୍ୟ କରିବି ।

ଯଦି ସେ ସତକୁ ସତ ଯେଉଁଠୁ ଆସିଥିଲେ ସେଠିକି ଫେରିଯାଇଥାନ୍ତି, ମୋତେ କହିଦିଅ ମୁଁ କଣ କରିବି ! କଣ କରିପାରିବି !



## ଟା' ପାଇଁ କାନ୍ଦନା, ସର୍ବେଶ୍ୱର !

କୋଳାହଳର ଦିନସବୁ ନିରବ ହୋଇଗଲା; ତାକୁ ବି ଖୁବ୍ ଆଶ୍ୱସ୍ତ ଲାଗିଲା । ଏତେ ଲୋକଗହଳି, ଏତେ ଆସାବାବପତ୍ର, ଉଚ୍ଚ ପଣ୍ଡାରେ ବସିଥିବା କଥା କହୁ ନଥିବା ମଣିଷ ସହିତ ସେ ଅଭ୍ୟସ୍ତ ନ ଥିଲା ତ !

ଟା' ହାତ ଦି'ଟାକୁ ଏକାଠି ବନ୍ଧିରଖିଥିବା ସେ ଓଜନିଆ ଲୁହା କଡା ସହିତ ମଧ୍ୟ ସେ ଅଭ୍ୟସ୍ତ ନ ଥିଲା । ଯେଉଁ ମାଟିରଙ୍ଗର ପୋଷାକ ପିନ୍ଧିଥିବା ଲୋକଙ୍କୁ ଦେଖିଲେ ସେ ଦୂରରୁ ଗଛ ଆଢୁଆଳରେ ଲୁଚିଯାଉଥିଲା, ସେଥିରୁ ଚାରିଜଣ ଟା' ଆଗରେ ପଛରେ ଚାଲିବା ବି ତାକୁ ଭାରି ଅଡୁଆ ଲାଗୁଥିଲା ।

ତାକୁ ଅନବରତ ଡରମାଡୁଥିଲା । ହେଇ, ବୋଧେ ପାହାଡ ଶିଖ ଭୁଶୁଡି ପଡିବ ! ହେଇ, ବୋଧେ ଅନ୍ଧାର ଭିତରୁ ହେଣ୍ଟାଳ ଝାମ୍ପିପଡିବ ଟା' ପଛରୁ !

ତାକୁ ଅଡର୍କ୍କ ଲାଗୁଥିଲା । ଏତେ ଲୋକଙ୍କ ଆଗରେ ଟା' ପାଟି ଫିଟୁ ନ ଥିଲା । ସେ ସେମାନଙ୍କ କଥା କିଛି ବୁଝି ପାରୁ ନ ଥିଲା । ଖାଲି ଚାହିଁରହୁଥିଲା ତବତବ ।

ବେଳେବେଳେ ଟା' ଗୋଡପେଣ୍ଡା ଠକ୍‌ଠକ୍ ଥରୁଥିଲା । ସେତେବେଳେ ଟା' ହାତ ଆଙ୍ଗୁଠି ବୋଲ ମାନୁ ନ ଥିଲା । କେମିତି କେଜାଣି ଟା' ଦେହସାରା ଥରିଯାଉଥିଲା – ଜାମୁଗଛ ଶିଖରୁ

ତଳଖୁ ଅନେଇଲେ, ଅତଡା ଦାଢରୁ ଝୋଲା ପାଣିଧାରକୁ ଅନେଇଲେ ଯେମିତି ଲାଗେ । ହେଲେ, ସେଦିନ କୋଳାହଳ ଠପ୍‌କିନା ନିରବ ହୋଇଗଲା । ସେଦିନ ଜୁରିଆ ରେଡ୍‌ଡିକୁ ଫାଶୀ ହୁକୁମ ହୋଇଥିଲା । ସେ ଦିନ କେହି ତା' ପାଖେ ଆଉ ପାଟିତୁଣ୍ଡ କଲେ ନାହିଁ । ସେ କଚେରି ଘରୁ ବାହାରି ଆସିଲାବେଳେ ଲୋକେ ଆଡ ହୋଇଗଲେ । କଳା ଗାଡି ଭିତରୁ ଗଛସବୁ ନିରବ ଘୁଞ୍ଚିଗଲା ପରି ଦିଶୁଥିଲେ ।

ଗାଡି ଭିତର ବାହାର ସବୁ ଚୁପ୍‌ଚାପ୍ । ଜୁରିଆର ଭିତର ବାହାର ବି ଚୁପ୍‌ଚାପ୍ । ତା' ଦୁଇପଟେ ବସିଥିବା ଜଗୁଆଳି ଦି'ଜଣ ବି କାଠ କଣ୍ଢେଇ ପରି ଆଗକୁ ଚାହିଁ ବସିରହିଥିଲେ । ଉଁ ଚୁଁ ନାହିଁ । ହଲ୍‌ଚଲ୍ ନାହିଁ ।

ଜୁରିଆକୁ ଉଶ୍ୱାସ ଲାଗୁଥିଲା । ପବନ ହାଲୁକା ଲାଗୁଥିଲା । ତାକୁ ମନେହେଉଥିଲା ଯେ ସେ ଘରକୁ ଫେରୁଛି । ଡଙ୍ଗର ତଳ, ସଲପଗଛ ମୂଳ, ନୂଆ ଛଣ-ଛପର ହୋଇଥିବା ତା'ର ସେ ଚିକ୍‌କଣ କାକର, ସୁନ୍ଦର ଘର । ତା'ର ହସ୍‌କୁରି, ଲାଜ୍‌କୁରି, ସୁନ୍ଦ୍ରୀ ମାଇକିନା । ତା'ର ଦୁଇ ବର୍ଷର ପୁଅ – ତା'ରି ଭଳି ମୁହଁ, ଆଖି, ହସ । ଜୁରିଆକୁ ଉଛୁଳିଲା ଉଛୁଳିଲା ପରି ଲାଗିଲା । ସବୁ ଭଲ ଲାଗିଲା । ସେ କାଠ କଣ୍ଢେଇ ମଣିଷ, ସେ କଳା ଗାଡି, ସେ ନିଛାଟିଆ ରାସ୍ତା, ସେ ନରମ ମହଲଣ ବେଳା । କେତେ ଭଲ ମଣିଷ ସବୁ! ସେ କଳା ପୋଷାକ ପିନ୍ଧିଥିବା ପାଟି କରି କଣ ସବୁ କହୁଥିବା ମଣିଷ । ଉଚ୍ଚ ପିଣ୍ଡାରେ କଳା ପୋଷାକ ପିନ୍ଧି ବସିଥିବା, କାହାକୁ କିଛି କହୁ ନ ଥିବା ମଣିଷ । ସେମାନେ ତାକୁ କେତେ ବୁଝେଇଲା ପରି କଣ ସବୁ ପଚାରୁଥାନ୍ତି । କେତେ ପାଖେଇ ଆସୁଥାନ୍ତି ।

ଆଉ ଆସିବାକୁ ହବ ନାହିଁ ବୋଲି ଏ ଜଗୁଆଳିଙ୍କ ବଡବାବୁ କହିଲେ । ପାଟିତୁଣ୍ଡ ଆଉ ହବ ନାହିଁ । ଯାହା ହଉ, ଭଲ ହେଲା ।

ଜୁରିଆର ଅସ୍ୱସ୍ତିର ଦିନ, ଭୟ ଅତଙ୍କର ଦିନସବୁ ଗଲା । ଏଣିକି ଚୁପ୍‌ଚାପ୍ । ଜୁରିଆର ବୁକୁ ଭିତରୁ ସବୁ ବୋଝ ଓହ୍ଲେଇ ଦେଲାପରି ଦୀର୍ଘଶ୍ୱାସ ବାହାରିଗଲା ।

ଗାଡି ଜେଲ ଫାଟକ ପାଖେ ଅଟକିଗଲା । ଅଟକିଗଲା ପବନ କୋଉଠି । ପବନ ପାଣି ଏକ ହୋଇଗଲା । ପାଣି ହୋଇଗଲା ପଥର ।

ଜେଲ୍ ଘରର ପ୍ରସ୍ତ ପ୍ରସ୍ତ ପଥର ପାଚେରି । କାହିଁ କୋଉ ସୁଡଙ୍ଗ ଶେଷରେ ସେ ପଥର ଗୁମ୍ଫା । ସେ ଲୁହା କବାଟ, ସେ ଓଜନିଆ ତାଲା । ଘୁଞ୍ଚିଯାଉଥିବା ହାତୁଡି ପାହାର ପରି ସେ ପାଦଶବ୍ଦ !... ତା'ପରେ ଚାରିଆଡୁ ନିବୁଜ ହୋଇଆସୁଥିବା, କ୍ରମଶଃ ବହଳ ହୋଇଆସୁଥିବା ଅନ୍ଧାର... ଆଉ ଅନ୍ଧାର !

ଜୁରିଆ ପାଇଁ ସରକାରୀ ପାଉଣାରେ ଓକିଲାତି କରିବାକୁ ଯାହାକୁ କୁହାଯାଇଥିଲା, କେଜାଣି କାହିଁକି ସଞ୍ଜବେଳେ ସେ ତାକୁ ମନେପକେଇଲେ । ଏମିତି ତ ମନେପକେଇବା କଥା ନୁହେଁ ।

ଜୁରିଆ କଣ ମଣିଷ ? ସେ ତ ଇତର ପ୍ରାଣୀଟିଏ । ତା' ପାଇଁ ଯାହା ହବାର ଥିଲା ହେଇଗଲା । ଗଛଟିଏ ହାଣ ଖାଇଗଲେ କଣ ତାକୁ କିଏ ବାହୁନେ ? ଜୁରିଆ ଫାଶୀ ପାଇଗଲେ ବି କେହି କିଛି କହିବାର ନାହିଁ, କିଛି କରିବାର ନାହିଁ ।

କିନ୍ତୁ ସର୍ବେଶ୍ୱର ଓକିଲ ତାସ୍‌ଖେଳରେ ମନ ନ ଦେଇ ତୁହାକୁ ତୁହା କେବଳ ଜୁରିଆ କଥା ମନେପକାଇଲେ । ତାଙ୍କ ମନ ଭିତରେ ପାଣି ପବନ ଏକାକାର ହୋଇଯାଉଥିଲା । ସେସବୁ ପାଟି ଫିଟେଇ କହି ନ ଦେଲେ ତାଙ୍କ ବୁକୁ ଫାଟିଯିବ ସତେବା ! ମୁଁ ତାସ୍‌ମୁଠାକ ଏକାଠି କରି ଆଡେଇ ଥୋଇଦେଲି । ବାକି ଦି'ଜଣଙ୍କୁ ଚୁପ୍ ରହିବାକୁ ଇସାରା ଦେଇ କହିଲି, "କହନ୍ତୁ ସର୍ବେଶ୍ୱରବାବୁ କଣ କହିବାକୁ ଚାହୁଁଛନ୍ତି ?"

– "ଶାଲା ବେକୁବ୍, ଶାଲା ମୂର୍ଖ କାହାଁକା, ଆରେ ପାଟି ଫିଟା, କଥା କହ ନାଲାଏକ୍ ! ମୁଁ ଯାହା କହୁଛି ଖାଲି ସେତକ କହିଦେ !... ହାରାମ୍‌ଜାଦା, ରାସ୍କେଲ୍ କାହାଁକା । ପାଟି ଫିଟେଇ କହିଦେ – ତୁ ସମ୍ବାରୁକୁ ମାରିନାହୁଁ । ...ନିର୍ବେଦ ପଥର ପରି ସେ ଠିଆ ରହିଲା । ଛେଳି ଭଳି ହାଣକୁ ବେକ ପତେଇଦେଲା । ମୁଁ କହୁଛି, ଫାଶୀ ପାଇଯିବୁ ବେ ଶଳା, ଶୁଣିଲା ନାହିଁ । ମୁଁ ହାତ ଯୋଡୁଛି ମହାତ୍ମା, ପାଟି ଫିଟେଇ ଥରେ କହିଦେ – ହେଲା ନାହିଁ ।"

ନିଜ ହାତପାପୁଲିରେ ମୁଥ ମାରି ସର୍ବେଶ୍ୱରବାବୁ ଫଁ ଫଁ ହେଲେ । ତାଙ୍କ ଆଖିରୁ ନାକରୁ ବାମ୍ଫ ବାହାରୁଥିଲା । ପେଟ ଦି'ଭାଗ ହୋଇଯାଉଥିଲା ।

– "ଶଳା ଜୁରିଆ ରେଡ୍‌ଡିକୁ ଫାଶୀ ହୋଇଗଲା !" ସର୍ବେଶ୍ୱରବାବୁଙ୍କ ଆଖିରୁ ଡବଡବ ନିଗିଡିଗଲା ତାତିଲା ପାଣି । ସେ ପୁଣି ତାଙ୍କ ପାପୁଲିରେ ମୁଥ ମାରିଲେ । ଲାତ ମାରିଲେ ଭୂଇଁକୁ । ଉଠିପଡିଲେ ଚୌକିରୁ । ଆମେ ଅବାକ୍ ଚାହିଁରହିଥିଲୁ । ଆମ ଆଗରେ ସର୍ବେଶ୍ୱରବାବୁ ଏମିତି ଅଣାୟତ୍ତ ଓଲଟପାଲଟ ହୋଇଯିବାର, ଖଣ୍ଡ-ବିଖଣ୍ଡ ହୋଇଯିବାର ପ୍ରଥମଥର ପାଇଁ ଦେଖୁଥିଲୁ ।

ମନେହେଉଥିଲା, ସତେବା ସର୍ବେଶ୍ୱରବାବୁ ନିଜ ବିଫଳତାରେ ଭାଙ୍ଗିଚୁରିଯାଉଛନ୍ତି । ଜୁରିଆ ରେଡ୍‌ଡି ଫାଶୀ ପାଇବାରେ ସତେବା କଣ ଗୋଟାଏ ଅଘଟଣ ଘଟିଗଲା ? ସେଥିପାଇଁ ସର୍ବେଶ୍ୱରବାବୁ କ୍ଷମା ଦେଇ ପାରୁ ନାହାନ୍ତି ନିଜକୁ ! କ୍ଷମା ଦେଇ ପାରୁ ନାହାନ୍ତି ଜୁରିଆକୁ, ଏ ସମଗ୍ର ବିଧିବାଧାନକୁ !

– "ଜୁରିଆ ରେଡ୍‌ଡି ତା'ହେଲେ ଆପଣଙ୍କ ବୋଲ ମାନିଥିଲେ ଫାଶୀ ପାଇ ନ ଥାନ୍ତା ବୋଲି ଆପଣ କହୁଛନ୍ତି ?"

ମୁହଁ ତମତମ କରି ସେ ମୋ ଆଡେ ଚାହିଁଲେ । କହିଲେ – "ମୋତେ ଆଉ ସେ କଥା ପଚାରୁଛନ୍ତି କାହିଁକି ? ମୁଁ ମନେପକେଇଲେ ହିଁ ଉତ୍ତ୍ୟକ୍ତ ବୋଧକରୁଛି ।"

ଆମେ ଚୁପ୍‌ଚାପ୍ ବସିରହିଲୁ । ସେ ମୁଣ୍ଡପୋତି ପଛକୁ ହାତ ଛନ୍ଦି ତାଙ୍କ ଚୌକି ପାଖକୁ ଫେରିଆସିଲେ । ନଥିକିନା ବସିପଡିଲେ ଆଉ ସେମିତି ବସିରହିଲେ କିଛି ସମୟ ।

ତା'ପରେ ମୁଣ୍ଡଟେକି ଆମକୁ ଚାହିଁ କହିଲେ – "ଆପଣ ଜାଣନ୍ତି ନାହିଁ, ଏ ଜୁରିଆ ରେଡ଼ିର ତିନିପୁରୁଷ ହେଲା ଖାଲି ଅପମୃତ୍ୟୁରେ ମରିଛନ୍ତି ! ତା' ଗୋସାଇଁବାପ ଗୋଦାବରୀ ଭାଲିରେ ରହୁଥିଲା । ଜମିବାଡି, ଘରଦ୍ୱାର କରି ରହିଥିଲା । ଗୋଟିଏ ଦିନ ନଈବଢିରେ ସବୁ ଭାସିଗଲା । ସେ ନିଜେ ଭାସିଗଲା । ତା' ସ୍ତ୍ରୀ ସାତବର୍ଷର ପୁଅଟାକୁ ଧରି ଉଠିଆସିଲା ଜରଡାକୁ । ସେଇଠି ଚାଳିଶ ବର୍ଷ ରହି ପୁଅକୁ ମଣିଷ କଲା । ରଜାଘରେ ଲସ୍କର ହେଲା ରମ୍ଭେୟା... ସେ ବି ରଜା ସାଙ୍ଗରେ ବଣକୁ ଗଲା ଶିକାରକୁ । ଆଉ ଫେରିଲା ନାହିଁ । ଲୋକେ କହିଲେ ତାକୁ ବାଘ ଖାଇଗଲା । ...ତା' ପୁଅ ଜୁରିଆ । ମା, ଗୋସାଇଁମା' ପାଖରେ ମଣିଷ ହେଲା । ଦି'ଜଣସାରା ଗୋଟାଏ ଦିନ ହଇଜାରେ ଉଠିଗଲେ । ସେ ଗାଁସାରା ବଡଭାଗ ଉଠିଗଲେ । ବାକି ପଳେଇଲେ ଯେ ଯୁଆଡେ ।"

"ଜୁରିଆ ବଣ-ପାହାଡ କାଟି ଆସି ପହଞ୍ଚିଲା ଆଦିବାସୀ ବସ୍ତିରେ । ତା' ଉପରକୁ ପାହାଡ । ତଳକୁ ବି ପାହାଡ । ଛୋଟ ସହର, ଅଳ୍ପ ବାଟ । ପାହାଡ ଓହ୍ଲେଇଗଲେ, ଲୁହା ପୋଲ ପାରିହୋଇଗଲେ ହାଟପଡିଆ... ମଙ୍ଗଳବାର ପାଳି । ତା' ପାଖରେ ସହର । ଦିନେ ସହରକୁ ଓହ୍ଲେଇଥାଏ ଜୁରିଆ । ଗୋଟେ କାଠଗୋଲାରେ କାଠକଟାଳି କାମ କରିବାକୁ ସେ କଥା ହେଇ ଫେରୁଥାଏ । ମହୁଲ ଗଛମୂଳେ ଦେଖିଲା ଲଛମିକୁ ।...ଏଇଠୁ ସର୍ବେଶ୍ୱରବାବୁ ଯାହା କହିଲେ ବା ନକହିଲେ ତା' ପ୍ରାୟ ଏପରି : ଲଛମି ଏକୁଟିଆ ବସି କାନ୍ଦୁଥିଲା । ଜୁରିଆ ଥମ୍ ହେଇ କିଛି କାଳ ତାକୁ ଚାହିଁଲା । କଣ ବୁଝିଲା କେଜାଣି କହିଲା, "ଆ, ମୋ ସାଙ୍ଗେ ।"

ଲଛମି ଲୁଗାକାନିରେ ଆଖି ପୋଛି ତାକୁ ଚାହିଁଲା । କଣ ବୁଝିଲା କେଜାଣି ଉଠି ଠିଆହେଲା । କହିଲା – "ଚାଲ୍ !" ଦୁହେଁ ଆଗ ପଛ ଚାଲିଗଲେ ଚୁପ୍‌ଚାପ୍ ଡଙ୍ଗର ଉପରକୁ । ଜୁରିଆକୁ ଗାଁବାଲା ମିଶାଉ ନ ଥିଲେ ତାଙ୍କ ସାଙ୍ଗରେ । ତାକୁ ବାରିଦେଉଥିଲେ ବାହାର ମଣିଷ ବୋଲି । ସେଇଥିପାଇଁ ଜୁରିଆ ବସା ବାନ୍ଧିଥିଲା ଦୂରରେ । ଏକୁଟିଆ । ସେ ଦିନ ଲଛମିକୁ ତା' ପଛରେ ଲମିଥିବାର ସେମାନେ ଦେଖିଲେ । ନିଜ ନିଜ ଭିତରେ ଦେଖାଦେଖି, ଠରାଠରି ହେଲେ । କଣ ବୁଝିଗଲେ କେଜାଣି ଟୋକାଟୋକୀମାନେ କିର୍‌କିର୍ ହସିଲେ । ଆଉ ସବୁ ଦାନ୍ତ କାଢି ଖୁସି ହେଲାପରି ଚାହିଁରହିଲେ । ସେ ଦି'ଜଣ ଉଧୁଳିଆ ଆସିଛନ୍ତି ବୋଲି ଧରିନେଲେ ।

ଜୁରିଆ ରାତିସାରା ଲଛମି ପାଖରୁ ତା' କଥା ଶୁଣିଲା । କିଛି ନ କହି ବାହୁ ବେଢେଇ ତା' ପିଠି ଆଉଁସିଦେଲା; ପାଖକୁ ଆଉଜେଇନେଲା । ସକାଳୁ ଉଠି ଓହ୍ଲେଇଆସିଲା ସହରମୁଣ୍ଡକୁ, କାଠଗୋଲାକୁ । କୁରାଢି ଉଠେଇ ଗଣ୍ଡିକାଠସବୁ ଚିରିଲା । ଲଛମି ଭାରି ଦୁଃଖ ପାଇଛି, ମନେପକାଇ ଜୁରିଆ କାମ ଭିତରେ ଥମିଯାଉଥିଲା । ବାପ ମା' ନ ଥିବା ଟିର୍ଲାଟାକୁ ସେ ଯୋଉ ମହାଜନ ଘର କାମରେ ଖଟଉଥିଲା, ଖାଇବାକୁ ଦଉ ନ ଥିଲା, ତାକୁ ପାଇଲେ ଏମିତି କାଠଗଣ୍ଡି ପରି ସେ ଦୁଇଫଡା କରିଦିଅନ୍ତା । ଜୁରିଆର ମୁଠା କୁରାଢି ବେଣ୍ଟ ଉପରେ ଟାଣ ହୋଇଯାଉଥିଲା । ସେ ଦିନ ସେ ମୂଲ ପଇସାରେ ଚାଉଳ, ଲୁଣ, ତେନ୍ତୁଳି କିଣିଲାବେଳେ ଭାରି ଉଷତ ହେଉଥିଲା ।

ବାଟସାରା ପାହାଡ ଚଢିଲାବେଳେ ସେ ସେଇ ମହାଜନ କଥା ଭାବୁଥିଲା, ତା' ପୁଅ କଥା ଭାବୁଥିଲା – ଯେ ଲଛମିକୁ କଣ ସବୁ କହୁଥିଲା । ସେ ନ ମାନିବାରୁ ତାକୁ ଟଣାଓଟରା କରୁଥିଲା, ବାଡଉଥିଲା ।

ଜୁରିଆ ଟାଣେଇଯାଉଥିଲା । ମହାଜନପୁଅ ଏବେ ଲଛମି ଦେହରେ ଟିପ ମାରିଦେଲେ ଜୁରିଆ ତା' ମୁଣ୍ଡ ଛତୁ କରିଦବ । ହୁଁ! ଜୁରିଆ ବେଗି ବେଗି ବାଟ ପାରି ହୋଇଯାଇ ତା' କୁଡିଆରେ ପହଞ୍ଚିଲା । ତା'ପରେ ଚଢେଇ ବସା ବାନ୍ଧିଲା ପରି ସଞ୍ଜବେଳେ ଦୁହେଁ ମିଶି ଝାଟି-ମାଟି କାଦୁଅ ଗୋଳି ସେ କୁଡିଆକୁ ଗଢିଲେ । ଦିନ ପରେ ଦିନ, ମାସ ପରେ ମାସ ।

ଚିକ୍କଣ ନିର୍ମଳ ଛୋଟ ଏକବଖୁରିଆ ଘରର ମୁହଁ ଆସ୍ତେ ଉଜ୍ଜ୍ୱଳ ଦିଶିଲା । ଲଛମିର ମୁହଁ ଉଜ୍ଜ୍ୱଳ ଦିଶିଲା ।

ଜୁରିଆର ଖୁସିର ସୀମା ରହିଲା ନାହିଁ । ଯେତେବେଳେ ସେ ଜାଣିଲା ଯେ ସେ ବାପ ହେବାକୁ ଯାଉଛି ।

ଘରସାରା ଉଛୁଳିପଡୁଥିଲା ଫଗୁଣ ମାସକୁ । ବୁଣି ହୋଇଯାଉଥିଲା ଜାତି ଜାତି ରଙ୍ଗ, ପାହାଡସାରା । ଆକାଶ ସାରା ।

ଏତିକିବେଳେ ଦିନେ ସଂଜବେଳେ ଜୁରିଆ ଆସି ଘରେ ପାଦ ଦଉ ଦଉ ତାକୁ କେମିତି ମାଡିପଡିଲା ପରି ଲାଗିଲା । ଲଛମି କାନ୍ଦୁଥିଲା । ଗାଁର ଦୁଇଜଣ ଧାଂଡା ଆସି ଦୁଆରେ ଠିଆହେଲେ । ଜୁରିଆ ମୁଣ୍ଡକୁ ପିତ ଚଢିଗଲା । ସେ ଗର୍ଜିଲା । ଜାଣିବାକୁ ଚାହିଁଲା କଣ ହେଲା ଲଛମିକୁ । ଲଛମି କିଛି କହିବା ଆଗରୁ ସେ ଧାଂଡା ଦି'ଟା ମୁହଁ ଫିଟେଇଲେ । କହିଲେ, "ଗୋଟେ ମର୍ଦ୍ଦ ଆସିଥିଲା । ସେ ନିଶା ଖାଇଥିଲା । କହୁଥିଲା ଯେ ଲଛମି ତା' ମାଇପ । ସେ ତାକୁ ତା' ବାପଠୁ ପଇସା ଦେଇ କିଣିଥିଲା । ସେ ତାକୁ ମହାଜନ ଘରେ ଖଟେଇଥିଲା । ମହାଜନର କରଜ ତୁଟେଇବାକୁ ଲଛମି ସେଇଠି କାମ କରୁଥିଲା ।" ଜୁରିଆକୁ ଆଉ କିଛି ଦିଶିଲା ନାହିଁ କି ଶୁଭିଲା ନାହିଁ । ସେ ଲଛମି ଆଗରେ ଠିଆ ହୋଇ ପଚାରିଲା, "ସେ ମର୍ଦ୍ଦ କିଏ ମତେ କହ । ସତ ସତ କହ, ସେ ତୋର ମର୍ଦ୍ଦ କି ନାଇଁ ।"

ଲଛମି ଜୁରିଆକୁ ଚାହିଁଲା । ଦୁଆରେ ଠିଆହୋଇଥିବା ସେ ଧାଂଡା ଦି'ଟାକୁ ଚାହିଁଲା । ତା' ଆଖି ଜଳିଉଠିଲା । ତା' ଲୁହ ସରସର ମୁହଁ କାଠେଇଗଲା । ସେ ପାଟିକରି କହିଲା – "କି ମର୍ଦ୍ଦ ? କା ମର୍ଦ୍ଦ ? ସେ ତ ମତେ ମହାଜନ ଘରେ ବିକିଦେଇଗଲା । ବାପ ବିକିଦେଲା, ତାକୁ, ସେ ବିକିଦେଲା ମହାଜନକୁ! ମୋର କେହି ନାଇଁ । ବାପ ନାଇଁ କି ମର୍ଦ୍ଦ ନାଇଁ । ଏବେ ବି କେହି ନାଇଁ । ନ ହେଲେ କି ସେ ମଦୁଆ ଆସି ମତେ ଝିଙ୍କାଟଣା କରିଥାନ୍ତା ?"

ଜୁରିଆ ବିଜୁଳି ପରି ଠିଆହେଇପଡି ତା' ବୁକୁ ବାଡେଇଲା – "କିଏ କହିଲା ତୋର କେହି ନାଇଁ ? ମତେ କହ ସେ ମଦୁଆ କିଏ । ମୁଁଇ ତାକୁ ହାଣିଦେବି ।" ତା' ରୂପ ଦେଖି ସେ ଧାଂଡା ଟୋକା ଦି'ଟା ଖସିପଳେଇଲେ । ସେଇଦିନ ଲଛମି ସମ୍ବାରୁ ନାଁ ଜୁରିଆକୁ କହିଥିଲା । ସମ୍ବାରୁ

ଦେଖିବାକୁ ବୁଢା ପୋଢ ପରି । ତା' ମଥାରେ ଚୂଳ ପାତଳ । ଥୋଡିରେ ଦାଢି ପାତଳ, ତା' ନାକ ଓସାର, ପାଟି ଓସାର, ଆଖି ଗହୀରିଆ, ପାଦ ବଡ, ହାତ ବଡ । ଚାଲିଲେ ଆଣ୍ଠୁକୁ ଆଣ୍ଠୁ ବାଜେ । ସେ ସଦାବେଳେ ନିଶା ଖାଏ । ପଇସା ପାଇଁ କାମ କରେ ନାଇଁ, ଚୋରି କରେ ।

ସମ୍ପାରୁ ସେଇ ଛୋଟ ସହରରେ ଥାଏ । ଦିନଯାକ ଏଠିସେଠି ପଡିଥାଏ । ସଞ୍ଜବେଳେ ଖଟିକୁ ଚାଲିଆସେ । ସେଥିରୁ ଦୁଇଢୋକ ନ ପିଇଲେ ସେ ବଞ୍ଚିପାରିବ ନାଇଁ । ଲଛମି ଜୁରିଆକୁ ଯେତେ ମନା କଲା ଜୁରିଆ ମାନିଲା ନାଇଁ । ଜିଦ୍ ଲଗେଇଲା । ସେ ସମ୍ପାରକୁ ଠିକଣା କରିଦବ । ତା' ହାତକୁ ସେ ହାଣିଦବ । ସେ କାଇଁ ଲଛମି ଦିହରେ ହାତ ଲଗେଇଲା ?

ତା' ଆରଦିନ କାଠଗୋଲାରେ କାମ ସାରି ଜୁରିଆ ଖଟିଆଡେ ବାଟ କାଟିଲା । ସେଇଠି ସେ ସମ୍ପାରକୁ ମୁକାବିଲା କରିବ । ଖଟିରେ କେହି ଜୁରିଆକୁ ଚିହ୍ନିଲେ ନାଇଁ । ସେ କାହାକୁ ଚିହ୍ନିଲା ନାଇଁ । ଖଟି ପହିଲମାନ ତାକୁ ଚାହିଁ ମୁରୁକି ମାରିଲା । ନୂଆ ଗରାକ ଆସିଗଲା ବୋଲି ଖୁସି ହଉଥାଏ । ହେଲେ ଜୁରିଆ ତା' ପାଖ ପଶିଲା ନାହିଁ । ଗୋଟେ ଗଛମୂଳେ ବସିରହିଲା, ଦେଖିବାକୁ କିଏ ଆସିଲା କିଏ ଗଲା! ଅନ୍ଧାର ହୋଇଗଲା । ସମ୍ପାରୁ ଭଳି ଦିଶୁଥିବା କେହି ଆସିଲା ନାହିଁ । ଜୁରିଆ ଫେରିଗଲା । ଲାଗ୍ ଲାଗ୍ ଦି'ଦିନ ଫେରିବା ପରେ ତା' ଆରଦିନ ସେ ସେଇ ଗଛମୂଳେ ବସିଥାଏ । ଗୋଟାଏ କିଏ ଗୀତ ଲହରେଇ ଆସି ପହଞ୍ଚିଲା ।

ତା' ପିନ୍ଧା ଦେଖି ଜୁରିଆ ଭିତର ଜଳିଉଠିଲା । ଗୋଟେ କୋଚଟିଆ ଲୋଚ୍‌କୋଚ୍ ପୂରା ପେଣ୍ଟ । କାହାର ପୁରୁଣା ପାଲଟା କେଜାଣି । ତା' ଭିତରେ ଯୋଡାଏ ସମ୍ପାରୁ ଗଳିଯିବେ ।

ତା' ଉପରେ ଗୋଟେ ସେମିତି ଢିଲା ଆଉ ପୁରୁଣିଆ ଗଞ୍ଜି । ଖାଲି ପାଦ । ନୁଖୁରା ରୁଢିଆ ଚେହେରା । ଚାଲିଲାବେଳେ ଗୋଡ ଟଳମଳ ।

ଖଟି ପହିଲମାନ ତାକୁ ଦେଖି ନ ଦେଖିଲା ପରି ବସିଥାଏ । ସେ ଯାଇ ଛୋଟ କାଚ କାଢି ଦେଖାଇଲା । ଟଙ୍କାକର ମହୁଲି ମାଗିଲା ।

ପହିଲମାନ ନାହିଁ କଲା । ପଇସା ନ ଥୋଇଲେ ଟୋପାଏ ମଦ ଦବ ନାହିଁ ବୋଲି ମନାକରିଦେଲା । ଗାଳିଗୁଲଜ କଲା ।

ଜୁରିଆ ଯାଇ ପଛପଟୁ ସମ୍ପାରୁର ଗଞ୍ଜିଟାକୁ ମୁଠାଇ ଧରି ଟାଣିଆଣିଲା । ପହିଲମାନ ହସିଲା । ସମ୍ପାରୁ ଜାଣିପାରିଲା ନାହିଁ କିଏ ସେମିତି ତାକୁ ଘୋଷାରି ନେଉଥିଲା ।

ଗଛମୂଳେ ଜୁରିଆ ତା' ମୁହଁକୁ ଚାହିଁ ଲଣ୍ଡାଏ ଛେପ ପକେଇଲା । ସମ୍ପାରୁ ଲଟବଟ ହେଇ ତାକୁ ମାରିବାକୁ ହାତ ଉଞ୍ଚେଇଲା ବେଳକୁ ତା' ବୁକୁ ଉପରେ ଲେତାମାରି ଜୁରିଆ ତାକୁ ତଳେ ପକେଇଦେଲା । ତା' ପେଟ ଉପରେ ପାଦ ରଖି ତାକୁ ଦାନ୍ତସନ୍ଧାରୁ କହିଲା, "ସମ୍ପାରୁ, ଆଉ ଥରେ ଯଦି ଲଛମି ପାଖକୁ ଯିବୁ ତତେ କୁରାଢିରେ ହାଣିଦେବି... ।" ସମ୍ପାରୁ ଏ ଅଚିହ୍ନା ଲୋକଟାକୁ ଚାହିଁଲା । ବୋଧେ ବୁଝିଗଲା ନା କ'ଣ! ପାଟି ନେଫେଡି ହସିଦେଲା – "ମୋ କରଜ ଟଙ୍କା

ଦେଇ ଦେ, ମୋ ମାଇପକୁ ନେଇଯା ।" ଜୁରିଆ : "କିଏ ନେଇଚି ବେ କରଜ ତୋ'ଠୁ ? ଲଛମି ନେଇଚି ?" ସମ୍ପାରୁ ପୁଣି ସେମିତି ସାଉଁସାଉଁ ହସିଲା – "ତା' ବାପ ଟଙ୍କା ନେଇ ମତେ ତାକୁ ବିକିଚି । ସେ ଶଳା ମରିଗଲାଣି । ସେଇ ଟଙ୍କା ମୁଁ ମହାଜନଠୁ କରଜ ନେଇଚି । ମହାଜନ ଟଙ୍କା ନବ; ନଇଲେ ଲଛମିକୁ ନବ । ତୁ... ଶଳା କିଏ ଲଛମିକୁ ରଖିବାକୁ !...ଶଳା, ମହାଜନକୁ କହି ପୁଲିସ୍ ଲଗେଇଦେବି ।"

ଜୁରିଆ ତା' ପେଟ ଉପରୁ ପାଦ କାଢ଼ିନେଲା । ତା' ବୁକୁ ଉପରୁ ଗଞ୍ଜି ଟାଣି ଆଣି ପଚାରିଲା – "କେତେ ଟଙ୍କା ?"

– "ହି-ହି-ହି...ଶାଲା, ତୁ ଦେଇପାରିବୁ ? ତିନି କୋଡି ପାଞ୍ଚ ! ସେଇଟା ମହାଜନ ଖାତାରେ କେତେ ନାଇଁ କେତେ କୋଡି ।"

– "ତୁ ନେଇଚୁ, ତୁ ବୁଝିବୁ ।"

– "ଉହୁଁ, ମୋ ମାଇପ ଶୁଝିବ । ନଇଲେ ମୋ ପୁଅ ଶୁଝିବ ।"

– "ହାରାମ୍‌ଜାଦା !" ଜୁରିଆ ତା' ଗାଲରେ ଠୋକିନା ଚଟ୍‌କଣାଟାଏ ପକେଇଲା ।

ସମ୍ପାରୁ ଆଖି ଖୋସି ପାଟି ମେଲାକରିଦେଲା । ତା' ଉତ୍ତାରୁ ଧକେଇଲା ।

ଜୁରିଆ ତା' ହାତରୁ ଛୋଟ କାଚ ନେଇ ଟଙ୍କାକର ମହୁଲି ଆଣି ତାକୁ ଧରେଇଦେଲା ।

ସେ ତାକୁ ଟେକି ଦେଖିଲା । ଜୁରିଆକୁ ଚାହିଁ ହସିଲା । ପାଟିରେ ପୂରେଇ ଢୋକେ ପିଇ କହିଲା, "ମୁଁ ପୁଣି ଯିବି ତୋ ପାଖକୁ । ଲଛମି ପାଖକୁ... ହି, ହି..."

ତା' ପିଚାରେ ଲାତ ମାରି ଜୁରିଆ ବୁଲିପଡିଲା । କହିଲା, "ଆଉ ଥରେ ଆସିଲେ ଜିଅନ୍ତା ଫେରିବୁ ନାଇଁ । ତତେ ହାଣି ପାହାଡ ତଳକୁ ଗଡେଇଦେବି ।"

ଖଟିରେ ସମସ୍ତେ ହି-ହି ହସିଲେ । ସମ୍ପାରୁ ଗଛମୂଳେ ଗୋଡ ଲମ୍ବେଇ ମଦ ପିଇଲା । ଜୁରିଆ ଲମ୍ବ ଲମ୍ବ ପାହୁଣ୍ଡ ପକେଇ ସେଇଠୁ ଚାଲିଗଲା । ତା' ହାତ ଗନ୍ଧଉଥିଲା ସମ୍ପାରୁ ପରି । ସମ୍ପାରୁ କିନ୍ତୁ ଲଛମି ପାଖକୁ ଗଲା । ଜୁରିଆ ତାକୁ ହାଣିଲା ନାହିଁ । ଟଙ୍କାଟିଏ ଦେଇ ବିଦାକରିଦେଲା । ସବୁଥର ନିଶାପାଣି ପାଇଁ ପଇସା ନ ପାଇଲେ ସମ୍ପାରୁ ଲଛମି ପାଖକୁ ପଳେଇ ଯାଉଥିଲା ।

ଲଛମିର ପୁଅ ହେଲା । ଜୁରିଆ ପଇସା ଖର୍ଚ୍ଚ କଲା । ପଥିପାଚନ କଲା ।

ମଝିରେ ମଝିରେ ସମ୍ପାରୁକୁ ବି ସମ୍ଭାଳୁ ଥିଲା ।

ଦେଖୁ ଦେଖୁ ତା' ପୁଅକୁ ହେଇଗଲା ଦି'ବର୍ଷ । ଠିକ୍ ଜୁରିଆ ପରି ଦେଖିବାକୁ ।

ସେଦିନ ଜୁରିଆ ମଙ୍ଗଳବାର ହାଟରୁ ପୁଅ ପାଇଁ ଗିନି ଜୋଡା କିଣି ଘରେ ପହଞ୍ଚିଲାବେଳକୁ ସବୁ ଛିନ୍‌ଛତ୍ର ହୋଇ ସାରିଥିଲା । ପାଖ ପଡିଶାରୁ ସମସ୍ତେ ଆସି ଏକା ସାଥିରେ କଣ ସବୁ କହିଲେ । ସମସ୍ତେ ଡରିଲା ଡରିଲା ପରି ଦିଶୁଥିଲେ ।

"ସମ୍ପାରୁ ସମ୍ପାରୁ ସମ୍ପାରୁ" ଶୁଭୁଥିଲା ଚାରିଆଡୁ । କିଏ ସବୁ ଆସିଥିଲେ । ଲଛମିକୁ, ତା'

ପୁଅକୁ ଟେକିନେଲେ । ସମ୍ବାରୁ ଥିଲା ସେମାନଙ୍କ ସାଙ୍ଗରେ ।

ଜୁରିଆ କୁରାଢି କାନ୍ଧେଇ ଧାଇଁଗଲା । ଏକମୁହାଁ ପୁଣି ସହର ଆଡେ । ଆଉ ଫେରିଲା ନାହିଁ ।

ହାଟପଦା ପାଖ ନିଛାଟିଆ ଘର । ସେଇଠି ମାଛିଅନ୍ଧାରରେ ଜୁରିଆ ଦେଖିଲା, ଲଛମି ରକ୍ତ ସାଲୁବାଲୁ ହେଇ ଲଙ୍ଗଳା ପଡିଛି । ତା' ପିଣ୍ଡରେ ପ୍ରାଣ ନାଇଁ ।

ତା' ପାଖରେ ମୁହଁ ମାଡି ଯେ ପଡିଛି ତାକୁ ଜୁରିଆ ଆଖିପିଛୁଳାକେ ଚିହ୍ନିନେଲା ଏବଂ ଚିହ୍ନିଦେବାମାତ୍ରେ କାଠଗଣ୍ଡି ଚିରିଲା ପରି ତା' ଉପରେ କୁରାଢି ଡ଼େଟ ବସେଇ ଦେଇଗଲା ।

ସେ ଜାଣିପାରିଲା ନାହିଁ କେତେବେଳେ ତାକୁ ସବୁ ଘେରିଗଲେ ଓ ତା' ହାତରେ ଲୁହାକଡା ପିନ୍ଧେଇଦେଲେ । କଥାରୁ ଜଣାଗଲା, ମହାଜନ ପୁଅ କହୁଥିଲା – "ହଁ ହଜୁର, ଏ ମାଇକିନାକୁ ମୁଁ ଜାଣେ । ତା' ନାଁ ଲଛମି । ସେ ଏ ସମ୍ବାରରୁ ମାଇପ । ତାକୁ ଏ ଲୋକ କେବେ ଘେରେଇ ନେଇଗଲା । ସମ୍ବାରୁ ଜବରଦସ୍ତି ଲଛମିକୁ ଏଠିକି ଉଠେଇ ଆଣି ବଳାତ୍କାର କଲା । ଲଛମି ସେଥିରେ ମରିଗଲା ହଜୁର! ବଡ ବେରହମ କାମ ହୋଇଗଲା । ଏ ଲୋକ ସମ୍ବାରୁକୁ କୁରାଢିରେ ମାରିଦେଲା, ହଜୁର ।"

ମହାଜନ ପୁଅ ଆଉ ତା'ର ତିନିଜଣ ସାଙ୍ଗ ସାକ୍ଷୀ । ପୁଲିସ୍ ବାବୁ ମହାଜନ ପୁଅକୁ ବାହାରକୁ ଡାକି ନେଇ କଣ ସବୁ କଥା ହେଲେ ।

ମଣିଷମାରୁ ମକଦ୍ଦମାରେ ଜୁରିଆକୁ ବାନ୍ଧିନେଇଗଲେ । କିଏ କହୁଥିଲା – ଆରେ ମହାଜନ ଭାରି ଦୟାଳୁ । ଏ ପିଲାଟାକୁ ସେ ପାଳିବ ବୋଲି ନେଇଗଲା ।

ସର୍ବେଶ୍ୱରବାବୁ ଆମମାନଙ୍କୁ ଚାହିଁଲେ – "କ'ଣ ବୁଝିଲେ ? ସମ୍ବାରୁ ଏକମାତ୍ର ସାକ୍ଷୀ । ତା' ପାଟି ବନ୍ଦ କରି ଦିଆଯାଇଥିଲା । ଜୁରିଆ ଯାହାକୁ ହାଣିଲା ସେଇଟା ମଢଟାଏ ।"

ଫାଶୀ ପୂର୍ବଦିନ ଜୁରିଆକୁ ପଚରାଗଲା, "ତୋର ଶେଷ ଇଚ୍ଛା କ'ଣ ?"

ଜୁରିଆ ଶୂନ୍ୟକୁ ଚାହିଁରହିଲା । ତା'ପରେ କହିଲା, "ମୋ ପୁଅକୁ ଦେଖିବି ।"

ମହାଜନ ପାଖକୁ ଖବର ଗଲା । ସେ ନୌକର ହାତରେ ସେ ପିଲାଟାକୁ ପଠେଇଦେଲା । ଜୁରିଆ ପୁଅକୁ ଧରିବାକୁ ଚାହିଁଲା । ସେମାନେ ମନାକଲେ । ସେମାନେ ପୁଣି ପଚାରିଲେ, "ଆଉ କଣ ମନ ହଉଚି ତୋର ? କଣ ଖାଇବାକୁ ଚାହୁଁଚୁ ?" ଜୁରିଆ ମୁହଁ ଉଜ୍ଜ୍ୱଳ ଦିଶିଲା । ସେ ସାମାନ୍ୟ ହସିଲା ପରି ଦିଶିଲା । କହିଲା – "ପୁରି, ଆଳୁ ତର୍କାରି ।"

ସର୍ବେଶ୍ୱରବାବୁଙ୍କ ଆଖିରୁ ଟବଟବ ପାଣି ନିଗିଡିଯାଉଥିଲା । ଓଠ ଥରୁଥିଲା ।

– "ଯେତେବେଳେ ସେମାନେ ପାଖ ଜଳଖିଆ ଦୋକାନରୁ ପୁରି, ଆଳୁ ତର୍କାରି ଆଣି ଦେଲେ ଜୁରିଆ କାନ୍ଦି କାନ୍ଦି ସେଥିରୁ ଖଣ୍ଡିଏ ଖାଇଲା । ତା' ପେଟ ଦି'ଭାଗ ହେଇଯାଉଥିଲା । କହିଲା – 'ବାକିତକ ସେ ବାହାରେ ବସିଚି ପିଲାକୁ ଦେଇଦିଅ ମାଲିକ, ତୁମର ଧର୍ମ ହବ ।'

ଶୁନ୍‌ଶାନ୍ ରାତିରେ ପୁଣି ସେମାନେ ତା' ପାଖକୁ ଆସିଲେ । ଭଗବାନଙ୍କ ପାଖରେ ପ୍ରାର୍ଥନା କରିବାକୁ କହିଲେ । "ତୁ ସମ୍ପାରୁକୁ ମାରିଚୁ ?"

– "ମାରିଚି । ସେ ଲଛମିକୁ ମାରିଦେଲା । ମୁଁ ତାକୁ କୁରାଢିରେ ହାଣି ଦେଲି ।"

– "ଆଉ କାହାକୁ କଣ କହିବାକୁ ଚାହୁଁଚୁ ?"

ଜୁରିଆ ଅଳ୍ପ ହସିଲା । "ଆମ ଓକିଲ ବାବୁ କହୁଥିଲେ ମହାଜନ ପୁଅ ଲଛମିକୁ ମାରିଚି...ଚାରିଜଣ ମିଶି ତାକୁ ମାରିଛନ୍ତି । ସମ୍ପାରୁକୁ ମାରିଚନ୍ତି ସେ କହିଦବ ବୋଲି । ...ଉହୁଁ । ମୁଁ ମାରିଚି ସମ୍ପାରୁକୁ । ମହାଜନ ପୁଅ ଭଲ ମଣିଷ । ସେ ମୋ ପୁଅକୁ ପାଳିବ । ତାକୁ ଖାଇବାକୁ ଦବ । ହେଲେ ସେ କଣ ତାକୁ ପୁରି, ଆଳୁ ତର୍କାରି ଦବ ?"

– "ନାଲାଏକ୍, ବେକୁବ୍ କାହାଁକା !"



## ଦାତା

ପ୍ରବଳ ଶୀତ ପଡିଥାଏ ପାହାଡତଳିଆ ସେ ଛୋଟ ସହରରେ । ହେମାଳ ସେଥିରେ ପିଟୁଥାଏ ଉତ୍ତରରୁ ।

ସେଥିରେ ପୁଣି ରାତିସାରା ଝିପିଝିପି ବର୍ଷା ।

ଆଣ୍ଠୁମୁଣ୍ଡ ହୋଇ ନିଜକୁ ନିଜେ ଜାକିଜୁକି ଧରିଲେ ବି ଉଷୁମ ଚଢୁନଥାଏ ଦେହରେ । ଛୁଞ୍ଚିମୁନ ପରି ପାଣିଟୋପା ଫୋଡିହୋଇଯାଉଥାଏ । କାଲୁଆ ହୋଇଯାଇଥାଏ ସବୁ ଅବୟବର ଅଙ୍ଗଗୁଡାକ ।

ସକାଳ ପହର । ମେଘ ଆଉ କୋହଲା ପାଗ ହୋଇ ନଥିଲେ ଆଲୁଅ ହୋଇସାରିଥାନ୍ତା । କାକର କୁଢେଇ ହଉଥାଏ ଗଛ ବୁଦା ପତ୍ରମାନଙ୍କରେ । ଦୂବ ଘାସ ସବୁ ଟାଙ୍କୁରି ରହିଥାଏ । କିଏ ବା କାହିଁକି ସେତେବେଳେ ସେ ଓଦା-ସରସର ମୁରୁମ୍ ରାସ୍ତାକୁ ବାହାରିବ ?

କିନ୍ତୁ ରାସ୍ତା ସେ ମୁଣ୍ଡରେ ଗୋଟାଏ ଆକୃତି ଦେଖାଗଲା । ଖୁବ୍ ଆସ୍ତେ ସେ ପାଖେଇଆସିଲା ।

ଧୋତି ଚଦର ଘୋଡେଇ ହେଇଥିବା ସେ ମଣିଷଟି ଲମ୍ବା ପାହୁଣ୍ଡ ପକେଇ ଚାଲୁଥିଲା । ମୁଁ ଖୋଲା ଝରକା ପାଖେ ଖଟ ଉପରେ ରେଜେଇ ଭିତରୁ ଚାହିଁଥିଲି ।

ମୋ ପଛରୁ ଶୁଭିଲା, ମଣି ଭାଇନା କହୁଛି, "ବୁଝିଲୁ ଗୌତମ୍, ଏଇ ସେଇ ଯା' କଥା ମୁଁ କହୁଥିଲି ।"

ମୁଁ ସେତେବେଳକୁ ଦନେଇ ଶ୍ରୀଚନ୍ଦନ କଥା ଢେର୍ ଶୁଣିସାରିଥିଲି ।

ମୁଁ ସେଠିକି ଆସିବାର କାରଣ କେବଳ ତାଙ୍କୁ ଦେଖାକରି କିଛି ସାହାଯ୍ୟ ମାଗିବା । ସେ ଅନେକ ମୋ ଭଳି ପିଲାଙ୍କୁ ନିଜ ଆଡୁ ଖଞ୍ଜିଦେଇଥିଲେ ପାଠ ପଢିବା ପାଇଁ!

ଶ୍ରୀଚନ୍ଦନ ରଜାନଅର ଭିତର ଲୋକ । ଭାରି ପ୍ରତିପତ୍ତି, ଖୁବ୍ ପଇସା । ସେ ବସିଥିବା ଗଦି ଟେକିଦେଲେ ଲକ୍ଷେ ଟଙ୍କା ବାହାରିବ । କିନ୍ତୁ ସେ ପଇସା ଅଧେ ଏମିତି ବାଣ୍ଟି ଦେଉଥିଲେ । ଚତୁର ଲୋକ ଖିଚ କହି ତାଙ୍କଠୁ ବହୁ ପଇସା ଭଣ୍ଡି ନେଉଥିଲେ । ସେ ଜାଣିଲେ ସୁଦ୍ଧା ହସି

ଦେଉଥିଲେ – "ଆରେ ଯାଃ, ଯେ ମିଛ କହିଲେ ମୋର କଣ ଗଲା; ମୁଁ ତ ସତରେ ଅଛି ।"

ଏଇ ତା'ହେଲେ ସେ ଦନେଇ ଶ୍ରୀଚନ୍ଦନ!

ମଣି ଭାଇନା ଆଉ ମୁଁ କେବଳ ଚାହିଁରହିଲୁ । ସେ ସେମିତି ପାଖେଇଆସୁଥିଲେ ।

ଆଗ ଘରକୁ ଲାଗି ଖଣ୍ଡେ ମେଲା ଜାଗା, ଉପରେ ଟିଣ ଛାତ, ତଳେ ସିମେଣ୍ଟ ବେଞ୍ଚ । ବସ୍ ଯାତ୍ରୀମାନେ ଠିଆହୋଇ ଅପେକ୍ଷା କରିବା ଜାଗା । ସେଇଠି ନିରାଶ୍ରୟ ଭିକାରି ରାତିରେ ଶୋଇଥାନ୍ତି । ତା' ଭିତରୁ କେତେଜଣ ଚୋରି କରନ୍ତି । ଧରାପଡ଼ିଲେ ଖୁସି ହୁଅନ୍ତି – ଯାହା ହଉ ଛ'ମାସ ବର୍ଷେ ପାଇଁ ପେଟଚିନ୍ତାରୁ ତ ମୁକ୍ତି ମିଳିଲା ।

ଶ୍ରୀଚନ୍ଦନ ରାସ୍ତା ମୋଡଟା ପାଖରେ ପହଞ୍ଚିଲାପରେ ଆମ ଝରକା ସାମ୍ନାକୁ ଚାଲିଆସିଲେ । ଝରକା ପାଖରୁ ସେ ମୋଡଟା ଦିଶେ ନାହିଁ । ହେଲେ ମାତ୍ର କେତେ ପାହୁଣ୍ଡ କଥା । ମୋତେ ଲାଗିଲା ଯେ, ସେ ବୋଧହୁଏ ଅଟକିଗଲେ । ନ ହେଲେ ଏତେ ସମୟ ଲାଗିବା କଥା ନୁହେଁ । ହୋଇପାରେ ମୁଁ ମୋର ଉତ୍କଣ୍ଠା ହେତୁ ସେମିତି ଭାବୁଥିଲି । ହେଇ ଆସିଯିବେ, ଭାବୁ ଭାବୁ ସେ ମୋ ସାମ୍ନାକୁ ବାହାରିଆସିଲେ ।

ଆରେ, ଏ' ତ ଆଉ ଜଣେ । ଏ' ତ ମଠା ଚାଦର ଘୋଡେଇ ହୋଇ ନାହାନ୍ତି ।

କିନ୍ତୁ ତାଙ୍କୁ ଚିହ୍ନିବାରେ ମଣି ଭାଇନାର ଭୁଲ ହେବା କଥା ନୁହେଁ । ଏଇ ସେଇ ଦନେଇ ଶ୍ରୀଚନ୍ଦନ ଆମ ଝରକାବାଟେ ପାରି ହୋଇଗଲେ ।

– "ଆଛା ଭାଇନା, ଏ ମୋଡଯାଏ ସେ ଚାଦର ଘୋଡେଇ ହେଇ ଆସୁଥିଲେ ନା ?"

– "ହଁ ସେମିତି ଦିଶୁଥିଲେ ତ!"

"ଦିଶୁଥିଲେ କ'ଣ ମ' ? ମୁଁ ପରା ଚାହିଁରହିଛି, ସେ ଖଣ୍ଡେ ମଠା କାଣ୍ଟିଆ ଘୋଡେଇ ହେଇ ଆସୁଥିଲେ । ଏଇଠି ଦେଖିଲାବେଳକୁ ଖାଲି ଧୋତି ଫତେଇ! – ଆଶ୍ଚର୍ଯ୍ୟ"

ମଣି ଭାଇନା କିଛି କହିଲା ନାହିଁ ।

ମୁଁ ବି ସେ ବିଷୟରେ ଚିନ୍ତା କଲି ନାହିଁ । ସେଦିନ ତ' ଯେମିତି ହେଲେ ତାଙ୍କୁ ସାଙ୍ଗେ ଦେଖା ହବ ଉପରଓଳି । ସେ ସମୟ ଦେଇଛନ୍ତି ମୋତେ, ଆସିବାକୁ । ସେତିକିବେଳେ ତାଙ୍କୁ ଭଲରୂପେ ଦେଖିନେବି ।

ମଣି ଭାଇନା କେତେବେଳେ ବାହାରକୁ ଯାଇ ସେଇ ଝରକା ପାଖରେ ମୋତେ ଡାକିଲେ – "ଆ' ବାହାରକୁ ଗୋଟେ ଜିନିଷ ଦେଖିବୁ ।"

ମୁଁ କୌତୂହଳୀ ହେଇ ବାହାରକୁ ଆସିଲି । ସେ ମୋତେ ଆଗ ଘର ପାଖ ମେଲା ଆଡକୁ ନେଇଗଲେ । ସେଇଠି ଝୁମ୍ପୁରୀ ମୁଣ୍ଡୀ ସ୍ତ୍ରୀଲୋକଟିଏ ତା' ପିଲାକୁ ଦୁଧ ପିଆଉଥାଏ । ପିଲା ଆଉ ମା' ଘୋଡେଇ ହୋଇଥାନ୍ତି ଖଣ୍ଡେ ମଠା କାଣ୍ଟିଆ ।

ମୁଁ ଭୂରୁ କୁଞ୍ଚେଇ ମଣି ଭାଇନାକୁ ଚାହିଁଲି । ମଣି ଭାଇନା କହିଲା, "ତୁ ଯାହା ଭାବୁଛୁ ତା'

ଠିକ୍ । ସେ ଲୋକ ସେମିତି । ଏଇବାଟେ ଗଲାବେଳକୁ ଏ ଭିକାରି ମା' ପିଲା ଶୀତରେ ବସିଥିବା ସେ ଦେଖିଲେ । କିଛି ନ କହି କାନ୍ଧରୁ ଚଦରଟି କାଢ଼ି ଘୋଡେଇ ଦେଇ ଚାଲିଗଲେ । ଛୁଆଟି ବୋଧେ ଉଷୁମ ଲାଗିବାରୁ ଦୁଧମୁଣ୍ଡିକୁ ପାଟିରେ ଧରି ଘୁମେଇ ପଡିଥିଲା । ମା' ଖୁସିରେ ବିସ୍ମୟରେ କୃତଜ୍ଞତାରେ କାନ୍ଦିପକେଇଥିଲା ।"

ସେ ଦିନ ଉପରଓଳି ମୁଁ ଯାଇ ପହଞ୍ଚିଲାବେଳକୁ ଜନାର୍ଦ୍ଦନ ଶ୍ରୀଚନ୍ଦନ ତାଙ୍କ ବୈଠକ ଘରେ ବସିଥାନ୍ତି । ସେ ବଖରାରେ ସବୁ ନିର୍ମଳ ଦିଶୁଥାଏ । ଧଳା ଗଦି ଉପରେ ଗୋଟିଏ ତକ୍ତା । ସାଧାରଣ କଲମ ଦୁଆତ । ଆଉ ତା' ପଛରେ ଚକା ପକେଇ ବସିଥାନ୍ତି ଜନାର୍ଦ୍ଦନ ଶ୍ରୀଚନ୍ଦନ । ଗଦି ତିନିପାଖରେ ଏକାପ୍ରକାର ସଅପ । ମୁଁ ଭିତରେ ପାଦ ଦେଉ ଦେଉ ମୋ ଆଡକୁ ନ ଚାହିଁ ସେ କହିଲେ, "ଆସ ଗୌତମ, ବସ !"

ନଳିଆ ପେଣ୍ଟ ଆଉ ପୂରା କମିଜ ପିନ୍ଧି ଚକା ପକାଇ ବସିବା ସହଜ ହେଲା ନାହିଁ । ତଥାପି ବସିଗଲି ।

ସେ ତାଙ୍କର ଲେଖିବା ସାରି କାଗଜଟି ମୋଆଡକୁ ବଢେଇଦେଲେ ।

ମୁଁ ଦେଇଥିବା ଦରଖାସ୍ତ ଉପରେ ଲେଖାଥିଲା – ମାସକୁ ଟ.୭୫ ବୃତ୍ତି ଦୁଇବର୍ଷ ପାଇଁ ।

– "ବାହାରେ ଏତିକିରେ ଚଳି ପାରିବ ?"

– "ଚଳିଯିବି । ମୁଁ ଜାଣିନାହିଁ କେତେ ଖର୍ଚ୍ଚ ହେବ । ସେଠି ଯାଇ ପହଞ୍ଚିଲେ ଜଣାପଡିବ ।"

– "ଓଡିଶା ଭିତରେ କାହିଁକି ପଢ଼ିଲ ନାହିଁ ?"

– "ଏମ୍.ଏ. ଆଉ ଲ' ଏକାଠି ପଢ଼ିବା ପାଇଁ ଏଠି ସୁବିଧା ନାହିଁ ।"

– "ଆଚ୍ଛା, ଆଚ୍ଛା । ପାଖଘରେ ମୋହରିର୍‌କୁ ଏ ଦରଖାସ୍ତ ଦେଇ ଦବ ! ଯାଅ, ମନଦେଇ ପାଠ ପଢ଼ିବ ।"

ମୁଁ ମୋର କୃତଜ୍ଞତା ଜଣାଇବା ପାଇଁ ଦି'ପଦ ଆରମ୍ଭ କରୁ କରୁ ସେ ତାଙ୍କ ବାଁ ହାତ ଟେକି ବାରଣ କରିଦେଲେ – ଅଳ୍ପ ହସି ଚାହିଁଲେ । ତା'ପରେ ତଳକୁ ମୁହଁ କରି ଅନ୍ୟ କାଗଜ ଆଡେ ମନ ଦେଲେ ।

ମୁଁ ମୋହରିର୍ ପାଖରେ ପହଞ୍ଚିଲାବେଳକୁ ସେ ମୋ ପାଇଁ ଅପେକ୍ଷା କରିଥିଲେ । ସେ ଗୋଟାଏ ଖାତା ଖୋଲି, ମୋ ଦସ୍ତଖତ ଚାହିଁଲେ । ତା'ପରେ ଗୋଟାଏ ଲଫାପା ବଢେଇ ଦେଇ କହିଲେ, "ଏଥିରେ ପାଞ୍ଚଶ ଟଙ୍କା ଅଛି, ବାଟଖର୍ଚ୍ଚ ଏବଂ ନାଁ ଲେଖା ପଇସା । ଆଉ ଏମୁଣାରେ ଗରମ କପଡା-କୋଟ୍ ତିଆରି କରାଇ ନବ । ଉତ୍ତର ଭାରତରେ ଭାରି ଶୀତ ।"

ଏତେ ସହଜରେ ଏମିତି ଏତେ କଥା ହୋଇଯିବ ବୋଲି ମୁଁ କେବେ ଭାବି ନ ଥିଲି ।

ମୋତେ ଉଡେଇ ଟୁଡେଇ ଲାଗୁଥିଲା । ଉଚ୍ଛୁଳିଲା ପରି, ପହଁରିଲା ପରି ଲାଗୁଥିଲା । ମୁଁ ମଣି ଭାଇନା ପାଖରେ ଧାଇଁଲା ପରି ପହଞ୍ଚିଗଲି ।

ସେ କିନ୍ତୁ ଖୁସି ହେଲା ସିନା, ଆଶ୍ଚର୍ଯ୍ୟ ହେଲା ନାହିଁ । ସତେବା ସେ ଆଗରୁ ସବୁ ଜାଣିଥିଲା – "ସେ ଲୋକ ସେଇଆ ପରା । ଗଛ ଫଳ ଦେଲା ପରି ଦେଇଦେବ – ହିସାବ ରଖିବ ନାହିଁ । ସେ ମୋହରିର ହିସାବ ରଖି ମାସକୁ ମାସ ଦେଖେଇବ । କେତେ କେଉଁଠି ଏମିତି ସବୁ ବୃତ୍ତି ପାଇ ପଢୁଛନ୍ତି କେହି ଜାଣନ୍ତି ନାହିଁ । ମୋହରିରକୁ ମନାକରାହେଇଚି କାହାକୁ କହିବାକୁ ।"

ମୁଁ ଆହୁରି ବିସ୍ମିତ ହେଇ ପଚାରିଲି – "ଏଥିରେ ଲୁଚେଇବାର କଣ ଅଛି ? ଏଇଟା ଜାଣିଲେ ଲୋକେ ତାଙ୍କୁ ପ୍ରଶଂସା କରିବେ ।"

ମଣି ଭାଇନା ହସିଲା । କହିଲା, "ସେଇଆ ତ' ସେ ଲୋକଟା ଚାହେଁ ନାହିଁ । ଏମିତିକି ତୁ ଯଦି ଦୁଇବର୍ଷପରେ ତାକୁ ଦେଖିଲେ ନଚିହ୍ନୁ ସେଥିରେ ତା'ର କିଛି ଭାବିବାର ନାହିଁ । ତତେ ବି ସେ ମନେ ରଖିବ ନାହିଁ ।"

"ଦୁଇ ବର୍ଷ ପରେ ମୁଁ ଯଦି ରୋଜଗାର କରେ ଆଉ ଏ ଅଢେଇ ହଜାର ଟଙ୍କା ମୋଭଳି ଅନ୍ୟ ଜଣକୁ ଦବାପାଇଁ ଏଠିକି ପଠାଇ ଦିଏ, ସେ ରଖିବେ ନା ନାହିଁ ।"

– "ଉହୁଁ! ଫେରସ୍ତ ଦବାର ପ୍ରଶ୍ନହିଁ ଉଠୁନାହିଁ ।"

ମୋ ମୁଣ୍ଡ ହଠାତ୍ ନଇଁଗଲା । ମୁଁ ତାକୁ ମୁହଁଟେକି ଚାହିଁପାରିଲି ନାହିଁ । ଶୁଣିଲି, ସେ କାହିଁ କେତେ ଦିନରୁ ଏମିତି ଦେଇଚାଲିଛନ୍ତି । ନେବା ଲୋକ କାହାକୁ କହୁନାହାନ୍ତି – ଦେବା ଲୋକ ତ' ସହଜେ କହୁନାହାନ୍ତି । ଶୁଣିଲି ଡାକ୍ତର ସାମଲ, ଇଞ୍ଜିନିୟର ପଟ୍ଟନାୟକ, ଅଧାପିକା ଦାସ ତାଙ୍କ ସାହାଯ୍ୟରେ ପାଠ ପଢି ମଣିଷ ହେଇଛନ୍ତି । ଆଶ୍ଚର୍ଯ୍ୟ କଥା, କେହି କେବେ ଫେରିଆସି ତାଙ୍କୁ କହିନାହାନ୍ତି – ଧନ୍ୟବାଦ । ମୁଁ ଆପଣଙ୍କ ଋଣ ଶୁଝିପାରିବି ନାହିଁ ।

– "କାହିଁକି ?"

ମଣି ଭାଇନା ପାଖରେ ବି ତା'ର ଉତ୍ତର ନାହିଁ ।

ସେମାନେ କଣ ଭାବିଛନ୍ତି ଜନାର୍ଦ୍ଦନ ଶ୍ରୀଚନ୍ଦନ ରାସ୍ତାକଡର ଜାମୁକୋଳି ଗଛ । କୋଳି ଖାଇ ପଛକୁ ଏପରି ଚାହିଁବାର ପ୍ରୟୋଜନ ନାହିଁ ।

ମୁଁ ମଣି ଭାଇନାକୁ କିଛି କହିଲି ନାହିଁ ।

ମନେମନେ ପଣ କଲି ମୁଁ ଅବଶ୍ୟ ଦିନେ ଏହାର ପ୍ରତିଦାନ ଦେବି ।

X X X X

ନାଁ ଲେଖା ପର୍ବ ସରିଗଲା ।

ସେତେବେଳେ ଖୁବ୍ ଶସ୍ତା ସମୟ । ୭୫ଟଙ୍କାରେ ସବୁ ଖର୍ଚ୍ଚ ଉଠିଯାଉଥିଲା । କେବେହେଲେ ମାସର ତିନି ତାରିଖ ଡେଇଁ ନଥିଲା ମନିଅର୍ଡର ପହଞ୍ଚିବାରେ । ମନିଅର୍ଡର କୁପନରେ କିଛି ଲେଖା ହଉ ନଥିଲା – ସତେବା ତାଙ୍କର କିଛି କହିବାର ନଥିଲା ତାଙ୍କ ତରଫରୁ ।

ମୁଁ ମୋର ଆବେଗ ଚାପି ରଖିପାରିଲି ନାହିଁ । ଦୁଇଥର ଚିଠି ଦେଲି । ଉତ୍ତର ଆସିଲା

ନାହିଁ ।

ମଣି ଭାଇନାକୁ ଲେଖିଲି । ସେ କହିଲା – ସେଇଠୁ ଉତ୍ତର ମିଳେ ନାହିଁ ।

ପ୍ରତିମାସରେ ପଞ୍ଚସ୍ତରୀଟି ଟଙ୍କା ମୋ ଉପରେ କ୍ରମଶଃ ମଡେଇ ହୋଇ ପଡୁଥାଏ । ସେତେବେଳେ ସେ ଚାପକୁ ନ ସହି ଉପାୟ ବା କଣ ଥିଲା ମୋ ପାଇଁ ?

ପୂଜାଛୁଟିରେ ରହିଗଲି । କୋଠି କୋଠି ଗରମ କନାର ଟ୍ୱିଡ୍ କୋଟ ଶୀତକୁ ଖୁବ୍ କାମରେ ଲାଗିଲା । ମୁହଁକୁ ଶୀତ ପବନ ପିଟୁଥିଲାବେଳେ ମୁଁ ମୁଣାରେ ହାତ ପୂରେଇ ଉଷୁମ ଅନୁଭବ କରୁଥିଲି । ମୋ ଆଖି ଜକେଇଆସୁଥିଲା । ଭାରି ମନହଉଥିଲା ଜନାର୍ଦ୍ଦନ ଶ୍ରୀଚନ୍ଦନଙ୍କୁ ମୁଣ୍ଡିଆ ମାରନ୍ତି ।

ବର୍ଷଟିଏ ପୂରିଗଲା । ମଣି ଭାଇନା ଲେଖିଲା ଆସିବା ପାଇଁ । ମୋର ବି ମନ ହଉଥିଲା ଥରେ ବୁଲିଚାଲି ଯିବାକୁ । ମନ ହଉଥିଲା ଶ୍ରୀଚନ୍ଦନଙ୍କୁ ଦେଖାକରିବାକୁ ।

ମୁଁ ଯେଉଁ ଦିନ ଆସି ପହଞ୍ଚିଲି ସେ ଦିନ ସନ୍ଧ୍ୟା । ମୁଁ ଶ୍ରୀଚନ୍ଦନଙ୍କ କୋଠା ଆଡିକି ବାହାରିଲି । ସେଇଠି ଭିଡ ଲାଗିଥାଏ ।

ମୋହରିର୍ ବାବୁ ବି ଖୁବ୍ ବ୍ୟସ୍ତ ଥାଆନ୍ତି ।

ଜଣେ ପୁରୁଣା ରାଜପରିଚାରକର ଝିଅ ବିଭା ହଉଥାଏ । ରାଜ୍ୟ ଚାଲିଗଲା ପରେ ରାଜା ତ ସେଇଠି ରହୁ ନଥିଲେ ଏମାନଙ୍କ ଗୁହାରି ଶୁଣିବାକୁ ।

ସେଇଠି ସତେ କେହି ନଥିଲେ କାହା କଥା ଶୁଣିବାକୁ ।

ପୁରୁଣା ଅଭ୍ୟାସରେ ସେମାନେ କିନ୍ତୁ ଚାଲିଆସୁଥିଲେ ଦଳେଇ ଶ୍ରୀଚନ୍ଦନ ପାଖକୁ । ସେଇଠି ତାଙ୍କ ଦରଖାସ୍ତ ଥରେ ମଞ୍ଜୁର ହୋଇଗଲାପରେ ତାକୁ ଆଉ କିଛି ଚିନ୍ତା କରିବାକୁ ପଡୁ ନ ଥିଲା । ଜଣକ ନିର୍ଦ୍ଦେଶରେ, ଜଣକ ନିଷ୍ପତ୍ତି ଉପରେ ସମଗ୍ର ଆୟୋଜନ ହୋଇଯାଉଥିଲା ।

ମୁଁ ସୁବିଧା ଦେଖି ମୋହରିର୍‌ଙ୍କ ପାଖେ ପହଞ୍ଚିଲି । ସେ ମୋତେ କିଛି ସମୟ ଚାହିଁଲା ପରେ ଚିହ୍ନିଗଲେ ।

– "ଓ...ଗୌତମ ? କେବେ ଆସିଲ ?"

– "ଏଇ ଘଣ୍ଟେ ଆଗରୁ । ମୁଁ ଟିକେ ତାଙ୍କ ସାଙ୍ଗେ ଦେଖା କରି ପାରିବି ?"

– "କାହା ସାଙ୍ଗେ ?" ସେ ହାତରେ ଲମ୍ବା ଫର୍ଦ୍ଦ କାଗଜ ଧରି ଚାଲି ଯାଉ ଯାଉ ମୋତେ ପଚାରିଲେ ।

ଆଶ୍ଚର୍ଯ୍ୟ ! ଏତିକି କଣ ସେ ବୁଝିପାରୁ ନଥିଲେ, ମୁଁ କାହା ସାଙ୍ଗେ ଦେଖାକରିବାକୁ ଚାହୁଁଛି ।

ସେ ଅଟକିଗଲେ । ଭୂରୁ କୁଞ୍ଚେଇ ମୋ ଆଡକୁ ଚାହିଁ ପଚାରିଲେ – "କ'ଣ କିଛି ଅସୁବିଧା ହେଲା କି ?"

– "ନା"

– "ତ'ହେଲେ ?"

– "ମୁଁ ତାଙ୍କୁ ଏମିତି ଦେଖାକରି ପ୍ରଣାମ ଜଣାଇ ଚାଲିଯିବି"

ସେ ମୋତେ ଗୋଡଠୁ ମୁଣ୍ଡଯାଏଁ ଚାହିଁଗଲେ । ସତେ ବା ମୁଁ କୌଣସି ଅପରାଧୀ ।

– "ଆଜି ତ' ସେ କନ୍ୟାପିତା ଏଣୁ ଉପବାସ କରିଛନ୍ତି । କନ୍ୟାଦାନଯାଏଁ ତାଙ୍କୁ ଜମ୍ମା ସମୟ ନାହିଁ ।"

– "ତା'ହେଲେ ତ ଅନେକ ଲୋକ ତାଙ୍କ ପାଖକୁ ଯିବା-ଆସିବା କରୁଥିବେ । ମୁଁ ସେମାନଙ୍କ ଗହଳିରେ ଯାଇ ଚାଲିଆସିବି ।"

ମୋହରିର୍‌ବାବୁ ଜଣେ ପୁରୁଣା ଶିକ୍ଷକ, ଭାରି ସଙ୍କୋଚ, ଅନୁଭବୀ ମଣିଷ । କହିଲେ, "ଠିକ୍ ଅଛି । ବାହାରପଟୁ ଅଗଣାକୁ ଚାଲିଯାଅ, ସେ ସେଇଠି ଥିବେ ।" ମୁଁ ଅଗଣାରେ ପହଞ୍ଚିଲାବେଳକୁ ବେଶି ଲୋକ ନ ଥିଲେ । ତଥାପି ଚାରି-ପାଞ୍ଚଜଣଙ୍କ ଆଗରେ ମୋତେ ଟିକିଏ ଲାଜ ମାଡିଲା । ମୁଁ ଝୁଲା ମୁଣାରୁ ହଳେ କାନପୁରୀ ଚପ୍ପଲ କାଢି ତାଙ୍କ ପାଦପାଖେ ଥୋଇଦେଇ ନମସ୍କାର କଲି ।

ସେ ମୋ ଦୁଇ କାନ୍ଧକୁ ସାମାନ୍ୟ ଚାପିଦେଇ ମୋ ଆଖିକୁ ଚାହିଁଲେ ।

ମୁଁ କେଜାଣି କାହିଁକି ତାଙ୍କୁ ମନେ ପକେଇଦେବାକୁ କହିଲି, "ମୁଁ ଗୌତମ ।"

– "ଜାଣେ, ମଣିର ଭାଇ ତ ।"

ନିଜ ଚପ୍ପଲ କାଢିଦେଇ ମୁଁ ଆଣିଥିବା ଚପ୍ପଲ ପିନ୍ଧିଲେ । "ଭଲ ହେଇଚି । ତମେ ଆଜି ବିଭାଘର ପାଇଁ ରହିବ ।"

ତା'ପରେ ପିଠିରେ ହାତ ମାରିଦେଇ ଅନ୍ୟ କାମରେ ମନ ଦେଲେ ।

ମୁଁ ସେଇଠୁ ଫେରିଆସିଲାବେଳେ ଖୁବ୍ ଉଶ୍ୱାସ ଲାଗୁଥିଲା । ଖୁସି ଲାଗୁଥିଲା । ବିଭାଘର ନିର୍ବିଘ୍ନରେ ହୋଇଗଲା । ବରପକ୍ଷ କୌଣସି କଥାରେ ପାଟି ଫିଟାଇବାକୁ ସୁବିଧା ପାଇଲେ ନାହିଁ । ମୁଁ ଶେଷଯାଏଁ ସେମାନଙ୍କ ତଦାରଖରେ ଲାଗିଥାଏ । ସେମାନେ ବାରମ୍ବାର ମୋତେ ପଚାରୁଥାନ୍ତି ଶ୍ରୀଚନ୍ଦନ କନ୍ୟାର କଣ ହୁଅନ୍ତି ? କାହିଁକି ସେ ଏତେ ଖର୍ଚ୍ଚ କରି ଝିଅର ବିଭାଘର କରଉଛନ୍ତି ? ମୁଁ କିଛି ଉତ୍ତର ନ ଦେଇ କେବଳ କହୁଥାଏ – ଏଇଟା ତାଙ୍କ ଦସ୍ତୁର । ସେ ଏମିତି ଅନେକ କାର୍ଯ୍ୟ କରନ୍ତି ।

– "ଆଚ୍ଛା, ଏ ଯୁଗରେ ଧର୍ମକାର୍ଯ୍ୟ କରିବାକୁ ପୁଣି ଲୋକ ଅଛନ୍ତି ?"

ଝିଅ ବିଦାୟ ବେଳର ଦୃଶ୍ୟ ଭୁଲିବାର ନୁହେଁ ।

ଝିଅକୁ ଗାଡିରେ ବସାଇବା ପାଇଁ ଶ୍ରୀଚନ୍ଦନ ଠିଆହୋଇଥାନ୍ତି । ତାଙ୍କ ପାଦ ଧରି 'କୁନି' – ଝିଅ ନାଁ କୁନି – କାନ୍ଦିଲା । ସେ ତାକୁ ଉଠାଇ ବାପକୁ ସମର୍ପି ଦେଲେ । ବାପ ନିଜେ ସମ୍ଭାଳି ନ ପାରି ଗୁଡାଏ କାନ୍ଦିଲା । ବରପକ୍ଷ ଲୋକେ ଶ୍ରୀଚନ୍ଦନଙ୍କୁ ଦେବତା ମଣି ଜଣେ ଜଣେ ପ୍ରଣାମ କଲେ । ଶ୍ରୀଚନ୍ଦନ କହିଲେ, "ଝିଅଟିକୁ ପାଇଲେ, ତା' ମନରେ କଷ୍ଟ ଦେବେ ନାହିଁ ।"

ଧାଁ-ଦଉଡ, ଡକାହକା, କାନ୍ଦବୋବୋଳି ଭିତରେ ଗାଡି ଘୁଞ୍ଚିଗଲା ଏବଂ ହଠାତ୍ ସବୁ ନିରବ ହୋଇଗଲା ।

ଆଖିରେ ଆଖିଏ ଲେଖା ଲୁହ ନେଇ ଶ୍ରୀଚନ୍ଦନଙ୍କୁ କନ୍ୟାପକ୍ଷର ସମସ୍ତେ ଚାହିଁଥାନ୍ତି । କଣ ବା ଆଉ ତାଙ୍କର କହିବାର ଥିଲା ?

ଶ୍ରୀଚନ୍ଦନ ମୋହରିର୍‌ବାବୁଙ୍କୁ ପାଖକୁ ଡାକି ମୋତେ ଦେଖେଇ କଣ କହିଲେ, ତା'ପରେ ଚାଲିଗଲେ ଅତ୍ୟନ୍ତ ସ୍ୱାଭାବିକ ଭାବରେ । ଦେହରୁ ମଠା କାଣ୍ଟିଆଟି କାଢିଦେଲାପରେ ଟଙ୍କା ପଚାଶ ହଜାର ଖର୍ଚ୍ଚ କରିଦେଇ କୋହଲା ପବନକୁ ମେଲାବୁକୁ ଦେଖେଇ ସେ ଚାଲିଗଲେ । ତାଙ୍କ ପଛେ ପଛେ ସମସ୍ତେ ଟାଣି ହୋଇ ଚାଲିଲୁ । ସେ କିନ୍ତୁ ପଛକୁ ଫେରି ଚାହିଁଲେ ନାହିଁ । ଦୁଇଦିନ ପରେ ମୁଁ ମାମୁଘରକୁ ଯିବା କଥା । ସେଇଠୁ ସପ୍ତାହକ ପରେ ଛୁଟି ଶେଷ ।

ମଣି ଭାଇନା ସେଦିନ ଆସୁ ଆସୁ କହିଲା, "ଆରେ, ତୁ ଯିବାଆଗରୁ ମୋହରିର୍ ବାବୁଙ୍କୁ ଦେଖା କରି ଯିବାକୁ ସେ କହିଛନ୍ତି ।"

– "ଠିକ୍ ଅଛି । ମୁଁ ଆଜି ଦେଖାକରିନେବି ।"

ମୁଁ ସଞ୍ଜବେଳେ ମୋହରିର ବାବୁଙ୍କ ଛୋଟ ଦପ୍ତରରେ ପହଞ୍ଚିଲି । ସେ ମୋତେ ବସିବାକୁ କହି ତାଙ୍କ ମୋଟା ଖାତା କାଢିଲେ ।

"ତମକୁ ପାଞ୍ଚଶ' ଟଙ୍କା ଅଧିକ ଦବାକୁ କହିଛନ୍ତି ।"

"ପାଞ୍ଚଶ' ? କାହିଁକି ?"

"ଭଲ ଜୋତା ଆଉ ଡ୍ରେସ୍ କରିବାକୁ ଦେଇଛନ୍ତି ।"

ପ୍ରତିବାଦ କରିବାର ଉପାୟ ନାହିଁ ।

ମନ ହେଉଥାଏ ଶ୍ରୀଚନ୍ଦନଙ୍କୁ ଦେଖାକରି କହିବାକୁ ଯେ ତାଙ୍କ ଋଣ ପରିଶୋଧ କରିବାକୁ ସେ କାହାକୁ ସୁଯୋଗ ଦେବାକୁ ବୋଧହୁଏ ଚାହୁଁ ନାହାନ୍ତି । ସେଥିରେ ତାଙ୍କର ଦାତାପଣ ଊଣା ହୋଇଯିବ ବୋଲି ସେ ଭୟ କରୁଚନ୍ତି କି ? ଖାତାରେ ଦସ୍ତଖତ କରି ମାଟିଆ ଖାମ୍ ଭିତରେ ପାଞ୍ଚଟି ଶହେଟଙ୍କିଆ ନୋଟ୍ ଧରି ମଥାପୋତି ଫେରିଥିଲି । ମଣି ଭାଇନାକୁ ସୁଦ୍ଧା କହିନଥିଲି ।

ମୋତେ ଦରିଦ୍ର ଯାଚକ ବୋଲି ସେ କିପରି ନିଷ୍ଠୁର ଭାବରେ ପ୍ରମାଣ କରିଦେଲେ କେବଳ ଅନୁଭବ କରୁଥିଲି ।

ତାଙ୍କୁ ଆପଣାପଣରେ ହଳେ ଚପଲ ଦେଇଦେଲି ବୋଲି ସେଇ ଅପରାଧରେ ପାଞ୍ଚଶ' ଟଙ୍କରା ଦଣ୍ଡଭାର ମୋ ଉପରେ ଲଦିଦେଲେ ।

ଆକାଶରୁ ସବୁ ନେଇପାରୁ । ସେ ତଳମୁହାଁ ବର୍ଷି ଜାଣେ । କିନ୍ତୁ କଣିକାଏ ସୁଦ୍ଧା ତାକୁ କେହି ଫେରାଇପାରେ ନାହିଁ । ନେବା ତା'ର ଅଭ୍ୟାସ ନୁହେଁ ।

ପାଠପଢା ସରିଲା । ମୁଁ ବେଶ୍ ଭଲ କାମ ବି ପାଇଗଲି । ମୋଟା ଦରମା । ~~କ୍ୱାର୍ଟର୍~~, ଗାଡି,

ପଇସାର ଅଭାବ ନାହିଁ । ଶ୍ରୀଚନ୍ଦନ ମନେପଡନ୍ତି । ଇଚ୍ଛା ହୁଏ, ଥରେ ଦେଖିଦେଇ ଆସିବାକୁ । ମନେପଡିଯାଏ ସେ ଦିନର ଘଟଣା । ଖୁବ୍ ଅଶାନ୍ତ ଲାଗେ । ମୁଁ ବାରଂବାର ଅପମାନିତ ବୋଧକରେ । ଚଞ୍ଚଳହଳକ କଣ ଖାଲି ବସ୍ତୁ ଯାହାକୁ ପଇସା ଦେଇ କିଣା ଯାଇପାରେ ? ସେ ତାକୁ ଗ୍ରହଣ ନକରି ଫେରାଇ ଦେଇଥିଲେ ମୁଁ ଆହତ ହୋଇ ନଥାନ୍ତି । କିନ୍ତୁ ସେଥିପାଇଁ ମୋତେ ପାଞ୍ଚଶ' ଟଙ୍କା ମୋହରିର୍ ଜରିଆରେ ଦେଇଦେବା କିଭଳି ଦାତାପଣ ?

ମୋର ଭାରି ଇଚ୍ଛା ହେଉଥିଲା ଚାକିରିର ପ୍ରଥମ ଦରମାରୁ ଟଙ୍କା ଦୁଇ ହଜାର ଜନାର୍ଦ୍ଦନ ଶ୍ରୀଚନ୍ଦନଙ୍କୁ ଫେରସ୍ତ ଦେଇ ଦେବାକୁ । କିନ୍ତୁ ଉପକାର ଶୁଝିବା ସହଜ ନୁହେଁ । ମୋର ସେ ସମୟରେ ଅଭାବ, ମୋର ଅସହାୟତା ଏବଂ ସେ ସମୟରେ ତାଙ୍କର ସେ ନିଃସର୍ତ୍ତ ଦାନ ମାତ୍ର କେତେ ଟଙ୍କା ମାଧମରେ କେମିତି ପରିଶୋଧ କରିପାରିବି ?

ଟଙ୍କା ଦେଲେ ସେଇଠୁ ତାହା ଫେରି ଆସିବ, ଏ ବିଷୟରେ ମୋର ସନ୍ଦେହ ନଥିଲା । ମୋ ପୂର୍ବରୁ ଅନେକ ତାଙ୍କ ଠାରୁ ଦାନ ଗ୍ରହଣ କରିଥିଲେ, ହୁଏତ ସେମାନେ ବି ମୋଭଳି ଚାହିଁଥିଲେ, ଏ ଦାନ ଏବଂ ଦୟାର ଗୁରୁଭାରରୁ ମୁକ୍ତ ହେବାକୁ । କିନ୍ତୁ କାହାକୁ ହେଲେ ସେ ସୁଯୋଗ ମିଳି ନଥିଲା ।

ସକାଳ ପହର କାଉମାନଙ୍କୁ ବଳକା ରୁଟି ଗୁଣ୍ଡ କରି ବୁଣି ଦିଆଯାଏ, ସେମାନେ ତାକୁ ଥଣ୍ଟରେ ଗୋଟେଇ ନେଇଯାନ୍ତି ରାତିଯାକର ଭୋକ ମେଣ୍ଟେଇବା ପାଇଁ । ତା' ଭିତରୁ କେହି କଣ ଦିନବେଳେ ଆଉ କେଉଁଠୁ ଫାଳେ ରୁଟି ଆଣି ସେଇ ଅଗଣାରେ ମାଲିକକୁ ଫେରସ୍ତ ଦେଇପାରେ ?

ଇସ୍ ! କେତେ ଦୀନହୀନ ହେୟ ଲାଗୁଥିଲା ମୋତେ !

ତା'ପରେ ମୁଁ ଚାଲିଗଲି ଓଡିଶା ବାହାରକୁ ।

ତିନିବର୍ଷ ପରେ ବିଭାହେଲି । ସେଇ ବାହାରେ ବାହାରେ କୋଡିଏ ବର୍ଷ ବିତିଗଲା ।

ମଝିରେ କିଛି ଖବର ପାଉଥିଲି – ଜନାର୍ଦ୍ଦନ ଶ୍ରୀଚନ୍ଦନ ଶହ ଶହ ଲୋକଙ୍କୁ ଦାନ ଦେଉଥିଲେ । କେବେ କାହାଠାରୁ ପଇସାଟିଏ ପ୍ରତିଦାନ ନେଲେ ନାହିଁ ।

ତା'ପରେ ଶୁଣିଲି ସେ ବେମାର ପଡିଥିଲେ । ପାଖଆଖରେ ରହୁଥିବା ବହୁଲୋକ ଗୁଣ୍ଡ ହୋଇଥିଲେ । କିନ୍ତୁ ମୋହରିର୍ ବାବୁଙ୍କ ଜରିଆରେ ସମସ୍ତଙ୍କୁ ତାଗିଦ୍ କରିଦିଆଗଲା ଯେ କେହି ଯେମିତି ଟଙ୍କାଟିଏ ସୁଦ୍ଧା ତାଙ୍କ ପାଇଁ ଖର୍ଚ୍ଚ ନ କରନ୍ତି ।

ବୟସ ତାଙ୍କୁ ସେମିତି କିଛି ଅଧିକ ନୁହେଁ । ମୁଁ ଜାଣିଲାବେଳକୁ ସେ ଚାଳିଶ ପାଖାପାଖି – ସୁସ୍ଥ ସବଳ ମଣିଷ ।

ବିଗତ ବର୍ଷ ତାଙ୍କ ସହିତ ମୋର ସାକ୍ଷାତ୍ ହୋଇ ନଥିଲା । କିନ୍ତୁ କେବେହେଲେ ମୁଁ ତାଙ୍କୁ ଭୁଲି ପାରୁ ନଥିଲି । ଏଇ ପାଞ୍ଚମାସ ହେବ ମୁଁ ଓଡିଶାକୁ ବଦଳି ହୋଇ ଆସିଛି । ମୋ ସହିତ

ମୋର ଦୁଇ ଝିଅ ଓ ସ୍ତ୍ରୀ ଆସି ଏଆରପୋର୍ଟରେ ପହଞ୍ଚିବାମାତ୍ରେ ଅନେକ ଲୋକଙ୍କ ଗହଳି ଭିତରେ ମୁଁ ଗୋଟିଏ ମୁହଁ କାଳେ ଦିଶିଯିବ ବୋଲି ଆଶା କରୁଥିଲି । ମୋ ଅଜାଣତରେ ମୋର ଦୀର୍ଘଶ୍ୱାସ ବାହାରିଗଲା ।

ସେ କଣ ଜାଣିଥିଲେ ବି ଆସିଥାନ୍ତା ! ତା'ର ଯେଉଁ ଗଉଁ !

ମଣି ଭାଇନା ସାଙ୍ଗରେ କିନ୍ତୁ ଦେଖାହେଲାମାତ୍ରେ ମୁଁ ପଚାରିଲି, "ଆଉ ସବୁ ଭଲ ତ ଭାଇନା ? ମାଲିକେ କେମିତି ଅଛନ୍ତି ?"

ସେ ବୁଝିଗଲା । ଅଳ୍ପ ହସି କହିଲା, "ବୁଢାର ଆଗଭଳି ତେଜ ନାହିଁ । ତଥାପି ସେମିତି ଦେଇଚାଲିଛି । ଜମିବାଡି ବହୁତ ବିକ୍ରି ହେଇଗଲାଣି । ହେଲେ..."

ମୁଁ କଥା ବାଆଁରେଇନେଲି – "ପରେ କଥା ହେବା ଭାଇନା, ମୁଁ ଆସିବି ସୁବିଧା ଦେଖି ।"

ଏଇଠି ଥଇଥାନ ହଉ ହଉ ମାସେ ଦି'ମାସେ ଲାଗିଗଲା । ତା'ରି ଭିତରେ ଝିଅ ପାଇଁ ବିଭା ପ୍ରସ୍ତାବ ଆସି ପହଞ୍ଚିଲା ।

ଦେଖୁ ଦେଖୁ ଗୋଟାଏ ଠିକ୍ ବି ହେଇଗଲା । କେହି କେହି କହିଲେ ଯେ ମୋର ପାହ୍ୟା ଆଉ ପଇସା ପାଇଁ ସବୁ ସହଜ ହେଇଗଲା । ନହେଲେ ତ' ବହୁ ବାପ ନାକରେ ଦଉଡି ବେକରେ ପଘା ହେଇ ଝିଅ ବିଭା କରି ପାରୁନାହାନ୍ତି ।

ଆମେ ଦୁହେଁ ବାହାରିଚୁ ନିମନ୍ତ୍ରଣ ବାଣ୍ଟିବାକୁ ।

ପ୍ରଥମେ ଠାକୁରଙ୍କୁ । ମନେହେଲା ସେ ସତେ ବା ସବୁ ଜାଣିଶୁଣି ବସିଥିଲେ । ମନେହେଲା ସେ ସ୍ଥିର ଚାହାଣିରେ ଅଶ୍ରୁ ବର୍ଷିଗଲେ । "ଆସିବି ! ଆସିବି !" ବୋଲି ପ୍ରତିଶ୍ରୁତି ଗୁଞ୍ଜିରିଗଲା ବଡଦେଉଳସାରା ।

ତା'ପରେ ଆଉ କେଉଁଆଡେ ନ ଚାହିଁ ଆମେ ପହଞ୍ଚିଲୁ ଜନାର୍ଦ୍ଦନ ଶ୍ରୀଚନ୍ଦନଙ୍କ ପୁରୁଣା ଘରେ । ସେଇଠି ଗୋଟାଏ କଣ ଅଫିସ୍ ଚାଲିଛି । ପଚାରିବାରୁ କେହି କିଛି କହିପାରିଲେ ନାହିଁ । ପୁରୁଣା ପାନବାଲା କହିଲା, "ଓ... ଶ୍ରୀଚନ୍ଦନଙ୍କୁ ଖୋଜୁଛନ୍ତି ?" ହାତ ଯୋଡି ଜୁହାର ହେଲା – "ସେ ଏଠୁ କେବେଠୁ ଉଠିଗଲେଣି । ଏ ଘର ବିକ୍ରି ହୋଇଗଲାଣି । ତଳ ସାହିରେ ଏବେ ରହୁଛନ୍ତି ଭଡାଘରେ !"

ମୋ ପାଦତଳିପା ସିର୍‌ସିର୍ କଲା । ଦେହ ଭିତର କାହିଁକି କେଜାଣି କମ୍ପିଲା ଦୁରୁଦୁରୁ ହୋଇ ।

ଗାଡିରେ ମୋ ସ୍ତ୍ରୀ ବସିଥାନ୍ତି । ମୁଁ ନୀରବରେ ଷ୍ଟିଅରିଂ ଧରି ବସିଗଲି, ତଳସାହିକୁ ଗାଡି ମୁହାଁଇଗଲା ।

ସେ ସାଇଟାରେ ଖଣ୍ଡିଏ ହେଲେ ତାଙ୍କ ରହିବାଯୋଗ୍ୟ ଘର ମୋ ଆଖିକୁ ପଡିଲା ନାହିଁ । ତଥାପି ଜଣକୁ ପଚାରିଲି । ସେ ମୋ ମୁହଁକୁ କେମିତି ଟିକିଏ ଚାହିଁଲା । କହିଲା, "ହେଇ ସେ

ନଡିଆ ଗଛ ଦିଶୁଛି – ସେ ଘରେ ସେ ରହୁଛନ୍ତି ।" କହିଦେଇ ସେଇ ଆଡକୁ ହାତଯୋଡି ନମସ୍କାର କଲା ।

ମୁଁ ଯାଇ ସେ ଘର ଆଗରେ ଗାଡି ରଖିଲି ।

ନୂଆଣିଆ ପାଚେରିରେ ଛୋଟିଆ କାଠ ଗେଟ୍ । ଅଗଣାରେ କିଛି ଅରମା ।

ଟାଇଲ ଛପର ଘର । ନୂଆଣିଆ ପିଣ୍ଡା । ପିଣ୍ଡାର ଫାଳକରେ ଛୋଟ ଗୋଟିଏ ବଖରା ।

ମୁଁ ପିଣ୍ଡାରେ ଠିଆ ହୋଇ ମୋ ସ୍ତ୍ରୀକୁ ଠାରିଲି ଆସିବାକୁ । ସେ ଆସି ପହଞ୍ଚିଲାବେଳକୁ ତା' ମନକୁ କବାଟ ଫିଟିଗଲା ।

ମୁହଁରେ କିଛି ଗୁଡ, ଧଳା ବାଳ, ଚଷମା ଆଉ ମେଲା ଦେହ ସତ୍ତ୍ୱେ ତାଙ୍କୁ ଚିହ୍ନିବାରେ ମୋର କୌଣସି ଅସୁବିଧା ହେଲା ନାହିଁ ।

– "ମୁଁ ଗୌତମ ।" ପ୍ରଣାମ ଜଣାଇ ପରିଚୟ ଦେଲି ।

– "ଓ, ମଣିର ଭାଇ ଗୌତମ !"

– "ଏ ମୋ ସ୍ତ୍ରୀ !" ସେ ନମସ୍କାର ଜଣାଇ ଠିଆହେଲେ ।

– "ଆସ ଭିତରକୁ ।"

ଭିତରେ ସେଇ ମୋହରିର୍ ବାବୁଙ୍କ କାଠ ଟେବୁଲ ଓ ଚୌକି ।

ତା' ପାଖରେ ଚୌଡା ଖଣ୍ଡିଏ ବେଞ୍ଚ । ଆମେ ସେ ବେଞ୍ଚରେ ବସିଲୁ ।

କାଠ ଚୌକିରେ ବସି ସେ ମୋ ଆଡକୁ ଚାହିଁଲେ । ସତେବା ବିକ୍ରମାଦିତ୍ୟ ଅପେକ୍ଷା କରୁଥିଲେ ଗୁହାରିଆକୁ ତା'ର ଯାଚନା ଜଣାଇବା ପାଇଁ ।

– "ମୋ ବଡଝିଅର ବିଭାଘର । ଏଇ ଶୁକ୍ଳ-ପଞ୍ଚମୀ ଦିନ । ଆପଣ ସେଇଠି ପାଦ ପକାଇଲେ ଆମେ ସମସ୍ତେ ଧନ୍ୟ ମନେକରିବୁ ।"

"ତମ ଝିଅ ବିଭାଘର ?" କିଛି ବିସ୍ମୟ, କିଛି ଖୁସି ମିଶାମିଶି ହୋଇ ପ୍ରକାଶ ପାଉଥିଲା ଏ ପ୍ରଶ୍ନରେ ।

ତା'ପରେ ନିମନ୍ତ୍ରଣପତ୍ରଟିକୁ ହାତରେ ଧରି ସେ ନୀରବ ରହିଗଲେ କିଛି ସମୟ । ମନେହେଲା ସେ ନିମଗ୍ନ ହୋଇଗଲେ କୌଣସି ଚିନ୍ତାରେ ।

ଆଖିପତା ପଡିଲା । ହାତ ହଲିଲା । ସେ ଆମକୁ ଚାହିଁ ନୀରବ ହସିଲେ । ତାଙ୍କ କଳଦାନ୍ତ ଝଡିଯାଇଥିଲା ।

– "ଆଚ୍ଛା ! ମୁଁ ଆସିବି ।"

ମୁଁ କାହିଁକି କେଜାଣି ନିଜକୁ ସମ୍ଭାଳି ପାରୁ ନଥିଲି । ମୋ ପେଟ ଦିଭାଗ ହେଇ କୋହ ଉଠୁଥିଲା । ମୁଁ ଠିଆ ହୋଇ ବିଦାୟ ମାଗିଲି । ଆମେ ବାହାରିଆସିଲା ବେଳକୁ ସେ ସେଇ ଚୌକିରେ ବସିରହିଥିଲେ ।

ଗାଡିରେ ମୋ ସ୍ତ୍ରୀ କଣ ସବୁ ପଚାରୁଥିଲେ ମୋର ମନେ ନାହିଁ । ମୁଁ ଅଭ୍ୟାସରେ ଗାଡିର ୱାଇପର ଚଳାଇ ପୁଣି ବନ୍ଦ କରିଦେଲି । ବାହାରେ ପରିଷ୍କାର ପାଗ । ମୋ ଆଖିଯୋଡିକ ଜଳାର୍ଣ୍ଣବ ହେତୁ ରାସ୍ତା ଦେଖାଯାଉନଥିଲା ।

ସନ୍ଧ୍ୟାରେ ବନ୍ଧୁମିଳନ । ଲୋକ ଆସିବା ଆରମ୍ଭ ହୋଇଯାଇଥିଲା । ହଠାତ୍ ମୋ ସ୍ତ୍ରୀ ଆସି ପ୍ରସ୍ତାବ ଦେଲେ ଯେ, ଝିଅ-ଜୋଇଁ ସଜ ହୋଇ ବସିଲାପରେ ଆମେହିଁ ପ୍ରଥମେ ଆଶୀର୍ବାଦ ଦେବା କଥା । ଖାଲି ହାତଟାରେ କଣ ଆଶୀର୍ବାଦ ଦବା ? ଗୋଟିଏ ମୁଦି ଜ୍ୱାଇଁଙ୍କୁ ଗୋଟିଏ ଝିଅକୁ ପିନ୍ଧାଇଦେଲେ ସୁନ୍ଦର ଦିଶନ୍ତା ।

ଅଗତ୍ୟା ଗାଡି ନେଇ ଆମେ ମୋହନ ଜ୍ୱେଲର୍ସ ପାଖରେ ପହଞ୍ଚିଲୁ । ସେ ଆମକୁ ଦେଖୁ ଦେଖୁ ସବୁ ଛାଡି ଆମ ସେବାରେ ପହଞ୍ଚିଗଲା । ଆମକୁ ବେଳ ନ ଥିଲା । ଆଙ୍ଗୁଠି ମାପ ନମ୍ବର ଅନୁସାରେ ଦୁଇଟି ମୁଦି ବାଛିଲାବେଳକୁ ଦୋକାନରେ ହଠାତ୍ କଣ ଅସାଭାବିକ ଘଟିବାର ମନେହେଲା ।

ମାଲିକ ଆମ ପାଖରୁ ଯାଇ ହାର କିଣୁଥିବା ଲୋକଙ୍କ ପାଖରେ କଣ କହିଲା । ସେଇଠି ଗହଳି ଭିତରେ ମୁଁ ଚିହ୍ନିପାରିଲି ଜନାର୍ଦ୍ଦନ ଶ୍ରୀଚନ୍ଦନ ଠିଆହୋଇଛନ୍ତି ।

ମୁଁ ହାତ ଠାରିବାରୁ ଦୋକାନ ମାଲିକ ଚାଲିଆସିଲା । ମୁଁ ସେ ଆଡକୁ ପଛକରି ଟାଙ୍କୁ ଚୁପ୍‌ଚାପ୍ ପଚାରିଲି – "କ'ଣ ହେଲା ସେଇଠି ?"

ସେ ଯେଉଁ ବୁଢାବାବୁ... ମୁଁ ମୁହଁରେ ଅଙ୍ଗୁଠି ରଖି ଇସାରା କରିବାରୁ ସେ ବୁଝିଗଲା । ଧୀରେ କହିଲା "ସେ ବୁଢାବାବୁ ଗୋଟିଏ ହାର ସେଟ୍ ଉଧାର ମାଗୁଛନ୍ତି । ସେ ଭାରି ବଡଲୋକ ଥିଲେ । ଏବେ ତାଙ୍କର ଆଉ କିଛି ନାହିଁ । କେମିତି ପଚିଶି ହଜାର ଟଙ୍କାର ଧାର ଦେଇହେବ କହୁନାହାନ୍ତି ?"

ମୁଁ ନିରବରେ ମୋ ଚେକ୍ ବହିରୁ ପଚିଶ ହଜାର ଟଙ୍କାର ଚେକ୍ କାଟି ତାକୁ ବଢାଇଦେଇ କହିଲି, "ଚଞ୍ଚଳ ସେ ବାବୁଙ୍କୁ ବାଛିଥିବା ସେଟ୍‌ଟି ଦେଇଦିଅ । କହ, ସେ ଯେବେ ଚାହିଁବେ ଦାମ ଦେଇଦେବେ ।"

ମାଲିକ ମୋ ଆଡକୁ ବଡ ବଡ ଆଖିରେ ଚାହିଁଲା ।

ମୁଁ ଦାନ୍ତ ଜାକି କହିଲି, "ଯାଅ ଚଞ୍ଚଳ ।"

ସେ ପକେଟ୍‌ରେ ଚେକ୍‌ଟିକୁ ପୂରେଇ ଯାଇ ପହଞ୍ଚିଲା । ତା' ପୁଅକୁ କଣ କହିଲା ଗୁଜରାଟୀ ଭାଷାରେ ।

ଦୁହେଁ ଅତ୍ୟନ୍ତ ବିନୟରେ ସେ ହାର ସେଟ୍‌ଟିକୁ ଉପହାର କାଗଜରେ ବାନ୍ଧି ଟାଙ୍କୁ ବଢାଇ ଦେଲେ । ନିଜେ ମାଲିକ ଟାଙ୍କୁ ବାଟ ପର୍ଯ୍ୟନ୍ତ ବଳେଇ ଦେଇ ଆସିଲା । ମୁଁ ଓ ମୋ ସ୍ତ୍ରୀ ଯଥାସମ୍ଭବ ମୁଦି ବାଛିବାରେ ତଳକୁ ମୁହଁ କରି ଚେହେରା ଲୁଚେଇବାକୁ ଚେଷ୍ଟାକଲୁ ।

ମୁଦି ନେଇ ଆମେ ଫେରିଆସିଲୁ ବନ୍ଧୁମାନଙ୍କ ଗହଳିକୁ । ପ୍ରାୟ ଅଧଘଣ୍ଟା ପରେ ସତକୁ ସତ ଜନାର୍ଦ୍ଦନ ଶ୍ରୀଚନ୍ଦନ ଖଣ୍ଡିଏ ରିକ୍ସାରୁ ଓହ୍ଲାଇ ପଶିଆସିଲେ । ହାତରେ ଉପହାର ପ୍ୟାକେଟ୍ ଆଉ ଯୋଡ଼ିଏ ଗଜରାମାଳ ।

ଆମ ଦୁହେ ତାଙ୍କୁ ସସମ୍ଭ୍ରମେ ପାଛୋଟି ଆଣିଲୁ ।

ସମସ୍ତଙ୍କ ଆଖି ତାଙ୍କ ଉପରେ । କେହି କେହି ଚିହ୍ନିଲେ । କେହି କେହି ପଚାରିଲେ ଅନ୍ୟମାନଙ୍କୁ... ।

ମଣ୍ଡପ ଉପରେ ଝିଅ ଜୋଇଁଙ୍କୁ ଫୁଲମାଳ ଦେଇ ଆଶୀର୍ବାଦ କଲେ ଜନାର୍ଦ୍ଦନ ଶ୍ରୀଚନ୍ଦନ ! ଉପହାରଟିକୁ ଝିଅ ହାତକୁ ବଢେଇଦେଲେ । ଫେରି ଚାହିଁଲେ ଆମ ଆଡେ । ମୋ ସ୍ତ୍ରୀକୁ ଡାକିଲେ ପାଖକୁ ।

ପଞ୍ଜାବି ମୁଣାରୁ ଗୋଟିଏ ଛୋଟିଆ ଡିବା କାଢିଲେ । ପୁରୁଣା ହାତୀଦାନ୍ତର କାମ ହୋଇଥିବା ଡିବାଟି ଫିଟାଇ ତାକୁ ବଢାଇଦେଲେ । ଭିତରେ ଗୋଟିଏ ମୁଦି । କହିଲେ, "ନେ, ଗୌତମ ବାହାଘରକୁ ଆସି ପାରି ନ ଥିଲି, ବୋହୂକୁ ଆଶୀର୍ବାଦ କରି ପାରି ନଥିଲି ।"

ତା' ମୁଣ୍ଡରେ ଏବଂ ମୋ ମୁଣ୍ଡରେ ହାତ ମାରିଦେଇ ସେ ମଞ୍ଚରୁ ଓହ୍ଲେଇଗଲେ ।

ଯେତେ କହିଲି କିଛି ଖାଇଲେ ନାହିଁ । ବହୁ ଚେଷ୍ଟାରେ ରାଜି ହେଲେ ପୁରୀରୁ ଆଣିଥିବା ଗୋଟିଏ ଗଜା ଆଉ ପାଣି ଗ୍ଲାସେ ପିଇବା ପାଇଁ ।

ବିଭାଘର ଗହଳି ପରେ ଆମେ ଦୁହେଁ ପୁଣି ସେ ମୁଦିଟିକୁ ଖୋଲି ଦେଖିଲୁ । ରାଜାରାଜୁଡା ସମୟର ମୁଦି । ପହଞ୍ଚିଲୁ ମୋହନ ଜୁଏଲର୍ସ ପାଖରେ । ସେ ମୁଦିକୁ କାଚ ଲଗେଇ ତନଖି କଲା । କହିଲା "ଏଇଟା ସାର୍ ବ୍ଲୁ ଡାଇମଣ୍ଡ । ମୋର ଅନୁମାନ ପାଞ୍ଚ ଲାଖରୁ କମ୍ ହେବ ନାହିଁ ।"

ବଜ୍ରାହତ ପରି ମୁଁ ଠିଆହେଇଗଲି । ମୋ ସ୍ତ୍ରୀଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ ।

ମୋର ସମିତ୍ ଫେରିଲା ପରେ କିଛି ନ ବିଚାରି ମୁଁ ସେ ମୁଦିକୁ ଧରି ମୋ ସ୍ତ୍ରୀଙ୍କ ସହିତ ବାହାରିଲି ତାଙ୍କ ସାହିକୁ । ମୋର ଉଦ୍ଦେଶ୍ୟ ତାଙ୍କ ପାଦ ତଳେ ପଡି କହିଥାନ୍ତି –

"ଦୟା କରନ୍ତୁ । ମୋତେ ଧୂଳିସାତ୍ କରନ୍ତୁ ନାହିଁ । ମୁଁ ଦରିଦ୍ର ଭିକାରି ହୋଇ ଆପଣଙ୍କ ଆଗରେ କର ପ୍ରସାରି ଠିଆ ରହିବାକୁ ପ୍ରସ୍ତୁତ । ମୋତେ ମାସକୁ ପଞ୍ଚସ୍ତରୀ ଟଙ୍କା ବୃତ୍ତି ଦିଅନ୍ତୁ, ମୁଁ ସହିଯିବି । ମୋତେ ଏପରି ବଜ୍ରାଘାତ କରନ୍ତୁ ନାହିଁ । ଏ ରାଜସମ୍ପଦ ଆପଣ ଅନାୟାସରେ ଟେକିଦେଲେ ମୁଁ ନେଇପାରିବି ନାହିଁ ।"

କିନ୍ତୁ ଢେର୍ ବିଳମ୍ବ ହୋଇଯାଇଥିଲା । କେହି ଜଣେ କହିଲା ଯେ ଶ୍ରୀଚନ୍ଦନ ତୀର୍ଥ ବାହାରିଗଲେ । ଫେରିବା କଥା କହିନାହାଁନ୍ତି । ଘରଛାଡି ଚାଲିଗଲେ ।

ମଥା ପୋତି ଆମେ ଫେରିଲୁ । ଆଉ ବୋଧେ ମଥା ଟେକି ତାଙ୍କୁ ଚାହିଁପାରିବୁ ନାହିଁ । ଦୁଇ ଦିନ ପରେ ଓକିଲ ଆସି ପହଞ୍ଚିଲେ ଜନାର୍ଦ୍ଦନ ଶ୍ରୀଚନ୍ଦନଙ୍କ ଓ୍ୱିସିୟତ୍‌ନାମା ନେଇ ।

ସେଥିରେ ମୋ ସାନ ଝିଅ ନାଁରେ ପଚାଶ ହଜାର ଟଙ୍କା ଲେଖାଥିଲା – ତା' ବିଭାଘରକୁ ମୋହନ ଜୁେଲର୍ସ ପାଖରୁ ହାରଟିଏ ଉପହାର ଦେବା ପାଇଁ ।

ମୋହନ ଜୁେଲର୍ସ କହୁଥିଲା – ସେ ଦିନ ସେ ମୋତେ ଓ ମୋ ସ୍ତ୍ରୀକୁ ସେଇଠି ଦେଖିଥିଲେ । ତାକୁ ପଚାରିଥିଲେ ମୋ ବିଷୟରେ ।

ଓକିଲ କହୁଥିଲେ, "ଜନାର୍ଦ୍ଦନ ଶ୍ରୀଚନ୍ଦନ ବେଓ୍ୱାରିସ୍ । ତାଙ୍କର ସବୁ ସମ୍ପତ୍ତି ପ୍ରାୟ ସରିଥିଲା । ବାକି ଅଳ୍ପ କିଛି ଯାହା ଥିଲା ସେ ସମସ୍ତ ବାଣ୍ଟି ଦେଇ ଚାଲିଗଲେ । କୌଣସି ଠିକଣା ଦେଇଗଲେ ନାହିଁ ଯୋଗାଯୋଗ ପାଇଁ । କାଳେ ତାଙ୍କ ଦାନରୁ କାଣିଚାଏ କିଏ କେବେ ଫେରେଇଦେବ, ତାକୁ ବାରଣ କରି ଦେଇଗଲେ । ଉପାୟ ନାହିଁ । କୌଣସି ଅଭିମାନୀ ଈଶ୍ୱରଙ୍କ ଦାତାପଣକୁ ଅଗତ୍ୟା ଆମକୁ ସହିବାକୁ ପଡେ ।"



## ସତ ନା ମିଛ ? – ମିଛ; ନା' ନା ସତ !

ମନେହେଉଥିଲା ସତେ ବା ଆଉଟିକକୁ ପକ୍ଷୀଡାକ ଶୁଭିଯିବ । ରାତି ପାହିଯିବ ।

ଛାପଛାପୁଆ ଜହ୍ନ-ଆଲୁଅରେ ଫର୍ଚ୍ଚା ହେଲାପରି ଦିଶୁଥିଲା । ନିର୍ଜନ ବିସ୍ତୀର୍ଣ୍ଣ ଅପରିଚିତ ଅଞ୍ଚଳ । ଗଛଗୁଡ଼ିକ ସ୍ତବ୍ଧ । ରାସ୍ତା ନିକାଞ୍ଚନ । ପବନ କାକର, କଅଁଳ, ହାଲୁକା । ପାହାନ୍ତା ପହରର ଭ୍ରମ ଆକାଶରେ ପୃଥିବୀରେ, କିନ୍ତୁ ସମୟ ନିଶାର୍ଦ୍ଧ ।

ହମିଦ୍ ଡ୍ରାଇଭର ଆମ ଗାଡ଼ିଟିକୁ ଆସ୍ତେ ରାସ୍ତାକଡ଼କୁ ଗଡ଼ାଇ ଦେଇ କହିଲା, "ତେଲ ବୋଧେ ସରିଗଲା ।" ପୁଣି ମନକୁ ମନ କହିଲା, "ତେଲ ତ ପୂରାଟାଙ୍କି ଭରିଥିଲି ।"

ଆଖି ବୁଜିଲା ପରି ଗାଡ଼ି-ଆଲୁଅ କାହିଁକି କେଜାଣି ଲିଭିଗଲା । ଇଂଜିନ୍ ନୀରବ ହୋଇଗଲା । ସାମ୍ନା ହୁଡ୍ ଟେକି ଟର୍ଚ୍ଚ ପକାଇ କଣ ଦେଖାଦେଖି କଲା । ଆମେ ସମସ୍ତେ ଓହ୍ଲେଇଗଲୁ ।

ଆମେ ଶାଶୂ ବୋହୂ ଆଉ ସାମ୍ନା ପଟୁ ପୁଅ ଶରତ୍ । ସେ ଗଲା ଡ୍ରାଇଭର ପାଖକୁ । ଆମେ ରାସ୍ତାରେ ଚଲବୁଲ କଲୁ । ଜଣାଯାଉଥିଲା ପାଖଆଖରେ ଗାଁଗଣ୍ଡା କିଛି ନାହିଁ । ରାସ୍ତାରେ ଟ୍ରକ୍ ବସ୍ ବି ନାହିଁ । ଚରିଆଡେ ବୁଦୁବୁଦିକିଆ ଜଙ୍ଗଲ । ଜନ୍ତୁଜ୍ୟାଦ ଥାଇପାରନ୍ତି । ଆମ ଅଜାଣତରେ ଆମେ ପୁଣି ଗାଡ଼ି ପାଖକୁ ଫେରିଆସିଲୁ ।

ପ୍ରଥମେ ବୋହୂ ବୋଧେ ଶୁଣିଲା । କହିଲା, "କିଏ ସବୁ କଥା ହଉଚନ୍ତି, ଶୁଭୁଚି ?"

"ହଁ ତ, ଏ ଜଙ୍ଗଲରେ ଏତେବେଳେ କିଏ ଯାତାୟାତ କରୁଚି !"

ତା'ପରେ ଟର୍ଚ୍ଚ ଲାଇଟ୍ ଆଲୁଅ ଦେଖାଗଲା । ଆମେ ଗାଡ଼ି ଭିତରେ ପଶି କବାଟ ଲଗାଇଦେଲୁ । ଶରତ୍ ଆଉ ଡ୍ରାଇଭର ସତର୍କ ହୋଇଗଲେ ।

ପାଖକୁ ଆସି ଆଲୁଅ ଲିଭିଗଲା । ଆମେ ଆହୁରି ଆତଙ୍କିତ ବୋଧକଲୁ । ବୁଦା ପାଖରୁ ଶୁଭିଲା, "କୌନ ହେ ?"

ହମିଦ୍ ଡ୍ରାଇଭର ଟର୍ଚ୍ଚ ମାରିଲା ସେଇ ଦିଗରେ । ସେମାନେ ଟର୍ଚ୍ଚ ମାରିଲେ । ବୁଦାଧାଡ଼ି

ସାମ୍ନାରେ ଦୁଇଟି ଆକାର ଦେଖାଗଲା । ସେମାନଙ୍କ ଆଲୁଅରେ ଆମେ ବୋଧେ ଦେଖାଗଲୁ । ମୁଁ ଡାକପକେଇଲି "ଶରତ୍, ଗାଡି ଭିତରକୁ ଚାଲିଆ ।"

ମୋ ସ୍ୱର ବି ସେମାନଙ୍କୁ ଶୁଭିଥିବ । ସେମାନେ ଆଗେଇ ଆସିଲେ । ଏକାଥରକେ ଶରତ୍ ଆଉ ହମିଦ୍ ସ୍ୱର ଶୁଭିଲା "କୌନ ହେ ?" ଟିକିଏ ଡରିଲା ପରି, କିଛି ମୁକାବିଲା କଲାପରି ।

ସେମାନେ ଆସି ଗାଡି ସାମ୍ନାରେ ଠିଆହୋଇଗଲେ । ହମିଦ୍‌ର ଟର୍ଚ୍ଚ ଆଲୁଅରେ ଦିଶିଲା ଜଣେ ଧଳା ଦାଢିଥିବା ମୁସଲମାନ୍, ଆଉ ଜଣକ ବେଶ୍ ବଳୁଆ ଜୁଆନ୍ ଟୋକା । ସେମାନେ ବୋଧେ ବୁଝିଗଲେ । ବୁଢାଜଣକ ସ୍ପଷ୍ଟ ଓଡିଆରେ କହିଲା, "କ'ଣ ଗାଡି ଅସୁବିଧା ହେଲା ବାବୁ ? ଆମେ କଣ ମଦତ୍ କରିପାରିବୁ ? ଏ ମୋ ପୁଅ । ଦେଖୋ ତୋ ବେଟା କ୍ୟା ଖରାବି ହେ ! ଏ ଭଲ ମେକାନିକ୍; ଆପଣଙ୍କ ଗାଡି ଠିକ୍ ହୋଇଯିବ ।"

ତା'ପରେ ଖୁବ୍ ଆଦବ୍ କାଇଦାରେ କହିଲା, "ଆସୁନାହାନ୍ତି ତବ୍ ତକ୍ ଆମ ଘରେ ଚା ପାଣି ଟିକିଏ କରିବେ । ହେଇ, ଏ ଗଛ ପଛପଟେ ଆମ ଘର ।"

ବିଶ୍ୱାସ ହେଉ ନ ଥାଏ । ଏମିତି ରାତିଅଧରେ ହଠାତ୍ ଜଙ୍ଗଲରୁ ବାହାରି ଜଣେ ତା' ଘରକୁ ନିମନ୍ତ୍ରଣ କରିବା କେମିତି ଅଡୁଆ ଅଡୁଆ ଲାଗୁଥାଏ ।

ଶରତ୍ କହିଲା, "ଧନ୍ୟବାଦ, ଆମକୁ ଗାଡି ସଜାଡିବାରେ ଟିକିଏ ସାହାଯ୍ୟ କରିଦେଲେ ଆମେ ଚାଲିଯିବୁ । ଆଉ ଆମକୁ ଷାଠିଏ କିଲୋମିଟର ଯିବାକୁ ହେବ ।"

ବୁଢା ବୁଝିଲା ପରି କହିଲା, "ଓ, ତା'ହେଲେ ଆପଣ ଖାନ୍ଦାନ୍ ଅଫିସର । ଠିକ୍ ଅଛି, ମୁଁ ଚା ଏଠିକି ପଠାଇ ଦଉଚି ।" ସେ ଟର୍ଚ୍ଚ ଲାଇଟ୍ ମାରି ବୁଢା ଭିତରକୁ ପଶିଗଲା । ବଣଜନ୍ତୁଟିଏ ମାଡିଗଲା ପରି ଶବ୍ଦ ହେଲା ।

ତା' ପୁଅ ଏଠିସେଠି ଖୋଲାଖୋଲି କରିବା ଆରମ୍ଭ କରିଦେଲା । ଶରତ୍ ଆଉ ହମିଦ୍ ଆଲୁଅ ଟେକି ତାକୁ ସାହାଯ୍ୟ କଲେ । ଦେହରୁ ତାତି ଓହ୍ଲେଇଲା ପରି ମନରୁ ଭୟ ସନ୍ଦେହ ଆସ୍ତେ ଓହ୍ଲେଇ ଗଲା ।

ଗାଡି ଭିତରେ ଆମେ ଦୁହେଁ କଥାବାର୍ତ୍ତା ହେଲୁ – ତଥାପି ସେମିତି ସହଜ ଢଙ୍ଗରେ ନୁହେଁ । ରହି ରହି ଆମେ ପଚରାପଚରି ହେଲୁ, 'ରାତି କେତେ ହେବ କେଜାଣି ?' 'ଆମେ କେତେବେଳେ ଯାଇ ପହଞ୍ଚିବା କେଜାଣି ।' – ଏମିତି ଖାଲି ଉଦ୍‌ବେଗ ଆଶଙ୍କାରେ ଅସହଜ ପ୍ରଶ୍ନ ପଚାରି ଉତ୍ତରର ଅପେକ୍ଷା ନ ରଖୁଥିବା ଗୋଟାଏ ଅସ୍ୱାଭାବିକତା ଗାଡି ଭିତରେ ଭରିରହିଥାଏ ।

ଦୂରରୁ ହଠାତ୍ ଚିକ୍‌କିନା ଆଲୁଅ ଦିଶିଲା । ବୋଧହୁଏ ମିଆଁ ବୁଢା ଟର୍ଚ୍ଚ ଧରି ପୁଣି ବାହାରିଲା । ଆମେ ସେଇ ଆଡେ ଚାହିଁରହିଲୁ ଏକାଲୟରେ ।

ପାଦଶବ୍ଦ ଶୁଭିଲା, ପାଖେଇଆସିଲା । ବୁଢା ସାଙ୍ଗରେ ଆଉ ଜଣେ ବି ଆସୁଥିଲା । ବୁଢା ଉହାଡରୁ ବାହାରିଆସିଲେ ଦୁଇଜଣ । ଆଉ ଜଣକ ବାର ତେର ବର୍ଷର ସଲ୍‌ୱାର କମିଜ୍

ଓଢଣିପିନ୍ଧା ଝିଅଟି । ହାତରେ ଚା କେଟିଲ୍ ଆଉ ଚାରିଟା କପ୍ । ଆମେ ଦୁହେଁ କେମିତି ଏକାସାଙ୍ଗେ ଗାଡିର ଏପାଖୁ ସେପାଖୁ ଓହ୍ଲେଇଗଲୁ । ମୁଁ ଗାଡି ପଛ ଦେଇ ବୁଲି ପହଞ୍ଚିଲା ବେଳକୁ ଅଳକା ସେ ଝିଅ ହାତରୁ କପ୍ ନେଇ ସାରିଥିଲା । ଅଳକା ଶରତ୍‌ର ସ୍ତ୍ରୀ ।

ସେଇ ଆଲୁଅରେ ଝିଅଟି ଗୋରା-ତକ୍‌ତକ୍ ହୋଇ ଭାରି ସୁନ୍ଦର ଦିଶୁଥିଲା । ହସିଦେଲେ ଦାନ୍ତ ଦିଶୁଥିଲା ମଲ୍ଲିକଢ ପରି । ମୁଁ ତା' ପିଠିରେ ହାତ ରଖି ପଚାରିଲି – "ତମ ନାଁ କ'ଣ ?"

ମିଆଁ ବୁଢାହିଁ ପଛରୁ ଉତ୍ତର ଦେଲା, "ନୁରୁ – ୟାନି ନୁରୁଜାହାଁ ।" ଝିଅଟି କେମିତି ଟିକିଏ ଲାଜେଇଗଲା – 'ଖାଲି ନୁରୁ କହିଥିଲେ କଣ ଚଳି ନ ଥାନ୍ତା । ଅବ୍‌ବାଜାନ୍‌ଙ୍କର ଯୋଉ ଢଙ୍ଗ !'

ଆମେ ଚା ନେଇ ଶରତ୍ ଆଉ ହମିଦ୍‌ଙ୍କୁ ଦେଲୁ । ତା'ପରେ ନିଜେ ନେଲାବେଳକୁ ମୁଁ କହିଲି, "ଆଚ୍ଛା, ଏତେ ରାତିରେ ତୁମେମାନେ ଆମମାନଙ୍କୁ ଏତେ ସାହାଯ୍ୟ କଲ । ଚୁଲି ଜାଳି ଚା କଲ । ଆମେ ତୁମକୁ ଭାରି କଷ୍ଟ ଦେଲୁ ନା !"

ଉଭୟ ଝିଅ ଆଉ ବାପ ଏକାଥରକେ ପ୍ରତିବାଦ କଲେ, "ଏଥିରେ କଷ୍ଟ କ'ଣ ? ଆମର ତ ଏଇଟା ଖିଆପିଆ ବେଳ ।"

ବୁଢା ତା' ପୁଅପାଖକୁ ଯାଇ ପଚାରିଲା "ଆରେ ଗାଡି କବ୍‌ତକ୍ ଠିକ୍ ହୋ ସକ୍‌ତି ହେ ! କୁଛ୍ ମାଲୁମ କରପାୟା ?"

– "ନହିଁ ଅବ୍‌ବୁ । ଅବ୍‌ତକ୍ କୁଛ ପତା ନହିଁ ଚଲ୍‌ତା ।"

"ତୋ ଠିକ୍ ହେ । ଆପଣମାନେ ମୋ ଝିଅ ସାଙ୍ଗରେ ଆମ ଘରକୁ ଆସନ୍ତୁ, ସେଇଠି ବସିଥିବେ । ଗାଡି ଷ୍ଟାର୍ଟ ହେଲେ ଚାଲିଆସିବେ ।"

ଶରତ୍ ମୁହଁ ଟେକି ମିଆଁ ବୁଢାକୁ ଚାହିଁଲା । ବୁଢା କହିଲା, "ଆପ୍ ଭି ଆଇୟେ । ଡ୍ରାଇଭର ତୋ ୟହାଁ ହେ । ଆପଣ ଆସନ୍ତୁ ନା, କାହିଁକି ପରେଶାନ୍ ହଉଛନ୍ତି ?"

ସେ ଝିଅର ହସ, ଆଉ ବୁଢାର ସ୍ୱରରେ କଣ ଥିଲା କେଜାଣି ଆମେ ତିନିହେଁ ନୀରବରେ ତାଙ୍କ ପଛେ ପଛେ ଚାଲିଲୁ । ବୁଦାବାଡ ପାରିହେଲା ପରେ ବେଶ୍ ବଡ ଦିଶୁଥିବା ଗୋଟିଏ ଆଟୁଘର । ଚାରିପାଖ ପାଚେରି । ଘରେ ଗ୍ୟାସ୍ ଲାଇଟ୍ ଆଲୁଅ । ଆମେ ପିଣ୍ଡାକୁ ଉଠିଲାବେଳକୁ ଘର ଭିତରୁ ବାହାରିଆସିଲେ ତିନିଜଣ ସ୍ତ୍ରୀଲୋକ । ଜଣେ ଜଣାଗଲା ବୁଢାର ସ୍ତ୍ରୀ । ଟିକିଏ ମୋଟୀ କିନ୍ତୁ ଭାରି ସୁନ୍ଦରୀ । ତା' ସାଙ୍ଗକୁ ଯେଉଁମାନେ ବାହାରିଲେ ତାଙ୍କ ଚେହେରା ଦେଖି ମୁଁ ତାଟକା ହୋଇଗଲି – କୋଉ ରାଣୀ ବି ତାଙ୍କ ପାସଙ୍ଗରେ ପଡିବ ନାହିଁ ।

ସେମାନେ ଆମକୁ ପାଛୋଟି ନେଲେ । ଅଗଣାରେ ଖଟ ପଡିଥିଲା । ବସିବାକୁ କହିଲେ । ପାଖ ଖଟରେ ବସି ଆମକୁ ଅତ୍ୟନ୍ତ ଆତ୍ମୀୟତାରେ ପଚାରିଲେ, "ଆପଣ ଖାଇନାହାନ୍ତି ବାଟରେ । ଆମ ରୋଷେଇ ତ ଆପଣଙ୍କର ଚଳିବ ନାହିଁ । କିଛି ମିଠା ଖାଆନ୍ତୁ ।"

ମୁଁ ନାହିଁ କରିବାପୂର୍ବରୁ ଜଣେ ଉଠିଗଲା । ସେ ଦୁଇଜଣ ବୁଢୀର ବୋହୂ । ଚା ନେଇ ଯେ

ଯାଇଥିଲା ସେଇ ବୋଧେ ସାନ ଝିଅ ନା କ'ଣ ? ସେଇ ଝିଅଟି ମୋ ପାଖରେ ଆମ ଖଟରେ ବସିଥାଏ ।

– "ଏଇ ଆପଣଙ୍କର..."

– "ମୋ ସାନ ଝିଅ । ନୁରୁ ଯାନି..."

"ବାସ୍ ବାସ୍ । ଆଉ କହିବା ଦରକାର ନାହିଁ ।" ମୋର ଭାରି ମନହେଲା ସେ ଝିଅଟିକୁ କୋଳକୁ ଟାଣିନେବା ପାଇଁ । ମୁଁ ତା' ଅଣ୍ଟାରେ ହାତ ବେଢେଇ ଟିକିଏ ଚାପିଦେଲି । ସେ ମୋ ପାଖକୁ ଘୁଞ୍ଚିଆସିଲା । ଇସ୍ ଏମିତି ଝିଅଟିଏ ମୋର ଥାନ୍ତା କି ? ଶରତ୍ ତଳେ ଶୋଭା ତିନିବର୍ଷରେ ଚାଲିଗଲା । ସେଇଠୁ ଶରତ୍ ହିଁ ଏକଇର ବଳା ।

ନୁରୁ ମୁହଁକୁ ମୁଁ ଚାହିଁରହିଥାଏ । ଗ୍ୟାସ୍‌ଲାଇଟ୍ ତା' ମୁହଁରେ ପଡୁଥାଏ । ତା'ର ସେ ଠିଆ ନାକ, ତେରିଲା ପରି ଭ୍ରୂଲତା । ତା' ଗୋରା-ତକ୍‌ତକ୍ ଗାଲ କପାଳ ଆଉ ବେକ । ଇସ୍ ଏମିତି ବୋହୂଟିଏ ଭଲା ମୋତେ ମିଳିଥାନ୍ତା !

ମୁଁ ଆଉ ଅଳକା ଆଡକୁ ମୁହଁ ବୁଲାଇ ଚାହିଁଲି ନାହିଁ । ଅଳକାକୁ ଅସୁନ୍ଦରୀ ବୋଲି କେହି କହୁନାହିଁ; ହେଲେ ତା'ର ଏମିତି ରଙ୍ଗ ଆଉ ଏମିତି ଗଢଣ କାହିଁ ?

ସାନ ବୋହୂ ଗୋଟିଏ ବଡ ଥାଳିରେ କଣ ସବୁ ଆଣି ଖଟ ବାଡ ଉପରେ ଥୋଇଲା । ମହମହ ଗୁଆ ଘିଅର ବାସ୍ନା ଶରତ୍ ପାଇଁ ଅଲଗା – ଆଉ ଜଣେ କିଏ ନେଇ ଦେଲା । ସେ ଟିକିଏ ଦୂରରେ ବୁଢା ସାଙ୍ଗେ ବସି କଣ ଗପସପ କରୁଥାଏ ।

– "ନିଅନ୍ତୁ ।"

ମୁଁ ଉଠେଇଲି ଗୋଟିଏ ଲଡୁ । ବେଶ୍ ବଡ । ତା' ଦେହରେ ବାଦାମ ପେସ୍ତା କିସ୍‌ମିସ୍ ଲାଗିଥାଏ ସୋରା ସୋରା ହେଇ । ଏମିତି ଲଡୁ ବୋଧେ ମୁଁ କେବେ ବି ଖାଇ ନ ଥିବି । ଅଳକା ନେଲା ଖୁର୍ମା ।

– "ଏଇ ଖଜୁରୀ କୋଳି ଖାଆନ୍ତୁ, ଭାରି ସୁଆଦ । ଅଖରୋଟ, ପେସ୍ତା ବାଦାମ ।"

ମୋ ପାଖକୁ ଲାଗି ନୁରୁ ବସିଥାଏ । ତା' ଦେହରୁ କେମିତି ଗୋଟାଏ ସଜଫୁଟା ଫୁଲର ବାସ୍ନା ବାହାରୁଥାଏ । ମୁଁ ତାକୁ ଚାହିଁଲେ ତା' ମୁହଁରେ ହସ ଉକୁଟି ଉଠୁଥାଏ । ମୁଁ ତାକୁ ଖଜୁରି କୋଳିଟିଏ ଖୁଆଇଦେବାକୁ ଚାହିଁଲି । ସେ ତା'ର ଚମ୍ପାଫୁଲ ପରି ହାତ ଟେକି ବାରଣ କଲା । ମୁଁ ତା' ପାପୁଲିଟାକୁ ଧରି ଚୁମାଟିଏ ଦେଲି । ଅଳତା ପତ୍ର ପରି ନାଲି ସେ ପାପୁଲି, ଲହୁଣି ପରି କଅଁଳ । ବହୁଦିନ ତଳେ ଇତିହାସରେ ପଢିଥିବ ନୁରଜହାଁ କଥା ମନେପଡିଲା । ମମତାଜ ଶାହଜାହାଁ କଥା ମନେପଡିଲା । ଦିଲ୍ଲୀ ଦୁର୍ଗ ଭିତରେ ରାଜରାଜେଶ୍ୱରୀ ହେଲା ଭଳି ଏ ଝିଅ ।

କେତେବେଳେ ଶରତ୍ ଆସି ମୋତେ ଡାକିଲାଣି ମୁଁ ଜାଣି ପାରି ନ ଥିଲି । ଅଳକା ବି ମୋ ପାଖକୁ ଲାଗି ଠିଆହୋଇଥାଏ । – ମୁଁ ଠିଆହେଲି । ନୁରୁ ମଧ ମୋ ପାଖକୁ ଲାଗି ଠିଆହେଲା । ମୁଁ

କଣ କରୁଛି ଜାଣିବା ପୂର୍ବରୁ ନୁରୁକୁ ବୁକୁ ଉପରେ ଚପି ଧରିଲି । ପାଖରେ କାହାର ହସ ଶୁଣି ମୋର ହୋସ୍ ଆସିଲା । ବୋଧହୁଏ ନୁରୁର ମା' ଏମିତି ହସିଲା ।

– "ଆପଣ ନୁରୁକୁ ସାଙ୍ଗରେ ନେଇଯାଉନାହାନ୍ତି । ଏତେ ଭଲ ଲାଗୁଛି ଯଦି ନେଇଯାଆନ୍ତୁ ।"

ମୋତେ କୋଟି ନିଧି ପାଇଲା ପରି ଲାଗିଲା । ମୁଁ ଶରତ୍‌କୁ ଚାହିଁ କହିଲି, "ଏ ଝିଅଟିକି ମୁଁ ନେବି ସାଙ୍ଗରେ । କିଛିଦିନ ଆମ ପାଖରେ ରହିବ ।"

ମିଆଁ ବୁଢା ସେପଟୁ କହିଲା, "ଆପ୍ କି ମେହରବାନି ! ନେଲେ ଆମର କଣ କହିବାର ଅଛି ?"

ଏଥର ଅଳକା ହସିବାର ଶୁଭିଲା ।

– "ଚାଲୁନ ବୋଉ, ଏମିତି କଣ ହଉଚ ମ ! ଆଉ ଥରେ ଆସିଲେ ଦେଖିବା । ହଇଲୋ ନୁରୁ, ତୁ ଆମ ସାଙ୍ଗରେ ଆସିବୁ ?"

ସେ ଯେମିତି ପଚାରିଲା ଯେ କେହି ନାଇଁ କରିଥାନ୍ତା । ନୁରୁ ଭଳି ଝିଅକୁ କଣ ଏମିତି ପଚରାଯାଏ ? ଫୁଲଟିଏ ପରି ଆଞ୍ଜୁଳାରେ ତାକୁ ତୋଳିନେବା କଥା ।

ମୁଁ ବଡ କଷ୍ଟରେ ତାକୁ ଛାଡିଲି । ବାରମ୍ବାର ତାକୁ ଗେଲ କରିବାକୁ ଫେରିଆସୁଥାଏ । ଶେଷକୁ ଅଳକାହିଁ ମୋ ହାତ ଧରି ବଳେଇନେଲା ।

ମୁଁ ତାଙ୍କ ଅଗଣା କବାଟ ପାଖରେ ଦେଖିଲାବେଳକୁ ଶରତ୍ ଯୋଉଠି ଠିଆହୋଇଥିଲା ସେଇଠି ସେମିତି ତାକୁ ନିରେଖି ରହିଥିଲା । କଣ ବିଡ୍‌ବିଡ୍ ହେଉଥିଲା କେଜାଣି ! କାହାକୁ କଣ କହୁଥିଲା ତାକୁ ଜଣା । କିନ୍ତୁ ମୋର ମନେହେଉଥିଲା ଯେ ସେ ନୁରୁକୁହିଁ ଚାହିଁ ରହିଥିଲା ।

ରାସ୍ତାରେ ଗାଡି ଘାଇଁ ଘାଇଁ ଡାକୁଥିଲା । ଆମେ ଯାଇ ସେଇଠି ପହଞ୍ଚିଲାବେଳକୁ ମିଆଁ ପୁଅ ବି ଚାଲିଯାଇଥିଲା । ହମିଦ୍ ଗାଡିର ଇଞ୍ଜିନ୍ ଘୋଡଣୀ ପକଉଥିଲା । ଶରତ୍ ବି ଆମ ପଛେ ପଛେ ଚାଲିଆସିଲା ।

ମୁଁ ଫେରି ଚାହିଁଲାବେଳକୁ ସେମିତି ପାହାନ୍ତା ପହର ପରି ଜହ୍ନ-ଆଲୁଅ । ଧାଡିଏ ଉଞ୍ଚ ଉଞ୍ଚ ବୁଦା । ଆଉ ସବୁଆଡ ନିସ୍ତବ୍ଧ । କେଜାଣି କାହିଁକି ଆମେ ସମସ୍ତେ ଚୁପ୍‌ଚାପ୍ ଗାଡିରେ ବସି କବାଟ ପକେଇଲୁ ।

ହମିଦ୍ ଗାଡି ପଛକୁ ଫେରାଇ ଦେଇ ରାସ୍ତା ଉପରକୁ ଆଲୁଅ ଟିପିଦେଲା । ନିରୋଳା ରାସ୍ତା । ବିନା କାରଣରେ ପୁରୁଣା ଅଭ୍ୟାସରେ ହର୍ଣ୍ଣ ମାରି ଗାଡି ଆଗେଇନେଲା ।

ପରସ୍ପର ଅଲକ୍ଷ୍ୟରେ, ଏପରିକି ଅଣାୟତ୍ତରେ ଆମେ ତିନିହେଁ ବାଁ ପାଖ ଗଛ ଲଟା ଭିତରକୁ ଅନେଇରହିଲୁ କିଛି ସମୟ ପର୍ଯ୍ୟନ୍ତ । ଆମେ ବୋଧହୁଏ ଆଶା କରୁଥିଲୁ ଆଟୁଘରୁ କୁଣରେ ଠିଆହୋଇ କେହି ଜଣେ ଟର୍ଚ୍ଚ ଲାଇଟ୍ ମାରି ହଲାଇବ । କିନ୍ତୁ ଆମେ ତିନିହେଁ ଆସ୍ତେ ମୁହଁ

ଫେରାଇଆଣି ନିରବରେ ବସିରହିଲୁ ।

ମୁଁ ହିଁ କହିଲି ପ୍ରଥମେ, "ଆରେ ଶରତ୍, ସେ ମିଆଁଙ୍କ ଘର କାହିଁ ରାସ୍ତାରୁ ତ ଦିଶିଲା ନାହିଁ । ତୋତେ ଦିଶିଲା କି ?"

– "ଉହୁଁ ।"

– "ତୁ ଦେଖିଲୁ କି ଅଳକା ?"

– "ନାଁ ।"

– "ଆଚ୍ଛା, ସେ ଝିଅଟା ସତେ କି ସୁନ୍ଦର !"

କେହି କିଛି କହିଲେ ନାହିଁ । ମୋତେ ଟିକିଏ ଅଡୁଆ ଲାଗିଲା । ତା'ପରେ ଭାବିଲି – ପିଲାଲୋକ, ବୋଧହୁଏ ଏମାନଙ୍କୁ ଘୁମ ମାଡୁଚି ।

ମୋ ଆଖି ଆଗରେ ସେ ଲବଣିପିତୁଳା ପୁଣି ଦିଶିଗଲା । ମୁହଁ ପାଖକୁ ମୋ ହାତ ନେଇ ବାସ୍ନା ବାରିଲି – କାଳେ ସଜଫୁଟା ଫୁଲର ବାସ୍ନା ଲାଗିରହିଥିବ ! କାଳେ ଗୁଆ ଘିଅରେ ତିଆରି ସେହି ପେସ୍ତା ମେଓ୍ୱା ସରିକି ସରି ଲାଗିଥିବା ଲଡୁର ବାସ୍ନା ଲାଗିରହିଥିବ ! ମୋତେ ଲାଗିଲା, ମୋ ହାତ କେତେବେଳେ ଫୁଲ ପରି ବାସୁଚି ତ ଆଉ କେତେବେଳେ ଗୁଆ ଘିଅ ପରି ବାସୁଚି – ଫେର୍ କିନ୍ତୁ ଜମା ବାସୁ ନାହିଁ ।

ଶରତ୍ ଆଉ ଅଳକା କଣ ଶୋଇଗଲେ କି ? ବୋଧହୁଏ ଶୋଇ ନ ଥିଲେ । କିନ୍ତୁ ଉହିଁ ବି ନ ଥିଲେ । ଆଖି ବୁଜି କଣ ସବୁ ଭାବୁଥିଲେ କେଜାଣି ?

ନୁରୁ କଥା ଭାବୁଥିଲେ କି ?

ସାମାନ୍ୟ ଘାଟି-ରାସ୍ତା ପଡିଲା । ଗାଡି ମୋଡଣି କାଟିଲାବେଳେ ଆମେ ସବୁ ଏପାଖ ସେପାଖ ଦୋହଲି ଯାଉଥିଲୁ । ହର୍ଣ୍ଣ ମାରିବାରୁ ଘୁମ ଚହଲିଯାଉଥିଲା । ତା'ପରେ ଆଲୁଅ ଦେଖାଗଲା ଦୂରରେ ।

ଆଉ ଘଣ୍ଟାଏ ପ୍ରେ୍ତ ଗାଡି ଆସି ଦୁଆରେ ଲାଗିଲା । ଡ୍ରାଇଭର ଘଣ୍ଟି ମାରିବାରୁ ଚକର ଟୋକା ଗେଟ୍ ଫିଟାଇଲା । ଆମେ ଢୁଳେଇ ଢୁଳେଇ ଯିଏ ଯାହାର ଖଟ ଉପରେ ଗଡିପଡିଲୁ । ମୁଁ ଖୁବ୍ ବେଳଯାଏ ବୋଧହୁଏ ଶୋଇରହିଥିଲି । ଉଠି ମୁହଁ ଧୋଇଲାବେଳକୁ ଅଳକା ଆଣି ଚ ଥୋଇଦେଲା । ଶରତ୍ ଲୁଗାପଟା ପିନ୍ଧି କୁଆଡେ ଯିବାକୁ ସଜ ହୋଇସାରିଥିଲା । ମୁଁ ଚ ଢୋକେ ପିଇ ଶରତ୍‌କୁ କହିଲି, "କାଲି ରାତିରେ ସେ ଯେଉଁ ମିଆଁ ଘରକୁ ଆମେ ଯାଇଥିଲେ ମୁଁ ଜମା ଭୁଲି ପାରୁ ନାହିଁ ।" ଅଳକା ପରିହାସ କଲା ପରି କହିଲା, "ସେ ମିଆଁ ଟୋକୀ ବୋଉଙ୍କ ମନକୁ ପାଇଯାଇଚି ତ ! ଖାଲି ତା' କଥା ଝୁରିହଉଛନ୍ତି ।"

ଏତିକି କହି ଅଳ୍ପ ହସିଲା । ଅଳକା ଭାରି ଭଲ ଝିଅ । ଭାରି ମେଳାପୀ । ଭାରି ମିଶାଣ ପ୍ରକୃତି । ରଙ୍ଗ ଟିକିଏ ଆଉ ଫଟିକ ହେଇଥିଲେ ଭଲ ଦିଶିଥାନ୍ତା । ମୁହଁ ଦେହର ଗଢଣ ମଧ

ଟିକିଏ କେମିତି ବେଢଙ୍ଗ ଦିଶୁନାହିଁ?... ଆଜି ବୋଧେ ବେଶୀ ସେମିତି ଦିଶୁଚି ନା କ'ଣ? ମୁଁ ଏଇଆ ଭାବି ମନକୁ ମନ ହସିଲି ।

ଶରତ୍ ତା' ବ୍ୟାଗ୍ ଧରି ଆସି ଠିଆହେଲା – "ଆଚ୍ଛା, ବୋଉ ମୁଁ ଚାଲିଲି । ମୁଁ ଫେରୁ ଫେରୁ ଡେରି ହୋଇଯାଇପାରେ ।"

ସେ ଦିନସାରା ସେଇ ନୁରୁହିଁ ମୁହଁରେ ମୁହଁରେ ଦିଶିଯାଉଥାଏ । କେତେବେଳେ ଝିଅ ପରି ତ କେତେବେଳେ ଆୟ-ଅଳଙ୍କାର ମଣ୍ଡି ହୋଇ ଚହଟ ଚମ୍ପାଗୋରୀ ବୋହୂ ପରି ।

ମୁଁ ଏମିତି ଶୂନ୍ୟକୁ ଚାହିଁ ବସିଗଲାବେଳେ ଅଳକା ଫିକ୍‌କିନା ହସିଦେଇ ଚାଲିଯାଉଥାଏ । ସେ ମଝିରେ ମୋ ମୁଣ୍ଡ କୁଣ୍ଡାଇଦେଲା । ମନ ନେଲା ପରି କହିଲା, "ବୋଉ ମ, ଆଜି ସଞ୍ଜବେଳେ ଚାଲ ଚୌଧୁରୀ ସାହେବ ଘରକୁ ବୁଲିଯିବା । ତମକୁ ସେ ନୀଳ ରଙ୍ଗର ସିଲ୍‌କ୍‌ଟା ଭାରି ମାନୁଛି । ତୁମେ ସେଇଟା ପିନ୍ଧିବ । ମୁଁ ଭାବୁଛି...ଆଚ୍ଛା, ମୁଁ କଣ ପିନ୍ଧି ଗଲେ ଭଲ ହେବ?... ତମେ ଥରେ କହୁଥିଲ ନା, ସେ ଡାଳିମ୍ବଫୁଲ ରଙ୍ଗର ସିଲ୍‌କ୍‌ଟା ମତେ ଭଲ ଦିଶୁଚି ବୋଲି ।"

ମୋର ହଠାତ୍ ମନେପଡିଗଲା ଯେ, ନୁରୁ ଠିକ୍ ସେହି ରଙ୍ଗର ସାଲୁଓ୍ୱାର କମିଜ୍ ପିନ୍ଧିଥିଲା । ତା' ଦେହ ସେଥିରେ ଆହୁରି ଝଟକି ଦିଶୁଥିଲା । ଯାହା ଘରକୁ ଯିବ ତା' ଘର ଆଲୁଅ କରିଦବ । ରଜାନଅର ଲାଖି ସେ ଝିଅ ନୁରୁ ।

"ମୁଁ ତା'ହେଲେ ସେ ଡାଳିମ୍ବ ଫୁଲ ରଙ୍ଗର କାଶ୍ମୀରୀଟା ପିନ୍ଧିବି ନା!"

ମୁଁ କହିପାରିଲି ନାହିଁ – ହଁ ପିନ୍ଧ୍, ତତେ ସେଇଟା ଖୁବ୍ ମାନୁଛି । କେବଳ କହିଲି "ପିନ୍ଧୁନୁ ଯାହା ତତେ ଭଲଲାଗୁଚି ।"

ଅଳକା ଏଥିରେ ଆହତ ହୋଇପାରେ ବୋଲି ମୁଁ ଜମା ଭାବି ପାରି ନଥିଲି ।

ଶରତ୍ ସତକୁ ସତ ସେଦିନ ଆଉ ଖାଇବାକୁ ଆସିଲା ନାହିଁ । ଆମେ ଚୌଧୁରୀ ସାହେବଙ୍କ ଘରକୁ ବୁଲିଗଲୁ । ତାଙ୍କ ସ୍ତ୍ରୀ ଅଳକାକୁ ଭାରି ପ୍ରଶଂସା କଲେ; ତା'ର ସେ ଶାଢୀକୁ ପ୍ରଶଂସା କଲେ । ମୋତେ ବି ଦି'ପଦ ଟେକାଟେକି କରି କହିଲେ ।

ମିସେସ୍ ଚୌଧୁରୀ ଭାରି ଭଲ ମଣିଷ । ତାଙ୍କ ଘର ମିଠା ବି ଭାରି ବଢିଆ । ସେଦିନ ସେ ସନ୍ଦେଶ ସାଙ୍ଗକୁ ଲଡୁ ଆଣି ଥୋଇଲେ । ମୁଁ ସନ୍ଦେଶ ଛାଡି ଲଡୁ ଉଠାଇଲାବେଳକୁ ଅଳକା ଆଡକୁ ଚାହିଁଲି । ସେ କଣ ସବୁ ବୁଝିଗଲା ପରି ଅଳ୍ପ ଅଳ୍ପ ହସୁଥିଲା । ମୁଁ ତା' ପୂର୍ବ ରାତ୍ରିକଥା ମିସେସ୍ ଚୌଧୁରୀଙ୍କୁ କହିଦେବାକୁ ଖଲଖଲ ହଉଥାଏ – କିନ୍ତୁ କେଜାଣି କାହିଁକି କହିପାରୁ ନ ଥାଏ – ଅଳକା ଥିଲା ବୋଲି ନା ମୋର ଏକ ବହୁମୂଲ୍ୟ ଅନୁଭୂତିକୁ ମୁଁ ଆଉ କାହା ସହିତ ଭାଗବଣ୍ଟା କରିବାକୁ ଚାହୁଁ ନ ଥିଲି ବୋଲି?

ମିସେସ୍ ଚୌଧୁରୀ ଯେତେବେଳେ ପଚାରିଲେ – "ଆଚ୍ଛା, କାଲି ଆପଣ କେତେବେଳେ ଆସି ଘରେ ପହଞ୍ଚିଲେ?"

ଏଇଠି ହୁଏତ ବନ୍ଧ ଭାଙ୍ଗିଯାଇଥାନ୍ତା, କିନ୍ତୁ ସେମିତି କିଛି ହେଲା ନାହିଁ । ଅଳକାହିଁ କହିଲା – ଟିକିଏ ଡେରି ହୋଇଗଲା । ଆମେ ପହଞ୍ଚିଲାବେଳକୁ ଅଢେଇଟା ବାଜିଗଲା ।

କିଛି ସମୟ ପରେ ଆମେ ଘରକୁ ଫେରିଲୁ ।

ଶରତ୍ ରାତି ନଅଟାକୁ ଆସି ପହଞ୍ଚିଲା । ସେ ଯେମିତି ଆସୁ ଆସୁ ଆରାମଚୌକିରେ ଗୋଡ ହାତ ମେଲି ବସିଯାଏ ଆଉ ଚା କପେ ଆଣ ବୋଲି କହେ, ସେପରି କଲା ନାହିଁ । ବରଂ ଡାଇନିଂ ଟେବୁଲ୍ ପାଖରୁ ଖଣ୍ଡେ ଚୌକି ଭିଡିଆଣି ମୋ ସାମ୍ନାରେ ବସିଲା ।

କେମିତି ଗୋଟାଏ କଣ ଜରୁରୀ ଖବର ଶୁଣାଇଲା ପରି କହିଲା, "ବୁଝିଲୁ ବୋଉ, ଆଜି ତିନି ଜଣ ମୁସଲମାନଙ୍କ ଅନେକ ଦିନୁ ବାକି ପଡିଥିବା ପାଉଣା ସବୁ ହିସାବ କରି ଦେଇଦେଲି ।"

ମୁଁ କିଛି କହିଲି ନାହିଁ । ପୁଣି କଣ ଭାବି କହିଲି, "ଭଲ କଲୁ । ସେମାନେ ଭାରି ଭଲ ମଣିଷ । କାଲି କଥା ମନେପଡିଲେ ପୁଣି ତାଙ୍କ ଘରକୁ ଯିବାକୁ ମନ ହଉନି ?"

ଏଇଠି ଲକ୍ଷ୍ୟ କଲି ଶରତ୍ ସାମାନ୍ୟ ଚଞ୍ଚଳ ହୋଇଉଠିଲା । ଅଳକା ବି ହାତରେ ଚା କପ୍ ନେଇ ଠିଆହୋଇ ତାକୁ ଚାହିଁରହିଲା । ଶରତ୍ ଟିକିଏ ଇତସ୍ତତଃ କରି କହିଲା – "ମୁଁ ସେମାନଙ୍କୁ ନିଶ୍ଚୟ ଠାବ କରିବି, ସେମାନେ ଯିବେ କୁଆଡେ ?"

– "କିଏ ? କାହା କଥା କହୁଚୁ ?"

– "ସେଇ ମ' ସେଇ ମିଆଁ କଥା ! ସେଇ ଜଙ୍ଗଲରେ ୨୦ କିଲୋମିଟର ଭିତରେ ଗାଁ ଗଣ୍ଡା ଘରଦ୍ୱାର କିଛି ନାହିଁ । ମୁଁ କେତେ ଲୋକଙ୍କୁ ଆଜି ପଚାରିଲି, ସମସ୍ତେ ସେଇ କଥା କହିଲେ । ହମିଦ୍ କହିଲା, "ସାହାବ୍, ଆପଣ ବିଶ୍ୱାସ କରନ୍ତୁ, ମୁଁ ସେଇ ବାଟଦେଇ ଶହ ଶହ ଥର ଗାଡି ନେଇ ଯାଇଛି, ସେଇଠି କାହାର ଘର ନାହିଁ । ଯଦି କେହି ମୁସଲ୍‌ମାନ ସେଇଠି ରହୁଥାନ୍ତେ ମୁଁ ତ ଜାଣିଥାନ୍ତି !"

– "କ'ଣ କହୁଛୁ ମ !"

ଶରତ୍ ସେମିତି ଉତ୍ତେଜିତ ହୋଇ କହୁଥାଏ – "ମୁଁ ସେ ହମିଦ୍ ଡ୍ରାଇଭରକୁ ଜେରା କଲି – ତୁ ସେ ମିଆଁ ବୁଢା ଆଉ ତା' ମେକାନିକ୍ ପୁଅକୁ ତ ଦେଖିଲୁ ?" ସେ କହିଲା – "ହାଁ ସାହାବ୍, ଦେଖିଲି ସିନା, ଏବେ ଭାବୁଛି, ସେଇଠି ତ କେହି ନାହିଁ – ମୁଁ କେମିତି ତାକୁ ଦେଖିଲି ? ଆଉ ସାହାବ୍ ମୁଁ ଦେଖିଛି ଯେ ସେ ମେକାନିକ୍ ଯାହା ଯେମିତି ଖୋଲିଥିଲା ଠିକ୍ ସେମିତି ଯୋଡି ଦେଲା । ଗାଡି ଷ୍ଟାର୍ଟ ନେଇଗଲା । ସେ କିଛି ସଜାଡି ନାହିଁ । ଗାଡି ମୋ ହିସାବରେ ଠିକ୍ ଥିଲା ସାହେବ । ହେଲେ ସେଇଠି ବାଟରେ କାହିଁକି ଥପ୍ କିନା ଇଂଜିନ୍ ବନ୍ଦ ହୋଇଗଲା – ଏଇଟା ମୁଁ ବୁଝିପାରୁନାହିଁ ।"

ଆମେ ତିନିହେଁ ଯେ ଯାହା ଢଙ୍ଗରେ ସ୍ତବ୍ଧ ହୋଇଗଲୁ । ଅଳକା ମୁହଁ ଫେରାଇ ରନ୍ଧାଘର ଆଡକୁ ଘୁଞ୍ଚିଗଲା । ମୁଁ ତା'ର ଦୀର୍ଘ-ଶ୍ୱାସ ଶୁଣିପାରିଲି । ଚୁପ୍‌ଚାପ୍ ଚା ପିଉ ପିଉ ଶରତ୍ କହୁଥାଏ

– "ମୁଁ ତାକୁ ନିଶ୍ଚୟ ଖୋଜି ବାହାର କରିବି !"

ମୋ ଦେହ ଶୀତକଣ୍ଟା ମାରିଯାଉଥାଏ । "କାହାକୁ ଖୋଜି ବାହାର କରିବ ବୋଲି ଶରତ୍ ଏମିତି ଜିଦ୍ କରୁଚି ?" ମୁଁ କଥାଟାକୁ ଜିରେଇ ପାରୁ ନଥାଏ । ଜିରେଇ ପାରିନାହିଁ ଆଜିଯାଏଁ କୋଡିଏ ବର୍ଷ ହେଲା ।

ହମିଦ୍ ଡ୍ରାଇଭର ଏଯାଏଁ ଆମ ପାଖରେ ଅଛି । ଜହ୍ନ-ଆଲୁଅରେ ସେ ଆଟୁଘର ଆଉ ସେ ମିଆଁ ପରିବାରକୁ ଖୋଜି ଲାଗିଛୁ ମନେ ମନେ । ଝୁରିହେଉଛୁ ।

ଅଳକା ଜାଣେ କାହାକୁ ଝୁରିହେଉଛୁ । ସେ ଗୋଟାଏ ଦିଗରୁ କିନ୍ତୁ ଖୁବ୍ ଆଶ୍ୱସ୍ତ । ସେ ଜାଣେ ଆମେ ପାଇବୁ ନାହିଁ ।



## ମାଟିତଳ ଅନ୍ଧାର

ଦେବତାମାନେ ଉଠିବାର ଗୋଟାଏ ବେଳା ଅଛି ତ ।

ସେତେବେଳେ ଆମେ ସବୁ କେହି ଉଠିନଥାଉ । କୋଉଠି ଗୋଟେ କଣ ଥମ୍‌ଥମ୍ କରୁଥାଏ – ଆଲୁଅ, କି ପବନ, କି ଅଗ୍ନି କଣ କେଜାଣି ।

ସେତେବେଳେ ଏ ଖଣ୍ଡମଣ୍ଡଳ ନିର୍ଜନ ହୋଇ ରହିଥାଏ । ଜନମାନବ ପଶୁପକ୍ଷୀ କେହି କୁଆଡେ ନ ଥାନ୍ତି । ମୁଁ ଜାଣି ସେତିକିବେଳେ ତାଙ୍କୁ ହାବୁଡିଗଲି ।

ଗୋକୁଳି ନନାର ଆଖି ଜକଜକ । ନାକ ଅଗ ସିନ୍ଦୂର ପରି ଲାଲ । ସେ ପାଞ୍ଚ ଛ'ଜଣଙ୍କ ଆଗରେ ବଖାଣୁଥାଏ ତା'ର ଅଲୌକିକ ଅନୁଭବ । ମୁଁ ଜାଣିବାରେ ଗୋକୁଳି ନନାର ବୟସ ଏଇ ଚାଳିଶ ବୟାଳିଶ । ନିପଟ ଖଚୁଆ । ମୁଁ ଜାଣିବାରେ ପଦେ ସୁଦ୍ଧା ସତ କଥା ତା' ଜୀବନସାରା କହି ନ ଥିବ । କିନ୍ତୁ ତା' ମିଛ ଶୁଣିବାକୁ ସମସ୍ତେ ଆଗ୍ରହୀ । ତା'ର ବଖାଣିବା ଢଙ୍ଗ ହିଁ ସ୍ୱତନ୍ତ୍ର । ରଙ୍ଗବେରଙ୍ଗ ଇନ୍ଦ୍ରଧନୁର ଇନ୍ଦ୍ରଜାଲ ସେ ବୁଣି ନେଇ ଯାଏ ତା' କଥାଜାଲରେ । ଯେ ଶୁଣିବ ସେ ଚକିତ ହୋଇଯିବ । ମିଛ ପୁଣି ଏତେ ସୁସ୍ୱାଦ, ସୁଠାମ ହୋଇପାରେ ?

ଗୋକୁଳି ନନାର ଆଖି ଦାଉଦାଉ ଜଳାବେଳେ ସେ ଆଉ ଏକ ଜଗତ ନିର୍ମାଣ କରୁଥାଏ । ସର୍ଜୁଥାଏ ମଣିଷ, ପଶୁ, ପକ୍ଷୀ, ଗଛ, ଲତା ତା' ମନଇଚ୍ଛା । ବିଳସୁଥାଏ ତା' ସର୍ଜନାରେ ।

ମୁଁ ବହୁବାର ଯିବାବାଟରେ ଠିଆହୋଇ ତାକୁ ଶୁଣିଛି । ସେ ଫୁଟୁକି ଫୁଟାଇ ଆଖି ମଟକାଇ ବଖାଣିଯାଏ; କଞ୍ଚା ମିଛ ଆଉ ଆମେ ତାକୁ ପିଇଯାଉ । ସେଇ ଆବେଶରେ ଥିଲାବେଳେ ସେ ସମସ୍ତଙ୍କଠୁ ଦି'ପଇସା ଆଦାୟ ମଧ୍ୟ କରିନିଏ ।

ସେ ଦିନ କିନ୍ତୁ ସେ ଦିଶୁଥିଲା ଅନ୍ୟରକମ । କହୁଥିଲା ଅନ୍ୟ କଥା ।

ମୁଁ କିନ୍ତୁ ଅନୁମାନ କରିନେଲି ଯେ ଗୋକୁଳି ନନା ବୋଧେ ତା' ମିଛମାନଙ୍କ ସାଙ୍ଗେ ଭେଟଣ ହେଇଗଲା । ତା' ମୁହଁରେ କଥାରେ ସବୁରେ ଭୟ କମ୍ପୁଥାଏ । ହନୁ ମଲାବେଳକୁ ବୋଧେ ସତ କହୁଥିଲା ।

"...ହାବୁଡିଗଲି ବୋଇଲେ ଏକାଥରକେ ମହୁଁମୁହିଁ । ତମକୁ ମିଛ ମୋତେ ସତ । ସୁନାଟାକୁ ଆଉଟିନେଲେ ଯେମିତି ଝଟଝଟ ଦିଶେ, କମାର ଉହାରେ କାଠି ମାରିଦେଲେ ଯେମିତି ତା'

ଗର୍ଭକୁ ଚାହିଁ ହୁଏନାହିଁ, ସେମିତି କ'ଣଟାଏ ମୋ ଆଗରେ ଉଭାହୋଇ ଯିବାରୁ ମୋ ଆଖି ଝଲସିଗଲା । ମୁଁ ମୋ ହାତ ଉହାଡ କରି ଚାହିଁଲି ହେଲେ ଚାହିଁପାରିଲି ନାହିଁ । ମୋ ଦେହରୁ ଗୋଟା ଗୋଟା ଝାଳ ନିଗିଡିଗଲା । ବୁଝିଲ ନା ମାଲିକ । – ମୋ ଲୁଗାଖଣ୍ଡ ତିନ୍ତିଗଲା । ମୁଁ କିସ କରିବି ଭାବିଲାବେଳକୁ ସେ ନିଜେ ନିଜ ତେଜକୁ ସମ୍ଭାଳିନେଲେ । ମେଘ ଉହାଡରୁ ସୂର୍ଯ୍ୟ ଯେମିତି ବର୍ତ୍ତୁଳ ଦିଶନ୍ତି, ସେଇବାଗେ ସେ ଦୃଶ୍ୟ ହେଲେ ।"

ମୁଁ ଦୂରରେ ଥାଇ ଛଟପଟ ହେଲି । ଶୁଣୁଥିବା ସମସ୍ତେ ସେମିତି ଖୁରେଇତୁରେଇ ହେଲେ ।

– "ଆବେ, ଝଅଟ କହୁନାହିଁ କାହିଁକି – ତୁ କ'ଣଟା ଦେଖିଲୁ – ହାତୀଟା ନା ଘୋଡାଟା । ତାକୁ କେତେ ଚାଖିଚାଖି କହୁଛୁ!"

କିନ୍ତୁ ସମସ୍ତେ ଦାନ୍ତରେ ନଖ ଛିଣ୍ଡେଇ ଅପେକ୍ଷା କରିବା ଛଡା ଅନ୍ୟ ଉପାୟ ନ ଥିଲା । ମନୁଆ ଗୋକୁଳି ନନା । ମନ ନ ହେଲେ ଏଇଠୁ ସେ ଗାମୁଛା ଟେକି ଉଠିପଡିବ । ତା'ର କଣ ସରିଯାଉଛି – ପୁଣି ଆଉ କୋଉଠି ଯାଇ ବଖାଣିବ ।

ଗୋକୁଳି ନନା ଯାହା ତଳକୁ ମୁହଁ ପୋତି ବସିଥିଲା, ମୁଁ ଭାବୁଥିଲି ଶୋଇଗଲା ବୋଲି । ସେଇଟା ବି ତା ପାଇଁ କିଛି ବିଚିତ୍ର ନୁହେଁ । ସେ ବେଳ ପଡିଲେ ଗଞ୍ଜେଇ-ଫଞ୍ଜେଇ ମିଳିଲେ ଟାଣିଦିଏ । ସେ ମୁହଁ ଟେକି ଚାହିଁଲା । (ସତେ ନିଦରୁ ଉଠିଲାପରି ଦିଶୁଥାଏ । ମୃଦୁ ମୃଦୁ ହସି ସମସ୍ତଙ୍କୁ ଚାହିଁଲା ।) କରଯୋଡି କହିଲା "ଭାଇମାନେ ଉଠ, ଚାଲଯିବା । ଆଜି ଆଉ କହିବାକୁ ଆଜ୍ଞା ନାହିଁ ।"

ବେ, ଇଏ କ'ଣ ? ମୁହଁ କ୍ଷେପିଗଲି କହିବାକୁ – ଆବ୍‌ବେ ହେ ଖଚୁଆ, ଖଚପଞ୍ଜର, କହିବୁ ନାଇଁ କ'ଣ ? ତୁ କଣ ବୋଲି ପାଇଚୁ କି ଆମକୁ ? ଆମକୁ ବେକୁବ୍ ବନେଇ ତୁ ଗପିଯାଉଥିଲୁ – ତେଣିକି ହୁବ ପାଇଲା ନାହିଁ । ବତା, ତୁ କଣ ଦେଖିଲୁ, କେମିତି କୋଉଠି ଦେଖିଲୁ । ନ ହେଲେ ତତେ ଆଜି ମୁଁ ଦଉଚି ପାନେ । କହିବୁ ନାଇଁ କ'ଣ ? ଅଲବତ୍ କହିବୁ ।

ମୁଁ କିନ୍ତୁ ଏସବୁ କିଛି ନ କହି ଖାଲି ତା' ଆଗକୁ ମାଡିଯାଇ ଠିଆହେଲି । ସେ ଆଖି ମଟମଟ କଲା । ସେତିକିରେ ତା' ନିଶା ଟିକିଚଢେଇଟିଏ ପରି ଫୁର୍‌କିନା ଉଡିଗଲା । ତା' ଆଖି ଆଉ ଦହକିଲା ନାହିଁ । ଛୋଟ ସାଧାରଣ ମଣିଷ ପରି ସେ ଚାହିଁଲା ଆମକୁ, ମୋତେ । ଡରିଲା ପରି ଜଡସଡ ହେଲା । ଅଲାଜୁକ ପରି ହସିଲା । କହିଲା, "ତମେ କୁଆଡେ ମ ବଡବାବୁ ? ମୁଁ ହେଇ ଏମାନଙ୍କୁ କଣ ଟିକେ ଗପୁଥିଲି ନା । ତମେ କଣ ଶୁଣିଲା ଭଳି କଥା ସେ ?"

ସେ ଡରିଲା ଡରିଲା ପରି ଘୁଞ୍ଚି ଯାଉ ଯାଉ ଗାମୁଛାଖଣ୍ଡ ଗୋଟେଇଲା । କହିଲା, "ଭାଇମାନେ, ମୁଁ ଯାଏ । ତେଣେ କେତେ କାର୍ଯ୍ୟ ଅଛି ।"

ଗୋକୁଳି ନନାର କାର୍ଯ୍ୟ ପୁଣି କ'ଣ ?

ଜଣେ କହିଲା, "ଜାଣିନା' କି – ଗୋଟାଏ ଯୋଉ ନୂଆ ହନୁମାନ୍ ଆସି ପ୍ରତିଷ୍ଠା ହେଲେଣି

ସେଇଠି ଭାଇନା ଗୋଟେ ଜଣ କାମ କରୁଚି । ଶନିବାର ମଙ୍ଗଳବାର ପ୍ରସାଦ ବାଣ୍ଟିଲାବେଳେ ସାହାଯ୍ୟ କରୁଚି ।"

ଗଛମୂଳ ଚଉତରାରୁ ଗୋକୁଳି ନନା ଆସ୍ତେ ଖସିଆସିଲା । ପାଣ୍ଠଫୁଟିଆ ସାନ ମଣିଷଟିଏ – କାଳିଆ, ମଳିଛିଆ । ମୁହଁରେ ତିନିଦିନର ବହଳ ଦାଢ଼ି – ଧଳା କଳା ମିଶା ।

ମୋ ପାଖକୁ ଲାଗିଆସି ମୋ ଆଖିକୁ ଅନେଇଲା । କହିଲା "ବଡବାବୁ ମ! ମୁଁ ତମକୁ କହିଦେବି । ତମେ ହେଇ ସେ ମୋଡ ପାଖର ବଟଗଛମୂଳକୁ ଆସିପାରିବ ? ତାହାରି ପଛପଟେ ତ ନୂଆ ଆସ୍ଥାନ ହଉଚି – ହନୁମାନ୍ ମନ୍ଦିର । ତାକୁ ସରକାର ଭାଙ୍ଗିବ ଭାଙ୍ଗିବ କହୁଚି, ଭାଙ୍ଗିପାରୁନି । ସେଇଠିକି ଆସିବ ଯଦି କହିଦେବି ।"

ମୁଁ କିଛି ନ କହି ତାକୁ ଚାହିଁରହିଲି । ସେ ବୁଝିଗଲା – ଜାଲରେ ପଡିଥିବା ମାଛିକୁ ବୁଢିଆଣୀ ବୁଝିଗଲା ପରି । ସେ କିନ୍ତୁ ଜାଣି ନ ଥିଲା ଯେ ଏଇଟି ବାଘୁଆ ମହୁମାଛିଟା ହୋଇପାରେ ।

ବଡଗଛ କୋଉ କାଳର । ମୁଁ ସେଇଠି ଯାଇ ପହଞ୍ଚିଲାବେଳକୁ କେହି କୁଆଡେ ନାହିଁ । ମୁଁ ମନେ ମନେ ଚିଡିଗଲି । ଭଲ ବେକୁବ୍ ବନେଇଲା ମତେ । ମୁଁ ତଥାପି ତା' ମୂଳେ ଚଉତରାରେ ଯାଇ ବସିଲି । ମୋ ଆଗରେ ଦି'ଚାରିଖଣ୍ଡ ଗାଡି ରାସ୍ତା ଉପରେ ପାରିହେଇଗଲେ ।

ମୋ ପଛରେ ଖୁସ୍‌ଖାସ୍ ଶୁଭିଲା । ଦେଖିଲାବେଳକୁ ଗୋକୁଳି ନନା ।

ସେ କଣ ଗଛ ଉପରୁ ଓହ୍ଲାଇଲା କି ?

ମୁଁ ମୁହଁ ଫେରାଇ ଆଣିଲି ।

ସେ ଚଉତରାରୁ ଓହ୍ଲାଇ ମୋ ଆଗରେ ଠିଆହେଲା ।

ଖପ୍‌କିନା ମୋ ହାତକୁ ଧରି ମୋତେ ଚାହିଁଲା । ତା' ଆଖି ପେଜୁଆ ଧରିଯାଇଥାଏ ।

ମୋ ହାତ ଧରି ସେ ଅଳ୍ପ ଟାଣିଲା ! ମୁଁ ତ ଆସିଥିଲି ଶେଷଯାଏଁ ତା' ଗୁମର ଫିଟେଇବା ପାଇଁ – ମୁଁ ଚାଲିଲି । ସେ ଦି'ଚାରି ପାହୁଣ୍ଡ ପରେ ମୋ ହାତ ଛାଡିଦେଲା । ତେଣିକି ସେ ଆଗେ ଆଗେ ମୁଁ ତା' ପଛେ ପଛେ ।

ସେଇଠି କୋଉ କାଳର ଦଶ କୋଡିଏ ପୁରୁଣା ଗଛ ଅଛି । ବେଶ୍ ନିଛାଟିଆ, ଅନ୍ଧାରିଆ ଜାଗା । ସେଇଠି କିଏ କାହାକୁ ହାଣିଦେଲେ ଜଣାପଡିବ ନାହିଁ । ଗଛଗୁଡାକ ବି କେମିତି କାଳିଆ ବିକଟାଳ ଦେଖାଯାଉଛନ୍ତି । ସେଇଠି ଗୋଟାଏ କୁଣକୁ ଚିକଣ ବାଲିଗରଡା ପରି ବଡ ବଡ ଦି'ଚାରିଟା ପଥର । ତା' ପାଖରେ ମାଟି ଘୋଡା ସାନ ବଡ ହେଇ ଚାରି ଛ'ଟା ।

ଗଛମାନଙ୍କ ମଝିରେ ଅଗଣା ପରି ଛୋଟ ଖଣ୍ଡେ ଜାଗା ।

ସେଇଠି ବୋଧେ ବହୁକାଳ ପୂର୍ବେ ମଝିରେ ନିଆଁ ଜାଳି ବଣୁଆ ମଣିଷମାନେ ରାତିସାରା ହାଣ୍ଡିଆ ଖାଇ ନାଚୁଥିଲେ । ଧାରୁଆ କଟୁରିରେ ବଳିମାନଙ୍କୁ ଛେଦ ପକାଉଥିଲେ ।

ସେଇଠି ପହଞ୍ଚିବା ପୂର୍ବରୁ ମୋତେ କେମିତି ଅବଶ ଲାଗିଲା ।

ଗୋଡଆଡୁ ଶୀତକଣ୍ଟା ମାରିଲା ପରି ଲାଗିଲା । ମୁଁ ଗଳା ଝାଡି କହିଲି, "ହେ ଗୋକୁଳି ନନା, ସେ ଭିତରକୁ କାହିଁକି ପଶୁଚୁ ?"

ସେ ଅଳ୍ପ ଥମିଗଲା । ମୋ ପାଖୁ ଆସି ଠିଆହେଇ ଅନେଇଲା ଆଗକୁ । ମୋ ଆଡେ ନ ଚାହିଁ କହିଲା – "ଏଇଠି ମୁଁ ଆଉ ସେଇଠି ସେ ।"

– "କିଏ ?" ମୋ ସ୍ୱରରେ ଆଗ ଭଳି ଭୁରୁଡିପଣ ନ ଥାଏ ।

– "ତା' ମୁହଁ ଦିହ ସାରା ରଡନିଆଁ ପରି ତହକୁଥାଏ । ମୋ ଆଖି ଝଲସିଯାଉଥାଏ । ତଥାପି ମୁଁ ଚାହିଁ ରହିଲି । ମୋତେ ଦେଖାଗଲା ତା' ମୁଣ୍ଡରେ ମୁକୁଟ । ତା' ବେକରେ ସୋରା ସୋରା ହାର । ତା' ଦୁଇ ହାତରେ ସେ କ'ଣଟାଏ ଧରିଥିଲା । ମୁଁ ଚାହିଁଲାରୁ ମୋ ଆଡକୁ ବଢେଇଲା । ସେଇଟା ଗୋଟେ କଳସ । ମୁଁ ଗଛ ପରି ନିଶ୍ଚଳ ହୋଇଯାଇଥିଲି । ଘୁଞ୍ଚିପାରିଲି ନାହିଁ । ସେ ମୋ ଆଡକୁ ଘୁଞ୍ଚି ଆସିଲା । ମୁଁ ବେହୋସ ହୋଇ ପଡିଗଲି ଏଇଠି !"

ମୁଁ ଏଇଠି ଖେଁ ଖେଁ କରି ହସିଲି ଯେ ହସିଲି । ଗୋକୁଳି ନନା ମୋତେ ବଲବଲ ଅନେଇଥାଏ । ମୋ ହସରେ କଣ ସବୁ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡୁଥାଏ । ମୋର ପରବାୟ ନ ଥାଏ ସେ ଆଡକୁ । ମୁଁ ବଡ ବଡ ପାହୁଣ୍ଡ ପକେଇ ବଟଗଛ ଚଉତରାଯାଏଁ ଚାଲିଆସିଲି ।

ପଛକୁ ନ ଚାହିଁ କହିଲି, "ବୁଝିଲୁ କୁହାକପିଲା ଗୋକୁଳି ନନା; ତୁ ଏମିତି ଖଚ କହି କହି ଦିନେ ବାୟା ହୋଇଯିବୁ । ତେତେ ସେ ଖଚମାନେ ଏମିତି ଦେଖାଦେଇ ବାୟା କରିଦେବେ ।"

ମୁଁ ବୁଲି ଚାହିଁଲାବେଳକୁ ମୋ ପଛରେ କେହି ନାହିଁ । ମୋତେ ଛପ୍‌କିନା କେମିତି ଟିକେ ଖଟ୍‌କା ଲାଗିଲା । ଦେଖିଲି ଯେ ମୁଁ ଗୋକୁଳି ନନାକୁ ଯେଉଁଠି ଛାଡିଆସିଥିଲି ସେ ସେଇଠି ଆଗକୁ ଅନେଇ ଠିଆହେଇଚି ।

ତାକୁ ଆଉ କଣ ସବୁ ଦୃଶ୍ୟ ହେଉଥିବ ଭାବି ପୁଣି ବହେ ହସିଲି । ଏତେ ପାଟି କରି ଡାକିଲି, "ହେ ଗୋକୁଳି ନନା ।" ସେ ଚମକିଲା ପରି ଚାହିଁଲା । ଗୋଟିଏ ଗୋଟିଏ ପାହୁଣ୍ଡ ପକାଇ ମୋ ଆଗରେ ଆସି ଠିଆହେଲା ଅପରାଧୀ ପିଲାଟିଏ ପରି ।

ମୁଁ ତା' କାନ୍ଧରେ ହାତ ଥୋଇ କହିଲି, "ଆଚ୍ଛା କହ, ସେତେ ରାତିରେ ତୁ ଏଇଠି କଣ କରୁଥିଲୁ ? କାହିଁକି ଆସିଥିଲୁ ? ଆଉ ସେ ପୁରୁଣା ବଣୁଆ ଜାଗାକୁ କାହିଁକି ଯାଇଥିଲୁ ?... ତୁ ରାତିରେ ଜମା ଆସିନୁ । ଦିନବେଳେ ଆସି ଦେଖିଚୁ, ଆଉ ବାରଆଡୁ କଥା ଫାନ୍ଦି ଏ ଗପ କହୁଚୁ ।"

– "ନାଇଁମ' ବଡବାବୁ! ମୁଁ ସେ ଦିନ ଏଇ ଚଉତରା ଉପରେ ପରା ଶୋଇଥିଲି । ପାହାନ୍ତାପହରୁ କଣ ସବୁ ଭୂମିପୂଜା ହବ ବୋଲି ଜିନିଷପତ୍ର ପଠେଇ ମତେ ସେମାନେ ଜଗେଇଥିଲେ । ମୋ ନିଦ ଛାଏଁ ଭାଙ୍ଗିଗଲା । ମୁଁ କାହିଁକି ରାସ୍ତାଆଡେ ନ ଯାଇ ସେଇଆଡେ ଗଲି କହିପାରିବି ନାହିଁ । ନିଦବାଉଳାରେ ଲୋକ ଯେମିତି ଚାଲନ୍ତି ସେମିତି ହେଇଥିବ । ମାତ୍ର ବାକି ଯାହା ତୁମକୁ କହିଲି ସେଥିରେ ତିଳାର୍ଦ୍ଧେ ମିଛ ନାହିଁ । ମତେ ତମେ ଯୋଉ ରାଣ ପକା କହିଲେ

ପକେଇବି । ସମସ୍ତେ ଶୁଣି ଟାହିଟାପରା ମାରିବେ ବୋଲି କାହାକୁ କହିଲି ନାହିଁ । ହେଲେ ତମେ ବି ସେମିତି ହସି ଉଡେଇଦଉଚ ? ବଡଭାଇ, ଧର୍ମରାଣ, ମୁଁ ତୁମକୁ ସବୁ ସତ କହିଛି, ଯାହା ଦେଖିଛି ଏ ଦି'ଆଖିରେ ।"

ମୁଁ ସାମାନ୍ୟ ଗମ୍ଭୀର ହୋଇଗଲି । ମୋର ଧାରଣା ହେଲା ଯେ ଗୋକୁଳି ସତ କହୁଛି । କିନ୍ତୁ ସେ ଯାହା ଦେଖିଲା ସେଇଟା ନିଶ୍ଚୟ ମିଛ । କୋଉ କାଳେ ସିନା ଯକ୍ଷରକ୍ଷ ଦେବତାମାନେ ଆସି ଦେଖାଦେଉଥିଲେ – ଏବେ ସେ ଗୁଲି ଗପ କେହି ଶୁଣିବେ ନାହିଁ । ମୁଁ କିନ୍ତୁ ଗୋକୁଳି ନନା ସାଙ୍ଗରେ ତା'ରି ପଶାପାଲିରେ ଖେଳିବାକୁ ଚାହିଁଲି । କହିଲି – "ଦେଖ, ଗୋକୁଳି ନନା! ତୁ ଯାହା ଦେଖିଲୁ ଯଦି ସତ ହୋଇଥାଏ ତା'ହେଲେ ତୋ'ଠୁ ବଳି କପାଳିଆ ଆଉ କେହି ନାହିଁ । ସେ ଯେ ଆସିଥିଲେ ସେ ନିଜେ କୁବେର ଦେବତା । ତତେ ଯେଉଁ କଳସ ଯାଚୁଥିଲେ ସେଇଟା ଅକ୍ଷୟଭଣ୍ଡାର । ସେଥିରେ ହୀରାନୀଳା ବୈଦୁର୍ଯ୍ୟ ଭର୍ତ୍ତି ହୋଇଥିଲା । ସେ ତତେ କୃପା କରିଚନ୍ତି । ତୋର ଭାଗ୍ୟ ଫିଟିଛି ।"

ଗୋକୁଳି ନନା ହାଁ କରି ମତେ ଅନେଇ ରହିଥାଏ । ତା' ମୁହଁ ଆଖି ଉଜଳିଉଠୁଥାଏ । ମୁଁ ସଜ ଉଣ୍ଡି କହିଲି, "ସେ ଯେଉଁଠି ଉଭାହେଇଥିଲେ ସେଇଠି ମାଟିତଳେ ଭଣ୍ଡାର ପୋତି ହୋଇ ରହିଛି । ସେ ତତେ ଠାରିଦେଇଛନ୍ତି । ତୁ ଚାହିଁଲେ ସେସବୁ ପାଇଯିବୁ ।"

ଗୋକୁଳି ନନା ଜୀବନସାରା ମିଛ ବଣିଜରେ ବେପାର କରିଆସିଛି । ରହିବାକୁ ବାସ ନାହିଁ । ପିନ୍ଧିବାକୁ କନା ନାହିଁ । ସେ ମୋ କଥାକୁ ଗୋଟାପଣେ ଗିଳିଗଲା ।

ମୁଁ ତା' ମନ ବିଡିବାକୁ କହିଲି, "ଗୋକୁଳି ନନା! ତୁ ଯଦି ରାଜି ହବୁ, ମୁଁ ଦି'ଟା ଲୋକ ଆଣି ସେ ଜାଗାଟାକୁ ତୋ ପାଇଁ ଖୋଳେଇଦେବି । ଯାହା ମିଳିବ ଭାଗ କରିବା ।"

ଗୋକୁଳିର ଚେହେରା ଘଡିଘଡିକେ ଆନ ଆନ ଦିଶିଲା । କେତେବେଳେ ଅଙ୍ଗାର ତ କେତେବେଳେ ନିଆଁ । ସେ ହାଉଳି ଖାଇଲା ପରି କହିଲା, "ନାଇଁ, ନାଇଁ ମ ବଡବାବୁ! ସେ ଗୋଟେ କଥା ! ତମେ କାହିଁକି ଏଗୁଡା ସତ ବୋଲି ଭାବୁଛ ? ମୁଁ ସେମିତି ଫାନ୍ଦି ଦେଇ କହୁଥିଲି ନା ! ତମେ ବି ସେଥିରେ ପଡିଗଲ ?" ତା'ପରେ କେମିତି ଅଜବ ଢଙ୍ଗରେ ଗୁଡାଏ ହସିଲା ।

କହିଲା, "ଚାଲ, ଚାଲ ମୁଁ ତୁମକୁ ବଳେଇଦିଏ । ଖରା ହେଲାଣି । ତୁମ ଖାଇବା ବେଳ ଗଡିଯିବ । ଆଜି ରବିବାର ବୋଲି ସିନା ଦପ୍ତର ଯାଇନା ।"

ମୁଁ ମନେ ମନେ ହସିଲି । କହିଲି – "ତମେ ଥାଅ । ହନୁମାନ୍‌ଙ୍କ ଦେଖାଶୁଣା କର । ସେଗୁଡା ଯାହା କହିଲ ତା'ହେଲେ ମିଛ ?"

– "ଆଉ ନଇଲେ କଣ ସତ ? ମତେ ଯାହା ଦିଶେ ମୁଁ ବଖାଣିଯାଏ । ଲୋକେ ଶୁଣନ୍ତି, ମତେ ଭଲ ଲାଗେ... ଏଇଆ ।"

ମୁଁ ଚାଲିଆସିଲି । ମୋଡ ପାଖକୁ ଚାହିଁଲାବେଳକୁ ବଡଗଛ ବିସ୍ତାରି ହୋଇ ରହଛି । ନୂଆ

ପତ୍ରରେ ଖରା ପଡି ଚକ୍‌ଚକ୍ କରୁଛି । ମୁଁ ଆଉ ସେ କଥା ନ ଭାବି ଘରେ ଆସି ପହଞ୍ଚିଲି ।

ଏମିତି କିଛି ଦିନ ପାରିହୋଇଗଲା । ମୋ କାନରେ ପଡୁଥାଏ ଯେ ଗୋକୁଳି ନନା ଆଉ କାଇଁ ଏଆଡେ ଆସୁନାହିଁ । ମୁଁ ବୁଝିପାରୁଥାଏ, କିନ୍ତୁ ତୁନିପଡି ରହିଥାଏ ।

ମୋର କିନ୍ତୁ ମନ ହଉଥାଏ ଗୋକୁଳି ନନାକୁ ଯାଇ ଦେଖାକରନ୍ତି । ମୋ ଭିତରେ କିଏ କହୁଥାଏ, 'ଆରେ ଏଇଟା ସବୁ ସତ ହୋଇପାରେ । ସେ ପୁରୁଣା ବିକଟାଳ ଜାଗାରେ ହୁଏତ ପୋତାମାଲ ରହିଛି – କେଉଁ ପୁରୁଣା ଦଳପତିର ସମ୍ପତ୍ତି ବା ରାଜାର ଗୁପ୍ତ ଧନଭଣ୍ଡାର । ମୁଁ ସେଥିରେ ସାମିଲ ହେଇଥିଲେ କେମିତି ହେଇଥାନ୍ତା ?'

ତା' ପରମୁହୂର୍ତ୍ତରେ ନିଜକୁ ସଂଯତ କରି ହସିଦେଇଛି । ଏଇଟା ବିଶୁଦ୍ଧ ଗୁଲିଗପ-ଗୋକୁଳି ନନା ପାଇଁ ଠିକ୍ ।

ସେଦିନ ବି ଏମିତି ରବିବାର ପଡିଥାଏ । ମୁଁ ବୁଲିଲାପରି ଗାଁମୁଣ୍ଡ ସେଇ ବଟଗଛ ଆଡେ ମୋହିଁ ଗଲି । ଦେଖିବା ଗୋକୁଳି ନନା ସତେ କଣ କରୁଛି ?

ହନୁମାନ୍ ଆସ୍ଥାନକୁ କଣ୍ଟା ବାଉଁଶ ବାଡ ଦେଇ ବୁଜିଦିଆଯାଇଥାଏ । ଛୋଟ ମନ୍ଦିରଟିଏ ମଧ ଇଟା ଯୋଡେଇ କରି ଛାତ ମାରିଦିଆଯାଇଥାଏ । କିନ୍ତୁ ଘେରା ଜାଗାରେ ବେଶ୍ ବଡ ଆକାରର କଣ ସବୁ ତୋଳିବା ପାଇଁ ନିଅଁ ଖୋଳାହୋଇଥାଏ ।

ବଟଗଛ ମୂଳେ କେହି କୁଆଡେ ନ ଥିଲେ । ସେଇଠୁ ସେ ଆଦିମ ପୀଠଆଡେ ଗୋଡ କାଢିବାକୁ ମନରେ ଟିକିଏ ଶଙ୍କା ହେଲା – ତଥାପି ଆଗେଇଲି । ଦିନେବେଳଟାରେ ଗୋଟିଏ ପାକଳ ମଣିଷ ପିଲାଙ୍କ ପରି କଣ ଡରୁଚି କହି ନିଜକୁ ପ୍ରବର୍ତ୍ତାଇ ନେଲି । ସେଠି ଯାଇ ଦେଖିଲାବେଳକୁ ସେ ଗହଳ ଛାଇରେ ଖଣ୍ଡେ ଚଟେଇ ପକେଇ ଗୋକୁଳି ନନା ଦିବ୍ୟ ନିଦରେ ଶୋଇଛି । ମୁଁ ତେଣିକି ନିଧଡକ ପାଖେଇଲି ।

ଖଣ୍ଡିକାଶରେ ତା' ନିଦ ଭାଙ୍ଗିଲା ନାହିଁ । "ହେ, ଗୋକୁଳି ନନା !" ବୋଲି ପାଟିଟାଏ କରିବାରୁ ସେ ଧଡପଡ ହୋଇ ଉଠି ବସିଲା । ନିଦ-ମଳମଳ ଆଖିରେ ଚାହିଁଲା ।

– "ହେ ବଡବାବୁ, ତମେ ମିଛ ମଣିବ । ମୁଁ ସତରେ ତମ ପାଖକୁ ନିଜେ ଯାଇଥାନ୍ତି । ତମ ପାଇଁ ପରା ମୁଁ ଟାକିବସିଛି ।"

– "କାଇଁ କଣ ହଣ୍ଡାହାଣ୍ଡି ମିଳିଗଲା କି ? କୁବେର ଦେବତା ତ ତତେ ଯାଚି ଦେଇଛନ୍ତି – ସେଥିରେ ମତେ କାହିଁକି ଅପେକ୍ଷା ?"

ଗୋକୁଳି ଝଅଟ ଚଟେଇ ଝାଡି ଉଠିପଡିଲା । ପୁରୁଣା ବିକଟାଳ ଗଛଘେରା ସେ ଅଗଣା ମଝିରେହିଁ ସେ ନିଧଡକ ଶୋଇଥିଲା । ଏକୁଟିଆ । ବୋଧେ ରାତିରେ ବି ଶୋଉଥିବ । ଧନ୍ୟ ବୋଲିବା ଗୋକୁଳି ନନାକୁ !

ଯେଉଁଆଡେ ପଥର ଗୋଟାଳି ଆଉ ମାଟିଘୋଡା ଥୁଆହୋଇଥିଲା, ସେଇ ଆଡକୁ ମୁଣ୍ଡ

କିର ସେ ଶୋଇଥିଲା । ତା' ଗୋଡ ଆଡିକି କୋଦାଳ, କାଙ୍କ, ଫାଉଡା, ବାଲ୍‌ଟି, ଝୁଡି ଆଦି ନିଅଁଖୋଳା ସରଞ୍ଜାମ ଥୁଆହୋଇଥାଏ । ସେ ସେଇ ବାଲ୍‌ଟିରୁ ପାଣି ଆଣି ମୁହଁ ଧୋଇପକେଇଲା । ମୋ ଆଗରେ ଯାଇ ସେ ପଥର ଗୋଟାଳିମାନଙ୍କ ପାଖରେ ସାଷ୍ଟାଙ୍ଗ ପ୍ରଣିପାତ ହେଲା । ସେଇଠୁ ଉଠି ମତେ ଚାହିଁଲା ।

ଗୋକୁଳି ନନାର ଦାଢି ବଢିଯାଇଛି । ତା' ମୁହଁ ଖରାଧାସରେ କେମିତି ଶିଝିଲା ପରି ଦେଖାଯାଉଛି । ସେ ଆଗ ଅପେକ୍ଷା ବେଶୀ ରୁକ୍ଷ ଦେଖାଯାଉଛି । ତା' ଆଖି ଢିମାଢିମା । ବୋଧହୁଏ ସେ ସେତେବେଳେ ଆଉ କଣ ସବୁ ଦେଖୁଥିଲା – କିଛି ସମୟ ପରେ ହୁଏତ ବଖାଣିବ ତା'ର ନୂଆ ଗୁଲିଗପ ।

ସେମିତି କିଛି ହେଲା ନାହିଁ । ସେ ମୋତେ ହାତ ଠାରି ଡାକିଲା । ମୁଁ ସେମିତି ତଳେ ବସିରହି କହିଲି – "ଆରେ କୁଆଡେ ପୁଣି ଏ ଖରାରେ ଯିବା ? ଏଠିକି ଆ । ମୋ ପାଖରେ ବସି ଯାହା କହିବୁ କହ ।" ସେ କେବଳ କହିଲା, "ଆସ ।"

ଆଦେଶ ପରି ଶୁଭିଲା । କଣ ଖାସ୍ ଗୁମର ଉପରେ ଢାଙ୍କୁଣି ପରି ସେ ଭାବ ଟାଇଁଟାଇଁ ବାଜିଲା ।

ମୁଁ ଇଚ୍ଛା ନ ଥାଇ ଭିଡିହେଲା ପରି ଉଠିଲି । ସେ ପଶ୍ଚିମପାଖ ଗଛମାନଙ୍କ ସନ୍ଧିରେ ଆଗେଇଲା । ମୁଁ ତା' ପଛେ ପଛେ । ଗଛ ପଛକୁ ଅତଡା ପରି ଦାଢପାଖରେ ସେ ଠିଆହେଲା । ତା' ତଳକୁ ବେଶ୍ ଖାଲୁଆ ଜାଗା । ଗୋକୁଳି ପାହୁଣ୍ଡ ଜଗି ଗୋଟିଏ ଗଡାଣି ଦେଇ ଓହ୍ଲେଇଲା । ମୁଁ ବି କୌତୂହଳରେ ଓହ୍ଲେଇଗଲି । ଦୁହେଁ ଯାଇ ଯେଉଁଠି ପହଞ୍ଚିଲୁ, ସେଇଟା ଗୋଟାଏ ପୁରୁଣା ବାମ୍ଫି ହୋଇପାରେ । ଶୁଖିଯାଇଛି । ଅନ୍ତତଃ ପନ୍ଦର ଫୁଟ ଗହୀର । ସେଇଠି ଏବେ ବି ବର୍ଷାଦିନେ ପାଣି ରହୁଥିବ । କାରଣ ତଳେ ଶୁଖିଲା କାଦୁଅ ଫାଟି ରହିଥାଏ । ଗଛମୂଳ ଆଡକୁ ଖଣ୍ଡେ ବାଉଁଶ ଟାଟି ମଡାହୋଇଥାଏ । ତା' ପାଖରେ ମୂଷାମାଟି ପରି ନୂଆ ମାଟି ଖୋଳା ହୋଇ ଗଦାହୋଇଥାଏ । ଗୋକୁଳି ନନା ଯାଇ ସେ ବାଉଁଶ ଟାଟିଟାକୁ ଆଡେଇଦେଲା । ମୋର ନିଶ୍ୱାସ ବୋଧହୁଏ ଅଟକିଗଲା ସେଇଠି । ବୁକୁ ଦାଉଁଦାଉଁ ହେଲା । ମୋତେ ଗୋଟେ ସୁଡଙ୍ଗ ଦେଖାଗଲା । ମୁଁ କୌତୂହଳରେ ଯାଇ ସେଇଠି ପହଞ୍ଚି ଭିତରକୁ ଅନେଇଲି । ଜଣେ ମଣିଷ ଗୁରୁଣ୍ଡି ଗୁରୁଣ୍ଡି ଗଲାଭଳି ତଳମୁହାଁ ମାଟି ସୁଡଙ୍ଗ ।

ମୁଁ ଗୋକୁଳି ନନା ମୁହଁକୁ ଚାହିଁଲି । ତା' ଆଖି ଦାଉଦାଉ । ନିଶଟଲୁ ତା' ହସ ବି ଦାଉଦାଉ ।

– "ଆରେ ଗୋକୁଳି, ତା'ହେଲେ ସେ ସବୁ ସତ ?" ସେ କିଛି ନ କହି ଖାଲି ମୁଣ୍ଡ ଟୁଙ୍ଗାରି ମୋତେ ଚାହିଁ ରହିଲା ।

– "ଯାକୁ ତୁ ଖୋଳିଛୁ ?"

ସେ ପୁଣି ମୁଣ୍ଡ ଟୁଙ୍ଗାରିଲା ।

– "ଯ୍ୟା ଭିତରେ କଣ ପାଇଲୁ ?"

ସେ ମୁଣ୍ଡ ଲାଡି ନାହିଁକଲା । ଖାଲି କହିଲା, 'ପାଇବି' । ମୁଁ ସେତେବେଳକୁ ନିଜକୁ ନିଜେ ସମ୍ଭାଳି ପାରୁ ନ ଥାଏ । ମୁଁ ତା' ବେଣାକୁ ଧରି ଝାଙ୍କିଲି ।

– "ଆବେ, କଣ ପାଇବୁ କହୁନୁ!"

ସେ ଟାଣେଇଗଲା । ମୋତେ କଟମଟ ଚାହିଁ କହିଲା, "ନିଜେ ଯାଇ ଦେଖୁନ ବଡବାବୁ!"

– "କେତେ ଗଭୀର ଏ ସୁଡଙ୍ଗଟା ?"

– "ବେଶି ନାଇଁ ।"

ମୁଁ ଅଣାୟତରେ ସୁଡଙ୍ଗ ମୁହଁରେ ତଳ ଆଡକୁ ଓଲଟିପଡିଲି । ଅନ୍ଧାରରେ କିଛି ଦିଶିଲା ନାହିଁ ।

– "ହାତ ଥାପି ଗୁରୁଣ୍ଡି ଗଲେ ଅଳପ ବାଟ । ସେଇଠି ସେ ଜିନିଷ ଅଛି ।"

ମୁଁ ସୁଡଙ୍ଗମୁହଁରୁ ବୁଲିପଡି ପଚାରିଲି, "କୋଉ ଜିନିଷ ?"

ଗୋକୁଳି ନନା ଦାନ୍ତ ନିକୁଟିଲା । ହାତ ଦେଖାଇ ଭିତରକୁ ଯିବାପାଇଁ ଇଙ୍ଗିତ କଲା ।

ମୁଁ ଆଉ କିଛି ଚିନ୍ତା କରି ପାରିଲି ନାହିଁ । ସୁଡଙ୍ଗ ଭିତରକୁ ତଳମୁହାଁ ହାତ ରଖି ଆଣ୍ଠେଇ ପଡିଲି । ଦୁଇ ପାହୁଣ୍ଡ ଯାଇଛି କି ନାହିଁ, କୂଅ ପରି ତଳକୁ ହାତ ଖସିଗଲା । ଏତିକିବେଳେ ମୋ ପଛରୁ କିଏ ପ୍ରବଳ ଜୋର୍‌ରେ ଚାପିଧରିଲା ଆଉ ଭିତରକୁ ଠେଲିଲା । ସେଇଠି ମୋତେ ଆତଙ୍କ ମାଡିପଡିଲା ।

ସରୁ ସୁଡଙ୍ଗରେ ଲେଉଟିବା ସମ୍ଭବ ନୁହେଁ । ତଳୁ ଉପରକୁ ପଛୁଆ ଆଣ୍ଠେଇ ଫେରିବା ମଧ୍ୟ ସହଜ ନୁହେଁ । ଏଣେ ସେ ମୋତେ ପ୍ରାଣପଣେ ଭିତରକୁ ଠେଲିଲାଗିଛି । ମୋର କିଛି ବୁଝିବାରେ ବାକି ରହିଲା ନାହିଁ । ମୁଁ ପ୍ରାଣବିକଳରେ ସବୁ ଜୋର୍ ଲଗେଇ ଆଗ ହାତ ଦୁଇଟାକୁ ଉପେର ଆଣି ଜମେଇବାକୁ ଚେଷ୍ଟାକଲି । ପଛପଟୁ ଗୋକୁଳି ଠେଲି ନେଉଥାଏ । ମାଟି ଖସି ଯାଉଥାଏ । ଏଇ ବୋଧେ ସବୁ ସରିଗଲା ପରି ଲାଗିଲା ।

ମୋତେ ଏମିତି ହତ୍ୟା କରିବାକୁ ଗୋକୁଳି ଯୋଜନା କରି ଛକିଥିଲା । ମୁହିଁ କେବଳ ତା' ଗୁମର ଜାଣିଛି ବୋଲି ମୋତେ ମାରିବାକୁ ଟାକି ବସିଥିଲା । ମୁଁ ବେକୁବ୍ ନିଜେ ଆସି ତା' ଜାଲରେ ଧରାଦେଲି ।

– "ଶାଲା ଗୋକୁଳି, ତୋର ପୁଣି ଏତେ ସାହସ ?" ସେ ପାଷଫୁଟିଆ ଖୁରୁମୁସିଆ ବାଣ୍ଡିଆ ଲୋକଟା ମୋ ଆଖିରେ ଦିଶିଯିବାରୁ ସେ ସୁଡଙ୍ଗ ଭିତରୁ ମୁଁ କ୍ରୋଧରେ ଗର୍ଜିଉଠିଲି । ଗୋଟାଏ ଉହୁଙ୍କାରେ ପଛକୁ ଘୁଞ୍ଚିଆସି ପାଦଦୁଇଟାକୁ ପଛକୁ ଛାଡିଦେଲି । ସେ ଆଉ ମୋତେ ଠେଲିବାର ସୁଯୋଗ ପାଇଲା ନାହିଁ । ହେଲେ କାନ୍ଧ ଉପରେ ମାଡିବସି ମୋ ମୁଣ୍ଡକୁ ଚାପି ଧରିଲା । ମୁଁ ମୋ ହାତ ଦବେଇ କେବଳ ପଛକୁ ଘୁଞ୍ଚିଲି । ସେ ମୋ ମୁଣ୍ଡକୁ ବିଧା ମାରିଲାଗିଥାଏ । ବେକ ଚିପି

ଧରିଥାଏ । ମୁଁ ସୁଡଙ୍ଗମୁହଁକୁ ଫିଟିଆସି ଚିତ୍ ହୋଇଗଲି । ସବୁ ଜୋର୍ ଖଟେଇ ଠିଆହୋଇପଡିବାରୁ ଗୋକୁଳି ଅତର୍କରେ ଧାଇଁଲା ।

ମୁଁ ତାକୁ ଗୋଡେଇ ଯାଇ ଆୟତ୍ତ କରିନେଲି । ତା'ପରେ ବାକି ସବୁ ଖଣ୍ଡିହେଲା ପରି ଘଟିଗଲା । ଗୋକୁଳି ନନା ସାତ ବର୍ଷ ଜେଲ ଗଲା । ଅଦାଲତରେ ସବୁ ମାନିଗଲା । କେମିତି ପ୍ରତିଦିନ ତାକୁ ଦେବତା ସପ୍ନେଇଲେ, କେମିତି ସେ ମୋତେ ପୋତାବଳି କରିବାକୁ ଯୋଜନା କରି ବସିଥିଲା, ସବୁ କହିଗଲା ।

ମୁଁ ଲୋକ ଲଗେଇ ସେ ସୁଡଙ୍ଗକୁ ଖୋଳେଇଲି । ଗଛମୂଳ ପାରି ହୋଇ ଅଗଣା ତଳ ପର୍ଯ୍ୟନ୍ତ ଖୋଳାହେଲା । ସେଇଠି ସତକୁ ସତ ପଲମଲଗା ହାଣ୍ଡି କିଛି ମିଳିଲା । ହାଣ୍ଡି ଭିତରେ କିଛି ହାଡ, କିଛି ପାଉଁଶ, କିଛି ମାଟି । ଏଇ ବୋଧେ କୁବେରଙ୍କ ଅନ୍ତିମ ସମ୍ପତ୍ତି !



## ଆଉ କାହାକୁ କହିବେ ନାହିଁ

ମୋର ପ୍ରଚଣ୍ଡ ବିଜିଗୀଷା ସେତେବେଳେ । ନାଗଫଣା ପରି ମଥା ଟେକି ରଖିଥାଏ । ହାରିବା ସହିପାରେ ନାହିଁ । ପ୍ରାଣପଣ ଲଢ଼ିଯାଏ । ହାରିଗଲେ ପୁଣି ତାକୁ ଲେଉଟାଇ ନ ଜିଣିବାଯାଏଁ ମୋତେ ନିଦ ହୁଏ ନାହିଁ ।

ସେଥିପାଇଁ ସେ ସମୟଟାରେ ମୁଁ ଡହଡହ ତାତି ରହିଥିଲି । ଅଗ୍ନି ବର୍ଷୁଥିଲି । ଧରାକୁ ସରା ମଣୁଥିଲି । ଚାହୁଁଥିଲି ସମ୍ରାଟ୍ ଭଙ୍ଗୀରେ ।

ସେତେବେଳେ ମୋତେ ତିରିଶ ପୂରି ଏକତିରିଶ ଚାଲୁଥାଏ । ମୁଁ ପହଞ୍ଚିଲି ଗୋଟେ ପାହାଡଘେରା ସହରରେ । ଛୋଟ ସହର । ଛୋଟ ବଜାର । ଲୋକବାକ କମ୍ । ମୁଁ କାହାରି ପରିଚିତ ନୁହେଁ । ମୋର କେହି ପରିଚିତ ନୁହନ୍ତି । ଅଥଚ ବାଟରେ ଚାଲିଗଲା ଲୋକ ମୋତେ ଚିହ୍ନିଲା ପରି ଚାହିଁଲେ । ଆପଣାର ଭାବି ଉଷତ ହେଲାପରି ଦିଶିଲେ । ମୁଁ କିନ୍ତୁ ମୁକାବିଲା ଲୋଡୁଥାଏ । ଖୁରି ଖାଉଥାଏ ଲଢ଼ିଯିବାକୁ । ତା' ଭିତରୁ ଜଣେ ପାଖେଇଆସିଲା । ମୋ ଆଖିକୁ ଚାହିଁ ମୁହଁ କୁଞ୍ଚେଇ ଅଳ୍ପ ହସିଲା ।

– "ଆପଣ କିଏ ?"

– "ମୁଁ ଯେ କେହି ହେଲେ ଆପଣଙ୍କର କଣ ଅଛି ସେଥିରେ ?"

– "ଆରେ, ମୁଁ ଆପଣଙ୍କୁ ଭଲରେ ପଚାରୁଚି; ଆପଣ ହେମ୍ତି ଚଟିଯାଉଚନ୍ତି କେନେ ?"

– "ଚଟାଚଟି କଥା ନାହିଁ । ମୁଁ ଆପଣଙ୍କୁ ଜାଣେ ନାହିଁ । ଆପଣ ବି ମୋତେ ଜାଣିବା ଦରକାର ନାହିଁ ।" ମୁଁ ମୁହଁ ଫେରେଇ ବଡ ରାସ୍ତା ଆଡକୁ ମୁହାଁଇଲି । ଭାବିଲି ଲୋକଟା ସେତିକିରେ ଥଣ୍ଡା ହୋଇଯାଇଥିବ ।

ସେ କିନ୍ତୁ ମୋ ପିଛା ଧରିଛି ବୋଲି ମୁଁ ଜାଣିନାହିଁ । ସେ ମୋ ପାଖକୁ ମିଶିଆସିଲା । ଗୁ ପାନଖିଆ ଦାନ୍ତ ଦେଖେଇ ଆଦୌ ଆହତ କିମ୍ବା ଚକିତ ନହେବା ଭଙ୍ଗୀରେ କହିଲା – "ବଡ ଅଜବ୍ ନୁକ ତ ଆପଣ !"

ମୋଠୁ ଛ'ଇଞ୍ଚ ସାନ ମଣିଷକୁ ଉପରୁ ଚାହିଁ କହିଲି, "ଅଜବ୍ ମୁଁ ନା ତମେ ?"

– "ଏଇ ଯେ କଥା ଜମିଲା । ତମେ ବାବୁ ଭାରି ବଢ଼ିଆ ନୁକ । ବଡ ନୁକ କିଏ ଆସିଛ ।

ତମର ଆଖି ଦୁ'ଟା କେମିତିକି ତମକୁ ଚିହ୍ନା ପକେଇଦଉଚି । ରଜାଛୁଆନେଖେ ଦିଶୁଚ । ଏଇଟା ବାବୁ ରଜା ମୁଲକ । ରଜା ରାଇଜ ଗଲା । ରଜାମାନେ ଗଲେ । ଆମେ ରଜାଟେ ଖୁଜୁଚୁଁ ।"

ମତେ ସତକୁ ସତ ହସମାଡିଲା । ପରାସ୍ତ ବ୍ୟକ୍ତିର ସ୍ତବଗାନ ପରି ତା'ର କଥା ମତେ ଶୁଣାଗଲା । ଶୁଣିବାକୁ ଭଲଲାଗିଲା ।

– "ତମେ କେନେ ଆସିଛ କହନି ?"

ଇଚ୍ଛା ହେଲା ନାହିଁ ତା' ସପ୍ନ ଭାଙ୍ଗିଯିବ ଏଇ ଭୟରେ । ବହୁ ଲୋକଙ୍କ ବହୁ ସପ୍ନ ମୁଁ ଭାଙ୍ଗିସାରିଥାଏ । ଦିଗ୍‌ବିଜୟବେଳେ ଯାହା ହାବୁଡେ ପଡିଗଲା ଚୁରିହୋଇଯାଉଥାଏ । କିନ୍ତୁ ଛୋଟକାଟର ମଣିଷଟି ମୋତେ ଭାରି ସରଳ, ନିଷ୍କପଟ, ସାମାନ୍ୟ ନିର୍ବୋଧ ଜଣାଗଲା । ଏଣୁ ଧରାଯାଉ, ଦୟାକରି ମୁଁ ତାକୁ ଛାଡିଦେଲି । ମୁଁ ରଜାଫଜା କେହି ନୁହେଁ କହିଦେଲେ ତା' ମୁହଁଟି ଶୁଖିଯିବ । ସେ ହୁଏତ କାନ୍ଦିପକେଇବ । ସେଥିପାଇଁ କିଛି ଜବାବ ଦେଲି ନାହିଁ ।

ଆମେ ରାସ୍ତାକଡକୁ ଘୁଞ୍ଚିଯାଇଥିଲୁ । କେଜାଣି କାହିଁକି, ତା'ରି ଭଳି ଆଉ ଚାରିପାଞ୍ଚ ଜଣ ଆସି କେମିତି ଗୋଟାଏ କୃତକୃତ୍ୟ ହେଲାପରି, ଶରଣ ପଶିଲା ପରି ଠିଆହୋଇଗଲେ ।

ଭାବିଲି ଛୋଟ ସହରର ଏଇ ବୋଧେ ଢଙ୍ଗ । ସେ ଲୋକଟି କରଯୋଡି ପ୍ରାର୍ଥନା ଭଙ୍ଗୀରେ କଣ ସବୁ କହିଲା, କଣ ସବୁ ପଚାରିଲା, ମୁଁ ଶୁଣିନାହିଁ । ମୁଁ କେବଳ ସନ୍ତୁଷ୍ଟ ମୁଦ୍ରାରେ ଚାହିଁରହିଥାଏ ।

ଏତିକିବେଳେ ଖଣ୍ଡେ ଜିପ୍ ଗାଡି ଆସି ରହିଲା । ସେଥିରୁ ଜଣେ ମୋଟାଳିଆ ବାଙ୍ଗରା ଲୋକ ବାହାରି ଆସି ନମସ୍କାର କଲା ।

– "ଆପଣ ସାର୍ ଏଠି ?"

– "ହଁ, ସେଥିରେ ଅସୁବିଧା କ'ଣ ?"

– "ଆସନ୍ତୁ ସାର୍, ରାଜବାଟି ଆଡେ ଯିବା । ସେଇଠି କଥା ହବା ।"

ମୁଁ ରାଜି ହୋଇଯିବା ଉଚିତ ମନେକଲି ।

ସେ ପର୍ଯ୍ୟନ୍ତ କିନ୍ତୁ ତା'ର ପରିଚୟ ମୋ ପାଖରେ ନଥିଲା । ଏଇଟା ଅବଶ୍ୟ ଅନୁମାନ କରିହେଉଥିଲା ଯେ, ସେ ମତେ ଭଲଭାବରେ ଜାଣିଥିଲା । କୌଣସି କାରଣରୁ ଖୁବ୍ ଇଜ୍ଜତ୍ ବି କରୁଥିଲା ।

ମନେହେଉଥିଲା, ସେ ଜଣେ କେହି ଆଞ୍ଚଳିକ ଅଫିସର ହୋଇଥିବ ।

ରଜା ଖୋଜୁଥିବା ସେ ଲୋକଗୁଡିକୁ ମୁଁ ଚାହିଁଲି । ଅଳ୍ପ ହସିଦେଇ ଜିପ୍ ଆଡକୁ ଆଗେଇ ଗଲି ।

ସେମାନେ ଭାରି କୃତାର୍ଥ ହେଲାପରି ଚାହିଁରହିଥିଲେ ।

– "ମୋ ନାଁ ସାର୍ ଅମିୟ । ମୁଁ ଏଠି ଆଡିସ୍‌ନାଲ ତହସିଲଦାର ହୋଇ ଚାରିମାସ ହେବ ଜଏନ୍ କରିଛି ।"

ମୋର କୌଣସି ବିଶେଷ ପ୍ରତିକ୍ରିୟା ଲକ୍ଷ୍ୟ କରି ନ ପାରି ପୁଣି କହିଲା, "ସାର୍, ମୁଁ ଆପଣଙ୍କ

ଛାତ୍ର ଥିଲି ବ୍ରହ୍ମପୁରରେ । ମୋ ନାଁ ଅମିୟ ଚଟାର୍ଜି ସାର୍ । ଫୁଟବଲ ଖେଳୁଥିଲି ସାର୍ ଦିଲ୍ଲୀପ, ମାନୁ ହେରିକା ସାଙ୍ଗରେ ।"

– "ଓ ଆଚ୍ଛା ଆଚ୍ଛା, ତମେ ରାଇଟ୍ ଓ୍ୱିଙ୍ଗର୍ ଥିଲ ।"

– "ହଁ ସାର୍, ହଁ ସାର୍!" ଭାରି ଖୁସି ହେଇଗଲା ଅମିୟ କାରଣ ମୁଁ ତାକୁ ଚିହ୍ନିଲି ଆଉ ମନେ ପକେଇ ପାରିଲି ।

– "ଆପଣ କେବେ ଆସିଲେ ସାର୍ ?"

– "ଏଇ ଦୁଇଦିନ ହେବ ।"

– "କୋଉଠି ରହୁଚନ୍ତି ?"

– "ମତେ ଏଇ ରାଜବାଟିରେ ଗୋଟେ ବଖରା ଦେଇଛନ୍ତି ଘର ନ ପାଇବା ଯାଏଁ ।"

– "ଏଇ ରାଜବାଟିକୁ ତ କଲେଜ୍‌ଟା ଉଠିଆସିଛି ସାର୍"

– "ମୁଁ ଜାଣେ ।"

– "ଏଇ ତ ରାଜବାଟି ଆସିଗଲା । ଆପଣ କୋଉଠି ରହୁଛନ୍ତି ସାର୍ ?"

– "ଧରାଯାଉ ସମଗ୍ର ରାଜବାଟିରେ ।"

କଥା ହଉ ହଉ ଆମେ ମୁଖ୍ୟ ଅଗଣାରୁ ପ୍ରଶସ୍ତ ପାହାଚ ଦେଇ ଦୋ'ମହଲାକୁ ଉଠୁଥିଲୁ ।

ଅମିୟ କହିଲା, "ଏଇଟା ଦରବାର ହଲ୍ । ଏଇଟା ପ୍ୟାଣ୍ଟ୍ରି । ଯା ତଳକୁ ରାଜାଙ୍କ ସିମିଂ ପୁଲ୍ । ଆପଣ ଯାଇ ଦେଖିଲେଣି ସାର୍ ?"

– "ନା ।"

– "ଆପଣ ସେ ଶେଷ ରୁମ୍‌ଟାରେ ରହୁଛନ୍ତି ନା ? ସେଇଟା ତ ରାଜାଙ୍କ ଖାସ୍ ପହୁଡ ଘର ।"

ଆମେ ତାଲା ଖୋଲି ଭିତରେ ପଶିଲୁ । ଅମିୟ ଆବାକାବା ହେଇ ଅନଉଥାଏ । ଭିତରେ ସଂଜ ଅନ୍ଧାର ଘନୀଭୂତ ହେଉଥାଏ । ଖୁବ୍ ନିର୍ଜନ ନିସ୍ତବ୍ଧ ଲାଗୁଥାଏ । ମୁଁ ଦିଆସିଲ୍ ମାରିଲି ଲ୍ୟାମ୍ପ ଜାଳିବା ପାଇଁ । ସେଇ ଶବ୍ଦଟା କିଛି ସମୟ ପାଇଁ ଗୁମୁରିଲା ସେଇ ନିସ୍ତବ୍ଧତା ଭିତରେ । ଲ୍ୟାମ୍ପ ଆଲୁଅରେ ମାର୍ବଲ ଚଟାଣ, କାରୁକାର୍ଯ୍ୟ ହୋଇଥିବା ଛାତ, ଆଉ କାନ୍ଥ ଦେଖାଗଲା ।

କଲେଜ ପାଇଁ ତିଆରି ହୋଇ ରହିଥିବା ଦୁଇଟି ବେଞ୍ଚ୍ ଯୋଡି ମୁଁ ମୋର ବିଛଣା ପକେଇଥାଏ । ଆଉ ଗୋଟିଏ ବେଞ୍ଚରେ ମୋର ବାକ୍ସ, ବହିପତ୍ର ଆଉ ଗୋଟିଏ ପାଣି ସୁରେଇ । ବାକି ସମଗ୍ର ବଖରା ଖାଲି ।

– "ଏଇଟା ତ ବାଥ୍‌ରୁମ୍ – ଆଉ ଏ କବାଟଟା କୁଆଡେ ଫିଟିଛି ?"

– "ଜମ୍ମା ଫିଟିନାହିଁ । କଣ୍ଟାମରାଯାଇଛି । ଏଠି ଜଗୁଆଳି ଗୋପାଳ କହୁଥିଲା, ଏଇଟା ଅନ୍ତଃପୁର ଆଉ ରାଣୀ ମହଲକୁ ବାଟ । ମୋର ରାଣୀ ମହଲ ସାଙ୍ଗେ କଣ ସଂପର୍କ । ମୁଁ ତ ରଜା ନୁହେଁ ।"

ଅମିୟ ପରିହାସ ବୁଝିଲା; କିନ୍ତୁ ଉପଭୋଗ କରିପାରିଲା ନାହିଁ । ତା'ର ବିମୂଢ଼ ଅବସ୍ଥାରେ ପାଟି ନେସେଡି ହସିବାର ଚେଷ୍ଟା କଲାବେଳେ ଏବଂ ପରମୁହୂର୍ତ୍ତରେ ସେମିତି ଛାନିଆ ହେଲାପରି ଚାହିଁଲା ଚାରିଆଡକୁ ।

ବାଥ୍‌ରୁମ ପାଖରେ ଆଉ ଗୋଟେ କବାଟକୁ ଦେଖେଇ ପଚାରିଲା, "ଏଇଟା କୁଆଡକୁ ଯାଇଛି ସାର୍ ।"

– "ମୁଁ ଜାଣିନାହିଁ । ସେଇଟା ବି କଣ୍ଟମରାହେଇଚି । ଗୋପାଳ କହୁଥିଲା, ସେଇଟା ଗୋଟାଏ ଭଉଁରି ପାହାଚ ଦେଇ ତଳକୁ ଯାଇଚି ସେଇଠୁ ରାଜବାଟିରେ ପଶ୍ଚିମ ଦ୍ୱାରକୁ ବାଟ ଅଛି । ସେଇଟା ଚୋରା ଦ୍ୱାର ।"

– "ମାନେ ?" ଅମିୟ ତବତବ ଆଖିକରି ଚାହିଁଲା ।

– "ମାନେ ଆଉ କ'ଣ ? ସେଇବାଟେ ଚାହିଁଲେ ସମସ୍ତଙ୍କ ଅଲକ୍ଷ୍ୟରେ ରାତିଅଧରେ ଛଦ୍ମବେଶରେ ରାଜା ସହର ପରିକ୍ରମାକୁ ଯାଉଥିଲେ । ମନହେଲେ ସେଇବାଟେ ଗୋପନ ପ୍ରଣୟ ପାଇଁ ଅଭିସାରିକା ଆସୁଥିଲେ ରାଜାଙ୍କ ଶୟନକକ୍ଷକୁ । ପ୍ରଥମ ଅପେକ୍ଷା ଦ୍ୱିତୀୟ କର୍ମ ପାଇ ଏଇ ଦ୍ୱାରଟି ବେଶି ବ୍ୟବହାର ହେଉଥିଲା ।"

ଅମିୟ ତଥାପି ଆମୋଦିତ ବୋଧକଲା ନାହିଁ ।

ମୁଁ ବିଛଣାରେ ବସି ଜୋତା ମୋଜା ଖୋଲିଲି । ମୋର ଆଉ ଯିବାର ନଥିଲା କୁଆଡେ । ଗୋପାଳ ରାତି ନ'ଟା ବେଳେ ହୋଟେଲରୁ ଖାଇବା ନେଇ ଆସିବ । କିଛି ସମୟ ଗପିଲା ପରେ ଚାଲିଯିବ ସିଂହଦ୍ୱାର ବାହାରକୁ, ସନ୍ତ୍ରୀ ଘରକୁ ।

ଅମିୟକୁ ହାତଠାରି ପାଖରେ ବସିବାକୁ କହିଲି । ସେ ଟିକିଏ ଇତସ୍ତତଃ କରି ବସିଲା । ସେ ଆଡକୁ ଏକାଲୟରେ ଚାହିଁ କହିଲା, ସାର୍, ଆପଣ ଏତେବଡ ରଜା ମହଲରେ ଏକୁଟିଆ ରାତିରେ ରହୁଛନ୍ତି । ଆପଣଙ୍କୁ ଡର ମାଡୁନାହିଁ ?

– "କାହିଁ, ନାଇଁ ତ ! ମୁଁ କଣ ପିଲା ହେଇଚି ନା' କ'ଣ ? ତମେ ମୋଠୁ ଏଇ ଦୁଇ-ତିନି ବର୍ଷ ସାନ ହେବ ବୟସରେ । ତମକୁ କଣ ଡରମାଡିବ ଏଠି ରହିବାକୁ ?"

"ନା' ନା' ନା' ସାର୍, ମତେ ହଜାରେ ଟଙ୍କା ଦେଲେ ସୁଦ୍ଧା ମୁଁ ଏ ଘରେ ଏକୁଟିଆ ରାତିରେ କଦାପି ରହିବି ନାହିଁ । ମୋ ବାବା, ଏଠି ରାତିରେ ରହିଲେ କଲିଜା ପାଣି ହେଇଯିବ ।"

ମୋତେ ତା'ର ଆତଙ୍କିତ ମୁହଁ ଦେଖି ଭାରି ହସ ମାଡିଲା – "ହେ, ଅମିୟ କଣ ହେଇଚି ତମର ? ଏମିତି ଡରକୁଳା ହେଇ କେମିତି ଅଫିସର୍ କାମ ଚଳଉଚ ?"

ମୁଁ ତା' ପିଠିରେ ପ୍ରୟୋଜନରୁ ଅଧିକ ଜୋର୍‌ରେ ଥାପୁଡି ମାରିବାରୁ ତାକୁ ବୋଧେ କାଟିଲା । କହିଲା, "ଆଃ !" କିନ୍ତୁ ସେଇ ଭୟମିଶା ଚାହାଣି ଆଉ ସ୍ୱରରେ ।

– "ଆପଣ ଦିନ ରାତି ଏଇଠି ଶୋଇଲେଣି ସାର୍ ? ଆପଣଙ୍କୁ କିଛି ସେମିତି ଅନୁଭବ ହେଇନାଇଁ ମାନେ..."

– "ମୁଁ ବୁଝିଲି – ଭୂତପ୍ରେତ କଥା କହୁଚ ତ ? – ଋହିଁଲେ ଦେଖୁଥାନ୍ତି, ନ ଋହିଁଲେ ନାହିଁ । ସେଗୁଡା ସବୁ ଦୁର୍ବଳ ମନର କିମିଆଁ ।" ଅମିୟ ଶଙ୍କିଯାଇଥିଲା ।

ମୋର ଭାରି ଇଚ୍ଛା ହେଲା ତା' ସହିତ ପରିହାସ କରିବାକୁ, କିଛି ମିଛ କହି ତାକୁ ଡରେଇବାକୁ ।

– "ମୁଁ କିଛି ଏଯାଏଁ ଦେଖିନାହିଁ ଯେ... ହେଲେ..."

ମୁଁ ଗମ୍ଭୀର ହୋଇଗଲି ।

ଅମିୟ କଲିଜା ପଞ୍ଜରାରେ ବାଡେଇ ହେଉଥିବା ମୁଁ ଶୁଣିପାରୁଥିଲି ।

"ହେଲେ କଣ ସାର୍ ?"

– "ହେଲେ, କାଲି ରାତି ପ୍ରାୟ ଦଶଟା ବେଳେ ମୁଁ ଲ୍ୟାମ୍ପ୍ ଜାଳି ପଢୁଥାଏ । ମତେ ଲାଗିଲା..."

ଅମିୟ ମୋ ଆଡକୁ ଟିକେ ଋହିଁ ଘୁଞ୍ଚିଆସିଲା । ତାକୁ ଛପ୍‌କିନା ଧରିଦେଇଥିଲେ ସେ ମୂର୍ଚ୍ଛା ହୋଇଯାଇଥାନ୍ତା – ଏଭଳି ଟଳମଳ ଅବସ୍ଥା ।

– "ମତେ ଲାଗିଲା, ଏ ଘର ସାରା ଗମ୍‌ଗମ୍ ବାସିଲା – ଖୁବ୍ ଦାମୀ ଅତର । ଏଠିକାର ନୁହେଁ, ବିଦେଶୀ ଫରଫ୍ୟୁମ୍..."

– "ସତେ ସାର୍ ! ସେଇଠୁ, ଆପଣ କଣ କଲେ ?"

– "କିଛି ନାଇଁ, ବାସୁଚି ତ ବାସୁଥାଉ – ମୋର କଣ ଥାଏ ! ମୁଁ ମୋର ପଢିଋଲିଥାଏ ।"

– "ଧନ୍ୟ ଆପଣ; ଆଉ କିଏ ତ ଅତର୍କରେ ଧାଇଁପଳାଇଥାନ୍ତା ।"

– "ମୁଁ କିନ୍ତୁ ଗଲିନାହିଁ । ବରଂ ଲ୍ୟାମ୍ପ୍‌ଟାକୁ ଜଳେଇ ଦେଇ ଆଖି ବନ୍ଦ କରି ଶୋଇଗଲି । ଅପେକ୍ଷା କଲି..."

– "ସାର୍, ଆପଣ କେମିତି ସାହସ କଲେ ? ମାନେ ମୁଁ ବିଶ୍ୱାସ କରି ପାରୁନାହିଁ ।"

– "କିନ୍ତୁ ଅମିୟ, ତା'ପରେ ଆଉ କିଛି ଘଟିଲା ନାହିଁ ।" ଏଭଳି କଥାଟାକୁ ଛିଣ୍ଡାଇଦେବାରେ ମୁଁ ତାକୁ କିଛି ପରିମାଣରେ ନିରାଶ କଲି । କିନ୍ତୁ ନିଜକୁ ସେ ଜାଲରୁ ମୁକୁଳେଇନେଲି । ନଚେତ୍ ଅନେକ ମନଗଢା କଥା କହିପକେଇଥାନ୍ତି । ସେ କିଛି ଆଶ୍ୱସ୍ତ ହେଲା ଏବଂ ବିଦାୟ ନେବାକୁ ଠିଆହେଲା । ମୁଁ ତାକୁ ବଳେଇଦେବାକୁ ଚପଲ ପିନ୍ଧି ବାହାରିଲି ।

"ଆପଣ ଥାଆନ୍ତୁ ସାର୍ !" ସେ କହିଲା ସିନା, କିନ୍ତୁ ମୁଁ ଜାଣିପାରୁଥିଲି, ସେ ଋହୁଁଥିଲା ମୁଁ ତାକୁ ଅଗଣାଯାଏ ଛାଡିଦେଇ ଆସେ ।

ମୁଁ ତା' ପିଠିରେ ହାତ ରଖି ଟର୍ଚ୍ଚ ମାରି ବାଟ ଦେଖାଇନେଲି । ସାମାନ୍ୟ ଶବ୍ଦରେ ସେ ଚମକିପଡୁଥିଲା । ତା' କଲିଜା ବାଡେଇହଉଥିଲା ମୋ ପାପୁଲିରେ ।

ସେ ତା'ର ଜିପ୍ ନେଇ ଋଲିଗଲା । ମୁଁ ମୋର ଧୀରେସୁସ୍ଥେ ପାହାଚ ଉଠିଆସି ମୋ ବଖରାରେ ପହଞ୍ଚିଲି । ପଶିବାମାତ୍ରେ ମୋ ଦେହସାରା ରୋମ ଟାଙ୍କୁରିଗଲା । ଘରସାରା ମହମହ ବାସୁଥିଲା ।

ମୁଁ ତାକୁ ହସି ଉଡାଇଦେବାକୁ ଚେଷ୍ଟା କଲି । ଟର୍ଚ୍ଚ ମାରିଲି ଚାରିଆଡକୁ ।

"ଧେତ୍‌ତେରି ।" ନିଜ ଉପରେ ଖୁବ୍ ଚିଡିଯାଇ ଜୋର୍‌ରେ ପାଦ ବାଡେଇଲି ଚଟାଣରେ । ବିଛଣା ଉପରେ ଚକା ପକେଇ ବସିଲି ଧ୍ୟାନ କରିବା ଭଙ୍ଗୀରେ । ହାତ ପାଦ ଦେହ ଟାଣିରଖିଥାଏ । ଦାନ୍ତକୁ ଦାନ୍ତ ଜାବିରଖିଥାଏ – 'କିଏ ଆସିବ ଆସୁ, ତା'ର ଦିନେକୁ ମୋର ଦିନେ ।' ମୋତେ ବହୁଦୂରରୁ କିଏ କାହାକୁ ଡାକିବାର ଶୁଣାଗଲା । ପାଖ ବସ୍ତିରୁ ଶବ୍ଦ ଆସିଥିବ । ପାଖେଇଆସୁଥିବା ପାଦଶବ୍ଦ ଶୁଣାଗଲା । ପୁଣି ମୋ ଅଣାୟତ୍ତରେ ଦେହ ଗୁମ ଟାଙ୍କୁରିଗଲା । ମୁଁ ମୁକାବିଲା କରିବାକୁ ଠିଆହୋଇପଡିଲି ।

ଦୁଆରମୁହଁରେ ଗୋପାଳ ଛିଡାହୋଇଗଲା । ମୋର ସବୁ ରକ୍ତ ଫେରିଗଲା ହୃତ୍‌ପିଣ୍ଡକୁ । ହାତପାଦ ହଠାତ୍ ଢିଲା ହେଇଗଲା । ମୁଁ ବିଛଣା ଉପରେ କୁଢେଇ ହେଲାପରି ବସିଗଲି । ଗୋଡ ହଲେଇଲି । ହସିବାକୁ ଚାହିଁଲି ।

କିନ୍ତୁ ହଠାତ୍ ସଳଖ ହେଇ ବସିଗଲି । ଗନ୍ଧ ବାରି କହିଲି – "ହେ ଗୋପାଳ, ତୁ ଗୋଟେ ବାସ୍ନା ବାରିପାରୁଛୁ ?"

– "ସେଇ କଥା ତ ସାର୍ ! ମୁଁ ଏ ଦୁଆରମୁହଁରୁ ଜାଣିଦେଲି । ଏଇଟା ତ ଚିହ୍ନା ବାସ୍ନା-ଟା । କେମ୍‌ତିନି ଫେର୍ ସେ ବାସ୍ନାଟା ଆସିଲା ! ଆପଣ ସାର୍ ଏ ଅତରଟା ଆଣିଚନ୍ତି ନା !"

– "ଆରେ ବେକୁବ୍, ଅତର କିଏ ମୁଁ କିଏ ? ମୁଁ ବାସ୍ନାତେଲ ବି ଲଗାଏ ନାହିଁ । ମୋ ସାବୁନ୍‌ରୁ ଡାକ୍ତରଖାନା ଗନ୍ଧ ବାହାରେ – ଲାଇଫ୍‌ବୟ ସାବୁନ୍ !"

– "ତେବେ ସାର୍ ଏ ବାସ୍ନାଟା ?"

ସେ ମୋତେ ଡବଡବ ଆଖିରେ ଚାହିଁଲା । ସେ ଚଟାଣ ଉପରେ ବସିଯାଇଥିଲା, ତା' ଢଙ୍ଗରେ । ସେ ଆଣ୍ଠୁଦୁଇଟା ଉପରେ ଥୋଡି ରଖି ବସିଥିଲା । ଦୁଇ ହାତରେ ଚଟାଣକୁ ସାଉଁଳୁଥିଲା । ମାର୍ବଲ ଚଟାଣ ତାକୁ ଚିକ୍କଣ ଲାଗୁଥିଲା ହୁଏତ । ସେ ଭଲପାଉଥିଲା ସେଥିରେ ହାତ ମାରିବାକୁ ।

– "ଏଇନା ବାସ୍ନାଟା ବଦଳିଗଲାଣି । କିନ୍ତୁ ମୁଁ ସେ ତହସିଲଦାର ବାବୁକୁ ଛାଡି ଉପରକୁ ଆସିଲାବେଳେ ମହମହ ବାସିଯାଉଥିଲା ।"

ଗୋପାଳ ମୁଚୁକି ମୁଚୁକି ହସୁଥିଲା । ଲାଜ ଲାଜ ହେଇ କହିଲା, "ଗୁଟେ କଥା କହିବି ସାର୍ ଆପଣ ରାଗିବେ ନାଇଁ । ପଅରଦିନ ମୁଁ ଆପଣଙ୍କୁ ଦେଖିଲା ମାତ୍ରେ ଚମକିପଡିଲି । ଆପଣ ଗୁଟାପଣେ ରାଜାସାହେବ ନେଖେ ଦିଶୁଚନ୍ । ଏମ୍‌ତିନି ଚେହେରା – ନାକ, ଆଖି, ହସ । ଇ ବାସ୍ନାଟା ଏବେ ମିଶିଗଲା । ମତେ ହଜୁର ଥଟ୍ଟା କରୁଛନ୍ ନେଖେ ଲାଗୁଛି । ଇ ବାସ୍ନାଟା ତ ହଜୁରଙ୍କର ଦିହରୁ ବାହାରୁଚି ।"

– "ଶଟ୍‌ଅପ୍ ! ବକ୍‌ବାଜି ବନ୍ଦ କର୍ । ମତେ କହ ଯାହା ଜାଣିଚୁ । ତୁ ଏ ବାସ୍ନାକୁ ଚିହ୍ନିଚୁ ?"

– "ହଜୁର, ଏଇଟା ଥରେ ନାକରେ ବାଜିଥିଲେ କି ଆଉ ଭୁଲିହବ ? ରାଜାସାହେବ ଇ ବାସ୍ନାଟାକୁ ବଡ ପସନ୍ଦ କରୁଥିଲେ । ବାହାରୁ ମଗଉଥିଲେ । କେତେ ନାଇଁ କେତେ ପଇସା

ପଡୁଥିଲା ।"

– "ଆଚ୍ଛା, ତୁ ଆଜି ଏତେ ଚଞ୍ଚଳ ରୁଟି ନେଇ ଆସିଲୁ, ଥଣ୍ଡା ହେଇଯିବ ଯେ ! ମୁଁ ତ ଏଇନା ଖାଇବି ନାଇଁ ।"

– "ନାଇଁ ସାର୍, ଇଟା ଖାଲି ଡବାଟା । ମୁଁ ଯିବି ଆଣିବେ ! ଗୁଟେ ପଠାଣ ବବର୍ଚି ଅଛି ସାର୍ । ହୁଟଲ କରିଚି । ସେ ସମୟକାର ନୁକ ! ବଢିଆ ପରଠା ମାଉଁସ ତର୍କାରି କରେ । ଆପଣ ହୁକୁମ କଲେ ଆଣିଦେବି । ମାଂସରେ କେଶର ପେସ୍ତାବାଦମ ପକାଏ । ରଜାଘରେ କାମ କରୁଥିଲା ।"

କ'ଣ ମନ ହେଲା, ମୁଁ ହଁ କରିଦେଲି । ସାର୍ଟପକେଟରୁ ପଇସା କାଢିବାରୁ ଗୋପାଳ ମନା କଲା, "ମୁଁ ଆଣେ ସାର୍ – ଆପଣ ଖାଉନ୍ ଆଗ । ପଇସା ଦବା ପରେ ।"

ସେ ପୁଣି ଥରେ ଚଟାଣଟାକୁ ଅଣ୍ଡାଳି ଦେଇ ଉଠିଲା, ହାତରେ ଷ୍ଟିଲ୍ ଟିଫିନ୍ କେରିଅର୍ !

ଗୋପାଳ ଚାଲିଗଲା ପରେ ମୁଁ ଖୁବ୍ ସ୍ଥିର ଏବଂ ସୁସ୍ଥବୋଧ କଲି । ବାଥ୍‌ରୁମ୍‌ରେ ହାତ ଗୋଡ ଧୋଇ ଆସିଲି । କୌତୁହଳରେ ନିଜ ଡେଣାକୁ ନାକ ଲଗେଇ ଶୁଙ୍ଘିଲି । ହସିଲି ମନକୁ ମନ – 'ରଜା ନା ଫଜା !'

ବିଛଣା ଉପରେ ଲ୍ୟାମ୍ପ ରଖି ଲାଇବନିଜ୍ ପଢିବା ଆରମ୍ଭ କଲି, ତା' ଆରଦିନ ପାଇଁ ପ୍ରସ୍ତୁତ ହେବା ସକାଶେ । କଲେଜ ଦିଶିଲା । ପିଲାମାନେ ଦିଶିଲେ । ସେ ଭିତରୁ ଗୋଟାଏ ଚାଲାକ ମୁହଁ ଉଜ୍ଜ୍ୱଳ ଆଖି ଝଲସି ଉଠିଲା । ବାଃ, ସେଇ ଗୋଟାଏ ଟୋକା ପାଇଁ ସବୁ ପରିଶ୍ରମ ସାର୍ଥକ ମନେହେଲା ।

ପାଠପଢାରୁ ହଠାତ୍ ଧ୍ୟାନଭଙ୍ଗହେଲା । ପୁଣି ସେ ପାଖେଇଆସୁଥିବା ପାଦଶବ୍ଦ । ଦେହ ଶୀତେଇ ଆସୁ ଆସୁ ରହିଗଲା । ଗୋପାଳ ବୋଧେ ଆସିଗଲା ।

ସତକୁ ସତ ଗୋପାଳହିଁ ଆସିଲା । ବିଛଣା ପାଖରେ ଟେବୁଲ୍ ରଖିଲା, ପାଣି ଗ୍ଲାସ୍ ଥୋଇଲା । ପ୍ଲେଟ୍ ପୋଛି ରଖିଲା ଏବଂ ଟିଫିନ୍ କେରିଅର୍‌ର ଡବାଯାକ ଖୋଲିଲା ।

ମୁଁ ଉଠିବସିଲି ଖାନାର ଅଦ୍ଭୁତ ବାସ୍ନାରେ । "ଏ ତ ବଢିଆ ହେଇଚି ଗୋପାଳ ! ଯେମିତି ବାସୁଚି ସେମିତି ସୁଆଦ ଲାଗିବ ତ ?"

ଗୋପାଳ ହାତ ମନ୍ଥି ଠିଆହେଇଥାଏ । ଏକ ଅଦ୍ଭୁତ ସନ୍ତୁଷ୍ଟ ମୁଦ୍ରାରେ ମୁଚ୍‌ମୁଚ୍ ହସୁଥାଏ । ମୁଁ ପରଠାକୁ ଶୁଙ୍ଘିଲି । ଇସ୍ ବଢିଆ ଘିଅରେ ତିଆରି । ମାଂସ ତର୍କାରି ତା'ଠୁ ବଢିଆ ବାସ୍ନା । ମୋ ପାଟିକୁ ପାଣି ଆସିଗଲା । ମୁଁ ଖାଇବା ଆରମ୍ଭ କରିଦେଲି । ମୁହଁ ଟେକି ଚାହିଁଲାବେଳକୁ ଗୋପାଳ ନ ଥିଲା । ମୁଁ ଅବାକ୍ ହେଇ ଚାରିଆଡକୁ ଚାହିଁଲି ।

ସେ ଦୁଆର ସେପଟୁ ମୁହଁ କାଢି କହିଲା, "ମୁଁ ଅଛି ସାର୍ ! ଆପଣ ସାରନ୍ତୁ ।"

ଓ... ରାଜାଡି କାଇଦା ଦେଖେଇଦେଲା । ହେଲେ ଏତେ ଚଞ୍ଚଳ କେମିତି ବାହାରକୁ ଚାଲିଗଲା !

ହଅଅ ! ଗଲା ତ' ଗଲା – ଆଗ ଏ ଖାନାଟାକୁ ଖୁଆଯାଉ ।

ମୁଁ କିଛି ସମୟ ଖାଇବାରେ ମଜିଗଲି । ଖାଇଲାବେଳେ ସତକୁ ସତ ମତେ ରଜା ରଜା ଲାଗୁଥିଲା । ରଜା ହେବାଟା ଗୋଟାଏ ମିଜାଜ୍ । ଖାନ୍‌ଦାନ୍, ଆବୁ କ୍ଷମତା ସେମିତି କିଛି ଜରୁରି ନାହିଁ ।

ଖାଇସାରି ମୁଁ ବୋଧେ ସେଇ ଭଙ୍ଗୀରେ ଉଠିଲି । ଧୋତି ସାମାନ୍ୟ ଟେକିହୋଇଯାଇଥିଲା । ପାହୁଣ୍ଡ ଟିକିଏ ପ୍ରୟୋଜନରୁ ଲମ୍ବା ପଡୁଥିଲା । ସେତିକିବେଳେ ପରିଚାରିକାମାନେ ସେବାରେ ଖଟିଥିଲେ ମୁଁ ଆପତ୍ତି କରି ନ ଥାନ୍ତି ।

ହାତ ଧୋଇ ବାଥ୍‌ରୁମ୍‌ରୁ ବାହାରିଲାବେଳକୁ ଗୋପାଳ ଟାୱେଲଟିକୁ ଦୁଇ ହାତରେ ପ୍ରସାଦ ଥାଳି ଟେକିଲା ପରି ଧରିଥିଲା । ମୁଁ ତାହା ଅସ୍ୱାଭାବିକ ବୋଲି ଅନୁଭବ କରିପାରିଲି ନାହିଁ । ସେ ଟେବୁଲ କାଢି ନେଇ ସାରିଥିଲା । ବିଛଣା ଉପରେ ହାତମାରି ସଜାଡି ସାରିଥିଲା ନିଃଶବ୍ଦରେ ପଲକ ପଡିଲା ଭିତରେ ।

ମୁଁ ଯାଇ ବିଛଣାରେ ସିଂହାସନରେ ବସିବା ଠାଣିରେ ବସିଗଲି । ଗୋଟାଏ ଗୋଡ ଭାଙ୍ଗି ଖଟ ଉପରେ ରଖିଥାଏ । ବାଁ ହାତରେ ଭରାଦେଇ ଆଉଜି ବସିଥାଏ । ଡାହାଣ ହାତ ନିଶ ଉପରେ ସାଉଁଳି ଆଣିଥିଲେ ଭୂମିକା ସମ୍ପୂର୍ଣ୍ଣ ହୋଇଯାଇଥାନ୍ତା ।

ମୁଁ କେବଳ ନିଜ ଜଙ୍ଘ ଉପରେ ଥାପୁଡି ମାରି କହିଲି, "ଗୋପାଳ ! କି ଖାନା ଖୁଆଇଲୁ ଆଜି ! ମିଜାଜ୍ ଖୁସ୍ ହେଇଗଲା ! ମୋ ଉପର ପକେଟ୍‌ରେ ପର୍ସଟା ଅଛି, ଆଣ, ଯେତେ କହିବ ସେ ବବର୍ଚ୍ଚି ତାକୁ ଦେଇଦବୁ ।"

ଗୋପାଳ ବିନୟରେ ମୁଣ୍ଡ କୁଣ୍ଡେଇ ଠିଆରହିଲା ।

– "ହଜୁର୍..."

– "ଆରେ, ହଜୁର୍ ହଜୁର୍ କଣ ହଉଚୁ ?"

– "ନାଇଁ ସାର୍, ତୁଣ୍ଡରୁ ବଳେ ବାହାରିଆସୁଚି । ଆପଣଙ୍କୁ ଦେଖିଲେ ହଜୁର୍ ଡାକିତେ ମନ କରୁଚି ।"

– "ହେଃ, ରଖ୍ ତୋ ଗଡଜାତିଆ ଖୋସାମଦିଆ କଥା – କେତେ ନବ ସେ ବବର୍ଚ୍ଚି ?"

– "ସେ ମନାକରିଚି କିଛି ନେଇତେ । ସେ ହଜୁର୍‌ଙ୍କୁ... ସାର୍, ଆପଣଙ୍କୁ ଦେଖିଦେଇଚି ! ମତେ ରାସ୍ତାରୁ ଡାକିନେଇ ପଚାରିଲା – "ଆବେ ଗୁପାଲ୍ ! ରାଜାସାହେବ ଆୟି ଗଇନ୍ ରେ । ତୁନେ ଦେଖା ନହୀଁ କ୍ୟା ?"

– "ମୁଁ ତାକୁ ସବୁ କଥା କହିଲି । ସେ ଜମା ମାନିଲା ନାଇଁ, କହିଲା, ଆରେ ତୁ କୁଛ ନହୀ ଜାନ୍‌ତା ରେ – ତୁ ଆଜ୍ ଖାନା ଲେକର୍ ଯା । ବଡ ଶ୍ରଦ୍ଧାରେ ସେ ଖାନା ନିଜେ ବନେଇଚି । ସେ ପଇସା ନବନାଇଁ ହଜୁର... ସାର୍ !"

ଖାସା ଅଡୁଆରେ ମୁଁ ପଡିଗଲି । କଣ କରାଯାଏ, ଉପାୟ ନ ଥିଲା ।

– "ଆଚ୍ଛା, ତୁ ମତେ ସେ ବବର୍ଚ୍ଚି ପାଖକୁ କାଲି ନେଇଯିବୁ । ମୁଁ ସେ କଥା ବୁଝିବି – ଏବେ ତୁ ଯା, ଆଉ କିଛି କାମ ନାହିଁ ।"

ଗୋପାଳ ଠିଆରହିଥାଏ ।

– "କ'ଣ ହେଲା ? ଠିଆ ରହିଲୁ କାହିଁକି ? କଣ କହିବାକୁ ଚାହୁଁଚୁ ?"

– "ହଜୁର୍... ସାର୍, ଯଦି ରାଜି ହେବେ ମୁଁ ଏଇ ଦୁଆରମୁହଁରେ ଶୋଇଯିବ । ରାତିରେ ଦରକାର ପଡିଲେ ମତେ ଡାକିଦେବେ ସାର୍ ।"

– "ଆରେ, ମୁଁ ଦୁଇରାତି ଏଠି ଶୋଇସାରିଲିଣି । ଶୋଇଗଲେ ମୁଁ ସକାଳୁ ଉଠେ । ମୋର କିଛି ଦରକାର ହେବନାହିଁ । ତୁ ଯା ।"

ସେ ହାତ ମନ୍ଥି ମତେ ଚାହିଁଲା କେବଳ । ମୋର ରାଜାଡି ମିଜାଜ୍ ହଠାତ୍ ଫେରିଆସିଲା ।

– "ଆଚ୍ଛା ଠିକ୍ ଅଛି, ଗୋପାଲ୍ ! ହଜୁର୍ ତମକୁ ଅନୁମତି ଦଉଛନ୍ତି ଏଇଠି ଶୋଇବାକୁ... ହାଃ ହାଃ ହାଃ ।"

ଗୋପାଳର ମୁହଁ ଲ୍ୟାମ୍ପ ଆଲୁଅରେ ଉଜ୍ଜ୍ୱଳ ଦେଖାଗଲା ।

– "ଏଠି ନାଇଁ ହଜୁର, ମୁଁ ଦୁଆରମୁହଁରେ ବାରଣ୍ଡାରେ ଶୋଇବି । ଶୋଇବି କଣ ସାର୍ ପହରା ଦେବି ।"

– "ଆଚ୍ଛା ! ଆଚ୍ଛା !"

ସେ ପଛେଇଲା ପରି ବାହାରିଗଲା । ମୁଁ ଆମୋଦିତ ବୋଧ କରୁଥିଲି । ମୋ ହାତରୁ ଗୁଆଘିଅ ଆଉ ମାଂସ ତର୍କାରି ବାସ୍ନା ବାହାରୁଥିଲା । ଖୁସିରେ ଖୁସିରେ ମୁଁ କିଛି ସମୟ ସେଇଠି ଟହଲିଲି । ଘଣ୍ଟା ଦେଖିଲି, ମାତ୍ର ସାଢେ ଆଠ ! ବସିଲି ପଢିବାକୁ । ମନ ହେଲାନାହିଁ । କେମିତି କେଜାଣି ଉଶ୍ୱାସ ଲାଗୁଥିଲା । ପବନରେ ପହଁରିଲା ପରି ଖୁସି ଖୁସି ଲାଗୁଥିଲା ।

ଅଗଷ୍ଟ ମାସରେ ଅଶିଣ ଅଶିଣ ଲାଗୁଥିଲା । ମନେହେଉଥିଲା, ଛାତକୁ ଗଲେ ଜହ୍ନ ଦେହରେ ଘଷିହେଇଯିବ । ପବନ ବାସୁଥିବ ଅଜ୍ଞାତ ଅରଣ୍ୟ ପରି । କିନ୍ତୁ ଛାତ କାହିଁ ସେଠି ?

ଠିକ୍ ଅଛି । ବିଛଣାରେ ବସି ପୁଣି ଲାଇବନିଜ୍ ଖୋଲିଲି । ମନ କିନ୍ତୁ ହୁଗୁଳିଯାଉଥାଏ । ମାଡିଯାଉଥାଏ ଅବାଟରେ । ଆଚ୍ଛା, ସେ ପଠାଣ ବବର୍ଚି ମାଂସରେ ନିଶାଫିଶା ମିଶେଇଥିଲା କି ? କିଛି ସୁସ୍ୱାଦୁ ସୁବାସିତ ମଦିରା ? ମନକୁ ମନ ଅଳ୍ପ ହସିଦେଇ ବହିକୁ ଚାହିଁଲି । ଅଣାୟତ୍ତ ପବନ ପରି ମନ ପହଁରିଗଲା ଅନ୍ୟଆଡେ । ମତେ ଦିଶିଲା ଆମ ଗାଁ ବର୍ଷାଦିନର ସେ କାଦୁଆ ରାସ୍ତା । ଆମ ସାହିର ଛପରଲି ଘର ।

ସାହି ଆଗରେ ଚକ୍ଷ୍ଣୀଘର ଖେତ । ଆମ ପଡିଶା ଘର ଗୁକୁଣା ଭାଉଜ । ଗୋରା ଟକ୍‌ଟକ୍ ଧାର ମୁହଁ, ନୁଆଣିଆ ଆଖି । ମୋ ବୋଉକୁ ଖୁଡୀ ଡାକୁଥିଲା ।

– "ଖୁଡି, ତମେ ଦେଖିବ ତମର ଏ ପୁଅଟା ଦିନେ ରଜା ହବ ।"

– "ହଅଅ ! ଏମିତି ତା' ଭାଗ୍ୟ ନେଇ ଦୁଃଖେ ସୁଖେ ଚଳୁ । ଠାକୁର ଖାଲି ଆୟୁଷ

ଦେଇଥାନ୍ତୁ।"

ବୋଉ କିଛି ଦେଖିଲା ନାହିଁ କି ଗୁଳୁଣା ଭାଉଜ ଦେଖିଲା ନାହିଁ। ମୁଁ ବି ରଜା ହେଲି ନାହିଁ।

ପୁଣି ସେଇ ପରଠା ମାଉଁସ ତର୍କାରି ବାସିଲା। ଗୋପାଳ ପୁଣି ଥରେ ଡବା ଫିଟେଇଦେଲାପରି ଲାଗିଲା। ମୁଁ ପୁଣି ନିସ୍ତବ୍ଧ ଗଳିପଡିଲି ପିଲାଦିନକୁ। ମୋ ପିଉସୀ ନାନୀ ମୋ ପିଠିରେ ହାତମାରି କହୁଚି, "ଖୁଦ ଖାଇଥା ମୋ ଧନ, ସର ଖାଇ ଖିର ଆଞ୍ଚେଇବୁ। ମୁଣା ମୁଣା ଟଙ୍କା ଅର୍ଜିବୁ। ରଜାନଅର ଭୋଗ କରିବୁ।" ମୁଁ ପିଢାରେ ବସି ଘଇଁପଖାଳ ଭାତ, କଖାରୁ ଶାଗ ଖାଉଥାଏ ତରତର। ସ୍କୁଲବେଳ ହେଇଯାଉଥାଏ।

ପିଉସୀ ରହିଲା ନାହିଁ ଦେଖିବାକୁ। ମୁଁ ବି ସର ଖାଇଲି ନାହିଁ କି ଖିର ଆଞ୍ଚେଇଲି ନାହିଁ। କିନ୍ତୁ ହଉ ପଛେ ଦିନକ ପାଇଁ, ମତେ ରଜା ନଅର ଭୋଗହେବାର ଥିଲା, ହୋଇଗଲା!

ମତେ ହସମାଡିଲା। ମୁଁ ଉଠିଆସିଲି ଗହୀର ପାଣି ଭିତରୁ ଉପରର ଢେଉ-ଢେଉକା ଉଜ୍ଜ୍ୱଳ ବାସ୍ତବତାକୁ। ଘଣ୍ଟା ଦେଖିଲି – ସାଢେ ନ'ଟା।

ଘ୍ୟା ଭିତରେ ଘଣ୍ଟାଏ ପାରିହୋଇଯାଇଥିଲା। ମୁଁ ବହିଟାକୁ ବନ୍ଦକରି ବିଛଣାରେ ଚିତ୍‌କାତ ମେଲି ଉପରକୁ ଚାହିଁ ପଡିଗଲି। ଲ୍ୟାମ୍ପ୍ ଆଲୁଅରେ ଛାତର କାରୁକାର୍ଯ୍ୟ ଦିଶିଲା। କାନ୍ଥର କାମ ଦିଶିଲା।

ଆଖି ପଡି ପଡି ଆସୁଥିଲା। ପୁଣି ଦେଖାଗଲା ଆମ ପୁରୁଣା ଦାଣ୍ଡଘର। ରଙ୍ଗମାଟି ଲିପା ଝାଡି କାନ୍ଥ। ସେଇ କାନ୍ଥରେ ବଳିତା ଖଡିରେ ଚିତ୍ର କରିଥିଲି – ରାଜା ରାମଚନ୍ଦ୍ର – ମୁକୁଟ ପିନ୍ଧିଛନ୍ତି, ଧନୁ ଧରିଛନ୍ତି – ହରି ଭାଇନା ଦେଖି ଖୁସି ହେଉଛନ୍ତି।

– "ଆରେ, ତାଙ୍କୁ ସିଂହାସନରେ ବସେଇଲୁ ନାଇଁ? ତାଙ୍କ ବାଁ ପଟେ ସୀତା ବସିଥାନ୍ତେ, ପଛରେ ଲକ୍ଷ୍ମଣ ଠିଆହୋଇଥାନ୍ତେ।"

ମୁଁ ମଝିରେ ବାଧା ଦେଇ କହିଥିଲି, "ସିଂହାସନ କଣ ମୁଁ ଦେଖିଛି?" ସେ ହେଁ ହେଁ ହସିଥିଲେ, କେଜାଣି କାହିଁକି? ମୋ ଆଖି ବୁଜି ହୋଇ ଯାଇଥିଲା। ମୁଁ ବୋଧହୁଏ ଶୋଇଯାଉଥିଲି। କିଛି ସମୟ ଶୋଇଗଲି ନା କ'ଣ!

ହଠାତ୍ ମଟମଟ ଚାହିଁଦେଲି। ଜାଲୁଜାଲୁଆ ଦେଖାଗଲା। ଲ୍ୟାମ୍ପ୍ ଆଲୁଅ ଦବିଯାଇଥିଲା। ବୋଧେ ଗୋପାଳ ଆସି ଦବାଇଦେଇଥିଲା। ମୁଁ ବାରିପାରିଲି ସେ ମହକ। ଗମ୍‌ଗମ୍ ବାସୁଥିଲା ମୋ ଚାରିପାଖ।

ମୋ ଦେହସାରା ଶୀତକଣ୍ଟା ମାରିଗଲା। ନିଦର ଚଢେଇ ଉଡିଗଲେ କାହିଁ କୁଆଡେ। ମୁଁ କିନ୍ତୁ ସେସବୁକୁ ମିଞ୍ଜେଇଲି। ଶୀତକଣ୍ଟାକୁ ଦିହରୁ ପୋଛିଦେଲି। ବାସ୍ନାକୁ ସ୍ୱାଭାବିକ ନିଶ୍ୱାସରେ ନେଲି ଓ ଛାଡିଲି।

ସେମିତି ଚିତ୍‌ମୋଟ୍ ଶୋଇରହି ଆଖି ବୁଲେଇଲି ଚାରିଆଡେ। ଦୁଆରମୁହଁଟା ଅନ୍ଧାର ଦିଶୁଥିଲା। ସେଇଠି ଛାଇଟାଏ ସ୍ପଷ୍ଟ ଦେଖାଗଲା। ମୋ ତଣ୍ଟି ପାଖରେ ପବନ ରହିଗଲା। ମୁଁ ଡାକିଦେଲି,

"ଗୋପାଳ !"

– "ହଁ ସାର୍," ଛାଇ ଉତ୍ତର ଦେଲା ।

ଗୋପାଳହିଁ ଠିଆହୋଇଥିଲା ଦୁଆରବନ୍ଧ ପାଖରେ । ମୁଁ ଦମ୍ଭରେ କହିଲି, "ପୁଣି ସେଇ ବାସ୍ନା ବାରିପାରୁଛୁ ?"

– "ହଁ ହଜୁର ! ସେଇଟା କିଛି ନାଇଁ, ଆପଣ ଶୁଇ ଯାଉନ୍ ।"

ମୁଁ ଗୋପାଳ କଥାରେ ଆଶ୍ୱସ୍ତ ବୋଧକଲି ।

ବାସ୍ନାକୁ ସହଜ ସ୍ୱାଭାବିକ ଢଙ୍ଗରେ ସ୍ୱୀକାର କରିନେଲି । ମହମହ ମହକୁଥିବା ଦୋଳି ଉପରେ ଆଖି ବୁଜିଦେଲି । ଆଶ୍ଚର୍ଯ୍ୟ କଥା, ନିଦ ବି ହେଇଗଲା ।

ଖୁବ୍ ଆଦରରେ ଖୁବ୍ ଆସ୍ତେ ଗହନ ନିଦ ଭିତରୁ କିଏ ଯେମିତି ମତେ ପୁଣି ଟୋଳିଆଣିଲା । ମୁଁ ଆଖି ନ ଫିଟେଇ ଅନୁଭବ କଲି ମୋର ପରିବେଶକୁ । ଏଥର ଅତ୍ୟନ୍ତ ପାତଳା ମୁଲାୟମ ବାସ୍ନାଟିଏ ମୁଁ ବାରିପାରିଲି । ବେଶ୍ ନାରୀ ନାରୀ ଗନ୍ଧ ।

ଭୃଙ୍ଗରାଜ ବା କାନ୍ଥାରଡିନ୍ ଭଳି ଆଦୌ ନୁହଁ । କିନ୍ତୁ ରେଶମ ପରି କୋମଳ, ମେଘ ପରି ହାଲୁକା କୌଣସି କବରୀର ଗନ୍ଧ । ନାରୀ ପ୍ରସାଧନର ଭୁରୁଭୁରୁ ଗନ୍ଧ, ନାରୀ ଦେହ ଓ ସ୍ୱେଦର ଅପୂର୍ବ ମହକ ।

ମୁଁ ଆଖିବୁଜି ପଡିଥାଏ । ପତା କମ୍ପୁଥାଏ । ଭିତରେ ଡୋଳା ବୁଲୁଥାଏ । ନିଶ୍ୱାସ ଦବିଯାଇଥାଏ, ହାତଗୋଡ କେମିତି ଟାଣିଯାଉଥାଏ – କିନ୍ତୁ ମୁଁ ଆଖି ଖୋଲୁ ନ ଥାଏ ।

ମନେହେଲା ମୋର ଗୋଟାଏ ପାଖ ସାମାନ୍ୟ ଉଷୁମ ଲାଗୁଛି । ପୁଷ୍ପଭାର ଦେହବଲ୍ଲୀଟିଏ ଶୋଇରହିଛି କି ଖୁବ୍ ସଂଯତ, ଖୁବ୍ ସନ୍ନିକଟ ? ମୋ ଦେହସାରା ପୁଣି ଶୀତେଇଗଲା । ଆଉ ଗୋଟିଏ କୋମଳ ହୃତ୍‌ପିଣ୍ଡ ସ୍ପନ୍ଦିତ ହେଉଥିଲା କି ମୋ ପାଖରେ ? ମୋର ପତ୍ନୀ, ରାଜକନ୍ୟା ପରି ରୂପବତୀ, ଆଚରଣରେ ସେହିପରି ଲଜ୍ଜାଶୀଳା, ମାନନୀୟା । କିନ୍ତୁ ସେ ତ ଏ ନୁହେଁ ! ଏ ବାସ୍ନା ବି ସେ ବାସ୍ନା ନୁହେଁ ?

ମୋର କଲିଜା ଦମ୍‌ଦମ୍ ହଉଥାଏ । ମୁହଁ ତାତିଯାଉଥାଏ । ମୁଁ ହାରିବି ନାହିଁ – ଯାହା ହେଲେ ହଉ ପଛେ । ମୁଁ ଫଟ୍‌କିନା ଉଠିପଡିଲି ।

ପେଜୁଆ ପେଜୁଆ ଆଖିରେ କେତେ କଣ ଦିଶି ନ ଦିଶିଲା ପରି ମିଳେଇଗଲା ଅନ୍ଧାର ଭିତରକୁ । ତଥାପି ସେ ତରୁଣୀ ବାସ୍ନା ରହିଥାଏ ପବନରେ । ମୁଁ ମୋ ବିଛଣାର ଖାଲିପାଖରେ ମୁହଁ ରଖିଲି । କାକର ଲାଗିଲା ପରି ମୁଲାୟମ ଲାଗିଲା – କିନ୍ତୁ ବାସୁ ନ ଥିଲା ।

ଆଉ କି ନିଦ ହୁଏ ? ଘଣ୍ଟା ଦେଖିଲି, ରାତି ଅଢେଇଟା । ମୋର ଇଚ୍ଛା ହେଲା ଦୁଆରମୁହଁକୁ ଯାଇ ଗୋପାଳକୁ ଦେଖିବି ସେ କେମିତି ଶୋଇଚି । କିନ୍ତୁ ଚପଲ ପିନ୍ଧୁ ପିନ୍ଧୁ ବାଥ୍‌ରୁମ୍‌କୁ ହିଁ ଗଲି । ସେଇଠି ସେଇ ବାସ୍ନା । ସେଇଠି ବି ଅନ୍ଧାର । ମୁଁ ଖୁବ୍ ଦୁର୍ବଳ ଅନୁଭବ କଲି । ପାଟି କରିଦେବାକୁ ଇଚ୍ଛା ହେଲା ।

କିନ୍ତୁ ପେନ୍ଥା ପେନ୍ଥା ଗଭାଫୁଲ, ବାସ୍ନାର ଜାତି ଜାତି ଆଲଟ ରମର ମତେ ବିଷ୍ଟ ଶୀତଳ କରିଦେଲେ । ମୋର ପାଦଠଉଁ ମୁଣ୍ଡଯାଏ ରୁମ ଟାଙ୍କୁରି ରହିଥାଏ । ଅଦୃଶ୍ୟ ମୁକ୍ତ ଚିକୁରଦାମ ମୋତେ ଛୁଇଁଯାଉଥାଏ ସେତବା ! ମୁଁ ସେଇ ବାଥ୍‌ରୁମ୍ କାନ୍ଥକୁ ଆଉଜି ଆଖି ବୁଜି ଠିଆ ରହିଲି ।

ନିଃଶ୍ୱାସର ଛନ୍ଦ ଫେରିଲା ଅନେକ ସମୟ ପରେ । ଆଉ ବାସ୍ନା ନ ଥିଲା । ରୋମାଞ୍ଚ ନ ଥିଲା । ଆବେଗ କାଟିବାକୁ ମୁହଁକୁ ପାଣି ମାରି ଚେଙ୍ଗାହେଇଗଲି । କିନ୍ତୁ ଖୁବ୍ କ୍ଳାନ୍ତ ଲାଗୁଥାଏ । ସତେବା ମୋର ରକ୍ତ ନିଗିଡିଯାଇଥାଏ ଦେହରୁ ।

ଟଳିଲା ପରି ଆସି ବିଛଣା ଉପରେ ବସିଲି । ବସି ବସି ଘୁମେଇଲି ସିନା, ଆଉ ଶୋଇଲି ନାହିଁ । କେତେବେଳକୁ ମୁଣ୍ଡ ଝାଙ୍କିଦେବାରୁ ଆଖି ଫିଟାଇ ଚାହିଁଲି । ଫର୍ଚ୍ଚା ହେଇ ଯାଇଥିଲା । ପୁରୁଣା ପରିଚିତ ପାହାନ୍ତା ପବନ ପଶିଆସୁଥିଲା – ନିର୍ମଳ, ପାତଳ, ନିର୍ଗନ୍ଧ । ବାଃ-ମୋର ବୁଲିଯିବା ବେଳ । ଘଣ୍ଟାରେ ପାଞ୍ଚଟା ।

ବାଥ୍‌ରୁମ୍‌ରୁ ଆସି କେଡ୍ସ ପିନ୍ଧି ବାହାରିପଡିଲି । ପିଣ୍ଡାରେ ଗୋପାଳ ନଥିଲା । ଚାଲିଯାଇଥିଲା । କିନ୍ତୁ ନ କହି କେମିତି ଚାଲିଗଲା ?

ବେଶ୍ ଓସାରିଆ ନିର୍ଜନ ରାସ୍ତା – ତା' ପୂର୍ବଦିନ କିଛି ବାଟ ଧାଇଁଥିଲି । କିନ୍ତୁ ସେଦିନ ଅଳସ ଛାଡୁ ନ ଥାଏ ଦେହରୁ – କିନ୍ତୁ ବଢିଆ ଲାଗୁଥାଏ ।

ଫେରିଲାବେଳକୁ ଆଲୁଅ ହେଇଯାଇଥାଏ । ରାଜବାଟି ଫାଟକ ପାଖରେ ଜଣେ ଜୁହାର ହେଲା ।

– "ତମେ କିଏ ?"

– "ମୁଁ ସାର୍ ରାଜବାଟିର ଜଗୁଆଳି ।"

ମୋ ଦେହରୁ ନିଆଁ ହୁଳାଟିଏ ଖସିଗଲା । ବାଙ୍ଗରା ଛୋଟକାଟର ମଣିଷ । ସଂପୂର୍ଣ୍ଣ ଅପରିଚିତ ।

– "ଗୋପାଳ କାହିଁ ?"

– "ଗୋପାଳ ? ଗୋପାଳ ସାର୍ କିସ ? ଏଠି ଗୋପାଳ ତ କେହି ନାହାନ୍ତି ସାର୍ ।"

– "ଅର୍ଥାତ୍..."

ମୋ ମେରୁଦଣ୍ଡ କମ୍ପିଲା ଠକ୍‌ଠକ୍ ହୋଇ । ମୁଁ ବୋଧହୁଏ ପଡିଯାଇଥାନ୍ତି । ସେ ଲୋକଟା ବିଡିବିଡି ହେଉଥାଏ । ଆପଣ ସାର୍ ପାହାନ୍ତାରୁ ଜୋତା ପିନ୍ଧି ବୁଲି ବାହାରିଲେ । ମତେ ନାଗିଲା ରାଜା ସାହେବ ବାହାରିଛନ୍ ।

ମୁଁ ଚିତ୍କାର କରିଥାନ୍ତି – "ଗେଟ୍ ।"

ମୋ ତଣ୍ଟି ଶୁଖିଯାଇଥାଏ । ଏତିକିବେଳେ ସେ ସନ୍ଧାଘରୁ ଜଣେ ବାହାରି ଆସି ପୁଣି ପଶିଯାଉଥିଲା ।

ମୁଁ ଉତ୍ତେଜିତ ହେଇ ସେଇଆଡେ ହାତ ଟେକି କହିଲି, "ସେଟା କିଏ ? ଡାକ ତାକୁ !"

ସେ ତରି ତରି ଆସି ଠିଆହେଲା । ତାକୁ ଚିହ୍ନିବାରେ ମୋର ଆଦୌ ଭୁଲ ହେବା ସମ୍ଭାବନା ନଥିଲା ।

"ଆଚ୍ଛା ଗୋପାଲ୍ !"

ମୁଁ ବା ସେ କିଛି କହିବା ଆଗରୁ ଆଗ ଲୋକଟା ପାଟି କରି କହିଲା – "ଏଟା ଗୋପାଲ୍ ନୁହେଁ ସାର୍ ! ଏଟାର ନାମ ନକୁଳ୍ ।"

ମୁଁ ତା' କାନ୍ଧକୁ ଜୋର୍‌ରେ ଧରି ଝାଙ୍କିଦେଲି । ଅନର୍ଗଳ କହିଚାଲିଲି, "ତୁ ଯଦି ଗୋପାଲ ନୁହେଁ, ସେ କଥା କହିଲୁ ନାଇଁ କାହିଁକି ? ତୁ କାହିଁକି ମିଛ କହିଲୁ ? ତୁ କାଲି ରାତିରେ ମୁଁ ଶୋଇବା ଘର ସାମ୍ନାରେ ଥିଲୁ ନା ନାହିଁ ? ତୁ ପଠାଣ ବବର୍ଚି ପାଖରୁ ପରଠା ମାଂସ ତର୍କାରି ଆଣିଦେଇଥିଲୁ ନା ନାହିଁ ? କାଲି ରାତିରେ ଯାହା ସବୁ ହେଲା ତୁ ଜାଣିଚୁ ନା ନାହିଁ ?"

ସେ ବାଙ୍ଗୁରା ଲୋକଟା ହସିଲା, "ତୁଛାଟାରେ ରାଗୁଚନ୍ ସାର୍ ! ଏଟା ନକୁଳ । ଗୋପାଳ ତ' ସାର୍ ରାଜା ସାହେବ ପାଖରେ ଥିଲା, କୋଉ କାଳୁ ମଲାଣି ସାର୍ ! ନକୁଳ କିସ କହିବ ସାର୍ !"

ମୋ ହାତ ଖସିପଡିଲା ତା' କାନ୍ଧ ଉପରୁ । ସେ ତବତବ ଆଖିରେ ମତେ ଚାହିଁରହିଥିଲା । ମୁଁ ପ୍ରଥମ ଥର ପାଇଁ ପରାସ୍ତ ବୋଧ କରୁଥିଲି । ବିହ୍ୱଳ ହତବାକ୍ ଠିଆହୋଇ ଚାହିଁଥିଲି ଗୋପାଳ ଓରଫ ନକୁଳକୁ । ସକାଳ ସୂର୍ଯ୍ୟାଲୋକରେ ବି ମତେ କିଛି ସ୍ପଷ୍ଟ ଦେଖାଯାଉନଥିଲା ।



# ଆତ୍ମୀୟ

ଅପରିଚିତ ଅରଣ୍ୟରେ ଏକୁଟିଆ ବାଟ କାଟି ଗଲାବେଳେ କୌଣସି ଅଜ୍ଞାତ ଡାଳରୁ ଫୁଲଟିଏ ଖସିପଡେ ମଥା ଉପରେ । ବୁଲି ଚାହିଁଲା ବେଳକୁ ନୂଆ ଫୁଲ ଧରିଥିବା ତରୁଣ ଗଛଟିଏ କଞ୍ଚା ଛନଛନ ଡାଳ ଉପରଦେଇ ଆପଣାପଣ ବାଣ୍ଟୁଥାଏ ।

ଆଜିକୁ କୋଡିଏ ବର୍ଷ ତଳେ ପ୍ରିୟଦର୍ଶୀ ଛୋଟରାଏଙ୍କୁ ଦେଖି ମୋର ସେହିପରି ଧାରଣା ହୋଇଥିଲା । ତରୁଣ ଡାକ୍ତର । ନୂଆ ଚାକିରି । ଆଖିଯୋଡିକ ସ୍ଫଟିକ ପରି ସ୍ୱଚ୍ଛ । ମୁହଁଟି ହସହସ ।

"ସାର୍, ମୁଁ ଶୁଣିଲି ଆପଣ ସାମାନ୍ୟ କଣ ଅସୁସ୍ଥ ଅଛନ୍ତି । ଏମିତି କାମରେ ଜଏନ୍ କଲା ପରେ ତ' ଆସି ଆପଣଙ୍କୁ ଦେଖା କରି ପାରିନଥିଲି । ଭାବିଲି, କାଳେ ଏବେ ଆସିଲେ ଆପଣଙ୍କୁ ସେବା କରିବାର ସୁଯୋଗ ମିଳିପାରେ ।"

ମୁଁ ତାଙ୍କୁ ଗୋଡଠାରୁ ମୁଣ୍ଡଯାଏ ଚାହିଁବାର ଦେଖି ସେ ସାମାନ୍ୟ ଅପ୍ରତିଭ ହୋଇଯାଇଥିଲେ । ମୋ ଭଳି ଗମ୍ଭୀର ସ୍ୱଭାବର ଲୋକ ପ୍ରଥମ ସାକ୍ଷାତରେ ଏମିତି ଚାହିଁଲେ ଯେ କେହି ଅସୁସ୍ଥ ବୋଧକରିବ ।

ମୁଁ କିନ୍ତୁ ସେ ବ୍ୟକ୍ତିଟିକୁ ପ୍ରଥମ ଦେଖାରେହିଁ ଭଲପାଇଯାଇଥିଲି । ସେଥିପାଇଁ କିଛି ନ କହି, ତାଙ୍କ କଥା ଶୁଣି ଥରେ ପାଦରୁ ମୁଣ୍ଡଯାଏ ଚାହିଁନେଇଥିଲି ।

ତା'ପରେ ସ୍ୱତଃ ମୋ ମୁହଁରେ ହସ ଖେଳିଗଲା ଏବଂ ମୁଁ ତାଙ୍କୁ ସ୍ୱାଗତ ଜଣାଇଲି – "ବସନ୍ତୁ ପ୍ରିୟଦର୍ଶୀ ବାବୁ! ଆପଣ ଆସି ଏଠି ଜଏନ୍ କରିବା ଖବର ମୁଁ ପାଇଛି । ଏଇଟା ତ' ଗୋଟାଏ ପଛୁଆ ଅଞ୍ଚଳ । ଏଇଠି ଭଲ ଡାକ୍ତରଟିଏ କିମ୍ବା ଅଫିସରଟିଏ କେବେ ଆସିବେ ବୋଲି ଆମେ ଅପେକ୍ଷା କରି ବସିଥାଉ । ଯେ ବି ଏଠିକି ଆସନ୍ତି, ଜଏନ୍ କଲା ମାତ୍ରେ ଲମ୍ବା ଛୁଟି ନେଇ ଚାଲିଯାନ୍ତି । ତାଙ୍କ ବଦଳି ଆଦେଶ ରଦ୍ଦ ହୋଇଯାଏ । ଆମେ ତାଙ୍କୁ ଥରେ ଭଲରୂପେ ଦେଖିବା ଆଗରୁହିଁ ସେ ଚାଲିଯାଇଥାନ୍ତି ।"

ସେ କେବଳ ସେମିତି ହସହସ ମୁହଁରେ କିଛି ନ କହି ମୋ କଥା ଶୁଣୁଥାନ୍ତି ।

– "ଆପଣ ଆସିଲେ ଆଉ ଏତେ ଦିନ ରହିଗଲେ ଶୁଣି ଖୁସି ଲାଗୁଛି । ପାଞ୍ଚ ଦିନ ଯେହେତୁ ରହିଲେଣି, ଅନ୍ତତଃ ପାଞ୍ଚ ମାସ ରହିଯିବେ ବୋଲି ଆଶା ହେଉଛି ।"

ସେ ହସିଲେ । ତାଙ୍କ ସଫା ଦାନ୍ତଗୁଡିକ ଗଢିଲା ପରି ଭାରି ସୁନ୍ଦର – "ଆପଣ ସେମିତି କାହିଁ ଭାବୁଛନ୍ତି ? ମୁଁ ତ ସ୍ଥିର କରି ଆସିଛି ଏଠି ରହିବି । ଏଇଠୁ ମୋର ଡାକ୍ତର ଜୀବନ ଆରମ୍ଭ କରିବି । ଆପଣମାନଙ୍କ ଭଳି ଜଣାଶୁଣା ଲୋକଙ୍କ ସହଯୋଗ ମିଳିଲେ ଏଇଠି ଢେର୍ କିଛି କାମ ହେବ ବୋଲି ମୋର ବିଶ୍ୱାସ ହେଉଛି ।"

ମୁଁ ଶୁଣିସାରିଥାଏ ଯେ, ସେ ଦାୟିତ୍ୱ ନେବା ପରେ ସଙ୍ଗେ ସଙ୍ଗେ ଡାକ୍ତରଖାନା ହତା ଭିତରୁ ଅନାବନା ଗଛ କାଟି ସଫେଇ କାମ ଆରମ୍ଭ କରିଦେଇଥିଲେ । ଭିତର ବାହାର ସଫା କରିବା ପାଇଁ ତାଙ୍କୁ ତିନି ଚାରି ଦିନ ଲାଗିଯାଇଥିଲା ।

କଥା କାନରୁ କାନକୁ ପ୍ରଚାର ହୋଇଯାଇଥିଲା । ଲୋକେ ନୂଆ ଟୋକା ଡାକ୍ତରଙ୍କୁ ପ୍ରଶଂସା କରିବା ଆରମ୍ଭ କରିଦେଇଥିଲେ ।

– "ଆପଣଙ୍କ ଦେହ କଣ ଅସୁସ୍ଥ ହୋଇଚି କି ସାର୍ ?"

– "ନାଇଁ ତ ! ମୁଁ ପ୍ରାୟ ଭଲ ଅଛି । ମଝିରେ ମଝିରେ ଏମିତି ରକ୍ତଚାପ ଟିକିଏ ବଢିଯାଏ ।"

– "ରକ୍ତଚାପ ବଢିଯାଏ ନା ସବୁବେଳେ ଟିକିଏ ଅଧିକ ରହୁଛି ? ଚେକ୍ କରିଥିଲେ କି ?"

– "ସେମିତି ନିୟମିତ ଭାବରେ ଚେକ୍ କରିନାହିଁ । ତେବେ ସୁସ୍ଥ ଥିଲାବେଳେ ପ୍ରାୟ ରକ୍ତଚାପ ଅଧିକ ଥିବାର ଦେଖି ଡାକ୍ତରମାନେ ମୋତେ କହିଛନ୍ତି ।"

ସେ ତାଙ୍କ ଡାକ୍ତରୀ ବେଗ୍‌ର ଜିପର ଟାଣି ଦେଇ କହିଲେ, "ଟିକିଏ ସାର୍ ଦେଖି ଦେବା ।"

ମୁଁ ତାଙ୍କୁ ଡକେଇ ନ ଥିଲି, ସେ ତାଙ୍କ ମନକୁ ଆସିଥିଲେ । ମୋର ରକ୍ତଚାପ ପରୀକ୍ଷା କରିବାର ପ୍ରୟୋଜନ ଥିଲା କି ନ ଥିଲା କେଜାଣି, କିନ୍ତୁ ସେ ବିନା ଦ୍ୱିଧାରେ ଦେଖିବା ପାଇଁ ଚାହିଁଲେ । ଏଥିରେ ପେଶାଦାରି ଚଲାକି କିଛି ନ ଥିଲା, ବରଂ ଥିଲା ଅତି ସ୍ୱଚ୍ଛ ଏବଂ ସ୍ୱାଭାବିକ ଆପଣାପଣ । ଜଣାଯାଉଥିଲା ଯେମିତି ସେ କହୁଛନ୍ତି, "ଦେଖନ୍ତୁ, ମୁଁ ଆପଣଙ୍କ ଗାଁକୁ ଆସିଗଲି । ଏଣିକି ମୁଁ ଆପଣଙ୍କ ଭିତରେ ଜଣେ । ସମସ୍ତଙ୍କ ସ୍ୱାସ୍ଥ୍ୟ କଥା ବୁଝିବା ମୋର ଦାୟିତ୍ୱ ।" କଥାରୁ କିନ୍ତୁ ଜଣାଯାଉଥିଲା ଯେମିତି ସେ ତାଙ୍କ ଅଧିକାରହିଁ ସାବ୍ୟସ୍ତ କରୁଥିଲେ । ଏକପ୍ରକାର ଆଦେଶ ଦେଉଥିଲେ ।

ମୁଁ ସାମାନ୍ୟ ହସିଲି । ମୋ ବଡପୁଅ ବୟସର ଏ ଟୋକା ଡାକ୍ତରଟି ପ୍ରତି ମୋର ଏକପ୍ରକାର ମମତା ଆସିଯାଇଥିଲା । ତାଙ୍କ ଚେହେରା, ତାଙ୍କ କଥା, ତାଙ୍କ ଆଚରଣରେ ସରଳତା ପ୍ରକାଶ ପାଉଥିଲା । ମୁଁ ତାଙ୍କ ରକ୍ତଚାପ ଦେଖିବାକୁ ନିରବରେ ହଁ କରିଦେଲି । ସେ ବେଶ୍ ପୋଖତ ପେଶାଦାର ଢଙ୍ଗରେ ରକ୍ତଚାପ ଦେଖିଲେ । ନିର୍ଭୁଲ ହେବାପାଇଁ ଦୁଇ ତିନିଥର ଦେଖିଲେ । କାନରୁ ଷ୍ଟେଥୋସ୍କୋପ୍ କାଢି ଟିକିଏ ଗମ୍ଭୀର ହେଲାପରି କହିଲେ – "ଟିକିଏ ରହୁଚି ସାର୍ ! ଶହେ ଷାଠିଏରେ ଶହେ । ବିଶେଷ ବ୍ୟସ୍ତ ନ କଲା ଭଳି ରକ୍ତଚାପ । କିନ୍ତୁ ତାକୁ ସମ୍ପୂର୍ଣ୍ଣ ନେଗ୍‌ଲେକ୍ଟ କଲାଭଳି ମଧ ନୁହେଁ । ଆପଣ ଯା ପାଇଁ କଣ ଔଷଧ ଖାଉଛନ୍ତି ?"

– "ନା' କିଛି ଖାଇନାହିଁ ।"

– "ମୁଁ ଭାବୁଛି ୟାକୁ ଆଉ ବଢ଼ିବାକୁ ନେ ଦେଇ ଔଷଧ ଖାଇନେବା ଭଲ ହେବ। ମୁଁ ଔଷଧ ଲେଖିଦେଉଛି। ସବୁଠାରୁ କମ୍ ପୋଟେନ୍ସି କାପ୍‌ସୁଲ୍ କିଛି ଦିନ ଖାଇ ଦେଖନ୍ତୁ। ତା'ପରେ ପୁଣି ପରୀକ୍ଷା କରି ଯାହା ହେଲେ କରିବା।"

ସବୁ କଥା ସେ ମନକୁ ମନ କହୁଥାନ୍ତି। କାମ ବି ମନକୁ ମନ କରୁଥାନ୍ତି। ତାଙ୍କ ମୁଣା ଭିତରୁ ଗୋଟିଏ ପ୍ୟାଡ୍ କାଢ଼ି ସେ ସେଥିରେ ମୋପାଇଁ ଔଷଧ ଲେଖିଦେଲେ।

ପ୍ରଥମ ସାକ୍ଷାତରେ ଅଜଣା ଲୋକଟିଏ ଏତେ ପାଖେଇ ଆସିବା ଟିକିଏ ଅଡୁଆ ଲାଗୁଥିଲା ସତ, କିନ୍ତୁ ବେଶ୍ ଭଲ ବି ଲାଗୁଥିଲା। ମୋ ପାଖକୁ ଆସିବା ଆଗରୁ, ହତା ସଫେଇ କରିବା ଭିତରେ, ବେନୁଆଁ ସ୍ୱୀକୁ ଝାଡା ବାନ୍ତିରେ ଦି ମୁହଁ ଫିଟିଯାଇଥିଲା। ଡାକ୍ତରଖାନାରେ ଔଷଧର ନାଁ ନାହିଁ। କମ୍ପାଉଣ୍ଡରଟି ହିଁ ଡାକ୍ତରୀ କରିବାକୁ ଘରେ ସେ ଔଷଧପତ୍ର ରଖିଥିଲା।

ବେନୁଆଁ ଧାଇଁଆସି କମ୍ପାଉଣ୍ଡରର ଗୋଡ ଧରି ଡାକ ଛାଡିଲା, "ମୋର୍ ମାଇକିନାକେ ବଚେଇ ଦିଅ ମହାପ୍ରୁ। ନା'ହେଲେ ମରିଯିବା।"

କମ୍ପାଉଣ୍ଡର କଣ ଭାବିଲା କେଜାଣି, ଡାକ୍ତର ଛୋଟରାଏଙ୍କୁ ଦେଖେଇ କହିଲା, "ଏଇ ବଡ ଡାକ୍ତର ସାହେବ ଆଇଛନ୍। ଇ'ତାକୁ ଡାକି ନେ।"

– "ନାଇଁ ମହାପ୍ରୁ! ତୁମେ ନାଇଁଗଲେ ସେ ମରିଯିବା!"

ଡାକ୍ତର ନିଜେ କହିଲେ, "ଠିକ୍ ଅଛି। ମୁଁ ତାକୁ ନେଇ ତୁମ ଘରକୁ ଆସିବି। ତୁମେ ଚାଲ।"

– "ହୋତା ବାବୁ (କମ୍ପାଉଣ୍ଡରଙ୍କ ନାଁ ଶରତ୍ ହୋତା) ବାହାରନ୍ତୁ। ଏ ରୋଗୀଟିକୁ ଦେଖି ଆସିବା।"

– "ଦେଖି ଆସିଲେ କଣ ହବ ସାର୍। ଏଠି ତ' ଗୋଟିଏ ହେଲେ ଔଷଧ ବଟିକା ନାହିଁ। ସେ ଯାହା କହୁଛି, ରୋଗୀ ପାଇଁ ସାଲାଇନ୍ ଦର୍କାର ପଡିପାରେ। ଏଥିରେ କଣ କରିହେବ? ମୁଁ ଜାଣେ ସାର୍, ସେ ଆଉ ବଞ୍ଚିବ ନାହିଁ। ଏମିତି ସବୁ ଏଠି ମରନ୍ତି। ମୁଁ ସାର୍ ଦୋଷ ମୁଣ୍ଡେଇବାକୁ ଯିବି ନାହିଁ। ଆପଣ ମନକଲେ ଯାଆନ୍ତୁ।"

– "ଚାଲନ୍ତୁ ମୋତେ ଘର ଦେଖାଇଦେବେ। ରୋଗୀକୁ ଦେଖିଲା ପରେ ଯାହା ହେଲେ କରିବା।"

କମ୍ପାଉଣ୍ଡରଟି ଚାହୁଁ ନ ଥିଲା ଯେ ଏ ଟୋକା ଡାକ୍ତର ଆସୁ ଆସୁ ତାଙ୍କ ବ୍ୟବସାୟ ବୁଡିଯାଉ। ସେଥିପାଇଁ ସେ ଏକ ଅଣାୟତ୍ତ ରୋଗୀ କେସ୍‌ଟାକୁ ତାଙ୍କ ମୁଣ୍ଡରେ ଲଦି ଦେବାକୁ ଚାହୁଁଥିଲା।

ବେନୁଆଁ ଘରଟି ଛୋଟ ନଡା-ଛପର ଘର, ହେଲେ ଅସନା-ମସନା ନୁହେଁ। ବେଶ୍ ଲିପାପୋଛା ପରିଷ୍କାର।

ଡାକ୍ତର ଛୋଟରାଏଙ୍କ ମୁଣି ଭିତରେ କିଛି ଅତ୍ୱ ଜରୁରୀ ଔଷଧ ଥିଲା। ସେ ଆଗରୁ ଅନୁମାନ କରି ନେଇଆସିଥିଲେ। ବେଶି କରି ଜଳଜାତ ରୋଗ ପାଇଁ ଔଷଧ ନେଇଆସିଥିଲେ ନିଜର ବ୍ୟବହାର ପାଇଁ।

ରୋଗୀକୁ ଦେଖିଲା ପରେ ଔଷଧ କାଢି ଖାଇବାକୁ ଦେଇ ଦେଲେ । ହୋତା ବାବୁ ସେତେବେଳକୁ ଖସିଆସିଥିଲେ । ରାତି ସାରା ଟର୍ଚ୍ଚ ଲାଇଟ୍‌ରେ ଘଣ୍ଟା ଦେଖି ଔଷଧ ଦିଆଚାଲିଥାଏ । ଡାକ୍ତର ଛୋଟରାଏ ଜଗି ବସିଥାନ୍ତି ଗୋଟିଏ ପେଡି ଉପରେ ।

ବେନୁଆଁ ତା' ସ୍ତ୍ରୀ ବାନ୍ତି କାଢୁଥାଏ । ତଳ ପୋଛୁଥାଏ । ଅଧରାତିକୁ ଔଷଧ କାଟୁ କଲା । ଥମିଗଲା ଅସରନ୍ତି ନିଗିଡା ରୋଗ । ପାହାନ୍ତା ପହରକୁ ରୋଗୀ ଶୋଇଗଲା । ଛୋଟ ଟର୍ଚ୍ଚ ମାରି ଡାକ୍ତର ରୋଗୀର ଅବସ୍ଥା ଦେଖିନେଲେ । ନାଡି ପରୀକ୍ଷା କରିନେଲେ । ବେନୁଆଁକୁ ହାତ ଠାରି ଜଣାଇଦେଲେ ଯେ ଆଉ ଭୟ ନାହିଁ । ସେ ବାହାର ପିଣ୍ଡାକୁ ଆସି ବସିଲେ କାନ୍ଥକୁ ଆଉଜି । ବେନୁଆଁକୁ କହିଲେ ରୋଗୀ ପାଖରେ ଜଗି ବସିବାକୁ । ତାଙ୍କ ଆଖିପତା ପଡିଗଲା । ସେ ଜାଣିପାରିଲେ ନାହିଁ । ହଠାତ୍ ଆଖି ଫିଟିଗଲା । ସେ ଧଡ୍‌ପଡ୍ ହୋଇ ରୋଗୀ ଘରେ ପହଞ୍ଚିଲେ । ଆଗ ରୋଗୀକୁ ଦେଖିନେଲେ । ସେ ବେଶ୍ ଗୋଟିଏ କଡରେ ଶୋଇଥିଲେ ।

ତା'ପରେ ଦେଖିଲେ ଖଟ ପାଖରେ ତଳେ ମୁଦା ହୋଇ ବେନୁଆ ବି ଶୋଇଯାଇଛି – ଛୋଟ ପିଲାଙ୍କ ପରି ।

ତାଙ୍କୁ ହସ ମାଡିଲା ତା'ର ସରଳତାରେ । ସେ ତାକୁ ଉଠେଇଲେ ନାହିଁ । ନିଜେ ଜଗିରହିଲେ ସକାଳ ପାହିଲାଯାଏ ।

ବେନୁଆଁର ନିଦ ଭାଙ୍ଗିଲା । ସେ ଚମକିଲା ପରି ଉଠି ଦେଖିଲା ଡାକ୍ତରବାବୁ କାଗଜରେ ବଟିକା ଗୁଣ୍ଡ କରୁଛନ୍ତି । ତାକୁ ଦେଖି କହିଲେ, "କ'ଣ ବେନୁଆଁ, ନିଦ ଭାଙ୍ଗିଲା ? ତମ ସ୍ତ୍ରୀ ଭଲ ହୋଇଗଲେ । ଏ ପାନକ ଔଷଧ ଦେଇ ମୁଁ ଯିବି । ଆଉ କିଛି ଡରିବାର ନାହିଁ ।"

ଡାକ୍ତର ଘରୁ ଗୋଡ କାଢିବାବେଳକୁ ବେନୁଆଁର ସ୍ତ୍ରୀ କ୍ଷୀଣ ସ୍ୱରରେ କହିଲା, "ଗରିବ ଲୋକ ବାବୁ ! ମତେ ବଂଚେଇଲ । ତମେ ମହାପ୍ରୁ ! ଆମର ମା' ବାପ୍ !"

ସକାଳ ପବନରେ ଗାଁଦାଣ୍ଡରେ ଆସିଲାବେଳେ ଡାକ୍ତର ଛୋଟରାଏ ଲମ୍ବ ପାହୁଣ୍ଡ ପକାଇ ଚାଲିଥିଲେ । ବେଶ୍ ଖୁସି ଜଣାଯାଉଥିଲେ ।

ସେ ଖବର ବ୍ୟାପିଯାଇଥିଲା ଗାଁସାରା । ମୋ ପାଖରେ ବି ପହଞ୍ଚିଥିଲା । ବେନୁଆଁ ନିଜେ କହିଥିଲା । କମ୍ପାଉଣ୍ଡରବାବୁ ନିଜେ ଆସି କହିଥିଲେ । ବେନୁଆଁ ସାହିର ଭଜ ବୁଢା କହୁଥିଲା ସେ ପାହାନ୍ତିଆରେ ଡାକ୍ତରକୁ ଫେରିବାର ଦେଖିଥିଲା । ହୋତା ବାବୁ କିନ୍ତୁ ବିଶେଷ ଖୁସି ହେଲାପରି ଜଣାଯାଉ ନ ଥିଲେ । ତା'ର କାରଣ ଜାଣିବାରେ ଅସୁବିଧା ନ ଥିଲା ।

ମୋର ରକ୍ତଚାପ ଦେଖିବା ପରଠାରୁ ସେ ଆମ ଘରକୁ ପ୍ରାୟ ଘେରାଏ ବୁଲିଯାଉଥିଲେ ସବୁ ଦିନ । ଖୁବ୍ ଆପଣାର ହୋଇଯାଇଥିଲେ । ଅନେକ ଗପସପ ହେଉଥିଲା । ବେଳେବେଳେ ଗମ୍ଭୀର ଆଲୋଚନା ବି ହେଇଯାଉଥିଲା ।

– "ଆପଣ ସାର୍ କାଲି ଯେଉଁ କଥାସବୁ କହିଲେ, ମୁଁ ସେତେବେଳୁ ଭାବିଲାଗିଛି । ରୋଗୀ ବଞ୍ଚିବାକୁ ନିଜେ ନ ଚାହିଁଲେ ତାକୁ କେହି ବଞ୍ଚାଇ ପାରିବେ ନାହିଁ – ଏକଦମ୍ ସତ କଥା । ଏଇ

ଗୋଟିଏ ସୂତାରେ ତା' ଜୀବନ ଝୁଲିରହିଛି । ଏଇଟା ଛିଣ୍ଡିଗଲେ ଆଉ ଯୋଡିହେବ ନାହିଁ । ...ଆମ୍ଭ କଥାଟା ବି ଆପଣ କହିଲେ, ଖୁବ୍ ଭଲ ଲାଗିଲା । ମୁଁ ସେମିତି କିଛି ଶୁଣିଥିଲି ଆଗରୁ । କିନ୍ତୁ କାଲି ମତେ ସେଇଟା ଛୁଇଁଗଲା । ସତ କଥା । ଡାକ୍ତର ରୋଗୀକୁ କେବଳ ଔଷଧ ଦିଏ – କିନ୍ତୁ ଆଉ ଜଣେ ତାକୁ ଭଲ କରେ । ହାଓ ଟ୍ରୁ ! ଆପଣଙ୍କ ଭଳି ଅନୁଭବର ମଣିଷହିଁ ଏ କଥା କହିପାରେ ! ଆଚ୍ଛା ସାର୍, ଆପଣ ସୋଲ୍ ମାନେ ଆତ୍ମାରେ ବିଶ୍ୱାସ କରନ୍ତି ?"

ମୁଁ ତାଙ୍କୁ ଯାହା ଜାଣିଛି, କହେ । ଯାହା କହିଲେ ସେ ଶୁଣନ୍ତି – ଖୁବ୍ ମନ ଦେଇ । ଦିନେ କହିଲେ, "ଆମ ବ୍ୟବସ୍ଥାରେ ତ କିଛି ହେଉ ନାହିଁ । ଚାରିଆଡେ ଦୁର୍ନୀତି । ଔଷଧ ମିଳୁନାହିଁ ରୋଗୀଙ୍କୁ । ଆପଣ ଚାହିଁଲେ, ଏଠି ଯେଉଁ ଆଠ-ଦଶ ଜଣ ସଚ୍ଛଳ ପରିବାର ଅଛନ୍ତି, ତାଙ୍କୁ କହି ଛୋଟିଆ ପାଣ୍ଠିଟିଏ କରନ୍ତେ । ମୁଁ ବି ସେଥିରେ ମିଶନ୍ତି । କୌଣସି ରୋଗୀ ଔଷଧ କିଣିଲେ ଅଧା ପଇସା ଆମେ ଦେଇପାରନ୍ତେ । କେତେ ଏମିତି ଖର୍ଚ୍ଚ ହୁଅନ୍ତା କି ? କିନ୍ତୁ ଏଠା ଲୋକଙ୍କର ବହୁତ ଉପକାର ହୁଅନ୍ତା ।"

ତାଙ୍କ କଥାରେ ଆମେ ରାଜି ହୋଇଥିଲୁ । ମାତ୍ର ତିନି ଶହ ଟଙ୍କାରେ ପାଣ୍ଠି କରାଗଲା । ମାସକୁ ମାସ ଟଙ୍କା ଦଶଟି ଦେଉଥିଲୁ । ଡାକ୍ତର ନିଜେ ତିରିଶ ଟଙ୍କା ତାଙ୍କ ଦରମାରୁ ଦେଉଥିଲେ । ସେ ପାଣ୍ଠିରେ ଏବେ ପନ୍ଦର ହଜାର ଟଙ୍କା ହେଲାଣି । ଏ ପାଖଆଖର ରୋଗୀ ଏବେ ବି ଅଧା ଦାମ୍‌ରେ ଔଷଧ ପାଉଛନ୍ତି ଦୋକାନରୁ । ବାକି ଅଧେ ଏ ପାଣ୍ଠିରୁ ଦିଆଯାଉଛି ।

ଡାକ୍ତର ଛୋଟରାଏ ବୋଧହୁଏ ଛ'ମାସ ମାତ୍ର ରହିଲେ । ଦିନେ ହଠାତ୍ ଆସି ପହଞ୍ଚିଲେ ଅସମୟରେ । ଦିପହର ସମୟ । ସେମିତି ପୂର୍ବଭଳି ହସହସ ଦିଶୁଥାନ୍ତି, କିନ୍ତୁ କେମିତି ଟିକିଏ ଅଲଗା ।

କହିଲେ, ସାର୍, ବିଦାୟ ନେବାକୁ ଆସିଲି । ମୁଁ ଯାଉଛି ।

ଏତିକି କହିଲା ପରେ ତଳକୁ ମୁହଁ କରିନେଲେ । ମୁଁ ପାଖେଇ ଆସି ତାଙ୍କ ପିଠିରେ ହାତ ରଖି ପଚାରିଲି, "କାହିଁକି, କଣ ହେଲା ? ଆପଣ କୁଆଡେ ଯିବେ ?"

– "ସାର୍, ମୁଁ ଆଡହକ୍‌ରେ ଥିଲି । ପବ୍ଲିକ୍ ସର୍ଭିସ୍ କମିଶନରେ ଇଣ୍ଟରଭ୍ୟୁ ଦେଇଥିଲି । କମିଶନ ମୋତେ କାଟିଦେଲା ।"

ମୁଁ ବିଶ୍ୱାସ କରି ପାରିଲି ନାହିଁ । ତାଙ୍କର ପଢାପଢି, ତାଙ୍କ ବିଦ୍ୟାବୁଦ୍ଧି, କ୍ଲାସ୍‌ରେ ପ୍ରଥମ ହେବା କଥା ମୁଁ ସବୁ ଶୁଣିଥିଲି । ତା'ହେଲେ ଏଭଳି ଅବିଚାର କାହିଁକି ହେଲା ତାଙ୍କପାଇଁ ? କିଏ ସବୁ ତାଙ୍କଠାରୁ ଆହୁରି ଯୋଗ୍ୟ ମିଳିଗଲେ ଏ ସର୍କାରରେ ଚାକିରି କରିବାକୁ ? ମୋ ମନ ଭିତର ବିକ୍ଷେଇ ଗଲା । ଆଖି ଜକେଇଗଲା । ମୁଁ ତାଙ୍କ ପିଠିରେ ହାତଟି ରଖିଥାଏ, ଉଭୟେ ତଳଖୁ ଚାହିଁ ବସିଥାଉ । ମୋ ସାନଝିଅ ଆସି ପଚାରିଲା, "ଚା ଆସିବ ?"

ସେ ସଙ୍ଗେ ସଙ୍ଗେ ମୁହଁ ଟେକି ଆଗଭଳି କହିଲେ – "ଆସୁ" ଏବଂ ଆଗଭଳି ହସିଦେଲେ ।

ତା'ପରେ ଦୁଇ ଦିନରେ ବିଦାୟର ପର୍ବ ସରିଗଲା । ଗଲାବେଳକୁ ମୁଁ ତାଙ୍କୁ ବଳେଇଦେବାକୁ

ଚାଲିଥାଏ ।

ସେ କହିଲେ, "ଏଣିକି କଣ କରିବି ଜାଣି ପାରୁ ନାହିଁ ସାର୍ । କିଛି ବାଟ ଦିଶୁ ନାହିଁ ।"

ମୋ ତୁଣ୍ଡରୁ ବାହାରିଗଲା – "ତମ ପାଇଁ ଆଉ ଜଣେ ବ୍ୟବସ୍ଥା କରି ରଖିଛି । ଏ ସାନ ଚାକିରି ତମ ଭଳି ଡାକ୍ତରଙ୍କ ପାଇଁ ଯୋଗ୍ୟ ନୁହେଁ । ତମକୁ ନେଇ ମାଲିକ ଖୁବ୍ ଉଚ୍ଚରେ ଯଥାଯୋଗ୍ୟ ସ୍ଥାନରେ ଖଞ୍ଜିବି । ତମେ ଜମା ଚିନ୍ତା କର ନାହିଁ ।"

ସେ ହାତ ଯୋଡି ଡବଡବ ଆଖିରେ ମୋତେ ଚାହିଁଥିଲେ । କିଛି ନ କହି ମୁହଁ ଫେରାଇ ଚାଲିଯାଇଥିଲେ ।

ବେଶ୍ କିଛି ଦିନ ପରେ – ଦି' ଚାରିମାସ ହେବ ନା' କ'ଣ – ଗୋଟିଏ ଓଜନିଆ ଚିଠି ଆସି ପହଞ୍ଚିଲା । ଖୋଲିଲାବେଳକୁ ଚିଠି ଡାକ୍ତର ବାବୁଙ୍କର – ଲମ୍ବା ଫର୍ଦ୍ଦ କାଗଜରେ ଚାରି ପୃଷ୍ଠା ।

ତା'ର ମର୍ମ ଥିଲା ଯେ ମୋର ଭବିଷ୍ୟତ୍‌ବାଣୀ କୁଆଡେ ସତ ହୋଇଗଲା । ସେ ତାଙ୍କ ସାଙ୍ଗ ଡାକିବାରୁ କଲିକତା ବୁଲିବାକୁ ଯାଇଥିଲେ । ଦୈବକ୍ରମେ ଶେଷ ମୁହୂର୍ତ୍ତରେ ଗୋଟିଏ ବଳଖା ଦରଖାସ୍ତ ଫର୍ମ ଭର୍ତ୍ତିକରି ଦସ୍ତଖତ କରି ପଠାଇ ଦେଇଥିଲେ ଶେଷ ତାରିଖର ତିନି ଦିନ ଆଗରୁ । ତାଙ୍କୁ ତା'ରି ଉପରେ ଡାକରା ଆସିଲା ଇଣ୍ଟରଭ୍ୟୁ ପାଇଁ । ସେ ବିଦେଶ ଯିବାପାଇଁ ମନୋନୀତ ହୋଇଛନ୍ତି । ମୁଁ ଚିଠି ପାଇଲାବେଳକୁ ସେ ବୋଧହୁଏ ଚାଲିଯାଇଥିବେ ସ୍ୱିଜରଲ୍ୟାଣ୍ଡ୍ । ମୋ ଆଖିକୁ ବଳେ ଲୁହ ଆସିଯାଉଥିଲା । ମୁଁ ଘରର ସମସ୍ତଙ୍କୁ ଡାକି କହିଲି । ଗାଁରେ ଯାହାକୁ ଭେଟିଲି କାହିଲି – "ଈଶ୍ୱର ବଡଲୋକ । କାହାକୁ କେତେବେଳେ କଣ କରି ଥୋଇଦେବେ ତାଙ୍କୁହିଁ ଜଣା ।"

ବିଦେଶରୁ ଦୁଇବର୍ଷରେ ଦୁଇଟି ଚିଠି ଆସିଲା । ସବୁ ସେଇ ତାରିଖରେ ଲେଖାହୋଇଥିଲା, ଯେଉଁ ତାରିଖରେ ସେ ଏଇଠୁ ବିଦାୟ ନେଇ ଯାଇଥିଲେ । ସତେବା ସେଇ ତାରିଖରେ ତାଙ୍କ ପିଠିରେ ହାତ ରଖି ଆଉ କିଏ ତାଙ୍କୁ ବଲେଇଦେଇଥିଲା ଅସୁମାରି ସଫଳତାର ରାଜ୍ୟକୁ ।

ସେ ଫେରିଆସି ବମ୍ବେ ସହରରେ ସବୁଠୁ ବଡ ଡାକ୍ତରଖାନାରେ ରହିଲେ । ଖୁବ୍ ନାମଜାଦା ବେସରକାରୀ ଡାକ୍ତରଖାନା । ସେଇଠୁ ବି ଚିଠି ବେଳେବେଳେ ଆସୁଥିଲା । ଦାୟିତ୍ୱ ଅନୁସାରେ ସମୟର ଅଭାବ ଆସିଯାଇଥିଲା । କିନ୍ତୁ ସେପ୍ଟେମ୍ବର ୧୦ ତାରିଖକୁ ସେ କେବେହେଲେ ଭୁଲି ଯାଉ ନ ଥିଲେ । ସେଇ ଦିନ କେମିତି ହେଉ ଚିଠିଟିଏ ଲେଖି ଦେଉଥିଲେ । ଥରେ ରାତି ବାରଟାରେ ଇନ୍‌ଟେନ୍ସିଭ୍ କେୟାର ୟୁନିଟ୍‌ରେ ରୋଗୀ ସହିତ ମିଶି ମୃତ୍ୟୁର ମୁକାବିଲା କଲାବେଳେ ସାମାନ୍ୟ ଦୁଇ-ତିନି ମିନିଟ୍ ଫୁରୁସତରେ ସେ ଦୁଇଧାଡି ଲେଖିଦେଇଥିଲେ । ତା' ଆରଦିନ ଡାକଘର ଷ୍ଟାମ୍ପ୍ ପଡିଥିବା ଚିଠିଟି ସାତଦିନ ପରେ ମୋ ପାଖରେ ପହଞ୍ଚିଥିଲା । ଏବେ ମୋ ପୁଅ ବଡ ହୋଇ ବହୁତ ଦୂରରେ ରହୁଛି । ବଡ ହାକିମ ହେଇଚି । ଚିଠି ଦିଏ ମଝିରେ ମଝିରେ । କିନ୍ତୁ ବର୍ଷର ଗୋଟାଏ ଦିନ ସେପ୍ଟେମ୍ବର ୧୦ ତାରିଖରେ ମୁଁ କେବଳ ଗୋଟିଏ ଚିଠିକୁ ଅପେକ୍ଷା କରିଥାଏ । ସେଇଟା ଡାକ୍ତର ପ୍ରିୟଦର୍ଶୀ ଛୋଟରାଏଙ୍କ ଚିଠି । ଏଥର ଖୁବ୍ ଲମ୍ବା ଚିଠିଟିଏ ଆସିଛି । ମୁଁ ସବୁବେଳେ ସବୁଚିଠିର ସଂକ୍ଷିପ୍ତ ଉତ୍ତର ଦିଏ । କିନ୍ତୁ ଏଥର ବୋଧହୁଏ ଚିଠି ଦେଲେ ଯଥେଷ୍ଟ ହେବନାହିଁ ।

କେମିତି ଟିକିଏ ଦେଖା ନ ହେଲେ ନ ଚଳେ । ସେ ଚିଠିଟି ଅବିକଳ ଉତାରି ଦଉଚି । ଆପଣ ନିଜେ ପଢନ୍ତୁ ।

"ପରମ ମାନନୀୟ ସାର୍,

ମୋର ଭୂମିଷ୍ଠ ପ୍ରଣାମ ଗ୍ରହଣ କରିବେ । ଆମ ଘରେ ଆପଣ ସବୁବେଳେ ଉପସ୍ଥିତ ଅଛନ୍ତି ଜାଣିବେ । ମୋର ଦୁଇଟିଯାକ ପୁଅ ଆପଣଙ୍କୁ ଦେଖିନାହାନ୍ତି ସତ, କିନ୍ତୁ ଆପଣଙ୍କୁ ଦେଖିବାମାତ୍ରେ ଚିହ୍ନିଦେବେ । ଆପଣଙ୍କ ବିଷୟରେ ସେ ସବୁକଥା ଜାଣିଛନ୍ତି । ଆପଣଙ୍କୁ ଭାରି ଭଲପାଆନ୍ତି, ସମ୍ମାନ କରନ୍ତି – ସେ ଇଂରାଜୀପଢୁଆ ଛୁଆ ଦି'ଟା । ମୋ'ଠୁ ଦେଖିବାକୁ ସୁନ୍ଦର । ହେଲେ ସେମାନେ ଭଲ ଓଡିଆ କହିପାରୁନାହାନ୍ତି । ଦୋଷ ମୋର । ମୁଁ ଆପଣଙ୍କ କଥା ଅନୁସାରେ କିଛି କରିପାରିଲି ନାହିଁ । ଏଠି ଡାକ୍ତରଖାନାରେ ମୋର ସବୁଯାକ ସମୟ ଆଉ ଶକ୍ତି ଲାଗିଯାଏ । ସେଥିପାଇଁ ମୋ ସ୍ତ୍ରୀ ବି ମୋ ଉପରେ ଭୀଷଣ ରାଗେ । କିନ୍ତୁ ଆପଣଙ୍କ କଥା କହି ମୁଁ ତାଙ୍କୁ ଶାନ୍ତ କରିଦିଏ ।"

ମୁଁ ଆଜି ଏ ଚିଠି ଲେଖୁଛି ଖୁବ୍ ଗୋଟାଏ ମରାଲ୍ କ୍ରାଇସିସ୍‌ରେ ପଡି । ଆଗରୁ ଲେଖିଥାନ୍ତି; କିନ୍ତୁ ଏଠି ପାହିଆ ବଢିବାରୁ ଦାୟିତ୍ୱ ବଢିଯାଇଛି । ସମୟ ଜମା ମିଳୁନାହିଁ । ତା' ବାହାରେ ଆଜି ସେପ୍ଟେମ୍ବର ୧୦ ତାରିଖ । ମୋର ନବଜନ୍ମର ଦିନ । ଆପଣହିଁ ମୋର ନୂଆ ଜନ୍ମର ଘୋଷଣା କରିଥିଲେ । ଆଜି ତ' ଚିଠି ଲେଖିବାକୁ ମୁଁ ସଂକଳ୍ପ କରିଛି । ସେଥିପାଇଁ ବ୍ୟବସ୍ଥା କରିଛି । ଆଜି ଖାଇସାରିବା ପରେ କୌଣସି କାମ ରଖିନାହିଁ । ବସି ଆପଣଙ୍କୁ ଏହି ଚିଠି ଲେଖୁଛି । ମୁଁ ମୋ ମନ ଭିତର କଥା ଆଉ କାହା ପାଖକୁ ଲେଖିବି କେବଳ ଆପଣଙ୍କ ଛଡା ?

ମୁଁ ଆଜି ଆପଣଙ୍କ ପାଖରେ ଗୋଟିଏ ସାଂଘାତିକ ଅପରାଧ ସ୍ୱୀକାର କରିବି । ସେଥିପାଇଁ ମୁଁ ନିଜକୁ ନିଜେ କ୍ଷମା ଦେଇପାରୁନାହିଁ । ମନେହେଉଛି ଯେ, ମୁଁ ଜାଣିଶୁଣି ଜଣକୁ ମାରିଦେଲି – ଯେ କି ମୋ ଉପରେ ନିର୍ଭର କରି ରହିଥିଲା । ତାକୁ ମୁଁ ଅବହେଳାରେ ମାରିଦେଲି । ଶୁଣନ୍ତୁ । ଘଟନାଟି ଏହିପରି ।

ଏଠି ପରେଶ ବାବୁ ବୋଲି ଜଣେ ଓଡିଆ ରହନ୍ତି । ପରେଶ ନାଏକ । ଖୁବ୍ ଜଣାଶୁଣା ଲୋକ । ଭାରି ପ୍ରଭାବଶାଳୀ । ଖୁବ୍ ପ୍ରତିଷ୍ଠିତ ଲୋକ । ସେ କୌଣସି କାରଣରୁ ପରିସ୍ଥିତିରେ ପଡି ଏଠିକା ଡାକ୍ତରଖାନାରେ ଚିକିତ୍ସିତ ହେଉଥିଲେ ଦୁଇ ବର୍ଷ ତଳେ । ତାଙ୍କର କୌଣସି କାରଣରୁ ମୋ ଉପରେ ଭରସା ହୋଇଗଲା ଓ ସେ ଘରକୁ ଫେରିଲାପରେ ବି ମୋ ସହିତ ଡକାହକା ଯିବା-ଆସିବା ସମ୍ପର୍କ ରଖିଲେ । ତାଙ୍କର ଛ'ସାତଟା ଗାଡିରୁ ଗୋଟିଏ ମୋ ପାଇଁ ଖାସ୍ ମୁତୟନ କରିଦେଲେ । ଯେତେବେଳେ ସେ ଚାହିଁବେ ବା ମୁଁ ଚାହିଁବି, ଖାଲି ଫୋନ୍ କଲେ ସେ ଆସି ମତେ ନେଇଯିବ ।

ତାଙ୍କ ସହିତ ଘରୋଇ ସଂପର୍କ ହୋଇଗଲା । ତାଙ୍କ ଘରକୁ ଆମେ ବହୁବାର ଯିବାଆସିବା କଲୁ । ସେ ବି ଆମ ଘରକୁ ଆସିଲେ । ଦିନେ ହଠାତ୍ ତାଙ୍କ ଦେହ ଅସୁସ୍ଥ ହୋଇଗଲା । ହାର୍ଟ

କେସ୍ । ସାଙ୍ଗେ ସାଙ୍ଗେ ଡାକ୍ତରଖାନାରେ ଭର୍ତ୍ତି କରିଦେବାରୁ ବିପଦ ଟଳିଗଲା । କିନ୍ତୁ ଅପରେସନ୍ ନ କଲେ ନ ଚଳେ । ମୁଁ ଜାଣେ ଯେ କେତେଟା ବିଷୟରେ ମାଡ୍ରାସ୍‌ରେ ସବୁଠୁ ଉତ୍ତମ ବ୍ୟବସ୍ଥା ଅଛି । ମୁଁ ତାଙ୍କୁ ସେଠିକି ଯିବାକୁ ପରାମର୍ଶ ଦେଲି ।

କିନ୍ତୁ ସେ ଅଡିବସିଲେ ଯେ ମୁଁ ତାଙ୍କୁ ନେଇ ସେଠିକି ଯିବି । ତାଙ୍କ ପିଲାମାନେ ବେଶ୍ ବଡଲୋକ । ଦାୟିତ୍ୱବାନ୍ । କିନ୍ତୁ ମୋ ଉପରେ ସେ ସମ୍ପୂର୍ଣ୍ଣ ନିର୍ଭର କରିଗଲେ । ତାଙ୍କ ସ୍ତ୍ରୀଙ୍କୁ ନେଇ ସେ ଆମ ଘରକୁ ଆସିଲେ । ତାଙ୍କ ସ୍ତ୍ରୀ ମୋ ହାତ ଧରି ପକାଇ କହିଲେ, "ଆପଣ ନ ଗଲେ ଆମର ଆଉ କାହାକୁ ବିଶ୍ୱାସ ହେଉନାହିଁ । ଆପଣ କୌଣସି ପ୍ରକାରେ ଚାଲନ୍ତୁ । ଏଇଠି ଆପଣଙ୍କ ପିଲାଙ୍କ କଥା ଚିନ୍ତା କରନ୍ତୁ ନାହିଁ । ସେ ସବୁ ଦାୟିତ୍ୱ ଆମର ।"

ମୁଁ ନିରୁପାୟ ହୋଇ ପନ୍ଦରଦିନ ଛୁଟି ନେଇ ବାହାରିଗଲି । ସେଇଠି ତାଙ୍କର ଅପରେଶନ୍ ହେଲା । ଏବଂ ମୁଁ ବୁଝିପାରୁଛି ଯେ ମୁଁ ପାଖେ ପାଖେ ନ ଥିଲେ ହୁଏତ ସେ ଫେରି ପାରି ନ ଥାନ୍ତେ । ପନ୍ଦର ଦିନ ପରେ ଆଉ ଦଶ ଦିନ ଛୁଟି ବଢେଇ ତାଙ୍କୁ ସଂପୂର୍ଣ୍ଣ ସୁସ୍ଥ ଅବସ୍ଥାରେ ନେଇ ବମ୍ବେ ଫେରିଲି । ତାଙ୍କ ଘରେ ମୋ ଉପରେ କୃତଜ୍ଞତା ଅଜାଡି ହୋଇ ପଡିଲା । ସେ ସମଗ୍ର ପରିବାର ଏବେ ଆମକୁ ନ ନେଇ କିଛି କରୁନାହାନ୍ତି ।

ପରେଶ ବାବୁ ବୋଲି ନୁହେଁ; ମୁଁ ସେଭଳି ଯେକୌଣସି ରୋଗୀ ପାଇଁ ଏ କାର୍ଯ୍ୟଟି କରିଥିଲେ ବି ଖୁସି ହୋଇଥାନ୍ତି । କିନ୍ତୁ ଶୁଣନ୍ତୁ ମୋ ଦୁଃଖ ।

ମୋର ଏଠି ଗୋଟିଏ ଡ୍ରାଇଭର ଅଛି । ତା'ର ଗୋଟିଏ ସାତ ବର୍ଷର ପୁଅ । ସେ ପୁଅଟି ବି ଡାକ୍ତରଖାନାରେ ଜନ୍ମ ହୋଇଥିଲା । ତା'ପରେ ତା' ମା'ର ଆଉ ସନ୍ତାନ ହେବାର ସମ୍ଭାବନା ନ ଥିଲା ।

ପିଲାଟି ନାଁ ବବ୍ଲୁ । ସେ ପ୍ରାୟ ଆମ ଘରେହିଁ ବଢିଛି । ତାଙ୍କ ପାଇଁ ହତା ଭିତରେ ଘର ମିଳିଛି । କିନ୍ତୁ ପିଲାଦିନୁ ସେ ଆମ ପାଖରେ ବଡ ହୋଇଚି । ତା'ର ନାଁ ଲେଖା ଦିନ ମୁଁ ତାକୁ ସାଙ୍ଗରେ ନେଇଯାଇଥିଲି । ସେ ମୋତେ ଅବ୍‌ବା ବୋଲି ଡାକେ । ତା'ର ଜାମାପଟା ବହିପତ୍ର ସବୁ ବ୍ୟବସ୍ଥା ହୋଇଗଲା । ସେ ଏଠିକାର ବେଶ୍ ଭଲ ଇଂଲିଶ୍ ମିଡିୟମ୍ ସ୍କୁଲ୍‌ରେ ପଢିଲା ।

ମୁଁ ମାଡ୍ରାସ୍ ବାହାରିଲି ମାର୍ଚ୍ଚ ୧୫ ତାରିଖିରେ । ଗଲାବେଳେ କେଜାଣି କାହିଁକି ମୋ ମନରେ ଖଟକା ଲାଗିଥିଲା । ପନ୍ଦର ମାର୍ଚ୍ଚଟାକୁ ଅଶୁଭ ବୋଲି ବିଦେଶରେ ମାନନ୍ତି । ସେଇ ଦିନକୁ 'ଆଇଡ୍ସ ଅବ୍ ମାର୍ଚ୍ଚ' ବୋଲି କୁହାଯାଏ । ସେଇଦିନ ଜୁଲିଅସ୍ ସିଜରଙ୍କୁ ହତ୍ୟା କରାଯାଇଥିଲା ।

ମାର୍ଚ୍ଚ ୧୩ ତାରିଖରେ ବବ୍ଲୁର ଦେହ ଖରାପ । ଜର । ସେ ଖାତିର ନ କରି ଡେଉଁଥିଲା । ବାପ ବି ଦୃଷ୍ଟି ଦେଇ ନ ଥିଲା । ତା' ଆରଦିନ ମୋ ପାଖରେ ଖବର ପହଞ୍ଚିଲା । ମୁଁ ସାଧାରଣ ଔଷଧ କିଛି ନେଇ ଦେଲି ।

ତା'ପରଦିନ ଭାରି ଭିଡ କାମ । ପନ୍ଦରରେ ଯିବାକୁ ପଡିବ । ମୁଁ ଗଲାବେଳେ ଦେଖିଲି ପାଖରେ ବବ୍ଲୁ ନ ଥିଲା । ମୁଁ ସାଙ୍ଗେ ସାଙ୍ଗେ ବାଡିପଟେ ତା' ଘରକୁ ଯାଇ ଦେଖିଲି ବବ୍ଲୁ ଖଟରେ

ଶୋଇଥିଲା । ମା' ମା ତା' କପାଳରେ ଜଳପଟି ଦେଉଥିଲା । ଜର ଶହେ ତିନ୍ । ବବ୍ଲୁ ମୋତେ ଚାହିଁଲା । ଆଖି ପେଜୁଆ । ଜରରେ ଫାଇଁ ଫାଇଁ ହଉଥିଲା । ହେଲେ ଶୁଖିଲା ଓଠରେ ହସିଦେଇ କହିଲା, "ଅବ୍‌ବୁ, ଆପ୍ ଯା ରହେ ହେଁ ?" ମୁଁ ତା'ର ତଳ ଭାଡିର ଦାନ୍ତଟିଏ ଉପାଡିବା କଥା କହି ନ ଥିଲି ।

– "ହାଁ, ବେଟେ, ହମ୍ ଜଲ୍‌ଦି ୱାପସ୍ ଆ ଜାଏଙ୍ଗେ । ତୁମ୍ ତବ୍ ତକ୍ ଠିକ୍ ହୋଯାନା ।"

– "ଅବ୍‌ବୁ, ମେରେ ଲିୟେ ଏକ ଏରୋପ୍ଲେନ୍ ଲାନା ।"

– "ଜରୁର୍ ବେଟେ, ହମ୍ ଜରୁର୍ ଲାଏଙ୍ଗେ ।"

ସେ ହାଲିଆ ହୋଇ ଆଖି ବନ୍ଦକରିନେଲା ।

ତା' ବାପକୁ ବାରମ୍ବାର ତାଗିଦା ଦେଇ ମୋର ଜଣେ ସାଙ୍ଗ ଡାକ୍ତରଙ୍କୁ ଫୋନ୍ କରି ମୁଁ ପରେଶ ବାବୁଙ୍କ ଗାଡିରେ ବସିଲି । ପ୍ଲେନ୍ ଛାଡିବା ସମୟ ପାଖେଇଯାଇଥିଲା । ଫେରିବାବେଳେ ମାଡ୍ରାସ୍‌ରୁ ଗୋଟିଏ ଖେଳନା ଏରୋପ୍ଲେନ୍ ନେଇ ଆସିଛି ।

କିନ୍ତୁ ସାର୍, ମୁଁ ଫେରିଆସି ଆଉ ବବ୍ଲୁକୁ ପାଇଲି ନାହିଁ । ସେ ଚାଲିଯାଇଥିଲା । ତା' ବାପ ମା' ଘର ଭିତରେ ନିରବରେ ଲୁହ ଗଡେଇ ବସିଥିଲେ । ବବ୍ଲୁର ସ୍କୁଲ୍ ବେଗ୍, ତା'ର ଜୋତା, ଜାମା ଥାକମରା ହୋଇ କାନ୍ଥଆଲମିରାରେ ଥୁଆହୋଇଥିଲା ।

ମୁଁ ମୁହଁ ଘୋଡେଇ ସେଇଠି ନିଜକୁ ସମ୍ଭାଳି ପାରିଲି ନାହିଁ । ମୋ ପଛରେ ମୋ ସ୍ତ୍ରୀ ଓ ପିଲାମାନେ ଠିଆହୋଇଥିଲେ – କାରଣ ମୁଁ ଘରେ ନ ପଶି ସିଧା ବବ୍ଲୁ ପାଖକୁ ଚାଲିଆସିଥିଲି ।

ମୋର ପୂରା ବିଶ୍ୱାସ ହେଉଛି ସାର୍, ମୁଁ ଏଠି ରହିଯାଇଥିଲେ ବବ୍ଲୁ କଦାପି ମରି ନ ଥାନ୍ତା । ପରେଶବାବୁଙ୍କୁ ମାଡ୍ରାସ୍ ନେବାପାଇଁ ଡାକ୍ତରର ପ୍ରୟୋଜନ ନ ଥିଲା । ଅଭାବ ବି ନ ଥିଲା । କିନ୍ତୁ କିଏ ଥିଲା ବବ୍ଲୁ ପାଇଁ ?

ଏପ୍ରିଲ ୧୦ ତାରିଖରୁ ମୁଁ ଯନ୍ତ୍ରଣାରେ ଛଟପଟ ହେଉଛି । ଦିନକୁ ଅଠର ଘଣ୍ଟା ଖଟୁଛି । ମନ ଭୁଲେଇବାକୁ ଚେଷ୍ଟା କରୁଛି । କିନ୍ତୁ ଘରକୁ ପଶିଗଲେ ବବ୍ଲୁ ଆଖିରେ ଦିଶିଯାଉଛି । ମୁଁ ଜମା ନିଜକୁ କ୍ଷମା ଦେଇ ପାରୁନାହିଁ । ସାର୍, ଆପଣ କହନ୍ତୁ ମୁଁ କଣ କରିବି ?

ପରେଶବାବୁ ସମସ୍ତଙ୍କ ଆଗରେ ମୋର ପ୍ରଶଂସା ଗାଉଛନ୍ତି । ଆମ ଘରେ ଆସି କହୁଛନ୍ତି ଯେ ମୁଁ ତାଙ୍କ ପ୍ରାଣଦାତା – ତାଙ୍କର ପୁଅମାନଙ୍କଠୁ ଆହୁରି ଆତ୍ମୀୟ ।

ଉପକାର ପାଇଲାପରେ ଜଣକୁ ଆତ୍ମୀୟ ବୋଲି ଭାବିବା ତ' କିଛି ନୂଆ କଥା ନୁହେଁ । ମୁଁ ପରେଶ ବାବୁଙ୍କୁ ସାହାଯ୍ୟ କରିଛି ସତ, କିନ୍ତୁ ମୁଁ ବବ୍ଲୁକୁ ବଞ୍ଚାଇ ପାରିଲି ନାହିଁ । ପରେଶ ବାବୁ ବଡଲୋକ । ଆଉ ହୁଏତ ପନ୍ଦର କୋଡିଏ ବର୍ଷ ଭୋଗକରିବେ । କିନ୍ତୁ ବବ୍ଲୁ ତ କେତେ କଣ ହୋଇପାରିଥାନ୍ତା; କରିପାରିଥାନ୍ତା । ସେ ତ' ଭବିଷ୍ୟତ୍ । ମୁଁ ତାକୁ ମାରିଦେଲି ସାର୍ ! ମୋ ଭିତର ଛିଣ୍ଡିପଡୁଛି ଅବଶୋଷରେ । ମୋର ଅପରାଧର କ୍ଷମା ନାହିଁ ।

ଆପଣ ମୋ ପରମ ଆତ୍ମୀୟ ସାର୍, ମୋର ଗୁରୁ, ଉପଦେଷ୍ଟା, ପଥପ୍ରଦର୍ଶକ । ଆପଣଙ୍କୁ

ପଣ୍ଟୁରୁଚି – ମୁଁ ବବ୍ଲୁକୁ ଛାଡି ଚାଲିଯିବା କଣ ଅପରାଧ ନୁହେଁ ?

ଚିଠିଟିଏ ଦେବେ ସାର୍ । ମୁଁ ଘୋର ସନ୍ତାପରେ ଅଛି, ଜାଣିବେ ।

ଇତି

ଆପଣଙ୍କ ପାଖରେ ଚିରବିନମ୍ରାବନତ

ପ୍ରିୟଦର୍ଶୀ

ମୁଁ ଚିଠି ଦେବି ସତ – କିନ୍ତୁ କଣ ଲେଖିବି ? ପାଖରେ ପାଇଲେ ସିନା ହାତରେ ହାତ ରଖି କିଛି ସମୟ ନୀରବରେ ବସିରହନ୍ତି । ମୋ ଆଖିକୁ ଚାହିଁଲେ ସେ ବୁଝିଯାନ୍ତେ – "ଆମେ କିଏ କାହାକୁ ବଞ୍ଚେଇବାକୁ ବା ମାରିବାକୁ ?" କିନ୍ତୁ ଏତେ ଲୋକଙ୍କର ଏତେ ଆତ୍ମୀୟ ଏ ଲୋକଟି ତ' ଅନନ୍ତ ଯାତନା ଏହିପରି ଭୋଗିବ । ମମତାର ରକ୍ତନାଡି ଛିଣ୍ଡିଗଲେ ରକ୍ତ ଝରିବ, ଦୁଃଖ ଘୋଟିଯିବ ଜୀବନରେ । କିନ୍ତୁ ଅନବରତ ନିର୍ବିଚାର ଆପଣାପଣ ବାଣ୍ଟିଚାଲିଥିବା, ବିଛେଇଚାଲିଥିବା ମଣିଷଟି କଣ କରିପାରିବ ସତେ ? ଭଲପାଇଚାଲିବା ଆଉ କାନ୍ଦିଚାଲିବା ଛଡା ଆଉ କଣ କରିପାରିବ ?



# ଯଦୁବଂଶରେ ସୂର୍ଯ୍ୟାସ୍ତ

ଅଚାନକ ଦକ୍ଷିଣ ଅରଣ୍ୟରୁ ଗୋଳ ଶୁଭିଲା । ମନେହେଲା ଅଗ୍ନିକୋଣରେ ନିଆଁ ଲାଗିଲା ନା କ'ଣ । ପଶୁପକ୍ଷୀ ଉଦ୍‌ଭିଦ ଏକାଠି ମିଶି ଆର୍ତ୍ତନାଦ କଲେ । ସୂର୍ଯ୍ୟ ଉପରକୁ ଉଠିଆସିଲେ ନିଆଁ ଚହଟି ଆସିବ ସେ ପାହାଡ ଚୂଳ ପର୍ଯ୍ୟନ୍ତ । ସେଇ ଆଶଙ୍କାରେ ହୁଏତ ଶିମୁଳିଗଛ ଶିଖରେ ଚିଲବସା ସ୍ତବ୍ଧ ହୋଇଯାଇଥିଲା । ମିରିଗ କାନ ଡେରିଲା ପରି ସବୁ ଗଛର ପତ୍ର ଠିଆ ଠିଆ ହୋଇଯାଇଥିଲେ । ଗଛମୂଳେ କାଠୁରିଆ କୁଠାର ସଜାଡିଲାବେଳେ ଆତଙ୍କିତ ଗଛ ସାଙ୍କୁଡି ଗଲା ପରି ସାରା ଅରଣ୍ୟ ସାଙ୍କୁଡିଯାଇଥିଲା ।

ଖୁବ୍ ଅସ୍ୱାଭାବିକ ମନେହେଲା ସେଦିନର ସକାଳ । ବିନ୍ଧ୍ୟାଶବରୀ ନିଶ୍ୱାସରୋଧି କାନେଇଲା । ଭୃରୁ କୁଞ୍ଚେଇ ନିଘା କଲା ଦିଗ୍‌ବଳୟକୁ । ସମୁଦ୍ରକୂଳରେ ସେହି ପାଟଭୂଇଁକୁ ସେ ଯାଇଥିଲା । ଆଶ୍ଚର୍ଯ୍ୟ ହୋଇ ଦେଖିଥିଲା ସେ କଳା ମଚମଚ ଏରକାର ବଣ ହୋଇଯାଇଛି । ଲୁହାପାତିଆ ପରି ଟାଆଁସା ଧାରୁଆ ପତ୍ରସବୁ ସନସନ ଶବ୍ଦ କରୁଛନ୍ତି । ସେ ଶବ୍ଦ ଶୁଣି ଡରିଗଲା । ଫେରିଆସି ଜାରାକୁ କହିଥିଲା । ଜାରା ଜମା ଖାତିର କଲା ନାହିଁ । ତୀର କମାଣ ଧରି ଛିଡାହେଲେ ସେ କେବେ କାହାକୁ ଖାତିର କରେ ନାହିଁ । ବାଘ ଦେଖିଲେ ବୁକୁ ଓସାରି ଉଭାହେବା ତା'ର ଅଭ୍ୟାସ । ତା' ସ୍ତ୍ରୀଟା ସତେ ଭାରି ଡରକୁଳୀ । କେମିତି ସେ ଶବରଘରେ ଝିଅ ହେଲା କେଜାଣି ? ସେ ନୂଆ ବଣଆଡେ ଜାରା ମଧ ବୁଲିଆସିଛି । ସେଦିନ ସେ ଝଣଝଣ କରୁଥିବା ଏରକାରୁ ମୁଠାଏ ଉପାଡି ପାଖରେ ଥିବା କଅଁଳିଆ ଜାମୁଗଛ ଗଣ୍ଡିରେ ହାଣିଦେବାରୁ ଗଛରେ ଘା' ହୋଇଗଲା । ରସ ଥୋପିଲା । ଏରକା ପତ୍ରଗୁଡାକ ସେମିତି କାହିଁକି ହେଇଛି ଖଣ୍ଡାପରି ? ଭାରି କାଳିଆ ଅଲକ୍ଷଣିଆ ଦେଖାଯାଉଛି କାହିଁକି ?

ବିନ୍ଧ୍ୟା ସେମିତି ଠିଆହୋଇ ତା ଗେରସ୍ତକୁ ଡାକିଲା । କୁଡିଆ ଭିତରେ ଜାରା ଶରଫଳା ଖଞ୍ଜୁଥିଲା । ସେଇଠୁ ଥାଇ ଗର୍ଜିଲା – "କ'ଣ ହେଲା ?"

– "ସେଇ ଦକ୍ଷିଣ ପାଖ ବଣ ଭିତରୁ ଏମିତି କଣ ଗୋଳ ଶୁଭୁଛି – ଶୁଣିବୁ ଆଇଲୁ ।"

– "ମତେ ଶୁଭୁଚି ।"

– "କ'ଣ ନିଆଁ ଲାଗିଗଲା କି ବଣରେ ?"

– "ତୋ ମୁହଁରେ ନିଆଁ । ବଣରେ କାଇଁକି ନିଆଁ ଲାଗିବ ? ତୁ କଣ ବାରିପାରୁନାହୁଁ କିଛି ?"

ବିନ୍ଧ୍ୟା ଗାଳି ଶୁଣି ନୀରବ ରହିଲା ।

"ଘୋଡା-ଡାକ ତତେ ଶୁଭୁନାହିଁ ? ନେମିଡାକ ଶୁଭୁନାହିଁ ? ରଜାପିଲାଏ ମାତିଛନ୍ତି ଜଣାପଡୁଛି । ପଶିଛନ୍ତି ବଣ ଭିତରେ । ରଜାଥାଟର ଏ ଶବ୍ଦ । ଏ ପାଟିତୁଣ୍ଡରେ ବଣଜନ୍ତୁ ହୁରୁଡିଯିବେ । ଚହଲିଯିବ ଗୋଟାସାରା ବନସ୍ତ । ପୁଣି ଥିର ହଉ ହଉ କେତେ ଦିନ ।"

ବିନ୍ଧ୍ୟା କୁଡିଆ ଭିତରକୁ ଫେରିଗଲା । ଜାରା ଆଗରେ ବସିଲା ଚକାମାରି । ଜାରାର ଦୃଷ୍ଟି ଶରଫଳା ଉପରେ । ବିନ୍ଧ୍ୟା ଅତି ଆଗ୍ରହରେ ପଚାରିଲା – "ରଜାପୁଏ ମାତିଛନ୍ତି ? ସେମାନେ ସମସ୍ତେ ଯଦୁବଂଶ ତ ! ମୁଁ ସେମାନଙ୍କୁ ଦେଖିଛି – ହୀରା ପରି ଝଟକୁଛନ୍ତି ସେମାନେ । ସେମାନଙ୍କ ବାହୁରେ ବୁକୁରେ ସୋରା ସୋରା ମୁକ୍ତାମାଳ ।"

ଜାରା ଆଖିଟୋକି ଥରେ ବିନ୍ଧ୍ୟାକୁ ଚାହିଁଲା । ଡହକୁଥିବା ନିଆଁପିଣ୍ଡ ପରି ସେ ଆଖି । ଜାରା ଅନ୍ୟ ପୁରୁଷର ପ୍ରଶଂସା ସହିପାରେ ନାହିଁ; ମୁହଁ ଖୋଲି କିଛି କହେ ନାହିଁ; କିନ୍ତୁ ଖୁବ୍ ଚିଡିଯାଏ । ଏକଥା ବିନ୍ଧ୍ୟା ଜାଣିଥିଲା । ସେ କିଛି ନ କହି ଚୁପ୍‌ଚାପ୍ ବସିରହିଲା ।

ତା' ଆଖି ପଡିଲା ଶରଫଳାଟା ଉପରେ । ନିଆଁ ପରି ଝଟକୁଥିଲା ସେ ଖଣ୍ଡକ । ଅନ୍ୟ ଶରଫଳା ପରି ନୁହେଁ । ତା'ର ମନେପଡିଲା ଯେ, ମାଛପେଟରୁ ସେଦିନ ସେ ଖଣ୍ଡ ବାହାରିଥିଲା ।

– "ଚାଖଣ୍ଡେ ଲମ୍ବ ଏତେ ବଡ ଶରଫଳାଟାଏ କାହିଁକି ବାନ୍ଧୁଚୁ ?"

– "ତୁ କଣ ବୁଝିବୁ ?" ଏଇଟା ହବ ମୋ ବଜ୍ରବାଣ ! ହାତୀକୁ ବାଜିଲେ ହାତୀ ଶୋଇଯିବ ଗୋଟାଏ ମାଡରେ । ୟା ପାଇଁ ଦୋହରା ଧନୁ କରିଚି ପରା ! ଆଜି ୟାକୁ ନେଇ ବାହାରିବି ।"

ବିନ୍ଧ୍ୟା କାହିଁକି କେଜାଣି ଡରିଗଲା । ତା'ର ମନେହେଲା ଜାରା ସେଦିନ କଣ ନାଗଁ କଣ ବୋଧେ କରିପକେଇବ ! ଚାଖଣ୍ଡେ ଲମ୍ବ ଝଟଝଟ ସେ ଶରଫଳା କାହା ବୁକୁ ବିଦାରିବ କେଜାଣି ?

ଗୁରୁଗୁରୁ ଶବ୍ଦ ଶୁଭିଲା ଦକ୍ଷିଣ ଅରଣ୍ୟରୁ । ବିନ୍ଧ୍ୟା ଆଉରି ଉଦବିଗ୍ନ ହୋଇଉଠିଲା । ଜାରା ବି ସ୍ତବ୍ଧ ହୋଇ କାନେଇଲା । ତାକୁ ମଣିଷଙ୍କ ଆର୍ତ୍ତନାଦପରି ଶବ୍ଦମାନ ଶୁଭିଲା । ତେବେ କଣ ସେଇଠି ଯୁଦ୍ଧ ଲାଗିଗଲା କି ? – 'ଧୁତ୍ ! କିଏ ଅଛି, ଏ ପ୍ରବଳ ଯଦୁବଂଶୀଙ୍କ ମୁକାବିଲା କରିବ ? ସେ ସେମିତି ଉତ୍ପାତ ହୋଇ ଖେଳୁଥିବେ ମ !'

– "ବୁଝିଲୁ ଭାରି ଉତ୍ପାତିଆ ହୋଇଛନ୍ତି ସେ ରଜାପୁଅଗଣ୍ଡାକ ! ମୁଁ ତତେ ଆଉରି କହିନାହିଁ । ସେମାନଙ୍କ ଭିତରୁ ଗୋଟାକୁ ଗର୍ଭିଣୀ ମାଇକିନିଆ ବେଶ କରିଦେଲେ । ତା' ନାଁ ଶାମ୍ବ ନା କ'ଣ । ସେ ଟୋକାଟା ବି ଦେଖିବାକୁ ଏତିକି ସୁନ୍ଦର ଯେ, ମାଇକିନାବେଶ ଖୁବ୍ ତାକୁ ମାନିଲା । ସେମାନେ ସବୁ ମିଶି ହସଖେଳରେ ମାତିଥାନ୍ତି । ଏତିକିବେଳେ ଋଷିମାନେ ସେଇ ବାଟେ ଯିବାକୁ ଚାହିଁଲେ । ମୁଁ ସେମାନଙ୍କୁ ସେଦିନ ସକାଳୁ ଏ ଉତ୍ତର ପାଖ ନଈ ଧାରେ ଧାରେ ବଣ ପାରି ହେବାର ଦେଖିଛି । ଭାରି ତେଜା ଋଷି । କଣ କରିବ – କାଳ ଡାକିଲେ ଆଉ କଣ ଉପାୟ ଅଛି ? ସେ ରଜାଟୋକାମାନେ ଶାମ୍ବକୁ ନେଇ ଋଷିଙ୍କ ଆଗରେ ଠିଆକରେଇଲେ । କହିଲେ, "ହେ ସର୍ବଜ୍ଞ ଋଷି, କହିଲ ଦେଖି ୟା ପେଟରେ ପୁଅ ଅଛି ନା ଝିଅ ଅଛି ?" ତେଜା ଋଷି ଦେଖୁ ଦେଖୁ ଜାଣିଗଲେ, ରାଗରେ ତାଙ୍କ

ଦେହ କମ୍ପିଲା । ସେ କହିଲେ, 'ୟା ପେଟରୁ ଗୋଟିଏ ଲୁହା ମୂଷଳ ଜନ୍ମିବ ! ସେଇ ମୂଷଳ ତମର ବଂଶଟାଯାକୁ ମାରି ଖାଇଯିବ !' – ଏତିକି କହି ସେମାନେ ଚାଲିଗଲେ ।"

ଆଶ୍ଚର୍ଯ୍ୟରେ ଆଖି ଖୋସି ବିନ୍ଧ୍ୟା ପଚାରିଲା, "ସେ ରଜାପୁଅ ସତକୁ ସତ କଣ ଲୁହା ମୂଷଳ ଜନ୍ମ କଲା ?"

– "ଆଉ କ'ଣ ! ଋଷିବାକ୍ୟ କଣ ଅନ୍ୟଥା ହୋଇଥାନ୍ତା ? ସେ ମୂଷଳ କୁଆଡେ ନିଆଁଖଣ୍ଡ ପରି ଝଟକୁଥିଲା । ଏଇ ଶରଫଳା ପରି ଦିଶୁଥିଲା !"

"ସେଉଠୁ"... ଅତି ଉତ୍କଣ୍ଠିତ ହୋଇ ପଚାରିଲା ବିନ୍ଧ୍ୟା ।

ଭୁସ୍‌କିନା ଠିଆହୋଇପଡିଲା ଜାରା । ଶରଫଳା ବନ୍ଧାସରିଥିଲା । ଦୋହରା ଧନୁରେ ଏତେବଡ ଶର ଯୋଖି ସେ ଆମନ୍ଥିଲା । ଟଙ୍କାରିଲା । ତା' ମୁହଁରେ ଗଭୀର ତୃପ୍ତି ଲେପିହୋଇଗଲା – ସତେବା ଜୀବନସାରା ଏଇ ଧନୁ କମାଣ ଧରିବ ବୋଲି ସେ ଅପେକ୍ଷା କରିଥିଲା !

"ମୁଁ ବାହାରିଲି, ଫେରିବି ବେଳ ବୁଡିଲେ । ମୋ ହାବୁଡରୁ ଆଜି କେହି ବର୍ତ୍ତିବେ ନାହିଁ । କିଛି ନ ପାଇଲେ ସୁରଙ୍ଗ ଫଳପରି ସୂର୍ଯ୍ୟକୁ ଗୁନ୍ଥିଦେବି ଏହି ଶର ଫଳାରେ । ମତେ କଣ ରଖିଚୁ ଦେ ଖାଇବାକୁ ।"

ବିନ୍ଧ୍ୟା ଡରିଲାପରି ଉଠିଗଲା । ଶିକାରେ ଓହଳିଥିବା ହାଣ୍ଡି ପଲମ ଟେକି କାଢିଲା ପୋଡା କନ୍ଦା ଚାରିଖଣ୍ଡ, ଦରପାଚିଲା କୋଳି ଗଣ୍ଡାଏ । ଜାରା ଆମିଷ ଖାଇବାକୁ ଭଲପାଏ । ତା' ଘରେ ଯେତେବେଳେ ଖୋଜିଲେ ଜନ୍ତୁ ଫଡିଆଟାଏ ଝୁଲୁଥାଏ । କେମିତି କେଜାଣି ବିଗତ ଦୁଇ ଦିନଧରି ସେ ଜମା ମୂଷାପିଲାଟାଏ ସୁଦ୍ଧା ଶିକାର କରିପାରିନାହିଁ । କାହିଁ କେତେ ବାଟ ବଣ ଭିତରେ ଖେପି ଆସିଛି । ରାଗରେ ଗଛ ଦେହରେ ତୀର ମାରିଚି । କିଛି ନ ପାଇ ଖାଲିହାତରେ ଫେରିଆସିଚି । ସେ କନ୍ଦା ଗଣ୍ଡାକ ବିନ୍ଧ୍ୟା ଖୋଳି ନ ଆଣିଥିଲେ କଣ ହୋଇଥାନ୍ତା କେଜାଣି ? ଭୋକବେଳାରେ ରାଗିଯାଇଥିଲେ ଜାରା ବୋଧେ ଆକାଶକୁ ସୋରା ସୋରା ଚିରି ରକ୍ତ ନିଗାଡି ଦେଇଥାନ୍ତା ।

ଜାରା କିଛି ନକହି ମୁହଁ ପୋତି ଖାଇଗଲା ଦିଖଣ୍ଡ ପୋଡା କନ୍ଦା । କଷା କୋଳିକୁ ଆଡେଇ ଥୋଇଦେଲା । ସେଗୁଡାକ ସେ କେବେ ଖାଏନାହିଁ ।... ବିନ୍ଧ୍ୟା ଆଉ ଖଣ୍ଡେ କନ୍ଦା ଯାଚିଲା । ତା' ଗେରସ୍ତକୁ ସେ ଜାଣେ । ଜାରା ଗାଉଁଗାଉଁ ହୋଇ ଉଠିଗଲା । ତା' ପାଟି କନ୍ଦାରେ ଭର୍ତ୍ତି ହୋଇ ରହିଗଲା ।

ସେ ସେମିତି ଭର୍ତ୍ତି ପାଟିରେ ପଛକୁ ନଚାହିଁ ଧନୁ ତୀର ଧରି ବାହାରିଲା । ତା' ଡାହାଣ ହାତରେ ଫାର୍ସା, ଅଣ୍ଟାରେ ଛୁରୀ, ମୁଣ୍ଡରେ ଠେକା, ଠେକାରେ ଭରତିଆ ପକ୍ଷୀର ପର । 'ବାଃ, ଏମିତି ମର୍ଦ୍ଦ ଭଲା ଏ ସୃଷ୍ଟିରେ କିଏ ଅଛି ?' ବିନ୍ଧ୍ୟା ଚାହିଁରହିଲା ପଛରୁ । ଜାରା ଓହ୍ଲେଇଗଲା ଦୁରନ୍ତ ଅରଣ୍ୟକୁ ।

ଦକ୍ଷିଣ ଦିଗରୁ ପୁଣି ଶୁଭିଲା ଗୋଳ । ଏରକା ବଣଆଡୁ ଆର୍ତ୍ତନାଦ ଶୁଭିଲା । ବିନ୍ଧ୍ୟା ଅନ୍ୟମନସ୍କ ବସି କନ୍ଦାପୋଡାଟିଏ ଅନେକ ସମୟ ଯାଏ ଖାଇଲା । ମଝିରେ ମଝିରେ ଖୁବ୍ ପାଟି

ଶୁଭୁଥିଲା । ତାକୁ ମନେହେଉଥିଲା ଯେ ଅନେକ ଗୁଡାଏ ଲୋକ ଏକାଠି ଟହଟହ ହସୁଛନ୍ତି । ବଣ ଫାଟିପଡୁଛି ତାଙ୍କ ହସରେ । ଆଉବେଳେ ଚିତ୍କାର ଶୁଣି ବିନ୍ଧ୍ୟା ଚମକି ପଡୁଥିଲା – ହାଣଖିଆ ଜନ୍ତୁର ବୋବାଳିପରି ସେ ଶବ୍ଦ । ଓଃ କେହି ଜଣେ ରାଜକୁମାର ବୋଧେ ତା' ବୁକୁରେ ଶର ଭେଦିଯିବାରୁ ସେମିତି ପାଟି କରୁଥିଲା ! ତା' ବାହୁରେ ବୁକୁରେ ମୁକ୍ତାମାଳ । ବିନ୍ଧ୍ୟା ଆଉ ଚୋକିପାରିଲା ନାହିଁ । ପୋଡା କନ୍ଦାର ବହଳିଆ ବୋଳ ତା' ତୋଟିରେ ଲାଖିଗଲା ।

ସେ ଉଠିପଡି ଥରେ ଚାହିଁଲା ଜାରା ଚାଲିଯାଇଥିବା ଅରଣ୍ୟ ଆଡେ । ଫେରିଆସି ଟରବରିଆ ରଖାଥୁଆ କରି ଭାଲ କାନ୍ଧେଇ ଓହ୍ଲେଇଗଲା ଦକ୍ଷିଣ ଦିଗକୁ ବେଳୁବେଳ ଗୁମୁକି ଉଠୁଥିବା ତୁମୁଳ ଶବ୍ଦ ଆଡକୁ । ପାହାଡମୂଳରେ ଅଗ୍ନାଗ୍ନି ବନସ୍ତ । ଖରା ଭେଦିପାରେ ନାହିଁ ଭୂଇଁ ପର୍ଯ୍ୟନ୍ତ । ବାହୁକୁ ବାହୁରେ ଛନ୍ଦି ମଲ୍ଲ ବୀର ପରି ମହୀରୁହମାନେ ଆଚ୍ଛାଦି ରଖିଛନ୍ତି ବନଭୂମି ।

ବିନ୍ଧ୍ୟା ଶବରୀ ଶବ୍ଦ ବାରି ଆଗେଇଯାଉଥାଏ । ନିକଟେଇ ଆସୁଥାଏ ଏରକା ବଣ । ତାକୁ ମନେହେଲା ଭୂଇଁ ଦୁଲୁକୁଚି – ହାତୀପଲ ପଲାସିଗଲେ ପାହାଡମୂଳରେ ତା' ବସା ସେମିତି ଦୂରୁଦୂର ହୁଏ ନିଛାଟିଆ ଦ୍ୱିପ୍ରହର ବେଳାରେ । ବିନ୍ଧ୍ୟାର ବୁକୁ ଦାଉଁ ଦାଉଁ ହେଲା । ଶ୍ରମଝାଳ ଜକେଇଗଲା କପାଳ ଉପରେ । ସେ କିନ୍ତୁ ଆଉରି ବେଗରେ ଅରଣ୍ୟ ଭେଦିଗଲା । ପାହାଡ ଚଢି ଓହ୍ଲେଇଲା । ଝରଣା ପାରିହେଲା । ତା'ପରେ ଉଚ୍ଚ ପାହାଡଟାଏ । ସବା ଶେଷ ପାହାଡ ।

ତା'ରି ମୂଳେ ପହଞ୍ଚିଲା ବିନ୍ଧ୍ୟା । ସେଇଟା ପାରିହୋଇଗଲା ପରେ ରଜାପୁଅଙ୍କ ଖେଳ ସେ ଦେଖିପାରିବ । କିନ୍ତୁ ସବୁ କେମିତି ହଠାତ୍ ଥମିଗଲା ସେଇ ପାହାଡମୂଳରେ । କିଛି ଶବ୍ଦ ଆଉ ଶୁଣାଗଲା ନାହିଁ । ଖୁବ୍ କାନେଇଲେ କାହିଁ କେଉଁ ଦୂରରେ ଆକାଶରେ ମେଘ ଗୁମୁରିଲା ପରି ଅଳ୍ପ କଣ ଶୁଭିଲା । ସେ ଜାଣିଥିଲା ସେ ପାଚେରି ପରି ନିଘଞ୍ଚ ପାହାଡଟା ଶବ୍ଦର ବାଟ ଜଗି ଠିଆହୋଇଥିଲା । ତା' ଶିଖକୁ ଚଢିଗଲେ ସବୁ ଶୁଭିବ, ସବୁ ଦିଶିବ । ମୁକୁଳି ଯିବ ଆଖି ଆଗରେ ପଥୁରିଆ ବିସ୍ତୀର୍ଣ୍ଣ ଟାଙ୍ଗି । ସେଇଠି ସେ ଯୂଥ ଯୂଥ ହରିଣଙ୍କୁ ଦୂବ ଖୁଣ୍ଟିବାର ଦେଖିଛି, ହାତୀପଲକୁ ଅଳସ ଶୁଣ୍ଢ ଟେକି ଖରା ପୋଇଁବାର ଦେଖିଛି । ଏଡେ ବଡ ପଡିଆ । ଖରାରେ ଝଲମଲ କରିବାର ଦେଖିଛି । ତେଡେ ବଡ ବିସ୍ତାର ଭୂମି ଉପରେ ଗଛଟିଏ ଉଠିନାଇଁ । କେଉଁ କାଳୁ ସେମିତି ଟାଙ୍ଗରା ପଡିରହିଛି । ରଜାପୁଅଙ୍କ ଥାଟକୁ ନ ହେଲେ ଆଉ କେଉଁଠି ସମ୍ଭାଳିଥାନ୍ତା ?

ବିନ୍ଧ୍ୟା ପାଦେ ପାଦେ ଉପରକୁ ଉଠୁଥାଏ । ଆରପାଖରେ ଗୋଳ ଗୁମୁରୁଥାଏ ଅଧିକରୁ ଅଧିକ । ସବାଶେଷରେ ସେ ଅସମ୍ଭାଳ ଧାଇଁଲା । ତା' ମନରେ ଉଚ୍ଚାଟ ଜୁଆରି ଉଠିଲା । ଧଇଁସଇଁ ହୋଇ ସେ ପାହାଡ ଚଢୁଥାଏ । ଭାଲ ମୁହଁରେ ମାଟିକୁ ଭୁସୁଥାଏ । ଗୋଟିଏ ଢିମା ପଥର ଉହାଡରୁ ହଠାତ୍ ସେ ତଳକୁ ଚାହିଁ ସ୍ତବ୍ଧ ହୋଇଗଲା ।

ସେ ପ୍ରଥମେ ଭାବିଲା ଗୁଗୁଡି ରଙ୍ଗର ମେଘ ଘୋଟିରହିଛି ସେ ଅଞ୍ଚଳକୁ, ଯା'ପରେ ସେ ଗ୍ରାସିଯିବ ଏ ସମସ୍ତ ପାହାଡଚୂଳ । ଏଇଟା ଦୁଧିଆଳୀ ମେଘ ନୁହେଁ, ଏ ସେଇ କାଳ-ବୈଶାଖୀ । ତା' ଭିତରେ ତାତିଲା ଝାଞ୍ଜି ପବନ-ନିଶ୍ୱାସ ରୁନ୍ଧିଲା ପରି ଶୁଖିଲା ଧୂଳି । ସୁ ସୁ ଗର୍ଜନ କରି ସେ

ମାଡିଆସିବ । ସବୁ ଉଞ୍ଚ ତାଳକୁ ମର୍ଦ୍ଦି ଦେବ । ଉପାଡି ପକାଇବ ଲକ୍ଷଣବନ୍ତ ଗଛମାନଙ୍କୁ ।

କିନ୍ତୁ ପବନ କାହିଁ ? ବିନ୍ଧ୍ୟା ତଳକୁ ଆଖିମିଟିକା ମାରି ଅନାଇଲା । ଧାଁ-ଦଉଡ ପାଟିତୁଣ୍ଡ ଚିତ୍କାର କୁହାଟ ହୁଙ୍କାର । ଥରେ ସେ ପଡିଆଟା ଉପରେ ପଲେ ଗୟଳ ଦୁମୁ ଦୁମୁ ଧାଇଁ ଯିବାର ସେ ଦେଖିଥିଲା । ଅସଂଖ୍ୟ ଖୁରାମାଡରେ ଭୂଇଁ ଗୁଣ୍ଡ ହୋଇ ଏମିତି ଧୂଳି ଉଠିଥିଲା । ଏମିତି କୁମ୍ଭୁଥିଲା ପାହାଡ । ଗୟଳ ମାତିଗଲେ ଏମିତି ଏକମୁହାଁ ଧାଆଁନ୍ତି । ତାଙ୍କ ସର୍ବାଙ୍ଗରୁ ବାମ୍ଫ ବାହାରୁଥାଏ । ଗବଗବ ଫୁଟୁଥାନ୍ତି ସେ ଅଥୟ ଜନ୍ତୁ । ଝାଳ ସରସର ହୋଇ ସେମାନେ ତିଅଁନ୍ତି, ଲଢନ୍ତି, ରକ୍ତ-ସରସର ହୁଅନ୍ତି ଓ ସଙ୍ଗମ କରନ୍ତି । ସେଇଠୁ ଥୟ ହୋଇଯାନ୍ତି ଗୟଳମାନେ ।

ବିନ୍ଧ୍ୟା ଶବରୀ ଆଖିରେ ମଟକା ନ ପକାଇ ଚାହିଁରହିଥାଏ, ଚାରିଟାଘୋଡା ଯୋଚାହୋଇଥିବା ଦାଉଦାଉ ଝଟକୁଥିବା ବିଜୁଳି ପରି ଚମକିଯାଉଥିବା ରଥକୁ ! ସେଥିରେ ରାଜାପୁଅ ବସିଥିବ । ତା' ବାହୁରେ ବୁକୁରେ ମୁକ୍ତାମାନ । ସେହିପରି ରଥମାନ ଘିଡିଘିଡି କରି କମ୍ପିଯାଉଥାନ୍ତି । ଏଠିସେଠି ଅଟକୁଥାନ୍ତି । ମୁହାଁମୁହିଁ ପିଟିହୋଇ ଲେଉଟି ପଡୁଥାନ୍ତି । ଏଇଟା ବୋଧେ ଖେଳ ! ରଜାପୁଅ ଢଙ୍ଗର ଖେଳ ।

ସେଇ ଗୋଟାଏ ପଟେ ଖୁବ୍ ଗହଳି । ସେଇଠୁ ଫାଟିପଡୁଛି ଟହଟହ ହସ । ସେମାନେ ସେଇଠି କଣ ଉତ୍ସବ ପାଳିଲାପରି ଦିଶୁଛନ୍ତି । ହାଣ୍ଡିଆ ପିଇଲାପରି ଟଳୁଛନ୍ତି । ହାତ ଧରାଧରି ହେଇ ନାଚୁଛନ୍ତି । ତା'ପରେ ତେଇଁପଡୁଛନ୍ତି ଏ ଧୂଳି ଭିତରକୁ ।

ଏଇଟା କଣ ଖେଳ ? ହେଇ ପରା ଖଣ୍ଡାଚ୍ଛେଟରେ ଜଣକର ବାହୁ ଛିଣ୍ଡିଗଲା । ଆଉ ଜଣକର ମଥା ଛିଣ୍ଡିଗଲା । ପିଚିକାରି ପରି ରକ୍ତର ଫୁଆରା ଉଠିଆସିଲା । ଚିତ୍କାର କରି ସେ ଲୋଟିପଡିଲା – ଏଇଟା କଣ ଖେଳ ? ସମସ୍ତଙ୍କ ହାତରେ ଖଣ୍ଡା ବର୍ଚ୍ଛା । ସମସ୍ତଙ୍କ ହାତରେ ଶର କମାଣ । ସମସ୍ତଙ୍କ ହାତରେ ଏରକାର ଧାରୁଆ ଟାଆଁସା ପତ୍ର । ଏମାନେ ତ ହଣାମରା ହଉଛନ୍ତି । ଏଇଟା ତ ଖେଳପରି ନୁହେଁ । ସେମାନେ କିନ୍ତୁ ନିଶା ଖାଇ ଅଟ୍ଟହାସ କରୁଛନ୍ତି । ଜାଣିପାରୁନାହାନ୍ତି ଖେଳୁଛନ୍ତି ନା ଲଢୁଛନ୍ତି । ଖେଳରେ ଖେଳରେ ମଥା ଛିଣ୍ଡିଯାଉଛି ।

ବିନ୍ଧ୍ୟା ଶବରୀ ଖୁବ୍ ଦୁର୍ବଳ ଅନୁଭବ କଲା । ବାହୁ ଲଗେଇ ଟୋପା ଟୋପା ଝାଳ ପୋଛିପକେଇଲା କପାଳରୁ । ଭାଲଟିକୁ ତଳେ ଶୁଆଇଦେଇ ଢିମା ପଥର ଉପରେ ବସି ଆଖି ବୁଜିଦେଲା । ସମୁଦ୍ର ଗର୍ଜିଲାପରି ତୁମୁଳ ଶବ୍ଦ ତା' ଶିରା-ପ୍ରଶିରାକୁ ଦୋହଲାଇ ଦେଉଥିଲା । ଏତେ ମଣିଷ ଏକାଠି ମିଳି ଏଭଳି ଚିତ୍କାର କରିବା ବିନ୍ଧ୍ୟା କେବେ ଶୁଣିନଥିଲା । ତା' ଭିତରେ କଣ ସବୁ ହେଇଯାଉଥିଲା । ଜିଅଛାଡିଯାଉଥିଲା ସର୍ବାଙ୍ଗରୁ । ଗୋଟିଏ ଆର୍ତ୍ତନାଦର ଅର୍ଥ ଗୋଟିଏ ମୃତ୍ୟୁବୋଲି ସେ ଅନୁଭବ କରିପାରୁଥିଲା । ଏଥିପାଇଁ ସେ ଛିନ୍ନଛତ୍ର ହେଇଯାଉଥିଲା କୌଣସି ଅଜଣା ଆତଙ୍କରେ । ଜନ୍ତୁ ସିନା ମାତିଗଲେ ମରାମରି ହୁଅନ୍ତି – ମଣିଷ ମାତିଲେ ବି ଏମିତି ହୁଅନ୍ତି ବୋଲି ସେ ଜାଣି ନ ଥିଲା । ଜାରା କହୁଥିଲା ସେମାନେ ସମସ୍ତେ ଯଦୁବଂଶୀ । ଗୋଟିଏ ରଜାଘରର ସବୁଯାକ ରଜାପୁଅ । କେହି ତ କାହାରି ବୈରୀ ନୁହନ୍ତି । ତେବେ ?

ତୀର ପରି ବାରମ୍ବାର ଭେଦିଯାଉଥିବା ଆର୍ତ୍ତନାଦକୁ ସେ ଆଉ ତା' ଭିତରେ ସମ୍ଭାଳି ରଖିପାରିଲା ନାହିଁ । ମଟମଟ ଚାହିଁଦେଲା ସାମ୍ନାକୁ । ସମୁଦ୍ର ପରି ଧୂଳି ମାଡିରହିଥିଲା ଚତୁର୍ଦ୍ଦିଗ । ତାରି ଭିତରୁ ଶୁଭୁଥିଲା ଚିତ୍କାର । ଘୋଡାଟାପୁର ଶବ୍ଦ । ରଥଚକର ଶବ୍ଦ । ଅସ୍ତ୍ରଶସ୍ତ୍ରର ଝଣ୍‌ଝଣ୍ ଶବ୍ଦ । ବେଳେବେଳେ କିନ୍ତୁ ଏ ସବୁ ଭିତରେ ଗୁନ୍ଥି ହୋଇ ଶୁଭୁଥିଲା ଟହଟହ ହସ । ବିନ୍ଧ୍ୟା ସେ ହସକୁ ଜମା ବରଦାସ୍ତ କରିପାରୁନଥିଲା । ତା'ର ମନେହେଉଥିଲା ସତେ ବା ସେମିତି ବେସୁରା ହସୁଥିବା ମଣିଷମାନେ ସମସ୍ତେ ନିଶା ଖାଇ ପାଟିକରୁଛନ୍ତି । କିଛି ଜାଣିପାରୁ ନାହାନ୍ତି । ସେଇ ଅବସ୍ଥାରେ ସେମାନଙ୍କୁ ମରିବାକୁ ବା ମାରିବାକୁ ପଡୁଛି । ସେ ଭାରି ଅଥୟ ବୋଧକରୁଥିଲା ।

ତଥାପି ଗଛଛାଇରେ କାକର ପବନ ବାଜିଯିବାରୁ ତା' ଆତ୍ମା କିଛି ମାତ୍ରାରେ ଥୟ ପଡିଆସିଲା । ଚିତ୍କାରସବୁ ଆସ୍ତେ ଦୁରେଇଗଲାପରି ଲାଗିଲା । ଝାଇଁମାରିଦେଲାପରି କେମିତି ଗୋଟାଏ ନିଦ ନଇଁଆସିଲା ତା' ଆଖିପତା ଉପରକୁ । ଧୂଳିପଟଳରେ ମଧ୍ୟାହ୍ନ ସୂର୍ଯ୍ୟ ମଳିନ ଦେଖାଯାଉଥିଲା ।

ବିନ୍ଧ୍ୟା ଚମକିଲା ପରି ଆଖି ମେଲେଇଦେଲା । କଣେ ଗୋଟାଏ ତାକୁ ଭାଙ୍ଗିରୁଜି ଦେଇଥିବାର ସେ ଅନୁଭବ କଲା । ତା' ବୁକୁ ଦାଉଁଦାଉଁ ପଡୁଥିଲା । ଖର ନିଃଶ୍ୱାସ ବହୁଥିଲା । ସେ ଚେତା ହୋଇ ପ୍ରଥମେ ଜାଣିବାକୁ ଚାହିଁଲା କଣଟାଏ ତାକୁ ଅସବ୍ୟସ୍ତ କରୁଛି । ସେ ଆଖିଖୋଲି ଚାହିଁଲା ଧୂଳି ଓହ୍ଲେଇଯାଇଥିବା ଭୂମି ଉପରକୁ । ଗୋଳ ଆଉ ପ୍ରାୟ ଶୁଭୁନଥିଲା । ପଡିଆସାରା ବିଛେଇ ହୋଇ ପଡିଥିଲା ହାଣଖିଆ ମଣିଷଙ୍କ ଶବ । ରଥ ଲୋଟିପଡିଥିଲେ । ଘୋଡା ମରି ପଡିଥିଲେ ଇତସ୍ତତଃ । ତେଡେ ବଡ ତୁମୁଳ ଶବ୍ଦ ନ ଶୁଭି ଏତେ ନୀରବତା ବୋଧେ ତାକୁ ଚମକାଇଦେଇଥିଲା ।

କେବଳ ଗୋଟିଏ ରଥ ବିଜୁଳିବେଗରେ ଖେପିଯାଉଥିଲା ଏ ଦିଗରୁ ସେ ଦିଗକୁ । ତାକୁ ରୋଧିବାକୁ କାହାରି ଶକ୍ତି ନଥିଲା । ଯେଉଁଠି ଯେ କେହି ଠିଆହେବାର ଦିଶୁଥିଲା ଝପଟିଯାଉଥିଲା ରଥ ସେଇ ଦିଗରେ । ଦଶ-ପଚିଶ ଠିଆହୋଇଥିଲେ ସୁଦ୍ଧା ବାତ୍ୟାମୁହଁରେ କଦଳୀ ଗଛ ଭଳି ଛିନ୍‌ଛତ୍ର ହୋଇଯାଇଥିଲେ । ଖୁରାତଳେ ବା ଚକତଳେ ପେଶି ନହୋଇ ଯେ ବଞ୍ଚିରହିଥିଲା, ତା' ମଥା ଛିଣ୍ଡିଯାଉଥିଲା । ସେଇ ଜଣେମାତ୍ର ସେତିକିବେଳେ ସମସ୍ତଙ୍କୁ ସଂହାର କରିବା ପାଇଁ ଧାଇଁ ବୁଲୁଥିଲା । ବିନ୍ଧ୍ୟାର ନିକଟତମ ସ୍ଥାନରେ ସେ ରଥକୁ ଥରେ ଠିଆକରିଦେଲା । ଘୋଡା ଆଗ ଟାପୁ ଟେକି ହିଁ-ହିଁ-କାର କଲେ । ସେଇଠୁ ମୋଡ କାଟି ସେ ପଛକୁ ଫେରିବାକୁ ହୁଏତ ଚାହୁଁଥିଲା । ବିନ୍ଧ୍ୟା ପରିଷ୍କାର ଦେଖିପାରିଲା ସେ ଅପରୂପ ରାଜପୁତ୍ରକୁ । ତା' ବାହୁରେ ବୁକୁରେ ମୁକ୍ତାମାଳ । ତା' କଳାଭଅଁର ପରି ବାଳ । ତା' ଠାଣି ଝାଳ ସରସର ସୁଠାମ ଦେହ, ତା' ପାଟପଟନିକୁ ଆଖିରେ ପଲକ ନପକାଇ ବିନ୍ଧ୍ୟା ଚାହିଁରହିଥାଏ । ପଶ୍ଚିମରୁ ଢଳନ୍ତା ଖରା ତା' ଦେହରେ ପଡି ଚକ୍‌ଚକ୍ ଦିଶୁଥାଏ । ବିନ୍ଧ୍ୟାର ବୁକୁଭରି ଗୋଟାଏ ଦୀର୍ଘ ଶ୍ୱାସ ଓହ୍ଲେଇଗଲା ତା' ଅଣାୟତ୍ତରେ । ୟାରି ଭଳି ରାଜପୁତ୍ର କଣ ହାଣଖାଇ ଏମିତି ମରିବା କଥା ? ଅଭିଶାପ ନ ପଡିଲେ କଣ ଏମିତି ହୁଏ ? ବିନ୍ଧ୍ୟାର ନାରୀପ୍ରାଣ ବାହୁନିହେଉଥିଲା । ରଥ ମୋଡ ଭାଙ୍ଗି ପଶ୍ଚିମକୁ ମୁହଁକରି ଠିଆହେଲା ।

ବିନ୍ଧ୍ୟା ବଳେ ଚାହିଁଦେଲା ପଶ୍ଚିମକୁ । ସେଇଠୁ ହିଁ ଦିନସାରା ଅଟ୍ଟହାସ ଶୁଣୁଥିଲା । ସେଇଠି ସେମାନେ ନିଶା ଖାଇଲା ପରି ଚାଲୁଥିଲେ । ପାଟିତୁଣ୍ଡ କରୁଥିଲେ । ଜାରା ଦିନେ କହୁଥିଲା ଯେ ଦ୍ୱାରକାର ରଜାପୁଅମାନେ କାଦମ୍ବରୀ ପିଇବାକୁ ଭଲପାଆନ୍ତି । ରାଜାଙ୍କ ବଡଭାଇ ସବୁବେଳେ କାଦମ୍ବରୀ ପିଇ ଭୋଳ ହୋଇ ରହିଥାନ୍ତି । ତାଙ୍କର ଦେଖାଦେଖି ହୁଏତ ଟୋକାମାନେ ପିଉଥିବେ । ସେଇଠୁ ସେମାନେ କାଦମ୍ବରୀ ପିଇ ମାତିଉଠିଥିଲେ । ସେଇଭଳି ହୁଏତ ଟହ ଟହ ହସୁଥିଲେ, ଆଉ ଲଢୁଥିଲେ । ଜାରା ମଧ ନିଶା ଖାଇଲା ଦିନ କିଛି ବାରିପାରେନାହିଁ ।

ବିନ୍ଧ୍ୟା ପଶ୍ଚିମକୁ ଚାହିଁଲା । ତାକୁ ଲାଗିଲା ସେଇଠି ଜଣେ ମାତ୍ର ଯେ ଠିଆ ହୋଇଥିଲେ ସେ ବୋଧେ ରାଜା । ସେତେ ଦୂରରୁ ସେ ଦାଉଦାଉ ଝଟକୁଥିଲେ ବିଜୁଳିପରି । ଆଉ ସେଇଠି କେହି ନଥିଲେ । କେହି ପାଟିତୁଣ୍ଡ କରୁନଥିଲେ । ନିଶାଖାଇ ଟଳୁନଥିଲେ । ସାରା ପଡିଆଟା କେମିତି ସେତେବେଳେ ଥମଥମ ଲାଗୁଥିଲା । ମଝିରେ ମଝିରେ ଦୂରରୁ ଆର୍ତ୍ତନାଦଟିଏ ଶୁଭୁଥିଲା ଏବଂ ପରିଷ୍କାର ଶୁଭୁଥିଲା ଗୋଟିଏ ରଥ ଗଡିବାର ଶବ୍ଦ । ଯଳେ ଘୋଡାର ଟାପୁ ଶବ୍ଦ । କଉଡି ବୁଣିଲା ପରି ସେ ଶବ୍ଦ ସାରା ପଡିଆରେ ବୁଣି ହୋଇ ଯାଉଥିଲା । ଶୂନ୍‌ଶାନ୍ ନିସ୍ତବ୍ଧ ପଡିଆ, ଗେରୁ ରଙ୍ଗର ଧୂଳି ଆସ୍ତେ ପାତଳ ପଡିଆସୁଥିଲା ।

ବିନ୍ଧ୍ୟା ଏକଲୟରେ ଚାହିଁରହିଲା ଅପସରିଯାଉଥିବା ରଥକୁ, ରଥରେ ବସିଥିବା ରାଜପୁତ୍ରକୁ । ସେ କଣ ଉନ୍ମତ୍ତ ହୋଇ ରାଜାଙ୍କୁ ମାରିବାକୁ ସେମିତି କ୍ଷେପି ଯାଉଥିଲା ? ନା, ତା' କେମିତି ହବ ? ସେ' ତ ରାଜପୁତ୍ର । ସେ ହୁଏତ ସମସ୍ତଙ୍କୁ ଜିଣିଚି ବୋଲି ତାଙ୍କୁ ଜଣେଇବାକୁ ଯାଉଥିଲା । ତା' ହାତରେ କିନ୍ତୁ ଖଣ୍ଡା ଝଲସୁଥିଲା । ସେ ବାଁ ହାତରେ ଢାଲ ଟେକିରଖିଥିଲା । ସେ ତଥାପି ନିଶାରୁ ମୁକୁଳି ନଥିଲା । ତଥାପି ସେ ଲଢୁଚି ବୋଲି ଭାବୁଥିଲା ହୁଏତ !

ବିନ୍ଧ୍ୟା ତା'ପରେ ଦେଖିଲା ଏକ ଅତି ଅଦ୍ଭୁତ ଦୃଶ୍ୟ । ସେପାଖେ ରାଜାଙ୍କ ହାତ ଶୂନ୍ୟକୁ ଟେକିହୋଇଗଲା । ଦାଉଦାଉ ହୋଇ ଜଳିଉଠିଲା କଣ ସେଇଟା କେଜାଣି ? ତା'ପରେ ସେ ଅପୂର୍ବ ଠାଣିରେ ବିକ୍ରମିଲା ପରି ଠିଆହେଲା । ବିନ୍ଧ୍ୟାର ଶ୍ୱାସ ରୋଧିହେଲା ପରି ଲାଗିଲା । କଣ ହେବ ତା'ପରେ ? ଘୋଡା ଝପଟି ଚାଲିଗଲେ । ରାଜାଙ୍କ ହାତରୁ ଛିଟିକିଆସିଲା ଦାଉଦାଉ ନିଆଁପଟଳ ପରି ସେ ଅସ୍ତ୍ର । ଆଖି ପିଛୁଳାକେ ଯାହାହେଲା ବିନ୍ଧ୍ୟା ଦେଖି ଟଟସ୍ଥ । ତା' ଦେହ ଠକ୍ ଠକ୍ ହୋଇ ଥରିଲା । ସେ ଚିତ୍କାର କଲା । ସେ ଦେଖିଲା, ସେତେକ ସୁନ୍ଦର ରଜାପୁଅର ମୁଣ୍ଡ ଛିଣ୍ଡିପଡିଲା ତାଳଫଳପରି । କାହିଁ କେତେ ଉଚ୍ଚକୁ ଯାଇ ଉଭାନ୍ ହୋଇଗଲା ! ବିନ୍ଧ୍ୟାର ଚିତ୍କାର ଦୋହରାଇହେଲା ସେ ମଶାଣିପରି ଶୂନ୍‌ଶାନ୍ ପଡିଆରେ । ରକ୍ତ ଉଗାଳୁଥିବା ଗଣ୍ଡିଟାକୁ ଧରି ସେ ରଥର ଘୋଡାମାନେ ଟାଣିନେଇଗଲେ କାହିଁ କେତେ ଦୂରକୁ ।

ବିନ୍ଧ୍ୟା ମୁହଁ ଘୋଡେଇ ହାଉହାଉ ହୋଇ କାନ୍ଦିଲା । ନିଜ କାନ୍ଦ ଲେଉଟିଆସିଲା ସେ ଶୂନ୍ୟ ପଡିଆରୁ । ବିନ୍ଧ୍ୟା ଡରିଗଲା । ସେମିତି ସେ ଶୂନ୍ୟ ଭିତରେ ବସିରହିଲା କିଛି କାଳ । ଆଉ ଆଖି ଟେକି ସେ ଆଡକୁ ଚାହିଁବାକୁ ତା'ର ସାହସ ହେଲା ନାହିଁ । ଆସ୍ତେ ଭାଲଟିକୁ ଗୋଟେଇ ସେ

ଓହ୍ଲେଇଗଲା ଆରପାଖକୁ ।

X X X X

ଜାରା ଫେରିଲାବେଳକୁ ରାତି ଘଡିଏ । ବିନ୍ଧ୍ୟା ଜାଣିପାରିଲା ପାଦଶବ୍ଦରୁ । କିନ୍ତୁ ଏମିତି ଭାରି ଭାରି ପାହୁଣ୍ଡ କାହିଁକି ପକଉଛି ଜାରା ? ସେ କଣ ଅସୁସ୍ଥ ? ବିନ୍ଧ୍ୟା ଭୟରେ ଅପେକ୍ଷା କଲା । ଆଜିପରା ଦିନରେ କଣ ହେଇଥିବ କେଜାଣି ?

ପୋଲାଙ୍ଗ ମଞ୍ଜିରୁ କାଠି ଜଳୁଥାଏ । ଜାରା ଆସି କୁଡିଆର ଦୁଆର ମୁହଁରେ ଠିଆ ହେଲା । ସେ ଦିଶୁଥିଲା ଅତି ଭୟଙ୍କର । ତା' ଆଖି, ତା' ଭ୍ରୂଲତା, ତା' ମୁହଁ, ନିଶ ବିକଟାଳ ଦିଶୁଥିଲା । ହତଶ୍ରୀ ଦିଶୁଥିଲା । ବିନ୍ଧ୍ୟା ଉଠିଯାଇ ତା' ହାତରୁ ଧନୁ କମାଣ କାଢି ଥୋଇ ଦେବାକୁ ଚାହିଁଲା ।

ଶୂନ୍ୟକୁ ଚାହିଁ ଜାରା କହିଲା, "ଛୁଁ ନା ମତେ । ଛୁଁ ନା ଏ ଧନୁତୀରକୁ!" ବିନ୍ଧ୍ୟା ଘୁଞ୍ଚିଗଲା । କିଛି ବୁଝିପାରିଲା ନାହିଁ । ପଚାରିବାକୁ ସାହସ କଲାନାହିଁ ।

ଜାରା ଧନୁ ତୂଣୀରକୁ ଘରକୋଣରେ ଡେରିଦେଲା । ଲାଉତୁମ୍ବାରୁ ପାଣି ଟେକି ଠିଆ ଠିଆ ପିଇଦେଲା । ଅଧେ ତ ବୁକୁ ଓଦାକରି ନିଗିଡଗଲା ପାଣି ।

ବିନ୍ଧ୍ୟା ଛେପ ଢୋକି ଚାହିଁଥାଏ । ନିଶ୍ଚୟ କଣ ଗୋଟାଏ ଗୁରୁତର କଥା ଘଟିଚି – ନ ହେଲେ ଜାରା ଏମିତି ହୁଅନ୍ତା ନାହିଁ । ବିନ୍ଧ୍ୟା ଚୁପ୍‌ଚାପ ଅପେକ୍ଷା କଲା ।

ଜାରା ତଳକୁ ମୁହଁକରି ବସିଥାଏ । ମନକୁ ମନ କଥା କହିଲା ପରି କହିଲା, "ଆଜି ଦ୍ରୋହ କରିଛି । ଏଇ ଶରମାଡରେ ଦ୍ୱାରକାର ରାଜାଙ୍କୁ ମାରିଦେଇଛି ।"

ତା'ପରେ ହଠାତ୍ ମୁହଁ ଟେକି ଜୋର୍‌ରେ କହିଲା, "ମୁଁ କଣ ଜାଣିଶୁଣି ମାରିଚି । ମୁଁ କହୁଚି, ମତେ ବିଶ୍ୱାସ କର, ମୋ ଅଜାଣତରେ ମିରିଗ କାନ ଭାବି ମୁଁ ଶର ମାରିଥିଲି ।"

ମୁଣ୍ଡ ପୁଣି ତଳକୁ କରିନେଇ ଅନୁଚ୍ଚ ସ୍ୱରରେ କହିଲା, "ମୁଁ କଣ ଜାଣିଥିଲି ସେଇଟା ତାଙ୍କ ପାଦ ବୋଲି ? ଶିଆଳିଲଟା ଗହଳରେ ସେମିତି ସେ ଶୋଇଛନ୍ତି ବୋଲି କଣ ମୁଁ ଜାଣିଥିଲି ।" ଜାରା ନୀରବରେ ବୁଢା ଆଙ୍ଗୁଠିରେ ମାଟି ଖୁରଉଥିଲା । ବିନ୍ଧ୍ୟା ବୁଝିଗଲା ଯେ ଜାରା ଭାରି ବୋଝତଳେ ଟଳମଳ ହଉଚି । ସେ ଆସ୍ତେ ଯାଇ ତା' ପିଠିରେ ହାତ ରଖିଲା । ମୁଣ୍ଡ ଆଉଁସିଦେଲା ।

"କିରେ, କଣ ଏମିତି କହୁଚୁ ?" ବିନ୍ଧ୍ୟା ଭିତରେ ରାଜପୁତ୍ରମାନଙ୍କର ଚିତ୍କାର ତେବେ ବି ଗୁମୁରୁଥିଲା । ଆଖି ଆଗରେ ଛିଣ୍ଡିପଡୁଥିଲା ମୁକୁଟପିନ୍ଧା ମୁଣ୍ଡ ।

ସେ ତଥାପି ଜାରାକୁ ସମ୍ଭାଳି ଧରିଲା । ଜାରା ବିନ୍ଧ୍ୟାକୁ ଚାହିଁଲା । ତା' ଆଖି ରଙ୍ଗଜରଜର ହୋଇ ମନ୍ଦାର ପାଖୁଡା ପରି ଥୋପିପଡୁଥିଲା । ଥଙ୍ଗେଇ ଥଙ୍ଗେଇ ସେ କହିଗଲା । କେମିତି ସେ ଦିନସାରା ବୁଲି ବୁଲି ଗୋଟିଏ ହେଲେ ଜନ୍ତୁ ପାଇଲା ନାହିଁ । କେମିତି ବେଳବୁଡ ସମୟକୁ ସେ ଲଟାଗହଳରେ ମିରିଗ କାନକୁ ଶର ମାରିଦେଲା । ସେଇ ଚାଖଣ୍ଡେ ଡେଙ୍ଗ ନୂଆ ଶରଫଳା ! ଯାଇ ପାଖରେ ପହଞ୍ଚି ଯାହା ଦେଖିଲା, ସେଥିରେ ସେ ଝିମି ଖାଇଗଲା । କେତେ କର୍ମ କଲିରେ ବୋଲି ବୁକୁ ବାଡେଇ ହେଲା ।

ସେମିତି ଶୋଇରହି ସେ ତାକୁ ଚାହିଁଲେ । ସେ ଚାହାଣି ସେ ଆଖି କଥା କହି ଜାରା ପୁଣି ମୁହଁ ତଳକୁ କରିଦେଲା । ତାକୁ ଶର କାଢିନେବାକୁ ସେ ଠାରିଥିଲେ । ଅଳ୍ପ ହସି ଚାହିଁଥିଲେ । ହାତୀଛୁଆଟିଏ ଥରେ ଜାରା ଶରମାଡାରେ ଟଳିପଡିଥିଲା । ଜାରା ତା' ପାଖରେ ଯାଇ ଠିଆହେବାରୁ ତା' କଅଁଳିଆ ଶୁଣ୍ଢରେ ତାକୁ ସାଉଁଳି ଦେଇଥିଲା । ଜାରା ସେଇ ଦିନରୁ ପଣ କରିଥିଲା ଆଉ ହାତୀ ଉପରକୁ ବାଣ ଉଞ୍ଚାଇବ ନାହିଁ । ଶର ଭେଦି ରହିଥିଲା ସେ ସୁକୁମାର ପାଦରେ । ତାକୁ କାଢିବାକୁ ସେ ଠାରିଦେଲେ । ଅଳ୍ପ ହସିଦେଲେ । ଜାରାର ଭିତର ସବୁ ପଥର ଗୁଣ୍ଡ ହୋଇ ଚୂରିହେଇଗଲା । ତରଳି ବୋହିଲା ପାଣି ପରି । ସେ ଜୀବନରେ କେବେ କାନ୍ଦି ନ ଥିଲା । ସାରା ଜୀବନର ସବୁଯାକ ଲୁହ ଅଜାଡି ହେଇଗଲା ସେଇଠି । ଲୁଣି ପାଣିରେ ବତୁରିଯାଇଥିଲା ତା' ରଙ୍ଗ-ଟହଟହ ଆଖି ।

ବିନ୍ଧ୍ୟା ଜାରାକୁ ଆଉଁସି ଦେଲା । ଅନେକ ସମୟ ପରେ ତା' ବୁକୁର ବୋଝ ଓହ୍ଲେଇବାରୁ ସେ ବଖାଣିଗଲା ତା' ଦେଖିଥିବା କଥା । ଜାରା ସ୍ତବ୍ଧ ହେଇ ଶୁଣିଲା ।

ନିର୍ଜନ ଅରଣ୍ୟରେ ଅଧରାତିଯାଏ ପରସ୍ପରକୁ ଜାକିଜୁକି ହୋଇ ସେମାନେ ନିରାହାର ବସିରହିଲେ । ପୋଲାଙ୍ଗ ମଞ୍ଜିର ତାଙ୍ଗ ଲିଭିଗଲା ।

ବହଳ ଅନ୍ଧାର ଭିତରେ ବୁଡିଗଲା ସୂର୍ଯ୍ୟ – ଆଉ ଥରେ ଉଇଁବ ବୋଲି ସେମାନଙ୍କର ବିଶ୍ୱାସ ହେଉନଥିଲା ।



## ଦ୍ରୌପଦୀ ବିବସ୍ତ୍ର ଉପାଖ୍ୟାନ

### (ନାରାୟଣ ଅବଧୂତ ସ୍ୱାମୀ ମାର୍ଗେଣ ଗୀୟତେ)

କନକ ପ୍ରତିମା ପ୍ରାୟେ / ସେ ଚମ୍ପାବରଣୀକୁ / ଦ୍ରୁପଦ ଦୁଲାଳୀକୁ / ଦେହଳି ଉହାଡକୁ / ସେ ନିରେଖିଲା /

ତା' ଭୃରୁ କମ୍ପିଲା / ଉରୁ କମ୍ପିଲା / ମନ୍ଦାର ପାଖୁଡା ପ୍ରାୟେ ନେତ୍ର ତରାଟିଲା / ସେ ଧୃସାବୀର /

ଝପଟି ଧାଡିକାରେ / ବିଜୁଳୀ ବେଗରେ / ମୃଗୀକୁ ସିଂହ ଆକର୍ଷିଲା ପ୍ରାୟେ / ରାଜନନ୍ଦିନୀର କେଶ ଆକର୍ଷିଲା / ମତ୍ତମାତଙ୍ଗ କି ଅବା ଫୁଟିଲା ପଙ୍କଜକୁ ଘଷାଳିଲା /

ତେମନ୍ତ ସେ ପଙ୍କଜନୟନୀ / ଭୂତଳେ ଲୋଟିଲା / ବିଳପିଲା / ସିଂହୀ ପ୍ରାୟେକ ଗର୍ଜିଲା / କୁରରୀ ପ୍ରାୟେ ରୋଦିଲା / ବାହୁନିଲା / କିରାତ ଜାଲରେ କପୋତୀ ପ୍ରାୟେ ଫଡକିଲା / ପାଦ ପ୍ରହାରିଲା / ନଖେ ବିଦାରିଲା / ଦଶନେ ଦଂଶିଲା / ତର୍ଜିଲା / ଗର୍ଜିଲା / ଶ୍ରମଝାଳେ ତିନ୍ତିଲା / ସେ ସୁକୁମାରୀ ରାଜନନ୍ଦିନୀ /

ଆଞ୍ଚୋଡା ଖାଇ ସେ ଧୃସାବୀର / ଦାନ୍ତ କାମୋଡିଲା / ଓଠ କାମୋଡିଲା / କ୍ରୋଧେ କମ୍ପିଲା / ରେରେକାର କଲା / ଡେମ୍ଫ ଧରି ପୁଷ୍ପେକ ତୋଳିଲା ପ୍ରାୟେ / ରାଜନନ୍ଦିନୀର କେଶଧରି / ଶୂନ୍ୟେ ଉଞ୍ଚାଳିଲା / ସେ ଧୃସାବୀର /

ଟହ ଟହ କୁହାଟିଲା / ନିଜ ହସ୍ତେ ନିଜ ଉର ବିମର୍ଦ୍ଦିଲା / କାମାର୍ତ୍ତ ବୃଷଭ ପ୍ରାୟେ ଢଙ୍କାରିଲା / ଶୃଙ୍ଗାରେ ଚହିଁଲା ରାଜନନ୍ଦିନୀକୁ / ଅନ୍ତେ ହସିଲା / ବିଲୋଳ ଚହିଁଲା / ନିଶକୁ ମୋଡିଲା / ବାହୁ ଟଣକିଲା / ଅଟ୍ଟହାସ କଲା / ସେ ଧୃସାବୀର /

ବଟଶାଖରୁ ବିଲମ୍ବିତ ସର୍ପିଣୀ ପ୍ରାୟ / ଲୁହାଶାଳରୁ ସଦ୍ୟଜାତ / ତପତ କୃପାଣ ପ୍ରାୟେ / କ୍ରୋଧେ ପ୍ରଜ୍ଜ୍ୱଳିତା / ସେ ଅଗ୍ନିସମ୍ଭବା / ନିର୍ଘୋଷ କୁହାଟ କଲା /

ପୃଥିବୀ କମ୍ପିଲା / ଆକାଶ ନିନାଦିଲା ସେ ଦିଗ୍‌ବିଦିଗ / ମନ୍ଦର ଧସିଲା ରସାତଳ / ସିନ୍ଧୁ ଉଚ୍ଛୁଳିଲା / ଅରଣ୍ୟ ଲୋଟିଲା ଅଣଞ୍ଚାଶ ପବନରେ / ଅନ୍ଧାର ଘୋଟିଲା / ବାତ୍ୟା ବିମର୍ଦ୍ଦିଲା / ପ୍ରଳୟକାଳ ସଦୃଶ ଶଙ୍କୁନମାନ ଦୃଶ୍ୟ ହେଲା /

ତା' ମୋହ ଭାଙ୍ଗିଲା / ଭୟେ ସାଙ୍କୋଡିଲା ସେ ଧୁସାବୀର / ତା' ନାଭିମଣ୍ଡଳ କମ୍ପିଲା / ରୋମ ଟାଙ୍କୋରିଲା / ସେ ଅତର୍କେ ଝପଟିଲା / କି ଖାଲଢିପ ନ ମାନିଲା / ରାଜନବରୁ ରାଜସଭା ଯାଏ / କେମନ୍ତେ କ୍ଷେପିଲା / ଜାଣି ନ ପାରିଲା / ସେ ଧୁସାବୀର /

ମାନେ ମାନଗୋବିନ୍ଦ / ସେ ରାଜା ଦିର୍ଯୋଧନ / ମଣିକାଞ୍ଚନ ଝରାଝୁମ୍ପା / ହୀର ବଲ୍ଲରୀ ସୁଶୋଭିତ / ସେ ସଭାମଣ୍ଡନ / ସିଂହାସନେ ବିଜେ / ସେ ରାଜା ଦିର୍ଯୋଧନ / ବାମେ କର୍ଣ୍ଣବୀର / ଦକ୍ଷିଣେ ଶକୁନି / ଆଗ୍ରେ କୁରୁ କୁଳାଗ୍ରଣୀ ଅନ୍ଧରାଜା / ସଭା ପିଣ୍ଡାରେ / ଉଚ୍ଚ ଆସନରେ / ବିଜେକରିଛନ୍ତି / ପିତାମହ ଭୀଷ୍ମ / ଗୁରୁ ଦ୍ରୋଣାଦି / ମହନତ ପୁରୁଷମାନେ /

କିରାତ କପଟଜାଲ ପ୍ରାୟେ / ସଭାସ୍ଥଳେ ପଶାପାଲି / ପରାସ୍ତ ପାଣ୍ଡବେ / ପାଶବନ୍ଧ ମୃଗେନ୍ଦ୍ର ସଦୃଶ / ହେଠମାଥ ବସିଛନ୍ତି / ପଶାଖେଳରେ ଧର୍ମରାଜ ହାରିଲେ / ପାଣ୍ଡବେ ହାରିଲେ / ଧର୍ମହାରିଲେ / କୁଳପୁରୁଷମାନେ ହାରିଲେ /

ସେ କପଟପାଶା / ସେ ଉନ୍ମାଦ ନିଶା / ତାଙ୍କୁ ଘାରିଲା / ଦିର୍ଯୋଧନ ଆମନ୍ତ୍ରିଲା / ଶକୁନି ପ୍ରଲୋଭିଲା / ଖଳ ଦୁର୍ବଳ ଆବୋରିଲେ /

ଆହା ଧର୍ମରାଜ / ବିବେକୀ ଚୂଡ଼ାମଣି / ଚେତି ନ ପାରିଲେ / ସୁଜାଣ ରାଜା ଅନ୍ଧ ପ୍ରାୟେକ ଆଚରିଲେ / ଗଜବାଜି ସୈନ୍ୟ ବାଜି ମାରିଲେ / ରାଜ୍ୟ ରାଜସିଂହାସନ ହାରିଲେ / ଏକେ ଏକେ ତ୍ରିପୁର ଜିଣନ୍ତା / ସେ ଭାଇମାନଙ୍କୁ / ଏକେ ଏକେ ହାରିଲେ / ନିଜକୁ ହାରିଲେ / ହାର କେୟୁର ତେଜି ଦାସତ୍ୱକୁ ଭଜିଲେ / ଆପଣେ କୁଳମର୍ଯ୍ୟାଦା ଲଙ୍ଘିଲେ / କୁଳବଧୂ ସେ ଯେ ରାଜବଧୂ / ରାଜନନ୍ଦିନୀ ସେ ଯେ ଦ୍ରୁପଦନନ୍ଦିନୀ / ପାଣ୍ଡବଘରଣୀ ସେ ଯେ ଯାଜ୍ଞସେନୀ / କାଶ୍ମୀର ଘୋଟକୀ ସଦୃଶା ଶୁଭାଙ୍ଗୀ / ବରବର୍ଣ୍ଣିନୀ ଦୌପଦୀକୁ ବାଜି ଲଗାଇ ସବୁ ଜିଣିଯିବାକୁ ପ୍ରଲୁବ୍ଧ ହେଲେ / ଶକୁନୀକପଟ ବୁଝି ନ ପାରିଲେ / ଆହା ଧର୍ମରାଜ / ଦୌପଦୀକୁ ସୁଦ୍ଧା ହାରିଲେ /

ଏସନେକ ରାଜସଭାରେ / ମୁକୁଟହୀନ / ମୁରାଟହୀନ ହୋଇ / ଧର୍ମରାଜ / ବସିଲେ / କେତୁଗ୍ରସ୍ତ ସୂର୍ଯ୍ୟ ପ୍ରାୟେ / ଲୁହା ଶିଙ୍କୁଳିରେ ଆବଦ୍ଧ ଗଜରାଜ ପ୍ରାୟେ / ପାଣ୍ଡବେ ବସିଲେ / ଅଗ୍ନି ପ୍ରାୟେ ଦାରୁଣ ଅବସାଦ / ତାଙ୍କ ଉଦର ଜାଳିଲା / ଅଙ୍ଗରୁ ସେଦ ଉଦ୍‌ଗାର ହେଲା / ଅଗ୍ନି ଧାସରେ ମୁଖମଣ୍ଡଳ / ଆରକ୍ତିମ ହେଲା / ହେଠମାଥ ବସିଲେ / ଶତସିଂହ ପରାକ୍ରମୀ ବୃକୋଦର / ଯେହୁ ହୁଙ୍କାରିଲେ କୌରବେ ମୂର୍ଚ୍ଛାଯାନ୍ତି / ଯାହା ଭୁଜଦଣ୍ଡ ବାଜି ଶାଳ ଶାଳ ଛିଣ୍ଡି ପଡନ୍ତି / ଅଣାୟତ ଅଗ୍ନିପାନ କରି ବସିଲେ / ଧନୁର୍ଧର ଧନଞ୍ଜୟ / ଆରକ୍ତ ବଦନରେ / ଆନତ ବଦନରେ

ବସିଲେ / ମାଦ୍ରିତନୟ / ଅଗ୍ରଜଙ୍କ ପରାଭବକୁ / ନିଜ ପରାଭବ ମଣିଲେ ପାଣ୍ଡବେ / ଏମନ୍ତ ସମୟେ / ଦମଦମ ପାଦଘାତରେ / ଭୂମି ଦୁଲ୍କାଇ ବାହୁ ଉଲୁସାଇ / ଭ୍ରୂଲତା ନଚାଇ / ନେତ୍ର ଚମକାଇ ପ୍ରବେଶିଲା / ସେ ଧୁସାବୀର / କେଶ ଆକର୍ଷି ଘୋସାଡିଲା / ଶୂନ୍ୟେ ଟେକି କଚାଡିଲା / ସେ ଅବଳାକୁ / ପାଞ୍ଚାଳୀର ଆର୍ତ୍ତନାଦରେ ସଭାସ୍ଥଳୀ / ମଞ୍ଚ ସିଂହାସନ / ଦେହଳି ମଣ୍ଡପ / ଚନ୍ଦ୍ରାତପ / ମନ୍ଦ୍ରିତ ହେଲା / ମଥିତ ହେଲା / ଏ ଦୃଶ୍ୟ ଦେଖି ନଦେଖିଲା ପ୍ରାୟେ / ଏ କାରୁଣ୍ୟ ଶୁଣି ନ ଶୁଣିଲା ପ୍ରାୟେ / ସଭାଜନେ / ବୃଦ୍ଧଜନେ / କୁଳାଗ୍ରଜମାନେ / କାଷ୍ଠ ପାଷାଣ ହେଲେ /

ମଞ୍ଚାସୀନ / ସେ ଦିର୍ଯୋଧନ / ସଦର୍ପେ ଚାହିଁଲା / ପାଣ୍ଡବଘରଣୀକୁ / ରୋରୁଦ୍ୟମାନା / ରାଜନନ୍ଦିନୀକୁ / ସରୋଷେ ଚାହିଁଲା / ବଦ୍ଧ ଛାଗଳ ପ୍ରାୟେ / ଦିଗ୍‌ବିଜୟୀ ପାଣ୍ଡବଙ୍କୁ / କିରାତ ଜାଲରେ ପଡିଥିବା / ଆରତେ ଭାବୁଥିବା / ମଉନେ ସହୁଥିବା / କପୋତ କପୋତୀକୁ /

ସହର୍ଷେ ଝୁଲିଲା / ସେ ଦିର୍ଯୋଧନ / ତା' ବାହୁ ବକ୍ଷ ଉଦର ସଘନେ ସ୍ପନ୍ଦିଲା / ଟହ ଟହ ଅଟ୍ଟହାସ କଲା / ସେ ଦିର୍ଯୋଧନ / ହାହା ହୁହୁ ହାସ୍ୟ ତରଙ୍ଗ / ଅଙ୍ଗ ବିଭଙ୍ଗ / ବିକଟ କୁହାଟ ସେ ରୋଳହାସ୍ୟରେ / ସଭାସ୍ଥଳ ଦୁଲୁକିଲା / ଗହଗହ ହସିଲା / ସେ ଧୁସାବୀର / ହସିଲା ଶକୁନି / କର୍ଣ୍ଣ ଜୟଦ୍ରଥ / କୁରୁ ସଭା ପଡିଲା ଉଠିଲା / ହାସ୍ୟଘାତରେ / କିବା ବ୍ୟୁତ୍ପାତ ହେଲା /

ଟରାଟି ଚାହିଁଲା / ରାଜା ଦିର୍ଯୋଧନ / ଓଷ୍ଠ କାମୋଡିଲା / ସଭା ସ୍ତମ୍ଭିତ ହେଲା / ନିମେଷକେ ନିରବିଲା / ଇଙ୍ଗିତରେ କେଶ ଛାଡିଲା / ପାରୁଶେ ଉଭାହେଲା / ପରାକ୍ରମୀ ଧୁସାବୀର /

ଲଳନା କଣ୍ଠରେ / କ୍ରୋଧ କାରୁଣ୍ୟ / ଅନୁନୟ ତିରସ୍କାର / କ୍ଷୁର ପ୍ରାୟେ ତା'ର ସ୍ୱରରେ / ସଭାସ୍ଥଳକୁ ଦାରଣ କଲା / ମୁକ୍ତକେଶା / ବିଦ୍ୟୁତ୍‌ଲୋଚନା / ଅଶ୍ରୁସିକ୍ତ ବଦନା / ଖରସାଣ କୃପାଣ ପ୍ରାୟେ / ଲେଲିହାନ ଅଗ୍ନିଶିଖା ପ୍ରାୟେ / କମ୍ପିଲା / ସେ ଆହତା ସର୍ପିଣୀ / ରାଜନନ୍ଦିନୀ / ସେ ଯାଜ୍ଞସେନୀ /

ଏ ପରା ରାଜସଭା / ଧର୍ମ ସଭା ଅଟଇ / ବିବେକୀ ଜନ / ବୃଦ୍ଧଜନ / ରାଜପଣକୁ ଯୋଗ୍ୟ / ସଭାମଣ୍ଡନକୁ ଯୋଗ୍ୟ / ମର୍ଯ୍ୟାଦାବନ୍ତ ପୁରୁଷଙ୍କ ସଭା / ଏ କୁରୁ ସଭା / ରାଜମୁକୁଟ ପିନ୍ଧି ଜ୍ୟେଷ୍ଠତାତ ବସିଛ / ପିତାମହ / ଦ୍ରୋଣଗୁରୁ / କୃପାଚାର୍ଯ୍ୟ / ସଞ୍ଜୟ, ବିଦୁର / ବସିଛ ଏ ଧର୍ମସଭାରେ / କେଉଁ ଧର୍ମ ଆଚରୁଛ ସଭାଜନେ ? କୁଳବଧୂ ଲାଞ୍ଛିତ ହେଉଛି / ଧର୍ମ ଲାଞ୍ଛିତ ହେଉଛି / ନାରୀ ମର୍ଯାଦା ଲୁଣ୍ଠିତ ହେଉଛି / କେହି ଜଣେ ପ୍ରତିବାଦ କରୁନାହଁ / କେଉଁ ଧର୍ମ ପାଳନ କରି କାହା ଧର୍ମ ରକ୍ଷା କରି / ନୀରବ ବସିଛି ହେ, ସଭାଜନେ / କେହି କଣ କ୍ଷତ୍ରାଣୀ ଉଦରରୁ ଜନ୍ମିନାହିଁ / କ୍ଷତ୍ରି ଔରସରୁ ଜନ୍ମି ନାହିଁ / ଜନ୍ମି ଥିଲେ / କୋଷମୁକ୍ତ / ଅସି ସଦୃଶ / ଆହତ ସର୍ପରାଜ ସଦୃଶ / ରେରେକାର ପୂର୍ବକ / ଏ ମୂଢ ହସ୍ତରୁ / ଅବଳା ରକ୍ଷଣ କରିଥାନ୍ତା / ଏଠାରେ କେହି କ୍ଷତ୍ରି ନାହିଁ / କେହି ପୁରୁଷ ନାହିଁ / ନପୁଂସକ ରାଜସଭା / ବଚସ୍କର ଦାସସଭା / କୌରବ ଅନ୍ନପାଳିତ / ଏ ଶ୍ୱାନସଭା / ରାଜା ଅନ୍ଧ / ପ୍ରଜା ଅନ୍ଧ / ସଭା ଅନ୍ଧ / ବଧିର / ଅଥର୍ବ

/ ନିଷ୍ପ୍ରାଣ ଏ ଲଘୁଚେତା / ସ୍ଥୁଳଚେତା / କାପୁରୁଷଙ୍କ ସଭା / ଏ କୁରୁସଭା /

କ୍ଲୀବ ପ୍ରାୟ / ମୃତ ନିର୍ବିଷ ସର୍ପ ପ୍ରାୟ / ବସିଛ ହେ ପଣ୍ଡୁଙ୍କ ସୁପୁତ୍ରମାନେ / ପଞ୍ଚପାଣ୍ଡବ / ଯାଜ୍ଞସେନୀର ପଞ୍ଚପତି / ଗୋଟିଏ ପତ୍ନୀକୁ / ଗୋଟିଏ ରାଜକନ୍ୟାକୁ / ରକ୍ଷାକରିବାକୁ / ମର୍ଯ୍ୟାଦା ଦେବାକୁ / ପାଞ୍ଚଜଣ ଅସମର୍ଥ / କିବା ରାଜପୁତ୍ର ତୁମେ / କିବା ଦିଗ୍‌ବିଜୟୀ ବୀର / ଦସ୍ୟୁ ତସ୍କରକୁ / ଅସଭ୍ୟ ବର୍ବରକୁ / ତରୁ ତୃଣକୁ / ଆଶ୍ରିଥିଲେ / ସମ୍ଭାଳିଥାନ୍ତା / କିବା ଧିକ୍କାରିବି / ତୁମ ପୌରୁଷକୁ / ନିର୍ଲଜ କ୍ଷତ୍ରିପଣକୁ / ନାରୀଟିକୁ / ପତ୍ନୀଟିକୁ / ସମ୍ଭାଳିପାରୁନାହିଁ / କିବା ସାମ୍ରାଜ୍ୟ ସମ୍ଭାଳିବ / ପତିଧର୍ମ ପାଳିନାହିଁ / କିବା ନରପତି / ଛତ୍ରପତି / ଭୂପତି ଧର୍ମ ପାଳିବ ହେ ନରାଧମ !

ନିଜ ଉରୁ ଥାପୁଡାଇ / ବାହୁକୁ ଦାଣ୍ଡୋଇ / ଟହ ଟହ ହସିଲା / ସେ ଦିର୍ଯୋଧନ / ଉଲଗ୍ନ ଉରୁ ଦେଖାଇ ଡାକିଲା / ଆସ ଲୋ କ୍ରୀତଦାସୀ ବୋଇଲା / ପ୍ରଚଣ୍ଡ ଦାବାଗ୍ନି କି ପ୍ରଜ୍ୱଳିଲା / ହୁତାଶନ ଗ୍ରାସିଲା କି ଦିକ୍‌ମଣ୍ଡଳ / ଯାଜ୍ଞସେନୀ କମ୍ପିଲା କ୍ରୋଧରେ / ଅପମାନରେ / ଅସୁମାରି ଲଜ୍ଜାରେ / ଅଗ୍ନି ବର୍ଷିଲା / ଆକାଶକୁ ଜାଳିଦେବକି ଅବା / ପୃଥିବୀକୁ ବିଦାରିଦେବ କି ଅବା ତା'ର ବିକଳ କ୍ରନ୍ଦନ / ଏ ସମୟେ ବଜ୍ର ନିର୍ଘୋଷ ହେଲା / ଅକାଳ ନିର୍ଘାତପ୍ରାୟ / ଗର୍ଜନ ଶୁଭିଲା / ଶତେସିଂହ ପରାକ୍ରମୀ / ସେ ଦ୍ୱିତୀୟ ପାଣ୍ଡବ / ବାହୁ ବିସ୍ତାରି / ନୟନ ତରାଟି / ରେରେକାର କଲା / କୌରବ ଶଙ୍କିଲେ / ସିଂହନାଦରେ ଛାଗଳପ୍ରାୟ / ବରଡାପତ୍ରପ୍ରାୟ କମ୍ପିଲେ / ଅଚାନକ ବିପତ୍ତିରେ / ରାଜା ଦିର୍ଯୋଧନ / ହତବୁଦ୍ଧି ହେଲା / କ୍ରୋଧେ କମ୍ପିଲା / ସେ ଭୀମସେନ / ବୋଇଲାରେ ଗୋଲେକପୁତ୍ର ଦୁରୁଯା / ଶୃଗାଳ ହୋଇ ସିଂହୀକୁ ଅପମାନ ଦେଲୁ / ଉଲଗ୍ନ ଉରୁ ଦେଖାଇ / ଡାକିଲୁ ଯାଜ୍ଞସେନୀକୁ / ପୋଇଲୀ ବୋଲି ସମ୍ବୋଧିଲୁ / ତୋର ସେ ଉରୁଦର୍ପକୁ / ଯଦି ଗଦାଦଣ୍ଡରେ ମୁଁ ବିଚୂର୍ଣ୍ଣିତ ନ କରିଛି / ଯଦି ତୋର ଅଯୋଗ୍ୟ ରାଜପଣକୁ ପଦାଘାତରେ ବିମର୍ଦ୍ଦିତ ନ କରିଛି / ମୁଁ ଭୀମସେନ ନୁହେଁ / ମୁଁ ପିତୃପୁରୁଷଙ୍କୁ ଦ୍ରୋହ ଆଚରିବି / କ୍ଷାତ୍ରପଣକୁ ଲଙ୍ଘିବି / କୁଳମର୍ଯ୍ୟାଦା ଲଙ୍ଘିବି / ରେ ଖଳ ବୁଦ୍ଧି / କୌରବ କୁଳାଙ୍ଗାର / ଦୁର୍ଜନ ଦୁରୁଯା / ଏହା ମୋର ତ୍ରିବାର ସତ୍ୟ / ସତ୍ୟ / ସତ୍ୟ / ଆକାଶରେ ମନ୍ଦ୍ରନାଦ ହେଲା / ବିଦ୍ୟୁତ ଝଲସିଲା / ସଭାସ୍ଥଳୀ / ଭୀମସେନର / ଶ୍ୱାସ ଉଚ୍ଛ୍ୱାସ / ଶୁଣିଲା ତ୍ରସ୍ତ ବିବ୍ରତ ହେଲା /

କି ହେଲା କି ହେଲା ବୋଲି / ଶକୁନି ବିଳପିଲା / ଧର୍ମ ଲଙ୍ଘିଲେ ପାଣ୍ଡବେ / ଆହେ ଧର୍ମପୁରୁଷ / ଯୁଧିଷ୍ଠିର / ପଶାଖେଳ ଯେ ଧର୍ମ ଖେଳ / ସେଥିରେ ସାକ୍ଷାତେ / ତୁମ୍ଭେ ହାରିଲ କ୍ରୀତଦାସ ହେଲ / ବଚନବଦ୍ଧ ହେଲ / କେମନ୍ତେ ପୁଣି ଦୁଷ୍ଟ ଭ୍ରାତାକୁ / ଧର୍ମ ଲଙ୍ଘିବାରୁ / ନିବୃତ୍ତ ନକଲ / ସେ ରାଜାର, ରାଜସଭାର ମର୍ଯ୍ୟାଦା ଲଙ୍ଘନକଲା / ନିବାରଣ କଲନାହିଁ / ହେ ଧର୍ମପୁରୁଷ /

ଦିର୍ଯୋଧନ କୁହାଟିଲା / ହଇ ହଇ / କେମନ୍ତେ ପାଣ୍ଡବେ ଧର୍ମ ଲଙ୍ଘିଲେ / ପାଣ୍ଡବେ କ୍ରୀତଦାସ ହୋଇ ବସିଛନ୍ତି / ତାଙ୍କ ଘରଣୀ / କ୍ରୀତଦାସୀ ନହେବ କିମ୍ପାଇଁ / କ୍ରୀତଦାସୀର କି ବା ଲଜ୍ଜା / କି ବା ମର୍ଯ୍ୟାଦା / କି ବା ଅପମାନ / ମୁହୂର୍ତ୍ତକେ ଦିର୍ଯୋଧନ ଚକ୍ଷୁ ତରାଟିଲା / ଭ୍ରୂ

କମ୍ପାଇ / ଦାନ୍ତ କାମୋଡି / ପୁନଶ୍ଚ ଉରୁ ଥାପୁଡାଇ / ଦୁଃଶାସନକୁ ଆଦେଶିଲା ସେ ଦିର୍ଯ୍ୟୋଧନ / ରାଜସଭା ଏ ଯେ ରଙ୍ଗସଭା / ସୁକେଶିନୀ / ଏ ଦ୍ରୁପଦୀ ଦାସୀ / ଧର୍ମଶାସନରେ ଆମ୍ଭର ଭୋଗ୍ୟା / ରାଜାର ଧର୍ମ ହିଁ ପ୍ରଜାର ଧର୍ମ / ରାଜାର ଇଚ୍ଛା ହିଁ ପ୍ରଜାର ଇଚ୍ଛା / ଆମ୍ଭେ ଏ ଦୁର୍ଲଭା ରମଣୀକୁ / ଏକାନ୍ତେ ଲଭିବା ପୂର୍ବରୁ / ସଭାଜନଙ୍କ ଆମୋଦ ସକାଶେ / ଆମ୍ଭର ବିଳାଶ ପାଇଁ / ଏ ନାରୀର ବିବସ୍ତ୍ର ରୂପ ଯୌବନକୁ ଉଦ୍‌ଘାଟିତ କରିବାକୁ ଚାହୁଁ / ଏହା ରାଜାଦେଶ / ବୀର ଦୁଃଶାସନ / ତତ୍‌କ୍ଷଣାତ୍ ପାଳନ କର / ଦ୍ରୁପଦୀଦାସୀକୁ ରାଜସଭାରେ ଏ ବିଳାସକୁଶଳ ରଙ୍ଗସଭାରେ ବିବସ୍ତ୍ରୀ କର / ପ୍ରତିଧ୍ୱନିତ ହେଲା / ଚତୁର୍ଦ୍ଦିଗରୁ / ସଭାଜନେ / ଆତଙ୍କିତ / ଅସହାୟ / ଦ୍ରୌପଦୀ ବିପତ୍ତିକୁ / ବାରଣ କରିବାକୁ / ବଳ ନାହିଁ / ଆଖି ଟେକି ଚାହିଁବାକୁ ଧଇର୍ଯ ନାହିଁ / ଆହା କହି ଦେବାକୁ / ସାହସ ନାହିଁ / ସତେ କି / ଏ ଅକଳ୍ପନୀୟ / ଆଚରଣ / ଏ ଦୁର୍ମଦ ରାଜନୀତି / ଏ ପାପିଷ୍ଠ ଦୁର୍ନୀତି / ଏହି ରାଜସଭାରେ / ଆମ୍ଭ ସମକ୍ଷରେ ଘଟିଯିବ / ଚକ୍ଷୁ ବାଷ୍ପାକୁଳ / ଶ୍ୱାସ ସ୍ତମ୍ଭିତ ପ୍ରାୟ / ଘର୍ମାକ୍ତ ଶରୀର କାଷ୍ଠ ପ୍ରାୟ / ଆକାଶରୁ ବଜ୍ର ଖସିଲା ପ୍ରାୟ / ଶୂନ୍ୟରୁ ସର୍ପ ବର୍ଷିଲା ପ୍ରାୟ / ପୃଥିବୀ ରସାତଳକୁ ଧସିଲା ପ୍ରାୟ / ଆସନ୍ନ ବିପତ୍ତିକୁ ଶ୍ୱାସ ରୋଧି ଅପେକ୍ଷାକଲେ ସେ ସଭାଜନେ / ସେ ରାଜସଭା ଯେ କୁରୁସଭା /

ଧାଡିକାରେ ଝପଟିଲା ସେ ଧୃସାବୀର / ଆକର୍ଷି ଧରିଲା / ସେ ପାଞ୍ଚାଳୀର କୁଞ୍ଚିତ ସଘନ / ପ୍ରଲମ୍ବିତ କେଶରାଶିକୁ / ତ୍ରସ୍ତା କୁରଙ୍ଗୀ ପ୍ରାୟ / ଅସହାୟ ସେ ଦ୍ରୁପଦ ନନ୍ଦିନୀ ଚାହିଁଲା ପାଣ୍ଡବଙ୍କୁ / ଚାହିଁଲା ନିଶ୍ଚଳ ରାଜସଭାକୁ / ନିରାଶ ଭଜିଲା / ଚକ୍ଷୁ ବୁଜି, ଲୋତକପାତକଲା / ସେ ରାଜବଧୂ / ଧୃସା ଘଞ୍ଚାଳିଲା / ଘୋଷାରିଲା ଇତସ୍ତତଃ / ଏପରି କ୍ରୁର କର୍ମକୁ / ନିର୍ମମ ରାଜାଦେଶକୁ / ସେ ନିର୍ବିଚାର ପାଳନ କରିବାକୁ / ତାକୁ ଧର୍ମ ବିଚାରି ସମ୍ପାଦିବାକୁ / ସେ ଦ୍ରୌପଦୀର ଅଞ୍ଚଳ ଓଟାରିଲା / ବିବଶା ପାଞ୍ଚାଳୀ / ହେଜିଲା ତା'ର ଦୁର୍ଗତିକୁ / ତା' ପାଇଁ ରାଜା ନିରାଶ / ରାଜସଭା ନିରାଶ / ପାଣ୍ଡବେ ନିରାଶ / ଧର୍ମ ନିରାଶ / ମନ୍ଦର ସାଗର ପୃଥିବୀ ନିରାଶ / ତାରାମଣ୍ଡଳ / ଗ୍ରହମଣ୍ଡଳ / ନଭୋମଣ୍ଡଳ / ନିରାଶ /

ଧୃସା ପଣନ୍ତ ଆକର୍ଷିଲା / ଅବଳା ରୋଧିଲା / ଦୁର୍ବଳ କମ୍ପିତ ତା'ର ସ୍ନାୟୁମଣ୍ଡଳ / ଲୋତକସ୍ନାତ ତା'ର ମୁଖମଣ୍ଡଳ, ବକ୍ଷଦେଶ / ମୁହୂର୍ତ୍ତକେ ସରିଯିବ ତା'ର ନାରୀ ମର୍ଯ୍ୟାଦା / ସେ ମରଣ ଇଚ୍ଛିଲା / ସେ ମୃତ୍ୟୁକୁ ଆବାହନ କଲା /

ନିର୍ବିଶେଷ ସତ୍ୟକୁ ଆବାହନ କଲା / ତା'ର ତନୁଲତା / ତା'ର ବାହୁଯୁଗଳ / ଶିଥିଳ ନିଷ୍ପ୍ରାଣ / ବାତ୍ୟାବିମର୍ଦ୍ଦିତ ବଲ୍ଲରୀ ପ୍ରାୟ ନିଶ୍ଚେଷ୍ଟ ହୋଇଲା / ତ୍ରାହି ତ୍ରାହି ଡାକିଲା ତା'ର ଅନ୍ତରାତ୍ମା / ଦୁଇବାହୁ ଉର୍ଦ୍ଧ୍ୱକୁ ଟେକି / ଉର୍ଦ୍ଧ୍ୱମୁଖୀ ହୋଇ ତେମନ୍ତ ସଙ୍କଟ ବେଳାରେ / ଦ୍ରୌପଦୀ ସ୍ମରିଲା / ପୁରୁଷୋତ୍ତମଙ୍କୁ /

ମନେହେଲା / ରାଜସଭାରେ ଭୂକମ୍ପ ହେଲା / ମନେହେଲା ଶୂନ୍ୟଗର୍ଭ କନ୍ଦୁକ ପ୍ରାୟ / ନାରୀ ନିର୍ଯାତନାର ଭୂମି / ସେ ବଧଭୂମି / ଆନ୍ଦୋଳିତ ହେଲା / ଦ୍ରୌପଦୀ କେବଳ ନିଶ୍ଚଳ

ଭାରକେନ୍ଦ୍ର / ଦୋଳାୟିତ ହେଲା ଧୃସାବୀର / ଆସନରେ ଟଳମଳ ହେଲା ଦିର୍ଯୋଧନ / ଧୃସା ନିର୍ବିରୋଧ / ଓଟାରିନେଲା / ଦ୍ରୁପଦନନ୍ଦିନୀର ଦୁକୁଳ / ରାଜନନ୍ଦିନୀର ବିବସ୍ତ୍ରା ଜଘନ ଯୌବନକୁ / ନିଷ୍ପଲକ / ଲୋଲୁପ ଦୃଷ୍ଟିରେ ଆତୁର ଉଚ୍ଛଣ୍ଠାରେ / ଉପଭୋଗ କରିବାକୁ / ଦିର୍ଯୋଧନ ଅପେକ୍ଷାକଲା / ତା'ର ଆପାଦ ମସ୍ତକ ଝଣକିଲା / ତା'ର ଚିତ୍ତ ବିଭ୍ରମ ହେଲା / ସଭାସ୍ଥଳକୁ / ଧୂମାଭ ଆସ୍ତରଣ / ଅଦ୍‌ଭୁତ ଜ୍ୟୋତି / ସୁଝୀନ କୋମଳ / ନୀଳାଭ ମେଘ ପଟଳ / ଆଚ୍ଛାଦିଲା / ଧୃସାକୁ ଦିଶିଲା ଅଦ୍ଭୁତ ପ୍ରାୟେ / ସଭାଜନକୁ ଦିଶିଲା / ଅଦ୍ଭୁତ ପ୍ରାୟେ / ଦୁକୁଳ ଅନ୍ତରାଳରେ ଦୁକୁଳ, ଦ୍ରୌପଦୀକୁ ଆବୋରିଲା / ମୁହ୍ୟମାନ ଦ୍ରୌପଦୀ / ଉର୍ଦ୍ଧ୍ୱବାହୁ / ଶରୀର ଚେତନାକୁ / ପରିତ୍ୟାଗ କରି ମାନ ଅପମାନକୁ ବିସ୍ମରି / ଆର୍ତ୍ତ ଶରଣାପନ୍ନ ହୋଇ ସମର୍ପିତ ମୁଦ୍ରାରେ ପ୍ରସ୍ତର ମୂର୍ତ୍ତିବତ / ଉଭା ହେଲା / ଧୃସା ଦିର୍ଯୋଧନ / ନିର୍ମମ କୁରୁସଭା / ଅସହାୟ ପାଣ୍ଡବକୁ ବିସ୍ମରିଲା / ନିଜ ଅଙ୍ଗ ବିଗ୍ରହର / ବିକଳ କଦର୍ଥନା ଜାଣି ନପାରିଲା / ଅନନ୍ତ କୋଟି ବିଶ୍ୱକୁ / ଯେ ଚକ୍ଷୁ ପଲକରେ ଚଳିତ କରନ୍ତି / ଯାହାଙ୍କ ଆଜ୍ଞାରେ / ଅଗ୍ନି ବାୟୁ ତାରା ତପନ ଆତଯାତ ହୁଅନ୍ତି / ଅଧର୍ମର ଅଭ୍ୟୁଦୟ ହେଲେ / ଧର୍ମ ସଂସ୍ଥାପନ ପାଇଁ / ଯେ ଯୁଗେ ଯୁଗେ ସମ୍ଭବନ୍ତି / ସେ ଦ୍ରୌପଦୀକୁ / ତା'ର ମାନ ମର୍ଯ୍ୟାଦାକୁ / ତା'ର ଲଜ୍ଜା ନିବାରଣକୁ / ନୀଳାଭ ମେଘ ସଦୃଶ / ଆବୋରିଲେ / କିବା ଧୃସା / କିବା ଦିର୍ଯୋଧନ କିବା ପାଣ୍ଡବ କୌରବ / କାହାର ସାଧ / ସେ ଅଘଟନ ଘଟନ ପଟିୟସୀ / କୃପାବର୍ତ୍ତକୁ ବାରଣ କରିବ / ଧୃସା ନିଷ୍ଫଳ ପ୍ରୟାସରେ ଘର୍ମାକ୍ତ / କୁରୁସଭା ନିଷ୍ଫଳ ପ୍ରତୀକ୍ଷାରେ ଘର୍ମାକ୍ତ / ପାଣ୍ଡବେ ଲଜ୍ଜା ଅପମାନରେ / ଲୋତକ ଘର୍ମରେ ଆପ୍ଲୁତ /

କିଏ କହିଲା କି / ଶୂନ୍ୟବାଣୀ ଶୁଭିଲା କି / କ୍ଳାନ୍ତ ପରାହତ ଧୃସା / ପର୍ବତ ପ୍ରମାଣେ ଦୁକୁଳ ଉପରେ ମୂର୍ଚ୍ଛିତ /

କିଏ ସେ ବୋଇଲା / ଦ୍ରୌପଦୀର ଲଜ୍ଜା ନିବାରଣ ପାଇଁ / ଧର୍ମ ଅବତରିଲେ / କାହାର ସାଧ / ଏ ମହତୀ ରାଜନନ୍ଦିନୀକୁ ବିବସ୍ତ୍ରା କରିବ / କାହାର ସାଧ ଏ ଦେବକନ୍ୟାକୁ / ଇତର କ୍ରୀତଦାସୀ ତୁଲ୍ୟ / ତୁଚ୍ଛତାଚ୍ଛଲ୍ୟ କରିବ / ନିବୃତ୍ତ ହୁଅ ହେ ବିଧର୍ମୀ / କୁକର୍ମୀ କୁରୁ ପାଣ୍ଡବ / ଏ ଅପଯଶ ଧରା ସହିବ ନାହିଁ / ଯେ ଦ୍ରୌପଦୀକୁ ରକ୍ଷା କରିଛି / ସେ ହିଁ ତୁମକୁ ଗ୍ରାସ କରିଯିବ / ତା'ର ଦଶନ ସନ୍ଧିରେ / ଚୂର୍ଣ୍ଣମସ୍ତକ ରଥୀ ମହାରଥୀମାନେ ଲାଖିରହିବ / ଏହା ସ୍ଥିର ଅବିକମ୍ପିତ ସତ୍ୟ / ଅବଶ୍ୟମ୍ଭାବୀ ଭବିତବ୍ୟ /

ମୋହ ଭଙ୍ଗ ହେଲା ରାଜସଭାର / ପୁନଶ୍ଚ ପ୍ରତିହିଂସା ଜିଘାଂସାର କଟାହରେ / କୁରୁପାଣ୍ଡବ / ଦଗ୍ଧୀଭୂତ ହେଲେ / ଭୁଜଦଣ୍ଡ ପ୍ରକମ୍ପିତ କରି / ପୁନଶ୍ଚ ନରଶାର୍ଦ୍ଦୁଳ / ଭୀମସେନ / ରେରେକାର କଲା / ଯେଉଁ ବାହୁରେ ଧୃସା ଯାଜ୍ଞସେନୀର କେଶ ଆକର୍ଷିଲା / ବିବସ୍ତ୍ରା କରିବାକୁ ଦୁକୁଳ ଓଟାରିଲା / ତାକୁ ଉପାଡିବାକୁ ବଜ୍ରଶପଥ ନେଲା / ଧୃସାର ବକ୍ଷ ବିଦାରଣ କରି / ସେହି ରକ୍ତରେ / ଯାଜ୍ଞସେନୀର ବେଣୀ ବନ୍ଧନ କରିବାକୁ ତ୍ରିବାର ସତ୍ୟକଲା / କୁରୁସଭା ପୁନଶ୍ଚ ସ୍ତବ୍ଧ ହେଲା /

ପୁନଶ୍ଚ ଭୀମସେନଙ୍କୁ ଦାସତ୍ୱ ଭଜିବାକୁ / ଧର୍ମ ନାମରେ / ବାଧ୍ୟକରାଗଲା / କେବଳ ଦ୍ରୌପଦୀ ଚାହିଁଲା / କୁରୁସଭାକୁ / ଚାହିଁଲା ଭୀମସେନଙ୍କୁ / ପାଣ୍ଡବଙ୍କୁ / ଆଖିରେ ଦୟା / ଦୃଷ୍ଟିରେ ଅନୁକମ୍ପା / ତୁମେ କିଏ ହୋ ପାଣ୍ଡବେ କୌରବେ / କିବା ତୁମ ଆୟତ୍ତରେ ସମ୍ଭବ / ତୁମ ସମକ୍ଷରେ କର୍ତ୍ତା ଆବିର୍ଭୂତ ହେଲେ / ଦେଖି ଦେଖିଲ ନାହିଁ / ପର୍ବତପ୍ରମାଣେ / ଏ ଦେବ ଦୁକୂଳକୁ ଦେଖି ସୁଦ୍ଧା ଦେଖିଲ ନାହିଁ /

ଊର୍ଦ୍ଧ୍ୱମୁଖୀ ଦ୍ରୌପଦୀ ପ୍ରଣମିଲା / ସ୍ମିତ ହାସ୍ୟରେ ଚାହିଁଲା / ବିଶୁଦ୍ଧମତୀ ଜନନୀସ୍ୱରୂପା / ଦ୍ରୌପଦୀ / କୌରବଙ୍କୁ କ୍ଷମିଲା / ପାଣ୍ଡବଙ୍କୁ ଆଶ୍ୱାସିଲା / ସେ ଦୃଷ୍ଟିରେ / ପୁରୁଷୋତ୍ତମଙ୍କୁ କ୍ଷମିଲା / ଧର୍ମର ବିପର୍ଯ୍ୟୟ / ସାଧୁଙ୍କର କଦର୍ଥନା ପାଇଁ / ଅନାଗତ / ଅବଶ୍ୟମ୍ଭାବୀ / ଭବିତବ୍ୟକୁ / ନୀରବ ଆମନ୍ତ୍ରିଲା ଯାଜ୍ଞସେନୀ / ତା'ର ଶୀତଳ ବିମଳ ମୃଦୁହାସ୍ୟରେ /





କବି, କଳାକାର, ସ୍ଥପତି, ଗାଳ୍ପିକ, ଔପନ୍ୟାସିକ, ନିବନ୍ଧକାର, ଶାସ୍ତ୍ରଜ୍ଞ, ବାଗ୍ମୀ, ସୁବେଦୀ, ସାଧକ, ସାରସ୍ୱତ ପ୍ରାଜ୍ଞପୁରୁଷ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ସାଂପ୍ରତିକ ଓଡ଼ିଆ ଗଦ୍ୟ ସାହିତ୍ୟରେ ଜଣେ ପ୍ରଜ୍ଞାଦୀପ୍ତ ଉଜ୍ଜ୍ୱଳ ପୁରୁଷ । ତାଙ୍କ ଭାଷାରେ ସମ୍ଭ୍ରାନ୍ତ ଶୁଦ୍ଧତା, ଉଚ୍ଚାରଣରେ ଅଭ୍ରାନ୍ତ ସ୍ୱଚ୍ଛତା, ଚିନ୍ତାରେ ବଳିଷ୍ଠ ମୌଳିକତା, ଉପଲବ୍ଧିରେ ସୂକ୍ଷ୍ମତା ଓ ଗଭୀରତା ତାଙ୍କୁ ଏକ ଅନନ୍ୟ ସାଧାରଣ ସମ୍ମାନର ଅଧିକାରୀ କରି ପାରିଛି । ମହିମାନ୍ୱିତ ଏ ଶିଳ୍ପୀଙ୍କ ପରିବ୍ୟାପ୍ତ ସୃଜନ-ଦିଗ୍‌ବଳୟରେ ଧ୍ୱନିତ ହୁଏ ଏକ ଅଶ୍ରୁତ ସ୍ୱର, ଅନୁଭୂତ ହୁଏ ଅନ୍ତରୀକ୍ଷର ସ୍ପର୍ଶ । ସେ ତାଙ୍କର ଚେତନାର ଉଦ୍‌ଭାସରେ ଦୀପ୍ତିମନ୍ତ କରନ୍ତି ପାଠକଙ୍କୁ । ଓଡ଼ିଆ ସାହିତ୍ୟକୁ ମର୍ଯ୍ୟାଦାମଣ୍ଡିତ କରିଥିବା, ବହୁ ମାନ୍ୟତା ପ୍ରାପ୍ତ, ବିପୁଳ ଶ୍ରଦ୍ଧା ସମ୍ମାନର ଅଧିକାରୀ ଚନ୍ଦ୍ରଶେଖର, ସାଂପ୍ରତିକ କାଳର ଚିନ୍ତା-ଚେତନା କ୍ଷେତ୍ରରେ ଏକ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ । ସାହିତ୍ୟର ସବୁ ବର୍ଗରେ ତାଙ୍କର ପ୍ରବେଶ । ସବୁ ବର୍ଗରେ ପ୍ରତିଷ୍ଠା । ସବୁ ବର୍ଗରେ ପରିଚୟ ।

ପ୍ରକାଶକ



**GALPA SAMAHARA (DWITIYA BHAGA)**
by Chandrasekhar Rath
Published by Swastik, Sailashree Vihar, BBSR
Marketing by : Paschima Publications,
Bhubaneswar
1st Publication : 2014
Email: paschima1990@yahoo.com
for online purchase visit :
www.paschimapublication.in
www. odishaestore.com
www. odikart.com
www.odiabookbajar.com

₹. 600.00